# ସୂଚୀପତ୍ର

# ଅସମୀୟା

ଆସାମ ପ୍ରଦେଶ ଭାରତର ପୂର୍ବାଞ୍ଚଳରେ ଅବସ୍ଥିତ ରାଜ୍ୟ । ହିମାଳୟର ବିଗଳିତ ତୁଷାର-ଶୀକରସ୍ପର୍ଶ, ଭାରତର ଏହି ପାର୍ବତ୍ୟ ବନଭୂମିକୁ ପୁଲକିତ କରିଥାଏ, ସମଗ୍ର ଆସାମରାଜ୍ୟ ଏକମାତ୍ର ଶିରବର୍ତ୍ମ ଦେଇ ଭାରତ ସହିତ ଗମନାଗମନ ଦୃଷ୍ଟିରେ ସଂଯୋଜିତ । ବ୍ରହ୍ମପୁତ୍ରର ଅଜସ୍ର ଜଳଧାରା ଏହି ପାର୍ବତ୍ୟ ରାଜ୍ୟକୁ ବିଧୌତ କରୁଥିଲେ ମଧ୍ୟ ପ୍ରକୃତିର କରାଳ ସଂଘର୍ଷରେ ଓ ଉତ୍ପାତରେ ଏହି ରାଜ୍ୟ କ୍ଷତଗ୍ରସ୍ତ ଓ ବିପନ୍ନ ହୋଇଥାଏ । ଚାଇନା, ବର୍ମା ଏବଂ ପୂର୍ବ ପାକିସ୍ଥାନ ଏହି ରାଜ୍ୟକୁ ଘେରି ରହିଛନ୍ତି । ନୀଳ ଶୈଳମାଳା ଏହି ରାଜ୍ୟର ଚତୁଃସୀମାରେ ଅଭେଦ୍ୟ ପ୍ରାଚୀର ସଦୃଶ ଚିରଦିନ ଦଣ୍ଡାୟମାନ । ପ୍ରାକୃତିକ ସମ୍ପଦ-ପରିପୂର୍ଣ୍ଣ ଆସାମ ରାଜ୍ୟର ହଜାର ହଜାର ଏକର ଜମି ଚାହା ଉଦ୍ୟାନରେ ହସି ଉଠେ ।

'ସାନ୍' ବଂଶୀୟମାନେ ବ୍ରହ୍ମପୁତ୍ର ଉପତ୍ୟକାକୁ ତ୍ରୟୋଦଶ ଶତାବ୍ଦୀରେ ଆକ୍ରମଣ କରିଥିଲେ । ସେମାନେ ନିଜକୁ "ତାଇ" ବୋଲି ଅଭିହିତ କଲେ ମଧ୍ୟ ପରବର୍ତ୍ତୀ କାଳରେ 'ଅସମ୍' ନାମରେ କଥିତ ହେଲେ । ଆହମ, ଅସ୍ମ, ଆସାମ, ଅହମ ପ୍ରଭୃତି ଶବ୍ଦ ପ୍ରାଚୀନ ଆସାମୀ ବିବରଣୀମାନଙ୍କରେ ପରିଦୃଷ୍ଟ ହୁଏ । ଏହି ଅସମ୍ ଶବ୍ଦର ସାନ୍, ଶ୍ୟାମ ଏବଂ ସାମ୍ ଶବ୍ଦ ସହିତ ସାଦୃଶ୍ୟ ଥିବାର ଜଣାଯାଏ । ଐତିହାସିକ ସାର୍ ଏଡ୍ୱାର୍ଡ ଗେଟ୍ ଅନୁମାନ କରନ୍ତି 'ଅସମ' ଶବ୍ଦ (ଯାହାର ସମ କେହି ନାହିଁ) ଆହମ୍ ଶବ୍ଦରୁ ଉତ୍ପତ୍ତି ଲାଭ କରିଛି । ମାତ୍ର ଏହି ଅସମ୍ ଶବ୍ଦ ସମ୍ଭବତଃ ପରବର୍ତ୍ତୀକାଳରେ 'ଅଚମ୍' ସଦୃଶ କୌଣସି ଏକ ସଂସ୍କୃତ ଶବ୍ଦର ରୂପାନ୍ତର ବୋଲି ଜଣାଯାଏ । ଥାଇଲାଣ୍ଡର ଭାଷାରେ (ତାଇ) ଚମ୍ ଶବ୍ଦର ଅର୍ଥ ହେଉଛି ପରାଜିତ ହେବା । ଏହି ପରାଜୟ ଅର୍ଥ ସୂଚକ ଚମ୍ ଶବ୍ଦର ପୂର୍ବରେ ପରାଜୟର ବିପରୀତ ଅର୍ଥ ସୂଚକ 'ଅ' ବର୍ଣ୍ଣ ଯୋଗକଲେ ତାହା ଅଚମ୍ ହୁଏ । ଅଚମ୍ ଅର୍ଥ ଅପରାଜିତ । ସାନ୍ ଆଦିବାସୀମାନଙ୍କର ଦୁର୍ଦ୍ଦାନ୍ତ ରଣଜୟୀ ପ୍ରକୃତି ହିଁ ସମ୍ଭବତଃ ଏହି ଅଚମ୍ ଶବ୍ଦରୁ ସୂଚିତ । ଏହି 'ଅଚମ୍' ଶବ୍ଦ "ଆସାମ" ଶବ୍ଦରେ ରୂପାନ୍ତରିତ ହେବା ଅସମ୍ଭବ ନୁହେଁ । ଏଥିରୁ ଜଣାଯାଏ ଯେ ପ୍ରଥମେ ଅଚମ୍ ଶବ୍ଦ ସାନ୍ ଆକ୍ରମଣକାରୀମାନଙ୍କୁ ବୁଝାଉଥିଲା । ପରେ ସେମାନଙ୍କ ଦ୍ୱାରା ବିଜିତ ରାଜ୍ୟକୁ ବୁଝାଇଥିଲା । ଶେଷରେ ତାହା ସମଗ୍ର ବ୍ରହ୍ମପୁତ୍ର ଉପତ୍ୟକାକୁ ବୁଝାଇଲା । କ୍ରମେ ସେହି ପରାକ୍ରମଶାଳୀ ଆଦିବାସୀମାନେ ସ୍ଥାୟୀଭାବରେ ବସବାସ କରିଥିଲେ । ଏମାନେ ଏବ କାଳରେ "ଅହମ" ନାମରେ ପରିଚିତ ।

କାମରୂପ ଏବେ ମଧ୍ୟ ତନ୍ତ୍ରପ୍ରଧାନ ଦେଶ ବୋଲି ଲୋକମାନଙ୍କର ବିଶ୍ୱାସ । ପ୍ରବାଦ ଅଛି ଯେ ଆସାମର ରମଣୀମାନେ ପୁରୁଷକୁ ସହଜରେ ବଶୀଭୂତ କରି ମେଣ୍ଢାରେ

ପରିଣତ କରି ପାରନ୍ତି । ପୁରାଣ ଏବଂ କାବ୍ୟମାନଙ୍କରେ ପ୍ରାଚୀନ କାମରୂପର ନାମ ଥିଲା 'ପ୍ରାଗ୍ ଜ୍ୟୋତିଷପୁର' ଏବଂ ସେତେବେଳେ କୁଚ୍‌ବିହାର ସମେତ ସମଗ୍ର ଉତ୍ତର ବଂଗଳା ରଙ୍ଗପୁର ଏବଂ ଜଳପାଇଗୁଡ଼ି ଏହାର ଅନ୍ତର୍ଗତ ଥିଲା । ବିଷ୍ଣୁ ପୁରାଣରେ ବର୍ଣ୍ଣନା କରାଯାଇଛି ଯେ ଭାରତୀୟ ରାଷ୍ଟ୍ରର ସୀମା ନିର୍ଣ୍ଣୟ କଲାବେଳେ ଏହି କାମରୂପର ନାମୋଲ୍ଲେଖ କରାଯାଇଥାଏ । ଚୀନ ଏବଂ ଉତ୍ତର ବର୍ମା ଆଡ଼କୁ ପଠକାଇ ପାହାଡ଼ମାଳା ବାଟେ ଏକ ରାସ୍ତା ଥିଲା । ତାହା ଆସାମର 'ପୂର୍ବ ଜ୍ୟୋତିକ' ନାମରେ ପରିଚିତ । ଆସାମର ଏହି "ପୂର୍ବ ଜ୍ୟୋତିକ" ପରବର୍ତ୍ତୀ କାଳରେ ପ୍ରାଗ୍ ଜ୍ୟୋତିଷ-ପୁର ନାମରେ ପରିଚିତ ହେଲା । "କାଳିକା" ପୁରାଣର ପ୍ରଣେତା ମଧ୍ୟ ଏହି ପ୍ରସଙ୍ଗ ଆଲୋଚନା କରିଥିବାର ଜଣାଯାଏ । ତାଙ୍କ ମତରେ ବ୍ରହ୍ମା ଏକ ପୂର୍ବ ନକ୍ଷତ୍ର (ପ୍ରାଗ୍ ନକ୍ଷତ୍ର) ସୃଷ୍ଟି କରିଥିଲେ ଏବଂ ଏହି ନାମରୁ ରାଜ୍ୟର ନାମ "ପ୍ରାକ୍ ଜ୍ୟୋତିଷପୁର" ହେଲା । ଅର୍ଜ୍ଜୁନ ତାଙ୍କର ପୂର୍ବାଞ୍ଚଳ ଅଭିଯାନରେ ପ୍ରାକ୍ ଜ୍ୟୋତିଷପୁର ପର୍ଯ୍ୟନ୍ତ ଅଗ୍ରସର ହୋଇଥିଲେ ଏବଂ ସେଠାରେ ରାଜ୍ୟର ରାଜା ଭଗଦତ୍ତ ଅର୍ଜ୍ଜୁନଙ୍କର ସମ୍ମୁଖୀନ ହୋଇଥିଲେ । ଶେଷରେ ସନ୍ଧି ସ୍ଥାପିତ ହୋଇଥିଲା । ଲୋହିତ୍ୟ ଯେ ପ୍ରାକ୍ ଜ୍ୟୋତିଷ-ପୁର ରାଜ୍ୟର ପୂର୍ବସୀମା ଚିହ୍ନିତ କରୁଥିଲା ତାହା କାଳିଦାସଙ୍କ ରଘୁବଂଶ ବର୍ଣ୍ଣନାରୁ ସ୍ପଷ୍ଟ ପ୍ରମାଣିତ ହୁଏ । କୌଣସି ସୈନ୍ୟବାହିନୀ ଯେତେବେଳେ ଲୋହିତ୍ୟ ଅତିକ୍ରମ କରୁଥିଲେ ସେତେବେଳେ ପ୍ରାକ୍-ଜ୍ୟୋତିଷପୁର ଅଧିବାସୀଙ୍କ ପ୍ରାଣରେ ଆତଙ୍କ ଜାତ ହେଉଥିଲା । ବ୍ରହ୍ମପୁତ୍ର ନଦୀ ଦ୍ୱାରା ଆସାମ ଦୁଇ ଭାଗରେ ବିଭକ୍ତ । ଉତ୍ତର ଭାଗ କାମରୂପ ନାମରେ ପରିଚିତ ଏବଂ ତାହାର ରାଜଧାନୀ ଥିଲା ପ୍ରାକ୍ ଜ୍ୟୋତିଷ-ପୁର ଅର୍ଥାତ ଆଧୁନିକ ଗୌହାଟୀ ।

ପୁନଶ୍ଚ 'କାଳିକା ପୁରାଣ' ଏବଂ 'ଯୋଗିନୀ ତନ୍ତ୍ର' ବର୍ଣ୍ଣନାନୁଯାୟୀ କାମରୂପର ପଶ୍ଚିମ ଏବଂ ପୂର୍ବ ସୀମା 'କରତୋୟା' (ଉତ୍ତର ବଂଗଳା) ନଦୀଦ୍ୱାରା ଏବଂ 'ଦିକର ବାସିନୀ' ଦ୍ୱାରା ଯଥାକ୍ରମେ ଚିହ୍ନିତ ହେଉଥିଲା । ଖ୍ରୀଷ୍ଟ ୭ମ ଶତାବ୍ଦୀରେ କାମରୂପର ରାଜା ଭାସ୍କରବର୍ମନଙ୍କ ରାଜତ୍ୱକାଳରେ ହୁଏନସାଂଙ୍କ ଠାରୁ ଆରମ୍ଭ କରି ସପ୍ତଦଶ ଏବଂ ଅଷ୍ଟାଦଶ ଶତାବ୍ଦୀର କଚ ରାଜାଙ୍କ ରାଜତ୍ୱ କାଳ ପର୍ଯ୍ୟନ୍ତ କରତୋୟା ନଦୀହିଁ କାମରୂପର ପଶ୍ଚିମ ସୀମା ନିର୍ଦ୍ଧାରିତ କରୁଥିଲା । କାମରୂପ ଏବଂ କୁଚ-ବିହାରର ନରପତିମାନଙ୍କ ପୃଷ୍ଠପୋଷକତାରେହିଁ ଚତୁର୍ଦ୍ଦଶ ଏବଂ ଷୋଡ଼ଶ ଶତାବ୍ଦୀରେ ଆସାମର ସର୍ବପ୍ରାଚୀନ ଲିଖିତ ସାହିତ୍ୟର ଉତ୍ପତ୍ତି ହେଲା ଏବଂ ପରେ ତାହା ପରିବର୍ଦ୍ଧିତ ହେଲା ।

ଉତ୍ତର ବଙ୍ଗଳା ଏବଂ ପଶ୍ଚିମ ଆସାମର ଭାଷା ମଧ୍ୟରେ ବିଶେଷ ସାମ୍ୟ ପରିଲକ୍ଷିତ ହୁଏ । ପାଶ୍ଚାତ୍ୟ ଭାଷାତତ୍ତ୍ୱବିତ୍ ଡକ୍ଟର ଗ୍ରିୟରସନ୍ ଏହା ଉଲ୍ଲେଖ କରିଥିଲେ ।

ତାଙ୍କ ମତରେ ପ୍ରାଚୀନକାଳର ପୂର୍ବ ପ୍ରାକୃତ ସହିତ କେବଳ ମାଗଧୀର ସମ୍ପର୍କ ଥିଲା । ମଗଧର ପୂର୍ବ ସୀମାନ୍ତରେ ପ୍ରାଚ୍ୟ ଅପ୍ରଭଂଶ ପ୍ରଚଳିତ ଥିଲା; ଯାହାର ମୁଖ୍ୟ କେନ୍ଦ୍ର ଥିଲା ମାଲଦା ଜିଲ୍ଲାର ଗୌର । ଅପ୍ରଭଂଶ ପୂର୍ବ ସୀମାକୁ ବିସ୍ତୃତ ହୋଇଥିଲା ଏବଂ ତାହାର ଆଧୁନିକ ରୂପ ହେଉଛି ଉତ୍ତର ବଂଗଳା ଏବଂ ଆସାମ ଉପତ୍ୟକାର ଆସାମୀ ଭାଷା, ଏବଂ ଦକ୍ଷିଣରେ ଏହାର ରୂପାନ୍ତର ହେଉଛି ଓଡ଼ିଆ ଭାଷା । ଏହି ତିନି ଭାଷା ପ୍ରତ୍ୟେକ ପ୍ରାଚ୍ୟ ଅପ୍ରଭଂଶ ସହିତ ଜଡ଼ିତ ।* ନେପାଳରୁ ଡକ୍ଟର ହରପ୍ରସାଦ ଶାସ୍ତ୍ରୀଙ୍କ ଦ୍ୱାରା ଆବିଷ୍କୃତ, ବୌଦ୍ଧଗାନ ଓ ଦୋହା ନାମରେ ପରିଚିତ, କତିପୟ ଗୀତିକାରୁ, ଉତ୍ତର ମୂର୍ବ ଭାରତୀୟ ଆର୍ଯ୍ୟ ଭାଷାର ପ୍ରାଚୀନତମ ନିଦର୍ଶନ ପ୍ରାପ୍ତ ହୋଇଥାଏ । ଦୋହାର ଭାଷା ମାଗଧୀ ଅପ୍ରଭଂଶ ସଙ୍ଗେ ସମାନ ହୋଇଥିବାରୁ ବିଭିନ୍ନ ଭାଷାର ଗବେଷକମାନେ ସେ ସବୁରେ ସ୍ୱ ସ୍ୱ ଭାଷାର ସାଦୃଶ୍ୟ ଲକ୍ଷ୍ୟ କରିଥାନ୍ତି ।

ବୌଦ୍ଧଗାନ ଓ ଦୋହାରେ ପ୍ରାଚୀନ ଅସମୀୟା ଭାଷାର ନିଦର୍ଶନ ପରିଦୃଷ୍ଟ ହୁଏ । ସେହିପରି ବଙ୍ଗଳାର ବଡ଼ୁ ଚଣ୍ଡୀଦାସଙ୍କ କୃତ କୃଷ୍ଣକୀର୍ତ୍ତନ ନାମକ କୃତିରେ ପ୍ରାଚୀନ ଅସମୀୟା ଭାଷାର ସଙ୍କେତ ମିଳେ । ଏହି ସବୁ ପ୍ରାକ୍‌ବଂଗଳା ଏବଂ ପ୍ରାକ୍-ଅସମୀୟା ଯୁଗର ଭାଷା ।

ଆଧୁନିକ ଆସାମ ପ୍ରାଚୀନ କାମରୂପର ପ୍ରଧାନ ପୀଠ । ଏହି କାମରୂପ ଅଂଚଳରେ ଅତୀତକାଳର ବହୁ ଜାତି ବହୁ ଭାଷାଭାଷୀ ଯାଯାବର ବାସ କରିଥିଲେ । ବିଦେଶୀୟମାନଙ୍କର ସମାଗମରେ କାମରୂପର ଭାରତୀୟ ଅନ୍ତରାତ୍ମା ଯେପରି ଝଙ୍କୃତ ହୋଇ ଯାଇଥିଲା । ସମୟ ସ୍ରୋତରେ ନିଜର ସଭ୍ୟତା, ସଂସ୍କୃତି, ଭାଷାକୁ ରକ୍ଷା କରି କାମରୂପ ଆଜି ଭାରତ ସାଧାରଣତନ୍ତ୍ରରେ ଏକ ବିଶିଷ୍ଟ ସ୍ଥାନ ଅଧିକାର କରିଅଛି । ଆସାମର ଭାଷା ଅଛି ତାର ସ୍ୱତନ୍ତ୍ର ସାହିତ୍ୟ ଅଛି । ଏହି ଅସମୀୟା ସାହିତ୍ୟର ଭାବଧାରା ଭାରତୀୟ ଜୀବନରୁ ସାର ସଂଗ୍ରହ କରି ଯେତିକି ପରିପୁଷ୍ଟ ହୋଇଛି, ଭାରତୀୟ ସାମୂହିକ ସାହିତ୍ୟକ୍ଷେତ୍ରକୁ ସେତିକି ମଧ୍ୟ ପ୍ରଭାବିତ କରିଛି ।

ଭାରତୀୟ ପ୍ରାଚୀନ ସାହିତ୍ୟ ବୋଇଲେ ବୁଝାଯାଏ ସଂସ୍କୃତ ସାହିତ୍ୟ । ଜନନୀ ସଦୃଶ ସଂସ୍କୃତ ସାହିତ୍ୟ ଭାରତର ବିଭିନ୍ନ ପ୍ରାନ୍ତୀୟ ସାହିତ୍ୟକୁ କେବଳ ଜନ୍ମ ଦେଇନାହିଁ, ସେମାନଙ୍କୁ ନାନାଦି ବିଭବରେ ସମନ୍ୱିତ ତଥା ପରିପୁଷ୍ଟ ଏବଂ ଅର୍ଥବୋଧକ କରିଅଛି । ଅସମୀୟା ଭାଷା ଆଉ ସାହିତ୍ୟର ଉତ୍ପତ୍ତିକାଳ ବହୁ ପ୍ରାଚୀନ । ଭାରତର ଭାଷାମାନଙ୍କ ସମ୍ପର୍କରେ ଗବେଷଣା କରିଥିବା ଡକ୍ଟର ଗ୍ରିୟର ସନ୍ ସାହେବଙ୍କ ମତରେ "Assamess is essentially a national product. It always has been national and it is still.

* Linguistic Survey of India, Vol. I, PartI.

The Genius of the people has led it along lines of its own and its chief glory—history is a branch of study almost unknown to the indigenous literature of Bengal. Whether the nation has made the literature or the literature the nation, I know not, but as a matter of fact, both have been for centuries and are still in vigorous existence.

ଅସମୀୟା ସାହିତ୍ୟ ଏକାନ୍ତଭାବରେ ଜାତିସର୍ବସ୍ୱ ଜନସାଧାରଣଙ୍କର ଜୀବନୀ-ଶକ୍ତି ଓ ପ୍ରତିଭା ଯଥାର୍ଥରେ ସେଥିରେ ହିଁ ପ୍ରତିଫଳିତ ହୋଇଅଛି । ଯେ କୌଣସି ଦେଶର ଭାଷା ଆଉ ସାହିତ୍ୟ ସେହି ଦେଶର ଅଧିବାସୀଙ୍କର ମୌଳିକ ଜୀବନଧାରାକୁ ଅନୁସରଣ କରିଥାଏ । କାରଣ ଜନସାଧାରଣଙ୍କର ଆତ୍ମିକ ରୂପ କେବଳ ସାହିତ୍ୟରେ ହିଁ ପ୍ରତିଫଳିତ ହୋଇପାରେ ।

**ଆସାମୀ ଭାଷାର ବିଭିନ୍ନ ସ୍ତର—**

ଲିଖିତ ପ୍ରାଚୀନ ରଚନାମାନଙ୍କରେ ଅସମୀୟା ଭାଷାର ଯେଉଁ ଆଭିମୁଖ୍ୟ ଦେଖାଯାଏ, ସେଥିରୁ ଭାଷାର କ୍ରମିକ ବିକାଶ-ପର୍ଯ୍ୟାୟ ସହଜରେ ଅନୁସନ୍ଧେୟ ।

**ପ୍ରାଚୀନ ଅସମୀୟା**—ଚତୁର୍ଦ୍ଦଶ ଶତାବ୍ଦୀରୁ ଷୋଡ଼ଶ ଶତାବ୍ଦୀର ଶେଷ—ଏହା ସାଧାରଣତଃ ବୈଷ୍ଣବ ସାହିତ୍ୟ ପୂର୍ବବର୍ତ୍ତୀ ଅର୍ଥାତ୍ ଶଙ୍କରଦେବଙ୍କ ଆବିର୍ଭାବର ପୂର୍ବବର୍ତ୍ତୀ ଯୁଗ । ସର୍ବପ୍ରାଚୀନ ଅସମୀୟା ଲେଖକ ଏବଂ ପ୍ରହ୍ଲାଦ ଚରିତ ଏବଂ ବଭ୍ରୁବାହନ ପର୍ବର ପ୍ରଣେତା ହେମ ସରସ୍ୱତୀ ଏବଂ ହରିବର ବିପ୍ର ତ୍ରୟୋଦଶ ଶତାବ୍ଦୀରେ ଶେଷଭାଗ ଏବଂ ଚତୁର୍ଦ୍ଦଶ ଶତାବ୍ଦୀର ଆଦ୍ୟଭାଗରେ ରାଜତ୍ୱ କରୁଥିବା କାମତାପୁରର ରାଜା ଦୁର୍ଲ୍ଲଭ ନାରାୟଣଙ୍କ ପୃଷ୍ଠପୋଷକତା ଲାଭ କରିଥିଲେ । ଏହି ଯୁଗର ଆଉ ଦୁଇଜଣ କବି ହେଉଛନ୍ତି ରୁଦ୍ର କନ୍ଦଲି ଏବଂ କବିରତ୍ନ ସରସ୍ୱତୀ । ସେମାନଙ୍କର ରଚନା ହେଉଛି ଯଥାକ୍ରମେ ଦ୍ରୋଣପର୍ବ ଏବଂ ଜୟଦ୍ରଥ-ବଧ । ପୁନଶ୍ଚ ଅସମୀୟା ଭାଷାର ପ୍ରାକ୍‌ ଅଭ୍ୟୁଦୟ ଯୁଗର ପ୍ରଭାବଶାଳୀ ସାଧକ ହେଉଛନ୍ତି ମାଧବ କନ୍ଦଲି । ସେ ମଧ୍ୟ ଆସାମର ତଦାନୀନ୍ତନ କାଚାରୀ ରାଜାଙ୍କ ପ୍ରେରଣାରେ ସମଗ୍ର ରାମାୟଣ ଅନୁବାଦ କରିଥିଲେ । ଏହା ପ୍ରାୟ ଚତୁର୍ଦ୍ଦଶ ଶତାବ୍ଦୀର ଶେଷ-ପର୍ଯ୍ୟାୟ । ଶଙ୍କରଦେବ (୧୪୪୯—୧୫୬୯) ତାଙ୍କର ବୈଷ୍ଣବଧର୍ମ ପ୍ରଚାର ଏବଂ ବିବିଧ ରଚନା ଦ୍ୱାରା ଅସମୀୟା ଭାଷାର ଉନ୍ନତି ସାଧନ କରିଥିଲେ । ଶଙ୍କର-ଦେବଙ୍କ ପୂର୍ବବର୍ତ୍ତୀ ଲେଖକମାନଙ୍କ ରଚନାରେ ଅସମୀୟା ପ୍ରବଚନ ବ୍ୟବହୃତ ହୋଇଥିଲା । ଏହି ଭାଷାରେ

(Conjunctive Participle)

ର ଅଦ୍ଭୁତ ପ୍ରୟୋଗ ମଧ୍ୟ ଦେଖାଯାଏ ।

(Past Participle)

'ଇବ' ମଧ୍ଯ ପ୍ରାଚୀନ ଭାଷାର ଲକ୍ଷଣ । ଶଙ୍କର ଦେବ ପ୍ରଥମ ଥର ପାଇଁ ଅସମୀୟା ଭାଷାରେ ତାଙ୍କ ନାଟକ ଏବଂ ପଦ୍ୟ ମାଧ୍ୟମରେ ବ୍ରଜବୋଲ (idiom) ପ୍ରୟୋଗ କଲେ ।

ଏହି ଯୁଗରେ ଧର୍ମ ପ୍ରଚାରାର୍ଥେ ଗଦ୍ୟ ବ୍ୟବହାର ଏକ ପ୍ରଧାନ ଘଟଣା । ଷୋଡ଼ଶ ଶତାବ୍ଦୀର ଶେଷଭାଗରେ ଭଟ୍ଟଦେବ, ଭଗବଦ୍‌ଗୀତା ଏବଂ ଭାଗବତ ପୁରାଣ ଗଦ୍ୟରେ ଅନୁବାଦ କଲେ ।

(First Personnel endings)

ମି ପ୍ରଥମ ଥର ପାଇଁ ଭବିଷ୍ୟତ କାଳ ଅର୍ଥରେ ବ୍ୟବହୃତ ହେଲା ।

**ମଧ୍ୟଯୁଗୀୟ ଅସମୀୟା ଭାଷା**—ସପ୍ତଦଶ ଶତାବ୍ଦୀ ଆରମ୍ଭରୁ ଊନବିଂଶ ଶତାବ୍ଦୀରେ ଇଂରେଜମାନଙ୍କ ଆସାମ ଅଧିକାର ପର୍ଯ୍ୟନ୍ତ ଏହି ସମୟରେ ଆହମ୍ ନରପତିମାନଙ୍କ ରାଜତ୍ୱରେ ଲିଖିତ ଐତିହାସିକ ଗଦ୍ୟ ରଚନାବଳୀ "ବୁରୁଂଜି" ନାମରେ ଅଭିହିତ । ବ୍ୟାକରଣ ଏବଂ (ଅର୍ଥୋଗ୍ରାଫି) ବିଚାରରେ ଏହି ରଚନାବଳୀର ଭାଷା ଚର୍ଚ୍ଚିତ । ବିଶେଷ ପଦରେ ବହୁ ବଚନ ପ୍ରତ୍ୟୟ ଏହି ରଚନାମାନଙ୍କରେ ଆରମ୍ଭ ହେଲା । ଏହି ପ୍ରତ୍ୟୟ କ୍ରମଶଃ କ୍ରିୟାରେ ବ୍ୟବହୃତ ହେଲା ।

ଊନବିଂଶ ଶତାବ୍ଦୀର ପ୍ରଥମ ପାଦରେ ଆମେରିକା ବାପ୍ଟିଷ୍ଟ ପାଦ୍ରୀମାନଙ୍କ ଦ୍ୱାରା ଅସମୀୟା ଭାଷାରେ ବାଇବେଲ ଅନୁବାଦ ପ୍ରକାଶନ ଦ୍ୱାରାହିଁ ଆଧୁନିକ ଯୁଗର ସୂତ୍ରପାତ ହେଲା । ସେମାନଙ୍କ ପ୍ରଯତ୍ନରେ ୧୮୪୬ ମସିହାରେ ପ୍ରକାଶିତ 'ଅରୁଣୋଦୟ' ପତ୍ରିକା ହେଉଛି ଦ୍ୱିତୀୟ ପଦକ୍ଷେପ । ୧୮୪୬ ମସିହାରେ ଏନ୍ ବ୍ରାଉନଙ୍କ ଲିଖିତ ପ୍ରଥମ ଅସମୀୟା ବ୍ୟାକରଣ ପ୍ରକାଶିତ ହେଲା ଏବଂ ୧୮୬୭ ରେ ରେଭରେଣ୍ଡ ଏମ୍ ବ୍ରନସନଙ୍କ ଲିଖିତ "ଅସମୀୟା—ଇଂରେଜ ଅଭିଧାନ" ପ୍ରକାଶିତ ହେଲା । ପୂର୍ବଯୁଗର ଆହମ୍ ବଂଶୀୟ ନରପତିମାନଙ୍କ ପୃଷ୍ଠପୋଷକତା ଏବଂ ବର୍ତ୍ତମାନ ଖ୍ରୀଷ୍ଟିୟାନ ପାଦ୍ରୀମାନଙ୍କ ସହଯୋଗରେ କ୍ରମଶଃ ଅସମୀୟା ଭାଷା ପରିବର୍ତ୍ତିତ ଏବଂ ପ୍ରବର୍ତ୍ତିତ ହେଲା ।

ଅସମୀୟା ଭାଷାରେ ତଦ୍‌ଭବ ଶବ୍ଦ—ସଂସ୍କୃତ ଅର୍ଥାତ୍ ଭାରତୀୟ ଆର୍ଯ୍ୟଗୋଷ୍ଠୀର ବହୁ ଶବ୍ଦ ପ୍ରାକୃତ ଏବଂ ଅପଭ୍ରଂଶ ମାଧ୍ୟମରେ ପ୍ରବେଶ କରିଛି । ଉତ୍ତର ଭାରତୀୟ ଆର୍ଯ୍ୟଗୋଷ୍ଠୀର ଆଗତଶବ୍ଦ, ଦେଶୀୟଶବ୍ଦ ମଧ୍ୟରେ ପରିଗଣିତ । ଏହା ବ୍ୟତୀତ ଦ୍ରାବିଡ଼ ଏବଂ ଇଂରେଜ ପ୍ରଭୃତି ପାଶ୍ଚାତ୍ୟ ଭାଷାରୁ କେତେକ ଶବ୍ଦ ମଧ୍ୟ ଆସିଛି । ଅସମୀୟା ଭାଷାରେ ପ୍ରଚଳିତ ତତ୍ସମ ଅର୍ଥାତ୍ ମୂଳ ସଂସ୍କୃତ ଶବ୍ଦର ସଂଖ୍ୟା ମଧ୍ୟ କମ୍ ନୁହେଁ ।

ଅସମୀୟା ଭାଷାରେ ବହୁ ତଦ୍ଭବ ଶବ୍ଦ ଏବଂ ତତ୍ସମ ଶବ୍ଦର ପ୍ରଚଳିତ ହେଉଥିଲେ ମଧ୍ୟ ଏହି ସବୁ ଶବ୍ଦର ଉଚ୍ଚାରଣ ପୃଥକ୍ । ଏହି ଭାଷାରେ 'ଳ' ଏବଂ

'ଲ' 'ଣ' ଓ 'ନ', 'ଚ' ଓ 'ଛ', 'ଷ', 'ସ' ଏବଂ 'ହ' ମଧ୍ୟରେ ଉଚ୍ଚାରଣଗତ ପ୍ରଭେଦ ନାହିଁ । ଚ, ଛ, ସ ରୂପେ ଶ, ସ, ଷ, ହ ରୂପେ ଦେଶଜ ତଦ୍ଭବ ଏବଂ ତତ୍ସମ ଶବ୍ଦ ମଧ୍ୟରେ ଉଚ୍ଚାରିତ ହୁଏ । ଅସମୀୟା ଭାଷାଭାଷୀମାନେ ଶିବସାଗରକୁ ହିବ ସାଗର, ସକାଳକୁ ହକାଳ ଏବଂ ଚଳିଙ୍ଗକୁ ସିଲଙ୍ଗ ରୂପେ ଉଚ୍ଚାରଣ କରନ୍ତି। ସେମାନେ ଇଂରେଜ ଶବ୍ଦ ଚେୟାର (Chair) କୁ "ସେ ୟାର" ବୋଲି ଉଚ୍ଚାରଣ କରନ୍ତି । କେତେକ ସ୍ଥଳରେ ଷ, ଖ, ସ ର ଉଚ୍ଚାରଣ 'ଖ' ପରି ହୋଇଥାଏ; ଯଥା—ଉଷା, ଉଖା, ଆଶା, ଆଖା ବଂଗଳା ଏବଂ ଆସାମ ଭାଷା ମଧ୍ୟରେ କେତେକ ସ୍ଥଳରେ ଉଚ୍ଚାରଣଗତ ସାମ୍ୟ ପରିଲକ୍ଷିତ ହୋଇଥାଏ; ଯଥା—କୃଷ୍ଣଙ୍କୁ ଖ୍ରୀଷ୍ଟ, ବୃଷ୍ଟିକୁ ବ୍ରିଷ୍ଟି ରୂପେ ଉଚ୍ଚାରଣ କରିବା । ଅସମୀୟା ଶବ୍ଦ ଭଣ୍ଡାର 'ଅ' କାରାନ୍ତ । ଓଡ଼ିଆ ଓ ଆସାମୀ ଭାଷା ମଧ୍ୟରେ ବହୁ ସାମଞ୍ଜସ୍ୟ ପରିଦୃଷ୍ଟ ହୁଏ । ଉଭୟ ଭାଷା ରକ୍ଷଣଶୀଳ । ଆସାମୀ ଏବଂ ବଙ୍ଗଳା ଭାଷାର ଲିପି ସମାନ । ମାତ୍ର ବ ଓ ର ପୃଥକ୍ ଏହି ସମସ୍ତ ଲୋକସାହିତ୍ୟରେ ତଦାନୀନ୍ତନ ସମାଜର ସମ୍ୟକ୍ ପ୍ରତିଛବି ପ୍ରତିଫଳିତ ।

ଦ୍ୱାଦଶ ଶତାବ୍ଦୀରେ କାମରୂପର ହିନ୍ଦୁ ରାଜାମାନଙ୍କର ପତନ ପରେ "କାମତା" ମାନଙ୍କର ରାଜତ୍ୱ ଆରମ୍ଭ ହେଲା । କୁଚବିହାରଠାରୁ ୧୮ମାଇଲ ଦୂରରେ ଅବସ୍ଥିତ କାମତାପୁର ସେମାନଙ୍କର ରାଜଧାନୀ ଥିଲା । ତ୍ରୟୋଦଶ ଶତାବ୍ଦୀରେ ବ୍ରହ୍ମଦେଶରୁ ଅହ୍‌ମମାନେ ଆସି ଉତ୍ତର ଆସାମରେ ରାଜତ୍ୱ କରିଥିଲେ । ଶିବସାଗର ଏବଂ ତତ୍ ସନ୍ନିକଟବର୍ତ୍ତୀ ଗଡ଼ଗାଁ ଥିଲା ସେମାନଙ୍କର ରାଜଧାନୀ । ସେମାନଙ୍କ ନିର୍ଦ୍ଦେଶରେ ସମସାମୟିକ ଘଟଣାବଳୀ ଗଦ୍ୟରେ ଲିପିବଦ୍ଧ କରାଯାଇଥିଲା । ସେମାନେ ପ୍ରାୟ ଦୀର୍ଘ ଛଅଶହ ବର୍ଷ କାଳ ଆସାମରେ ରାଜତ୍ୱ କରିଥିଲେ । ଏହା ସତ୍ତ୍ୱେ 'ଅହ୍‌ମ' ଭାଷାର ଖୁବ୍ କମ୍ ପ୍ରଭାବ ଅସମୀୟା ଭାଷାରେ ପରିଲକ୍ଷିତ ହୁଏ । 'ଅହ୍‌ମ' ବଂଶୀୟ ରାଜାମାନେ ସେମାନେ ଆସାମ ଭାଷାକୁ ଗ୍ରହଣ କରି ଯାଇଥିଲେ । ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀରୁ କାମରୂପରେ ଶୈବ ଏବଂ ବୌଦ୍ଧ ଧର୍ମ ପ୍ରଚଳିତ ଥିଲା । ଏହାପରେ ଶକ୍ତିପୂଜା ଲୋକମାନଙ୍କ ମଧ୍ୟରେ ବିସ୍ତାର ଲାଭ କରିଥିଲା ।

ଅସମୀୟା ସାହିତ୍ୟକୁ ଐତିହାସିକ ଅନୁଶୀଳନ ଦୃଷ୍ଟିରେ ପ୍ରାକ୍-ବୈଷ୍ଣବଯୁଗ, ବୈଷ୍ଣବଯୁଗ, ମଧ୍ୟଯୁଗ ଏବଂ ଆଧୁନିକଯୁଗରେ ବିଭକ୍ତ କରାଯାଇଥାଏ । ପ୍ରଥମ ଦୁଇ ଯୁଗର ରଚନାବଳୀ ସଙ୍ଗୀତ ପ୍ରଧାନ ଏବଂ ଭକ୍ତିଧର୍ମୀ; ଏହି ଯୁଗର ରଚନାମାନଙ୍କରେ ପ୍ରାଚୀନ-ଛନ୍ଦ-ରାଗ-ରାଗିଣୀ ବିଶେଷ ବ୍ୟବହୃତ ହେଉଥିଲା । ଯଥା ରୁଦ୍ର, ଝୁମୁରି, ଝୁନା ଏବଂ କୁସୁମମାଳା ।

ପ୍ରାକ୍-ବୈଷ୍ଣବଯୁଗ ସାହିତ୍ୟ ହେଉଛି ଚର୍ଯ୍ୟାପଦ ଏବଂ ଚର୍ଯ୍ୟାପଦର ତ୍ରୟୋବିଂଶ କବିମାନଙ୍କ ମଧ୍ୟରୁ ସିଦ୍ଧମୀନ ନାଥ କାମରୂପର ଅଧିବାସୀ ବୋଲି ଜଣାଯାଇଥାଏ ।

**ଶଙ୍କରଦେବଙ୍କର ପୂର୍ବବର୍ତ୍ତୀ ସାହିତ୍ୟ :**—ଏହି ଯୁଗର ସାହିତ୍ୟିକ ସାଧନା ସାଧାରଣତଃ ମୂଳ ସଂସ୍କୃତ ରାମାୟଣ, ପୁରାଣ ପ୍ରଭୃତିର ଅନୁବାଦ କିମ୍ବା ଅନୁସରଣ ଦ୍ୱାରା ଚଳିତ ।

**ମାଧବ କନ୍ଦଲି :**—ମାଧବ କନ୍ଦଲି ଚତୁର୍ଦ୍ଦଶ ଶତାବ୍ଦୀର କବି ଏବଂ ଜିପୁର ରାଜାଙ୍କ ଉତ୍ସାହରେ ମୂଳ ସଂସ୍କୃତ ରାମାୟଣର ଅସମୀୟା ଅନୁବାଦ କରିଥିଲେ । ମୂଳ ସଂସ୍କୃତ ରାମାୟଣକୁ ସେ ଗ୍ରହଣ କରିଛନ୍ତି ସତ୍ୟ, କିନ୍ତୁ ତତ୍‌କାଳୀନ ସାମାଜିକ ଏବଂ ଆର୍ଥିକ ଅବସ୍ଥା ପ୍ରସଙ୍ଗକ୍ରମେ ଉଲ୍ଲେଖ କରିଥିଲେ । ସମ୍ଭବତଃ ସମସାମୟିକ ପଣ୍ଡିତମାନେ ତାଙ୍କୁ କବିରାଜ ଆଖ୍ୟା ଦେଇଥିଲେ । ପରବର୍ତ୍ତୀ ସମୟରେ ଶଙ୍କରଦେବ 'ଉତ୍ତରାକାଣ୍ଡ' ଅନୁବାଦ କରିବା ସମୟରେ ଏହି ଶ୍ରେଷ୍ଠ କବିଙ୍କ ପ୍ରତି ଭକ୍ତି ପ୍ରଦର୍ଶନ କରିଥିବା ଜଣାଯାଏ । ଶଙ୍କରଦେବଙ୍କ ଭାଷାରେ "ମାଧବ କନ୍ଦଲି ହେଉଛନ୍ତି ଏକ ପ୍ରକାର ହସ୍ତୀ ଏବଂ ସେ ନିଜେ ହେଉଛନ୍ତି କ୍ଷୁଦ୍ର ମୂଷିକ ମାତ୍ର" । ସ୍ଥାନେ ସ୍ଥାନେ ସେ ନିଜକୁ "କବିରାଜ" କନ୍ଦଲି କିମ୍ବା "ମାଧବ କନ୍ଦଲି" ଦ୍ୱିଜ ବୋଲି ପରିଚିତ କରିଛନ୍ତି । ବରାହ ରାଜା ଶ୍ରୀ ମହା ମାଣିକ୍ୟଙ୍କ ଇଙ୍ଗିତରେ ଜନସାଧାରଣଙ୍କର ପ୍ରାୟଶ୍ଚିତ୍ତ ନିମନ୍ତେ କବି ରାମାୟଣ ରଚନା କରିଥିଲେ ବୋଲି ବ୍ୟକ୍ତ କରିଛନ୍ତି । ଯଥା:—

"କବିରାଜ କନ୍ଦଲି ଏ ଆମା କେସେ ବୁଲିଓୟାୟା
କରିଲୋ ହୋ ସବଜିନ୍ ବୋଧ
ରାମାୟଣ ସୁପୟାର ଶ୍ରୀ ମହାମାଣିକ୍ୟ ଏ
ବରାହ ରାଜାର ଅନୁରୋଧେ ।"

ବରାହ ରାଜା ଶ୍ରୀ ମହାମାଣିକ୍ୟଙ୍କ ସମୟ ନିରୂପଣ ପ୍ରସଙ୍ଗରେ ଗବେଷକମାନଙ୍କର ମତଦ୍ୱୈଧ ଦେଖାଯାଏ । ତଦନୁଯାୟୀ କବି ମାଧବ କନ୍ଦଲିଙ୍କର ସମୟ ନିରୂପଣ ମଧ୍ୟ ଅମୀମାଂସିତ । ତଥାପି ମାଧବ କନ୍ଦଲି ଚତୁର୍ଦ୍ଦଶ ଶତାବ୍ଦୀର ଶେଷାର୍ଦ୍ଧର କିମ୍ବା ପଞ୍ଚଦଶ ଶତାବ୍ଦୀର ଆଦ୍ୟ ଭାଗର କବି ବୋଲି ନିଶ୍ଚିତ ଭାବରେ ଗଣନା କରାଯାଇଥାଏ । ବଂଗଳାର କୃତ୍ତିବାସ ରାମାୟଣ ଏବଂ ହିନ୍ଦିର ତୁଳସୀ ରାମାୟଣ ଷୋଡ଼ଶ ଶତାବ୍ଦୀର ରଚନା ।

ମୂଳ ବାଲ୍ମୀକି ରାମାୟଣ ପ୍ରତି କବିଙ୍କର ଅଗାଧ ଆନୁଗତ୍ୟ ଥିଲା । ସେ କେଉଁଠାରେ ହେଲେ ମୂଳ ଶ୍ଳୋକମାନଙ୍କରୁ ବିଚ୍ଛିନ୍ନ ହୋଇ ନାହାନ୍ତି । କବି ରାମାୟଣ ରଚନା କରିସାରି ତାହା ରାଜା, ରାଜାଙ୍କର ପାତ୍ର, ମନ୍ତ୍ରୀ ତଥା ଅନୁଚରମାନଙ୍କ ସମ୍ମୁଖରେ ଆବୃତ୍ତି କରୁଥିବାର ଜଣାଯାଏ । ଏହି ରାମାୟଣ ଆବୃତ୍ତି କରି ଶୁଣାଇବା ପରେ କବି ପୁଣି ଶ୍ରୋତାମାନଙ୍କ ଉଦ୍ଦେଶ୍ୟରେ କାଳେ ତାଙ୍କର କେଉଁଠି କିପରି ତ୍ରୁଟି ବିଚ୍ୟୁତି ଘଟିଥିବ, ସେଥିପାଇଁ କ୍ଷମା ଭିକ୍ଷା କରୁଥିଲେ । "ବିହଙ୍ଗମ"

ନିଜର ପକ୍ଷ ଅନୁସାରେ ଆକାଶରେ ଉଡ଼ିବୁଲନ୍ତି । କବିମାନେ ଲୋକ ରୁଚି ଅନୁଯାୟୀ କବିତା ରଚନା କରନ୍ତି । ରାମାୟଣ ରଚନା ସମୟରେ କବି ଲୌକିକ ରୀତି ପ୍ରତି ବିଶେଷ ସଜାଗ ରହିଥିଲେ । କବି 'ଭକ୍ତି' ରସ ପ୍ରତି ଗୁରୁତ୍ୱ ଦେଇଥିଲେ ବୋଲି ଜଣାଯାଏ । ମୂଳ ରଚନା ପ୍ରତି ଆନୁଗତ୍ୟ ଥିଲେ ମଧ୍ୟ ମାଧବ କନ୍ଦଲି କାବ୍ୟରସ ବିସ୍ତାରରେ କେତେକ ସ୍ଥାନରେ ବାସ୍ତବତାକୁ ଭୁଲି ନାହାନ୍ତି । ରାମଚନ୍ଦ୍ରଙ୍କ ବନବାସ ଯିବା ସମୟରେ ସୀତା ସ୍ୱାମୀଙ୍କୁ ଆବେଗପୂର୍ଣ୍ଣ ଭାଷାରେ ନିବେଦନ କରିଥିଲେ ।

"ମୋର ବର୍ତ୍ତମାନ ପୂର୍ଣ୍ଣ ଯୌବନ, ଆପଣଙ୍କ ବିରହରେ ତାହା ମଉଳି ପଡ଼ିବ" । କିଷ୍କିନ୍ଧ୍ୟା କାଣ୍ଡରେ ରାମ ସେହିପରି ବିରହ ଦଗଧ ହୋଇ ସୀତାଙ୍କୁ ଝୁରି ହୋଇଥିଲେ । ଯୁଦ୍ଧବର୍ଣ୍ଣନା ପ୍ରକୃତି ବର୍ଣ୍ଣନା ସହିତ ମାନବିକ ଆଚରଣର, ବିଶେଷତଃ କାମରୂପର ଅପୂର୍ବ ସୌନ୍ଦର୍ଯ୍ୟ ଯେପରି ବର୍ଣ୍ଣନା କରାଯାଇଛି ତାହା ତାଙ୍କ ରାମାୟଣକୁ ସୁଖପାଠ୍ୟ ଏବଂ ସର୍ବଜନବୋଧ୍ୟ କରିଅଛି । ଭାଷାର ଲାଳିତ୍ୟ ଏବଂ ରଚନାରେ ଗ୍ରାମ୍ୟ ପ୍ରବଚନମାନଙ୍କର ପ୍ରୟୋଗ ମାଧବ କନ୍ଦଲିଙ୍କର ବିଶେଷତ୍ୱ । ବର୍ଣ୍ଣିତ ରାଜାଙ୍କର ପାତ୍ରମନ୍ତ୍ରୀଙ୍କର ଘନ ଘନ ବିଚାର ଆଚାର ଯୁଦ୍ଧମନ୍ତ୍ରଣାରୁ ସମସାମୟିକ ଇତିହାସର ସୂଚନା ମିଳିଥାଏ । ସନ୍ଧି, ବିଗ୍ରହ, ସଖ୍ୟ, ସନ୍ଧିକା ପ୍ରଭୃତି ଶବ୍ଦ ପ୍ରୟୋଗ ରାଜନୈତିକ ଜୀବନର ପରିଚାୟକ । କବି ବର୍ଣ୍ଣାଶ୍ରମ ଧର୍ମ ପ୍ରତି ଗୁରୁତ୍ୱ ପ୍ରକାଶ କରିଥିଲେ । ତାଙ୍କ ରାମାୟଣରେ ବିଭିନ୍ନ ଜାତି ଏବଂ ସମ୍ପ୍ରଦାୟର, ଯଥା—ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, କାୟସ୍ଥ ତେଲି, ତନ୍ତ୍ରୀ ସୋନାରି, କାହାର ଶଙ୍ଖାରି, ଯୋଗୀ, ବଣିଆ, ଚମାର, କମାର, ହାଡ଼ି, ଚଣ୍ଡାଳମାନେ ସମାଜରେ ଅପବିତ୍ର ବୋଲି ବିବେଚିତ ହେଉଥିଲେ ।

କବି ରାମାୟଣରେ ବିଷ୍ଣୁ, ବାସୁଦେବ, ଶିବ ପାର୍ବତୀ, ଗଣେଶ ରଣଚଣ୍ଡୀ ପ୍ରଭୃତିଙ୍କ ନାମୋଲ୍ଲେଖ କରିଛନ୍ତି । ଗୋଟିଏ କୃଷ୍ଣ ଛାଗଳକୁ ବଳିଦେଇ ଅଗ୍ନି-ଦେବତାଙ୍କର ପୂଜା କରାଯାଉଥିଲା । ସେତେବେଳେ ଆମ୍ବଗଛ କାଠରେ ଶବଦାହ କରାଯାଉଥିଲା ବୋଲି କବି ବର୍ଣ୍ଣନା କରିଛନ୍ତି ଏବଂ ଦଶାହ କ୍ରିୟା ପାଳିତ ହେଉଥିବାର ଜଣାଯାଏ । ଗ୍ରାମବାସୀମାନଙ୍କ ମଧ୍ୟରେ ପ୍ରଚଳିତ ବିଭିନ୍ନ ପ୍ରଥା, ଲୋକବିଶ୍ୱାସର ସୂଚନା ତାଙ୍କର ରାମାୟଣରୁ ମିଳିଥାଏ । ଯଥା—ବିବାହ ପ୍ରଭୃତି ଉତ୍ସବରେ ସ୍ତ୍ରୀମାନଙ୍କର ଗୁରୁତ୍ୱ, କୌଣସି ବ୍ୟକ୍ତିଙ୍କୁ ପ୍ରଥମ ଦର୍ଶନରେ ତାଙ୍କର ଜାତି କୁଳ ସମ୍ପର୍କରେ ପ୍ରଶ୍ନ କରିବା, ନୀଚ ଜାତିର ଲୋକମାନେ ଯଦି ଛୁଇଁଥାନ୍ତି, ତା'ହେଲେ ସେହି ରନ୍ଧନ ପାତ୍ର ପ୍ରଭୃତି ମାଜି ପରିଷ୍କାର କରିବା । ପ୍ରାଚୀନ ସମାଜରେ ଶିଶୁମାନଙ୍କର ବିଭିନ୍ନ କ୍ରୀଡ଼ାର ନାମୋଲ୍ଲେଖ ରାମାୟଣରେ କରାଯାଇଛି । ମାଧବ କନ୍ଦଲିଙ୍କ କୃତ ରାମାୟଣରେ ଯେ ସାଧାରଣ ସମାଜର ଚିତ୍ର ପ୍ରତିଫଳିତ, ଏଥିରେ ସନ୍ଦେହ ନାହିଁ ।

ଅସମୀୟା ଭାଷାକୁ 'ମାଧବ କନ୍ଦଲି' ନିର୍ଦ୍ଦିଷ୍ଟ ଓ ବଳିଷ୍ଠ ରୂପରେଖ ଦେଇଥିଲେ । ତାଙ୍କ ଭାଷାର ବୈଶିଷ୍ଟ୍ୟ ପରବର୍ତ୍ତୀ ଲେଖକମାନେ ସ୍ୱୀକାର କରିଛନ୍ତି । 'ଦୁର୍ଗାବରଙ୍କ' "ଗୀତି ରାମାୟଣ"ଏବଂ ଅନନ୍ତ କନ୍ଦଲିଙ୍କ "ରାମାୟଣ"ଅଷ୍ଟାଦଶ ଶତାବ୍ଦୀର ରଘୁନାଥ ମହନ୍ତଙ୍କ ରାମାୟଣ ଗଦ୍ୟାନୁବାଦ ପ୍ରଭୃତି ମାଧବ କନ୍ଦଲିଙ୍କ ରାମାୟଣ ଦ୍ୱାରା ପ୍ରଭାବିତ । ଅସମୀୟା ଭାଷାରେ ଲିଖିତ ରାମାୟଣ ସାହିତ୍ୟର ଆଦ୍ୟ ପ୍ରତିଷ୍ଠାତା ହେଉଛନ୍ତି ମାଧବ କନ୍ଦଲି । 'କନ୍ଦଲି' ଶବ୍ଦର ଅର୍ଥ ବିପ୍ର, ପଣ୍ଡିତ ଏବଂ ଆସାମର ବହୁ କବି ଏହି ଉପାଧି ଧାରଣ କରିଥାନ୍ତି; ଯଥା ଅନନ୍ତ କନ୍ଦଲି, ଶ୍ରୀଧର କନ୍ଦଲି, 'ପୂର୍ବକାଳରେ ରାଜାମାନେ ବ୍ରାହ୍ମଣ ପଣ୍ଡିତମାନଙ୍କୁ ମଧ୍ୟ ଏହି ପଦରେ ସମ୍ମାନିତ କରୁଥିଲେ । 'ଦେବଜିତ'—ରଚନାରେ କବି କନ୍ଦଲି ଅର୍ଜ୍ଜୁନ ଏବଂ ଇନ୍ଦ୍ରଙ୍କର ସଂଘର୍ଷ ବର୍ଣ୍ଣନା କରିଛନ୍ତି । ଇନ୍ଦ୍ର ନିଜର ଅନୁଷ୍ଠିତ ରାଜସୂୟ ଯଜ୍ଞକୁ କୃଷ୍ଣଙ୍କୁ ନିମନ୍ତ୍ରଣ କରି ନ ଥିବାରୁ ଅର୍ଜ୍ଜୁନ କ୍ରୋଧରେ ଇନ୍ଦ୍ରଙ୍କ ସହିତ ଯୁଦ୍ଧ ଆରମ୍ଭ କରିଥିଲେ । ପୋଥିରେ ସୂଚିତ ହୋଇଥିଲି ଯେ ଗ୍ରଂଥର ବିଷୟବସ୍ତୁ ପଦ୍ମ ପୁରାଣରୁ ଗୃହୀତ; ମାତ୍ର ମୁଦ୍ରିତ ସଂଖ୍ୟାରେ ଏହାର ମୂଳ "ଅଷ୍ଟାଦଶ ପୁରାଣ" ବୋଲି ଉଲ୍ଲେଖ କରାଯାଇଛି । 'ଦେବଜିତ' ବ୍ୟତୀତ ଆଉ ଦୁଇଖଣ୍ଡି ଗ୍ରଂଥ "ତାମ୍ରଧ୍ୱଜର ଯୁଦ୍ଧ" ଏବଂ "ପାତାଳକାଣ୍ଡ" ମାଧବ କନ୍ଦଲିଙ୍କର କୃତି ବୋଲି ଜଣାଯାଇଥାଏ । ମାତ୍ର ଗବେଷକମାନେ ଏକମତ ହୋଇ ନ ଥାନ୍ତି । ଦୁଃଖର ବିଷୟ ମାଧବ କନ୍ଦଲିଙ୍କ ରାମାୟଣର ଆଦି ଏବଂ ଉତ୍ତରକାଣ୍ଡ ମିଳୁ ନାହିଁ ।

**କବି ହରିବର ବିପ୍ର**—"ବଭ୍ରୁବାହନ ଯୁଦ୍ଧ", "ଲବକୁଶ ଯୁଦ୍ଧ" ହେଉଛି ତାଙ୍କର ବୀରରସ ସମ୍ବଳିତ ଦୁଇଗୋଟି ବିଶିଷ୍ଟ କୃତି । ପ୍ରାଚୀନ ଅନୁବାଦ ଓ ଅନୁସରଣ ଯୁଗର ବିଶେଷତଃ ଭାଷା, ଅଳଙ୍କାର ଏବଂ ଗୁରୁତ୍ୱ ଦୃଷ୍ଟିରେ ମାଧବ କନ୍ଦଲିଙ୍କ ପରେ ସେ ହେଉଛନ୍ତି ଜଣେ ଶ୍ରେଷ୍ଠ କବି । କବି ବଭ୍ରୁବାହନରେ ତାଙ୍କର ପୃଷ୍ଠପୋଷକ କାମତାର ରାଜା ଦୁର୍ଲ୍ଲଭ ନାରାୟଣଙ୍କୁ ଆଶୀର୍ବାଦ କରି ଲେଖିଥିଲେ—

"ଜୟ ଜୟ ନରପତି ଦୁର୍ଲ୍ଲଭ ନାରାୟଣ ରାଜା<br>
କାମପୁରେ ଭଇଲା ବୀରବର ।<br>
ସପୁତ୍ର ବାନ୍ଧବ ଯେବେ ସୁଖେ ରାଜା କରନ୍ତୁକ<br>
ଜୀବନ୍ତୁକ ସହସ୍ର ବତ୍ସର ।"

'ବଭ୍ରୁବାହନ' ଯୁଦ୍ଧର ଗଳ୍ପାଂଶ 'ଜୈମିନୀ ଅଶ୍ୱମେଧ'ରୁ ଗୃହୀତ । ଏହି ଦୁଇଟି ଗ୍ରଂଥରେ ଶଙ୍କରଦେବଙ୍କ ପୂର୍ବ ଯୁଗ ଏବଂ କାମରୂପର ଉତ୍ତର ପୂର୍ବ ଅଞ୍ଚଳ ଲକ୍ଷ୍ମୀପୁରର ବର୍ଣ୍ଣନା ମିଳିଥାଏ । କାମରୂପର ନାରୀମାନଙ୍କ ମଧ୍ୟରେ ବିଶ୍ୱାସ ଯେ ଚନ୍ଦ୍ରାଙ୍ଗଦା ହରଗୌରୀଙ୍କୁ ପୂଜା କରି ବଭ୍ରୁବାହନ ସଦୃଶ ବୀର ପୁତ୍ର ପ୍ରାପ୍ତ

ହୋଇଥିଲେ । ଅର୍ଜୁନ ଗୋଟାଏ ସ୍ଥାନରେ ବଭ୍ରୁବାହନଙ୍କୁ ଲକ୍ଷ୍ୟ କରି କହିଥିଲେ :—

"ଆରେ ଏଣେ ମନୁଷ୍ୟ ଲଅରେ ଖରତରୀ
ଛାଗ ଭୂଲି ବାଘର ଗଳାଟା ଆରେ ଧରି
ମନୁଷ୍ୟ ଏ ଭାନ୍ତେ ଗଳାରେ ନେରେ ବାଘ ।"

ଅର୍ଥ—ଜଣେ ମଣିଷ ଯେବେ ଦ୍ରୁତ ଗତିରେ ଧାଇଁ ପ୍ରଥମେ ଛେଳି ବୋଲି ବାଘର ବେକ ଧରି ପକାଏ ଏବଂ ପରେ ଛାଡ଼ିଦେବାକୁ ଚେଷ୍ଟା କରେ, ତାହା ହେଲେ ବାଘ କ'ଣ ତାକୁ ଛାଡ଼ି ଦେବ ? ଏହାର ଉତ୍ତରରେ ବଭ୍ରୁବାହନ ସୂଚିତ କରିଥିଲେ ଯେ, 'ଭୀଷ୍ମ, କର୍ଣ୍ଣ, ଦ୍ରୋଣ ପ୍ରଭୃତିଙ୍କୁ ବଧ କରିବାରେ ଅର୍ଜୁନଙ୍କର କୌଣସି ବୀରତ୍ୱ ନଥିଲା । କାରଣ ସେମାନଙ୍କୁ ଚକ୍ରାନ୍ତ କରି ମାରି ଦିଆ ଯାଇଥିଲା ; ଗୋଟାଏ ଠେକୁଆ ଯେପରି କପାଗଛଟାଏ ଟାଣିଦେଇ ଗର୍ବ କରେ ଯେ ସେ ଗୋଟାଏ ମହାଦ୍ରୁମ ମୂଳୋତ୍ପାଟନ କରି ଦେଇଛି । ଅର୍ଜୁନଙ୍କର ଗର୍ବ ଠିକ୍ ତଦ୍ରୂପ ।' ଯୁଦ୍ଧ-କ୍ଷେତ୍ର, ପ୍ରାଚୀନ ମଣିପୁର ରାଜପ୍ରାସାଦର ବର୍ଣ୍ଣନା, ବୀର ଅର୍ଜୁନଙ୍କର ମାନସିକ ବିଶ୍ଳେଷଣ, ଯୁଦ୍ଧ ବିଜୟ ପରେ ମଣିପୁରରେ ଅନୁଷ୍ଠିତ ଉତ୍ସବ ବର୍ଣ୍ଣନା ଅତି ଚମତ୍କାର । ଅନେକ ସ୍ଥାନରେ ଜୈମିନୀଙ୍କ ଠାରୁ କବି ସ୍ୱାତନ୍ତ୍ର୍ୟ ପ୍ରଦର୍ଶନ କରିଥିଲେ । ମଣିପୁରର ପ୍ରକୃତି, ପଶୁପକ୍ଷୀ ଏବଂ ନାରୀମାନଙ୍କର ବିଶେଷ ବର୍ଣ୍ଣନା ଏହାର ନିଦର୍ଶନ । 'ଲବକୁଶ ଯୁଦ୍ଧ' ସେହି 'ଜୈମିନୀ ଅଶ୍ୱମେଧ'ର ଦ୍ୱାବିଂଶ, ଷଡ଼୍‌ବିଂଶ ସର୍ଗରୁ ଗୃହୀତ । ରଚନା ଆରମ୍ଭରେ କବି ଅର୍ଜୁନ—ବଭ୍ରୁବାହନ ଯୁଦ୍ଧ ସଙ୍ଗେ ବାଲ୍ମୀକି ଆଶ୍ରମରେ ଲବକୁଶଙ୍କ ସଙ୍ଗେ ରାମଚନ୍ଦ୍ରଙ୍କ ଯୁଦ୍ଧ ତୁଳନା କରିଛନ୍ତି । କବି ହରିବର ଅନୁବାଦ କୌଶଳ ସମ୍ପର୍କରେ ନିଜର ନୀତି ସ୍ପଷ୍ଟକରି ଦେଇଅଛନ୍ତି ଯେ, "କେତେକ ପାଠକ ଆନନ୍ଦିତ ଯେ ଗୋଟିଏ ପଦରେ ଗୋଟିଏ ଶ୍ଳୋକ ଅଭି-ବ୍ୟକ୍ତ । କେତେକ ପାଠକ ଆନନ୍ଦିତ ଯେ ଗୋଟିଏ ଶ୍ଳୋକକୁ ବିସ୍ତୃତ ଭାବରେ ପ୍ରକାଶ କରାଯାଉଛି, ବିପ୍ର ହରିବର କିନ୍ତୁ ସମଗ୍ର ବସ୍ତୁର ସାରମର୍ମ ଗ୍ରହଣ କରି ପ୍ରକାଶ କରିଥାଏ ।"

'ସୀତାରେଶ୍ୱରୀ' 'ଲଙ୍କାଦହନ' ସୀତାଙ୍କର ଅଗ୍ନି ପରୀକ୍ଷା, ଅଯୋଧ୍ୟାକୁ ପ୍ରତ୍ୟାଗମନ ସଂକ୍ଷିପ୍ତ ଭାବରେ ବର୍ଣ୍ଣନା କରା ଯାଇଛି । ଏହିପରି ରାମଚନ୍ଦ୍ର ସହସ୍ରାଧିକ ବର୍ଷ ରାଜତ୍ୱ କଲେ । ଏହା ପରେ ସୀତାଙ୍କର ଗର୍ଭୋଦୟ ହେଲା । ରାମଚନ୍ଦ୍ର ରାତିରେ ସ୍ୱପ୍ନ ଦେଖନ୍ତି ଏବଂ ବଶିଷ୍ଠଙ୍କ ସହ ପରାମର୍ଶ କରନ୍ତି । ବଶିଷ୍ଠ ଶୁଭସ୍ୱପ୍ନ ସୁସ୍ୱପ୍ନବୋଲି କହି ଯଥାବିଧି ଉତ୍ସବ ଆୟୋଜନପାଇଁ ଉପଦେଶ ଦିଅନ୍ତି । ଏହି ଉତ୍ସବରେ ରାମଚନ୍ଦ୍ର ସମାଗତ ବାନରମାନଙ୍କର ବିଶେଷ ଚର୍ଚ୍ଚା କରିଥିଲେ । ଜୈମିନୀଙ୍କର ଗ୍ରନ୍ଥରେ କେତେକ ଘଟଣା ଅଛି, ଯାହାକି ହରିବର

ଗ୍ରହଣ ନ କରି ନିଜର ମୌଳିକତା ଦେଖାଇଥିଲେ । ନାୟିର "ଦୋହଦ" ପୂରଣ ପାଇଁ କିପରି ସମସ୍ତ ସୁସ୍ୱାଦୁ ଖାଦ୍ୟ ପଦାର୍ଥ ତାକୁ ଖାଇବାକୁ ଦେବା ଉଚିତ୍, ତାହା କବି ବ୍ୟକ୍ତ କରି ଅଛନ୍ତି । ଏହି ସମୟରେ ଚରଠାରୁ ଧୋବା ଧୋବଣୀର କଥୋପକଥନ ଶୁଣି ରାମଚନ୍ଦ୍ର ଗର୍ଭବତୀ ସୀତାଙ୍କୁ ନିର୍ବାସନ କରିଥିଲେ । ଲକ୍ଷ୍ମଣ ସୀତାଙ୍କୁ ରଥରେ ନେଇଯିବା, ସେତେବେଳେ ରଥ ଅଶ୍ୱମାନଙ୍କର କୁଣ୍ଠା ପ୍ରକାଶ, ଏହି ସବୁ ବର୍ଣ୍ଣନା ପାଠକ ପ୍ରାଣରେ ଉଦ୍‌ବେଗ ସୃଷ୍ଟି କରେ । ଶେଷରେ ଶତ୍ରୁଘ୍ନଙ୍କ ଦ୍ୱାରା ଲବର ପରାଜୟ ଏବଂ ପୁତ୍ରବିରହବିଧୁରା ସୀତା ଏବଂ କୁଶଙ୍କର କଥୋପକଥନ ହରିବରଙ୍କ ଭାଷାରେ ବଡ଼ ମାର୍ମିକ ହୋଇ ପାରିଛି ।

**ହେମ ସରସ୍ୱତୀ**—ସେ ହେଉଛନ୍ତି ଚତୁର୍ଦ୍ଦଶ ଶତାବ୍ଦୀର ଶେଷଭାଗର କବି ଏବଂ ଦୁର୍ଲ୍ଲଭ ନାରାୟଣଙ୍କ ସମସାମୟିକ ବୋଲି ଗଣନା କରାଯାଇଥାଏ । କବି, ହିରଣ୍ୟକଶ୍ୟପୁ ଏବଂ ତାଙ୍କ ପୁତ୍ର ପ୍ରହଲାଦ ପ୍ରସଙ୍ଗ 'ବାମନ ପୁରାଣରୁ' ଗ୍ରହଣ କରି "ପ୍ରହଲାଦ ଚରିତ" ରଚନା କରିଥିଲେ । ସେ ବିଷ୍ଣୁ ନାରାୟଣଙ୍କର ଭକ୍ତ ଥିବାର ଜଣାଯାଏ । ଏହି ରଚନାରେ ବିଷ୍ଣୁଭକ୍ତ ପ୍ରହଲାଦଙ୍କର ପବିତ୍ର ଉକ୍ତିର ନିଦର୍ଶନ ସ୍ୱରୂପ ଦୈତ୍ୟବଳର ପରାଜୟ ବର୍ଣ୍ଣିତ । "ହରଗୌରୀ ସମ୍ବାଦ" ଏହି କବିଙ୍କର ଆଉ ଏକ କୃତି । ପ୍ରଥମ ସର୍ଗରେ ନୃସିଂହ ପୁରାଣ ଅବଲମ୍ବନରେ ବିଷ୍ଣୁଙ୍କ ଦ୍ୱାରା ହିରଣ୍ୟକଶ୍ୟପୁର ନିଧନ ଏବଂ ଅନ୍ୟାନ୍ୟ ସର୍ଗରେ ତାରକାସୁରର ଦୌରାତ୍ମ୍ୟ, ଶିବଙ୍କ ନିନେତ୍ର ଅଗ୍ନି ଦ୍ୱାରା କାମଦେବ ଦହନ, କାର୍ତ୍ତିକଙ୍କର ଜନ୍ମ ବର୍ଣ୍ଣିତ । ଷଷ୍ଠ ସର୍ଗରେ ଯୋଗସାଧନାର ପ୍ରଣାଳୀ ଏବଂ ଉଦ୍ଦେଶ୍ୟ ସୂଚିତ । ଏହି ପୁସ୍ତକରୁ ହେମ ସରସ୍ୱତୀଙ୍କର ସମ୍ୟକ୍ ପରିଚୟ ମିଳିଥାଏ । ତାଙ୍କର ପିତା ପଶୁପତି, ଦୁର୍ଲଭ ନାରାୟଣଙ୍କର ସଚିବ ଥିଲେ । ତାଙ୍କ ମାତାଙ୍କର ନାମ ରତ୍ନାବତୀ । ତାଙ୍କର ନାମ ଥିଲା ହେମନ୍ତ । ମାତ୍ର ହର ପାର୍ବତୀଙ୍କ ଆରାଧନା କରି ସେ ନିଜକୁ ହେମ ସରସ୍ୱତୀ ବୋଲି ପରିଚିତ କରିଥିଲେ ।

**କବିରତ୍ନ ସରସ୍ୱତୀ**—କବି ନିଜେ ତାଙ୍କ ବିଶିଷ୍ଟ କୃତି 'ଜୟଦ୍ରଥ ବଧ'ରେ ସ୍ୱପରିଚୟ ପ୍ରଦାନ କରିଛନ୍ତି । କାମତାର ରାଜା ଦୁର୍ଲ୍ଲଭ ନାରାୟଣ ସେତେବେଳେ ରାଜକୂଳ ଭୂଷଣ ପ୍ରଜାବତ୍ସଳ ଏବଂ ଜଣେ ବଡ଼ ଭକ୍ତ ଥିଲେ । ତାଙ୍କର ପୁତ୍ର ହେଉଛନ୍ତି ସଦାଶୀଳ ଇନ୍ଦ୍ର ନାରାୟଣ ଦେବ । ସେହି ସମୟରେ ଛୋଟଶୀଳା * ଗ୍ରାମରେ ଚକ୍ରପାଣି ସିକଦାର ନାମଧେୟ ଜଣେ ଯୋଦ୍ଧା, ପଣ୍ଡିତ, ଧର୍ମପରାୟଣ ବ୍ୟକ୍ତି ଥିଲେ । କାମତାର ରାଜା ଦୁର୍ଲ୍ଲଭ ନାରାୟଣ ତାଙ୍କୁ ଅତି ପ୍ରଶଂସା କରୁଥିଲେ । ତାଙ୍କର ମୃତ୍ୟୁରେ ମେରୁ ପର୍ବତ ଟଳି ପଡ଼ିବା ଭଳି କମ୍ପା ହାରିଖଣ୍ଡ ଜୀର୍ଣ୍ଣ ହୋଇଯିବା ଭଳି ସମସ୍ତେ ମର୍ମେ ମର୍ମେ ଅନୁଭବ କରିଥିଲେ । ତାଙ୍କର ପୁତ୍ର କବିରତ୍ନ ସରସ୍ୱତୀ

* କାମରୂପ ଜିଲ୍ଲାର ବାରପେଟ୍ ସବ୍‌ଡିଭିଜନ ଅନ୍ତର୍ଗତ ଗ୍ରାମ ।

ମହାଭାରତର ଦ୍ରୋଣପର୍ବର ଜୟଦ୍ରଥ ବଧ ପ୍ରସଙ୍ଗ ବର୍ଣ୍ଣନା କରିଛନ୍ତି । ଭାଷା ସରଳ ଏବଂ ଶୈଳୀ ଗ୍ରାମୀଣ । କବିରତ୍ନ ସରସ୍ୱତୀ ଇନ୍ଦ୍ର ନାରାୟଣ ଦେବଙ୍କ (ରାଜତ୍ୱ ସମୟ ୧୩୫୦-୬୫) ରାଜକବି ଥିଲେ ।

**ରୁଦ୍ର କନ୍ଦଲି**—ମହାଭାରତର ଦ୍ରୋଣପର୍ବ ଅବଲମ୍ବନରେ କବି "ସାତ୍ୟକୀ-ପ୍ରବେଶ" ରଚନା କରିଥିଲେ । ସେ ତାଙ୍କ ରଚନାରେ କେତେକ ଐତିହାସିକ ଟିପ୍‌ପଣୀ ଦେଇଛନ୍ତି । ସେଥିରୁ ଜଣାଯାଏ ଯେ ଦୁର୍ଲ୍ଲଭ ନାରାୟଣଙ୍କ ପରେ ତାମ୍ରଧ୍ୱଜ କାମତାର ରାଜା ହୋଇଥିଲେ । ଗଳ୍ପାଂଶ, ଯୁଦ୍ଧ ବର୍ଣ୍ଣନା ପ୍ରଭୃତି ମୂଳ ମହାଭାରତକୁ ଅନୁସରଣ କରିଛି ।

**ମିଳିତ ସଂଗୀତ—ଓଜାପାଲି**—ଅସମୀୟା ସାହିତ୍ୟରେ ବୈଷ୍ଣବଯୁଗ ପ୍ରଭାବ ପଡ଼ିବା ପୂର୍ବରୁ ଗୀତଧର୍ମୀ କାବ୍ୟ ରଚନା ବିଶେଷ ଆଦୃତ ହେଉଥିଲା । ଏହି ସବୁ ଓଜାପାଲି ରଚନାମାନଙ୍କର ସମୟ ହେଉଛି ଶଙ୍କରଦେବଙ୍କ ସମୟ, କିନ୍ତୁ ଶୈଳୀ ଏବଂ ରଚନା ଭଙ୍ଗୀ ଦୃଷ୍ଟିରେ ଏହା ପୂର୍ବଯୁଗୀୟ । ଓଜାପାଲି ନାମକ ଧାର୍ମିକ ଅନୁଷ୍ଠାନ ସହିତ ଏହି ରଚନା ଜଡ଼ିତ । ଗ୍ରାମର ଚାରି ପାଞ୍ଚଜଣ ବ୍ୟକ୍ତିଙ୍କ ଦ୍ୱାରା ଏହି ସଂଗୀତଧର୍ମୀ ରଚନା ମିଳିତ କଣ୍ଠରେ ବୋଲାଯାଏ । ସେମାନଙ୍କ ମଧ୍ୟରେ ମୁଖ୍ୟ ଗାୟକ ଓଜା (ଓଝା. ସଂ. ଉପାଧ୍ୟାୟ) କୁହାଯାଏ ଏବଂ ଅନ୍ୟ ଗାୟକ-ମାନଙ୍କୁ ପାଲିଆ କୁହାଯାଏ । ପୁନଶ୍ଚ ପାଲିଆମାନଙ୍କ ମଧ୍ୟରେ ଯେ ମୁଖ୍ୟ ସେ ଡାହାଣ ପାଲିଆ ନାମରେ ପରିଚିତ । ଓଡ଼ିଶାର ଗ୍ରାମେ ଗ୍ରାମେ ଅତୀତର ପ୍ରଚଳିତ ଏବଂ ଲୋକପ୍ରିୟ "ପାଲି" ଅନୁଷ୍ଠାନ ଏଠାରେ ସ୍ମରଣୀୟ । ଠିକ୍ ଓଡ଼ିଆ ପାଲିରେ ଯେପରି ନୃତ୍ୟ, ଗୀତ ଏବଂ ଆଳାପ କରାଯାଏ, ଓଜା ପାଲିରେ ସେହିଭଳି ଓଝା, ଡାହାଣ ପାଲିଆ ଓ ଅନ୍ୟ ଗାୟକମାନେ ଅଭିନୟ କରିଥାନ୍ତି । ଏହି ଓଜାପାଲି ବୈଷ୍ଣବ ନାଟକର ଠିକ୍ ପୂର୍ବବର୍ତ୍ତୀ ରଚନା । ଯେତେବେଳେ ନିୟମିତ ନାଟକ ରଚନା ଏବଂ ଅଭିନୟର ପ୍ରଶ୍ନ ନ ଥିଲା, ସେତେବେଳେ ଓଜାପାଲି ହିଁ ଗ୍ରାମେ ଗ୍ରାମେ ନାଟଘରେ ଅଭିନୀତ ହୋଇ ଶ୍ରୋତା ଏବଂ ଦେଖଣାହାରିମାନଙ୍କର ଆନନ୍ଦବିଧାନ କରୁଥିଲା । ଗାୟକ, ବାୟକ ସମସ୍ତେ ଯେପରି ତୁରନ୍ତ କବି । ଶ୍ରୋତାମାନଙ୍କର ପ୍ରଶ୍ନର ଉତ୍ତର ସେମାନେ ପଦ୍ୟରେ ଦେଇ ପାରନ୍ତି । ସେମାନଙ୍କ ହାତର ଚମ୍ପର ମୁଠା ଦୃଶ୍ୟ ବଡ଼ ଉପଭୋଗ୍ୟ ହୁଏ । ଶଙ୍କରଦେବଙ୍କ ପ୍ରବର୍ତ୍ତିତ "ଅଙ୍କିଆ" ନାଟକ ପରେ ମଧ୍ୟ ଓଜାପାଲିର ଲୋକପ୍ରିୟତା ହ୍ରାସ ପାଇ ନ ଥିଲା । ଶଙ୍କରଦେବଙ୍କ କୀର୍ତ୍ତନ ଘୋଷା ଗାନ କରିବାରେ ତାଙ୍କର ଭକ୍ତମାନେ ଓଜାପାଲି ରୀତି ଅବଲମ୍ବନ କରିଥିଲେ ।

"ଓଜାପାଲି" ଢଙ୍ଗରେ ମାଙ୍କରି, ଦୁର୍ଗାବର, ପୀତାମ୍ବର ପ୍ରଭୃତି କବିମାନେ ସଙ୍ଗୀତାତ୍ମକ କାବ୍ୟ ଲେଖିଥିଲେ । ଏହି କାବ୍ୟମାନଙ୍କରେ ବହୁ ସଙ୍ଗୀତ ଅନ୍ତର୍ଭୁକ୍ତ ଏବଂ ସାଧାରଣତଃ ପୁରାଣ ମହାଭାରତରୁ ଗଳ୍ପାଂଶ ଏହାର ବିଷୟବସ୍ତୁ ଏବଂ ବିଭିନ୍ନ ରାଗରାଗିଣୀ ଯୋଗୁଁ ଏହା ମୁଖ୍ୟତଃ ସୁଶ୍ରାବ୍ୟ ।

**ପୀତାମ୍ବର କବି**—କାମରୂପର କାମତା ସହରରେ ଏହି କବି ବସବାସ କରୁଥିଲେ ଏବଂ ଶଙ୍କରଦେବ ତାଙ୍କର ଆଦରସ ସମ୍ବଳିତ କବିତ୍ୱ ସମ୍ପର୍କରେ କିଛି ମନ୍ତବ୍ୟ ପ୍ରକାଶ କରିଥିବାର ଶୁଣାଯାଏ । ଭାଗବତ, ପୁରାଣ, "ଉଷା ପରିଣୟ," "ମାର୍କଣ୍ଡେୟ ପୁରାଣ" ଏହି କବିଙ୍କର ପ୍ରଧାନ କୃତି । ହରିବଂଶରେ ବର୍ଣ୍ଣିତ ବାଣକନ୍ୟା ଉଷା ଏବଂ ପ୍ରଦ୍ୟୁମ୍ନଙ୍କ ପୁତ୍ର ଅନିରୁଦ୍ଧଙ୍କର ପ୍ରଣୟ ପ୍ରସଙ୍ଗ ଉଷା ପରିଣୟ କାବ୍ୟର ମୁଖ୍ୟ କଥା, ଉଷାର ହିନ୍ଦୋଳ ଯୌବନ ବର୍ଣ୍ଣନା ପ୍ରେମ ଓ ବିବାହ ବର୍ଣ୍ଣନାରେ ଆଧିକ୍ୟ ପ୍ରଦର୍ଶନ କବିଙ୍କର ବିଶେଷତ୍ୱ । ଉଷାର ଜନ୍ମବେଳେ ଧାତ୍ରୀ କୋକିଳାର ଆଶଙ୍କା ଯେ ଉଷା ଦିନେ ବାଣଙ୍କର ଧ୍ୱଂସର କାରଣ ହେବ, ତାହା ନାଟକୀୟ ଭାଷାରେ ବର୍ଣ୍ଣିତ । ଏହା ବ୍ୟତୀତ ଶିବପୂଜା ଏବଂ ସେହି ସମୟର ବିବାହବିଧି କାବ୍ୟରେ ସୂଚିତ । ଭାଗବତ ପୁରାଣରେ କବି ନିଜର ପରିଚୟ ପ୍ରଦାନ କରିଛନ୍ତି । କୃଷ୍ଣଚନ୍ଦ୍ରଙ୍କ ପଦ୍ମପାଦ ତଳେ ସେ ଏକ ଅନୁଗତ ଭକ୍ତ । କାମତା ନଗର ଏକ ସୁନ୍ଦର ସହର । ସେଠାରେ ପରାକ୍ରମଶାଳୀ ରାଜା ହେଉଛନ୍ତି ବିଶ୍ୱ ସିଂହ ଏବଂ ତାଙ୍କର ପୁତ୍ର ସମର ସିଂହ ହେଉଛନ୍ତି ବଡ଼ କୃଷ୍ଣ ଭକ୍ତ । ଏହିସବୁ ସୂଚନାରୁ ଜଣାଯାଏ ଯେ ଭାଗବତ ପୁରାଣ ଷୋଡ଼ଶ ଶତାବ୍ଦୀର ପ୍ରଥମାର୍ଦ୍ଧର ରଚନା ।

'ମାର୍କେଣ୍ଡେୟ ପୁରାଣ' (ଚଣ୍ଡୀ ଆଖ୍ୟାନ)ରେ କବି ରାଜା ସମର ସିଂହଙ୍କୁ ଭବାନୀ ଭକ୍ତ ବୋଲି ବର୍ଣ୍ଣନା କରିଛନ୍ତି । ଚଣ୍ଡୀ ଏବଂ ଦୈତ୍ୟମାନଙ୍କ ମଧ୍ୟରେ ଯୁଦ୍ଧହିଁ ଏହାର ପ୍ରଧାନ କଥାବସ୍ତୁ । ପୋଥିରେ ପ୍ରଦତ୍ତ ସୂଚନାରୁ ଜଣାଯାଏ ଏହା ୧୬୦୨ ଖ୍ରୀଷ୍ଟାବ୍ଦର ରଚନା । ପୀତାମ୍ବର କବି ମାଧବ କନ୍ଦଳିଙ୍କ ସଦୃଶ ଜଣେ ପ୍ରଭାବଶାଳୀ ସାହିତ୍ୟିକ ଏବଂ ପଣ୍ଡିତ ଥିଲେ । "ଉଷା ପରିଣୟ" କାବ୍ୟ ୧୫୩୩ ଖ୍ରୀଷ୍ଟାବ୍ଦର ବୈଶାଖମାସର ପଞ୍ଚମ ଦିବସରେ ସଂପୂର୍ଣ୍ଣ ହୋଇଥିଲା ।

**ଦୁର୍ଗାବର କାୟସ୍ଥ**—'ଗୀତ ରାମାୟଣ' ଏବଂ 'ପଦ୍ମପୁରାଣ' କିମ୍ବା 'ମନସା ପୁରାଣ' ତାଙ୍କର ଦୁଇଗୋଟି ବିଶେଷ ଆଦୃତ ରଚନା । "ପଦ୍ମପୁରାଣ"ରେ କବି କାମତାର ନରପତି ବିଶ୍ୱସିଂହ ଏବଂ ତାଙ୍କର ଅଠର୍ଲକ୍ଷ ରାଣୀ ଏବଂ ଅଷ୍ଟାଦଶ ପୁତ୍ରଙ୍କ ପ୍ରତି ଶ୍ରଦ୍ଧା ପ୍ରଦର୍ଶନ କରିଛନ୍ତି । ବିଶ୍ୱସିଂହଙ୍କର ରାଣୀଙ୍କ ସଂଖ୍ୟା ନିର୍ଦ୍ଧାରିତ ହୋଇନାହିଁ । ମାତ୍ର ତାଙ୍କର ପୁତ୍ରମାନଙ୍କର ସଂଖ୍ୟା ଅଷ୍ଟାଦଶ ବୋଲି ଜଣାଯାଏ । ଷୋଡ଼ଶ ଶତାବ୍ଦୀର ପ୍ରଥମ ଭାଗରେ ବିଶ୍ୱସିଂହ କାମାକ୍ଷାର ଯୋନି ପୀଠ ଘନଜଙ୍ଗଲ ମଧ୍ୟରେ ଆବିଷ୍କାର କରିଥିବାର ଜଣାଯାଏ । ସେହି ପୀଠରେ ସେପର୍ଯ୍ୟନ୍ତ ଆଦିବାସୀମାନଙ୍କ ଦ୍ୱାରା ପୂଜା କାର୍ଯ୍ୟ କରା ଯାଉଥିଲା ବିଶ୍ୱସିଂହ ପୀଠର ମାହାତ୍ମ୍ୟ ଉପଲବ୍ଧି କରି ସେଠାରେ ଏକ ମନ୍ଦିର ନିର୍ମାଣ କରାଯାଉଥିଲା । ସମ୍ଭବତଃ ବିଶ୍ୱ-ସିଂହ 'ମନସା ପୂଜା' ପାଇଁ ସେଠାରେ ବିଧିବଦ୍ଧ ବ୍ୟବସ୍ଥା କରିଥିଲେ । ମନସା ପୁରାଣରେ କବି ଉଲ୍ଲେଖ କରିଥିଲେ ଯେ ସମସ୍ତ ଦେବଦେବୀଙ୍କ ଅନୁଗ୍ରହରୁ ସେ ତାଙ୍କର ପିତାମାତାଙ୍କୁ ପ୍ରାପ୍ତ ହୋଇଥିଲେ :—

"ପ୍ରତିଦେବ ବରେ ପୁତ୍ର ପାଇଲେକ ପ୍ରଧାନ
କବି ଦୁର୍ଗାବର ଗୀତ କରିଲ ବ୍ୟାଖ୍ୟାନ ।"

ଗୁରୁଣକବି, ଭାଟ ପ୍ରଭୃତିଙ୍କୁ ମଧ୍ୟ ଦୁର୍ଗାବର ନାମରେ ଅଭିହିତ କରାଯାଇଥାଏ ।

ଏହି ଜନପ୍ରିୟ କବି ସମ୍ଭବତଃ ମାଧବ କନ୍ଦଲିଙ୍କ କୃତ "ରାମାୟଣ" ପ୍ରଥମେ ଅଧ୍ୟୟନ କରିଥିଲେ ଏବଂ ପରେ ସେ ତାଙ୍କର ନିଜ ଶୈଳୀରେ ଏହି ଗୀତିକାବ୍ୟ ରଚନା କରିଥିଲେ । କବି କୌଣସି ନିର୍ଦ୍ଦିଷ୍ଟ ଦେବଦେବୀଙ୍କୁ ଗ୍ରହଣ କରିଥିବାର ଜଣାଯାଏ ନାହିଁ । କାବ୍ୟର ସାବଲୀଳ ବିକାଶ ପାଇଁ ସେ ସରସ୍ୱତୀଙ୍କୁ ପ୍ରାର୍ଥନା କରିଥିଲେ ଏବଂ ରାମଚନ୍ଦ୍ରଙ୍କ ପ୍ରତି ମଧ୍ୟ ବରାବର ଭକ୍ତି ପ୍ରକାଶ କରିଥିଲେ । ତାଙ୍କର ଗୀତିକାବ୍ୟ ରାମାୟଣ ସରଳତା, ଶବ୍ଦଲାଳିତ୍ୟ ଏବଂ ଗ୍ରାମ୍ୟ ଶୈଳୀ ଦ୍ୱାରା ଚିହ୍ନିତ ଏବଂ ଓଡ଼ିଆ ଭାଷାର "କେଶବ ରାମାୟଣ" (କେଶବ ହରିଚନ୍ଦନ ଅଷ୍ଟାଦଶ ଶତାବ୍ଦୀ)ର ଲୋକପ୍ରିୟତା ଏଠାରେ ସ୍ମରଣୀୟ । ଦୁର୍ଗାବରଙ୍କ 'ଗୀତ ରାମାୟଣ' ଓଜାପାଲିରେ ଗ୍ରାମ ଗହଳରେ ବହୁଳ ଭାବରେ ବୋଲାଯାଇଥାଏ । କବିଙ୍କର ଲିଖିତ ଆଦିକାଣ୍ଡ ଏବଂ ଅଯୋଧ୍ୟାକାଣ୍ଡ ହଜି ଯାଇଥିବାର ସନ୍ଦେହ କରା ଯାଇଥାଏ ।

'ସୀତା ହରଣ' ସୀତାଙ୍କର ଦଶରଥ ପ୍ରଭୃତି ପୂର୍ବପୁରୁଷଙ୍କ ଉଦ୍ଦେଶ୍ୟରେ ପିଣ୍ଡଅର୍ପଣ, ଅଯୋଧ୍ୟାବାସୀଙ୍କର 'ଚୈତ୍ୟ ଚତୁର୍ଦ୍ଦଶୀ'ର ପାଳନ ପ୍ରଭୃତିର ବର୍ଣ୍ଣନା ଦୁର୍ଗାବରଙ୍କର ମୌଳିକତା ପ୍ରମାଣ କରିଥାଏ । ମାଧବ କନ୍ଦଲୀଙ୍କର ରାମାୟଣରେ ସୂର୍ପଣଖା ସୀତାଙ୍କୁ ଗିଳିଦେବା ଲାଗି ଉଦ୍ୟତ ହେବା ସମୟରେ ଲକ୍ଷ୍ମଣ ତାର ନାକ କାନ ଛେଦନ କରିବା କଥା ବର୍ଣ୍ଣିତ ହୋଇଛି । କିନ୍ତୁ ଦୁର୍ଗାବରଙ୍କ ବର୍ଣ୍ଣନାରେ ସୂର୍ପଣଖା ଯେତେବେଳେ ଲକ୍ଷ୍ମଣଙ୍କ ପ୍ରେମ ପାଇଁ ଉନ୍ମତ୍ତ ହୋଇ ଉଠିଛି, ସେତେବେଳେ ତାର ନାସିକ ଏବଂ କର୍ଣ୍ଣ ଛେଦନ କରାଯାଇଛି । ଆରଣ୍ୟ କାଣ୍ଡରେ ଦୁର୍ଗାବରଙ୍କର ସ୍ୱତନ୍ତ୍ରତା ହିଁ ସ୍ପଷ୍ଟ । କିଷ୍କିନ୍ଧ୍ୟାକାଣ୍ଡ ଏବଂ ସୁନ୍ଦରା କାଣ୍ଡରେ କବି ମାଧବ କନ୍ଦଲିଙ୍କୁ ବରାବର ଅନୁକରଣ କରିଥିଲେ । କବି ଦୁର୍ଗାବରଙ୍କ ରଚନା ମୁଖ୍ୟତଃ ଆବେଗ, ଭାବପ୍ରବଣତା ଏବଂ ରସୋଚ୍ଛ୍ୱାସ ଯୋଗୁଁ ଗ୍ରାମବାସୀମାନଙ୍କର ମନଲୋଭୀ ହୋଇ ପାରିଛି । ସୀତାଙ୍କର ଅଶ୍ରୁ ତର୍ପଣ, ବିରହବ୍ୟଥା, ନିର୍ବାସନ କବିଙ୍କ ସରଳ ଭାଷାରେ ଜୀବନ୍ତ ହୋଇ ପାରିଛି । ସୀତା ଏବଂ ରାମଚନ୍ଦ୍ରଙ୍କୁ ଭାବପ୍ରବଣତାର ଇନ୍ଦ୍ରଜାଳରେ ଯେପରି ପରୀକ୍ଷା କରାଯାଇଛି, ସାଧାରଣ ପାଠକ ଯେଉଁ ଶୋକ, ଅଶ୍ରୁ ଏବଂ ବ୍ୟଥା ବେଦନା ଦ୍ୱାରା ବିଚଳିତ ହୋଇଥାଏ, କବିଙ୍କ ଗୀତମୟୀ ଭାଷାରେ ତାହାହିଁ ସ୍ପଷ୍ଟ ହୋଇପାରିଛି । ରାମ ସୀତାଙ୍କୁ ଅନ୍ୱେଷଣ କରି ବୁଲୁଥିବା ସମୟରେ ତାଙ୍କର ଯେଉଁ ଆକୁଳତା ତାହା ସରଳତାରେ ପୂର୍ଣ୍ଣ । "ଚୈତ୍ର ଚତୁର୍ଦ୍ଦଶୀ" (ମଦନ ଚତୁର୍ଦ୍ଦଶୀ) ବର୍ଣ୍ଣନାରେ ମଦନ ଅର୍ଥାତ୍ କାମଦେବଙ୍କର ମାହାତ୍ମ୍ୟ ହିଁ ପ୍ରତିଫଳିତ ।

ଦୁର୍ଗାବରଙ୍କ ସମୟରେ ପ୍ରଚଳିତ ଶିବଶକ୍ତି ଉପାସନାର ପ୍ରଭାବରେ କନ୍ଦର୍ପ-ରତିପୂଜା ମଧ୍ୟ ସମାଜରେ ଅନୁଷ୍ଠିତ ହେଉଥିଲା । ଗୀତ କବିତାର ଲେଖକ ଭାବରେ ଦୁର୍ଗାବରଙ୍କ ସ୍ୱକୀୟତା ସର୍ବସ୍ୱୀକୃତ । ବିଶେଷତଃ କାରୁଣ୍ୟରସ ପରିବେଷଣ ତାଙ୍କର କବିତ୍ୱ ଶକ୍ତିର ସ୍ପଷ୍ଟ ଲକ୍ଷଣ । ସୀତା, ରାମ ଏବଂ ତାରା ପ୍ରଭୃତିଙ୍କର ଅଶ୍ରୁ ତର୍ପଣରେ ଏହାର ପରିଚୟ ମିଳେ ।

ଏହି ଗୀତ ରାମାୟଣର କେତେକ ବର୍ଣ୍ଣନାରୁ ପ୍ରାଚୀନ କାମରୂପର ସାମାଜିକ ଆଚାର ଚଳଣିର ସମ୍ୟକ୍ ପରିଚୟ ମିଳେ । ଏହା ବ୍ୟତୀତ 'ମନସା ପୂଜା' ସଙ୍ଗୀତ ଦୁର୍ଗାବରଙ୍କ କବିତ୍ୱର ଆଉ ଏକ ନିଦର୍ଶନ । ଏହି ପ୍ରସଙ୍ଗରେ ଏଠାରେ 'ମନସା' ଗଳ୍ପ ଏବଂ ତତ୍ସହିତ ସଙ୍ଗୀତ ରଚନା ମାନଙ୍କର ସଂକ୍ଷିପ୍ତ ପରିଚୟ ଦେବା ଆବଶ୍ୟକ ।

ଦିନେ ଶିବ ଦୁଇଟି ଶ୍ରୀଫଳ ଦେଖି ଏବଂ ତାହାର ଗନ୍ଧରେ ବିହ୍ୱଳ ହୋଇ ତାହା ତାଙ୍କର ଯୁବତୀ ସ୍ତ୍ରୀ ଚଣ୍ଡୀଙ୍କର ବକ୍ଷ କୁଚ ଯୁଗଳ ବୋଲି କଳ୍ପନା କଲେ ଏବଂ ଏହା ପରେ ମନେ ମନେ ସେ ଅତ୍ୟନ୍ତ ଅଧୈର୍ଯ୍ୟ ହୋଇ ପଡିଲେ ଏବଂ ପଦ୍ମପତ୍ର ଉପରେ କେତେକ ବୀର୍ଯ୍ୟ ତ୍ୟାଗ କରିଥିଲେ । ସେହି ପଦ୍ମପତ୍ର ଉପରେ ନିକ୍ଷିପ୍ତ ବୀର୍ଯ୍ୟରୁ ଏକ ସୁନ୍ଦରୀ ଦେବୀ ଜାତ ହେଲା । ତାହାର ଚାରୋଟି ହାତ ଏବଂ ତିନୋଟି ଆଖି । ଶିବଙ୍କ ମାନସିକ ବିଚଳନ ଯୋଗୁଁ ଏବଂ ପଦ୍ମପତ୍ର ଉପରେ ଜନ୍ମ ହୋଇ-ଥିବାରୁ ତାହାର ନାମ ହେଲା ମନସା, ପଦ୍ମାବତୀ ଅର୍ଥାତ୍ ପଦ୍ମା । ସର୍ପରାଜ ବାସୁକୀ ତାଙ୍କୁ ବିଷ ଦାନ କରିଥିଲେ ଏବଂ ରକ୍ଷୀ ସ୍ୱରୂପ ନାଗମାନଙ୍କୁ ନିଯୁକ୍ତ କରିଥିଲେ । ସେଥିପାଇଁ ତାଙ୍କର ନାମ ବିଷହାରୀ । ଏହାପରେ ବାସୁକୀ ସେହି କନ୍ୟାକୁ ତାର ପିତା ଶିବଙ୍କ ନିକଟକୁ ପଠାଇଦେଲେ । ମାତ୍ର ସାବତ ମା ଚଣ୍ଡୀ ଈର୍ଷାରେ ତାଙ୍କୁ ଏକ ଧକ୍କା ଦେଲେ । ଶିବ ନିଜର ନିରାଶ୍ରିତ କନ୍ୟାପ୍ରତି ଦୟା ପ୍ରଦର୍ଶନ କରି ତାଙ୍କୁ ଋଷି ଜରତ୍କାରୁ ସହିତ ବିବାହ କରିଦେଲେ । ଋଷି ମଧ୍ୟ କ୍ରୋଧରେ ତାଙ୍କୁ ପରିତ୍ୟାଗ କଲେ ଏବଂ ପଦ୍ମାର ବକ୍ଷରେ ଆଘାତ ଦେବାରୁ ଗୋଟିଏ ଶିଶୁ ଜାତ ହେଲା । ତାହାର ନାମ ଆସ୍ତିକ ।

ଚମ୍ପକ ନଗରର ସୌଦାଗର, ରାଜା ଚନ୍ଦ୍ରଧର ଜଣେ ବଡ଼ ଶିବଭକ୍ତ ଥିଲେ । ଚନ୍ଦ୍ରଧରଙ୍କ ବିଦେଶରେ ଅବସ୍ଥାନ ସମୟରେ ତାଙ୍କ ସ୍ତ୍ରୀ ସୋନେକା ସ୍ୱାମୀ କିପରି ଶୀଘ୍ର ଫେରି ଆସିବେ ସେହି ଉଦ୍ଦେଶ୍ୟରେ ମନସାଙ୍କୁ ପୂଜା କରିଥିଲେ; ଚନ୍ଦ୍ରଧର ମାତ୍ର ଗୃହକୁ ଫେରି ମନସା ପୂଜା ଦ୍ରବ୍ୟମାନ ଫିଙ୍ଗି ଦେଇଥିଲେ । ଦେବୀ ଓ ମାନବ ମଧ୍ୟରେ ଏହିପରି ଶତ୍ରୁତା ଆରମ୍ଭ ହୋଇଥିଲା । ଚନ୍ଦ୍ରଧର ବହୁ ସଂକଟର ସମ୍ମୁଖୀନ ହେଲେ ମାତ୍ର ମନସା ଦେବୀଙ୍କର କୃପାରୁ ସେ ସମସ୍ତ ସଂକଟରୁ ରକ୍ଷା ପାଇ-ଥିଲେ । ମା'ଙ୍କର ଦୁର୍ଗାବର ସୁ କବି ନାରାୟଣ ଦେବ ପ୍ରଭୃତି ପ୍ରସିଦ୍ଧ ମନସା କବି ଥିଲେ ।

**ଶଙ୍କରଦେବ (୧୪୪୯-୧୫୬୯)**—ପଞ୍ଚଦଶ ଶତାବ୍ଦୀରେ ଅସମୀୟା ସାହିତ୍ୟରେ ଶଙ୍କରଦେବଙ୍କ ଆବିର୍ଭାବ ଏକ ଅଭୂତପୂର୍ବ ଐତିହାସିକ ଘଟଣା । ତାଙ୍କ ପ୍ରଚାରିତ ଧର୍ମତତ୍ତ୍ୱ କେବଳ ଅସମୀୟା ସମାଜକୁ ପ୍ରଭାବିତ କରି ନ ଥିଲା, ଯୁଗ ଯୁଗ

ପାଇଁ କାମରୂପର ସଂସ୍କୃତି ଓ ସାହିତ୍ୟକୁ ନିର୍ଦ୍ଦିଷ୍ଟ ରୂପରେଖ ପ୍ରଦାନ କରିଥିଲା । ସେ ବ୍ରହ୍ମପୁତ୍ର ନଦୀ ତୀର ଅବସ୍ଥିତ ନଓଗଙ୍ଗ ସହରଠାରୁ ୧୬ ମାଇଲ ଦୂରରେ ଆଲିପୁଖୁରୀ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପରିବାରର ନାମ ଥିଲା ଶିରୋମଣି ଭୂୟାଁ । ତାଙ୍କ ସ୍ତ୍ରୀ ସୂର୍ଯ୍ୟବତୀଙ୍କ ଅକାଳ ବିୟୋଗ ପରେ ଶଙ୍କରଦେବ ନିଜ କନ୍ୟାକୁ ବିବାହ କରାଇ ଦେଇ ୧୫୪୧ରେ ଦୀର୍ଘ ତୀର୍ଥାଟନରେ ବାହାରିଥିଲେ । ସେହି ପର୍ଯ୍ୟଟନରେ ତାଙ୍କର ଗୁରୁ ମହେନ୍ଦ୍ର କନ୍ଦୁଲିଙ୍କ ସମେତ ୧୬ ଜଣ ଯାତ୍ରା କରିଥିଲେ । ପୁରୀ, ଗୟା, ବୃନ୍ଦାବନ, ମଥୁରା, ଦ୍ୱାରକା, କାଶୀ, ପ୍ରୟାଗ, ଅଯୋଧ୍ୟା ସେହି ସ୍ଥାନମାନଙ୍କ ମଧ୍ୟରେ ଉଲ୍ଲେଖଯୋଗ୍ୟ । ତୀର୍ଥାଟନରୁ ଫେରି ଶଙ୍କରଦେବ ଦ୍ୱିତୀୟ ବିବାହ କଲେ ଏବଂ ବରଡ଼ୋଭା ନାମକ ଗ୍ରାମରେ ଅବସ୍ଥାନ କଲେ । ବିଭିନ୍ନ ଅଞ୍ଚଳରେ ନାମ ଘର ଏବଂ ଆଶ୍ରମ ସ୍ଥାପନ କଲେ । ଏହିପରି ଅସମୀୟା ସାହିତ୍ୟରେ ଏକ ଅଭିନବ ବୈଷ୍ଣବ ସାହିତ୍ୟର ସୂତ୍ରପାତ ହେଲା । ଅହମ୍ ରାଜାଙ୍କ ସହିତ ତାଙ୍କର ଧର୍ମ-ବିଶ୍ୱାସଗତ ମତାନ୍ତର ଘଟିଥିଲା; ମାତ୍ର ପରେ ଶଙ୍କରଦେବ ରାଜାଙ୍କୁ ଶାସ୍ତ୍ର ଓ ପାଣ୍ଡିତ୍ୟରେ ପରାଭୂତ କରିଥିଲେ, ତାଙ୍କର ଦ୍ୱିତୀୟ ତୀର୍ଥାଟନ ସମୟରେ ୧୨୦ ଜଣ ଶିଷ୍ୟ ତାଙ୍କ ସହ ଯାତ୍ରା କରିଥିଲେ ।

ତାଙ୍କ ଆବିର୍ଭାବ ସହିତ ଅସମୀୟା ସାହିତ୍ୟର ବୈଷ୍ଣବଯୁଗ ଜନ୍ମିତବୋଲି କୁହାଯାଇଥାଏ । ଜାତିରେ ସେ ଶୂଦ୍ର, ମାତ୍ର ତାଙ୍କର ଦିବ୍ୟଦୃଷ୍ଟି ଯୋଗୁଁ ସେ କାମରୂପର ଧର୍ମ, ସମାଜ, ସାହିତ୍ୟ, ସଂସ୍କୃତି କ୍ଷେତ୍ରରେ ଏକ ପ୍ରବର୍ତ୍ତକ ହୋଇ ପାରିଥିଲେ । ଶଙ୍କରଦେବଙ୍କ ଆବିର୍ଭାବ ସମଗ୍ର ଭାରତବର୍ଷରେ ସେତେବେଳେ ପ୍ରସାରିତ ଭକ୍ତି ଆନ୍ଦୋଳନର ପ୍ରତିଚ୍ଛବି ବୋଲି ଗ୍ରହଣ କରାଯାଇପାରେ । ଭାରତବର୍ଷର ବିଭିନ୍ନ ପ୍ରାନ୍ତରେ ବହୁ ସାଧୁ ସନ୍ଥମାନଙ୍କର ଧର୍ମପ୍ରଚାର ଏକ ଏକ ଐତିହାସିକ ଘଟଣା ଯଥା ଉତ୍ତର ଭାରତର ରାମାନନ୍ଦ ( ୧୪୦୦-୭୦ ) ଙ୍କ ପ୍ରବର୍ତ୍ତିତ ରାମୋପାସନା, କବୀର ( ୧୪୪୦-୧୫୧୮ ) ଦକ୍ଷିଣ ଭାରତର ବଲ୍ଲଭାଚାର୍ଯ୍ୟ ( ୧୪୭୯-୧୫୩୧ ) ଙ୍କ ପ୍ରଚାରିତ କୃଷ୍ଣଭକ୍ତି, ବଂଗଦେଶର ନଦିଆର ଚୈତନ୍ୟ-ଦେବ ( ୧୪୮୫-୧୫୩୨ ) ଏବଂ ଆସାମର ଶଙ୍କରଦେବ ( ୧୪୪୯-୧୫୬୯ )ଙ୍କ ପ୍ରବର୍ତ୍ତିତ ବୈଷ୍ଣବ ଧର୍ମ । ସେହିପରି ଉତ୍କଳଖଣ୍ଡରେ ଜଗନ୍ନାଥ ଦାସ ଏବଂ ତାଙ୍କର ସମସାମୟିକମାନଙ୍କ ସାଧନାରେ ଭାଗବତ ପୁରାଣର ମାହାତ୍ମ୍ୟ ଅଭିନବ ରୂପରେ ପ୍ରତିଫଳିତ ହୋଇଥିଲା । ସମ୍ଭବତଃ ମୂଳ ସଂସ୍କୃତ ଭାଷାରୁ ଭକ୍ତିରସାଶ୍ରିତ କୃତି ସମୂହ ପ୍ରାଦେଶିକ ଭାଷାରେ ଅନୁବାଦ କରିବା ପ୍ରଚେଷ୍ଟା ମୂଳରେ ଏହି ଭକ୍ତି ଆନ୍ଦୋଳନ ହିଁ ନିହିତ ।

ଶଙ୍କରଦେବଙ୍କ ସମୟରେ ଆସାମ ବହୁ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟରେ ବିଭକ୍ତ ଥିଲା । ଚୁଟିୟା, କଚାରି, କାଛାରି, ଅହମ ଏବଂ ଭୂୟାଁମାନେ ଯଥାକ୍ରମେ ବିଭିନ୍ନ ପ୍ରାନ୍ତରେ ଶାସନ କରୁଥିଲେ । ତେଣୁ ଏହି ରାଜନୈତିକ ବିଭିନ୍ନତା ଦୂରକରି

ଆସାମର ପୁନର୍ଗଠନ ଦିଗରେ ଶଙ୍କରଙ୍କର ସାଂସ୍କୃତିକ ଏବଂ ଧର୍ମୀୟ ବିଶ୍ୱାସ ହିଁ ସହାୟତା କଲା । ତାଙ୍କର ପ୍ରଚାର, ସାହିତ୍ୟିକ କୃତି, ଭାଗବତ ପୁରାଣ ଓ ବିଷ୍ଣୁଙ୍କ ପ୍ରଶସ୍ତିମୂଳକ ବ୍ୟାଖ୍ୟାନ ଉପରେ ନିର୍ଭର କରିଥିଲା । ସେଥିପାଇଁ ତାର ନାମ ଥିଲା ଭାଗବତୀ ଧର୍ମ । କାମରୂପର ପୁରପଲ୍ଲୀରେ ତାଙ୍କର ବୈଷ୍ଣବ ଗୀତ ସମୂହ ନାମକୀର୍ତ୍ତନ ସାହାଯ୍ୟରେ ଏବଂ ସରଳ ଭାଷାରେ ପ୍ରତିଧ୍ୱନିତ ହୋଇଥିଲା । ଯେଉଁ ଭୂମିରେ ବ୍ରାହ୍ମଣ ଏବଂ ବୈଷ୍ଣବ ସାଧୁ ସୁଖ ଶାନ୍ତିରେ ବାସ କରୁଥିଲେ ସେହି ଆସାମ ଭୂମି ଉପରେ ଆକ୍ରମଣ ନ କରିବାପାଇଁ ଅମ୍ବରର ରାଜା ରାମ ସିଂହଙ୍କୁ ତାଙ୍କର ସ୍ତ୍ରୀ ଏବଂ ମାତା ସତର୍କ କରି ଦେଇଥିଲେ । ଶଙ୍କର ଦେବ ଯେ ଅଖଣ୍ଡ ଏକତାର ଶକ୍ତି ଥିଲେ ଏହା ନିଃସନ୍ଦେହ । ସଂସ୍କୃତରେ ତାଙ୍କର ଅସାମାନ୍ୟ ପାଣ୍ଡିତ୍ୟ ଥିଲା । ଶଙ୍କରଦେବଙ୍କ ରଚନା ସମୂହକୁ 'କାବ୍ୟ', 'କୀର୍ତ୍ତନ' ଏବଂ 'ଅଙ୍କିୟା' ନାଟକ ଏପରି ତିନି ଶ୍ରେଣୀରେ ବିଭକ୍ତ କରାଯାଏ । ଭାଗବତ ପୁରାଣ ସମୂହ ଶଙ୍କରଦେବଙ୍କ ରଚନାକୁ ବହୁ ଭାବରେ ପ୍ରଭାବିତ କରିଥିଲା । ପଲ୍ଲୀର ଜନସାଧାରଣଙ୍କ ଉଦ୍ଦେଶ୍ୟରେ ସେ ଭାଗବତକୁ ସରଳ, ପ୍ରାଞ୍ଜଳ ଗ୍ରାମ୍ୟ ଭାଷାରେ ଶିଷ୍ୟମାନଙ୍କ ସହାୟତାରେ ଅନୁବାଦ କରିଥିଲେ । ସେଥିପାଇଁ କଚ ରାଜା ନରନାରାୟଣଙ୍କ ଦରବାରରେ ସଂସ୍କୃତାଭିମାନୀ ପଣ୍ଡିତଙ୍କଦ୍ୱାରା ସମାଲୋଚିତ ହୋଇଥିଲେ ।

ତାଙ୍କର 'ଭାଗବତ' ଅନୁବାଦ ଅତ୍ୟନ୍ତ ଲୋକପ୍ରିୟ । ଭାଗବତ ଏକାଦଶ ସ୍କନ୍ଧ ଉପରେ ଲିଖିତ "ନିମିନବ ସମ୍ବାଦ" ଏକ ଦାର୍ଶନିକ ଅନୁଶୀଳନ । ରାଜା ନିମିଙ୍କ ସମ୍ମୁଖରେ ନବଋଷି ଦାର୍ଶନିକ ତତ୍ତ୍ୱ ପ୍ରଖ୍ୟାପନ କରିଥିଲେ । ଭକ୍ତି, ମାୟା, କର୍ମଯୋଗ ପ୍ରଭୃତି ଏଥିରେ ବର୍ଣ୍ଣିତ । ଓଡ଼ିଆ ସାହିତ୍ୟରେ ଜଗନ୍ନାଥ ଦାସଙ୍କ ଭାଗବତ ଅନୁବାଦ, ତାର ଲୋକପ୍ରିୟତା ଓ ତାତ୍ତ୍ୱିକ ଉପଯୋଗିତା ଏଠାରେ ସ୍ମରଣୀୟ । 'କୀର୍ତ୍ତନ' ରଚନା ଶଙ୍କରଦେବଙ୍କର ଆଉ ଏକ କାବ୍ୟ-କୀର୍ତ୍ତି ଏବଂ କବି ତୁଳସୀ ଦାସଙ୍କର 'ରାମ ଚରିତ ମାନସ'ର ଖ୍ୟାତି ସହିତ ଏହାର ସିଦ୍ଧି ତୁଳନୀୟ । ଏହି କୀର୍ତ୍ତନ ଛବିଶ ଗୋଟି ପଦ୍ୟର ସମାହାର ଏବଂ ପ୍ରତ୍ୟେକ ପଦ୍ୟ ଘୋଷା ସମନ୍ୱିତ । ଆସାମର ଘରେ ଘରେ ବିଭିନ୍ନ ଅନୁଷ୍ଠାନ ସମୟରେ ଏହି 'କୀର୍ତ୍ତନ' ବୋଲାଯାଏ । ଏହାର ପ୍ରଥମ ପଦ୍ୟ ଚତୁର୍ବିଂଶତି ଅବତାର, ଦ୍ୱିତୀୟ ପଦ୍ୟ "ନାମ ପ୍ରଧାନ" । ପଦ୍ମ ପୁରାଣରୁ ଗୃହୀତ ଭାଗବତରୁ ଅଧିକାଂଶ ଗଳ୍ପାଂଶ ଏଥିରେ ବ୍ୟବହୃତ । ଭକ୍ତି ଏବଂ ଭକ୍ତର ଗୁରୁତ୍ୱ ଏହି କୀର୍ତ୍ତନ ରଚନାର ଅନ୍ତର୍ନିହିତ ବାଣୀ ।

"ମନୁଷ୍ୟର ଯତ ଆୟୁବରଷ ସଂଖ୍ୟାତ
ଅର୍ଦ୍ଧେକ ନିଷ୍ଫଳ ଯାୟ ଜାଣିବ ନିଦ୍ରାତ
ବିଂଶତି ବରଷ ଆର ଯାୟ ଅମଳନ୍ତେ
ନେୟା ଦଶ ବରଷ ଆନଙ୍କ ଉପାର୍ଜନ୍ତେ

ବୃଦ୍ଧକାଳେ ଯାଏ ଶେଷ ବରଷ ବିଂଶତି
ଏକୋ କାର୍ଯ୍ୟ ସାଧିବାକ ନାହିକେ ଶକତି
ଶରୀରକୋ ପାଦେ ବ୍ୟାଧି ଚକ୍ଷୁ ଶୁଏ ନା କାଳେ
ଆଶା ପାଶେ ବାନ୍ଧିଯା ଗୃହତ୍ ଆଙ୍କି ଗଲେ"
( ପ୍ରହ୍ଲାଦ ଚରିତ )

"ବ୍ୟକ୍ତିର ସମଗ୍ର ଆୟୁଷର ଏକ ଅର୍ଦ୍ଧ ନିଦ୍ରାରେ, କୋଡ଼ିଏ ବର୍ଷ କ୍ରୀଡ଼ାରେ, ଦଶବର୍ଷ ଧନ ସଂଗ୍ରହରେ ଓ ଶେଷ କୋଡିଏ ବର୍ଷ ବାର୍ଦ୍ଧକ୍ୟରେ ଅତିବାହିତ । ତାପରେ ତା'ର ଶରୀର ରୋଗଗ୍ରାସ କରେ । ଚକ୍ଷୁ ନିଷ୍ପଳ, ଆଶା ଭ୍ରାନ୍ତ ଏବଂ ଶେଷରେ ଗୃହ ମଧ୍ୟରେ ଜଞ୍ଜାଳ ଗ୍ରସ୍ତ ହୋଇଯାଏ ।" ଏଠାରେ ସାର୍ବଜନୀନ ଆବେଦନ ସ୍ପଷ୍ଟ । ସେହିପରି ଆଉ ଏକ କ୍ଷୁଦ୍ର ଉଦାହରଣ ହେଉଛି :—

"କୁକୁର ଚଣ୍ଡାଳ ଗର୍ଦ୍ଦଭର ଆତ୍ମାରାମ
ଜାନିଯା ସବାକୋ ପଡ଼ି କରିବା ପ୍ରଣାମ"

"ଭଗବାନ ଶ୍ୱାନ, ଗର୍ଦ୍ଦଭ, ଅସ୍ପୃଶ୍ୟ ସମସ୍ତଙ୍କର ଆତ୍ମା । ଏହା ଜାଣି ସମସ୍ତ ଜୀବିତ ପ୍ରାଣୀଙ୍କ ପ୍ରତି ଭକ୍ତି ପ୍ରଦର୍ଶନ କର ।"

"ମହେନ୍ଦ୍ର କନ୍ଦଳୀ" ବିଦ୍ୟାଳୟର ଶିକ୍ଷା ଲାଭ କରିବା ସମୟରେ ମାର୍କଣ୍ଡେୟ ପୁରାଣର ଉପାଦାନରେ 'ହରିଶ୍ଚନ୍ଦ୍ର ଉପାଖ୍ୟାନ' କ୍ଷୁଦ୍ର କାବ୍ୟ ରଚନା କଲେ । ଏହା ମୁଖ୍ୟତଃ ଭକ୍ତିମୂଳକ । ଭାଗବତ ଏବଂ ହରିବଂଶ ଅବଲମ୍ବନରେ ତାଙ୍କର "ରୁକ୍ମିଣୀହରଣ" ଆଉ ଏକ କାବ୍ୟ । ବିଦର୍ଭ ରାଜକନ୍ୟା ରୁକ୍ମିଣୀଙ୍କର ଶ୍ରୀକୃଷ୍ଣଙ୍କ ସହିତ ବିବାହ ଏବଂ ଶିଶୁପାଳର ପରାଜୟ ପୃଷ୍ଠଭୂମିରେ କବି ତତ୍କାଳୀନ ସମାଜଚିତ୍ର ପରିବେଷଣ କରିଛନ୍ତି । ପ୍ରାଚୀନ ଆସାମର ନାରୀ ସମାଜରେ ବ୍ୟବହୃତ ଅଳଂକାର, ପୋଷାକପତ୍ର, କୃଷ୍ଣ ଏବଂ ତାଙ୍କର ପ୍ରତିଦ୍ୱନ୍ଦୀ ମାନଙ୍କର ଯୁଦ୍ଧ ବର୍ଣ୍ଣନା କାବ୍ୟର ବିଶେଷତ୍ୱ । କୁଣ୍ଡିନ ନଗର ବର୍ଣ୍ଣନା କିପରି ବାସ୍ତବ ହୋଇ ପାରିଛି ତାହା ଉଲ୍ଲେଖଯୋଗ୍ୟ ।

"କୁଣ୍ଡିନ ନଗର ଅତି ମନୋହର ଦେଖିଲା ଶ୍ରୀ ଗୋପାଲ
ନାନାବିଧ ଘର ଅତି ଉଚ୍ଚତର ପରମ ସୁରୁ କୌଶଲ"

ଅସମୀୟା ଭାଷାରେ ରାମାୟଣର ଆଦ୍ୟ ଅନୁବାଦକ ମାଧବ କନ୍ଦଲି (ପଞ୍ଚଦଶ ଶତାବ୍ଦୀ) ରାମାୟଣର ମାତ୍ର ପାଞ୍ଚଗୋଟି କାଣ୍ଡ ଅନୁବାଦ କରିଥିଲେ । 'ଉତ୍ତରାକାଣ୍ଡ' ଶଙ୍କର ଦେବଙ୍କର ଲେଖନୀରେ ଏକ ମୌଳିକ ସୃଷ୍ଟି ରୂପେ ପ୍ରକାଶିତ ହେଲା । 'ଭକ୍ତିରସ' ପ୍ରାଧାନ୍ୟ ତାଙ୍କ ରଚନାର ଲକ୍ଷଣ ହେଲେ ହେଁ ପ୍ରତ୍ୟେକ ପୌରାଣିକ କାହାଣୀକୁ ସେ ସମାଜ ଅଭିମୁଖୀ କରାଇ ପାରିଥିଲେ ।

"ଶୁଣ ସଭାସଦ ସଭେ ରାମାୟଣ କଥା
ରାମ ଲକ୍ଷ୍ମଣର ହେନ ମିଲଲ ଅବସ୍ଥା
ଇଟୋ ଗୃହବାସ ସାମାନ୍ୟର କୋନ ଲେଖା
ସ୍ୱପନର ସମ ନାହିଁ ଧନ ଜନ ଦେଖା"

ପ୍ରାଚୀନ ଅସମୀୟା ସାହିତ୍ୟର ଆଉ ଦୁଇଗୋଟି ବିଭାଗ, ଯଥା :— ଭକ୍ତିରସାଶ୍ରିତ ବର୍‌ଗୀତ ଓ ଅଙ୍କିୟା-ନାଟକରେ ତାଙ୍କର କୃତିତ୍ୱ ମଧ୍ୟ ସ୍ପଷ୍ଟ । ଏହି ଜାତୀୟ ରଚନାର ଭାଷା କୀର୍ତ୍ତନ ଏବଂ କାବ୍ୟର ଭାଷାଠାରୁ ସ୍ୱତନ୍ତ୍ର । କାରଣ ଏହା ବ୍ରଜବୋଲି ଭାଷାରେ ଲିଖିତ । ପୂର୍ବ ଭାରତରେ ପ୍ରାଦେଶିକ ଭାଷା-ମାନଙ୍କରେ ଏହି ସମୟରେ "ଭକ୍ତିରସାତ୍ମକ" ଗୀତ ପ୍ରାଚୁର୍ଯ୍ୟ ଦେଖାଯାଏ । ଅସମୀୟା ବୈଷ୍ଣବ ସାହିତ୍ୟରେ ଏହାର ସ୍ୱାତନ୍ତ୍ର୍ୟ ସ୍ୱୀକୃତ । ଶଙ୍କରଦେବଙ୍କର କାବ୍ୟ ଏବଂ ଅଙ୍କିୟା-ନାଟକ ଅପେକ୍ଷା "ବରଗୀତ"ଗୁଡ଼ିକ ଅଧିକ ଭାବେ ଭାବୋଦ୍ରେକକାରୀ ଏବଂ ମାଧୁର୍ଯ୍ୟ ପୂର୍ଣ୍ଣ । ଧର୍ମ, ମୁକ୍ତି, ଜୀବନଦର୍ଶନ, ନୀତିବାଦ ଏହି ରଚନା ସମୂହର ସୌନ୍ଦର୍ଯ୍ୟ । ଗୋବିନ୍ଦଙ୍କ ପଦାରବିନ୍ଦରେ ଆଶ୍ରୟ ଏବଂ ମୁକ୍ତି ପ୍ରାର୍ଥନା କରି ପ୍ରତ୍ୟେକ ଗୀତଟି ସମ୍ପୂର୍ଣ୍ଣ ଏବଂ ଅଧିକାଂଶ ରଚନାରେ ବ୍ୟଞ୍ଜନା ଧ୍ୱନି ପରିସ୍ଫୁଟ । ଗୋଟିଏ 'ବରଗୀତ'ର ଉଦାହରଣ .—

"ଏ ଭବ ଗହନ ବନ ଅତି ମୋହ ପାଶେ ଛନ୍ନ
ତାତେ ହାମୁ ହରିଣ ବେରାଇ
ପଦଲେ ମାୟାର ପାଶେ କାଲବ୍ୟାଧ ଧାୟା ଆସେ
କାମ, କ୍ରୋଧ କୁକ୍କୁରୀ ଖେଦି ଯାୟ ।"

ଏହାର ଅର୍ଥ ହେଲା, "ଏହି ସଂସାର ନାନା ପ୍ରବୃତ୍ତି ପୂର୍ଣ୍ଣ ଏକ ନିବିଡ଼ ଅରଣ୍ୟ, ମୁଁ ତହିଁ ମଧ୍ୟରେ ଏକ ଦୁର୍ବଳ ହରିଣ, ମହାକାଳ ବ୍ୟାଧ ମୋ ପଛରେ ଶୀଘ୍ର ଅନୁଧାବନ କରୁଅଛି ।"

ସାଧାରଣ ପଲ୍ଲୀବାସୀଙ୍କ ଉଦ୍ଦେଶ୍ୟରେ ତାଙ୍କର ଅଙ୍କିୟା-ନାଟକ ସମୂହ ରଚିତ । ଆସାମର ସାମାଜିକ ତଥା ସାଂସ୍କୃତିକ ଜୀବନ ଉପରେ ଏହି ରଚନାର ପ୍ରଭାବ ଅଧିକ ଏବଂ ପରବର୍ତ୍ତୀ କାଳରେ ଅଭିନୟ ଏବଂ ରଙ୍ଗମଞ୍ଚ ନିମନ୍ତେ ପ୍ରେରଣା ଦେଇଥିଲା । ଅଙ୍କିୟା-ନାଟକର ପ୍ରଭାବବଶତଃ ଭାଓନା ନାମକ ଏକ ଗୀତ-ସାହିତ୍ୟର ମଧ୍ୟ ସୃଷ୍ଟି ହୋଇଥିଲା । ଛନ୍ଦୋବଦ୍ଧ ଉଭୟ ପଦ୍ୟ ଓ ଗଦ୍ୟର ନିଦର୍ଶନ ଏଥିରେ ପରିଲକ୍ଷିତ । କାଳିଦଳନ (୧୫୬୮, ବରଡୋଭା), ପତ୍ନୀ ପ୍ରସାଦ (୧୫୬୧ ଧୁବାହାଟ), ରସକେଳି କିମ୍ବା କେଳିଗୋପାଳ (୧୫୪୦), ପାରିଜାତ ହରଣ, ରାମବିଜୟ (୧୫୬୮) ପ୍ରଭୃତି ନାଟ୍ୟରଚନା ପୌରାଣିକ ଉପାଦାନ ଏବଂ ସାମାଜିକ ଅନୁଶୀଳନ ଉପରେ

ଆଧାରିତ । ଶଙ୍କରଦେବଙ୍କ ନାଟ୍ୟ ରଚନାର ଗଠନନୈପୁଣ୍ୟ ବହୁଭାବରେ ସଂସ୍କୃତ କାବ୍ୟଶୈଳୀ ଦ୍ୱାରା ପ୍ରଭାବିତ । ଅଙ୍କିୟା-ନାଟକରେ ସୂତ୍ରଧରର ଭୂମିକା ବେଶ୍ ଚିତ୍ତାକର୍ଷକ ।

ବୈଷ୍ଣବ ଭକ୍ତି ଆନ୍ଦୋଳନ ଏବଂ ଶଙ୍କରଦେବଙ୍କ ନେତୃତ୍ୱ ଅସମୀୟା ସାହିତ୍ୟରେ ଗୁରୁ ପରିବର୍ତ୍ତନ ଆଣିଥିଲା । ସମସାମୟିକ ଲେଖକଗଣ ଶଙ୍କରଦେବଙ୍କ ନିକଟରେ କମ୍ ଋଣୀ ନ ଥିଲେ । ଶିଷ୍ୟ ମାଧବ ଦେବ ବହୁ ଗୀତ ଏବଂ ନାଟକ ରଚନା କରିଥିଲେ । ନାମ ଘୋଷା, ଭକ୍ତି ରତ୍ନାବଳୀ, ରାଜସୂୟ ପ୍ରଭୃତି ତାଙ୍କର କୃତି । ରାମସରସ୍ୱତୀ ଏବଂ ଭାଗବତ ଦ୍ୱିଜ ପ୍ରଭୃତି ଲେଖକମାନେ ଶଙ୍କରଦେବଙ୍କ ପରାମର୍ଶ ଅନୁସାରେ ଯଥାକ୍ରମେ ମହାଭାରତ ଏବଂ ଭାଗବତ ଅନୁବାଦ କାର୍ଯ୍ୟ ଗ୍ରହଣ କରିଥିଲେ । ପ୍ରାଗ୍-ଜ୍ୟୋତିଷ ପୁରନିବାସୀ ପଣ୍ଡିତ ସାର୍ବଭୌମ ଭଟ୍ଟାଚାର୍ଯ୍ୟ ପ୍ରଥମେ ଶାକ୍ତ ଥିଲେ ଏବଂ ଶଙ୍କରଦେବଙ୍କ ସହିତ ଶାକ୍ତ ଏବଂ ବୈଷ୍ଣବଧର୍ମ ସମ୍ପର୍କେ ତର୍କ କରିଥିଲେ । ପରେ ସେ ଶଙ୍କରଦେବଙ୍କୁ ଗୁରୁରୂପେ ସ୍ୱୀକାର କରିଥିଲେ ଏବଂ ତାଙ୍କର ଇଙ୍ଗିତରେ 'ପଦ୍ମପୁରାଣ' ଅନୁବାଦ କରିଥିଲେ ।

**ଶଙ୍କରଦେବଙ୍କ ସମୟରେ ଅସମୀୟା ଭାଷା ଓ ସାହିତ୍ୟିକ ଧାରା :**—ଶଙ୍କରଦେବଙ୍କ ସାହିତ୍ୟର କେନ୍ଦ୍ରିକ ବସ୍ତୁ ହେଲା ଜୀବନ ଦର୍ଶନ, ନୀତିବାଦ, ଧର୍ମ, ଭକ୍ତି ତଥା ମାନବାତ୍ମାର ଆହ୍ୱାନ । ଶୈଳୀ, ରୂପ, ଗୁଣରେ ତାହା ମୁଖ୍ୟତଃ ଆଧାତ୍ମିକ । ପ୍ରକୃତିର ମନୋଜ୍ଞ ବର୍ଣ୍ଣନା ମଧ୍ୟ ତାଙ୍କ ରଚନାରେ ପରିଦୃଷ୍ଟ । ତାହା ନଦୀ, ସମୁଦ୍ର, ବନ ପର୍ବତ ସମୂହର ନିଖୁଣ ବର୍ଣ୍ଣନା । ସଂସ୍କୃତ ସାହିତ୍ୟରେ ତାଙ୍କର ଅଗାଧ ପ୍ରବେଶ ଥିଲା । ଶୈଳୀ, ଅଲଙ୍କରଣ ବିଷୟରେ କବି ସଂସ୍କୃତ ସାହିତ୍ୟର ପଦାଙ୍କ ଅନୁସରଣ କରିଥିଲେ । ଉକ୍ତ କବିଙ୍କ ଦୃଷ୍ଟିରେ ସଂସାର ଅସାରତା ପୂର୍ଣ୍ଣ । ତାହାର ଏକ ଉଦାହରଣ:—

"ବିଷୟର ଦୁଖ ଜାଣି ତଥାପି ତୋ ଏକୋପ୍ରାଣୀ
ନେଦେ କୁନାଇ ତାକେ ଭୁଂଜ ମରେ
ଗଲତ ବାଂଧିୟା ପାଦେ କାଟିବାଲ ନେନ୍ତା ଛାଗେ
ଯେହ୍ନା ନିର୍ଲଜତା ଅଛାକରେ ।"

ଏହାର ଅର୍ଥ ହେଉଛି :—"ବିଷୟ ବାସନା ଅଶାନ୍ତିକର, ସମସ୍ତେ ଏହା ଜାଣନ୍ତି । କିନ୍ତୁ କେହି ତ ହେଲେ ଏହାକୁ ତ୍ୟାଗ କରି ନ ଥାନ୍ତି । ବରଂ ଏହା ପଛରେ ଧାବିତ; ଠିକ୍ ଯୂପକାଷ୍ଠ ନିକଟକୁ ବଳି ଉଦ୍ଦେଶ୍ୟରେ ଟଣା ହୋଇଯିବା ଛାଗ ଯେପରି ଆଚରଣ ଦର୍ଶାଏ ।"

**ଶଙ୍କରଦେବଙ୍କ ପରବର୍ତ୍ତୀ ସମୟ :**—ଶଙ୍କରଦେବଙ୍କ ପ୍ରଧାନ ଶିଷ୍ୟ ରୂପେ ଅସମୀୟା ସାହିତ୍ୟ ଏବଂ ସାମାଜିକ ଜୀବନରେ ମାଧବ ଦେବ ହିଁ ଶ୍ରେଷ୍ଠ

ଆସନର ଅଧିକାଂଶ ହୋଇପାର ନ ଥିଲେ । ନବଗାଁ ଜଲ୍ଲାରେ ୧୪୮୯ରେ ତାଙ୍କର ଜନ୍ମ ଏବଂ କୁଚ୍‌ବିହାରରେ ମୃତ୍ୟୁ ହୋଇଥିଲା । "ଅମୂଲ୍ୟରତ୍ନ ଗୁପ୍ତମଣି", "ଜନ୍ମ ରହସ୍ୟ", "ଭକ୍ତିରତ୍ନାବଳୀ", ଆଦିକାଣ୍ଡ, ରାଜସୂୟ ଯଜ୍ଞ ପ୍ରଭୃତି ଧର୍ମମୂଳକ କାବ୍ୟରେ ମାଧବଦେବ, ଭକ୍ତିର ପ୍ରାଧାନ୍ୟକୁ ସ୍ୱୀକାର କରିଛନ୍ତି । ତାଙ୍କ ରଚିତ "ବଡ଼ଗୀତ" ମଧ୍ୟ ଉଚ୍ଚକୋଟୀର ଜୀବନଦର୍ଶନ ଏବଂ ଏକଶରଣବାଦର ପ୍ରଖ୍ୟାପକ, ଯଥା :—

"ତୁମି ଚିତ୍ତବୃତ୍ତି ମୋର ପ୍ରବର୍ତ୍ତିକ ନାରାୟଣ
ତୁମି ନାଥ ମଇ ନାଥବନ୍ତ"

ଅନନ୍ତ କନ୍ଦଲୀ, ରାମ ସରସ୍ୱତୀ ପ୍ରଭୃତି କବି ଶଙ୍କରଦେବ ଏବଂ ମାଧବଦେବଙ୍କର ସମସାମୟିକ । "କୁମାର ହରଣ", "କାଖୋଆ," "ମହାଭାରତ" ଯଥାକ୍ରମେ ସେମାନଙ୍କର କୃତି । ଭଟ୍ଟଦେବ (୧୫୫୯-୧୬୩୮) ପ୍ରାଚୀନ ଅସମୀୟା ଗଦ୍ୟସାହିତ୍ୟର ପ୍ରଥମ ଲେଖକ । ତାଙ୍କର "କଥାଭାଗବତ" ଏବଂ 'କଥାଗୀତା' ଅସମୀୟା ଗଦ୍ୟସାହିତ୍ୟର ଅମୂଲ୍ୟ ସମ୍ପଦ । ଏଥିରୁ ଷୋଡ଼ଶ ଶତାବ୍ଦୀର ଉନ୍ନତ ଗଦ୍ୟଶୈଳୀର ପରିଚୟ ମିଳେ । ଶଙ୍କରଦେବ, ମାଧବଦେବ କାବ୍ୟ କବିତା ମାଧ୍ୟମରେ ଭକ୍ତିତତ୍ତ୍ୱ ପ୍ରଚାର କରୁଥିଲେ । ଭଟ୍ଟଦେବ ମାତ୍ର ସରଳ ଗଦ୍ୟରେ ଜନ-ସାଧାରଣଙ୍କ ପାଇଁ ଗଭୀର ଧର୍ମତତ୍ତ୍ୱ ରଚନା କରୁଥିଲେ । ଭଟ୍ଟଦେବଙ୍କ ପ୍ରକୃତ ନାମ ବୈକୁଣ୍ଠନାଥ କବିରତ୍ନ । ତାଙ୍କର ଗଦ୍ୟଶୈଳୀ ପ୍ରାଚୀନତାରୁ ସମ୍ପୂର୍ଣ୍ଣ ମୁକ୍ତ ନୁହେଁ ଏବଂ ତତ୍ସମ ବହୁଳ ଶବ୍ଦ ପ୍ରୟୋଗ । ଅସମୀୟା ସାହିତ୍ୟରେ ଉତ୍କଳର ଗଜପତି ମହାରାଜ ପୁରୁଷୋତ୍ତମଦେବଙ୍କର ନାମ ମଧ୍ୟ ଶୁଣାଯାଏ । ତାଙ୍କ ରାଜତ୍ୱ କାଳରେ ଶଙ୍କରଦେବ ଦୁଇଥର ଶ୍ରୀକ୍ଷେତ୍ର ପରିଦର୍ଶନ କରିଥିଲେ । ମହାରାଜାଙ୍କ ସମ୍ପର୍କରେ ମାଧବଦେବଙ୍କର ବର୍ଣ୍ଣନା ଏଠାରେ ଉଲ୍ଲେଖଯୋଗ୍ୟ ।

"ପୁରୁଷୋତ୍ତମ ନାମେ ନରେଶ୍ୱର ଗଜପତି
ତାନ ଆଜ୍ଞା ପାଲି ଦ୍ୱିଜ ଗଣ ମହାମତି
ପୁରାଣ ଭାଗବତ ସ୍ମୃତି ଆଗମକ ଗୃଇ
ନାନା ଗ୍ରନ୍ଥ ସଂଗ୍ରହ କରିଲା ଏକା ଥୋଇ

× × × ×

ପରମ ମହନ୍ତ ଗଜପତି ପୁରୁଷୋତ୍ତମ
ଲିଖାଇ ଅଛା ଶ୍ଳୋକଚୟେ ଯେବେ ଅନୁକ୍ରମ
ସେହି ଅନୁକ୍ରମେ ଆମି ରଚିବ ପୟାର
କୃଷ୍ଣର ପ୍ରସାଦେ ହଉକ ଲୋକକ ପ୍ରଚାର ।"

ଏହି ସମୟରେ ବହୁ ବୈଷ୍ଣବ କବି ଆବିର୍ଭାବ ହୋଇଥିଲେ । ତନ୍ତ୍ର ସାହିତ୍ୟ ଏ ଯୁଗର ଆଉ ଏକ ସାହିତ୍ୟିକ ସମ୍ପଦ । ବହୁ ମନ୍ତ୍ର ଗଦ୍ୟାକାରରେ ରଚିତ ହୋଇଥିଲା । ଏହି ଗଦ୍ୟ ପଦ୍ୟାତ୍ମକ । ସେହି ଗଦ୍ୟଶୈଳୀର ନିଦର୍ଶନ ସ୍ୱରୂପ ହେଲା—

"ବ୍ରହ୍ମାଦେବ କହିଆଛେ ଚମତ୍କାର କରି
ଆଦି ପୂର୍ବତ ବସିଲା ଇନ୍ଦ୍ର ଯମ ଦକ୍ଷିଣତ
ଉତ୍ତର କୁବେର ବରୁଣ ପଶ୍ଚିମତ ।"

ବୈଷ୍ଣବ ଯୁଗର ସାହିତ୍ୟ ଭକ୍ତିରସାଶ୍ରିତ ଏବଂ ତାହା ପୁରାଣ ଓ କାବ୍ୟ-ଅଭିମୁଖୀ । ସେ ସବୁର ଉଦ୍ଦେଶ୍ୟ ମୁଖ୍ୟତଃ ଧର୍ମପ୍ରଚାରମୂଳକ ।

**ଅସମୀୟା ସାହିତ୍ୟରେ ମଧ୍ୟଯୁଗ—**

ସପ୍ତଦଶ ଶତାବ୍ଦୀରୁ ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଅସମୀୟା ସାହିତ୍ୟରେ ମଧ୍ୟଯୁଗ ନାମରେ ନାମିତ । ପ୍ରାଚୀନ ବୈଷ୍ଣବ ଯୁଗ କାବ୍ୟ ପୁରାଣର ଯୁଗ । କିନ୍ତୁ ମଧ୍ୟଯୁଗ ଗଦ୍ୟ ସାହିତ୍ୟର ରଚନା ଦ୍ୱାରା ସ୍ପଷ୍ଟ ଭାବେ ଚିହ୍ନିତ । ଶଙ୍କର ଦେବଙ୍କ ଅଙ୍କିୟା-ନାଟକରେ ପ୍ରଥମେ ଗଦ୍ୟ ବ୍ୟବହୃତ ହେଉଥିଲା । ତାହାପରେ ମନ୍ତ୍ର ସାହିତ୍ୟରେ ଗଦ୍ୟର ସ୍ଥାନ ପାଇଥିଲା; କିନ୍ତୁ ଭଟ୍ଟଦେବ ଅସମୀୟା ଗଦ୍ୟକୁ ନିର୍ଦ୍ଦିଷ୍ଟ ସାହିତ୍ୟିକ ରୂପରେଖ ପ୍ରଦାନ କଲେ । ସେଥିପାଇଁ ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ରାୟଙ୍କର ମନ୍ତବ୍ୟ ଏଠାରେ ଉଦ୍ଧାରଯୋଗ୍ୟ । "ଷୋଡ଼ଶ ଶତାବ୍ଦୀରେ ଭଟ୍ଟଦେବଙ୍କର ଗଦ୍ୟ "ଗୀତା" ଅସାଧାରଣ ଏବଂ ଇଂଲଣ୍ଡର ହୁକର ଏବଂ ଲାଟିମରଙ୍କ ରଚନା ବ୍ୟତୀତ ପୃଥିବୀରେ ଅନ୍ୟ କୌଣସି ସାହିତ୍ୟରେ ସୁଦୂର ଅତୀତରେ ଏପରି ଗଦ୍ୟ ରଚନା ପରିଦୃଷ୍ଟ ହୁଏ ନାହିଁ ।"

**ବୁରୁଞ୍ଜି**—ଗଦ୍ୟ 'ଅହମ୍' ଶାସନର ଦରବାରର ବିବରଣୀ ସମୂହ ଗଦ୍ୟରେ ଲିଖିତ । ଏହା ପ୍ରଥମେ ଅହମ୍ ରାଜାମାନଙ୍କର ଭାଷାରେ ଲିଖିତ ହୋଇ-ଥିଲା । ଜି. ଏ ଗ୍ରିୟରସନଙ୍କ ମତରେ ଅସମୀୟା ସାହିତ୍ୟର ଏହି ଗଦ୍ୟ ରଚନା ଅତୁଳନୀୟ । ଷୋଡ଼ଶ ଶତାବ୍ଦୀର ଶେଷ ଭାଗରୁ ଊନବିଂଶ ଶତାବ୍ଦୀର ପ୍ରଥମ ଭାଗ ମଧ୍ୟରେ ଏହା ବ୍ୟାପ୍ତ । ପଣ୍ଡିତ ହେମଚନ୍ଦ୍ର ଗୋସ୍ୱାମୀ ହିଁ ପ୍ରଥମେ ଏହି ରଚନା-ସମୂହ ସମ୍ପାଦନ କରିଥିଲେ । କଥାଗୀତ ଏବଂ ପୁରଣୀ ଆସାମ ବୁରୁଞ୍ଜି ମଧ୍ୟରେ ପ୍ରାୟ ଏକଶତ ବର୍ଷ ବ୍ୟବଧାନ । ଏହି 'ବୁରୁଞ୍ଜି' ଜାତୀୟ ରଚନାମାନଙ୍କର ସମ୍ପାଦନା ବାସ୍ତବିକ୍ ଏକ ପବିତ୍ର କାର୍ଯ୍ୟ । ସାଧାରଣତଃ ରାଜଦରବାର ସଂପୃକ୍ତ ଉଚ୍ଚପଦରୁ କର୍ମଚାରୀମାନେ ହିଁ ଏହି ବୁରୁଞ୍ଜି ରଚନାର ପ୍ରଣେତା । ଭାଷା ସରଳ, ଶୁଦ୍ଧ ଏବଂ କାବ୍ୟ ଯୁଗର କ୍ଲିଷ୍ଟତା ଶୂନ୍ୟ ଏବଂ ଚଳିତ କଚେଶ୍ମି ଭାଷା । ବିଷୟ ବସ୍ତୁର ଭିନ୍ନତା ଦୃଷ୍ଟିରେ 'ବୁରୁଞ୍ଜି' ଗଦ୍ୟ ସ୍ୱତନ୍ତ୍ର ହେବା ସ୍ୱାଭାବିକ । ରାଜପରିବାର, ଦରବାର ଚନ୍ଦ୍ର,

ଚଲଣି, ସାମାଜିକ ଜୀବନ, କଥୋପକଥନ ସେଥିରେ ବର୍ଣ୍ଣିତ । ମୋଗଲ ଏବଂ ଅହମ୍ ଶାସକମାନଙ୍କ ସଂଘର୍ଷ ପୁରଣୀ ଆସାମ ବୁରୁଂଜୀରେ ପ୍ରାଂଜଳ ଭାଷାରେ ବର୍ଣ୍ଣିତ । ଅସମୀୟା ଭାଷାର ପରିପୂର୍ଣ୍ଣତା ଦିଗରେ ଏହି ବୁରୁଂଜୀର ଦାନ ସ୍ୱୀକାର୍ଯ୍ୟ । ଏକ ସମ୍ପୂର୍ଣ୍ଣ ଐତିହାସିକ ଚେତନା ନିମନ୍ତେ ଏହି ପ୍ରାଚୀନ ରଚନା ଦାୟୀ ।

"ଚରିତ ପୋଥି" ଜାତୀୟ ରଚନା ଏହି ଯୁଗର ଆଉ ଏକ ସାହିତ୍ୟିକ ଆକର୍ଷଣ । ଶଙ୍କରଦେବଙ୍କ ସହିତ ବହୁ ବୈଷ୍ଣବ ସନ୍ନ୍ୟାସୀ, ମହନ୍ତ ଏବଂ ସାଧୁମାନଙ୍କର ଜୀବନୀ ସଂକଳନ ଏହି ପର୍ଯ୍ୟାୟର ଲକ୍ଷଣ । ତାହାର ଭାଷା ଉଭୟ ଗଦ୍ୟ ଏବଂ ପଦ୍ୟାତ୍ମକ । ଏଠାରେ ଶଙ୍କରଦେବ ଏବଂ ମାଧବଦେବଙ୍କର ଗଦ୍ୟ ରଚିତ ଜୀବନୀ କଥାବସ୍ତୁ ଚରିତ ଉଲ୍ଲେଖଯୋଗ୍ୟ । ସୁଦୂର ଗ୍ରାମାଞ୍ଚଳରେ ସଂଧ୍ୟା ପ୍ରାର୍ଥନା ସମୟରେ ଭକ୍ତମାନେ ସାଧାରଣତଃ କଥୋପକଥନ ଛଳରେ ଗୁରୁମାନଙ୍କର ଜୀବନୀ ଆଲୋଚନା କରିଥାନ୍ତି । ଚରିତ ପୋଥିର ଉତ୍ପତ୍ତି ଏହି କ୍ରମରେ ଘଟିଥିଲା । ଜନସାଧାରଣଙ୍କ ମଧ୍ୟରେ ଭକ୍ତିତତ୍ତ୍ୱ ପ୍ରଚାର କରିବା ଏହାର ଲକ୍ଷ୍ୟ । ଭଟ୍ଟ ଦେବଙ୍କର ରଚନା ଏବଂ ବୁରୁଂଜୀର ଗଦ୍ୟ ଅପେକ୍ଷା ଏହାର ଭାଷା ଖୁବ୍ ସରଳ । ଏଥିରେ ତ ରାଜନୈତିକ ବ୍ୟାପାର କିମ୍ବା ରାଜବଂଶର ପ୍ରଭାବ ପଡ଼ି ନ ଥିଲା । ଲୋକକଥିତ ଭାଷାର ପ୍ରୟୋଗ ଏହି ରଚନାମାନଙ୍କରେ ପରିଲକ୍ଷିତ । ଭକ୍ତ ଜୀବନର ସରଳତା ତଥା ଗଭୀର ବିଶ୍ୱାସ, ଧର୍ମାନୁରାଗ ଦ୍ୱାରା ଏହି ଚରିତ ପୋଥି ସମୂହ ଚିହ୍ନିତ ।

"ପରଶୁରାମଙ୍କ" 'କଥାଘୋଷ' ( ମାଧବଦେବଙ୍କ ପ୍ରସିଦ୍ଧ ନାମଘୋଷାର ଗଦ୍ୟାନୁବାଦ ) କୃଷ୍ଣାନନ୍ଦ ଦ୍ୱିଜଙ୍କ ପୂର୍ଣ୍ଣ ଭାଗବତ ଗଦ୍ୟ ବ୍ୟାଖ୍ୟା ସହିତ ରଘୁନାଥ ମହନ୍ତଙ୍କ କଥା ରାମାୟଣ (ଗଦ୍ୟ) ଏହି ଯୁଗରେ ଗଦ୍ୟରଚନା ପ୍ରସାର ଦିଗରେ ଉଲ୍ଲେଖଯୋଗ୍ୟ ଚେଷ୍ଟା । କଥାରାମାୟଣ ଉପରେ ଅଙ୍କିୟା-ନାଟକର ପ୍ରଭାବ ପଡ଼ିଥିଲା । "ପଦ୍ମ ପୁରାଣ" ନାମକ ଗ୍ରନ୍ଥରେ ଗଦ୍ୟ ମାଧ୍ୟମରେ ସାମାଜିକ ଆଦର୍ଶ ଓ ନୀତି ନିୟମ ଲିପିବଦ୍ଧ ହୋଇଥିଲା ।

ଧର୍ମ, ଭକ୍ତି ସମ୍ବନ୍ଧୀୟ ସଂସ୍କୃତ ରଚନା ବ୍ୟତୀତ ଅନେକ ସଂସ୍କୃତ ଗ୍ରନ୍ଥର ଅନୁବାଦ ଅସମୀୟା ଭାଷାରେ ପ୍ରକାଶିତ ହୋଇଥିଲା । ହସ୍ତୀ ବିଦ୍ୟାର୍ଣ୍ଣବ ଏବଂ ଘୋଡ଼ା ନିଧାନ, ଭାସ୍ୱତୀ (ସଂସ୍କୃତ ସୂର୍ଯ୍ୟ ସିଦ୍ଧାନ୍ତର ସଂକ୍ଷିପ୍ତ ରୂପ), ଶ୍ରୀହସ୍ତ ମୁକ୍ତାବଳୀ ପ୍ରଭୃତି ଏହି ଜାତୀୟ ରଚନା । କଥୋପକଥନ ଛଳରେ ଲିଖିତ "ହରଗୌରୀ ସମ୍ବାଦ" ମଧ୍ୟ ଗଦ୍ୟରଚନା ।

**କୂଟନୀତି ସଂପର୍କୀୟ ସରକାରୀ ଚିଠିପତ୍ର** :—ସରକାରଙ୍କ ଶାସନ ସମ୍ପର୍କୀୟ ନଥିପତ୍ର ଏବଂ ବିବରଣୀ ମଧ୍ୟରେ ଗଦ୍ୟର ବହୁଳ ବ୍ୟବହାର ଉଲ୍ଲେଖଯୋଗ୍ୟ । ୧୫୫୫ ଖ୍ରୀଷ୍ଟାବ୍ଦରେ କୋଚ ବିହାରର ରାଜା ନାରାୟଣଙ୍କର ସ୍ୱର୍ଗ ନାରାୟଣଙ୍କୁ

ଲିଖିତ ପତ୍ର ସେହି ଯୁଗର ଗଦ୍ୟଶୈଳୀର ନିଦର୍ଶନ । ଅହମ୍ ଶାସକମାନଙ୍କ ପୂର୍ବରୁ ସଂସ୍କୃତ ହିଁ କଚେରୀଭାଷା ରୂପେ ପ୍ରଚଳିତ ଥିଲା । ମାତ୍ର ପରେ ପରେ ଅସମୀୟା ଭାଷା ପ୍ରଚଳିତ ହେଲା । ଏହିସବୁ ପ୍ରାଚୀନ ପତ୍ରର ଭାଷା କୌତୂହଳୋଦ୍ଦୀପକ । ପତ୍ରର ଆରମ୍ଭରେ ସଂସ୍କୃତଶ୍ଳୋକ ଉଦ୍ଧାର କରାଯାଉଥିଲା । ଅହମ୍ ରାଜା ଏବଂ କର୍ମଚାରୀମାନଙ୍କର ଲିଖିତ ବହୁ ଚିଠିପତ୍ର ସଙ୍କଳିତ ହୋଇଅଛି । ଭୂମିଦାନ ଓ ଭୂସମ୍ପତ୍ତି ହସ୍ତାନ୍ତର ସମ୍ପର୍କୀୟ କଚେରୀ ନଥିପତ୍ରରେ ମଧ୍ୟ ଗଦ୍ୟରେ ବ୍ୟବହୃତ ହେଉଥିଲା । ଅହମ୍ ଶାସକ ଶିବସିଂହ (୧୭୧୪-୧୭୪୪) ଙ୍କ ରାଜତ୍ୱ କାଳରେ କାମରୂପ ଜିଲ୍ଲାରେ ଜମିଜମା ବନ୍ଦୋବସ୍ତ କରାଯାଇଥିଲା । ସେହି ସବୁ କାଗଜପତ୍ର 'ପେଡ଼ା କାକଟ' ନାମରେ ଚିହ୍ନିତ, ତାହାର ଭାଷା ଗଦ୍ୟ । ପଞ୍ଚଦଶ ଶତାବ୍ଦୀରୁ ଅଷ୍ଟାଦଶ ଶତାବ୍ଦୀ ପର୍ଯ୍ୟନ୍ତ ଏହାହିଁ ଅସମୀୟା ଗଦ୍ୟ ସାହିତ୍ୟର ଧାରା ଥିଲା । ଧର୍ମତତ୍ତ୍ୱ ବ୍ୟାଖ୍ୟାନ, ବୁରୁଞ୍ଜି, ଚରିତପୋଥି ଏବଂ କଚେରୀ ନଥିପତ୍ର ଏକ ଜାତୀୟ ଗଦ୍ୟ ରାଜଦରବାରର ପୃଷ୍ଠପୋଷକତାରେ ପୁଷ୍ଟ ହୋଇଥିଲା । ଶଙ୍କରଦେବ ଓ ମାଧବଦେବଙ୍କ ମଧ୍ୟରେ ଆଧ୍ୟାତ୍ମିକ ସମ୍ପର୍କ ଅତି ନିବିଡ଼ । ସେମାନଙ୍କୁ ଯଥାକ୍ରମେ କୃଷ୍ଣ ଏବଂ ଉଦ୍ଧବ କିମ୍ବା କୃଷ୍ଣ ଏବଂ ନାରାୟଣ ନାମ ଅଭିହିତ କରାଯାଇଥାଏ । ଶଙ୍କରଦେବ ମାଧବ ଦେବଙ୍କୁ ତାଙ୍କ ପ୍ରତିଷ୍ଠିତ ଭକ୍ତିମାର୍ଗର ଉତ୍ତରାଧିକାରୀ ରୂପେ ମନୋନୀତ କରିଥିଲେ । ମାଧବ ମଧ୍ୟ ଯୋଗ୍ୟ ଗୁରୁଙ୍କର ଯୋଗ୍ୟ ଶିଷ୍ୟରୂପେ ଏକାଶରଣ ନାମଧର୍ମ ଦକ୍ଷତା ସହକାରେ ପ୍ରଚାର କରିଥିଲେ । ମାଧବଦେବଙ୍କ ବାଲ୍ୟଜୀବନ ନାନା ଦୁଃଖ ଦାରିଦ୍ର୍ୟ ମଧ୍ୟରେ ଅତିବାହିତ ହୋଇଥିଲା । ଶଙ୍କର ଦେବଙ୍କ ସହିତ ତାଙ୍କର ପରିଚୟ ଏକ ଐତିହାସିକ ଘଟଣା । ଗୁରୁଭକ୍ତି ତାଙ୍କ ସାଧନାର ଥିଲା ପ୍ରଧାନ ଅବଲମ୍ବନ । ଷୋଡ଼ଶ ଶତାବ୍ଦୀର ମଧ୍ୟଭାଗରେ ତାଙ୍କ ସାହିତ୍ୟିକ ଜୀବନର ଆରମ୍ଭ ଏବଂ 'ଜନ୍ମରହସ୍ୟ' ତାଙ୍କର ପ୍ରଥମ ରଚନା । ଏହା ତିନିଶତପଦ ସମ୍ବଳିତ; ସୃଷ୍ଟିରେ ଜନ୍ମ ଏବଂ ଧ୍ୱଂସର ରହସ୍ୟ ଏଥିରେ ବର୍ଣ୍ଣିତ । ଶୁଣାଯାଏ ରାଣୀ ଭୁବନେଶ୍ୱରୀଙ୍କ ନିର୍ଦ୍ଦେଶରେ ମାଧବଦେବ ନାରୀ ସମାଜ ପାଇଁ ଏହି ଉପାଦେୟ ଗ୍ରନ୍ଥ ରଚନା କରିଥିଲେ । "ଭକ୍ତି ରତ୍ନାବଳୀ" ଆଦିକାଣ୍ଡ ରାଜସୂୟ ଯଜ୍ଞ (୧୫୬୭-୬୮), ରାସଝୁମୁରା ଝୁମୁରାଭୂଷଣ ଅର୍ଜୁନ ଭଜନ ପ୍ରଭୃତି ତାଙ୍କର ଯଥାକ୍ରମେ ବୃହତ୍ ଏବଂ କ୍ଷୁଦ୍ର ରଚନା । ଝୁମୁରା ଏକଜାତୀୟ ଗୋଷ୍ଠୀ ସଙ୍ଗୀତ । ବିଶେଷତଃ ମାଧବଦେବଙ୍କର ଏହି ରଚନାରେ ବାଳୁତକୃଷ୍ଣ, ଯଶୋଦା ଏବଂ ଗୋପୀମାନେ ସ୍ଥାନ ପାଇଥିଲେ । ମାଧବଦେବ, ପାରିବାରିକ ଜୀବନଠାରୁ ବିଚ୍ଛିନ୍ନ ରହିଥିଲେହେଁ ତାଙ୍କ ରଚନାରେ 'ବାତ୍ସଲ୍ୟର'ର ଚରମ ବର୍ଣ୍ଣନା ପରିଲକ୍ଷିତ । 'ଝୁମୁରା' ଶବ୍ଦର ମୂଳ ହେଉଛି ଝୁମୁରୁ, ଯାହାର ଅର୍ଥ ହେଉଛି ସଙ୍ଗୀତ, ନୃତ୍ୟ । ମାଧବ ଦେବଙ୍କର ନାଟିକାଗୁଡ଼ିକ ଆଧୁନିକ ଏକାଙ୍କିକା ସହିତ ତୁଳନୀୟ । ତାହା ନାଟକୀୟ ଚମତ୍କାରିତା ଦ୍ୱାରା ଚିହ୍ନିତ, ତାଙ୍କର 'ବରଗୀତ' ସମୂହ ଭଜନ

ଜାତୀୟ ରଚନା । ଏଠାରେ 'ବର' ଶ୍ରେଷ୍ଠ ଅର୍ଥରେ ବ୍ୟବହୃତ; କାରଣ ତାହା 'ମାର୍ଗ ସଙ୍ଗୀତ'ର ନିର୍ଦ୍ଦେଶକ । ବର୍‌ଗୀତ ରଚନାର କଥାବସ୍ତୁ କୃଷ୍ଣଙ୍କ କ୍ରୀଡ଼ାକୁ କେନ୍ଦ୍ରକରି କଳ୍ପିତ ଏବଂ ଅନେକ ସମୟରେ ଆତ୍ମାର ବ୍ୟାକୁଳ ପ୍ରୟାସ ସେଥିରେ ପ୍ରତିଫଳିତ । ଭକ୍ତ ପ୍ରାଣର ରସସିକ୍ତ ଅଭିବ୍ୟକ୍ତି ହେଉଛି "ନାମ ଘୋଷା" । ମାଧବଦେବଙ୍କ ରହସ୍ୟବାଦ କୃଷ୍ଣଙ୍କ ଉଦ୍ଦେଶ୍ୟରେ ଆତ୍ମସମର୍ପଣକୁ ବୁଝାଇଥାଏ । ତାଙ୍କ ଦୃଷ୍ଟିରେ ଶ୍ରୀକୃଷ୍ଣ ଦୟାଶୀଳ ଦେବତା ଏବଂ ପ୍ରାଣବାନ୍ଧବ । ସେହି ସମ୍ପର୍କ ପ୍ରେମିକ ଏବଂ ପ୍ରେମିକାର ସମ୍ପର୍କ ନୁହେଁ, ତାହା ପ୍ରଭୁ ଏବଂ ଭୃତ୍ୟର ସମ୍ପର୍କ ।

ଷୋଡ଼ଶ ଶତାବ୍ଦୀର ସାଧକ ଓ ଭକ୍ତମାନଙ୍କ ମଧ୍ୟରେ ରାମସରସ୍ୱତୀଙ୍କ ନାମ ଉଲ୍ଲେଖଯୋଗ୍ୟ । ସେ ଅସମୀୟା ଭାଷାରେ ଅତ୍ୟନ୍ତ ଲୋକପ୍ରିୟ । ଏହି ଶତାବ୍ଦୀରେ 'କୃଷ୍ଣତତ୍ତ୍ୱ' ଏବଂ ଭାଗବତ ପୁରାଣ ହିଁ ସାହିତ୍ୟିକମାନଙ୍କର ଉପସ୍ଥିତ ବସ୍ତୁ ଥିଲା, ତାଙ୍କର ମହାଭାରତ ଅନୁବାଦ ସର୍ବଜନପଠିତ । ରାମସରସ୍ୱତୀ ଏବଂ ଅନନ୍ତକନ୍ଦଳୀଙ୍କୁ କେନ୍ଦ୍ର କରି ବହୁ ଦିନ ପର୍ଯ୍ୟନ୍ତ ବାଦ-ବିସମ୍ବାଦ ଲାଗିଥିଲା । ସେମାନେ ଦୁଇଜଣ ସ୍ୱତନ୍ତ୍ର କବି ବୋଲି ସମାଲୋଚକମାନେ ଗବେଷଣା କରି ମତ ଦେଇଛନ୍ତି । ରାମସରସ୍ୱତୀଙ୍କ କବିତ୍ୱଶକ୍ତି ଏବଂ ଭକ୍ତିପ୍ରାଣତା କଚରାଜା ନରନାରାୟଣ ଏବଂ ତାଙ୍କର ଭ୍ରାତା ଶୁକ୍ଲଧ୍ୱଜଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ଏହା ପୂର୍ବରୁ ଶଙ୍କରଦେବଙ୍କ ବୈଷ୍ଣବଧର୍ମ ଏବଂ ଭାଗବତତତ୍ତ୍ୱ ପ୍ରଚାର ଜନସାଧାରଣଙ୍କୁ ପ୍ରଭାବିତ କରିଥିଲା । ସେଥିପାଇଁ ଭାଗବତ ପୁରାଣ, ମହାଭାରତକୁ ଅସମୀୟା ଭାଷାରେ ଅନୁବାଦ କରିଥିଲେ । "ଭୀମ ଚରିତ" ମଧ୍ୟ ତାଙ୍କର ଆଉ ଏକ ରଚନା । ଦୀର୍ଘ ଚାରିଶତ ବର୍ଷ ଧରି କବି ରାମସରସ୍ୱତୀଙ୍କର ରଚନାବଳୀ ଅସମୀୟା ଭାଷା ତଥା ସମାଜକୁ ପ୍ରଭାବିତ କରି ଆସିଛି । ଜନସାଧାରଣଙ୍କର ଆଶା, ନୈରାଶ୍ୟ, ଧର୍ମପ୍ରାଣତା, ବିଶ୍ୱାସ ତାଙ୍କ ରଚନାରେ ଗ୍ରାମ୍ୟ ଭାଷାରେ ପ୍ରତିଫଳିତ ।

**ଅସମୀୟା ନାଟକର କ୍ରମବିକାଶ** :—ଷୋଡ଼ଶ ଶତାବ୍ଦୀରେ ହିଁ ଅସମୀୟା ନାଟକର ଉତ୍ପତ୍ତି ହୋଇଥିଲା । ଏହାର ମୂଳଧର୍ମ ପ୍ରଭାବିତ, ସ୍ଥାନୀୟ ପ୍ରଭାବଦ୍ୱାରା ଚର୍ଚ୍ଚିତ ଏବଂ କେତେକାଂଶରେ ପ୍ରାଚୀନ ସଂସ୍କୃତ ନାଟକଦ୍ୱାରା ପ୍ରଭାବିତ ।

ଆସାମର ସମବେତ ସଙ୍ଗୀତ ଏବଂ ନୃତ୍ୟଦଳ, 'ଓଜାପାଲି'ରେ ପରବର୍ତ୍ତୀ କାଳରେ ଜଣେ ନୀରବ ଅଭିନେତାର ଅବତାରଣା କରାଯାଇଥିଲା । ଶଙ୍କର ଦେବହିଁ 'ଓଜାପାଲି'କୁ ସମ୍ପୂର୍ଣ୍ଣ ନାଟ୍ୟରୂପ ଦେଇଥିଲେ । ଓଝା ସ୍ଥାନରେ ସୂତ୍ରଧର ଏବଂ ଗାୟକ ବାଦକର ଅବତାରଣା କରାଯାଇଥିଲା । ଗ୍ରୀକ୍ କୋରସ୍‌ର ବିବର୍ତ୍ତୀ ସଦୃଶ ସୂତ୍ରଧରର ମଞ୍ଚ ପରିଚାଳନା ଦାୟିତ୍ୱ ନିର୍ଦ୍ଦିଷ୍ଟ ହେଲା ।

ନାଟ, ଯାତ୍ରା ଏବଂ ଝୁମୁରା ଏପରି ତିନିଭାଗରେ ଅସମୀୟା ନାଟକ ବିଭକ୍ତ । ସେଥିରେ ସଂସ୍କୃତ ନାଟକର ଆଂଶିକ ପ୍ରଭାବ ପ୍ରତିଫଳିତ । ଅସମୀୟା ଭାଷାରେ

ନାଟ ଏବଂ ନାଟକ ମଧ୍ୟରେ କୌଣସି ପ୍ରଭେଦ ନାହିଁ । 'ଯାତ୍ରା' ସାଧାରଣତଃ କୌଣସି ଏକ ଧର୍ମୀୟ ଅନୁଷ୍ଠାନ ସହିତ ଜଡ଼ିତ ଥିଲା । ଜନସାଧାରଣଙ୍କ ଜୀବନର ଚିତ୍ର ଏଥିରେ ପ୍ରତିଫଳିତ । ମୁସଲମାନମାନଙ୍କ ରାଜତ୍ୱରେ ଭାରତୀୟ ରଙ୍ଗମଞ୍ଚ ଏବଂ ନାଟକ ଅନୁଷ୍ଠାନ ଅବହେଳିତ ହୋଇଥିଲା; କିନ୍ତୁ ଚତୁର୍ଦ୍ଦଶ ଶତାବ୍ଦୀର ଶେଷ ଭାଗରେ ସେହି ଅନୁଷ୍ଠାନର ପୁନଃ ଜାଗରଣ ଘଟିଥିଲା । ଏହା ମୂଳରେ କୃଷ୍ଣଭକ୍ତି ନିହିତ ଥିଲା । ପଞ୍ଚଦଶ ଶତାବ୍ଦୀର ଶେଷ ଏବଂ ଷୋଡ଼ଶ ଶତାବ୍ଦୀର ପ୍ରାରମ୍ଭରେ ଶଙ୍କର ଦେବଙ୍କ ସମୟରେ ଅସମୀୟା ନାଟକ ଏବଂ ଯାତ୍ରାର ସମ୍ୟକ୍ ବିକାଶ ସାଧିତ ହେଲା । ତାଙ୍କର "କାଳୀ ଦମନ" ଓ ଦୈତାରିଙ୍କର "ନୃସିଂହ ଯାତ୍ରା", ଗୋପାଳ ଆଟାଙ୍କର 'ଜନ୍ମ-ଯାତ୍ରା' ପ୍ରଭୃତି ଉଲ୍ଲେଖଯୋଗ୍ୟ । ଆସାମର ପ୍ରଥମ ନାଟକୀୟ ରଚନା "ସିଂହ ଯାତ୍ରା"ର ସନ୍ଧାନ ମିଳି ନାହିଁ । ଝୁମୁରି ଏକାଙ୍କିକା ଜାତୀୟ ଏକ କ୍ଷୁଦ୍ର ନାଟ୍ୟ ରଚନା । ଏହା ଶିଳ୍ପ ରାଗ ସହିତ ସଂଶ୍ଳିଷ୍ଟ । ଆସାମରେ ନାଟକମାନଙ୍କରେ ଖୋଲ, ମୃଦଙ୍ଗ ଏବଂ ତାଳ (ବାଦ୍ୟ) ପ୍ରଭୃତି ବ୍ୟବହୃତ ।

ଅସମୀୟା ଭାଷାରେ ନାଟକର ପ୍ରବର୍ତ୍ତକ ହେଉଛନ୍ତି ଶଙ୍କର ଦେବ ଏବଂ କୃଷ୍ଣଲୀଳା ବର୍ଣ୍ଣନା ହିଁ ତାଙ୍କ ରଚିତ ନାଟକମାନଙ୍କର ମୁଖ୍ୟ କଥାବସ୍ତୁ । "ପତ୍ନୀ-ପ୍ରସାଦ", "କେଳି ଗୋପାଳ", "ରୁକ୍ମିଣୀ ହରଣ", "ପାରିଜାତ ହରଣ", "ଶ୍ରୀରାମ ବିଜୟ", "କାଳୀଦମନ" ପ୍ରଭୃତି ତାଙ୍କର ନାଟ୍ୟ କୃତି । ପରବର୍ତ୍ତୀ ନାଟ୍ୟକାର ମାଧବ ଦେବଙ୍କର 'ଅର୍ଜୁନ ଭଜନ', 'ଭୋଜନ ବିହାର', 'ଭୂଷଣ ହରଣ', 'ରାସ ଝୁମୁରି' ପ୍ରଭୃତି ନାଟ୍ୟ ରଚନାରେ ମଧ୍ୟ ସେହି କୃଷ୍ଣଲୀଳା ମୁଖ୍ୟ ସ୍ଥାନ ଅଧିକାର କରିଥିଲା ।

'ଜନ୍ମ ଯାତ୍ରା' ଓ 'ଗୋପୀ ଉଦ୍ଧବ ସମ୍ବାଦ' ଗୋପାଳ ଆଟାଙ୍କର ଦୁଇଖଣ୍ଡି ନାଟକ । "କଂସ ବଧ" ନାଟକ ରାମଚରଣ ଠାକୁରଙ୍କ ଲେଖା ଏବଂ ଶଙ୍କର ଦେବଙ୍କ ଶୈଳୀ ଏଥିରେ ପ୍ରତିଫଳିତ ।

ଆସାମରେ ନାମ ଘର କିମ୍ବା କୀର୍ତ୍ତନ ଘର ପରିସରରେ ନାଟକ ଓ ଯାତ୍ରା ଅଭିନୀତ ହୁଏ । ଏହି ସାମୟିକ ମଞ୍ଚ ସଭା କିମ୍ବା 'ସଭାଘର' ନାମରେ ନାମିତ ।

**ରାମାୟଣ, ମହାଭାରତ ଓ ପୁରାଣ ସମୂହର ଅସମୀୟା ରୂପ:—** ଚତୁର୍ଦ୍ଦଶ ଶତାବ୍ଦୀରେ ରାମାନନ୍ଦଙ୍କ ପ୍ରଚାର ଫଳରେ ସମ୍ଭବତଃ ରାମାୟଣ ଲୋକ-ସମାଜରେ ବିଶେଷ ଆଦୃତ ହେଲା । ମାଧବ କନ୍ଦଲୀଙ୍କର ବାଲ୍ମୀକି ରାମାୟଣର ଅସମୀୟା ଅନୁବାଦ ହେଉଛି ଏହି ଦିଗରେ ପ୍ରଥମ ଉଦ୍ୟମ । ଅସମୀୟା ଭାଷାରେ ରାମାୟଣର ପାଞ୍ଚଗୋଟି ଅନୁବାଦ ଦେଖାଯାଏ । କାମାକ୍ଷାର ଅଧିବାସୀ ଦୁର୍ଗାବରଙ୍କର 'ଗୀତି ରାମାୟଣ' ଅନନ୍ତ କନ୍ଦଲିଙ୍କର ଉତ୍ତର ଏବଂ ଆଦି କାଣ୍ଡ ଷୋଡ଼ଶ ଶତାବ୍ଦୀର

ଶେଷାର୍ଦ୍ଧରେ ରଘୁନାଥ ମହନ୍ତଙ୍କ ଲିଖିତ ଗଦ୍ୟ ରାମାୟଣ ଅର୍ଥାତ୍—"କଥା ରାମାୟଣ", ଶଙ୍କର ଦେବଙ୍କ 'ରାମ ବିଜୟ ନାଟ', ମାଧବ ଦେବଙ୍କ 'ରାମ ଭାବନା', ଅନନ୍ତ କନ୍ଦଲିଙ୍କର 'ସୀତାର ପାତାଳ ପ୍ରବେଶ' ପ୍ରଭୃତି ଯଥାକ୍ରମେ ଅନୁବାଦ ଓ ରାମାୟଣ କଥାବସ୍ତୁ ଆଧାରିତ ନାଟ୍ୟ ରଚନା । ସେହିପରି ରାମାୟଣ ଆଶ୍ରିତ ଆଉ କେତେକ ରଚନା ହେଉଛି, 'ଶତ୍ରୁଞ୍ଜୟ' ଓ 'ମହୀରାବଣ ବଧ', 'ଗଣକ ଚରିତ' । ଜନସାଧାରଣଙ୍କ ଅଧ୍ୟୟନ ଏବଂ ଅବଗତି ନିମନ୍ତେ ମୂଳ ରାମାୟଣ ବହୁ ଭାବରେ ଲିଖିତ ଓ ଅନୂଦିତ ହୋଇଥିଲା ।

ତ୍ରୟୋଦଶ ଶତାବ୍ଦୀରୁ 'ମହାଭାରତ' ଅନୁବାଦ ସୂତ୍ରରେ ଅସମୀୟା ସାହିତ୍ୟରେ ପ୍ରବେଶ କରିଥିଲା । ହରିବର ବିପ୍ରଙ୍କ 'ବଭ୍ରୁବାହନ ଯୁଦ୍ଧ', କବିରତ୍ନ ସରସ୍ୱତୀଙ୍କ 'ଜୟଦ୍ରଥ ବଧ', ରୁଦ୍ର କନ୍ଦଲିଙ୍କର 'ସାତ୍ୟକୀ ପ୍ରବେଶ', ସେହି ଯୁଗର ରଚନା ବୋଲି ଜଣାଯାଏ । ବୈଷ୍ଣବ ଧର୍ମ ପ୍ରଭାବିତ ଯୁଗରେ ରାଜା ନରନାରାୟଣଙ୍କ (୧୫୪୦-୮୫) ଉତ୍ସାହରେ ଏବଂ ଶଙ୍କର ଦେବଙ୍କ ପ୍ରେରଣାରେ ସମଗ୍ର ମହାଭାରତ ଅସମୀୟା ଭାଷାରେ ଅନୂଦିତ ହୋଇଥିଲା ।

ଶଙ୍କର ଦେବଙ୍କ ପ୍ରବର୍ତ୍ତିତ ଭକ୍ତି ଆନ୍ଦୋଳନର ଏକମାତ୍ର ସୁଫଳ ହେଉଛି କବି ଏବଂ ଅନୁବାଦକମାନଙ୍କର ଆବିର୍ଭାବ ଓ ଆଗ୍ରହ । ତାଙ୍କର ସମସାମୟିକ ଅନନ୍ତ କନ୍ଦଲୀ ଗ୍ରାମ୍ୟ ଅଧିବାସୀଙ୍କ ପଠନପାଇଁ ସଂସ୍କୃତ ପରିତ୍ୟାଗ କରି ସରଳ ବୋଧଗମ୍ୟ ଭାଷାରେ ପ୍ରାଚୀନ ସଂସ୍କୃତ ଗ୍ରନ୍ଥ ଅନୁବାଦ କରିବାର ପକ୍ଷପାତୀ ଥିଲେ । ରାଜା ଦୁର୍ଲ୍ଲଭ ନାରାୟଣ ( କାମତାପୁର—ଚତୁର୍ଦ୍ଦଶ ଶତାବ୍ଦୀ ), କୋଚବିହାରର ରାଜା ନରନାରାୟଣ ( ଷୋଡ଼ଶ ଶତାବ୍ଦୀ ), ଅହମ୍ ରାଜା ରୁଦ୍ରସିଂହ ଓ ଶିବସିଂହଙ୍କ ( ଅଷ୍ଟାଦଶ ଶତାବ୍ଦୀ ) ରାଜକୀୟ ପୃଷ୍ଠପୋଷକତା ଯୋଗୁଁ ପୁରାଣ ସମୂହର ବ୍ୟାପକ ଅନୁବାଦ ସମ୍ଭବ ହୋଇଥିଲା । ପୂର୍ଣ୍ଣାଙ୍ଗ ଅନୁବାଦ, ଆଂଶିକ ଅନୁବାଦ ଏବଂ ଅବଲମ୍ବନ ଏହିପରି ଅସମୀୟା ପୌରାଣିକ ସାହିତ୍ୟ ଦୁଇଗୋଟି ପର୍ଯ୍ୟାୟରେ ବିଭକ୍ତ । ବସ୍ତୁତଃ ଭାଗବତ ପୁରାଣ ଏବଂ ବ୍ରହ୍ମ-ବୈବର୍ତ୍ତ ପୁରାଣ ଅସମୀୟା ରଚନା ସମୂହର ମୂଳ ଉତ୍ସ ।

ପୁରାଣ ଅନ୍ତର୍ଗତ ଗଳ୍ପ, ଉପାଖ୍ୟାନ ସମୂହକୁ କେନ୍ଦ୍ରକରି ସେ ଯୁଗରେ ଅସମୀୟା କାବ୍ୟ, ନାଟକ ପ୍ରଭୃତି ଲେଖାଯାଇଥିଲା । ଅସମୀୟା ଗଦ୍ୟ ସାହିତ୍ୟର ପ୍ରତିଷ୍ଠାତା ଭଟ୍ଟଦେବଙ୍କର ଭାଗବତ ପୁରାଣ, ଭାଗବତ ଗୀତା ଏବଂ ରତ୍ନାବଳୀ ଭବିଷ୍ୟତ ଧର୍ମାତ୍ମକ ଗଦ୍ୟ ସାହିତ୍ୟର ଭିତ୍ତି ସ୍ଥାପନ କରିଥିଲା ।

ଭାଗବତ ପୁରାଣର ଏକ ଚମତ୍କାରପ୍ରଦ ସାଙ୍ଗୀତିକ ରୂପାନ୍ତର ହେଉଛି ଅସମୀୟା 'କୀର୍ତ୍ତନ' । ଏହା ବ୍ୟତୀତ 'ଗୁଣମାଳା', ଭାଗବତରତ୍ନ', 'କଥାସୂତ୍ର', ନାରାୟଣଙ୍କ 'ଚତୁଃବିଂଶତି ଅବତାର', 'ନାମାପରାଧ ବର୍ଣ୍ଣନା', 'ପାଷଣ୍ଡ ମର୍ଦ୍ଦନ', 'ଧ୍ୟାନ ବର୍ଣ୍ଣନା',

'ରାସକ୍ରୀଡ଼ା', 'ପ୍ରହ୍ଲାଦ ଚରିତ', 'କଂସବଧ', 'ଶ୍ୟାମନ୍ତ ହରଣ', 'ବିପ୍ରପୁତ୍ର ଆନୟନ', 'ବେଦସ୍ତୁତି', 'ଲୀଳାମାଳା', 'ଶ୍ରୀକୃଷ୍ଣଙ୍କ ବୈକୁଣ୍ଠ ପ୍ରୟାଣ', 'ସହସ୍ରନାମ ବୃତ୍ତାନ୍ତ', 'ଓଡ଼ିଶା ବର୍ଣ୍ଣନା' ( ବ୍ରହ୍ମପୁରାଣରୁ ଗୃହୀତ ); ଏହିପରି ଶତାଧିକ ପୌରାଣିକ ଗଳ୍ପାଂଶ ତଥା ସେହି କୀର୍ତ୍ତନ ରଚନାର ଆଧାର । ଭାଗବତ କଥାବସ୍ତୁ ଉପରେ ଆଧାରିତ ଅସମୀୟା କାବ୍ୟ 'ରୁକ୍ମିଣୀ ହରଣ' ( ଶଙ୍କରଦେବ ), ରାଜସୂୟ କାବ୍ୟ ( ମାଧବ ଦେବ ), କୁମାର ହରଣ ( ଅନନ୍ତ କନ୍ଦଲି ) ପ୍ରଭୃତି ଆସାମରେ ଖୁବ୍ ଲୋକପ୍ରିୟ । ମୂଳ ସଂସ୍କୃତ ବିଷ୍ଣୁ ପୁରାଣ, ହରିବଂଶ, ପଦ୍ମପୁରାଣ, ବ୍ରହ୍ମବୈବର୍ତ୍ତ ପୁରାଣ, ମାର୍କଣ୍ଡେୟ ପୁରାଣ, ବାମନ ପୁରାଣ, ସ୍କନ୍ଦ ପୁରାଣ, ବ୍ରହ୍ମନାରଦୀୟ ପୁରାଣ, ଧର୍ମ ପୁରାଣ, କଲ୍କି ପୁରାଣର ଅସମୀୟା ଅନୁବାଦ ଷୋଡ଼ଶ ଶତାବ୍ଦୀରୁ ଆରମ୍ଭ ହୋଇ ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଚାଲିଥିଲା । ଭାଗବତ ମିଶ୍ର, ପଶୁରାମ ଦ୍ୱିଜ ( ବିଷ୍ଣୁପୁରାଣର ଅନୁବାଦକ ), ପୀତାମ୍ବର କବି ( ଷୋଡଶ ଶତାବ୍ଦୀ, ଉଷା ପରିଣୟର ପ୍ରଣେତା ) ପ୍ରଭୃତି ଏହି ଶ୍ରେଣୀର ସାହିତ୍ୟିକମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ।

ଅଷ୍ଟାଦଶ ଶତାବ୍ଦୀର ଶେଷ ତ୍ରିପାଦ ଏବଂ ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧ ଆସାମର ଶିକ୍ଷା, ସଂସ୍କୃତି ଏବଂ ସାମାଜିକ କ୍ଷେତ୍ରରେ ଏକ ବୈଚିତ୍ର୍ୟହୀନ ପର୍ଯ୍ୟାୟ-ବୋଲି କୁହାଯାଇପାରେ । ଆଭ୍ୟନ୍ତରୀଣ ଅଶାନ୍ତି, ବର୍ମୀ ଆକ୍ରମଣ ଏବଂ ଅପର୍ଯ୍ୟାପ୍ତ ଅଫିମ ସେବନ, ଏହି ରାଜନୈତିକ ଅସ୍ଥିରତା ହେତୁ । ସେଠାରେ ଖ୍ରୀ: ୧୮୩୬—୧୮୭୨ ପର୍ଯ୍ୟନ୍ତ ବଙ୍ଗଳା ଭାଷା ପ୍ରଚଳିତ ଥିଲା । ନବଗଂଗ ଜିଲ୍ଲାର ପଣ୍ଡିତ ଆତ୍ମାରାମ ଶର୍ମାଙ୍କ ସହାୟତାରେ ୧୮୧୩ ମସିହାରେ କଲିକତାର ଶ୍ରୀରାମପୁରଠାରୁ ଇଂରାଜୀ ମିସନାରୀମାନଙ୍କଦ୍ୱାରା ବାଇବେଲର ଅସମୀୟା ଅନୁବାଦ ପ୍ରକାଶ (ସର୍ବ ପ୍ରଥମ ମୁଦ୍ରିତ ଅସମୀୟା ପୁସ୍ତକ), ୧୮୪୦ରେ ଡବଲିଉ ରବିନସନ୍ଙ୍କ ପ୍ରଣୀତ ପ୍ରଥମ ଅସମୀୟା ଭାଷା ବ୍ୟାକରଣ ପ୍ରକାଶନ, ଆମେରିକାନ୍ ବ୍ୟାପଟିଷ୍ଟ ମିସନାରୀ ରେଭରେଣ୍ଡ ନାଥନ୍ ବ୍ରାଉନ ଏବଂ ଓ. ଟି. କଟରଙ୍କର, ପଦାର୍ପଣ ୧୮୪୬ରେ ସେମାନଙ୍କର ଉଦ୍ୟମରେ ଶିବସାଗର ଠାରୁ ମାସିକ ସଚିତ୍ର ଅରୁଣୋଦୟ ସମ୍ବାଦପତ୍ର ପ୍ରକାଶନ ଏହି ଜାଗରଣ ପର୍ବରେ ଏକ ଏକ ଉଲ୍ଲେଖଯୋଗ୍ୟ ଘଟଣା । ଏହି ପତ୍ରିକା "ବୁରୁଂଜିର" ଗଦ୍ୟଶୈଳୀର ଆଦର୍ଶରେ ଏକ ସରଳ ଗ୍ରାମ୍ୟ ଗଦ୍ୟଶୈଳୀ ପ୍ରବର୍ତ୍ତନ କରିଥିଲା । ଏକ ଇଂରାଜୀ ପତ୍ରିକାର ଆଦର୍ଶରେ ଏହା ପରିକଳ୍ପିତ ହୋଇଥିଲା । ୧୮୪୫ ମସିହାରେ ବ୍ରାଉନ "ବକୁଲ କାୟସ୍ଥ କିତାବତ୍ ମଂଜରୀ" ଶୀର୍ଷକ ଏକ ଗଣିତ ପାଣ୍ଡୁଲିପି ସମ୍ପାଦନା ଏବଂ ପ୍ରକାଶନ କରିଥିଲେ । ପ୍ରାଚୀନ ଅସମୀୟା ପୋଥି ମଧ୍ୟରେ ଏହା ହିଁ ସର୍ବପ୍ରଥମ ମୁଦ୍ରିତ ପୋଥି । ୧୮୬୭ରେ ରେଭରେଣ୍ଡ ଏମ୍. ବ୍ରନସନ ପ୍ରଥମେ ଅସମୀୟା-ଇଂରେଜୀ ଅଭିଧାନ ପ୍ରକାଶ କରିଥିଲେ ।

ଆସାମ ରାଜ୍ୟରେ ବଙ୍ଗଳା ଭାଷାର ଅଯଥା ପ୍ରଭାବ ଉଚ୍ଚ ଶିକ୍ଷା ତଥା ସ୍ଥାନୀୟ ଅଧିବାସୀମାନଙ୍କର ଆଗ୍ରହ ଓ ଅଭିଳାଷର ବିରୋଧୀ ବୋଲି ମତ ଦେଇ

ସେତେବେଳେ ମିସନାରୀମାନେ ପ୍ରକାଶ୍ୟ ସମାଲୋଚନା କରିଥିଲେ । ଏ. ଏଚ୍ ଡାନଫୋର୍ଥ ଖ୍ରୀ: ୧୮୫୩ରେ ଏହି ମର୍ମରେ ଏକ ଲେଖା ପ୍ରକାଶ କରିଥିଲେ । ଆନନ୍ଦରାମ ଢେକିୟାଲ ଫୁକନ୍ (୧୮୨୯-୫୯) ସହାୟତାର ପାଶ୍ଚାତ୍ୟ ଜଗତର ଚିନ୍ତା, ଆଦର୍ଶ, ପ୍ରେରଣା ଭିତ୍ତି ଉପରେ ଅସମୀୟା ସାହିତ୍ୟର ନବ ଜାଗୃତି ପାଇଁ ପାଦ୍ରୀମାନଙ୍କର ଦାନ ଅବିସ୍ମରଣୀୟ । ଅନୁବାଦ, କବିତା, ପ୍ରବନ୍ଧ, ଜୀବନୀ, ଇତିହାସ, ଗଳ୍ପ, ଉପନ୍ୟାସ ଏହି ନବ ଚେତନାର ସାହିତ୍ୟିକ ପରିଣତି । ୧୮୪୮ରେ "ଯାତ୍ରୀକାରର ଯାତ୍ରା" (ପିଲଗ୍ରିମସ୍ ପ୍ରୋଗ୍ରେସର ଅନୁବାଦ) ପ୍ରକାଶିତ ହେଲା । ୧୮୭୭ରେ ଶିବସାଗରରୁ ପ୍ରକାଶିତ 'କାମିନୀ କାନ୍ତ' ପୁନଶ୍ଚ 'ଫୁଲମଣି ଆରୁ କରୁଣା' ଖ୍ରୀଷ୍ଟିୟାନ ଧର୍ମ ଗ୍ରହଣ ସମ୍ପର୍କୀୟ କ୍ଷୁଦ୍ର ଉପନ୍ୟାସ । ପାଠ୍ୟ ପୁସ୍ତକ, ସମ୍ବାଦ ସାହିତ୍ୟ, ଅଭିଧାନ ଓ ବ୍ୟାକରଣ ପ୍ରସ୍ତୁତି ପାଦ୍ରୀମାନଙ୍କର ପ୍ରଚେଷ୍ଟାର ଫଳ ।

ଜାତୀୟ ଚେତନା ସାରସ୍ୱତ ପୁନଃ ଜାଗରଣ ମୂଳରେ କମଳାକାନ୍ତ ଭଟ୍ଟାଚାର୍ଯ୍ୟଙ୍କର କବିତା (୧୮୫୮-୧୯୩୬) ଚିତାନଳ, ଚିନ୍ତାତରଙ୍ଗ ଓ ପ୍ରବନ୍ଧ ସମୂହ ହେମଚନ୍ଦ୍ର ବରୁଆଙ୍କର (୧୮୩୬—୯୭) ଅଫିମ ସେବନ ବିରୋଧୀ ନାଟକ 'କନିଆ କୀର୍ତ୍ତନ' (ଧର୍ମାନ୍ଧତା ସମ୍ପର୍କୀୟ) 'ବାହାରେ ରଙ୍ଗ ଚଙ୍ଗ ଭିତରେ କଓ୍ୱା ଭାତୁରୀ' କ୍ଷୁଦ୍ର ଉପନ୍ୟାସ, ଅସମୀୟା ଅଭିଧାନ 'ହେମ କୋଷ' ନିହିତ ଥିଲା । ହେମଚନ୍ଦ୍ରଙ୍କର ବ୍ୟଙ୍ଗାତ୍ମକ ଦୃଷ୍ଟିକୋଣ ତୀବ୍ର ସାମାଜିକ ଚେତନା ଏବଂ ବାସ୍ତବ ପର୍ଯ୍ୟବେକ୍ଷଣ ଶକ୍ତି ଚରିତ୍ର ସୃଷ୍ଟି ନୈପୁଣ୍ୟ ସମସାମୟିକ ଲେଖକମାନଙ୍କୁ ପ୍ରଭାବିତ କରିଥିଲା । ଶକ୍ତିଶାଳୀ ଲେଖକ ଗୁଣାଭିରାମ ବରୁଆଙ୍କର ନାଟକ 'ରାମନବମୀ', ଢେକିୟାଲ ଫୁକନଙ୍କ ଜୀବନୀ, ପ୍ରାଚୀନ ଆସାମ ବୁରୁଂଜି (ଇତିହାସ) ମଧ୍ୟ ଅସାମୀୟା ସାହିତରେ ନବଚେତନା ଜାଗ୍ରତ କଲା । ଊନବିଂଶ ଶତାବ୍ଦୀର ମଧ୍ୟଭାଗର ଅସମୀୟା ଗଦ୍ୟ କ୍ରମଶଃ ମାର୍ଜିତ, ସଂସ୍କୃତ ପ୍ରଭାବ ମୁକ୍ତ ଏବଂ ଉନ୍ନତ ହୋଇଥିଲା । ଲେଖକମାନଙ୍କର ସାମାଜିକ ଦୁର୍ନୀତି ବିରୋଧରେ ଅଭିଯାନ, ନବଶିକ୍ଷା ପ୍ରତି ଆଗ୍ରହ ସେମାନଙ୍କର ବିଭିନ୍ନ କୃତିରେ ପ୍ରତିଫଳିତ ହେଲା । କମଳାକାନ୍ତଙ୍କର ହିମାଳୟପ୍ରତି ସମ୍ବୋଧନ (୧୯୧୯) ଏକ ଶ୍ରେଷ୍ଠ କବିତା ଥିଲା ।

**ଜୋନାକୀ ଯୁଗ:**—ପାଦ୍ରୀମାନଙ୍କଦ୍ୱାରା ସମ୍ପାଦିତ 'ଅରୁଣୋଦୟ' ପତ୍ରିକା ପରେ 'ଆସାମ ଦର୍ପଣ', 'ଆସାମ ବିଳାସିନୀ', 'ଆସାମ ଦୀପକ' 'ଆସାମ ବନ୍ଧୁ' ଏବଂ 'ଜୋନାକୀ' (୧୮୮୯) ପ୍ରଭୃତି ପତ୍ରପତ୍ରିକାର ପ୍ରକାଶନ ଆସାମୀ ସାହିତ୍ୟରେ ଆଧୁନିକତାର ପ୍ରବାହକୁ ବାର୍ତ୍ତାବହରୂପେ ତ୍ୱରାନ୍ୱିତ କରିଥିଲା । ବିଶେଷତଃ ନବ ଜାଗୃତିର କର୍ଣ୍ଣଧାର ରୂପେ 'ଜୋନାକୀ' ପତ୍ରିକାର ଦାନ ସ୍ୱୀକାର୍ଯ୍ୟ ଏବଂ ଅସମୀୟା ସାହିତ୍ୟର ଆଧୁନିକତାର ପର୍ଯ୍ୟାୟରେ ସେ ଏକ ଦୀପସ୍ତମ୍ଭ । ପ୍ରାଚୀନ ବୈଷ୍ଣବ ଧାରା ପରିହାର କରି ପାଶ୍ଚାତ୍ୟ ଭିତ୍ତିରେ

ଏହି ନବ ଯୁଗର ସୂତ୍ରପାତ ହେଲା । ନୂତନ ଆଦର୍ଶ, ନୂତନ ଆଭିମୁଖ୍ୟ, ନୂତନ ମୂଲ୍ୟବୋଧ ଏବଂ ବୈପ୍ଳବିକ ଚିନ୍ତାଧାରା "ଜୋନାକୀ" ପତ୍ରିକାର ସ୍ୱାତନ୍ତ୍ର୍ୟ ଏବଂ ଏହାର ବିଶିଷ୍ଟ ପ୍ରତିଷ୍ଠାତାଙ୍କ ମଧ୍ୟରେ ଲକ୍ଷ୍ମୀନାଥ ବେଜ ବରୁଆ (୧୮୬୮-୧୯୩୮), ଚନ୍ଦ୍ରକୁମାର ଅଗରୱାଲ (୧୮୬୭-୧୯୩୮) ଓ ହେମଚନ୍ଦ୍ର ଗୋସ୍ୱାମୀଙ୍କର (୧୮୭୨-୧୯୨୮) ନାମ ସ୍ମରଣୀୟ । ଏମାନଙ୍କୁ ଆଧୁନିକ ଅସମୀୟା ସାହିତ୍ୟର ସ୍ରଷ୍ଟା କୁହାଯାଏ । ଏହି ଗୋଷ୍ଠୀର ଶକ୍ତିଶାଳୀ କବି ସାହିତ୍ୟ ସମ୍ରାଟ୍ ଲକ୍ଷ୍ମୀନାଥଙ୍କର ଛନ୍ଦୋମୟ ମନୋଜ୍ଞ ଗୀତିଧର୍ମୀ କବିତା ଗୁଚ୍ଛ ଆସାମର ଜାତୀୟ ସଙ୍ଗୀତ ରୂପେ ଆଦୃତ ହୋଇଥିଲା । ତାଙ୍କର "ବରଗୀ ଅରୁ ବୀଣା" କବିତାରେ କାମରୂପର ତେଜୋଦୀପ୍ତ ରୂପଶିଖା ପ୍ରତିଫଳିତ । ଗ୍ରାମ୍ୟ ଜୀବନର ସୌନ୍ଦର୍ଯ୍ୟ ଓ ସାମାଜିକ ଜୀବନ ଚିତ୍ରଣ କରିବାର ଯେଉଁ ଅପୂର୍ବ ଦକ୍ଷତା ତାହା ତାଙ୍କର ଏକାଧିକ ପ୍ରବନ୍ଧ ରଚନାରେ ପ୍ରତିଫଳିତ ଏବଂ ତାହାହିଁ ତାଙ୍କର କୃତିତ୍ୱ । ଚାର୍ଲ୍‌ସ ଡିକେନ୍‌ସଙ୍କ "ପିକ୍‌ଉଇକ୍ ପେପରସ୍" ଅବଲମ୍ବନରେ ଲିଖିତ "କୃପାବର ବଡ଼ ବରୁଆର କାକତର ଟୋପୋଲା" (କୃପାବର ବରୁଆର କାଗଜ ବସ୍ତା), "କୃପାବର ବଡ଼ ବରୁଆର ଅଭୋତାନି" (ବଡ଼ ବରୁଆର ସାଂପ୍ରତିକ ଚିନ୍ତା), "ବଡ଼ ବଡ଼ୁଆର ଭାବର ବୁରବୁରଣି" (ବଡ଼ ବଡ଼ୁଆର ଚିନ୍ତା ବୁଦ୍‌ବୁଦ୍) ନାମକ ଗ୍ରନ୍ଥ ସମୂହରେ ତାଙ୍କର ସାର୍ଥକ ବ୍ୟଙ୍ଗ, ହାସ୍ୟ ରସାତ୍ମକ ଦୃଷ୍ଟିକୋଣ ଯେପରି ଉଦ୍ଦୀପ୍ତ ସେପରି ତାଙ୍କର ଆସାମ ସମାଜର ଅନୁଷ୍ଠାନ, ବ୍ୟକ୍ତି ଏବଂ ଚରିତ୍ର ଅଧ୍ୟୟନ ଏବଂ ଉପସ୍ଥାପନା ଶୈଳୀ ଅତୁଳନୀୟ । ତାଙ୍କର "ନୋମଲ" ଏବଂ "ପଗୃନୀ" ନାମକ ଦୁଇଟି କ୍ଷୁଦ୍ର ରଚନାରେ ଏକାନ୍ତ ଗ୍ରାମ୍ୟ ଚରିତ୍ର ଚିତ୍ରିତ । ଛୋଟ ଛୋଟ ଘଟଣାକୁ କେନ୍ଦ୍ର କରି ତାଙ୍କର ବ୍ୟଙ୍ଗାତ୍ମକ ରଚନାସମୂହ ରସୋତ୍ତୀର୍ଣ୍ଣ ହୋଇ ପାରିଥିଲା । ସାହିତ୍ୟର ପ୍ରତ୍ୟେକ ପର୍ଯ୍ୟାୟରେ ତାଙ୍କର ଲେଖନୀର ଉଷ୍ଣତା ଅନୁଭୂତ ହୁଏ । ତାଙ୍କର "ଅସମୀୟା ଜାତି ଡାଙ୍ଗର ଜାତି" ଶୀର୍ଷକ ପ୍ରବନ୍ଧରେ ସେ ଯେପରି ଆସାମର ବ୍ୟଙ୍ଗାତ୍ମକ ଏବଂ ହାସ୍ୟରସାତ୍ମକ ଆଲେଖ୍ୟ ପ୍ରଦାନ କରିଛନ୍ତି ତାହା ପଢ଼ିଲେ ଯେ କେହି ପାଠକ ହସି ହସି ଗଡ଼ିଯିବ । ଯଥା :—

"ଆମର ନାଇକି, ଉମାନନ୍ଦ ଆଛେ କାମାଖ୍ୟା ଆଛେ
ଜୟ ସାଗରେର ଜଲ ଆଛେ, ଶିବ ସାଗରେର ଦଲ ଆଛେ
ଅସମୀୟା ସେକସ୍‌ପିୟର ଆଛେ, ଅସମୀୟା ସେଲି ଆଛେ ।"

ଏଥିରୁ ତାଙ୍କର ବ୍ୟଙ୍ଗାତ୍ମକ ଦୃଷ୍ଟିକୋଣ ଏବଂ ପ୍ରଖର ଶିଳ୍ପୀ ଚେତନା ଅନୁମେୟ । ଜୀବନର ଅଧିକାଂଶ ସମୟ ସେ ହାଓଡ଼ା ଓ ଓଡ଼ିଶାର ସମ୍ବଲପୁର-ଠାରେ ଅତିବାହିତ କରିଥିଲେ । ତାଙ୍କର "ଆମର ଜନ୍ମଭୂମି", 'ମୋରଦେଶ' ଓ "ବରଗୀ ଅରୁ ବୀଣା" କବିତାରେ ଜାତୀୟତାବୋଧର ମଧୁର ସ୍ୱପ୍ନ ରସାଣିତ । ଐତିହାସିକ ନାଟକ 'ବେଲିମାର', 'ଚକ୍ରଧ୍ୱଜ ସିଂହ'ରେ ଯଥାକ୍ରମେ କାମରୂପର

ସ୍ୱାଧୀନତାର ସୂର୍ଯ୍ୟାସ୍ତ ଓ ରାଜାରାମଙ୍କ ପରାଜୟ ବର୍ଣ୍ଣିତ । ହେମଚନ୍ଦ୍ରଙ୍କର ଚତୁର୍ଦ୍ଦଶ-ପଦୀ କବିତାଚୟ ଐତିହାସିକ କଥାବସ୍ତୁ ସମ୍ବଳିତ ଗଦ୍ୟରଚନା ଅସମୀୟା ସାହିତ୍ୟରେ ନୂତନ ପ୍ରେରଣା ସୃଷ୍ଟି କରିଥିଲା । ଅଜସ୍ର ଚତୁର୍ଦ୍ଦଶ ପଦୀ କବିତା, ଗୀତିକବିତା, ଐତିହାସିକ ତଥ୍ୟ ସମ୍ବଳିତ ମନୋଜ୍ଞ ଗଦ୍ୟରଚନା ଆଜୀବନ ସାହିତ୍ୟସାଧକ ହେମଚନ୍ଦ୍ରଙ୍କର କୃତିତ୍ୱ । ତାଙ୍କର ସରାଇଘାଟ ଯୁଦ୍ଧର ବର୍ଣ୍ଣନା ପାଠକଲେ ପାଠକ ଦେଶାତ୍ମବୋଧ ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇଯାଏ । ସେ ଏକାଧିକ୍ରମେ ରୋମାଣ୍ଟିକ କାବ୍ୟ ଆନ୍ଦୋଳନର ପୁରୋଧା ଏବଂ ଉଚ୍ଚକୋଟୀର ଗବେଷକ । ପ୍ରାଚୀନ ଅସମୀୟା ସାହିତ୍ୟରେ ତାଙ୍କର ଅଗାଧ ପ୍ରବେଶ ଥିଲା । ତାଙ୍କର "ଏହି ମୋର ଆପନାର ଦେଶ" ଶୀର୍ଷକ ସଙ୍ଗୀତ ଆସାମର ଜାତୀୟ ସଙ୍ଗୀତ ରୂପେ ଗୃହେ ଗୃହେ ପ୍ରତିଧ୍ୱନିତ ।

ଚନ୍ଦ୍ରକୁମାର ଅଗରୱାଲ ମୁଖ୍ୟତଃ ରୋମାଣ୍ଟିକ କବି । ମାନବ ଏବଂ ମାତୃଭୂମିର ଜୟଗାନ ତାଙ୍କ କବିତାରେ ପ୍ରତିଧ୍ୱନିତ ହୋଇଥିଲା । ତାଙ୍କ କବିତାର ଦର୍ଶନ ଥିଲା ମାନବ ଜୀବନର ଓ ପ୍ରକୃତିର ସହାନୁଭୂତିଶୀଳ ପର୍ଯ୍ୟବେକ୍ଷଣ ଏବଂ ଅନାଗତ ଶୁଭ୍ର ଜୀବନର ସନ୍ଧାନ । ତାଙ୍କର ଦୀର୍ଘ କବିତା "ବୀଣା ବରଗୀ"ରେ ମନୁଷ୍ୟ ଠାରେ କବି ପ୍ରାଣର ଅନନ୍ତ ବିଶ୍ୱାସ ହିଁ ପ୍ରତିଫଳିତ । "ଅସମୀୟା" ସାପ୍ତାହିକ ପତ୍ରିକା (୧୯୧୮)ର ସେ ସମ୍ପାଦକ ଥିଲେ । 'ପ୍ରତିମା' 'ସନ୍ଧ୍ୟା', 'ପ୍ରକୃତି', 'ମାଆସ', 'ବନକୁମାରୀ' ଓ ତାଙ୍କର ଏକ ଏକ ସାର୍ଥକ କବିତା ସଙ୍କଳନ । ଜୋନାକୀ ଗୋଷ୍ଠୀର ଲେଖକମାନେ ଭାବ ବିଦ୍ରୋହର ମୂର୍ତ୍ତି ପ୍ରତୀକ ଥିଲେ । ସେମାନେ ନୂତନ ଆଦର୍ଶ, ନୂତନ ମୂଲ୍ୟବୋଧର ଉପାସକ ଥିଲେ ମଧ୍ୟ ବ୍ୟର୍ଥ ଅନୁକରଣର ପକ୍ଷପାତୀ ନ ଥିଲେ । 'ଜୋନାକୀ' ଆସାମର ସାଂସ୍କୃତିକ ଓ ସାହିତ୍ୟିକ କ୍ଷେତ୍ରରେ ବୈପ୍ଳବିକ ଯୁଗାନ୍ତର ପାଇଁ ଦାୟୀ । ଅସମୀୟା ଭାଷାରେ 'ଜୋନାକୀ'ର ଅର୍ଥ ଚନ୍ଦ୍ର କିରଣ ।

ନବଯୁଗ ପ୍ରାରମ୍ଭରେ ଲିଖିତ କବିତା ପ୍ରାଚୀନ କୀର୍ତ୍ତନ ଏବଂ ଅନ୍ୟାନ୍ୟ ରଚନାବଳୀର ପରମ୍ପରାର ନିଗଡ଼ ବନ୍ଧନରୁ ମୁକ୍ତ ହୋଇପାରି ନ ଥିଲା । ରମାକାନ୍ତ ଚୌଧୁରୀଙ୍କର "ଅଭିମନ୍ୟୁ ବଧ କାବ୍ୟ" (୧୮୭୫), ଅମିତ୍ରାକ୍ଷର ବଙ୍ଗ କବି ମାଇକେଲ ମଧୁସୂଦନ ଦତ୍ତଙ୍କ ଶୈଳୀରେ ପରିକଳ୍ପିତ ହୋଇଥିଲା । ଏହାପରେ ଶକ୍ତିଶାଳୀ କବି ଭୋଳାନାଥ ଦାସଙ୍କ (୧୮୫୮-୧୯୨୯) "ସୀତା ହରଣ କାବ୍ୟ" (୧୮୮୮) ପ୍ରକାଶିତ ହେଲା । ଉଜ୍ଜ୍ୱଳ ଦେଶପ୍ରେମ, ବ୍ୟକ୍ତି-ପ୍ରତିଷ୍ଠାର ଜୟଗାନ ତାଙ୍କ କବିତାର ସ୍ୱର । ତାଙ୍କ ରଚନାରେ ମଧୁସୂଦନ ଓ ହେମଚନ୍ଦ୍ରଙ୍କର ପ୍ରଭାବ ସ୍ପଷ୍ଟ ।

"ଆସାମ କେବଳ ଆଜିଓ ନନ୍ଦିତ
ଆସାମ କେବଳ ଆଜିଓ ଘୃଣିତ"
ନାହିଁ ବିଦ୍ୟାଗୁଣ ଶିଳ୍ପେ ଅନିପୁଣ
ନାମ ମାତ୍ର କୃଷି ବାଣିଜ୍ୟ ନାଇ

ନାହିଁ ଉଦାରତା ନାହିଁ ସହିଷ୍ଣୁତା
ନାହିଁ କି ମମତା ପରୋପକାରତା
ଆଛେ ଅହିଫେନ ଚିର ଦରିଦ୍ରତା
ଛି ଛି ଅସମୀୟା ଉଠା ଉଠା ଉଠ
ଚିର ନିଦ୍ରା ଏଡ଼ି ମେଲି ଚକ୍ଷୁ ଦୁଟି ।"

ଏହି କବିତାରେ କବିଙ୍କର ବିଶ୍ୱସ୍ତ ସ୍ୱଦେଶାନୁରାଗର ମୂର୍ଚ୍ଛନା ପ୍ରତିଧ୍ୱନିତ ।

ଆଧୁନିକ କାବ୍ୟ କବିତା କ୍ଷେତ୍ରରେ ବିଶେଷତଃ ଅମିତ୍ରାକ୍ଷର ଛନ୍ଦରେ ହିତେଶ୍ୱର ବଡ଼ବରୁଆଙ୍କର ଦାନ ସ୍ୱୀକାର୍ଯ୍ୟ । ମେଘନାଦ ବଧ (୧୯୦୪) ଓ 'ଭାଗ୍ୟ ପରୀକ୍ଷା'ର କବି ଚନ୍ଦ୍ରଧର ବରୁଆଙ୍କୁ ସେ ଅନୁକରଣ କରିଥିଲେ ମଧ୍ୟ ତାଙ୍କର ବୈଶିଷ୍ଟ୍ୟ ପରିଲକ୍ଷିତ । କାମତାପୁର ଧ୍ୱଂସ ଅରୁବିରହିଣୀ ବିଳାପ ପ୍ରକାଶ (୧୯୧୨) ତାଙ୍କର ଅମିତ୍ରାକ୍ଷରରେ ଲିଖିତ ଏକ ପ୍ରସିଦ୍ଧ ଐତିହାସିକ କାବ୍ୟ । କତିପୟ ଚତୁର୍ଦ୍ଦଶପଦୀ କବିତା ମଧ୍ୟ ତାଙ୍କର କାବ୍ୟ କୃତିତ୍ୱର ପ୍ରମାଣ ଦିଏ ।

ସାଦରୀ (୧୯୧୦)—ଓ କେତକୀ (୧୯୨୩) ପ୍ରଭୃତି ଦୀର୍ଘ ଗୀତ-କବିତାର ଲେଖକ ଆସାମର ସ୍ମରଣ କବି ରଘୁନାଥ ଚୌଧୁରୀ (୧୮୭୯) ଆଧୁନିକ ଯୁଗର ଶକ୍ତିଶାଳୀ କବି । ମୁଖ୍ୟତଃ ଗ୍ରାମ୍ୟଜୀବନର ସୌନ୍ଦର୍ଯ୍ୟ ବର୍ଣ୍ଣନାରେ ତାଙ୍କ କାବ୍ୟ ସୃଷ୍ଟି ରସୋତ୍ତୀର୍ଣ୍ଣ । 'ସାଦରୀ'ରେ ଆସାମର ଦୁଃଖ ଦରିଦ୍ର ବର୍ଣ୍ଣିତ ଓ କେତକୀ (୧୮୮୫) ଭାରତୀୟ ପକ୍ଷୀର ବର୍ଣ୍ଣନାରେ ପୂର୍ଣ୍ଣ ।

ଅମ୍ବିକାଗିରି ଚୌଧୁରୀ (୧୮୮୬) କବି ଓ ସଙ୍ଗୀତଜ୍ଞ ରୂପେ ପରିଚିତ । 'ଗ୍ରାମଧେନୁ' ନାମକ ଆସାମୀ ପତ୍ରିକାରେ କବି ନିଜକୁ ବିଦ୍ରୋହୀ ଏବଂ ସନ୍ତ୍ରାସବାଦୀ ବୋଲି ଘୋଷଣା କରିଥିଲେ । ଅଥଚ ପ୍ରଥମାବସ୍ଥାରେ ତାଙ୍କ କବିତାର ଉପଜୀବ୍ୟ ଥିଲା ପ୍ରେମ ଓ ଯୌବନ । 'ତୁମି' (୧୯୧୫) ଓ "ବୀଣା" ତାଙ୍କର ଶ୍ରେଷ୍ଠ ପ୍ରେମ କାବ୍ୟ ।

ରାଜନୈତିକ କ୍ଷେତ୍ରରେ ଗିରି ଚୌଧୁରୀ ଜେଲ ବରଣ କରିଥିଲେ ଏବଂ ଜେଲରେ ଲିଖିତ ତାଙ୍କର କବିତା ସମୂହ ଜ୍ୱାଳାମୟୀ ଉଦ୍ଦୀପନାର ପ୍ରତୀକ । ତାଙ୍କର କେତେକ କବିତା ଇଂରାଜୀରେ ଅନୂଦିତ ହୋଇଥିଲା ଯଥା "Song of the cell"

'ଜୋନାକୀ' ଯୁଗର ପରବର୍ତ୍ତୀ କବି ରଘୁନାଥ ଚୌଧୁରୀ, ହିତେଶ୍ୱର ବରୁଆ (୧୮୭୬—୧୯୩୯) ଏବଂ ଅମ୍ବିକାଗିରି ଚୌଧୁରୀଙ୍କ ପରେ ଆଧୁନିକ ଯୁଗର କବି ହେଉଛନ୍ତି ଲକ୍ଷ୍ମୀନାଥ ଫୁକନ୍, ସୂର୍ଯ୍ୟକୁମାର ଭୂୟାଁ, ନଳିନୀବାଳା ଦେବୀ (୧୮୯୯), ଗଣେଶ ଚନ୍ଦ୍ର ଗଗୋଇ, ଡମ୍ବେଶ୍ୱର ନଓଗ, ବିନନ୍ଦଚନ୍ଦ୍ର ବରୁଆ, ଯତୀନ୍ଦ୍ରନାଥ ଦୁଆର, (୧୮୯୨) । ଶୈଳଧର ରାଜଖୋୱା, ଧର୍ମେଶ୍ୱରୀ ଦେବୀ, ଅତୁଲଚନ୍ଦ୍ର ହାଜାରିକା । ଯତୀନ୍ଦ୍ରନାଥଙ୍କର "କଥାକବିତା", "ଓମାର ତୀର୍ଥ" ପ୍ରଭୃତି ରଚନାରେ ପ୍ରେମର ଗଭୀର ପାର୍ଥକ୍ୟ ପରିଦୃଷ୍ଟ । ବିନନ୍ଦ ଚନ୍ଦ୍ର ଓ ଡମ୍ବେଶ୍ୱର ଯଥାକ୍ରମେ ଜାତୀୟତାବାଦ ଓ

ବର୍ଣ୍ଣନାତ୍ମକ କବିତା ଲେଖିଥିଲେ । ସୂର୍ଯ୍ୟକୁମାର ଭୂୟାଁଙ୍କର "ଅପନସୁର" ଏକ ସମ୍ବୋଧନମୂଳକ ଦୀର୍ଘ କବିତା । ଶୈଳଧରଙ୍କର ଦେଶାତ୍ମବୋଧ ଗୀତିକବିତା ଏବଂ ଗଣେଶ ଚନ୍ଦ୍ରଙ୍କର 'ପାପଡ଼ି' ପ୍ରେମଧର୍ମୀ ଦୀର୍ଘ କବିତା ଉଲ୍ଲେଖଯୋଗ୍ୟ । ଏହି ଯୁଗର କବିତାରେ ସାଧାରଣତଃ ବ୍ୟକ୍ତି-ସ୍ୱାତନ୍ତ୍ର୍ୟ, ଦୃଷ୍ଟିଭଂଗୀ ଓ ବିଷୟବସ୍ତୁଗତ ନୂତନତା ପ୍ରତିଫଳିତ ।

**ଉପନ୍ୟାସ ଓ ଗଳ୍ପ**—ଉନବିଂଶ ଶତାବ୍ଦୀର ଶେଷଭାଗ ଓ ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ପ୍ରଖ୍ୟାତ ଔପନ୍ୟାସିକ ଭାବରେ ପଦ୍ମନାଥ ଗୋହେନ ବରୁଆ ଓ ରଜନୀକାନ୍ତ ବର୍ଦ୍ଦୋଲଇଙ୍କର (୧୮୬୭-୧୯୩୯) କଥାଶିଳ୍ପ ବେଶ ଆଦୃତ ହୋଇଥିଲା । ଗୋହେନଙ୍କର ଐତିହାସିକ ଉପନ୍ୟାସ 'ଭାନୁମତୀ' (୧୮୯୩) ଲହରୀ (୧୮୯୦) ଅହମ୍ ରାଜତ୍ୱର ପୃଷ୍ଠଭୂମିରେ ଲିଖିତ, ପୁନଶ୍ଚ ତିନି ଭାଗରେ ସମ୍ପନ୍ନ, ବିରାଟ ଜୀବନୀ ଗ୍ରନ୍ଥ "ଶ୍ରୀକୃଷ୍ଣ", ଓ ଅନ୍ୟାନ୍ୟ ଜୀବନୀ ରଚନା ତାଙ୍କର ବଳିଷ୍ଠ ଗଦ୍ୟ ଶୈଳୀର ପ୍ରତୀକ । ମାସିକ ପତ୍ର 'ଉଷା' ଓ ସାପ୍ତାହିକ 'ବନ୍ତିର'ର ସେ ଯୋଗ୍ୟ ସମ୍ପାଦକ ଥିଲେ । ଏକ ପ୍ରାମାଣିକ ଗଦ୍ୟଶୈଳୀ ତାଙ୍କର ବୈଶିଷ୍ଟ୍ୟ । ଐତିହାସିକ ଉପନ୍ୟାସ ଭାବରେ "ଭାନୁମତୀ" ବିନେ ଲୋକପ୍ରିୟତା ଅର୍ଜନ କରି ପାରିଥିଲା । ଆସାମ ସାହିତ୍ୟରେ ପ୍ରଥମ ବିଶିଷ୍ଟ ଔପନ୍ୟାସିକ ହେଉଛନ୍ତି ରଜନୀକାନ୍ତ ବର୍ଦ୍ଦୋଲଇ (୧୮୬୭-୧୯୩୯) । ତାଙ୍କର ରଚନାର ସଂଖ୍ୟା ଅଧିକ । ସେ ମଧ୍ୟ ଆସାମର ପ୍ରାଚୀନ ଇତିହାସ ବିଶ୍ଳେଷଣ କରି ବହୁ ଉପନ୍ୟାସ ଲେଖିଥିଲେ "ମିରଜିଆରୀ" (୧୮୯୦), 'ମନୋମତୀ' (୧୯୦୦), ରହଦୋଇଲଗିରୀ (୧୯୦୦) । ପ୍ରଥମ ଉପନ୍ୟାସ ଏକ ଆଦିବାସୀ ଯୁବକ ମିରୀ ଓ ଯୁବତୀ ମିରୀର ପ୍ରେମାଭିନୟ ଓ କରୁଣ ପୃଷ୍ଠଭୂମିରେ ପରିକଳ୍ପିତ, ଅନ୍ୟ ଦୁଇଖଣ୍ଡି ବର୍ମୀମାନଙ୍କର ଆସାମ ଆକ୍ରମଣକୁ କେନ୍ଦ୍ର କରି ଲିଖିତ । ଅଷ୍ଟାଦଶ ଶତାବ୍ଦୀର ଏକ ରାଜନୈତିକ ଆନ୍ଦୋଳନକୁ କେନ୍ଦ୍ରକରି ତାଙ୍କର "ଦଣ୍ଡୁଆ ଦ୍ରୋହ" (୧୯୦୯) ଉପନ୍ୟାସଟି ଲିଖିତ । ବର୍ଦ୍ଦୋଲଇଙ୍କ ଐତିହାସିକ ଉପନ୍ୟାସ ରଚନା ଉଭୟ ଇଂରାଜୀ ଲେଖକ ସ୍କଟ୍ ଏବଂ ବଙ୍ଗଳା ଔପନ୍ୟାସିକ ବଙ୍କିମଚନ୍ଦ୍ରଙ୍କ ଦ୍ୱାରା ପ୍ରଭାବିତ । ସେ ନିଜ ଜନ୍ମଭୂମିର ଘଟଣାବହୁଳ ରାଜନୈତିକ ଇତିହାସ ତଥା ପ୍ରାକୃତିକ ସୌନ୍ଦର୍ଯ୍ୟ ଦ୍ୱାରା ଉଦ୍‌ବୁଦ୍ଧ ହୋଇଥିଲେ । ଆସାମ ଜନସାଧାରଣଙ୍କର ଐତିହାସିକ ବୀରତ୍ୱ, ଗୌରବମୟ କାହାଣୀ ତାଙ୍କର ଐତିହାସିକ ରୋମାନ୍ସଧର୍ମୀ ପୁସ୍ତକମାନଙ୍କରେ ପ୍ରତିଫଳିତ । ପରବର୍ତ୍ତୀ କାଳରେ ଦୈବଚନ୍ଦ୍ର ତାଲୁକଦାର, ଦଣ୍ଡୀନାଥ କଲିତା, ଔପନ୍ୟାସିକ ଭାବେ ପ୍ରସିଦ୍ଧି ଅର୍ଜନ କରିଥିଲେ । କ୍ରମବର୍ଦ୍ଧିଷ୍ଣୁ ସଂଘର୍ଷବହୁଳ ସମାଜ ଓ ତହିଁରେ ନରନାରୀଙ୍କର ସମ୍ପର୍କ ଏମାନଙ୍କ ଉପନ୍ୟାସର ମୁଖ୍ୟ କଥାବସ୍ତୁ । ତାଲୁକଦାରଙ୍କ ଉପନ୍ୟାସ ଯଥା "ଆଦର୍ଶପୀଠ" ରେ ଗାନ୍ଧୀବାଦର ପ୍ରଭାବ ପ୍ରତିଫଳିତ । କଲିତାଙ୍କର (ଆସାମ ସାହିତ୍ୟସଭା ଦ୍ୱାରା ପୁରସ୍କୃତ) "ସାଧନା"

(୧୯୨୮) ଉପନ୍ୟାସ ମଧ୍ୟ ଏହି ଆଦର୍ଶରେ ଅନୁପ୍ରାଣିତ । ଲକ୍ଷ୍ମୀନାଥ ବେଜ୍‌ବରୁଆଙ୍କର 'ପଦ୍ମକୁମାରୀ' ଉପନ୍ୟାସ ପ୍ରାକ୍ ଆଧୁନିକ ଯୁଗର ରଚନା ।

ସ୍ନେହଲତା ଭଟ୍ଟାଚାର୍ଯ୍ୟ, ସୁପ୍ରଭା ଗୋସ୍ୱାମୀଙ୍କର ଉପନ୍ୟାସ ଯଥାକ୍ରମେ "ବୀଣା" ଏବଂ "ପଚେଓ୍ୱାବଟାହ"ରେ ମଧ୍ୟବିତ୍ତ ଶ୍ରେଣୀର ଜୀବନ ଚିତ୍ରିତ । ବୀଣା ବରୁଆ, ଲକ୍ଷ୍ମୀଧର ଶର୍ମା ପ୍ରଭୃତିଙ୍କ ଉପନ୍ୟାସରେ ଆସାମର ସାମାଜିକ ଏବଂ ଗ୍ରାମ୍ୟ ଜୀବନ ବର୍ଣ୍ଣିତ । 'ସାଧନା' ଉପନ୍ୟାସ ବ୍ୟତୀତ ୧୯୪୦ ମସିହା ପର୍ଯ୍ୟନ୍ତ ଆସାମଭାଷାରେ ସେମିତି ଉଲ୍ଲେଖଯୋଗ୍ୟ ଉପନ୍ୟାସ ପ୍ରକାଶିତ ହୋଇ ନଥିଲା । ଦୀନନାଥ ଶର୍ମାଙ୍କର ଉପନ୍ୟାସ "ଉଷା" (୧୯୩୩) ଏକ ପ୍ରେମାତ୍ମକ କାହାଣୀ; ବୀଣା ବଡ଼ୁଆଙ୍କର "ଜୀବନର ବଟାହ" (୧୯୪୮) ଏକ ସାର୍ଥକ କୃତୀ; ନାୟକ କମଳାକାନ୍ତ ଗ୍ରାମ୍ୟ-ବାଳିକା ଡଗରର ପ୍ରେମ କାହାଣୀକୁ କେନ୍ଦ୍ରକରି ଏହି ଗ୍ରାମଧର୍ମୀ ଉପନ୍ୟାସଟି ରଚିତ । କଂଗ୍ରେସର 'ଅଗଷ୍ଟ ବିପ୍ଲବ' ତରୁଣ ଔପନ୍ୟାସିକମାନଙ୍କୁ ଉଦ୍‌ବୁଦ୍ଧ କରିପାରିଥିଲା ।

ବୀରେନ୍ ଭଟ୍ଟାଚାର୍ଯ୍ୟଙ୍କର 'ରାଜପଥେ ରଙ୍ଗିୟାୟ' ଜନୈକ ବିପ୍ଳବୀର ସ୍ୱପ୍ନକୁ କେନ୍ଦ୍ର କରି ଲିଖିତ ଦୀନନାଥ ଶର୍ମାଙ୍କର "ସଂଗ୍ରାମ", ଯୋଗେଶ ଦାସଙ୍କର "ଡଓ୍ୱାର ଅରୁନାଇ" ଆଧୁନିକ ରାଜନୀତି ତଥା ସଂଘର୍ଷବହୁଳ ଜୀବନର କରୁଣ-ସଂକେତ ବହନ କରିଅଛି । ଶର୍ମାଙ୍କର "ଶାନ୍ତି" ଉପନ୍ୟାସରେ ସ୍ତ୍ରୀ ଏବଂ ପୁରୁଷଙ୍କ ସମ୍ପର୍କ କିପରି ସମାଜଦ୍ୱାରା ପ୍ରଭାବିତ ତାହାହିଁ ପ୍ରଦର୍ଶିତ । ରମ୍ଭା ବଡ଼ୁଆଙ୍କର "ସେଉଜ ପତର କାହାଣୀ' ଆସାମ ଚା ବଗିଚାର ଶ୍ରମିକମାନଙ୍କର ଜୀବନକୁ କେନ୍ଦ୍ର କରି ଲିଖିତ ପ୍ରଥମ ସାର୍ଥକ ଉପନ୍ୟାସ । ଗାଳଜଆ ଦାଲଦା, ଗର୍କି, ହାମସନ୍‌ଙ୍କ ଉପନ୍ୟାସ ଅସମୀୟାରେ ଅନୁଦିତ ହୋଇଛି । ବୀରେନ୍ ଭଟ୍ଟାଚାର୍ଯ୍ୟଙ୍କର "ଇୟାରଇଙ୍ଗ" ପାର୍ବତୀୟ ନାଗାମାନଙ୍କ ଦୁର୍ଦ୍ଧର୍ଷ ଜୀବନର ଏକ ଆଲେଖ୍ୟ । ଅବଦୁଲ ମଲ୍ଲିକଙ୍କର "ସୂର୍ଯ୍ୟମୁଖୀର ସ୍ୱପ୍ନ" ଏକ ମୁସଲମାନ ଗ୍ରାମର ବିଶ୍ୱସ୍ତ ଚିତ୍ର । ତରୁଣ ଔପନ୍ୟାସିକ ପ୍ରଫୁଲ୍ଲ ଦତ୍ତ ଗୋସ୍ୱାମୀଙ୍କର "କେଚା ପତର କପାନି", ରାଧିକା ମୋହନ ଗୋସ୍ୱାମୀଙ୍କର "ଚାକନାୟା", ସୁରେଶ ଗୋସ୍ୱାମୀଙ୍କର "ଶତରଙ୍ଗର ନୂତନ କରେଙ୍ଗ" (ସପ୍ତରଙ୍ଗର ରାଜ୍ୟ), ସଦା ମଙ୍ଗଲଙ୍କର "ସୋନାପୁର", ପଶୁପତି ଭରଦ୍ୱାଜଙ୍କର "ଉରନ୍ତା ମେଘର ଛାଁ" ଏବେକାଳର ବାସ୍ତବଧର୍ମୀ କୃତୀ । ଅସମୀୟା ଭାଷାରେ କ୍ଷୁଦ୍ରଗଳ୍ପର ଉତ୍ପତ୍ତି ମୁଖ୍ୟତଃ ଅନୁବାଦ ଏବଂ ନୀତିଗଳ୍ପ ସହିତ ଜଡ଼ିତ । ଆଧୁନିକ ଗଳ୍ପଲେଖକ ରୂପେ ବେଜବରୁଆଙ୍କର ନାମ ପ୍ରଥମେ ଉଲ୍ଲେଖଯୋଗ୍ୟ । ତାଙ୍କର ତିନଗୋଟି କ୍ଷୁଦ୍ରଗଳ୍ପ ସଂକଳନ, ଯଥା "ସାଧୁ-କଥାର କୁକି," "ଶୋନାବିଙ୍ଗ", 'ସୁରଭି'ରେ ଆଧୁନିକ ସମାଜର ଜୀବନଚିତ୍ର ଦେଖିବାକୁ ମିଳେ । ଆଧୁନିକ କ୍ଷୁଦ୍ର ଗଳ୍ପର ଶିଳ୍ପାତ୍ମକ ରୂପପାଇଁ ବେଜବରୁଆଙ୍କର ଦାନ ସ୍ୱୀକାର୍ଯ୍ୟ । ଶରତଚନ୍ଦ୍ର ଗୋସ୍ୱାମୀ, ଲକ୍ଷ୍ମୀଧର ଶର୍ମା, ରାମ ଦାସ, ବୀଣା ବଡ଼ୁଆ, କୃଷ୍ଣଭୂୟାଁ ପ୍ରଭୃତି ଲେଖକ ଗଳ୍ପ ସାହିତ୍ୟରେ ଖୁବ୍ ଦକ୍ଷତା ଅର୍ଜ୍ଜନ କରିଛନ୍ତି ।

ଶର୍ମାଙ୍କର ଗୋଟିଏ ଗଳ୍ପ 'ଶିରାଜ' ଚଳଚ୍ଚିତ୍ର ହୋଇ ସାରିଛି । ନଗେନ୍ଦ୍ର ନାରାୟଣ ଚୌଧୁରୀ ଏବଂ ତ୍ରୈଲୋକ୍ୟନାଥ ଗୋସ୍ୱାମୀଙ୍କ ଗଳ୍ପରେ ଏକ ତୀବ୍ର ସାମାଜିକ ଚେତନା ପ୍ରତିଫଳିତ । ମହୀଚନ୍ଦ୍ର ବରା, ଲକ୍ଷ୍ମୀନାଥ ଫୁକନ୍‌ଙ୍କ କ୍ଷୁଦ୍ରଗଳ୍ପ ହାସ୍ୟରସାତ୍ମକ ଏବଂ ହଲିରାମ ଡେକାଙ୍କ ଗଳ୍ପ ବ୍ୟଙ୍ଗ ବିଦ୍ରୂପରେ ପୂର୍ଣ୍ଣ ।

ଶକ୍ତିଶାଳୀ ଗଳ୍ପଲେଖକଭାବେ ଅବଦୁଲ ମାଲିକ, କେଶବ ମହାନ୍ତ, ମାଣିକ ଦାସ ଏବଂ ବୀରେନ୍ଦ୍ର ଭଟ୍ଟାଚାର୍ଯ୍ୟ ପାଠକମାନଙ୍କ ନିକଟରେ ପରିଚିତ । ନୂତନ ଆଂଶିକ ବିଷୟବସ୍ତୁ ବୈଚିତ୍ର୍ୟ ଗଭୀର ମାନବବୋଧ ଆଧୁନିକ ଗଳ୍ପର ମୂଳ ପ୍ରେରଣା । ଏକ ବୌଦ୍ଧିକ ଦୃଷ୍ଟିକୋଣ ଆଧୁନିକ ଅସମୀୟା ଉପନ୍ୟାସ ଓ ଗଳ୍ପରେ ପ୍ରତୀକାତ୍ମକ ଭାଷାରେ ପ୍ରତିଫଳିତ ।

ଅତୁଲଚନ୍ଦ୍ର ହାଜାରିକାଙ୍କର ପୌରାଣିକ ନାଟକ ଏବଂ ବେଣୁଧର ରାଜକୋୟାଙ୍କର ସାମାଜିକ ନାଟକ ଆଧୁନିକ ଅସମୀୟା ନାଟ୍ୟ ସାହିତ୍ୟର ବିକାଶପଥ ଉନ୍ମୁକ୍ତ କରିଥିଲା ।

ହେମଚନ୍ଦ୍ର ବଡ଼ୁଆଙ୍କର "କନୟାକୀର୍ତ୍ତନ" ଏବଂ ଗୁଣାଭିରାମ ବଡ଼ୁଆଙ୍କର 'ରାମନବମୀ' ନାଟକ ଆଦର୍ଶରେ ବେଣୁଧରଙ୍କ "ତନପଇନ" (ତନସ୍ୱୀ), ଗୋହେନ୍ ବଡୁଆଙ୍କର ଗାଓଁବୁଢ଼ା ( ବଙ୍ଗଳାନାଟକ ନୀଳଦର୍ପଣ ଛାୟାରେ ଲିଖିତ ), ବେଜବରୁଆଙ୍କର 'ଚକାରପତ ନକାରପତ', ବୃନ୍ଦାବନଚନ୍ଦ୍ର ଗୋସ୍ୱାମୀଙ୍କର "ଥାନୁବାପୁ" ଦୁର୍ଗାପ୍ରସାଦ ବରୁଆଙ୍କର 'ମାହାୱି' ନାଟକ ଲିଖିତ ହୋଇଥିଲା । ପୁରାଣ, ଇତିହାସ, କିମ୍ବଦନ୍ତୀ ପ୍ରଥମ ପର୍ଯ୍ୟାୟର (୧୯୧୦-୧୯୩୦) ନାଟକଗୁଡ଼ିକର ପ୍ରାଣ ପ୍ରେରଣା ଯୋଗାଇଥିଲା, ଯଥା-ରମାକାନ୍ତ ଚୌଧୁରୀଙ୍କର 'ସୀତା ହରଣ' ନାଟ ବେଜବରୁଆଙ୍କର "ଚକ୍ରଧ୍ୱଜ ସିଂହ, ବାଲମରି ଏବଂ ଦୁର୍ଗାପ୍ରସାଦ ବଡ଼ୁଆଙ୍କର ବୃଷକେତୁ" । କ୍ରମେ ନୂତନ ଦୃଷ୍ଟିଭଙ୍ଗୀ ନାଟକର ଆଙ୍ଗିକ ଓ କଥାବସ୍ତୁକୁ ପ୍ରଭାବିତ କରିଥିଲା ଏବଂ ପୂର୍ବର ଅଙ୍କିଆ ନାଟକ ସେତେ ଆଦୃତ ହେଲା ନାହିଁ । "ଥାନୁବାପୁ ଓ ମାହାୱି" ନାଟକ ଦ୍ୱୟରେ ଆସାମର ଚା ବଗିଚାର କରୁଣ ଚିତ୍ର ଦେଖିବାକୁ ମିଳେ ।

"କାରେଙ୍ଗର ଲିଗିରୀ ମହଲ-ମହଲା"ର ଲେଖକ ଜ୍ୟୋତିଷ ପ୍ରସାଦ ଅଗରୱାଲ ଆଧୁନିକ ନାଟ୍ୟକାର ରୂପେ ସୁପରିଚିତ । ତାଙ୍କର ନାଟକ ସାମନ୍ତବାଦ ବିରୁଦ୍ଧରେ ଏବଂ ରୋମାନଟିକ୍ ପୃଷ୍ଠଭୂମିରେ ଲିଖିତ ହୋଇଥିଲା । ତାଙ୍କ ନାଟକମାନଙ୍କରେ ଗଣ ସଂସ୍କୃତି, ଗଣ ଚେତନା ହିଁ ମୁଖ୍ୟ ସ୍ୱର । ଗଣନାଟ୍ୟ ଏବଂ ଲୋକ ସଙ୍ଗୀତର ପ୍ରସାରପାଇଁ ତାଙ୍କର ଦାନ ସ୍ୱୀକାର୍ଯ୍ୟ । ପୂର୍ବକାଳରେ ପୌରାଣିକ ନାଟକ ଦର୍ଶକମାନଙ୍କଦ୍ୱାରା ସେତେ ଆଦୃତ ହେଉନାହିଁ । ସମସ୍ୟାମୂଳକ ସାମାଜିକ ନାଟକର ଆଦର ଆଜି ସର୍ବାପେକ୍ଷା ଅଧିକ ଆଦୃତ । ସାମାଜିକ ନାଟକ ଲେଖକରୂପେ ମିତ୍ରଦେବ ମହାନ୍ତ ଏବଂ ରୋମାଣ୍ଟିକ ନାଟକ ରଚନାରେ କୀର୍ତ୍ତିନାଥ ଶର୍ମା ବର୍ଦ୍ଦୋଲାଇଙ୍କ

ସ୍ୱିକ୍ରି ସ୍ୱୀକୃତ । "ବାସନ୍ତୀର ଅଭିଷେକ" ତାଙ୍କର ଏକ ଗୀତକାବ୍ୟ ନାଟକ । ପ୍ରବୀଣ ବଡ଼ୁଆ ଏବଂ ସାରଦା ବର୍ଦ୍ଦୋଲାଇଙ୍କର ସମସ୍ୟାମୂଳକ ନାଟକଗୁଡ଼ିକ ଯଥା "ମାଗ୍ରୀବନ ଅଜାନ" ଆଦୃତ । ପ୍ରବୀଣ ଫୁକନଙ୍କର ନାଟ୍ୟ ରଚନାରେ ସାମାଜିକ ଆଭିମୁଖ୍ୟ ପ୍ରତିଫଳିତ । ତାଙ୍କର ସାମାଜିକ ନାଟକ 'କାଲ ପରିଣୟ' ଓ ଐତିହାସିକ ନାଟକ 'ମଣିରାମ ଦେଓ୍ୱାନ' ନାଟ୍ୟକାରମାନଙ୍କ ମଧ୍ୟରେ ଶୃଙ୍ଖଳା ସୃଷ୍ଟି କରିଅଛି ।

କମଳାନନ୍ଦ ଭଟ୍ଟାଚାର୍ଯ୍ୟଙ୍କର 'ନାଗକଓ୍ୱାର', 'ଅବସାନ' ଦୈବଚନ୍ଦ୍ର ତାଲୁକଦାରଙ୍କର 'ଆସାମପ୍ରତାପ', ପ୍ରସନ୍ନଲାଲ ଚୌଧୁରୀଙ୍କର 'ନୀଳାମ୍ବର', ନକୁଳ ଚନ୍ଦ୍ର ଭୂୟାଁଙ୍କର "ବଦନବଡ଼ଫୁକନ" ପ୍ରଭୃତି ଐତିହାସିକ ନାଟକ । ଅତୁଳ ଚନ୍ଦ୍ର ହଜାରିକଙ୍କର 'ଶ୍ରୀରାମଚନ୍ଦ୍ର,' 'କୁରୁକ୍ଷେତ୍ର' 'ବେହୁଲା' ପୌରାଣିକ ପୃଷ୍ଠ ଭୂମିରେ ଲିଖିତ । ଅସମୀୟା ନାଟ୍ୟ ସାହିତ୍ୟର ବିକାଶ ପର୍ଯ୍ୟାୟରେ ପ୍ରଥମେ ପୁରାଣ କମ୍ବଦନ୍ତୀ, ଦ୍ୱିତୀୟରେ ଇତିହାସ ଏବଂ ସାଂପ୍ରତିକ ଜାତୀୟ ଆନ୍ଦୋଳନହିଁ ରଚନାର ପୃଷ୍ଠଭୂମି ଯୋଗାଇଥିଲା । ଆଧୁନିକ ଅସମୀୟା ନାଟକ ସାମାଜିକ ବାସ୍ତବତା ଦ୍ୱାରା ଚର୍ଚ୍ଚିତ ।

ସେକ୍‌ସପିଅର୍ ପ୍ରଭୃତି ପାଶ୍ଚାତ୍ୟ ନାଟ୍ୟକାରଙ୍କର ବହୁ ନାଟକ ଅସମୀୟା ଭାଷାରେ ଏହି ଯୁଗରେ ଅନୂଦିତ ହୋଇ ସାରିଛି । ଏହି କ୍ରମରେ ଭ୍ରମରଙ୍ଗ (The comedy of errors), ଭୀମଦର୍ପ (Macbeth), ଅମରଲୀଳା (Romeo and Juliet) ପ୍ରଭୃତି ଅନୁବାଦ ଉଲ୍ଲେଖ ଯୋଗ୍ୟ ।

ଷୋଡ଼ଶ ଶତାବ୍ଦୀର ଭଟ୍ଟଦେବଙ୍କର 'କଥାଗୀତା' ଗଦ୍ୟରଚନାରୁ ଅସମୀୟା ଗଦ୍ୟସାହିତ୍ୟର ପ୍ରାଚୀନତା ସ୍ୱୀକାର୍ଯ୍ୟ । ବର୍ତ୍ତମାନ ଯୁଗରେ ଗଦ୍ୟସାହିତ୍ୟର ପ୍ରବର୍ତ୍ତକ ପ୍ରାବନ୍ଧିକ ସତ୍ୟନାଥର ବରାଙ୍କର ନାମ ସର୍ବାଗ୍ରେ ଉଲ୍ଲେଖଯୋଗ୍ୟ, ହଲିରାମ ଡେକାଙ୍କର ବ୍ୟଞ୍ଜନସ୍ଥ ଗଦ୍ୟଲେଖା, ସୂର୍ଯ୍ୟକୁମାର ଭୂୟାଁଙ୍କର ବାଣୀକାନ୍ତ କାକଟି, ବିରିଞ୍ଚି କୁମାର ବଡ଼ୁଆ ପ୍ରଭୃତଙ୍କର ଗବେଷଣା ଓ ଐତିହାସିକ ଗଦ୍ୟରଚନା ସ୍ମରଣୀୟ ସୂର୍ଯ୍ୟକୁମାର ଭୂୟାଁଙ୍କର ଅହମରା ଦନ୍, 'ଆସାମ ଫିସ୍ନାଖି', 'ବୁରଂଜୀୟା ବାଣୀ' ପ୍ରଭୃତି ଯଥାକ୍ରମେ ଇତିହାସ ସମାଲୋଚନା ତଥା ଜୀବନୀମୂଳକ ଗଦ୍ୟଗ୍ରନ୍ଥ । ବାଣୀକାନ୍ତ (୧୯୫୧) ଜଣେ ଉଚ୍ଚକୋଟୀର ସାହିତ୍ୟ ସମାଲୋଚକ ।

ରସୋତ୍ତୀର୍ଣ୍ଣ ଗଦ୍ୟ ଶୈଳୀହିଁ ତାଙ୍କର ସ୍ୱାତନ୍ତ୍ର୍ୟ । ଦୈନିକ "ବତୋରା," ମାସିକ 'ଆଲୋଚନା'ର ସମ୍ପାଦକ ନୀଳମଣି ଫୁକନଙ୍କର ଦାର୍ଶନିକ କବିତା ଓ ସାମ୍ବାଦିକ ରଚନା, ହେମକାନ୍ତ ବଡ଼ୁଆଙ୍କର ଆଧୁନିକ ସାହିତ୍ୟ ଓ ରାଜନୀତିର ସମାଲୋଚନା, ଅମ୍ବିକା ଗିରି ରାୟଙ୍କର ରାଜନୀତି ସମ୍ପର୍କୀୟ ଲେଖା କମଳାକାନ୍ତ ଭଟ୍ଟାଚାର୍ଯ୍ୟଙ୍କର ଦାର୍ଶନିକ ପ୍ରବନ୍ଧ, ଯଥା "ଗୁଟି ଦଏକ ଚନ୍ତାଚ୍ଛେଦ", ଜ୍ଞାନନାଥ ବୋରାଙ୍କର ବିଭିନ୍ନ ସମସ୍ୟାକୈନ୍ଦ୍ରିକ ପ୍ରବନ୍ଧାବଳୀଦ୍ୱାରା ଏଯୁଗର ଅସମୀୟା ଗଦ୍ୟସାହିତ୍ୟ ସମୃଦ୍ଧ । ଜୀବନୀ ସାହିତ୍ୟର ପ୍ରବର୍ତ୍ତକ ରୂପେ ହେମଚନ୍ଦ୍ର ବଡ଼ୁଆ, ଗୁଣାଭିରାମ ବଡ଼ୁଆ,

ବେଜବରୁଆ ଏବଂ ପଦ୍ମନାଥ ଗୋହେନଙ୍କର ନାମ ଉଲ୍ଲେଖଯୋଗ୍ୟ । ଦଣ୍ଡୀନାଥ କଲିତାଙ୍କର 'ଚନ୍ଦ୍ରନାଥଶର୍ମା' (୧୯୨୪), ସୂର୍ଯ୍ୟ କୁମାର ଭୂୟାଁଙ୍କର 'ଆନନ୍ଦରାମ ବଡ଼ୁଆ'(୧୯୨୦) କାମାକ୍ଷା ଚରଣ ଭଟ୍ଟାଚାର୍ଯ୍ୟଙ୍କର 'ଧିରେଶ୍ବର ଆଚାର୍ଯ୍ୟ' ଉପାଦେୟ ଜୀବନୀ ପୁସ୍ତକ ।

ଆଧୁନିକ ଶିଶୁସାହିତ୍ୟର ପ୍ରଥମ ପର୍ଯ୍ୟାୟରେ ଜାତକ, ପଂଚତନ୍ତ୍ର, ହିତୋପଦେଶର ଅନୁବାଦ ସହିତ ବିଭିନ୍ନ ପୁରାଣଗଳ୍ପ ଶିଶୁମାନଙ୍କ ପାଇଁ ଲିଖିତ ହୋଇଥିଲା । ଅସମୀୟା ଭାଷାରେ ସର୍ବପ୍ରଥମ ଶିଶୁ ପତ୍ରିକା "ଲରାବଂଧୁ"(୧୮୮୮)ରେ ଗ୍ରାମ୍ୟଗଳ୍ପ, ପକ୍ଷୀଗଳ୍ପ, ବିଭିନ୍ନ ନୀତିଗଳ୍ପ ପ୍ରକାଶିତ ହୋଇଥିଲା । ବେଜବରୁଆଙ୍କର, "ବୁଢ଼ୀଆଇର ସାଧୁ" "କାକ ଦେଉତା ଅଉର ନାତିଲାରୀ" ପ୍ରଭୃତି ଉପାଦେୟ ଶିଶୁରଚନା, ତାଙ୍କର ରଚନାଦ୍ୱାରା ପରବର୍ତ୍ତୀରେ ପ୍ରଭାବିତ ହୋଇ ନୈଲୋକ୍ୟେଶ୍ୱରୀ ଦେବୀ ଶ୍ରୀରାମଚନ୍ଦ୍ର ଦାସ ପ୍ରଭୃତି ଲେଖକ 'ଶିଶୁ ସାହିତ୍ୟ' ରଚନାରେ ମନୋନିବେଶ କରିଥିଲେ । ଅତୁଲ ଚନ୍ଦ୍ର ହାଜାରିକା, ବଳଦେବ ମହନ୍ତ ବିଷୟ ବିଶ୍ୱାସଙ୍କର ଯଥାକ୍ରମେ ମୌଳିକ ଓ ଅନୁଦିତ ଲେଖା ଉଲ୍ଲେଖଯୋଗ୍ୟ ।

ଜ୍ୟୋତି ପ୍ରସାଦ ଅଗରୱାଲା ଓ ନବକାନ୍ତ ବରୁଆ ଶିଶୁ ମାନଙ୍କପାଇଁ ଅଜବ ଗଳ୍ପ ଲେଖିଥିଲେ । 'ରଂଘର' ଶିଶୁପତ୍ରିକା ଖୁବ୍ ଲୋକ ପ୍ରିୟତା ଅର୍ଜ୍ଜନ କରି ପାରିଥିଲା । ସାମାଜିକ, ରାଜନୈତିକ ପରିପ୍ରେକ୍ଷୀ ତଥା ସାଂସ୍କୃତିକ ଐତିହ୍ୟପୂର୍ଣ୍ଣ ଅସମୀୟା ଭାଷା ଓ ସାହିତ୍ୟ ପ୍ରତ୍ୟେକ ଯୁଗରେ ଜନ ଓ ସମାଜ ସେବାରେ ସମର୍ଥ ହୋଇ ପାରିଛି ।

ବିଂଶ ଶତାବ୍ଦୀର ଆସାମ ସାହିତ୍ୟର ପ୍ରଥମ ଶକ୍ତିଶାଳୀ ଔପନ୍ୟାସିକ ରଜନୀକାନ୍ତ ବର୍ଦ୍ଦୋଲାଇଙ୍କ ପରେ ବହୁ ତରୁଣ ଲେଖକ ଉପନ୍ୟାସ ରଚନାରେ ମନୋନିବେଶ କରିଛନ୍ତି । ପୂର୍ବେ କଥିତ ହୋଇଅଛି ଯେ ପ୍ରଫୁଲ୍ଲ ଦତ୍ତଗୋସ୍ୱାମୀଙ୍କର "କେଂଚୁପତର କାପୋନ" ରାଧିକାମୋହନ ଗୋସ୍ୱାମୀଙ୍କର "ଚାକନୈୟା" ମଥୁରା ଡେକାଙ୍କର "ହିମୁନୈୟା" ପ୍ରଭୃତି ଉପନ୍ୟାସରେ ଆଧୁନିକ ଶିଳ୍ପ ଓ ସମାଜ ସଚେତନତା, ଅର୍ଥନୈତିକ ଦୁର୍ଗତି ତଥା ପାରିବାରିକ ଜୀବନର ବିଭ୍ରାଟହିଁ ଉପଜୀବ୍ୟ। ସୁରେଶ ଗୋସ୍ୱାମୀଙ୍କର "ସତରଙ୍ଗର ନୂତନ କରେଙ୍ଗ" (ସପ୍ତରଙ୍ଗର ପ୍ରାସାଦ) ରୋମାଣ୍ଟିକ ଆଦର୍ଶବାଦର ପ୍ରତୀକ । ନୂତନ ଦୃଷ୍ଟି, ଗଭୀର ଅନୁଭୂତି, ମନସ୍ତାତ୍ତ୍ୱିକ ବିଶ୍ଲେଷଣ ଅତ୍ୟାଧୁନିକ ଉପନ୍ୟାସ ତଥା କଥାଶିଳ୍ପର ଧର୍ମ ।

ନୂତନ ଉପନ୍ୟାସ ସଦୃଶ କ୍ଷୁଦ୍ରଗଳ୍ପ ମଧ୍ୟ ପ୍ରଗତିପଥରେ ଅଗ୍ରସର ହୋଇ ପାରିଛି । ଅବଦୁଲ ମଲିକଙ୍କ ଶ୍ରେଷ୍ଠ ଗଳ୍ପ 'ପରଶମଣି' (୧୯୪୭) ପରେ ଅନେକଙ୍କ କ୍ଷୁଦ୍ରଗଳ୍ପରେ ଆଙ୍ଗିକ ସର୍ବସ୍ୱତାହିଁ ପରିଦୃଷ୍ଟ । ଉମାକାନ୍ତ ଶର୍ମା ଏବଂ ଦୀନନାଥ ଶର୍ମାଙ୍କ

ଗଳ୍ପ ଚରିତ୍ର ସର୍ବସ୍ୱ, ବୀରେନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କ ଦୀର୍ଘ ଗଳ୍ପ "କଳଙ୍କ ଆଜନ୍ତ ବସ୍ତୀ" ଆବେଗ ପ୍ରଧାନ ତଥା ଆଧୁନିକତା ସର୍ବସ୍ୱ । ପରବର୍ତ୍ତିତ ସାମାଜିକ ଓ ରାଜନୈତିକ ଅବସ୍ଥାକୁ ଲକ୍ଷ୍ୟ ରଖି ଏବକାଳର କ୍ଷୁଦ୍ରଗଳ୍ପ ଗୁଡ଼ିକ ଲିଖିତ ।

୧୯୪୨ର ଅଗଷ୍ଟ ବିପ୍ଳବ, ଜାତୀୟ ମୁକ୍ତି ଆନ୍ଦୋଳନ, ଭାରତବର୍ଷର ସ୍ୱାଧୀନତା ପ୍ରାପ୍ତି ଯୋଗୁଁ ଯେଉଁ ସମାଜବାଦୀ ଦୃଷ୍ଟିକୋଣ ପ୍ରବର୍ତ୍ତିତ ହେଲା ତାହାର ପ୍ରତ୍ୟକ୍ଷ ପ୍ରଭାବ ନୂତନ କବିତାରେ ହିଁ ପରିଲକ୍ଷିତ ହେଲା । ୧୯୪୬ ଖ୍ରୀଷ୍ଟାବ୍ଦପରେ ପ୍ରକାଶିତ "ଅଜସ୍ର ରଚନାବଳୀ" ଶ୍ରେଣୀ ସଂଘର୍ଷ, ଶିଳ୍ପ ଚେତନା ଓ ଜୀବନ ଦ୍ୱନ୍ଦ୍ୱର ସଂକେତ ବହନ କରିଥିଲା, ଶିଳ୍ପ ସଂପ୍ରସାରଣ ଓ ଶ୍ରେଣୀସଂଘର୍ଷ ସଂକେତ ପରିସ୍ଫୁଟ କରିଥିଲା । ଜୀବନସଂଗ୍ରାମରେ ଅବତୀର୍ଣ୍ଣ ଆହତ ବ୍ୟକ୍ତିର ଯେଉଁ ପ୍ରତିକ୍ରିୟା ତାହାହିଁ ଆଧୁନିକ କବିତାର ପ୍ରାଣପ୍ରେରଣା । ଛନ୍ଦମୁକ୍ତ ଆଧୁନିକ କବିତାର କଥାବସ୍ତୁର ପରିଧି ବ୍ୟାପକ ।

ସଂକ୍ଷେପରେ କହିବାକୁ ଗଲେ ଅସମୀୟା ସାହିତ୍ୟ ପ୍ରାଚୀନ ଯୁଗରୁ ଆରମ୍ଭ କରି ଚଳନ୍ତି ଶତାବ୍ଦୀର ଅତ୍ୟାଧୁନିକ ସୀମା ପର୍ଯ୍ୟନ୍ତ ଜୀବନ ଓ ସମାଜର ତଥା ଜନସାଧାରଣଙ୍କର ଆଶା ଆକାଙ୍କ୍ଷା, ସୁଖ ଦୁଃଖର ମାର୍ମିକ ଚିତ୍ର ବିଶ୍ୱସ୍ତ ଭାବରେ ଅଭିବ୍ୟକ୍ତ କରିପାରିଛି । ଏହାହିଁ ଯେ କୌଣସି ଗତିଶୀଳ ସାହିତ୍ୟର ଚରମ ସଫଳତା ।

---

# ମାଲୟାଲମ୍

ପ୍ରାଚୀନ ପୁଣ୍ୟଭୂମି ଭାରତବର୍ଷର ପରିଚୟ ପ୍ରଦାନ କରିବା ସମୟରେ ପ୍ରତ୍ୟେକ ଯୁଗର କବି ବର୍ଣ୍ଣନାରେ ଆକୁମାରୀ ହିମାଚଳ ଉଲ୍ଲେଖ କରିଥାନ୍ତି । ଭାରତର ସୁଦୂର ଉତ୍ତରସୀମାରେ ତୁଷାରଧବଳ ନଗାଧିରାଜ ହିମାଳୟ ଏବଂ ସୁଦୂର ଦକ୍ଷିଣ ପ୍ରାନ୍ତରେ କନ୍ୟାକୁମାରୀ ଅବସ୍ଥିତ । ସେହି କନ୍ୟାକୁମାରୀ ଦେଶ ହେଉଛି ଆଧୁନିକ ରାଜନୈତିକ କେରଳ, ଯେଉଁଠାରେ ଦିଗନ୍ତ ବିସ୍ତୃତ ତମାଳ-ତାଳ ବନରାଜିମାଳା ସମୁଦ୍ର-ବାୟୁ-କଲ୍ଲୋଳରେ ସୃଷ୍ଟି କରିଥାଏ "କଥକଲୀନୃତ୍ୟ" । ଭାରତର ଅନ୍ୟାନ୍ୟ ଅଞ୍ଚଳ ସଦୃଶ କେରଳ ମଧ୍ୟ ଏକ ପୌରାଣିକ ଏବଂ ଐତିହାସିକ ରାଜ୍ୟ । ସମ୍ଭବତଃ କେର୍ (ନାରିକେଳ) ଶବ୍ଦରୁ କେରଳ ଶବ୍ଦ ଉତ୍ପତ୍ତି ଲାଭ କରିଛି । ଚତୁର୍ଦ୍ଦିଗରେ ନୀଳସମୁଦ୍ର, ଉଚ୍ଚପର୍ବତମାଳା, ନାରିକେଳକୁଂଜର ଘନଛାୟା, ଏହିପରି ଅପୂର୍ବ ରମଣୀୟ ପରିବେଶ ମଧ୍ୟରେ ଉର୍ବର କେରଳ ରାଜ୍ୟ ଭାରତବର୍ଷର ସାହିତ୍ୟ ଏବଂ ସଂସ୍କୃତିକୁ ତାର ନିଜର ଦାନ କରିଅଛି । ସେହି ରାଜ୍ୟର ଭାଷା ହେଉଛି ମାଲୟାଲମ୍ । ଏହା ମାଲବାର, କୋଚିନ, ଟ୍ରାଭାନ୍‌କୋର ଅର୍ଥାତ୍ ଆରବ ମହାସାଗର ଏବଂ ପଶ୍ଚିମଘାଟ ପର୍ବତମାଳାର ମଧ୍ୟବର୍ତ୍ତୀ ବିସ୍ତୃତ ରାଜ୍ୟର ଭାଷା । 'ମାଲୟାଲମ୍' ଶବ୍ଦ 'ମାଲ' ଏବଂ 'ଆଲମ୍' ଏପରି ଦୁଇଟି ଶବ୍ଦର ମିଶ୍ରଣରେ ଗଠିତ—ମାଲ ଅର୍ଥ ପର୍ବତ, ଆଲମ୍ ଅର୍ଥ ସମୁଦ୍ର । ଆଲମ୍‌ର ଅର୍ଥ ସ୍ଥଳଭାଗ ବୋଲି କେହି କେହି କହନ୍ତି ।

ରାମାୟଣ ଏବଂ ମହାଭାରତରେ ପ୍ରାଚୀନ କେରଳ ରାଜ୍ୟର ମଧ୍ୟ ନାମୋଲ୍ଲେଖ ଦେଖାଯାଏ । ଅଶୋକଙ୍କ ଅନୁଶାସନରୁ ମଧ୍ୟ ଏହାର ଆଭାସ ମିଳେ । ତାମିଲ ସାହିତ୍ୟର ପ୍ରସିଦ୍ଧ ରଚନା ( ସଙ୍ଗମ ଯୁଗର ) ପାଲିତପ୍ପତ୍ତୁ, ଚିଲପଥିକରମ୍, ମଣିମେଖଲାଇ ପ୍ରଭୃତିରେ ଚେର ରାଜ୍ୟ ଏବଂ ଚେରରାଜାଙ୍କ ସଂପର୍କରେ ସୂଚନା ମିଳେ । ପ୍ରାଚୀନ କାଳରେ ଚେରରାଜ୍ୟ ଅର୍ଥାତ୍ କେରଳ ସହିତ ସୁଦୂର ରୋମ୍, ଇଜିପ୍ଟ, ଆରବ, ବେବିଲୋନ ପ୍ରଭୃତି ରାଜ୍ୟର ସମ୍ପର୍କ ଥିଲା । କେରଳ ବିଦେଶକୁ ଚନ୍ଦନ ପ୍ରଭୃତି ମୂଲ୍ୟବାନ ଉପକରଣ ପ୍ରେରଣ କରୁଥିଲା । ଚେର ରାଜାମାନଙ୍କ ରାଜତ୍ୱ ପରେ 'କେରଳ' ପେରୁମଲ୍ଲ ରାଜବଂଶ ଦ୍ୱାରା ଶାସିତ ହେଲା ଏବଂ ନବମ ଶତାବ୍ଦୀ ବେଳକୁ କେରଳ ଭାଗଭାଗ ହୋଇ ଯାଇଥିଲା । ଷୋଡ଼ଶ ଶତାବ୍ଦୀର ଆରମ୍ଭରେ ପ୍ରଥମେ ପର୍ତ୍ତୁଗୀଜ ଏବଂ ପରେ ଡଚ୍‌ମାନେ କେରଳରେ ପଦାର୍ପଣ କରିଥିଲେ । ଇଂରେଜମାନଙ୍କ ରାଜତ୍ୱରେ ମାଲବାର ମଧ୍ୟ ମାନ୍ଦ୍ରାଜ ଅଧୀନରେ ଶାସିତ ହେଲା । ଇତିହାସର ଉତ୍ଥାନ ପତନ ମଧ୍ୟରେ କେରଳ ରାଜ୍ୟ କେବେହେଲେ ଏକଶାସନାଧୀନ ନ ଥିଲା । ତଥାପି ପର୍ବପର୍ବାଣି, ସାହିତ୍ୟ,

କଳା, ସାମାଜିକ ଉତ୍ସବ, ସାଂସ୍କୃତିକ ଜୀବନପ୍ରବାହ ମଧ୍ୟରେ ଏହାର ଅଖଣ୍ଡ ଏକତା ପ୍ରତିଫଳିତ ହୋଇଥିଲା । ବର୍ତ୍ତମାନ ଯୁଗରେ ଏହି ରାଜ୍ୟର ସାଧାରଣ ଶିକ୍ଷା ଅବସ୍ଥା ଅତି ଉଚ୍ଚ ଧରଣର ଏବଂ ଶତକଡ଼ା ସାକ୍ଷର ସଂଖ୍ୟା ସର୍ବାପେକ୍ଷା ଅଧିକ । ୧୯୬୧ ମସିହାର ଜନଗଣନାନୁଯାୟୀ ମାଲୟାଲମ୍ ଭାଷାଭାଷୀଙ୍କ ସଂଖ୍ୟା ହେଉଛି- ୧୭ ମିଲିୟନ ଏବଂ କେରଳର କ୍ଷେତ୍ରଫଳ ୧୫,୦୦୦ ବର୍ଗମାଇଲ ।

**ମାଲୟାଲମ୍ ଭାଷାର ଉତ୍ପତ୍ତି ଓ ଆଦିକାଳ :**

ଏହି ଭାଷାର ସର୍ବପ୍ରାଚୀନ ନିଦର୍ଶନ ହେଉଛି ଇହୁଦୀ ଏବଂ ଖ୍ରୀଷ୍ଟିୟାନ୍ ମାନଙ୍କୁ ମାଲବାର ରାଜାଙ୍କ ଦ୍ୱାରା ପ୍ରଦତ୍ତ ତାମ୍ରପଟ୍ଟ (Copper-plate grant) । ଏହାର ଆନୁମାନିକ ସମୟ ହେଉଛି ଖ୍ରୀଷ୍ଟପୂର୍ବ ନବମ ଶତାବ୍ଦୀ । ଏହା ବ୍ୟତୀତ ଦ୍ୱିଭାଷିକ ଅନୁଶାସନ, ଯଥା ୧୦୬୫ ମସିହାର ତ୍ରିଭେନ୍ଦ୍ରମ୍ ମିଉଜିୟମ୍ ପ୍ଲେଟ୍, ୧୨୫୧ର ଆଚ୍ଚୁର ପ୍ଲେଟ୍‌ରେ ଉଭୟ ସଂସ୍କୃତ ଏବଂ ତାମିଲ ଭାଷାର ପ୍ରଭାବ ଲକ୍ଷିତ । ତାପତି ସ୍ୱୟମ୍ବର ଏବଂ ସୁଭଦ୍ରା ଧନଂଜୟ ନାମକ ଦୁଇଟି ସଂସ୍କୃତ ନାଟକର ପ୍ରଣେତା ମାଲବାର ଅଧିପତି କୁଲଶେଖରଙ୍କ ଦରବାରରେ ଜଣେ ମାଲୟାଲମ୍ କବି ଥିଲେ । ତାଙ୍କର ନାମ "ତୋଲନ୍" । ସେହି କବିଙ୍କର କେତେକ ସଙ୍ଗୀତ-ଧର୍ମୀ ରଚନା ଅଦ୍ୟାବଧି କେରଳର ସାଧାରଣ ଲୋକଙ୍କ ମୁଖରେ ଶୁଣାଯାଏ ।

ମାଲୟାଲମ୍ ଭାଷାର ଉତ୍ପତ୍ତି ସଂପର୍କରେ ଏକାଧିକ ମତ ପରିଦୃଷ୍ଟ ହୁଏ । ଏହି ଭାଷାରେ ସଂସ୍କୃତ ଭାଷାର ଓଜସ୍ୱିତା ଏବଂ ତାମିଲ ଭାଷାର ସୌନ୍ଦର୍ଯ୍ୟ ରକ୍ଷିତ ହୋଇଛି । ସଂସ୍କୃତରୁ ମାଲୟାଲମ୍ ଉତ୍ପତ୍ତି ଲାଭ କରିଛି ବୋଲି କୋଭୁନି ନନ୍ଦନଗଡ଼ ତାଙ୍କର ୧୮୭୫ ରେ ପ୍ରକାଶିତ ବ୍ୟାକରଣରେ ଉଲ୍ଲେଖ କରିଛନ୍ତି । ସଂସ୍କୃତ ଭାଷା ଯେବେ ହିମାଳୟ ସଙ୍ଗେ ତୁଳିତ ହୁଏ ତାହାହେଲେ ମାଲୟାଲମ୍ ଭାଷା ସେଥିରୁ ନିର୍ଗତ ଗଙ୍ଗାଧାର ସଦୃଶ ।

ପ୍ରାଚୀନ କାଳରେ ଆର୍ଯ୍ୟମାନଙ୍କର କଥିତ ଭାଷା ପ୍ରାକୃତ ଥିଲା, ଏବଂ ସଂସ୍କୃତ ଭାଷା ଶିକ୍ଷା ମାଧ୍ୟମ ରୂପେ ବ୍ୟବହୃତ ହେଉଥିଲା । ସେଥିପାଇଁ ମାଲୟାଲମ୍ ପ୍ରାକୃତରୁ ଉତ୍ପତ୍ତି ଲାଭ କରିଛି ବୋଲି କେହି କେହି କହନ୍ତି । ମାତ୍ର ଦକ୍ଷିଣ ଭାଷାଗୋଷ୍ଠୀ ଆଲୋଚକ, ବୈୟାକରଣିକ ଡକ୍ଟର କାଲ୍‌ଡଓଏଲ ଏହି ମତର ପକ୍ଷପାତୀ ନୁହନ୍ତି । ତାଙ୍କ ମତରେ ତାମିଲଭାଷା ମାଲୟାଲମ୍ ଭାଷାର ଜନନୀ ସଦୃଶ । ଭାଷା ଏବଂ ବ୍ୟାକରଣ ସାଦୃଶ୍ୟ ଯୋଗୁ ସେ ଏହାକୁ ତାମିଲ ଭାଷାର ଉପଭାଷା (Dialect) ବୋଲି ମଧ୍ୟ ବର୍ଣ୍ଣନା କରିଥାନ୍ତି । ମାଲୟାଲମ୍ ଭାଷା ତାମିଲର କନ୍ୟା ନ ହେଲେ ମଧ୍ୟ ମୂଳରୁ ଏହା ସହିତ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ପ୍ରସିଦ୍ଧ ମାଲୟାଲମ୍ ବ୍ୟାକରଣ "କେରଳ ପାଣିନୀୟମ୍"ର ପ୍ରଣେତା ଅଧ୍ୟାପକ ରାଜରାଜବର୍ମା ଏହି ମତର ସମର୍ଥକ । ତାଙ୍କ ମତରେ ପ୍ରାଚୀନ କାଳରେ କୁନ୍ଟ'ମ୍

କର୍ଣ୍ଣା ପ୍ରଭୃତି ଅଞ୍ଚଳରେ ବ୍ୟବହୃତ କଥିତ ତାମିଲ ଭାଷାର ପରବର୍ତ୍ତିତ ରୂପ ହେଉଛି ମାଲୟାଲମ୍ । ଚତୁର୍ଦ୍ଦଶ ଶତାବ୍ଦୀରେ ସଂସ୍କୃତରେ ଲିଖିତ ବ୍ୟାକରଣ "ଲୀଲାତିଲକମ୍"ର ପ୍ରଣେତା ମାଲୟାଲମ୍ ଭାଷା ଯେ ଏକ ସ୍ୱାଧୀନ ଓ ସ୍ୱତନ୍ତ୍ର ଭାଷା ଏହା ପ୍ରଖ୍ୟାପନ କରିଥିଲେ । ସେ ଆଲୋଚନା କରି ସ୍ପଷ୍ଟ ମତବ୍ୟକ୍ତ କରିଥିଲେ ଯେ 'କେରଳ ଭାଷା'ର ସଂସ୍କୃତ ଭାଷା ଅର୍ଥାତ୍ ଆର୍ଯ୍ୟଭାଷା ସହିତ ସଂପର୍କ ନଥିଲା । ଚୋଳଭାଷା (ତାମିଲ) ଏବଂ କେରଳ ଭାଷା (ମାଲୟାଲମ୍) ମଧ୍ୟରେ ପ୍ରଭେଦ ଅଛି ବୋଲି ସେ ମଧ୍ୟ ପ୍ରମାଣ କରିଥିଲେ ।

କେରଳର ପ୍ରାଚୀନ ଇତିହାସର ସମ୍ୟକ୍ ସୂଚନା ଏଠାରେ ଆବଶ୍ୟକ । ସମ୍ଭବତଃ ଅଷ୍ଟମ ଶତାବ୍ଦୀ ସୁଦ୍ଧା ଚେର-ଚୋଳ-ପାଣ୍ଡ୍ୟ ପ୍ରଭୃତି ରାଜ୍ୟର ଭାଷା ଥିଲା ତାମିଲ । ପାଣ୍ଡ୍ୟ ଏବଂ ଚୋଳ ସହିତ ଚେରର ସାଂସ୍କୃତିକ ସାଦୃଶ୍ୟ ଅନେକ ଥିଲା । ହୂନ୍ ଏବଂ ଶକମାନଙ୍କର ଆକ୍ରମଣ, ପଶ୍ଚିମ ଉପକୂଳରେ ଆରବୀୟମାନଙ୍କର ଆକ୍ରମଣ ଫଳରେ ଆର୍ଯ୍ୟମାନେ ତୁଳୁବାଟେ କେରଳ ମଧ୍ୟରେ ପ୍ରବେଶ କରିଥିଲେ ଏବଂ ଅଷ୍ଟମ ଶତାବ୍ଦୀ ସୁଦ୍ଧା କେରଳରେ ଆର୍ଯ୍ୟମାନଙ୍କ ସଂଖ୍ୟା ବୃଦ୍ଧି ପାଇଥିଲା । ଆର୍ଯ୍ୟମାନେ "ତେଲୁଗୁକାନାଡ଼" ଭାଷା ପ୍ରଭାବିତ ରାଜ୍ୟ ବାଟଦେଇ ଆସିଥିବାରୁ ସେମାନଙ୍କ ଭାଷାରେ ସେହି ସେହି ଭାଷାର ପ୍ରଭାବ ପଡ଼ିବା ସ୍ୱାଭାବିକ । ପୁନଶ୍ଚ ସେମାନେ ତାମିଲ ଭାଷାଭାଷୀ ଲୋକଙ୍କ ସହିତ ତାମିଲ ପ୍ରଭାବିତ ଆର୍ଯ୍ୟଭାଷାରେ କଥାବାର୍ତ୍ତା କରୁଥିଲେ । ପ୍ରାଚୀନକାଳରେ କେରଳରେ ବ୍ୟବହୃତ ତାମିଲ ପ୍ରଭାବିତ ଭାଷାରେ କନ୍ନଡ଼ ଏବଂ ପ୍ରାକୃତ ଭାଷାର ପ୍ରଭାବ ପରିଦୃଷ୍ଟ । ନବମ ଶତାବ୍ଦୀରୁ କେରଳର ଭାଷା ପାଣ୍ଡ୍ୟରାଜ୍ୟର ତାମିଲ ଭାଷାଠାରୁ ସ୍ୱତନ୍ତ୍ର ଏବଂ ପରିବର୍ତ୍ତିତ ହେଲା । ଏହି ପରିବର୍ତ୍ତନର ଏକ ଲକ୍ଷଣ ହେଉଛି କେରଳ ଭାଷାରେ ଅନୁନାସିକ-ପ୍ରାସର ବ୍ୟବହାର ଏବଂ ବୃଦ୍ଧି । ମାଲୟାଲମ୍ ଭାଷାର ପ୍ରଥମ ସୁଶୃଙ୍ଖଳ ବ୍ୟାକରଣ ଏବଂ "ମାଲୟାଲମ-ଇଂରେଜୀ ଅଭିଧାନର" ପ୍ରଣେତା ଡକ୍ଟର ଗୁନଡ଼ର୍ଟ Dr. Gundert) ବରାବର ପ୍ରମାଣ କରି ଦେଖାଇଛନ୍ତି ଯେ ମାଲୟାଲମ୍ ହେଉଛି ତାମିଲ ଭାଷାର ଭଗିନୀ ସଦୃଶ । ଡ଼କ୍ଟର କାଲଡ୍‌ୱେଲ ଏବଂ ଡକ୍ଟର ଗୁନଡ଼ର୍ଟଙ୍କ ମଧ୍ୟରେ ମାଲୟାଲମ୍ ଭାଷାର ଉତ୍ପତ୍ତି ସଂପର୍କରେ ଏହିପରି ମତଦ୍ୱୈଧ ପରିଲକ୍ଷିତ ହୁଏ । ଏହା ବ୍ୟତୀତ ଆଉ କେତେକ ପଣ୍ଡିତଙ୍କ ମତରେ ମାଲୟାଲମ୍ ଭାଷା ଉଭୟ ସଂସ୍କୃତ ଏବଂ ତାମିଲଭାଷାର ସମ୍ମିଶ୍ରଣରେ ସୃଷ୍ଟି ହୋଇଥିଲା । ନବମ ଶତାବ୍ଦୀ ପୂର୍ବରୁ ଯେଉଁ ବ୍ରାହ୍ମଣମାନେ କେରଳରେ ପ୍ରବେଶ କରିଥିଲେ ସେମାନଙ୍କର କେରଳରେ ସେତେବେଳେ ପ୍ରଚଳିତ ଭାଷା ସହିତ ପରିଚୟ ନ ଥିଲା । ତେଣୁ ସେମାନେ ଉଭୟ ସଂସ୍କୃତ ଏବଂ ତାମିଲ ଭାଷାକୁ ମିଶାଇ ଏକ ଭାଷା ବ୍ୟବହାର କରିଥିଲେ ଏବଂ ସେହି ମିଶ୍ରିତ ଭାଷାରୁହିଁ ମାଲୟାଲମ୍ ଭାଷାର ଉତ୍ପତ୍ତି । ମାଲୟାଲମ୍ ଭାଷାର ତାମିଲ ଭାଷା ସହିତ ବିଶେଷ ସଂପର୍କ ଥିବାର ଜଣାଯାଏ ।

'ତାମିଲ' ଶବ୍ଦ ବିଶ୍ଳେଷଣ କଲେ ଜଣାଯାଏ ଯେ, ପୂର୍ବକାଳରେ 'ତାମିଲ' ଶବ୍ଦ ଏକ ନିର୍ଦ୍ଦିଷ୍ଟ ଭାଷାକୁ ନ ବୁଝାଇ ସାଧାରଣ ଭାବରେ 'ଭାଷା'କୁ ବୁଝାଉଥିଲା । ମାଲୟାଲମ୍ ଭାଷାର ପ୍ରାଚୀନ ରଚନା 'ବ୍ରହ୍ମାନନ୍ଦପୁରାଣମ୍' ଏବଂ 'ରାମଚରିତମ୍'ରେ 'ତାମିଲ' ଶବ୍ଦର ବିଶ୍ଳେଷଣ ଉଲ୍ଲେଖଯୋଗ୍ୟ । ସମ୍ଭବତଃ ବହୁକାଳ ପରେ 'ତାମିଲ' ଶବ୍ଦର ବ୍ୟାପକ ଅର୍ଥ ଲୋପ ପାଇଥିଲା ଏବଂ ତାହା କେବଳ ତାମିଲ ଭାଷାକୁ ବୁଝାଇଲା । ଚତୁର୍ଦ୍ଦଶ ଶତାବ୍ଦୀର 'ଲୀଳାତିଲକମ୍'ରେ ମଧ୍ୟ ଏହାର ପ୍ରମାଣ ମିଳେ ।

କୌଣସି କୌଣସି ପଣ୍ଡିତ କହନ୍ତି ଯେ, ଉଭୟ ତାମିଲ ଏବଂ ମାଲୟାଲମ୍ ଭାଷା ପ୍ରାଚୀନ କାଳର ଏକ ଦ୍ରାବିଡ ଭାଷାର ସନ୍ତାନ ସଦୃଶ ଏବଂ ମାଲୟାଲମ୍ ଏକ ପ୍ରାଚୀନ ସ୍ୱାଧୀନ ସ୍ୱତନ୍ତ୍ର ଭାଷା । ଚତୁର୍ଦ୍ଦଶ ଶତାବ୍ଦୀର 'ଲୀଳାତିଲକମ୍' ମାଲୟାଲମ୍ ଭାଷାର ପ୍ରାଚୀନତା ସମ୍ପର୍କରେ ଆଲୋଚନା କରିଥିବାର ଜଣାଯାଏ । ଚତୁର୍ଦ୍ଦଶ ଶତାବ୍ଦୀ ପୂର୍ବରୁ ମାଲୟାଲମ୍ ସଂସ୍କୃତ ସହିତ ଜଡ଼ିତ ଥିବାର ଅନୁମାନ ଏବଂ ମାଲୟାଲମ୍ ଏବଂ ସଂସ୍କୃତର ଏହି ମିଶ୍ରଣକୁ "ମଣିପ୍ରବାଳମ୍" କୁହାଯାଏ । ଏହି ସାହିତ୍ୟିକ ରୀତିରେ "ଲୀଳାତିଲକମ୍" ରଚିତ । ବର୍ତ୍ତମାନ କେରଳର କେତେକ ଅଞ୍ଚଳରେ ପ୍ରାଚୀନ ଅଧିବାସୀ ଅଛନ୍ତି ଯେଉଁମାନେ ଘରେ ତାମିଲ ଏବଂ ବାହାରେ ମାଲୟାଲମ୍ ଭାଷା କହନ୍ତି । ଏଥିରୁ ସ୍ପଷ୍ଟ ପ୍ରମାଣିତ ହୁଏ ଯେ ଦଶମ ଶତାବ୍ଦୀ ପୂର୍ବରୁ ଯେତେବେଳେ ସେମାନଙ୍କର ପୂର୍ବ ବଂଶଧରଗଣ କେରଳରେ ବସବାସ କରିଥିଲେ ସେତେବେଳେ କେରଳର ସ୍ୱତନ୍ତ୍ର ଭାଷା ଥିଲା । ପ୍ରାଚୀନ କେରଳର ଚଗଡ଼ମାଲୀ ପ୍ରବାଦ ପ୍ରବଚନରୁ ମଧ୍ୟ ମାଲୟାଲମ୍ ଭାଷାର ସ୍ୱାତନ୍ତ୍ର୍ୟ ପ୍ରମାଣିତ । ସମ୍ଭବତଃ ପ୍ରାଚୀନ କାଳରେ କେରଳର ରାଜ ଦରବାରରେ ତାମିଲ ଭାଷା, ପଣ୍ଡିତ-ମଣ୍ଡଳୀରେ ସଂସ୍କୃତ ଭାଷା ଏବଂ ସାଧାରଣ ଜନ ସମାଜରେ ମାଲୟାଲମ୍ ଭାଷା ବ୍ୟବହୃତ ହେଉଥିଲା । ଅଧିକାଂଶ ସ୍ଥଳେ ପ୍ରାଚୀନ କାଳରେ ଏକ ଭାଷାର ଗୋଟାଏ ଲିଖିତ ଶୁଦ୍ଧ ରୂପ ଏବଂ ଆଉ ଗୋଟାଏ ଲୋକ-କଥିତ ରୂପ ଥିଲା ।

ପ୍ରସିଦ୍ଧ ଭାଷାତତ୍ତ୍ୱବିତ୍ ଡକ୍ଟର କାଲ୍ଡୱେଲଙ୍କ ବିଶ୍ଳେଷଣ ଅନୁଯାୟୀ ଦଶମ ଶତାବ୍ଦୀ ପୂର୍ବରୁ ତାମିଲରେ, ଦ୍ୱାଦଶ ଶତାବ୍ଦୀ ପୂର୍ବରୁ କନ୍ନଡ଼ରେ ଚତୁର୍ଦ୍ଦଶ ଶତାବ୍ଦୀ ପୂର୍ବରୁ ତେଲୁଗୁରେ ଏବଂ ଷୋଡ଼ଶ ଶତାବ୍ଦୀ ପୂର୍ବରୁ ମାଲୟାଲମ୍ ଭାଷାରେ ସମୃଦ୍ଧ ସାହିତ୍ୟିକ ରଚନା ଆରମ୍ଭ ହୋଇ ସାରିଥିଲା ବୋଲି ଅନୁମିତ ହୁଏ । ତାମିଲ ସାହିତ୍ୟରେ ଲିଖିତ ଭାଷା ଏବଂ କଥିତ ଭାଷା ମଧ୍ୟରେ ସର୍ବାଧିକ ପ୍ରଭେଦ ଦେଖାଯାଏ, ମାତ୍ର ମାଲୟାଲମ୍‌ରେ ଏହି ପ୍ରଭେଦ ସାମାନ୍ୟ ।

ପ୍ରାଚୀନ ମାଲୟାଲମ୍ ସାହିତ୍ୟରେ 'ମଣିପ୍ରବାଳ' ଏବଂ "ପାଟ୍ଟୁ" ରଚନା ରୀତି ବିଶେଷ ପ୍ରଚଳିତ ଥିଲା । 'ପାଟ୍ଟୁ' ଲୋକସଂସ୍କୃତ ଧର୍ମୀରଚନା, ଦ୍ରାବିଡୀୟ ସଂସ୍କୃତ ଛନ୍ଦାଳଙ୍କାର ଦ୍ୱାରା ପ୍ରଭାବିତ । କିଲିପାଟ୍ଟୁ, ତୁଲଲ ପାଟ୍ଟୁ, ବାଂଚୀପାଟ୍ଟୁ

ଯଥାକ୍ରମେ ବିହଙ୍ଗଗୀତ, ମାଟିଗୀତ ଏବଂ ନୃତ୍ୟ ସଂଗୀତକୁ ବୁଝାଇଥାଏ । ପ୍ରାଚୀନ ସାହିତ୍ୟରେ କାବ୍ୟ, ଅନୁବାଦ ପ୍ରଭୃତିର ପ୍ରଯୋଜକ ହେଉଛନ୍ତି ଯଥାର୍ଥରେ ଶ୍ରେଷ୍ଠ କବି ଟି, ରାମାନୁଜନ୍ ଏଜୁତ୍ତୁଆସନ୍ । ତାଙ୍କର ସମୟ ହେଉଛି ଷୋଡଶ ଶତାବ୍ଦୀ । ସେ ରାମାୟଣ, ମହାଭାରତର ଅନୁବାଦ କରିଥିଲେ ଏବଂ ସାହିତ୍ୟ କ୍ଷେତ୍ରରେ ସମ୍ପୂର୍ଣ୍ଣ ସଂସ୍କୃତ ଶୈଳୀ ଅନୁସରଣ କରିଥିଲେ । ଅଧ୍ୟାତ୍ମ ରାମାୟଣମ୍, ମହାଭାରତମ୍, ଭାଗବତମ୍, ଦେବୀ ମାହାତ୍ମ୍ୟମ୍ ତାଙ୍କର ପ୍ରଧାନ କୃତି ଏବଂ ମାଲୟାଲମ୍ ଭାଷାରେ ବିଶେଷ ଆଦୃତ । ମୂଳ ସଂସ୍କୃତ ଅଧ୍ୟାତ୍ମରାମାୟଣର ମୁକ୍ତ ଅନୁବାଦ ହେଉଛି ତାଙ୍କର ଅଧ୍ୟାତ୍ମ ରାମାୟଣ । ଏହା ୧୧,୦୦୦ ପଂକ୍ତି ବିଶିଷ୍ଟ । ସେଥିରେ ଭଙ୍ଗୀର ସରଳତା, ଏବଂ ଚିନ୍ତାର ଗାମ୍ଭୀର୍ଯ୍ୟ ପ୍ରତିଫଳିତ । ବାଲ୍ମୀକିଙ୍କ ରାମାୟଣରୁ କେତେକ ସ୍ୱାତନ୍ତ୍ର୍ୟ ତାଙ୍କର ରାମାୟଣରେ ପ୍ରଦର୍ଶିତ । ତାଙ୍କର ମହାଭାରତ ୧୪,୦୦୦ ପଂକ୍ତି ବିଶିଷ୍ଟ । ତାଙ୍କର ପ୍ରତ୍ୟେକ ରଚନା ଦ୍ରାବିଡ଼ ଛନ୍ଦରେ ଯଥା—କେକା, କାକଲୀ ଲିଖିତ । ସାଧାରଣ ପାଠକ ମଣ୍ଡଳୀରେ "କିଲପାଟ୍ଟୁ" (ବିହଙ୍ଗଗାନ) ନାମରେ ପରିଚିତ ।

ଷୋଡ଼ଶ ଶତାବ୍ଦୀରେ ଇଜୁତ୍ତୁଆସନଙ୍କ ପୂର୍ବରୁ ପ୍ରାଚୀନ ମାଲୟାଲମ୍ ସାହିତ୍ୟରେ ମଧ୍ୟ ଉଲ୍ଲେଖଯୋଗ୍ୟ ରଚନା ଲିଖିତ ହୋଇଥିବାର ପ୍ରମାଣ ମିଳେ । ପଞ୍ଚଦଶ ଶତାବ୍ଦୀର "କୃଷ୍ଣଗାଥା" ଉଲ୍ଲେଖଯୋଗ୍ୟ । ପ୍ରାଚୀନ କେରଳର ଗୀତ ସାହିତ୍ୟର ଧାରା ନିର୍ଣ୍ଣୟ କରିବାରେ କେତେକ ପ୍ରଭାବ ଦାୟୀ ଯଥା—ପଚମାଲୟାଲମ୍ ଗୋଷ୍ଠୀ, ତାମିଲ ଗୋଷ୍ଠୀ, ସଂସ୍କୃତ ଗୋଷ୍ଠୀ—ପ୍ରଥମରୁ ଅବିମିଶ୍ର ମାଲୟାଲମ୍ ଭାଷା, ଦ୍ୱିତୀୟରୁ ତାମିଲ ଭାଷା ଏବଂ ତୃତୀୟରୁ ସଂସ୍କୃତ ଭାଷା ପ୍ରଭାବ ସୂଚିତ । ପଚମାଲୟାଲମ୍ ଗୋଷ୍ଠୀରେ କେରଳ ରାଜର ସହସ୍ରାଧିକ ପ୍ରବଚନ, ତଗଡ଼ମାଲୀ, ଲୋକଗୀତ, ଲୋକଗାଥା, ଧର୍ମଗୀତ ଅନ୍ତର୍ଗତ । ସେ ସବୁର ଭାଷା ପ୍ରାଚୀନ କଥିତ ମାଲୟାଲମ୍ । "ଭଦ୍ରକାଲୀପାଟ୍ଟୁ" "ତୋତାମପାଟ୍ଟୁ" କାଳୀଙ୍କ ଉପାସନା ନିମନ୍ତେ ଅଭିପ୍ରେତ ସାଙ୍ଗୀତିକ ରଚନା । "ପୋଲୁଭନପାଟ୍ଟୁ"ର ଅର୍ଥ ହେଉଛି ସର୍ପପୂଜା ଶୀର୍ଷକ ପଦରଚନା । ସେହିପରି "ସସ୍ଥକାଳୀ" ଲୋକଗୀତଧର୍ମୀ ପ୍ରାଚୀନ ରଚନା । ପର୍ବପର୍ବାଣୀ, ସାମାଜିକ ଉତ୍ସବ ପ୍ରଭୃତିରେ ବ୍ୟବହୃତ ଅନେକ ପଦ୍ୟ ରଚନାର ନାମ ଶୁଣାଯାଇଥାଏ; ଯଥା ଓନ୍ନାପାଟ୍ଟୁ, କୃଷିପାଟ୍ଟୁ, ପାଟ୍ଟାପାଟ୍ଟୁ, ଭାଂଚପାଟ୍ଟୁ । କେରଳର ଜାତୀୟ ପର୍ବ ହେଉଛି "ଓନାମ" । ଓନ୍ନାପାଟ୍ଟୁ ଏବଂ କୃଷିପାଟ୍ଟୁ ଶସ୍ୟ ଆମଦାନୀ ସମ୍ପର୍କୀୟ ରଚନା । ଭାଂଚପାଟ୍ଟୁ, ନୌକାଚାଳନା ଗୀତ ସମ୍ପର୍କୀୟ ରଚନା ଏସବୁ ପ୍ରାଚୀନ ରଚନାମାନଙ୍କର ଏକମାତ୍ର ଉଦ୍ଦେଶ୍ୟ ହେଉଛି କ୍ଷେତଖମାରର ଶ୍ରମିକ ନଦୀ ଓ ସମୁଦ୍ରର ନାଉରିଆମାନଙ୍କୁ ଛନ୍ଦର ମୂର୍ଚ୍ଛନାରେ ଅଭିଭୂତ କରିବା । 'ଗାଥାକବିତା' ମାଲବାର ଅଞ୍ଚଳରେ ବିଶେଷ ଲୋକପ୍ରିୟ । ଏହି ସବୁ ରଚନାମାନଙ୍କର ପ୍ରଣେତା ସାଧାରଣତଃ ଅଜ୍ଞାତ । ଏହାର ରଚନା କାଳ ତ୍ରୟୋଦଶ

ଶତାବ୍ଦୀରୁ ସପ୍ତଦଶ ଶତାବ୍ଦୀ ମଧ୍ୟରେ ପରିବ୍ୟାପ୍ତ । ତ୍ରାଭାଙ୍କୋର ଅଞ୍ଚଳରେ ମଧ୍ୟ ଗାଥା କବିତା ପ୍ରଚଳିତ ।

ପେରୁମଲ୍‌ବଂଶର ରାଜାମାନଙ୍କ ରାଜତ୍ୱରେ ହିଁ କେରଳରେ ତାମିଲ ସଂସ୍କୃତର ପ୍ରଚାର ହେଲା । ଦଶମ ଶତାବ୍ଦୀ ବେଳକୁ କେରଳର ସାହିତ୍ୟ ସେତେ ସମୃଦ୍ଧ ହୋଇ ନ ଥିଲା । ମାତ୍ର ତାମିଲ ଭାଷାରେ ସମୃଦ୍ଧ ସାହିତ୍ୟ ସୃଷ୍ଟି ହୋଇ ସାରିଥିଲା । ତେଣୁ ମାଲୟାଲମ୍ ଭାଷା ଓ ସାହିତ୍ୟ ତାମିଲ ଦ୍ୱାରା ପ୍ରଭାବିତ ହେବା କଥା—ପ୍ରାଚୀନ ମାଲୟାଲମ୍ ଭାଷା ଆଲୋଚନା ପାଇଁ "ରାମଚରିତମ୍" ଗ୍ରନ୍ଥ ଅତ୍ୟନ୍ତ ଉପାଦେୟ । ଏହାର ଭାଷା ଏବଂ ଶୈଳୀ କଠିନ ଏବଂ ଉଭୟ ତାମିଲ ସାହିତ୍ୟ ଏବଂ ପ୍ରାଚୀନ ମାଲୟାଲମ୍ ଭାଷା ସଂପର୍କରେ ଏଥିରୁ ଯଥେଷ୍ଟ ଉପାଦାନ ମିଳେ । ତେଣୁ ସଂସ୍କୃତ, ତାମିଲର ପ୍ରଭାବ ସୁସ୍ପଷ୍ଟ । ଏକାଧିକ ଭାଷାର କୃତ୍ରିମ ମିଶ୍ରଣ "ରାମଚରିତମ୍"ର ଏକ ପ୍ରଧାନ ବିଶେଷତ୍ୱ । ଏହାର ପ୍ରଣେତା କିଏ, ଏବଂ ରଚନାର ସମୟ ଏବଂ ସ୍ଥାନ ସଂପର୍କରେ ବିଭିନ୍ନ ମତ ପରିଦୃଷ୍ଟ ହୁଏ । "ରାମଚରିତ" ଭଳି ଆଉ କୌଣସି ଗ୍ରନ୍ଥ ମାଲୟାଲମ୍ ସାହିତ୍ୟ ଇତିହାସରେ ଏତେ ବାଦାନୁବାଦ ସୃଷ୍ଟି କରିନାହିଁ ।

ପ୍ରାଚୀନ ରାମାୟଣର ଦ୍ୱିବିଧ ରୂପ ଦେଖାଯାଏ, ଯଥା—କାନସା ପାନିକର୍ ଏବଂ ରାମପାନିକର୍‌ଙ୍କ ଦ୍ୱାରା ପ୍ରସ୍ତୁତ । କାନସା ରାମାୟଣ (ପାଛୁକୁଲ) ଏହାର ପ୍ରଣେତା ହେଉଛନ୍ତି ମଧ୍ୟ-ତ୍ରାଭାଙ୍କୋର ଅନ୍ତର୍ଗତ ନିରାନାମର ଅଧିବାସୀ ଏକ ବିଖ୍ୟାତ କବି ପରିବାର । କାନସାରାମାୟଣର ଭାଷା ଉଭୟ ତାମିଲ-ମାଲୟାଲମ୍ ମିଶ୍ରିତ । ଚମ୍ପୂରେ ସଂସ୍କୃତର ଛନ୍ଦ, କଠିନ ଶବ୍ଦମାଳା ଯେପରି ବ୍ୟବହୃତ ଠିକ୍ ସେହିପରି ଏହିସବୁ ପ୍ରାଚୀନ ରାମାୟଣ ରଚନାମାନଙ୍କରେ ସାଧୁ ତାମିଲଭାଷା ପ୍ରଯୁକ୍ତ । 'ନିରାନାମ' କବିଗୋଷ୍ଠୀ କାରିଶବୃତ୍ତ ନାମକ ଛନ୍ଦ ଅନୁସରଣ କରିଥିଲେ ।

ପ୍ରାଚୀନ ମାଲୟାଲମ୍ ସାହିତ୍ୟ ପ୍ରସଙ୍ଗରେ "ମଣିପ୍ରବାଲମ୍" ଗୋଷ୍ଠୀ କଥା ପୂର୍ବେ ସୂଚିତ ହୋଇଛି । ଶତ ଶତ ବର୍ଷ ଧରି କେରଳର ସ୍ଥାନୀୟ ଭାଷା ଉପରେ ସଂସ୍କୃତର ପ୍ରଭାବ ପଡ଼ିଥିଲା । ମଣି ଏବଂ ପ୍ରବାଳ ଯଥାର୍ଥରେ ସ୍ଥାନୀୟ ମାଲୟାଲମ୍ ଭାଷା ଏବଂ ସମୃଦ୍ଧ ପାରମ୍ପରିକ ସଂସ୍କୃତ ଭାଷାକୁ ବୁଝାଇଥାଏ । ମଣିପ୍ରବାଳ ଢଙ୍ଗରେ ଲିଖିତ ପଦ୍ୟମାଳାର ଛନ୍ଦ ସାଧାରଣତଃ ସଂସ୍କୃତାନୁସାରୀ । କବି କାଳିଦାସଙ୍କ 'ମେଘଦୂତ' କାବ୍ୟ ଅନୁସରଣରେ ପ୍ରାଚୀନ ମାଲୟାଲମ୍‌ରେ "ସନ୍ଦେଶକାବ୍ୟ" ଲେଖାଯାଇଥିଲା ଏବଂ ୧୯୧୩ ରେ ଆବିଷ୍କୃତ "ଉନ୍ନୁନିଲି ସନ୍ଦେଶମ" କାବ୍ୟ ଚତୁର୍ଦ୍ଦଶ ଶତାବ୍ଦୀର ରଚନା ବୋଲି ଜଣାଯାଏ । ଏହାର ପ୍ରଥମଭାଗ ସ୍ଥାନୀୟ ପ୍ରାକୃତିକ ବର୍ଣ୍ଣନା ଏବଂ ଦ୍ୱିତୀୟଭାଗ ନାୟିକାର ବର୍ଣ୍ଣନାରେ ପରିପୂର୍ଣ୍ଣ ।

ପ୍ରାଚୀନଯୁଗର ମାଲୟାଲମ୍ ସାହିତ୍ୟ ପର୍ଯ୍ୟାୟରେ 'ଚଂପୂ' ଏକ ପ୍ରଧାନ ରଚନା । ଏହା ମୁଖ୍ୟତଃ ସଂସ୍କୃତ 'ଚମ୍ପୂ'ର ଅନୁକରଣରେ ଲିଖିତ ଏବଂ ଗଦ୍ୟପଦ୍ୟାଶ୍ରିତ; ଏଥିରେ ମଣି ପ୍ରବାଳ ଶୈଳୀ ଅନୁସୃତ । ଗଦ୍ୟାଂଶରେ ମାଲୟାଲମ୍ ଶବ୍ଦର ବହୁଳତା ଏବଂ ପଦ୍ୟାଂଶରେ ସଂସ୍କୃତ ଶବ୍ଦର ବାହୁଲ୍ୟ ପରିଲକ୍ଷିତ । ବିଷ୍ଣୁ ଏବଂ ଶିବମନ୍ଦିରମାନଙ୍କରେ ପର୍ବଦିନଗୁଡ଼ିକରେ "କୁଟ୍ଟୁ" ଏକ ପ୍ରଧାନ କାର୍ଯ୍ୟକ୍ରମ ଏବଂ ସେହି 'କୁଟ୍ଟୁ' ଅନୁଷ୍ଠାନ ଉଦ୍ଦେଶ୍ୟରେ ପ୍ରଥମେ ଚଂପୂ ରଚିତ ହୋଇଥିଲା । ସମ୍ଭବତଃ ପଞ୍ଚଦଶ ଏବଂ ଅଷ୍ଟାଦଶ ଶତାବ୍ଦୀରେ ବିଶେଷ ପରିମାଣରେ ଚଂପୂ ସାହିତ୍ୟ ରଚିତ ହୋଇଥିଲା । 'ରାମାୟଣ ଚମ୍ପୂ' ଏବଂ 'ଭାରତଚମ୍ପୂ' ଅପେକ୍ଷାକୃତ ଦୀର୍ଘ ରଚନା । ଏହି ଚମ୍ପୂ-ଶ୍ରେଣୀୟ ରଚନାର ଜଣେ ପ୍ରଧାନ କବି ହେଉଛନ୍ତି ମହିଷାମଙ୍ଗଲ । ତାଙ୍କର "ନୈଷଧ ଚଂପୂ" ସଂସ୍କୃତ ପୁରାଣ ଅବଲମ୍ବନରେ ରଚିତ । ତାଙ୍କର ରଚିତ 'ରତ୍ନାବଲୀୟମ' ଜଣେ କୋଚିନ ରାଜାଙ୍କୁ କେନ୍ଦ୍ର କରି ଲିଖିତ ଏବଂ "କୋଦି ବିରହମ୍" ବିରହ ବର୍ଣ୍ଣନାତ୍ମକ ରଚନା, ମାଲୟାଲମ୍ ଚଂପୂର ବୃତ୍ତ;କିନ୍ତୁ ଭାଷା 'ମଣିପ୍ରବାଳ'ରୀତଧର୍ମୀ । ସଂସ୍କୃତ ବୃତ୍ତ ଗଦ୍ୟାଂଶ ମଧ୍ୟ ପଦ୍ୟଧର୍ମୀ । 'ତରଙ୍ଗିଣୀ'ନାମକ ଲୋକପ୍ରିୟ ବୃତ୍ତ ମାଲୟାଲମ୍ ଚମ୍ପୂଗୁଡ଼ିକରେ ଅନୁସୃତ । ସଂସ୍କୃତରେ ପ୍ରଥମ ଚମ୍ପୂ ହେଉଛି ଭୋଜରାଜାଙ୍କ ରାମାୟଣ । କେରଳର ପ୍ରାଚୀନ ଅଧିବାସୀମାନଙ୍କ ମଧ୍ୟରେ"ଚାକ୍ୟାରସ୍" ନାମକ ଏକ ଗୋଷ୍ଠୀ ଅଛନ୍ତି ଏବଂ ସେହିମାନେହିଁ 'କୁଟ୍ଟ' ପାଳନ କରିବା ବେଳେ ଚଂପୂର ସାହାଯ୍ୟ ନିଅନ୍ତି । ପ୍ରାଚୀନ ଏବଂ ଆଧୁନିକ ଏପରି ଦୁଇଭାଗରେ ମାଲୟାଲମ୍ ଚମ୍ପୂ ବିଭକ୍ତ । ପ୍ରାଚୀନ ଚମ୍ପୂର ସଂଖ୍ୟା ପ୍ରାୟ ଦୁଇଶତରୁ ଅଧିକ । ନୀଳକଣ୍ଠନାମକ ଜଣେ କବିଙ୍କର ରଚନାବଳୀ କେରଳରେ ମନ୍ଦିର ପ୍ରତିଷ୍ଠା ସମ୍ପର୍କରେ ଲିଖିତ । ଯଥା-ଶେଲୁର ନାଥୋଦୟ, ଚେଙ୍ଗାଲନାଥୋଦୟ ନାରାୟଣୀୟା । ଦ୍ରାବିଡ଼ ଛନ୍ଦରୀତି ଚେରୁଶେରୀଙ୍କ କୃଷ୍ଣଗାଥାରେ ଏବଂ ଏଜହୁଆସନଙ୍କ ଅଧ୍ୟାତ୍ମ ରାମାୟଣ ଏବଂ ଭାରତମ୍‌ରେ ଅନୁସୃତ ।

ପୂର୍ବେ ବର୍ଣ୍ଣନା କରାଯାଇଛି "ପଚମାଲୟାଲମ୍"ଗୋଷ୍ଠୀ ସର୍ବସାଧାରଣଙ୍କ କଥିତ ଭାଷାର ପକ୍ଷପାତୀ ଥିଲେ । ପଞ୍ଚମଶତାବ୍ଦୀ ପର୍ଯ୍ୟନ୍ତ ଏହି ଗୋଷ୍ଠୀର ବିଭିନ୍ନ କାର୍ଯ୍ୟକଳାପ ଜଣାଯାଏ । ଦ୍ୱାଦଶ ଏବଂ ଷୋଡ଼ଶ ଶତାବ୍ଦୀ ମଧ୍ୟରେ ତାମିଲଗୋଷ୍ଠୀ ଏବଂ ନବମ ଶତାବ୍ଦୀରୁ ସପ୍ତଦଶ ଶତାବ୍ଦୀ ମଧ୍ୟରେ ସଂସ୍କୃତଗୋଷ୍ଠୀ ପ୍ରଭାବଶାଳୀ ଥିଲା । ପ୍ରତ୍ୟେକ ଗୋଷ୍ଠୀ ପରସ୍ପର ଦ୍ୱାରା ନିଶ୍ଚୟ ପ୍ରଭାବିତ ହୋଇଥିଲେ । ଚତୁର୍ଦ୍ଦଶ ଶତାବ୍ଦୀର ଉନ୍ନୁଲି ସନ୍ଦେଶ ।(ସଂସ୍କୃତ ପ୍ରଭାବିତ),ଚତୁର୍ଦ୍ଦଶ ଏବଂ ପଞ୍ଚଦଶ ଶତାବ୍ଦୀର 'କାନ୍‌ସା ପାଟ୍ଟୁକଲ୍ଲି' (ତାମିଲ ପ୍ରଭାବିତ ) ଏବଂ ପଞ୍ଚଦଶ ଶତାବ୍ଦୀର 'କୃଷ୍ଣଗାଥା' ( ମାଲୟାଲମ୍ ଆବିର୍ଭାବ ଯୁଗ ) କୁ ଯଥାକ୍ରମେ ପ୍ରତିନିଧିସ୍ଥାନୀୟ ରୂପେ ରଚନା ଗ୍ରହଣ କରାଯାଇପାରେ । ସେମାନଙ୍କ ମଧ୍ୟରେ ଆଭ୍ୟନ୍ତରୀଣ ସଂପର୍କ ଚିହ୍ନିତ ।

ଏହି ନିଧାରୀ ଅର୍ଥାତ୍ ନିଗୋଷ୍ଠୀ ସମ୍ପର୍କରେ ଚତୁର୍ଦ୍ଦଶ ଶତାବ୍ଦୀର ବ୍ୟାକରଣ "ଲୀଳାତିଲକମ୍"ରୁ ଆବଶ୍ୟକୀୟ ବିବରଣୀ ମିଳିଥାଏ । ଏହା ଅଷ୍ଟମ 'ଶିଲ୍ପମ୍'ରେ ବିଭକ୍ତ । ପ୍ରଥମ ପରିଚ୍ଛେଦ ତ୍ରୟରେ ଭାଷା ଏବଂ ବ୍ୟାକରଣଗତ ଆଲୋଚନା ଏବଂ ଶେଷ ପରିଚ୍ଛେଦମାନଙ୍କରେ "ସାହିତ୍ୟିକ" ଶୈଳୀଗତ ଆଲୋଚନା ଅନ୍ତର୍ଭୁକ୍ତ । ମାଲୟାଲମ୍ ଭାଷାର ବ୍ୟାକରଣ ଏବଂ ତାମିଲ ଭାଷାରୁ ତାର ପ୍ରଭେଦ ସେଥିରେ ଆଲୋଚିତ । "ଲୀଳାତିଲକମ୍" ବର୍ତ୍ତମାନ ବିଭିନ୍ନ ଗବେଷକମାନଙ୍କ ଦ୍ୱାରା ସମ୍ପାଦିତ ହୋଇ ପ୍ରକାଶିତ ହୋଇଅଛି । ମାଲୟାଲମ୍ ଭାଷାର ବିବର୍ତ୍ତନ ସମ୍ପର୍କୀୟ ଅଧ୍ୟୟନ ପକ୍ଷରେ ଏହି ଗ୍ରନ୍ଥ ଅତ୍ୟନ୍ତ ସହାୟକ । "କିଲିପାଟ୍ଟୁ"—ବର୍ତ୍ତମାନ ଏହି ଶବ୍ଦ କେତେକ ପ୍ରସିଦ୍ଧ ମାଲୟାଲମ୍ ଛନ୍ଦକୁ ବୁଝାଇଥାଏ; ଯଥା—କେକା-କାକଳୀ-କଳାକାଂଞ୍ଚ । କିନ୍ତୁ କିଲି ଅର୍ଥ ଶୁଆ ଏବଂ ପାଟ୍ଟୁ ଅର୍ଥ ଗୀତ । ତେଣୁ କିଲିପାଟ୍ଟୁର ଅର୍ଥ ହେଉଛି ଶୁକଗୀତ । ପ୍ରାଚୀନ ମାଲୟାଲମ୍ ସାହିତ୍ୟରେ କିଲିପାଟ୍ଟୁ ଜାତୀୟ ରଚନାର ଗୁରୁତ୍ୱ ସର୍ବଥା ସ୍ୱୀକାର୍ଯ୍ୟ । ପ୍ରତ୍ୟେକ ଗୀତର ପ୍ରାରମ୍ଭରେ ଶୁକପକ୍ଷୀକୁ ସମ୍ବୋଧନ କରାଯାଇଥାଏ ଏବଂ ଶୁକପକ୍ଷୀ ଗୀତ ଗାଉଛି ବୋଲି ସୂଚିତ ହୋଇଥାଏ । କେତେକ ରଚନାରେ ମଧ୍ୟ ହଂସ କିମ୍ବା ମଧୁମକ୍ଷିକାର ଉଲ୍ଲେଖ କରାଯାଇଥାଏ । ଏହାର ଉତ୍ପତ୍ତି ସମ୍ପର୍କରେ ବହୁ ଗଳ୍ପ ଶୁଣାଯାଇଥାଏ । କେହି କେହି କହନ୍ତି, ଏହି ଶୁକ ହେଉଛି ସରସ୍ୱତୀଙ୍କ ହସ୍ତର, ଆଉ କେହି କେହି କହନ୍ତି ସ୍ୱୟଂ ଭଗବାନ ଶୁକପକ୍ଷୀ ରୂପରେ ଅବତୀର୍ଣ୍ଣ । କାହା କାହା ମତରେ ସେହି ଶୁକ ପୌରାଣିକ ପୁରୁଷ ଶୁକ ମହର୍ଷିଙ୍କୁ ବୁଝାଇ ଥାଏ କିଲିପାଟ୍ଟୁ ଲେଖାର କଥାବସ୍ତୁ କେବଳ ଧର୍ମଭାବାପନ୍ନ ନୁହେଁ, ସାମାଜିକ ମଧ୍ୟ । ଅନେକଙ୍କର ଧାରଣା ଯେ ଏଳୁତ୍ତାଚ୍ଚନ ଏତାଦୃଶ ରଚନାର ପ୍ରଯୋଜକ । ମାତ୍ର ଏଳୁତ୍ତାଚ୍ଚନଙ୍କ ପୂର୍ବରୁ ମଧ୍ୟ ବହୁ "କିଲିପାଟ୍ଟୁ" ରଚନାର ପ୍ରଚଳନ ଦେଖାଯାଏ । ଷୋଡ଼ଶ ଏବଂ ସପ୍ତଦଶ ଶତାବ୍ଦୀରେ ବହୁ ସଂଖ୍ୟାରେ "କିଲିପାଟ୍ଟୁ" ରଚିତ ହୋଇଥିଲା । 'ଏଳୁତ୍ତାଚ୍ଚନ' ଜାତିରେ ଶୂଦ୍ର ଥିଲେ ଏବଂ ବେଦାନ୍ତ ପ୍ରଭୃତି ଧର୍ମଶାସ୍ତ୍ର ଚର୍ଚ୍ଚା ତାଙ୍କ ପକ୍ଷରେ ନିଷେଧ ଥିବାରୁ ସେ 'ଶୁକପକ୍ଷୀ' ମାଧ୍ୟମରେ ଗୂଢ଼ ଧର୍ମତତ୍ତ୍ୱ ବ୍ୟାଖ୍ୟାନ କରାଇଥିଲେ । କେତେକ ପଣ୍ଡିତଙ୍କ ମତରେ ବର୍ଣ୍ଣନାତ୍ମକ ପଦ୍ୟରେ କଥାବସ୍ତୁକୁ ଜୀବନ୍ତ ଏବଂ ବିଶ୍ୱାସଯୋଗ୍ୟ କରିବା ପାଇଁ ନିରୀହ ବନପକ୍ଷୀ କଥକରୂପେ ଗ୍ରହଣ କରାଯାଇ ଥାଏ । ପ୍ରକୃତରେ ପଶୁପକ୍ଷୀ ଯଥାର୍ଥରେ ସମସ୍ତ ସନ୍ଦେହ ଏବଂ କପଟର ଊର୍ଦ୍ଧ୍ୱରେ । ତେଣୁ ଶୁକପକ୍ଷୀକୁ ପ୍ରାଚୀନ କବି ତାଙ୍କ ପଦ୍ୟର ମାଧ୍ୟମ ରୂପେ ଗ୍ରହଣ କରିଥିଲେ । ପ୍ରାଚୀନ ଓଡ଼ିଆ କବିମାନେ କୋଇଲିକୁ ସମ୍ବୋଧନ କରି ଯେଉଁ ରସୋତ୍ତୀର୍ଣ୍ଣ ପଦ୍ୟ ସମୂହ ଲେଖିଥିଲେ, ଏଠାରେ ତାହା ସ୍ମରଣୀୟ ।

ଷୋଡ଼ଶ ଶତାବ୍ଦୀରେ ଏଳୁତ୍ତାଚ୍ଚନ ଦକ୍ଷିଣ ମାଲବାର ତିରୁର ନିକଟବର୍ତ୍ତୀ ଏକ ଦରିଦ୍ର ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପ୍ରକୃତ ନାମ

"ଏଲୁତ୍ତାଚ୍ଚନ" ନୁହେଁ ବୋଲି କେହି କେହି ସନ୍ଦେହ କରନ୍ତି । ତାଙ୍କର କାଳ ନିରୂପଣ ମଧ୍ୟ ବିବାଦମାନ ବିଷୟ । ଏଲୁତ୍ତାଚ୍ଚନ ଶବ୍ଦ "ଏଲୁତ୍ତ" ଏବଂ 'ଆଚ୍ଚନ'ର ସମନ୍ୱୟରେ ଗଠିତ । ପ୍ରଥମଟିର ଅର୍ଥ ବିଦ୍ୟା, ଦ୍ୱିତୀୟଟିର ଅର୍ଥ ଅଧିକାରୀ । ଏଥିରୁ ଏହା ଏକ ପଦବୀ ବୋଲି ଅନୁମାନ କରିବା ସ୍ୱାଭାବିକ । ଶୈଶବରେ ତାଙ୍କର ପ୍ରଖର ବୁଦ୍ଧିମତ୍ତାର ପରିଚୟ ମିଳିଥିଲା । ନମ୍ବୁଦ୍ରିପଦ ବ୍ରାହ୍ମଣମାନେ ତାଙ୍କର ଏତାଦୃଶ ପ୍ରତିଭା ଯୋଗୁ ଅସୂୟା ପରବଶ ହୋଇ ମନ୍ତ୍ର ବଳରେ ତାଙ୍କ ବୁଦ୍ଧିମତ୍ତା ହ୍ରାସ କରିବା ପାଇଁ ଚାହିଁଥିଲେ; କିନ୍ତୁ ଈଶ୍ୱରଙ୍କ କରୁଣା ଲାଭ କରି ଏଲୁତ୍ତାଚ୍ଚନ ବ୍ରାହ୍ମଣମାନଙ୍କର ଏତାଦୃଶ ଉଦ୍ୟମ ପଣ୍ଡ କରିଥିଲେ । ବିଶ୍ୱାସଯୋଗ୍ୟ ନହେଲେ ମଧ୍ୟ ଆଉ ଏକ କିମ୍ବଦନ୍ତୀ ପ୍ରଚଳିତ ଯେ, ସେ ଜଣେ ନମ୍ବୁଦ୍ରିଙ୍କର ପୁତ୍ର ଥିଲେ ଏବଂ ତାଙ୍କର ପିତା ଥରେ ତ୍ରିଭେନ୍ଦ୍ରମରୁ ମାଲବାରକୁ ପ୍ରତ୍ୟାବର୍ତ୍ତନ କରିବା ସମୟରେ ନାୟାର ଘରେ ଏକ ରାତ୍ରି ଯାପନ କରିଥିଲେ । ବାଲ୍ୟ କାଳରେ ଏଲୁତ୍ତାଚ୍ଚନ ସଂସ୍କୃତ ଏବଂ ତାମିଲରେ ବ୍ୟୁତ୍ପତ୍ତିଲାଭ କରିଥିଲେ ଏବଂ ଭାରତର ବିଭିନ୍ନ ପ୍ରାନ୍ତ ଭ୍ରମଣ କରିଥିଲେ । କେରଳ ଗବେଷକମାନେ ଗବେଷଣା କରି ତାଙ୍କ ସମ୍ବନ୍ଧରେ ବିଭିନ୍ନ ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି । ପୂର୍ବେ କଥିତ ହୋଇଛି ମାଲୟାଲମ୍ ଭାଷାରେ ଅଧ୍ୟାତ୍ମ ରାମାୟଣ, ଭାରତମ ଏବଂ ଭାଗବତମ୍ ପ୍ରଭୃତି ତାଙ୍କର ଶ୍ରେଷ୍ଠ ରଚନା ।

ବାଲ୍ମୀକି ରାମାୟଣ ହେଉଛି ମୂଳରଚନା ଏବଂ ସେହି ଆଧାର ରଚନାକୁ ଭାରତର ବିଭିନ୍ନ ଭାଷା ବିଭିନ୍ନ ଭାବରେ ଅନୁସରଣ କରିଛନ୍ତି । ରାମ ହେଉଛନ୍ତି ବାଲ୍ମୀକି ରାମାୟଣର ମହନୀୟ ଆଦର୍ଶ ଚରିତ୍ର । ଏଲୁତ୍ତାଚ୍ଚନଙ୍କର ଅଧ୍ୟାତ୍ମରାମାୟଣରେ ରାମ ଭଗବାନରୂପେ ବର୍ଣ୍ଣିତ । ରାମାୟଣ ହିନ୍ଦୁମାନଙ୍କର ଏକ ପରମ ଧର୍ମଶାସ୍ତ୍ରରୂପେ ବିବେଚିତ । ଆର୍ଯ୍ୟମାନଙ୍କର ଦକ୍ଷିଣ ଭାରତ ଆକ୍ରମଣ ରାମାୟଣର ପୃଷ୍ଠଭୂମି ରୂପେ କେହି କେହି ବର୍ଣ୍ଣନା କରିଥାନ୍ତି । ଅନୁବାଦ ଏବଂ ଅନୁସରଣ ହେଲେ ମଧ୍ୟ ଏଲୁତ୍ତାଚ୍ଚନଙ୍କର ରାମାୟଣରେ କେତେକ ସ୍ୱତନ୍ତ୍ର ସୌନ୍ଦର୍ଯ୍ୟ ପରିଲକ୍ଷିତ । ଏହାର ପ୍ରଧାନ ଉଦ୍ଦେଶ୍ୟ ହେଉଛି ନୀତିଶିକ୍ଷା ।

କବି 'ମହାଭାରତ' ମଧ୍ୟ ରଚନା କରିଥିଲେ । ବୀରରସ ବର୍ଣ୍ଣନାରେ ତାଙ୍କର କବିତ୍ୱ ବେଶ୍ ପରିସ୍ଫୁଟ । କେରଳର ପୃଷ୍ଠଭୂମିରେ ସେ ମହାଭାରତର କେତେକ ଗଳ୍ପକୁ ବର୍ଣ୍ଣନା କରିଛନ୍ତି । ଭାଷା ଏବଂ ବର୍ଣ୍ଣନା ସରଳ ଏବଂ ସାଧାରଣ ଜନ ଉପଯୋଗୀ । ରାମାୟଣ ଅପେକ୍ଷା ମହାଭାରତରେ କବି ବିଶେଷ ସଫଳତା ଅର୍ଜ୍ଜନ କରିଥିଲେ ବୋଲି ଜଣାଯାଏ । ହରିନାମ କୀର୍ତ୍ତନ ଭାଷାଭାଗବତମ, ଉତ୍ତର ରାମାୟଣମ୍, ହରିନାମ କୀର୍ତ୍ତିନମ୍ ପ୍ରଭୃତି ତାଙ୍କର ଅନ୍ୟାନ୍ୟ ଗୌଣ ରଚନା । 'ମାଲୟାଲମ୍' ଭାଷାରେ ତାଙ୍କର ସ୍ୱାକ୍ଷର ଯୁଗ ଯୁଗ ଧରି ଅମ୍ଳାନ ରହିଥିବ ।

ପଞ୍ଚଦଶ ଶତାବ୍ଦୀରେ ଜୀବିତ କବି ଚେରୁସେରି ନମ୍ବୁଦିରିଙ୍କର "କୃଷ୍ଣଗଡ଼" ରଚନା ଭାଗବତର ଦଶମସ୍କନ୍ଧ ଉପରେ ଆଧାରିତ । ଷୋଡ଼ଶ ଶତାବ୍ଦୀର କବି ପୋନଥାନମ୍ ନାମ୍ବୁଦିରିଙ୍କ କବିତାରେ ଦର୍ଶନ ଏବଂ ଭକ୍ତିବାଦ ପ୍ରତିଫଳିତ ।

**ତୁଲ୍ଲାଲ (କେରଳର) :—**

ଏହା ଗୀତିନାଟ୍ୟାତ୍ମକ ଲୋକପ୍ରିୟ କଳା ଏବଂ ଏଥିରେ ବହୁ ଉତ୍କୃଷ୍ଟ ସାହିତ୍ୟ ସନ୍ନିବେଶିତ । ସାମାଜିକ ପର୍ବପର୍ବାଣୀମାନଙ୍କରେ ବ୍ୟବହୃତ ଗାଥା କବିତାମାନଙ୍କର ସାହିତ୍ୟିକ ବିକାଶ ହେଉଛି ତୁଲ୍ଲାଲ । ଏହି ନିର୍ଦ୍ଦିଷ୍ଟ ରଚନା ଉତ୍ପତ୍ତି ପ୍ରସଙ୍ଗରେ କେରଳର ଏକ କିମ୍ବଦନ୍ତୀ ପ୍ରଚଳିତ । କୁନ୍‌ଚନ୍ ନାମ୍ବିୟର ନାମକ ବ୍ୟକ୍ତିଙ୍କ ସ୍ମୃତି ସହିତ ଏହି ଶ୍ରେଣୀୟ ରଚନା ବିଶେଷ ସମ୍ପୃକ୍ତ । କୁନ୍‌ଚନ୍ ନାମ୍ବିୟର ଶୈଶବରେ ଗୃହକୟର ନାମକ ଜଣେ ଖେଳାଳୀଙ୍କର ସହଚର ଥିଲେ । ସେ ତାଙ୍କୁ "କୁଠେ" ଅଭିନୟ କରିବାରେ ସାହାଯ୍ୟ କରୁଥିଲେ ଏବଂ ପରବର୍ତ୍ତୀ କାଳରେ କୁନ୍‌ଚନ୍ "ତୁଲ୍ଲାଲ" ଜାତୀୟ କଳାର ପ୍ରଯୋଜକ ହେଲେ ।

କୁନ୍‌ଚନ୍ ନାମ୍ବିୟର ୧୭୦୫ ରେ କିଲ୍ଲିକୁରୁଷି-ମଙ୍ଗଲମ୍‌ଠାରେ ଜନ୍ମ-ଗ୍ରହଣ କରିଥିଲେ । ତାଙ୍କର ଇତିହାସ ସମ୍ପର୍କରେ ବିଭିନ୍ନ ମତ ପରିଦୃଷ୍ଟ । ଶୈଶବରେ ସେ ତାଙ୍କ ପିତୃବ୍ୟ ରାଘବନ୍ ନାମ୍ବିୟରଙ୍କ ଠାରୁ ଶିକ୍ଷାପ୍ରାପ୍ତ ହୋଇଥିଲେ । "ଆମ୍ବାଲ୍ଲାପୁଲ୍ଲା" ରାଜାଙ୍କ ଦରବାରରେ ସେ ବିଶେଷ ପୃଷ୍ଠପୋଷକତା ଲାଭ କରିଥିଲେ । କୁନ୍‌ଚନ୍ ନାମ୍ବିୟାର ୬୪ ଗୋଟି "ତୁଲ୍ଲାଲ" ରଚନା କରିଥିଲେ ବୋଲି ଲୋକଙ୍କର ବିଶ୍ୱାସ । ଆଧୁନିକ ଗବେଷକମାନେ ଏହି ଧାରଣାର ପୋଷକତା କରି ନ ଥାନ୍ତି ।

ସରଳ ଭାଷା ଏବଂ ବ୍ୟଙ୍ଗାତ୍ମକ ଅଭିବ୍ୟକ୍ତି ତାଙ୍କ କବିତାମାନଙ୍କର ପ୍ରଧାନ ଆକର୍ଷଣ । ସେ ଜଣେ ଅତି ଉଚ୍ଚ କୋଟୀର ବ୍ୟଙ୍ଗବିଦ୍ରୂପକାରୀ କବି । ସେ ସମସାମୟିକ ସମାଜ ଏବଂ ଚଳଣିକୁ ପୌରାଣିକ ଗଳ୍ପ ମାଧ୍ୟମରେ ବିଦ୍ରୂପ କରିଥିଲେ । ତାଙ୍କର ପ୍ରତ୍ୟେକ ରଚନାରେ ସ୍ଥାନୀୟ ପର୍ବପର୍ବାଣୀ, ଆମୋଦପ୍ରମୋଦ, ସ୍ଥାନୀୟ ବର୍ଣ୍ଣନା ଏବଂ ସ୍ଥାନୀୟ ପ୍ରଭାବ ପରିଲକ୍ଷିତ । କେରଳର ସାଧାରଣ ଜୀବନ ଚିତ୍ର ପ୍ରଦାନ କରିବାରେ ତୁଲ୍ଲାଲ ରଚନା ଅଦ୍ୱିତୀୟ ଏବଂ ମାଲବାରର ଏହି କବି କୁନ୍‌ଚନ୍ ନମ୍ବିୟାର କେରଳର ଜଣେ ଯଥାର୍ଥ ଜନପ୍ରିୟ କବି । କୁନ୍‌ଚନ୍ ନମ୍ବିୟାରଙ୍କୁ ଅନେକ କବି ଆଦର୍ଶ ରୂପେ ଗ୍ରହଣ କରି କବିତା ରଚନା କରିଥିଲେ ।

**ଅଟ୍ଟକଥା (କଥକାଳୀ) :—**

କେରଳ ରାଜ୍ୟର ବହୁ ବିଶ୍ରୁତ କଥକାଳୀ ଏକ ନୃତ୍ୟକଳା ଏବଂ ଅଟ୍ଟକଥା ହେଉଛି ମାଲବାରର ମନୋଜ୍ଞ ଅଭିନୟ ସାହିତ୍ୟ । ପ୍ରାଚୀନ ସଂସ୍କୃତ ନାଟକ

ପୂର୍ବକାଳରେ ମନ୍ଦିରମାନଙ୍କରେ ଅଭିନୀତ ହେଉଥିଲା । ସାଧାରଣ ଲୋକେ ସେଥିରୁ ବଞ୍ଚିତ ହେଉଥିଲେ । ତେଣୁ ସର୍ବସାଧାରଣଙ୍କ ଉଦ୍ଦେଶ୍ୟରେ "କଥକଳୀ" ଗୀତନାଟ୍ୟ ଆରମ୍ଭ ହେଲା ଏବଂ ସେଥିପାଇଁ କଥକଳୀ ହେଉଛି ସାଧାରଣ ଉପଯୋଗୀ ଗ୍ରାମ୍ୟ ଗୀତନାଟ୍ୟ । 'କଥ'ର ଅର୍ଥ କଥାବସ୍ତୁ ଏବଂ କଳୀର ଅର୍ଥ ଅଭିନୟ, ଅର୍ଥାତ୍ ଅଭିନୀତ କଥା । କଥକଳୀର କଥାବସ୍ତୁ ସାଧାରଣତଃ ପୁରାଣରୁ ଗୃହୀତ । ଏହାର ଉତ୍ପତ୍ତି ସମ୍ପର୍କରେ ବିଭିନ୍ନ ମତ ପରିଦୃଷ୍ଟ ହୁଏ । କେତେକ ଗବେଷକଙ୍କ ମତରେ ଜୟଦେବଙ୍କ କୃତ 'ଗୀତଗୋବିନ୍ଦ'ହିଁ କଥକଳୀକୁ ପ୍ରେରଣା ଦେଇଥିଲା । ଗୀତଗୋବିନ୍ଦରେ ଯେପରି ଶ୍ଳୋକ ଏବଂ ଗାନ ଅନ୍ତର୍ଭୁକ୍ତ, ଅଟ୍ଟକଥାରେ ମଧ୍ୟ ସେହିପରି ଶ୍ଳୋକ ଏବଂ ଗାନ ପରିଦୃଷ୍ଟ । କଥକଳୀ ନୃତ୍ୟପ୍ରଧାନ ହୋଇଥିବାରୁ ଏଥିରେ 'ମୁଦ୍ରା' ପ୍ରଭୃତି ବ୍ୟବହୃତ । କଥକଳୀରେ ଅଭିନେତାମାନେ ଗାନ କରି ନଥାନ୍ତି, ବରଂ ପୃଷ୍ଠଭୂମିରେ ଥିବା ଚରିତ୍ରଗଣ ସଂଗୀତ ଗାନ କରନ୍ତି । ସଂସ୍କୃତ ବୃତ୍ତି ବିଶେଷତଃ 'ଦଣ୍ଡକ' ଗାନ କରିବାବେଳେ ବ୍ୟବହୃତ ହୁଏ ।

ଅଟ୍ଟକଥାର ପ୍ରଥମ ପ୍ରତିଷ୍ଠିତ ଲେଖକ ହେଉଛନ୍ତି କୋଟରକର ତାମ୍ପୁରାନ ଏବଂ ତାଙ୍କର ସମୟ ହେଉଛି ସପ୍ତଦଶ ଶତାବ୍ଦୀ । ତାଙ୍କର "ରାମନାଟମ୍" ହେଉଛି ପ୍ରଥମ ଅଟ୍ଟକଥା । ଏହି ରାମନାଟମ୍‌ର ଉତ୍ପତ୍ତି ସମ୍ପର୍କରେ ବହୁ ତଥ୍ୟ ମିଳିଥାଏ । କଥିତ ଅଛି, କୋଟରକର ତାମ୍ପୁରାନ କାଲିକଟର ଜାମୋରିନ ରାଜାଙ୍କୁ ତାଙ୍କ ଅଭିନେତାବର୍ଗଙ୍କୁ କୃଷ୍ଣନାଟମ୍ ତାଙ୍କ ଦରବାରରେ ପ୍ରଦର୍ଶନ କରିବା ଉଦ୍ଦେଶ୍ୟରେ ପଠାଇବା ପାଇଁ ଅନୁରୋଧ କରିଥିଲେ । କିନ୍ତୁ ଜାମୋରିନ୍‌ଙ୍କର ଉତ୍ତର ହେଲା ଯେ ଦକ୍ଷିଣରେ ଏପରି ଉଚ୍ଚାଙ୍ଗ କଳାତ୍ମକ ନାଟକ ବୁଝିପାରିବା ପାଇଁ ସାଧାରଣ ଲୋକେ ଅକ୍ଷମ । ଏଥିରେ କୋଟରକର୍ ଅପମାନିତ ବୋଧକରି "କୃଷ୍ଣନାଟମ୍" ଅନୁସରଣରେ ନିଜେ 'ରାମନାଟମ୍' ପ୍ରସ୍ତୁତ କରିଥିଲେ । କିନ୍ତୁ ସମସ୍ତେ ଏହି ତଥ୍ୟ ବିଶ୍ୱାସ କରି ନ ଥାନ୍ତି । ରାମନାଟମ୍ ଯେ ପ୍ରଥମ ଅଟ୍ଟକଥା ଏବଂ କୋଟରକର ତାମ୍ପୁରାନ୍ ଯେ ଏହି ଶ୍ରେଣୀସ୍ଥ ସାହିତ୍ୟର ଆଦ୍ୟ ଲେଖକ, ଏହା ଏକ ବିବଦମାନ ବିଷୟ । ରାମନାଟମ୍‌ରେ ସମଗ୍ର ରାମାୟଣକୁ ପୁତ୍ରକାମେଷ୍ଟି, ସୀତାସ୍ୱୟମ୍ବରମ୍, ଅଭିଷେକମ୍, ଖରବଧମ୍, ବାଲିବଧମଯୁଦ୍ଧମ୍,ସେତୁବନ୍ଧମ୍ ଏବଂ ଯୁଦ୍ଧମ୍ ,ଏପରି ବିଭିନ୍ନ ଖଣ୍ଡରେ ବିଭକ୍ତ କରିଥାନ୍ତି । କୋଟରକର ତାମ୍ପୁରାନ୍‌ଙ୍କର ବକବଧମ୍, କଲ୍ୟାଣସୌଗନ୍ଧିକମ୍, କାଳକେୟବଧମ୍ ପ୍ରଭୃତି ରଚନା କଥକଳୀ ଅଭିନେତାମାନଙ୍କ ଦ୍ୱାରା ବିଶେଷ ଆଦୃତ । କିମ୍ବଦନ୍ତୀ ଅଛି ଯେ ସର୍ବପ୍ରଥମେ ତାଙ୍କ ରଚନା ଉପରେ ତାଙ୍କ ମା'ଙ୍କର ଦୃଷ୍ଟି ପଡ଼ିଥିଲା ।

କୋଟରକରଙ୍କ ପରେ ଅଷ୍ଟାଦଶ ଶତାବ୍ଦୀର କାର୍ତ୍ତିକ ତିରୁନାଲ, ଅଶ୍ୱତି ତିରୁନାଲ ଏହି ଅଟ୍ଟକଥା ରଚନା ପ୍ରତି ଧ୍ୟାନ ଦେଇଥିଲେ;କିନ୍ତୁ ଉନାୟୀ ୱାରିୟର ହେଉଛନ୍ତି ଏହି ବିଭାଗର ଶ୍ରେଷ୍ଠ କବି । ତାଙ୍କର ପ୍ରକୃତ ନାମ କ'ଣ ଏ ସମ୍ପର୍କରେ

ବିଭିନ୍ନ ମତ ଦେଖାଯାଏ । ସେ ସମ୍ଭବତଃ ସପ୍ତଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଜୀବିତଥିଲେ। ନଳଚରିତମ୍ ନାମରେ ସେ ଯେଉଁ ଅଟ୍ଟକଥା ରଚନା କରିଥିଲେ, ତାହା ଗୁରୁବଦନରେ ଅଭିନୀତ ହୁଏ । କେବଳ କଥକଳୀ ଦୃଷ୍ଟିରୁ ନୁହେଁ, ଉଚ୍ଚାଙ୍ଗ ସୃଷ୍ଟି ସର୍ବବୋଧ ଭାଷା ଏବଂ ସାବଲୀଳ ଶୈଳୀ ବିଗୁରରେ 'ନଳଚରିତମ' ମାଲୟାଲମ୍ ସାହିତ୍ୟରେ ପ୍ରଶଂସିତ । ଲେଖକ ଏଥିରେ ବ୍ୟାକରଣ ନିୟମ ଉପେକ୍ଷା କରିଥିଲେ ।

ଊନବିଂଶ ଶତାବ୍ଦୀରେ ଏରୂଇମନ ତାମ୍ପି ଅଟ୍ଟକଥା ରଚନା କରିଥିଲେ । ଉତ୍ତରା ସ୍ୱୟମ୍ବରମ୍, କୀଚକବଧମ୍, ଦକ୍ଷଯଜ୍ଞ ପ୍ରଭୃତି ତାଙ୍କର ରଚନା । ଭି. କୃଷ୍ଣ ତାମ୍ପିଙ୍କ ନାମ ମଧ୍ୟ ଏହି ପ୍ରସଙ୍ଗରେ ଉଲ୍ଲେଖଯୋଗ୍ୟ । ଆଧୁନିକ କାଳରେ କଥକଳୀର ପ୍ରସାର ପାଇଁ କବି ଭାଲ୍ଲାଥୋଲ ଯଥେଷ୍ଟ ଉଦ୍ୟମ କରିଥିଲେ । କେରଳ କଳାମଣ୍ଡପର ଉତ୍ସାହରେ କଥକଳୀ ଏବଂ ଅଟ୍ଟକଥାର ପୁନରୁଦ୍ଧାର ଘଟିଛି ।

ସନ୍ଦେଶ କାବ୍ୟ—ପ୍ରାଚୀନ ମାଲୟାଲମ୍ ସାହିତ୍ୟରେ ସନ୍ଦେଶକାବ୍ୟ ମଧ୍ୟ ଲୋକପ୍ରିୟ ଏବଂ ସଂସ୍କୃତର କବି କାଳିଦାସଙ୍କ ମେଘଦୂତ କାବ୍ୟ ଅନୁସରଣରେ ସାଧାରଣତଃ ଏହି ସବୁ ସନ୍ଦେଶକାବ୍ୟ ପରିକଳ୍ପିତ । ଚତୁର୍ଦ୍ଦଶ ଶତାବ୍ଦୀରୁ ଏହି ସବୁ ସନ୍ଦେଶକାବ୍ୟର ଉତ୍ପତ୍ତି ଏବଂ ଊନବିଂଶ ଓ ବିଂଶ ଶତାବ୍ଦୀରେ ମଧ୍ୟ ଏହି କାବ୍ୟ ଧାରା ପ୍ରଚଳିତ । ପ୍ରାଚୀନସନ୍ଦେଶ କାବ୍ୟ ମଧ୍ୟରେ ଚତୁର୍ଦ୍ଦଶ ଶତାବ୍ଦୀର ଉନ୍ନୁନୀଲସନ୍ଦେଶମ ରଚନା ଉଲ୍ଲେଖଯୋଗ୍ୟ । ଏହା 'ମଣିପ୍ରବାଳ' ଭାଷାରେ ଲିଖିତ । ତ୍ରାଭାଙ୍କୋରର ଅଞ୍ଚଳର ପ୍ରାକୃତିକ ବର୍ଣ୍ଣନାରେ ଏହା ବେଶ୍ ଚିତ୍ତାକର୍ଷକ; ଶୃଙ୍ଗାରରସ ଏଥିରେ ମୁଖ୍ୟସ୍ଥାନ ଅଧିକାର କରିଛି । ନୀଲାତିଲକମ୍‌ରେ ଏହି କାବ୍ୟର ଉଦ୍ଧାର କରାଯାଇଛି । "କୋକସନ୍ଦେଶମ୍" ସେହିପରି ଆଉ ଏକ ପ୍ରାଚୀନ ସନ୍ଦେଶ କାବ୍ୟ । କୌଣସି ନାୟକ ତାର ନାୟିକା ସମୀପରେ ଏକ ସ୍ୱପ୍ନ ବୃତ୍ତାନ୍ତ ବର୍ଣ୍ଣନା କରିଥିବା ଏଥିରେ ଅନ୍ତର୍ଗତ । ପ୍ରାଚୀନ କାଳରେ ଏହି ସବୁ ସନ୍ଦେଶ କାବ୍ୟ ଏତେଦୂର ଲୋକପ୍ରିୟତା ଅର୍ଜ୍ଜନ କରିଥିଲା ଯେ, ପ୍ରତ୍ୟେକ ପ୍ରତିଷ୍ଠିତ କବି ଗୋଟାଏ ଦୁଇଟା ସନ୍ଦେଶ କାବ୍ୟ ରଚନା ନ କରି ଛାଡ଼ୁ ନଥିଲେ । "କାକସନ୍ଦେଶମ୍" ସେହିପରି ଏକ ବ୍ୟଙ୍ଗଧର୍ମୀ କାବ୍ୟ ଏବଂ ଏଥିରେ କେତେକ ସାଧାରଣ କବିଙ୍କୁ ବିଦ୍ରୂପ କରାଯାଇଥିଲା ।

ପ୍ରାଚୀନ ମାଲୟାଲମ୍ ସାହିତ୍ୟରେ ଗଦ୍ୟର ମଧ୍ୟ ପ୍ରଚଳନ ଥିଲା ଏବଂ ସାଧାରଣତଃ ସଂସ୍କୃତ ପ୍ରଭାବିତ ଏବଂ ତାମିଲ ପ୍ରଭାବିତ ଏହିପରି ଦ୍ୱିବିଧ ଗଦ୍ୟରଚନା ପରିଦୃଷ୍ଟ ହୁଏ । ପ୍ରଥମେ ଅଷ୍ଟମ ଶତାବ୍ଦୀରୁ ଆରମ୍ଭ କରି କେତେକ ଅନୁଶାସନ (Inscription) ରେ ଗଦ୍ୟର ବ୍ୟବହାର ପରିଲକ୍ଷିତ ହୁଏ ଏବଂ ସେହି ଗଦ୍ୟର ଭାଷା ସାଧାରଣତଃ ଗ୍ରାମ୍ୟ ଭାଷା ନୁହେଁ । ପ୍ରାଚୀନ ଗଦ୍ୟ ଅନେକ ଦୃଷ୍ଟିରୁ ସାହିତ୍ୟିକ-ଗୁଣ ବିବର୍ଜିତ । ଅନ୍ତତଃ ସପ୍ତଦଶ ଶତାବ୍ଦୀ ପର୍ଯ୍ୟନ୍ତ ଗଦ୍ୟ ସାହିତ୍ୟର ଧାରା ଅନିର୍ଦ୍ଦିଷ୍ଟ

ପଥରେ ପ୍ରବାହିତ ହୋଇଥିଲା । 'ଭାଷା କୌଟିଲିୟମ୍' ପ୍ରାଚୀନ ମାଲୟାଲମ୍ ସାହିତ୍ୟର ଏକ ଉଲ୍ଲେଖଯୋଗ୍ୟ ଗଦ୍ୟକୃତ । କୌଟିଲ୍ୟ ଚନ୍ଦ୍ରଗୁପ୍ତ ମୌର୍ଯ୍ୟ (ଖ୍ରୀ ପୂ: ୩ୟ ଶତାବ୍ଦୀ)ଙ୍କର ସମସାମୟିକ । ତାଙ୍କର ବିଖ୍ୟାତ ରଚନା "ଅର୍ଥଶାସ୍ତ୍ର" ମାଲୟାଲମ୍ ସାହିତ୍ୟରେ ଦ୍ୱାଦଶ ଶତାବ୍ଦୀରେ ହିଁ ଅନୁଦିତ ହୋଇଥିଲା । ଏହି ଅନୂଦିତ ପୁସ୍ତକରେ ତାମିଲ ଭାଷାର ବିଶେଷ ନ ହେଲେ ମଧ୍ୟ ସାମାନ୍ୟ ପ୍ରଭାବ ପରିଲକ୍ଷିତ ହୁଏ । ପ୍ରାଚୀନ ମାଲୟାଲମ୍ ଗଦ୍ୟ ସଂସ୍କୃତ ଦ୍ୱାରା ପ୍ରଭାବିତ । କେରଳର 'ଚକ୍‌ୟାରସ୍' ସଂପ୍ରଦାୟଙ୍କ ଦ୍ୱାରା କୁଟ୍ଟୁ (Kuttu) ଏବଂ କୁଡ଼ିଆଟ୍ଟମ୍ (Kudiattam) ଶୀର୍ଷକ କଳାତ୍ମକ ଅନୁଷ୍ଠାନ ଆରମ୍ଭ ହୋଇଥିଲା । "ଆଟ୍ଟ ପ୍ରକାରମ୍" ଏବଂ "କ୍ରମଦୀପିକା" ଏହି ଶାଖାର ହେଉଛି ଦୁଇଟି ପ୍ରଧାନ କାର୍ଯ୍ୟକ୍ରମ । ଆଟ୍ଟ ପ୍ରକାରମ୍' ଦ୍ୱାରା ସୂଚୀତ ହୁଏ ଯେ ଉପରୋକ୍ତ କଳା କପରି ଅନୁଷ୍ଠିତ ହେବ ଏବଂ 'କ୍ରମଦୀପିକା'ରୁ ରଙ୍ଗମଞ୍ଚ-ପରିବେଶ ସଂପର୍କରେ ନିର୍ଦ୍ଦେଶ ମିଳିଥାଏ । ରାଜା କୁଲଶେଖର ବର୍ମାଙ୍କ ଦରବାରର କବି ତୋଲନ ଆଟ୍ଟପ୍ରକାରମ୍'ର ରଚୟିତା ।

କେରଳ ଉପକୂଳରେ ୧୪୯୮ ମସିହାରେ ଭାସ୍କୋଡ଼ାଗାମା ପଦାର୍ପଣ କରିଥିଲେ ଏବଂ ଷୋଡ଼ଶ ଶତାବ୍ଦୀରୁହିଁ କେରଳର ଉପକୂଳବର୍ତ୍ତୀ ଅଞ୍ଚଳରେ କାଥଲିକ୍ ମିସନାରୀମାନେ ବସବାସ କରିଥିଲେ । ଜନୈକ ଡଚ୍ ମିସନାରୀ କେରଳର ଉଦ୍ଭିଦମାନଙ୍କ ଉପରେ ଏକ ଗବେଷଣାତ୍ମକ ପୁସ୍ତକ ୧୬୮୬ ରେ ଲେଖିଥିଲେ । ପୁସ୍ତକଟିର ନାମ (Hortu's Malabaricus) । ପୁସ୍ତକଟି ରୋମ୍‌ରେ ମୁଦ୍ରିତ ହୋଇଥିଲା । ୧୫୭୭ରେ ଗୋଆଠାରେ ଏକ ମୁଦ୍ରାଯନ୍ତ୍ର ସ୍ଥାପିତ ହୋଇଥିବାର ଜଣାଯାଏ । ପୁନଶ୍ଚ ମିସନାରୀମାନେ କୋଦୁନାଲୁରଠାରେ ଆଉ ଏକ ମୁଦ୍ରାଯନ୍ତ୍ର ସ୍ଥାପନ କରିଥିଲେ । ମାଲୟାଲମ୍ ଭାଷାର ପ୍ରଥମ ମୁଦ୍ରିତ ପୁସ୍ତକ ହେଉଛି "ସଂକ୍ଷେପ ବେଦାର୍ଥମ୍" । ଏହା ୧୭୭୨ ରେ ରୋମରେ ମୁଦ୍ରିତ ହୋଇଥିଲା । ୧୭୮୯ ମସିହାରେ କାଟାନାରଙ୍କର 'ବେଦତର୍କମ୍' ପ୍ରକାଶିତ ହୋଇଥିଲା । "ବର୍ତ୍ତମାନ ପୁସ୍ତକମ୍" ଏହି ସମୟରେ ଏକ ବିଶିଷ୍ଟ ରଚନା । ଏହାର ରଚୟିତା ରୋମ ପରିଦର୍ଶନ କରିଥିଲେ । ଏହା ସମ୍ଭବତଃ ୧୭୭୮-୧୭୮୬ ମସିହା ମଧ୍ୟର କଥା । ପୁସ୍ତକରେ ତାଙ୍କର ଅଭିଜ୍ଞତା ସରଳଭାଷାରେ ବର୍ଣ୍ଣିତ ।

ପ୍ରାଚୀନ ସାହିତ୍ୟିକ ରଚନାମାନଙ୍କ ମଧ୍ୟରେ 'ଦୂତବାକ୍ୟମ୍'ର ସ୍ଥାନ ମଧ୍ୟ ଉଚ୍ଚରେ । ଏହା ମହାଭାରତର ଉଦ୍ୟୋଗ ପର୍ବକୁ ଲକ୍ଷ୍ୟ କରି ଲିଖିତ । ଅମ୍ବରୀଷୋପାଖ୍ୟାନମ୍, ନଳୋପାଖ୍ୟାନମ୍ ଏବଂ ବ୍ରହ୍ମାଣ୍ଡପୁରାଣମ୍ ପୁରାତନ ରଚନା । ଷୋଡ଼ଶ ଶତାବ୍ଦୀରେ ବିଖ୍ୟାତ ତାମିଲ classics ରଚନା "ତିରୁକୁରାଲ" ମାଲୟାଲମ୍‌ରେ ଅନୂଦିତ ହୋଇଥିଲା । ଛନ୍ଦ ସମୁଚ୍ଚୟ ଏବଂ ବ୍ୟବହାରମାଲା

ପ୍ରଭୃତି ବ୍ୟାଖ୍ୟାଧର୍ମୀ ରଚନାମାନଙ୍କରେ ଗଦ୍ୟ ଅନ୍ତର୍ଭୁକ୍ତ । ପ୍ରାଚୀନ ମାଲୟାଲମ୍ ରଚନାମାନଙ୍କରେ ସଂସ୍କୃତ ବୃତ୍ତ ପୁରାପୁରି ଅନୁସୃତ ହେଉଥିଲା । କିନ୍ତୁ କ୍ରମେ କ୍ରମେ ସ୍ଥାନୀୟ ଭାଷା ପ୍ରଚଳିତ ହେଉଥିଲା ।

ଊନବିଂଶ ଶତାବ୍ଦୀ ଭାରତର ରାଜନୈତିକ ଇତିହାସରେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଇଂରେଜମାନଙ୍କର ଶାସନ ପ୍ରତିଷ୍ଠା ଯୋଗୁ ଭାରତର ସମସ୍ତ ପ୍ରାଦେଶିକ ଭାଷାମାନଙ୍କରେ ଅଭ୍ୟୁଦୟ-ଯୁଗ ଆରମ୍ଭ ହେଲା । ମିସନାରୀମାନେ ପ୍ରତ୍ୟେକ ସାହିତ୍ୟରେ ସେମାନଙ୍କର ବିଭିନ୍ନ କାର୍ଯ୍ୟକ୍ରମ ଆରମ୍ଭ କଲେ । ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ବ୍ୟାକରଣ, ଅଭିଧାନ ଏବଂ ଗଦ୍ୟ ରଚନା ମାଲୟାଲମ୍ ଭାଷାରେ ପ୍ରଧାନ ସ୍ଥାନ ପାଇଲା । ୧୮୪୬ ମସିହାରେ ବେଂଜାମିନ୍ ବେଲୀଙ୍କ ଦ୍ୱାରା ସଙ୍କଳିତ ଅଭିଧାନ ହେଉଛି ମାଲୟାଲମ୍ ଭାଷାର ପ୍ରଥମ ଅଭିଧାନ ।ଡକ୍ଟର ଗୁନ୍ଦର୍ଟ ନାମକ ଜର୍ମାନୀ ମିସନାରୀ ୧୮୭୨ରେ ଆଉ ଖଣ୍ଡିଏ ଅଭିଧାନ ରଚନା କରିଥିଲେ । ସେ ମାଲୟାଲମ୍ ଭାଷାର ଖଣ୍ଡିଏ ବ୍ୟାକରଣ ଲେଖିଥିଲେ (୧୮୬୮) । ଏହା ବ୍ୟତୀତ ଅନେକ ମିସନାରୀ ପ୍ରାଥମିକ ବ୍ୟାକରଣ ପୁସ୍ତକ ଲେଖିଥିଲେ ।

ମିସନାରୀମାନଙ୍କ ଦ୍ୱାରା ପ୍ରବର୍ତ୍ତିତ ଗଦ୍ୟ ସାଧାରଣ କଥିତ ଭାଷାର ନିକଟବର୍ତ୍ତୀ ଏବଂ ସଂସ୍କୃତ ପ୍ରଭାବରୁ ସମ୍ପୂର୍ଣ୍ଣମୁକ୍ତ । ମିସନାରୀମାନଙ୍କର ଗଦ୍ୟ ଭାଷାକୁ ପଣ୍ଡିତମାନେ ନୀଚଭାଷା ଆଖ୍ୟା ଦେଇଥିଲେ । ଊନବିଂଶ ଶତାବ୍ଦୀର ଶେଷ ଭାଗରେ ହିଁ ଗଦ୍ୟ ସାହିତ୍ୟର ପ୍ରକୃତ ବିକାଶ ଆରମ୍ଭ ହୋଇଥିଲା ।

ଊନବିଂଶ ଶତାବ୍ଦୀରେ 'କୋଚନ୍'ହିଁ କେରଳ ସାହିତ୍ୟ ଓ ଭାଷା ଚର୍ଚ୍ଚାର ପ୍ରଧାନସ୍ଥଳୀ ହୋଇଥିଲା । ସେଠାର ଏକ ରାଜବଂଶହିଁ ମାଲୟାଲମ୍ କାବ୍ୟକବିତା କ୍ଷେତ୍ରରେ ନେତୃତ୍ୱ ଦେଇଥିଲା । ସେମାନଙ୍କର ପୃଷ୍ଠପୋଷକତା ତଥା ଉତ୍ସାହରେ ବହୁ କବି ଲେଖନୀ ଚାଳନା କରିଥିଲେ ।

ତ୍ରାଭାଙ୍କୋରର କେରଳ ବର୍ମା ବାଲିଆ କୋଏଲ ତାମ୍ ପୁରାନ୍ (୧୮୪୫-୧୯୧୬) ଊନବିଂଶ ଶତାବ୍ଦୀର ଏକ ବିଶିଷ୍ଟ ପ୍ରଭାବଶାଳୀ କବି ଏବଂ ସେ ଉଭୟ ସଂସ୍କୃତ ଏବଂ ମାଲୟାଲମ୍ ଭାଷାରେ ଲେଖିଥିଲେ ଏବଂ ନିଜର ସମୃଦ୍ଧ ରଚନା ଦ୍ୱାରା ସମସାମୟିକ ବହୁ କବିଙ୍କୁ ପ୍ରଭାବିତ କରିପାରିଥିଲେ । ତାଙ୍କର ପୁତୁରା ଅଧ୍ୟାପକ ଏ. ଆର. ରାଜରାଜବର୍ମା ଜଣେ ବଡ଼ ପଣ୍ଡିତ ଏବଂ କବି ଥିଲେ । ମାଲୟାଲମ୍ ଭାଷାର ବିଶିଷ୍ଟ ବ୍ୟାକରଣ "କେରଳ ପାଣିନୀୟମ୍"ର ସେ ହେଉଛନ୍ତି ପ୍ରଣେତା ଏବଂ ସେ ଆଧୁନିକ ମାଲୟାଲମ୍ ଗଦ୍ୟର ସ୍ୱରୂପ ସମ୍ପୂର୍ଣ୍ଣ ପରିବର୍ତ୍ତିତ କରିଦେଇଥିଲେ । ସେ "କେରଳ ପାଣିନି" ନାମରେ ପରିଚିତ । କେରଳ ବର୍ମାଙ୍କ ନେତୃତ୍ୱରେ କାବ୍ୟ କବିତାରେ "ଦକ୍ଷିଣଗୋଷ୍ଠୀ" ସ୍ଥାପିତ ହୋଇଥିଲା । କେରଳ ବର୍ମାଙ୍କର ଭାଷା ଅତୀବ କଠିନ, ତାଙ୍କର ସଂସ୍କୃତ ଶକୁନ୍ତଳାର ମାଲୟାଲମ୍ ଅନୁବାଦ

ମଧ୍ଯ ମୂଳ ସଂସ୍କୃତ ଅପେକ୍ଷା କଠିନ । ସେ ଥିଲେ ସମ୍ପୂର୍ଣ୍ଣ ଆଲଙ୍କାରିକ ଶୈଳୀର ପ୍ରବର୍ତ୍ତକ । ସଂସ୍କୃତ ନାଟକ ମଧ୍ଯ ମାଲୟାଲମ୍‌ରେ ଏହି ସମୟରେ ଅନୂଦିତ ହୋଇଥିଲା ।

ଊନବିଂଶ ଶତାବ୍ଦୀରେ ଦେଶରେ ନୂତନ ନୂତନ ବିଦ୍ୟାଳୟ ସ୍ଥାପନ ଯୋଗୁ ଉପଯୁକ୍ତ ପାଠ୍ୟ ପୁସ୍ତକର ଅଭାବ ପରିଦୃଷ୍ଟ ହେଲା । ସେହି ଅଭାବ ପୂରଣ ଉଦ୍ଦେଶ୍ୟରେ ମୌଳିକ ଏବଂ ଅନୁବାଦ ଏପରି ବହୁ ପୁସ୍ତକ ଲେଖା ଯାଇଥିଲା । ତେଣୁ ବିଦ୍ୟାଳୟ ସଂଖ୍ୟା ବୃଦ୍ଧି ସଙ୍ଗେ ସଙ୍ଗେ ବିଜ୍ଞାନବିଜ୍ଞାନ, ସାହିତ୍ୟ, ଭୂଗୋଳ, ଇତିହାସ ପ୍ରଭୃତି ପୁସ୍ତକ ସଂଖ୍ୟା ବୃଦ୍ଧି ପାଇଲା ।

ବେନମଣିନାମ୍ବୁଦିପଦ ଏବଂ କୋଡ଼ୁନଗଲ୍ଲୁରର ରାଜା ସାଧାରଣ ଭାଷା ବ୍ୟବହାର କରି କାବ୍ୟ କବିତା ଲେଖିଥିଲେ । ବେନମଣିଙ୍କ କବିତାର ଶକ୍ତି, ସାମର୍ଥ୍ୟ ସୁପରିଚିତ । କେ. ସି. କେଶବ ପିଲାଇ ଜଣେ ବିଶିଷ୍ଟ କବି ଏବଂ ତାଙ୍କର କାବ୍ୟ କବିତା କେରଳବର୍ମାଙ୍କ ରଚନା ଭଳି ଅଳଙ୍କାର ପୀଡ଼ିତ ନୁହେଁ କି ବେନମଣିଙ୍କ ରଚନା ଭଳି ଅତ୍ୟନ୍ତ ସରଳ ନୁହେଁ । କାଙ୍ଗାନୋରର କୁନହି କୁଟ୍ଟିନ ଟମ୍ପୀ 'ମହାଭାରତ'କୁ ମାଲୟାଲମ୍‌ରେ ଅନୁବାଦ କରିଥିଲେ ।

ବିଂଶ ଶତାବ୍ଦୀର ପ୍ରାରମ୍ଭରେ କବିମାନଙ୍କର ଚିନ୍ତାରାଜ୍ୟରେ ବିପ୍ଳବ ଦେଖା ଦେଇଥିଲା । ରଚନାର ଉଭୟ ଆଙ୍ଗିକ ଏବଂ ଆତ୍ମିକ ପରିବର୍ତ୍ତନ ସଂଘଟିତ ହେଲା । ଗଳ୍ପ, ଉପନ୍ୟାସ, ନାଟକ ଏବଂ କବିତା ପ୍ରତ୍ୟେକ ବିଭାଗରେ ନୂତନ ତୂଳୀ ଏବଂ ରଙ୍ଗର ସ୍ପର୍ଶ ଅନୁଭୂତ ହେଲା ।

ପ୍ରତ୍ୟେକ ଆଧୁନିକ ସାହିତ୍ୟ ସଦୃଶ 'ମାଲୟାଲମ୍'ରେ ମଧ୍ଯ ପ୍ରଥମେ କବିତାର ଆଙ୍ଗିକ ଏବଂ ଆତ୍ମିକ ପରିବର୍ତ୍ତନ ଦ୍ୱାରା ଆଧୁନିକତାର ସୂତ୍ରପାତ ହେଲା । ଭି. ସି. ବାଲକୃଷ୍ଣ ପାନିକର ହେଉଛନ୍ତି ଆଧୁନିକ ଗୀତିକବିତା ଆନ୍ଦୋଳନର ପୁରୋଧା । ଆଧୁନିକ ମାଲୟାଲମ୍ କାବ୍ୟ କବିତା କ୍ଷେତ୍ରରେ ତିନିଜଣଙ୍କର ନାମ ବିଶେଷ ଭାବରେ ଶୁଣାଯାଏ । ସେମାନେ ହେଉଛନ୍ତି ଭଲ୍ଲାଥୋଲ ନାରାୟଣ ମେନନ୍, ଉଲ୍ଲୁର ଏସ୍. ପରମେଶ୍ୱର ଆୟାର ଏବଂ କୁମାରନ୍ ଆସନ୍ । ଏହି ତିନିଜଣ ଯଥାକ୍ରମେ ଭଲ୍ଲାଥୋଲ, ଉଲ୍ଲୁର ଏବଂ ଆସାନ୍ ନାମରେ ପାଠକମାନଙ୍କ ମଧ୍ଯରେ ପରିଚିତ । ଆଧୁନିକ ମାଲୟାଲମ୍ କାବ୍ୟ ସାହିତ୍ୟର ଏହିମାନେ ହେଉଛନ୍ତି ଅଗ୍ରଣୀ, ନୂତନ ପଥ ନିର୍ଦ୍ଦେଶକ, ଆସନ୍ ଦାର୍ଶନିକ, ସମାଜ ସଂସ୍କାରକ କବି, ଭଲ୍ଲାଥୋଲ ଜାତୀୟତା ଏବଂ କାବ୍ୟ ଆନ୍ଦୋଳନର ଶ୍ରେଷ୍ଠ ସ୍ରଷ୍ଟା ଏବଂ ଉଲ୍ଲୁର ହେଉଛନ୍ତି ଭାରତୀୟ ପ୍ରାଚୀନ ସଂସ୍କୃତି ତଥା ଧର୍ମର ଉପାସକ କବି । ପ୍ରତ୍ୟେକ ଯୁଗର କ୍ରାନ୍ତିକାରୀ ଅଭ୍ୟୁତ୍ଥାନ ସମସାମୟିକ ଚିନ୍ତାଶୀଳ କବିମାନଙ୍କ ଉପରେ ହିଁ

ନିର୍ଭର କରିଥାଏ । ଆସାନଙ୍କ କବିତାରେ ପ୍ରତିକ୍ରିୟା ଏବଂ ବିପ୍ଳବ ହିଁ ପ୍ରଧାନ ଯୋଗ୍ୟତା—ତେଣୁ ତାଙ୍କର କାବ୍ୟ କବିତା ପ୍ରତିକ୍ରିୟା, ବିପ୍ଳବ ଏବଂ ପରିଖିବାଦ ଉପରେ ପ୍ରତିଷ୍ଠିତ । ତାଙ୍କର "ବୀଣାପୂବ୍ବୁ" (ଝରାଫୁଲ) ପାଠକମାନଙ୍କ ମଧ୍ୟରେ ବିଂଶଶତାବ୍ଦୀର ପ୍ରଥମ ଦଶନ୍ଧିରେ ଗୋଟାଏ ବିଶୃଙ୍ଖଳ ସୃଷ୍ଟି କରିଥିଲା । ଏହାପରେ ପ୍ରକାଶିତ 'ନଳିନୀ' କବିତା ପ୍ରେମ ଉପରେ ପ୍ରତିଷ୍ଠିତ । 'କରୁଣା'ରେ କବି ବାସବଦତ୍ତାର ନାଟକୀୟ ବିୟୋଗାନ୍ତ ପରିଣତି ବର୍ଣ୍ଣନା କରିଛନ୍ତି । ଆସନ୍ ମାଲୟାଲମ୍ ଗୀତି କବିତାରେ ରୋମାଣ୍ଟିସିଜମ୍‌ର ପ୍ରବର୍ତ୍ତନ କରିଥିଲେ । ମାନ-ଜୀବନର ବିୟୋଗାନ୍ତ ପରିଣତି ଏବଂ ଗଭୀର ସମାଜବୋଧ କବିର କଳ୍ପନାକୁ ଆଘାତ ଦେଇଥିଲା । ତାଙ୍କର ରଚନା ଆଧୁନିକ କେରଳୀ ସମାଜର ପ୍ରତିଚ୍ଛବି ବୋଲି କୁହାଯାଇପାରେ । 'ଝରାପତ୍ର'ରେ ଦର୍ଶନତତ୍ତ୍ୱ, ଜୀବନ ଓ ମୃତ୍ୟୁର ମହା-ସଂଗୀତ ପ୍ରତିଧ୍ୱନିତ । "ଲୀଳା"ରେ ପ୍ରେମିକ ପ୍ରେମିକା ଯୁଗଳଙ୍କର ବିୟୋଗାନ୍ତ ପରିଣତି ବର୍ଣ୍ଣିତ ।

ମହାକବି ଉଲ୍ଲୁର ଏସ୍. ପରମେଶ୍ୱର ଆୟାର (୧୮୭୭-୧୯୪୯) ଯେ କି ସରକାରୀ କର୍ମକ୍ଷେତ୍ରରେ ଉଚ୍ଚ ପଦବୀ ଅଧିରୂଢ଼ ହୋଇଥିଲେ, କାରଣ ସେ ସେତେବେଳେ ତ୍ରାବାଙ୍କୋର ଷ୍ଟେଟର ପ୍ରଧାନ ସେକ୍ରେଟାରୀ ଥିଲେ, ଉଭୟ ପାଣ୍ଡିତ୍ୟ ଏବଂ ଅସାଧାରଣ କବିତ୍ୱର ପ୍ରମାଣ ଦେଇଥିଲେ, ତାଙ୍କର ଲିଖିତ "କେରଳ ସାହିତ୍ୟ ଚରିତ୍ରମ୍" (History of Kerala Literature) ପାଣ୍ଡିତ୍ୟ ଏବଂ ଗଭୀର ଅଧ୍ୟୟନର ଫଳ । ସେ ରୀତିଯୁଗର ପଥିକ ଥିଲେ । କେରଳବର୍ମା କୋଏଲ୍ ତାମ୍ପୁରାନ୍ ଏବଂ ଏ. ଆର୍. ରାଜରାଜବର୍ମାଙ୍କ ପ୍ରଭାବରେ ସେ ପ୍ରାଚୀନ ସଂସ୍କୃତ ଶାସ୍ତ୍ର ଏବଂ ହିନ୍ଦୁ ସଂସ୍କୃତି ପ୍ରତି ଆକୃଷ୍ଟ ହୋଇଥିଲେ । ପୁରାତନ ସମାଜ, ସଂସ୍କୃତି ଓ ସଭ୍ୟତାର ସେ ହେଉଛନ୍ତି ଆଦର୍ଶ ପଥିକ । ସେଥିପାଇଁ ତାଙ୍କର ସଂଖ୍ୟାଧିକ ଧୃପଦୀ ରଚନା ପ୍ରାଚୀନ ସଂସ୍କୃତି ଓ ସଭ୍ୟତାର ଯଶୋଗାନରେ ପୂର୍ଣ୍ଣ । ପ୍ରାଚୀନ ଆଦର୍ଶ ଏବଂ ମୂଲ୍ୟବୋଧ ଉପସ୍ଥାପିତ କରିବାରେ ସେ ସମ୍ପୂର୍ଣ୍ଣ ନୂତନ ଆଙ୍ଗିକ ପ୍ରୟୋଗ କରିଥିଲେ । ଆସନ୍‌ଙ୍କ କାବ୍ୟ କବିତାରେ ପରମ୍ପରା ସହିତ ସଂଘର୍ଷ ପରିଲକ୍ଷିତ । ଭାଲ୍ଲାଥୋଲଙ୍କ କବିତାର ତୀବ୍ର ଦେଶାତ୍ମବୋଧ ସତ୍ତ୍ୱେ ସେଥିରେ ପ୍ରାଚୀନ ରୀତିର ସୂଚନା ମିଳେ ନାହିଁ; କିନ୍ତୁ ଉଲ୍ଲୁର ପରମ୍ପରା ନିକଟରେ ଅତ୍ୟନ୍ତ ବିଶ୍ୱସ୍ତ । ବିଂଶ ଶତାବ୍ଦୀର କାବ୍ୟ କବିତାରେ ଏହି କବିତ୍ରୟଙ୍କର ସାଧନାର ଉଜ୍ଜ୍ୱଳ ସ୍ୱାକ୍ଷର ସ୍ପଷ୍ଟ । ଭଲ୍ଲାଥୋଲ, ଆସନ୍ ଏବଂ ଉସରଙ୍କ କାବ୍ୟ କବିତାର ମୂଳାଧାର ହେଉଛି ଯଥାକ୍ରମେ ପାଶ୍ଚାତ୍ୟ ବୌଦ୍ଧଧର୍ମ ଏବଂ ଭାଗବତ । ଭାଲାଥୋଲଙ୍କ "ମାଗଦଲନମାରିୟମ୍", ଆସାନ୍‌ଙ୍କ "କରୁଣା" ଏବଂ ଉଲ୍ଲୁରଙ୍କ "ପିଙ୍ଗଳା" ଏହାର ପ୍ରମାଣ ।

ଉଲ୍ଲୁରଙ୍କ କାବ୍ୟ କବିତାର କଥାବସ୍ତୁ ପୀତ ସ୍ବରର ପ୍ରଭାବ ଦ୍ୱାରା ନିୟନ୍ତ୍ରିତ ଏବଂ ଆଙ୍ଗିକ ମଧ୍ୟ ରୀତିଧର୍ମୀ ଥିଲା । ତାଙ୍କର "କୁପ୍ପାଲପ୍ପା" (କୁପରନ୍ଦନ) ପୁଲ୍ଲନ୍ରେ କୋଲ୍ଲୋ (ଦୁବାଦଳ କଥନିକା), ମଜ୍ଜାହାରୁଲ୍ଲି (ବର୍ଷାବିନ୍ଦୁ), ତୁମ୍ପାପୁଭୁ (କ୍ଲେସେଡ଼େନଡ୍ରେନ ଫୁଲ), ପ୍ରଭୃତି ରଚନା ରୋମାନ୍ସଧର୍ମୀ ଏବଂ ସେଥିରେ ଭୃଙ୍ଗକଳ୍ପନା ବିଳାସ ତଥା ଆଲଙ୍କାରିକ ଛଟାର ସ୍ୱାକ୍ଷର ପ୍ରତିଭାତ । ୧୯୧୩ ରେ ତାଙ୍କର ଦୀର୍ଘ କାବ୍ୟ "ଉମାକେରଳମ୍" ପ୍ରକାଶିତ ହୁଏ । ସଂସ୍କୃତ ବୃତ୍ତ ଏବଂ ସର୍ଗର ଶୃଙ୍ଖଳା ଯୋଗୁ ଏହାକୁ ସଂସ୍କୃତର ମହାକାବ୍ୟ ଆଖ୍ୟା ଦିଆଯାଇପାରେ । "ଉମାକେରଳମ୍" କାବ୍ୟର କଥାବସ୍ତୁ ଐତିହାସିକ । ଯଥା—ଭେନାଦ୍‌ର ରାଣୀ ଉମାୟମ୍ମା ତାଙ୍କ ରାଜ୍ୟ ସାମନ୍ତମାନଙ୍କ ସହିତ ଯେଉଁ ଦ୍ୱନ୍ଦ୍ୱର ସମ୍ମୁଖୀନ ହୋଇଥିଲେ ତାହାହିଁ କାବ୍ୟରେ ବର୍ଣ୍ଣିତ । କେରଳବର୍ମା କାବ୍ୟର ମୁଖବନ୍ଧରେ ଏହାକୁ କଥାବସ୍ତୁ, ବିସ୍ତୃତ ଏବଂ ପାଣ୍ଡିତ୍ୟପୂର୍ଣ୍ଣ ଶୈଳୀ ଦୃଷ୍ଟିରେ ଶ୍ରୀହର୍ଷଙ୍କ ନୈଷଧ ସହିତ ତୁଳନା କରିଥିଲେ । "ଉମାକେରଳମ୍" କାବ୍ୟ ପ୍ରକାଶନ ପରେ ସେ ମହାକବି ରୂପେ ବିବେଚିତ ହେଲେ । ଏହାର ୧୫ ବର୍ଷ ପରେ ଉଲ୍ଲୁର ଦ୍ରାବିଡ଼ (Dravidian) ବୃତ୍ତିରେ "କର୍ଣ୍ଣଭୂଷଣମ୍" ଗୀତିକାବ୍ୟ ରଚନା କରିଥିଲେ । 'କର୍ଣ୍ଣଭୂଷଣମ୍'ର କଥାବସ୍ତୁ ପୌରାଣିକ ଏବଂ ଦାନବୀର କର୍ଣ୍ଣଙ୍କର ତ୍ୟାଗପୂତ ଚରିତହିଁ କାବ୍ୟରେ ମନୋଜ୍ଞ ଭାଷାରେ ବର୍ଣ୍ଣିତ । "ପିଙ୍ଗଳା" ତାଙ୍କର ଆଉ ଏକ ଗୀତିକାବ୍ୟ । "ଭକ୍ତିଦୀପିକା" ଉଲ୍ଲୁରଙ୍କର ଆଉ ଏକ ସଂକ୍ଷିପ୍ତ ରଚନା । ଏହାର ବିଷୟବସ୍ତୁ "ଶଙ୍କର ଦିଗ୍‌ବିଜୟ"ରୁ ଗୃହୀତ । ଶଙ୍କରଙ୍କ ଶିଷ୍ୟ "ପଦ୍ମପାଦ"ର ଚରିତ ଏଥିରେ ବର୍ଣ୍ଣିତ । କାବ୍ୟରେ ଗୁରୁ ଶଙ୍କରାଚାର୍ଯ୍ୟଙ୍କର ମହିମାହିଁ ପ୍ରଧାନ ସ୍ଥାନ ଅଧିକାର କରିଥିବାର ଜଣାଯାଏ । ମହାକାବ୍ୟ ଉମାକେରଳମ୍, ଲଘୁକାବ୍ୟ କର୍ଣ୍ଣଭୂଷଣମ, ପିଙ୍ଗଳା ବ୍ୟତୀତ ସଂଖ୍ୟାଧିକ ଗୀତିରଚନା କବିଙ୍କର ଅସାଧାରଣ କୃତିତ୍ୱର ପ୍ରମାଣ ଦିଏ । "ପ୍ରେମସଂଗୀତ"ରେ କବି 'ପ୍ରେମ'କୁ ସାର୍ବଜନୀନ ଆଖ୍ୟା ଦେଇଛନ୍ତି । ଉଲ୍ଲୁରଙ୍କ ସମସ୍ତ ରଚନାର ମୁଖ୍ୟବାର୍ତ୍ତା ହେଉଛି ପରମେଶ୍ୱର ମାର୍ଗରେ, ସତ୍ୟ, ନ୍ୟାୟ ତଥା ସୌନ୍ଦର୍ଯ୍ୟର ପ୍ରତିଷ୍ଠା । କର୍ମଫଳରେ ତାଙ୍କର ଅଗାଧ ବିଶ୍ୱାସ ଥିଲା । ଉଲ୍ଲୁରଙ୍କ ଶୈଳୀ ପାଣ୍ଡିତ୍ୟର ପ୍ରତୀକ ଏବଂ ତାଙ୍କର ଉଚ୍ଚ ଚିନ୍ତା ସମୃଦ୍ଧ ସ୍ୱଚ୍ଛ କବିତ୍ୱଶକ୍ତିର ହେତୁ । ତାଙ୍କର "କେରଳସାହିତ୍ୟ ଚରିତମ୍" ପାଞ୍ଚଭାଗରେ ବିଭକ୍ତ ଏବଂ କେରଳ ସାହିତ୍ୟର ଏହା ଏକ ନିର୍ଭରଯୋଗ୍ୟ ବିବରଣୀ । ସେ ଜଣେ ତାମିଲ ବ୍ରାହ୍ମଣ ଥିଲେ । ଘରେ ତାମିଲରେ କଥାବାର୍ତ୍ତା କରୁଥିଲେ, ମାଲୟାଲମ୍ ଭାଷାରେ ଉଚାଙ୍ଗ ଗଦ୍ୟ ଏବଂ ପଦ୍ୟ ରଚନା କରୁଥିଲେ । ଆଧୁନିକ କେରଳ ସାହିତ୍ୟ ତଥା ସଂସ୍କୃତ ତାଙ୍କ ନିକଟରେ କୃତଜ୍ଞ ।

ଭାଲ୍ଲାଥୋଲ ନାରାୟଣ ମେନନ୍ (୧୮୭୮-୧୯୫୮) ଆଧୁନିକ ମାଲୟାଲମ ସାହିତ୍ୟରେ ସୁପ୍ରତିଷ୍ଠିତ କବି, ବିଶେଷ ଜନପ୍ରିୟ କବି, ଗଭୀର ଜାତୀୟତା

ବୋଧର ପ୍ରବର୍ତ୍ତକ ଏବଂ ସୁଦକ୍ଷ ଅନୁବାଦକ ମଧ୍ୟ । ଭାରତୀୟ ଜାତୀୟ ଆନ୍ଦୋଳନର ପ୍ରବାହରେ ତାଙ୍କର ଶକ୍ତିଶାଳୀ ଲେଖନୀ ମୁଖରିତ ହୋଇ ଉଠିଲା । ତାଙ୍କର କବିମାନସର ବୈପ୍ଳବିକ ପରିବର୍ତ୍ତନ ଆଧୁନିକ ମାଲୟାଲମ୍ ସାହିତ୍ୟରେ ଏକ ସ୍ୱତନ୍ତ୍ର କ୍ରାନ୍ତିଶୀଳ ଦୃଷ୍ଟିକୋଣ ସୃଷ୍ଟି କରିଥିଲା । ସାମ୍ରାଜ୍ୟବାଦୀ ଶୋଷଣ ବିରୋଧରେ ମହାତ୍ମାଗାନ୍ଧୀଙ୍କ ଆଦର୍ଶ ପ୍ରଭାବରେ ତାଙ୍କର ସମଗ୍ର କବିତ୍ୱ କେରଳ ପାଠକମାନଙ୍କୁ ଆହ୍ୱାନ ଜଣାଇଥିଲା । ସାମାଜିକ ନ୍ୟାୟ, ରାଜନୈତିକ ଅଧିକାର ଏବଂ ଅର୍ଥନୈତିକ ସାମ୍ୟର ସେ ଥିଲେ ପକ୍ଷପାତୀ । ସେଥିପାଇଁ ମହାଯୁଦ୍ଧ ପରବର୍ତ୍ତୀ କାଳରେ ଭାଲ୍ଲାଥୋଲଙ୍କ କବିତା ନିଃସ୍ୱ, ନିଷ୍ପେଷିତ ମାନବମନର ଯେପରି ଉଦ୍‌ବେଳନ । ତାଙ୍କର ଅଗ୍ନିବର୍ଷୀ ଦେଶପ୍ରେମ ମୂଳକ କବିତା ପଢ଼ି ବହୁ ତରୁଣ ଜାତୀୟ ସଂଗ୍ରାମରେ ନିଜ ନିଜକୁ ଉତ୍ସର୍ଗ କରିଥିଲେ ।

ଦକ୍ଷିଣ ମାଲବାରର ଏକ କ୍ଷୁଦ୍ର ପଲ୍ଲୀଗ୍ରାମ, ଚତୁର୍ଦ୍ଦିଗରେ ଆମ୍ର-ନାରକେଳ-ତାଳବନର ସ୍ନିଗ୍ଧ ଛାୟାଘେରା ସବୁଜ ବନାନୀ, ଭାଲ୍ଲାଥୋଲଙ୍କର ସେହି ଗ୍ରାମରେ ଜନ୍ମ । ଗ୍ରାମ୍ୟ ପାଠଶାଳାରେ ଶିକ୍ଷା ଏବଂ ତତ୍ ସହିତ ସଂସ୍କୃତ ଅଧ୍ୟୟନ ଥିଲା ତାଙ୍କର ବିଦ୍ୟାର୍ଜ୍ଜନର ପନ୍ଥା । ପ୍ରାଚୀନ ସଂସ୍କୃତ କାବ୍ୟ ସାହିତ୍ୟ ତାଙ୍କୁ ବିଶେଷ ସାହାଯ୍ୟ କରିଥିଲା । ସେଥିପାଇଁ କାଳିଦାସଙ୍କ ପ୍ରସିଦ୍ଧ "ଋତୁସଂହାର" ଅନୁସରଣରେ ଭାଲ୍ଲାଥୋଲ "ଋତୁବିଲାସ" ରଚନା କଲେ । ସେତେବେଳେ ତାଙ୍କର ବୟସ ମାତ୍ର ୧୯ ବର୍ଷ । ଋତୁବିଲାସ "କାବନୋଦୟ" ପତ୍ରିକାରେ ଧାରାବାହିକ ଭାବରେ ପ୍ରକାଶିତ ହେଉଥିଲା । ତ୍ରିଚୁରକୁ ପ୍ରସ୍ଥାନ କରିବା ପରେ ତାଙ୍କର କବିତ୍ୱ ଶକ୍ତି ସୁଯୋଗ ପାଇ ଆହୁରି ବିକାଶ ଲାଭ କଲା । ବାଲ୍ମୀକି ରାମାୟଣର ଅନୁବାଦ ଭାଲ୍ଲାଥୋଲଙ୍କର ଏକ ସାର୍ଥକ ସୃଷ୍ଟି । ମାଲୟାଲମ୍ ସାହିତ୍ୟ ଏହି ସମୟରେ କେରଳବର୍ମା ପ୍ରମୁଖ କେତେଜଣ ସାହିତ୍ୟିକଙ୍କ ଉଦ୍ୟମରେ ଏକ ଯୁଗାନ୍ତରର ସମ୍ମୁଖୀନ ହୋଇଥିଲା । ପଦ୍ୟରେ ସଂସ୍କୃତ ଏବଂ ଗଦ୍ୟରେ ଇଂରେଜ ସାହିତ୍ୟ ଥିଲା ଏହି ସମୟର ସାହିତ୍ୟର ଆଦର୍ଶ । ସେଥିପାଇଁ ଏହାପରେ ଭାଲ୍ଲାଥୋଲ "ମହାକାବ୍ୟ ଚିତ୍ରଯୋଗ" ରଚନା କଲେ । କିନ୍ତୁ ତାଙ୍କର କ୍ଷୁଦ୍ର ଗୀତ କବିତା ସମୂହହିଁ ଅଧିକ ଦୃଷ୍ଟି ଆକର୍ଷଣ କରିଥିଲା । ଯଥା—"ବଦ୍ଧୀର ବିଲାପମ୍", "ଗଣପତି", "ମଗଦଲନମାରିୟମ୍", "ଶିଷ୍ୟନମ୍ମାକନମ୍", "ନାଗୀଲ୍", "କୋଚୁସୀତା", "ବାପୁଜୀ", "ଆଚନମ ମାକଲମ", ବଦ୍ଧୀରବିଲାପମ" କବିତାଟି ଦରଦୀର ଅନୁଭୂତିରେ ରସାଣିତ । ବିଂଶ ଶତାବ୍ଦୀର ପ୍ରଥମ ଦଶନ୍ଧିମାନଙ୍କରେ ମଧ୍ୟ ମାଲୟାଲମ୍ ସାହିତ୍ୟର ଆଦର୍ଶ ଥିଲା ପ୍ରାଚୀନ ସଂସ୍କୃତ କାବ୍ୟ ସାହିତ୍ୟ; କିନ୍ତୁ ଏହି ମୂଲ୍ୟବୋଧ ପାଶ୍ଚାତ୍ୟ ସାହିତ୍ୟ ତଥା ସଂସ୍କୃତିର ପ୍ରସାର ସଙ୍ଗେ ସଙ୍ଗେ ପରିବର୍ତ୍ତିତ ହେଲା । ଏହି ନୂତନ ପ୍ରଭାବର ଆତ୍ମପ୍ରକାଶ ହେଉଛି ରୋମାଣ୍ଟିକ

ଆନ୍ଦୋଳନ । ଭାଲ୍ଲାଥୋଲ୍‌ଙ୍କ ଗୀତି କବିତା ସମୂହ ବ୍ୟକ୍ତିନିଷ୍ଠ, ସୌନ୍ଦର୍ଯ୍ୟବୋଧ ତଥା ଅନୁଭୂତିର ଗଭୀରତା ଦ୍ୱାରା ଦରଦ ପୂର୍ଣ୍ଣ । ତାଙ୍କର ପ୍ରତ୍ୟେକ ରଚନା ହିଁ ଯେପରି ଏକ ବିଶ୍ୱସ୍ତ କଳାତ୍ମକ କୃତି ଏବଂ ନିଜ ଗୁଣରେ ଅସାଧାରଣ । ସାହିତ୍ୟ ମଂଜରୀ, ବୀରଶୃଙ୍ଖଳା, ଦିବାସ୍ୱପ୍ନ ପ୍ରଭୃତି ତାଙ୍କର ଗୀତି କବିତା ଗୁଚ୍ଛ । ଏଥିରେ ସନ୍ନିବେଶିତ ଶତାଧିକ ଗୀତିକବିତାହିଁ ତାଙ୍କ କବିତ୍ୱର ପ୍ରମାଣ । ମାନବ ସମାଜ ତଥା ପ୍ରାକୃତିକ ସୌନ୍ଦର୍ଯ୍ୟର ସେ ଥିଲେ ଉପାସକ । ସେ ଥିଲେ ନିର୍ଜନତାର ଭକ୍ତ; କିନ୍ତୁ ଦୁଃଖ ନୈରାଶ୍ୟ ପୂର୍ଣ୍ଣ ସମାଜରେ ମଧ୍ୟ ସେ ରହିବାକୁ ଚାହିଁଥିଲେ । ସେ ଚାହୁଁଥିଲେ ତାର ପୂର୍ଣ୍ଣ ସଂସ୍କାର ।

କେରଳ ଓ ତାର ପ୍ରାକୃତିକ ସୌନ୍ଦର୍ଯ୍ୟ; ବିଲବନ, ପର୍ବତ, ଖେତ ଖମାର, ନରନାରୀ ଏ ସମସ୍ତ ତାଙ୍କ କବିତାଗୁଡ଼ିକରେ ଉଦ୍ଭାସିତ ହୋଇପାରିଛନ୍ତି । ଜନ୍ମମାଟିର ବନ୍ଦନା, ତାର କୀର୍ତ୍ତିଗାନ ହିଁ ଯେପରି ତାଙ୍କ କବିତାର ପ୍ରାଣ । "ସାହିତ୍ୟ ମଂଜରୀ"ର ପ୍ରଥମ କବିତାଟି 'କେରଳ'କୁ ସମ୍ବୋଧନ କରି ଲିଖିତ କିନ୍ତୁ କେରଳ ପ୍ରତି ତାଙ୍କର ଯେଉଁ ଶ୍ରଦ୍ଧା ଭକ୍ତି ତାହା କେବଳ ସମଗ୍ର ଭାରତବର୍ଷ ପ୍ରତି ଥିବା ତାଙ୍କର ଆନୁଗତ୍ୟରେ ପ୍ରତୀକ । ଶ୍ରୀ ଶଙ୍କରାଚାର୍ଯ୍ୟଙ୍କ ସମ୍ପର୍କରେ ଲିଖିତ କବିତାରେ କବିଙ୍କର ମହାଭାରତୀୟବୋଧ ହିଁ ପ୍ରତିଫଳିତ । ଭାରତର ପ୍ରାଚୀନ ଐତିହ୍ୟ ସାଂସ୍କୃତିକ ବିଶାଳତା ତାଙ୍କ କବିତାରେ କମ୍ ପ୍ରତିଫଳିତ ହୋଇନାହିଁ । "ଏନ୍ତେଗୁରୁନାଥନ" (ମୋର ଗୁରୁଦେବ) କବିତାଟି 'ଜାତୀୟ ଆନ୍ଦୋଳନ' ଉଚ୍ଛ୍ୱାସରେ ପୂର୍ଣ୍ଣ । କେରଳର ପ୍ରାଚୀନ କଥକଳୀ ନୃତ୍ୟର ପ୍ରବର୍ତ୍ତକ ରୂପେ ଭାଲ୍ଲାଥୋଲ ମଧ୍ୟ ସୁପରିଚିତ । କବିଙ୍କର ବହୁ କାହାଣୀ-କବିତା 'କଥକଳୀ' ନାଟ୍ୟ ଆଙ୍ଗିକ ମାଧ୍ୟରେ ଅଭିନୀତ ହୋଇଥିଲା । କଥକଳୀର ପୁନରୁଦ୍ଧାର ନିମନ୍ତେ ୧୯୩୦ରେ କବି "କଳାମଣ୍ଡପମ୍" ସ୍ଥାପନ କରିଥିଲେ ।

ଅନୁବାଦ କ୍ଷେତ୍ରରେ ମଧ୍ୟ ଭାଲ୍ଲାଥୋଲ୍‌ଙ୍କ ଦକ୍ଷତା ସ୍ପଷ୍ଟ । ସମଗ୍ର ଋକ୍‌ବେଦ, ବାମନପୁରାଣ, ମତ୍ସ୍ୟପୁରାଣ, ପଦ୍ମପୁରାଣ, ଅଗ୍ନିପୁରାଣ ପ୍ରଭୃତି ସେ ସରଳ ଗଦ୍ୟ ଏବଂ ମାଲୟାଲମ୍ ପଦ୍ୟରେ ଅନୁବାଦ କରିଥିଲେ । ତାଙ୍କର କାବ୍ୟକବିତାମାନଙ୍କରେ ପ୍ରାଚୀନ ରୀତି ପରିତ୍ୟାଜ୍ୟ ଏବଂ ବିପ୍ଳବମୁଖୀ ସାମାଜିକ ସମସ୍ୟା ଗ୍ରହଣୀୟ ।

ମାଲୟାଲମ୍ କାବ୍ୟକବିତାର ଆଧୁନିକ ବିକାଶ (୧୯୦୮-୩୫) ତଥା ପରିବର୍ତ୍ତିତ ରୂପ ନିମନ୍ତେ ଉପରୋକ୍ତ କବିତ୍ରୟଙ୍କର ଦାନ ଅପରିସୀମ । ପ୍ରତ୍ୟେକ ନିଜ ନିଜର ସାଧନା, ସ୍ୱତନ୍ତ୍ର ଦୃଷ୍ଟିକୋଣ ଏବଂ ପ୍ରଗ୍ରତିଶୀଳ ମାନବିକତା ଆଦର୍ଶ ନିମନ୍ତେ ପ୍ରତିଷ୍ଠିତ । ସେମାନଙ୍କ ମୌଳିକ କୃତିସମୂହ ମାଲୟାଲମ୍ ସାହିତ୍ୟରେ ଅପୂର୍ବ ଜାଗରଣ ସୃଷ୍ଟି କରିଥିଲା । ମାଲୟାଲମ୍ ସାହିତ୍ୟରେ ଏହି ତ୍ରିମୂର୍ତ୍ତିଙ୍କର ପ୍ରଭାବ ସ୍ୱୀକାର୍ଯ୍ୟ ।

ଏହି ଯୁଗର କବିତା ବିଭାଗରେ କେଶବନ୍ ନାମ୍ବାର ଏବଂ କେ. ଏମ୍. ପାନିକର୍‌ଙ୍କର ଦାନ ମଧ୍ୟ କମ୍ ନୁହେଁ । କେଶବନ୍ ନାମ୍ବାର ଧ୍ରୁପଦୀ ଅନୁସରଣ କରି ବହୁ କବିତା ରଚନା କରିଥିଲେ ଏବଂ ପାନିକର୍ ଉଭୟ ଧ୍ରୁପଦୀ ଏବଂ ଆଧୁନିକ କାବ୍ୟଧାରର ସମନ୍ୱୟ ସାଧନ କରିଥିଲେ । ପାନିକର୍ ପ୍ରାଚୀନ ଚଂପୂ ରଚନାକୁ ନୂତନରୂପ ପ୍ରଦାନ କରିଥିଲେ । ସେ ତାଙ୍କ ଚଂପୂରେ ଉଭୟ ଗଦ୍ୟ ଓ ପଦ୍ୟ ପ୍ରୟୋଗ କରିଥିଲେ । ତାଙ୍କ ଲେଖନୀରେ କାବ୍ୟ କବିତା ଆଲଙ୍କାରିକ ଛଟା ତଥା ସାଜସଜ୍ଜାରେ ଯେପରି ପୁଷ୍ଟି ହେଲା । "ପଙ୍କିପରିଣୟ" ତାଙ୍କ ଲିଖିତ ଏକ କାବ୍ୟ । "ପଙ୍କି" ନାମ୍ନୀ ଏକ ତରୁଣୀ କାବ୍ୟର ନାୟିକା ତାହାର ପରିଣୟ ସମ୍ପାଦନ ସୂତ୍ରରେ କବି ସମସାମୟିକ କେରଳୀ ସମାଜର ଚିତ୍ର ପ୍ରଦାନ କରିଛନ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହାଛଡ଼ା "ଚନ୍ଦ୍ରୋତରଙ୍ଗିଣୀ", ଅମ୍ବାପଲ୍ଲୀ ମଧ୍ୟ ତାଙ୍କର ବିଶିଷ୍ଟ କାବ୍ୟକବିତା । ନାଟକ, ଇତିହାସ, ଜୀବନୀ ସାହିତ୍ୟରେ ତାଙ୍କର କୃତିତ୍ୱ ସ୍ପଷ୍ଟ ।

ସଂସ୍କୃତ ରୂପଧାରରୁ ଆଧୁନିକ ମାଲୟାଲମ୍ କବିତାକୁ ମୁକ୍ତ କରିଥିଲେ ଚଙ୍ଗମପୁଜା କୃଷ୍ଣ ପିଲ୍ଲେଇ । ପଲ୍ଲୀଜୀବନର ଲୋକ ସଂସ୍କୃତି ତଥା ଚଳଣୀ ବର୍ଣ୍ଣନା କରିବାରେ ତାଙ୍କର କବିତା ସାର୍ଥକ ହୋଇଛି । ତାଙ୍କର ଗାଥା-କାବ୍ୟ "ରମନନ" ଗ୍ରାମ୍ୟଧର୍ମୀ । କବି ନିଜର ବନ୍ଧୁଙ୍କର ମୃତ୍ୟୁକୁ ଲକ୍ଷ୍ୟ କରି କାବ୍ୟଟି ଲେଖିଥିଲେ । ବିଚ୍ଛେଦ ଏବଂ ବିଦାୟର କରୁଣ ଦରଦହିଁ ଏହି ଗ୍ରାମ୍ୟଧର୍ମୀ କାବ୍ୟକୁ ଅଶ୍ରୁସିକ୍ତ କରିଅଛି । ତାଙ୍କର "ଭଜକକୁଲ୍" କବିତାଟି ସମଗ୍ର କେରଳର ସର୍ବହରା ସମାଜର ଯେପରି ଅଶ୍ରୁଳିପି । ଗୋଟିଏ ହରିଜନ ପରିବାରକୁ କେନ୍ଦ୍ରକରି ଏହା ଲିଖିତ ଏବଂ ବାସ୍ତବତାର ବିଶ୍ୱସ୍ତ ଚିତ୍ର । ଆଲୋଚ୍ୟ କବିତାରେ ଗୋଟିଏ 'କଦଳୀ' ଗଛର ସ୍ୱପ୍ନ ସଂଭାର ତଥା ହରିଜନ ପରିବାରର ଆଶା ଏବଂ ଶେଷରେ ବ୍ୟର୍ଥତା ହିଁ ସୂଚୀତ । ସେ କେରଳର ପ୍ରକୃତ ଲୋକପ୍ରିୟ କବି ।

ବର୍ତ୍ତମାନ କାଳରେ କବି ଜି. ଶଙ୍କରକୁରୁପ * (୧୯୦୧)ଙ୍କର ପ୍ରଭାବ ସର୍ବାଧିକ । ଭାଲ୍ଲାଥୋଲ୍‌ଙ୍କ ପରେ ଜି. ଶଙ୍କରକୁରୁପ ପ୍ରଭାବଶାଳୀ କବି ରୂପେ ସ୍ୱୀକୃତ । ନୂତନ ଭାଷା ଏବଂ ନୂତନ ପ୍ରତୀକ ପ୍ରୟୋଗହିଁ ତାଙ୍କ କବିତାର ବୈଶିଷ୍ଟ୍ୟ । ଗଭୀର ଅନୁଭୂତି ଏବଂ ପ୍ରାଣାବେଗ ଯୋଗୁଁ ତାଙ୍କର କବିତା ପାଠକ ସମାଜରେ ଚହଲ ସୃଷ୍ଟି କରିଥିଲା । ନୂତନ ପରୀକ୍ଷା ନିରୀକ୍ଷା ତାଙ୍କ କବିତାର ଏକ ପ୍ରଧାନ ନିଦର୍ଶନ । ଜି. ଶଙ୍କରକୁରୁପଙ୍କ କବିତାର ଧାରା ଗାନ୍ଧୀ ଆଦର୍ଶ ଉପରେ ପ୍ରତିଷ୍ଠିତ । "ସୂର୍ଯ୍ୟକାନ୍ତ" ଠାରୁ ଷୋଡଶ କବିତା ସଙ୍କଳନ "ଜୀବନ ସଂଗୀତ" (୧୯୬୪) ପର୍ଯ୍ୟନ୍ତ ତାଙ୍କର ପ୍ରତ୍ୟେକ ରଚନା ରସୋତ୍ତୀର୍ଣ୍ଣ ଏବଂ ବର୍ଣ୍ଣୋଜ୍ଜ୍ୱଳ । ନିର୍ଝରଣୀର କଲଗୁଂଜନ ଅପେକ୍ଷା ସମୁଦ୍ରର ଗୁରୁ ଗର୍ଜନହିଁ ତାଙ୍କର ରଚନାବଳୀରେ ନିନାଦିତ । 'ପ୍ରତୀକବାଦ'ର ପ୍ରୟୋଗ ତାଙ୍କ କବିତାଶୈଳୀର ଏକ

* ୧୯୬୩ ମସିହାରେ କେନ୍ଦ୍ରସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ ।

ଆକର୍ଷଣୀୟ ଉପାଦାନ । ସେଥିରେ ଏକ ସଂପୂର୍ଣ୍ଣ ପ୍ରଗତିବାଦୀ ଦୃଷ୍ଟିକୋଣ ପ୍ରତିବିମ୍ବିତ । "ଓଟ୍ଟାକୁଲ୍ଲାଲ" ତାଙ୍କର ଏକ ଶ୍ରେଷ୍ଠ କବିତା ସଂକଳନ । ଏହା ବ୍ୟତୀତ କେତେଖଣ୍ଡି ନାଟକ, ପ୍ରବନ୍ଧ ଏବଂ ଶିଶୁରଚନା ତାଙ୍କର କୃତିର ଅନ୍ତର୍ଗତ । ଆଧୁନିକ ପ୍ରତିଷ୍ଠିତ କବିମାନଙ୍କ ମଧ୍ୟରେ ସେ ନିଶ୍ଚିତ ଭାବରେ ସ୍ୱୀକୃତ । ପ୍ରାଚ୍ୟ ଅଦ୍ୱୈତବାଦ ଏବଂ ପାରସୀୟ ସୁଫିବାଦର ପ୍ରତିଧ୍ୱନି ତାଙ୍କ କବିତାମାନଙ୍କରେ ଶୁଣିବାକୁ ମିଳେ । ପ୍ରକୃତିରେ ମାନବତ୍ୱ ଆରୋପ ତାଙ୍କ ବୈପ୍ଳବିକ କବି ଦୃଷ୍ଟିକୁ ତରଙ୍ଗିତ କରିଥିଲା । ସେ ରବୀନ୍ଦ୍ରନାଥଙ୍କର ବଙ୍ଗଳାରୁ "ଗୀତାଂଜଳୀ" ଏବଂ ଓମରଖୟାମ୍‌ଙ୍କର "ରୁବାୟତ"ର ମାଲୟାଲମ୍ ଅନୁବାଦକ । ୧୯୫୦ରେ ପ୍ରକାଶିତ ତାଙ୍କର କବିତା ସଙ୍କଳନ "ଓଡାକୁଜଲ" (ବଂଶୀ) ବିଶେଷ ଆଦୃତ * ।

ଏଡ଼ାପଲ୍ଲୀ ରାଘବନ ପିଲ୍ଲାଇ, ଲଲିତାମ୍ବିକା ଅନ୍ତର୍ଯ୍ୟାମ୍, ବେନ୍ନିକୁଲମ୍ ଗୋପାଳ କୁରୁପ, ପାଲନାରାୟଣ ଆୟାର, ବାଲମଣି ଆମ୍ମା ପ୍ରଭୃତି କବିଙ୍କର ନାମ ଉଲ୍ଲେଖଯୋଗ୍ୟ । ଏମାନଙ୍କ କବିତାରେ ଆଧୁନିକ ଦୃଷ୍ଟିଭଙ୍ଗି ତଥା ବୈପ୍ଳବିକ ଭାବଧାରା ପରିସ୍ଫୁଟ । କୃଷ୍ଣ ପାରପଲ୍ଲୀ, ବିଷ୍ଣୁ ନାରାୟଣ ନାମ୍ବୁଦ୍ରି, ସୁଗାଥାକୁମାରୀଙ୍କ କବିତା ଅତ୍ୟାଧୁନିକ ପ୍ରୟୋଗାତ୍ମକ ରୀତିର ବାହକ । "ଏଡାପଲୀ" ରାଘବନ୍ ପିଲ୍ଲାଇ ଯେ କି ବ୍ୟର୍ଥ ପ୍ରେମର ଶରବ୍ୟ ହୋଇଥିଲେ, ସେ ତାଙ୍କ କବିତାରେ ଏକ ମାୟାପୁରୀ ରଚନା କରିଥିଲେ ।

ବାଲାମଣି ଆମ୍ମାଙ୍କର କବିତା ଏକ ଅପୂର୍ବ ସୃଷ୍ଟି । ସେଥିରେ କେରଳର ଅନବଦ୍ୟ ପ୍ରକୃତି ସହିତ କେରଳ ନରନାରୀଙ୍କର ଆଶା, ଅଭିଳାଷ ନିବିଡ଼ ଭାବରେ ଜଡ଼ିତ । ଅନୁରାଗ, ଅନୁକଂପା ଯେପରି ତାଙ୍କ କବିତାକୁ ଦଗ୍ଧ କରିଥାଏ । ତାଙ୍କର ଅତ୍ୟାଧୁନିକ କବିତା ଯଥା "କୁରାଢ଼ୀର ଆତ୍ମକଥା" ଏବଂ "ମହାବଲୀ"ରେ ଜନନୀର ନୈର୍ବ୍ୟକ୍ତିକ ଭାବବହ୍ନି ପ୍ରତିଫଳିତ । ସତେ ଯେପରି ବିଶ୍ୱଶିଶୁ ମଧ୍ୟରେ ସେ ସ୍ରଷ୍ଟାଙ୍କର ଦର୍ଶନ ଲାଭ କରିପାରନ୍ତି ।

ଆଧୁନିକ କାଳରେ ଭୟଲପଲ୍ଲୀ ପି. ଅକିତମ୍, ଏଡ଼ାସେରୀ, କ୍ଳାପମାନା ପ୍ରଭୃତିଙ୍କର କବିତା ମଧ୍ୟ ବେଶ ଦୃଷ୍ଟି ଆକର୍ଷଣ କରିଅଛି । କେ. ଏସ. ପାନିକର ଜଣେ ସୁକବି ରୂପେ ପରିଚିତ । କବିତାରେ ନଳପଟ୍ଟି ନାରାୟଣ ମେନନ ମଧ୍ୟ ଉଲେଖ ଯୋଗ୍ୟ "କାନୁନରଥୁଲି" ତାଙ୍କର ଏକ ଶ୍ରେଷ୍ଠ ରଚନା । ଏହା କବିପତ୍ନୀଙ୍କ ବିରହରେ ରଚିତ । ଆଧୁନିକ କବିତାରେ ପ୍ରଗତିଶୀଳ ଦୃଷ୍ଟିକୋଣ ଏବଂ ବୈପ୍ଳବିକ ଭାବଧାରା ପ୍ରତିଫଳିତ । ମାର୍କସବାଦୀ ଚିନ୍ତାଧାରା ସ୍ୱାଧୀନତା ପରବର୍ତ୍ତୀ କବିତାକୁ ପ୍ରଭାବିତ କରିଛି, ଏକ ନୂତନ ସାମାଜିକ ଚେତନା ତାହାର ପ୍ରାଣ । ସାହିତ୍ୟରେ

* ୧୯୬୫-୬୬ରେ ଭାରତୀୟ ଜ୍ଞାନପୀଠରୁ ଏକଲକ୍ଷ ଟଙ୍କା ପୁରସ୍କାର ପ୍ରାପ୍ତ ।

ଗଣ ଅଭିମୁଖ୍ୟ କବିତାର ନୂତନ ଭଙ୍ଗୀ ନିମନ୍ତେ ସମ୍ଭବତଃ ଦାୟୀ । ଧନତାନ୍ତ୍ରିକ ସମାଜ ବିରୋଧରେ ଆହ୍ୱାନ ଦେବା ଅତ୍ୟାଧୁନିକ କବିତାର ଧର୍ମ । ଯୁଗଚେତନାହିଁ କବିର ପ୍ରେରଣା । ୧୯୩୬ ମସିହା ପରେ ମାଲୟାଲମ୍ କବିତାର ଦିକ୍‌ବଳୟ ପରିବର୍ତ୍ତିତ ହେଲା । ୧୯୩୭ରେ ତ୍ରିଚୁର ଠାରେ ଅନୁଷ୍ଠିତ ପ୍ରଗତିଶୀଳ କବିମାନଙ୍କର ସମ୍ମିଳନୀ ଏକ ବିଶେଷ ଘଟଣା । ସେତେବେଳେ ଏହି ଗୋଷ୍ଠୀର ନାମ ଥିଲା "ଜୀବତ୍ ସାହିତ୍ୟମ୍" ଏବଂ ପରେ ତାହା "ପୁରୋଗମନମ୍" ନାମରେ ପରିଚିତ ହୋଇଥିଲା । ଏନ୍. ଭି. କୃଷ୍ଣ ୱାରିୟର, ଆକିକଟମ୍, ଭୟାଲର ରାମବର୍ମା ହେଉଛନ୍ତି ପ୍ରଗତିଶୀଳ ଗୋଷ୍ଠୀର କବି ।

ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧ ଭାରତୀୟ ସାହିତ୍ୟ ତଥା ରାଷ୍ଟ୍ରୀୟ ସଂଗଠନ କ୍ଷେତ୍ରରେ ଏକ ଯୁଗାନ୍ତକାରୀ ଘଡ଼ିସନ୍ଧି ସମୟ ବୋଲି ଜାଣିବାକୁ ହେବ । ଏକ ବିସ୍ତୃତ ସାମାଜିକ ଜୀବନଧାରା ଭାରତୀୟ ସାହିତ୍ୟରେ କ୍ରମଶଃ ଆତ୍ମପ୍ରକାଶ କରିଥିଲା । ନୂତନ ରୁଚି ଏବଂ ନୂତନ ମୂଲ୍ୟବୋଧ ସାହିତ୍ୟରେ 'ଅଭ୍ୟୁଦୟ' ଯୁଗ ସୃଷ୍ଟିର କାରଣ ହେଲା । ଏତାଦୃଶ ପୃଷ୍ଠଭୂମିରେହିଁ ମାଲୟାଲମ୍ ଉପନ୍ୟାସର ଜନ୍ମ ।

୧୮୮୭ ମସିହାରେ ଆପ୍‌ପୁନେଡ଼ୁନ୍‌ଗାଡ଼ିଙ୍କର ପ୍ରକାଶିତ "କୁନ୍ଦଲତା" ହେଉଛି ଆଧୁନିକ ମାଲୟାଲମ୍ ସାହିତ୍ୟରେ ପ୍ରଥମ ପ୍ରକାଶିତ ଉପନ୍ୟାସ । ଏହାର କଥାବସ୍ତୁ ରୋମାନସଧର୍ମୀ ଏବଂ ଶୈଳୀ ମଧ୍ୟ ନୂତନତାପୂର୍ଣ୍ଣ ଏବଂ ସମସାମୟିକ ସାମାଜିକ ଜୀବନକୁ କେନ୍ଦ୍ର କରି ଲିଖିତ ।

ଚନ୍ଦୁମେନନ୍‌ଙ୍କର ୧୮୮୯ରେ ପ୍ରକାଶିତ "ଇନ୍ଦୁଲେଖା" ମାଲୟାଲମ୍ ସାହିତ୍ୟରେ ଗଠନ ନୈପୁଣ୍ୟ ପୂର୍ଣ୍ଣ ତନ୍ତୁ ପଠିତ ପ୍ରଥମ ଲୋକପ୍ରିୟ ଉପନ୍ୟାସ । ସରଳ ଭାଷାରେ ଲିଖିତ ଏହି ଉପନ୍ୟାସ ସମସାମୟିକ ଜୀବନକୁ ଆଶ୍ରୟ କରିଅଛି । 'ଶାରଦା' ହେଉଛି ଏହି ଲେଖକଙ୍କର ଦ୍ୱିତୀୟ ଉପନ୍ୟାସ । ଦୁଃଖର କଥା ଏହା ଅସମ୍ପୂର୍ଣ୍ଣ । ତଥାପି ଏଥିରେ ସାମନ୍ତ ଗୋଷ୍ଠୀର ଚରି ସଫଳତାର ସହିତ ଉପସ୍ଥାପିତ । ଚନ୍ଦୁମେନନ୍‌ଙ୍କର ଉପନ୍ୟାସରେ ବାସ୍ତବବାଦ ଏବଂ ଆଦର୍ଶବାଦର ପରସ୍ପର ସଂଘର୍ଷର ସୂଚନା ମିଳେ । ଔପନ୍ୟାସିକ ଭାବରେ ସି. ଭି. ରମଣ ପିଲ୍ଲାଇଙ୍କ କୃତିତ୍ୱ ସର୍ବବାଦୀ ସମ୍ମତ । ମାର୍ତ୍ତଣ୍ଡବର୍ମା (୧୯୦୩), ଧର୍ମରାଜ (୧୯୧୩), ରାମରାଜାବାହାଦୁର (ଦ୍ୱିଖଣ୍ଡରେ ବିଭକ୍ତ ୧୯୧୮, ୧୯୨୦) ପ୍ରଭୃତି ତାଙ୍କର ପ୍ରଶଂସନୀୟ ଐତିହାସିକ ଉପନ୍ୟାସ । ଏହି ସମସ୍ତ ଉପନ୍ୟାସ ସାଧାରଣତଃ ତ୍ରିବାଙ୍କୁଡ଼ ରାଜ୍ୟର ଐତିହାସିକ ଭୂମିକା ଉପରେ ଆଧାରିତ । "ମାର୍ତ୍ତଣ୍ଡବର୍ମା"ରେ ତ୍ରିବାଙ୍କୁଡ଼ ରାଜ୍ୟର ପ୍ରତିଷ୍ଠାତା ମହାରାଜା ମାର୍ତ୍ତଣ୍ଡବର୍ମାଙ୍କର ବୀରତ୍ୱପୂର୍ଣ୍ଣ କାର୍ଯ୍ୟାବଳୀ ସୂଚିତ । ଏହାର ଐତିହାସିକ ଭୂମିକା ସହିତ ଅନନ୍ତ ପଦ୍ମନାଭନ

ନାମକ ଏକ ପ୍ରଭାବଶାଳୀ ଚରିତ୍ର ମାଧ୍ୟମରେ ସାମାଜିକ ଚିତ୍ର ଚିତ୍ରିତ । ସମାଜର ଉପରସ୍ତରର ବ୍ୟକ୍ତିମାନଙ୍କର ଆଚରଣ ଉପନ୍ୟାସରେ ବର୍ଣ୍ଣିତ । ସେହିପରି ଉପନ୍ୟାସ ରାମରାଜା ବାହାଦୂର ଏବଂ ଧର୍ମରାଜର କଥାବସ୍ତୁ ତ୍ରିବାଙ୍କୁଡ଼ ରାଜ୍ୟର ଅତୀତ ଇତିହାସରୁ ଗୃହୀତ । "ପ୍ରେମାମୃତ" ଉପନ୍ୟାସରେ ସାମାଜିକ ସଂପର୍କର ଅନୁଶୀଳନହିଁ ଉପଜୀବ୍ୟ । ଏହି ଔପନ୍ୟାସିକଙ୍କର ଶୈଳୀ ଗାମ୍ଭୀର୍ଯ୍ୟପୂର୍ଣ୍ଣ ତଥା ଆବେଦନକ୍ଷମ ।

ଔପନ୍ୟାସିକ କେ. ନାରାୟଣ କୁରୁକ୍କଲ ରମଣ ପିଲ୍ଲାଇଙ୍କର ସମସାମୟିକ ଏବଂ ତାଙ୍କର ଉପନ୍ୟାସ ସମୂହ ରାଷ୍ଟ୍ରୀୟ ଚେତନା ଦ୍ୱାରା ପ୍ରଭାବିତ । "ପରାପୁରମ୍" ଏବଂ "ଉଦୟଭାନୁ" ହେଉଛି ପୂର୍ଣ୍ଣତଃ ରାଜନୈତିକ ଉପନ୍ୟାସ । ଏଥିରେ ପରାଧୀନ ଜୀବନର କରୁଣ ଅବସ୍ଥା ଏବଂ ସମସ୍ତ ବନ୍ଧନରୁ ତାର ମୁକ୍ତ ହେବାର ନିବିଡ଼ ଆକାଂକ୍ଷାହିଁ ପ୍ରତିଫଳିତ । ଏହି ଦୁଇଗୋଟି ଉଗ୍ରଜାତୀୟ ଚେତନାଧର୍ମୀ ଉପନ୍ୟାସ ପ୍ରକାଶ କରିବା ପାଇଁ ସେତେବେଳେ କାହାର ସାହସ ନ ଥିଲା । ସ୍ୱଦେଶାଭିମାନୀ ପତ୍ରିକାର ସଂପାଦକ ରାମକୃଷ୍ଣ ପିଲ୍ଲାଇ ଏହି ଉପନ୍ୟାସ ପ୍ରକାଶ କରି ଦଣ୍ଡିତ ହୋଇଥିଲେ । "ଜ୍ୟୋତିଷ୍ମତୀ" ଏବଂ "ସତ୍ୟାଗ୍ରହୀ" ମଧ୍ୟ କୁରୁକ୍କଲଙ୍କର ଉପନ୍ୟାସ ।

ବିଂଶ ଶତାବ୍ଦୀର ପ୍ରଥମ କୋଡ଼ିଏ ବର୍ଷ ମଧ୍ୟରେ ସଂଖ୍ୟାଧିକ ଉପନ୍ୟାସ ରଚନାହିଁ ଏହି ସାହିତ୍ୟିକ ଶାଖାର ସ୍ୱାତନ୍ତ୍ର୍ୟ ପ୍ରତିଷ୍ଠା କରିଥିଲା । ନୂତନ ରୁଚି, ନୂତନ ଦୃଷ୍ଟିଭଙ୍ଗି, ଏବଂ ନୂତନ ମୂଲ୍ୟବୋଧ କ୍ରମେ ଆତ୍ମପ୍ରକାଶ କଲା । ଏହି ସମୟରେ ରଚିତ ନାରାୟଣ ପୋଡ଼ୁଭଲଙ୍କର କେରଳପୁତ୍ରମ୍, ନମ୍ବିସେନ୍‌ଙ୍କର "କେରଳେଶ୍ୱରମ୍" ଏନ୍ ପରମେଶ୍ୱର ପିଲ୍ଲାଇଙ୍କର "କୁଞ୍ଜି ତାମ୍ପିମାର" ହେଉଛି ସାର୍ଥକ କୃତି । କେତେକ ପାଶ୍ଚାତ୍ୟ ଉପନ୍ୟାସର ଅନୁବାଦ ଉପନ୍ୟାସ କଳାର ଶ୍ରୀବୃଦ୍ଧି ସାଧନ କରିଥିଲା । ହ୍ୟୁଗୋ, ଡିକେନ୍‌ସଙ୍କର ଉପନ୍ୟାସ ଅନୂଦିତ ହେଲା । Bravo of Venice ନାମକ ଇଟାଲୀୟ ଉପନ୍ୟାସ ମଧ୍ୟ ଅନୂଦିତ ହେଲା । ବଙ୍କିମ୍, ଶରତ୍‌ଚନ୍ଦ୍ର, ରବୀନ୍ଦ୍ରନାଥ ଠାକୁର ପ୍ରଭୃତି ଭାରତୀୟ ଔପନ୍ୟାସିକମାନଙ୍କର ରଚନା ମାଲୟାଲମ୍ ଭାଷାରେ ଅନୂଦିତ ହୋଇଥିଲା । ଉପନ୍ୟାସ ଅନୁବାଦ କାର୍ଯ୍ୟରେ ଶୁଭ୍ରମନ୍ୟପୋଟ୍ଟି, ଜନକୃଷ୍ଣନ୍ ନାମ୍ବାର ଏବଂ ନାରାୟଣ ମେନନ୍‌ଙ୍କ ନାମ ନାମ ଉଲ୍ଲେଖଯୋଗ୍ୟ । ଯେତେବେଳେ ତାକାଟି ଶିବଶଙ୍କର ପିଲ୍ଲାଇ ଏବଂ ଭି. ଏମ. ବସୀରଙ୍କ ସଦୃଶ ଶକ୍ତିଶାଳୀ ଔପନ୍ୟାସିକ ଲେଖନୀ ଧାରଣ କଲେ, ସେତେବେଳେ ୧୯୩୦ ମସିହା ପରେ ସାର୍ଥକ ସାମାଜିକ ଉପନ୍ୟାସର ଭିତ୍ତି ସ୍ଥାପିତ ହେଲା ଏବଂ ମାଲୟାଲମ୍ ଉପନ୍ୟାସ ନୂତନ ପନ୍ଥାରେ ପ୍ରବର୍ତ୍ତିତ ହେଲା । ଶିବଶଙ୍କର ପିଲ୍ଲାଇଙ୍କର ପ୍ରଥମ ଉପନ୍ୟାସ, "ପତିତପଙ୍କଜମ୍" ଏବଂ "ପ୍ରତିଫଳମ୍" ମାଲୟାଲମ୍ ଉପନ୍ୟାସରେ

ନୂତନ ଦୃଷ୍ଟିକୋଣ ସଂଗ୍ରହ କରିଥିଲା । କେଶବ ଦେବଙ୍କର "ଓଡ଼ାୟିଲ ନିନ୍ନୁ" ନୂତନ ଉପନ୍ୟାସ କଳାର ପ୍ରମାଣ ଦେଇଥିଲା । ଉପନ୍ୟାସସମୂହ କ୍ରମଶଃ ସାମାଜିକ ବାସ୍ତବତାକୁ ଗ୍ରହଣ କରିଥିଲା । ବସୀରଙ୍କର "ବାଲ୍ୟକାଲସାଖୀ" ଉପନ୍ୟାସ ସମାଜରେ ଉଭୟ ନରନାରୀଙ୍କର ଆକର୍ଷଣକୁ ବର୍ଣ୍ଣନା କରି ଲିଖିତ । ସମାଜ ଚେତନା, ବାସ୍ତବବାଦ ଏବଂ ବିକାରଗ୍ରସ୍ତ ବ୍ୟକ୍ତିର ମନୋବିଜ୍ଞାନ ଆଧୁନିକ ଉପନ୍ୟାସରେ ସ୍ଥାନ ପାଇଲା ।

ତାକାଷିଙ୍କର "ରଣ୍ଡିଡାଙ୍ଗଳି" ଉପନ୍ୟାସରେ କେରଳର କୃଷି ସମ୍ପ୍ରଦାୟର ଚିତ୍ର ପ୍ରଦତ୍ତ । 'ଚେମ୍ମିନ୍' ଉପନ୍ୟାସରେ କେରଳର କୈବର୍ତ୍ତସମାଜର ପରିଚୟ ମିଳେ । "ଏନିପାଡ଼୍‌ଡ଼ିକଳ୍"ରେ ବିଭିନ୍ନ ଚରିତ୍ରର ସହାନୁଭୂତିଶୀଳ ଅନୁଶୀଳନ ସମ୍ଭବ ହୋଇଛି । ସେହିପରି ବସୀରଙ୍କର ସମସ୍ତ ଉପନ୍ୟାସ କେରଳର ମୁସଲିମ୍ ସମ୍ପ୍ରଦାୟକୁ ଆଶ୍ରୟ କରି ଲିଖିତ । "ଏଣ୍ଟୁପାପ୍‌ପା କୋରନେଣ୍ଡ୍ରନ" ( ମୋ ଜେଜେ ବାପାଙ୍କର ଗୋଟିଏ ହାତୀ ଥିଲା ), "ମୁଚିଛୁକାଲିକାରଣ୍ଟେ" (ଦ୍ୟୂତ-ଖେଳାଳୀର ଝିଅ) ପ୍ରଭୃତି ତାଙ୍କର ଉଲ୍ଲେଖଯୋଗ୍ୟ କୃତି । କେଶବଦେବଙ୍କର କେତୋଟି ଉପନ୍ୟାସ ଯଥା– "ଓଡ଼ୟିଲନିନ୍ନୁ", "ଆୟାଲକାର" (ପ୍ରତିବେଶୀ) ସଂସ୍କାରବାଦୀ ଦୃଷ୍ଟିକୋଣ ଏବଂ ରକ୍ଷଣଶୀଳ ମନୋବୃତ୍ତି ମଧ୍ୟରେ ଯେଉଁ ଦ୍ୱନ୍ଦ୍ୱ ତାହା ଉପସ୍ଥାପନ କରିଛି । ମାୟାନକୁ କେ. ଦାମୋଦରନ୍‌ଙ୍କର ଉପନ୍ୟାସ ଗଭୀର ସାମାଜିକ ଚେତନା ଯୋଗୁ ସୁବିଦିତ । ତାଙ୍କର ପ୍ରତ୍ୟେକ ଉପନ୍ୟାସରେ ସର୍ବହରା ଗୋଷ୍ଠୀ ପାଇଁ ସମବେଦନା ପ୍ରକାଶିତ ।

ଏବକାଳର ଐତିହାସିକ ଔପନ୍ୟାସିକ ଭାବେ କୋଚିନ୍ ରାଜପରିବାରର ରାମବର୍ମା ଆପ୍‌ପନ ତମ୍ପୁରନ୍, କେ. ଏମ୍. ପାନିକର, ଟି. କେ. ରାମନ୍ ନାମ୍ବିସାନ୍ ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ । ଆଧୁନିକ ମାଲୟାଲମ୍ ସାହିତ୍ୟରେ ବାସୁଦେବନ୍ ନାୟାର, ଉଫି କଭୂର, ସୁରେନ୍ଦ୍ରନ୍ ପଟ୍ଟେକଛ-ଭରବ ପ୍ରଭୃତି ଔପନ୍ୟାସିକଙ୍କର ପ୍ରତିଷ୍ଠା ମଧ୍ୟ ସ୍ୱୀକାର୍ଯ୍ୟ । କାରୁର୍ ନୀଲକଣ୍ଠ ପିଲ୍ଲଇଙ୍କର ଉପନ୍ୟାସ ଲୋକଚରିତ୍ରଧର୍ମୀ । ପାନିକରଙ୍କର "କେରଳସିଂହ" ଏକ ଐତିହାସିକ ଉପନ୍ୟାସ । ସ୍ୱାଧୀନତା ପରବର୍ତ୍ତୀ ଯୁଗରେ ମାଲୟାଲମ୍ ଉପନ୍ୟାସର ଉଭୟ ସଂଖ୍ୟାତ୍ମକ ଏବଂ ଗୁଣାତ୍ମକ ଉତ୍କର୍ଷ ସାଧିତ ହୋଇଅଛି ଏବଂ କେରଳର ଅଗଣିତ ଜନତାର ଏହା ବିଶ୍ୱସ୍ତ ଚିତ୍ର । ଶିବଶଙ୍କର ପିଲ୍ଲଇ ପ୍ରକୃତରେ ଆଧୁନିକ କାଳର ଅପ୍ରତିଦ୍ୱନ୍ଦ୍ୱୀ ଔପନ୍ୟାସିକ । ତାଙ୍କର ଉପନ୍ୟାସ "ଚେମିନ୍" ସାହିତ୍ୟ ଏକାଡ଼େମୀ ପୁରସ୍କାର ପ୍ରାପ୍ତ ହୋଇଅଛି ।

ସାମାଜିକ ଅବ୍ୟବସ୍ଥା ବିରୁଦ୍ଧରେ ତୀବ୍ର ବିଦ୍ରୋହ, ଅର୍ଥନୈତିକ ବୈଷମ୍ୟ, ଶୋଷଣ ବିରୁଦ୍ଧରେ ଯୁଦ୍ଧଘୋଷଣା, ଏହି ପରିପ୍ରେକ୍ଷୀରେ ଆଧୁନିକ ମାଲୟାଲମ୍

କ୍ଷୁଦ୍ରଗଳ୍ପର ଚୂଡ଼ାନ୍ତ ପରୀକ୍ଷା ହୋଇ ପାରିଛି । ଏହି 'ମାନଦଣ୍ଡ'ରେ ବିଚାର କଲେ ଶିବଶଙ୍କର ପିଲ୍ଲାଇ ହେଉଛନ୍ତି ଆଧୁନିକ ଯୁଗର ଶ୍ରେଷ୍ଠ ଗାଳ୍ପିକ । ଆଧୁନିକ ମାଲୟାଲମ୍ କ୍ଷୁଦ୍ରଗଳ୍ପ ସମସ୍ୟାମୂଳକ ଏବଂ ସଂସ୍କାରମୁଖୀ ଏବଂ ଗଭୀର ଅନ୍ତର୍ଦୃଷ୍ଟି ଆଧୁନିକ ଗଳ୍ପସମୂହର ବୈଶିଷ୍ଟ୍ୟ । ପ୍ରଗତିଶୀଳ ସାହିତ୍ୟ ସୃଷ୍ଟି ପାଇଁ ଯେଉଁ "ଜୀବତ୍ସାହିତ୍ୟ" ଗୋଷ୍ଠୀ ସ୍ଥାପିତ ହୋଇଥିଲା, ଶିବଶଙ୍କର ସେହି ଗୋଷ୍ଠୀର ଥିଲେ ଅଗ୍ରଣୀ । ବାସ୍ତବ ସାହିତ୍ୟର ସୃଷ୍ଟି ଏହି ଗୋଷ୍ଠୀର ଥିଲା ଉଦ୍ଦେଶ୍ୟ । ତେଣୁ ଆଧୁନିକ ଯୁଗର ମାଲୟାଲମ୍ କ୍ଷୁଦ୍ରଗଳ୍ପ ଗୁଡ଼ିକ ନୂତନ ଆଙ୍ଗିକ ଯୋଗୁ ଉଲ୍ଲେଖଯୋଗ୍ୟ । ଏହି ସାହିତ୍ୟିକ ଆଙ୍ଗିକ ଆଜି ଶିଳ୍ପ ସଂଘର୍ଷ ପୀଡ଼ିତ ଜୀବନର ଯଥାର୍ଥ ପ୍ରତିବିମ୍ବ ବୋଲି କୁହାଯାଇ ପାରେ ।

ଏହାପରେ ଏ. କେ. ପଟ୍ଟେକାଡ଼େ, କେଶବଦେବ, ପନକୁନ୍ନମବାର୍କେ, କାରୁର ନୀଳକଣ୍ଠ ପିଲ୍ଲାଇ, ଭି. ଏମ୍. ବସୀର ପ୍ରଭୃତି କଥାକାରଙ୍କର ନାମ ଉଲ୍ଲେଖଯୋଗ୍ୟ । ଏମାନଙ୍କ କ୍ଷୁଦ୍ରଗଳ୍ପରେ ଶୋଷିତ ଜନସାଧାରଣଙ୍କର ଜୀବନ ବିଶ୍ୱସ୍ତ ଭାବରେ ଚିତ୍ରିତ । ଗଳ୍ପସ୍ରଷ୍ଟାଭାବରେ ପଟ୍ଟେକାଡ଼େଙ୍କର ଦକ୍ଷତା ସର୍ବସ୍ୱୀକୃତ । ତାଙ୍କ ଗଳ୍ପଗୁଡ଼ିକରେ ଦେଶବିଦେଶର ବହୁ ଅଭିଜ୍ଞତା ପ୍ରତିଫଳିତ । "ଉରୁବ" ଛଦ୍ମ ନାମରେ ପି. ଟି. କୃଷ୍ଣନେନର ବହୁ ଗଳ୍ପ ଲେଖିଛନ୍ତି ଏବଂ ତାଙ୍କର ଗଳ୍ପରୁ ମାଲବାରର ମଧ୍ୟବିତ୍ତ ଜୀବନର ପରିଚୟ ମିଳେ । 'ବାର୍କେ' ବ୍ୟଙ୍ଗାତ୍ମକଗଳ୍ପର ସ୍ରଷ୍ଟା ଏବଂ କାରୁର ନୀଳକଣ୍ଠ ପିଲ୍ଲାଇଙ୍କର ଗଳ୍ପ ବାସ୍ତବବାଦୀ ଏବଂ ରୋମାନ୍ସ-ଧର୍ମୀ । ଗଳ୍ପ ରଚନାରେ ନାରୀଲେଖିକା ଶ୍ରୀମତୀ ସରସ୍ୱତୀ ଆମ୍ମା ଏବଂ ପାର୍ବତୀ ଅନ୍ତର୍ଜାନମଙ୍କର ନାମ ଶୁଣା ଯାଇଥାଏ । ନାରୀସମାଜର ବ୍ୟଥାବେଦନା ରୂପାୟିତ କରିବାରେ ସେମାନଙ୍କର ଗଳ୍ପ ସଫଳ ବୋଲି ଜଣାଯାଏ । କେ. ଟି. ମହମ୍ମଦ ମଧ୍ୟ ତରୁଣ ଗାଳ୍ପିକ । ତାଙ୍କର "କନ୍ନୁକଲ" ଶୀର୍ଷକ ଏକ କ୍ଷୁଦ୍ରଗଳ୍ପ ଭାରତର ଶ୍ରେଷ୍ଠ ଗଳ୍ପ ବୋଲି ଆନ୍ତର୍ଜାତିକ ପୁରସ୍କାର ଲାଭ କରିଥିଲା ।

ଆଧୁନିକ ମାଲୟାଲମ୍ ସାହିତ୍ୟରେ ନାଟକ ଉତ୍ପତ୍ତିର ପ୍ରଥମାବସ୍ଥା ସଂସ୍କୃତ ନାଟକର ଆଦର୍ଶ ଦ୍ୱାରା ଉଦ୍‌ବୁଦ୍ଧ । ସେଥିପାଇଁ ସଂସ୍କୃତରୁ ପ୍ରଥମେ ଅନୁବାଦ କରାଯାଇଥିଲା । "କଥାକଲୀ" କେରଳର ପ୍ରାଚୀନ ନୃତ୍ୟ ସଂପଦ । ଏବ କାଳରେ ତାହା ମଧ୍ୟ ନାଟ୍ୟ ସାହିତ୍ୟର ପ୍ରେରଣା ରୂପେ ବିବେଚିତ । ପ୍ରଥମାବସ୍ଥାରେ ନାଟକ ସମୂହର କଥାବସ୍ତୁ ପୌରାଣିକ ଏବଂ ଐତିହାସିକ ଥିଲା । କେ. ଏମ. ପାନିକର ହେଉଛନ୍ତି ଆଧୁନିକ ନାଟ୍ୟକାର । "ମନ୍ଦୋଦରୀ", "ଭୀଷ୍ମ" ପ୍ରଭୃତି ତାଙ୍କର ପୌରାଣିକ ନାଟକ । ତାଙ୍କ ନାଟକମାନଙ୍କରେ ଉଭୟ ଧ୍ରୁପଦୀ ଏବଂ ଆଧୁନିକ ଶୈଳୀ ବିଦ୍ୟମାନ । ସର୍ବହରା ଶ୍ରମିକ ସମାଜର ପଟ୍ଟଭୂମିକାରେ କେ. ଦାମୋଦରନ୍‌ଙ୍କର ନାଟକାବଳୀ ପରିକଳ୍ପିତ । ଗତ ତିରିଶ ବର୍ଷ ମଧ୍ୟରେ କେରଳର ବିଭିନ୍ନ ଅଞ୍ଚଳରେ ବହୁ ନାଟ୍ୟ ଅନୁଷ୍ଠାନ ଗଢ଼ିଉଠିବା ଫଳରେ ଯଥାର୍ଥ ସମସ୍ୟାବହୁଳ ନାଟକର ଅଭାବ

ଅନୁଭୂତ ହେଲା । ବହୁ ତରୁଣ ନାଟକ ରଚନା ପ୍ରତି ଆକୃଷ୍ଟ ହେଲେ । ବର୍ଣ୍ଣାର୍ଡ଼ ଶ', ଇବ୍‌ସେନ, ମେଟାରଲିଙ୍କ, ଅସ୍କାରୱାଇଲଡ଼ ପ୍ରଭୃତି ପାଶ୍ଚାତ୍ୟ ନାଟ୍ୟକାରଙ୍କର ଲେଖା ମାଲୟାଲମରେ ଅନୂଦିତ ହେଲା । କ୍ରମେ ମନୋବିଜ୍ଞାନସମ୍ମତ ବାସ୍ତବଧର୍ମୀ ନାଟକ ଲେଖା ଯାଇଥିଲା । ଟି. ଏନ୍. ଗୋପୀନାଥନ ନାୟାର, ଏନ. ପି. ଚେଲପ୍ପନ ପିଲ୍ଲାଇ, ଏନ. କୃଷ୍ଣ. ପିଲ୍ଲାଇ, କେ. ଟି. ମହମ୍ମଦ ପ୍ରଭୃତି ନାଟ୍ୟ ସାହିତ୍ୟର ସମୃଦ୍ଧି ପାଇଁ ଲେଖନୀ ଧାରଣ କରିଛନ୍ତି । ନାଟ୍ୟକାର ଥୋପିଲ ଭାସିରଙ୍କର ନାଟକ "ତୁମେ ମୋତେ କମ୍ୟୁନିଷ୍ଟ କରିଛ" ରାଜନୈତିକ ଚେତନା-ପୂର୍ଣ୍ଣ । ଏକାଙ୍କିକା ମଧ୍ୟ ଆଧୁନିକ ନାଟ୍ୟ ସାହିତ୍ୟର ଏକ ସ୍ୱତନ୍ତ୍ର ଅଙ୍ଗରୂପେ ବିବେଚିତ । ରଙ୍ଗମଞ୍ଚର ଶ୍ରୀବୃଦ୍ଧି ସହିତ ନାଟକ ଏବଂ ଏକାଙ୍କିକା ଉପସ୍ଥାପନା ପ୍ରଣାଳୀ ମଧ୍ୟ ପ୍ରବର୍ତ୍ତିତ ହୋଇଅଛି । ସର୍ବାଧୁନିକ ଏକାଙ୍କିକା ଲେଖିବାରେ ସି. କେ. ରାମକୃଷ୍ଣନ ପିଲ୍ଲାଇ, ପଦ୍ମନାଭନ ନାୟାର, ଟି. ଏନ୍. ଗୋପୀନାଥ ନାୟାର, ବିବେକାନନ୍ଦନ, ଭାସି ପ୍ରଭୃତି ଅଗ୍ରଣୀ । ଆଧୁନିକ ପରିପ୍ରେକ୍ଷୀ, ଆଧୁନିକ ରଙ୍ଗମଞ୍ଚ ଦୃଷ୍ଟିରେ ନାଟକ ଏବଂ ଏକାଙ୍କିକା ଏକ ଏକ ନୂତନ ପରୀକ୍ଷା ବୋଲି ଜାଣିବାକୁ ହେବ ।

ଉପନ୍ୟାସ, ଗଳ୍ପ, ନାଟକ ଏବଂ ଏକାଙ୍କିକା ବ୍ୟତୀତ ଆଧୁନିକ ମାଲୟାଲମ ସାହିତ୍ୟ ପ୍ରବନ୍ଧ, ଅନୁବାଦ, ସମାଲୋଚନା, ଭ୍ରମଣ, ଜୀବନୀ ପ୍ରଭୃତି ବିଭିନ୍ନ ବିଭାଗରେ ମଧ୍ୟ ସମୃଦ୍ଧ । ପ୍ରବନ୍ଧ ସାହିତ୍ୟର ବିକାଶ ବହୁ ପରିମାଣରେ ଏ. ବାଲକୃଷ୍ଣ ପିଲ୍ଲାଇଙ୍କର ବିବିଧ ରଚନା ଯୋଗୁ ସମୃଦ୍ଧ । ଗ୍ରନ୍ଥସମୂହର ମୁଖବନ୍ଧଠାରୁ ବିଭିନ୍ନ ଗ୍ରନ୍ଥର ସମାଲୋଚନା ଚିନ୍ତାତ୍ମକ ପ୍ରବନ୍ଧ ତାଙ୍କର ଦାନ । ପ୍ରଥମ ପର୍ଯ୍ୟାୟର ପ୍ରାବନ୍ଧିକ ଏବଂ ସମାଲୋଚକ ହେଲେ କେରଳବର୍ମା, ରାଜରାଜ ବର୍ମା, ଯୋସେଫ ମୁଣ୍ଡାସେରି କୁନହାନ ରାଜା, ପି. ଶଙ୍କରନ ନାମ୍ବିୟାର । ଏମାନେ ପ୍ରାଚୀନ କାବ୍ୟ କବିତାର ଅନୁଶୀଳନ ଆରମ୍ଭ କରିଥିଲେ । ପି. କେ. ନାରାୟଣ ପିଲାଇ ପ୍ରଥମେ ଏଜନ୍ତୁଆଚନ, ଚେରୁସେରି ଏବଂ କୁଞ୍ଚନ ନାମ୍ବିୟାର ପ୍ରଭୃତି ପ୍ରାଚୀନ କବିମାନଙ୍କର କୃତି ଉପରେ ଆଲୋଚନା କରିଥିଲେ । ତାଙ୍କର ସମାଲୋଚନା ସଂସ୍କୃତ ସାହିତ୍ୟର ପରଂପରା ଉପରେ ପ୍ରତିଷ୍ଠିତ । ଉଲ୍ଲୁର, ଆସନ ଏବଂ କବି ଭଲ୍ଲାଥୋଲଙ୍କ ସମୟରେ ସମାଲୋଚନା ସାହିତ୍ୟରେ ରୋମାଣ୍ଟିସିଜମ ଦେଖା ଦେଇଥିଲା । ଉଲ୍ଲୁରଙ୍କ ଲିଖିତ ଗ୍ରନ୍ଥମାନଙ୍କର ଭୂମିକା କେରଳ ସାହିତ୍ୟ ଇତିହାସ ଆଲୋଚନା କ୍ଷେତ୍ରରେ ପଦକ୍ଷେପ । ୧୯୩୦ ବେଳକୁ ଯେତେବେଳେ କେରଳର ସାଧାରଣ ଜୀବନରେ ରାଜନୈତିକ ତଥା ସାମାଜିକ ସଂଘର୍ଷ ଦେଖାଦେଲା ସେତେବେଳେ ସମାଲୋଚନା ସାହିତ୍ୟର ବିଶେଷ ସଂପ୍ରସାରଣ ଘଟିଥିଲା । ମାର୍କସ ଚିନ୍ତାଧାରା ଏବଂ ବୈଜ୍ଞାନିକ ଚିନ୍ତାଧାରା ସମାଲୋଚନା ସାହିତ୍ୟକୁ ପରିପୁଷ୍ଟ କଲା ।

୧୯୩୦ ରେ ତ୍ରିଭେନ୍ଦ୍ରମରୁ ପ୍ରକାଶିତ ଏ. ବାଲକୃଷ୍ଣ ପିଲ୍ଲଇଙ୍କର ସାପ୍ତାହିକ "କେଶରୀ" ସମାଲୋଚନା ସାହିତ୍ୟରୁ ରୋମାଣ୍ଟିସିଜମ ଦୂର କରି ବାସ୍ତବତା ପ୍ରତିଷ୍ଠା କରିଥିଲା । 'କେଶରୀ' ପତ୍ରିକାର ସ୍ତମ୍ଭରେ ବହୁ ତରୁଣ ବୁଦ୍ଧିଜୀବୀମାନଙ୍କର ପ୍ରବନ୍ଧ ପ୍ରକାଶିତ ହୋଇଥିଲା । ସଂପାଦକ ବାଲକୃଷ୍ଣ ପିଲ୍ଲଇଙ୍କର ଉତ୍ସାହ ଲଭ କରି ତାକାଝି, କେଶବଦେବ, ଚଙ୍ଗମପୁଜାହା, ବସୀର ପ୍ରଭୃତି ସାହିତ୍ୟିକମାନେ ପ୍ରବନ୍ଧ ଓ ସମାଲୋଚନା ପ୍ରତି ଆକୃଷ୍ଟ ହେଲେ । ବାସ୍ତବିକ ବାଲକୃଷ୍ଣ ପିଲ୍ଲଇ ହେଉଛନ୍ତି ଆଧୁନିକ ମାଲୟାଲମ୍ ପ୍ରବନ୍ଧ ତଥା ସମାଲୋଚନା ସାହିତ୍ୟର ପ୍ରବର୍ତ୍ତକ ।

ଏମ୍. ପି. ପାଲ ମଧ୍ୟ ଜଣେ ପ୍ରତିଭାଶାଳୀ ପ୍ରାବନ୍ଧିକ । ସେ ଉଭୟ ଉପନ୍ୟାସ ଏବଂ କ୍ଷୁଦ୍ରଗଳ୍ପର ଆଲୋଚନା କରି ପୁସ୍ତକ ଲେଖିଥିଲେ । ସାହିତ୍ୟରେ ଅଳଙ୍କାର ଏବଂ ସୌନ୍ଦର୍ଯ୍ୟ ସମ୍ପର୍କରେ ସେ ଏକ ମୂଲ୍ୟବାନ ପୁସ୍ତକ ଲେଖିଥିଲେ । ସେ ଥିଲେ ପ୍ରଗତିଶୀଳ ଗୋଷ୍ଠୀର ସମର୍ଥକ । ପ୍ରବନ୍ଧ ବିଭାଗରେ ସେ ବୌଦ୍ଧିକ ଜଟିଳତା, ଗଠନ ନୈପୁଣ୍ୟ ଏବଂ ବଳିଷ୍ଠ ବ୍ୟକ୍ତିତ୍ୱ ପ୍ରବର୍ତ୍ତନ କରିଥିଲେ । ଉଭୟ ବାଲକୃଷ୍ଣ-ପିଲ୍ଲଇ ଏବଂ ଏମ୍.ପି. ପାଲ ପାଶ୍ଚାତ୍ୟ ସାହିତ୍ୟ ସମାଲୋଚନା ପଦ୍ଧତି ଅବହିତ ଥିଲେ; କିନ୍ତୁ ସେମାନଙ୍କର ସମସାମୟିକ କୁଟ୍ଟି କୃଷ୍ଣମାରର୍ ପ୍ରାଚୀନ ସଂସ୍କୃତ ରୀତିର ପକ୍ଷପାତୀ ଥିଲେ । ରସ, ଧ୍ୱନି, ଅଳଙ୍କାରର ମାନଦଣ୍ଡରେ ସେ ଥିଲେ କାବ୍ୟ-ସମୀକ୍ଷକ ।

ଜୋସେଫ୍ ମୁଣ୍ଡାସେରୀ ଜଣେ ପ୍ରଭାବଶାଳୀ ପ୍ରାବନ୍ଧିକ । ସେ ଉଭୟ ପ୍ରାଚ୍ୟ, ପାଶ୍ଚାତ୍ୟ ସାହିତ୍ୟରେ ପ୍ରବୀଣ । ତାଙ୍କର ପ୍ରବନ୍ଧମାନଙ୍କରେ ଚିନ୍ତାଶକ୍ତି କଳ୍ପନାବଳିଷ୍ଠତା ହିଁ ପ୍ରତିଫଳିତ । ସାହିତ୍ୟରେ ପ୍ରତିକ୍ରିୟାଶୀଳ ଶକ୍ତିମାନଙ୍କର ସେ ଘୋର ବିରୋଧ କରିଥିଲେ । ସାହିତ୍ୟରେ ସୌନ୍ଦର୍ଯ୍ୟ ଓ ସୌନ୍ଦର୍ଯ୍ୟତତ୍ତ୍ୱ ଶୀର୍ଷକ ତାଙ୍କର ପ୍ରବନ୍ଧାବଳୀ ଅତି ଉଚ୍ଚକୋଟୀର । ୧—ତାଙ୍କର ଆଲୋଚନାରେ ଗୀତି କବିତାର ବିରୋଧ କରି ସେ ନାଟ୍ୟ ସାହିତ୍ୟକୁ ବିଶେଷ ସ୍ଥାନ ଦେଇଛନ୍ତି । ପ୍ରଗତିଶୀଳ ଗୋଷ୍ଠୀର ସେ ଥିଲେ ଅଗ୍ରଣୀ । ମାର୍କସୀୟ ଚିନ୍ତାଦ୍ୱାରା ପ୍ରଭାବିତ ସମାଲୋଚକ ତଥା ପ୍ରାବନ୍ଧିକମାନଙ୍କର ମାଲୟାଲମ୍ ସାହିତ୍ୟରେ ପ୍ରତିଷ୍ଠା ସ୍ୱୀକାର୍ଯ୍ୟ । ସେମାନେ କେବଳ 'ବାସ୍ତବତା'ର ଉପାସକ ନ ଥିଲେ ବରଂ 'ବାସ୍ତବତା'ର ବୈପ୍ଳବିକ ପରିବର୍ତ୍ତନ ବିଷୟର ସେମାନଙ୍କର ଲକ୍ଷ୍ୟ ହୋଇଛି । ମାର୍କସ୍‌ବାଦୀ ଇ. ଏମ୍. ଏସ୍. ନାମ୍ବୁଦିପଦ ଏବଂ କେ. ଦାମୋଦରନ୍ ବିଷୟର ସାହିତ୍ୟ ଏବଂ ରାଷ୍ଟ୍ରନୀତିର ଘନିଷ୍ଠ ସମ୍ପର୍କ

---

୧ । (କ) Introduction to Poetics
(ଖ) Drama, the culmination of Poesy
(ଗ) Raja Raja's Echo

ଏହା ବିଶ୍ୱାସ କରିଥିଲେ । ୧୯୩୦ରୁ ୧୯୫୦ ମଧ୍ୟରେ ବହୁ ବାମପନ୍ଥୀ ସମାଲୋଚନା ଏବଂ ପ୍ରବନ୍ଧ କ୍ଷେତ୍ରରେ ଲେଖନୀ ଧାରଣ କରିଥିଲେ । ମାର୍କସ୍‌ବାଦୀ ଲେଖକଗଣ ସାହିତ୍ୟକୁ ଜନସାଧାରଣର ଅଭିମୁଖୀ କରିବାରେ ବ୍ୟସ୍ତ ଏବଂ ନିର୍ଦ୍ଦିଷ୍ଟ ରାଷ୍ଟ୍ରୀୟ ଉଦ୍ଦେଶ୍ୟ ସାଧନ ସେମାନଙ୍କର ରଚନାର ଲକ୍ଷ୍ୟ । ଏହାଫଳରେ ସେମାନଙ୍କର ସାହିତ୍ୟରେ ସୌନ୍ଦର୍ଯ୍ୟ ବିଶ୍ଳେଷଣର ମାତ୍ରା ଅଳ୍ପ ଏବଂ ରାଜନୈତିକ ପ୍ରଚାରର ମାତ୍ରା ଅଧିକ । ଏହି କାରଣ ଯୋଗୁ ୧୯୪୮-୫୧ ମସିହାରେ ପ୍ରଗତିଶୀଳ ସାହିତ୍ୟିକମାନଙ୍କ ଗୋଷ୍ଠୀରେ ମତଦ୍ୱୈଧ ଦେଖାଦେଲା ।

ବିଗତ ବର୍ଷମାନଙ୍କରେ ବହୁ ପଣ୍ଡିତ ଏବଂ ଉଚ୍ଚ ଶିକ୍ଷିତ ବ୍ୟକ୍ତି ସମାଲୋଚନା କ୍ଷେତ୍ରରେ ଅବତୀର୍ଣ୍ଣ ହୋଇଛନ୍ତି । ଏମ୍. ଅଚ୍ୟୁତନ୍, ଏସ୍. ଗୁପ୍ତନ ନାୟାର, କେ. ସୁରେନ୍ଦ୍ରନ୍, ଏମ୍ ଶ୍ରୀଧର ମେନନ, ଏନ୍. କୃଷ୍ଣପିଲ୍ଲଇ ପ୍ରମୁଖ ପ୍ରାବନ୍ଧିକମାନେ ସ୍ୱାଧୀନତା ପରବର୍ତ୍ତୀ ଯୁଗରେ ପ୍ରବନ୍ଧ, ଜୀବନୀ ଏବଂ ସମାଲୋଚନା ସାହିତ୍ୟକୁ ସମୃଦ୍ଧ କରିଅଛନ୍ତି । ଏମ୍. ଅଚ୍ୟୁତନଙ୍କ ଗ୍ରନ୍ଥ Western Literary theories ଏବଂ ଏନ୍. କୃଷ୍ଣପିଲ୍ଲଇଙ୍କର The Story of Kairali ଯଥାକ୍ରମେ କେରଳ ସାହିତ୍ୟରେ ସମାଲୋଚନା ଓ ସାହିତ୍ୟ-ଇତିହାସର ପ୍ରକୃଷ୍ଟ କୃତି ।

ନାଟକ ଉପନ୍ୟାସ ପ୍ରଭୃତି ରଚନାର ସେତେ ବିସ୍ତୃତ ସମୀକ୍ଷା କରାଯାଇ-ନାହିଁ । ନବାଗତ ତରୁଣ ଲେଖକମାନେ କ୍ରମଶଃ ସମାଲୋଚନା ସାହିତ୍ୟର ଏହି ଅଭାବ ଦୂର କରିବା ପାଇଁ ଚେଷ୍ଟିତ ।

ଏସ୍. କେ. ପେଟ୍ଟେକାଟ୍ଟଙ୍କ ପର୍ଯ୍ୟଟନ ସାହିତ୍ୟରେ ବ୍ୟକ୍ତିର ଗଭୀର ଅଭିଜ୍ଞତା ପରିସ୍ଫୁଟ । କେ. ଏମ୍. ପାନିକରଙ୍କର 'ଆତ୍ମକଥା', କେପି. କେଶବ ମେନନଙ୍କର "କଟିନ୍ନ କଲମ୍" ବିଶିଷ୍ଟ ଜୀବନୀ ସାହିତ୍ୟ ।

ଉଲ୍ଲୁରଙ୍କର କେରଳ ସାହିତ୍ୟ ଚରିତ୍ରମ୍ (ଚୁଟିଭାଗରେ ବିଭକ୍ତ) ପାନିକରଙ୍କର କେରଳସାହିତ୍ୟ, ନାରାୟଣ ପାନିକରଙ୍କର କେରଳ ଭାଷା ସାହିତ୍ୟ ଚରିତ୍ରମ୍ (ସାତଖଣ୍ଡରେ ବିଭକ୍ତ) ପ୍ରଭୃତି ଗର୍ବରଯୋଗ୍ୟ ଇତିହାସ ଗ୍ରନ୍ଥ ।

ଶିଶୁ-ସାହିତ୍ୟ, ରମ୍ୟରଚନା କ୍ଷେତ୍ରରେ ମଧ୍ୟ ମାଲୟାଲମ୍ ସାହିତ୍ୟ ଆବଶ୍ୟକୀୟ ଅଗ୍ରଗତି କରୁଛି । "ବାଲନ ପ୍ରକାଶନ ସଂସ୍ଥା" ମାଧ୍ୟମରେ ଶିଶୁସାହିତ୍ୟର ଉନ୍ନତି ଲାଗି ଏମ୍. ଏମ୍. କୁଟ୍ଟିବେଲର ପ୍ରଭୃତି ସାହିତ୍ୟିକଙ୍କର ଉଦ୍ୟମ ପ୍ରଶଂସନୀୟ । "ମାତୃଭୂମି" "ମାଲୟାଲମ୍ ରାଜ୍ୟମ୍" ଦୈନିକ ସମ୍ବାଦପତ୍ର "ରସିକରଂଜନୀ" "ବିଦ୍ୟାବିନୋଦିନୀ," "ମାଲୟାଲମ୍ ମନୋରମା" ପ୍ରଭୃତି ପତ୍ର ପତ୍ରିକାଙ୍କର ଦାନ ସ୍ୱୀକାର୍ଯ୍ୟ ।

ମାଲୟାଲମ୍ ସାହିତ୍ୟ କେରଳ ଜନସାଧାରଣଙ୍କର ଆଶା, ଆକାଂକ୍ଷା ପୂରଣ ଦିଗରେ ଚେଷ୍ଟିତ । ଏହାର ଉଭୟ ପ୍ରାଚୀନ ଏବଂ ଆଧୁନିକ କୃତି ପ୍ରଭାବଶାଳୀ । ମାନବିକତା, ସମାଜବାଦ ପ୍ରତିଷ୍ଠା କରିବା ଦିଗରେ ସାହିତ୍ୟ ଏବଂ ସାହିତ୍ୟିକମାନଙ୍କର ଯେ କର୍ତ୍ତବ୍ୟ ଅଛି, ଆଧୁନିକ ମାଲୟାଲମ୍ ସାହିତ୍ୟ ଅଧ୍ୟୟନ କଲେ ତାହା ଜଣାଯାଏ । ବିଭିନ୍ନ ସମ୍ବତ୍ସରରେ ମାଲୟାଲମ୍ ଭାଷାର ନିମ୍ନଲିଖିତ ଗ୍ରନ୍ଥ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ ହୋଇଅଛି ।

---

ଭାଷାସାହିତ୍ୟ କବିତମ୍ (ମାଲୟାଲମ୍ ଭାଷା ଓ ସାହିତ୍ୟର ଇତିହାସ—ଆର୍. ନାରାୟଣ ପାନିକର—୧୯୫୫) ପାନିନୀୟ ପ୍ରଦ୍ୟୋତମ୍ (ପାଣିନିଙ୍କର ଆଲୋଚନା-ଗ୍ରନ୍ଥ—୧୯୫୬)

ଚେମ୍ମିନ (ଉପନ୍ୟାସ— ଶିବଶଙ୍କର ପିଲଇ — ୧୯୫୭) କାଜ ଜାଠ କଲମ୍ (ଜୀବନୀ— କେ. ପି. କେଶବ ମେନନ୍—୧୯୫୮) ବିଶ୍ୱଦର୍ଶନମ୍ (କବିତା—ଜି. ଶଙ୍କରକୁରୁପ—୧୯୬୩ ।

— — — —

# କନ୍ନଡ

ଦାକ୍ଷିଣାତ୍ୟର କେନ୍ଦ୍ରାଞ୍ଚଳ, ଉତ୍ତର ସୀମାରେ ପୁଣ୍ୟ ଶ୍ଳୋକ ଗୋଦାବରୀନଦୀ ପ୍ରବାହିତ ଓ ଦକ୍ଷିଣ ସୀମାରେ କାବେରୀ ନଦୀ ପ୍ରବାହିତ । ଏହାହିଁ ହେଉଛି ପ୍ରାଚୀନ ମହୀଶୂର ବାଙ୍ଗଲୋର ରାଜ୍ୟର ଭୌଗୋଳିକ ପରିଚୟ । ପ୍ରାଚୀନ ମହାଭାରତ ସମୟରେ ମଧ୍ୟ କର୍ଣ୍ଣାଟକ ଶବ୍ଦ ପ୍ରଚଳିତ ଥିବାର ପୌରାଣିକ ଏବଂ ଐତିହାସିକ ପ୍ରମାଣ ମିଳେ । "କନ୍ନଡ" ଭାଷା ପ୍ରଚଳିତ ଅଞ୍ଚଳକୁ କାନାଡା ଏବଂ କର୍ଣ୍ଣାଟକ ରୂପେ ଅଭିହିତ କରାଯାଇ ଅଛି । ସମଗ୍ର ମହୀଶୂର ରାଜ୍ୟ, ବେଲଗାଁଓ, ବିଜାପୁର, ଧରୱାର, କରୱାର ପ୍ରଭୃତି ବମ୍ବେର ସୀମାଗୋଷ୍ଠି ଜିଲା; ମାଡ୍ରାସର ମାଙ୍ଗାଲୋର, ବେଲାରୀ ଜିଲା ଏବଂ ହାଇଦରାବାଦ କୁର୍ଗରାଜ୍ୟର ରାଏଚୁର ବିଦର ଏବଂ ଗୁଲବର୍ଗା ପ୍ରଭୃତି ଅଂଚଳରେ ଏହି କନ୍ନଡ ଭାଷା କଥିତ ଏବଂ ପ୍ରଚଳିତ ପର୍ତ୍ତୁଗୀଜମାନେ ଯେତେବେଳେ ଭାରତର ପଶ୍ଚିମ ଉପକୂଳରେ ପ୍ରଥମେ ଅବତରଣ କରିଥିଲେ, ସେତେବେଳେ ସେମାନେ ସେଠାରେ "କନ୍ନଡ" ଭାଷା ପ୍ରଚଳିତ ଥିବାର ଜାଣିଥିଲେ । "କାନାରିଜ" ଶବ୍ଦ ଉଭୟ ଭାଷା ଏବଂ ଭାଷାଭାଷୀଙ୍କୁ ବୁଝାଉଥିଲା । "କାନାରିଜ" "କାନାଡା" ଶବ୍ଦର ବ୍ୟାପ୍ତି ଏବଂ ଅର୍ଥ ଏକ ।

## କନ୍ନଡ଼ ଭାଷାର ଉତ୍ପତ୍ତି—ବିକାଶ

ଏହି ଭାଷାର ଉତ୍ପତ୍ତି ସମ୍ପର୍କରେ ସେମିତ କୌଣସି ପୁରାତନ ତଥ୍ୟ ଜଣା ଯାଇ ନାହିଁ । ଏହା ସଂସ୍କୃତ ଭାଷା କିମ୍ବା ତାମିଲ ଭାଷା ସଦୃଶ ପ୍ରାଚୀନ ନୁହେଁ । ତାମିଲ, ତେଲୁଗୁ, ମାଲୟାଲମ୍ ଏବଂ ତୁଲୁ ସଦୃଶ କନ୍ନଡ଼ ଦ୍ରାବିଡ଼ ଭାଷା ଗୋଷ୍ଠୀ ଅନ୍ତର୍ଗତ ଏକ ମୁଖ୍ୟ ଭାଷା ।

ପଞ୍ଚମ ଶତାବ୍ଦୀଠାରୁ କନ୍ନଡ଼ ଭାଷାରେ ଲିଖିତ ବହୁ ଶିଳାଲେଖର ସନ୍ଧାନ ମିଳିଥାଏ । ସେଥିରୁ କେତେକ ଶିଳାଲେଖ କନ୍ନଡ଼ ଭାଷାର ପ୍ରାଚୀନତମ ନିଦର୍ଶନ ବୋଲି ପଣ୍ଡିତମାନଙ୍କ ଦ୍ୱାରା ବିବେଚିତ ହୋଇଥାଏ । ୪୫୦ ଖ୍ରୀଷ୍ଟାବ୍ଦରେ ହାଲମିଡ଼ି ଶିଳାଲେଖ (Halmidi Inscription) କନ୍ନଡ଼ ଭାଷା ଉପରେ ସଂସ୍କୃତରୁ ଯେଉଁ ଗଭୀର ପ୍ରଭାବ ତାହା ନିର୍ଦ୍ଦେଶିତ କରିଥାଏ । ୭୦୦ ଖ୍ରୀଷ୍ଟାବ୍ଦର ଆଉ ଏକ ଶିଳା-ଲେଖରୁ କନ୍ନଡ଼ ଭାଷାରେ ଛନ୍ଦୋବଦ୍ଧ ରଚନାର ପ୍ରମାଣ ମିଳେ । ଶିଳାଲେଖ-ମାନଙ୍କରୁ ସମୃଦ୍ଧ ଭାଷା ଓ ଶୈଳୀର ପ୍ରମାଣିତ ହୁଏ ଯେ ୭ମ ଶତାବ୍ଦୀ ପୂର୍ବର କନ୍ନଡ଼ରେ ବହୁ ଗ୍ରନ୍ଥ ଲିଖିତ ହୋଇଥିଲା । କନ୍ନଡ଼ ଭାଷାର ପ୍ରାଚୀନ ଲେଖକଗଣ

ସାଧାରଣତଃ ଜୈନ ଥିଲେ, ଯେଉଁମାନେ କି ଉତ୍ତର ଭାରତରେ ଦକ୍ଷିଣ ଭାରତରେ ପ୍ରବେଶ କରିଥିଲେ । ସେମାନଙ୍କ ମଧ୍ୟରୁ କେହି କେହି ସଂସ୍କୃତରେ ମଧ୍ୟ ଗ୍ରନ୍ଥ ରଚନା କରିଥିବାର ଜଣାଯାଏ । ଦ୍ୱାଦଶ ଏବଂ ସପ୍ତଦଶ ଶତାବ୍ଦୀରେ ମଧ୍ୟ ସଂସ୍କୃତ ଭାଷାର କନ୍ନଡ଼ ଭାଷାରେ ବ୍ୟାକରଣ ଲେଖା ଯାଇଥିଲା ।

କନ୍ନଡ଼ ଭାଷାର ପ୍ରଥମ ସାହିତ୍ୟିକ ରଚନା ହେଉଛି ନବମ ଶତାବ୍ଦୀର "କବିରାଜ ମାର୍ଗ" । ଏହା ରାଷ୍ଟ୍ରକୂଟ ରାଜବଂଶର ରାଜା "ନୃପତୁଙ୍ଗ" (814—877 A D.)ଙ୍କ କୃତ । ଏହାର ଭାଷା ଛନ୍ଦୋବଦ୍ଧ ଏବଂ ଏଥିରେ କାବ୍ୟ ଓ ଅଳଙ୍କାର ସଂପର୍କରେ ଆଲୋଚନା କରାଯାଇ ଅଛି । ଗ୍ରନ୍ଥର ବିଷୟବସ୍ତୁ ସୂଚୀତ କରିଥାଏ ଯେ ଏହା ପୂର୍ବରୁ କନ୍ନଡ଼ ଭାଷାରେ ବହୁ ରଚନା ଥିବାର ସୁନିଶ୍ଚିତ । ଏହା ସବୁ କେବଳ କନ୍ନଡ଼ ଭାଷାର ପ୍ରାଚୀନତା ପ୍ରତିଷ୍ଠା କରିଥାଏ ।

"ଜୈନଦର୍ଶନ" ସଂପର୍କରେ "ଚୂଡ଼ାମଣି" ଶୀର୍ଷକ ଗ୍ରନ୍ଥ ମଧ୍ୟ ପ୍ରାଚୀନ କନ୍ନଡ଼ ଭାଷାରେ ପରିଦୃଷ୍ଟ । ଯାହା ହେଉ ନିର୍ଦ୍ଦିଷ୍ଟ ପ୍ରମାଣ ଏବଂ ତଥ୍ୟ ଅଭାବରେ କୌଣସି ଭାଷା ଓ ସାହିତ୍ୟର ଇତିହାସ ଗଣନା କରିବା ସହଜ ବ୍ୟାପାର ନୁହେଁ । କନ୍ନଡ଼ ଭାଷା ଦ୍ରାବିଡ ଭାଷା ଗୋଷ୍ଠୀ ଅନ୍ତର୍ଗତ । ତେଣୁ ଇଣ୍ଡୋ ୟୁରୋପିଆନ୍ ଗୋଷ୍ଠୀ ଠାରୁ ଏହା ସ୍ୱତନ୍ତ୍ର । ସଂସ୍କୃତ ଏହି ଗୋଷ୍ଠୀଭୁକ୍ତ ଭାଷା । ତେବେ ଆର୍ଯ୍ୟମାନଙ୍କର ଦକ୍ଷିଣ ଭାରତ ଆକ୍ରମଣ ପରେ ସେଠାରେ ସଂସ୍କୃତ ଭାଷା ପ୍ରଭାବ ପକାଇଥିବା ଜଣାଯାଏ । ଏଥିରୁ ସ୍ପଷ୍ଟ ପ୍ରମାଣ ମିଳେ ଯେ ଅତି ପ୍ରାଚୀନ ଅବସ୍ଥାରେ କନ୍ନଡ଼ ସଂସ୍କୃତ ଭାଷା ଓ ସାହିତ୍ୟ ଦ୍ୱାରା ଏହିପରି ପ୍ରଭାବ ପୁଷ୍ଟ ହୋଇଥିଲା । ଯେବେ ଖ୍ରୀଷ୍ଟାବ୍ଦ ପୂର୍ବରୁ କନ୍ନଡ଼ ଭାଷାର ଉତ୍ପତ୍ତି ହୋଇଥିଲା, ତେବେ ଏଠାରେ ପ୍ରଶ୍ନ ଉଠେ ଯେ ନବମ ଶତାବ୍ଦୀ ପୂର୍ବରୁ କନ୍ନଡ଼ ଭାଷାର ଅବସ୍ଥା ସ୍ୱରୂପ ଏବଂ ରୂପରେଖ କଣ ଥିଲା । "କବିରାଜ ମାର୍ଗ" ପ୍ରଣେତା ନୃପତୁଙ୍ଗ ତାଙ୍କ ଗ୍ରନ୍ଥରେ, ନାଗାର୍ଜ୍ଜୁନ, ଜୟବନ୍ଧୁ, ବିମଳୋଦୟ ଏବଂ ଦୁର୍ବନୀତ ପ୍ରଭୃତ ଗ୍ରନ୍ଥକାରଙ୍କର ନାମୋଲ୍ଲେଖ କରିଥିଲେ । ସେ ଉଭୟ ପଦ୍ୟ, ଗଦ୍ୟ, ଅଳଙ୍କାର, ବ୍ୟାକରଣ ରଚନାର ମଧ୍ୟ ଉଲ୍ଲେଖ କରିଥିଲେ । କିନ୍ତୁ ଇତିହାସର ବିଡ଼ମ୍ବନା ଯେ ଏତାଦୃଶ କୌଣସି ପ୍ରାଚୀନ ରଚନାର ସଂଧାନ ମିଳେ ନାହିଁ । ନୃପତୁଙ୍ଗଙ୍କ ମତାନୁଯାୟୀ ଦୁର୍ବନୀତ ଜଣେ ପ୍ରଭାବଶାଳୀ ଗଦ୍ୟ ଲେଖକ ଥିଲେ । ସେ ଶବ୍ଦାବତାର ନାମକ ଗ୍ରନ୍ଥର ପ୍ରଣେତା ଏବଂ ସେ ମଧ୍ୟ ସଂସ୍କୃତରେ ଭାରବୀଙ୍କ କୃତ "କିରାତାର୍ଜ୍ଜୁନ"ର ଟୀକା ଲେଖିଥିଲେ । ଗୁଣାଢ୍ୟଙ୍କର "ବୃହତ୍‌କଥା"କୁ ସେ ମଧ୍ୟ ସଂସ୍କୃତରେ ଲିପିବଦ୍ଧ କରିଥିଲେ । ସେ ଉଭୟ ସଂସ୍କୃତ ଓ କନ୍ନଡ଼ ଭାଷାରେ ଲେଖିଥିଲେ । ଲୋକ ସମାଜରେ ସମ୍ଭବତଃ ସଂସ୍କୃତଭାଷା ଓ ସାହିତ୍ୟର ଏପରି ଅତୁଟ ପ୍ରଭାବ

ଥିଲା ଯାହା ଫଳରେ ପ୍ରାଚୀନ କନ୍ନଡ଼ କାବ୍ୟକାରଗଣ ମଧ୍ୟ ସଂସ୍କୃତରେ ରଚନା କରିବା ପାଇଁ ପସନ୍ଦ କରୁଥିଲେ । ସେଥିପାଇଁ ଚତୁର୍ଥ ଶତାବ୍ଦୀର କନ୍ନଡ଼ ଶିଳାଲେଖ-ମାନଙ୍କରେ ସଂସ୍କୃତ ଶବ୍ଦର ବହୁଳତା ଏବଂ କାବ୍ୟ ଗଠନ ରୀତି ପରିଦୃଷ୍ଟ । ନୃପତୁଙ୍ଗାଙ୍କ ପୂର୍ବ ଯୁଗର କବିମାନଙ୍କର ଏବଂ ଜନସାଧାରଣଙ୍କର ସଂସ୍କୃତ ଭାଷା ପ୍ରତି ଗଭୀର ଅନୁରାଗ ଥିଲା ।

ଯଥାର୍ଥତଃ ନୃପତୁଙ୍ଗା ହେଉଛନ୍ତି କନ୍ନଡ଼ ଭାଷାର ସର୍ବପ୍ରଥମ କବି ଯେକି ସଂସ୍କୃତ ଭାଷାର ଆଧିପତ୍ୟକୁ ଅସ୍ୱୀକାର କରି ମାତୃଭାଷାର ସ୍ୱାତନ୍ତ୍ର୍ୟ ତଥା ଶକ୍ତି ପ୍ରତିପାଦନ ଉଦ୍ଦେଶ୍ୟରେ କନ୍ନଡ଼ ଭାଷାରେ ଲେଖିବା ପାଇଁ ବଦ୍ଧ ପରିକର ହୋଇଥିଲେ । ନୃପତୁଙ୍ଗାଙ୍କ ସମୟରୁହିଁ କନ୍ନଡ଼ ଭାଷାରେ ଅପୂର୍ବ ଜାଗରଣ ଦେଖା ଦେଇଥିଲା । ଜନସାଧାରଣଙ୍କ ଭାଷାର ବଳିଷ୍ଠତା ପ୍ରତି ସେ ଅବହିତ ଥିଲେ । କନ୍ନଡ଼ ଭାଷାର ଶୈଶବ ପରେ ବର୍ତ୍ତମାନ ତାରୁଣ୍ୟହିଁ ଆତ୍ମ ପ୍ରକାଶ କଲା । ନୃପତୁଙ୍ଗା ସଂସ୍କୃତ ଶୈଳୀକୁ 'ମାର୍ଗୀ' ଏବଂ କନ୍ନଡ଼ ଭାଷା ଶୈଳୀକୁ 'ଦେଶୀ' ବୋଲି ଅଭିହିତ କରିଥିଲେ । ଏହି ସମୟର ଲେଖକଗଣ ନିଜର ଭାଷାର ସ୍ୱାତନ୍ତ୍ର୍ୟ ତଥା ବଳିଷ୍ଠତା ସଂପର୍କରେ ସଚେତ ହୋଇଥିଲେ ଏବଂ ସଂସ୍କୃତର ପ୍ରଭାବକୁ କ୍ରମଶଃ ପରିହାର କରିଥିଲେ । ଏପରିକି ଦ୍ୱାଦଶ ଶତାବ୍ଦୀର ଜନୈକ କବି ନୟାସେନ (୧୧୧୨) ତାଙ୍କର ଗ୍ରନ୍ଥ "ଧର୍ମାମୃତ"ରେ କନ୍ନଡ଼ ଭାଷା ସହିତ ସଂସ୍କୃତ ଭାଷା ନ ମିଶାଇବା ପାଇଁ କବିମାନଙ୍କୁ ସତର୍କ କରାଇ ଦେଇଥିଲେ । ତୈଳ ସହିତ ଘୃତକୁ କ'ଣ ମିଶ୍ରିତ କରାଯାଇ ପାରେ ? ଏହାହିଁ ଥିଲା ତାଙ୍କର ଆହ୍ୱାନ । ଏହି ଯୁଗର ଆଉ ଜଣେ କବି ଅଲୟ୍ୟା ଗୋଟିଏ ସୁଦ୍ଧା ସଂସ୍କୃତ ଶବ୍ଦକୁ ବ୍ୟବହାର ନ କରି ଏକ କାବ୍ୟ ଲେଖିଥିଲେ । ଏହି ସମସ୍ତ ପରୀକ୍ଷା ନିରୀକ୍ଷାର ଏକମାତ୍ର ଉଦ୍ଦେଶ୍ୟ ଥିଲା ଯେ କନ୍ନଡ଼ ଏକ ମଧୁର, ଲଳିତ ତଥା କୋମଳ ଏବଂ ସମୃଦ୍ଧ ଭାଷା ଏବଂ ସଂସ୍କୃତ ସଦୃଶ ଶକ୍ତିଶାଳୀ ମଧ୍ୟ । 'କନ୍ନଡ଼' ଏକ ସ୍ୱାଧୀନ ଭାଷା ନୃପତୁଙ୍ଗା ଏହାହିଁ ସମସ୍ତଙ୍କୁ ଚେତାଇ ଦେଲେ । ଏହାର ନିଜର ଗଠନଶୈଳୀ ଅଛି । ଏହି ସ୍ୱତନ୍ତ୍ର ଶୈଳୀର ନାମ 'ଚମ୍ପୂରୀତି' । ଏଥିରେ ଉଭୟେ ଗଦ୍ୟ ପଦ୍ୟ ମିଶ୍ରିତ । ଏହି ଚମ୍ପୂଶୈଳୀ ହିଁ ମୌଳିକ କନ୍ନଡଶୈଳୀ ରୂପେ ବିବେଚିତ ହେଲା ଏବଂ ଏହି ଯୁଗର ପମ୍ପା, ରନ୍ନା ପ୍ରଭୃତି ବିଶିଷ୍ଟ କବିମାନେ ଏହି ଶୈଳୀ ଅବଲମ୍ବନରେ ଗ୍ରଂଥମାନ ଲେଖିଥିଲେ । କାନାଡା ସାହିତ୍ୟର ଇତିହାସ ଲେଖକଗଣ ବିଭିନ୍ନ ଭାବରେ ତାର ସୀମା ନିର୍ଦ୍ଧାରଣ ଏବଂ ଯୁଗ ବିଭାଗ କରିଥାନ୍ତି । ଜୈନଯୁଗ, ଶୈବଯୁଗ ଏବଂ ବୈଷ୍ଣବଯୁଗ ଏପରି ତିନିଭାଗରେ କେହି କେହି ଯୁଗ ବିଭାଗ କରିଥାନ୍ତି । ଏହି ବିଭାଗୀକରଣର ଏକମାତ୍ର ହେତୁ ହେଉଛି ସାହିତ୍ୟରେ ଧର୍ମୀଗତ ପ୍ରଭାବ । ତ୍ରୟୋଦଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ଏହି ଯୁଗ ସାହିତ୍ୟର ସୀମାରେଖା ବିସ୍ତୃତ । ପ୍ରଥମଯୁଗୀୟ ଭାଷାର ଉତ୍ପତ୍ତି ସମୟରୁ

ଦ୍ୱାଦଶ ଶତାବ୍ଦୀର ପ୍ରାରମ୍ଭ ପର୍ଯ୍ୟନ୍ତ ଦ୍ୱିତୀୟ ଯୁଗ, ଦ୍ୱାଦଶ ଶତାବ୍ଦୀରୁ ପଂଚଦଶ ଶତାବ୍ଦୀ ପର୍ଯ୍ୟନ୍ତ ଏବଂ ତୃତୀୟ ଯୁଗ ପଂଚଦଶ ଶତାବ୍ଦୀରୁ ଅଷ୍ଟାଦଶ ଶତାବ୍ଦୀ ପର୍ଯ୍ୟନ୍ତ ବ୍ୟାପୃତ । କେହି କେହି ଗବେଷକ ଯୁଗ ବିଭାଗକୁ (୧) ପୌରାଣିକ ଯୁଗ (୨) ଭକ୍ତି ଯୁଗ ଓ (୩) ନବଯୁଗ ବୋଲି ନିର୍ଦ୍ଦିଷ୍ଟ କରିଥାନ୍ତି । ଯେବେ ରଚନାର ଶୈଳୀ ଭାଷା ଏବଂ ବିଷୟ ବସ୍ତୁ ଦୃଷ୍ଟିରୁ ବିଚାର କରାଯାଏ ତାହାହେଲେ ଅପେକ୍ଷାକୃତ ସହଜ ଯୁଗ ବିଭାଗ ହେଉଛି—(୧) ପୂର୍ବ ଆଦିଯୁଗ (୨) ପ୍ରାଚୀନ ଯୁଗ (୩) ନୂତନ ଯୁଗ ।

ପୌରାଣିକ ଯୁଗ (୯୦୦—୧୨୦୦) ରେ ସଂସ୍କୃତର ପ୍ରଭାବ କନ୍ନଡ଼ ଭାଷାର ରଚନା ଉପରେ ମଧ୍ୟ ଅପ୍ରତିହତ ଥିଲା । ଏହି ଯୁଗର ବିଶିଷ୍ଟ ରଚନା ହେଉଛି ଚଂପୂଶୈଳୀରେ ଲିଖିତ ରାମାୟଣ, ଅର୍ଥାତ୍ ଉଭୟ ଗଦ୍ୟ ପଦ୍ୟ ମିଶ୍ରିତ ଶୈଳୀରେ ରାମାୟଣ ଲେଖାଯାଉଥିଲା । ଚଂପୂ ରଚନାର ଏକମାତ୍ର ଆକର୍ଷଣୀୟ କଥାବସ୍ତୁ ଥିଲା ସେହି ପ୍ରାଚୀନ ରାମାୟଣ ଓ ମହାଭାରତ କମ୍ପା । ଜୈନ କିମ୍ବଦନ୍ତୀ ଚଂପୂ ଜାତୀୟ, ଗଦ୍ୟ ପଦ୍ୟ ମିଶ୍ରିତ ରଚନା କନ୍ନଡ଼ ଭାଷାର ନିଜସ୍ୱ ଏବଂ ବିଶ୍ୱାସ କରାଯାଏ କନ୍ନଡ଼ ଭାଷାର ଚଂପୂର ପ୍ରଭାବରେ ପରେ ସଂସ୍କୃତ ଭାଷାରେ ଲେଖାଯାଇଥିଲା । ଏହି ପୌରାଣିକ ଯୁଗରେ ନୃପତୁଙ୍ଗଙ୍କ ଠାରୁ ଆରମ୍ଭ କରି ଏକାଧିକ କବି ଲେଖନୀ ଧାରଣ କରିଥିଲେ ଏବଂ ସେମାନଙ୍କ ମଧ୍ୟରେ ପମ୍ପା ହିଁ (୯୪୧) ଶ୍ରେଷ୍ଠ ପ୍ରଭାବଶାଳୀ କାବ୍ୟକାର ଓ ଏହା ବ୍ୟତୀତ ରନ୍ନା (୯୯୩), ସ୍ୱଭୂନ୍ ଦରୟ (୧୭୮) । ଏମାନେ ପ୍ରତ୍ୟେକ 'ପୁରାଣ' ରଚନାରେ ହାତ ଦେଇଥିଲେ । ପମ୍ପା "ଆଦି ପୁରାଣ" ରଚନା କରିଥିଲେ ଏବଂ ବିକ୍ରମାର୍ଜ୍ଜୁନ ବିଜୟମ୍ ମଧ୍ୟ ରଚନା କରିଥିଲେ । ଶେଷୋକ୍ତ ଗ୍ରନ୍ଥ "ପମ୍ପା ଭାରତ" ନାମରେ ପରିଚିତ ।

ଏହି ଗ୍ରଂଥରେ ମହାଭାରତର କଥାବସ୍ତୁ ଗୃହୀତ ଏବଂ 'ଅର୍ଜ୍ଜୁନ' ନାୟକ ରୂପେ ବର୍ଣ୍ଣିତ । ବର୍ଣ୍ଣନା ସମୂହରୁ ପ୍ରତୀତ ହୁଏ ଯେ ପମ୍ପା ଯେପରି ନିଜର ପୃଷ୍ଠ-ପୋଷକ ନରପତି 'ଅରିକେଶରୀ'ଙ୍କୁ ପୃଷ୍ଠଭୂମିରେ ରଖିଛନ୍ତି । ମହାଭାରତ କଥାବସ୍ତୁ ସହିତ ସମସାମୟିକ କଥାବସ୍ତୁର ଏପରି ସମନ୍ୱୟ ଘଟିଛି । ତାଙ୍କର 'ଆଦି ପୁରାଣ' ଗ୍ରନ୍ଥ ପ୍ରଥମ ଜୈନ ସନ୍ନ୍ୟାସୀ ତୀର୍ଥଙ୍କର ଜୀବନକୁ କେନ୍ଦ୍ରକରି ଲିଖିତ । ଉଭୟ ଚମ୍ପୂ, ପୁରାଣ ଏବଂ ଜୈନପୁରାଣର ଶୈଳୀ ଆଦିପୁରାଣରେ ପରିଦୃଷ୍ଟ । ପମ୍ପାଙ୍କ ଅଧିକାଂଶ ରଚନାର ପ୍ରାଣ ହେଉଛି ଶାନ୍ତରସ । ଜୈନ ଦର୍ଶନ ସେତେବେଳେ ସାଧାରଣ ଜୀବନକୁ ପ୍ରଭାବିତ କରିଥିଲା । ତେଣୁ ପ୍ରାଚୀନ ଯୁଗର କବିଗଣ ତାଦୃଶ ପୃଷ୍ଠଭୂମିକୁ ନିଜ ନିଜ ରଚନାରେ ଗ୍ରହଣ କରିଥିଲେ । ପମ୍ପା ହେଉଛନ୍ତି କର୍ଣ୍ଣାଟକର ଶ୍ରେଷ୍ଠ ପ୍ରାଚୀନ କବି ।

ଏହି ଯୁଗର କବି ରାନ୍ନା 'ଅଜିତପୁରାଣ' ରଚନା କରିଥିଲେ । ଏଥିରେ ଦ୍ୱିତୀୟ ତୀର୍ଥଙ୍କରଙ୍କ ଜୀବନୀ ବର୍ଣ୍ଣିତ । ସେ ତାଙ୍କର 'ଗଦାଯୁଦ୍ଧ' ରଚନାରେ ତାଙ୍କର ପୃଷ୍ଠପୋଷକ ଚାଲୁକ୍ୟ ନରପତିଙ୍କୁ ମହାଭାରତର ଭୀମ ଚରିତ୍ର ସହିତ ତୁଳନା କରିଥିଲେ । କବି ନାଗଚନ୍ଦ୍ର, ଜନୈକ ବୈଷ୍ଣବ କବିଙ୍କ ପୃଷ୍ଠପୋଷକତାରେ ନିଜକୁ ଅଭିନବ ପମ୍ପା ନାମରେ ଅଭିହିତ କରି ମଲ୍ଲିନାଥ ପୁରାଣ ଏବଂ ରାମଚନ୍ଦ୍ର ଚରିତ୍ର ପୁରାଣ ରଚନା କରିଥିଲେ । ପୂର୍ବୋକ୍ତ ଗ୍ରନ୍ଥ ଊନବିଂଶ ତୀର୍ଥଙ୍କରଙ୍କୁ କେନ୍ଦ୍ରକରି ଲିଖିତ ଏବଂ ଶେଷୋକ୍ତ ଗ୍ରନ୍ଥଟି ପମ୍ପା ରାମାୟଣ ନାମରେ ଜନସାଧାରଣରେ ପରିଚିତ ।

ପନ୍ନା ନାମକ କବି ଏହି ଯୁଗରେ ଖ୍ୟାତିଲାଭ କରିଥିବାର ଜଣାଯାଏ । ସେ ପମ୍ପା କବିଙ୍କର ସମସାମୟିକ ଏବଂ ରାଷ୍ଟ୍ରକୂଟ ବଂଶର ରାଜା କୃଷ୍ଣରାଜଙ୍କ ଦରବାର ମଣ୍ଡନ କରିଥିଲେ । କନ୍ନଡ଼ ଏବଂ ସଂସ୍କୃତରେ ଉଭୟଙ୍କର ପ୍ରବେଶ ଥିବାରୁ ତାଙ୍କୁ ଉଭୟ କବି ଆଖ୍ୟା ଦିଆଯାଇଥାଏ ।

ଏହି ଯୁଗର ବିଶିଷ୍ଟ ରଚନା ହେଉଛି "ଚୁଭନ୍ଦରାୟ ପୁରାଣ" ଏବଂ ଏହା ପ୍ରାଚୀନ କନ୍ନଡ଼ ସାହିତ୍ୟର ପ୍ରାମାଣିକ ଗଦ୍ୟରଚନା, ଏହାର ଆଉ ଏକ ନାମ ହେଉଛି ତ୍ରି-ଷଷ୍ଠୀ-ଲକ୍ଷଣ ମହାପୁରାଣ । ଏହାର ପ୍ରଣେତା ଚାମୁଣ୍ଡା, ଗଙ୍ଗରାଜା ରମେଲା (ଚତୁର୍ଥ)ଙ୍କ ଦରବାରରେ ଜଣେ ମନ୍ତ୍ରୀ ଥିଲେ । ନିଜର ଅସାଧାରଣ କର୍ମ ଦକ୍ଷତା ଯୋଗୁଁ ସେ 'ରାୟ' ଉପାଧି ଲଭ କରିଥିଲେ । ଏହା ଏକ ପୂର୍ଣ୍ଣାଙ୍ଗ ଗଦ୍ୟରଚନା ହୋଇଥିବାରୁ ପ୍ରାଚୀନ କନ୍ନଡ଼ ସାହିତ୍ୟରେ ଏହାର ମୂଲ୍ୟ ଅଧିକ । ଚଭନ୍ଦ-ରାୟ-ପୁରାଣରେ ଚତୁର୍ବିଂଶ ଜୈନତୀର୍ଥଙ୍କରଙ୍କର ଇତିହାସ ବର୍ଣ୍ଣିତ । ଏହି ଯୁଗର ଅଧିକାଂଶ କବି ଜୈନମାନଙ୍କ ସମ୍ପର୍କରେ ଆଲୋଚନା କରିଥିବାରୁ ଏହାକୁ କନ୍ନଡ଼ ସାହିତ୍ୟରେ ଜୈନ ଯୁଗ ବୋଲି ଅଭିହିତ କରାଯାଇଥାଏ । ଏଥିରୁ ଏହା ପ୍ରମାଣିତ ହୁଏ ନାହିଁ ଯେ କେବଳ ଧର୍ମ ପ୍ରଚାର ପ୍ରାଚୀନ କବିମାନଙ୍କର ଉଦ୍ଦେଶ୍ୟ ଥିଲା । ସ୍ୱାଧୀନ କନ୍ନଡ଼ ଭାଷାରେ ଯେ କୌଣସି ବିଷୟବସ୍ତୁକୁ ପ୍ରାଚୀନ ଢଙ୍ଗରେ ବର୍ଣ୍ଣନା କରି ଲେଖିବା ଥିଲା ସେମାନଙ୍କର ଲକ୍ଷ୍ୟ । ସମସ୍ତ ପ୍ରାଚୀନ ହିନ୍ଦୁଶାସ୍ତ୍ର ସଂସ୍କୃତ ଭାଷାରେ ଲିଖିତ ହୋଇଥିଲା । ସେଥିପାଇଁ ସମ୍ଭବତଃ ଭାଷା ସଚେତନ କନ୍ନଡ଼ କବିଗଣ ସଂସ୍କୃତ ଠାରୁ ଦୂରରେ ରହିବାପାଇଁ ବିଷୟବସ୍ତୁ ରୂପେ ଜୈନପରମ୍ପରାକୁ ଗ୍ରହଣ କରିଥିଲେ ।

କନ୍ନଡ଼ ଭାଷାର ମୌଳିକତା ଏବଂ ସ୍ୱାତନ୍ତ୍ର୍ୟ ବିଶେଷ ଭାବରେ ସ୍ୱୀକୃତ ହୋଇଥିଲା, ଯେତେବେଳେ ନାଗବର୍ମା ପ୍ରଥମ ( 984 A. D. ) 'ଛନ୍ଦ' ଶୀର୍ଷକ ଏକ ପ୍ରାମାଣିକ ଗ୍ରନ୍ଥ ରଚନା କରିଥିଲେ । ଗ୍ରନ୍ଥଟିର ନାମ "ଛନ୍ଦବୋଧି" ।

ପ୍ରତ୍ୟେକ ବୃତ୍ତର ବିଶ୍ଳେଷଣ କରି ଗୋଟିଏ ଲେଖାଏଁ ପଦ୍ୟ ଲିଖିତ । ଗ୍ରନ୍ଥକର୍ତ୍ତା ଗ୍ରନ୍ଥରେ ନିଜ ପତ୍ନୀକୁ ସମ୍ବୋଧନ କରି ପ୍ରତ୍ୟେକ ବୃତ୍ତର ଲକ୍ଷଣ ସଂଜ୍ଞା ନିର୍ଦ୍ଦେଶ କରିଅଛନ୍ତି । ଆଲୋଚ୍ୟ ଗ୍ରନ୍ଥକାର ସଂସ୍କୃତରୁ ବାଣଙ୍କର କାଦମ୍ବରୀକୁ କନ୍ନଡ଼ ଭାଷାରେ ଅନୁବାଦ କରିଥିଲେ । ପମ୍ପା, ପନ୍ନା ପ୍ରଭୃତି କବିଦ୍ୱୟ ଜୈନଧର୍ମ ଗ୍ରହଣ କରିଥିଲେ । ରାନ୍ନା ଜଣେ ବୈଶ୍ୟ ଥିଲେ ।

ତ୍ରୟୋଦଶ ଶତାବ୍ଦୀରେ (ସମ୍ଭବତଃ ୧୨୬୦ ଖ୍ରୀଷ୍ଟାବ୍ଦ) କନ୍ନଡ଼ ଭାଷାର ସର୍ବପ୍ରଥମ ପ୍ରାମାଣିକ ବ୍ୟାକରଣ "ଶବ୍ଦମଣି ଦର୍ପଣମ୍" ଲେଖାଯାଇଥିଲା । ଏହାର ପ୍ରଣେତା ହେଉଛନ୍ତି କେଶୀରାଜା । ଏହି ଗ୍ରନ୍ଥର ବ୍ୟାକରଣ ସୂତ୍ର ସମୂହ ପଦ୍ୟରେ ଲିଖିତ ଏବଂ ତାର ଟୀକା ଗଦ୍ୟରେ ପ୍ରଦତ୍ତ । ଗ୍ରନ୍ଥକାର କନ୍ନଡ଼ଭାଷା ଏବଂ ପୂର୍ବରୁ ପ୍ରକାଶିତ କାବ୍ୟମାନଙ୍କର ବ୍ୟାପକ ଅନୁଶୀଳନ କରିଥିଲେ । ଶ୍ରୀଧରାଚାର୍ଯ୍ୟ ନାମକ ଜଣେ ପଣ୍ଡିତ "ଜ୍ୟୋତିଷ ଶାସ୍ତ୍ର" ସମ୍ପର୍କରେ ଏକ ଗ୍ରନ୍ଥ ରଚନା କରିଥିଲେ । ଏହି ଯୁଗରେ ରାଜାଦିତ୍ୟ "ବ୍ୟବହାର ଗଣିତ" ଶୀର୍ଷକ ପୁସ୍ତକ ଲେଖିଥିଲେ । ଏଥିରେ ଗଣିତ ସୂତ୍ର ସମୂହ ପଦ୍ୟରେ ଲିଖିତ । ଜଣେ ଚାଲୁକ୍ୟ ବଂଶୀୟ ରାଜା କୀର୍ତ୍ତିବର୍ମା କନ୍ନଡ଼ ଭାଷାରେ ପ୍ରଥମ ଗୋଚିକିତ୍ସା ପୁସ୍ତକ 'ଗୋବୈଦ୍ୟ' ରଚନା କରିଥିଲେ । ରାଜା ବଲ୍ଲାଲଙ୍କ ଦରବାରରେ କାନ୍ତି ନାମ୍ନୀ ଏକ ନାରୀ କବି ଥିଲେ । ସେ ଅଭିନବ ପମ୍ପାଙ୍କ ସମସାମୟିକ ବୋଲି ଜଣାଯାଏ । ଏତଦ୍‌ବ୍ୟତୀତ ନେମିଚନ୍ଦ୍ର, ରୁଦ୍ରଭଟ୍ଟ, ହରିହର ଏବଂ ରାଘବଙ୍କ ପ୍ରଭୃତି କେତେଜଣ ବିଶିଷ୍ଟ କବି କନ୍ନଡ଼ ଭାଷାର କାବ୍ୟ କବିତାର ପ୍ରଭୂତ ଉନ୍ନତି ସାଧନ କରିଥିଲେ । ଶ୍ରେଷ୍ଠ କବି ପମ୍ପାଙ୍କଠାରୁ ଆରମ୍ଭ କରି କେଶୀରାଜାଙ୍କ ପର୍ଯ୍ୟନ୍ତ ଏହି ସମୟରେ କନ୍ନଡ଼ କାବ୍ୟ କବିତାର ଶ୍ରୀବୃଦ୍ଧି ସାଧିତ ହୋଇଥିଲା । ବହୁ ରାଜବଂଶ ଯଥା ଗଙ୍ଗ, ରାଷ୍ଟ୍ରକୂଟ, ହୟଶାଳା ପ୍ରଭୃତି ରାଜବଂଶର ନରପତିମାନେ ସାହିତ୍ୟ, ସଂସ୍କୃତି ପ୍ରତି ବିଶେଷ ପୃଷ୍ଠପୋଷକତା ପ୍ରଦର୍ଶନ କରିଥିଲେ ।

ଉଭୟେ ନେମିଚନ୍ଦ୍ର ଏବଂ ରୁଦ୍ରଭଟ୍ଟ ରାଜଦରବାରର ସମ୍ମାନ ଓ ଉତ୍ସାହ ରାଜା ବୀର ବଲ୍ଲାଲଙ୍କ (୧୧୭୨-୧୨୧୯) ଲାଭ କରିଥିଲେ । ଉଭୟେ ଚମ୍ପୂ କାବ୍ୟ ରଚନାରେ ଦକ୍ଷଶିଳ୍ପୀ ଥିଲେ । ଚମ୍ପୂ ଢଙ୍ଗରେ ଲିଖିତ ନେମିଚନ୍ଦ୍ରଙ୍କର 'ଲୀଳାବତୀ' କନ୍ନଡ଼ ଭାଷାର ହେଉଛି ପ୍ରଥମ ଉପନ୍ୟାସଧର୍ମୀ ରଚନା । ତାଙ୍କର ଅପୂର୍ଣ୍ଣ ପୁରାଣ, ଅର୍ଦ୍ଧନେମି ପୁରାଣ କିମ୍ବା ନେମିନାଥ ପୁରାଣ ନାମରେ ପରିଚିତ । ସେହିପରି ଭକ୍ତ ରୁଦ୍ରଭଟ୍ଟ ଶ୍ରୀକୃଷ୍ଣ ତତ୍ତ୍ୱକୁ କେନ୍ଦ୍ରକରି 'ଜଗନ୍ନାଥ ବିଜୟ' ନାମକ ଚମ୍ପୂ ରଚନା କରିଥିଲେ । ନାଗବର୍ମା ଦ୍ୱିତୀୟ ନାମକ ଜଣେ ପଣ୍ଡିତ ଏହି ସମୟରେ ତିନିଖଣ୍ଡି ଅତ୍ୟନ୍ତ ଉପାଦେୟ ଗ୍ରନ୍ଥ ଲେଖି କନ୍ନଡ଼ ଭାଷାର

କେତେକ ଅଭାବ ଦୂର କରିପାରିଥିଲେ । ଏହି ଗ୍ରନ୍ଥମାନ ହେଲା ୧-କାବ୍ୟାଲୋକନ, ୨-କର୍ଣ୍ଣାଟକ ଭାଷାଭୂଷଣ, ୩-ବସ୍ତୁକୋଷ, କାବ୍ୟାଲୋକନ ଗ୍ରନ୍ଥରେ କାବ୍ୟତତ୍ତ୍ୱ, ଭାଷା ବ୍ୟାକରଣ ପ୍ରଭୃତି ଆଲୋଚିତ । କର୍ଣ୍ଣାଟକ ଭାଷାଭୂଷଣ ସଂସ୍କୃତରେ ଲିଖିତ ଏବଂ ସେଥିରେ କନ୍ନଡ଼ ଭାଷା ବ୍ୟାକରଣ ଅନୁଶୀଳନ କରାଯାଇଛି । ବସ୍ତୁକୋଷ ହେଉଛି ସଂସ୍କୃତ, କନ୍ନଡ଼ ଶବ୍ଦକୋଷ । ଏଥିରୁ ସହଜେ ପ୍ରମାଣିତ ଯେ ତ୍ରୟୋଦଶ ଶତାବ୍ଦୀ ସୁଦ୍ଧା କନ୍ନଡ଼ଭାଷାରେ କାବ୍ୟକବିତା, ବ୍ୟାକରଣ, ଅଭିଧାନ, ଜ୍ୟୋତିଷ, ଗଣିତ, ଚିକିତ୍ସା ଏବଂ ଗଦ୍ୟରଚନା ସମ୍ଭବ ହୋଇଥିଲା । ନୃପତୁଙ୍ଗ ଏବଂ ପମ୍ପା କନ୍ନଡ଼ଭାଷାର ଉଜ୍ଜ୍ୱଳମୟ ଭବିଷ୍ୟତର ଯେଉଁ ଭିତ୍ତି ସ୍ଥାପନ କଲେ ତାହା କ୍ରମଶଃ ମସ୍ତକ ଉତ୍ତୋଳନ କରିଥିଲା ।

ପୌରାଣିକ ଯୁଗର ଶେଷ ପର୍ଯ୍ୟାୟରେ ଆଉ ଦୁଇଜଣ କବିଙ୍କର ଆବିର୍ଭାବ ହୋଇଥିଲା । ହରିହର ( ହରୀଶ୍ୱର ନାମରେ ମଧ୍ୟ ପରିଚିତ ) ଏବଂ ରାଘବାଙ୍କ ସେମାନଙ୍କ ମଧ୍ୟରେ ପାରିବାରିକ ସମ୍ପର୍କ ଥିଲା ବୋଲି ଜଣାଯାଏ । ଉଭୟେ ଶୈବ ଉପାସକ ଥିଲେ ଏବଂ ହାମ୍ପିସ୍ଥ ବିରୂପାକ୍ଷଙ୍କ ଭକ୍ତ ଥିଲେ । ହରିହରଙ୍କ ରଚନା, ଭାଷା ସରଳତା, ସୁଷମ ଶୈଳୀ ଏବଂ ନୂତନତା ଦ୍ୱାରା ଚିହ୍ନିତ । ତାଙ୍କର "ଗିରିଜା-କଲ୍ୟାଣ" ରଚନା ଚମ୍ପୂଜାତୀୟ ପ୍ରାଚୀନ ପରମ୍ପରା ତ୍ୟାଗ କରି ସେ କନ୍ନଡ଼ ଗୀତିକବିତାରେ ଏକ ସମ୍ପୂର୍ଣ୍ଣ ନୂତନ ଶୈଳୀ ପ୍ରବର୍ତ୍ତନ କରିଥିଲେ । ତାହାର ନାମ "ରାଗଲେ" ( Ragale ) । ଏହା ଚମ୍ପୂର ଶୈଳୀଠାରୁ ସ୍ୱତନ୍ତ୍ର । ହରିହର ନୂତନ କବିତା ରୀତିର ପକ୍ଷପାତୀ ଥିଲେ । ତାଙ୍କ ଦ୍ୱାରା ପ୍ରଭାବିତ ହୋଇ ରାଘବାଙ୍କ ଷଟ୍‌ପଦୀ ଗୀତିକବିତା ଲେଖା ଆରମ୍ଭ କରିଥିଲେ । ପ୍ରଥମ କନ୍ନଡ଼ କବି ଯେ କି ଷଟ୍‌ପଦୀ ଛନ୍ଦ ଆରମ୍ଭ କରିଥିଲେ । ତାଙ୍କର ରଚନାମାନଙ୍କ ମଧ୍ୟରେ ସୋମନାଥ ଚରିତ, ସିଦ୍ଧରାମ ପୁରାଣ, ହରିହର ମହତ୍ତ୍ୱ ଏବଂ ହରିଶ୍ଚନ୍ଦ୍ର କାବ୍ୟ ପ୍ରଧାନ । କବିଙ୍କର 'ହରିଶ୍ଚନ୍ଦ୍ର କାବ୍ୟ' ନାଟକୀୟତା, ବର୍ଣ୍ଣନା ବିଳାସ ଯୋଗୁଁ ଉଚ୍ଚକୋଟୀର ହୋଇପାରିଛି ଏବଂ କନ୍ନଡ଼ ଯେ ଏକ ଲଳିତ ଏବଂ ସମୃଦ୍ଧ ଭାଷା ଏହାର ନିଦର୍ଶନ ରାଘବାଙ୍କ ହରିଶ୍ଚନ୍ଦ୍ର କାବ୍ୟ ।

ଦ୍ୱାଦଶ ଶତାବ୍ଦୀର ମଧ୍ୟ ଭାଗରେ ପ୍ରାଚୀନ ଆଲଂକାରିକ କାବ୍ୟଚର୍ଚ୍ଚା ବିରୋଧରେ ଜନମତ ପ୍ରକାଶ ପାଇଥିଲା ଏବଂ ଏପରି ଅବସ୍ଥାରେ ବୀର ଶୈବମାନଙ୍କର ସଂସ୍କାର ଆନ୍ଦୋଳନ ଯୋଗୁଁ କନ୍ନଡ଼ ସାହିତ୍ୟରେ ଆଉରି ଏକ ନୂତନ ଆଙ୍ଗିକର ସୃଷ୍ଟି ହେଲା । ତାହା ହେଉଛି 'ବଚନ' ସାହିତ୍ୟ । ଏହା ସାଧାରଣତଃ ସରଳ ଗଦ୍ୟର ରଚନା । ବୀର ଶୈବମାନେ ଏହି ବଚନ ରଚନା ମାଧ୍ୟମରେ ସେମାନଙ୍କର ଧର୍ମ ପ୍ରତିଷ୍ଠାତା ବାସବେଶ୍ୱରଙ୍କ ପ୍ରବର୍ତ୍ତିତ ନୂତନ ଧର୍ମର ନିୟମାବଳୀ

ପ୍ରଚ୍ଚର କରଥିଲେ । ଏହା ଫଳରେ ସମୃଦ୍ଧ ବଚନ ସାହିତ୍ୟ ସମ୍ଭବ ହୋଇଥିଲା ଏବଂ ଗ୍ରନ୍ଥକାରମାନଙ୍କୁ 'ବଚନକାର' ବୋଲି ଆଖ୍ୟା ଦିଆଯାଉଥିଲା । ବାସବ, ଆକ୍କମହାଦେବୀ, ଆଲାମ ପ୍ରଭୁ ପ୍ରଭୃତି ଏହି ଗୋଷ୍ଠୀର ଲେଖକ ।

ପ୍ରାଚୀନ କନ୍ନଡ଼ ସାହିତ୍ୟରେ ଏହି 'ବଚନ' ଏକ ପ୍ରକାର ନିର୍ଦ୍ଦିଷ୍ଟ ଗଦ୍ୟ ରଚନା । ଐତିହାସିକମାନେ ଯାହା କହନ୍ତି ପଛେ କନ୍ନଡ଼ ସାହିତ୍ୟ ଉପରେ ଏହି ବୀରଶୈବଧର୍ମ ଆନ୍ଦୋଳନର ବିଶେଷ ପ୍ରଭାବ ପଡ଼ିଥିଲା । ଏହା ଧର୍ମୀୟ ଆନ୍ଦୋଳନ ହେଲେହେଁ ଏହାର ସାମାଜିକ ମୂଲ୍ୟ କିଛି କମ୍ ନୁହେଁ । କନ୍ନଡ଼ ଭାଷାରେ ଏହା ନବଜାଗରଣ ଯୁଗ ସୃଷ୍ଟି କରିଥିଲା । ଜନସାଧାରଣଙ୍କ ମଧ୍ୟରେ ସାମ୍ୟଭାବ ଆତ୍ମ-ବିଶ୍ୱାସ, କର୍ମ ଅନୁରକ୍ତି ଜାଗ୍ରତ କରିବା ଥିଲା ବାସବେଶ୍ୱରଙ୍କ ପ୍ରଯୋଜିତ ଆନ୍ଦୋଳନର ଲକ୍ଷ୍ୟ । ବୀରଶୈବ୍ୟ ସମ୍ପ୍ରଦାୟର କର୍ଣ୍ଣାଟକର ସାହିତ୍ୟ ଓ ସଂସ୍କୃତି ପ୍ରତି ଏହାହିଁ ଥିଲା ସୁଗୋଚର ଦାନ । ତାହା ହେଉଛି ଉନ୍ନତ ମାର୍ଜିତ କାବ୍ୟ କବିତା ରୁଚି, ସରଳ ଲୌକିକ ଗଦ୍ୟ ଏବଂ ଅଭିବ୍ୟକ୍ତି ଦକ୍ଷତା । 'ବଚନ' ଜାତୀୟ ଗଦ୍ୟ ରଚନାର ଅର୍ଥ ସାଧାରଣତଃ ବହୁବିଧ । ସ୍ଥୂଳ ଅର୍ଥ ଯାହା ହେଉନା କାହିଁକି ଏହାର ସୂକ୍ଷ୍ମ ଅର୍ଥ ସ୍ୱତନ୍ତ୍ର । ସାଧାରଣ ଲୋକର ଭାଷା ବୀର ଶୈବମାନେ ଅଧିକ ଗୁରୁତ୍ୱ ଆରୋପ କରିଥିଲେ । ନିଜେ ବାସବେଶ୍ୱର ସହସ୍ର ସହସ୍ର ବଚନ ରଚୟିତା ଥିଲେ । ଏହି ଯୁଗର 'ବାସବ' ହେଉଛନ୍ତି ପ୍ରତିନିଧି; ସାହିତ୍ୟିକ । ପମ୍ପା ଯେବେ ରଚନାର ପରମ୍ପରା ଖିଡିଯୁଗର ବାର୍ତ୍ତାବହ ଥିଲେ, ବାସବ ତେବେ ଲୋକପ୍ରିୟ ଗଣ ରଚନାର ପୁରୋଧା ଥିଲେ । ଏତାଦୃଶ 'ବଚନ' ସାହିତ୍ୟରେ ସାଧାରଣତଃ ବୀରଶୈବ ଧର୍ମର ନୀତିବାଣୀ, କୁସଂସ୍କାର ବିରୋଧୀତତ୍ତ୍ୱ, ମାନବିକତାର ଶ୍ରେଷ୍ଠତ୍ୱ, ସାମ୍ୟ, ମୈତ୍ରୀହିଁ ପ୍ରତିଫଳିତ । ବଚନର ବିଷୟ ବସ୍ତୁ ଅପେକ୍ଷା ତାହାର ଭାଷାର ଆବେଦନ ପ୍ରଧାନ । ସାଧାରଣ ଲୋକ ତାର ଦୈନନ୍ଦିନ ଜୀବନରେ ଅକୃତ୍ରିମ ଭାଷାରେ ନିଜକୁ ପ୍ରକାଶ କରେ । ବଚନର ଗଠନ ଶୈଳୀ ଅତ୍ୟନ୍ତ ସ୍ୱାଭାବିକ । ପ୍ରତ୍ୟେକ ବଚନ ଶେଷରେ ଏକ "କଲୋଫନ" (Colophon) ଅଛି, ଯଦ୍ୱାରା ଲେଖକଙ୍କର ଉପାସ୍ୟ ଦେବ ଦେବୀଙ୍କ ନାମ ସୂଚିତ ହୋଇଥାଏ । 'ବଚନ' ଜାତୀୟ ରଚନାର ସାହିତ୍ୟିକ ମୂଲ୍ୟ ସର୍ବାଧିକ । ଯୁଗାନୁକ୍ରମେ ଏହି ବଚନ ସାହିତ୍ୟ ଲୋକମାନଙ୍କ ମୁଖରେ ପ୍ରଚଳିତ ହୋଇ ଆସୁଛି ଏବଂ ଆଧୁନିକ ଯୁଗରେ ଗବେଷଣା ଉଦ୍ଦେଶ୍ୟରେ ବଚନ ସଂଗୃହୀତ ହେଉଅଛି । ଲୋକପ୍ରିୟତା ବଶତଃ କେତେକ 'ବଚନ' ମଧ୍ୟ ପ୍ରବଚନ ରୂପ ଧାରଣ କରିଛି । ବଚନକାରମାନେ ବିଭିନ୍ନ ସ୍ଥାନ ଭ୍ରମଣ କରି ବଚନ ପ୍ରଚ୍ଚର କରଥିଲେ ।

ତ୍ରିପଦୀ, ସାଙ୍ଗତ୍ୟ ଏବଂ ରଗେଲ୍ ପ୍ରଭୃତି ସରଳ ଜନପ୍ରିୟ ଛନ୍ଦରେ ନିଜଗୁନ ଯୋଗୀ ନାମକ ବ୍ୟକ୍ତି ଧର୍ମତତ୍ତ୍ୱ ପ୍ରଚ୍ଚର କରିଥିଲେ । 'ତ୍ରିପଦୀ' ହେଉଛି

ତ୍ରିପଂକ୍ତି ବିଶିଷ୍ଟ ରଚନା । ପ୍ରତ୍ୟେକ ପଂକ୍ତି ପୂର୍ବ ପଂକ୍ତିଠାରୁ କ୍ଷୁଦ୍ର । ପ୍ରଥମ ଧାଡ଼ି ୨୦ ମାତ୍ରା ବିଶିଷ୍ଟ । ଦ୍ୱିତୀୟ ଧାଡ଼ି ୨୦ ମାତ୍ରା ବିଶିଷ୍ଟ । ମାତ୍ର ପଂଚଦଶ ମାତ୍ରାଠାରେ Caesura । ତୃତୀୟ ଧାଡ଼ି ଆଠ ମାତ୍ରା ବିଶିଷ୍ଟ ଏବଂ ଏହି ତ୍ରିପଦୀ ରଚନା ଶେଷରେ ସର୍ବଜ୍ଞ ଶବ୍ଦ କଲୋଫନ୍ ରୂପେ ବ୍ୟବହୃତ । 'ସର୍ବଜ୍ଞ' ନାମକ ଜଣେ କବି ବହୁ ତ୍ରିପଦୀ ରଚନା କରିଥିଲେ । ତାଙ୍କ ରଚନା ସାଧାରଣତଃ ବ୍ୟଙ୍ଗ ଓ ଛନ୍ଦୋକ୍ତି ପୂର୍ଣ୍ଣ । କବି ସର୍ବଜ୍ଞଙ୍କର ଲେଖାଶୈଳୀ ମୁଖ୍ୟତଃ ସାଧାରଣ ପାଠକ ଦ୍ୱାରା ଆଦୃତ । ତ୍ରିପଦୀ ମୁଖ୍ୟତଃ ଲୋକଗୀତ ଧର୍ମୀ ଜାତୀୟ ରଚନା । ଏହା ପାରିବାରିକ ଜୀବନକୁ କେନ୍ଦ୍ରକରି ଲିଖିତ । ବିଶେଷତଃ କର୍ଣ୍ଣାଟକ ନାରୀ ସଂପ୍ରଦାୟର ଶୋକଦୁଃଖ ଲିପି ଏଥିରେ ସୁରକ୍ଷିତ । ଏହା ସୁନିଶ୍ଚିତ ଭାବରେ ଗୀତଧର୍ମୀ ଏବଂ ଶ୍ରମିକ ଜୀବନ ଉପରେ ଏହାର ପ୍ରଭାବ ଅଧିକ ।

ବୀର ଶୈବଧର୍ମର ଗୁରୁ ବାସବେଶ୍ୱରଙ୍କ ଜୀବନୀ ବହୁ କବି ରଚନା କରିଥିଲେ । ଚତୁର୍ଦ୍ଦଶ ଶତାବ୍ଦୀର ମଧ୍ୟଭାଗରେ ଭୀମ କବି ବାସବ ପୁରାଣ ରଚନା କରିଥିଲେ । ଭୀମ କବିଙ୍କର ବର୍ଣ୍ଣନାନୁଯାୟୀ ଦେବଦେବ ଶିବଙ୍କର ବାହନ 'ନନ୍ଦୀ' ହେଉଛନ୍ତି ବାସବ । ଭୀମ କବିଙ୍କ ପରେ କବି "ଚମରାସ" ଗୁରୁ ବାସବେଶ୍ୱରଙ୍କ ଗୁରୁ 'ପ୍ରଭୁଲିଙ୍ଗ'କୁ ଅବଲମ୍ବନ କରି ଏକ ଗ୍ରଂଥ ରଚନା କରିଥିଲେ । ତାହାର ନାମ "ପ୍ରଭୁଲିଙ୍ଗଲୀଲ" । ରାଜା ପ୍ରୌଢ଼ ଦେବରାୟ (୧୪୧୯—୧୪୪୬) ଏହି ଗ୍ରଂଥଟିକୁ ତେଲୁଗୁ ତାମିଲ ଭାଷାରେ ଅନୁବାଦ କରାଇଥିଲେ । ଏହି ଯୁଗର ବୀର ଶୈବ ସମ୍ପ୍ରଦାୟର ମୁଖ୍ୟ କବିମାନେ ହେଲେ ଲକ୍ଷ୍ମଣ ଦାଣ୍ଡେସା (୧୪୭୦) ବିରୁପାକ୍ଷ ପଣ୍ଡିତ (୧୫୮୪) ଏବଂ ରତ୍ନାକର ବର୍ଣ୍ଣୀ (୧୫୫୭) । ରତ୍ନାକରଙ୍କର ଭରତେ ସାର୍ବଭୌମ କନ୍ନଡ଼ ଭାଷାରେ ଦୀର୍ଘ କାବ୍ୟ । ନବମ ଶତାବ୍ଦୀରେ ଶେଷ ପର୍ଯ୍ୟାୟର ନୃପତୁଙ୍ଗାଙ୍କ ସମୟରୁ ଦ୍ୱାଦଶ ଶତାବ୍ଦୀର ଶେଷଭାଗର ଚମ୍ପୂ କାବ୍ୟକାର-ମାନଙ୍କ ପର୍ଯ୍ୟନ୍ତ ଏହି ଦୀର୍ଘ ଯୁଗରେ କନ୍ନଡ଼ ସାହିତ୍ୟ ତଥା କାବ୍ୟ କବିତାର ବିପୁଳ ପରିବର୍ତ୍ତନ ସଂଘଟିତ ହୋଇଥିଲା । ନୃପତୁଙ୍ଗାଙ୍କ ପୂର୍ବବର୍ତ୍ତୀ ଯୁଗରେ କନ୍ନଡ଼ ଭାଷା ସାଧାରଣ ରାଜାଙ୍କ ଶିଳାଲେଖମାନଙ୍କରେ ବ୍ୟବହୃତ ହେଉଥିଲା । କିନ୍ତୁ ତାଙ୍କ ପରେ କନ୍ନଡ଼ ଭାଷାରେ ଉଚ୍ଚକୋଟୀର କାବ୍ୟ କବିତା ଲିଖିତ ହେଲା । ଏହି ତିନିଶତ ବର୍ଷ ମଧ୍ୟରେ କନ୍ନଡ଼ ଭାଷା ଜନସାଧାରଣଙ୍କ ଭାଷା ରୂପେ ଗଢ଼ି ଉଠିଲା ।

ଦ୍ୱାଦଶ ଶତାବ୍ଦୀରୁ ଚତୁର୍ଦ୍ଦଶ ଶତାବ୍ଦୀ ପର୍ଯ୍ୟନ୍ତ ଏହି ସମୟଟି କର୍ଣ୍ଣାଟକ ସାହିତ୍ୟରେ ଜାଗରଣ ସୃଷ୍ଟି କରିଥିଲା । ଏହାର ମୂଳରେ ଥିଲା ବିଜୟ ନଗର ରାଜ୍ୟ ରାଜାମାନଙ୍କର (୧୩୩୬—୧୫୫୬) ସାହିତ୍ୟାନୁରାଗ ତଥା ପ୍ରୋତ୍ସାହନ । କର୍ଣ୍ଣାଟକର ତିନିଜଣ ପ୍ରଧାନ କବିଙ୍କର କୃତି ସମୂହ ଏହି ଯୁଗର କନ୍ନଡ଼ ସାହିତ୍ୟର

ଚୂଡ଼ାନ୍ତ ସମୃଦ୍ଧ ନିମନ୍ତେ ଦାୟୀ । ତାହା ହେଉଛି କବି କୁମାର ବ୍ୟାସଙ୍କର 'ଭାରତ' 'ଲକ୍ଷ୍ମୀଶାଙ୍କର' 'ଜୈମିନୀଭାରତ' ସଦାକ୍ଷରଙ୍କର 'ରାଜଶେଖର ବିଳାସ' ମହାଭାରତର ପ୍ରଥମ ଦଶ ପର୍ବକୁ ଅବଲମ୍ବନ କରି କୁମାର ବ୍ୟାସ ଏହି 'ଭାରତ' ଗ୍ରନ୍ଥ ରଚନା କରିଥିଲେ । ଏହା ଭାମିନୀ ଷଟପଦୀ ବୃତ୍ତରେ ଲିଖିତ ଏବଂ କୃଷ୍ଣଚନ୍ଦ୍ରହିଁ ଏହାର ନାୟକ । ଶ୍ରୀକୃଷ୍ଣ ଏବଂ ପାଣ୍ଡବମାନଙ୍କର କାର୍ଯ୍ୟାବଳୀ ଚରିତ୍ରବତ୍ତା ଜରିଆରେ କବି ମାନବ ଜୀବନରେ ଭଗବତ୍ ଶକ୍ତିର ଅପରିହାର୍ଯ୍ୟତା ପ୍ରଦର୍ଶନ କରିଛନ୍ତି । କବି 'ଭାରତ' ରଚନା ପୂର୍ଣ୍ଣ କରି ତାର ଶ୍ରେଷ୍ଠତ୍ୱକୁ ଦୃଢ଼ ଭାବରେ ଘୋଷଣା କରିଥିଲେ । ଏ ସମ୍ପର୍କରେ ତାଙ୍କର ଉକ୍ତି ତାତ୍ପର୍ଯ୍ୟପୂର୍ଣ୍ଣ । ସେ ତାଙ୍କର ପ୍ରଥମ ସର୍ଗରେ କହିଥିଲେ ମୋର ଏହି ଭାରତ ଗ୍ରନ୍ଥ 'ରାଜାମାନଙ୍କ ପକ୍ଷେ ରଣଭେରୀ ସଦୃଶ' ବ୍ରାହ୍ମଣମାନଙ୍କ ପକ୍ଷେ ବୈଦିକ ତତ୍ତ୍ୱ, ଯୋଗୀମାନଙ୍କ ପାଇଁ ଦର୍ଶନ, ବିରହୀମାନଙ୍କ ପକ୍ଷେ ଶୃଙ୍ଗାର ରସ ପଣ୍ଡିତମାନଙ୍କର ଗୌରବ ଏବଂ କବିମାନଙ୍କର ଦିକ୍-ଦର୍ଶନ; କବିଙ୍କର ଏହି ଆତ୍ମବିଭ୍ରମା ମଧ୍ୟ ଅଯଥାର୍ଥ ନୁହେଁ । କାରଣ ଯୁଗ ଯୁଗ ଧରି ପଣ୍ଡିତମାନେ ଏହାକୁ ଅଧ୍ୟୟନ ରସାସ୍ୱାଦନ କରନ୍ତି । ନିରକ୍ଷର ଗ୍ରାମବାସୀ ମନ୍ତ୍ରମୁଗ୍ଧବତ୍ ଏହା ଶ୍ରାବଣ କରିଥାନ୍ତି । ସଂଗୀତଜ୍ଞମାନେ ଏହାର ସଂଗୀତ ମାଧୁର୍ଯ୍ୟରେ ଆତ୍ମହରା ହୁଅନ୍ତି । ପମ୍ପାଙ୍କର 'ଭାରତ'ରେ ମାନବ ଜୀବନର ରହସ୍ୟ ବର୍ଣ୍ଣିତ; କିନ୍ତୁ କୁମାର ବ୍ୟାସଙ୍କର 'ଭାରତ ଗ୍ରନ୍ଥ'ରେ ଭଗବତ୍ ଶକ୍ତି ବ୍ୟାପକତା ପ୍ରମାଣିତ ।

ଲକ୍ଷ୍ମୀଶାଙ୍କର "ଜୈମିନୀ ଭାରତ" ମଧ୍ୟ ଏକ ଜନପ୍ରିୟ ବର୍ଣ୍ଣନାତ୍ମକ କାବ୍ୟ ରଚନା । ଏହା ବର୍ଦ୍ଧିକ ଷଟ୍‌ପଦୀ ବୃତ୍ତରେ ଲିଖିତ । ଏଥିରେ ଅସଂଖ୍ୟ କିମ୍ବଦନ୍ତୀ ବର୍ଣ୍ଣିତ । କିନ୍ତୁ ସଦାକ୍ଷରଙ୍କର ସମସ୍ତ ରଚନା ଚମ୍ପୂ ଜାତୀୟ । ସଂସ୍କୃତରେ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା । ସେ ଗୋଟାଏ ମଠର ଅଧିକାରୀ ଥିଲେ । ତାଙ୍କର 'ରାଜ ଶେଖର ବିଳାସ' ଗ୍ରନ୍ଥରେ ଜନୈକ ଶୈଳରାଜାଙ୍କର ବୀରତ୍ୱ ବର୍ଣ୍ଣିତ; କିନ୍ତୁ "ଶବର-ଶଙ୍କର ବିଳାସ"ରେ ଅର୍ଜ୍ଜୁନ ଏବଂ ଶିବଙ୍କର ଯୁଦ୍ଧ ବିଶେଷ ଭାବରେ ବର୍ଣ୍ଣିତ । ଏହି ସବୁ ରଚନା ସପ୍ତଦଶ ଶତାବ୍ଦୀର ମଧ୍ୟଭାଗର ଏବଂ ଏହି ସମୟକୁ କନ୍ନଡ଼ଭାଷା ସଂସ୍କୃତ ଭାଷା ଦ୍ୱାରା ବିଶେଷ ଭାବରେ ପ୍ରଭାବିତ ହେଲା । ଏହା ଫଳରେ ଲୋକମାନଙ୍କର ଚଳନ୍ତି ଭାଷା ଉପରେ ଆଞ୍ଚ ଆସିଥିଲା । ଷୋଡ଼ଶ ଶତାବ୍ଦୀରୁ ସପ୍ତଦଶ ଶତାବ୍ଦୀ ଶେଷ ପର୍ଯ୍ୟନ୍ତ ସଂସ୍କୃତ କାବ୍ୟ ବିଶେଷତଃ ରାମାୟଣ ମହାଭାରତ କନ୍ନଡ଼ରେ ଅନୂଦିତ ହେଲା । ସପ୍ତଦଶ ଶତାବ୍ଦୀର ପ୍ରାରମ୍ଭରେ 'ଭଟ୍ଟକଲାଙ୍କ' ନାମକ ଜଣେ ପଣ୍ଡିତ କନ୍ନଡ଼ ଭାଷାର ଏକ ବ୍ୟାକରଣ "କର୍ଣ୍ଣାଟକ ଶବ୍ଦାନୁଶାସନ" ରଚନା କରିଥିଲେ । ଏହା ୫୯୨ ଗୋଟି ସଂସ୍କୃତ ସୂତ୍ରରେ ପୂର୍ଣ୍ଣ । ଗୀତକାବ୍ୟ ଏହାପରେ ବଚନ ସାହିତ୍ୟ ଏବଂ ଏହାପରେ ଭକ୍ତି ସାହିତ୍ୟ—ଏହି ପର୍ଯ୍ୟାୟରେ ପ୍ରାଚୀନ କନ୍ନଡ଼ ସାହିତ୍ୟର ଅନୁଶୀଳନ କରାଯାଇଥାଏ ।

ଭକ୍ତ ମାର୍ଗର ଦୁଇଜଣ ପ୍ରଧାନ କବି ପୁରନ୍ଦର ଦାସ ଏବଂ କନକ ଦାସଙ୍କର ବହୁ ସଂଗୀତ କର୍ଣ୍ଣାଟକ ପଲ୍ଲୀରେ ଆବୃତ୍ତି କରାଯାଇଥାଏ । ପୁରନ୍ଦର ଦାସ ପ୍ରଭୃତ ସେମାନଙ୍କ ଠାରୁ ବ୍ୟାସ ରାଜାଙ୍କ ଦ୍ୱାରା ଅନୁପ୍ରାଣିତ ହୋଇଥିଲେ । ସେମାନଙ୍କର ରଚନା 'ଦାସକୂଟ' ନାମରେ ଚର୍ଚ୍ଚିତ । 'ଦାସକୂଟ' ଶୀର୍ଷକ ଭକ୍ତ ସଂଗୀତ ଲୌକିକ ଭାଷାରେ ଲିଖିତ ଏବଂ ପ୍ରତ୍ୟେକ କର୍ଣ୍ଣାଟକବାସୀ ଏହି ସଂଗୀତ ଆବୃତ୍ତି କରିଥାଆନ୍ତି ଭକ୍ତିବହ୍ୱଳ ପ୍ରାଣରେ ।

ବିଜୟ ନଗର ନରପତିମାନେ ସାହିତ୍ୟ, ଶିଳ୍ପ ଏବଂ ସଂସ୍କୃତିର ପ୍ରଧାନ ପୃଷ୍ଠପୋଷକ ଥିଲେ । ସେମାନଙ୍କ ଦରବାରରେ କେବଳ କନ୍ନଡ଼ ସାହିତ୍ୟ ନୁହେଁ, ତେଲଗୁ ସାହିତ୍ୟ ମଧ୍ୟ ଉତ୍ସାହ ଲାଭ କରିଥିଲା । ସଂସ୍କୃତ ସାହିତ୍ୟ ମଧ୍ୟ ବିଶେଷ ଆଦୃତ ହେଉଥିଲା । କନ୍ନଡ଼ ଭାଷାରେ ସର୍ବପ୍ରଥମ ନାଟକ ହେଉଛି 'ମିତ୍ରାଭିନ୍ଦଗୋବିନ୍ଦ' ଏବଂ ଏହି ନାଟକ ଶ୍ରୀହର୍ଷଙ୍କ କୃତ 'ରତ୍ନାବଳୀ' ଅବଲମ୍ବନରେ ଲିଖିତ । ଏହାର ପ୍ରଣେତା ହେଉଛନ୍ତି ଶିଙ୍ଗରାୟ । ଏହା ୧୬୮୦ ମସିହାର ରଚନା । ଶିଙ୍ଗରାୟ ମହୀଶୂର ନରପତି ଦେବରାଜ ଓ୍ୟାଡିଅରଙ୍କ ଦରବାରରେ ଥିଲେ । ଏହାଙ୍କ ରାଜତ୍ୱରେ କନ୍ନଡ଼ ସାହିତ୍ୟର ଶ୍ରୀବୃଦ୍ଧି ସାଧିତ ହୋଇଥିଲା । ତାଙ୍କର ରାଜତ୍ୱରେ ରାଣୀଙ୍କର ଜନୈକ ଶୂଦ୍ର ଭୃତ୍ୟ ଜନପ୍ରିୟ ସଙ୍ଗତ୍ୟ ବୃତ୍ତରେ "ହାଡ଼ିବା ଦେୟାଧର୍ମ" ନାମକ (ପତିବ୍ରତା ନାରୀର କର୍ତ୍ତବ୍ୟ) ଏକ କାବ୍ୟ ରଚନା କରିଥିଲେ । ଏହି ଶୂଦ୍ରକବିଙ୍କ ନାମ "ହୋନାମ୍ମା" । ଏହି ରଚନାରେ 'ବଚନ' ଜାତୀୟ ରଚନାର ସରଳତା ତଥା ଗଭୀର ଆବେଦନ ହିଁ ପରିଲକ୍ଷିତ ।

ଗଣନାଟ୍ୟ ବିଭିନ୍ନ ପ୍ରାଦେଶିକ ସାହିତ୍ୟରେ ପ୍ରାଚୀନ ସମୟରେ ପ୍ରସାର ଲାଭ କରିଥିବା ଜଣାଯାଏ । କନ୍ନଡ଼ ସାହିତ୍ୟରେ ଅଷ୍ଟାଦଶ ଶତାବ୍ଦୀରେ ଗଣନାଟ୍ୟର ବିକାଶ ଘଟିଥିଲା । ଏହି ଗଣନାଟ୍ୟର ନାମ ହେଉଛି 'ଯକ୍ଷଗାନ' । ସପ୍ତଦଶ ଶତାବ୍ଦୀ ପର୍ଯ୍ୟନ୍ତ ଯେଉଁ ସାହିତ୍ୟ ପରମ୍ପରା ମାର୍ଗରେ ଲିଖିତ ଗୀତକାବ୍ୟ, ଚମ୍ପୂ, ସାମାଜିକ ଆନ୍ଦୋଳନ ବିଶେଷତଃ ବଚନ ରଚନା ଯୋଗୁ ସମୃଦ୍ଧି ହ୍ରାସ କରିଥିଲା, ସେହି ସାହିତ୍ୟରେ ସପ୍ତଦଶ ଶତାବ୍ଦୀ ପରେ ଊନବିଂଶ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ କପର ଗୋଟାଏ ନିଷ୍କ୍ରିୟତା ଦେଖା ଦେଇଥିଲା । ଖୋଦ୍ ସପ୍ତଦଶ ଶତାବ୍ଦୀରେ ପ୍ରାଚୀନ 'ଚମ୍ପୂ ରଚନାର ପୁନରୁଦ୍ଧାର ପାଇଁ ଉଦ୍ୟମ କରିଥିଲେ । ଅନୁମାନ କରା ଯାଇ ପାରେ ଯେ ସଂସ୍କୃତ ସାହିତ୍ୟର ପୁନଃପ୍ରତିଷ୍ଠା ବିଶେଷତଃ ଅଷ୍ଟାଦଶ ଶତାବ୍ଦୀରେ କନ୍ନଡ଼ ଭାଷାରେ କୌଣସି ଉଚ୍ଚକୋଟୀର ରଚନା ସମ୍ଭବ ହୋଇ ନ ଥିଲା । ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧ ସୁଦ୍ଧା କନ୍ନଡ଼ ସାହିତ୍ୟରେ ଏକ ଅନ୍ଧକାର ଯୁଗ ଲାଗି ରହିଥିଲା ବୋଲି ଜଣାଯାଏ । ଏହାର ପୃଷ୍ଠଭୂମିରେ ମହୀଶୂରର ରାଜନୈତିକ

ଇତିହାସ ଥାଇପାରେ । ସେତେବେଳେ ଭାରତର ରାଜନୈତିକ ମାନଚିତ୍ର ପରିବର୍ତ୍ତିତ ହେଉଥିଲା । କର୍ଣ୍ଣାଟକ ରାଜ୍ୟର ସାହିତ୍ୟ ଓ ସଂସ୍କୃତି ରାଜାଶ୍ରୟ ପୃଷ୍ଠ-ପୋଷକତାରେ ପରିପୁଷ୍ଟ ହୋଇଥିଲା । ମହୀଶୂର ରାଜା ଚିକାଦେବରାଜ ଓ୍ୟାଡୟାରଙ୍କ ପର୍ଯ୍ୟନ୍ତ (୧୬୭୨—୧୭୦୪) ଏହି ପୃଷ୍ଠପୋଷକତା ଅପ୍ରତିହତ ଥିଲା । ସେ ନିଜେ ମଧ୍ୟ ଜଣେ କବି ଥିଲେ । ପରବର୍ତ୍ତୀ କାଳରେ ମୁମ୍ମଡ଼ି କୃଷ୍ଣରାଜ ଓ୍ୟାଡୟାରଙ୍କ (୧୭୯୪-୧୮୬୮) ରାଜତ୍ୱରେ ବହୁ ଗ୍ରନ୍ଥ ରଚିତ ହୋଇଥିଲା । ଏହିପରି ଆଧୁନିକ ସାହିତ୍ୟ ରଚନା ନିମନ୍ତେ ଅନୁକୂଳ ପରିବେଶ ସୃଷ୍ଟି ହୋଇଥିଲା । '୭୯୯ ରେ ଟିପୁ ସୁଲତାନଙ୍କୁ ଯୁଦ୍ଧରେ ପରାସ୍ତକରି ଇଷ୍ଟ ଇଣ୍ଡିଆ କମ୍ପାନୀ କନ୍ନଡ଼ ଭାଷାଭାଷୀ ଅଞ୍ଚଳକୁ ଖଣ୍ଡଖଣ୍ଡ କରି କେତେକ ବମ୍ବେ, ମାଡ୍ରାସ ଅଧୀନରେ ରଖାଇଥିଲେ । ହାଇଦରାବାଦର ନିଜାମଙ୍କୁ ଖଣ୍ଡେ ଉପହାର ଦେଇଥିଲେ ଏବଂ କୁର୍ଗକୁ ଏକ ସ୍ୱତନ୍ତ୍ର ଶାସନାଧୀନ ଅଞ୍ଚଳ କରି ରଖିଥିଲେ । ପ୍ରାଚୀନ ରାଜବଂଶ ଓ୍ୟାଡିଅରଙ୍କୁ ମହୀଶୂର ଅର୍ପଣ କରା ଯାଇଥିଲା । ମହୀଶୂରରେ କନ୍ନଡ଼ଭାଷା ବମ୍ବେ କର୍ଣ୍ଣାଟକରେ ମରାଠୀ ଭାଷା ପ୍ରଭାବିତ କନ୍ନଡ଼ ଭାଷା, ମାଡ୍ରାସର ସୀମାନ୍ତରେ ତେଲଗୁ ତାମିଲ ପ୍ରଭାବିତ କନ୍ନଡ଼ଭାଷା ପ୍ରଚଳିତ ଥିଲା । ଏପରି ପରିସ୍ଥିତିରେ କନ୍ନଡ଼ଭାଷାର ମୌଳିକ ସଂରକ୍ଷଣ ଥିଲା ଏକ ପ୍ରଧାନ ସମସ୍ୟା । ପ୍ରାଚୀନକାଳରେ ତାହା ସଂସ୍କୃତ ଭାଷାଦ୍ୱାରା ଆକ୍ରାନ୍ତ ହୋଇଥିଲା । ସଂସ୍କୃତ କବଳରୁ ତାକୁ ରକ୍ଷାକରି ସ୍ୱତନ୍ତ୍ର ଆସନ ଦିଆ ଯାଇଥିଲା । ବର୍ତ୍ତମାନ ରାଜନୈତିକ ଇତିହାସର ଘନଘଟାରେ ତାହା ପୁଣି ପ୍ରତିବେଶୀ ଭାଷାମାନଙ୍କ ଦ୍ୱାରା ପ୍ରଭାବିତ ହେଲା । ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗରେ ମହୀଶୂରର ଶାସକ ଥିଲେ ଜଣେ ମୁସଲମାନ ନରପତି । କିନ୍ତୁ ଟିପୁ ସୁଲତାନଙ୍କ ଅନ୍ତେ ଯେଉଁ ହିନ୍ଦୁ ନରପତିମାନେ ମହୀଶୂରର ଶାସନ ଭାର ଗ୍ରହଣ କରିଥିଲେ ସେହିମାନେ ହିଁ କନ୍ନଡ଼ ଭାଷାର ରକ୍ଷଣାବେକ୍ଷଣ ନିମନ୍ତେ ସମସ୍ତ ପ୍ରକାର ଉଦ୍ୟମ କରିଥିଲେ । ସଂସ୍କୃତର ବିଭିନ୍ନ ଗ୍ରନ୍ଥ ଦରବାରର ସାହାଯ୍ୟ ତଥା ନିର୍ଦ୍ଦେଶରେ କନ୍ନଡ଼ରେ ଅନୂଦିତ ହୋଇଥିଲା । ଏହାର ଏକମାତ୍ର ଉତ୍ତମ ଫଳ ହେଲା ଯେ ପରବର୍ତ୍ତୀ ଶାସକମାନେ କନ୍ନଡ଼ ଭାଷାର ସ୍ୱତନ୍ତ୍ର ସ୍ଥିତି ତଥା ପ୍ରତିଷ୍ଠା ନିମନ୍ତେ ଯତ୍ନ କରିଥିଲେ ।

ଊନବିଂଶ ଶତାବ୍ଦୀର ମଧ୍ୟ ଭାଗରେ କନ୍ନଡ଼ ସାହିତ୍ୟରେ ନବଯୁଗର ସୂତ୍ରପାତ ହେଲା; ଯେତେବେଳେ ଖ୍ରୀଷ୍ଟିୟାନ ପାଦ୍ରୀମାନେ କର୍ଣ୍ଣାଟକ ଭୂମିରେ ପଦାର୍ପଣ କରିଥିଲେ । କନ୍ନଡ଼ ଭାଷା ଓ ସାହିତ୍ୟର ଏହି ଯେଉଁ ଅଭ୍ୟୁଦୟ ତାହା ମଧ୍ୟ ବିଭିନ୍ନ ଭାରତୀୟ ପ୍ରାଦେଶିକ ସାହିତ୍ୟରେ ମିସନାରୀମାନଙ୍କ ମୁଖ୍ୟ ଭୂମିକା ହେତୁ ପରିଲକ୍ଷିତ ହୁଏ । ଏହି ସମୟରେ ଅଧ୍ୟବସାୟୀ, କର୍ମନିଷ୍ଠ ପାଦ୍ରୀମାନେ କନ୍ନଡ଼ ଭାଷା ଅଧ୍ୟୟନ କରିଥିଲେ ଏବଂ କନ୍ନଡ଼ ଭାଷାର ବ୍ୟାକରଣ ଅଭିଧାନ ପ୍ରଭୃତି

ଗ୍ରନ୍ଥ ସେମାନଙ୍କ ଦ୍ୱାରା ଲିଖିତ ହେଲା। ଡକ୍ଟର ବାଲ୍ଡ଼ ଓ୍ୱେଲ 'Comparative Grammar of Dravidian Language' ଦ୍ରାବିଡ଼ ଭାଷାର ତୁଳନାତ୍ମକ ବ୍ୟାକରଣ ଲେଖିଥିଲେ ଏବଂ ରେଭରେଣ୍ଡ କଟେଲ କନ୍ନଡ଼-ଇଂରାଜୀ ପ୍ରକାଣ୍ଡ ଅଭିଧାନ ଏବଂ ରାଇସ ସାହେବ ସାହିତ୍ୟ ଇତିହାସ ରଚନା କରିଥିଲେ । ଏହି ଅଭ୍ୟୁଦୟ ପର୍ବରେ ସ୍ଥାନୀୟ ପଣ୍ଡିତମାନେ ସଂସ୍କୃତରୁ ଉପାଦେୟ କୃତମାନ କନ୍ନଡ଼ ଭାଷାରେ ଅନୁବାଦ କରି ପକାଇଥିଲେ । ଯଥା ହିତୋପଦେଶ, ପଞ୍ଚତନ୍ତ୍ର ଏବଂ ଶାକୁନ୍ତଳମ୍, ଉତ୍ତରରାମଚରିତମ୍, ବେଣୀ ସଂହାର । ଉଭୟ କରି ବାସବଶାସ୍ତ୍ରୀ ଏବଂ ଚୁରାମାରଙ୍କର ଶକୁନ୍ତଳା ଅନୁବାଦ ଆଧୁନିକ କନ୍ନଡ଼ ସାହିତ୍ୟର ପ୍ରଥମ କାବ୍ୟ । ସେହିପରି ପ୍ରଥମ ଅନୂଦିତ ଉପନ୍ୟାସ ହେଉଛି ବାଣଭଟ୍ଟଙ୍କ କାଦମ୍ବରୀ । ଏହା ଊନବିଂଶ ଶତାବ୍ଦୀର ଶେଷ ପର୍ଯ୍ୟାୟର ଘଟଣା । କନ୍ନଡ଼ ଭାଷାରେ ପ୍ରଥମ ପୁସ୍ତକ ମୁଦ୍ରଣ କୃତିତ୍ୱ ସେହି ପାଦ୍ରିମାନଙ୍କର । ଏହା ବ୍ୟତୀତ ସ୍ଥାନୀୟ ପଣ୍ଡିତ ଏବଂ ଦେଶପ୍ରେମୀ ବ୍ୟକ୍ତିଗଣଙ୍କର ଐକାନ୍ତିକ ଚେଷ୍ଟା ଏବଂ ପରିଶ୍ରମ ମଧ୍ୟ ଉଲ୍ଲେଖଯୋଗ୍ୟ । ୧୮୯୦ ମସିହାରେ ଧରୱାରଠାରେ "କର୍ଣ୍ଣାଟକ ବିଦ୍ୟା ବର୍ଦ୍ଧକ ସଂଘ" ସ୍ଥାପନ ଏକ ପ୍ରଧାନ ଘଟଣା । ଏହାର ଏକମାତ୍ର ଉଦ୍ଦେଶ୍ୟ ଥିଲା, କନ୍ନଡ଼ ଭାଷାର ଅନୁଶୀଳନ ଓ ଉନ୍ନତି ସାଧନ । ଏହାର ଉଦ୍ୟୋକ୍ତାଗଣ ପ୍ରତ୍ୟେକ ଇଂରେଜ ଶିକ୍ଷା ଲାଭ କରିଥିଲେ । ସେମାନେ ଇଂରେଜ ସାହିତ୍ୟର ଆଦର୍ଶରେ ନିଜ ଭାଷା ଓ ସାହିତ୍ୟର ସର୍ବାଙ୍ଗୀନ ଶ୍ରୀବୃଦ୍ଧି ନିମନ୍ତେ ଏକାନ୍ତ ଆଗ୍ରହୀ ଥିଲେ । ସେଥିପାଇଁ ବିକାଶର ପ୍ରଥମ ପର୍ଯ୍ୟାୟରେ ଦେଖାଯାଏ ଯେ ସେମାନେ ଇଂରେଜୀରୁ କନ୍ନଡ଼ ଭାଷାରେ ବିଭିନ୍ନ ପୁସ୍ତକ ଅନୁବାଦ କରିଥିଲେ । ଯଥା ସେକସପିଅରଙ୍କ ନାଟକ ସମୂହ, ମିସେସ୍ ହେନେରୀ ଉଡ଼ଙ୍କର ଉପନ୍ୟାସ, ମିଲସ୍ ଏବଂ ହରବର୍ଟ ସ୍ପେନସରଙ୍କ ଲିଖିତ କୃତି ସମୂହ । ଏହା ବ୍ୟତୀତ ମରାଠୀ, ବଙ୍ଗଳା ଭାଷାରୁ ମଧ୍ୟ ଅନୁବାଦ କରାଯାଇଥିଲା । ଏହି ଅନୁବାଦ ସାହିତ୍ୟର ପରିମାଣ କିଛି କମ୍ ନୁହେଁ । ଏହା ଫଳରେ କନ୍ନଡ଼ ସାହିତ୍ୟର ଗୁଣାତ୍ମକ ଅଭିବୃଦ୍ଧିର ବାଟ ଫିଟିଥିଲା ଏବଂ ନୂତନ ଗଦ୍ୟଶୈଳୀର ସନ୍ଧାନ ମଧ୍ୟ ମିଳିଥିଲା । ଇଂରେଜ ଶାସନ ପ୍ରତିଷ୍ଠା, ଇଂରେଜ ଶିକ୍ଷାର ପ୍ରସ୍ତର, ନବ୍ୟ ଶିକ୍ଷିତ ତରୁଣମାନଙ୍କର ନିଜ ମାତୃଭାଷାର ଉନ୍ନତି ସାଧନାର୍ଥେ ସଂକଳ୍ପ, ସ୍ୱାଧୀନତା ଆନ୍ଦୋଳନର ପ୍ରଭାବ, ଜାତୀୟତାର ବିକାଶ— ଏହାହିଁ ହେଉଛି ଆଧୁନିକ କନ୍ନଡ଼ ସାହିତ୍ୟର ଶ୍ରୀବୃଦ୍ଧି ତଥା ପ୍ରସାରର ପ୍ରଧାନ ହେତୁ । କର୍ଣ୍ଣାଟକର ସାଂସ୍କୃତିକ ତଥା ବୈଷୟିକ ଅଗ୍ରଗତିର ଇତିହାସ ସଙ୍ଗେ ତାର ସାହିତ୍ୟ ଭାଷାର ବୈପ୍ଳବିକ ବିକାଶଧାରା ଜଡ଼ିତ । ଖ୍ରୀଷ୍ଟଙ୍କର ସୁସମାଚାର ପ୍ରସ୍ତର ପାଦ୍ରୀମାନଙ୍କର ଉଦ୍ଦେଶ୍ୟ ହେଲେ ହେଁ ସେମାନେ ଯେଉଁ ପରିବେଶ ସୃଷ୍ଟି କରିଥିଲେ ତାହା କନ୍ନଡ଼ ସାହିତ୍ୟର ନବଯୁଗ ନିମନ୍ତେ ସହାୟକ ହୋଇଥିଲା । କର୍ଣ୍ଣାଟକ ବିଦ୍ୟାବର୍ଦ୍ଧକ ସଂଘ ଉଦ୍ୟମରେ ୧୮୯୮ରେ "ବାଗ୍‌ଭୂଷଣ" ନାମକ

ସାହିତ୍ୟିକ ପତ୍ରିକା ପ୍ରକାଶନ ଏହି ବିକାଶ ପର୍ଯ୍ୟାୟର ଏକ ପ୍ରଧାନ ପଦକ୍ଷେପ । ଏହି ପତ୍ରିକାରେ ଉଭୟ ଅନୁବାଦ ଏବଂ ମୌଳିକ ରଚନା ସ୍ଥାନ ପାଇଥିଲା ଏବଂ ନୂତନ ଭାବଧାରା ସମ୍ପ୍ରସାରଣ ଦ୍ୱାରା ସମ୍ଭବ ହୋଇଥିଲା । ଆଧୁନିକ ସାହିତ୍ୟର ଆବିର୍ଭାବ କାଳରେ କର୍ଣ୍ଣାଟକର ଏହି ପ୍ରାଚୀନ ସାଂସ୍କୃତିକ ଅନୁଷ୍ଠାନର ବିଭିନ୍ନ ସଂଗଠନ କାର୍ଯ୍ୟ ସ୍ମରଣୀୟ ।

ଆଧୁନିକ ଯୁଗର ପ୍ରଥମ ପର୍ଯ୍ୟାୟର ଗଦ୍ୟ ରଚନା ସଂସ୍କୃତବହୁଳ ଏବଂ ପାଣ୍ଡିତ୍ୟପୂର୍ଣ୍ଣ ଥିଲା । ଭେଙ୍କଟେଶ ତିରୁକୋ କୁଲକର୍ଣ୍ଣୀ ଜଣେ ନମ୍ର ପ୍ରାଥମିକ ଶିକ୍ଷକ ଥିଲେ ଏବଂ କନ୍ନଡ ଭାଷାର ଆଧୁନିକ ଉପନ୍ୟାସ ହେଉଛି ତାଙ୍କର କୃତିତ୍ୱ । ତାଙ୍କର ଛଦ୍ମନାମ ହେଉଛି "ଗାଲଗାନାଥ" । ବି. ଭେଙ୍କଟଚର ବଙ୍ଗଳାର ଔପନ୍ୟାସିକ ବଙ୍କିମ ଚନ୍ଦ୍ରଙ୍କର ଉପନ୍ୟାସ ସମୂହ, ଗାଲଗାନାଥ ମରାଠୀରୁ ହରିନାରାୟଣ ଆପ୍ଟେଙ୍କର ଉପନ୍ୟାସ ଅନୁବାଦ କରିଥିଲେ ଏବଂ କେରୁର୍ ସେକ୍ସପିଅରଙ୍କ ଓ ଗୋଲ୍ଡସ୍ମିଥଙ୍କ ରଚନାକୁ କନ୍ନଡ଼ ଭାଷାରେ ଅନୁବାଦ କରିଥିଲେ । ଏମାନଙ୍କ ଅନୂଦିତ ରଚନାର ଭାଷା ଶକ୍ତିଶାଳୀ ତଥା ସ୍ୱାତନ୍ତ୍ର୍ୟପୂର୍ଣ୍ଣ । ସେଥିପାଇଁ ବିଷୟବସ୍ତୁ ବ୍ୟତୀତ ପାଠକମାନେ ଏମାନଙ୍କ ରଚନାର ଶୈଳୀଦ୍ୱାରା ଆକୃଷ୍ଟ ହୋଇଥିଲେ । ଭାରତର ଅଧିକାଂଶ ପ୍ରାଦେଶିକ ସାହିତ୍ୟରେ ଉପନ୍ୟାସ ଉତ୍ପତ୍ତିର ପୃଷ୍ଠଭୂମି ହେଉଛି ଐତିହାସିକ ରୋମାନ୍ସ ଏବଂ କନ୍ନଡ଼ ସାହିତ୍ୟରେ ତାହାହିଁ ଘଟିଥିଲା । ଗାଲଗାନାଥ ୧୯୩୦ ପର୍ଯ୍ୟନ୍ତ ଅବିଶ୍ରାନ୍ତ ଲେଖନୀ ଚାଳନ କରିଥିଲେ ମାତ୍ର ତାଙ୍କର ଭାଷା ତଥା ଶୈଳୀରେ ସେପରି କୌଣସି ଉନ୍ନତି ପରିଲକ୍ଷିତ ହୋଇନଥିଲା ।

ଆଧୁନିକ କାବ୍ୟ କବିତା—

ପ୍ରାଚୀନ ଚମ୍ପୂ, ଷଟ୍‌ପଦୀ ପରିବର୍ତ୍ତେ ଆଧୁନିକ କବିମାନେ କବିତାରେ ମୁକ୍ତ ଛନ୍ଦ ପ୍ରୟୋଗ କଲେ । ଧ୍ୱନି ପ୍ରଧାନ, ସଙ୍ଗୀତ ମୁଖର ପ୍ରାଚୀନ କନ୍ନଡ଼ କାବ୍ୟର ନିଗଡ଼ ଗଣ୍ଠି ମଧ୍ୟରୁ ଆଧୁନିକ କାବ୍ୟ କବିତାର ଜନ୍ମ । ତଥାପି ସେ ତାର ପ୍ରାଚୀନତା ପରମ୍ପରାରୁ ସଂପୂର୍ଣ୍ଣ ମୁକ୍ତ ନୁହେଁ ।

କାବ୍ୟର ଆଙ୍ଗିକ ପରିବର୍ତ୍ତନ ହୋଇପାରିଛି । ଏକ ଗଭୀର ସମାଜ ସଚେତନା ହିଁ ଏହି ସଂସ୍କାରର ମୂଳ ପ୍ରେରଣା । ଏକ ବୈଜ୍ଞାନିକ ତଥା ବାସ୍ତବବାଦୀ ଦୃଷ୍ଟିକୋଣ ଆଧୁନିକ ପ୍ରଗତିଶୀଳ କବିକୁ ଉଦ୍‌ବୁଦ୍ଧ କରିପାରିଛି । ଜୀବନର ବିଶାଳ ମାନଚିତ୍ର ଉପରେ ସେମାନଙ୍କର ପ୍ରଶସ୍ତ ଦୃଷ୍ଟିକୋଣ ବିଭିନ୍ନ ବର୍ଣ୍ଣ ବୈଚିତ୍ର୍ୟରେ ପ୍ରତିଫଳିତ ।

ଏ ଯୁଗରେ ଆଧୁନିକ କବିତାର ସୁଦକ୍ଷ ପ୍ରଯୋଜକ ହେଉଛନ୍ତି ଉତ୍ତର କର୍ଣ୍ଣାଟକର ଆର. ବେନ୍ଦ୍ରେ ; ବି. ଏମ୍. ଶ୍ରୀକାନ୍ତୟା ଓ କେ. ଭି. ପୁଟ୍ଟାପା । ଏହା ବ୍ୟତୀତ କବି ମାସ୍ତି, ଗୋକକ ପି. ଟି. ନରସିଂହାଚାର୍ଯ୍ୟ, ଅମିତ୍ରାକ୍ଷର ଛନ୍ଦର ପ୍ରବର୍ତ୍ତକ

ଗୋବିନ୍ଦ ପାଇ ପ୍ରଭୃତିଙ୍କ କବିତାରେ ଆଧୁନିକ ବୈପ୍ଲବିକ ଆଭିମୁଖ୍ୟ ପ୍ରତିଫଳିତ । ଉଭୟ ଭାବ ଏବଂ ଆଙ୍ଗିକ ଦୃଷ୍ଟିରେ ଆଧୁନିକ କନ୍ନଡ଼ କବିତା କ୍ରମଶଃ ଶକ୍ତି ଏବଂ ସାର୍ଥକତା ଆହରଣ କରୁଅଛି । ଆଧୁନିକ କବିତାଧାରା "ନବ୍ୟ କାବ୍ୟ" ନାମରେ ପରିଚିତ । ଏହାର ପ୍ରବର୍ତ୍ତକ ଭି. କେ. ଗୋକକ । ରୋମାଣ୍ଟିକ ଆଭିମୁଖ୍ୟ, 'ଗଭୀର ଦର୍ଶନ ଜୀବନତତ୍ତ୍ୱ' ବେନ୍ଦ୍ରେଙ୍କ କବିତାର ପ୍ରଧାନ ଲକ୍ଷଣ । ଏକାନ୍ତ ଦେଶାତ୍ମବୋଧ ମଧ୍ୟ ତାଙ୍କ କବିତାମାନଙ୍କରେ ପ୍ରତିଫଳିତ । ତାଙ୍କର ଗୋଟିଏ କବିତା "ମାକଲ ଭରନମା ମୋଉତ୍ତୁ ମୋରୁ କୋଟି" (ମୋର ଏହି ତେତିଶ କୋଟି ସନ୍ତାନ) ଏକ ଶକ୍ତିଶାଳୀ କବିତା । ମୁଖ୍ୟତଃ ଗୀତିକବି, ବେନ୍ଦ୍ରେ ବହୁ ସ୍ଥଳରେ ଆଧୁନିକ ବ୍ୟକ୍ତି ଓ ସମାଜର ତୀକ୍ଷ୍ଣ ସମାଲୋଚନା କରିଛନ୍ତି । ଆବେଗ ସହିତ ବୁଦ୍ଧିର ସମନ୍ୱୟ ଅଭିନବ ରୂପକଳ୍ପ ସୌନ୍ଦର୍ଯ୍ୟ ସହିତ ବାସ୍ତବତାର ସଂପର୍କ ତାଙ୍କ ଗୀତି କବିତା-ଗୁଡ଼ିକରେ ପ୍ରତିଫଳିତ ହୋଇଥାଏ । ତାଙ୍କର ଆଉ ଗୋଟିଏ କବିତା "କାରଡ଼ି କୁନିତା" (ଭଲ୍ଲୁକ ନୃତ୍ୟ) ଶାଣିତ ବିଦ୍ରୂପରେ ପୂର୍ଣ୍ଣ । ବ୍ୟକ୍ତି ମନର ମୃତ୍ୟୁ ଭାଲୁର ନୃତ୍ୟଠାରୁ ଅଧିକ କ୍ଷିପ୍ର । ଏହାହିଁ କବି ପ୍ରଦର୍ଶନ କରିଛନ୍ତି । ଚତୁର ରାଜ-ନୀତିଜ୍ଞମାନେ ଲକ୍ଷ ଲକ୍ଷ ଜନସାଧାରଣଙ୍କ ଉପରେ ଶୋଷଣ କରୁଛନ୍ତି ତାହାହିଁ କବିତାର ଗୂଢ଼ ଅର୍ଥ । ତାଙ୍କର କାବ୍ୟମାନଙ୍କ ମଧ୍ୟରେ "ମୂର୍ତ୍ତିଗାରି", "ସଖୀଗୀତା" ଉଲ୍ଲେଖଯୋଗ୍ୟ । ଅନୂଦିତ ମେଘଦୂତ ତାଙ୍କର ଏକ ଶ୍ରେଷ୍ଠ କୃତି । ତାଙ୍କର ପ୍ରତ୍ୟେକ କବିତା ଯେପରି ପ୍ରାଣର ନିର୍ମଳ ଭକ୍ତି ଉତ୍ସ ଦ୍ୱାରା ସିକ୍ତ । ଏକ ଦିଗରେ ଭକ୍ତି ଅନ୍ୟ ଦିଗରେ ସାଧନା ତାଙ୍କ କାବ୍ୟ କବିତାର ବୈଶିଷ୍ଟ୍ୟ । ତାଙ୍କର କେତେକ କବିତା ରବିନ୍ଦ୍ରନାଥଙ୍କ ଗୀତାଂଜଳି ଦ୍ୱାରା ପ୍ରଭାବିତ ।

ପାରମ୍ପରିକ କାବ୍ୟର ରୂପରୀତି ପ୍ରବର୍ତ୍ତିତ କରିବାରେ କବି ବି. ଏମ୍. ଶ୍ରୀକାନ୍ତାୟଙ୍କର ଦାନ ସ୍ୱୀକାର୍ଯ୍ୟ । ସେ ଥିଲେ ଇଂରେଜୀ ଅଧ୍ୟାପକ । ଶ୍ରେଷ୍ଠ ପାଶ୍ଚାତ୍ୟ କାବ୍ୟ କବିତାର ଅନୁଶୀଳନ ତାଙ୍କୁ କନ୍ନଡ଼ ସାହିତ୍ୟରେ ନବରୁଚି ପ୍ରବର୍ତ୍ତନ କରିବାରେ ସହାୟତା କରିଥିଲା । ତାଙ୍କର ପ୍ରାରମ୍ଭିକ ରଚନା ମୁଖ୍ୟତଃ ଅନୁବାଦ-ଧର୍ମୀ ଥିଲା ।

ଜଣେ ଉଚ୍ଚକୋଟିର ସ୍ରଷ୍ଟା ଭାବରେ ଶ୍ରୀକାନ୍ତୟା ସାଂପ୍ରତିକ ଯୁଗରେ କନ୍ନଡ଼ କାବ୍ୟ କବିତା କ୍ଷେତ୍ରରେ ଅଗ୍ରଗଣ୍ୟ । ତାଙ୍କର ଲିଖିତ ଇଂରେଜୀ "ଗୀତ ଗଲ୍ପ" ପ୍ରାଚୀନ ମହାଭାରତର ଏକ କାହାଣୀ । ସେଥିରେ ଗ୍ରୀକ୍ ନାଟକର ବିୟୋଗାନ୍ତକତା ଏବଂ ପ୍ରାଚୀନ କନ୍ନଡ଼ ଭାଷାର ସ୍ୱରୂପ ଏକତ୍ର ଦେଖିବାକୁ ମିଳେ । ଶ୍ରୀକାନ୍ତୟାଙ୍କର କାବ୍ୟ କବିତା ଦ୍ୱାରା ବହୁ ତରୁଣ କବି ଉଦ୍‌ବୁଦ୍ଧ ହୋଇଛନ୍ତି ।

ପ୍ରକୃତି ପ୍ରେମିକ ସୌନ୍ଦର୍ଯ୍ୟ ପିପାସୁ ସ୍ରଷ୍ଟା ଭାବରେ ପି. ଟି. ନରସିଂହା-ଚାର୍ଯ୍ୟଙ୍କ ନାମ ସ୍ମରଣୀୟ । ପ୍ରକୃତି ଓ ଦର୍ଶନର ଅପୂର୍ବ ସମନ୍ୱୟ ତାଙ୍କ କବିତାର ଯୋଗ୍ୟତା । "ଅହଲ୍ୟା" "ଗଣେଶ" "ଦର୍ଶନ", ଦୋନସ୍ୟା, ବନଦ, ମରୁକବି,

ଶବରୀ ଗୋକୁଳ ପ୍ରଭୃତ ତାଙ୍କର ମନୋଜ୍ଞ କାବ୍ୟକୃତ । ତାଙ୍କର "ଅବନୁ", ଶୀର୍ଷକ କବିତାରେ ଏ ଯୁଗର ଉତ୍କଟ ଯୌତୁକ ପ୍ରଥା ବଶତଃ କପର ଦୁଇଟି ପ୍ରେମିକ ଓ ପ୍ରେମିକାଙ୍କର ବିବାହ ସମ୍ଭବ ହୋଇ ନ ଥିଲା ଏବଂ ନାୟିକା ଏକ ଦରିଦ୍ର ଯୁବକଙ୍କୁ ବିବାହ କରି ଅନୁତପ୍ତ ହୋଇ ନଥିଲା ତାହାହିଁ ପ୍ରଦର୍ଶିତ । ସଂକ୍ଷେପରେ ତାଙ୍କ କବିତାରେ ଇଂରେଜ କବି ଓ୍ୱାର୍ଡସ୍‌ଓ୍ୱାର୍ଥ ଓ ଭାରତୀୟ କବି କାଳିଦାସଙ୍କ କାବ୍ୟ କବିତାର ଅପୂର୍ବ ସମନ୍ୱୟ ସାଧିତ ହୋଇ ପାରିଛି ।

କେ. ଭି. ପୁଟ୍ଟପ୍ପା ଆଧୁନିକ ଯୁଗର ଆଉ ଜଣେ ବିଶିଷ୍ଟ କବି । ପ୍ରସିଦ୍ଧ କନ୍ନଡ଼ ଉପନ୍ୟାସ "କାନରୁ ସୁବାମା ହେଗାଡ଼ତି"ର ସେ ହେଉଛନ୍ତି ପ୍ରଣେତା । କାବ୍ୟ କବିତା କ୍ଷେତ୍ରରେ ମଧ୍ୟ ତାଙ୍କର କୃତିତ୍ୱ କମ୍ ନୁହେଁ । ଇଂରେଜ ଓ ସଂସ୍କୃତ ଭାଷାରେ ସେ ଖୁବ୍ ପ୍ରବୀଣ । ତାଙ୍କ କବିତାର ଲକ୍ଷଣ ହେଉଛି ଆଧୁନିକ ଆଭିମୁଖ୍ୟ ତଥା ଶୈଳିକ ନୂତନତ୍ୱ । "ରାମାୟଣ ଦର୍ଶନମ୍" ମହାକାବ୍ୟ ଯୋଗୁଁ ସେ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ ହୋଇଛନ୍ତି । "ଚିତ୍ରାଙ୍ଗଦା" ତାଙ୍କର ଆଉ ଏକ ଶ୍ରେଷ୍ଠ କାବ୍ୟ । ଉଭୟ ରାମକୃଷ୍ଣ ଏବଂ ବିବେକାନନ୍ଦଙ୍କ ଆଦର୍ଶରେ ସେ ଅନୁପ୍ରାଣିତ । ହିନ୍ଦୁ ଦର୍ଶନର ପ୍ରଭାବ ତାଙ୍କ ରଚନାମାନଙ୍କରେ ମଧ୍ୟ ପ୍ରତିଫଳିତ । ତାଙ୍କର ଶ୍ରେଷ୍ଠ କବିତା "କବି ସଂସାରରେ" କବିର ଦୃଷ୍ଟି ଏବଂ ସାଧାରଣ ବ୍ୟକ୍ତିର ଦୃଷ୍ଟି ମଧ୍ୟରେ କି ବ୍ୟବଧାନ ତାହାହିଁ ବର୍ଣ୍ଣିତ । ତାଙ୍କର ଅନ୍ୟାନ୍ୟ କବିତା ମଧ୍ୟରେ ବଲ୍ମୀକି, ଭାଗ୍ୟ, ନାନାମଣି, କନ କନ, ଅଗ୍ନିହଂସ ପ୍ରେମ କାଶ୍ମୀର ପ୍ରଭୃତି ଉଲ୍ଲେଖ ଯୋଗ୍ୟ । କେ. ଶଙ୍କର ଭଟ୍ଟ ମଧ୍ୟ ଜଣେ ପ୍ରତିଭାଶାଳୀ କବି ।

କଥା ସମ୍ରାଟ୍ ମାସ୍ତି ଭେଙ୍କଟେଶ, ଆୟଙ୍ଗାର ମଧ୍ୟ କାବ୍ୟ କବିତା ଲେଖିଛନ୍ତି । ବୀଣା, ଅରୁଣ ପ୍ରଭୃତି କବିତା ଗ୍ରନ୍ଥରେ କବିଙ୍କର ପରମ୍ପରା ପ୍ରତି ଆନୁଗତ୍ୟ ପ୍ରକାଶ ପାଇଛି । ତାଙ୍କର ଚତୁର୍ଦ୍ଦଶ ପଦୀ କବିତା ଗୁଡ଼ିକ କନ୍ନଡ଼ ସାହିତ୍ୟରେ ଆଦୃତ । ତାଙ୍କର କବିତା ଭକ୍ତିଭାବ ଉଦ୍‌ବୁଦ୍ଧ । ଗୀତାଙ୍ଗ କାବ୍ୟ ନାଟିକା ଲେଖିବାରେ ଭି. କେ. ଗୋକାକଙ୍କ ପାରଦର୍ଶିତା ସର୍ବସ୍ୱୀକୃତ । ସେ କନ୍ନଡ଼ କବିତାରେ ଗଦ୍ୟ କବିତାର ଉଦ୍‌ଗାତା । ତାଙ୍କର ରଚନା "ସମୁଦ୍ର ଗୀତ" (ଗଳ୍ପ, ସମୁଦ୍ର ସଙ୍ଗୀତ)ରେ କବିର ସାର୍ବଜନୀନ ଦୃଷ୍ଟିକୋଣ ତଥା ମାନବିକତା ପ୍ରତିଫଳିତ । ଏହି ସବୁ କବିମାନଙ୍କର ରଚନାର ମାନବିକ ଆବେଦନ ଅତ୍ୟଧିକ । ଅତ୍ୟାଧୁନିକ କାଳରେ ଯେଉଁ ତରୁଣ କବି ଆଙ୍ଗିକ ଓ ଭାବଗତ ପରୀକ୍ଷା ଓ ନିରୀକ୍ଷା ଚଳାଇଛନ୍ତି ସେମାନଙ୍କ ମଧ୍ୟରେ ଆର. ଏସ. ମୁଗଲୀ ଭାରମସ୍ୟା ଜି ପି. ରାଜରତ୍ନ, ପାଂଙ୍କେ ମଙ୍ଗେଶରା ପ୍ରଭୃତିଙ୍କ ନାମ ଉଲ୍ଲେଖ ଯୋଗ୍ୟ ।

୧୯୫୦ ମସିହା ପରେ କନ୍ନଡ଼ କବିତାରେ ନୂତନ ଚେତନା ପ୍ରତିଫଳିତ ହେଲା । ଭି. ଜି. ଭଟ୍ଟଙ୍କ କବିତାରେ ସର୍ବପ୍ରଥମେ ଏହାର ଆଭାସ ଦେଖିବାକୁ ମିଳେ ।

ପୂର୍ବଯୁଗର ଆଦର୍ଶବାଦ ତଥା ଦୃଷ୍ଟିକୋଣ ବିରୋଧରେ ଏହି ନୂତନ ଆଭିମୁଖ୍ୟ ପ୍ରକାଶିତ ହେଲା । ଭଟ୍ଟ କହିଥିଲେ "ଏହିସବୁ ଜୀର୍ଣ୍ଣ କବିତା ଯଥେଷ୍ଟ ହେଲାଣି । ବର୍ତ୍ତମାନ ଗଭୀର ରାଜ୍ୟରେ ଅବଗାହନ କରିବାକୁ ପଡ଼ିବ । ଏହି ଚେତନାର କ୍ରମରେ ଭି. କେ. ଗୋକକ ଏବଂ ଗୋପାଳକୃଷ୍ଣ ଆଡିଗାଙ୍କର କବିତାହିଁ ପ୍ରଥମେ ବିବେଚ୍ୟ । ଉଭୟେ ଇଂରାଜୀ ଅଧ୍ୟାପକ । ଆଡିଗାଙ୍କର ପ୍ରେରଣାରେ ତରୁଣ କବିମାନେ ଉଦ୍‌ବୁଦ୍ଧ ହେଲେ । ଭଟ୍ଟଙ୍କର ନୈରାଶ୍ୟ ଅପେକ୍ଷା ଆଡିଗାଙ୍କର ନୈରାଶ୍ୟ ଆହୁରି ଗଭୀର । ଜଣକର କବିତାରେ ଜୀବନର ବାସ୍ତବତା ଆଉ ଜଣକର କବିତାରେ ଜୀବନର ପୂର୍ଣ୍ଣତାର ନିଦର୍ଶନ ଦେଖିବାକୁ ମିଳେ । ଏହାର ପ୍ରମାଣ ଆଡିଗାଙ୍କର "ଗୃନ୍ଦେମାଦଲ" ଏବଂ "ଭୂମିଗୀତ ।" ସେ ଜୀବନ ସମସ୍ୟାର ସେ ବିଶ୍ଳେଷଣ କରି ଆନ୍ତି । ଭାଷା, ଭାବ, ଗାମ୍ଭୀର୍ଯ୍ୟ ଚିନ୍ତକଳା ଦୃଷ୍ଟିରେ ଆଧୁନିକ କବିତା ସମୃଦ୍ଧ ।

ଏହା ଫଳରେ ତରୁଣ କବି ଚେନାଭୀର କାନିଭି, କେ. ଏସ୍. ନରସିଂହ ସ୍ୱାମୀ, ଗଙ୍ଗାଧର ଚିତ୍ତଲ, ଜି. ଏସ୍. ଶିବ, ରୁଦ୍ରାପ୍ପା ଆଧୁନିକ କବିତା ଲେଖା ପାଇଁ ଉଦ୍‌ବୁଦ୍ଧ ହେଲେ । ନୂତନ ଆଗନ୍ତୁକମାନଙ୍କ ମଧ୍ୟରେ ରାମଚନ୍ଦ୍ର ଶର୍ମା, ଶଙ୍କର ମୋକାସି, ଏ. କେ ରାମାନୁଜ ଚନ୍ଦ୍ରଶେଖର କାମ୍ବର ଅରବିନ୍ଦ ନାଦକର୍ଣ୍ଣୀଙ୍କ, ନାମ ଉଲ୍ଲେଖ ଯୋଗ୍ୟ । ସଂକ୍ଷେପରେ କୁହାଯାଇପାରେ ଯେ; ବାସ୍ତବତା, ବୌଦ୍ଧିକତା, ଆବେଗମୟତ୍ୱ, ନୂତନ ଆଙ୍ଗିକ ଆଧୁନିକ କନ୍ନଡ଼ କବିତାର ଲକ୍ଷଣ ।

**ଆଧୁନିକ ଉପନ୍ୟାସ :—**

ଅନୁବାଦ ଏବଂ ଅନୁକରଣରୁ ଆରମ୍ଭ ହୋଇ ପରେ ମୌଳିକ ଉପନ୍ୟାସ ଲେଖା ଆରମ୍ଭ ହେଲା । ଏହି ଭାଷାରେ ପ୍ରଥମ ଅନୂଦିତ ଉପନ୍ୟାସ ହେଉଛି ସଂସ୍କୃତର "କାଦମ୍ବରୀ" । ଗାଲଗାନାଥଙ୍କର ଉପନ୍ୟାସ "ମାଧବ କରୁଣା ବିଲାସ" ବିଜୟନଗରର ସାମ୍ରାଜ୍ୟର ଐତିହାସିକ ଭୂମିକା ଉପରେ ଲିଖିତ । ଏମ୍. ଏସ୍. ପୁଟ୍ଟାନ୍ନାଙ୍କର ଉପନ୍ୟାସ ମାଡି ଡୁନ୍ନୋ ମାରାୟା (ଯାହା ବୁଣିଛ, ତାହା କାଟ) ବାସ୍ତବ ଜୀବନକୁ କେନ୍ଦ୍ର କରି ଲିଖିତ । ଏହି ଉପନ୍ୟାସର ସୃଷ୍ଟି ଶିଳ୍ପର ସାର୍ଥକତା ନ ଥିଲେ ମଧ୍ୟ ଏହା କନ୍ନଡ ଉପନ୍ୟାସ ସାହିତ୍ୟରେ ଏକ ସଙ୍କେତ ସ୍ତମ୍ଭ ଏହା ସ୍ୱୀକାର୍ଯ୍ୟ ।

ବାସୁଦେବାଚାର୍ଯ୍ୟ କେରୁର ଜଣେ ଶକ୍ତିଶାଳୀ ଗଦ୍ୟ ଲେଖକ । ସେ "ଶୁଭୋଦୟ" ସାପ୍ତାହିକ ପତ୍ରିକାର ସମ୍ପାଦକ ଥିଲେ ଏବଂ ଅଜସ୍ର ଗଳ୍ପ, ଉପନ୍ୟାସ ଲେଖି କନ୍ନଡ ସାହିତ୍ୟରେ ଖ୍ୟାତି ଅର୍ଜ୍ଜନ କରିଥିଲେ । ତାଙ୍କର ତିନିଖଣ୍ଡି ଉପନ୍ୟାସ ମଧ୍ୟରେ "ଇନ୍ଦିରା" ହେଉଛି, କନ୍ନଡ଼ ଭାଷାର ପ୍ରଥମ ଆଧୁନିକ ଉଲ୍ଲେଖ ଯୋଗ୍ୟ ସାମାଜିକ ଉପନ୍ୟାସ ଏବଂ ପାଠକମାନଙ୍କ ମହଲରେ ଏହାର ଆଦର ଖୁବ୍ ଅଧିକ । ତାଙ୍କର ଶୈଳୀ ସଂସ୍କୃତ ପ୍ରଭାବିତ ।

୧୯୩୦ ମସିହାପରେ ବହୁ ତରୁଣ ଔପନ୍ୟାସିକ ସେମାନଙ୍କ ଉପନ୍ୟାସ ଦ୍ୱାରା କନ୍ନଡ଼ ସାହିତ୍ୟକୁ ସମୃଦ୍ଧ କରିଛନ୍ତି । ସାମାଜିକ ଜଟିଳତା, ବାସ୍ତବବାଦ, ଅର୍ଥନୈତିକ ସମସ୍ୟା ସେମାନଙ୍କ ଉପନ୍ୟାସରେ ମୁଖ୍ୟ ସ୍ଥାନ ଅଧିକାର କରିଛି । ଏ. ଏନ୍. କୃଷ୍ଣରାଓ, ଶିବ ରାମ କରନ୍ତ, ଭି. ଏନ୍. ଇନାମଦାର ଭି. କେ. ଗୋକାକ, ବାସବରାଜ, କାଞ୍ଚିମନ, ମୀରଜନ୍ନାରାଓ କେ. ଭି. ପୁଟ୍ଟାପା, ଆର. ଏସ. ମୁଗଲି, ଆର. ଭି. ଜାଗିରଦାର ପ୍ରମୁଖ ହେଉଛନ୍ତି ଶକ୍ତିଶାଳୀ ଉପନ୍ୟାସ ଲେଖକ । ଏ. ଏନ୍ କୃଷ୍ଣାରାଓ, ଶିବରାମ କରନ୍ତ ପ୍ରଭାବଶାଳୀ ଲେଖକ । କୃଷ୍ଣାରାଓଙ୍କ ଉପନ୍ୟାସର କଥାବସ୍ତୁ ସମାଜ ଧର୍ମୀ, ନିର୍ଦ୍ଦିଷ୍ଟ ଛାଞ୍ଚରେ ଗଠିତ ଏବଂ ଯୌନ ଜୀବନର ଚିତ୍ର ତାଙ୍କ ଉପନ୍ୟାସରେ ବ୍ୟଙ୍ଗାତ୍ମକ ଭାଷାରେ ପ୍ରଦତ୍ତ । ତାଙ୍କ ଉପନ୍ୟାସ ବର୍ଣ୍ଣିତ ଚରିତ୍ର ସମୂହ ଅସାଧାରଣ ମନିଷ ଏବଂ ସେମାନଙ୍କ ମଧ୍ୟରୁ ଅଧିକାଂଶ ହେଉଛନ୍ତି ଶିଳ୍ପୀ । ତାଙ୍କର ଶ୍ରେଷ୍ଠ ଉପନ୍ୟାସ "ସନ୍ଧ୍ୟା ରାଗର" ନାୟକ ହେଉଛି ଜଣେ ସଙ୍ଗୀତଜ୍ଞ । ସେହି ସଂଗୀତଜ୍ଞ ନିଜ ସଂଗୀତ ସାଧନାରେ ଏପରି ବିହ୍ୱଳ ରହୁଥିଲେ ଯେ ଦିନେ ସଂଗୀତ ଚର୍ଚ୍ଚା କରୁ କରୁ ସେ ଦେହତ୍ୟାଗ କରିଥିଲେ । ସତେ ଯେପରି ତାଙ୍କ ଉପନ୍ୟାସରେ ଚର୍ଣ୍ଣିତ ନାୟକମାନେ ସଂସାରର ବାସ୍ତବତା ଠାରୁ ବହୁ ଦୂରରେ । କୃଷ୍ଣାରାଓଙ୍କର ଅନ୍ୟାନ୍ୟ ଉପନ୍ୟାସ ମଧ୍ୟରେ ଉଦୟ ରାଗ, ମଂଗଲ ସୂତ୍ର ପ୍ରଧାନ ।

ଶିବରାମ କରନ୍ତଙ୍କ ଉପନ୍ୟାସରେ ବର୍ଣ୍ଣିତ ଚରିତ୍ରଚଣ ବାସ୍ତବତା ମଧ୍ୟରେ ଗତିକରିଥାନ୍ତି । ଏହାହିଁ କୃଷ୍ଣରାଓଙ୍କ ଉପନ୍ୟାସ ଠାରୁ କରନ୍ତଙ୍କର ଉପନ୍ୟାସ ସ୍ୱାତନ୍ତ୍ର୍ୟ ଦକ୍ଷିଣ କାନାରାର ଚିତ୍ର କରନ୍ତଙ୍କ ଉପନ୍ୟାସର ପ୍ରଧାନ ଉପଜୀବ୍ୟ । "ଚ୍ଚୋମାନ ଦୁଦି" (Chomana dudi) ହେଉଛି ତାଙ୍କର ଶ୍ରେଷ୍ଠ ଉପନ୍ୟାସ ଏଥିରେ ଜନୈକ ଅସ୍ପୃଶ୍ୟର କାହାଣୀ ସ୍ଥାନ ପାଇଛି । ବାସ୍ତବ ଏବଂ ପ୍ରତ୍ୟକ୍ଷ ବର୍ଣ୍ଣନା ତାଙ୍କର ଶୈଳୀର ମହତ୍ତ୍ୱ । "ମାରାଲ ମାନରେ" ତାଙ୍କର ଆଉ ଏକ ସାର୍ଥକ ଉପନ୍ୟାସ । ତାଙ୍କର ଉପନ୍ୟାସରେ ପ୍ରତ୍ୟେକ ଚରିତ୍ର ଯେପରି ଜୀବନ୍ତ । ଲୋକ ପ୍ରିୟ ଔପନ୍ୟାସିକ ଶିବରାମଙ୍କର "ଚଗୁବଦା କାନାରୁ" ଉପନ୍ୟାସ କୃଷକ ଜୀବନର ବାସ୍ତବ ପୃଷ୍ଠଭୂମି ଉପରେ ଆଧାରିତ । କରନ୍ତ ଏବଂ କୃଷ୍ଣରାଓ ପ୍ରକୃତରେ ଆଧୁନିକ କନ୍ନଡ଼ ଉପନ୍ୟାସର ଉଭୟ ଗୁଣ ଏବଂ ପରିମାଣ ବୃଦ୍ଧି ଦିଗରେ ସହାୟତା କରିଥିଲେ । ଏହିପରି ଯୁଗର ଉପନ୍ୟାସରେ ଜୀବନର ସାମଗ୍ରୀକ ଦୃଷ୍ଟିଭଙ୍ଗୀ ପ୍ରତିଫଳିତ ହେଲା ।

୧୯୪୦ ମସିହା ପରବର୍ତ୍ତୀ ଔପନ୍ୟାସିକମାନେ ମୁଖ୍ୟତଃ ସାମାଜିକ ଏବଂ ରାଜନୈତିକ ବିପ୍ଳବଦ୍ୱାରା ଉଦ୍‌ବୁଦ୍ଧ ହୋଇଥିଲେ । କ୍ରମଶଃ ରାଜନୈତିକ ଏବଂ ସାମାଜିକ ବିପ୍ଳବ ଧାରା ଏବଂ ସାମ୍ୟବାଦୀ ଚିନ୍ତାଧାରା ଔପନ୍ୟାସିକ ଚିନ୍ତାଧାରାକୁ ତରଙ୍ଗାୟିତ କରିଥିଲା । ସ୍ୱାଧୀନୋତ୍ତର ଯୁଗରେ ଏକ ବୈପ୍ଳବିକ ଦୃଷ୍ଟିକୋଣ ଉପନ୍ୟାସର ଉଭୟ କଥାବସ୍ତୁ ଏବଂ ପ୍ରାଣକୁ ସ୍ପର୍ଶ କରିଥିଲା ।

ଭି, ଏମ୍, ଇନାମଦାର ଜଣେ ଶକ୍ତିଶାଳୀ ଔପନ୍ୟାସିକ । ତାଙ୍କର ପ୍ରଥମ ଉପନ୍ୟାସ ହେଉଛି ମରାଠୀ ଔପନ୍ୟାସିକ ଭି. ଏସ, ଖାଣ୍ଡେକରଙ୍କର ଏକ ଉପନ୍ୟାସର କନ୍ନଡ଼ ଅନୁବାଦ । ଜାଗିରଦାରଙ୍କର "ବିଶ୍ୱାମିତ୍ର ସୃଷ୍ଟି" ଉପନ୍ୟାସ ଏକ ସାର୍ଥକ ସୃଷ୍ଟି । ତାଙ୍କର ଶୈଳୀ କ୍ଲିଷ୍ଟତା ରହିତ ମାତ୍ର ଏ ପର୍ଯ୍ୟନ୍ତ ଏକଦେଶଦର୍ଶିତାହିଁ, ଜୀବନର ଖଣ୍ଡିତ ଚିତ୍ରହିଁ କନ୍ନଡ଼ ଉପନ୍ୟାସର ଆଧାରକୁ ସୀମିତ କରି ରଖିଥିଲା । ଭି.କେ. ଗୋକକଙ୍କ ରଚନା ଇଜଡ଼ୁ (ବୈଷମ୍ୟ) ସମରସାବେ (ଜୀବନସତ୍ୟ) ମୃଗମିଙ୍କ "ବାଲୁଗି" (ଜୀବନାଗ୍ନି) ଆନ୍ନାରାଓଙ୍କର ରାଜନୈତିକ ଉପନ୍ୟାସ "ରାଷ୍ଟ୍ରପୁରୁଷ" ପ୍ରଭୃତି ଆଧୁନିକ କନ୍ନଡ଼ ଉପନ୍ୟାସରେ ବେଶ୍ ପରିଚିତ । ଏମ୍. ଏସ୍. ପୁଟ୍ଟାପାଙ୍କର କେତେଖଣ୍ଡ ସାମାଜିକ ଉପନ୍ୟାସ ଅତ୍ୟନ୍ତ ଲୋକପ୍ରିୟ ।

ସଂକ୍ଷେପରେ କହିବାକୁ ଗଲେ ଆଧୁନିକ କନ୍ନଡ଼ ଉପନ୍ୟାସର ତ୍ୱରାନ୍ୱିତ ରୂପାନ୍ତର ପାଇଁ ଦେଶରେ ବିଭିନ୍ନ ଜାତୀୟ ସମସ୍ୟା ଓ ଆନ୍ଦୋଳନ ବିଶେଷ ଉପାଦାନ ଯୋଗାଇଥିଲା । କ୍ଲିଷ୍ଟତା ପୀଡ଼ିତ ଶୁଷ୍କ, ନୀରସ ବୈଚିତ୍ର୍ୟ ହୀନ ରଚନା ସ୍ତରରୁ ଏକ ସାର୍ଥକ ରସୋତ୍ତୀର୍ଣ୍ଣ ସ୍ତରକୁ ଉପନ୍ୟାସକୁ ଉନ୍ନୀତ କରିବାରେ ପ୍ରଗତିଶୀଳ ସାହିତ୍ୟ ଆନ୍ଦୋଳନ ମଧ୍ୟ ଦାୟୀ । ସାଂପ୍ରତିକ ସାମାଜିକ ସଂଘର୍ଷକୁ କେନ୍ଦ୍ରକରି ତରୁଣ ଔପନ୍ୟାସିକମାନେ ଉଚ୍ଚ କୋଟୀର ଉପନ୍ୟାସ ରଚନା କରିବାରେ ବ୍ରତୀ । ନୂତନ ପରିବେଶ ନୂତନ ଦୃଷ୍ଟିକୋଣ ଏବଂ ଗଭୀର ଜୀବନବୋଧ ଆଧୁନିକ ଉପନ୍ୟାସରେ ପ୍ରତିଫଳିତ । ଔପନ୍ୟାସିକ ଜାଗିରଦାରଙ୍କର ବିଶ୍ୱାମିତ୍ର ସୃଷ୍ଟି ଆନ୍ନାରାଓଙ୍କର "ରାଷ୍ଟ୍ର ପୁରୁଷ" କୃଷ୍ଣରାଓଙ୍କର "ସାକେ ଗାତା" ପୁଟ୍ଟାପାଙ୍କର "କାନୁର ସୁବାମ୍ମା" ହେଗ୍ ଗାଡାଡ ପ୍ରଭୃତି କଥାଶିଳ୍ପ ଉଲ୍ଲେଖଯୋଗ୍ୟ । ବିଶେଷତଃ ରାଷ୍ଟ୍ର ପୁରୁଷ ଉପନ୍ୟାସ ଭାରତୀୟ ଜାତୀୟ ଆନ୍ଦୋଳନର ପୃଷ୍ଠଭୂମିରେ ଲିଖିତ ଏବଂ ଏକ ସାର୍ଥକ ଉପନ୍ୟାସ ଭାବରେ ପାଠକ ସମାଜରେ ଏହା ବେଶ୍ ଆଦୃତ ହୋଇ ପାରିଛି ।

୧୯୫୦ ମସିହା ପରବର୍ତ୍ତୀ ଲିଖିତ ଉପନ୍ୟାସ ମଧ୍ୟରେ ଶଙ୍କର ମୋକାସୀଙ୍କର "ଗଙ୍ଗାୟା ମଠ୍ଟୁ", ରାଓ ବାହାଦୁରଙ୍କର ଗ୍ରାମାୟନ ଉଲ୍ଲେଖଯୋଗ୍ୟ । ଗ୍ରାମାୟନ ଉପନ୍ୟାସର ବ୍ୟାପ୍ତି ଚରିତ୍ରଚିତ୍ରଣ ବୈଶିଷ୍ଟ୍ୟ ପୂର୍ଣ୍ଣ । ପ୍ରାଚୀନ ଗ୍ରାମ୍ୟ ସଂସ୍କୃତିର ବିଲୋପ ଏଥିରେ ବର୍ଣ୍ଣିତ । ୧୯୬୦ ମସିହା ପରେ ମନସ୍ତାତ୍ତ୍ୱିକ ବିଶ୍ଳେଷଣ ହିଁ ଉପନ୍ୟାସମାନଙ୍କରେ ବିଶେଷ ଭାବରେ ପ୍ରତିଫଳିତ । ଶାନ୍ତିନାଥଙ୍କର ଉପନ୍ୟାସ "ମୁକ୍ତି" ମାନବର ଆଭ୍ୟନ୍ତରୀଣ ସ୍ୱରୂପ ପ୍ରଦାନ କରିଅଛି । ବ୍ୟକ୍ତି ତଥା ସମାଜର ସଂପର୍କକୁ କେନ୍ଦ୍ର କରି ଯଶୋବନ୍ତ ଚିତ୍ତଲଙ୍କ ଉପନ୍ୟାସ ମୋରୁ ଦାରିଗଲୁ ଲିଖିତ ମନୋହର ଗ୍ରନ୍ଥମାଳା ଶୀର୍ଷକ ଉପନ୍ୟାସ ସମୂହ ୟୁ. ଆର. ଅନନ୍ତମୂର୍ତ୍ତିଙ୍କ "ସଂସ୍କାର" ଉପନ୍ୟାସ ଅତ୍ୟାଧୁନିକ କନ୍ନଡ଼ ଉପନ୍ୟାସର ନୂତନ ଦିଗ ।

କ୍ଷୁଦ୍ରଗଳ୍ପ :—

ଏହି ବିଭାଗରେ ଆଧୁନିକ କନ୍ନଡ଼ ସାହିତ୍ୟର ବିସ୍ମୟକର ସଫଳତା ଅବଶ୍ୟ ସ୍ୱୀକୃତ। ଏହି ଆଙ୍ଗିକର ପ୍ରଯୋଜକ ହେଉଛନ୍ତି ଯଥାକ୍ରମେ ମାସ୍ତି ଭେଙ୍କଟେଶ ଆୟଙ୍ଗାର ଓ କେରୁର ବାସୁଦେବାଚାର୍ଯ୍ୟ ମାସ୍ତି କିନ୍ତୁ ଆଧୁନିକ କନ୍ନଡ କ୍ଷୁଦ୍ର ଗଳ୍ପର ଯଥାର୍ଥ ପ୍ରତିଷ୍ଠାତା। କବିତା ଏବଂ ଉପନ୍ୟାସ କ୍ଷେତ୍ରରେ ତାଙ୍କର ପ୍ରବେଶ ଥିଲେ ମଧ୍ୟ ତାଙ୍କର ଅଜସ୍ର କ୍ଷୁଦ୍ରଗଳ୍ପ ତାଙ୍କ ସାହିତ୍ୟ କର୍ମର ଶ୍ରେଷ୍ଠ ସୃଷ୍ଟି ଥିଲା। ଜୀବନ-ନିଷ୍ଠ ଶିଳ୍ପୀ ମାସ୍ତିଙ୍କର ଗଳ୍ପ ସମୂହର କଥାବସ୍ତୁ ଦୈନନ୍ଦିନ ସର୍ବ ସାଧାରଣ ଚରିତ୍ରରୁହିଁ ଗୃହୀତ। ପ୍ରତ୍ୟକ୍ଷଦର୍ଶୀ ବର୍ଣ୍ଣନା, ଗୁରତ୍ୱିକ ଆଦର୍ଶବାଦ ଏବଂ ସୂକ୍ଷ୍ମ ସ୍ପୃର୍ଣ୍ଣ। ତାଙ୍କ ଗଳ୍ପମାନଙ୍କରେ ପ୍ରତିଫଳିତ ଚରିତ୍ର ଚିତ୍ରଣ ବିଷୟ ବସ୍ତୁଗତ ଜଟିଳତା ନାହିଁ କିମ୍ବା ଗୁରୁ ଗମ୍ଭୀର ଭାଷାର ଛଟା ନାହିଁ ତଥାପି ତାହା ହୃଦୟ ସ୍ପର୍ଶୀ ଏବଂ ଜୀବନବୋଧରେ ରସୋତ୍ତୀର୍ଣ୍ଣ। ଶିଳ୍ପର କମନୀୟତାହିଁ ତାଙ୍କର ପ୍ରତ୍ୟେକ ଗଳ୍ପର ଆକର୍ଷଣ। ସେଥିରେ ଶୈଳୀ ସରଳତା ନିହିତ ଏବଂ ଆଡ଼ମ୍ବର ଶୂନ୍ୟ। ତାଙ୍କ ଦୀର୍ଘ ଗଳ୍ପ "ସୁବାନା" ବିଭିନ୍ନ ଶ୍ରେଣୀର ପାଠକଙ୍କ ମଧ୍ୟରେ ସୁପରିଚିତ ଏବଂ ଏହି 'ସୁବାନା' ଗଳ୍ପ ସହିତ ତାଙ୍କର ବହୁ ଗଳ୍ପ ଇଂରେଜରେ ଅନୂଦିତ। 'ସୁବାନା' ଗଳ୍ପରେ ମଣିଷର କଠିନ ହୃଦୟ ଆଦର୍ଶର ପ୍ରଭାବରେ ପରିବର୍ତ୍ତିତ ହୋଇପାରେ ଏହାହିଁ ସୁବାନା ଜୀବନରେ ପରିଲକ୍ଷିତ।

ଗଳ୍ପାଂଶ ସହଜ ଓ ସରଳ ଭାଷା କାହାଣୀର ଗ୍ରାମ୍ୟତା-ପୂର୍ଣ୍ଣ ଏବଂ ଆବେଦନ ବିଶେଷ ପରିମାଣରେ ମାନବିକତା ପୂର୍ଣ୍ଣ। ଗଭୀର ମାନବିକତା ଏବଂ ନିର୍ଦ୍ଦିଷ୍ଟ ଆଦର୍ଶ ତାଙ୍କ ଗଳ୍ପରେ ପ୍ରତିଫଳିତ। ସାଧାରଣ ଜୀବନର ସୁଖ ଦୁଃଖ, ଆଶା, ନୈରାଶ୍ୟ, ଅଭିଜ୍ଞତା, ସଂଘର୍ଷ ଏବଂ ଦ୍ୱନ୍ଦ୍ୱହିଁ ତାଙ୍କ ଗଳ୍ପରେ ମୁଖ୍ୟ ସ୍ଥାନ ଲାଭ କରିଥାଏ। କାହାଣୀର ସଂଘାତ ପରିସ୍ଥିତିର ବାସ୍ତବତା ବେଳେ ବେଳେ ତାଙ୍କ ଗଳ୍ପକୁ ଅଶ୍ରୁସିକ୍ତ କରିଥାଏ। କାହାଣୀ ମଧ୍ୟରେ ଦରଦ ପୂର୍ଣ୍ଣ ବ୍ୟକ୍ତିତ୍ୱର ସଂଧାନ ମାସ୍ତିଙ୍କର ସାମାଜିକ ଗଳ୍ପାବଳୀର ନିପୁଣ ଗତି। ଆବେଦନ ଗଭୀର ଆକର୍ଷଣ ଏବଂ ଶୈଳୀର ସାବଲୀଳତା ତାଙ୍କ ଗଳ୍ପ ଗୁଡ଼ିକର ବୈଶିଷ୍ଟ୍ୟ। ସେଥିରେ ଦରିଦ୍ର ଜୀବନର ଦରଦ ଓ ବ୍ୟଥା ବିଶେଷ ଉପସ୍ଥାପିତ ଈଶ୍ୱର ଅଶ୍ରୁ ପ୍ଲାବନରେ ମାସ୍ତିଙ୍କର ଗଳ୍ପ ଗୁଡ଼ିକ ଯେପରି ଆର୍ଦ୍ର। ତେଣୁ ମାସ୍ତିଙ୍କର କ୍ଷୁଦ୍ର ଗଳ୍ପ ନିଷ୍ପେସିତ ଜୀବନର ସହାନୁଭୂତି ପୂର୍ଣ୍ଣ ଚିତ୍ର ବୋଲି କୁହାଯାଇ ଥାଏ। ତାଙ୍କର ଛଦ୍ମ ନାମ ହେଉଛି "ଶ୍ରୀନିବାସ"।

ଗରୁର-ରାମସ୍ୱାମୀ ଶକ୍ତିଶାଳୀ ଗଳ୍ପ ଲେଖକ। ଗରୁରଙ୍କର ଗଳ୍ପ ସ୍ୱତନ୍ତ୍ର କଥାବସ୍ତୁ ତଥା ଉପସ୍ଥାପନା ଶୈଳୀଯୋଗୁ ପ୍ରଶଂସନୀୟ। ଆଧୁନିକ ସର୍ବଗ୍ରାସୀ ସଭ୍ୟତାର ବିଷମୟ ପରିଣତି ନ୍ୟସ୍ତ ସ୍ୱାର୍ଥ ଜମିଦାର ଗୋଷ୍ଠୀର ପତନ, ଗରୁରଙ୍କ ଗଳ୍ପମାନଙ୍କରେ ବର୍ଣ୍ଣିତ। ଇଂରେଜ ଲେଖକ ଗ୍ଭର୍ଲସ ଡିକେନସଙ୍କ ସଦୃଶ ଗ୍ରାମ୍ୟ ସମାଜ ଚିତ୍ରଣରେ ସେ ପାରଦର୍ଶୀ। କର୍ଣ୍ଣାଟକ ଗ୍ରାମ୍ୟ ଜୀବନର ନିଖୁଣ ବର୍ଣ୍ଣନା ତାଙ୍କର ରଚନା

ହିନ୍ଦୀସ୍ ଚନ୍ଦଗାଲୁ ଓ "ନମ୍ମୁର ରସିକର"ରେ ଦେଖାଯାଏ ତାଙ୍କ ଗଳ୍ପର ସାରବତ୍ତା ଓ ପ୍ରେରଣା ଅସାଧାରଣ । ବ୍ୟଙ୍ଗ ବିଦ୍ରୂପ ସ୍ପର୍ଶରେ ତାଙ୍କର ଗଳ୍ପଗୁଡ଼ିକ ରସୋତ୍ତୀର୍ଣ୍ଣ । ଆଧୁନିକ ସଭ୍ୟତା ଓ ସମାଜର ବ୍ୟର୍ଥତା ଚିନ୍ତାଶୀଳ ବ୍ୟକ୍ତିମାନଙ୍କ ମନରେ ଯେଉଁ ଦ୍ୱନ୍ଦ୍ୱସୃଷ୍ଟି କରିଅଛି ତାହାର ପ୍ରତିଫଳନ ତରୁଣ ଗଳ୍ପକାରମାନଙ୍କ ରଚନାରେ ସୁସ୍ପଷ୍ଟ । ମନୋବିଶ୍ଳେଷଣ, ବାସ୍ତବବାଦ, ଅତ୍ୟାଧୁନିକ କନ୍ନଡ଼ ଗଳ୍ପର ଅନ୍ତରାତ୍ମା! ଉପନ୍ୟାସ ଅପେକ୍ଷା କ୍ଷୁଦ୍ର ଗଳ୍ପର ଅଗ୍ରଗତି ଉଲ୍ଲେଖ ଯୋଗ୍ୟ ସି.କେ. ନାଗରାଜ ରାଓ. ଏ. ଏନ୍ କୃଷ୍ଣାରାଓ ବେଟିଗେରି, କୃଷ୍ଣଶର୍ମା, ଏ ସୀତାରାମ (ଆନନ୍ଦ) ପ୍ରମୁଖ ଗଳ୍ପ ଲେଖକଙ୍କ ନାମ ଉଲ୍ଲେଖ କରାଯାଇ ପାରେ । ପଲ୍ଲୀ ଜୀବନର କରୁଣ ଦୁଃଖାବହ ଦୃଶ୍ୟ ବେଟିଗେରିଙ୍କ କ୍ଷୁଦ୍ର ଗଳ୍ପରେ ପ୍ରତିଫଳିତ । କୃଷୀର ଦାରିଦ୍ର୍ୟ ଅଭାବ ଅନାଟନ ନିରକ୍ଷରତା ସାବଲୀଳ ଭାଷାରେ ତାଙ୍କ ଗଳ୍ପରେ ବର୍ଣ୍ଣିତ । ସେ ଯେପରି କ୍ଷୁଦ୍ର ଗଳ୍ପକୁ ଏକ ଅସ୍ତ୍ରରୂପେ ବ୍ୟବହାର କରି ଗ୍ରାମ୍ୟ ଜୀବନର ସଂସ୍କାର ପାଇଁ ଆହ୍ୱାନ ଦେଇଥିଲେ । ଆନନ୍ଦଙ୍କ ଗଳ୍ପ ଗୁଡ଼ିକ ପ୍ରେମାଶ୍ରିତ । କର୍ଣ୍ଣାଟକ ଦୁର୍ଭିକ୍ଷ କଥା ଶିଳ୍ପୀର ଚେତନାକୁ ଆନ୍ଦୋଳିତ କରି ଦେଇଥିଲା ଅଧ୍ୟାପକ କେ. ଭି. ପୁଟ୍ଟପ୍ପାଙ୍କର ଗଳ୍ପ ସଙ୍କଳନ ସନ୍ୟାସୀ ଏବଂ ଅନ୍ୟାନ୍ୟ ଗଳ୍ପ "ନାନା ଦେବରୁ" ସାଧାରଣ ଜୀବନର ଚିତ୍ର ପ୍ରଦର୍ଶନ କରିଥିଲା । ୧୯୪୦ ମସିହା ପରେ ବିଶେଷତଃ ସ୍ୱାଧୀନୋତ୍ତର ଯୁଗରେ କନ୍ନଡ଼ କ୍ଷୁଦ୍ର ଗଳ୍ପର ଉଭୟ ଆଙ୍ଗିକ ଓ ଶୈଳ୍ପିକ ଅଗ୍ରଗତି ଘଟିଲା । ଶିବରାମ କରନ୍ତୁ ଏ ଏନ୍ କୃଷ୍ଣରାଓ ଏହି ନବ ଧାରାର ପ୍ରବର୍ତ୍ତକ । ଶାନ୍ତିନାଥ ଦେଶାଇ ଯଶୋବନ୍ତ ଚିତ୍ତଲ, ଲଙ୍କେଶ, ୟୁ. ଆର, ଅନନ୍ତ ମୂର୍ତ୍ତି ପ୍ରଭୃତି ଲେଖକଙ୍କର କ୍ଷୁଦ୍ର ଗଳ୍ପ ନୂତନତାର ପରିଚାୟକ । ନୂତନ ଚିନ୍ତା, ନୂତନ ପ୍ରତୀକ ଗ୍ରହଣ କରିବାରେ ଏମାନଙ୍କର କ୍ଷୁଦ୍ର ଗଳ୍ପ ସାର୍ଥକ । ଶ୍ରୀମତୀ ରାଜଲକ୍ଷ୍ମୀ ରାଓ ରାମଚନ୍ଦ୍ର ଶର୍ମା ରାଘବ, ରାମାନୁଜନ୍ ପ୍ରମୁଖ କଥାକାର ବାସ୍ତବଧର୍ମୀ ଚିତ୍ର ପରିବେଷଣ କରିଛନ୍ତି ।

**ନାଟକ :—**

କନ୍ନଡ଼ ସାହିତ୍ୟରେ ନାଟକ ରଚନା ବିଶେଷ ପ୍ରସାର ଲାଭ କରି ପାରିନାହିଁ । ସପ୍ତଦଶ ଶତାବ୍ଦୀର ନରସିଂହାଚାର୍ଯ୍ୟଙ୍କ ମିତ୍ରବିନ୍ଦ-ଗୋବିନ୍ଦ ନାଟକ ଶ୍ରୀହର୍ଷଙ୍କ "ରତ୍ନାବଳୀ"ର ଅନୁବାଦ ପ୍ରାଚୀନ କନ୍ନଡ଼ ନାଟକର ନିଦର୍ଶନ । ପ୍ରାଚୀନ କାଳରେ ନାଟକ ଲିଖିତ ହୋଇ ନଥିଲେ ମଧ୍ୟ କର୍ଣ୍ଣାଟବାସୀଙ୍କୁ ଅଭିନୟ କଳା ଅବିଦିତ ନଥିଲା ପ୍ରତ୍ୟେକ ଗ୍ରାମରେ କେନ୍ଦ୍ରପୀଠ ମାନ ଥିଲା ସେଠାରେ ଯକ୍ଷଗାନ ଅଭିନୀତ ହେଉଥିଲା ଏବଂ ଏହାର ପୃଷ୍ଠଭୂମି ଥିଲା ମୁଖ୍ୟତଃ ପୌରାଣିକ । ଏହି ଯକ୍ଷ ଗାନ ସମୂହ ମୌଖିକ ସାହିତ୍ୟ ରୂପେ ପ୍ରଚଳିତ ଥିଲା ବିଂଶଶତାବ୍ଦୀର ପ୍ରଥମ ସୋପାନରୁହିଁ ନାଟକ ସାହିତ୍ୟିକ ରୂପେ ପ୍ରାପ୍ତ ହେଲା ଏବଂ ସଙ୍କେତ ରଙ୍ଗମଞ୍ଚରେ ତାହା ଅଭିନୀତ ହୋଇଥିଲା । ସମ୍ଭବତଃ କେରୁର ବାସୁଦେବାଚାର୍ଯ୍ୟଙ୍କର "ନଳ ଦମୟନ୍ତୀ" କନ୍ନଡ଼ ଭାଷାରେ ପ୍ରଥମ ମୌଳିକ

ନାଟକ । ଏହି ଶତାବ୍ଦୀର ଲେଖକଗଣ ସାମାଜିକ କଥାବସ୍ତୁ ଅବଲମ୍ବନ ପୂର୍ବକ ଭାବ-ବସ୍ତୁବାଦଧର୍ମୀ ନାଟକମାନ ଲେଖିଥିଲେ । ଟି. ପି. କୈଳାସମ୍ ଆଧୁନିକ କନ୍ନଡ଼ ନାଟକର ପ୍ରବର୍ତ୍ତକ । ତାଙ୍କର ଶୈଳୀ ଏବଂ ଦୃଷ୍ଟିକୋଣ ଭୁଙ୍ଗ ନାଟ୍ୟ ପ୍ରତିଭାର ପରିଚାୟକ । ଟୋଲ୍ଲୁଗଟ୍ଟି ହେଉଛି ତାଙ୍କର ପ୍ରଥମ ସାମାଜିକ ନାଟକ ଏବଂ ଆଧୁନିକ ଶିକ୍ଷାର ପ୍ରଭାବକୁ ଲକ୍ଷ୍ୟ କରି ଏହା ଲିଖିତ । ତାଙ୍କର ଆଉ ଖଣ୍ଡେ ନାଟକ ହୋମରୁଲୁ (Home rulu) ମା, ପୁଅ ଏବଂ ବୋହୂର ପାରିବାରିକ ଜୀବନର ସଂଘର୍ଷକୁ କେନ୍ଦ୍ର କରି ଲିଖିତ । କୈଳାସଙ୍କ ନାଟକମାନଙ୍କ ମଧ୍ୟରେ ଲେଖକର ମାନବ ଚରିତ୍ର ବିଶ୍ଳେଷଣ ଶକ୍ତି ପ୍ରଦର୍ଶିତ । ନାଟ୍ୟକାର ଦେଶ ବିଦେଶରେ ପର୍ଯ୍ୟଟନ କରିଥିବାରୁ ତାଙ୍କ ରଚନାରେ ବିବିଧ ଅଭିଜ୍ଞତା ସ୍ପଷ୍ଟ । ଆଧୁନିକ ନାଟକର ଗଠନ କୌଶଳ ଏବଂ ପ୍ରଣାଳୀ ସମ୍ପର୍କରେ ସେ ସମ୍ପୂର୍ଣ୍ଣ ଅବହିତ ଥିଲେ ଏବଂ ରାଜନୈତିକ ତଥା ସାମାଜିକ ବ୍ୟଙ୍ଗ ବିଦ୍ରୂପପୂର୍ଣ୍ଣ ନାଟକ ତାଙ୍କର କୃତିତ୍ୱ । ଅତ୍ୟାଧୁନିକ ନାଟକ, ଓ ଅତ୍ୟାଧୁନିକ ରଙ୍ଗମଞ୍ଚର ବିକାଶ କ୍ରମେ ସମ୍ଭବ ହୋଇଅଛି । ପ୍ରଥମେ ସଂସ୍କୃତ ପୁରାଣ ମରାଠୀ ସାହିତ୍ୟ, ପରେ ପାଶ୍ଚାତ୍ୟ ସାହିତ୍ୟର ନାଟକ ସମୂହର ଅନୁବାଦ ଆଧୁନିକ ନାଟକ ବିକାଶ ପର୍ଯ୍ୟାୟର ପ୍ରଥମ ସୋପାନ । ଏ ସମ୍ପର୍କରେ ସେକ୍‌ସପିୟରଙ୍କ ଏବଂ ଗୋଲଡ୍-ସ୍ମିଥ୍‌ଙ୍କ ନାଟକର ଅନୁବାଦ ଉଲ୍ଲେଖଯୋଗ୍ୟ । କେରୁର ବାସୁଦେବାଚାର୍ଯ୍ୟ ସେକ୍‌ସ-ପିୟରଙ୍କ ରୋମିଓ ଏବଂ ଜୁଲିଏଟ୍, ମରଚ୍ଚାଣ୍ଟ ଅଫ୍ ଭେନସ୍, ମିଡ ସମର ନାଇଟ୍ ଡ୍ରିମ ଗୋଲ୍‌ଡ଼ସ୍ମିଥଙ୍କ ସି. ଷ୍ଟୁପ୍ସ୍ଟୁ କନ୍‌କ୍ଵର କନ୍ନଡ଼ ଭାଷାରେ ଅନୁବାଦ କରିଥିଲେ । ପୂର୍ବୋକ୍ତ "ନଳ ଦମୟନ୍ତୀ" ପୌରାଣିକ ନାଟକ ବ୍ୟତୀତ ତାଙ୍କର "ପତିବଶୀ କରଣ" ଏକ ଶ୍ରେଷ୍ଠ ନାଟକ । ତେଲୁଗୁ ସାହିତ୍ୟର ଆଧୁନିକ ପ୍ରଥମ ନାଟ୍ୟକାର ଡ. କୃଷ୍ଣମାଚାର୍ଲୁ କହିଥିଲେ ଯେ, ନାଟକ ରଚନା ପାଇଁ କନ୍ନଡ଼ ଭାଷାହିଁ ସମର୍ଥ । ମହୀଶୂର ଏବଂ ଧରୱାରର ଥିଏଟର ଦଳର ଅଭିନୟ ଦେଖି ସେ କନ୍ନଡ଼ ଭାଷାରେ ନାଟକ ରଚନା କରିଥିଲେ ।

ଇବ୍‌ସନ୍ ପ୍ରଭୃତି ପାଶ୍ଚାତ୍ୟ ନାଟ୍ୟକାରଙ୍କର ରଚନା ଶୈଳୀ ଏବଂ ଆଦର୍ଶବାଦ ଆଧୁନିକ କନ୍ନଡ଼ ନାଟ୍ୟକାରଙ୍କୁ ପ୍ରଭାବିତ କରିଥିବାର ମନେହୁଏ । ମହାରାଷ୍ଟ୍ରରୁ କଲେଜ ଶିକ୍ଷା ପ୍ରାପ୍ତ ହୁୟଲଗୋଲ୍ ନାରାୟଣ ରାଓ 'ସ୍ତ୍ରୀଧର୍ମ ରହସ୍ୟ' ଶୀର୍ଷକ ଏକ ସାମାଜିକ ନାଟକ ରଚନା କରିଥିଲେ । ଆଧୁନିକ ଉଚ୍ଚଶିକ୍ଷିତା ତରୁଣୀ-ମାନଙ୍କ ସମସ୍ୟା ଏହି ନାଟକର ଉପଜୀବ୍ୟ ପ୍ରସଙ୍ଗ । ଏକ ମୌଳିକ ନାଟକ ଭାବରେ ଏହା ସୃଷ୍ଟିତ ହୋଇଥିଲା ।

ଶିବରାମ କରନ୍ତ ଉପନ୍ୟାସ କ୍ଷେତ୍ରରେ ସଫଳତା ଅର୍ଜନ କରିଥିଲେ ମଧ୍ୟ ନାଟକ ବିଭାଗରେ ତାଙ୍କର ପ୍ରତିଭା ତଥା ଅଧିବସାୟ ସୁସ୍ପଷ୍ଟ । ଖଦୀ ବିକି କରିବାଠାରୁ ଶିଶୁମାନଙ୍କ ପାଇଁ ଜ୍ଞାନକୋଷ ସଂପାଦନ କରିବା ପର୍ଯ୍ୟନ୍ତ ବିଶେଷତଃ କନ୍ନଡ଼ ଭାଷାଭାଷୀ ଅଞ୍ଚଳରେ ଲୋକନାଟ୍ୟକୁ ଜନପ୍ରିୟ କରିବାରେ ତାଙ୍କର

ସ୍ଥାନ ସ୍ମରଣୀୟ । ବାସ୍ତବବାଦୀ ଦୃଷ୍ଟିକୋଣ ଯୋଗୁଁ ତାଙ୍କର ନାଟ୍ୟ ରଚନା ଅପେରା ଠାରୁ ସ୍ୱତନ୍ତ୍ର । ଜୀବନ ସଂଗ୍ରାମରେ ସେ ବିଭିନ୍ନ କ୍ଷେତ୍ରରେ ଅବତୀର୍ଣ୍ଣ ହୋଇଛନ୍ତି । ସେଥିପାଇଁ ସେ ବ୍ୟକ୍ତିଗତ ଉକ୍ତ ଅଭିଜ୍ଞତାରୁ ହିଁ ସମାଜକୁ ବ୍ୟଙ୍ଗ ବିଦ୍ରୂପ କରିପାରିଛନ୍ତି । ତାଙ୍କର "ବିଟ୍ଟିଡା ବେଲେ" (Bittida Bele) ନାଟକରେ ଇବସନ୍‌ଙ୍କ ନାଟକର ପରିବେଶ ତଥା ଚରିତ୍ର ଚିତ୍ରଣ ପରି-ଲକ୍ଷିତ । ଆଧୁନିକ ଯୁଗରେ ଟି. ପି. କୈଲାସମ୍ କର୍ଣ୍ଣାଟକ ଦେଶରେ ନୂତନ ନାଟ୍ୟ ଆନ୍ଦୋଳନର ଭିତ୍ତି ସ୍ଥାପନ କରିଥିଲେ । ସେଥିପାଇଁ ତାଙ୍କୁ କନ୍ନଡ଼ ନାଟ୍ୟ ସାହିତ୍ୟରେ ଇବସନ୍ ଆଖ୍ୟା ଦିଆଯାଇଥାଏ । ଯଥାର୍ଥତଃ କୈଲାସମ୍ ଏକ ଯୁଗ ସଂସ୍କାରକ ସଦୃଶ ତାଙ୍କ ନାଟକ ମାଧ୍ୟମରେ ପ୍ରତିକ୍ରିୟାଶୀଳ ଶକ୍ତିମାନଙ୍କ ବିରୋଧରେ ଅସ୍ତ୍ର ଉତ୍ତୋଳନ କରିଥିଲେ । ତାଙ୍କ ନାଟକମାନଙ୍କରେ ବିଭିନ୍ନ ରସର ସମନ୍ୱୟ ଦେଖାଯାଏ । ପ୍ରାୟ ୧୫ଖଣ୍ଡ ନାଟକର ପ୍ରଣେତା । ଶଙ୍କରାବାଚାର୍ଯ୍ୟ ହେଉଛନ୍ତି କର୍ଣ୍ଣାଟକର "ନାଟକ ପରମ ଗୁରୁ" । ଚୋରିମୁଖୀ ଶେଷ ଗିରିରାଓ ୧୮୭୧ ମସିହାରେ କନ୍ନଡ଼ ଭାଷାରେ "ଶକୁନ୍ତଳା" ଅନୁବାଦ କରିଥିବାର ଜଣାଯାଏ । ୧୮୮୫ ସୁଦ୍ଧା କର୍ଣ୍ଣାଟକରେ ପେଶାଦାର ରଙ୍ଗମଞ୍ଚ ସ୍ଥାପିତ ହୋଇଥିଲା ।

କନ୍ନଡ଼ ଭାଷାରେ ଆଉ ଜଣେ ଉଲ୍ଲେଖଯୋଗ୍ୟ ନାଟ୍ୟକାର ହେଉଛନ୍ତି ଆର୍. ଭି. ଜାଗିରଦାର ।

ତାଙ୍କର ଛଦ୍ମନାମ ହେଉଛି "ଶ୍ରୀରଙ୍ଗ" । ପ୍ରାବନ୍ଧିକ, କବି ସମୀକ୍ଷକ ଏବଂ ଔପନ୍ୟାସିକ ରୂପେ ତାଙ୍କର ଖ୍ୟାତି କମ୍ ନୁହେଁ । ତଥାପି ସେ ଜଣେ ପ୍ରତିଷ୍ଠିତ ନାଟ୍ୟକାର । ତାଙ୍କର ରଚିତ ନାଟକ ସମୂହର କଥାବସ୍ତୁ ମୁଖ୍ୟତଃ ପୁରାଣଶ୍ରୟୀ । ସେଥିରେ ମାତ୍ର ଆଧୁନିକ ସମାଜର ଏବଂ ମଧ୍ୟବିତ୍ତ ଶ୍ରେଣୀର ନଗ୍ନଚିତ୍ରହିଁ ପ୍ରତି-ଫଳିତ । ବେକାର ସମସ୍ୟା ଶିକ୍ଷିତ ଶ୍ରେଣୀର ପ୍ରତାରଣା, ଛଳନା ଉପର ସ୍ତରରେ ଦୁର୍ନୀତିହିଁ ତାଙ୍କ ନାଟକମାନଙ୍କରେ ଶରବ୍ୟ । ଆଧୁନିକ ସମାଜର ବ୍ୟଙ୍ଗାତ୍ମକ ପ୍ରତିଛବି ହେଉଛି ତାଙ୍କର ବହୁ ପ୍ରଶଂସିତ ନାଟକ "ଦରିଦ୍ର ନାରାୟଣ" ଏବଂ "ବୈଦ୍ୟରାଜା" ଉଭୟ ପୂର୍ଣ୍ଣାଙ୍ଗ ନାଟକ ଏବଂ ଏକାଙ୍କିକା କ୍ଷେତ୍ରରେ ତାଙ୍କର ସ୍ୱୀକୃତି ସର୍ବ-ସ୍ୱୀକୃତ । ପର୍ବତବାଣୀ, କୈବାର, ରାଜାରାଓ, କ୍ଷୀରସାଗର ଏନ୍. କେ. କୁଲକର୍ଣ୍ଣୀ) ପ୍ରଭୃତି ହାସ୍ୟରସାତ୍ମକ ନାଟକ ଲେଖିଛନ୍ତି । ଏ. ଏସ୍. ମୂର୍ତ୍ତିଙ୍କ ରଚନାରେ ସାଧାରଣତଃ ଗଭୀର ଦର୍ଶନ ସୂଚିତ ପି. ଟି. ନରସିଂହାଚାର୍ଯ୍ୟଙ୍କ ଗୀତନାଟ୍ୟ "ଅହଲ୍ୟା" ଉଚ୍ଚକୋଟିର ରଚନା । ଏମ୍. ଗୋବିନ୍ଦ ପାଇ କାବ୍ୟ-ଧର୍ମୀ ନାଟକ ରଚନା କରିଛନ୍ତି । ଏମାନଙ୍କ ବ୍ୟତୀତ ଶ୍ରୀନିବାସ, କେ. ଟି. ପୁରାଣିକ ଆର୍. ଏସ୍. ମୁଗଲୀ, ଡ. ଆର ବେଣ୍ଡ୍ରେ, ଏଲ୍. ଜେ ବେଣ୍ଡ୍ରେ, ପୋଳର କୃଷ୍ଣରାଓ ପ୍ରମୁଖ ନାଟ୍ୟକାରଙ୍କ ଯୋଗୁ କନ୍ନଡ଼ ନାଟ୍ୟ ସାହିତ୍ୟର ସାଂପ୍ରତିକ କାଳରେ ଉନ୍ନତି ସାଧିତ ହୋଇଅଛି ।

ଭୃକାସ୍ୱମ, କବର, ଶରଣବାସବ ପ୍ରଭୃତ ଭକ୍ତମାନଙ୍କ ଜୀବନୀ ରଙ୍ଗମଞ୍ଚରେ ଅଭିନୀତ ହୋଇଥିଲା । ଟିପୁ ସୁଲତାନ, ନାରଗୁଣ୍ଡ, ବାବା ସାହେବ ସଦୃଶ ଐତିହାସିକ ନାଟକ ମଧ୍ୟ କନ୍ନଡ଼ ସାହିତ୍ୟରେ ବେଶ୍ ପ୍ରଚଳିତ । ବର୍ତ୍ତମାନ ଯୁଗରେ ଉଚ୍ଚକୋଟିର ସାମାଜିକ ନାଟକହିଁ କନ୍ନଡ଼ ନାଟ୍ୟ ସାହିତ୍ୟର ଗୌରବ ହୋଇଛି । "ପଶ୍ଚାତାପ" ଓ "ସତ୍ୟସଂକଳ୍ପ" ଇତିହାସର ପୃଷ୍ଠଭୂମିରେ ରଚିତ ହେଲେହେଁ ତାହା ସାମାଜିକ । ତେଣୁ ତାହାର ସାମାଜିକ ପ୍ରଭାବ ଅତ୍ୟଧିକ । ଏକାଧିକ ପେଶାଦାର ରଙ୍ଗମଞ୍ଚ ପ୍ରତିଷ୍ଠା ଉଚ୍ଚକୋଟିର ନାଟକ ରଚନା ପାଇଁ ସହାୟକ ହୋଇପାରିଛି । ସମ୍ସାଙ୍କର ସେକ୍ସପିଅରଧର୍ମୀ ଐତିହାସିକ ନାଟକାବଳୀ କୀର୍ତ୍ତିନାଥ କୁରକଟି ଏବଂ ପି. ଟି. ନରସିଂହାଚାର୍ଯ୍ୟଙ୍କର ଅପେରା ଏହି ପ୍ରସଙ୍ଗରେ ଉଲ୍ଲେଖଯୋଗ୍ୟ । "ଶିକ୍ଷଣା ସମ୍ଭ୍ରମ" ଓ "ସଂସାର ନୌକା" ଉଚ୍ଚଧରଣର ସାମାଜିକ ନାଟକ ।

'ଶ୍ରୀରଙ୍ଗ' ଯେପରି ଆଧୁନିକ କନ୍ନଡ଼ ନାଟ୍ୟ ସାହିତ୍ୟରେ ନୂତନ ଆଙ୍ଗିକ ପ୍ରବର୍ତ୍ତନ କରିପାରିଛନ୍ତି । ତାଙ୍କ ନାଟକରେ ନୂତନ କଳ୍ପନା ଏବଂ ନୂତନ ଚିନ୍ତା ପ୍ରତିଫଳିତ ଯଥା—ତାଙ୍କର କୃତ କଟାଲି—ବେଲାକୁ, କେଲୁ ଜନ୍ମେଜୟରେ ଜୀବନ ଓ ସମାଜର ବାସ୍ତବ ଚିତ୍ର ଦେଖିବାକୁ ମିଳେ । ଗିରିଶ କର୍ଣ୍ଣାଡଙ୍କ ଲିଖିତ ନାଟକ ସମୂହରେ ବ୍ୟକ୍ତିର ଜୀବନ ସଂଗ୍ରାମ ଦେଖିବାକୁ ମିଳେ । ତାଙ୍କର ଯଯାତି, ଏବଂ ତୁଗଲକ୍ ନାଟକ ପ୍ରଶଂସିତ । ତରୁଣ ନାଟ୍ୟକାର ଲଙ୍କେଶ ଓ ତେଜସ୍ୱୀ ଆଧୁନିକ ଜୀବନର କରୁଣ ଚିତ୍ର ଅଙ୍କନ କରି ପାରିଛନ୍ତି । ଶିବ ସ୍ୱାମୀ, ନିରଂଜନ, ଚଦୁରଙ୍ଗ ପ୍ରଭୃତି ଲେଖକମାନେ କନ୍ନଡ଼ ନାଟକ ଓ ଏକାଙ୍କିକା ରଚନାରେ ବୈପ୍ଳବିକ ଦୃଷ୍ଟି ପ୍ରଦର୍ଶନ କରିଛନ୍ତି ।

**ସମାଲୋଚନା ଜୀବନୀ ଓ ରମ୍ୟ ରଚନା—**

ଡକ୍ଟର ଆର୍. ଏସ୍. ମୁଗଲିଙ୍କ ଲିଖିତ କନ୍ନଡ଼ ସାହିତ୍ୟର ଇତିହାସ ପରେ ୧୯୫୦ ମସିହାରେ କେ. ଡି. କୁର୍ତ୍ତା କୋଡିଙ୍କର ଆଧୁନିକ କନ୍ନଡ଼ ସାହିତ୍ୟର ସମୀକ୍ଷାତ୍ମକ ଇତିହାସ ପ୍ରକାଶନ ଏକ ପ୍ରଧାନ ଘଟଣା । ୧୯୬୦ ମସିହା ପରେ କନ୍ନଡ଼ ସାହିତ୍ୟରେ ବହୁ ପତ୍ର ପତ୍ରିକା ପ୍ରକାଶନ ମଧ୍ୟ ଉନ୍ନତର ପରିଚାୟକ । ସେ ମଧ୍ୟରେ "ସାକ୍ଷୀ" (ଆଡିଗାଙ୍କର ସଂପାଦିତ) "ମନ୍ୱନ୍ତର" ଲହରୀ, କବିତା, ସଂକ୍ରମଣ ସମୀକ୍ଷା ପ୍ରଧାନ ।

ଆଧୁନିକ କନ୍ନଡ଼ ସାହିତ୍ୟରେ ଜୀବନୀ, ଶିଶୁ ସାହିତ୍ୟ ଗବେଷଣା ସମାଲୋଚନା ପ୍ରବନ୍ଧ ସାହିତ୍ୟ କିମ୍ବା ବ୍ୟକ୍ତିନିଷ୍ଠ ନିବନ୍ଧ ସାହିତ୍ୟର ଅଭାବ ନାହିଁ । ଡି. ଭି. ଗୁପ୍ତାପାଙ୍କର ଲିଖିତ ସମାଲୋଚନା ବିଭିନ୍ନ ପ୍ରବନ୍ଧ କନ୍ନଡ଼ ଗଦ୍ୟ ସାହିତ୍ୟର ଶ୍ରୀ ବୃଦ୍ଧି ସାଧନ କରିଅଛି । ଭି. କେ. ଗୋକକଙ୍କର ବଳିଷ୍ଠ ସମାଲୋଚନା ଓ ସାହିତ୍ୟିକ ସମୀକ୍ଷା ମଧ୍ୟ ଏଠାରେ ଉଲ୍ଲେଖ ଯୋଗ୍ୟ । ଶିବରାମ କାରନ୍ତ ଶ୍ରୀରଙ୍ଗା, ଏନ୍ କସ୍ତୁରୀ; ଏ. ଏନ୍. ମୂର୍ତ୍ତିରାଓ ମଧ୍ୟ ସମାଲୋଚନା ସାହିତ୍ୟର ପୁଷ୍ଟି ସାଧନ କରିଛନ୍ତି । ମାସ୍ତିଙ୍କର "କବି ବାଲ୍ମୀକୀ" ମଧ୍ୟ ଏହି ଶ୍ରେଣୀର ଅନ୍ତର୍ଗତ ।

ଇଂରେଜ ସାହିତ୍ୟରୁ ବହୁ ଗ୍ରନ୍ଥ କନ୍ନଡ଼ ଭାଷାରେ ଅନୁବାଦ କରାଯାଇଛି । ବଙ୍ଗଳାର ବଙ୍କିମ ଚନ୍ଦ୍ର ଏବଂ ଶରତଚନ୍ଦ୍ରଙ୍କର ଉପନ୍ୟାସ ସମୂହ କନ୍ନଡ଼ ଭାଷାରେ ଅନୂଦିତ ହୋଇଅଛି । ଶ୍ରୀମତୀ ଏଚ୍. ଭି. ସବିତାମା ବହୁ ବିଦେଶୀ ଗଳ୍ପ କନ୍ନଡ଼ ଭାଷାରେ ରୂପାୟିତ କରିଛନ୍ତି । ତାଙ୍କର ଶଶୀରେଖା, ନୀଳନେତ୍ରୀ ଏଠାରେ ଉଲ୍ଲେଖଯୋଗ୍ୟ । ଶ୍ରୀ ଆନନ୍ଦ, ଶ୍ରୀ ଈଶ୍ୱର ଭଟ୍ଟ ଅନୁବାଦ ସୂତ୍ରରେ କନ୍ନଡ଼ ସାହିତ୍ୟକୁ ସମୃଦ୍ଧ କରିଛନ୍ତି ।

ଉଚ୍ଚକୋଟିର ଜୀବନୀ ରଚନା ଆଧୁନିକ କନ୍ନଡ଼ ସାହିତ୍ୟର ଏକ ବିଶିଷ୍ଟ ମାସ୍ତିଙ୍କର ରାମକୃଷ୍ଣ ଓ ରବୀନ୍ଦ୍ରନାଥଙ୍କର ଜୀବନୀ ମୁଖ୍ୟ ପାଠ୍ୟ ରଚନା । ପି. କେ. ଭେଙ୍କଟରାମ ୟାଙ୍କର "ମହାକବି କାଳିଦାସ" "ପୁରାତନ ପର୍ଯ୍ୟାୟ୍ଣ । ଚରିତମ୍" ଦୁଇଗୋଟି ଉପାଦେୟ ଗ୍ରନ୍ଥ । ପ୍ରଥମଟିରେ କାଳିଦାସଙ୍କର ବିସ୍ତୃତ ପରିଚୟ, ଦ୍ୱିତୀୟରେ ୭୩ ଜଣ ଶୈବ ସନ୍ଥମାନଙ୍କର ଜୀବନୀ ପ୍ରଦତ୍ତ । ଏସ ବାହୁରାଓଙ୍କର ଇଂରେଜୀ ନାଟ୍ୟକାର ସେକସ୍‌ପିଅରଙ୍କର ଜୀବନୀ, ନଡୋର ଶ୍ରୀ ନିବାସ ରାଓଙ୍କର ଗାନ୍ଧିଜୀଙ୍କ ଆତ୍ମ କଥାର ଅନୁବାଦ, ଗୁଣ୍ଡାପାଙ୍କ ଲିଖିତ ଗୋଖଲ ଜାଗରଦାରଙ୍କର କାମଲ ପାଶା, ପୁଟାପ୍‌ପାଙ୍କର ବିବେକାନନ୍ଦ କୃଷ୍ଣ ରାଓଙ୍କର ମାକସିମ୍ ଗର୍କି ଉଲ୍ଲେଖଯୋଗ୍ୟ କୃତି । ପ୍ରାଚୀନ ପୁରାଣ ଉପନିଷଦରୁ ବହୁ ଜୀବନୀ ସଂଗୃହୀତ ଏବଂ ଲିଖିତ ହେଉଅଛି ।

ଏନ୍. ଏନ୍ ମୂର୍ତ୍ତିରାଓ ରମ୍ୟରଚନା ଲେଖକ ଭାବରେ ପ୍ରତିଷ୍ଠିତ । ତାଙ୍କର "ଦିବାସ୍ୱପ୍ନ", ଏହି ଜାତୀୟ ରଚନା । କୈଲାସମ ଶ୍ରୀରଙ୍ଗ ଏବଂ ଗୋକକ୍ ପ୍ରଭୃତି ଲେଖକ ରମ୍ୟ ରଚନାର ଶ୍ରୀବୃଦ୍ଧି ସାଧନ କରିଛନ୍ତି ।

୧୯୧୫ ମସିହାରେ ପ୍ରତିଷ୍ଠିତ କର୍ଣ୍ଣାଟକ ସାହିତ୍ୟ ପରିଷଦ ପୁରାତନ ପୋଥି ସଂଗ୍ରହ କରି ପ୍ରକାଶ କରୁଛନ୍ତି । କର୍ଣ୍ଣାଟକର ସାଂସ୍କୃତିକ ଇତିହାସ ସଂଗ୍ରହ ଓ ପ୍ରକାଶନ ଏହାର ମଧ୍ୟ ଲକ୍ଷ୍ୟ ।

କର୍ଣ୍ଣାଟକ ସଂଗୀତର ମାଧୁରୀ ତଥା ମୂର୍ଚ୍ଛନା ତାର ସାହିତ୍ୟରେ ନିଶ୍ଚୟ ପ୍ରତିଫଳିତ ହେବା ସ୍ୱାଭାବିକ । ପ୍ରାଚୀନ କନ୍ନଡ଼ କାବ୍ୟ କବିତା ଥିଲା ସଂଗୀତ ପ୍ରଧାନ ଓ ଧ୍ୱନି ପ୍ରଧାନ । ଆଧୁନିକ ଯୁଗରେ କନ୍ନଡ଼ କାବ୍ୟ କବିତାରେ ଗୋଟିଏ ବିଶେଷ ପରିବର୍ତ୍ତନ ଘଟିଥିଲା । ତାହା ହେଉଛି ତାହାର ବହିଃ ରଙ୍ଗର ରୂପାନ୍ତର । ତଥାପି ସଂଗୀତ ଧ୍ୱନିକୁ କନ୍ନଡ଼ କବିତା ପୁରାପୁରି ଛାଡ଼ିପାରି ନାହିଁ । କନ୍ନଡ଼ ସାହିତ୍ୟର ଘଟ ପରିବର୍ତ୍ତନର ପ୍ରଧାନ ହେତୁ ହେଉଛି ବିଂଶ ଶତାବ୍ଦୀର ପ୍ରଥମ ସୋପାନରେ ସଂଘଟିତ ଜାତୀୟ କଂଗ୍ରେସ ଆନ୍ଦୋଳନ । ସାଂପ୍ରତିକ ଉପନ୍ୟାସ ନାଟକ କାବ୍ୟ କବିତା ପ୍ରଭୃତିରେ ଦେଶର ଜାତୀୟ ଆନ୍ଦୋଳନ ବିଶେଷତଃ ସ୍ୱାଧୀନୋତ୍ତର ଭାରତର ଚିତ୍ର ନିପୁଣ ଭାବରେ ପ୍ରତିଫଳିତ ହେଉଅଛି ।

# ତେଲୁଗୁ

ତେଲୁଗୁ ଶବ୍ଦ ତ୍ରିଲିଙ୍ଗ, ତ୍ରିକଲିଙ୍ଗରୁ ଉତ୍ପତ୍ତି ଲାଭ କରିଥିଲା ବୋଲି କେହି କେହି ଭାଷାତତ୍ତ୍ୱବିତ୍ ଅନୁମାନ କରନ୍ତି, ତେଲୁଗୁ ଶବ୍ଦ, ତେଲେ+ଅଗୁ ଅର୍ଥାତ ମଧୁ ପରି ମିଷ୍ଟ । କେହି କେହି ତେନ୍+ଗୁ, ଅର୍ଥାତ୍ ଦକ୍ଷିଣର ଭାଷା ବୋଲି ତାହାକୁ ଅଭିହିତ କରିଥାନ୍ତି । ଯାହା ହେଉ ତେଲୁଗୁ ପ୍ରଭୃତି ବିଭିନ୍ନ ପ୍ରାଚୀନ ଶବ୍ଦ ପୂର୍ବକାଳରେ ରାଜନୈତିକ ଆନ୍ଧ୍ର ପ୍ରଦେଶର ପ୍ରଚଳିତ କଥିତ ଭାଷାକୁ ଏବଂ ରାଜ୍ୟ ସୀମାକୁ ବୁଝାଇବା ପାଇଁ ବ୍ୟବହୃତ ହେଉଥିଲା । ଆନ୍ଧ୍ର ଦେଶର ଅଧିବାସୀ-ମାନଙ୍କୁ ତେଲେଙ୍ଗା ଏବଂ ସେମାନଙ୍କର ଭାଷା ତେଲୁଗୁ ବୋଲି ନାମିତ କରାଯାଇ ଥାଏ । ଏହି ସାହିତ୍ୟର ଆଦିକବିଗଣ ଯଥା ନାନ୍ନାୟା ଏବଂ ନାନେଚୋଡୁ ସେମାନଙ୍କର ରଚନାରେ ତେଲୁଗୁ ଏବଂ ତେନ୍‌ଗୁ ଶବ୍ଦ ବ୍ୟବହାର କରିଥିବାର ପ୍ରମାଣ ମିଳିଥାଏ । 'ଲ' ବର୍ଣ୍ଣ 'ନ' ବର୍ଣ୍ଣରେ ପରିଣତ ହେବା ଅର୍ଥାତ୍ ତେଲୁଗୁ ତେନ୍‌ଗୁରେ ରୂପାନ୍ତରିତ ହେବା କିଛି ଅସମ୍ଭବ ନୁହେଁ । ଆନ୍ଧ୍ର ଦେଶର ଭାଷା ସାହିତ୍ୟ ସଂସ୍କୃତି ପରମ୍ପରା ଅତି ପ୍ରାଚୀନ । ଆର୍ଯ୍ୟମାନେ ଭାରତକୁ ଆସିବା ପୂର୍ବରୁ ଦ୍ରାବିଡ଼ମାନେ ସେମାନଙ୍କ ଆନ୍ଧ୍ର ରାଜ୍ୟ ସ୍ଥାପନ କରିଥିଲେ ବୋଲି ଜଣାଯାଏ । ସପ୍ତମ ଶତାବ୍ଦୀରେ ହୁଏନ୍‌ସାଂ ଭାରତକୁ ପର୍ଯ୍ୟଟନରେ ଆସିଥିବା ବେଳେ ଆନ୍ଧ୍ର ଦେଶର ତେଲୁଗୁ ଭାଷାର ପ୍ରଚଳନ ଥିଲା ବୋଲି ଉଲ୍ଲେଖ କରିଥିଲେ । ଏଥିରୁ ସହଜରେ ଅନୁମାନ କରାଯାଇପାରେ ସେ ସପ୍ତମ ଶତାବ୍ଦୀ ପୂର୍ବରୁ ମଧ ତେଲୁଗୁ ଭାଷାର ଅସ୍ତିତ୍ୱ ଥିଲା । ଅବଶ୍ୟ ଏହି ସମୟର କୌଣସି ଲିଖିତ ସାହିତ୍ୟ ପରିଦୃଷ୍ଟ ହୁଏ ନାହିଁ । ଏକାଦଶ ଶତାବ୍ଦୀର ଆଦି କବି ନାନ୍ନାୟା ଭଟ୍ଟଙ୍କ ପୂର୍ବରୁ ସେହି ଭାଷାରେ କୌଣସି ସାହିତ୍ୟିକ କୃତି ଥିବାର ଜଣାଯାଏ ନାହିଁ । ତେଲୁଗୁ ଲିପି ବ୍ରାହ୍ମୀ ଲିପିରୁ ଉତ୍ପନ୍ନ । ନିଜର ମଧୁର ସଂଗୀତମୟତ୍ୱ ଓ ଲଳିତ ମୂର୍ଚ୍ଛନା ତଥା କୋମଳତା ଯୋଗୁ ତେଲୁଗୁ ଭାଷାକୁ ପ୍ରାଚ୍ୟ ଖଣ୍ଡର ଇଟାଲୀୟ ଭାଷାବୋଲି ଅଭିହିତ କରାଯାଇଥାଏ । ଷଷ୍ଠ ଶତାବ୍ଦୀ ପୂର୍ବରୁ ତେଲୁଗୁ ଭାଷା ପ୍ରଚଳିତ ଥିଲା ଏବଂ ତାହାର ନାମ ସେତେବେଳେ ଥିଲା "ଦେଶଭାଷା" । ବୃହତ୍‌କଥାର ପ୍ରଣେତା ଗୁଣାଢ୍ୟ ଏହି ଦେଶ ଭାଷାର ସୂଚନା ଦେଇଥିଲେ ।

କୃଷ୍ଣା ଗୋଦାବରୀ ତୁଙ୍ଗଭଦ୍ରା ପ୍ରବାହିତ ଏହି ପ୍ରାଚୀନ ରାଜ୍ୟ ଅପୂର୍ବ ପ୍ରାକୃତିକ ସୌନ୍ଦର୍ଯ୍ୟରେ ପରିପୂର୍ଣ୍ଣ । ଆକାଶ ଚୁମ୍ବୀ ତାଳ ନାରିକେଳ ବୃକ୍ଷ ଶ୍ରେଣୀ ସ୍ନିଗ୍ଧ ଛାୟା ଘେରି ଦିଗନ୍ତ ଲମ୍ବୀ ସହକାର ବୀଥିକା ନୀଳସମୁଦ୍ରର ଲହରୀ ଧୌତ ପ୍ରାକୃତିକ ଶୋଭାଶ୍ରୟ, ଝାଉଁବଣ ମର୍ମର ମୁଖରିତ ବେଳାଭୂମି, ଆନ୍ଧ୍ର ରାଜ୍ୟର ଦର୍ଶକ-ମାନଙ୍କ ମନରେ ସତେ କି ଆକର୍ଷଣ ସୃଷ୍ଟି କରେ । ସେହି ପୁଣ୍ୟ ଶ୍ଳୋକ ଗୋଦାବରୀ,

କୃଷ୍ଣା ନଦୀର ଉର୍ବର ଅବବାହିକା ଆନ୍ଧ୍ର କୃଷିକାରମାନଙ୍କ ପକ୍ଷେ କପରି ଲୋଭନୀୟ ଦିଗନ୍ତ ବିସ୍ତୃତ ପୂର୍ବ କୂଳରେ କଣ୍ଟା ବାବୁଲ ଗଛମାନଙ୍କର ଦୃଶ୍ୟ କମ୍ ଚମତ୍କାର ନୁହେଁ ।

ଆନ୍ଧ୍ର ତରୁଣୀର ମନଲୋଭି ନୃତ୍ୟ ଯୁଗ ଯୁଗ ଧରି ତାର ଅକ୍ଷୁର୍ଣ୍ଣ ସଙ୍ଗୀତ ଚର୍ଚ୍ଚା ବର୍ଷ ବର୍ଷ ଧରି ପୁଣ୍ୟ ମକରସଂକ୍ରାନ୍ତି ଉତ୍ସବର ଆହ୍ୱାନ ଆନ୍ଧ୍ର ଜୀବନ ଧାରାରେ ଅପୂର୍ବ ସଙ୍କେତ । ଶାନ୍ତ ସରଳତା, କର୍ମ ତତ୍ପରତାହିଁ ଆନ୍ଧ୍ରବାସୀଙ୍କର ଚରିତ୍ରର ବୈଶିଷ୍ଟ୍ୟ । ବେଦର ଐତରେୟ ବ୍ରାହ୍ମଣରେ ଆନ୍ଧ୍ରମାନଙ୍କର ନାମୋଲ୍ଲେଖ ଥିବାର ଦେଖାଯାଏ । ଖ୍ରୀ ପୂ. ୨୦୦ରୁ ଅଧିକ ୨୦୦ ଖ୍ରୀ. ପର୍ଯ୍ୟନ୍ତ ସାତ ବାହନ ସମ୍ରାଟମାନେ ସଂସ୍କୃତ ଭାଷାର ପୃଷ୍ଠ ପୋଷକତା କରିଥିଲେ । ୧୯୭୧ ଖ୍ରୀ.ର ଗଣନା ଅନୁଯାୟୀ ଏହି ଆନ୍ଧ୍ର ଦେଶର କ୍ଷେତ୍ରଫଳ ଏବଂ ଲୋକସଂଖ୍ୟା ଯଥାକ୍ରମେ ୧୦·୬୦୫ ବର୍ଗମାଇଲ ଏବଂ ୩·୯ ୭୭୯୯୯ । ପ୍ରାକୃତ ହିଁ ଲୋକମାନଙ୍କର କଥିତ ଭାଷା ଥିଲା । ପୈଶାଚୀ ପ୍ରାକୃତରେ ତେଲୁଗୁଭାଷାର ଉତ୍ପତ୍ତି କହନ୍ତି । ତେଲୁଗୁ ଅର୍ଥାତ ଆନ୍ଧ୍ର ଭାଷାର ବିଶ୍ଳେଷଣ କଲେ ଜଣାଯାଏ ଯେ ଏହାର ଶବ୍ଦସଂପଦ ତିନି ଭାଗରୁ ଦୁଇଭାଗ ତତ୍ସମ ଓ ତଦ୍ ଭବରେ ପରିପୂର୍ଣ୍ଣ । ଅବଶିଷ୍ଟ ଏକ ତୃତୀୟାଂଶ ଦେଶୀୟ ଶବ୍ଦରେ ପୂର୍ଣ୍ଣ ଏବଂ ସେହି ସବୁ ଦେଶୀୟ ଶବ୍ଦମୂଳ ଦ୍ରାବିଡ଼ ଭାଷାଗୋଷ୍ଠୀର ଅନ୍ତର୍ଭୁକ୍ତ । ଆନ୍ଧ୍ରଙ୍କି ଶିଳାଲିପି (୮୪୮ ଖ୍ରୀଷ୍ଟାବ୍ଦ) ଏହି ଭାଷାରେ ପ୍ରାଚୀନ ଲେଖ । ଆନ୍ଧ୍ର ନାମ ଅଗ୍ନି ମିତ୍ର ଜଣୈକ ପ୍ରାଚୀନ ରାଜାଙ୍କ ନାମରୁ ଉଦ୍ଭୂତ ହୋଇଛି ବୋଲି ବଂଶ ପରଂପରା ସାଦ୍ୟନ୍ତ କରିଥାଏ । ଅଗ୍ନି ମିତ୍ର ସୂର୍ଯ୍ୟଦେବଙ୍କୁ ଯେଉଁ ଭାଷାରେ ପ୍ରାର୍ଥନା କରି ନିଜର ଦୃଷ୍ଟି ଶକ୍ତି ପ୍ରାପ୍ତ ହୋଇଥିଲେ ତାହାର ନାମ ଆନ୍ଧ୍ର । ଆନ୍ଧ୍ର ସେହି ଆନ୍ଧ୍ର ଅଞ୍ଚଳର ଭାଷା ବୋଲି କଥିତ ବା ସ୍ୱୀକୃତ । ମହାଭାରତରେ ମଧ୍ୟ ଉଲ୍ଲେଖ ଅଛି ଯେ, କୌଣସି ରାଜାଙ୍କର ଆନ୍ଧ୍ର ନାମରେ ଜଣୈକ ପୁତ୍ର ଥିଲେ ଯାହାଙ୍କ ନାମାନୁସାରେ ଆନ୍ଧ୍ର ଦେଶର ନାମକରଣ ହୋଇଥିଲା । ଏହି ଦେଶର ଭାଷା ଦ୍ରାବିଡ଼ ଗୋଷ୍ଠୀ ଅନ୍ତର୍ଭୁକ୍ତ । ସାହିତ୍ୟ ଅତି ପ୍ରାଚୀନ ଏବଂ ଦକ୍ଷିଣ ଭାରତର ତାମିଲ କନ୍ନଡ଼ ମାଲୟାଲମ୍ ଭାଷା ସହିତ ଏହାର ସଂପର୍କ ସ୍ପଷ୍ଟ । ବହୁ ପୂର୍ବ କାଳରୁ ତେଲୁଗୁ ଲିପି ଉଦ୍ଭୂତ ହୋଇ ଥିଲା ସତ ମାତ୍ର ଏକାଦଶ ଶତାବ୍ଦୀ ପୂର୍ବରୁ କୌଣସି ଲିଖିତ ସାହିତ୍ୟ ଗ୍ରନ୍ଥର ସନ୍ଧାନ ମିଳି ନାହିଁ । ତେଲୁଗୁ ସାହିତ୍ୟର ବହୁ ପଠିତ ଏବଂ ବିଖ୍ୟାତ ଆଦିକବି ହେଉଛନ୍ତି ନାନ୍ନାୟା ଭଟ୍ଟ । ପ୍ରାୟ ୧୦୨୦ ଖ୍ରୀଷ୍ଟାବ୍ଦରେ ଏହାଙ୍କର ମହା ଭାରତ ରଚିତ ହୋଇ ଥିଲା । ନାନ୍ନାୟାଙ୍କର ମହାଭାରତ ମୂଳ ସଂସ୍କୃତ ମହାଭାରତର ଆକ୍ଷରିକ ଅନୁବାଦ ନୁହେଁ । ବରଂ ତାର ମର୍ମାନୁବାଦ । ପୁଣ୍ୟତୋୟା ଗୋଦାବରୀ ନଦୀ ତଟରେ ପୂର୍ବ ଚାଲୁକ୍ୟ ବଂଶର ସୁବିଦିତ ରାଜ ରାଜ ନରେନ୍ଦ୍ର ଏକାଦଶ ଶତାବ୍ଦୀର (୧୦୨୨—୧୦୬୩) ପ୍ରଥମ ଭାଗରେ ରାଜ ମହେନ୍ଦ୍ରୀଠାରେ ରାଜତ୍ୱ କରୁଥିଲେ । ଏହି

ରାଜବଂଶର ପୃଷ୍ଠପୋଷକତାରେ କବି ନାନାୟ୍ୟାଭଟ୍ଟ ମହାଭାରତ ଅନୁବାଦ କାର୍ଯ୍ୟ ଗ୍ରହଣ କରିଥିଲେ । ସମଗ୍ର ୧୮ଟି ପର୍ବରୁ ସାଢ଼େ ଦୁଇଗୋଟି ପର୍ବ ଏହାଙ୍କ ସମୟରେ ଅନୂଦିତ ହୋଇଥିଲା । ଏହାପରେ ଏରାନ୍ନା ଅରଣ୍ୟ ପର୍ବର ବଳକା ଅଂଶତକ ଶେଷ କରିଥିଲେ ।

## ତେଲୁଗୁ ସାହିତ୍ୟର ବିକାଶ ପର୍ଯ୍ୟାୟ :—




ନାନ୍ନାୟା ଜାତିରେ ବ୍ରାହ୍ମଣ ଓ ଧର୍ମ ଉପାସନାରେ ଶୈବ ଥିଲେ । ସେ ତାଙ୍କର ଏହି ମହତ ସାଧନାରେ ସହପାଠୀ ନାରାୟଣ ଭଟ୍ଟଙ୍କଠାରୁ ସାହାଯ୍ୟ ପାଇଥିଲେ । ନାନ୍ନାୟାଙ୍କର ମହାଭାରତ ରଚନାର ଶବ୍ଦ ବିନ୍ୟାସ ତଥା ଅଭିବ୍ୟକ୍ତିରୁ ଅନୁମାନ କରାଯାଏ ଯେ, ତାଙ୍କ ପୂର୍ବରୁ ତେଲଗୁ ଭାଷାରେ ଅବଶ୍ୟ ସାହିତ୍ୟିକ କୃତିମାନ ରଚିତ ହୋଇଥିବ । ମାତ୍ର ଏ ପର୍ଯ୍ୟନ୍ତ ସେ ଅନ୍ଧକାର ଯୁଗ ଆବିଷ୍କୃତ ହୋଇନାହିଁ । ନାନ୍ନାୟାଙ୍କର ମହାଭାରତରେ ଅନେକ ଛନ୍ଦ ବ୍ୟବହୃତ ହୋଇଛି, ଯାହାକି ସଂସ୍କୃତ ମହାଭାରତରେ ଦେଖାଯାଏ ନାହିଁ । ମାର୍ଗୀ ନାମରେ ବହୁ ଗ୍ରାମ୍ୟ

ଲୋକଗୀତ ଏବଂ ଲୋକକଥା ତେଲୁଗୁ ସାହିତ୍ୟର ପ୍ରାଚୀନତା ପ୍ରମାଣ କରିଥାଏ । ନାନ୍ନାୟାଙ୍କର ପୂର୍ବ ସମୟର କେତେକ ରଚନା ଧର୍ମଭାବ ପ୍ରଣୋଦିତ । ତେଲୁଗୁ ସାହିତ୍ୟରେ ନାନ୍ନାୟାଙ୍କ ମହାଭାରତର ସ୍ଥାନ ଅତି ଉଚ୍ଚରେ । ସେହି ସାହିତ୍ୟର ସମଗ୍ର ଇତିହାସକୁ ଗୋଟିଏ ବିଶିଷ୍ଟ ପର୍ଯ୍ୟାୟରେ ବିଭକ୍ତ କରାଯାଇ ପାରେ । ଯଥା—କାବ୍ୟ, ପ୍ରବନ୍ଧ କାବ୍ୟ ଏବଂ ଆଧୁନିକ ଯୁଗ । କେହି କେହି ସାହିତ୍ୟିକ ଏହି ଚାରିଯୁଗର ନାମକରଣ ଯଥା—(୧) ପୂର୍ବ ଆଦିଯୁଗ, (୨) କାବ୍ୟ ଯୁଗ, (୩) ପ୍ରାଗ୍ ଆଧୁନିକ ଯୁଗ (୪) ଆଧୁନିକ ଯୁଗ ବୋଲି ନିର୍ଦ୍ଦିଷ୍ଟ କରିଥାନ୍ତି ।

ପ୍ରାଚୀନ ଅର୍ଥାତ୍ ପୂର୍ବ ଆଦ୍ୟ ଯୁଗ ଖ୍ରୀ: ୧୦୨୦ରୁ ଖ୍ରୀ: ପୂ: ୧୫୦୦ ପର୍ଯ୍ୟନ୍ତ ବ୍ୟାପ୍ତ, ଦ୍ୱିତୀୟ ଯୁଗ ଖ୍ରୀଷ୍ଟାବ୍ଦ ୧୫୦୦ରୁ ୧୭୫୦ ପର୍ଯ୍ୟନ୍ତ ତୃତୀୟ ଯୁଗ ୧୭୫୦ରୁ ୧୮୫୦ ପର୍ଯ୍ୟନ୍ତ ଏବଂ ଆଧୁନିକ ଯୁଗ ୧୮୫୦ରୁ ୧୯୨୦ ପର୍ଯ୍ୟନ୍ତ ଏବଂ ଅତ୍ୟାଧୁନିକ ଜାତୀୟ ଯୁଗ ୧୯୨୦ରୁ ଅବଧି ବିସ୍ତୃତ । ପୂନଶ୍ଚ ଆଦ୍ୟ ଯୁଗକୁ ଅନୁବାଦ, ଅନୁସରଣ, ଦ୍ୱିତୀୟ ଯୁଗକୁ ପ୍ରବନ୍ଧ, ତୃତୀୟ ଯୁଗକୁ କ୍ଷୟ (ଡିକେଡ଼ାନ୍ସ), ଚତୁର୍ଥ ଯୁଗକୁ ଆଧୁନିକତାର ଅଭ୍ୟୁଦୟ କାଳ ବୋଲି କୁହାଯାଇ ପାରେ । ପ୍ରଥମ ଅନୁବାଦ ଏବଂ ଅନୁସରଣ ଯୁଗର କବିତ୍ରୟ ହେଉଛନ୍ତି ନାନ୍ନାୟା, ତିକାନ୍ନା, ଏରାନ୍ନା । ପ୍ରବନ୍ଧ କାବ୍ୟ ଯୁଗର କବି ଶିରୋମଣି ହେଉଛନ୍ତି କବି ସାର୍ବଭୌମ ଶ୍ରୀନାଥ ଏବଂ ପୋତନା । ପ୍ରବନ୍ଧ ପରବର୍ତ୍ତୀ ଯୁଗର ଅର୍ଥାତ୍ ଅଷ୍ଟ ଦିଗଗଜଙ୍କର ସ୍ୱର୍ଣ୍ଣ ଯୁଗର କବି ହେଲେ ପେଦାନା, ତିମାନା ଓ ସୋରାନା । ଆଧୁନିକ ଯୁଗର ସୂତ୍ରପାତ ହୁଏ କାନ୍ଦୁକୁରି ବୀରେଶଲିଂଗଙ୍କ (୧୮୪୮—୧୯୧୯) ସମୟରୁ ଏବଂ ଅତ୍ୟାଧୁନିକ ଯୁଗ ସାହିତ୍ୟର ବିଭିନ୍ନ ଶାଖା ଯଥା—କବିତା, ଉପନ୍ୟାସ, କ୍ଷୁଦ୍ର ଗଳ୍ପ, ପ୍ରବନ୍ଧ, ନାଟକ, ରମ୍ୟ-ରଚନା ପ୍ରଭୃତିର ବିକାଶ ଦ୍ୱାରା ଚିହ୍ନିତ । ଏହି ନବଜାଗରଣ ପର୍ଯ୍ୟାୟର କର୍ଣ୍ଣଧାର ହେଲେ ଗିଡ଼ୁଗୁ ଭେଙ୍କଟ ରାମ ମୂର୍ତ୍ତି, କୋମା ରାଜୁ ଭେଙ୍କଟ ଲକ୍ଷ୍ମଣ ରାଓ, ଦେଶୋଦ୍ଧାରକ କାଶୀ ନାଥୁନି ।

ନାନ୍ନାୟା ଆଦି ଏବଂ ସଭା ପର୍ବ ପରେ ମହାଭାରତ ଅପୂର୍ଣ୍ଣ କରି ଛାଡ଼ିଯିବାରେ ମଧ୍ୟ ଏକ ଆଶ୍ଚର୍ଯ୍ୟକର ଅନ୍ଧ ବିଶ୍ୱାସ ନିହିତ ଥିଲା । ତେଲୁଗୁ ସାହିତ୍ୟରେ ଏହା ସର୍ବ ପ୍ରଥମ ରଚନା । ତେଲୁଗୁ ଭାଷା ଭାଷୀମାନେ ଏହା ପ୍ରତି ଗଭୀର ଶ୍ରଦ୍ଧା, ଭକ୍ତି ପ୍ରଦର୍ଶ କରିଥାନ୍ତି ।

ମହାଭାରତ ରଚନା ପରେ ନେଲ୍ଲୋ ର ରାଜାଙ୍କ ମନ୍ତ୍ରୀ ତିକାନ୍ନା ତ୍ରୟୋଦଶ ଶତାବ୍ଦୀରେ ମାନୁମାସିଦ୍ଧିଙ୍କ (୧୨୦୦—୧୨୫୮) ପୃଷ୍ଠ ପୋଷକତାରେ ଏକ ନୂତନ ରାଜନୈତିକ ପରିପ୍ରେକ୍ଷୀରେ ପୁନର୍ବାର ବିରାଟ ପର୍ବଠାରୁ ପନ୍ଦର ପର୍ବ ସମ୍ମିଳିତ ମହାଭାରତ ରଚନା ଆରମ୍ଭ କରିଥିଲେ ଏବଂ ୧୪ଶ ଶତାବ୍ଦୀର ଏରାନ୍ନା ହିଁ

ନାନ୍ନାୟାଙ୍କର ଅପୂର୍ଣ୍ଣ ବନପର୍ବ ସମ୍ପୂର୍ଣ୍ଣ କରିଥିଲେ । ତେଣୁ ନାନ୍ନାୟା, ତିକାନ୍ନା ଏବଂ ଏରାନ୍ନା ହେଉଛନ୍ତି ପ୍ରାଚୀନ ତେଲୁଗୁ ସାହିତ୍ୟର ଆଦ୍ୟ ଅନୁବାଦକ ତ୍ରୟ । ନାନ୍ନାୟାଙ୍କର ଭାଷା ସଂସ୍କୃତ ପୀଡ଼ିତ । ମାତ୍ର ତିକାନ୍ନାଙ୍କ ଭାଷା ତେଲୁଗୁ ଶବ୍ଦପୂର୍ଣ୍ଣ । ଦଶକୁମାର ଚରିତର ଲେଖକ କେତନା; ମାର୍କଣ୍ଡେୟ ପୁରାଣ ରଚକ ମାରନ୍ନା, ଦ୍ୱିପଦ ଛନ୍ଦ ପଦ୍ମପୁରାଣ ବର୍ଣ୍ଣିତ ରାମାୟଣର ଲେଖକ ମାଡ଼ିକି ସିଙ୍ଗାନ୍ନା ପ୍ରଭୃତି ବିଶିଷ୍ଟ କବି ।

ତିକାନ୍ନାଙ୍କ ସମୟକୁ ଦେଶରେ ରାଜନୈତିକ, ସାମାଜିକ ପରିବର୍ତ୍ତନ ଘଟିଥିଲା ଏବଂ ପୂର୍ବ ଚାଲୁକ୍ୟ ରାଜ୍ୟ ବିଚ୍ଛିନ୍ନ ହୋଇ ଯାଇଥିଲା । ରାଜ ମହେନ୍ଦ୍ରୀର ପୂର୍ବ ପ୍ରତିଷ୍ଠା ଆଉ ନଥିଲା । ସ୍ଥାନୀୟ ସେନାପତିମାନେ ସ୍ୱାଧୀନତା ଘୋଷଣା କରିଥିଲେ । ଜୈନ ଧର୍ମର ପ୍ରଭାବ ପୂର୍ବରୁ ହ୍ରାସ ପାଇଥିଲା, ଆର ଶୈବ ସମ୍ପ୍ରଦାୟ ବୃଦ୍ଧି ପାଇଥିଲା ଏବଂ ବୈଷ୍ଣବଧର୍ମ ତାର ବିରୋଧରେ ମୁଣ୍ଡ ଟେକି ଉଠୁଥିଲା । ସେଥିପାଇଁ ତିକାନ୍ନା ତାଙ୍କର ମହା ଭାରତକୁ ହରିହରନାଥଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗ କରିଥିଲେ, ନାନ୍ନାୟାଙ୍କର ମହାଭାରତର ଭାଷା ଯେତେବେଳେ ସଂସ୍କୃତ ପ୍ରଧାନ, ସେତେବେଳେ ତିକାନ୍ନାଙ୍କର ମହାଭାରତର ଭାଷା ତେଲୁଗୁ ପ୍ରଧାନ ହୋଇଥିଲା । ନାନ୍ନାୟା ବୈଦିକ ଧର୍ମକୁ ଲୋକପ୍ରିୟ କରିବା ପାଇଁ ଚାହିଁଥିଲେ । ତିକାନ୍ନା ଶୈବ ଓ ବୈଷ୍ଣବମାନଙ୍କ ମଧ୍ୟରେ ସମନ୍ୱୟ ପ୍ରତିଷ୍ଠା କରିଥିଲେ । କନ୍ନଡ଼ ଭାଷାରେ କବି ପମ୍ପାଙ୍କର ଯେଉଁ ଖ୍ୟାତି, ତେଲୁଗୁ ସାହିତ୍ୟରେ ନାନ୍ନାୟାଙ୍କର ଠିକ୍ ସେହି ପ୍ରସିଦ୍ଧି । ଗୁଣ୍ଟୁରଠାରେ ଅବସ୍ଥିତ ସୈନ୍ୟ ବାହିନୀର ତଦାନ୍ତନୀନ ସେନାପତି ଥିଲେ ତାଙ୍କର ପିତା ଏବଂ ଗୁଣ୍ଟୁରର ମନ୍ତ୍ରୀ ଭାସ୍କର ଥିଲେ ତାଙ୍କର ପିତାମହ । ତିକାନ୍ନାଙ୍କ ସମ୍ପର୍କରେ ଦୁଇଗୋଟି ବିବରଣୀ ଲିଖିତ ହୋଇଅଛି, ଯଥା "ପ୍ରତାପ ଚରିତ" ଓ ସୋମଦେବରାଜ୍ୟମ୍" । ତିକାନ୍ନାଙ୍କର ରଚନା, ଯଥା—ବିରାଟ ପର୍ବ ଓ ଉଦ୍‌ଯୋଗପର୍ବ ଯଥାକ୍ରମେ ରୋମାଞ୍ଚକର ଓ ଆରତ୍ୱ ପୂର୍ଣ୍ଣ । ନିଖୁଣ ସମର ଓ ରାଜ୍ୟଶାସନ ବର୍ଣ୍ଣନା ତିକାନ୍ନାଙ୍କର ଅପୂର୍ବ କାବ୍ୟ ଦକ୍ଷତାର ପରିଚୟ ଦେଇଥାଏ ।

ଅତୀବ ଶିବଭକ୍ତ 'ଏରା ପ୍ରାଗଡ଼ା' (ଶମ୍ଭୁଦାସ ନାମରେ ମଧ୍ୟ ପରିଚିତ) ମହାଭାରତ ଓ କାବ୍ୟ ରଚନାରେ ପ୍ରବନ୍ଧ ଶୈଳୀ ଅନୁସରଣ କରିଥିଲେ । ତେଣୁ ସେ "ପ୍ରବନ୍ଧ ପରମେଶ୍ୱର" ନାମରେ ପରିଚିତ । ସେ ତାଙ୍କର ଦୀର୍ଘ ରଚନା "ହରିବଂଶ"କୁ ଆନ୍ଧ୍ର ଦେଶର ଭିନୁକୋଣ୍ଡା ନରପତିଙ୍କୁ ଉତ୍ସର୍ଗ କରିଥିଲେ । ତାଙ୍କ ରଚନାରେ ଉଭୟ ତେଲୁଗୁ ଏବଂ ସଂସ୍କୃତର ପ୍ରୟୋଗ ଦେଖା ଦେଇଥିଲା । ଖ୍ରୀ: ୧୦୭୦ ଏବଂ ଖ୍ରୀ: ୧୩୭୦ ମଧ୍ୟରେ ଉପରୋକ୍ତ ମହାଭାରତ ଅନୁବାଦ କବିତ୍ରୟଙ୍କ

ବ୍ୟତୀତ ଅନ୍ୟାନ୍ୟ ବହୁ କବି ନିଜ ନିଜ ପ୍ରତିଭାର ପରିଚୟ ଦେଇଥିଲେ ଏବଂ ଶିବଭକ୍ତ କବି ନାନେଚୋଡ଼ (୧୧୦୦) ସେମାନଙ୍କ ମଧ୍ୟରେ ଅଗ୍ରଣୀ । କେହି କେହି ଗବେଷକ ନାନେଚୋଡ଼ଙ୍କର ଦ୍ୱାଦଶସର୍ଗ ସମ୍ବଳିତ "କୁମାର ସମ୍ଭବ" ରଚନାକୁ ନାନ୍ନାୟାଙ୍କ ପୂର୍ବର ଲେଖା ବୋଲି ପ୍ରମାଣିତ କରିଥାନ୍ତି । ମାତ୍ର ଏହି ମତକୁ ଅନେକ ଗ୍ରହଣ କରନ୍ତି ନାହିଁ । ତେଲୁଗୁ ସାହିତ୍ୟରେ ଏହା ଏକ ବିବଦମାନ ପ୍ରସଙ୍ଗ । "କୁମାର ସମ୍ଭବ" ପ୍ରବନ୍ଧ ରୀତିରେ ଲିଖିତ ହୋଇଥିଲା । ତେଲୁଗୁରେ ପ୍ରବନ୍ଧ ଅର୍ଥ କାବ୍ୟ । ସେ ଶୈବ ଧର୍ମ ପ୍ରଚାର ପାଇଁ ବ୍ୟାକୁଳ ଥିଲେ ଏବଂ ସେ ତତ୍କାଳୀନ ଶୈବ ସନ୍ନ୍ୟାସୀ ଜଙ୍ଗମମଲ୍ଲିକାର୍ଜୁନ ଦେବଙ୍କର ଶିଷ୍ୟ ଥିଲେ ।

ପକ୍‌ନାଦୁ ଚୋଳ ନରପତିଙ୍କର ନାନେଚୋଡ଼ ପୁତ୍ର ଥିଲେ । ବାଲ୍ମୀକି, ବ୍ୟାସ ଏବଂ କାଳିଦାସଙ୍କର ରଚନାରେ ତାଙ୍କର ପ୍ରଗାଢ଼ ପ୍ରବେଶ ଥିଲା । ନାନେଚୋଡ଼ ନାନ୍ନାୟାଙ୍କ ପୂର୍ବରୁ ଆନ୍ଧ୍ର ଦେଶରେ "ମାର୍ଗ କବିତା" ଏବଂ "ଦେଶୀ କବିତା" ପ୍ରଚଳିତ ଥିବାର ସୂଚନା ଦେଇଥିଲେ । "ପ୍ରବନ୍ଧରୀତିସର୍ବସ୍ୱ କାବ୍ୟର ଲକ୍ଷଣ ହେଉଛି, ରଚନା ଆରମ୍ଭରେ ଉପାସ୍ୟଇଷ୍ଟ ଦେବୀଙ୍କର ସ୍ତୁତି, ଗୁରୁଙ୍କୁ ଆଶୀର୍ବାଦ ଭିକ୍ଷା, ପୂର୍ବତନ ଗୁରୁମାନଙ୍କୁ ଭକ୍ତି ପ୍ରଦର୍ଶନ ଏବଂ ଦେବା ଦେବୀ କିମ୍ବା ଗୁରୁ କିମ୍ବା ପୃଷ୍ଠପୋଷକଙ୍କୁ ରଚନା ଉତ୍ସର୍ଗ କରିବାର ସୂଚନା—ଏହା ବ୍ୟତୀତ ଉଚ୍ଚକୁଳ-ସମ୍ଭୂତ ନାୟିକାମାନଙ୍କ ବର୍ଣ୍ଣିତ ପୌରାଣିକ କିମ୍ବା କିମ୍ବଦନ୍ତୀ ଶୀର୍ଷକ ପୃଷ୍ଠଭୂମି ଦ୍ୱାରା ରଚନାଟି ଚର୍ଚ୍ଚିତ । ଛନ୍ଦ ବୈଚିତ୍ର୍ୟ ମଧ୍ୟ ପ୍ରବନ୍ଧକାବ୍ୟର ଅନ୍ୟତମ ଲକ୍ଷଣ । ଗର୍ଭକବିତା, ବନ୍ଧ କବିତା ଏହାର ଅଙ୍ଗୀଭୂତ ହୋଇପାରେ । ଏହି ସମସ୍ତ ବିଶିଷ୍ଟ ଲକ୍ଷଣ ସମ୍ପନ୍ନ କାବ୍ୟ କବିତା ରଚନା ହିଁ ପ୍ରବନ୍ଧ ନାମରେ ଅଭିହିତ । ଅବଶ୍ୟ ପ୍ରତ୍ୟେକ ପ୍ରବନ୍ଧ କାବ୍ୟରେ ଏହି ଲକ୍ଷଣ ଥାଇ ନ ପାରେ । ପ୍ରତି ପ୍ରବନ୍ଧକାବ୍ୟ ଶେଷରେ ଗଦ୍ୟ ସଂଯୁକ୍ତ ହୋଇଥାଏ ।

ଶୈବ ସଂପ୍ରଦାୟ କବିମାନେ ସେମାନଙ୍କ ରଚନା ଦ୍ୱାରା ଜନ ସମାଜକୁ ବରାବର ପ୍ରଭାବିତ କରିବାପାଇଁ ଚେଷ୍ଟା କରୁଥିଲେ । "ବାସବ ପୁରାଣ" ଓ ପଣ୍ଡିତାରାଧ୍ୟ ଚରିତ୍ର"ର ଲେଖକ ପାଲକୁରୁକି ସୋମନାଥ, "ଶିବତତ୍ତ୍ୱ ସାର" ଲେଖକ ମଲ୍ଲିକାର୍ଜୁନ, ସର୍ବେଶ୍ୱର ଶତକମ୍ ଲେଖକ ଯାଦବକୁଲୁ ଅନାମାୟା ଏହି ଜାତୀୟ କବିଶ୍ରେଣୀର ଅନ୍ତର୍ଗତ । 'ପଣ୍ଡିତାରାଧ୍ୟ ଚରିତ୍ର' ଆନ୍ଧ୍ରଦେଶର ସମସାମୟିକ ସାଂସ୍କୃତିକ ଜୀବନର ଦର୍ପଣ ସଦୃଶ । ସେଥିରେ ତତ୍କାଳୀନ ସମାଜ, ଚଳଣି, ସଙ୍ଗୀତ, ଶାସନ ବ୍ୟାପାରର ଚିତ୍ର ଦେଖିବାକୁ ମିଳେ । ସୋମନାଥଙ୍କର ବୃତ୍ତରେ ଲିଖିତ 'ବୃଷାଧିପ ଶତକମ୍', ତେଲୁଗୁ ସାହିତ୍ୟର ପ୍ରଥମ ଶତକ ଏବଂ ପ୍ରକୃତାର୍ଥେ ତାଙ୍କର କେତେକ ରଚନା ମଧ୍ୟ ଦେଶୀ ଛନ୍ଦରେ ଲିଖିତ । ତାଙ୍କର 'ଗଙ୍ଗୋତ୍ପତ୍ତି ରଗଡା'ରେ ସଙ୍ଗୀତ ଜ୍ଞାନ ପ୍ରଦର୍ଶିତ । ତାଙ୍କ ରଚନାମାନଙ୍କରେ ଉଭୟ ସଂସ୍କୃତ ବୃତ୍ତ ଓ ଦେଶୀ ରାଗର ମିଶ୍ରଣ ପରିଲକ୍ଷିତ ହୋଇଥାଏ । "ଅନୁଭବ ସାରମ୍" ମଧ୍ୟ ତାଙ୍କର ଲେଖା ।

## ତେଲୁଗୁ ଭାଷାରେ ରାମାୟଣ :—

ପ୍ରାଚୀନ ତେଲୁଗୁ ସାହିତ୍ୟରେ ମହାଭାରତ ସଦୃଶ 'ରାମାୟଣ'ର ପ୍ରଭାବ ମଧ୍ୟ ଅତ୍ୟଧିକ । ତେଲୁଗୁ ରାଜ୍ୟରେ ରାମଚରିତ ସର୍ବାଧିକ ଆଦୃତ । କବି ବାମେରା ପୋତନା ତାଙ୍କ ଲିଖିତ ଭାଗବତମ୍‌କୁ ରାମଙ୍କୁ ଉତ୍ସର୍ଗ କରିଥିଲେ । ଭକ୍ତ ତ୍ୟାଗରାଜ ମଧ୍ୟ ନିଜର କୀର୍ତ୍ତନ ରାମଙ୍କୁ ଉତ୍ସର୍ଗ କରିଥିଲେ । ବହୁ ବିଶିଷ୍ଟ କବିଙ୍କ ଲେଖନୀରେ ରାମଚରିତ ରୂପାୟିତ ହୋଇଥିଲା । ପ୍ରାଚୀନ କାଳର ଏତାଦୃଶ ଭକ୍ତି ପ୍ରଧାନ ଏବଂ କ୍ଷୁଦ୍ର ରାମାୟଣ ରଚନାର ସଂଖ୍ୟା ଶତାଧିକ । ରାମାୟଣ ରଚନା ତେଲୁଗୁ ଭାଷାରେ ଦ୍ୱିବିଧ । ଗୋଟିଏ ଚମ୍ପୂ ରୀତିରେ ଏବଂ ଅନ୍ୟଟି ଦ୍ୱିପଦ ବୃତ୍ତରେ ଲିଖିତ । ଗଦ୍ୟ ପଦ୍ୟାଶ୍ରିତ "ଚମ୍ପୂ" ଜାତୀୟ ତେଲୁଗୁ ରାମାୟଣ ମନ୍ତ୍ରୀ ଭାସ୍କର, ହୁଲ୍‌କ ଭାସ୍କର, ମଲ୍ଲିକାର୍ଜ୍ଜୁନ, ଭଟ୍ଟ କୁମାର ରୁଦ୍ର ଏବଂ ଆୟ୍ୟାଲରିଆ ଏପରି ପଞ୍ଚ କବିଙ୍କ ଦ୍ୱାରା ଲିଖିତ ହୋଇଥିଲା । ତେଲୁଗୁ ସାହିତ୍ୟର ପଦ୍ୟ ଶତକ, ଗଳ୍ପ, ଉପନ୍ୟାସ, ଏପରି ପ୍ରତ୍ୟେକ ବିଭାଗରେ ରାମାୟଣର ପ୍ରଭାବ ପରିଦୃଷ୍ଟ ହୋଇଥାଏ । ତେଲୁଗୁ ସାହିତ୍ୟରେ ସର୍ବପ୍ରଥମ ରାମାୟଣ ରଚନା ହେଉଛି 'ରଙ୍ଗନାଥ ରାମାୟଣ' ଏବଂ ତାର କବି ଥିଲେ 'ଗଣ ବୁଦ୍ଧ ରେଡ୍‌ଡ଼ି' । ସେ ଓ୍ୱାରଙ୍ଗଲ କରଦ ରାଜ୍ୟର ଯୁବରାଜ ଥିଲେ । ଦ୍ୱିପଦ ବୃତ୍ତରେ ଲିଖିତ ଏହି ଲୋକପ୍ରିୟ "ରଙ୍ଗନାଥ ରାମାୟଣ" ୧୨୪୦ ଖ୍ରୀ ୧୨୯୦—୧୫ ସମୟର ରଚନା ବୋଲି ଜଣାଯାଏ । ଏହା ବାଲ୍ମୀକୀ ରାମାୟଣର ଅନୁବାଦ ନୁହେଁ, ଭାବାନୁବାଦ ମାତ୍ର । "ଭାସ୍କର ରାମାୟଣ" ମଧ୍ୟ ତାଦୃଶ ଜନପ୍ରିୟତା ଅର୍ଜ୍ଜନ କରିଥିଲା ।

ନାନ୍ନାୟାଙ୍କ କଠିନ ସଂସ୍କୃତ ଶୈଳୀ ଅବଲମ୍ବନରେ ଏହି ରାମାୟଣ ସମୂହ ରଚିତ ହୋଇଥିଲା । "ଆନ୍ଧ୍ରଭାଷା ଭୂଷଣମ୍", "ଦଶକୁମାର ଚରିତଂ'ର ଲେଖକ ମାରୟ୍ୟ କେତନା ତିକାନ୍ନାଙ୍କର ଶିଷ୍ୟ ଥିଲେ । "ଆନ୍ଧ୍ର ଭାଷାଭୂଷଣଂ" ତେଲୁଗୁ ଭାଷାରେ ଲିଖିତ ସର୍ବପ୍ରଥମ ବ୍ୟାକରଣ । କେତନାଙ୍କୁ ତାଙ୍କର 'ଦଶକୁମାର ଚରିତ' ଯୋଗୁ ଅଭିନବ "ଦଣ୍ଡୀ" ଆଖ୍ୟା ଦିଆଯାଇଥିଲା । ମନ୍ତ୍ରୀ ଭାସ୍କରଙ୍କ ପୁତ୍ର କେତେନା ବାଣଙ୍କର "କାଦମ୍ବରୀ" ଅନୁବାଦ କରିଥିଲେ । ତିକାନ୍ନାଙ୍କର ଶିଷ୍ୟ ମାରୟ୍ୟାମନ୍ତ୍ରୀ 'ମାର୍କଣ୍ଡେୟ ପୁରାଣ'ର ଲେଖକ ଥିଲେ । "ବଶିଷ୍ଠ ରାମାୟଣ" ଓ ପଦ୍ମପୁରାଣର ଲେଖକ ମାଡ଼ିକ ସିଙ୍ଗାନା (୧୪୨୦), ବିକମଙ୍କ ଚରିତର ଲେଖକ ଜାକାନ୍ନା, ଭୋଜରାଜ୍ୟମ୍ ଓ ଛନ୍ଦ ଦର୍ପଣର ଲେଖକ ଅନନ୍ତ ଅମାତ୍ୟ ଏହି ଯୁଗର ବିଶିଷ୍ଟ କବି ଥିଲେ ।

ଶ୍ରୀନାଥ ଏବଂ ପୋତନାଙ୍କ ପର୍ଯ୍ୟନ୍ତ ଯୁଗକୁ ଯଥାର୍ଥ ଭାବରେ ମହାଭାରତ ରାମାୟଣ ଓ ପୁରାଣ ଅନୁବାଦ ଯୁଗ ବୋଲି ତେଲୁଗୁ ସାହିତ୍ୟର ଇତିହାସରେ ଚିହ୍ନିତ କରା ଯାଇଥାଏ । ପ୍ରାୟ ତିନିଶତାବ୍ଦୀ ଧରି ମହାଭାରତ ରାମାୟଣ ଅନୁବାଦ କାର୍ଯ୍ୟ ଚାଲି-ଥିଲା । ଶୈବପନ୍ଥୀମାନଙ୍କର ଧର୍ମପ୍ରଚାର ଚେଷ୍ଟା ରହିତ ହେବା ପରେ ଦେଶରେ

ବ୍ରାହ୍ମଣ ଧର୍ମ ଓ ସଂସ୍କୃତି ପ୍ରସାର ଲାଭ କରିଥିଲା । ଅନୁବାଦ ଯୁଗର ଅବସାନ ପରେ ବାମେ ମର୍ର ପୋତନା ଏବଂ କବି ଶ୍ରୀନାଥ ତେଲୁଗୁ ସାହିତ୍ୟରେ ନୂତନ ପ୍ରାଣବିନ୍ୟାସ କରିଥିଲେ ତଥା ନୂତନ କାବ୍ୟଧାରା ପ୍ରବର୍ତ୍ତନ କରିଥିଲେ ।

## କବି ସାର୍ବଭୌମ ଶ୍ରୀନାଥ (୧୩୮୦-୧୪୭୫)

କବି ଶ୍ରୀନାଥ ଏବଂ ବାମେର୍ର ପୋତନା ଉଭୟେ ସମସାମୟିକ ଥିଲେ ଓ ସେମାନେ ପାରିବାରିକ ବନ୍ଧୁତା ସୂତ୍ରରେ ଆବଦ୍ଧ ହୋଇଥିଲେ ବୋଲି କେହି କେହି କହନ୍ତି । ମାତ୍ର ଏକାଧିକ ଭାଗରେ ସଂପୂର୍ଣ୍ଣ "ଆନ୍ଧ୍ର କବି ତରଙ୍ଗିଣୀ" ସଂକଳନ କର୍ତ୍ତା ଚାଗାଣ୍ଟି ଶେଷୟ୍ୟାଙ୍କ ମତରେ ଶ୍ରୀନାଥ ଏବଂ ପୋତନା ଭିନ୍ନ ଭିନ୍ନ ସମୟର ଲେଖକ । ମହା-ଭାରତ ଏବଂ ରାମାୟଣ ଅନୁବାଦ ପରେ ସଂସ୍କୃତରୁ ଅନ୍ୟାନ୍ୟ ଗ୍ରନ୍ଥ ତେଲୁଗୁ ଭାଷାରେ ଅନୂଦିତ ହୋଇଥିଲା । ଶ୍ରୀନାଥଙ୍କ "ଶୃଙ୍ଗାର ନୈଷଧମ୍" ତେଲୁଗୁ ସାହିତ୍ୟରେ ଏକ ପ୍ରାମାଣିକ ରଚନା ରୂପେ ଗୃହୀତ ହୋଇଥିଲା ଏବଂ ଏହା ତେଲୁଗୁ ସାହିତ୍ୟର ପଞ୍ଚମହାକାବ୍ୟ ମଧ୍ୟରୁ ଅନ୍ୟତମ । ଅନୁବାଦ, ପୁରାଣ, ମହାଭାରତ ଯୁଗରେ ଜୀବିତ ଥାଇ କବି ଶ୍ରୀନାଥ 'ଭୀମେଶ୍ୱର ପୁରାଣମ୍' କାଶୀ ଖଣ୍ଡମ୍, ଶିବରାତ୍ରି ମାହାତ୍ମ୍ୟମ୍ ହରବିଳାସମ୍, କ୍ରୀଡ଼ାଭିରାମମ୍, (ବୀଥିନାଟକମ୍), ପଲ୍ଲାନ୍ତି, ବୀରଚରିତମ୍ ରଚନା କରି-ଥିଲେ । ଶ୍ରୀନାଥଙ୍କର ପିତାମହ କମଲନାଭ ମଧ୍ୟ ଜଣେ ଉଚ୍ଚ କୋଟୀର କବି ଥିଲେ ବୋଲି ଜଣାଯାଏ । ପାଣ୍ଡିତ୍ୟ ବିଦ୍ୱତ୍ତା, ଏବଂ ଜ୍ଞାନ ପିପାସା ଶ୍ରୀନାଥଙ୍କ କବିତ୍ୱ ସହିତ ଜଡ଼ିତ ଥିଲା, ବହୁ ଦେଶ ପର୍ଯ୍ୟଟନ ଏବଂ ତଜ୍ଜନିତ ଅଭିଜ୍ଞତାଦି ତାଙ୍କ କୃତି-ମାନଙ୍କରେ ପ୍ରତିଫଳିତ । ବହୁ ରାଜଦରବାର ସହିତ ତାଙ୍କର ସଂପର୍କ ଥିଲା । ସେ ଯେତେବେଳେ ବିଜୟ ନଗରର ରାଜା ହରିହରଙ୍କ ଦରବାର ପରିଦର୍ଶନ କରି-ଥିଲେ, ରାଜା ତାଙ୍କୁ ସେତେବେଳେ ପ୍ରକୃତରେ ସୁନାରେ ମଣ୍ଡିତ କରାଇ ଦେଇଥିଲେ, ଏହି ସମ୍ବର୍ଦ୍ଧନା କନକାଭିଷେକ ନାମରେ ପରିଚିତ । ତାଙ୍କର ପଦବୀ ଥିଲା କବି ସାର୍ବଭୌମ । ପଣ୍ଡିତ ନରପତି କୋମଟି ଭୀମଙ୍କର ଦରବାରରେ 'ଶ୍ରୀନାଥ ବିଦ୍ୟାଧିକାରୀ' ଆସ୍ଥାନ ଲାଭ କରିଥିଲେ ।

ଶ୍ରୀନାଥଙ୍କ କେତେକ ରଚନାରେ ଶୈବ ଉପାସନା ପ୍ରଭାବ ମଧ୍ୟ ପରିଲକ୍ଷିତ ହୋଇଥାଏ । ସେଥିପାଇଁ ତାଙ୍କୁ ଶୈବ କବିମାନଙ୍କ ସହିତ ଜଡ଼ିତ କରି ଯାଇଥାଏ । କେତେକ ସମାଲୋଚକଙ୍କ ମତରେ "ହରବିଳାସମ୍" ଶ୍ରେଷ୍ଠ ରଚନା । ଏହା ଶିବଙ୍କ ଚରିତ ସମ୍ବଳିତ କଥା ପ୍ରବନ୍ଧ ନାମରେ ମଧ୍ୟ ପରିଚିତ । ବୀଥି ନାଟକମ୍, ନାମରେ ପରିଚିତ ତାଙ୍କର କ୍ରୀଡ଼ାଭିରାମମ୍, ଓ୍ୱାରଙ୍ଗଲ୍ ନିକଟବର୍ତ୍ତୀ ଅଞ୍ଚଳର ସାମାଜିକ ଏବଂ ପ୍ରାକୃତିକ ଦୃଶ୍ୟ ବର୍ଣ୍ଣନାରେ ପରିପୂର୍ଣ୍ଣ । ଏହା ଯୌନ ବର୍ଣ୍ଣନା ପୀଡ଼ିତ ହେଲେହେଁ

କବିଙ୍କର ପ୍ରଚୁର ଅଭିଜ୍ଞତାର ପରିଚୟସୂଚକ । ଦ୍ୱିପଦରୀତିରେ ରଚିତ "ପଲ୍ନାଡ଼ୁ ବୀର ଚରିତ୍ର" ବୀର ଗାଥା ଜାତୀୟ ରଚନା ଏବଂ ଏହାର ବିଷୟବସ୍ତୁଗତ ମୌଳିକତା ସ୍ୱୀକୃତ ।

ଶୃଙ୍ଗାର ନୈଷଧମ୍ ଅଷ୍ଟସର୍ଗ ବିଶିଷ୍ଟ । କବି ଏହାକୁ ପେଦ୍ଦା କୋମଟି ଭୀମଙ୍କ ମନ୍ତ୍ରୀ ମାମିଡ଼ି ସିଂଗାନ୍ନାଙ୍କୁ ଉତ୍ସର୍ଗ କରିଥିଲେ । ଶୃଙ୍ଗାର ବର୍ଣ୍ଣନା ପୂର୍ଣ୍ଣ ଏହି ରଚନା ତେଲୁଗୁ କବିମାନଙ୍କ କାବ୍ୟିକ ଆଦର୍ଶ ରୂପେ ଗୃହୀତ ହୋଇଥିଲା । 'ବୀଥି ନାଟକମ୍'ରେ ଆନ୍ଧ୍ର ଦେଶରେ ବିଭିନ୍ନ ଅଞ୍ଚଳର ଅଧିବାସୀମାନଙ୍କର ରୁଚି, ପୋଷାକ ପରିଚ୍ଛଦର ସୂଚନା ମିଳିଥାଏ । କବି ସାର୍ବଭୌମ ଶ୍ରୀନାଥଙ୍କ ଯୁଗକୁ ତେଲୁଗୁ ସାହିତ୍ୟରେ ଏକ ସନ୍ଧି ଯୁଗ ବୋଲି ଅଭିହିତ କରାଯାଇଥାଏ ।

## ବାମେର ପୋତନା (୧୪୫୦-୧୫୧୦)

ଭକ୍ତିନିଷ୍ଠ, ଭକ୍ତପ୍ରାଣ ବାମେର ପୋତନାଙ୍କର ରଚନା 'ଭାଗବତମ୍' ମୂଳ ସଂସ୍କୃତ ଗ୍ରନ୍ଥର ଅବଲମ୍ବନ । ଆନ୍ଧ୍ର ଦେଶରେ ଏହା ବିଶେଷ ପଠିତ ଏବଂ ଲୋକ-ପ୍ରିୟ । ପୋତନାଙ୍କର "ଭାଗବତମ୍" ଅଧ୍ୟୟନ କଲେ ନାସ୍ତିକ ପାଠକ ପ୍ରାଣରେ ମଧ୍ୟ ଭକ୍ତିଧାରା ପ୍ରବାହିତ ହୁଏ । ପୋତନାଙ୍କର ଶିଷ୍ୟମାନେ ଯଥା—ଭେଲି ପର୍ଣ୍ଣନ୍ନା, ନାରୟ୍ୟା, ଏରଚୂରି ସିଂଗାନା, ଗଂଗା ନାରାନ୍ନା ମଧ୍ୟ ଭାଗବତ ରଚନାରେ ମନୋ-ନିବେଶ କରିଥିଲେ । ପୋତନା ନିଜର "ଭାଗବତମ୍" ରଚନା ଜଣେ ମାନବ ନାମରେ ଉତ୍ସର୍ଗ କରିବାକୁ ରାଜି ହେଲେ ନାହିଁ । ଏଥିରେ ଓ୍ୱାରଙ୍ଗଲଙ୍କର ସର୍ବଜ୍ଞ ସିଂହ ଭୂପାଲ କ୍ରୋଧାନ୍ୱିତ ହେଲେ ଏବଂ ପୋତନାଙ୍କର ଭାଗବତ ଗ୍ରନ୍ଥକୁ ମାଟିରେ ପୋତି ଦେଇଥିଲେ । ପରେ ତାଙ୍କର ଜନୈକ ଶିଷ୍ୟଙ୍କ ଦ୍ୱାରା ତାହା ଉଦ୍ଧାର କରାଯାଇଥିଲା । ମାତ୍ର ଏହା ବିଶ୍ୱାସଯୋଗ୍ୟ ନୁହେଁ ବୋଲି ପଣ୍ଡିତମାନେ କହନ୍ତି ।

ମହାଭାରତର କଥାବସ୍ତୁ ଉପରେ ଆଧାରିତ କାଳିଦାସଙ୍କ ନାଟକାଶ୍ରିତ "ଶକୁନ୍ତଳା ପରିଣୟମ୍" ଏବଂ ଅଶ୍ୱମେଧ ପର୍ବ ଅବଲମ୍ବନରେ ଲିଖିତ "ଜୈମିନୀ ଭାରତମ୍" ପଞ୍ଚଦଶ ଶତାବ୍ଦୀର ଶେଷ ଭାଗର କବି ପିଲ୍ଲାଲ ମାରି ପିନାବୀରଭଦ୍ରଙ୍କ କୃତ । କୃଷ୍ଣମିଶ୍ରଙ୍କର ରଚିତ ସଂସ୍କୃତ ଆଳଙ୍କାରିକ ନାଟକ "ପ୍ରବୋଧ ଚନ୍ଦ୍ରୋ-ଦୟମ୍" ତେଲୁଗୁ ଗଦ୍ୟ ଏବଂ ପଦ୍ୟରେ ନନ୍ଦି ମାଲୟ୍ୟା ଏବଂ ତାଙ୍କର ଭଗିନେୟ ଘଣ୍ଟା ସିଂଗାୟ୍ୟଙ୍କ ଦ୍ୱାରା ଅନୂଦିତ ହୋଇଥିଲା । ସେମାନେ ସେମାନଙ୍କର ରଚନା ସଂସ୍କୃତ ଅବଲମ୍ବନରେ ଲିଖିତ "ବରାହ ପୁରାଣ" ବିଜୟ ନଗରର ନରସିଂହ ଦେବରାୟଙ୍କ ନାମରେ ଉତ୍ସୃଷ୍ଟ କରିଥିଲେ । ଦୁବାଗୁଣ୍ଟା ନାରାୟଣ କବି ସଂସ୍କୃତ ଅବଲମ୍ବନରେ ପଦ୍ୟରେ "ପଞ୍ଚତନ୍ତ୍ର" ରଚନା କରିଥିଲେ । ଶିକ୍ଷଣୀୟ ଗଳ୍ପ ଭାବରେ ଏହାର ଆବେଦନ ବ୍ୟାପକ । ପଞ୍ଚଦଶ ଶତାବ୍ଦୀର ପଣ୍ଡିତ ତଲ୍ଲାପକ ଅନମାଚାର୍ଯ୍ୟ

ତିରୁପତିରେ ଅବସ୍ଥାନ କରୁଥିଲେ ଏବଂ ତେଲୁଗୁ ସାହିତ୍ୟରେ ଭକ୍ତି ରସାମୃତ ଗୀତି କବିତାର ସେ ଥିଲେ ପ୍ରବର୍ତ୍ତକ । ତାହାସବୁ ତିରୁପତି ଭେଙ୍କଟେଶ୍ୱରଙ୍କୁ ଉତ୍ସୃଷ୍ଟ ହୋଇଥିଲା । ସେ ଦୀର୍ଘ ୯୫ ବର୍ଷ ବଞ୍ଚିଥିଲେ ଏବଂ ଗୀତି ଶତକ ପ୍ରଭୃତି ପ୍ରାୟ ୩୨,୦୦୦ ସଂଖ୍ୟାରେ ରଚନା କରିଥିଲେ । ତିରୁପତି ବୈଷ୍ଣବ ଧର୍ମର ପୃଷ୍ଠ-ପୋଷକତା କଲବେଳେ ଶୈବଧର୍ମ ଏକାବାରକେ ନିଶ୍ଚିହ୍ନ ନ ହୋଇ ରୟଲସିମା ଏବଂ ହାଇଦରାବାଦ ଅଞ୍ଚଳରେ ପ୍ରଚଳିତ ଥିଲା । ଏହା ବ୍ୟତୀତ ସେ ୧୦୫ ଗୋଟି ଶତକ ଭେଙ୍କଟେଶ୍ୱରଙ୍କ ଉଦ୍ଦେଶ୍ୟରେ ରଚନା କରିଥିଲେ । ଏଥିରୁ କେତେକ ଭେଙ୍କଟାଞ୍ଚଳ ମାହାତ୍ମ୍ୟ ଓ ଦ୍ୱିପଦ ରାମାୟଣ ନାମରେ ପରିଚିତ । ଉଭୟ ଭକ୍ତି ରସାତ୍ମକ ଓ ପରିମାଣାତ୍ମକ ରଚନା ଦୃଷ୍ଟିରୁ ପଞ୍ଚଦଶ ଶତାବ୍ଦୀର ସେ ଜଣେ ପ୍ରଧାନ କବି ଥିଲେ ।

ବିଜୟ ନଗରର ସମ୍ରାଟ କୃଷ୍ଣଦେବ ରାୟ (୧୫୦୩-୩୦)ଙ୍କ ରାଜତ୍ୱ ସମୟରେ ତାଙ୍କର ପୃଷ୍ଠପୋଷକତାରେ ତେଲୁଗୁ ସାହିତ୍ୟରେ ସ୍ୱର୍ଣ୍ଣଯୁଗର (ରୟଲ ଯୁଗମ୍) ସୂତ୍ରପାତ ହୋଇଥିଲା । କୃଷ୍ଣ ଦେବରାୟ କବି ଥିଲେ ଏବଂ ସାହିତ୍ୟିକ ଆଲ୍ଲାସାନି ପେଦାନାଙ୍କ ପ୍ରବନ୍ଧ କାବ୍ୟ ଏହି ଯୁଗର ପ୍ରଧାନ ଆକର୍ଷଣ ଥିଲା । ପ୍ରବନ୍ଧ କାବ୍ୟ ଏହି ଯୁଗର ମୁଖ୍ୟ କୃତି ଏବଂ କବିମାନେ ରାଜକୀୟ ପ୍ରବନ୍ଧ କାବ୍ୟ ଉପରେ ମନୋନିବେଶ କରିଥିଲେ । କୃଷ୍ଣ ଦେବରାୟ ଜଣେ ଉଚ୍ଚକୋଟୀର କବିଥିଲେ ଏବଂ ସଂସ୍କୃତ, ତେଲୁଗୁ ଏବଂ କାନ୍ନଡ଼ ଭାଷାରେ ତାଙ୍କର ପ୍ରବେଶ ଥିଲା । ତାଙ୍କର "ଅମୁକ୍ତ ମାଲ୍ୟଦା" ଅସାଧାରଣ କବିତ୍ୱର ନିଦର୍ଶନ ଏବଂ ସେଥିରେ ସମସାମୟିକ ଜୀବନର ବର୍ଣ୍ଣନା ଅଙ୍ଗୀଭୂତ ଥିଲା ଏବଂ ତାହା ବିଷ୍ଣୁ ଭକ୍ତିର ପରିଚାୟକ । ଅନେକ ସମୟରେ ପଣ୍ଡିତମାନେ ଶ୍ରୀନାଥଙ୍କର "ନୈଷଧ" ସହିତ କୃଷ୍ଣଦେବ ରାୟଙ୍କର "ଅମୁକ୍ତ ମାଲ୍ୟଦା"କୁ ମହା କାବ୍ୟ-ରୂପେ ତୁଳନା କରିଥାନ୍ତି । କୃଷ୍ଣ ଦେବରାୟ ବେଜୱାଡ଼ାଠାରେ ଶିବିର ପକାଇ-ଥିଲେ । ସେ ସେହିଠାରେ ଏକ ସ୍ୱପ୍ନ ଦେଖିଲେ ଯେ, ଆନ୍ଧ୍ର ବିଷ୍ଣୁ (ଆନ୍ଧ୍ରନାୟକ) ତାଙ୍କୁ ଆଦେଶ ଦେଉଛନ୍ତି "ତେଲୁଗୁ ଭାଷାର ଗୋଟିଏ କବିତା ରଚନା କର ସେଥିରେ ଶ୍ରୀ ରଙ୍ଗମ୍ ସ୍ଥିତ ନାୟିକା ଅମୁକ୍ତ ମାଲ୍ୟଦା ସହିତ ମୋର ବିବାହ ବର୍ଣ୍ଣନା କର ଏବଂ ତାହା ଭେଙ୍କଟେଶ୍ୱରଙ୍କୁ ଉତ୍ସର୍ଗ କର । ତେଲୁଗୁ ଭାଷା ଲଳିତ ଓ ମଧୁର । "ସେହି ସ୍ୱପ୍ନର ପରିଣତି ହେଉଛି କୃଷ୍ଣଦେବ ରାୟଙ୍କର "ଆମୁକ୍ତ ମାଲ୍ୟଦା ।" ପ୍ରବନ୍ଧ କାବ୍ୟ କବିତା "ଅମୁକ୍ତ ମାଲ୍ୟଦା"ର ଗଠନ କାବ୍ୟିକ, ଭାଷା କଠିନ ଏବଂ ବର୍ଣ୍ଣନା ଗୁରୁତ୍ୱ, ଅଳଙ୍କାର ଅତ୍ୟନ୍ତ ବଳିଷ୍ଠ । କେହି କେହି ଏହାକୁ ପେଦାନାଙ୍କର ଲିଖିତ କାବ୍ୟ ବୋଲି ସନ୍ଦେହ ପ୍ରକାଶ କରନ୍ତି । ମାତ୍ର ଏହା ଅମୂଳକ । ରାଜ କବି ଆଲସାନି ପେଦାନାଙ୍କର 'ମନୁ ଚରିତ' ତେଲୁଗୁ ପଞ୍ଚ ମହାକାବ୍ୟ ମଧ୍ୟରେ ଅନ୍ୟତମ । ଏହି ପଞ୍ଚମହା କାବ୍ୟ ମଧ୍ୟରେ ଶ୍ରୀ ନାଥଙ୍କର ଶୃଙ୍ଗାର ନୈଷଧମ୍, କୃଷ୍ଣଦେବ ରାୟଙ୍କର ଅମୁକ୍ତ ମାଲ୍ୟଦା, ଭଟ୍ଟମୂର୍ତ୍ତିଙ୍କର ବସୁ ଚରିତମ୍,

ତେନାଲି ରାମକୃଷ୍ଣଙ୍କର "ପାଣ୍ଡୁରଙ୍ଗ ମାହାତ୍ମ୍ୟ" ଅନ୍ତର୍ଗତ । କେହି କେହି ପିଙ୍ଗଳି ସୁରାନାଙ୍କର "ପ୍ରଭାବତୀ ପ୍ରଦ୍ୟୁମ୍ନମ୍" କାବ୍ୟକୁ ଏହି ମହା କାବ୍ୟମାନଙ୍କ ସହିତ ତୁଳନା କରିଥାନ୍ତି । ଆଉ କେତେକ ଚେମାକୁରା ଭେଙ୍କଟକବିଙ୍କ "ବିଜୟ ବିଳାସମ୍"କୁ ଏହି ସ୍ଥାନ ଦେଇଥାନ୍ତି ।

"ମନୁ ଚରିତ"ର କଥାବସ୍ତୁ, ଧର୍ମପ୍ରାଣ ବିପ୍ରଯୁବା ପ୍ରବରଙ୍କ ପ୍ରତି ଅପୂର୍ବ ସୁନ୍ଦରୀ ବରୂଥିନୀଙ୍କର ବ୍ୟର୍ଥ ଆସକ୍ତି ଏବଂ ଶେଷରେ ବରୂଥିନୀ ଏବଂ ମାୟା ପ୍ରବରଙ୍କ ଔରସରେ ସ୍ୱରୋଚିଷ ମନୁଙ୍କର ଜନ୍ମ । ଜଣେ ସିଦ୍ଧ ପ୍ରବରଙ୍କୁ ଏକ ଔଷଧ ଦେଇଥିଲେ । ସେହି ଔଷଧ ପାଦରେ ଲାଗିବା ମାତ୍ରେ ସେ ଯେଉଁଠି ଚାହିଁବେ ସେଠାକୁ ଅକ୍ଳେଶରେ ଯାଇ ପାରିବେ । ସେହି ଔଷଧ ପ୍ରବରଙ୍କ ପାଦରେ ଲାଗିବା ଫଳରେ ପ୍ରବର ହିମାଳୟରେ ଅକ୍ଳେଶରେ ଯାଇଁ ପହଞ୍ଚିବା ଇତ୍ୟାଦି ଘଟଣା "ମାର୍କଣ୍ଡେୟ ପୁରାଣରୁ" ଗୃହୀତ । ଭାଷା, ଶୈଳୀ ଏବଂ ଭାବ ଦୃଷ୍ଟିରୁ ଷଡ୍‌ସର୍ଗ ସମ୍ବଳିତ ଏହି ପ୍ରବନ୍ଧ କାବ୍ୟ ଶ୍ରେଷ୍ଠ ସ୍ଥାନ ଅଧିକାର କରିଥାଏ । କାଳି ଦାସଙ୍କ "କୁମାର ସମ୍ଭବ" ସହିତ ଏହା ତୁଳନୀୟ । ସମ୍ରାଟ କୃଷ୍ଣରାୟ ପେଦାନାଙ୍କୁ ବିଶେଷ ଭଲ ପାଉଥିଲେ ।

ଜନଶ୍ରୁତିରୁ ଜଣାଯାଏ, ସାହିତ୍ୟ ରସିକ ସମ୍ରାଟ କୃଷ୍ଣ ରାୟଙ୍କ ଦରବାର ଅଷ୍ଟ କବିଙ୍କ ଦ୍ୱାରା ମଣ୍ଡିତ ହୋଇଥିଲା । ଏହି ଅଷ୍ଟକବି ଯଥାର୍ଥରେ ଅଷ୍ଟ ଦିଗ୍‌ଗଜ ନାମରେ ପରିଚିତ । ସେହି ଅଷ୍ଟ ଦିଗ୍‌ଗଜଙ୍କ ମଧ୍ୟରେ (୧) ମନୁ ଚରିତ ପ୍ରଣେତା ପେଦାନା, ସେ କାଳହସ୍ତୀ ନାମରେ ପରିଚିତ (୨) ପାରିଜାତା ପହରଣମ୍‌ର ପ୍ରଣେତା ନନ୍ଦିତିମାନ୍ନା, (୩) ରାମାଭ୍ୟୁଦୟର ପ୍ରଣେତା ରାମଚନ୍ଦ୍ର କବି, (୪) କଳାହସ୍ତୀର ମାହାତ୍ମ୍ୟର ପ୍ରଣେତା ଧୂର୍ଜଟୀ, (୫) ରାଜଶେଖର ଚରିତ ପ୍ରଣେତା ମାଦୟାଗରି ମଲନା, (୬) ପାଣ୍ଡୁରଙ୍ଗ ମାହାତ୍ମ୍ୟ ପ୍ରଣେତା ତେନାଲି ରାମକୃଷ୍ଣ, (୭) କଳା ପୂର୍ଣ୍ଣୋଦୟମ୍‌ର ପ୍ରଣେତା ପିଙ୍ଗାଲି ସୁରାନା, (୮) ବସୁଚରିତ ପ୍ରଣେତା ରାମାରାଜ ଭୂଷଣ, ଅର୍ଥାତ୍ ଭଟ୍ଟୁ ମୂର୍ତ୍ତି ।

କୃଷ୍ଣଦେବ ରାୟଙ୍କର ୧୫୩୦ ମସିହାରେ ମୃତ୍ୟୁ ବେଳକୁ କବି ରାମଭଦ୍ର ଏବଂ ତେନାଲି ରାମକୃଷ୍ଣଙ୍କର ସମ୍ଭବତଃ ତରୁଣ ବୟସ । "ଅଷ୍ଟ ମହିଷ କଲ୍ୟାଣମ୍" ଲେଖକ ତାଲ ପାକ୍‌କା ଚିନ୍ନାନ୍ନା ଏହି ସମୟର ଲେଖକ । ନନ୍ଦିତି ମାନ୍ନାଙ୍କର 'ପାରିଜାତା ପହରଣମ୍'ରେ କୃଷ୍ଣଙ୍କର ଅଭିମାନିନୀ ସତ୍ୟମାଙ୍କ ପାଇଁ ନନ୍ଦନ ବନର ପାରିଜାତ ବୃକ୍ଷ ସଂଗ୍ରହ କରିବା ବିଷୟ ବର୍ଣ୍ଣିତ । ଏହାର ଗଳ୍ପାଂଶ ହରିବଂଶରୁ ଗୃହୀତ । ତେଲୁଗୁ ସାହିତ୍ୟରେ ସତ୍ୟଭାମାଙ୍କ ଚରିତ ବହୁ କବିଙ୍କ ଦ୍ୱାରା ବର୍ଣ୍ଣିତ ଏବଂ ପାଠକଙ୍କ ଦ୍ୱାରା ଆଦୃତ । ଯକ୍ଷ ଗାନ ଏବଂ ବୀଥି ନାଟକ ମଧ୍ୟ ଏହି ବିଷୟ ବସ୍ତୁକୁ ନେଇ ଲିଖିତ । ଧୂର୍ଜଟୀଙ୍କର ରଚନା କାଳହସ୍ତୀ ମାହାତ୍ମ୍ୟ ଏବଂ ଶତକ ପଦ୍ମାଲିତ୍ୟ ତଥା

କାବ୍ୟକ ସୌନ୍ଦର୍ଯ୍ୟ ଦ୍ୱାରା ଚର୍ଚ୍ଚିତ । କବି ପେଦାନା, ତିମାନ୍ନା ଏବଂ ମାଲନ୍ନା ସମ୍ରାଟ କୃଷ୍ଣଦେବ ରାୟଙ୍କର ଗହଣରେ ବରାବର ଯାତ୍ରା କରୁଥିଲେ । ଧୂର୍ଜ୍ଜଟୀଙ୍କର ପୁତ୍ର କୁମାର ଧୂର୍ଜ୍ଜଟୀ ସମ୍ରାଟ କୃଷ୍ଣଦେବ ରାୟଙ୍କ ସାମରିକ ଅଭିଯାନ ବର୍ଣ୍ଣନା କରି "କୃଷ୍ଣ ଦେବରାୟ ବିଜୟମ୍" ନାମକ ଦୀର୍ଘ କବିତା ଲେଖିଥିଲେ ।

ରାଜକୁମାର ରାଜଶେଖରଙ୍କ କାନ୍ତିମତୀଙ୍କର ସହିତ ଏକ ଅଦ୍ଭୁତ ଶୁକର ସାହାଯ୍ୟରେ ବିବାହ ସମ୍ପାଦନ ତେଲୁଗୁ ସାହିତ୍ୟରେ ସମାଦୃତ ଏବଂ ଏହା କବି ମାଦୟ୍ୟା ଗିରି ମାଲ୍ଲାନ୍ନାଙ୍କର ଲିଖିତ 'ରାଜଶେଖର ଚରିତ'ର ମୁଖ୍ୟ କଥାବସ୍ତୁ । ଏହି ରଚନାରେ ଶୃଙ୍ଗାର ରସ ପରିବେଷିତ । ପିଙ୍ଗଲସୁରାନା (୧୫୬୦-୮୦) ଥିଲେ । ସର୍ବସମ୍ମତ ପ୍ରସିଦ୍ଧ ତେଲୁଗୁ କବି, ସଂସ୍କୃତ ସାହିତ୍ୟରେ ଗଭୀର ପ୍ରବେଶ, କଳ୍ପନା ବିଳାସ ଏବଂ ସାଧନା ତାଙ୍କ କବିତ୍ୱର ସହଚର, ପୁରାଣ ଆଶ୍ରିତ ନାରଦ, ବ୍ରହ୍ମା, ସରସ୍ୱତୀ, ରମ୍ଭା, କୃଷ୍ଣ, କାମ୍ଭବତୀ ପ୍ରଭୃତି ଚରିତ୍ରକୁ ନେଇ ତାଙ୍କ କାବ୍ୟ କବିତା ରଚିତ । ପ୍ରଧାନ ଗପ ମଧ୍ୟରେ ବହୁ ଉପକଥା ବର୍ଣ୍ଣିତ । ମଦାଳସା ଏବଂ କଳାପୂର୍ଣ୍ଣଙ୍କର ପରିଚୟ ସଂପାଦନ ଏହାର ମୁଖ୍ୟ ଗଳ୍ପ । ତାଙ୍କର କାବ୍ୟ ପ୍ରଭାବତୀ, ପ୍ରଦ୍ୟୁମ୍ନ, କଳା ପୂର୍ଣ୍ଣୋଦୟମ୍ ଠାରୁ ଉତ୍କୃଷ୍ଟ ବୋଲି ଜଣାଯାଏ । ଦ୍ୱିଅର୍ଥୀ କାବ୍ୟ ରାଘବପାଣ୍ଡବ ବିଜୟମ୍ ମଧ୍ୟ ତାଙ୍କର ରଚନା । ଶେଷୋକ୍ତ କବିତାରେ ଗୋଟିଏ ଗୋଟିଏ ଶବ୍ଦ ରାମଙ୍କୁ ବୁଝାଇବ ଏବଂ ମହାଭାରତରକୁ ମଧ୍ୟ ବୁଝାଇବ । ରାଜକୁମାରୀ ଗିରିନା ଏବଂ ରାଜକୁମାର ବସୁଙ୍କର ବିବାହ ବର୍ଣ୍ଣନା ମୂଳକ କାବ୍ୟ "ବସୁଚରିତ୍ର"ର ଲେଖକ ଭଟ୍ଟମୂର୍ତ୍ତି ବନାମ ରାମରାଜ ଭୂଷଣ । ତାହା ତେଲୁଗୁ ସାହିତ୍ୟରେ ଏକ ଉଚ୍ଚ କୋଟୀର କବିତା ରୂପେ ବିବେଚିତ । ହରିଶ୍ଚନ୍ଦ୍ର ନଳୋପାଖ୍ୟାନାମ୍ ତାଙ୍କର ଏକ ଦ୍ୱିଅର୍ଥୀକାବ୍ୟ । କାବ୍ୟ ଲାଙ୍କାର ସମ୍ପର୍କରେ ମଧ୍ୟ ସେ ଆଲୋଚନା କରିଥିଲେ, ସୁରାନ୍ନା ଏବଂ ଭଟ୍ଟମୂର୍ତ୍ତିଙ୍କ କବିତ୍ୱ-ଯଥାକ୍ରମେ ପୌରାଣିକ ପରିସର ଅପେକ୍ଷା ସାମାଜିକ ପରିସର ପ୍ରତି ଅଧିକ ଧ୍ୟାନ ଥିଲା । ସେମାନେ ଥିଲେ ନୂତନତାର ପଥିକ । ମହାରାଷ୍ଟ୍ରର ପଣ୍ଢାରପୁର କମ୍ବଦନ୍ତୀକୁ ନେଇ ତେନାଲି ରାମକୃଷ୍ଣଙ୍କର "ପାଣ୍ଡୁରଂଗ ମାହାତ୍ମ୍ୟ" ଲିଖିତ । ତାଙ୍କ କବିତାର ମାଧୁରୀ, ପଦ ଗୁମ୍ଫନ, ଶକ୍ତି, ଭକ୍ତି ରସାତ୍ମକ ଶତକ ଲେଖକ ବେମାନ୍ନା ତେଲୁଗୁ ସାହିତ୍ୟରେ ସ୍ମରଣୀୟ ଦେଶୀବୃତ୍ତି ଇତ୍ତପଦ ତାଙ୍କର ଶତକ ସମୂହ ଆଧ୍ୟାତ୍ମିକ ଶିକ୍ଷା ପରିପୂର୍ଣ୍ଣ । ତାହାର ସାମାଜିକ ତାତ୍ପର୍ଯ୍ୟ ଯଥେଷ୍ଟ । ତାଙ୍କର ବାଲ୍ୟ ଜୀବନ ସରଳ ଥିଲା ।

ଜଣେ ସାଧୁ ଓ ସନ୍ନ୍ୟାସୀରୂପେ ସେ ତେଲୁଗୁ ସାହିତ୍ୟରେ ପରିଚିତ ଥିଲେ ।

ଊନବିଂଶ ଶତାବ୍ଦୀର ପ୍ରଥମ ଭାଗର ତେଲୁଗୁ ଭାଷା ପ୍ରବୀଣ ପାଶ୍ଚାତ୍ୟ ଗବେଷକ ସି. ପି. ବ୍ରାଉନ ବେମାନ୍ନାଙ୍କର ଶତକରେ ମୁଗ୍ଧ ହୋଇ ତାର ଇଂରାଜୀ

ଅନୁବାଦ ୧୮୬୯ ମସିହାରେ ପ୍ରକାଶ କରିଥିଲେ । ଶଙ୍କୁଶାଳା ନୃସିଂହ କବି "କବି-କର୍ଣ୍ଣ ରସାୟନମ୍" ଶୀର୍ଷକ ପ୍ରବନ୍ଧଧାରାରେ ଏକ ଦୀର୍ଘ କବିତା ପ୍ରଣୟନ କରିଥିଲେ । ତାହା ବିଷ୍ଣୁ ଭକ୍ତି ଦ୍ୱାରା ଚର୍ଚ୍ଚିତ । ସେ କୃଷ୍ଣଦେବ ରାୟଙ୍କ ରାଜତ୍ୱର ଶେଷ ଆଡକୁ ଜୀବିତ ଥିବା ଜଣାଯାଏ । କେତେକ ସମାଲୋଚକ ତାଙ୍କୁ ତେଲୁଗୁ ସାହିତ୍ୟରେ ପେଦାନ୍ନାଙ୍କ ସହିତ ତୁଳନା କରିଥାନ୍ତି । କବି ଦୃଢ଼ ସ୍ୱରରେ ଭକ୍ତିର 'ମହାତ୍ମ୍ୟ' ଘୋଷଣା କରିଥିଲେ ।

## ତେଲୁଗୁ ସାହିତ୍ୟରେ ଦାକ୍ଷିଣାତ୍ୟ ଧାରାର ପ୍ରଭାବ (୧୫୫୦-୧୭୫୦)

ତେଲୁଗୁ ସାହିତ୍ୟ ଉପରେ ଦାକ୍ଷିଣାତ୍ୟ ଚନ୍ଦ୍ରାଧାରା ତଥା ମଦୁରା, ତାଞ୍ଜୋର, ମହୀଶୂର, ପୁଦୁକୋଟା ଅଞ୍ଚଳର କବିମାନଙ୍କର ପ୍ରଭାବ କମ୍ ପଡିନଥିଲା । ଷୋଡ଼ଶ ଶତାବ୍ଦୀରୁ ଅଷ୍ଟାଦଶ ଶତାବ୍ଦୀ ପର୍ଯ୍ୟନ୍ତ ଏହି ପ୍ରଭାବ ଲାଗି ରହିଥିଲା । କୃଷ୍ଣଦେବ ରାୟଙ୍କ ପରବର୍ତ୍ତୀ ସମୟରେ ନାୟକବଂଶୀୟ ନରପତିମାନଙ୍କର ପୃଷ୍ଠ-ପୋଷକତାରେ ମଦୁରା ଏବଂ ତାଞ୍ଜୋରଠାରେ କାବ୍ୟ ସାଧନା ପରିପୁଷ୍ଟି ଲାଭ କରିଥିଲା । ଦାକ୍ଷିଣାତ୍ୟର ମୁଖ୍ୟ ତେଲୁଗୁ କବିମାନଙ୍କ ମଧ୍ୟରେ ପ୍ରଥମେ ଚେମାକୁର ଭେଙ୍କଟ କବି (୧୬୩୦)ଙ୍କ ନାମ ଉଲ୍ଲେଖଯୋଗ୍ୟ । ତାଙ୍କର 'ବିଜୟ ବିଲାସମ୍' ତେଲୁଗୁ ପଂଚ ମହାକାବ୍ୟ ମଧ୍ୟରେ ଅନ୍ୟତମ ବୋଲି ପରିଚିତ । "ଶାରଙ୍ଗଧର ଚରିତ" ମଧ୍ୟ ତାଙ୍କର କୃତି । ବର୍ଣ୍ଣନା ଚାତୁରୀରେ ଏହା ଶ୍ରେଷ୍ଠ ହେଲେହେଁ "ବିଜୟ ବିଲାସମ୍" ଅପେକ୍ଷା ଉତ୍କୃଷ୍ଟ ନୁହେଁ ।

ଏହି ଯୁଗରେ ଲୋକପ୍ରିୟ ଦ୍ୱିପଦ ଏବଂ ମଞ୍ଜରୀ ଛନ୍ଦରେ ରାଜବଂଶୀୟ କବି ଓ ନାରୀ କବିମାନେ ସଂଖ୍ୟାଧିକ କାବ୍ୟ କବିତା ରଚନା କରିଥିଲେ । ରାଗ ରାଗିଣୀ, ଶୃଙ୍ଗାରାଧିକ୍ୟ, ଏହି ରଚନାମାନଙ୍କର ଲକ୍ଷଣ । କଳା, ବିଜ୍ଞାନ ଚର୍ଚ୍ଚା ଏବଂ କଥ୍ୟ ଭଙ୍ଗୀରେ ଲିଖିତ ସରଳ ଗଦ୍ୟ ସାହିତ୍ୟ ସେହି ଅଞ୍ଚଳର ଲେଖକମାନଙ୍କ ଦ୍ୱାରା ଆରମ୍ଭ ହୋଇଥିଲା । "ନାୟକାଭ୍ୟୁଦୟ" ଶୀର୍ଷକ ଜୀବନୀ ରଚନା ତାଞ୍ଜୋର ଏବଂ ମଦୁରାଠାରେ ଲିଖିତ ହୋଇଥିଲା । ବଣିଆ, ତନ୍ତୀ ପ୍ରଭୃତି ଜାତିର ବହୁ ବିଶିଷ୍ଟ କବି ଏହି ସମୟରେ ଦେଖା ଦେଇଥିଲେ । ବିଳାସ ଏବଂ ଆଲଙ୍କାରିକ ଭାଷାରେ ଶୃଙ୍ଗାର ବର୍ଣ୍ଣନା କରାଯାଉଥିବାରୁ ପାଠକମାନଙ୍କ ଦ୍ୱାରା ତାହା ଆଦୃତ ହେଉଥିଲା । ନେଲୋର ଜିଲ୍ଲାର ବଣିକ ସମ୍ପ୍ରଦାୟର ଜଣେ କବି କାନ୍ଦୁକୁର ରୁଦ୍ରାୟା "ସୁଗ୍ରୀବ ବିଜୟମ୍" ରଚନା କରିଥିଲେ । କୃଷ୍ଣଦେବ ରାୟଙ୍କ ଉତ୍ତରାଧିକାରୀ ଆଚ୍ୟୁତ ଦେବରାୟଙ୍କ (୧୫୩୦-୪୨) ରାଜତ୍ୱରେ ଭଦ୍ର କବି ଏବଂ ଲିଙ୍ଗ କବି ନାମରେ ଦୁଇଜଣ କବି ଦକ୍ଷିଣରେ ଖ୍ୟାତି ଅର୍ଜ୍ଜନ କରିଥିଲେ । ତାଞ୍ଜୋର ପର୍ଯ୍ୟାୟରେ ରଘୁନାଥ ନାୟକଙ୍କ ରାଜତ୍ୱ (୧୬୦୦-୩୦) ଏବଂ ତାଙ୍କ ପୁତ୍ର ବିଜୟ ରାଘବଙ୍କ (୧୬୩୩-୭୩) ସମୟରେ ଏବଂ ତାଙ୍କ ପରେ ବହୁ କବି ଲେଖନୀ ଧାରଣ କରିଥିଲେ । ନିଜେ ସେ ଜଣେ ବଡ଼ ଲେଖକ ଥିଲେ । ସେ ତାଙ୍କ

ପିତାଙ୍କର ଜୀବନୀ "ଅଚ୍ୟୁତ ଅଭ୍ୟୁଦୟମ୍" ରଚନା କରି ପଦ୍ୟରେ ଜୀବନୀ ରଚନାର ଆଦର୍ଶ ପ୍ରତିଷ୍ଠା କରିଥିଲେ। ବାଲ୍ମୀକି ରାମାୟଣ ଅବଲମ୍ବନରେ ସେ ମଧ୍ୟ "ବାଲକାଣ୍ଡ" ପର୍ଯ୍ୟନ୍ତ ରଚନା କରିଥିଲେ। ମଦୁରାର ଜଣାଶୁଣା ଶତକ ରଚକ କବି ରୂଚପା ରାଜା ରଘୁନାଥ ନାୟକଙ୍କ ଦରବାର ପରିଦର୍ଶନ କରିଥିଲେ। 'ରାଜଗୋପାଳ ବିଳାସମ୍'ରେ ନାୟକ କୃଷ୍ଣ ତାଙ୍କ ଅଷ୍ଟ ପତ୍ନୀଙ୍କ ସହିତ ରମଣ କରିବା କଥା ବର୍ଣ୍ଣିତ। ଏହା ଚେଙ୍ଗଲଭା କଲା-କବିଙ୍କର କୃତି । ଚେଙ୍ଗଲ୍ଭା କଲା କବି, କବିତ୍ୱରେ ନାନ୍ନାୟା ଏବଂ ଶ୍ରୀ ନାଥଙ୍କ ସହିତ ତୁଳିତ ହୋଇ ଥାଆନ୍ତି। ନାରୀ କବି ପଶୁପୁଲାଟି ରଙ୍ଗଜାମ୍ମା ତାଙ୍କର ବ୍ୟଙ୍ଗାତ୍ମକ ରଚନା, ପାଣ୍ଡିତ୍ୟ ଏବଂ ଉଚ୍ଚ କବିତ୍ୱ ଯୋଗୁଁ ନରପତି ବିଜୟ ରାଘବ ନାୟକଙ୍କ ଦରବାରରେ ସୁବର୍ଣ୍ଣ ଅଭିଷିକ୍ତ ହୋଇଥିଲେ। ତେଲୁଗୁରେ ଜଣେ ନାରୀ କବି ପକ୍ଷରେ ଏପରି ସମ୍ମାନ ପ୍ରାପ୍ତି ପ୍ରଥମ। ଶୁଣାଯାଏ ଯେ ଆଠଗୋଟି ଭାଷାରେ ତାଙ୍କର ପ୍ରବେଶ ଥିଲା । ମାନ୍ନାରୁଦାସବିଳାସମ୍ ଏବଂ ଉଷା ପରିଣୟମ୍ ତାଙ୍କର ପ୍ରବନ୍ଧ ଜାତୀୟ ରଚନା। ପ୍ରଥମ ରଚନା ଗୀତିନାଟ୍ୟ ସଦୃଶ ଏବଂ ଦ୍ୱିତୀୟ ରଚନାରେ ରାମାୟଣ ମହାଭାରତ ତଥା ଭାଗବତର ମିଳିତ ପ୍ରଭାବ ଦେଖାଯାଏ। ୧୬୭୪ ମସିହାରେ ମରହଟ୍ଟାମାନଙ୍କ ଦ୍ୱାରା ତାଞ୍ଜୋର ଅଧିକୃତ ହେଲା। ସେଠାରେ ୧୮୫୮ ମସିହା ପର୍ଯ୍ୟନ୍ତ ସେମାନଙ୍କ ଉତ୍ସାହରେ ସଂସ୍କୃତ ଚର୍ଚ୍ଚାର ପ୍ରସାର ଘଟିଥିଲା। ତାଙ୍କର ଗୃହ ରଚନା ଅତ୍ୟନ୍ତ ଚିତ୍ତାକର୍ଷକ।

## ମଦୁରା ପର୍ଯ୍ୟାୟ :—(୧୫୨୯-୧୭୩୬)

ନାୟକ ବଂଶୀୟ ଶାସକମାନଙ୍କ ପୃଷ୍ଠପୋଷକତାରେ ମଦୁରାଠାରେ ଉଭୟ ଗଦ୍ୟ ଓ ପଦ୍ୟ ସାହିତ୍ୟ ହିଁ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିଥିଲା। ସ୍ଥାନପତିଙ୍କର ଲିଖିତ "ରାୟବାଚକମ୍" କୃଷ୍ଣଦେବ ରାୟଙ୍କର ଜୀବନ ଚରିତ। ଏହାର ଗଦ୍ୟ ସରଳ ଏବଂ ଏହା ପ୍ରାଚୀନ ତେଲୁଗୁ ଗଦ୍ୟ ସାହିତ୍ୟର ନିଦର୍ଶନ।

ତିରୁମଲ୍ଲ ନାୟକ (୧୬୨୩-୧୬୨୯)ଙ୍କ ରାଜତ୍ୱ ସମୟରେ ତେଲୁଗୁ ଭାଷାରେ ଯଥାର୍ଥ ଉଚ୍ଚ ସାହିତ୍ୟ ସୃଷ୍ଟି ହୋଇଥିଲା। ଶୃଙ୍ଗାର ରସ ଏହି ସମୟର ରଚନାମାନଙ୍କରେ ପ୍ରାଧାନ୍ୟ ଲାଭ କରିଥିଲା । ଏହି ସମୟରେ ବହୁ କବି ଲେଖନୀ ଧାରଣ କରିଥିଲେ। ସମ୍ମୁଖମ୍ ଭେଙ୍କଟ କୃଷ୍ଣାପ୍‌ପା ଗଦ୍ୟରେ "ଜୈମିନୀ ଭାରତମ୍" ଲେଖିଥିଲେ। କାନ୍ଧୁର୍ଭି ଭେଙ୍କଟ ଚଲପତି ଉଚ୍ଚକୋଟୀର ପ୍ରବନ୍ଧକାବ୍ୟ ରଚନା କରିଥିଲେ। ପୁଦୁକୋଟା ଏବଂ ମହୀଶୂରଠାରେ ତେଲୁଗୁ ସାହିତ୍ୟ ପ୍ରୋତ୍ସାହନ ଲାଭ କରିଥିଲା। ପୁଦୁକୋଟା ତାମିଲ ଅଞ୍ଚଳ ତଥା ତାର ଶାସକ ବିଜୟ ରଘୁନାଥ (୧୭୩୦-୧୭୬୯) ତିରୁମଲ ନାୟକ (୧୬୨୩-୧୫୨୯)ଙ୍କ ରାଜତ୍ୱ ସମୟରେ ଯଥାର୍ଥ ଉଚ୍ଚ ସାହିତ୍ୟ ସୃଷ୍ଟି ହୋଇଥିଲା।

ପୁଦୁକୋଟା ତାମିଲ ଅଞ୍ଚଳ, ମାତ୍ର ସେଠାରେ ଶାସକ ବିଜୟ ରଘୁନାଥ (୧୭୩୦-୧୭୬୯) ତେଲୁଗୁ କବିମାନଙ୍କର ପୃଷ୍ଠପୋଷକ ଥିଲେ । ସେମାନଙ୍କ ମଧ୍ୟରେ କୋଟି ଭେଙ୍କନା ଅମରକୋଷ ଆଦର୍ଶରେ ତେଲୁଗୁ ଅଭିଧାନ "ଆନ୍ଧ୍ର ଭାଷାର୍ଣ୍ଣବମ୍" ପଦ୍ୟାକାରରେ ପ୍ରଣୟନ କରିଥିଲେ । "ପାର୍ବତୀ ପରିଣୟମ" କାବ୍ୟର ଲେଖକ ରାୟ ରଘୁନାଥ ତଣ୍ଡିମାନ (୧୭୬୯-୮୯) ନିଜ କୃତିରେ ଆଲଙ୍କାରିକ ଛଟା ପ୍ରଦର୍ଶନ କରିଥିଲେ ।

ମହୀଶୂର ଶାସକ ମଧ୍ୟ ତେଲୁଗୁ କବିମାନଙ୍କୁ ଉତ୍ସାହ ପ୍ରଦାନ କରିଥିଲେ । ୧୫୩୭ରେ ବାଙ୍ଗାଲୋର ସହର ନିର୍ମାଣ ପାଇଁ ପ୍ରସିଦ୍ଧ ପେଦାକେଂପା ଗୌଡ଼ା ନିଜେ ଗଙ୍ଗାଗୌରୀ ବିଳାସମ୍ ରଚନା କରିଥିଲେ । ଏହା "ଯକ୍ଷଗାନ" ଶୈଳୀରେ ଲିଖିତ ଏବଂ ପ୍ରଭୁ ସୋମେଶ୍ୱରଙ୍କୁ ଉତ୍ସୃଷ୍ଟ । ସେଥିପାଇଁ କୃଷ୍ଣଦେବ ରାୟ ଓ ଅଚ୍ୟୁତ ଦେବରାୟ ତାଙ୍କୁ ସମ୍ମାନ ଜ୍ଞାପନ କରିଥିଲେ । ତେଲୁଗୁ ସାହିତ୍ୟର ସର୍ବପ୍ରଥମ ନାରୀ କବି ଜନୈକ କୁମ୍ଭକାର କନ୍ୟା "କୁମାରୀ ମୋଲ୍ଲା" ଏହି ଅଞ୍ଚଳର ବାସିନ୍ଦା । କେତେକ, ପ୍ରମାଣ କରିଥାନ୍ତି ଯେ କୁମାରୀ ମୋଲ୍ଲା ତ୍ରୟୋଦଶ ଶତାବ୍ଦୀର କବି ଆଉ ଅନ୍ୟମାନେ ଯୁକ୍ତି କରିଥାନ୍ତି ଯେ, ସେ ଷୋଡ଼ଶ ଶତାବ୍ଦୀର କବି ଏବଂ ସେ କୃଷ୍ଣଦେବରାୟଙ୍କ କନ୍ୟା ମୋହନାଙ୍ଗୀ (ରାଜ ରାଜଙ୍କ ପତ୍ନୀ)ଙ୍କର ସମସାମୟିକ । କୁମାରୀ ମୋଲ୍ଲାରାମାୟଣ ରଚନା କରିଥିଲେ । ତାଙ୍କର କବିତ୍ୱ, ବର୍ଣ୍ଣନା କୌଶଳ ସେ ଯୁଗରେ ଆଦୃତ ହୋଇଥିଲା ।

ଗୋଲକୋଣ୍ଡା ନବାବ ଇବ୍ରାହିମ୍ କୁତବ୍ ସାହା (୧୫୫୦-୮୧) ତେଲୁଗୁ ସାହିତ୍ୟର ଜଣେ ପରମ ପୃଷ୍ଠପୋଷକ ଥିଲେ । ଅବିମିଶ୍ର ତେଲୁଗୁ ଶବ୍ଦରେ ପର୍ନ୍ନି-କାଣ୍ଟି ତେଲଗନ୍ନା "ଯଯାତି ଚରିତ୍ର" ରଚନା କରିଥିଲେ । ତାର ଆଦର୍ଶରେ କୁଚିମାଂଚି ତିମା କବି ଶୁଦ୍ଧ ତେଲୁଗୁରେ "ନୀଳ ସୁନ୍ଦରୀ ପରିଣୟମ" ଲେଖିଥିଲେ । "ସୁଗ୍ରୀବ ବିଜୟମ୍"ର କବି କାନ୍ଦୁକୁରୁ ରୁଦ୍ରାୟାଙ୍କୁ ଇବ୍ରାହିମ ପ୍ରତିଭାର ସ୍ୱୀକୃତି-ସ୍ୱରୂପ ଭୂସଂପତ୍ତି ଦାନ କରିଥିଲେ । କବି ମାଲ୍ଲା ରେଡ଼୍ଡି ଏବଂ କବି ଆଦ୍ଙ୍କୀ ଗଙ୍ଗାଧର ମଧ୍ୟ ନବାବଙ୍କର ପୃଷ୍ଠପୋଷକତା ଲାଭ କରିଥିଲେ । ଏଲ୍ଲକୁଚିବାଲ୍ଲ ସରସ୍ୱତୀ (ଭଟର-ସରସ୍ୱତୀ କବି ମହୋପାଧ୍ୟାୟ ୧୬୩୦-୧୬୪୦) ଜଣେ ଉଚ୍ଚ କୋଟୀର ସଂସ୍କୃତ ପଣ୍ଡିତ ଥିଲେ ଏବଂ "ଆନ୍ଧ୍ର ଶବ୍ଦ ଚିନ୍ତାମଣି"ର ଟୀକା, ରାମାୟଣ, ଭାଗବତ ଏବଂ ମହାଭାରତ ବିଷୟକ ତ୍ରି ଅର୍ଥୀ କାବ୍ୟମ୍ ସେହି ପଣ୍ଡିତଙ୍କ ରଚନା । ଏହାର ନାମ "ରାଘବ ଯାଦବ ପାଣ୍ଡବୀୟମ୍" । "ଚନ୍ଦ୍ରିକା ପରିଣୟମ୍" ଏବଂ ମାଲା ଭୂପାଲୀୟମ୍ ତାଙ୍କର ରଚନା, ଶେଷୋକ୍ତ ଭଟ୍ଟିହରିଙ୍କ ସୁଭାଷିତମ ଅବଲମ୍ବନରେ ଲିଖିତ । ଚନ୍ଦ୍ରିକା ପରିଣୟମ୍ ରେ ଭୀମଙ୍କର କାଶୀ ରାଜଙ୍କ କନ୍ୟା ଚନ୍ଦ୍ରିକା ସହିତ ବିବାହ ବର୍ଣ୍ଣିତ ।

ଗୀତ ପ୍ରଣେତା ଭାବରେ କବି ତ୍ୟାଗରାଜ୍ ଏବଂ କ୍ଷେତ୍ରୟଙ୍କର ତେଲୁଗୁ ସାହିତ୍ୟରେ ନାମ ସ୍ମରଣୀୟ । ଭକ୍ତି ଏବଂ ସଂଗୀତମୟତ୍ୱ ଦୃଷ୍ଟିରେ ତ୍ୟାଗରାଜଙ୍କର "ଗୀତିକା"ର ସ୍ଥାନ ଅତି ଉଚ୍ଚରେ । ରାଗଭାବ ଏବଂ ସାହିତ୍ୟଭାବ ଯୋଗୁଁ ତ୍ୟାଗ ରାଜାଙ୍କ ରଚନା ବିଶେଷ ଆଦୃତ । ସେ ତାଞ୍ଜୋରର ମରହଟ୍ଟା ଶାସକଙ୍କ ଅମଳରେ ଜୀବିତ ଥିଲେ, ସଂସ୍କୃତ ଏବଂ ତେଲୁଗୁ ସାହିତ୍ୟରେ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା । ତାଙ୍କର ଉପାସ୍ୟ ଦେବତା ଥିଲେ ଶ୍ରୀ ରାମଚନ୍ଦ୍ର । ତାଙ୍କର "ପ୍ରହ୍ଲାଦ" ଏବଂ "ନୌକାଚରିତ" ଦୁଇଗୋଟି ରଚନା ପାଠକ ପ୍ରାଣରେ ଭଗବତ୍ ଚିନ୍ତା ଉଦ୍ରେକ କରେ ।

## କ୍ଷୟ ଓ ଅସ୍ଥିରତାର ସମୟ—

୧୭୫୦ରୁ ୧୮୫୦ ପର୍ଯ୍ୟନ୍ତ ଏହି ଶତବର୍ଷ ତେଲୁଗୁ ସାହିତ୍ୟରେ ସମଧିକ ସୃଷ୍ଟି ବୈଚିତ୍ର୍ୟ ଏବଂ ସାହିତ୍ୟିକ ପରିପୁଷ୍ଟି ଦ୍ୱାରା ସେତେ ଚିହ୍ନିତ ହୋଇ ନଥିଲା । ତାର କାରଣ ମୋଗଲମାନଙ୍କ ଦାକ୍ଷିଣାତ୍ୟ ଅଭିଯାନ ଫଳରେ ଲୋକମାନଙ୍କ ମନରେ ନୈରାଶ୍ୟ ଦେଖା ଯାଇଥିଲା । ଦେବଦେବୀଙ୍କ ଉଦ୍ଦେଶ୍ୟରେ ସ୍ତୁତି ପ୍ରାର୍ଥନାମୂଳକ ବହୁ ଶତକ ରଚିତ ହୋଇଥିଲା । ଆତ୍ମନିର୍ଭରଶୀଳତା ଏବଂ ଉଦ୍ଦାମ ଜାତୀୟ ଚେତନା ସ୍ଥାନରେ ଦେଖା ଦେଇଥିଲା ଦୁଃଖ ଏବଂ ବିଷାଦର ଛାୟା । ଗୋକୁଲପତି କୂର୍ମନାଥମ୍ ରଚିତ "ନୃସିଂହ ଶତକମ୍", କାଶ୍ମଲୁ ପୁରୁଷୋତ୍ତମ କବିଙ୍କ ରଚିତ "ଆନ୍ଧ୍ର ନାୟକ ଶତକମ୍" ଏବଂ ନରସିଂହ ଦାସ ଙ୍କ ବିରଚିତ ଭଦ୍ରାଦ୍ରି "ରାମ ଶତକମ୍" ଏହି ସମୟରେ କବି ମାନସର ପରିଚୟ ଦେଇଥାଏ । ତଦାନୀନ୍ତନ ସମାଜ ଉପରେ ଏହି ଭକ୍ତିପୂତ ଶତକ ରଚନା ସମୂହର କମ୍ ପ୍ରଭାବ ପଡି ନଥିଲା । ଅଷ୍ଟାଦଶ ଶତାବ୍ଦୀର ମଧ୍ୟ ଭାଗରେ ଜୀବିତ ଥିବା ଅଡିଦମ୍ ସୁରକବି ଗୋଦାବରୀ ଏବଂ ବିଶାଖା ପତ୍ତନ ଜିଲ୍ଲାର ଅଧିପତିମାନଙ୍କର ସାହାଯ୍ୟପ୍ରାପ୍ତ ହୋଇଥିଲେ ଏବଂ ସେ ଜଣେ ନିଷ୍ଠାପର ସାଧକ କବି ଥିଲେ । ତାଙ୍କର 'ଚନ୍ଦ୍ରମତି ପରିଣୟମ୍' ଏକ ପ୍ରେମ ମୂଳକ କାବ୍ୟ । ପଦ୍ୟରେ ସେ ଅଲଙ୍କାର ଏବଂ ବ୍ୟାକରଣ ସୂତ୍ର ରଚନା କରିଥିବାର ଜଣାଯାଏ । 'ରାଜଶେଖର ବିଳାସମ୍' 'ସ୍ୱର୍ଗପୁର ମହାତ୍ମ୍ୟ', 'ରୁକ୍ମିଣୀ କଲ୍ୟାଣମ୍'ର ପ୍ରଣେତା କୁଚିମାଂଚି ତିମ୍ମା-କବି (୧୬୯୦-୧୭୫୭) ଏହି ଶତାବ୍ଦୀର । ରୁକ୍ମିଣୀ କଲ୍ୟାଣମ୍‌ରେ ଶୃଙ୍ଗାରଧିକ୍ୟ ପ୍ରତି-ଫଳିତ । "ରସିକଜନ ମନୋଭିରାମ୍" ତାଙ୍କର ଷାଠିଏ ବର୍ଷ ବୟସ ବେଳର ଲେଖା । ସେଥିରେ ଜନୈକ ରାଜପୁତ୍ରଙ୍କର ପ୍ରେମ ପ୍ରସଙ୍ଗ ବର୍ଣ୍ଣିତ । ପିଠାପୁର ମହାରାଜା କବିଙ୍କର କବିତ୍ୱ ଶକ୍ତିରେ ମୁଗ୍ଧ ହୋଇ ତାଙ୍କୁ "କବି ସାର୍ବଭୌମ" ଉପାଧି ପ୍ରଦାନ କରି-ଥିଲେ । କୁଚିମାଂଚି ଜଗ୍‌ଗାକବି କୁଚିମାଂଚିତିମ୍ମା କବିଙ୍କର ସାନ ଭାଇ । ସେ ମଧ୍ୟ କେତେକ କାବ୍ୟ-କବିତା ରଚନା କରିଥିଲେ ଯଥା "ସୁଭଦ୍ରା ପରିଣୟମ୍", "ସୋମଦେବରାଜ୍ୟମ୍ ।" ମାତ୍ର ତାଙ୍କର ଚନ୍ଦ୍ରଲେଖା ବିଳାସମ୍ କାବ୍ୟ ବିଶେଷ ଆଦୃତ ହୋଇଥିଲା । ଏହି ସମୟର ଲିଖିତ କାବ୍ୟ କବିତାମାନଙ୍କରେ ଶବ୍ଦ ଗୁରୁତ୍ୱ ତଥା

ଅଳଙ୍କାର ମାଧୁର୍ଯ୍ୟ ବିଶେଷ ଲକ୍ଷଣ । ତାନ୍‌କାଣ୍ଡି ପାପରାଜୁ ପ୍ରବନ୍ଧ ଶୈଳୀରେ "ଉତ୍ତର ରାମାୟଣ" ପ୍ରଣୟନ କରିଥିଲେ ଏବଂ ତାଙ୍କର ବନ୍ଧୁ ପୁଷ୍ପଗିରି ତିମାନ୍ନା ଭର୍ତ୍ତୃହରିଙ୍କ ନୀତିଶତକମ୍ ତେଲୁଗୁରେ ଅନୁବାଦ କରିଥିଲେ । "ସମୀର କୁମାର ବିଜୟମ୍" ମଧ୍ୟ ତାଙ୍କର ଲେଖା ।

ଏନୁଗୁ ଲକ୍ଷ୍ମଣ କବିଙ୍କ ଦ୍ୱାରା ଅନୂଦିତ ଭର୍ତ୍ତୃହରିଙ୍କ ନୀତି ଶତକ ବିଶେଷ ଆଦୃତ ହୋଇଥିଲା । ଦ୍ୱିଅର୍ଥୀ କାବ୍ୟ ଲଙ୍କା ଦହନର କବି ସଂସ୍କୃତ ପଣ୍ଡିତ ଶିଷ୍ଟୁ କୃଷ୍ଣମୂର୍ତ୍ତି (୧୭୯୦-୧୮୭୦) ତାଙ୍କର ସମସାମୟିକ ଥିଲେ । ପିଣ୍ଡିପ୍ରୋଲୁ ଓ କୃଷ୍ଣମୂର୍ତ୍ତିଙ୍କ ମଧ୍ୟରେ ତୀବ୍ର ପ୍ରତିଯୋଗିତା ଲାଗିଥିଲା । କୃଷ୍ଣମୂର୍ତ୍ତି ଗ୍ରାମେ ଗ୍ରାମେ ବୁଲି ରାମାୟଣ ଗାନକରି ଶୁଣାଉ ଥିଲେ । ଥରେ ସେ କୌଣସି ଏକ ଭାଷାରେ ନିଜ କବିତା ପଢ଼ି ଶୁଣାଇବା ବେଳେ ପିଣ୍ଡିପ୍ରୋଲୁ ତାଙ୍କୁ ସମାଲୋଚନା କରିଥିଲେ । କୃଷ୍ଣମୂର୍ତ୍ତି ସେଥିରେ ଅପମାନିତ ହୋଇ ସେହି ସ୍ଥାନ ପରିତ୍ୟାଗ କରି ଚାଲିଗଲେ ଏବଂ ପରେ ବିଶାଖା ପତ୍ତନମ୍ ଜିଲ୍ଲାର ଏକ ନିଭୃତ ଅଞ୍ଚଳରେ ସ୍ଥାନୀୟ ନରପତିଙ୍କ ସାହାଯ୍ୟରେ ବସବାସ କରିଥିଲେ । ଆଲୋଚ୍ୟ ଯୁଗରେ ତାରିଗୋଣ୍ଡା ଭେଙ୍କମାମ୍ବା ଏବଂ ମାଦନା ସୁଭଦ୍ରାମା ହେଉଛନ୍ତି ଦୁଇଜଣ ନାରୀ କବି । ମାଦନା ସୁଭଦ୍ରାମା (୧୭୮୦-୧୮୪୮)-ଙ୍କର ଭକ୍ତିପୂତ ଶତକ ତାଙ୍କ କବିତ୍ୱର ପରିଚାୟକ । ତାରିଗୋଣ୍ଡା ଭେଙ୍କମାମ୍ବାଙ୍କର ପ୍ରଭୁ ଭେଙ୍କଟେଶ୍ୱରଙ୍କ ସଂପର୍କୀୟ କିମ୍ବଦନ୍ତୀ ଉପରେ ଆଧାରିତ । ଏହି ଯୁଗର କବି-ମାନେ ଦେଶର ଧର୍ମୀୟ, ନୈତିକ, ସାମାଜିକ ଜୀବନର ଉନ୍ନତି ନିମନ୍ତେ ସେମାନଙ୍କର କାବ୍ୟର ସୃଷ୍ଟିକୁ ନିୟନ୍ତ୍ରିତ କରିଥିଲେ ବୋଲି ଜଣାଯାଏ । ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ସାହିତ୍ୟିକ ସାଧନାରେ ଟିକିଏ ମନ୍ଥରତା ଦେଖା ଦେଇଥିଲା । ସ୍ଥାନୀୟ ଜମିଦାର ଏବଂ ଶାସକମାନଙ୍କର ପୃଷ୍ଠପୋଷକତା ଲାଭ କରି ମୁଷ୍ଟିମେୟ କବି ଲେଖନୀ ଚଳାଇଥିଲେ । ଦେଶରେ ଦୁର୍ଭିକ୍ଷ, ଅନାଟନ ଲାଗି ରହିଥିଲା ।

## ତେଲୁଗୁ ସାହିତ୍ୟରେ ଆଧୁନିକ ଯୁଗ—(୧୮୫୦-୧୯୬୮)

୧୭୯୭ ମସିହାରେ ତେଲୁଗୁ ଭାଷାରେ ସର୍ବପ୍ରଥମେ ପୁସ୍ତକ ମୁଦ୍ରିତ ହୋଇଥିଲା ଏବଂ ଏହି ଭାଷାରେ ବାଇବେଲ ୧୮୧୨ ମସିହାରେ ଅନୂଦିତ ଏବଂ ପ୍ରକାଶିତ ହୋଇଥିଲା । ଆଧୁନିକତାର ସୂତ୍ରପାତ ହେଲେହେଁ ବସ୍ତୁତଃ ପ୍ରାକ୍ ଆଧୁନିକ ଯୁଗ ସାହିତ୍ୟ ପୂର୍ବ ଯୁଗର ଧର୍ମ ଏବଂ ନୀତି ବିଚାର ଦ୍ୱାରା ନିୟନ୍ତ୍ରିତ ହୋଇଥିଲା । ଗଦ୍ୟ ରଚନାର ପ୍ରଚଳନ ସାହିତ୍ୟରେ ଆଧୁନିକତାର ପ୍ରଧାନ ଲକ୍ଷଣ ଆଧୁନିକ ଯୁଗ ମଧ୍ୟ ସାହିତ୍ୟିକ, ଆଙ୍ଗିକ ଏବଂ ଆତ୍ମିକ ଦୃଷ୍ଟିରେ ଦୁଇ ଗୋଟି ପର୍ଯ୍ୟାୟରେ ବିଭକ୍ତ—ପ୍ରଥମ ପର୍ଯ୍ୟାୟ ସାହିତ୍ୟିକ ନିର୍ମାଣ ଏବଂ ସଂଗଠନ ଦ୍ୱାରା ଚିହ୍ନିତ । ଦ୍ୱିତୀୟ ପର୍ଯ୍ୟାୟରେ ଯଥାର୍ଥତଃ ସାମାଜିକ ଓ ଜାତୀୟ ଆନ୍ଦୋଳନ ଦ୍ୱାରା ସାହିତ୍ୟରେ ସଂପୂର୍ଣ୍ଣ ନବଚେତନା ଦେଖାଦେଲା । ତେଣୁ ୧୮୫୦ରୁ ୧୯୧୫ ଏବଂ ୧୯୧୫ରୁ ୧୯୫୦ ମସିହା ଏସବୁ ଆଧୁନିକ ଯୁଗର ସମୟ ନିରୂପିତ । ଏହି ସନ୍ଧିକ୍ଷଣରେ ପ୍ରାଚୀନ

ଏବଂ ନବୀନ ଆଦର୍ଶ ମଧ୍ୟରେ ଯଥାର୍ଥ ପ୍ରାଚୀନପନ୍ଥୀ କବି ଓ ଆଧୁନିକ ଇଂରେଜ ଶିକ୍ଷିତ ସାହିତ୍ୟିକଙ୍କ ମଧ୍ୟରେ ସଂଘର୍ଷ ଦେଖା ଦେଇଥିଲା । ରୁଚି, ଆଦର୍ଶ ଏବଂ ଚିନ୍ତାରେ ସାହିତ୍ୟରେ ନୂତନତା ସୃଷ୍ଟି କଲା । ପ୍ରାଚୀନ ପନ୍ଥୀମାନେ ତାହା ଗ୍ରହଣ କରିବାକୁ ପ୍ରସ୍ତୁତ ହୋଇ ନଥିଲେ ।

ବ୍ୟାକରଣ ଅନୁମୋଦିତ ଭାଷା କାବ୍ୟ, କବିତାରେ ବ୍ୟବହାର କରିବା ଏବଂ ନ କରିବା ଏହିପରି ଦ୍ୱିବିଧ ମତ ଦେଖାଦେଲା । କେତେକ ପଣ୍ଡିତ ପ୍ରାଚୀନ ମହାଭାରତର ଭାଷାଦର୍ଶ ସପକ୍ଷରେ ପ୍ରବଳ ଯୁକ୍ତି ପ୍ରଦର୍ଶନ କରିଥିଲେ । ସେମାନଙ୍କ ମତରେ "ଯାହା ପୁରୁଣା ତାହା ଭଲ" । ଅନ୍ୟ ଦିଗରେ କେହି କେହି ନବ ଅଭିବ୍ୟକ୍ତି ଏବଂ ନବ ନବ ଶୈଳୀ ପ୍ରତି ମଧ୍ୟ ଆକୃଷ୍ଟ ହୋଇଥିଲେ । ମଦୁରା ତାଂଜୋର ପ୍ରଭୃତି ଅଞ୍ଚଳର କବିମାନଙ୍କର ଶୈଳୀ ମଧ୍ୟ ଅନୁସୃତ ହେଲା । ଲୋକପ୍ରିୟ ସରଳ ଭାଷାରେ ବହୁ ଗଦ୍ୟ ରଚନା ଲିଖିତ ହୋଇଥିଲା । କ୍ରମେ ଲିଖିତ ଏବଂ କଥିତ ଭାଷା ସଂପର୍କୀୟ ସଂଘର୍ଷ ଘନୀଭୂତ ହେଲା । ପଣ୍ଡିତ ରବିପତି ସୁରମୂର୍ତ୍ତି ଶିଶୁମାନଙ୍କ ନିମନ୍ତେ କଥିତ ଭାଷାରେ ପଞ୍ଚତନ୍ତ୍ର ଏବଂ "ଦ୍ୱାତ୍ରିଂଶ ଶାଳଭଞ୍ଜିକା" ଲେଖିଥିଲେ । ଲୋକପ୍ରିୟ ତେଲୁଗୁ ଭାଷା ପ୍ରାୟ ବହୁବର୍ଷ ଅଧିକାଂଶଙ୍କର ଆଦର୍ଶ ହେଲା ଏବଂ ଲୋକପ୍ରିୟ ଗଦ୍ୟରେ ନାନ୍ନାୟାଙ୍କ ମହାଭାରତ "ଆଦିପର୍ବର" ଟୀକା ଲେଖା ଯାଇଥିଲା । କିନ୍ତୁ ମାଡ୍ରାସ ପ୍ରେସିଡେନ୍‌ସି କଲେଜର ପଣ୍ଡିତ ଚିନ୍ନାୟାସୁରି (୧୮୦୬—୬୨) ଆଲଙ୍କାରିକ, ଛନ୍ଦୋବଦ୍ଧ ଗୁରୁଗମ୍ଭୀର ଗଦ୍ୟରେ ପଞ୍ଚତନ୍ତ୍ର ଏବଂ ହିତୋପଦେଶ ଅବଲମ୍ବନରେ "ନୀତି ଚନ୍ଦ୍ରିକା", ମିତ୍ରଲାଭ, ମିତ୍ରଭେଦ, ରଚନା ଲେଖି ଲୋକପ୍ରିୟ ଗଦ୍ୟ ରଚନାର ଗତି ସଂପୂର୍ଣ୍ଣ ବଦଳାଇ ଦେଲେ । ଛାତ୍ରମାନଙ୍କ ପାଇଁ ତାଙ୍କର ଗଦ୍ୟ ରଚନା ଆଦର୍ଶ ବୋଲି ଘୋଷିତ ହୋଇଥିଲା । ସେ ବାଲ ବ୍ୟାକରଣ ଲେଖିଥିଲେ, ଯାହାଫଳରେ ୧୯୧୦ ମସିହା ପର୍ଯ୍ୟନ୍ତ ଅପ୍ରତିଦ୍ୱନ୍ଦ୍ୱୀ ଭାବରେ ତାଙ୍କର ଗଦ୍ୟାଦର୍ଶ ଅନୁସୃତ ହୋଇଥିଲା । ବିଂଶ ଶତାବ୍ଦୀର ପ୍ରଥମ ପାଦରେ ଯେତେବେଳେ ତେଲୁଗୁ ଆନ୍ଦୋଳନ ମୁଣ୍ଡ ଟେକି ଉଠିଲା, ସେତେବେଳେ କ୍ରମେ ଚିନ୍ନାୟାସୁରୀଙ୍କର ଆଲଙ୍କାରିକ ଗଦ୍ୟରୀତି ଉପେକ୍ଷିତ ହେଲା ଏବଂ ଲୋକପ୍ରିୟ ଗଦ୍ୟରୀତି ପୁନଃ ପ୍ରବର୍ତ୍ତିତ ହେଲା । ଅବଶ୍ୟ ଚିନ୍ନାୟାସୂରୀଙ୍କର ଗଦ୍ୟ ଶୈଳୀ ଅନୁକରଣକାରୀମାନଙ୍କ ମଧ୍ୟରେ କୋକ୍କଣ୍ଡ ରାମଚନ୍ଦ୍ର ଶାସ୍ତ୍ରୀ (୧୮୧୬—୧୯୦୦) ନାଗପୁଡ଼ୀ କୁପ୍ପୁସାମାୟା (୧୮୬୫—୧୯୫୧)ଙ୍କର ନାମ ଉଲ୍ଲେଖ କରାଯାଇ ପାରେ । କିନ୍ତୁ ଏହି ଯୁଗରେ ଗଦ୍ୟର ନୂତନ ମାର୍ଗ ପ୍ରଦର୍ଶନ କଲେ ଆଧୁନିକ ଯୁଗର ପ୍ରତିଷ୍ଠାତା ସାହିତ୍ୟିକ କାନ୍ଦୁକୁରି ବୀରେଶଲିଙ୍ଗମ୍, ଚିଲକମୂର୍ତ୍ତି ଲକ୍ଷ୍ମୀନରସିଂହମ୍ । ପ୍ରବନ୍ଧ ଲେଖା ମଧ୍ୟ ଏହି ପ୍ରାକ୍ ଆଧୁନିକକାଳରେ ଅନୁସୃତ ହୋଇଥିଲା । ମନ୍ତ୍ରୀପ୍ରଗଡ଼ା ସୂର୍ଯ୍ୟ ପ୍ରକାଶ କବି (୧୮୦୮—୧୮୬୩) ଏବଂ ଓଡ଼ିଶାର ଜୟପୁର ମହାରାଜା ବିକ୍ରମଦେବ ବର୍ମା (୧୮୬୯—୧୯୫୧) ଏବଂ ମଡ଼ପ୍ରା ଭେଙ୍କଟ କବି (୧୮୫୬—୧୯୦୩) ଏହି ପ୍ରବନ୍ଧ

ଶାସ୍ତ୍ରୀୟ କବିତାର ସମର୍ଥକ ଥିଲେ । ଆନ୍ଧ୍ରର ଅନେକ କବି ପଣ୍ଡିତ ପୁରାତନ କାବ୍ୟଧାରାକୁ ବଞ୍ଚେଇ ରଖିବା ପାଇଁ ଚେଷ୍ଟିତ ଥିଲେ । ଅବଧାନମ୍, ଅଷ୍ଟାବଧାନମ୍ ଏବଂ ଶତାବଧାନମ୍, ଏହି ପ୍ରାକ୍-ଆଧୁନିକ ଯୁଗର ଆନ୍ଧ୍ରର ଏକ ଲକ୍ଷଣ । ଅବଧାନୀ-ମାନେ ମୁହେଁ ମୁହେଁ କବିତା ରଚନା କରି ଶ୍ରୋତୃ ମଣ୍ଡଳୀକୁ ଶୁଣାଇ ପାରୁଥିଲେ । ସେମାନଙ୍କ କବିତା ରଚନା କାଗଜ କଲମକୁ ଅପେକ୍ଷା କରୁନଥିଲା । ତେଲୁଗୁ ଭାଷାରେ ସର୍ବପ୍ରଥମ ଅବଧାନୀ ଥିଲେ ମାଡାରୂସୀ ଭେଙ୍କଟରାୟଙ୍ଗ । ତାଙ୍କର ପ୍ରେରଣାରେ ସୁବ୍ରାୟୁ ଶାସ୍ତ୍ରୀ (୧୮୫୩—୧୯୦୯) ଏବଂ କୃଷ୍ଣ ଶାସ୍ତ୍ରୀ (୧୮୫୬—୧୯୧୨) ପିଠାପୁର ରାଜଦରବାରରେ ଶତାବଧାନ ଆବୃତ୍ତି କରିଥିଲେ । ୧୯୨୦ ମସିହା ପର୍ଯ୍ୟନ୍ତ ତେଲୁଗୁ ରାଜ୍ୟରେ ଏତାଦୃଶ କବିତାବୃତ୍ତି ଏବଂ ତୀବ୍ର ଆବୃତ୍ତି ପ୍ରତିଯୋଗିତା ଲାଗି ରହିଥିଲା । ମୁହେଁ ମୁହେଁ ପଦ୍ୟ ରଚନା ସାମର୍ଥ୍ୟହିଁ ପ୍ରତିଷ୍ଠିତ କବିମାନଙ୍କର ଯୋଗ୍ୟତା ଥିଲା । ଏହି ପ୍ରସଙ୍ଗରେ ତିରୁପତି ଭେଙ୍କଟେଶ୍ୱର କବିଦ୍ୱୟଙ୍କର ପ୍ରସିଦ୍ଧି ସର୍ବବାଦୀସମ୍ମତ । ଦିବାକରଲ୍ଲ ତିରୁପତି ଶାସ୍ତ୍ରୀ (୧୮୭—୧୯୧୯) ଚେଲ୍ଲପିଲ୍ଲା ଭେଙ୍କଟ ଶାସ୍ତ୍ରୀ (୧୮୭୦—୧୯୫୦) ଯଥାକ୍ରମେ ପାଣ୍ଡିତ୍ୟ ଏବଂ ପ୍ରଖର କବିତ୍ୱ ନିମନ୍ତେ ପ୍ରସିଦ୍ଧ । ଆନ୍ଧ୍ରର ପ୍ରଥମ ରାଷ୍ଟ୍ର-ସ୍ୱୀକୃତ କବି ହେଉଛନ୍ତି ଭେଙ୍କଟ ଶାସ୍ତ୍ରୀ । ୧୯୪୯ ମସିହାରେ ତାଙ୍କୁ ଭାରତୀୟ ସାଧାରଣତନ୍ତ୍ର ଦ୍ୱାରା ସମ୍ବର୍ଦ୍ଧିତ କରାଯାଇଥିଲା । ଆନ୍ଧ୍ରର ବହୁ କବି ତାଙ୍କୁ ଗୁରୁବୋଲି ସ୍ୱୀକାର କରିଥିଲେ—ଯଥା ପିଙ୍ଗଲି ଲକ୍ଷ୍ମୀକାନ୍ତମ୍ କବି ସମ୍ରାଟ ବିଶ୍ୱନାଥ ସତ୍ୟନାରାୟଣ ।

ଗିଡଗୁ ଭେଙ୍କଟ ରାମମୂର୍ତ୍ତି ଏବଂ ଗୁରୁଜାଡ଼ା ଭେଙ୍କଟ ଅପ୍‌ପାରାଓ(୧୮୬୧-୧୯୧୬) ତେଲୁଗୁ ସାହିତ୍ୟରେ ନୂତନ ଆନ୍ଦୋଳନର କର୍ଣ୍ଣଧାର ଥିଲେ । ଏହି ପ୍ରାକ୍ ଆଧୁନିକ ଯୁଗରେ ବହୁ ସଂସ୍କୃତ ପଣ୍ଡିତଙ୍କର ଆବିର୍ଭାବ ହୋଇଥିଲା । ପିଠାପୁର ମହାରାଜାଙ୍କ ଦରବାରରେ—ଭେଙ୍କଟ ରାମଶାସ୍ତ୍ରୀ (୧୮୮୩—୧୯୩୯) ଭେଦୁଲୁ ରାମକୃଷ୍ଣ ଶାସ୍ତ୍ରୀ (୧୮୮୯—୧୯୧୮) କବି ରୂପେ ନିଯୁକ୍ତ ହୋଇଥିଲେ । ଉଭୟେ ଏକ ପରିବାରର ଥିଲେ । ଭେଦୁଲୁ ରାମକୃଷ୍ଣ ୧୧ ବର୍ଷ ଏବଂ ୧୪ ବର୍ଷ ବୟସରେ ନରକାସୁର ବିଯୋଗମ୍ ଯଥାକ୍ରମେ—ଦମୟନ୍ତୀକଲ୍ୟାଣମ ଶୁଦ୍ଧ ତେଲୁଗୁ ଭାଷାରେ ରଚନା କରିଥିଲେ । ପଣ୍ଡିତ ପରବସ୍ତୁ ରଙ୍ଗାଚାରୀ (୧୮୨୨—୧୯୦୦) ସହଜ ତେଲୁଗୁରେ ବେଦ, ଉପନିଷଦ, ଅଲଙ୍କାର ଶାସ୍ତ୍ର ଅନୁବାଦ କରିଥିଲେ । ମୁଡ଼ୁମ୍ବା ନୃସିଂହ ଚାରୁଲୁ (୧୮୪୧—୧୯୨୭) ଓ ମେଡ଼ା ପଲ୍ଲୀ ଭେଙ୍କଟ ରମାନାଚାରୁଲୁ (୧୮୬୨—୧୯୪୩) ଉଭୟେ ପ୍ରବୀଣ ସଂସ୍କୃତ ପଣ୍ଡିତ, ଉଭୟେ ସଂସ୍କୃତ ଅନୁବାଦ ଏବଂ ମୌଳିକ ସୃଷ୍ଟି ନିମନ୍ତେ ସ୍ମରଣୀୟ । ଚିନ୍ନଲ ନାରାୟଣ ଶାସ୍ତ୍ରୀ (୧୮୮୧—୧୯୩୨) ଙ୍କର ପଦ୍ୟରେ ଲିଖିତ ନାରାୟଣୀୟ "ଆନ୍ଧ୍ର ବ୍ୟାକରଣମ୍" ପରବର୍ତ୍ତୀ ସାହିତ୍ୟିକ ବିକାଶ ପକ୍ଷେ ସହାୟକ ହୋଇଥିଲା । କାଲୁରି ଭେଙ୍କଟ ରାମଶାସ୍ତ୍ରୀ (୧୮୫୭—୧୯୨୮) ଙ୍କର ଚିନ୍ନାୟାସୂରିଙ୍କ ବାଲ ବ୍ୟାକରଣମର ଟୀକା "ଗୁପ୍ତାର୍ଥକ ପ୍ରକାଶିକା" ଏହି ସମୟର

ଲେଖା କିନ୍ତୁ ତାଙ୍କର କାଳିଦାସଙ୍କ "ମେଘ ସନ୍ଦେଶ"ର ଅନୁବାଦ ଏକ ଶ୍ରେଷ୍ଠ ରଚନା । ବ୍ରିଟିଶ ସରକାରଙ୍କଠାରୁ ମହାମହୋପାଧ୍ୟାୟ ପଦବୀ ପାଇବାରେ କୋକଣ୍ଡା ଭେଙ୍କଟ ରତ୍ନମ୍ (୧୮୪୨—୧୯ ୫) ହେଉଛନ୍ତି ପ୍ରଥମ ଆନ୍ଧ୍ର ପଣ୍ଡିତ । ବୀରେଶ ଲିଙ୍ଗମ୍‌ଙ୍କ ସମ୍ପାଦିତ "ବିବେକ ବର୍ଦ୍ଧିନୀ" କୋକଣ୍ଡାଙ୍କ ସମ୍ପାଦିତ "ଆନ୍ଧ୍ରଭାଷା ସଞ୍ଜିବନୀ" ପୁଣ୍ଡାରାମକୃଷ୍ଣଙ୍କ ସଂପାଦିତ "ଅମୁଦ୍ରିତ ଗ୍ରନ୍ଥ ଚିନ୍ତାମଣି" ପ୍ରଭୃତି ପତ୍ରିକାମାନଙ୍କ ମାଧ୍ୟମରେ ତୁମୁଳ ବାଦାନୁବାଦ ଏହି ସମୟର ସାହିତ୍ୟିକ ଇତିହାସର ଆକର୍ଷଣୀୟ ପର୍ଯ୍ୟାୟ ।

ଊନବିଂଶ ଶତାବ୍ଦୀର ଶେଷ କୋଡିଏ ବର୍ଷର ପ୍ରଧାନ ତେଲୁଗୁ ପତ୍ରିକା ଅମୁଦ୍ରିତ ଗ୍ରନ୍ଥ 'ଚିନ୍ତାମଣି' ୧୯୦୪ ମସିହାରେ ବନ୍ଦ ହୋଇଥିଲା । ପୁଣ୍ଡଲ ରାମକୃଷ୍ଣୟା (୧୮୬୪—୧୯୦୪) ଥିଲେ ଏହାର ସଂପାଦକ । ଊନବିଂଶ ଶତାବ୍ଦୀର ଶେଷ ଭାଗର ଶ୍ରେଷ୍ଠ ତେଲୁଗୁ କବିଥିଲେ ମାଣ୍ଡପକା ପାର୍ବତୀଶ୍ୱର ଶାସ୍ତ୍ରୀ । ଉପରୋକ୍ତ ପତ୍ରିକା ଯୋଗୁଁ ଅନେକ କବି ପଣ୍ଡିତ ପ୍ରସିଦ୍ଧି ଲାଭ କରିଥିଲେ । କୋକଣ୍ଡାଙ୍କର ନାଟକମାନଙ୍କର ଭାଷାଗତ ତ୍ରୁଟୀ ଏବଂ ଶୈଳୀ ଭେଦମ୍ ଭେଙ୍କଟ ରାୟ ଶାସ୍ତ୍ରୀଙ୍କ ଦ୍ୱାରା (୧୮୫୩—୧୯୨୯) ସମାଲୋଚିତ ହେଲା ଏବଂ ସମାଲୋଚନାର ପ୍ରତି ସମାଲୋଚନା ମଧ୍ୟ ପ୍ରକାଶିତ ହେଲା । ସେହି ଭେଙ୍କଟ୍ ରାୟ ଶାସ୍ତ୍ରୀ ଜଣେ ଉଚ୍ଚ ଧରଣର ପଣ୍ଡିତ ଥିଲେ ଏବଂ ସେ ଶ୍ରୀନାଥଙ୍କର "ଶୃଙ୍ଗାର ନୈଷଧମ୍", ଏବଂ କୃଷ୍ଣଦେବ ରାୟଙ୍କର "ଅମୁକ୍ତ ମାଲ୍ୟଦା" ଚେମାକୁର ଭେଙ୍କଟ କବିଙ୍କର "ବିଜୟ ବିଳାସମ୍", ସାରଙ୍ଗଧର ବିଳାସ ପ୍ରଭୃତି ପ୍ରାଚୀନ ଗ୍ରନ୍ଥର ସଟୀକ ସଂସ୍କରଣ ପ୍ରକାଶ କରିଥିଲେ । ତାଙ୍କର ନାଟକ ତ୍ରୟ ଯଥା—"ଉଷା, ବୋବିଲ ଏବଂ ପ୍ରତାପରୁଦ୍ରୀୟମ୍ ଓ ଅନୁବାଦ ସମୂହ "ସାହିତ୍ୟ ଦର୍ପଣ" ଏବଂ "ଉତ୍ତର ରାମଚରିତ" ନାଗାନନ୍ଦମ୍ ଅଭିଜ୍ଞାନ ଶକୁନ୍ତଳମ୍ ମାଳବିକାଗ୍ନି ମିତ୍ର ରତ୍ନାବଳୀ ତାଙ୍କ ସାହିତ୍ୟିକ କୃତିତ୍ୱର ଉଜ୍ଜ୍ୱଳ ସ୍ୱାକ୍ଷର ପ୍ରଦାନ କରୁଛି । "ପ୍ରତାପରୁଦ୍ରୀୟମ୍" ନାଟକରେ ଗୌଣ ପାତ୍ର-ମାନଙ୍କ ମୁହଁରେ କଥିତ ଭାଷା ବ୍ୟବହୃତ ହୋଇଥିଲା । ଶୁଦ୍ଧ ସାହିତ୍ୟିକ ଭାଷାର ସମର୍ଥକମାନେ ଏଥିରେ ସମାଲୋଚନା କରିଥିଲେ ।

ସଂସ୍କୃତ "ଦେବୀ ଭାଗବତ" ଏବଂ କାଳିଦାସଙ୍କର ଅଭିଜ୍ଞାନ "ଶକୁନ୍ତଳମ୍"ର ଅନୁବାଦକ ଦାସୁ ଶ୍ରୀରାମ କବି (୧୮୬୪—୧୯୦୮) ଜଣେ ବଡ଼ ସଂସ୍କୃତଜ୍ଞ ଥିଲେ । ସଙ୍ଗୀତ ଏବଂ ନାଟ୍ୟ ଶାସ୍ତ୍ରରେ ମଧ୍ୟ ତାଙ୍କର ପ୍ରବେଶ ଥିଲା । ମୌଳିକ କବିତା ରଚନାରେ ମଧ୍ୟ ସେ ପ୍ରସିଦ୍ଧି ଅର୍ଜନ କରିଥିଲେ ।

ବହୁ ଭାଷା ପ୍ରବୀଣ ଏବଂ "କଳ୍ପଲତା"ର ସଂପାଦକ ଅଚେଣ୍ଟାଭେଙ୍କଟ ରାୟ ସାଙ୍ଖ୍ୟାୟନ ଶର୍ମା (୧୮୬୪-୧୯୩୩) ତେଲୁଗୁ ସାହିତ୍ୟର ଉନ୍ନତି ନିମନ୍ତେ ଅନେକ ମୌଳିକ ପ୍ରଶ୍ନ ଉତ୍ଥାପନ କରିଥିଲେ ଏବଂ ଉତ୍ସାହ ଦେବା ଉଦ୍ଦେଶ୍ୟରେ

ସେ ମଧ୍ୟ ନିଜର "କଲ୍ପଲତା" ପତ୍ରିକାରେ ଲେଖକମାନଙ୍କ ପାଇଁ ପୁରସ୍କାର ଘୋଷଣା କରୁଥିଲେ । ସେହିପରି ପୂର୍ବ ଗୋଦାବରୀ ଜିଲ୍ଲାର ପୋଲଭରମ୍ ଜମିଦାର ରାମଚନ୍ଦ୍ର ଭେଙ୍କଟ କୃଷ୍ଣରାଓ (୧୮୬୧—୧୯୧୯) ଜଣେ ବଡ଼ ସାହିତ୍ୟାନୁରାଗୀ ଥିଲେ । "ସରସ୍ୱତୀ" ପତ୍ରିକାର ସମ୍ପାଦକ ଦିବାକରଲ୍ଲ ତିରୁପତି ଶାସ୍ତ୍ରୀ ତାଙ୍କର ପୃଷ୍ଠପୋଷକତା ଲାଭ କରିଥିଲେ । "ସରସ୍ୱତୀ" ପତ୍ରିକା ଅତୀତରେ ଲିଖିତ ମାତ୍ର ଅପ୍ରକାଶିତ ଶ୍ରେଷ୍ଠ ତେଲୁଗୁ କାବ୍ୟର ପ୍ରକାଶନଦିଗରେ ଉଦ୍ୟମ କରିଥିଲା । ନବ-ରୀତିରେ ଲିଖିତ ପ୍ରବନ୍ଧ ଏବଂ କବିତାସମୂହ ମଧ୍ୟ ସେଥିରେ ସ୍ଥାନ ପାଉଥିଲା । ଜନମାଂଚି ଭେଙ୍କଟ ରାମାୟା (୧୮୭୨—୧୯୩୩) ବହୁ ସଂସ୍କୃତ ନାଟକ ତେଲୁଗୁ ଭାଷାରେ ଅନୁବାଦ କରିଥିଲେ ଏବଂ ତାଙ୍କର "ମାଲତୀ ମାଧବମ୍" ଶ୍ରେଷ୍ଠ ଅନୁବାଦ ବୋଲି ବିବେଚିତ ହୋଇଥିଲା । ସଂସ୍କୃତ ଅନୁବାଦ କ୍ଷେତ୍ରରେ କବିରାଜ ଭେଙ୍କଟ ନୀଳାଦ୍ରି ରାଜୁଙ୍କ (୧୮୮୧—୧୯୩୧) ନାମ ମଧ୍ୟ ଶୁଣାଯାଏ । କବି ସେଟ୍ଟି ଲକ୍ଷ୍ମୀ ନରସିଂହମ୍ (୧୮୮୨—୧୯୪୧) ଙ୍କର ରବିବର୍ମାଙ୍କର ଚିତ୍ରାଙ୍କନ ସମ୍ପର୍କୀୟ କବିତା ବେଶ୍ ଲୋକାଦୃତ ହୋଇଥିଲା । ଜମିଦାର, ମନ୍ତ୍ରୀ ପ୍ରଗଡ଼ା ଭୁଜଙ୍ଗରାଓ (୧୮୭୬—୧୯୪୧) ଜଣେ ବିଦ୍ୟୋତ୍ସାହୀ ବ୍ୟକ୍ତି ଥିଲେ ଏବଂ ପିଟେଷ୍ଟ୍ୟାଙ୍କ ସହିତ ମିଶି ଇଂରେଜୀରେ "ତେଲୁଗୁ ସାହିତ୍ୟର ଇତିହାସ" ନାମରେ ଖଣ୍ଡେ ପୁସ୍ତକ ପ୍ରଣୟନ କରିଥିଲେ ।

ଆନ୍ଧ୍ର ରାଜ୍ୟ ବାହାରେ ଯେଉଁ କେତେଜଣ ବିଦ୍ୟୋତ୍ସାହୀ ବ୍ୟକ୍ତି ତେଲୁଗୁ ସାହିତ୍ୟରେ ଲେଖାଲେଖି କରିଥିଲେ ସେମାନଙ୍କ ମଧ୍ୟରେ ଓଡ଼ିଶାର ଜୟପୁର ମହାରାଜା ବିକ୍ରମଦେବ ବର୍ମା (୧୮୬୯—୧୯୫୧)ଙ୍କ ନାମ ଉଲ୍ଲେଖଯୋଗ୍ୟ । ସେ ସଂସ୍କୃତ ସାହିତ୍ୟରେ ପ୍ରବୀଣ ଥିଲେ ଏବଂ ତେଲୁଗୁ ସାହିତ୍ୟରେ ତାଙ୍କର ବିଶେଷ ଜ୍ଞାନ ଥିଲା। ବହୁ ନାଟକ ଓ କ୍ଷୁଦ୍ର ପଦ୍ୟ ତାଙ୍କର କୃତ ଏବଂ 'ଶ୍ରୀନିବାସ କଲ୍ୟାଣମ୍' ତାଙ୍କର ଏକ ବିଶିଷ୍ଟ ନାଟକ । କବି ପଣ୍ଡିତମାନଙ୍କର ସେ ଥିଲେ ଅଗ୍ରଣୀ ଓ ପୃଷ୍ଠପୋଷକ । ସେ ଓମାର ଖାୟାମ୍‌ର ତେଲୁଗୁ ଅନୁବାଦ କରିଥିଲେ । ଉମାର ଆଲିସା (୧୮୫— ୧୯୪୫) ଜଣେ ଅଣ ଆନ୍ଧ୍ର କବି ଥିଲେ । ତେଲୁଗୁ ଭାଷା ଓ ସାହିତ୍ୟର ନବଯୁଗର ପ୍ରଯୋଜକ ଥିଲେ ରାୟ ବାହାଦୁର କାନ୍ଦୁକୁରି ବୀରେଶଲିଙ୍ଗମ୍ (୧୮୪୮—୧୯୧୯), ଗୁରୁଜାଡ଼ା ଭେଙ୍କଟ ଆପ୍ପାରାଓ (୧୮୬୧—୧୯୧୬), ରାଓ ସାହେବ ଗିଡ଼ୁଗୁ ଭେଙ୍କଟ ରାମମୂର୍ତ୍ତି (୧୮୬୩—୧୯୪୦), କୋମାରାଜୁ ଭେଙ୍କଟ ଲକ୍ଷ୍ମଣ ରାଓ, ଦେଶୋଦ୍ଧାରକ କାଶୀନାଥୁନି ନାଗେଶ୍ୱର ରାଓ । ସମାଜ, ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ଏହି ପଂଚମୂର୍ତ୍ତି ଥିଲେ ନିଷ୍ଠାପର ସାଧକ । ନୂତନ ଚିନ୍ତା ଏବଂ ଜାତୀୟତା ଥିଲା ସେମାନଙ୍କର ପ୍ରେରଣା ।

ଆଧୁନିକ ତେଲୁଗୁ ସାହିତ୍ୟରେ ଏମାନଙ୍କ ମଧ୍ୟରେ ନବଯୁଗ ପ୍ରତିଷ୍ଠାତା ହେଉଛନ୍ତି କାନ୍ଦୁକୁରି ବୀରେଶଲିଙ୍ଗମ୍ (୧୮୪୮-୧୯୧୯) । ତେଲୁଗୁ ଉପନ୍ୟାସ,

ନାଟକ, କବିତା କ୍ଷେତ୍ରରେ ପାଶ୍ଚାତ୍ୟ ସାହିତ୍ୟର ପ୍ରଭାବ ଏବଂ ଇଂରେଜ ସାହିତ୍ୟାଦର୍ଶ ପ୍ରତିଫଳିତ କରାଇବାରେ ସେ ଥିଲେ ଅଗ୍ରଣୀ । ସମାଜସଂସ୍କାର ମଧ୍ୟ ତାଙ୍କ କର୍ମମୟ ଜୀବନର ଥିଲା ଆଉ ଏକ ଦିଗ । ମୌଳିକ ସାହିତ୍ୟ ସୃଷ୍ଟି ଉଦ୍ଦେଶ୍ୟରେ "ବିବେକ ବର୍ଦ୍ଧିନୀ" ପତ୍ରିକା ଏବଂ ସମାଜ ସଂସ୍କାର ସଂଗଠନ ଉଦ୍ଦେଶ୍ୟରେ "ହାସ୍ୟ ସଞ୍ଜୀବନୀ" ପତ୍ରିକା ସେ ଆରମ୍ଭ କରିଥିଲେ । ନାଟକ, ଉପନ୍ୟାସ, ପ୍ରବନ୍ଧ, ଜାତୀୟ କବିତା କିମ୍ବା ପ୍ରହସନ ସାହିତ୍ୟର ପ୍ରତ୍ୟେକ ବିଭାଗରେ ସେ ଲେଖନୀ ଚାଳନା କରିଥିଲେ । ଶିଷ୍ଟ କୃଷ୍ଣମୂର୍ତ୍ତି ଭେଦମ୍ ଭେଙ୍କଟାରାୟ ଶାସ୍ତ୍ରୀଙ୍କ ପରି ପଣ୍ଡିତ କିମ୍ବା କୁଂଚ ମାଂଚି ତିମ୍ମାକବି କିମ୍ବା ଚେଲପିଲ୍ଲା ଭେଙ୍କଟଶାସ୍ତ୍ରୀଙ୍କ ପରି କବି ନ ହୋଇ ପାରନ୍ତି । ମାତ୍ର ତେଲୁଗୁ ସାହିତ୍ୟର ସେ ପ୍ରଥମ ଔପନ୍ୟାସିକ, ପ୍ରଥମ ପ୍ରାବନ୍ଧିକ ଏବଂ ପ୍ରଥମ ନାଟ୍ୟକାର ଥିଲେ । ଜୀବନୀଚର୍ଚ୍ଚା ମୂଳକ ରଚନା ସୃଷ୍ଟି କରିବାରେ ସେ ଅଗ୍ରଣୀ ଥିଲେ । ଆଧୁନିକ ତେଲୁଗୁ ଗଦ୍ୟ ସାହିତ୍ୟର ସେ ହେଉଛନ୍ତି ଜନକ । ସାହିତ୍ୟ ସାଧନାର ପ୍ରଥମାବସ୍ଥାରେ ସେ ଚିନ୍ନାୟାସୁରୀଙ୍କ ଆଦର୍ଶରେ ଆଲଙ୍କାରିକ ପାଣ୍ଡିତ୍ୟପୂର୍ଣ୍ଣ ଗଦ୍ୟ ଲେଖିଥିଲେ, ମାତ୍ର ପରେ ସାହିତ୍ୟିକ ଶୁଦ୍ଧ ଗଦ୍ୟଭାଷା ଅପେକ୍ଷା ଲୋକମୁଖରେ କଥିତ ଭାଷାର ବୈଶିଷ୍ଟ୍ୟ ଉପଲବ୍ଧି କରି ସହଜ ଗଦ୍ୟଭାଷା ସୃଷ୍ଟି କଲେ । ତେଲୁଗୁ ସାହିତ୍ୟର ଉନ୍ନତି ନିମନ୍ତେ ୧୯୧୪ରେ ପ୍ରତିଷ୍ଠିତ ଏକ ସମିତିର ସେ ଥିଲେ ପ୍ରଥମ ସଭାପତି । ତେଲୁଗୁ ସାହିତ୍ୟର ପ୍ରଥମ ଉପନ୍ୟାସ "ରାଜଶେଖର ଚରିତ" ତାଙ୍କର ଲେଖା । ତାଙ୍କର "ହରିଶ୍ଚନ୍ଦ୍ର ନାଟକମ୍" ତେଲୁଗୁ ସାହିତ୍ୟର ମୌଳିକ ନାଟକ ଏବଂ "ସତ୍ୟରାଜାର ନୂତନ ଯାତ୍ରା" ହାସ୍ୟ-ଉଦ୍ଦୀପକ କଥା ସାହିତ୍ୟ । ବୀରେଶଲିଙ୍ଗମ୍‌ଙ୍କ ଦ୍ୱାରା କାଳିଦାସଙ୍କର "ଅଭିଜ୍ଞାନ ଶକୁନ୍ତଳମ୍"ର ତେଲୁଗୁ ଅନୁବାଦ (ଦଶ ଭାଗରେ ବିଭକ୍ତ) ଶ୍ରେଷ୍ଠ ଅନୁବାଦ ବୋଲି ବିବେଚିତ ହୋଇଥାଏ । ତାଙ୍କର ପ୍ରବନ୍ଧ ଏବଂ ଫାର୍ସ ସମୂହର ପ୍ରଭାବ ମଧ୍ୟ ସୁଦୂରପ୍ରସାରୀ । ତେଲୁଗୁ ସାହିତ୍ୟର ୧୯୧୦ ମସିହାରୁ ୧୯୬୦ ମସିହା ପର୍ଯ୍ୟନ୍ତ ଏହି ଦୀର୍ଘ ପଚାଶ ବର୍ଷର ଇତିହାସ ଜାତୀୟ ଜାଗରଣ ଦ୍ୱାରା ଚିହ୍ନିତ । ଆଧୁନିକ ତେଲୁଗୁ ଭାଷା ଓ ସାହିତ୍ୟ ଆନ୍ଦୋଳନର ଅନ୍ୟତମ କର୍ଣ୍ଣଧାର ଥିଲେ ଗିଡ୍ଡୁଗୁ ଭେଙ୍କଟ ରାମମୂର୍ତ୍ତି (୧୮୬୩—୧୯୪୦) ଏବଂ ଗୁରୁଜାଡ଼ା ଭେଙ୍କଟ ଆପ୍‌ପାରାଓ (୧୮୬୧—୧୯୧୬) । ଇଂରେଜ ସାହିତ୍ୟର ପ୍ରଭାବବଶତଃ ଏହି ନବଜାଗୃତି ସମ୍ଭବ ହୋଇଥିଲା । ଗିଡ୍ଡୁଗୁ ରାମମୂର୍ତ୍ତି ଜଣେ ଐତିହାସିକ, ଶିକ୍ଷାବିତ୍ ଓ ସଂସ୍କୃତଜ୍ଞ ଥିଲେ । ଶବରମାନଙ୍କର ପାଠ୍ୟ ଓ ଅଭିଧାନର ସେ ପ୍ରଣେତା ଥିଲେ । ସେ କଥିତ ଭାଷାର ପକ୍ଷପାତୀ ଥିଲେ ଏବଂ ୧୯୧୪ରେ ସମଗ୍ର ଆନ୍ଧ୍ରଦେଶ ଭ୍ରମଣ କରି ଚଳନ୍ତି ଭାଷାର ପ୍ରଚାର କରିଥିଲେ । ଗୁରୁଜାଡ଼ା ଭେଙ୍କଟ ଆପ୍‌ପାରାଓ ସଂସ୍କୃତ ଓ ଇଂରାଜୀ ଭାଷା ଅଧ୍ୟୟନ କରିଥିଲେ । ସେଥିଯୋଗୁଁ ତାଙ୍କର ସାହିତ୍ୟ ସାଧନା ଆଧୁନିକ ଚେତନା ଦ୍ୱାରା ସମୁଜ୍ଜ୍ୱଳ । ୧୯୦୯ ମସିହାର ଆଧୁନିକ ତେଲୁଗୁ ଆନ୍ଦୋଳନ

(modern Telugu movement)ର ସୂତ୍ରପାତ ହେଲା । ଏହା ପୂର୍ବରୁ ୧୮୯୬ ମସିହାରେ ଆପ୍‌ପାରାଓଙ୍କର ଶୃଙ୍ଖଳାକାରୀ ସାମାଜିକ ନାଟକ "କନ୍ୟାଶୁଲ୍‌କମ୍" ପ୍ରକାଶିତ ହୋଇଥିଲା । ଭାଷାଦୃଷ୍ଟିରୁ ଏହା ମଧ୍ୟ ଏକ ନୂତନ ପଦକ୍ଷେପ । ଏହା ବିଜୟନଗରର ମହାରାଜାଙ୍କୁ ଉତ୍ସୃଷ୍ଟ ହୋଇଥିଲା । ବିଭିନ୍ନ ପତ୍ରପତ୍ରିକା ଏହାର ପ୍ରଶଂସା କରିଥିଲେ । କାରଣ ଲେଖକ ସେଥିରେ ସମୟୋପଯୋଗୀ ଅଙ୍କ, ଦୃଶ୍ୟ ଓ କଥିତ ଭାଷା ବ୍ୟବହାର କରିଥିଲେ । ପୁଞ୍ଜୀଭୂତ କୁସଂସ୍କାର ବିଶେଷତଃ ବାଲ୍ୟବିବାହ ବିରୋଧରେ ଏହି ନାଟକରେ ଆଲୋଚନା କରାଯାଇଥିଲା । କୋମରାଜୁ ଲକ୍ଷ୍ମଣ ରାଓ ବିଭିନ୍ନ ଭାଷାରେ ପଣ୍ଡିତ ଥିଲେ ଏବଂ ତେଲୁଗୁ ଜ୍ଞାନକୋଷ ସଂପାଦନା ଆରମ୍ଭ କରିଥିଲେ । ତାଙ୍କର "ଆବ୍ରାହମ ଲିଙ୍କନ ଜୀବନୀ" ଉଲ୍ଲେଖଯୋଗ୍ୟ । କୋମାରାଜୁ ଭେଙ୍କଟ ରାଓଙ୍କ ଉଦ୍ୟମରେ ପ୍ରତିଷ୍ଠିତ "ବିଜ୍ଞାନ ଚନ୍ଦ୍ରିକା ମଣ୍ଡଳୀ (୧୯୧୧—୧୯୨୦) ତେଲୁଗୁ ଭାଷାରେ ବିଜ୍ଞାନ ସଂପର୍କୀୟ ବହୁ ପୁସ୍ତକ ପ୍ରକାଶ କରିଥିଲେ । ଡକ୍ଟର ଅଚେଣ୍ଟାଲକ୍ଷ୍ମୀପତି ଓ. ଜି. ହରସର୍ବୋତ୍ତମରାଓ ଏହି ମଣ୍ଡଳୀର ସଦସ୍ୟ ଥିଲେ । ଲକ୍ଷ୍ମଣଭେଙ୍କଟରାଓଙ୍କର ଅକାଳମୃତ୍ୟୁ ପୂର୍ବରୁ ତେଲୁଗୁ ଜ୍ଞାନକୋଷର ତିନିଖଣ୍ଡହିଁ କେବଳ ପ୍ରକାଶିତ ହୋଇଥିଲା । ଏହାପରେ ଜ୍ଞାନକୋଷ କାର୍ଯ୍ୟ ଦେଶୋଦ୍ଧାରକ, କେ, ନାଗେଶ୍ୱର ରାଓ ଚାଲୁ ରଖିଥିଲେ । ଏହି ବିଜ୍ଞ ପଣ୍ଡିତମାନଙ୍କ ପ୍ରେରଣା ଓ ପ୍ରଭାବ ଯୋଗୁଁ ବହୁ ଉତ୍ସାହୀ ତରୁଣ ସାହିତ୍ୟଭାଷା ଏବଂ ଇତିହାସ କ୍ଷେତ୍ରରେ ଗବେଷଣା ପ୍ରତି ଆକୃଷ୍ଟ ହୋଇଥିଲେ । ସେମାନେ ଆନ୍ଧ୍ରରାଜ୍ୟର ଇତିହାସ ଏବଂ ପ୍ରାଚୀନ ଅନୁଶାସନ ଶୀର୍ଷକ ଗବେଷଣା କରିଥିଲେ । ମାଲାମପଲ୍ଲୀ ସୋମଶେଖର ଶର୍ମାହିଁ ଆନ୍ଧ୍ର ଇତିହାସ ବିଷୟରେ ଜଣେ ପ୍ରତିଷ୍ଠିତ ପଣ୍ଡିତ । ପ୍ରଥମେ ଚିଲ କରି ବୀରଭଦ୍ର ରାଓଙ୍କ ସାହାଯ୍ୟରେ ଓ ପରେ ସ୍ୱାଧୀନଭାବରେ ସେ ଐତିହାସିକ ଗ୍ରନ୍ଥ ପ୍ରକାଶ କରିଥିଲେ । ପିଠାପୁର ମହାରାଜା ଏବଂ ଅନ୍ୟାନ୍ୟ କେତେକ ବଦାନ୍ୟ ଜମିଦାରଙ୍କ ପୃଷ୍ଠପୋଷକତାରେ ପ୍ରତିଷ୍ଠିତ "ଆନ୍ଧ୍ର ସାହିତ୍ୟ ପରିଷଦ" (୧୯୧୧) ତେଲୁଗୁ ଭାଷା ଏବଂ ସାହିତ୍ୟ ପାଇଁ ଯଥେଷ୍ଟ କାର୍ଯ୍ୟ କରିଥିଲା । ପ୍ରାଚୀନ କବିମାନଙ୍କର ଅପ୍ରକାଶିତ ପାଣ୍ଡୁଲିପି ପ୍ରକାଶନ, "ତେଲୁଗୁ ଅଭିଧାନ" ସଂକଳନ ଏବଂ ଆନ୍ଧ୍ର ସାହିତ୍ୟ ପରିଷଦ ପତ୍ରିକା ସଂମ୍ପାଦନ ହେଉଛି ଏହାର କୃତିତ୍ୱ । ପ୍ରାଚୀନ ପରମ୍ପରାର ସମର୍ଥକ ଏହି ପରିଷଦ ଆଧୁନିକ ତେଲୁଗୁ ଆନ୍ଦୋଳନ ପକ୍ଷପାତୀ ନ ଥିଲା । କବି ଗାରୁମାରେପଲ୍ଲୀ ରାମଚନ୍ଦ୍ର ଶାସ୍ତ୍ରୀଙ୍କ (୧୮୭୩-୧୯୪୮) ଉତ୍ସାହରେ ବିଶାଖାପାଟଣାରେ ସ୍ଥାପିତ "କବିତା ସମିତି" ବହୁ ତରୁଣ କବିଙ୍କୁ ସୃଷ୍ଟି କରିଥିଲା । ନିଜେ କବିଗାରୁ କେତେକ ନାଟକ ଲେଖିଥିଲେ । ସେଠାରେ ତାଙ୍କର ଉଦ୍ୟମରେ ଏକ ନାଟକ ଅନୁଷ୍ଠାନ ଗଢ଼ା ଯାଇଥିଲା । "କବିତା ସମିତିର" ଜଣାଶୁଣା କବିମାନଙ୍କ ମଧ୍ୟରେ ଶ୍ରୀରଂଗମ୍ ଶ୍ରୀନିବାସରାଓ, ପୁରିପଣ୍ଡା ଆପଲ୍ଲୋସ୍ୱାମୀ ଗୋବିନ୍ଦୁରି ଭେଙ୍କଟାନନ୍ଦ ରାଘବରାଓ ହେଉଛନ୍ତି ମୁଖ୍ୟ । କଥିତ

ଭାଷାରେ ସମଗ୍ର ମହାଭାରତ ରଚନା ପୁଷ୍ପଗିରି ଆପଲେସ୍ୱାମୀଙ୍କର କୃତି । ଶ୍ରୀରଂଗମ୍, ଶ୍ରୀ ନିବାସରାଓ "ଶ୍ରୀ-ଶ୍ରୀ" ନାମରେ ପରିଚିତ । ଶ୍ରୀ-ଶ୍ରୀ ଏବଂ ତାଙ୍କର ଜ୍ଞାତି ଭାଇ ନାରାୟଣ ବାବୁ ଏବଂ ପୁତୁରା ଭଗବଟୁଲ୍ଲ ଶଙ୍କର ଶାସ୍ତ୍ରୀ ("ଅରୁଦ୍ର" ନାମରେ ପରିଚିତ) ଆଧୁନିକ କବି ଏବଂ ଏମାନେ ବିଶାଖାପାଟଣାର କବିଗୋଷ୍ଠୀଭୁକ୍ତ ।

ଗୁରୁଜାଡ଼ା ଭେଂକଟ ଆପ୍ପାରାଓଂଙ୍କର ଜନ୍ମସ୍ଥାନ ବିଜୟନଗରମ୍ ମଧ୍ୟ ସାହିତ୍ୟ କ୍ଷେତ୍ରରେ ଆଧୁନିକ ଆନ୍ଦୋଳନର ପ୍ରଭାବରୁ ବାଦ୍ ପଡ଼ି ନଥିଲା । ସେଠାରେ ପ୍ରତିଷ୍ଠିତ ତେଲଗୁ "ସାହିତ୍ୟ ସମିତି" ବହୁ ତରୁଣ କବି, ନାଟ୍ୟକାରମାନଙ୍କ ଦ୍ୱାରା ମଣ୍ଡିତ ହୋଇଥିଲା । " ବୋବିଲ୍ଲୀ" ନାଟକ ପ୍ରଣେତା, ସମାଲୋଚକ, ସଂସ୍କୃତ ପଣ୍ଡିତ ଡକ୍ଟର ବୁରା ଶେଷଗିରି ରାଓ (୧୮୮୪-୧୯୪୨) "ବିମଳା" ଉପନ୍ୟାସର ଲେଖକ ଭୋଗରାଜୁ ନାରାୟଣ ମୂର୍ତ୍ତି (୧୮୮୯-୧୯୪୧) ବହୁ ସାମାଜିକ ନାଟକ ପ୍ରଣେତା ନାଟ୍ୟକାର ମାଲିଦି ବିଶ୍ୱନାଥ କବିରାଜୁ (୧୮୮୯-୧୯୪୬) ଜାତକ ପ୍ରଣେତା, କେ ରଂଗାଚାରୀ ଏହି ତେଲଗୁ "ସାହିତ୍ୟ ସମିତିର" ଲେଖକ ଥିଲେ । ଆପ୍ପାରାଓ ରାମମୂର୍ତ୍ତି ଏବଂ ରାଓପ୍ରୋଲୁଙ୍କ ଦ୍ୱାରା ଉଦ୍‌ବୁଦ୍ଧ କେତେକ ତରୁଣ କବି ୧୯୧୯ ମସିହାରେ "ସାହିତ୍ୟ ସମିତି" ସ୍ଥାପନ କରିଥିଲେ । ସଂସ୍କୃତ ପଣ୍ଡିତ ତାଲଭଜ୍ଜଲ ଶିବଶଙ୍କର ଶାସ୍ତ୍ରୀ (୧୮୯୩) ଏହି ସମିତିର ମୁଖ୍ୟ ଉପଦେଷ୍ଟା ଥିଲେ । ସେ ପାଲିରୁ "ଜାତକ କଥା" ତେଲଗୁ ଭାଷାରେ ଅନୁବାଦ କରିଥିଲେ ଏବଂ "ହୃଦୟେଶ୍ୱରୀ" ଶୀର୍ଷକ କବିତା ଓ କେତେକ ନାଟକ ରଚନା କରିଥିଲେ । ଶିଶୁସାହିତ୍ୟ ପ୍ରଣେତା ଚିନ୍ତା ଦୀକ୍ଷିତୁଲୁ (୧୮୯୧) ଏବଂ "ଦେବୀ ଭାଗବତମ୍" ଲେଖକ ଏବଂ ଔପନ୍ୟାସିକ ନୋରି ନରସିଂହମ୍ ଶାସ୍ତ୍ରୀ (୧୯୦୦) ହାସ୍ୟରସାତ୍ମକ କାନ୍ତା ଏବଂ ଅନ୍ୟାନ୍ୟ କ୍ଷୁଦ୍ର ଗଳ୍ପର ଲେଖକ ମୁନି ମାଣିକ୍ୟମ୍ ନରସିଂହମ୍ ରାଓ (୧୮୯୮) ପ୍ରଭୃତି ଲୋକପ୍ରିୟ ସାହିତ୍ୟିକ ଏହି ସମିତି ସହିତ ସଂପୃକ୍ତ ।

କବି ବିଶ୍ୱନାଥ ସତ୍ୟନାରାୟଣ (୧୮୯୫) ଏହି ସମୟର ଜଣେ ବଶିଷ୍ଟ ସାଧକ ଥିଲେ । "କିନେରସାନି" କବିତା ଏବଂ ଭେୟି ପାଡ଼ଗଲୁ (ସହସ୍ର ଫଣା) ଉପନ୍ୟାସ ତାଙ୍କର କୃତି । ରାମାୟଣ ମହାକାବ୍ୟ ତାଙ୍କର ପରିକଳ୍ପନା । ଭେଲୁଲୁ ସତ୍ୟନାରାୟଣ (୧୯୦୦) ମୌଳିକ ଗଳ୍ପ ଲେଖକ । "ଦୀପାବଳୀ" ଗଳ୍ପ ପୁସ୍ତକ ତାଙ୍କର ରଚନା । ସେ "ଗୌତମୀ କୋକିଲ" ନାମରେ ନାମକ ପରିଚିତ । "ବାରିଷ୍ଟର ପାର୍ବତୀଶମ୍" ହାସ୍ୟରସାତ୍ମକ ଉପନ୍ୟାସର ସ୍ରଷ୍ଟା । ମୋକପଟିମ୍ ନରସିଂହ ଶାସ୍ତ୍ରୀ (୧୮୯୨), ବେତାର ଏବଂ ଚଳଚ୍ଚିତ୍ର ସଂଗୀତ ଲେଖକ ଏବଂ "କୃଷ୍ଣପକ୍ଷମ୍" କବିତା ସଙ୍କଳନର କବି" ଦେବୁଲପଲ୍ଲୀ କୃଷ୍ଣଶାସ୍ତ୍ରୀ (୧୮୯୭) ଦେଶାତ୍ମବୋଧ କବିତା ପ୍ରଣେତା ନାୟନୀ

ସୁବାରାଓ (୧୮୯୯), ନରସିଂହ ବାଳକା ସ୍ୱେଙ୍କି ଏବଂ ତାର ପ୍ରେମିକ ନାୟୁଡ଼ୁବାହାଲୁ କେନ୍ଦ୍ରକରି ଲିଖିତ" "ସ୍ୱେଙ୍କିପାଟଲୁର" ପ୍ରଣେତା ନାଂଡୁରି ସୁବାରାଓ (୧୮୯୫) ଏହି ଯୁଗରେ ବିଶିଷ୍ଟ ଲେଖକ ।

"ସାହିତ୍ୟ ସମିତି" ପକ୍ଷରୁ ସାହିତ୍ୟ ପତ୍ରିକା ପ୍ରକାଶିତ ହେଉଥିଲା । ଆଧୁନିକ ଯୁଗର ତେଲଗୁ ଲେଖକମାନଙ୍କୁ ଏକତ୍ର କରି ସାଧନାରତ କରାଇବାରେ "ନବ୍ୟ ସାହିତ୍ୟ" ପରିଷଦର (୧୮୯୩) କାର୍ଯ୍ୟ ପ୍ରଶଂସନୀୟ । ଏହି ପରିଷଦପକ୍ଷରୁ ଦ୍ୱିମାସିକ ପତ୍ରିକା "ପ୍ରତିଭା" ସଂପାଦନ ଫଳରେ ତେଲଗୁ ପ୍ରବନ୍ଧ ଏବଂ ପୁସ୍ତକ ସମାଲୋଚନା ପ୍ରଭୃତିର ଉନ୍ନତି ପାଇଁ ବାଟ ଫିଟିଥିଲା । ଅନେକେ ଆଧୁନିକ ତରୁଣ କବିଙ୍କର ନୂତନ ରଚନା ଏହି ପତ୍ରିକାରେ ସ୍ଥାନ ପାଇଥିଲା । ନୂତନଶୈଳୀ ଏବଂ ନୂତନ ବିଷୟବସ୍ତୁକୁ ଆଶ୍ରୟକରି ଲେଖା ଯାଉଥିବା କବିତା ସମୂହକୁ ସେତେବେଳେ ଭାବକବିତାବୋଲି ନାମିତ କରାଯାଇଥିଲା ଏବଂ ତାର ପ୍ରଣେତାମାନଙ୍କୁ ଭାବକବି ବୋଲି ଅଭିହିତ କରି ଯାଇଥିଲା । ଏହି ଭାବ କବିମାନଙ୍କୁ କେହି କେହି ଅଭାବ କବି ବୋଲି ବିଦ୍ରୂପ କରିଥିଲେ । ଏହି ସମୟରେ ପିଂଗଳି "ଲକ୍ଷ୍ମୀକାନ୍ତମ୍" (୧୮୯୪) କାଟୁରି ଭେଙ୍କଟେଶ୍ୱର ରାଓ (୧୮୯୫) ସଦୃଶ କେତେକ ନରମପନ୍ଥୀ କବି ମିଳିତ-ଭାବରେ ନୂତନ ବିଷୟବସ୍ତୁ ମାତ୍ର ପୁରାତନ ଶୈଳୀ ଅନୁସରଣରେ କବିତା ରଚନା କରିଥିଲେ ଯଥା, 'ଢୋଲକାରି' "ସୌନ୍ଦରନନ୍ଦନ" 'ପୌଲସ୍ତ୍ୟ ହୃଦୟମ୍' । ଗ୍ରାମ୍ୟ କବି ଭାବରେ ଗାଲ୍ପିକ କବି କୋଣ୍ଡୁରୁ ଭେଙ୍କଟ ରାଓ (୧୮୯୬) ଏବଂ ଦୁବୁରିରାମ ରେଡ୍ଡୀଙ୍କ ନାମ ଶୁଣାଯାଏ । ଗୁରୁରାମ ଜାମୁଆ (୧୮୯୫)ଙ୍କର "ଫିରଦୋଶୀ" କବିତା ଲାଳିତ୍ୟ ଏବଂ ଉଚଚିନ୍ତା ଦ୍ୱାରା ଚର୍ଚ୍ଚିତ । ତେଲଗୁ କାବ୍ୟ, କବିତାରେ ସଂସ୍କୃତ ଛନ୍ଦ ପ୍ରୟୋଗ କରିଥିଲେ ଆବୁରି ରାମକୃଷ୍ଣ ରାଓ । ତାଙ୍କ କବିତାର ଭାବ ଗାମ୍ଭୀର୍ଯ୍ୟହିଁ ଉଲ୍ଲେଖଯୋଗ୍ୟ ।

କାକନାଡ଼ା ସ୍ଥିତ "ଆନ୍ଧ୍ର ପ୍ରଚାରଣୀ ଗ୍ରନ୍ଥମାଳା" (୧୯୧୧) ତେଲୁଗୁରେ ଶତାଧିକ ଉପନ୍ୟାସ ପ୍ରକାଶ କରାଇଥିଲେ । ଏହି ଗ୍ରନ୍ଥମାଳାର ମୁଖ୍ୟ ଔପନ୍ୟାସିକ ଥିଲେ ଚିଳଗନ୍ତି ଶେଷୟା, ଭେଙ୍କଟ ପାର୍ବତୀଶ୍ୱର କୋଭୁଲୁ । ଏହି ଅନୁଷ୍ଠାନ ପ୍ରକାଶିତ ଉପନ୍ୟାସମାନଙ୍କ ମଧ୍ୟରେ ବହୁ ବଙ୍ଗଳା ଉପନ୍ୟାସର ଅନୁବାଦ ଅନ୍ତର୍ଭୁକ୍ତ । କବିତା କ୍ଷେତ୍ରରେ ଭେଙ୍କଟ ପାର୍ବତୀଶ୍ୱର କୋଭୁଲୁ (୧୮୮୦) ଏବଂ ଓଲେଟିଶ୍ ପାର୍ବତୀଶମ (୧୮୮୨-୧୮୯୪) ଙ୍କର ସ୍ୱାତନ୍ତ୍ର୍ୟ ପରିଲକ୍ଷିତ। ସେମାନଙ୍କର ଲିଖିତ ମିଳିତ ରଚନା "ଏକାନ୍ତ ସେବା" ପାଠକମାନଙ୍କ ଦ୍ୱାରା ଆଦୃତ । ସେମାନେ ରାମାୟଣ ମଧ୍ୟ ରଚନା କରିଥିଲେ ୧୯୪୩ ମସିହାରେ ଏବଂ ୧୯୪୯ ମସିହାରେ ହାଇଦରାବାଦଠାରେ ପ୍ରତିଷ୍ଠିତ "ଆନ୍ଧ୍ର ସାହିତ୍ୟ ପରିଷଦ"

ଏବଂ "ଆନ୍ଧ୍ର ସାରସ୍ୱତ ପରିଷଦ" ଆଧୁନିକ ଯୁଗର ଅଭିଳାଷୀ କବି, ଗାଳ୍ପିକ ଏବଂ ଔପନ୍ୟାସିକମାନଙ୍କୁ ବହୁ ଉତ୍ସାହ ପ୍ରଦାନ କରିଥିଲା । ସୁଲ୍ଲିଜାଲ୍ଲ ହନୁମନ୍ତ ରାଓ, ପାର୍ଥ ଭେଙ୍କଟେଶ୍ୱର ରାଓ, ବଦୁରୁ ଭେଙ୍କଟ ଶେଷୟା, ଭାସ୍କର ଭଟ୍ଟଲା କୃଷ୍ଣରାଓ, ଦେବୁଲପଲ୍ଲୀରାମାନୁଜ ରାଓ ଲୋକନନ୍ଦି ଶ୍ରୀଙ୍କରନାରାୟଣ ପ୍ରଭୃତି ଲେଖକ-ମାନେ ପରିଷଦର ପୃଷ୍ଠପୋଷକତାରେ ଲେଖନୀ ଚାଳନା କରିଥିଲେ । ସୁରବରମ୍ ପ୍ରତାପରେଡ୍ଡି (୧୮୯୫-୧୯୫୪) ତେଲୁଗୁ ସାହିତ୍ୟ ଓ ଇତିହାସ ଅଧ୍ୟୟନ ପୂର୍ବକ ଆନ୍ଧ୍ରର ସାମାଜିକ ଇତିହାସ ରଚନା କରିଥିଲେ । ସେହି ଗ୍ରନ୍ଥ ତାଙ୍କ ମୃତ୍ୟୁ ପରେ କେନ୍ଦ୍ରସାହିତ୍ୟ ଏକାଡ଼େମୀ ପୁରସ୍କାର (୧୯୫୫) ୫୦୦୦ ଲାଭ କରିଥିଲା । ଆଧୁନିକ ତେଲୁଗୁ ସାହିତ୍ୟର ପ୍ରତିଷ୍ଠିତ ହାଇଦରାବାଦର ତରୁଣକବି ଦାଶରଥି କୃଷ୍ଣମାଚାରୁଲୁ (୧୯୨୭) ଙ୍କ ନାରାୟଣ ରେଡ୍ଡିଙ୍କର କ୍ଷୁଦ୍ର କବିତା ଯଥାକ୍ରମେ 'ରୁଦ୍ରବୀଣା' "ଅଗ୍ନିଧାର" ନବମଗୁଲୁ ଜଲପାତଂ ଉଲ୍ଲେଖଯୋଗ୍ୟ କୃତି । ହାସ୍ୟାତ୍ମକ ଗଳ୍ପ ଲେଖକ ଧରଣୀକୋଟା ଶ୍ରୀନିବାସଲ୍ଲଙ୍କୁ ତେଲେଙ୍ଗାନାର "ମୁନି ମାଣିକ୍ୟମ୍" ବୋଲି ଅଭିହିତ କରାଯାଇଥାଏ । ଭେଲଦୁର୍ତ୍ତି ମାଣିକ୍ୟ ରାଓ (୧୯୧୮) ଶିଶୁମାନଙ୍କ ପାଇଁ ଲେଖିବାରେ ସିଦ୍ଧହସ୍ତ । "ସୁଜାତା"ର ସମ୍ପାଦକ ଗୁଡ଼ୀପୁ ରାମରାମକୃଷ୍ଣ ଶାସ୍ତ୍ରୀ ତେଲୁଗୁ ଭାଷା ସାହିତ୍ୟ ଏବଂ ପ୍ରତ୍ନତତ୍ତ୍ୱ ଉପରେ ବିସ୍ତୃତଭାବରେ ଲେଖିଥିଲେ । ଭାଷା ଓ ସାହିତ୍ୟ ଗବେଷଣା କ୍ଷେତ୍ରରେ ଖଣ୍ଡଭଲ ଲକ୍ଷ୍ମୀରଂଜନଙ୍କ ସିଦ୍ଧି ଅପୂର୍ବ । କୁରୁଗଣ୍ଟି ସୀତାରାମ ଭଟ୍ଟାଚାର୍ଯ୍ୟ (୧୮୯୦) ତେଲୁଗୁ ସାହିତ୍ୟ ବିକାଶର ବିସ୍ତୃତ ଅଧ୍ୟୟନ ନବ୍ୟଧାରା ଭିତୁଲୁ ପ୍ରକାଶ କରିଥିଲେ । ମାଲ୍ଲାଭରାପୁ ବିଶେଶ୍ୱର ରାଓ (୧୯୦୪) ଏବଂ ବେଜବାଡ଼ା ଗୋପାଲ ରେଡ୍ଡି (୧୯୦୯) ରବିନ୍ଦ୍ର ସାହିତ୍ୟଦ୍ୱାରା ଉଦ୍‌ବୁଦ୍ଧ ହୋଇ ବଙ୍ଗଳା ଭାଷାର ରବୀନ୍ଦ୍ରନାଥଙ୍କ କାବ୍ୟ, କବିତା ଏବଂ ନାଟକ ଅନୁବାଦ କରିଥିଲେ । ପୂର୍ବଯୁଗର ପୌରାଣିକ ଏବଂ ପ୍ରବନ୍ଧ ଜାତୀୟ ରଚନା ଏ ଯୁଗରେ ଯେଉଁମାନେ ଅନୁସରଣ କରିଥିଲେ ସେମାନଙ୍କ ମଧ୍ୟରେ ଶ୍ରୀପଦ କୃଷ୍ଣମୂର୍ତ୍ତି ଶାସ୍ତ୍ରୀ (୧୮୬୬) ହେଉଛନ୍ତି ଅଗ୍ରଣୀ । ବ୍ୟାସଙ୍କ ମହାଭାରତ ଭାଗବତ ଏବଂ ବାଲ୍ମୀକି ରାମାୟଣର ତେଲୁଗୁ ଅନୁବାଦ ବ୍ୟତୀତ ହଜାର ହଜାର କବିତା ତାଙ୍କର କୃତିତ୍ୱ । ଶୁଦ୍ଧ ସାହିତ୍ୟିକ ଭାଷାର ସେ ସମର୍ଥକ ଥିଲେ । ଆନ୍ଧ୍ର ବିଶ୍ୱବିଦ୍ୟାଳୟ ତାଙ୍କୁ "କଳା ପ୍ରପୂର୍ଣ୍ଣ" ପଦବୀରେ ଭୂଷିତ କରିଥିଲେ ।

ଆଧୁନିକ ତେଲୁଗୁ ଆନ୍ଦୋଳନ (Modern Telugu Movement) ବିରୋଧରେ ସେ ତାଙ୍କର ଅସି ଉତ୍ତୋଳନ କରିଥିଲେ ଏବଂ ତାଙ୍କର ଏହି "ଯୁଦ୍ଧ ହୁଙ୍କାର" ଆହ୍ୱାନର ପ୍ରଧାନ ଆୟୁଧ ଥିଲା ତାଙ୍କର ସମ୍ପାଦିତ ପତ୍ରିକା "ବଜ୍ରାୟୁଧ" । ନୂତନ କବିତାର ସେ ଥିଲେ ଘୋର ବିରୋଧୀ । ୧୯୫୦ ମସିହାରୁ ସେ ଆନ୍ଧ୍ରଦେଶର ଶ୍ରେଷ୍ଠ କବିରୂପେ ପରିଚିତ । ପରେ ସେ ଅବଶ୍ୟ ଆଧୁନିକ

ତେଲୁଗୁ ବିରୋଧରେ ତାଙ୍କ ଆନ୍ଦୋଳନର ଅସାରତା ଉପଲବ୍‌ଧି କରିଥିଲେ । ଏହି ସାହିତ୍ୟିକ ଷଡ଼ଯନ୍ତ୍ରୀଙ୍କର ଆଉ ଜଣେ ସମର୍ଥକ କବି ଥିଲେ ଜନମାଞ୍ଚି ଶେଷାଦ୍ରି ଶର୍ମା (୧୮୮୨—୧୯୫୨) । ଜନମାଞ୍ଚି ଭେଙ୍କଟରମାୟା (୧୮୭୨—୧୯୩୩) ଦ୍ରିଭିସୁବ୍ରମଣ୍ୟ ଶାସ୍ତ୍ରୀ (୧୮୭୫) ମାଲାଦି ସୂର୍ଯ୍ୟନାରାୟଣ ଶାସ୍ତ୍ରୀ (୧୮୮୦) ଅନନ୍ତ ପାନ୍ତୁଲୁ ରାମଲିଙ୍ଗ୍ ସ୍ୱାମୀ (୧୮୯୩) ଅଭିନବ ତିକ୍‌କାନା ମହାକବି ସଦୃଶ ବିହୁ ଉପାଧିଧାରୀ ଦୁର୍ଭି ରାଜଶେଖର ଶତାବଧାନୀ (୧୮୮୮) ଏ ଯୁଗର ପ୍ରାଚୀନପନ୍ଥୀ ଲେଖକ । ସେମାନଙ୍କର ମୌଳିକ ଏବଂ ଅନୁବାଦ ରଚନା ଯଥାକ୍ରମେ (କ) ସଂସ୍କୃତ ମାଲତୀ ମାଧବମ୍ ନାଟକର ଅନୁବାଦ (ଖ) କାଳିଦାସ ଅଭିଜ୍ଞାନ ଶକୁନ୍ତଳମ୍ ଅନୁବାଦ, ଶଙ୍କରଙ୍କର ସୌନ୍ଦର୍ଯ୍ୟ ଲହରୀ, ବିବେକ ଚୂଡ଼ାମଣିର ଅନୁବାଦ (ଗ) ଉତ୍ତରରାମ ଚରିତମ୍‌ର ଅନୁବାଦ, ମୌଳିକ ନାଟକ ଭୀଷ୍ମ ପ୍ରତିଜ୍ଞା, ଭାସଙ୍କ ନାଟକ ଅବଲମ୍ବନରେ ଲିଖିତ ଗଳ୍ପ, ଆନ୍ଧ୍ରଭାଷାନୁ ଶାସନମ୍ ବ୍ୟାକରଣ, ପ୍ରେମତତ୍ୱ (ଘ) ଶୁକ୍ଳପକ୍ଷମ୍ କ୍ଷୁଦ୍ର କବିତା ସଙ୍କଳନ (ଚ) ପଦ୍ୟରେ ରାଣାପ୍ରତାପ ସିଂହ ଚରିତ୍ର" ଏହି ସମୟରେ ପ୍ରକାଶ ପାଇଥିଲା । ଏହି ପ୍ରାଚୀନପନ୍ଥୀମାନଙ୍କ ମଧ୍ୟରେ ଅନେକ ମଧ୍ୟ ଆଧୁନିକ ତେଲୁଗୁ ଆନ୍ଦୋଳନର ଆଦୌ ବିରୋଧ କରି ନ ଥିଲେ । ବିଶ୍ୱନାଥ ସତ୍ୟନାରାୟଣ (୧୮୯୩) ଏହି ଆଦର୍ଶର ପଥିକ । ଆଦି ଭଟଲ ନାରାୟଣ ଦାସ (୧୮୬୭—୧୯୪୨) ତେଲୁଗୁ ଭାଷାରେ ପ୍ରଥମେ "ହରିକଥା" ରଚନା କରିଥିଲେ । "ବଟସାରୀ" (ଗୋଲ୍‌ଡ୍ ସ୍ମିଥ୍‌ଙ୍କ ଅବଲମ୍ବନରେ) । ତାଙ୍କର ରଚନା ଲିଖିତ ସେହିପରି ତେଲୁଗୁରେ "ବୁରୀକଥା" ଶୀର୍ଷକ ଜନପ୍ରିୟ ସଙ୍ଗୀତର ପ୍ରଥମ ପ୍ରଯୋଜକ ହେଉଛନ୍ତି ଶଙ୍କର ନାରାୟଣ । ୧୯୦୦ରୁ ୧୯୫୦ ମସିହା ପର୍ଯ୍ୟନ୍ତ ଏହି ଅର୍ଦ୍ଧ ଶତାବ୍ଦୀରେ ତେଲୁଗୁ ସାହିତ୍ୟରେ ବିଭିନ୍ନ ବିଭାଗର ସମଧିକ ଉନ୍ନତି ଦେଖା ଯାଇଥିଲା । ଗଦ୍ୟକବିତା, ଉପନ୍ୟାସ ଏବଂ କ୍ଷୁଦ୍ର ଗଳ୍ପର ପ୍ରସାର ଆଧୁନିକ ତେଲୁଗୁ ସାହିତ୍ୟର ଲକ୍ଷଣ ।

ଆଧୁନିକ କାବ୍ୟକବିତା—

ଶତାବ୍ଦୀର ପ୍ରାରମ୍ଭରେ ତେଲୁଗୁ କାବ୍ୟ କବିତାର ମୁକ୍ତିର ଯୁଗ ଆରମ୍ଭ ହେଲା । ଦୀର୍ଘ କାବ୍ୟ ପରିବର୍ତ୍ତେ କ୍ଷୁଦ୍ର କ୍ଷୁଦ୍ର କବିତା ରଚନାପାଇଁ କବିମାନଙ୍କ ମଧ୍ୟରେ ଆଗ୍ରହ ପ୍ରକାଶ ପାଇଥିଲା । ନୂତନ ଆଦର୍ଶର ଅନୁସଂଧାନ କବିମାନଙ୍କର ହେଲା ବ୍ରତ ।

ଶାନ୍ତିନିକେତନରୁ ଶିକ୍ଷାପ୍ରାପ୍ତ ରାୟ ପ୍ରୋଲୁ ସୁବାରାଓ (୧୮୯୨) ଆଧୁନିକ କବିତାର ଶକ୍ତିଶାଳୀ ପ୍ରବର୍ତ୍ତକ ଏବଂ ଦେଉଲପଲ୍ଲୀ କୃଷ୍ଣ ଶାସ୍ତ୍ରୀ (ଆନ୍ଧ୍ର ସେଲି) ରୋମାନ୍‌ଟିକ ଯୁଗର ପ୍ରଥମ କବି । ଆଧୁନିକ କବିତା ଭାବକବିତା ନାମରେ ପରିଚିତ ହୋଇଥିଲା । ସୁବାରାଓଙ୍କର ତୃଣକଙ୍କଣମ୍, ରମ୍ୟାଲୋକରୁ,

"ମାଧୁରୀ-ଦର୍ଶନମୁ" ପ୍ରସିଦ୍ଧ କାବ୍ୟ ଗ୍ରନ୍ଥ । ସେ ଓମାର ଖୈୟାମ ଅନୁବାଦ କରିଥିଲେ । ବଙ୍ଗ କବି ରବୀନ୍ଦ୍ରନାଥଙ୍କର ରହସ୍ୟବାଦୀ ଭାବଧାରା ପ୍ରଭାବିତ ତେଲୁଗୁ କବି ଭେଙ୍କଟ ପାର୍ବତୀଶ୍ୱରଙ୍କ ନାମ ମଧ୍ୟ ଉଲ୍ଲେଖଯୋଗ୍ୟ । ଏକାନ୍ତ ସେବା ତାଙ୍କର ଶ୍ରେଷ୍ଠ କାବ୍ୟ ଗ୍ରନ୍ଥ । ପୂର୍ବରୁ କୁହାଯାଇଛି ଯେ ଗୁରୁଜାଡ଼ା ଭେଙ୍କଟ ଅପ୍ପାରାଓ (୧୮୬୧—୧୯୧୬) ଆଧୁନିକ ତେଲୁଗୁ ସାହିତ୍ୟରେ ମଧ୍ୟ ବିଶିଷ୍ଟ କବିରୂପେ ପରିଚିତ । "ମୁତ୍ୟାଲ୍ଲା ସାରମ୍" (ମୁକ୍ତାମାଳା) ତାଙ୍କର କୃତି । ତାଙ୍କର ଗୁରୁ ଗିଡୁଗୁ ରାମମୂର୍ତ୍ତି ପାନ୍ତୁଲୁଙ୍କ ସଦୃଶ ସେ କାବ୍ୟ କବିତାରେ 'ଗ୍ରନ୍ଥିକ' ଭାଷା ପରିବର୍ତ୍ତେ ବ୍ୟାବହାରିକ ଭାଷାର ପକ୍ଷପାତୀ ଥିଲେ । ୧୯୦୧ରେ ପ୍ରତିଷ୍ଠିତ 'ସାହିତ୍ୟ ସମିତି' ଆଧୁନିକ କାବ୍ୟ କବିତାର ପରିବର୍ତ୍ତନ ଆଣିଥିଲା । ତାର ମୁଖପାତ୍ର ଥିଲା "ସାହିତି" ତଲ୍ଲାବଝଲଙ୍କଟା ଶିବଶଙ୍କର ଶାସ୍ତ୍ରୀ, ଦେଭୁଲପଲ୍ଲୀ କୃଷ୍ଣଶାସ୍ତ୍ରୀ, ବିଶ୍ୱନାଥ ସତ୍ୟନାରାୟଣ।ନୋରି ନରସିଂହ ଶାସ୍ତ୍ରୀ ପ୍ରମୁଖ ଏହି ସମିତି ସହିତ ସଂପୃକ୍ତ ଥିଲେ ଏବଂ ପରବର୍ତ୍ତୀ କାଳରେ ବିଶ୍ୱନାଥ ସତ୍ୟନାରାୟଣ କବି ସମ୍ରାଟ ରୂପେ ଖ୍ୟାତି ଲାଭ କରିଥିଲେ । ଆନ୍ଧ୍ର ପ୍ରଶସ୍ତି, ଶୃଙ୍ଗାର ବୀର ଶାନ୍ତିଦୂତ ମୁଁ ତାଙ୍କର କାବ୍ୟଗ୍ରନ୍ଥ । "ଆନ୍ଧ୍ର ଶେଲି"ରୂପେ ପରିଚିତ କୃଷ୍ଣ ଶାସ୍ତ୍ରୀଙ୍କର ଅବେଗାନୁଭୂତି ଜନିତ, ବେଦନାଜର୍ଜ୍ଜର କାବ୍ୟଗ୍ରନ୍ଥ "କୃଷ୍ଣ ପକ୍ଷମ୍" "କନ୍ନୀରୁ" "ପାଲକୀ" "ଉର୍ବଶୀ ପ୍ରବାସମ୍" ଉଲ୍ଲେଖଯୋଗ୍ୟ ସୃଷ୍ଟି । ଉପମା, ଚନ୍ଦକଳା, ତଥା ନୂତନ ଦୀଗନ୍ତ ତାଙ୍କ କବିତାର ନିଦର୍ଶନ । "ଶିବ ତାଣ୍ଡବମ୍"ର କବି ନାରାୟଣାଚାର୍ଯ୍ୟ ମଧ୍ୟ ଏହି ଯୁଗର ପ୍ରାଚୀନପନ୍ଥୀ କବି । ଏହି କବିମାନେ କବିତାର ଅର୍ଥ ଓ ଭାଷାରେ ପରିବର୍ତ୍ତନ ଆଣିଥିଲେ ମଧ୍ୟ ଏମାନେ ପରମ୍ପରାରୁ ସଂପୂର୍ଣ୍ଣ ମୁକ୍ତ ହୋଇ ନଥିଲେ ।

୧୯୩୦ ବେଳକୁ ରୋମାନ୍ଟିକ୍ କବିତା ପ୍ରତି କ୍ରମଶଃ ଅସନ୍ତୋଷ ପ୍ରକାଶ ପାଇଲା । ଏହି ଅସନ୍ତୋଷ ଓ ବିଦ୍ରୋହର ପ୍ରତିନିଧିତ୍ୱ କରିଥିଲେ ତରୁଣ କବିଗଣ । ସେମାନଙ୍କ ମଧ୍ୟରେ ଶ୍ରୀରଙ୍ଗମ୍ ଶ୍ରୀନିବାସ ରାଓ (୧୯୧୦) ଅଗ୍ରଣୀ ଥିଲେ । ପୂର୍ବେ କୁହା-ଯାଇଛି ଯେ ତାଙ୍କର ଛଦ୍ମ ନାମ "ଶ୍ରୀଶ୍ରୀ" ସତେ ଅବା ଏକ ଆଗାମୀ ଦୀପ୍ତ ପ୍ରଭାତର ସେ ହେଉଛନ୍ତି ଚାରଣ କବି । ତାଙ୍କର ଦୃଷ୍ଟିଭଙ୍ଗୀ ସର୍ବାଦୌ ନୂତନ। ତେଲୁଗୁ କବି-ତାରେ ସେ "ଅଭ୍ୟୁଦୟ କବିତ୍ୱମ୍"ର ପ୍ରବର୍ତ୍ତକ । ସେ ଥିଲେ ପ୍ରଗତିବାଦୀ କବି, ନୂତନ ଆଶା, ନୂତନ ବିଶ୍ୱାସ ତାଙ୍କ କବିତାରେ ପ୍ରତିଫଳିତ ହେଲା । ତାଙ୍କର ସ୍ମରଣୀୟ କବିତା ଓ କାବ୍ୟ ଗ୍ରନ୍ଥ ହେଉଛି "ଜଗନ୍ନାଥୁନି ରଥୀ ଚକାଲୁ" (ଜଗନ୍ନାଥଙ୍କ ଚକ)ଓ ମହାପ୍ରସ୍ଥାନ । "ରୁଷିଅକୁ ସଲାମ୍" ତାଙ୍କର ଏକ ଶ୍ରେଷ୍ଠ କବିତା ।

ତାଙ୍କର ପରୀକ୍ଷବାଦୀ କବିତାରେ ହିଁ ତେଲୁଗୁ ଭାଷା ନୂତନ ଭଙ୍ଗୀରେ ବ୍ୟବହୃତ ହୋଇଥିଲା । ତାଙ୍କର ଗୋଟିଏ କବିତାର ମର୍ମ ହେଉଛି :—

ଗୋଟିଏ କୁକୁର ଛୁଆ,
ଗୋଟିଏ ଦିଆସିଲି କାଠି,
ଗୋଟିଏ ସାବୁନ ଖୋଳ,
ଏଥିରୁ କୌଣସି ଗୋଟିଏ ପରିତ୍ୟକ୍ତ ହୋଇ ନପାରେ
ଯେହେତୁ ପ୍ରତ୍ୟେକେ କବିତାପୂର୍ଣ୍ଣ ।
ଖଣ୍ଡିଏ ଶ୍ଳେଟି,
କେତୋଟି କଦଳୀ,
ଟେବୁଲର ଉପରିଭାଗ,
ସେମାନେ ସମସ୍ତେ ତୁମକୁ ଗୃହ୍ଣାନ୍ତି,
ତୁମଙ୍କୁ ନିମନ୍ତ୍ରଣ କରନ୍ତି, ସେମାନଙ୍କର ଗଭୀରତା
କଳ୍ପନା କରିବାକୁ ।

କବିର ପ୍ରଗତିଶୀଳ ଦୃଷ୍ଟି କୋଣରେ ସମାଜର ଦାରିଦ୍ର୍ୟ, ଶୋଷଣ ତଥା ଜନତାର ବିପ୍ଳବାତ୍ମକ ମାନସହିଁ ପ୍ରତିଫଳିତ ହୋଇଥିଲା । ଏହାପରେ ତେଲୁଗୁ କବିତାରେ ଆହୁରି ଏକ ପ୍ରତିବାଦର ସ୍ୱର ଶୁଣାଯାଇଥିଲା । ଏହି ସ୍ୱର ବିଦ୍ରୂପାତ୍ମକ । "ଦିଗମ୍ବରଲୁ" କବି (ଉଲଗ୍ନକବି) ଗୋଷ୍ଠୀର ନାମ ଉଲ୍ଲେଖଯୋଗ୍ୟ । ଏକ ନିଃସ୍ତବ୍ଧ ଅର୍ଦ୍ଧରାତ୍ରରେ ହାଇଦରାବାଦର ଏକ ଗଳିରେ ଏହି ଗୋଷ୍ଠୀର କବିମାନେ ସେମାନଙ୍କର ପ୍ରଥମ କବିତା ସଙ୍କଳନର ଉଦ୍‌ଘାଟନ କରାଇଥିଲେ । ଜଣେ ରିକ୍‌ସାବାଲା ହିଁ ଏହି ଉଦ୍‌ଘାଟନ କାର୍ଯ୍ୟ କରିଥିଲେ । ଏହି ଗୋଷ୍ଠୀର କବିମାନେ "ନଗ୍ନମୁନି," "ଜ୍ୱାଲାମୁଖୀ", "ମହାସ୍ୱପ୍ନ" ପ୍ରଭୃତି ଛଦ୍ମ ନାମରେ ପରିଚିତ । ସେମାନଙ୍କର ବର୍ଣ୍ଣନାରେ ନୂତନ ଷଡ଼ଋତୁ ଆଶା, ତପନ, ଅଶ୍ରୁ, ମଦିରା, ବିରହ, ବିଷାଦ ନାମରେ ଅଭିହିତ । ସେହିପରି ସପ୍ତାହର ସାତଦିନ ହେଉଛି ଯଥାକ୍ରମେ ସ୍ନେହ, ବିଶୃଙ୍ଖଳା, କ୍ଳାନ୍ତି, ବିକାଶ, ଅନନ୍ତ ଇତ୍ୟାଦି । ଏହି ସବୁ ନୂତନ ସଂଜ୍ଞାର ଏକମାତ୍ର ଲକ୍ଷ୍ୟ ହେଉଛି ଜନସାଧାରଣଙ୍କର ସୁଷୁପ୍ତି ଭାଙ୍ଗିବା । ମାତ୍ର ଏହି ଗୋଷ୍ଠୀର କବିତା ଏପର୍ଯ୍ୟନ୍ତ ସେତେ ପ୍ରଭାବଶାଳୀ ହୋଇ ପାରିନାହିଁ । ସେମାନଙ୍କର ଅଭିବ୍ୟକ୍ତି ମଧ୍ୟ ବଳିଷ୍ଠ ନୁହେଁ । ତେବେ ଭବିଷ୍ୟତହିଁ ସେମାନଙ୍କ କବିତାର ମୂଲ୍ୟ ନିର୍ଣ୍ଣୟ କରିବ । ଶ୍ରୀରଙ୍ଗ ନାରାୟଣ ବାବୁ ଜାତୀୟତାବାଦୀ କବି । କବି ପଠାଭି, ଡି. ଆର୍‌. ରେଡ୍ଡି, ବ୍ୟକ୍ତି ସ୍ୱାତନ୍ତ୍ର୍ୟର ପକ୍ଷପାତୀ । "ବିଷ୍ଣୁଧନୁ", "ନବମି" ଚଲୁକ ଜଟିଲଙ୍କର କାବ୍ୟଗ୍ରନ୍ଥ ଏବଂ "ରୁଧିର ଜ୍ୟୋତି" ଶ୍ରୀରଙ୍ଗ ନାରାୟଣଙ୍କ କୃତି । ଡି. ଆର୍. ରେଡ୍ଡି ମଧ୍ୟ ଜଣେ ଶକ୍ତିଶାଳୀ କବି । "କୃଷକ ପତ୍ନୀ ପ୍ରତି" ତାଙ୍କର ଏକ ସ୍ମରଣୀୟ କବିତା । ଗଦ୍ୟକବିତା ମଧ୍ୟ ଆଧୁନିକ ତେଲୁଗୁ କବିତାର ଆଉ ଏକ ବଳିଷ୍ଠ ଦିଗ । ଏହି ଗଦ୍ୟ କବିତାର ସମର୍ଥକ କବିମାନଙ୍କ ପକ୍ଷରୁ ନିକଟରେ "ବଚନକବିତା" ଶୀର୍ଷକ ଏକ ଆଲୋଚନା ଗ୍ରନ୍ଥ

ପ୍ରକାଶିତ ହୋଇଅଛି । ଏହା କୃଷ୍ଣମୂର୍ତ୍ତି ଓ ଗୋପାଳ ଚକ୍ରବର୍ତ୍ତୀଙ୍କ ଦ୍ୱାରା ସଂପାଦିତ । ବାଳ ଗଙ୍ଗାଧର ତିଳକ, ଅଜନ୍ତା, ସୋମସୁନ୍ଦର, ବୈରାଗୀ, ଅରୁଦ୍ର ପ୍ରମୁଖ ଆଧୁନିକ କବି । ସମସାମୟିକ କବିତାର ଭାଷାରେ ଗ୍ରନ୍ଥିକ ଧାରା ପରିବର୍ତ୍ତେ ବ୍ୟାବହାରିକ ଧାରା ପ୍ରବର୍ତ୍ତିତ ହୋଇଅଛି । ପ୍ରଥମାବସ୍ଥାରେ ଏହା ଗଦ୍ୟ ରଚନାରେ ସୀମାବଦ୍ଧ ଥିଲା । ଅତ୍ୟାଧୁନିକ କବିତାରେ ଏକ ବୌଦ୍ଧିକ ଚେତନା ପ୍ରତିଫଳିତ । ଏହାର ହେତୁ ହେଉଛି ପାଶ୍ଚାତ୍ୟ ସାହିତ୍ୟର ପ୍ରଭାବ ।

ଉପମା ବୈଚିତ୍ର୍ୟ, ଭାବ ଚେତନା ଅତ୍ୟାଧୁନିକ ତେଲୁଗୁ କବିତାର ଲକ୍ଷଣ ।

ଆଧୁନିକ ଉପନ୍ୟାସ—ପୂର୍ବେ ବର୍ଣ୍ଣନା କରାଯାଇଛି ଯେ ତେଲୁଗୁ ସାହିତ୍ୟରେ ନବଯୁଗର ଅନ୍ୟତମ ନମିତା ବୀରେଶଲିଙ୍ଗମ୍‌ଙ୍କର "ରାଜ ଶେଖର ଚରିତମ୍" ହେଉଛି ପ୍ରଥମ ଆଧୁନିକ ଉପନ୍ୟାସ । ଏହା ସମ୍ଭବତଃ ୧୮୭୮ ମସିହାରେ ଲେଖା ଏବଂ ଇଂରେଜ ଲେଖକ ଗୋଲ୍ଡ ସ୍ମିଥ୍‌ଙ୍କର ଉପନ୍ୟାସ "ଭିକାର୍ ଅଫ୍ ଓଏକ୍‌ଫିଲଡ୍"ର ଅବଲମ୍ବନରେ ଏହା ପରିକଳ୍ପିତ । ଏଥିରେ ଆନ୍ଧ୍ର ସମାଜର ଚିତ୍ର ପ୍ରଦତ୍ତ । "ଚନ୍ଦ୍ରାମଣି ଗ୍ରନ୍ଥମାଳା" ପ୍ରଭୃତି ଅନୁଷ୍ଠାନ ଦ୍ୱାରା ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଏବଂ ପରେ ସାମାଜିକ ପୃଷ୍ଠଭୂମିରେ ବହୁ ଉପନ୍ୟାସ ରଚିତ ହୋଇଥିଲା । ରାଜମହେନ୍ଦ୍ରୀର ଚନ୍ଦ୍ରାମଣି ପ୍ରେସ୍ ଅନୁଷ୍ଠାନ ପକ୍ଷରୁ ଉପନ୍ୟାସ ନିମନ୍ତେ ପୁରସ୍କାର ଘୋଷଣା କରାଯାଇଥିଲା । ଫଳରେ ରାମଚନ୍ଦ୍ର ବିଜୟମ୍ (୧୮୯୪) ହେମଲତା (୧୮୯୪) ଅହଲ୍ୟା ବାଈ (୧୮୯୭—୯୮) ପ୍ରଭୃତି ଐତିହାସିକ ଉପନ୍ୟାସର ପ୍ରଣେତା ଚିଲ୍ଲୁକୁ ମୂର୍ତ୍ତି ଲକ୍ଷ୍ମୀନରସିଂହମ୍ ଧର୍ମବତୀ ବିଳାସମ୍ (୧୮୯୩) ମାଳତୀ ରାଘବୀୟମ୍ (୧୮୯୫) ଲକ୍ଷ୍ମୀ ସୁନ୍ଦର ବିଜୟମ (୧୮୯୪)ର ପ୍ରଣେତା ଖଣ୍ଡଭିଲ ରାମଚନ୍ଦ୍ରୁଡୁ ଏହି ସମୟରେ ଉତ୍କୃଷ୍ଟ ଉପନ୍ୟାସ ରଚନା ପ୍ରତି ଧ୍ୟାନ ଦେଇଥିଲେ । ଔପନ୍ୟାସିକ କେଟେବରପୁ ଭେଙ୍କଟ ଶାସ୍ତ୍ରୀଙ୍କର "ରାଜଲକ୍ଷ୍ମୀ" ଏବଂ " ଲକ୍ଷ୍ମୀ ପ୍ରସାଦମ୍ ଦୁଇଟିଗୋଟି ଆଦୃତ ସାମାଜିକ ଉପନ୍ୟାସ । ଉପନ୍ୟାସର ଗଠନ ଯୁଗରେ ବିଭିନ୍ନ ଭାରତୀୟ ସାହିତ୍ୟ ଯଥା ବଙ୍ଗଳା, ହିନ୍ଦୀ ଓ ତାମିଲ ମାଲୟାଲମ୍‌ରୁ ଉପନ୍ୟାସ ତେଲୁଗୁରେ ଅନୂଦିତ ହୋଇଥିଲା । ବଙ୍ଗଳା ଔପନ୍ୟାସିକ ବଙ୍କିମଚନ୍ଦ୍ରଙ୍କର ପ୍ରସିଦ୍ଧ ଉପନ୍ୟାସ "ଆନନ୍ଦମଠ" ଏବଂ "କପାଳକୁଣ୍ଡଳା", ଦେବୀ 'ଚୌଧୁରାଣୀ'. 'ଶୈବଳିନୀ' ଯଥାକ୍ରମେ ଜି. ଭି. ଭୈରବ ସ୍ୱାମୀ, ସି. ଭାସ୍କର ରାଓ ଏବଂ ଚଲ୍ଲଗରା ଶ୍ରୀନିବାସ ରାଓଙ୍କ ଦ୍ୱାରା ଅନୂଦିତ ହୋଇଥିଲା । ଏହି ସମସ୍ତ ଅନୁବାଦ ୧୯୦୭ରୁ ୧୯୧୦ ମସିହା ଭିତରେ ସମାପ୍ତ ହୋଇଥିଲା । ସେହିପରି ମାଲୟାଲମ୍ ଭାଷାରେ ଲିଖିତ ଚନ୍ଦୁମେନନ୍‌ଙ୍କ ଉପନ୍ୟାସ 'ଇନ୍ଦୁଲେଖା'ର ଅବଲମ୍ବନରେ ବୋଦଲ ଭେଙ୍କଟରାମ ରେଡ୍‌ଡି

ତେଲୁଗୁରେ 'କଳାବତୀ' ଉପନ୍ୟାସ ରଚନା କରିଥିଲେ । 'ଗୁଣସୁନ୍ଦରୀ' ଉପନ୍ୟାସ କୋଟପଲ୍ଲୀ ସୂର୍ଯ୍ୟ ରାଓଙ୍କର ରଚନା । ପ୍ରାଚୀନ ଯୁଗର ଇତିହାସ, ଗୌରବ ଗାଥା, ମୋଗଲ, ରାଜପୁତ ଏବଂ ମରହଟ୍ଟାମାନଙ୍କର କାହାଣୀ ଉପରେ ବହୁ ଉପନ୍ୟାସ ଆଧାରିତ ହୋଇଥିଲା । ଭେଲାଲ ସୁବାରାଓଙ୍କର ଉପନ୍ୟାସ 'ରାଣୀସଂଯୁକ୍ତା' (୧୯୦୮) ଏବଂ ରାୟସମ ଭେଙ୍କଟ ସିବୁଡୁଙ୍କ (୧୮୭୬-୧୯୫୩) 'ବଲମ୍ମାରାଣୀ' ଭୋଗରାଜୁ ନାରାୟଣ ମୂର୍ତ୍ତିଙ୍କର 'ଅଷ୍ଟମହିଷୁ' ଚଲକୁରୀ ବୀରଭଦ୍ର ରାଓଙ୍କର "ନୟା କୁରଲା ଦର୍ପମ୍" ଶ୍ରେଷ୍ଠ ଐତିହାସିକ ଉପନ୍ୟାସ । ଆଦିଭି ବାପିରାଜୁଙ୍କର "ନାରାୟଣରାଓ" ଉପନ୍ୟାସ ତ୍ରୁଟିପୂର୍ଣ୍ଣ ବୋଲି ସମାଲୋଚିତ ହୋଇଥିଲା । ବିଶ୍ୱନାଥ ସତ୍ୟନାରାୟଣାଙ୍କର "ଚେଲମିଲକଟ୍ଟୁ", "ଏକବୀରା" "ବୀର ବଲ୍ଲଡୁ" "ବନ୍ଧନ ସେନାନୀ "ସ୍ୱର୍ଗୀନକି ନିଚ୍ଚେନ" ଏବଂ ଭୟିପାଡ଼ାଗାଲୁ ଉଲ୍ଲେଖଯୋଗ୍ୟ ଶ୍ରେଷ୍ଠ ଉପନ୍ୟାସ । ନୋରି ନରସିଂହ ଶାସ୍ତ୍ରୀଙ୍କର ଐତିହାସିକ ଉପନ୍ୟାସ "ରୁଦ୍ରମ ଦେବୀ" ନାରାୟଣ ଭଟ୍ଟୁ" ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧର ରଚନା । ପୋଥୁକୁଚି ସମ୍ବା ଶିବାରାଓଙ୍କର ଉପନ୍ୟାସ "ଉଦୟ କିରଣାଲୁ" ଏବଂ ଏସ୍. ଭି. ସୁବାରାଓଙ୍କର (ବୁଚିବାବୁ) "ଚିଭରକୁ ମିଗିଲେଦି" (ଅବଶେଷ)ରେ ଯଥାକ୍ରମେ ଆଧୁନିକ ସାମାଜିକ ଏବଂ ଶିଳ୍ପ ସଂଘର୍ଷ ପ୍ରତିଫଳିତ କରିଥାଏ । "ଚିଲ୍ଲକୂର୍ତ୍ତିଙ୍କର ପ୍ରଥମ ଉପନ୍ୟାସ "ରାମଚନ୍ଦ୍ର ବିଜୟମ୍"ଠାରୁ ଆରମ୍ଭ କରି ଶ୍ରେଷ୍ଠ ବିବେଚିତ "କର୍ପୁର ମଞ୍ଜରୀ" (୧୮୯୮) ଏବଂ "ସୌନ୍ଦର୍ଯ୍ୟ ତିଲକ" ପର୍ଯ୍ୟନ୍ତ ତାଙ୍କର ପ୍ରାୟ ସମସ୍ତ ଉପନ୍ୟାସ ଚିନ୍ତାମଣି ପୁରସ୍କାର ପ୍ରାପ୍ତ ହୋଇଥିଲା । ଏହାଛଡ଼ା ସେ ବଙ୍ଗଳାର ଔପନ୍ୟାସିକ ରମେଶଚନ୍ଦ୍ର ଦତ୍ତଙ୍କର (୧୮୪୮-୧୯୦୯) ଉପନ୍ୟାସ ଲେକ୍ ଅଫ୍ ପାମ୍ସ୍ (Lake of Palms)କୁ ତେଲୁଗୁରେ ଅନୁବାଦ କରିଥିଲେ । ଉଚ୍ଚକୋଟୀର ଔପନ୍ୟାସିକ ଓ କବି ଭାବରେ ତାଙ୍କର ପ୍ରସିଦ୍ଧି ସ୍ୱୀକୃତ । ପୁଣ୍ୟ ଆହରଣ ଉଦ୍ଦେଶ୍ୟରେ ଧାର୍ମିକ ନରନାରୀମାନେ ଧର୍ମକ୍ଷେତ୍ରମାନଙ୍କୁ ଯାତ୍ରା କରିଥାନ୍ତି । ସେହି ଯାତ୍ରୀମାନଙ୍କର ଅଭିଜ୍ଞତା ସୁଖ, ଦୁଃଖକୁ କେନ୍ଦ୍ରକରି କେତେକ ଲେଖକ ମଧ୍ୟ ଉପନ୍ୟାସ ରଚନା କରିଥିଲେ । ୧୯୦୩-୧୯୦୮ ମସିହାରେ ପ୍ରକାଶିତ ମଧୀର ସୁବାରାଓଙ୍କର "କାଶୀମାଜିଲ୍ଲ "(କାଶୀଯାତ୍ରା)" ଏତାଦୃଶ ଉପନ୍ୟାସ ।

ଭାରତୀୟ ଜାତୀୟ କଂଗ୍ରେସର ଅଭ୍ୟୁତ୍ଥାନ, ଦେଶରେ ସାମାଜିକ ତଥା ରାଜନୈତିକ ପ୍ରଭାବ ତେଲୁଗୁ ଔପନ୍ୟାସିକମାନଙ୍କୁ ମଧ୍ୟ କମ୍ ପ୍ରଭାବିତ କରିନାହିଁ । ହରିଜନମାନଙ୍କର ସମସ୍ୟାକୁ କେନ୍ଦ୍ରକରି ଉନ୍ନବ ଲକ୍ଷ୍ମୀ ନାରାୟଣଙ୍କ ଦ୍ୱାରା ଲିଖିତ "ମାଲପଲ୍ଲୀ" (୧୯୨୦) ଏକ ପ୍ରସିଦ୍ଧ ଉପନ୍ୟାସ । କେନ୍ଦ୍ର ସାହିତ୍ୟ ଏକାଡେମୀ ଦ୍ୱାରା ଏହା ହିନ୍ଦୀଭାଷାରେ ଅନୂଦିତ ହୋଇଛି । ସମସାମୟିକ ଜୀବନର ଚିତ୍ର ଓ ଚେତନା ଏହି ଉପନ୍ୟାସରେ ପ୍ରତିଫଳିତ । ସେ ଯଥାର୍ଥତଃ ଆଧୁନିକ ତେଲୁଗୁ ଉପନ୍ୟାସର ପ୍ରବର୍ତ୍ତକ । ସମାଜ ସଂସ୍କାରକ ଗୁଡ଼ିପାଟି ଭେଙ୍କଟାଚଲମ୍‌ଙ୍କ ଲେଖନୀ ବହୁ ମୌଳିକ ସମସ୍ୟାଧର୍ମୀ ଉପନ୍ୟାସ ସୃଷ୍ଟି କରିଅଛି ।

ତାମିଲ, ମାଲୟାଲମ୍, କନ୍ନଡ଼, ମରାଠୀ, ହିନ୍ଦୀ, ପ୍ରଭୃତି ଭାଷାରୁ ବହୁ ଉପନ୍ୟାସ ତେଲୁଗୁରେ ଅନୂଦିତ ହୋଇଛି । ଇଂରାଜୀ ଔପନ୍ୟାସିକ ସ୍କଟ୍, ଡିକେନସ୍, ଆଲେକ୍‌ଜାଣ୍ଡାର ଡୁମାସ୍ ପ୍ରଭୃତିଙ୍କ ଉପନ୍ୟାସ ମଧ୍ୟ ଏହି ଭାଷାରେ ଅନୂଦିତ ହୋଇଛି । ତରୁଣ ଔପନ୍ୟାସିକମାନଙ୍କ ମଧ୍ୟରେ ମାଲତୀ ଚନ୍ଦୁରଙ୍କର "ଚମ୍ପକମ୍ ମଲ୍ଲାଦି ବସୁନ୍ଧରାଙ୍କର "ତଂଜୁର ପତନ" ଓ "ଦୂରପୁକୋଂଡଲୁ" ଏବଂ ନାରୀ ଲେଖିକା କୁଟୁଗୁଣ୍ଡୀ ଲକ୍ଷ୍ମୀନାରଣାମ୍ବାଙ୍କର "ଶୁଭଦ୍ରା" ଯୋଗେଶ୍ୱରୀ, ଅନ୍ନପୂର୍ଣ୍ଣା, କୋନୁପତି ବରଲକ୍ଷ୍ମୀ ମା'ଙ୍କର "ବସୁମତୀ" ପ୍ରଭୃତି କୃତି ଉଲ୍ଲେଖଯୋଗ୍ୟ ।

ଆଧୁନିକ କ୍ଷୁଦ୍ର ଗଳ୍ପ :—ସଂସ୍କୃତର "ପଞ୍ଚତନ୍ତ୍ର" "କଥାସରିତ ସାଗର" ଅବଲମ୍ବନରେ ପ୍ରାଚୀନ କାଳରେ ଏହି ଭାଷାରେ ଆଖ୍ୟାନ ଲେଖାଯାଇଥିଲା । କିନ୍ତୁ ଆଧୁନିକ ତେଲୁଗୁ କ୍ଷୁଦ୍ରଗଳ୍ପର ସୃଷ୍ଟି ସାଂପ୍ରତିକ ଶତାବ୍ଦୀର ଆରମ୍ଭରେ ଗୁରୁଜାଡା-ଭେଙ୍କଟ ଅପପାରାଓଙ୍କ (୧୮୬୧—୧୯୧୬) ସମୟରେ ଆରମ୍ଭ ହୋଇଥିଲା । ତାଙ୍କର କ୍ଷୁଦ୍ରଗଳ୍ପ 'ଡିଡାପଟୁ' ଓ "ମାଟିଲଡ଼ୀ" ପ୍ରଶଂସାଲାଭ କରିଥିଲା । ପରିମାଣ ଦୃଷ୍ଟିରୁ ସ୍ୱଳ୍ପ ହେଲେ ହେଁ ପରବର୍ତ୍ତୀ ଗଳ୍ପ ରଚନାକୁ ତାହା ପ୍ରଭାବିତ କରି ପାରିଥିଲା । "ମାତାମନ୍ତ୍ରୀ" ତାଙ୍କର ଏକ କ୍ଷୁଦ୍ରଗଳ୍ପ, ଗୁଡ଼ିପଟି ଭେଙ୍କଟାଚଲମ୍ ଉଭୟ ପରିମାଣ ଏବଂ ଗୁଣାତ୍ମକ ଦୃଷ୍ଟିରେ ହେଉଛନ୍ତି ବିଶିଷ୍ଟ ଗଳ୍ପ ଲେଖକ । ଶତାଧିକ କ୍ଷୁଦ୍ର-ଗଳ୍ପର ଲେଖକ ଭେଲୁରୀ ଶିବରାମ ଶାସ୍ତ୍ରୀ ଏବଂ "ଏକାଦଶୀ" ଗଳ୍ପସଙ୍କଳନର ପ୍ରଣେତା ଚନ୍ତା ଦକ୍ଷିତୁଲୁ ତେଲୁଗୁ କ୍ଷୁଦ୍ରଗଳ୍ପର ବିସ୍ତୃତି ଏବଂ ପ୍ରାଚୁର୍ଯ୍ୟ ନିମନ୍ତେ ଦାୟୀ । ବିବ କୋଣ୍ଡଲ ଭେଙ୍କଟରାଓଙ୍କର ଗଳ୍ପରେ ଗ୍ରାମ୍ୟ ଜୀବନ, ମୋକ୍‌କାପାଟି ନରସିଂହ ଶାସ୍ତ୍ରୀ, ଟାଟା କୃଷ୍ଣମୂର୍ତ୍ତିଙ୍କ ଗଳ୍ପରେ ବ୍ୟଙ୍ଗ, ବିଦ୍ରୂପର ଆଭାସ ଦେଖିବାକୁ ମିଳେ । ତେଲୁଗୁ ପାଠକ ମାନଙ୍କ ନିକଟରେ ମୁନି ମାଣିକ୍ୟମ୍ ନରସିଂହରାଓ (୧୮୯୮) ଏବଂ ଭମିଡ଼ି ପାଟିକାମେଶ୍ୱର ରାଓ ସେମାନଙ୍କ ଗଳ୍ପରେ ସାଧାରଣ ଜୀବନର ଛୋଟ ଛୋଟ ଘଟଣା ବର୍ଣ୍ଣନା କରିଥାନ୍ତି । ନରସିଂହ ରାଓଙ୍କର କ୍ଷୁଦ୍ରଗଳ୍ପ ୧୯୪୯-୫୦ରେ ତେଲୁଗୁ ଭାଷା ସମିତି ଦ୍ୱାରା ପୁରସ୍କୃତ ହୋଇଥିଲା ।

ଶ୍ରୀପାଦ ସୁବ୍ରମଣ୍ୟଶାସ୍ତ୍ରୀଙ୍କ ଅଜସ୍ର କ୍ଷୁଦ୍ର ଗଳ୍ପରେ ଆନ୍ଧ୍ରର ଉପକୂଳ ଅଞ୍ଚଳର ବର୍ଣ୍ଣନା ଦେଖିବାକୁ ମିଳେ । ତାଙ୍କ ଗଳ୍ପରେ ସାଧାରଣ ଗାଉଁଲି ଭାଷା ବ୍ୟବହୃତ । ଜନପ୍ରିୟ ସାହିତ୍ୟକ ବିଭାଗ ରୂପେ କ୍ଷୁଦ୍ରଗଳ୍ପର ପ୍ରାଧାନ୍ୟ ଆଧୁନିକ ତେଲୁଗୁ ସାହିତ୍ୟରେ ଅବଶ୍ୟ ସ୍ୱୀକୃତ । ବର୍ତ୍ତମାନ କ୍ଷୁଦ୍ରଗଳ୍ପ ଲେଖକଙ୍କ ସଂଖ୍ୟା ଦିନକୁ ଦିନ ବୃଦ୍ଧି ପାଉଛି । ଶ୍ରୀନିବାସ ଶିରୋମଣି, ମାଲ୍ଲାଦିରାମକୃଷ୍ଣ ଶାସ୍ତ୍ରୀ (୧୯୦୫) ନାରାଲାଭେଙ୍କଟେଶ୍ୱର ରାଓ, ଓ୍ୱାଟି ଗାନ୍ଧି କୁଟୁମ୍ବାରାଓ, ମୁଡା ବିଶ୍ୱନାଥମ୍ (୧୯୧୯), ପାଲ୍ଲାଗୁମି ପଦ୍ମରାଜୁ (୧୯୧୫) ତେନେତି ଶୁରୀ (୧୯୨୯)

ସୋମ ସୁନ୍ଦରମ୍ (୧୯୨୪) ମାଧବ ପେଦ୍ଦ, ଆନନ୍ଦସେଟି ସୁବାରାଓ (୧୯୨୨) ବାଲ-କାଡ୍ଡା କାଲାରାଓ ପ୍ରଭୃତି ବହୁ ଲେଖକ ଏହି ବିଭାଗରେ ଉଜ୍ଜ୍ୱଳ ସୃଷ୍ଟିର ପରିଚୟ ଦେଇଛନ୍ତି । ପାଲଗୁମ୍ମି ପଦ୍ମରାଜୁ (୧୯୧୫)ଙ୍କର କ୍ଷୁଦ୍ରଗଳ୍ପ "ଗାଲିବାନା" (ଝଡ଼) ଆନ୍ତର୍ଜାତିକ କ୍ଷୁଦ୍ର ଗଳ୍ପ ପ୍ରତିଯୋଗିତାରେ (୧୯୫୨) ପୁରସ୍କୃତ ହୋଇଥିଲା । ଆଦଭି ବାପିରାଜୁ, ଚଲ୍ଲପଲ୍ଲି ଶିବଶଙ୍କର ଶାସ୍ତ୍ରୀ ମଧ୍ୟ ବିଶିଷ୍ଟ କଥାକାର ରୂପେ ପ୍ରସିଦ୍ଧ । "କରୁଣାକୁମାରଙ୍କ ଲେଖନୀରେ ତେଲୁଗୁ କ୍ଷୁଦ୍ର ଗଳ୍ପର ନୂତନ ଦିଗନ୍ତ ସମ୍ଭବ ହୋଇଛି । କେ. କୁଟୁମ୍ବାରାଓ ବାସ୍ତବବାଦୀ, ଟି. ଗୋପୀଚନ୍ଦ ସମାଜବାଦୀ ବ୍ୟଙ୍ଗଧର୍ମୀ, ପି. ପଦ୍ମରାଜୁ, ମନସ୍ତତ୍ତ୍ୱବିତ୍ ଲେଖକ । ଅଧିକାଂଶ ମାସିକ ପତ୍ରପତ୍ରିକାରେ କ୍ଷୁଦ୍ରଗଳ୍ପ ପାଇଁ ମଧ୍ୟ ସ୍ଥାନ ନିର୍ଦ୍ଦିଷ୍ଟ ଥାଏ । ଭାରତୀ, ଶାରଦା, ଆନ୍ଧ୍ର ପତ୍ରିକା, ଆନ୍ଧ୍ର ପ୍ରଭା, କୃଷ୍ଣାପତ୍ରିକା ପ୍ରଭୃତି ତେଲୁଗୁ ମାସିକୀ ଓ ସାପ୍ତାହିକୀ କ୍ଷୁଦ୍ର ଗଳ୍ପ ପ୍ରକାଶ କରିଥାନ୍ତି । ଆନ୍ଧ୍ର ସାମାଜିକ ଜୀବନ ଏବଂ ସାଂସ୍କୃତିକ ଧାରା ଆଧୁନିକ କ୍ଷୁଦ୍ର ଗଳ୍ପମାନଙ୍କରେ ବେଶ୍ ପ୍ରତିଫଳିତ ।

ଆଧୁନିକ ନାଟକ :—ନାଟକ ଏବଂ ଏକାଙ୍କିକା ମଧ୍ୟ ଆଜିକାଲି ତେଲୁଗୁ ସାହିତ୍ୟରେ ଲେଖକମାନଙ୍କ ଦୃଷ୍ଟି ଆକର୍ଷଣ କରି ପାରିଛି । ପ୍ରଥମାବସ୍ଥାରେ ସଂସ୍କୃତ ନାଟକ ହିଁ ତେଲୁଗୁ ଭାଷାରେ ଅନୂଦିତ ହୋଇଥିଲା । ଲୋକପ୍ରିୟ କୁଚିପୁଡି ନୃତ୍ୟ ଅନୁସରଣରେ ପୌରାଣିକ ଉପାଖ୍ୟାନ ନୃତ୍ୟାଭିନୟ ଲିଖିତ ହୋଇଥିଲା । କୋକଣ୍ଡା ଭେଙ୍କଟରତ୍ନଙ୍କର "ନରକାସୁର ବିଜୟ ବ୍ୟୋଗମ୍" ଏବଂ ବୀରେଶଲିଙ୍ଗମ୍‌ଙ୍କର "ଅଭିଜ୍ଞାନ ଶକୁନ୍ତଳମ୍" ହିଁ ସଂସ୍କୃତରୁ ଅନୂଦିତ ନାଟକ । ପ୍ରାଚୀନ କାଳରେ ଆନ୍ଧ୍ର ଅଧିବାସୀଙ୍କ ମଧ୍ୟରେ ଯକ୍ଷଗାନ (yakshagan) ଶୀର୍ଷକ ଗ୍ରାମ୍ୟ ଅଭିନୟ ପ୍ରଚଳିତ ହେଉଥିଲା । ବୀରେଲିଙ୍ଗମ୍ ମଧ୍ୟ ଇଂରେଜ ନାଟ୍ୟକାର ସେକ୍‌ସପିଅରଙ୍କ "ମରଚ୍ଚାଣ୍ଟ ଅଫ୍ ଭେନସ୍" ଓ କମେଡ଼ି ଅଫ୍ ଏର୍‌ସର ଅନୁବାଦ କରିଥିବାର ଜଣା ଯାଏ । ବିଜୟନଗର ମହାରାଜା ଆନନ୍ଦ ଗଜପତି ସଂସ୍କୃତ ନାଟକ ପ୍ରତି ଆକୃଷ୍ଟ ହୋଇଥିଲେ ଏବଂ ନିଜ ରାଜ୍ୟରେ ଏକ ଅଭିନୟ ସମିତି ସ୍ଥାପନ କରିଥିଲେ । ଏଥିରୁ ଜଣାପଡ଼େ ଯେ ପ୍ରଥମାବସ୍ଥାରେ ତେଲଗୁ ସାହିତ୍ୟରେ ସଂସ୍କୃତ ନାଟକର ପ୍ରଭାବ ବିଶେଷ ପଡ଼ିଥିଲା । ଉନବିଂଶ ଶତାବ୍ଦୀର ଶେଷ ଭାଗରେ ଦୁଇଗୋଟି ଘଟଣା ତେଲୁଗୁ ନାଟକରେ ପରିବର୍ତ୍ତନ ଆଣିଥିଲା । ପ୍ରଥମଟି ହେଉଛି ବମ୍ବେର ପାର୍ସିଥିଏଟର ଦଳଙ୍କର ଅଭିନୟ ପ୍ରଦର୍ଶନ, ଦ୍ୱିତୀୟଟି ହେଉଛି, ମହାରାଷ୍ଟ୍ରର ଧରଓ୍ୱାର ଗୋଷ୍ଠୀଙ୍କର ଅଭିନୟ ପ୍ରଦର୍ଶନ ।

ତେଲୁଗୁ ସାହିତ୍ୟରେ ଧର୍ମବରମ୍ କୃଷ୍ଣାଚାର୍ଯ୍ୟ ହିଁ (୧୮୫୩-୧୯୧୩) ହେଉଛନ୍ତି "ଆନ୍ଧ୍ର ନାଟକ ପିତାମହ" । ପ୍ରହ୍ଲାଦ, ବିଷାଦ ଶାରଙ୍ଗଧର, ଚନ୍ଦନାଲସ୍ୟମ୍ ପ୍ରଭୃତି ତ୍ରିଂଶଖଣ୍ଡ ନାଟକ ତାଙ୍କର କୃତିତ୍ୱ । ଜଣେ ସୁଦକ୍ଷ ଅଭିନେତା ଏବଂ ନାଟ୍ୟକାର ଭାବରେ ତାଙ୍କର ପ୍ରତିଷ୍ଠା ମଧ୍ୟ ସର୍ବ ସ୍ୱୀକୃତ । କୋଲାଚଲମ

ଶ୍ରୀନିବାସ ରାଓ ମଧ୍ୟ ଜଣେ ନାଟ୍ୟକାର । "ବିଜୟ ନଗରମ୍ ରାଜ୍ୟ ପତନମ୍" ତାଙ୍କର ଶ୍ରେଷ୍ଠ ନାଟକ । ବାଲିଜେପଲ୍ଲି ଲକ୍ଷ୍ମୀକାନ୍ତମ୍ (୧୮୮୦-୧୯୫୧)ଙ୍କର "ହରିଶ୍ଚନ୍ଦ୍ର", କୋପବରପୁ ସୁବାରାଓଙ୍କର "ରୋସନାରା" ଯଥାକ୍ରମେ ପୌରାଣିକ ଓ ଐତିହାସିକ ନାଟକ ଭାବରେ ଆଦୃତ ହେଉଥିଲା । ଚିଲକମୂର୍ତ୍ତି ଲକ୍ଷ୍ମୀ ନରସିଂହମ୍‌ଙ୍କର ବହୁ ନାଟକ ପୌରାଣିକ କଥାବସ୍ତୁ ଉପରେ ଆଧାରିତ । ବେଦମ୍ ଭେଙ୍କଟ ରାୟ ଶାସ୍ତ୍ରୀଙ୍କର "ପ୍ରତାପରୁଦ୍ରୀୟମ୍", ବିଶିଷ୍ଟ ଗଦ୍ୟ ଲେଖକ ଗୁରୁଜାଡା ଆପ୍‌ପାରାଓ ଙ୍କର ସାମାଜିକ ନାଟକ "କନ୍ୟା ଶୁଲ୍‌କମ୍" (୧୯୧୦) କାନ୍ଦୁକୁରି ନାରାୟଣ ରାଓଙ୍କର ବିଲ୍ୱମଙ୍ଗଳ ଗଳ୍ପାଂଶ ଅବଲମ୍ବନରେ ଲିଖିତ "ଚନ୍ଦ୍ରାମଣି" ନାଟକ ବେଶ୍ ସଫଳତା ହାସଲ କରିଥିଲା । ଚନ୍ଦ୍ରାମଣି ନାଟକ ସମାଜମ୍, ସୁରଭି ଡ୍ରାମାକମ୍ପାନି" ଏବଂ ତେନାଲି, ନେଲୁରୁ, ଏଲୁରୁ ମସଲିପଟ୍ଟମ୍, ବିଜୟ ନଗରମ୍, ଶ୍ରୀକାକୁଲମ୍ ପ୍ରଭୃତି ବିଭିନ୍ନ ସ୍ଥାନରେ ଗଠିତ ନାଟ୍ୟ ଅନୁଷ୍ଠାନର ଉତ୍ସାହରେ ବହୁ ଲେଖକ ରଂଗୋପଯୋଗୀ ନାଟକ ରଚନା ପ୍ରତି ଆକୃଷ୍ଟ ହୋଇଥିଲେ । ପିଠାପୁର ମହାରାଜାଙ୍କ ପୃଷ୍ଠ ପୋଷକତାରେ ପାନୁଗଣ୍ଟି ଲକ୍ଷ୍ମୀ ନରସିଂହ ରାଓ (୧୮୬୫-୧୯୪୦) ବହୁ ନାଟକ ରଚନା କରିଥିଲେ । ତାଙ୍କର ନାଟକ "ରାଧାକୃଷ୍ଣ" ଦର୍ଶକମାନଙ୍କ ମଧ୍ୟରେ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା । ବେଦମ ଭେଙ୍କଟରାୟାଶାସ୍ତ୍ରୀ (ନେଲ୍ଲୋର) ସଂସ୍କୃତରୁ ଶ୍ରୀହର୍ଷଙ୍କ 'ନାଗାନନ୍ଦ" ଏବଂ କାଳିଦାସଙ୍କ "ବିକ୍ରମୋର୍ବଶୀ" ତେଲୁଗୁରେ ଅନୁବାଦ କରି ଖ୍ୟାତି ଲାଭ କରିଥିଲେ । ତାଙ୍କର ପ୍ରତାପରୁଦ୍ରୀୟମ୍ ନାଟକର ପ୍ରତାପରୁଦ୍ରଙ୍କ ମନ୍ତ୍ରୀ ଯୁଗନ୍ଧରଙ୍କ ଚରିତ୍ର ଦର୍ଶକମାନଙ୍କୁ ଆକୃଷ୍ଟ କରିଥିଲା ।

ଗୁଣ୍ଡିମେଡ଼ା ଭେଙ୍କଟ ସୁବାରାଓଙ୍କ ଲିଖିତ ଐତିହାସିକ ନାଟକ "ଖିଲଜୀ ରାଜ୍ୟ ପତନମ୍", କପା ଓ୍ୱାରପୁ ସୁବାରାଓଙ୍କ ଲିଖିତ "ଶ୍ରୀକୃଷ୍ଣ ତୁଲାଭାରମ୍" ତିରୁପତି ଭେଙ୍କଟ କବିଙ୍କ ଲିଖିତ "ପାଣ୍ଡବ ବିଜୟମ୍" ପ୍ରଭୃତି ପୌରାଣିକ ନାଟକ ରଂଗମଂଚ ମାନଙ୍କରେ ଅଭିନୀତ ହୋଇଥିଲା ଏବଂ ଆଦୃତ ହୋଇଥିଲା । ପ୍ରଥମାବସ୍ଥାରେ ୱାରେଣ ଲିଙ୍ଗମ୍‌ଙ୍କ ଫାର୍ସ ବୁଦ୍ଧି ପରବର୍ତ୍ତୀ କାଳରେ ଆଧୁନିକ ଏକାଙ୍କିକାର ସୃଷ୍ଟି ହୋଇଥିଲା । ନୋରି ନରସିଂହ ଶାସ୍ତ୍ରୀଙ୍କ "ସୋମନାଥ ବିଜୟମ୍" (୧୯୨୦) ଆଧୁନିକ ତେଲଗୁ ସାହିତ୍ୟର ପ୍ରଥମ ଜନପ୍ରିୟ ଏକାଙ୍କିକା ।

ସମାଜର ଦୈନ୍ୟ, ଅଭାବ ପ୍ରପୀଡ଼ିତ, ଅତ୍ୟାଚାରିତ ସର୍ବହରା ଶ୍ରମିକ ଏବଂ କୃଷାଣୀ ମାନଙ୍କର କରୁଣ ଚିତ୍ର ବିପ୍ଳବୀ ତରୁଣ ନାଟ୍ୟକାରମାନଙ୍କର ନାଟକରେ ପ୍ରଦର୍ଶିତ । ଏହିପରି ବିପ୍ଳବୀ ନାଟ୍ୟକାରମାନଙ୍କ ମଧ୍ୟରେ କୋଣ୍ଡାମୁଦି, ଗୋପାଳରାୟ ଶର୍ମା, ଆତ୍ରେୟଅଙ୍କର ସୂର୍ଯ୍ୟରାଓ ପ୍ରଧାନ । ନାଟ୍ୟ ସାହିତ୍ୟ ଏବଂ ନାଟ୍ୟକାରମାନଙ୍କୁ ଉତ୍ସାହ ଦେବାରେ "ନାଟ୍ୟକଳା ପରିଷଦର" ଭୂମିକା ସ୍ୱୀକୃତ । ୧୯୨୩ ମସିହାରେ

ବିଶ୍ୱନାଥ ସତ୍ୟନାରାୟଣଙ୍କ ଲିଖିତ "ଆନାରକଲି" ନାଟକ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା ସେହିପରି ତାଙ୍କର ନାଟକ ନର୍ତ୍ତନଶାଳା"ରେ କୀଚକ କବଳରୁ ଦ୍ରୌପଦୀଙ୍କ ଉଦ୍ଧାର ବର୍ଣ୍ଣିତ ହୋଇଥିଲା । ଏହି ଉଭୟ ନାଟକର ସାହିତ୍ୟିକ ମୂଲ୍ୟ ଯଥେଷ୍ଟ ।

ମୁଦ୍ଦୁକୃଷ୍ଣା (୧୮୯୯) ଙ୍କର ଛୋଟ ଛୋଟ ନାଟକ, ମାଲାଦ୍ଦି ବିଶ୍ୱନାଥ ଶର୍ମା କବି ରାଜୁ (୧୮୯୦—୧୯୪୭) ଙ୍କର ସାମାଜିକ ଏକାଙ୍କିକା ସମୂହ ପିଠାପୁର ଯୁବରାଜ ରାମାରାଓଙ୍କର ନାଟକାବଳୀ ଆଧୁନିକ ଯୁଗର ନାଟ୍ୟ ସାହିତ୍ୟର ବିକାଶ ଦିଗରେ ସହାୟତା କରିଛି । ଭେଙ୍କଟ ପାକାଲା ରାଜମାନ୍ନାର (୧୯୦୧) ବହୁ ଏକାଙ୍କିକାର ଲେଖକ ରୂପେ ସୁପରିଚିତ । ଚନ୍ଦ୍ରାଦୀକ୍ଷିତୁଲୁଙ୍କ ଏକାଙ୍କିକା "ସବରୀ," ଓ "ଅହଲ୍ୟା"ରେ ରାମଭକ୍ତିର ସୂଚନା ମିଳେ । ନୂତନ ସାମାଜିକ ନାଟକର ପ୍ରଣେତା ଭାବରେ ଆଚାର୍ଯ୍ୟ ଆତ୍ରେୟ (୧୯୧୪)ଙ୍କର ତେଲୁଗୁ ନାଟ୍ୟ ସାହିତ୍ୟକୁ ଦାନ ସ୍ୱୀକାର୍ଯ୍ୟ । ତାଙ୍କର "ଆତେକୋମ୍ମାଲୁ" ମଧ୍ୟବିତ୍ତ ଶ୍ରେଣୀର ଦୁର୍ଦ୍ଦଶା ବର୍ଣ୍ଣନା କରିଅଛି । ନାରଲ ଭେଙ୍କଟରାଓ (୧୯୦୮) ଚଳନ୍ତି ଭାଷାରେ ଅନେକ ଏକାଙ୍କିକା ରଚନା କରିଛନ୍ତି । ତାଙ୍କର "ଭଣ୍ଡେନା" (ପୋଲ) ନାଟକରେ ସୂଚୀତ ହୋଇଥିଲା ଯେ କିପରି ଏକ କ୍ଷୁଦ୍ର ସେତୁ ନିର୍ମାଣ ଦ୍ୱାରା ସାମାଜିକ ବିପ୍ଳବ ସମ୍ଭବ ହୋଇପାରେ । ପୁନଶ୍ଚ ତାଙ୍କର "କୋଠଗଢ଼"(ନୂତନ ଜନ୍ମ) "ପ୍ରାରବ୍ଧମ୍" ରଚନା ମଧ୍ୟ କୃତିତ୍ୱପୂର୍ଣ୍ଣ । ନୂତନ ମୂଲ୍ୟବୋଧର ଆହ୍ୱାନ ତାଙ୍କ ନାଟକ ମାନଙ୍କରେ ପ୍ରତି ଧ୍ୱନିତ । "ପ୍ରାରବ୍ଧମ୍" ନାଟକରେ ସ୍ୱାମୀ ଅତ୍ୟାଚାରିତା ଜନୈକା ବାଳିକାର ଚିତ୍ର ପ୍ରଦତ୍ତ । ରୋଗରେ ଆକ୍ରାନ୍ତ ସେହି ସ୍ୱାମୀ ହିଁ ଦୁଃଖିନୀ ବାଳିକା ସମସ୍ତଙ୍କର ସହାନୁଭୂତି ଦାବି କରେ । ଭମିଡିପାଟି କାମେଶ୍ୱର ରାଓଙ୍କର ନାମ ମଧ୍ୟ ଏହି ପ୍ରସଙ୍ଗରେ ଉଲ୍ଲେଖଯୋଗ୍ୟ । ତାଙ୍କର ନାଟକ ବିଶେଷ ଲୋକପ୍ରିୟ । ଗୁଡ଼ିପାଟି ଭେଙ୍କଟାଚଲମ୍ ଜଣେ ବିଶିଷ୍ଟ ଗଦ୍ୟ ଲେଖକ, ମାତ୍ର ତାଙ୍କର ଏକାଙ୍କିକା ଯଥା "ଚିତ୍ରାଙ୍ଗୀ" "ଶଶାଙ୍କ", "ସାବିତ୍ରୀ", "ପୁରୁରବା", "ଅନୁରାଧା" ଉଚ୍ଚକୋଟିର ।

ମୌଳିକ ନାଟକ ବ୍ୟତୀତ ବଙ୍ଗଳା ଭାଷାରୁ କେତେକ ନାଟକ ଯଥା ଡ଼ି, ଏଲ. ରାୟଙ୍କର "ଦୁର୍ଗାଦାସ", "ଚନ୍ଦ୍ରଗୁପ୍ତ", "ସାହାଜାହାନ" ତେଲୁଗୁରେ ଅନୂଦିତ ହୋଇଥିଲା । ଅଭିନୟ ଓ ରଙ୍ଗମଞ୍ଚ ପ୍ରତି ଲୋକମାନଙ୍କର ଆଗ୍ରହ ଏଇ କେତେବର୍ଷ ମଧ୍ୟରେ ବୃଦ୍ଧି ପାଇଛି ଏବଂ ଶତାଧିକ ଏକାଙ୍କିକା ଏବଂ ନାଟକ ଲେଖାଯାଇଛି । ପି.ଭି. ରାଜମାନାର୍ ଜଣେ ବିଶିଷ୍ଟ ନାଟ୍ୟକାର । ତାଙ୍କର ଦସ୍ୟୁାଲଲଙ୍କା (ଭୂତଦ୍ୱୀପ)-ରେ ବାଲ୍ୟ ବିଧବାର କାରୁଣ୍ୟ ଚିତ୍ରିତ ଏବଂ "ନିଯୁମି ମଗହାଲୁ" (ଓ ହୋ, ଏହି ମଣିଷମାନେ )ରେ ବ୍ୟକ୍ତିର ସମ୍ପତ୍ତି ଲୋଭ ବର୍ଣ୍ଣିତ ।

ନାଗଦମ୍ମୁ ( ଶ୍ୱେତନାଗ) ତାଙ୍କର ଏକ ଶକ୍ତିଶାଳୀ ଏକାଙ୍କିକା। ପ୍ରାଚୀନ ଅଜନ୍ତା ଗହ୍ୱରର ପୃଷ୍ଠଭୂମିରେ ଏହା ଲିଖିତ ଏବଂ ସେଥିରେ କର୍ତ୍ତବ୍ୟବୋଧ ଓ ପ୍ରବୃତ୍ତିର ଦ୍ୱନ୍ଦ୍ୱ ହିଁ ପ୍ରତିଫଳିତ । ତାଙ୍କ ମତରେ "ତୁମେ ମଣିଷଠାରୁ ହିଁ ତୁମର ପରୀକ୍ଷା ଆରମ୍ଭକର" ତରୁଣ ନାଟ୍ୟକାର ମାନଙ୍କ ମଧ୍ୟରେ ବୁଚବାବୁଙ୍କର ନାମ ଉଲ୍ଲେଖଯୋଗ୍ୟ । ତେଲୁଗୁ ପ୍ରାଚୀନ ସାହିତ୍ୟର ଗୌରବ ତଥା ପ୍ରାଚୁର୍ଯ୍ୟ ନୂତନ ଢଙ୍ଗରେ ତାଙ୍କ ନାଟକ ସମୂହରେ ପ୍ରତିଫଳିତ । ଉଦାହରଣ ସ୍ୱରୂପ "ତଷ୍ୟାରକ୍ଷିତା" ନାଟକରେ ଅଶୋକଙ୍କ ଧର୍ମନୀତିର ବିଶ୍ଳେଷଣ କରାଯାଇଛି । ଅଶୋକଙ୍କର ଯୁବରାଣୀ ଦର୍ଶକମାନଙ୍କର ସହାନୁଭୂତି ଲାଭକରେ । "ଓମାର ଖୟାମ୍" ନାଟକରେ ଦାର୍ଶନିକ କବିଙ୍କର ପରିଚୟ ମିଳେ । "ଦାରିଣିପସ୍ଥ ଦିନସ୍ୟ"ରେ ଜଣେ ସମାଜ ସଂସ୍କାରକଙ୍କର ପ୍ରତାରଣା ବର୍ଣ୍ଣିତ । ସେହିପରି "ଆତ୍ମବଂଚନା"ରେ ଦୁଇଟି ଶିକ୍ଷିତା ଅବିବାହିତା ଭଉଣୀଙ୍କର ଭ୍ରମାତ୍ମକ ଦୃଷ୍ଟିକୋଣ ପ୍ରତିଫଳିତ । ସେମାନେ କିପରି ବାସ୍ତବ ଜୀବନଠାରୁ ଦୂରରେ ଥିଲେ ତାହାହିଁ ବର୍ଣ୍ଣିତ । "ଥେରୀ ପଦନୀ ନାଟକମୁ" ଓ "ନାଲୁଗୁ ପରମାଣ୍ଡୁ"ରେ ନାଟକରେ ଯଥାକ୍ରମେ ଜଣେ ଖିଆଲି ରାଜା ଓ ଜନୈକ ଗଣିତ ଛାତ୍ରର ଦ୍ୱନ୍ଦ୍ୱ ବର୍ଣ୍ଣିତ । ଅରୁଦ୍ରଙ୍କର "ସୀତା କୋକା ଚଲୁକୁ" ଏକ ଗୀତ ନାଟ୍ୟ । କୁନ୍ଦୁର୍ତ୍ତିଙ୍କର "ଆଶା" ଗୀତନାଟ୍ୟରେ ଅନନ୍ତସମୟ, ଇତିହାସ ଓ ମଣିଷର ଆଶା ମୂର୍ତ୍ତିମନ୍ତ ହୋଇପାରିଛି । ଶିକ୍ଷିତ ଯୁବସମାଜ ମଧ୍ୟରେ ଆଧୁନିକ ଚେତନା ସମ୍ବଳିତ ନାଟକ ଆଦୃତ । ଜନସାଧାରଣ ମାତ୍ର ପ୍ରାଚୀନ ପୌରାଣିକ ଅଭିନୟ ପ୍ରତି ବିଶେଷ ଆକୃଷ୍ଟ ।

**ପ୍ରବଂଧ, ସମାଲୋଚନା :—**

ଆଧୁନିକ ଯୁଗରେ ପ୍ରବନ୍ଧ ଏବଂ ସମାଲୋଚନା ସାହିତ୍ୟର ମଧ୍ୟ ସମ ପରିମାଣରେ ଉନ୍ନତି ଘଟିଛି । ୧୮୬୨ ମସିହାରେ ସାମିନେନିମୁଦ୍ଦୁ ନରସିଂହ ନାଇଡୁଙ୍କର ଆଠଗୋଟି ପ୍ରବନ୍ଧ ସମ୍ବଳିତ "ହିତସୂଚୀ" ପୁସ୍ତକ ପ୍ରକାଶିତ ହେବା ଦିନଠାରୁ ଇତିମଧ୍ୟରେ ପ୍ରବନ୍ଧ ସାହିତ୍ୟର ବିଶେଷ ଉନ୍ନତି ଘଟିଅଛି । ତାଙ୍କ ପ୍ରବନ୍ଧର ଭାଷା ଥିଲା ଶିକ୍ଷିତମାନଙ୍କର କଥିତ ଭାଷା ଏବଂ ତାର ତାତ୍ପର୍ଯ୍ୟ ଥିଲା ସାମାଜିକ ତଥା ପାରିବାରିକ । ସେତେବେଲକୁ ଚିନାୟାସୁରି ବିଶୁଦ୍ଧ ଭାଷା ସପକ୍ଷରେ ଆନ୍ଦୋଳନ ଚଳାଇ ଥିଲେ । ଏହାପରେ ବୀରେଶଲିଙ୍ଗମ୍ ଏବଂ ତାଙ୍କ ପରେ ଚିଲ୍ଲକୁମୂର୍ତ୍ତି ପ୍ରବନ୍ଧ ସାହିତ୍ୟରେ ହାତ ଦେଇଥିଲେ । ଟେକୁମାଲ୍ଲ ରାଜଗୋପାଲରାଓଙ୍କର (୧୮୯୬-୧୯୫୩) ତେଲୁଗୁ ପ୍ରାଚୀନ ଅନୁଶାସନ ସଂପର୍କୀୟ ଆଲୋଚନା, କବି ଶ୍ରୀନାଥଙ୍କର କ୍ରୀଡ଼ାଭିରାମମ୍ ଏବଂ ପାଲକୁରୁକୀ ସୋମନାଥଙ୍କର "ବାସବ ପୁରାଣର ଆଲୋଚନା ବାସ୍ତବିକ ଉଚ୍ଚକୋଟୀର ପ୍ରବନ୍ଧ ସାହିତ୍ୟ । ଚିଲକୁରୀ ନାରାୟଣ ରାଓ (୧୮୯୦-୧୯୫୨) ଏକାଧିକ ଭାଷାରେ ପ୍ରବୀଣ ଥିଲେ ଏବଂ ତାଙ୍କର ଗ୍ରନ୍ଥ ତେଲୁଗୁ ଭାଷାର ଇତିହାସ ଆନ୍ଧ୍ର ବିଶ୍ୱବିଦ୍ୟାଳୟଦ୍ୱାରା ପ୍ରକାଶିତ ହୋଇଥିଲା ।

ସେହିପରି ତେଲୁଗୁ ସାହିତ୍ୟର ଅଧ୍ୟାପକ ଗାଣ୍ଡି ଯୋଗୀ ସୋମୟାଜଲୁଙ୍କର (୧୯୦୦) "ଆନ୍ଧ୍ର ଭାଷା ବିକାଶମ୍" ଏକ ପ୍ରାମାଣିକ ଗ୍ରନ୍ଥ । ତେଲୁଗୁ ସାହିତ୍ୟ ଏବଂ କାଳିଦାସଙ୍କ କାବ୍ୟ ସମ୍ପର୍କରେ ସେ ଅନେକ ପ୍ରବନ୍ଧ ଲେଖିଛନ୍ତି । ରାଳପଲ୍ଲୀ ଅନନ୍ତକୃଷ୍ଣ ଶର୍ମା (୧୮୯୩) ସଙ୍ଗୀତପ୍ରିୟ ଏବଂ ସଂସ୍କୃତପ୍ରେମୀ । ପ୍ରାଚୀନ କବିମାନଙ୍କ ସମ୍ପର୍କୀୟ ତାଙ୍କର ପ୍ରବନ୍ଧଗୁଚ୍ଛ ଯଥା "ବେମାନା ସାରସ୍ୱତପନ୍ୟାସମୁଲୁ," "ନାଟକପନ୍ୟାସମୁଲୁ," "ସାହିତ୍ୟପନ୍ୟାସ ମୁଲୁ" ଏବଂ ନିଦାଦବୋଲୁ ଭେଙ୍କଟରାଓ (୧୯୦୪) ଙ୍କର ତେଲୁଗୁ ସାହିତ୍ୟ ସମ୍ପର୍କୀୟ ପ୍ରବନ୍ଧମାଳା, ଏବଂ ଗ୍ରନ୍ଥ "ତେଲୁଗୁ କବିମାନଙ୍କର ଜୀବନୀ" ପ୍ରବନ୍ଧ-ସାହିତ୍ୟ ପ୍ରସାରରେ ସାହାଯ୍ୟ କରିଅଛି । ଭାଷାତତ୍ତ୍ୱବିତ୍ ଏବଂ ସଂସ୍କୃତ ପଣ୍ଡିତ କୋରଡା ରାମକୃଷ୍ଣୟ୍ୟାଙ୍କର (୧୮୯୧) ତେଲୁଗୁ ଭାଷାର ଉତ୍ପତ୍ତି ଓ ବିକାଶ ସଂପର୍କୀୟ ଆଲୋଚନା ବହୁ ପୂର୍ବରୁ ପ୍ରକାଶିତ ହୋଇଥିଲା । ତାଙ୍କ ମତରେ ତେଲୁଗୁଭାଷାର ମୂଳ ହେଉଛି ଦ୍ରାବିଡ଼ଭାଷା । ବାସୁଦେବ ଶାସ୍ତ୍ରୀଙ୍କର "ଆନ୍ଧ୍ର ଭାଷା" ଶୀର୍ଷକ ପ୍ରବନ୍ଧ (୧୮୬୧) ଟି. ଭି. ଶେଷଗିରି ଶାସ୍ତ୍ରୀଙ୍କ "ଆନ୍ଧ୍ରଭାଷା ତତ୍ତ୍ୱମ୍," କେ. ଗୋପାଳ ରାଓଙ୍କର "ଆନ୍ଧ୍ରଭାଷା ଚରିତ୍ର ସଂଗ୍ରହମ୍" ଏବଂ "ସରସ୍ୱତୀ" ପତ୍ରିକାର ସମ୍ପାଦକ କେ. ଆର. ଭି. କୃଷ୍ଣରାଓଙ୍କର "ଆନ୍ଧ୍ରଭାଷା ବିବର୍ଦ୍ଧିନୀ" ପ୍ରଭୃତି ରଚନା ପ୍ରବନ୍ଧସାହିତ୍ୟ ଅନ୍ତର୍ଭୁକ୍ତ । ସାହିତ୍ୟିକ ଓ କଥିତ ଭାଷାକୁ କେନ୍ଦ୍ରକରି ଯେତେବେଳେ ସାହିତ୍ୟିକମାନଙ୍କ ମଧ୍ୟରେ ବାଦାନୁବାଦ ଚାଲିଥିଲା ସେତେବେଳେ ତାର ଆଲୋଚନା ଏବଂ ପ୍ରତି ଆଲୋଚନାରୂପେ ବହୁ ପ୍ରବନ୍ଧ ମଧ୍ୟ ଲେଖା ଯାଇଥିଲା । କଥିତ ଭାଷା ପ୍ରଚଳନ ପକ୍ଷପାତୀ ଗିଡୁଗୁ ରାମମୂର୍ତ୍ତିଙ୍କର "ପ୍ରବନ୍ଧାବଳୀ" ୧୯୩୪ରେ ପ୍ରକାଶିତ ହୋଇଥିଲା । କାଶିଭଟ୍ଟ ବ୍ରହ୍ମୟ୍ୟା ଶାସ୍ତ୍ରୀଙ୍କଠାରୁ ତେଲୁଗୁ ସାହିତ୍ୟ ସଂପର୍କରେ ନିୟମିତ ଆଲୋଚନା ଆରମ୍ଭ ହୋଇଥିଲା । ଭେନେଟି ରାମଚନ୍ଦ୍ର ରାଓଙ୍କର "ମନୁ ଏବଂ ଚରିତ୍ର ଏବଂ ବସୁ ଚରିତ୍ର" ସଂପର୍କୀୟ ଆଲୋଚନା ଅନ୍ୟାନ୍ୟ କବିମାନଙ୍କର ଜୀବନୀ ଆଲୋଚନା ପାଇଁ ଉପାଦାନ ଯୋଗାଇଥିଲା । ଆନ୍ଧ୍ର ବିଶ୍ୱବିଦ୍ୟାଳୟର କୁଳପତି ତଥା "କବିତତ୍ତ୍ୱବିଚାରମ୍" ର ଲେଖକ କଟ୍ଟାମାଂଚି ରାମଲିଙ୍ଗ ରେଡ୍ଡି (୧୮୮୦-୧୯୫୩) ଏବଂ "କଲାପୂର୍ଣ୍ଣୋଦୟମ୍" ପ୍ରସଙ୍ଗରେ ଗବେଷଣା କରିଥିବା ଜି. ଭି. କୃଷ୍ଣରାଓ ଉଭୟେ ଉଚ୍ଚକୋଟିର ପ୍ରାବନ୍ଧିକ । ଖଣ୍ଡବଲ୍ଲୀ ଲକ୍ଷ୍ମୀ ରଂଜନମ୍ (୧୯୦୫) ତେଲୁଗୁ ସାହିତ୍ୟ ଏବଂ ଆନ୍ଧ୍ର ସଂସ୍କୃତି ସଂପର୍କରେ ବିସ୍ତୃତ ଆଲୋଚନା କରିଅଛନ୍ତି । ଉପନ୍ୟାସ, ନାଟକ ଏବଂ ବିଶିଷ୍ଟ କବିମାନଙ୍କର କୃତି ଆଧୁନିକ ଯୁଗରେ ପ୍ରାବନ୍ଧିକମାନଙ୍କର ଦୃଷ୍ଟି ଆକର୍ଷଣ କରିଅଛି । ଭୂପତି ଲକ୍ଷ୍ମୀନାରାୟଣ ରାଓଙ୍କର (୧୯୦୬) "ତେଲୁଗୁ ମହାଭାରତ ଓ ତିକାନ୍ନାଙ୍କର ଶୈଳୀ" ଶୀର୍ଷକ ପ୍ରବନ୍ଧ ଏକ ପ୍ରାମାଣିକ ରଚନା । ତାଙ୍କର ପ୍ରବନ୍ଧ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ହୋଇଅଛି । ସଂସ୍କୃତ ଏବଂ ପ୍ରାକୃତ ପଣ୍ଡିତ ପଞ୍ଚାଗ୍ନୁଲୁ ଆଦି ନାରାୟଣ ଶାସ୍ତ୍ରୀ ତେଲୁଗୁରେ "ବାତ୍ସ୍ୟାୟନ କାମସୂତ୍ର" ଅନୁବାଦ କରିଥିଲେ । "ଆନ୍ଧ୍ର ଅଲଙ୍କାର ବିଜ୍ଞାନ ଚରିତ୍ର" ବୁଲୁସୁ ଭେଙ୍କଟ

ଗ୍ରାମାଣୀୟା (୧୯୦୭)ଙ୍କର ଏକ ମୌଳିକ ଆଲୋଚନା ଗ୍ରନ୍ଥ । ସର୍ବଜ୍ଞସିଂହ ଭୂପାଳଙ୍କର "ରସାର୍ଣ୍ଣବ ସୁଧାକରମ୍"ର ସେ ଅନୁବାଦ କରିଥିଲେ । ଏହିପରି ତେଲୁଗୁରେ ପ୍ରବନ୍ଧ ବିଭାଗ ସମୃଦ୍ଧ ହେଉଅଛି ।

ଜୀବନୀ, ଶିଶୁ ସାହିତ୍ୟ ଓ ବୈଜ୍ଞାନିକ ସାହିତ୍ୟ :—

ବୀରେଶଲିଙ୍ଗମ୍ ମଧ୍ୟ ତେଲୁଗୁରେ ଆଧୁନିକ ଜୀବନୀ ସାହିତ୍ୟର ପ୍ରବର୍ତ୍ତକ । ପୃଥିବୀର ବହୁ ଜାତୀୟ ବୀରମାନଙ୍କର ଜୀବନୀ ସେ ଲେଖିଥିଲେ ଏବଂ ସ୍ୱଲିଖିତ ଆତ୍ମଚରିତ ତାଙ୍କର ଏକ ପ୍ରାମାଣିକ ସୃଷ୍ଟି । ଚିଲକମୂର୍ତ୍ତି ଲକ୍ଷ୍ମୀ ନରସିଂହମ୍, ଗୁରୁସମ୍ ଭେଙ୍କଟ ସିଉଡ଼ୁ ଏବଂ ଗେରେପାଟି ଭେଙ୍କଟ ସୁବାୟା (୧୮୯୮) ଜୀବନୀ ସାହିତ୍ୟ ବିଭାଗରେ ବିଶିଷ୍ଟ ଗ୍ରନ୍ଥମାନ ରଚନା କରିଥିଲେ । ତେଲୁଗୁ ସାହିତ୍ୟରେ ଭାରତୀୟ କବି, ସାହିତ୍ୟିକ, ବୈଜ୍ଞାନିକ ଏବଂ ଜାତୀୟ ବୀରମାନଙ୍କର ଜୀବନୀ ଗତ ପନ୍ଦର ବର୍ଷ ମଧ୍ୟରେ ବିସ୍ତୃତ ଭାବରେ ଲେଖାଯାଇଛି । କଳମ୍ବି ରାଘବାଚାର୍ଯ୍ୟଙ୍କ "ଶ୍ରୀକୃଷ୍ଣଦେବରାୟ" ଜୀବନୀ ଗ୍ରନ୍ଥ ତେଲୁଗୁଭାଷା ସମିତି ଦ୍ୱାରା ପୁରସ୍କୃତ ହୋଇଥିଲା ।

ବିଂଶ ଶତାବ୍ଦୀର ପ୍ରାରମ୍ଭ ପର୍ଯ୍ୟନ୍ତ ଶିଶୁ ସାହିତ୍ୟ ବୋଲି କୌଣସି ଏକ ନିର୍ଦ୍ଦିଷ୍ଟ ରଚନା ତେଲୁଗୁରେ ଲେଖାଯାଇ ନ ଥିଲା । ବେମାନା ପ୍ରଭୃତି ପ୍ରାଚୀନ କବିମାନଙ୍କ ରଚନାରୁ ଶିଶୁମାନଙ୍କ ନିମନ୍ତେ ଆବଶ୍ୟକୀୟ ଅଂଶ ଉଦ୍ଧାର କରାଯାଉଥିଲା । ଏହା ବ୍ୟତୀତ ପ୍ରାଚୀନ ଗ୍ରାମ୍ୟଗଳ୍ପ ଏବଂ ଗ୍ରାମ୍ୟଗୀତ ଥିଲା ଯଥାର୍ଥ ମନଲୋଭି ଶିଶୁ ସାହିତ୍ୟ, କିନ୍ତୁ ସମସ୍ତ କ୍ରମେ ବହୁ ଲେଖକ ଶିଶୁସାହିତ୍ୟ ରଚନା ପ୍ରତି ଧ୍ୟାନ ଦେଲେ ଏବଂ ସେମାନଙ୍କ ମଧ୍ୟରେ କି. ଭି. ସୀତାପତି, ଚିନ୍ତା ଦୀକ୍ଷିତୁଲୁଙ୍କ ନାମ ଉଲ୍ଲେଖ ଯୋଗ୍ୟ । ଖ୍ରୀଷ୍ଟିୟାନ୍ ଲିଟ୍‌ରେଚର ସୋସାଇଟି ପକ୍ଷରୁ ପ୍ରକାଶିତ "ବିବେକବତୀ" ପତ୍ରିକାରେ ଶିଶୁ ମନଲୋଭି ଗପ କବିତା ପ୍ରକାଶିତ ହେଉଥିଲା । "ଭାରତୀ ପତ୍ରିକା" ୧୯୪୦ ମସିହାରୁ ଶିଶୁ ମନସ୍ତତ୍ତ୍ୱ ଉପଯୋଗୀ ରଚନାମାନ ପ୍ରକାଶ କରିଥିଲା । ୧୯୪୪ ମସିହାରେ ନ୍ୟାୟପତି ରାଘବରାଓ ଏବଂ ତାଙ୍କରପତ୍ନୀ କାମେଶ୍ୱର ମାମାଙ୍କ ସମ୍ପାଦିତ "ବାଲ" ଏବଂ ୧୯୪୮ରେ ଚକ୍ରପାଣିଙ୍କ (ଆଲୁରି ଭେଙ୍କଟ ସୁବାରାଓ) ସମ୍ପାଦିତ "ଚନ୍ଦମାମା" ଆଧୁନିକ ଶିଶୁ ସାହିତ୍ୟ ପ୍ରସାରଲାଗି ଦାୟୀ । ଏମ୍. ବାପିନିଡୁ, କି. ଭି. ସୀତାପତି, ସେମାନଙ୍କର ପୁସ୍ତକ, ୧୯୪୮-୪୯ରେ "ପିଲ୍ଲାଲ ବୋମଲା ଭାରତମ" ଏବଂ "ବାଲାନନ୍ଦମ୍" ନିମନ୍ତେ ଯଥାକ୍ରମେ ତେଲୁଗୁ ଭାଷାସମିତିଦ୍ୱାରା ପୁରସ୍କୃତ ହୋଇଥିଲେ ଏବଂ ଚିନ୍ତା ଦୀକ୍ଷିତୁଲୁ (୧୯୫୪-୫୫) ମସିହାରେ ତାଙ୍କର ଉତ୍କୃଷ୍ଟ ଶିଶୁ ସାହିତ୍ୟ ରଚନାପାଇଁ ସରକାରଙ୍କ ପୁରସ୍କାର ଲାଭ କରିଥିଲେ । ବେଜୱାଡାର ଏଡତା କାମେଶ୍ୱର ରାଓ ବର୍ତ୍ତମାନ ବେଶ୍ ଶିଶୁପ୍ରିୟ ସାହିତ୍ୟ

ଯଥା ଗପ, କବିତାର ଲେଖକ । ତେଲୁଗୁଭାଷା ସମିତି (୧୯୪୮) ତେଲୁଗୁ ଭାଷା ଏବଂ ସାହିତ୍ୟର ବୈଜ୍ଞାନିକ ଅଧ୍ୟୟନ ନିମନ୍ତେ ବହୁ ଉଦ୍ୟମ କରିଛନ୍ତି । ଦ୍ୱାଦଶଖଣ୍ଡ ସମ୍ବଳିତ "ତେଲୁଗୁ ଜ୍ଞାନକୋଷ" ପ୍ରକାଶନ ଉଦ୍ଦେଶ୍ୟରେ ଏହି ସମିତି ବିଶେଷ ଉଦ୍ୟମ କରିଛନ୍ତି । ବିଭିନ୍ନ ଖଣ୍ଡ ପାଇଁ ଭିନ୍ନ ଭିନ୍ନ ପ୍ରବୀଣ ସଂପାଦକ ନିଯୁକ୍ତ ହୋଇଛନ୍ତି ।

ତେଲୁଗୁରେ ବିଜ୍ଞାନ ସଂପର୍କୀୟ ସାହିତ୍ୟ ପ୍ରଚୁର ଗତ କେତେ ବର୍ଷ ମଧ୍ୟରେ ଅଗ୍ରଗତି କରିଛି । ପଦାର୍ଥ ବିଜ୍ଞାନ, ରସାୟନ ବିଦ୍ୟା, ଅର୍ଥନୀତି ଏପରି ବିଭିନ୍ନ ବିଭାଗର ପୁସ୍ତକମାନ ପ୍ରକାଶିତ ହୋଇଛି । ଆଧୁନିକ ତେଲୁଗୁ ସାହିତ୍ୟର ଅନ୍ୟତମ ପ୍ରତିଷ୍ଠାତା ୱୀରେଶଲିଙ୍ଗମ୍ ପ୍ରଥମାବସ୍ଥାରେ ବୈଜ୍ଞାନିକ ସାହିତ୍ୟକୁ ଲୋକପ୍ରିୟ କରିବା ପାଇଁ ଚେଷ୍ଟା କରିଥିଲେ । "ବିଜ୍ଞାନଚନ୍ଦ୍ରିକା" ନାମରେ ପ୍ରକାଶିତ ମନ୍ତ୍ରୀ ପ୍ରଗଡା-ସାମ୍ବ ଶିବାରାଓଙ୍କର ପଦାର୍ଥ ବିଦ୍ୟା, ଭେମୁରି ବିଶ୍ୱନାଥ ଶର୍ମାଙ୍କ ରସାୟନ ବିଦ୍ୟା ଏବଂ ତେଲୁଗୁ ଭାଷା ସମିତି ଦ୍ୱାରା ପୁରସ୍କାର ପ୍ରାପ୍ତ ଗୋଟେଟି କନକରାଜୁ (୧୮୭୨-୧୯୫୩) ଙ୍କର କୃଷି ସଂପର୍କୀୟ ପୁସ୍ତକ ଉତ୍କୃଷ୍ଟ । ଗୁଲ୍ଲାପଲ୍ଲୀ ନାରାୟଣ ମୂର୍ତ୍ତିଙ୍କ ପଲ୍ଲୀସ୍ୱାସ୍ଥ୍ୟ ପୁସ୍ତକ ବିଜ୍ଞାନ ସାହିତ୍ୟକୁ ବହୁ ପରିମାଣରେ ଲୋକପ୍ରିୟ କରିପାରିଛି । ରାମଲିଂଗ ରେଡ଼ିଙ୍କର "ରାଜନୈତିକ" ଅର୍ଥନୀତି ମଧ୍ୟ ଏକ ପ୍ରାମାଣିକ ଗ୍ରନ୍ଥ । ତେଲୁଗୁଭାଷା ସମିତି ଜରିଆରେ ସରକାର ବହୁ ପୁରସ୍କାର ଘୋଷଣା କରି ବୈଜ୍ଞାନିକ ସାହିତ୍ୟ ରଚନା ପାଇଁ ଅନୁକୂଳ ବାୟୁମଣ୍ଡଳ ସୃଷ୍ଟି କରି ଅଛନ୍ତି । ବେଲୁ ଗୋପାଲ ନାୟୁଡ଼ୁ "ଶରୀରତତ୍ତ୍ୱ" ହରିଆଡ଼ି ଶେଷୁଭୂ "ବିଦ୍ୟୁତ୍ ଏବଂ ତାର ବହୁଳ ବ୍ୟବହାର" ବୋଭିନାପଲ୍ଲୀ ପଦ୍ମରାଜୁ "ଅର୍ଥନୀତି ସହଯୋଗ" ଡ. ଭି. ଏ ଆଗ୍ରହି "ଚଳଚ୍ଚିତ୍ର" କେ. ବାସୁଦେବରାଓ "ବିଂଶ ଶତାବ୍ଦୀର ଆନ୍ଧ୍ରମାନଙ୍କ ସାମାଜିକ ଜୀବନ," ନଟରାଜ ରାମକୃଷ୍ଣ "ନୃତ୍ୟ" ପ୍ରସଙ୍ଗରେ ବିସ୍ତୃତ ପ୍ରବନ୍ଧ ଲେଖି ଭାଷା ସମିତି ଦ୍ୱାରା ପୁରସ୍କୃତ ହୋଇଛନ୍ତି । ଏହି କ୍ଷେତ୍ରରେ ବେତାର ବିଭାଗର ନାନାଦି ସାହିତ୍ୟିକ କାର୍ଯ୍ୟକ୍ରମ ବଡ଼ ସହାୟକ ।

ଆନ୍ଧ୍ର ସାହିତ୍ୟ ଏବଂ ସଂସ୍କୃତିର ପ୍ରାଚୀନତା ଏବଂ ପରମ୍ପରା ସ୍ୱୀକୃତ ଏବଂ ଏବଂ ଆଧୁନିକ ଯୁଗରେ ତାର ପୂର୍ଣ୍ଣ ବିକାଶ ଘଟିଛି । ସାମ୍ବାଦିକତା କ୍ଷେତ୍ରରେ ମଧ୍ୟ ଏହି ଭାଷା ଅନ୍ୟାନ୍ୟ ଭାଷାମାନଙ୍କ ସହିତ ତୁଳନୀୟ । ୫ ଗୋଟି ଦୈନିକ, ୭୭ ଗୋଟି ସାପ୍ତାହିକ, ୩୨ ଗୋଟି ପାକ୍ଷିକ ଏବଂ ୧୦୮ ଗୋଟି ଷାଣ୍ମାସିକ ଏହି ଭାଷାରେ ପ୍ରକାଶିତ ହୁଏ । ସେମାନଙ୍କ ମଧ୍ୟରେ "ଆନ୍ଧ୍ର ପତ୍ରିକା," "ଆନ୍ଧ୍ରପ୍ରଭା," "ଆନ୍ଧ୍ର-ଜ୍ୟୋତି" ଏବଂ ସାହିତ୍ୟିକ ମାସିକ "ଭାରତୀ" "ସାହିତ୍ୟ" ପ୍ରଭୃତିର ନାମ ଏଠାରେ ଉଲ୍ଲେଖଯୋଗ୍ୟ କବି ସେଟି ଈଶ୍ୱର ରାଓ (୧୯୧୭) ପ୍ରଗତିଶୀଳ ଗାଳ୍ପିକ ମାଧବ ପେଡି ଗୋପାଳକୃଷ୍ଣ ଗୋଖେଲ, "ଦୁରଦିଗଲୁ"(ସୁଦୂରତୀର)ର ନାଟ୍ୟକାର ଗୋବିନ୍ଦ ରାମ ଶାସ୍ତ୍ରୀ(୧୯୧୮)ପ୍ରଭୃତି ସାମ୍ବାଦିକ କ୍ଷେତ୍ରରେ ଥାଇ ମଧ୍ୟ ସାହିତ୍ୟସାଧନାରେ ରତ ।

"ଇଲୁ ଭେଲପୁ" ପ୍ରଭୃତି ଗଳ୍ପର ଲେଖକ ଧନିକୋଣ୍ଡା ହନୁମନ୍ତରାଓ (୧୯୧୯), ସାମାଜିକ ନାଟକ "ଆଡ଼େ କଂପା"ର (ଭଡ଼ାଘର) ଲେଖକ ମଣ୍ଡିଧର ରାମ ମୋହନରାଓ "ଭାରତ ବିଜୟମ୍" ନାଟକ ଲେଖକ ତିରୁମଲ ରାମଚନ୍ଦ୍ର (୧୯୧୪) ବରାବର ଲେଖନୀ ଚାଳନା କରିଛନ୍ତି। ବିଦ୍ୱାନ ବିଶ୍ୱମ୍‌ଙ୍କର (୧୯୧୫) କ୍ଷୁଦ୍ରଗଳ୍ପ ଓ ଉପନ୍ୟାସ ଆଧୁନିକ ତେଲୁଗୁ ସାହିତ୍ୟରେ ସିଁଢିର ପରିଚୟ ଦେଇଥାଏ । କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ କୃତି ମଧ୍ୟରେ ୧୯୫୫ ମସିହାର ସ୍ୱର୍ଗୀୟ ସୂରବରମ୍ ପ୍ରତାପରେଡ୍‌ଡିଙ୍କ ପୁସ୍ତକ "ଆନ୍ଧ୍ରୁଲୁ ସଂଘିକା ଚରିତମୁ", ୧୯୫୭ ରେ ଚିରନ୍ତାନନ୍ଦ ସ୍ୱାମୀଙ୍କର "ରାମକୃଷ୍ଣୁନି ଜୀବିତା ଚରିତ", ୧୯୬୦ରେ ପନାଙ୍ଗି ଶ୍ରୀରାମ ଆପାରାଓଙ୍କର "ନାଟ୍ୟ ଶାସ୍ତ୍ରମି" (ଭରତଙ୍କ ନାଟ୍ୟ ଶାସ୍ତ୍ରର ଅଧ୍ୟୟନ) ୧୯୬୩ ରେ ଟି. ଗୋପୀଚନ୍ଦଙ୍କର "ପଣ୍ଡିତ ପରମେଶ୍ୱର ଶାସ୍ତ୍ରୀ ଭେଲୁନାମା" ଉପନ୍ୟାସ, ୧୯୬୫ରେ ରାୟ ପ୍ରୋଲୁଙ୍କର "ମିଶ୍ରୀ ମଞ୍ଜରୀ" ପ୍ରଭୃତି ପୁସ୍ତକ ଉଲ୍ଲେଖଯୋଗ୍ୟ । ୧୯୬୨ ମସିହାରେ ବିଶ୍ୱନାଥ ସତ୍ୟନାରାୟଣଙ୍କ କବିତା ପୁସ୍ତକ "ବିଶ୍ୱନାଥ ମଧ୍ୟକାରୁଲୁ" ମଧ୍ୟ କେନ୍ଦ୍ର ଏକାଡେମୀ ପୁରସ୍କାର ଲାଭ କରିଥିଲା । ଏହି ସବୁ ଅଧ୍ୟୟନରୁ ଜଣାଯାଏ ଯେ ଆନ୍ଧ୍ରର ସାମାଜିକ ସାଂସ୍କୃତିକ ପୃଷ୍ଠଭୂମି ତାର ସାହିତ୍ୟରେ ବେଶ୍ ପ୍ରତିଫଳିତ ।

---

# ତାମିଲ୍

ବିଶ୍ୱବିସ୍ତୃତ ରତ୍ନାକରର କି ରୁଦ୍ର ଆଉ ଉଚ୍ଛ୍ୱସିତ ସୌନ୍ଦର୍ଯ୍ୟ ! ଭାରତ ମହାସାଗର ନୀଳାମ୍ବୁରାଶିର କି ଦୁର୍ମଦ ଅଭିଯାନ ? ସମୁଦ୍ର କୂଳେ କୂଳେ ବେଳାବନର ବିଶ୍ୱପ୍ରସାରୀ ସିକତା ଶଯ୍ୟା, ଏକ ଦିଗରେ ଅସୀମ ସମୁଦ୍ରର ଅସରନ୍ତି କଳସଙ୍ଗୀତ, ନୀଳଲହରୀର ମର୍ମରିତ ମୂର୍ଚ୍ଛନା, ବାଣିଜ୍ୟ ସମ୍ଭାରପୂର୍ଣ୍ଣ ଜାହାଜମାନଙ୍କର ସଙ୍କେତ ତୂର୍ଯ୍ୟନାଦ, ଅନ୍ୟ ଦିଗରେ ଝାଉଁବଣରେ ମିଳାଇ ଯାଉଥିବା ତରୁଣ ତରୁଣୀଙ୍କର ପ୍ରଣୟ ସଙ୍ଗୀତ । ଯେଉଁ ଭୂମିକୁ କୃଷ୍ଣା ଗୋଦାବରୀର ପୁଣ୍ୟବାରିରାଶି ପ୍ରୀତି-ପ୍ଲାବିତ କରି ଗ୍ଭଲିଅଛି, ଯେଉଁଠି ସମୁଦ୍ର କୂଳରେ ମତ୍ସ୍ୟ ଉତ୍ପାଦନ ଦୃଶ୍ୟଠାରୁ ଆରମ୍ଭକରି ଚିମିନିର ଧୂଆଁ ନିକ୍ଷେପଣ ପର୍ଯ୍ୟନ୍ତ ନାନାବିଧ ଦୃଶ୍ୟ ପଥିକର ମନ ଆଉ ଚକ୍ଷୁକୁ ପ୍ରଭାବିତ କରିଦେଇଥାଏ, ସେହି ତାମିଲନାଡୁର ଲକ୍ଷ ଲକ୍ଷ ଅଧିବାସୀମାନଙ୍କର ଭାଷା ହେଉଛି ତାମିଲ୍ । ଏହା ଯେପରି ଏକ ପ୍ରାଚୀନ ଭାଷା ଏହାର ସାହିତ୍ୟିକ ପରମ୍ପରା ମଧ୍ୟ ସେତିକି ପ୍ରାଚୀନ । ଏକ ସମୃଦ୍ଧନଗର ହିସାବରେ, ବାଣିଜ୍ୟ ବ୍ୟବସାୟ କେନ୍ଦ୍ର ହିସାବରେ, ଶିକ୍ଷା ଓ ସଂସ୍କୃତିର ପୀଠ ହିସାବରେ ମାନ୍ଦ୍ରାଜ ପ୍ରଦେଶର ନାମ ସର୍ବାଗ୍ରେ ଶୁଣାଯାଏ । କେବଳ ତାମିଲନାଡୁ ନୁହେଁ, ଆନ୍ଧ୍ରରାଜ୍ୟ ଓ, ସିଂହଳ ଦ୍ୱୀପର କେତେକ ଅଞ୍ଚଳରେ କେରଳର ତ୍ରିଭାଙ୍କୁର କୋଚିନ୍ ପ୍ରଭୃତି ଅଞ୍ଚଳରେ ତାମିଲ ଭାଷାକଥିତ । ଆର୍ଯ୍ୟଭାଷାରେ ସଂସ୍କୃତ ତୁଲ୍ୟ 'ତାମିଲ' ଭାଷା ଦ୍ରାବିଡ଼ ଭାଷାଗୋଷ୍ଠୀରେ ପ୍ରାଧାନ୍ୟପୂର୍ଣ୍ଣ । ୧୯୬୧ ମସିହାର ଜନଗଣନାନୁଯାୟୀ ମାନ୍ଦ୍ରାଜ ପ୍ରଦେଶର କ୍ଷେତ୍ରଫଳ ୫୦, ୩୩୧ ବର୍ଗମାଇଲ, ଲୋକସଂଖ୍ୟା ୩୩, ୬୮୬, ୯୫୩ ।

ତାମିଲ ଭାଷା:—ଅଳ୍ପ ବହୁତ ମାତ୍ରାରେ ଦକ୍ଷିଣଭାରତର ଭାଷାଗୁଡ଼ିକ ନିଜ ନିଜର ଉତ୍ପତ୍ତି, ବିକାଶ ଏବଂ ପ୍ରସାର ନିମିତ୍ତ ପରସ୍ପର ସହିତ ନାନା ଭାବରେ ସଂଶ୍ଳିଷ୍ଟ । ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳରେ କଥିତ ଭାଷା ରୂପେ ବିଦିତ ହୋଇଥିଲେ ହେଁ ଏମାନଙ୍କ ମଧ୍ୟରେ ଆଙ୍ଗିକ ଏବଂ ମୌଳିକ ସାମ୍ୟ ପରିଲକ୍ଷିତ ହୋଇଥାଏ । ଫଳରେ ଜଣେ ତାମିଲଭାଷାଭାଷୀ ସହଜରେ ତେଲୁଗୁ ଭାଷା ବୁଝିପାରେ ଏବଂ ସେହିପରି ଆନ୍ଧ୍ର ଅଂଚଳର ଲୋକେ ସହଜରେ ତାମିଲ୍ ବୁଝିଥାନ୍ତି । ଖୋଦ୍ ମାନ୍ଦ୍ରାଜ ସହରରେ ଅଧିକାଂଶ ଅଧିବାସୀ ଉଭୟ ତାମିଲ ଆଉ ତେଲୁଗୁ ଭାଷା କହିଥାନ୍ତି । ଭାଷା ରାଜ୍ୟରେ ଏହି ସବୁ ଦକ୍ଷିଣ ଭାରତୀୟ ଭାଷା ଏକଗୋଷ୍ଠୀ ଅନ୍ତର୍ଗତ ଭାଷା ରୂପେ ପରିଚିତ । ଆଜକୁ ହଜାର ହଜାର ବର୍ଷ ପୂର୍ବେ ଭାରତରେ ଦ୍ରାବିଡ ଭାଷାର ଉତ୍ପତ୍ତି ହୋଇଥିଲା ଏବଂ ଦ୍ରାବିଡ଼ ସଭ୍ୟତାର ବିକାଶ କାଳ ମଧ୍ୟ ଅତି ପ୍ରାଚୀନ ।

ଆର୍ଯ୍ୟ ଭାଷା ଗୋଷ୍ଠୀ ମଧ୍ୟରେ ସଂସ୍କୃତର ଯେଉଁ ସ୍ଥାନ, ଦ୍ରାବିଡ ଭାଷା-ଗୋଷ୍ଠୀରେ ତାମିଲର ସେହି ପ୍ରତିଷ୍ଠା । ଗ୍ରୀକ୍, ଲାଟିନ୍ ଓ ସଂସ୍କୃତ ସଦୃଶ ଏହା ଏକ ସମୃଦ୍ଧ ପ୍ରାଚୀନ ଭାଷା । ଯୁଗ ପରେ ଯୁଗ ଅତିକ୍ରାନ୍ତ ହେଲେ ମଧ୍ୟ ତାମିଲ ଭାଷା ତାର ବଳିଷ୍ଠତା ଓ ସ୍ୱାତନ୍ତ୍ର୍ୟ ବେଶ୍ ରକ୍ଷା କରିପାରିଛି । ଏହାର ପ୍ରାଚୀନ ରଚନା "ତୋଲକାପିୟମ"ରୁ ବେଶ୍ ଅନୁମେୟ । "ତୋଲକାପିୟମ" ହେଉଛି ତାମିଲ ଭାଷାର ସର୍ବପ୍ରାଚୀନ ବ୍ୟାକରଣ ଏବଂ ଏହାର ରଚନାକାଳ ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀ ଏବଂ ଏହି ଭାଷା ଦ୍ରାବିଡ ଭାଷା ପରିବାର ମଧ୍ୟରେ ପ୍ରାଚୀନତମ ଏବଂ ସମୃଦ୍ଧଶାଳୀ ।

ତାମିଲ ଭାଷାର ଉତ୍ପତ୍ତି ସମ୍ପର୍କରେ ବହୁ ପୌରାଣିକ ତଥ୍ୟ ଏବଂ କିମ୍ବଦନ୍ତୀ ପ୍ରଚଳିତ ହେଲେ ହେଁ ଏହି ଭାଷାର ପ୍ରକୃତ ଉତ୍ପତ୍ତିକାଳ ଐତିହାସିକ ଯୁଗର ରହସ୍ୟ ବୋଲି ପ୍ରତୀତ ହୁଏ । ପ୍ରଥମତଃ ଯେ କୌଣସି ଭାଷାର ଉତ୍ପତ୍ତି, ପ୍ରସାର ଏବଂ ବିକାଶ ସେହି ସ୍ଥାନର ଅଧିବାସୀମାନଙ୍କର ଧର୍ମ, ସଂସ୍କୃତି ତଥା ଇତିହାସ ସହିତ ଜଡିତ । ଭାରତରେ ଆର୍ଯ୍ୟମାନଙ୍କର ଆବିର୍ଭାବ ପୂର୍ବରୁ ଅନାର୍ଯ୍ୟମାନେ ଦକ୍ଷିଣ ଭାରତରେ ବିସ୍ତାର ଲାଭ କରିଥିଲେ । ଆର୍ଯ୍ୟମାନଙ୍କର ଆଗମନ ଏବଂ ଉତ୍ତର ଭାରତରେ ଅବସ୍ଥାନ ପୂର୍ବରୁ ସମଗ୍ର ଭାରତବର୍ଷରେ ଏକପ୍ରକାର ଭାଷା ପ୍ରଚଳିତ ଥିବାର ଜଣାଯାଏ । ଆର୍ଯ୍ୟମାନେ କ୍ରମଶଃ ଦକ୍ଷିଣ ଭାରତ ଆଡ଼କୁ ଅଗ୍ରସର ହୋଇଥିଲେ, ଉତ୍ତର ଭାରତର ଆର୍ଯ୍ୟମାନଙ୍କର ଭାଷା ଏବଂ ଦକ୍ଷିଣ ଭାରତର ଦ୍ରାବିଡ଼ମାନଙ୍କ ଭାଷା, ପରସ୍ପର ସମ୍ପର୍କରେ ନିଶ୍ଚୟ ଆସିଥିବ । ଉତ୍ତର ଭାରତର ଭାଷାମାନଙ୍କରେ ଦ୍ରାବିଡ଼ ଭାଷାର କେତେକ ପ୍ରଭାବ ପରିଲକ୍ଷିତ ହୋଇଥାଏ ।

ତାମିଲ ଭାଷାର ପ୍ରାଚୀନତମ ପ୍ରସ୍ଥରେ କେବଳ ନବଓଲଥିକ ସଂସ୍କୃତର ନୁହେଁ, ବରଂ ଲୌହ ଯୁଗର ଆବର୍ତ୍ତ ବିଗତ ପ୍ରଭାବ ସୁସ୍ପଷ୍ଟ । ପୃଥିବୀର ସର୍ବ ପ୍ରାଚୀନ ମାନବ ସେହି ଦକ୍ଷିଣ ଭାରତ ଖଣ୍ଡରେ ବସବାସ କରୁଥିବା ଯେବେ ଅନୁମାନ କରାଯାଏ, ତେବେ ସେହି ଭୂମିରେ ପ୍ରଥମ ଭାଷାର ସୂତ୍ରପାତ ହୋଇ-ଥିବାର ପରିଲକ୍ଷିତ ହୁଏ । ତାମିଲରେ ଖ୍ରୀଷ୍ଟପୂର୍ବ ଅତି ପ୍ରାଚୀନ କାଳରୁ ସାହିତ୍ୟ ଲିଖିତ ହୋଇଥିଲା ଏବଂ ସେଥିମଧ୍ୟରେ କେତେକ ପ୍ରାମାଣିକ ଗ୍ରଂଥର ସଂଧାନ ମିଳିଥାଏ ।

ଏହି ଭାଷା ଚତୁଷ୍ପାର୍ଶ୍ୱସ୍ଥ ସଂସ୍କୃତ ଉପରେ ନିର୍ଭରଶୀଳ । ମାତ୍ର ସେମାନଙ୍କର ଉତ୍ପତ୍ତି ସଂସ୍କୃତରୁ ଘଟିଛି ବୋଲି କୁହାଯାଇ ନ ପାରେ । ସଂସ୍କୃତର ସାନ୍ନିଧ୍ୟଲାଭ କରିବା ପୂର୍ବରୁ ତାମିଲ ଏକ ସ୍ୱତନ୍ତ୍ର ଭାଷା ରୂପେ ପ୍ରଚଳିତ ଥିଲା । ମଧ୍ୟଯୁଗରେ ଏବଂ ଆଧୁନିକ କାଳରେ ସଂସ୍କୃତର କେତେକ ଶବ୍ଦ ତାମିଲ ଭାଷାରେ ନିର୍ଦ୍ଦିଷ୍ଟ

ଜଟିଳଣା ସହିତ ବ୍ୟବହାର କରାଯାଇଥାଏ । ସର୍ବ ପ୍ରାଚୀନ ତାମିଲ ବ୍ୟାକରଣ "ତୋଲକାପିୟମ" ଏତାଦୃଶ ଶବ୍ଦ ପ୍ରୟୋଗ ପ୍ରସଙ୍ଗରେ ମାନଦଣ୍ଡ ନିର୍ଦ୍ଧାରଣ କରି ସାରିଥିଲା । ସମଗ୍ର ପୃଥିବୀରେ ତାମିଲ ହେଉଛି ଏକମାତ୍ର ଭାଷା ଯାହାର କଥିତ ମୌଳିକ ରୂପ ଗତ ଦୁଇ ହଜାର ବର୍ଷ ଧରି ଅପରିବର୍ତ୍ତିତ ରହିଛି । ଏହାର ବିକାଶରେ ଏପରି ଅପ୍ରତିହତ ଗତିଶୀଳତାର ଏକମାତ୍ର ହେତୁ ହେଉଛି ଏହାର ସରଳ, ପ୍ରାକୃତିକ, ଧ୍ୱନ୍ୟାତ୍ମକ ଲକ୍ଷଣ ଏବଂ ଏହାର ସ୍ୱତନ୍ତ୍ର ଶବ୍ଦ-ପ୍ରକରଣ ।

ତାମିଲଭାଷା ଏବଂ ସାହିତ୍ୟର ବିକାଶ ଧାରାକୁ ଯଥାକ୍ରମେ ଚାରି ଭାଗରେ ବିଭକ୍ତ କରି ଯାଇଥାଏ । ଅତି ପୁରାତନ ତାମିଲ ଖ୍ରୀଷ୍ଟ ପୂର୍ବ ୫୦୦ରୁ ୨୦୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ବ୍ୟାପ୍ତ, ପ୍ରାଚୀନ ଅର୍ଥାତ୍ ଖ୍ରୀଷ୍ଟଯୁଗୀୟ ତାମିଲ, ଖ୍ରୀଷ୍ଟାବ୍ଦ ୭୦୦ରୁ ୧୨୦୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ବ୍ୟାପ୍ତ ( ପଲ୍ଲବ, ଚାଲୁକ୍ୟ ରାଜତ୍ୱକାଳ ), ମଧ୍ୟଯୁଗୀୟ ତାମିଲ ୧୨୦୦ରୁ୧୭୫୦ ପର୍ଯ୍ୟନ୍ତ ବ୍ୟାପ୍ତ ( ଏହା ଚୋଳ, ବିଜୟନଗର ସାମ୍ରାଜ୍ୟ, ମଦୁରାର ନାୟକମାନଙ୍କ ସମୟ ) ଚତୁର୍ଥ ପର୍ଯ୍ୟାୟ-ଅର୍ଥାତ୍ ଆଧୁନିକ ତାମିଲ ୧୭୫୦ରୁ ୧୮୫୦ ଖ୍ରୀଷ୍ଟାବ୍ଦ ଏବଂ ପରବର୍ତ୍ତୀ କାଳ ହେଉଛି ୧୮୫୦ରୁ ୧୯୫୦ ଖ୍ରୀଷ୍ଟାବ୍ଦ ।

ତାମିଲ ଭାଷାରେ ବ୍ୟବହୃତ ଲିପି ମଧ୍ୟ ସ୍ୱତନ୍ତ୍ର । ବ୍ରାହ୍ମୀଲିପି ଭାରତର ବିଭିନ୍ନ ପ୍ରାନ୍ତୀୟ ଭାଷାର ଲିପିର ଉତ୍ସ । ତାମିଲ ଲିପି ସେହି ଲିପିରୁ ଗୃହୀତ । ତାମିଲ ଭାଷାର ବର୍ଣ୍ଣମାଳା ମଧ୍ୟ ଅଳ୍ପ ସଂଖ୍ୟକ, ଯଥା ଦ୍ୱାଦଶ ସ୍ୱରବର୍ଣ୍ଣ,ଅଷ୍ଟାଦଶ ବ୍ୟଞ୍ଜନବର୍ଣ୍ଣ ।

**ସଙ୍ଗମ ସାହିତ୍ୟ:**—( ଖ୍ରୀ. ପୂ ୫୦୦—ଖ୍ରୀ, ୨୦୦ ) ଅତି ପ୍ରାଚୀନକାଳରେ ସଙ୍ଗମତ୍ରୟ ଅନୁଷ୍ଠାନିକ ଭାବରେ ପାଣ୍ଡ୍ୟରାଜାମାନଙ୍କ ପୃଷ୍ଠପୋଷକତାରେ ସାହିତ୍ୟ ସାଧନାରେ ବ୍ୟାପୃତ ଥିଲା ବୋଲି ଐତିହାସିକମାନଙ୍କର ମତ । ପ୍ରଥମ ସଙ୍ଗମର ମୁଖ୍ୟ ଥିଲେ ଅଗସ୍ତି । ଶୁଣାଯାଏ ସେ ଦକ୍ଷିଣ ଭାରତରେ ଉତ୍ତର ଭାରତର ସଂସ୍କୃତି ପ୍ରଚାର କରିଥିଲେ । ଅଗସ୍ତି ତାମିଲ ଭାଷାର ସର୍ବପ୍ରାଚୀନ ବ୍ୟାକରଣ ପ୍ରଣେତା ବୋଲି କଥିତ । ଏହାପରେ ସେହି ଅଗସ୍ତି ଏବଂ ତାଙ୍କର ଶିଷ୍ୟ ତୋଲକାପିୟରଙ୍କ ନେତୃତ୍ୱରେ ଦ୍ୱିତୀୟ ସଂଗମ ପ୍ରତିଷ୍ଠିତ ହେଲା । ତୋଲକାପିୟରଙ୍କ ଲିଖିତ ତାମିଲ ଭାଷାର ପ୍ରାଚୀନ ବ୍ୟାକରଣ 'ତୋଲକାପିୟମ' ଦ୍ୱିତୀୟ ସଂଗମ କାଳରେ ରଚିତ ହେଲା । "ତୋଲକାପିୟମ୍" ବ୍ୟତୀତ ସେହି ସମୟର ଅନ୍ୟ କୌଣସି ଉଲ୍ଲେଖଯୋଗ୍ୟ ରଚନା ବର୍ତ୍ତମାନ ମିଳେ ନାହିଁ । ପାରମ୍ପରିକ ବିଦ୍ୟା ଓ ପାଣ୍ଡିତ୍ୟର ପୀଠ ମଦୁରା ଠାରେ ତୃତୀୟ ସଂଗମ ଅନୁଷ୍ଠିତ ହୋଇଥିଲା । ପ୍ରାଚୀନ ତାମିଲ ସାହିତ୍ୟର ଇତିହାସକୁ ସାଧାରଣତଃ ସଂଗମ ପର୍ଯ୍ୟାୟରେ ବିଭକ୍ତ କରାଯାଇଥାଏ । ଏହି ସଂଗମ ଅତୀତରେ ଶତାବ୍ଦୀଧରି ସାହିତ୍ୟିକ ଅନୁଷ୍ଠାନ ସମୃଦ୍ଧ ଥିଲା । ଏହା ସମ୍ଭବତଃ

ଖ୍ରୀଷ୍ଟପୂର୍ବ ୭ମ ଶତାବ୍ଦୀରୁ ଆରମ୍ଭ ହୋଇଥିଲା । ସଂଗମପୂର୍ବବର୍ତ୍ତୀ ଏବଂ ସଂଗମ ପରବର୍ତ୍ତୀ କାଳ ଭକ୍ତିଯୁଗ, ଭକ୍ତିଯୁଗ ପରବର୍ତ୍ତୀ କମ୍ବନ ଯୁଗ, ମଧ୍ୟଯୁଗ ଏବଂ ଆଧୁନିକ ଯୁଗ, ତୃତୀୟ ସଂଗମ ଯୁଗ ପ୍ରାଚୀନ ତାମିଲ ସାହିତ୍ୟର ସ୍ୱର୍ଣ୍ଣଯୁଗ ନାମରେ ଅଭିହିତ । ଇତିହାସରୁ ଏହାର ବିସ୍ତୃତ ବିବରଣୀ ମିଳେ ।

ତିରୁକ୍କୁରାଲ:—'ତିରୁକ୍‌କୁରାଲ' ପ୍ରାୟ ୨୦୦୦ ବର୍ଷ ପୂର୍ବେ ରଚିତ ହୋଇଥିଲା । ପୃଥିବୀର ପ୍ରାୟ ଅଧିକାଂଶ ଭାଷାମାନଙ୍କରେ ଏହା ଅନୂଦିତ ହୋଇ ସାରିଛି । ଏହା ବିଶ୍ୱସାହିତ୍ୟର ଏକ ଶ୍ରେଷ୍ଠ ଗ୍ରନ୍ଥ ହିସାବରେ ପରିଗଣିତ । ଗ୍ରନ୍ଥଟି ଧର୍ମ, ଅର୍ଥ ଓ କାମ ଏପରି ତିନି ଭାଗରେ ବିଭକ୍ତ । ବିଷୟର ବ୍ୟାପକତା ଦୃଷ୍ଟିରୁ ଏହା ତାମିଲ ବେଦ ନାମରେ ଗୃହୀତ । 'କୁ଼ରାଲ'ର ଅର୍ଥ ତ୍ରିବର୍ଗ ଏବଂ କୁ଼ରାଲର ପୂର୍ବ ପଦ ତିରୁର ଅର୍ଥ ଭକ୍ତି ଏବଂ ଶ୍ରଦ୍ଧା ସୂଚକ ଏବଂ ଏହା ପ୍ରାଚୀନ ତାମିଲ ଭାଷାର ବେଦ ନାମରେ ଅଭିହିତ । ଧର୍ମ ଏବଂ ନୀତି ବିଷୟରେ ତାମିଲ ଭାଷାରେ ଏହା ଅତି ଉପାଦେୟ ମୂଲ୍ୟବାନ୍ ଗ୍ରନ୍ଥ ଏବଂ ଏହା ୧୩୩୦ଶ୍ଳୋକ ବିଶିଷ୍ଟ । ଏହାର ପ୍ରଣେତା ସନ୍ଥ ତିରୁଭଲ୍ଲୁଭର, ଏହାକୁ ତିନିଭାଗରେ ବିଭକ୍ତ କରିଛନ୍ତି ଯଥା ଅର୍ଥୁପାଲ୍ଲ (ଧର୍ମ) ପୋରୁଲ୍ ପାଲ୍ଲ (ଅର୍ଥ,ସମ୍ପଦ), କାମଥୁ ପାଲ୍ଲ (କାମ ଅର୍ଥାତ୍ ପ୍ରେମ) । ପ୍ରାଚୀନ ତାମିଲ ସାହିତ୍ୟର ଏହି ମୂଲ୍ୟବାନ ନୀତିଗ୍ରନ୍ଥ ବିଶ୍ୱ ସାହିତ୍ୟରେ ବିରଳ ବୋଲି ପାଶ୍ଚାତ୍ୟ ପଣ୍ଡିତମାନେ ମଧ୍ୟ କହିଥାନ୍ତି । ତିରୁକ୍‌କୁରାଲର ବର୍ଣ୍ଣିତ ତତ୍ତ୍ୱସମୃଦ୍ଧ ଏବଂ ବ୍ୟାଖ୍ୟାନରୀତି ଅତି ଚମତ୍କାର । ପାଶ୍ଚାତ୍ୟ ପଣ୍ଡିତ ରେଭରେଣ୍ଡ ଜି. ଇଉ. ପୋପ୍ ଏବଂ ଡକ୍‌ଟର ଆଲବର୍ଟ ସୁଏଜର ଉଭୟେ ତିରୁକ୍‌କୁରାଲର ଭୂରି ଭୂରି ପ୍ରଶଂସା କରିଥିଲେ । ତାମିଲ ଭାଷାର ଶକ୍ତି ଏବଂ ସାମର୍ଥ୍ୟ ମଧ୍ୟ ଏହି ରଚନାରେ ପ୍ରତିଫଳିତ । ତାମିଲ ସାହିତ୍ୟରେ ପ୍ରତ୍ୟେକ ସଂପ୍ରଦାୟ, ଗୋଷ୍ଠୀ ତଥା ଧର୍ମପନ୍ଥୀମାନଙ୍କ ମଧ୍ୟରେ ଏହି ରଚନାଟି ବିଶେଷ ଆଦୃତ । ଜଣେ କବିଙ୍କ ଭାଷାରେ ଏହା ଏକ ଛନ୍ଦାନ୍ୱିତ ସୋରିଷ ଯାହା ଗର୍ଭରେ କି ସପ୍ତସିନ୍ଧୁର ସଂପଦ ନିହିତ ଅଛି । ପ୍ରତ୍ୟେକ ଦ୍ୱି ପଂକ୍ତି ଶ୍ଳୋକ ତତ୍ତ୍ୱ ଏବଂ ଉଚ୍ଚଚିନ୍ତା ପୂର୍ଣ୍ଣ ।

ତାମିଲ ଭାଷାର ସୁଲେଖକ ଚକ୍ରବର୍ତ୍ତୀ ରାଜଗୋପାଳାଚାରୀଙ୍କର "ତିରୁକ୍-କୁରାଲ" ସମ୍ପର୍କରେ ମନ୍ତବ୍ୟ ଏଠାରେ ଅନୁଧ୍ୟାନଯୋଗ୍ୟ ।

ପ୍ରାଚୀନ ତାମିଲ ଗ୍ରନ୍ଥମାନଙ୍କ ମଧ୍ୟରେ ଏହା ଏକ ଅତି ପୁରାତନ ଗ୍ରନ୍ଥ । ଏହା ସାଧାରଣତଃ ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀର ରଚନା । ଅନେକଙ୍କର ବିଶ୍ୱାସ ଏହାର ପ୍ରଣେତା ଜଣେ ଜୈନ ଥିଲେ । ଅବଶ୍ୟ ଆଲୋଚ୍ୟ କାଳରେ ଦକ୍ଷିଣ ଭାରତରେ ଜୈନ ଧର୍ମ ଲୋକମାନଙ୍କ ମଧ୍ୟରେ ପ୍ରସାର ଲାଭ କରିଥିଲା । କିନ୍ତୁ ଚକ୍ରବର୍ତ୍ତୀ ରାଜଗୋପାଳା-ଚାରୀଙ୍କ ମତରେ ତିରୁଭଲ୍ଲୁଭର ଜୈନ ନ ଥିଲେ । ସେ ଜଣେ ଅତି ଉଦାର ପୁରୁଷ

ଥିଲେ, ଏବଂ ତାଙ୍କର ଧର୍ମ, ନୀତି ଓ ବିଗ୍ରହ କୌଣସି ସଙ୍କୀର୍ଣ୍ଣତା ଦ୍ୱାରା ସୀମିତ ନ ଥିଲା । ଜୈନମାନେ ହିନ୍ଦୁଧର୍ମର ପୁନର୍ଜନ୍ମ ଏବଂ କର୍ମଫଳ ତତ୍ତ୍ୱ ଗ୍ରହଣ କରିଥିଲେ । ତିରୁଭଲ୍ଲୁଭରଙ୍କ ସମସ୍ତ ନୀତି ପ୍ରସ୍ଥର ସାଧାରଣ ମନୁଷ୍ୟର ନୈତିକ ମନସ୍ତତ୍ତ୍ୱ ଦ୍ୱାରାହିଁ ପ୍ରଭାବିତ ହୋଇଥିଲା । ପ୍ରବୃତ୍ତି ବିରୋଧରେ ସାଧାରଣ ଜନତାକୁ ସଂଗ୍ରାମ କରିବାପାଇଁ ସାହାଯ୍ୟ କରିବା ଥିଲା ତାଙ୍କର ମହତ୍ ଲକ୍ଷ୍ୟ. । ଆଦର୍ଶ ଗୃହସ୍ଥ, ସନ୍ନ୍ୟାସୀର କର୍ତ୍ତବ୍ୟ ଏବଂ ଆଦର୍ଶ ରାଷ୍ଟ୍ରତତ୍ତ୍ୱ ଯଥାକ୍ରମେ କୁରାଲର ପ୍ରଥମ ଏବଂ ଦ୍ୱିତୀୟଖଣ୍ଡରେ ବର୍ଣ୍ଣିତ । ପବିତ୍ରତା, ଉତ୍ତମ ନୀତିଶିକ୍ଷା, ଆଦର୍ଶ ମାନବିକତା, ସର୍ବୋପରି ଆଦର୍ଶ ସମାଜ ଗଠନର ଆବଶ୍ୟକତାହିଁ ତିରୁ କୁରାଲରେ ପ୍ରତିଧ୍ୱନିତ ।

ପ୍ରାଚୀନ ତାମିଲରେ ଯୁଗ୍ମ ପୌରାଣିକ ରଚନା :—'ସଙ୍ଗମ୍' କିମ୍ବା ସଙ୍ଗମ୍ ପରମ୍ପରା ଚିହ୍ନିତ ସାହିତ୍ୟିକ ଯୁଗର ପରବର୍ତ୍ତୀ କାଳରେ ତାମିଲ ସାହିତ୍ୟରେ କାବ୍ୟ ଯୁଗର ସୂତ୍ରପାତ ହେଲା । "ତାମିଲ ନାଡୁ"ର ପୁରାତନ ଐତିହ୍ୟ ହିନ୍ଦୁ ଧର୍ମର ପରମ୍ପରା, ନୀତି ଏବଂ ଆଦର୍ଶସର୍ବସ୍ୱ ପୃଷ୍ଠଭୂମିରେ ପୁଷ୍ଟ ଏବଂ ସଂଯୋଜିତ । ବୌଦ୍ଧ ଧର୍ମ, ଜୈନଧର୍ମର ଦର୍ଶନ ପ୍ରାଚୀନ ତାମିଲ ସାହିତ୍ୟକୁ ପ୍ରଭାବିତ କରିଥିଲା । ବୈଦିକ ଆର୍ଯ୍ୟମାନଙ୍କର ପ୍ରଚାରବଶତଃ ସଂସ୍କୃତ ଭାଷା, ବୌଦ୍ଧ ଏବଂ ଜୈନମାନଙ୍କ ପ୍ରଚାରବଶତଃ ପାଲି ଭାଷାର ପ୍ରଭାବ ତାମିଲରେ ପରିଦୃଷ୍ଟ ହେବା ସ୍ୱାଭାବିକ କଥା । ପ୍ରାଚୀନ ତାମିଲ ଭାଷାର ଭକ୍ତି ସଙ୍ଗୀତ ସମୂହ ଏହାର ପରିଚାୟକ । ପରବର୍ତ୍ତୀ କାଳରେ ଶୈବ ଓ ବୈଷ୍ଣବଧର୍ମ ଦର୍ଶନ ଦ୍ୱାରା ତାମିଲ ସାହିତ୍ୟ ପ୍ରଭାବିତ ହୋଇଥିଲା । କାବ୍ୟଯୁଗର ଉଲ୍ଲେଖଯୋଗ୍ୟ କୃତି, ବୈଶିଷ୍ଟ୍ୟ ତଥା ସୁଦୂରପ୍ରସାରୀ ପ୍ରଭାବ ଆଲୋଚନା କରିବା ପୂର୍ବରୁ ପ୍ରାଚୀନ ତାମିଲ ସାହିତ୍ୟର ଦୁଇଗୋଟି ପ୍ରଧାନ କାବ୍ୟର ସଂକ୍ଷିପ୍ତ ପରିଚୟ ଦିଆଗଲା ! ତାହା ହେଉଛି "ଶିଲପ୍ପଥିକାରମ୍"(The Epic of the Anklet) ଏବଂ "ମଣିମେକଲୈ" ।

ଗ୍ରୀକ୍ ଏବଂ ରୋମାନ୍‌ମାନେ ଯେପରି ସାହିତ୍ୟ ଜଗତକୁ ସେମାନଙ୍କର ସମୃଦ୍ଧ ରଚନାମାଳା ଦାନ କରିଯାଇଛନ୍ତି, ପ୍ରାଚୀନ ତାମିଲ ଭାଷାର କବିମାନେ ସେହିପରି କତିପୟ ପୌରାଣିକ ରଚନା ଲେଖିଯାଇଛନ୍ତି ।

ତାମିଲ ଭାଷା, ସଂସ୍କୃତି ଏବଂ ପାଣ୍ଡିତ୍ୟର ପ୍ରଧାନ ପୀଠ ମଦୁରାଇର ପ୍ରସିଦ୍ଧ ତୃତୀୟ ସଙ୍ଗମ ସମୟରେ ଏହି ପୁରାଣଦ୍ୱୟ ରଚିତ ହୋଇଥିବା ଜଣାଯାଏ । ସମ୍ଭବତଃ ପ୍ରଥମ ଶତାବ୍ଦୀର ଶେଷ ଏବଂ ଦ୍ୱିତୀୟ ଶତାବ୍ଦୀର ପ୍ରାକ୍-କାଳରେ ଏହା ରଚିତ । ତାମିଲ ଅଞ୍ଚଳର ସଭ୍ୟତା ଏବଂ ସଂସ୍କୃତିର ଚୂଡାନ୍ତ ବିକାଶ ଏହି ସମୟରେ ସମ୍ଭବ ହୋଇଥିଲା ।

"ଶିଲପ୍ପଥିକାରମ୍" ଏବଂ "ମଣିମେକଲୈ" ଯୁଗ୍ମରଚନା ନାମରେ ଚିହ୍ନିତ ଏବଂ ଗ୍ରୀକ ସାହିତ୍ୟର ଇଲିୟାଡ ଏବଂ ଓଡିଶୀ କାବ୍ୟ ସହିତ ତୁଳନୀୟ । ଏହାର

କାରଣ ସେମାନଙ୍କର ମଧ୍ୟରେ ଥିବା ଆଙ୍ଗିକ ତଥା ଆତ୍ମିକ ସାଦୃଶ୍ୟ । "ଶିଲପ୍ ଥିକାରମ୍" ଯେଉଁଠାରେ ଶେଷ, "ମଣିମେକଲୈ" ସେହିଠାରୁ ଆରମ୍ଭ ବରଂ ଶେଷୋକ୍ତଟି ପୂର୍ବୋକ୍ତର ପ୍ରବାହ । ଗୋଟିଏ ରଚନାର ଚରିତ୍ର ସମୂହ ଅନ୍ୟ ରଚନାରେ ସ୍ଥାନ ପାଇଛନ୍ତି ।

ଚେରନ୍ ଚେଙ୍ଗୁଟ୍ଟାବନ୍‌ଙ୍କ କନିଷ୍ଠ ଭ୍ରାତା "ଇଲଙ୍ଗୋ" ହେଉଛନ୍ତି ଶିଲପ୍ପଥିକାରମ୍"ର ପ୍ରଣେତା ଏବଂ ପଣ୍ଡିତ ଚଥାଲଇ ଗୃଥାନର ହେଉଛନ୍ତି "ମଣିମେକଲୈ"ର ପ୍ରଣେତା । ପ୍ରଥମ ରଚନାରେ ଜୈନ ଏବଂ ଦ୍ୱିତୀୟଟିରେ ବୌଦ୍ଧ ଧର୍ମର ପ୍ରଭାବ ପରିଦୃଷ୍ଟ । କିମ୍ବଦନ୍ତୀ ଅଛି ଯେ ଇଲଙ୍ଗୋ ରାଜକୀୟ ଆଡମ୍ବର ପରିତ୍ୟାଗ ପୂର୍ବକ ଶ୍ରମଣମାନଙ୍କ ଆଶ୍ରମରେ ପ୍ରବେଶ କରିଥିଲେ । ରଚନାର ପ୍ରଥମ ପ୍ରସ୍ତାବନାରୁ ଜଣାଯାଏ ଏଲଙ୍ଗୁ ଜନୈକ ସନ୍ନ୍ୟାସୀ ଏବଂ ଶୈବ ଧର୍ମାବଲମ୍ବୀ ଥିଲେ । ରାଜପୁତ୍ର ସନ୍ନ୍ୟାସୀବ୍ରତ ଗ୍ରହଣ କରିଥିଲେ । ସେ "ଇଲଙ୍ଗୋ,-ଅଡିଗାଲ" ନାମରେ ପରିଚିତ । ତାମିଲନାଡୁ ଏବଂ ଲଙ୍କା ଦ୍ୱୀପରେ ସତୀତ୍ୱ-ଦେବୀ ରୂପେ ପୂଜିତ ହେଉଥିବା "କନକୀ"ଙ୍କର ରସୋତ୍ତୀର୍ଣ୍ଣ ସତୀତ୍ୱ କାହାଣୀହିଁ ଏହି ପ୍ରଥମ ମହାକାବ୍ୟର ଉପଜୀବ୍ୟ । ତାମିଲ ସାହିତ୍ୟରେ ଏହା ତିନିଭାଗରେ ବିଭକ୍ତ ଏବଂ ପ୍ରତ୍ୟେକ ଭାଗ ଯଥାକ୍ରମେ ତାମିଲ ନାଡୁର ପ୍ରଧାନ ତିନି ରାଜ୍ୟର ରାଜଧାନୀକୁ କେନ୍ଦ୍ର କରି ଲିଖିତ ଯଥା ପାଣ୍ଡ୍ୟମାନଙ୍କର ମଦୁରାଇ; ଚୋଳମାନଙ୍କର କାବେରୀପୁମ୍ପଟ୍ଟିନାମ ଏବଂ ଚେରୁମାନଙ୍କର ଭଂଚି । ପରମ୍ପରା ଅନୁଯାୟୀ କୋଭଲନ୍‌ଙ୍କର "କନ୍ନକୀ" ସହିତ ବିବାହ ଅନୁଷ୍ଠିତ ହୋଇଥିଲା । କିନ୍ତୁ କୋଭଲନ୍ ରାଜଦରବାରର ନର୍ତ୍ତକୀ ମାଧବୀ ପ୍ରତି ପ୍ରେମାସକ୍ତ ହେଲେ । ତାଙ୍କ ଦୃଷ୍ଟିରେ ସଦ୍ୟବିବାହିତା 'କନ୍ନକୀ'ଙ୍କ ଅପେକ୍ଷା ମାଧବୀ ଅଧିକ ରୂପବତୀ ଏବଂ ସୌନ୍ଦର୍ଯ୍ୟଶାଳିନୀ ଥିଲେ । ତାଙ୍କର ପ୍ରେମଭିକ୍ଷା ନିକଟରେ ସରଳା ମାଧବୀ ଆତ୍ମସମର୍ପଣ କରିଥିଲେ । କିନ୍ତୁ ତଦ୍ଦ୍ୱାରା 'କନ୍ନକୀ' ପ୍ରତି ସେ ଅନ୍ୟାୟ କରିଥିଲେ । ତାହା ତାଙ୍କର ଉପଲବ୍ଧି ବହିର୍ଭୂତ ଥିଲା । କନ୍ନକୀ ମଧ୍ୟ ଖୁବ୍ ବିଭବଶାଳିନୀ ଥିଲେ । ମାତ୍ର ତାଙ୍କର ସମଗ୍ର ବିଭବ କୋଭଲନ୍ ପ୍ରେମିକା ମାଧବୀ ଗୃହରେ ଅଜାଡ଼ି ଦେଇଥିଲେ । ଯେତେବେଳେ କୋଭଲନ୍ ଅଭାବର ସମ୍ମୁଖୀନ ହେଲେ, ସେ ସେତେବେଳେ ତାଙ୍କର ଧର୍ମପତ୍ନୀ କନ୍ନକୀଙ୍କ ନିକଟକୁ ଫେରି ଆସିଥିଲେ । ଉଦାରହୃଦୟା କନ୍ନକୀ ପ୍ରତିଶୋଧ ନେବା ଦୂରେ ଥାଉ, ବରଂ ସ୍ୱାମୀଙ୍କର ଆର୍ଥିକ ଦୁଃସ୍ଥିତି ସମ୍ଭାଳିବା ପାଇଁ ନିଜର ଏକମାତ୍ର ସମ୍ବଳ ସ୍ୱାମୀଙ୍କ ହାତରେ ଅର୍ପଣ କଲେ । ବର୍ତ୍ତମାନ ତାଙ୍କର ଏକମାତ୍ର ଗୌରବ ତାଙ୍କର ସତୀତ୍ୱ । ନାୟକ କୋଭଲନ ନିଜର ଦୁଷ୍କର୍ମ ତ୍ରୁଟିପାଇଁ ନିଜ ପତ୍ନୀ କନ୍ନକୀଙ୍କୁ ସଙ୍ଗରେ ନେଇ ଜୀବିକାର୍ଜ୍ଜନ ପାଇଁ ମଦୁରାଇକୁ ପଳାୟନ କଲେ । ସେଠାରେ କନ୍ନକୀଙ୍କୁ ଜନୈକ ଉଦାର ହୃଦୟ ମେଷପାଳିକାର ଦାୟିତ୍ୱରେ ଛାଡି ସେ ପତ୍ନୀଙ୍କର ପାଉଁଜି, "ଶିଲାମ୍ବୁ" ବିକ୍ରୟାର୍ଥେ

ଅନ୍ୟତ୍ର ପ୍ରସ୍ଥାନ କରିଥିଲେ । ବଡ ଆଶ୍ଚର୍ଯ୍ୟର କଥା ଠିକ୍ ସେହି ସମୟରେ ମଦୁରାଇର ତତ୍କାଳୀନ ନରପତି "ନେଦନ୍‌ଚେଦିହାନ"ଙ୍କ ରାଣୀଙ୍କର ପାଉଁଜି ହଜିଯାଇଥାଏ । ରାଜା ଶୁଣି ପାରିଲେ ଯେ 'କୋଭଲନ୍'ନାମକ ଜଣେ ବ୍ୟକ୍ତି ତାହା ଚୋରାଇ ନେଇଛି । କୋଭଲନ୍‌ର ପ୍ରାଣଦଣ୍ଡ ଆଦେଶ ହେଲା । ଠିକ୍ ଏହି ସମୟରେ କନ୍ନକୀ ରାଜାଙ୍କ ଦରବାରରେ ଉପସ୍ଥିତ ହୋଇ ପ୍ରକୃତ ସତ୍ୟ ଉଦ୍‌ଘାଟନ କରି ନିଜର ସ୍ୱାମୀଙ୍କୁ ପ୍ରାଣଦଣ୍ଡାଦେଶରୁ ମୁକ୍ତ କରିଥିଲେ । ରାଜା ନିଜକୃତ ଭ୍ରାନ୍ତି ପାଇଁ ଅନୁତପ୍ତ ହେଲେ । ତଥାପି ସତୀ କନ୍ନକୀଙ୍କର ଅଭିଶାପରେ ମଦୁରାଇ ଧ୍ୱଂସ ପାଇଲା । ଏହା ପରେ 'କନ୍ନକୀ' ଚେରରାଜ୍ୟରେ ପହଞ୍ଚି ତପସ୍ୟା କରିଥିଲେ । ଚେର ରାଜା ତାଙ୍କ ରାଜ୍ୟରେ କନ୍ନକୀଙ୍କର ଏକ ପ୍ରତିମୂର୍ତ୍ତି ନିର୍ମାଣ କରିଥିଲେ । ସେହିଦିନ ଠାରୁ ସାଧାରଣଲୋକ ସତୀ ସ୍ତ୍ରୀ ରୂପରେ ତାଙ୍କୁ ପୂଜା କରିଆସିଛନ୍ତି । ସତ୍ୟ ଏବଂ ସତୀତ୍ୱର ପରାକାଷ୍ଠାହିଁ ଏହି କାବ୍ୟର ପ୍ରତିପାଦିତ ବିଷୟ । ସେଥିପାଇଁ ତାମିଲ ସମାଜରେ ଏହାର ଲୋକପ୍ରିୟତା ସର୍ବାଧିକ । କାବ୍ୟର ସ୍ଥାନେ ସ୍ଥାନେ ଗଦ୍ୟାଂଶ ମଧ୍ୟ ସଯୋଜିତ । ତାମିଲ ସମାଜର ପ୍ରତ୍ୟକ୍ଷ ଚିତ୍ର ଏଥିରେ ବର୍ଣ୍ଣିତ । ତାମିଲ ସମାଜର ପ୍ରାଚୀନ ଇତିହାସ ତଥା ସଂସ୍କୃତି ଅନୁଶୀଳନ ପକ୍ଷେ ଏହି କାବ୍ୟ ଅତ୍ୟନ୍ତ ଉପାଦେୟ ।

ଏହି ଯୁଗର ଦ୍ୱିତୀୟ କାବ୍ୟ କୋଭଲନ୍‌ଙ୍କ ଔରସରେ ଜାତ ମାଧବୀଙ୍କ କନ୍ୟା "ମଣିମେକଲୈ"ଙ୍କ ନାମାନୁସାରେ ନାମିତ । ଏହାର ପ୍ରଣେତା ବୌଦ୍ଧ ଥିବାରୁ କାବ୍ୟରେ ବୌଦ୍ଧ ଧର୍ମର ଗୂଢ଼ ତତ୍ତ୍ୱ ସମୂହର ଅନୁଶୀଳନ ସ୍ଥାନ ପାଇଛି । ଦ୍ୱିତୀୟ ଏବଂ ତୃତୀୟ ଶତାବ୍ଦୀରେ "ତାମିଲନାଡୁ"ରେ ପ୍ରଚଳିତ ସାମାଜିକ ଚଳଣି ଧର୍ମ ଏବଂ ସଂସ୍କୃତିଗତ ବ୍ୟବସ୍ଥା ଏହି ରଚନାରେ ବର୍ଣ୍ଣିତ ।

ସେଦିନ କାଭେରୀପୁମାପତିନାମ ନଗରୀ ଇନ୍ଦ୍ର ଉତ୍ସବ ଉପଲକ୍ଷେ ମଣିମେକଲୈଙ୍କ ନୃତ୍ୟ ପାଇଁ ଆଗ୍ରହରେ ଅପେକ୍ଷା କରିଥିଲା । କିନ୍ତୁ ମାଧବୀ ଏବଂ ମଣିମେକଲୈ ଉପସ୍ଥିତ ହୋଇ ନଥିଲେ । ସମଗ୍ର ନଗରୀରେ ସତେ ଅବା ନୈରାଶ୍ୟ ଘୋଟିଗଲା ।

ମଣିମେକଲୈ ନିଜର ପିତାଙ୍କ ସମ୍ବନ୍ଧରେ ସମ୍ପୂର୍ଣ୍ଣ ଅଜ୍ଞ ଥିଲା । ମାତା ଏବଂ କନ୍ୟା ଯେତେବେଳେ କୋଭଲନ୍‌ଙ୍କର କରୁଣ ଦୁର୍ଘଟଣା ସମ୍ପର୍କରେ ଅବହିତ ହେଲେ ସେତେବେଳେ ସେମାନେ ସାନ୍ତ୍ୱନାପାଇଁ ବୌଦ୍ଧଧର୍ମର ଆଶ୍ରୟନେଲେ । ଏହା ପରେ ଘଟନା ଚକ୍ରରେ ମଣିମେକଲୈ "ଅପୁଥିରାନ୍" ରାଜ୍ୟକୁ ପ୍ରସ୍ଥାନ କଲେ ଏବଂ ସେଠାରେ ଭିକ୍ଷୁଣୀ ଜୀବନଯାପନ କଲେ ।

ଏହି ଯୁଗରଚନା କେବଳ ସାହିତ୍ୟିକ କୃତି ଭାବରେ ନୁହେଁ ସହସ୍ରାଧିକ ବର୍ଷ ପୂର୍ବେ ତାମିଲନାଡୁର ଅଧିବାସୀଙ୍କର ଚାଲିଚଳଣି ତଥା ସେମାନଙ୍କ ସଂସ୍କୃତିର ଧାରାବାହିକ ଇତିହାସ ରୂପେ ଗୃହୀତ । ଏପରିକି ପ୍ରାଚୀନ କାଳରେ ତାମିଲ ଦେଶରେ

କ ପ୍ରକାର ପୋଷାକପତ୍ର ଏବଂ ବିଭିନ୍ନ ସାମାଜିକ ଉତ୍ସବ ପ୍ରଚଳିତ ଥିଲା ତାହାର ସୂଚନା ଏହି ପୁରାଣଦ୍ୱୟରୁ ମିଳେ । ଉଚ୍ଚକୋଟୀର ସଙ୍ଗୀତ ନୃତ୍ୟାଭିନୟ ସେତେବେଳେ ପ୍ରଚଳିତ ଥିବାର ଜଣାଯାଏ । ସେତେବେଳେ "ୟାଜ୍" ନାମକ (yazh) ଏକ ବାଦ୍ୟ ନୃତ୍ୟଗୀତାଦିରେ ବ୍ୟବହୃତ ହେଉଥିଲା, ଯାହାର କୌଣସି ସନ୍ଧାନ ଏପର୍ଯ୍ୟନ୍ତ ମିଳିନାହିଁ । ସର୍ବୋପରି ଏକ ଉନ୍ନତ ସମୃଦ୍ଧ ସମାଜର ଚିତ୍ର ପୁରାଣଦ୍ୱୟରେ ସ୍ପଷ୍ଟ । ମାନବ ଚରିତ୍ର ଚିତ୍ରଣ ଦୃଷ୍ଟିରେ ଗ୍ରନ୍ଥ ଦୁଇଟିର ମୂଲ୍ୟ ମଧ୍ୟ କମ୍ ନୁହେଁ—ନ୍ୟାୟ, ତୁଙ୍ଗ ସାହସ, ଦକ୍ଷ ନେତୃତ୍ୱ, ରଚନାର ଚରିତ୍ର ଚିତ୍ରଣରେହିଁ ପ୍ରତିଫଳିତ । ସେହି ପ୍ରାଚୀନ କାଳରେ ଶାସନର ମାନଦଣ୍ଡ କପରି ଉଚ୍ଚ ଧରଣର ଥିଲା ତାହାର ଉଦାହରଣ ଏହି କାବ୍ୟ ବର୍ଣ୍ଣନାରୁ ସୁସ୍ପଷ୍ଟ । ଦ୍ରାବିଡ ସଭ୍ୟତାର କେତୋଟି ବିଶିଷ୍ଟ ଲକ୍ଷଣ, ଏହି ଗ୍ରନ୍ଥ ଅଧ୍ୟୟନକଲେ ଜଣାଯାଏ । ପ୍ରାଚୀନ ତାମିଲ ସାହିତ୍ୟରେ ଏହି ଦୁଇଖଣ୍ଡି ସ୍ୱୟଂ ସମ୍ପୂର୍ଣ୍ଣ ଗ୍ରନ୍ଥ । ପ୍ରଥମଟି ତାମିଲର ପ୍ରଥମ ମହାକାବ୍ୟ । 'ଶିଲପ୍ପଥିକାରମ୍' କାବ୍ୟ ତିନିଭାଗରେ ବିଭକ୍ତ, ଯଥା ପୁକାରକାଣ୍ଡମ୍, ମଦୁରାଇକାଣ୍ଡମ୍, ଭଁଚିକାଣ୍ଡମ୍ ।

ପ୍ରାଚୀନ ତାମିଲ ସମାଜର ରୋମାନ୍ଟିକ ଅଭିବ୍ୟକ୍ତି ପର୍ଯ୍ୟାୟରେ ଆଉ କେତେଖଣ୍ଡି କାବ୍ୟ ମଧ୍ୟ ଉଲ୍ଲେଖଯୋଗ୍ୟ :—"ଜୀବକ ଚିନ୍ତାମଣି," କୁଣ୍ଡଲକେଶୀ, ବଲୟାପଦୀ । "ଜୀବକ ଚିନ୍ତାମଣି"ର ପ୍ରଣେତା ହେଉଛନ୍ତି ଜୈନ ମୁନି ତିରୁତକ୍ ତେବର । ପ୍ରେମ ଏବଂ ଯୌବନର ଗାଥାହିଁ ଏହି କାବ୍ୟରେ ଉପଜୀବ୍ୟ । କୁଣ୍ଡଳକେଶୀ ଏବଂ ବଲୟାପଦୀରେ ବୌଦ୍ଧଧର୍ମର ପ୍ରଭାବ ପରିଲକ୍ଷିତ ଏବଂ ଏହା ପ୍ରାଚୀନ ସମାଜର ପ୍ରେମ ବର୍ଣ୍ଣନାଧର୍ମୀ ରଚନା । ଏହା ବ୍ୟତୀତ 'ସଂଘ', କାଳର ବହୁ ମୂଲ୍ୟବାନ ଗ୍ରନ୍ଥ ଲୋପ ପାଇ ଯାଇଥିବାର ଇତିହାସରୁ ସୂଚନା ମିଳେ ।

"ତୋଲ୍କାପିୟମ୍":—ମହର୍ଷି ଅଗସ୍ତିଙ୍କର ଶିଷ୍ୟ "ତୋଲ୍କାପିୟର୍" ଯୋଗ୍ୟ ଗୁରୁଙ୍କର ଯୋଗ୍ୟ ଶିଷ୍ୟ ଭାବରେ ଗୁରୁଙ୍କ ରଚିତ ପ୍ରଥମ ବ୍ୟାକରଣ "ଅଗତ୍ତିୟମ" ଅବଲମ୍ବନରେ "ତୋଲ୍କାପିୟମ୍" ରଚନା କରିଥିଲେ । ସମସାମୟିକ ସମାଜ ତଥା ଚଳଣିର ବର୍ଣ୍ଣନା ଏହାର ଅନ୍ତର୍ଗତ ।

"ତୋଲ୍କାପିୟମ୍" ତିନି ଅଂଶରେ ବିଭକ୍ତ ଯଥା:-ଏଲୁତ୍ତଥିକାରମ୍ (ବର୍ଣ୍ଣବିଚାର), ଶୋଲଧିକାରମ୍ (ଶବ୍ଦବିଚାର), ପୋରୁଲ୍ଲଧିକାରମ୍ (ଅର୍ଥବିଚାର) ଏଥିରେ ସୂତ୍ରାକାରରେ ବ୍ୟାକରଣ ନିୟମ ସମୂହ ପ୍ରଦତ୍ତ । 'ତୋଲ୍କାପିୟମ୍‌ର' ପ୍ରଥମ ଦୁଇଭାଗ ଭାଷାତତ୍ତ୍ୱ ଏବଂ ବ୍ୟାକରଣ ସମ୍ପର୍କୀୟ ଆଲୋଚନାରେ ପୂର୍ଣ୍ଣ ଏବଂ ତୃତୀୟ ଭାଗରେ ତଦାନୀନ୍ତନ ଲୋକମାନଙ୍କର ରାଜନୈତିକ, ସାମାଜିକ ଏବଂ ଧାର୍ମିକ ଜୀବନ ବର୍ଣ୍ଣିତ । ଏହି 'ରଚନା' ସଂମ୍ପର୍କରେ ଉପରେ ବିଶେଷ ଭାବରେ ଇଲମ ପୁରଣର ନାଟିନାର କନିୟାର ଏବଂ ସେନା ବରିୟାର ପ୍ରଭୃତି ଲେଖକ ଆଲୋଚନା କରିଛନ୍ତି ।

ତୃତୀୟ 'ସଂଙ୍ଗମ' କାଳର ପାତିନୋଲ କିଲ୍‌କାନକୁ ଏତୁତେଗବର (ଆଠଗୋଟି ସଙ୍କଳନ), ପତୁପତ୍ତୁ ପ୍ରଭୃତି ହେଉଛି ପ୍ରଧାନ ।

ଏହି ସମସ୍ତ ରଚନାମାନଙ୍କରେ ସମସାମୟିକ ସମାଜର ଚିତ୍ର ଦେଖିବାକୁ ମିଳେ । ଈଶ୍ୱରସ୍ତୁତି, ପ୍ରକୃତି ବନ୍ଦନା ମଧ୍ୟ ଏଥିରେ ସନ୍ନିବେଶିତ । 'ତୋଲ୍କାପିୟମ' ପ୍ରାଚୀନ ତାମିଲ ରାଜ୍ୟ, ତାର ସଂସ୍କୃତି ଏବଂ ବିସ୍ତୃତିର ସାହିତ୍ୟିକ ସାକ୍ଷୀ ସଦୃଶ । ପ୍ରାଚୀନ ତାମିଲ ରାଜ୍ୟ ସେତେବେଳେ ଉତ୍ତରରେ ତିରୁପତିଠାରୁ ଦକ୍ଷିଣରେ କୁମାରୀନଦୀ ପର୍ଯ୍ୟନ୍ତ ବିସ୍ତୃତ ଥିବାର ପ୍ରମାଣ ମିଳେ ।

'ପୋରୁଲ' ପର୍ଯ୍ୟାୟରେ ପ୍ରାଚୀନ ତାମିଲ କାବ୍ୟର ସୂଚନା ପ୍ରେମ ମୂଳକ ଏବଂ ସଂଘର୍ଷ ମୂଳକ ରଚନାମାନଙ୍କର ବିଶଦ ବିବରଣୀ ପ୍ରଦତ୍ତ ।

**ତାମିଲରେ ଶୈବ ସାହିତ୍ୟ:-** ଶିବୋପାସନା ଅତି ପ୍ରାଚୀନ କାଳରୁ ଭାରତବର୍ଷରେ ପ୍ରଚଳିତ । ବୈଦିକ ଯୁଗରେ 'ରୁଦ୍ର' ଏବଂ 'ଶିବ' ଉଭୟେ ଅଭିନ୍ନ ଭାବରେ ପୂଜିତ ହେଉଥିଲେ । ଦକ୍ଷିଣ ଭାରତରେ ପ୍ରାଚୀନ ଯୁଗରୁ ଏହି ଶିବୋପାସନା ବିଶେଷ ଭାବରେ ଲୋକ ସମାଜଦ୍ୱାରା ଗୃହୀତ ହୋଇଥିଲା । ଦକ୍ଷିଣ ଭାରତରୁ ଅନ୍ୟାନ୍ୟ ଅଞ୍ଚଳକୁ ହିଁ ଶୈବ ଧର୍ମ ପ୍ରସାରିତ ହୋଇଥିଲା ବୋଲି ତାମିଲ ପଣ୍ଡିତମାନଙ୍କର ମତ । ଦକ୍ଷିଣ ଭାରତର ବହୁ ସଂଖ୍ୟକ ଶିବମନ୍ଦିର ଏହାର ଏକ ପ୍ରମାଣ ହୋଇପାରେ । କେବଳ ଶିବ ନୁହନ୍ତି, ଶକ୍ତି ପାର୍ବତୀଙ୍କର ଉପାସନା ମଧ୍ୟ ଦକ୍ଷିଣ ଭାରତରେ ପ୍ରଚଳିତ ।

ଚତୁର୍ଥ ଏବଂ ଷଷ୍ଠ ଶତାବ୍ଦୀ ମଧ୍ୟରେ ଏହି ଶିବପୂଜା ଏକ ନିର୍ଦ୍ଦିଷ୍ଟ ଧର୍ମବିଶ୍ୱାସ ରୂପେ ପ୍ରସାରିତ ହୋଇଥିଲା । ଶୈବଧର୍ମାବଲମ୍ବୀ ଯୋଗୀ ତିରୁମୂଲ୍ଲାର ଏହି ଧର୍ମ ମାର୍ଗର ପ୍ରବର୍ତ୍ତକ ଥିଲେ । ତାଙ୍କର ରଚନା 'ତିରୁମନ୍ତ୍ରମ୍' ଶୈବାଗମକୁ କେନ୍ଦ୍ରକରି ଲିଖିତ ଦର୍ଶନ ପ୍ରଖ୍ୟାପକ ଏକ ବୃହତ୍ ଗ୍ରନ୍ଥ ।

ତାମିଲନାଡୁରେ ଖ୍ରୀଷ୍ଟପୂର୍ବ ତୃତୀୟ ଏବଂ ଦ୍ୱିତୀୟ ଶତାବ୍ଦୀରେ ଚନ୍ଦ୍ରଗୁପ୍ତ ମୌର୍ଯ୍ୟ ଏବଂ ଅଶୋକଙ୍କ ଶାସନ କାଳରେ ଜୈନ ଏବଂ ବୌଦ୍ଧଧର୍ମ ବେଶ୍ ପ୍ରସାର ଲାଭ କରିଥିଲା । ଶୈବ ଧର୍ମ ଏବଂ ବୈଷ୍ଣବ ଧର୍ମ ପ୍ରାଚୀନ କାଳରୁ ପରିଜ୍ଞାତ ହେଲେ ହେଁ କେତେକାଳ ପାଇଁ ତାର ଲୋପ ହୋଇଯାଇଥିଲା । କିନ୍ତୁ ଯେତେବେଳେ ଭକ୍ତି ଆନ୍ଦୋଳନ ବୃଦ୍ଧି ଲାଭ କରିଥିଲା, ସେତେବେଳେ ଶୈବଧର୍ମ ଏବଂ ବୈଷ୍ଣବଧର୍ମ ଯଥାକ୍ରମେ ନୟନାର ଏବଂ ଅଲୱାରମାନଙ୍କ ଉଦ୍ୟମରେ ସପ୍ତମ ଶତାବ୍ଦୀଠାରୁ ପୁଣି ପ୍ରସାର ଲାଭ କଲା ।

ସପ୍ତମ ଶତାବ୍ଦୀର ପଲ୍ଲବ ରାଜବଂଶ ବିଶେଷତଃ ମହେନ୍ଦ୍ର ବର୍ମନ (ପ୍ରଥମ) ଏବଂ ନରସିଂହ ବର୍ମନ୍ (ଦ୍ୱିତୀୟ)ଙ୍କ ପୃଷ୍ଠପୋଷକତାରେ ତାମିଲନାଡୁରେ କଳା ସାହିତ୍ୟ ଏବଂ ସଂସ୍କୃତି ପରିପୁଷ୍ଟି ଲାଭ କଲା । ପଲ୍ଲବରାଜବଂଶୀୟ ନରପତିମାନଙ୍କ

ସମୟରେ ହିଁ ଶୈବଧର୍ମାବଲମ୍ବୀ କବି ତିରୁଜ୍ଞାନ ସମ୍ବନ୍ଦର୍ ଏବଂ ତିରୁନାଭୁକାରସର (ଅପ୍ପାର) ଭକ୍ତି ଗୀତଗୁଚ୍ଛ ରଚନା କରିଥିଲେ, ଯାହାକି ସମଗ୍ର ତାମିଲନାଡୁକୁ ଝଙ୍କୃତ କରିଦେଇଥିଲା । ଏହି ଭକ୍ତିଗୀତିକା "ଦେବରାମ୍" ନାମରେ ଅଭିହିତ । ନବମ ଶତାବ୍ଦୀରେ ସୁନ୍ଦର ମୂର୍ତ୍ତିନୟ୍ନର୍ ନାମଧେୟ କବି ଜଣେ ଜୀବିତ ଥିଲେ । ଶୈବ ଧର୍ମର ବ୍ୟାପକ ପ୍ରସାର ଯୋଗୁ ହିଁ ବୌଦ୍ଧଧର୍ମ ଓ ଜୈନଧର୍ମ ପ୍ରସାର ଏକବାରକେ ବ୍ୟାହତ ହୋଇଗଲା ।

"ଦେବରାମ୍" ଶୀର୍ଷକ ଭକ୍ତିଗୀତଗୁଚ୍ଛ 'ଚିଦାମ୍ବରମ୍' ମନ୍ଦିର ଅଭ୍ୟନ୍ତରରେ ବର୍ଷ ବର୍ଷ ଧରି ଜମା ହୋଇପଡ଼ିଥିଲା । ଏକାଦଶ ଶତାବ୍ଦୀରେ ହିଁ ଜନୈକ ଚୋଳ ବଂଶୀୟ ରାଜା ସେ ସବୁ ଜୀର୍ଣ୍ଣ ରଚନା ଉଦ୍ଧାର କରି ଲୋକ ଲୋଚନକୁ ଆଣିଥିଲେ । ଏହି ସବୁ ଗୀତ ସଂଖ୍ୟା ସହସ୍ରାଧିକ । ଆଧୁନିକ କାଳରେ ମଧ୍ୟ ତାମିଲନାଡ଼ୁର ଘରେ ଘରେ ଏବଂ ମନ୍ଦିରମାନଙ୍କରେ ପ୍ରତ୍ୟହ ଏହି ଭକ୍ତିଗୀତ ଗାନ କରା ଯାଇଥାଏ ।

ଶୈବକବି ସୁନ୍ଦର ମୂର୍ତ୍ତିଙ୍କର ସମସାମୟିକ ହେଉଛନ୍ତି ମାଣିକ ଭିଛକକର । 'ତିରୁଭାନ୍‌ଛକମ୍' ନାମରେ ତାଙ୍କ ଭକ୍ତି ଗୀତ ମଧ୍ୟ ଭକ୍ତମାନଙ୍କ ମଧ୍ୟରେ ବିଶେଷ ଆଦୃତ । ଶିବ ପୂଜା ସମ୍ପର୍କୀୟ ତିରୁମନ୍ତ୍ରମ୍, ଦେବରାମ ଏବଂ ତିରୁଭାନ୍‌ଛକମ୍ ପ୍ରଭୃତି ଗୀତ ତାମିଲ ଭାଷାରେ ସମାଦୃତ । ଦ୍ୱାଦଶ ଶତାବ୍ଦୀରେ ଜନୈକ ଚୋଳ ରାଜାଙ୍କର ଚେକାଇର ନାମଧେୟ ମନ୍ତ୍ରୀ "ତିରୁତ୍ତୋନ୍ଦର ପୁରମ୍" ( ଅନ୍ୟନାମ "ପେରିୟା ପୁରାଣମ୍" ) ଶୀର୍ଷକ ବିରାଟ ଗ୍ରନ୍ଥ ଲେଖି ସେଥିରେ ପ୍ରାଚୀନ ଶୈବ କବିମାନଙ୍କ ପରିଚୟ ପ୍ରଦାନ କରିଥିଲେ । କବିମାନଙ୍କ ବିବରଣୀ ବ୍ୟତୀତ ସେହି ଗ୍ରନ୍ଥରେ ପ୍ରାଚୀନ ତାମିଲନାଡୁର ସାଂପ୍ରଦାୟିକ ଭୌଗୋଳିକ ତଥା ସାଂସ୍କୃତିକ ପରିଚୟ ଅନ୍ତର୍ଭୁକ୍ତ ।

"ତିରୁଭକ୍ତାୟିରଡାଲ ପୁର୍ଣ୍ଣମ୍"ରେ ଶିବ ଭକ୍ତମାନଙ୍କର ସାଧନାବସ୍ଥା ବର୍ଣ୍ଣିତ । ସତେ ଯେପରି ସ୍ୱୟଂ ଶିବ ଭକ୍ତମାନଙ୍କୁ ପରୀକ୍ଷାର ସମ୍ମୁଖୀନ କରାଇଥିଲେ । ଉଲ୍ଲାସ (ନାୟକ ଦର୍ଶନରେ ନାୟିକାର ପ୍ରୀତି ଉଦ୍ରେକ ଏବଂ ତାର ବର୍ଣ୍ଣନା), 'ଦୂତୁ'ସ' (ବାର୍ତ୍ତା ଗୀତ) 'ଅନ୍ତତସ' (ପ୍ରତିପଦରଶେଷ ପଦପରବର୍ତ୍ତୀ ପଦର ପ୍ରଥମେ ବ୍ୟବହୃତ ହେବା କ୍ରମ) 'କୋଭସ୍' (ପ୍ରେମସଙ୍ଗୀତ ଅନ୍ଧୁ ପଦାସ (ସ୍ତୁତି, ଦାତାର ପ୍ରଶଂସା ମୂଳକ ଗୀତ) କଲମ୍ବାକମ୍' (ବହୁପଦୀ), 'କୁରମ୍' କୁରାଟୀ (ନାରୀମାନଙ୍କ ଭବିଷ୍ୟତ ଭାଗୀସୂଚକ ଗୀତିକା) 'ପଲ୍ଲୁ' (କ୍ଷେତବାଡ଼ିର ଗୀତିକା) ଏହିପରି ବିଭିନ୍ନ ଗୀତିକା ମାଧ୍ୟମରେ ପ୍ରାଚୀନ ଭକ୍ତ କବିଗଣ ସେମାନଙ୍କର ଅନ୍ତରର ଭକ୍ତି ଉଚ୍ଛ୍ୱାସ ପ୍ରକାଶ କରୁଥିଲେ ।

ପାର୍ବତୀ, ଗଣପତି, ସ୍କନ୍ଦଙ୍କୁ କେନ୍ଦ୍ରକରି ମଧ୍ୟ ବହୁ ଭକ୍ତି ସଙ୍ଗୀତ ରଚିତ ହୋଇଥିଲା । ଅବଶ୍ୟ ଗଣପତି ପୂଜା ପ୍ରଥମେ ତାମିଲନାଡୁରେ ପ୍ରଚଳିତ ନଥିଲା । ଏହା ସପ୍ତମ ଶତାବ୍ଦୀରେ ମହାରାଷ୍ଟ୍ରର ବାତାପିରୁ ତାମିଲନାଡୁକୁ ପ୍ରସାରିତ ହୋଇଥିଲା । ନରସିଂହ ବର୍ମନଙ୍କ (ପ୍ରଥମ) ସାମରିକ ସେନାପତି "ପରନ୍ ଜ୍ୟୋତି" ଏହାର ପ୍ରବର୍ତ୍ତକ । ସ୍କନ୍ଦପୂଜା କିନ୍ତୁ ତାମିଲ ନାଡୁରେ ବିଶେଷ ଲୋକପ୍ରିୟ ହୋଇଥିଲା ।

'ସ୍ଥଳ ପୁରାଣ'ମାନଙ୍କରେ ଶିବମନ୍ଦିରମାନଙ୍କର ବହୁଳବର୍ଣ୍ଣନା ପରିଲକ୍ଷିତ ହୁଏ । ଏହି ସ୍ଥଳପୁରାଣର ସଂଖ୍ୟା ଦୁଇଶତରୁ ଅଧିକ। 'ଶୈବଦର୍ଶନ' ପ୍ରଖ୍ୟାପନ କରି ବହୁ ଗ୍ରନ୍ଥ ଲିଖିତ ହୋଇଥିଲା । ତିରୁମୁଲ୍ଲାର୍‌ଙ୍କ ପରେ ଦ୍ୱାଦଶ ଶତାବ୍ଦୀର 'ଶିବ ଜ୍ଞାନବୋଧମ୍" ହେଉଛି ଏକ ପ୍ରଧାନ ଗ୍ରନ୍ଥ । ଏହାର ପ୍ରଣେତା ଥିଲେ "ମେକାନ୍ଦର" ତାଙ୍କର ଶିଷ୍ୟ ଅରୁଲନନ୍ଦୀ ଶିବଗୃଷାସ୍ୱାର ଶୈବଧର୍ମ ତତ୍ତ୍ୱକୁ ଆହୁରି ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ କରି 'ଶିବଜ୍ଞାନ ସିଦ୍ଧିୟାର' (୧୨୫୩)ଓ ଇରୁପ ଇରୁପାଦୁ (୧୨୫୪) ପୁସ୍ତକ ରଚନା କଲେ । ଚତୁର୍ଦ୍ଦଶ ଶତାବ୍ଦୀରେ ଉମାପତି ଶିବଗ୍ରୁଷାସ୍ୱାରଙ୍କ ରଚନା ଶିବ ପ୍ରକାଶମ୍ ଏବଂ ତିରୁ ଭରୁପାସୂନ" ମଧ୍ୟ ଉଲ୍ଲେଖଯୋଗ୍ୟ କୃତି । ଦାର୍ଶନିକତତ୍ତ୍ୱ ଭାବରେ ଶିବ ଉପାସନା ରହସ୍ୟ "ତିରୁକଲିରୁ ପଦିୟାର" ତିରୁଭନ୍‌ଦିୟାର ପୁସ୍ତକରେ ବର୍ଣ୍ଣିତ ।

ଶିବ ଧର୍ମର ପ୍ରଧାନ ତତ୍ତ୍ୱ ହେଉଛି "ପତି-ପଶୁପାଶ" ପତି ଏବଂ ପଶୁ, ଯଥାକ୍ରମେ ଈଶ୍ୱର-ପାର୍ବତୀ ଚିରନ୍ତନ । ଚିର ଅଜ୍ଞାନତା (ବନ୍ଧନ ଅର୍ଥାତ୍ ପାଶ) ଏହି ଦୁହିଁଙ୍କୁ ବିଚ୍ଛିନ୍ନ କରି ଦେଇଥାଏ । ବନ୍ଧନ ମୁକ୍ତ ହୋଇ ଶିବଙ୍କ ସହିତ ମିଳିତ ହେବା ଜୀବନର ଅଭିଳଷିତ ସ୍ୱପ୍ନ । ଶିବଙ୍କ କୃପା ସାହାଯ୍ୟରେ ପାପ ପରିହାର ଦ୍ୱାରା ଏହି ମିଳନ ସମ୍ଭବ । ଜ୍ଞାନର ଚରମ ପରିଣତି ହେଉଛି "ଶିବଜ୍ଞାନମ୍" ଏବଂ ତତ୍‌ଲବ୍ଧ ଆନନ୍ଦ ହେଉଛି ଶିବାନନ୍ଦମ୍' ଶୈବ ସିଦ୍ଧାନ୍ତର ଏହାହିଁ ହେଉଛି ମୂଳଦର୍ଶନ । ପରବର୍ତ୍ତୀ ଯୁଗରେ ତାମିଲ କବିଗଣ ଏହିଶୈବ ପରମ୍ପରାକୁ ସେମାନଙ୍କ ରଚନାରେ ମଧ୍ୟ ଗ୍ରହଣ କରିଥିଲେ । କୁମାର ଗୁରୁପାର ତୈମନ୍‌ଭର୍, ରାମଲିଙ୍ଗ ସ୍ୱାମୀକାଲ ଯଥାକ୍ରମେ ସପ୍ତଦଶ, ଅଷ୍ଟାଦଶ ଏବଂ ଊନବିଂଶ ଶତାବ୍ଦୀରେ ଶିବତତ୍ତ୍ୱ ପରିପୁଷ୍ଟ ରଚନା ଓ ସୋତ୍ର ଲେଖି ତାମିଲ ସାହିତ୍ୟକୁ ସମୃଦ୍ଧ କରିଥିବାର ଜଣାଯାଏ । ରାମଲିଙ୍ଗଙ୍କ ରଚନା 'ତିରୁଭରୁପ୍ପ' ସଙ୍ଗୀତ ପ୍ରଧାନ ରଚନା, ଏହା ତାମିଲ ସାହିତ୍ୟରେ 'ଶିବତତ୍ତ୍ୱ" ଶୀର୍ଷକ ରଚନା ମଧ୍ୟରେ ଉଲ୍ଲେଖଯୋଗ୍ୟ ସ୍ଥାନ ଅଧିକାର କରିଥିଲା । ଜନ ସମାଜର ଚିନ୍ତା ଏବଂ ଭାବନା ବହୁ ଭାବରେ ତଦ୍ୱାରା ପ୍ରଭାବିତ ହୋଇଥିଲା । ଏଥିରୁ ଜଣାଯାଏ ଯେ ବହୁ ଶତାବ୍ଦୀ ଧରି ଶୈବଧର୍ମ ତାମିଲନାଡୁରେ ଏକ ଅସାଧାରଣ ଅନୁଷ୍ଠାନ ଥିଲା । ତଦ୍ୱାରା ତାମିଲ ସାହିତ୍ୟ ସମୃଦ୍ଧ ହୋଇଥିଲା ।

ତାମିଲ୍ ବୈଷ୍ଣବ ସାହିତ୍ୟ:—ସୁଦୂର ପଞ୍ଚମ ଶତାବ୍ଦୀରୁ ନବମ ଶତାବ୍ଦୀ ପର୍ଯ୍ୟନ୍ତ ତାମିଲ ସାହିତ୍ୟ ଅଜସ୍ର ଭକ୍ତିପ୍ରଣୋଦିତ ରଚନା ଦ୍ୱାରା ସମୃଦ୍ଧ । ସାହିତ୍ୟରେ ଏହି ଧର୍ମ ଆନ୍ଦୋଳନ ଭକ୍ତି ଆନ୍ଦୋଳନ ନାମରେ ଅଭିହିତ, ତାମିଲ ସାହିତ୍ୟରେ ଏହା ଶୈବ ଏବଂ ବୈଷ୍ଣବ ଏପରି ଦୁଇଗୋଟି ଧାରାରେ ପ୍ରଭାବିତ ହୋଇଥିଲା । ଶୈବ ଉପାସନା ଶୀର୍ଷକ ରଚନାରେ ଶୈବ ସନ୍ନ୍ୟାସୀ କବି "ନାୟାନମାର" ଏବଂ ବୈଷ୍ଣବ ପଦାବଳୀ ରଚନା କ୍ଷେତ୍ରରେ ବୈଷ୍ଣବ ସନ୍ନ୍ୟାସୀ କବି ଅଲଓ୍ୱାରମାନେହିଁ ସ୍ମରଣୀୟ । ବୈଷ୍ଣବଧର୍ମାବଲମ୍ବୀମାନଙ୍କୁ ଅଲଓ୍ୱାର୍ କୁହାଯାଉଥିଲା । ସେମାନେ 'ଦିବ୍ୟ-ପ୍ରବାଦମ୍' ପ୍ରଭୃତି ଗୀତିକାବ୍ୟର ପ୍ରଣେତା ଥିଲେ । ଏହି ଦୁଇ କବି ସମ୍ପ୍ରଦାୟଙ୍କ ରଚନା ଦ୍ୱାରା ପ୍ରାଚୀନ ତାମିଲ ସାହିତ୍ୟ ପ୍ଲାବିତ ହୋଇଥିଲା ।

'ଭକ୍ତି' ଆନ୍ଦୋଳନହିଁ ପ୍ରାଚୀନ ତାମିଲ ସାହିତ୍ୟର ଏକ ଉଲ୍ଲେଖଯୋଗ୍ୟ ଧାରା । ଅତି ପ୍ରାଚୀନ କାଳରେ ମନ୍ଦିରମାନଙ୍କରେ ସଂସ୍କୃତ ଭାଷାରେ ଲିଖିତସ୍ତୋତ୍ର ମନ୍ତ୍ରାବଳୀ ପୂଜକ ତଥା ଭକ୍ତମାନେ ବ୍ୟବହାର କରୁଥିଲେ । କିନ୍ତୁ ତାମିଲ ଭାଷାର ଆନ୍ଦୋଳନ ପ୍ରଭାବରେ ଲିଖିତ ଭକ୍ତି ସାହିତ୍ୟର ପ୍ରଚାର ଘଟିଲା । ପ୍ରଥମତଃ ସାଧାରଣ ଲୋକଙ୍କ ଉପଯୋଗୀ, ଭାଷା, ଦ୍ୱିତୀୟତଃ, ସଙ୍ଗୀତ, ବୈଷ୍ଣବ ଏବଂ ଶୈବ ସମ୍ପ୍ରଦାୟ କବିମାନଙ୍କ ରଚନାର ଥିଲା ଦୁଇଟି ଆକର୍ଷଣ । ଦଶମ ଶତାବ୍ଦୀରେ ମଧ୍ୟ ତାମିଲନାଡୁରେ ଶୈବ ଉପାସନା ପ୍ରଚଳିତ ଥିଲା ।

ଚତୁର୍ଦ୍ଦଶ ଶତାବ୍ଦୀରୁ ପଞ୍ଚଦଶ ଶତାବ୍ଦୀ ପର୍ଯ୍ୟନ୍ତ ବୈଷ୍ଣବ ସାହିତ୍ୟ କେବଳ ତାମିଲନାଡୁରେ ନୁହେଁ ଉତ୍ତର ଭାରତରେ ମଧ୍ୟ ବ୍ୟାପକ ପ୍ରସାର ଲାଭ କରିଥିଲା । ରାମାନନ୍ଦ ହିନ୍ଦୀ ଭାଷାଭାଷୀ ଉତ୍ତର ଭାରତରେ ଏହି ଅଲଓ୍ୱାର୍‌ମାନଙ୍କର ବୈଷ୍ଣବ ଭକ୍ତି ଆନ୍ଦୋଳନକୁ ସୁଦୃଢ଼ କରାଇଥିଲେ । ଏହି ଆନ୍ଦୋଳନ ଚତୁର୍ଦ୍ଦଶ ପଞ୍ଚଦଶ ଏବଂ ଷୋଡଶ ଶତାବ୍ଦୀରେ ଉତ୍ତରଭାରତରେ ଏକ ପ୍ରଧାନ ଭୂମିକା ଗ୍ରହଣ କରିଥିଲା । ପଞ୍ଚମ ଶତାବ୍ଦୀରୁ ନବମ ଶତାବ୍ଦୀବ୍ୟାପୀ ଏହି ଭକ୍ତି ଆନ୍ଦୋଳନର କର୍ଣ୍ଣଧାର ଥିଲେ ଅଲଓ୍ୱାର ଗୋଷ୍ଠୀ । ଜଣେ ପଣ୍ଡିତଙ୍କ ମତରେ ସେମାନେ ଥିଲେ ଭକ୍ତି ଆନ୍ଦୋଳନର ପ୍ରଭାତୀ ତାରା । ସେମାନଙ୍କ ସଂଖ୍ୟା ହେଉଛି ବାର । ସେମାନଙ୍କ ସମ୍ମିଳିତ ରଚନା ସଂଖ୍ୟା ଚାରିହଜାର ଏବଂ ତାର ନାମ ହେଉଛି "ନାଲାଇରା ଦିବ୍ୟ ପ୍ରବନ୍ଧମ୍" ଏବଂ ବୈଷ୍ଣବମାନଙ୍କ ପକ୍ଷେ ଏହା ବେଦ ସଦୃଶ ଏବଂ ଦକ୍ଷିଣ ଭାରତରେ ଅତ୍ୟନ୍ତ ପବିତ୍ର ଓ ବୈଷ୍ଣବ ମନ୍ଦିରମାନଙ୍କରେ ଏହା ବୋଲାଯାଏ ।

'ଅଲଓ୍ୱାର' ଜ୍ଞାନ, ପାଣ୍ଡିତ୍ୟ, ନିଷ୍ଠା, ନାମର ଅର୍ଥ ହେଉଛି "ଗଭୀର ଆତ୍ମ ଅବଗାହନଅଭିମୁଖୀ" । ଦ୍ୱାଦଶ ଅଲଓ୍ୱାର୍‌ମାନଙ୍କ ମଧ୍ୟରେ ପୋଦାଇ ଅଲଓ୍ୱାର, ପୁଡାଅଲଓ୍ୱାର, ପେରିୟାଲ ଭାରଙ୍କ ନାମ ପ୍ରଥମେ ଉଲ୍ଲେଖଯୋଗ୍ୟ । ସେମାନେ

ପରସ୍ପର ସମସାମୟିକ ଥିଲେ । "ଆନ୍ତାଦ୍ଧ" ଢଙ୍ଗରେ ଲିଖିତ ସେମାନଙ୍କର ଶତାଧିକ ରଚନା ବିଷ୍ଣୁଙ୍କର ସ୍ତୁତି ଉପରେ ଆଧାରିତ । ସେମାନଙ୍କ ପରେ ତିରୁପନାଲ ଓ୍ୱାଲଙ୍କ ନାମ ଶୁଣାଯାଇଥାଏ । ତାଙ୍କର ଦଶଗୋଟି ପଂକ୍ତିବିଶିଷ୍ଟ ଏକମାତ୍ର ରଚନା, "ଅମଲ ନାଦିପୀରନ୍"ରେ ବିଷ୍ଣୁଙ୍କର ଆପାଦମସ୍ତକ ବର୍ଣ୍ଣନା କରାଯାଇଛି । ସତେ ଅବା କୌଣସି ପ୍ରେମ-ପାଗଳିନୀ ବାଳିକା ତାର ପ୍ରେମିକ ପାଇଁ ବ୍ୟାକୁଳ । ଜନଶ୍ରୁତି ଅଛି ଯେ କବି ନିମ୍ନ ସଂପ୍ରଦାୟର ଲୋକ ହୋଇଥିବାରୁ 'ଶ୍ରୀରଙ୍ଗମ୍' ମନ୍ଦିର ଭିତରକୁ ତାଙ୍କୁ ପ୍ରବେଶ ବାରଣ କରାଯାଇଥିଲା । ମାତ୍ର କବି ମନ୍ଦିର ଭିତରକୁ ପ୍ରବେଶ କରିଥିଲେ ।

ତିରୁ ମାଲିସାଏ ଅଲଓ୍ୱାର ଜଣେ ବଡ଼ ସଂସ୍କୃତ ପଣ୍ଡିତ ଥିଲେ । ସେ ବୌଦ୍ଧ, ଜୈନ ଏବଂ ଶୈବ ଧର୍ମର ତତ୍ତ୍ୱ ଦର୍ଶନ ଅଧ୍ୟୟନ କରି ଶେଷରେ ବୈଷ୍ଣବ ଦର୍ଶନପ୍ରତି ଆକୃଷ୍ଟ ହେଲେ । 'ତିରୁଚ୍ଚନ୍ଦ ଭିରୁଧାମ୍' ଏବଂ 'ନାନମୁକନତିର ଅନ ଦଦି' ହେଉଛି ତାଙ୍କର ଦୁଇଗୋଟି ପ୍ରଧାନ ରଚନା । ଭକ୍ତି ଏବଂ ଦର୍ଶନ ହେଉଛି ଏହି ଗ୍ରଂଥ ଦ୍ୱୟରେ ପ୍ରତିପାଦିତ । "ତିରୁ ମାଲିସାଏ" ଙ୍କର ଆଉ ଏକ ଦୀର୍ଘ ପଦ୍ୟ ହେଉଛି "ତିରୁ ମଲ୍ଲାଇ" (ପବିତ୍ର ପୁଷ୍ପହାର) । ଜନୈକ ତାମିଲ ନରପତି "କୁଳଶେଖର ଅଲଓ୍ୱାର" ଏହି ବୈଷ୍ଣବ ଭକ୍ତି ଆନ୍ଦୋଳନରେ ଓତଃପ୍ରୋତଃ ଭାବରେ ଜଡ଼ିତ ଥିଲେ । କୃଷ୍ଣଙ୍କ ପ୍ରତି ତାଙ୍କର ପ୍ରଗାଢ଼ ଆନୁଗତ୍ୟ, ତଥାପି ସେ ରାମଙ୍କର ଜଣେ ପ୍ରଧାନ ଭକ୍ତ ଥିଲେ । ଏପରିକି ପ୍ରସିଦ୍ଧ 'କମ୍ବନ' ରାମାୟଣ ପୂର୍ବରୁ କୁଳ ଶେଖରଙ୍କ 'ରାମ ସାହିତ୍ୟ' ଖୁବ୍ ଲୋକପ୍ରିୟ ହୋଇ ପାରିଥିଲା । ବାତ୍ସଲ୍ୟ ଏବଂ ଦାସ୍ୟ ହିଁ ତାଙ୍କର ପ୍ରତିପାଦିତ ଭକ୍ତିତତ୍ତ୍ୱ କେନ୍ଦ୍ର । ତାଙ୍କ ରଚନାରେ କୃଷ୍ଣଙ୍କର 'ଶୈଶବ' ବର୍ଣ୍ଣନା ଅତି କମନୀୟ ଏବଂ ପ୍ରାଞ୍ଜଳ ଏବଂ ଜନନୀ ଦେବକୀ ଚରିତ୍ର ବେଶ୍ ପରିସ୍ଫୁଟ । ସେହିପରି ରାମଚନ୍ଦ୍ରଙ୍କ ବନବାସଜନିତ ଦଶରଥଙ୍କର ଦୁଃଖ ରଚନା "ଦଶରଥନ୍ ଫୁଲମ୍ପାଇରେ" ମର୍ମସ୍ପର୍ଶୀ ଭାଷାରେ ଅଭିବ୍ୟକ୍ତ ।

ଅଲଓ୍ୱାରମାନଙ୍କ ମଧ୍ୟରେ ଫେର ଅଲଓ୍ୱାର ମଧ୍ୟ ଅନ୍ୟତମ ଏବଂ ସେ 'ବିଷ୍ଣୁଚିତ୍ତ' ନାମରେ ପରିଚିତ । ତାଙ୍କର କୃତି 'ପଲ୍ଲାଣ୍ଡୁ' ବିଷ୍ଣୁଙ୍କ ସମ୍ପର୍କରେ ଲିଖିତ । କିନ୍ତୁ ଶିଶୁ ପ୍ରାଣର ଲୀଳାସୁଲଭ ସୌନ୍ଦର୍ଯ୍ୟ ତଥା ମାଧୁର୍ଯ୍ୟ ତାଙ୍କ କଳ୍ପନାରେ ଯେତେ ସୁନ୍ଦର ଭାବେ ଉଦ୍ଭାସିତ ହୋଇଛି, ତାହା ଅତୁଳନୀୟ । କବି ନିଜକୁ ଯଶୋଦାରୂପରେ ଚନ୍ଦ୍ରକୁ ସମ୍ବୋଧନ କରି ଯେଉଁ ପଦ୍ୟ ଲେଖିଛନ୍ତି ତାହା ମଧ୍ୟ ବିଶେଷ ଆଦୃତ । କୃଷ୍ଣଙ୍କ ମନର ବିଳାସ ଲାଳିତ୍ୟପୂର୍ଣ୍ଣ ଭାଷାରେ ଯେପରି ବର୍ଣ୍ଣିତ ତାହା ଗ୍ରାମ୍ୟ ବାଳକର ବଂଶୀରେ ପ୍ରତିଧ୍ୱନିତ ହୋଇ ଉଠିଲେ ଶ୍ରୋତା ମୁଗ୍ଧ ହୋଇଯାଏ । 'ଫେର ଅଲଓ୍ୱାର'ଙ୍କୁ ହିନ୍ଦି କବି 'ସୁରଦାସ'ଙ୍କ ସହିତ ତୁଳନା କରାଯାଇଥାଏ । ଫେର ଅଲଓ୍ୱାରଙ୍କ କନ୍ୟା ଅଲନ୍ଦ ଅଲଓ୍ୱାରମାନଙ୍କ ମଧ୍ୟରେ

ଜଣେ ଅଗ୍ରଗଣ୍ୟା କବି । ତାଙ୍କର କଳ୍ପନା ଶକ୍ତି ଏବଂ କବିତ୍ୱ ଅତି ଉଚ୍ଚ ଧରଣର ତିରୁପ୍‌ପାଭାଇ ଏବଂ ନଚିଉର ତିରୁମଝି ତାଙ୍କର ଦୁଇଟି ବିଶିଷ୍ଟ ରଚନା । ତିରୁ ପ୍‌ପାଭାଇରେ କବି ନିଜକୁ ଗୋପୀରୂପେ ଆତ୍ମପ୍ରକାଶ କରିଛନ୍ତି । କବି ମଧୁର ଭକ୍ତିର ଉପାସିକା । ସତେ ଯେପରି ପ୍ରେମିକା ପ୍ରେମିକଙ୍କ ମିଳନ ପାଇଁ ବ୍ୟାକୁଳ ଚିତ୍ତରେ ବିନିଦ୍ର ରଜନୀରେ ଅପେକ୍ଷା କରୁଛନ୍ତି ଏବଂ ତାଙ୍କର ବ୍ୟଥାବିଧୁର ପଦ୍ୟ-ମାନଙ୍କରେ ଯୂଥିକା ଏବଂ ପ୍ରାବୃଟ ପ୍ରେମପ୍ରତୀକରୂପେ ବର୍ଣ୍ଣିତ । କବିଙ୍କର ଦ୍ୱିତୀୟ ରଚନାରେ ବିରହବିଧୁରା ପ୍ରେମିକାର ବାଞ୍ଛିତ ପ୍ରେମିକ ସହ ବିବାହ ବର୍ଣ୍ଣନା କରାଯାଇଛି । ପ୍ରେମାନୁଚ୍ଛ୍ୱାସ ଆବେଗ ଦୃଷ୍ଟିରୁ ମୀରାବାଈଙ୍କ ପଦ୍ୟାବଳୀର ରଚନା ସହିତ ତାଙ୍କ ରଚନାର ସାମ୍ୟ ପରିଲକ୍ଷିତ ।

ଅଲ୍‌ଓ୍ୱାର ଗୋଷ୍ଠୀର କବିମାନଙ୍କ ମଧ୍ୟରେ ସର୍ବାପେକ୍ଷା ଶକ୍ତିଶାଳୀ ଏବଂ ଶ୍ରେଷ୍ଠ କବି ହେଉଛନ୍ତି "ନାମ୍ମଲ୍‌ଓ୍ୱାର" ବୈଷ୍ଣବ ଧର୍ମର ଦର୍ଶନ ଏବଂ ଭକ୍ତି ତାଙ୍କର ବହୁ ପଠିତ ରଚନାର ପ୍ରଧାନ ଆକର୍ଷଣ । ସେ ଯେପରି ଜଣେ ଆଜନ୍ମରହସ୍ୟବାଦୀ କବି । ଭଗବତ୍‌-ଆତ୍ମୋପଲବ୍‌ଧି ତାଙ୍କ ରଚନାର ନିବିଡ଼ ସତ୍ତା । ଭଗବତ-ସତ୍ତାରେ ସେ ନିଜକୁ ବିଲୀନ କରି ଦେଇ ଯେପରି ମୁକ୍ତ କଣ୍ଠରେ ଗାନ କରୁଥିଲେ—

"ମୁଁ ପୃଥିବୀ, ମୁଁ ସମୁଦ୍ର, ମୁଁ ଜ୍ୱଳନ୍ତ ଅଗ୍ନି, ମୁଁ ଅନ୍ତରୀକ୍ଷ ଏବଂ ମୁଁ ଗତିଶୀଳ ବାୟୁ; ହେ ସ୍ରଷ୍ଟା, ତୁମେ ମୋର ହୃଦୟ ଲୁଣ୍ଠନ କରି ନେଇଛ, ପ୍ରତିଦାନରେ ମୁଁ ତୁମକୁ କ'ଣ ଦେଇ ପାରିବି ? ମୁଁ ତୁମ ଉଦ୍ଦେଶ୍ୟରେ ଆତ୍ମସମର୍ପଣ କରୁଛି ।"

ତାଙ୍କର ସଂଖ୍ୟାଧିକ ରଚନାର ଏକ ବିଶିଷ୍ଟ ଅଭିବ୍ୟକ୍ତି ହେଉଛି ପ୍ରେମ । ପ୍ରେମପାଗଳିନୀ ନାରୀର ବିଭିନ୍ନ ଅବସ୍ଥା ବର୍ଣ୍ଣନା ତାଙ୍କ ରଚନାବଳୀର କୃତିତ୍ୱ । ସେ ବିଭିନ୍ନ ବେଦର ତତ୍ତ୍ୱ ମଧ୍ୟ ଆଲୋଚନା କରିଥିଲେ । ସେ ଜଣେ ଅସାଧାରଣ ଶକ୍ତିଶାଳୀ ବୈଷ୍ଣବ କବି । ମଧୁର କବି ଅଲ୍‌ଓ୍ୱାର ତାଙ୍କର ବିଶ୍ୱସ୍ତ ଶିଷ୍ୟ ଥିଲେ । ତିରୁମଙ୍ଗାଇ ଅଲ୍‌ଓ୍ୱାର ଏହି ପର୍ଯ୍ୟାୟରେ ଶେଷ ବୈଷ୍ଣବ କବି ଥିଲେ ।

ଆଧୁନିକ ଯୁଗର ଆବିର୍ଭାବ (୧୮୫୦-୧୯୫୦) : ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧ ଏବଂ ବିଂଶ ଶତାବ୍ଦୀର ପ୍ରଥମ ପାଦରେ ତାମିଲ୍ ସାହିତ୍ୟରେ ନବଯୁଗର ସୂତ୍ରପାତ ହେଲା ।

ଗଦ୍ୟ, ପଦ୍ୟ, ନାଟକ, ଗଳ୍ପ ଉପନ୍ୟାସ ସାହିତ୍ୟର ପ୍ରତ୍ୟେକ ଆଙ୍ଗିକର ଅପୂର୍ବ ପରିବର୍ତ୍ତନ ସାଧିତ ହୋଇଥିଲା । ସ୍ୱାମୀନାଥ ଆୟାର୍ ବହୁ ପୁରାତନ ତାମିଲ ପୋଥି ସଂପାଦନା କରିଥିଲେ । ବହୁ ଖ୍ରିଷ୍ଟିୟାନ୍ ପାଦ୍ରୀ ତାମିଲ ଭାଷାରେ ବ୍ୟାକରଣ ଅଭିଧାନ ପ୍ରଭୃତି ପ୍ରଣୟନ କରିଥିଲେ । ଡକ୍‌ଟର କାଲ୍‌ଡ଼ୱେଲଙ୍କ ନାମ

ଏହି ପ୍ରସଙ୍ଗରେ ସ୍ମରଣୀୟ । ସେ ଦ୍ରାବିଡ଼ ଭାଷା ସମୂହର ତୁଳନାତ୍ମକ ଅଧ୍ୟୟନ କରିଥିଲେ ।

**ଶୁବ୍ରମଣ୍ୟ ଭାରତୀ (୧୮୮୨—୧୯୪୭)** : ଆଧୁନିକ ତାମିଲ ସାହିତ୍ୟରେ ସର୍ବସ୍ୱୀକୃତ ପ୍ରତିଭାଶାଳୀ କ୍ରାନ୍ତିକାରୀ ସ୍ରଷ୍ଟା ଭାବରେ ଶୁବ୍ରମଣ୍ୟ ଭାରତୀଙ୍କ ନାମ ହିଁ ସର୍ବାଗ୍ରେ ଉଲ୍ଲେଖଯୋଗ୍ୟ । କବି ସ୍ୱଦେଶବତ୍ସଳ ଏବଂ ଦାର୍ଶନିକ ଭାବେ ତାଙ୍କର ଉଜ୍ଜ୍ୱଳ କୃତିସମୂହ ତାମିଲନାଦକୁ ଅପୂର୍ବ ପ୍ରେରଣାରେ ଝଙ୍କୃତ କରିଅଛି । ତାଙ୍କର ଜାତୀୟ ଉଦ୍‌ବୋଧନ ଧର୍ମୀ ଗୀତି କବିତା-ଗୁଚ୍ଛ ତାମିଲ କାବ୍ୟ କବିତା ରାଜ୍ୟରେ ଅସାଧାରଣ ପ୍ରଭାବ ସୃଷ୍ଟି କରିଥିଲା । ତାଙ୍କର ବାଲ୍ୟ ଜୀବନ ଉତ୍ତର ଭାରତରେ ଅତିବାହିତ ହୋଇଥିଲା । ବିଂଶ ଶତାବ୍ଦୀର ପ୍ରଥମ ଦଶବର୍ଷର ଯେଉଁ ବିରାଟ ଜାତୀୟତାବାଦୀ ଆନ୍ଦୋଳନ ସମଗ୍ର ଭାରତ ବର୍ଷରେ ନୂତନ ସ୍ପନ୍ଦନ ଖେଳାଇଦେଇଥିଲା ତାହାର କାବ୍ୟିକ ମୂର୍ଚ୍ଛନା ହିଁ ଭାରତୀଙ୍କର ଗୀତିଗୁଚ୍ଛ ।

ଆଧୁନିକ ତାମିଲ ଗଦ୍ୟର ମଧ୍ୟ ସେ ଜଣେ ପ୍ରତିଭାଶାଳୀ ସ୍ରଷ୍ଟା ଏବଂ ପ୍ରସିଦ୍ଧ "ସ୍ୱଦେଶ ମିତ୍ରମ୍" ତାମିଲ ପତ୍ରିକା ସହିତ ସେ ଘନିଷ୍ଠ ଭାବରେ ସଂପୃକ୍ତ ଥିଲେ । ସମାଲୋଚନାତ୍ମକ ଐତିହାସିକ ଏବଂ ରାଜନୈତିକ ପ୍ରବନ୍ଧ ଲେଖିବାରେ ସେ ମଧ୍ୟ ସିଦ୍ଧି ହାସଲ କରିଥିଲେ । 'ଗୀତା'ର ତାମିଲ ଅନୁବାଦ ତାଙ୍କର ଆଉ ଏକ ଶ୍ରେଷ୍ଠ ରଚନା । ପ୍ରାଚୀନ ବେଦ, ଉପନିଷଦ, ଭାରତୀୟ ଜାତୀୟ ଆନ୍ଦୋଳନ, "ବନ୍ଦେମାତରମ୍"ର ଐତିହାସିକ ପ୍ରେରଣାର ପ୍ରତିମୂର୍ତ୍ତି ହେଉଛି ଭାରତୀଙ୍କ ସାହିତ୍ୟିକ କୃତି । ଆଧୁନିକ ଭାରତର ସାଂସ୍କୃତିକ ତଥା ରାଜନୈତିକ ଐକ୍ୟ ଏବଂ ମୌଳିକ ପରମ୍ପରା ତାଙ୍କ ରଚନାସମୂହର ମୂଳ ପ୍ରେରଣା । ତାଙ୍କର କାବ୍ୟିକ ସାଧନା ପରମ୍ପରା ଏବଂ ଆଧୁନିକତାର ମିଳନରେ ସେତୁବନ୍ଧସ୍ୱରୂପ । ନିଗୁଣାତ୍ମିକା ଶକ୍ତିରେ 'ତାଙ୍କର କବିତାବଳୀ ସୌନ୍ଦର୍ଯ୍ୟମଣ୍ଡିତ । ଭାରତବର୍ଷ ତାଙ୍କର ରଚନାବଳୀରେ ଏକ ମହାଯଶସ୍ୱୀ ଶକ୍ତିରୂପେ ପ୍ରତିଭାତ । ସ୍ୱାଧୀନତାର ପରମ ଉପାସକ ଭାରତୀ ଏକ ନୂତନ ସମାଜର ସ୍ୱପ୍ନରେ ବିଭୋର ଥିଲେ । ଦାରିଦ୍ର୍ୟ ବିରୋଧରେ ବରାବର ଲେଖନୀ ସଂଗ୍ରାମ ଚଳାଇଥିଲେ । ତାଙ୍କର 'କାଳୀ', 'କୃଷ୍ଣ' ଏବଂ ଭାରତୀୟ "ନାଇଟିଙ୍ଗଲ୍" ଶୀର୍ଷକ କବିତାବଳୀ ଉଚ୍ଚ ଦାର୍ଶନିକତାର ପ୍ରତୀକ । ମୁକ୍ତି, ପ୍ରେମ ତଥା ମାନବିକତା ହିଁ ତାଙ୍କ କବିତାବଳୀରେ ପ୍ରଧାନ ଉପଜୀବ୍ୟ । ତାଙ୍କ ବିଚାରରେ 'ପ୍ରେମ'ର ଚୂଡ଼ାନ୍ତ ପରାକାଷ୍ଠା ହେଉଛି ଦେବତ୍ୱ । ପ୍ରାକୃତିକ ସୌନ୍ଦର୍ଯ୍ୟ-ପିପାସୁ ଭାରତୀ ବାସ୍ତବ ସଂଘର୍ଷର ସମ୍ମୁଖୀନ ହୋଇ ବିଦ୍ରୋହ ଆଡ଼କୁ ଗତି କରିଛନ୍ତି ।

ଭାରତୀଙ୍କ ପ୍ରକାଶିତ ରଚନାବଳୀ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ :

(୧) ଜାତୀୟ ଉଦ୍ଦୀପନାମୂଳକ ଓ ଭକ୍ତିମୂଳକ ଗୀତି କବିତା;

(୨) ଦୀର୍ଘ କାବ୍ୟଧର୍ମୀ ରଚନାବଳୀ ଯଥା :—

(କ) କାନନ ପାଟ୍ଟୁ

(ଖ) ପାଞ୍ଚାଳୀ ଶପଥମ୍

(ଗ) କୁଇଲ ପାଟ୍ଟୁ ।

ପ୍ରଥମ ଶ୍ରେଣୀ ରଚନାର ସଂଖ୍ୟା ବିଂଶତାଧିକ । "କାନନ୍ ପାଟ୍ଟୁ" 'କୃଷ୍ଣ'ଙ୍କୁ କେନ୍ଦ୍ର କରି ଲିଖିତ ୨୩ ଗୋଟି କବିତାର ସମାହାର । ଭକ୍ତିମୂଳକ ହେଲେହେଁ ଏହା ଗତାନୁଗତିକ ଶୈଳୀରୁ ପୃଥକ୍ ।

"ପାଞ୍ଚାଳୀ ଶପଥମ୍" ବ୍ୟାସ ଦେବଙ୍କ ମହାଭାରତର ବୀର ରମଣୀ ଦ୍ରୌପଦୀଙ୍କର ପ୍ରତିଜ୍ଞାକୁ କେନ୍ଦ୍ର କରି ଲିଖିତ । ଏହା ୧୯୧୨ ମସିହାର ରଚନା । ଏହା ତାମିଲନାଦର ଅଗଣିତ ଅନାଗତ କବି ଏବଂ ପଣ୍ଡିତମାନଙ୍କ ଉଦ୍ଦେଶ୍ୟରେ ଉତ୍ସୃଷ୍ଟ । ଏହା ଦୁଇ ଭାଗରେ ବିଭକ୍ତ ଏବଂ ସମୁଦାୟ ୨୦୦୦ ପଂକ୍ତିବିଶିଷ୍ଟ । ଏକ ପ୍ରାଚୀନ ପୌରାଣିକ ଚରିତ୍ର ଅବଲମ୍ବନରେ ଏପରି କାବ୍ୟ ରଚନା କରିବାରେ ମୌଳିକତା କେଉଁଠି ବୋଲି କେହି କେହି ସନ୍ଦେହ କରି ପାରନ୍ତି । ମାତ୍ର ତାମିଲ ଭାଷାରେ ନୂତନ ଆଭିମୁଖ୍ୟ ସୃଷ୍ଟି କରିବା ହେଉଛି ଏହାର ଉଦ୍ଦେଶ୍ୟ । ପ୍ରାଚୀନ ବାଲ୍ମୀକୀ ରାମାୟଣରୁ ଗୃହୀତ ହେଲେ ହେଁ ତାମିଲ କମ୍ବନ୍ ରାମାୟଣ ଯେପରି ଏକ ଅପୂର୍ବ ମୌଳିକ ସୃଷ୍ଟିରୂପେ ପରିଗଣିତ ସେହିପରି ପ୍ରାଚୀନ କଥାବସ୍ତୁ ସତ୍ତ୍ୱେ ସୃଷ୍ଟିଶିଳ୍ପର ମୌଳିକତାରେ "ପାଞ୍ଚାଳୀ ଶପଥମ୍" ଉଜ୍ଜ୍ୱଳ । କାବ୍ୟରେ ବର୍ଣ୍ଣିତ ଦୁଃଖଦୁର୍ଦ୍ଦିନରେ ଆତୁରା ଅପମାନିତା ଦ୍ରୌପଦୀଙ୍କର ଯଥାର୍ଥ ପ୍ରତିମୂର୍ତ୍ତି ହେଉଛନ୍ତି ବିଦେଶୀ ଶାସନାଧୀନା ବନ୍ଦିନୀ ଭାରତମାତା । ଅନ୍ୟ ପଟରେ ଦୁର୍ଯ୍ୟୋଧନ, ଶକୁନି, ଦୁଃଶାସନ ଯଥାର୍ଥରେ ଦୁଷ୍ଟ ଶକ୍ତି । ଦ୍ରୌପଦୀଙ୍କର ଶପଥ ହେଉଛି ଯଥାର୍ଥରେ ସ୍ୱଦେଶବାସୀ କବିର ଶପଥ । ରାଜନୈତିକ ଦୃଷ୍ଟିକୋଣ ଉଜ୍ଜ୍ୱଳ ଦେଶାତ୍ମବୋଧ ଏବଂ ଗଭୀର ଦର୍ଶନ କାବ୍ୟରେ ପ୍ରତିଫଳିତ । କବିଙ୍କ ଦୃଷ୍ଟିରେ ଦ୍ରୌପଦୀ ଚରିତ୍ର ଯଥାର୍ଥରେ ଭାରତୀୟ ନାରୀଶକ୍ତିର ପ୍ରତୀକ । ଏହା ହେଉଛି ସାହସ, ସୌନ୍ଦର୍ଯ୍ୟ ଏବଂ ତ୍ୟାଗର ଗାଥା । ଭୀମ ଚରିତ୍ର ମଧ୍ୟ ଯଥାର୍ଥରେ ରୌଦ୍ର ରସରେ ପୂର୍ଣ୍ଣ ।

ଏହି କାବ୍ୟରେ ପ୍ରକୃତିବର୍ଣ୍ଣନା ଅତି ରସୋତ୍ତୀର୍ଣ୍ଣ ଭାଷାରେ ସୁବିନ୍ୟସ୍ତ କରାଯାଇଛି । ଅର୍ଜୁନଙ୍କ ମୁଖରେ ଅସ୍ତଗାମୀ ସୂର୍ଯ୍ୟଙ୍କର ଯେଉଁ ବର୍ଣ୍ଣନା ଦିଆଯାଇଛି, ସମଗ୍ର ତାମିଲ ଭାଷାରେ ପ୍ରକୃତିସୌନ୍ଦର୍ଯ୍ୟ ବର୍ଣ୍ଣନା ମଧ୍ୟରେ ତାହା ଅନନ୍ୟତମ । ଏହାର

ଆଙ୍ଗିକ କାବ୍ୟମୁଖୀ, ଶୈଳୀ ନାଟକଧର୍ମୀ ଏବଂ ଆତ୍ମିକ-ମୂର୍ଚ୍ଛନା ଗୀତଧର୍ମୀ, ସଂକ୍ଷେପରେ କହିବାକୁ ଗଲେ "ପାଞ୍ଚାଳୀ ଶପଥମ୍" ତାମିଲ ଭାଷାରେ ନିପ୍ରସ୍ତ-ବିଶିଷ୍ଟ ଏକ ମନ୍ଦିର କିମ୍ବା ଏକ ସୌଧ ସଦୃଶ । ସାଧାରଣ ବୋଧଗମ୍ୟ ଭାଷା ହୋଇଥିବାରୁ ଏହାର ଲୋକପ୍ରିୟତା ଅତ୍ୟଧିକ । ତାଙ୍କର ଶ୍ରେଷ୍ଠ କୃତି 'ଜ୍ଞାନ-ରଥମ୍, ଭାରତୀୟ ଦର୍ଶନ ଏବଂ ପରମ୍ପରାକୁ ଭିତ୍ତି କରି ଲିଖିତ । ଶକ୍ତିଶାଳୀ ଗଦ୍ୟ ରଚନା ମଧ୍ୟ ତାଙ୍କର ଆସନକୁ ସୁଦୃଢ଼ କରିଛି । ସରସ ଶିଶୁ-ସାହିତ୍ୟ ଲେଖି ଭାରତୀ ତାମିଲନାଡର ଶିଶୁମାନଙ୍କର ଜାତୀୟ-ଶିକ୍ଷା-ଗୁରୁରୂପେ ପୂଜିତ ।

କବି 'ଶକ୍ତି' ଶୀର୍ଷକ କବିତାରେ ଭାବୋଚ୍ଛ୍ୱାସର ଯେଉଁ ପରିଚୟ ଦେଇଛନ୍ତି ତାହା ଅନୁଧ୍ୟାନଯୋଗ୍ୟ—

ଶକ୍ତି ହେଲା ସମାଗତ
ବୃଦ୍ଧି କରି ପେଟକ ଆନନ୍ଦ
ବାଲକାଟି କାନ୍ଦୁଥିଲା ତାର ପ୍ରିୟ ପାଇଁ
ନିସ୍ତବ୍ଧ ଅରଣ୍ୟ ତଳେ
ଦେଖା ହେଲା ଅଳପ ଆଲୋକ ।
ଭୂତ ଆଉ ଅବତାର
ନା-ନା-ଭୂତ ନୁହେଁ, ଖାଲି ଅବତାର
ଆଳସ୍ୟ ହୁଅଇ ଜୀର୍ଣ୍ଣ ଉଦ୍ୟମ ଓ କଷ୍ଟଦ୍ୱାରା
ଅଜ୍ଞତା ବିନାଶ କରେ, ନ ହୁଏ ଯଶ ବିଦ୍ୟାଦ୍ୱାରା
ଭସ୍ମୀଭୂତ ?
ମାଆ ଭୟ ସବୁ ଦୂର କରି
ସାହସୀ କରିଛନ୍ତି ଆମ୍ଭମାନଙ୍କୁ
ଦୁଃଖ ବେଦନା,
ସେ ଦେଇଛନ୍ତି ଆନନ୍ଦ,
ମଥା କରେ ଉତ୍ତୋଳନ
ଚକ୍ଷୁକୁ କରେ ଉଜ୍ଜ୍ୱଳ
ସନ୍ତାପିତ ହୃଦୟକୁ ଶାନ୍ତ କରେ
ଅନ୍ଧାରିତ ମନକୁ ଆଲୋକିତ କରେ ।

ଜଣେ କବି, ଦାର୍ଶନିକ ଏବଂ ସ୍ୱଦେଶପ୍ରେମୀର ଏହା ହିଁ ସଂକ୍ଷିପ୍ତ ପରିଚୟ ।

କବିମଣି—ଦେଶୀ କବି ନାୟକମ୍ ପିଲାଇ—୧୮୭୬ ମସିହାରେ କନ୍ୟା-କୁମାରୀ ଜିଲାର ଏକ କ୍ଷୁଦ୍ର ପଲ୍ଲୀରେ କବିମଣି ଦେଶୀ ନାୟକମ୍ ପିଲାଇଙ୍କର ଜନ୍ମ ଏବଂ ସୁବ୍ରମଣ୍ୟ ଭାରତୀଙ୍କ ପରବର୍ତ୍ତୀ କବି, ସାହିତ୍ୟିକମାନଙ୍କ ମଧ୍ୟରେ

ସେ ହେଉଛନ୍ତି ସର୍ବପ୍ରଧାନ । କନ୍ୟା କୁମାରୀ ଅଞ୍ଚଳର ଛାୟାସ୍ନିଗ୍ଧ ଶ୍ୟାମଳ ପରିବେଶ ତାଙ୍କ କବିତାରେ ମନୋଜ୍ଞରୂପ ଗ୍ରହଣ କରିଥିଲା । ଉଭୟ ପ୍ରାକୃତିକ ସୌନ୍ଦର୍ଯ୍ୟ ବର୍ଣ୍ଣନା ଏବଂ ଭକ୍ତି ବର୍ଣ୍ଣନାରେ ତାଙ୍କର କବିତାସମୂହ ରସୋତ୍ତୀର୍ଣ୍ଣ । ଅର୍ଥାଭାବ ଯୋଗୁଁ ସେ ଇଣ୍ଟରମିଡ଼ିଏଟ ପରେ ଆଉ ଅଧିକ ପଢ଼ିପାରି ନ ଥିଲେ । ପ୍ରଥମେ ବିଦ୍ୟାଳୟର ଶିକ୍ଷକ, ପରେ ମହିଳା କଲେଜର ଅଧ୍ୟାପକ ଭାବେ ସେ କାର୍ଯ୍ୟ କରିଥିଲେ ।

ପ୍ରାଚୀନ ତାମିଲ କାବ୍ୟକବିତା ପ୍ରତି ସେ ଛାତ୍ରାବସ୍ଥାରୁ ଆକୃଷ୍ଟ ହୋଇଥିଲେ । କେତେକ ପ୍ରାଚୀନ ଶିଳାଲେଖାର ସେ ପାଠୋଦ୍ଧାର କରିଥିଲେ । ପୁଣି ଆଧୁନିକ ବସ୍ତୁବାଦ ତାଙ୍କର କବିତାରେ ନିଖୁଣରୂପ ପ୍ରାପ୍ତ ହୋଇଥିଲା । ସାଇକଲ ଏବଂ ଘଣ୍ଟା ମଧ୍ୟ ତାଙ୍କ କବିତାରୁ ବାଦ ପଡ଼ି ନ ଥିଲା । ଏହିସବୁ କବିତାରେ ଶିଶୁ ପ୍ରାଣର ଯେଉଁ ନିଷ୍କପଟ ସୌନ୍ଦର୍ଯ୍ୟ ତାହା ବେଶ୍ ପ୍ରତିଫଳିତ । ସମସାମୟିକ କୁସଂସ୍କାରଗ୍ରସ୍ତ ସମାଜ, ଦାରିଦ୍ର୍ୟ, ଶୋଷଣ ଏ ସମସ୍ତ ତାଙ୍କ କବିତାରେ ବିଦ୍ରୋହ ଧ୍ୱନି ତୋଳିଛନ୍ତି । ମିରାବାଇ, ରବୀନ୍ଦ୍ରନାଥ, ଶୁଭ୍ରମଣ୍ୟ ଭାରତୀଙ୍କୁ କେନ୍ଦ୍ରକରି ଲିଖିତ ତାଙ୍କର କେତୋଟି କବିତା ବେଶ୍ ବ୍ୟକ୍ତିତ୍ୱ ଅଧ୍ୟୟନ ଧର୍ମୀ । ସେ Light of Asia ଏବଂ ଓମାରଙ୍କ କବିତା ଅନୁବାଦ କରିଥିଲେ । ଅଜସ୍ର ଭକ୍ତି କବିତା ମଧ୍ୟ ତାଙ୍କ ପ୍ରତିଭାର ବୈଶିଷ୍ଟ୍ୟ । ସେହିସବୁ କବିତା ବିଭିନ୍ନ ଦେବଦେବୀ ଯଥା ଲକ୍ଷ୍ମୀ, ସ୍କନ୍ଦ ସରସ୍ୱତୀଙ୍କୁ କେନ୍ଦ୍ରକରି ଲିଖିତ । ତାମିଲ ସମାଜ ଓ ସଂସ୍କୃତିକୁ ସେ ନୂତନ ଭାବରେ ବିଶ୍ଳେଷଣ କରିଥିଲେ । ଭାରତୀଙ୍କ ପରେ କବିମଣି ହିଁ ତାମିଲ କାବ୍ୟ କବିତାରେ ବିପ୍ଳବ ଆନୟନ କରିଥିଲେ । ରାଜନୀତି ଅପେକ୍ଷା ତାଙ୍କ ସାହିତ୍ୟରେ ମନୁଷ୍ୟ ସମାଜ ହିଁ ଅଧିକ ପ୍ରତିବିମ୍ବିତ । ଏହି ଦୁଇ ଜଣ କବି ତାମିଲ ସାହିତ୍ୟରେ ଅଙ୍କ୍‌ମ କବି ବୋଲି ପରିଗଣିତ ।

ବିପ୍ଳବୀ କବି ଭାରତୀ ଦାଶନ୍ (୧୮୯୧—୧୯୬୪)—ଶୁଭ୍ରମଣ୍ୟ ଭାରତୀଙ୍କ ପରେ ତାମିଲ ସାହିତ୍ୟରେ ଶ୍ରେଷ୍ଠ କବିରୂପେ ଭାରତୀଦାଶନ ହିଁ ପ୍ରତିଷ୍ଠିତ । ଦାର୍ଶନିକ ରୁଷୋଙ୍କ ସଦୃଶ କବି ବଜ୍ରଗମ୍ଭୀର ସ୍ୱରରେ ଘୋଷଣା କରିଥିଲେ "ମଣିଷ ସ୍ୱାଧୀନ ଭାବେ ଜନ୍ମ ଲାଭ କରେ, ମାତ୍ର ସର୍ବତ୍ର ସେ ହୁଏ ଶୃଙ୍ଖଳଗ୍ରସ୍ତ" । ସେ ବ୍ୟକ୍ତିର ସ୍ୱାତନ୍ତ୍ର୍ୟ ଓ ସ୍ୱାଧୀନତାର ହେଉଛନ୍ତି ପରମ ଉପାସକ । ପଣ୍ଡିଚେରୀରେ ତାଙ୍କର ଜନ୍ମ । ଶୁଭ୍ରମଣ୍ୟ ଭାରତୀଙ୍କ ସହିତ ତାଙ୍କର ପଣ୍ଡିଚେରୀଠାରେ ପ୍ରଥମ ସାକ୍ଷାତ ହୋଇଥିଲା । ଭାରତୀ ସେତେବେଳେ ରାଜନୈତିକ ନିର୍ବାସନ ଭୋଗୁଥିଲେ । ଶୁଭ୍ରମଣ୍ୟ ଭାରତୀଙ୍କର ଶିଷ୍ୟରୂପେ ସେ କାବ୍ୟକବିତାରେ ନିଜକୁ ମଜ୍ଜିତ କରିଦେଇଥିଲେ । ସମାଜ ସମ୍ପର୍କରେ କବିଙ୍କ ଅଭିମତ ହେଉଛି ଆଦର୍ଶ ଏବଂ ସମାଜବାଦର ସମନ୍ୱୟ । ୧୯୩୮ରେ ତାଙ୍କର ପ୍ରଥମ କବିତା ସଙ୍କଳନ ପ୍ରକାଶିତ

ହେଲା । ଦୁଇଟି ପ୍ରସିଦ୍ଧ କବିତା ହେଲା "ପୁରଟ୍ଟିଚକବି" (ବିଦ୍ରୋହୀ କବି) ସଂଜୀବ ପର୍ବତତନ୍ ସରଲ" (ସଂଜୀବ ଶୈଳ) । ଦ୍ୱିତୀୟ ଦୀର୍ଘ କବିତାରେ ବୁଦ୍ଧି-ପ୍ରଖର ନାୟିକା କୁଂଜ ପ୍ରଗଲ୍‌ଭ୍ ନାୟକ କୁପ୍‌ପନ୍ ସମ୍ମୁଖରେ ସଂଜୀବ ପର୍ବତ ଶିଖରରେ ଜୀବନର ପ୍ରକୃତ ଦର୍ଶନ ବ୍ୟାଖ୍ୟା କରିଛି । କବିତାଟି ସମସାମୟିକ ସମାଜ ବିରୋଧରେ ତୀକ୍ଷ୍ଣ ବିଦ୍ରୂପ ସଦୃଶ । "ତାମିଲ ଇନମାଇ" (ତାମିଲର ମାଧୁର୍ଯ୍ୟ) ତାଙ୍କର ଏକ ଖଣ୍ଡକବିତା ଯାହାକି ସୌନ୍ଦର୍ଯ୍ୟ ତଥା କବିତ୍ୱ ସୁଲଭ ଆବେଗ ପ୍ରଭାବରେ ରସୋତ୍ତୀର୍ଣ୍ଣ । ଭାରତୀ ଦାଶନ୍‌ଙ୍କ ଅଧିକାଂଶ ଶ୍ରେଷ୍ଠ କବିତା ସାମାଜିକ ଏବଂ ଅର୍ଥନୈତିକ ବୈଷମ୍ୟ ବିରୋଧରେ ତରବାରୀ ଉତ୍ତୋଳନ କରିଥିଲା । ତାଙ୍କର ପରିକଳ୍ପିତ 'ନାରୀ' ବିଦ୍ରୋହୀ ଏବଂ ବିପ୍ଳବସମ୍ଭୂତା ଶୃଙ୍ଖଳମୁକ୍ତା ନାରୀ । 'ସମଧର୍ମ' ର ସନ୍ଧାନ ତାଙ୍କ କବିତାର ଗୁପ୍ତତଥ୍ୟ । ଆମେରିକାର କବି ହୁଇଟ୍‌ମ୍ୟାନ୍‌ଙ୍କ ସଦୃଶ ଆତ୍ମିକ ଗଣତନ୍ତ୍ର ଭାରତୀ ଦାଶନ୍‌ଙ୍କୁ ପ୍ରଭାବିତ କରିଥିଲା । ତାଙ୍କର ପୁସ୍ତକ ଏତିରପାରାତାମୁତ୍ତମ୍ (ଅପ୍ରତ୍ୟାଶିତ ଚୁମ୍ବନ) ଏକ ଯଥାର୍ଥ ପ୍ରେମପ୍ରଧାନ କାହାଣୀ । ପଲୁମୁଦ୍ଦ ଏବଂ ପଙ୍କୋଡ଼ାଇ ଯଥାକ୍ରମେ କାହାଣୀର ନାୟକ ଓ ନାୟିକା । ଯୌବନର ଆହ୍ୱାନରେ ସେମାନଙ୍କର ଯାତ୍ରାପଥ ପୁଷ୍ପିତ ହୋଇପାରିଛି । ପଲୁମୁଦ୍ଦ ସମ୍ପ୍ରଦାୟ ସାଧାରଣତଃ ମୁକ୍ତା ବ୍ୟବସାୟ କରନ୍ତି । ସେମାନେ ତାମିଲ ସାହିତ୍ୟରେ ରେମିଓ ଜୁଲିଏଟ ନାମରେ ପରିଚିତ । ପାରିବାରିକ ଘୃଣାବିଦ୍ୱେଷ ମଧ୍ୟରେ ନାୟକନାୟିକାଙ୍କର ପ୍ରେମାନୁରାଗ ବିରହ ଓ ମିଳନ ଏହା ହିଁ ଗଳ୍ପର ଉପଜୀବ୍ୟ । "କୁଡ଼ୁମ୍ବା ଭିଲକ୍କୁ" ଅର୍ଥାତ୍ ଆଲୋକ ଗୃହ, ଇରୁଣ୍ଡା ଭିଡ୍‌ଡୁ ଅର୍ଥାତ୍ ଅନ୍ଧକାର ଗୃହ ଯଥାକ୍ରମେ ଗୋଟିଏ ସୁଖୀ ଏବଂ ଦୁଃଖୀ ପରିବାରର ଶୈଳ୍ପିକ ଚିତ୍ର: ପ୍ରଥମ ପରିବାର ଆଦର୍ଶଦ୍ୱାରା ଅନୁପ୍ରାଣିତ, ଦ୍ୱିତୀୟ ପରିବାର ପଥଭ୍ରଷ୍ଟ । ସେହିପରି "କୋତ୍ତ୍‌ଲ କୋଡ଼େଇ ମାୟୁ" (ସୌନ୍ଦର୍ଯ୍ୟ କମ୍ବା କର୍ତ୍ତବ୍ୟ) ଏକ ନାଟକୀୟ ଅଭିବ୍ୟକ୍ତି ପ୍ରଧାନ ପ୍ରେମକବିତା । ଗୃଷ୍ଟୀପୁଅ ମହିନ୍ଦାନ, ରାଜକୁମାରୀ କଲ୍ଲାଇ ବହୁ ଦୁଃଖସଂଘର୍ଷର ସମ୍ମୁଖୀନ ହୋଇ ଶେଷରେ ପ୍ରେମର ଅଲଙ୍ଘ୍ୟ ନିୟମରେ ମିଳିତ ହୋଇଥିଲେ । ଏକ ଦିଗରେ ପ୍ରେମ, ଅନ୍ୟ ଦିଗରେ ଦେଶାତ୍ମବୋଧ ଏହି କୃତିର ନିଦର୍ଶନ । କୋନରାଇ ରାଜ୍ୟର ସ୍ୱାଧୀନତା ରକ୍ଷାପାଇଁ ପ୍ରେମିକପ୍ରେମିକାଙ୍କର ଯେଉଁ ସଂକଳ୍ପ ତାହା ହିଁ ଏହି ରଚନାରେ ପ୍ରଧାନ ଆକର୍ଷଣ ।

"କୁରଂଜ ଟିଠୁ" (୧୯୫୯) ପବିତ୍ର ତାମିଲ ସଂସ୍କୃତିକୁ କେନ୍ଦ୍ରକରି ଲିଖିତ ଏକ ଦୀର୍ଘ ବର୍ଣ୍ଣନାତ୍ମକ କୃତି । ମୂଳ ତାମିଲ କୁରଂଜ ଟିଠୁ ଦ୍ୱୀପରେ ଯେପରି ସଂରକ୍ଷିତ ହୋଇଥିଲା ତାହା ହିଁ କବିତାର ବିଷୟବସ୍ତୁ । କବିତାରେ ବର୍ଣ୍ଣିତ ଚିନ୍ତାଧାରା ଆଧୁନିକ ତାମିଲ ସାହିତ୍ୟରେ ସମ୍ଭବତଃ ସର୍ବାଧିକ ସମୃଦ୍ଧ ନାରୀ ଚରିତ୍ର । ମୌଳିକ ସୃଷ୍ଟି ବ୍ୟତୀତ ଭାରତୀ ଦାଶନ୍ ପ୍ରାଚୀନ ତାମିଲ କାବ୍ୟ

ଅବଲମ୍ବନରେ କେତେକ ପୁସ୍ତକ ଲେଖିଥିଲେ । 'କୁଇଲ' ନାମକ କବିତା ପତ୍ରିକାର ସେ ସଂପାଦକ ଥିଲେ । ଆଧୁନିକ ତାମିଲ କାବ୍ୟକବିତାରେ ଭାରତୀ ଦାଶନ୍‌ଙ୍କର ସ୍ୱାକ୍ଷର ସୁସ୍ପଷ୍ଟ । ତାଙ୍କର ପୁରଙ୍ଗିଚ କବି ପାଣ୍ଡିୟାନ ପାରସୁ କବିତାରେ ପ୍ରେମ ଓ ସୌନ୍ଦର୍ଯ୍ୟର ପ୍ରଭାବ ସ୍ପଷ୍ଟ । ଭାରତୀଙ୍କ କାବ୍ୟକବିତାଠାରୁ ଭାରତୀ ଦାଶନ୍‌ଙ୍କ କାବ୍ୟ କବିତା ସ୍ୱତନ୍ତ୍ର । ତାମିଲ ସଂସ୍କୃତିର ମୁକ୍ତ ବେଷ୍ଟନୀରେ ତାହା ଯେପରି ପଲ୍ଲବିତ ହୋଇଥିଲା ।

ଯୋଗୀ ଶୁଦ୍ଧାନନ୍ଦ ଭାରତୀ ଏବଂ ପୋରିଆ ସ୍ୱାମୀ ଥୁରନ ପ୍ରାଚୀନ ରୀତିରେ କାବ୍ୟରଚନାକୁ ପସନ୍ଦ କରିଥାନ୍ତି । ଯୋଗୀ ଶୁଦ୍ଧାନନ୍ଦଙ୍କର 'ଭାରତଶକ୍ତି' ନାମକ କାବ୍ୟ ଗ୍ରନ୍ଥ ବିଶେଷ ଆଦୃତ । ଏହା ପାଶ୍ଚାତ୍ୟ ସାହିତ୍ୟିକ ଦାନ୍ତେ ଆଉ ହୋମରଙ୍କ କଳ୍ପନାରେ ପରିପୁଷ୍ଟ । କୋଥମଙ୍ଗଲମ୍ ଗ୍ରାମର ଗରିବ କୃଷକଙ୍କର ଜୀବନନିର୍ବାହ, ଗ୍ରାମ୍ୟଚଳନ, ସାଧାରଣ ଜୀବନଧାରା ତାଙ୍କ କବିତାରେ ପରିସ୍ଫୁଟ । ଏହାଙ୍କର ମହାତ୍ମା ଗାନ୍ଧିଙ୍କ କଥା, ଭାରତୀ ଜୀବନୀ ଆଦି ରଚନା ପ୍ରଶଂସନୀୟ ।

ବାଣୀ ଦାଶନ୍ (୧୯୧୫)—ଆଧୁନିକ ତାମିଲ କବିତାର ଲକ୍ଷଣ ହେଲା ନବୀନ ବାସ୍ତବବାଦ ଏବଂ ଜୀବନର ନୂତନ ମୂଲ୍ୟବୋଧ; ଏବଂ ଏହାକୁ କାବ୍ୟ କବିତାରେ ଦେଶୀ କବି ନାମ୍ୟକମ୍ ପିଲ୍ଲାଇ, ରାମଲିଙ୍ଗ ପିଲ୍ଲାଇ, ଭାରତୀ ଦାଶନ୍ ପ୍ରଭୃତି ପ୍ରବର୍ତ୍ତନ କରିଥିଲେ । ବାଣୀ ଦାଶନ୍‌ଙ୍କ କବିତାରେ ଏହି ନୂତନ ମୂଲ୍ୟବୋଧ ହିଁ ପ୍ରତିଫଳିତ । ୧୯୧୫ ଜୁଲାଇ ୨୨ ତାରିଖରେ କବିଙ୍କର ଜନ୍ମ । ତାଙ୍କର 'ତାଉ ଭନମ'' (ଚକ୍ରବାଲ) ଏବଂ "ବାଣୀ ଦାଶନ କବିତା ଇକଲ" ପୁସ୍ତକ (୧୯୫୬) ଦ୍ୱୟରେ ଯଥାକ୍ରମେ ପ୍ରାକୃତିକ ସୌନ୍ଦର୍ଯ୍ୟ ଏବଂ ମହାତ୍ମା ଗାନ୍ଧିଙ୍କ ଜୀବନର ତ୍ୟାଗ-ପୂତ ଚିତ୍ର ପ୍ରତିଫଳିତ । କବି ମହାତ୍ମା ଗାନ୍ଧିଙ୍କ ଉଦ୍ଦେଶ୍ୟରେ ଲେଖିଛନ୍ତି "ବିନା-ଗୁଳି, ବିନାତରବାରି ଏବଂ ବିନାରକ୍ତପାତରେ ସେ ଆମ୍ଭମାନଙ୍କ ପାଇଁ ମୁକ୍ତି ହାସଲ କରିଛନ୍ତି ।" ଶ୍ରମିକମାନଙ୍କ ଉଦ୍ଦେଶ୍ୟରେ କବି ବିଦ୍ରୋହପୂର୍ଣ୍ଣ ଭାଷାରେ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିଅଛନ୍ତି । ତାଙ୍କ କବିତାର ମୁଖ୍ୟ ପ୍ରଶ୍ନ ହେଉଛି "ଯାହାର ହାତ ସୁନାର କ୍ଷେତ ଫଳାଏ ସେ କ'ଣ ପେଟପୂରି ଖାଇବାକୁ ପାଏ ?" ଦାରିଦ୍ର୍ୟ ନୈରାଶ୍ୟ ହିଁ କବିଙ୍କୁ ବିଦ୍ରୋହୀ କରିଛି । ନାରୀଚରିତ୍ର ଅଙ୍କନରେ କବି ମଧ୍ୟ ସିଦ୍ଧ-ହସ୍ତ । ଜାୟା ଜନନୀ କନ୍ୟା ଭୂମିକାରେ ନାରୀ ତାଙ୍କ କବିତାରେ ଅପୂର୍ବ ଶ୍ରୀ ଧାରଣ କରିଛି । ଶିଶୁର ମନସ୍ତତ୍ତ୍ୱ ବର୍ଣ୍ଣନାରେ ତାଙ୍କର ଲେଖନୀ ସଫଳତା ହାସଲ କରିଛି । ତାଙ୍କର କବିତା "ଏଙ୍କଲ ଭିଦୁ" ଗ୍ରାମ୍ୟ ଚିତ୍ରର ପ୍ରତୀକ । କବି ଗ୍ରାମ୍ୟ ଜୀବନ ଏବଂ ନଗରଜୀବନର ଯେଉଁ ତୁଳନାତ୍ମକ ଚିତ୍ର ପ୍ରଦାନ କରିଛନ୍ତି ତାହା ବାସ୍ତବିକ ଅନ୍ୟାନ୍ୟ ସାଧାରଣ ଏବଂ ଶିଳ୍ପାଞ୍ଚଳ ସଭ୍ୟତାର ବିରୋଧୀ । କବି ବାଣୀ ଦାଶନ୍‌ଙ୍କୁ ତାମିଲର ରବୀନ୍ଦ୍ରନାଥ ବୋଲି କୁହାଯାଇଥାଏ ।

ନୂତନ କବିତା—ସ୍ୱାଧୀନତା ପରବର୍ତ୍ତୀ ଯୁଗରେ ତାମିଲ କାବ୍ୟ କବିତାରେ ନୂତନ ଆଙ୍ଗିକ ନୂତନ ଭାବଧାରାର ପରୀକ୍ଷାନିରୀକ୍ଷା ଚାଲିଅଛି । କୁ. ପା. ରାଜଗୋପାଲନ୍, ପୁଡ଼ୁ ମାଇପିଠାନ ଓ ଏନ୍. ପିଚ୍ଚମୂର୍ତ୍ତି ମୁକ୍ତଛନ୍ଦର ପ୍ରବର୍ତ୍ତକ । କବିତାରେ କୌଣସି ପ୍ରକାର ଗତାନୁଗତିକତାକୁ ପସନ୍ଦ କରାଯାଉ ନାହିଁ । କମ୍ବଦାସନ୍ ଜଣେ ଶକ୍ତିଶାଳୀ କବି । ତାଙ୍କର କବିତା ପରମ୍ପରାଠାରୁ ସ୍ୱତନ୍ତ୍ର ଏବଂ ସ୍ୱକୀୟତାରେ ପୂର୍ଣ୍ଣ । ପାଶ୍ଚାତ୍ୟ ଭାବଧାରାପ୍ରଭାବିତ କବିମାନଙ୍କ ମଧ୍ୟରେ ଆର. ପି. ଥଙ୍ଗରାଜନ୍, ଥୁରଭନ, ମନ୍ଦହାସନ୍, ସୁରବି ପ୍ରମୁଖଙ୍କ ନାମ ଉଲ୍ଲେଖଯୋଗ୍ୟ । ନିଲେକ ସୀତାରାମ ମଧ୍ୟ ଜଣେ ପରିଚିତ କବି । ସେ ଭାରତୀଙ୍କ କାବ୍ୟାଦର୍ଶଦ୍ୱାରା ପ୍ରଭାବିତ । ତାଙ୍କଦ୍ୱାରା ସଂପାଦିତ ଏକ ତାମିଲ କବିତା ସଙ୍କଳନ ପାଠକମାନଙ୍କର ଦୃଷ୍ଟି ଆକର୍ଷଣ କରିପାରିଛି । ପ୍ରାଚୀନ କାବ୍ୟ ପରମ୍ପରାର ବଂଧନରୁ ଆଧୁନିକ ତରୁଣ କବି ମୁକ୍ତ ରହେଁ । କବିତାର ଛନ୍ଦ, ଭାବ, ଭାଷା ଏବଂ ଆଙ୍ଗିକ ସଂପୂର୍ଣ୍ଣ ପରିବର୍ତ୍ତିତ ହୋଇପାରିଛି । ଅବଶ୍ୟ ଜୀବନ ଓ ପ୍ରକୃତି ସହିତ ଏହି ଯୁବ କବିମାନଙ୍କର କେତେଦୂର ଆନ୍ତରିକତା ଅଛି, ତାହା ବିଚାର୍ଯ୍ୟ । ଶିଳ୍ପ ସଭ୍ୟତାର ପ୍ରଭାବବଶତଃ କବିତାର ଧର୍ମ ଆଜି ସଂପୂର୍ଣ୍ଣ ବଦଳିଯାଇଛି । ଟି. ଏସ୍. ବେନୁ ଗୋପାଲନ୍, ସୁନ୍ଦରରାମସ୍ୱାମୀ, ସି. ମନଙ୍କ କବିତାରେ ପରିବର୍ତ୍ତିତ ମୂଲ୍ୟବୋଧର ସୂଚନା ଦେଖିବାକୁ ମିଳେ । ବେନୁ ଗୋପାଲନ୍ଙ୍କର କବିତା ସଙ୍କଳନ "ଆଙ୍ଗୁଠିର ନଖ" ଏବଂ "ଖୋଲିଦିଅ ଦ୍ୱାର" ଉଭୟ ନୂତନ ରୂପ ଓ ରୀତିର ନିର୍ଦ୍ଦେଶକ । ସଂକ୍ଷେପରେ କହିବାକୁ ଗଲେ ଅତ୍ୟାଧୁନିକ ତାମିଲ କବିତା ସ୍ରଷ୍ଟାର ମାନସିକ ବ୍ୟଥା ଓ ବେଦନାର ପ୍ରତୀକ । "ଏଜୁଥୁ" ପତ୍ରିକା ନୂତନ କବିତାର ସମର୍ଥକ । ପରମ୍ପରାଠାରୁ ବିଚ୍ଛିନ୍ନ ହୋଇ ଯୁବକମାନେ ନୂତନ ନୂତନ ଚେତନା ସୃଷ୍ଟି କରିବାପାଇଁ ଆଗ୍ରହୀ । କା. ନା. ସୁବ୍ରମଣ୍ୟଙ୍କର ଲିଖିତ ଏକ ଅତ୍ୟାଧୁନିକ କବିତାର କିଂଚିତ ଅଂଶ ଏଠାରେ ଉଦ୍ଧାର କରାଗଲା :

ଆରବ, ମଙ୍ଗୋଲ, ତାତାର,
ଜନଗୋଷ୍ଠି ଧାରା
ଏହି ନିଧାରା
ଏବଂ ପ୍ରସ୍ତର
ପ୍ରସ୍ତୁତ କରେ
ଯାହାକ ମାଡ୍ରାସ ଗଳିରେ
ଭ୍ରାମ୍ୟମାଣ ।

(ନିଧାରା)

ତାମିଲ ଉପନ୍ୟାସ—ପ୍ରତ୍ୟେକ ପ୍ରାନ୍ତୀୟ ଭାରତୀୟ ସାହିତ୍ୟ ସଦୃଶ ତାମିଲରେ ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧରେ ହିଁ ଆଧୁନିକ ଢଙ୍ଗରେ ଉପନ୍ୟାସ ରଚନା ଆରମ୍ଭ ହୋଇଥିଲା । ବେଦ ନାୟକମ୍ ପିଲାଇଙ୍କ ଲିଖିତ "ପ୍ରତାପ ମୁଦାଲୟର ସରିଥିରମ" (୧୮୭୬) ଉପନ୍ୟାସ ରଚନାର ପ୍ରଥମ ପଦକ୍ଷେପ । ତାଙ୍କର ଲିଖିତ ସୁଗୁଣସୁନ୍ଦରୀ (୧୮୭୭) ହେଉଛି ଦ୍ୱିତୀୟ ଉପନ୍ୟାସ । ଏହି ଉଭୟ ରଚନାର କଥାବସ୍ତୁ ସାମାଜିକ ଏବଂ ସମସାମୟିକ ପରିସ୍ଥିତିସୂଚକ ଏବଂ ସଂସ୍କାର ସପକ୍ଷରେ ପ୍ରଯୁକ୍ତ । କିନ୍ତୁ ମଧ୍ୟଯୁଗୀୟ ଭାଷା ଏବଂ ଗଠନକଳାଦୃଷ୍ଟିରେ ଏହା ଗଦ୍ୟାତ୍ମକ ଏପିକ୍ ବୋଲି ଜଣାଯାଏ । ଚରିତ୍ର ଗୁଡ଼ିକ ବାସ୍ତବ ଜୀବନ ଅପେକ୍ଷା ପରିକଳ୍ପିତ ସମାଜର ପ୍ରତୀକ । ରାଜାମାୟାରଙ୍କ ଲିଖିତ 'କମଲାମ୍ବଲସରିଥୀ ରମ' (୧୮୯୩) ହେଉଛି ପ୍ରଥମ ଆଧୁନିକ ତାମିଲ ଉପନ୍ୟାସ ଏବଂ ଏଥିରେ ତତ୍କାଳୀନ ମଦୁରାର ସହରର ସାମାଜିକ ଜୀବନ ଅଙ୍କିତ । ଗଠନକଳା ବିଗ୍ରହରେ ଏହା ତାମିଲରେ ପ୍ରଥମ ଉପନ୍ୟାସ । ଏହା 'ବିବେକ ଚନ୍ଦ୍ରାମଣି' ପତ୍ରିକାରେ ଧାରାବାହିକ ଭାବେ ପ୍ରକାଶିତ ହୋଇଥିଲା । "ଈଶ୍ୱର ଯାହା କରନ୍ତି ପ୍ରାଣୀର ମଂଗଳ ସକାଶେ" ଏହାହିଁ ଏହାର ମୁଖ୍ୟ ଭାବ । ମାଥାଭାୟାଙ୍କ ଲିଖିତ "ପଦ୍ମାବତୀ ସାରଥୀରମ' ହେଉଛି ଏହି ସମୟର ଆଉ ଖଣ୍ଡେ ଉପନ୍ୟାସ । ଅରଣୀ କୁପ୍ପୁସ୍ୱାମୀ ଭାଦୁଦୁର ଦୋରାଇସ୍ୱାମୀଙ୍କର ଉପନ୍ୟାସ କେତେଖଣ୍ଡି ଏହି ପ୍ରାଥମିକ ଯୁଗରେ ପ୍ରକାଶିତ ହେଲା ।

ଭାରତରେ ସ୍ୱାଧୀନତା ଆନ୍ଦୋଳନ, ଜାତୀୟ କଂଗ୍ରେସର ଜାଗରଣ ତାମିଲ ଉପନ୍ୟାସ ସାହିତ୍ୟରେ କ୍ରମଶଃ ନବଯୁଗ ଆନୟନ କଲା । ପତ୍ରପତ୍ରିକାର ଆବିର୍ଭାବ ମଧ୍ୟ ନୂତନ ଉପନ୍ୟାସ, ଗଳ୍ପ ସୃଷ୍ଟି ପକ୍ଷରେ ସହାୟକ ହେଲା । ଉପନ୍ୟାସର ନବଯୁଗରେ ପ୍ରସିଦ୍ଧି ଅର୍ଜନ କରିଥିବା ଔପନ୍ୟାସିକମାନଙ୍କ ମଧ୍ୟରେ କୃଷ୍ଣମୂର୍ତ୍ତି ହେଉଛନ୍ତି ଅଗ୍ରଗଣ୍ୟ, କଲ୍କି ନାମରେ ସେ ପରିଚିତ । ସ୍ୱାଧୀନତା ଆନ୍ଦୋଳନକୁ ଭିତ୍ତିକରି ତାଙ୍କର ବହୁ ପଠିତ ଉପନ୍ୟାସ 'ତ୍ୟାଗଭୂମି' ପରିକଳ୍ପିତ । ନବଚେତନା ଏବଂ ନୂତନ ଆଙ୍ଗିକଦ୍ୱାରା ଚିତ୍ରିତ ତାଙ୍କର ଉପନ୍ୟାସ 'କଲା ଭାନକ୍ କଡାଲ୍' (ଦସ୍ୟୁପ୍ରେମିକା) ପରୁମାନ କରଉଡୁ ଏବଂ ପ୍ରାତପଣ କନାଭୁ (ପ୍ରାତପଣ ସ୍ୱପ୍ନ), ପୁନସ୍ଥାନ ସେଲ୍ଭାନ (ପନ୍ନର ପୁଅ), ଶିବ କାମିନ୍ ସୁଂଦମ୍ (ଶିବକାମୀର ଶପଥ) ଯଥାକ୍ରମେ ସାମାଜିକ ଏବଂ ଐତିହାସିକ ଉପନ୍ୟାସ । କଲ୍କିଙ୍କର ଉପନ୍ୟାସ ଅଲାଇଓସାଇ (ଗର୍ଜ୍ଜନଶୀଳ ତେଉ) କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଛି । ଅଭିନବ ଗଠନକଳା ଶୈଳିକ ସୌନ୍ଦର୍ଯ୍ୟ ନବଚେତନା ତାଙ୍କ

ଉପନ୍ୟାସ ଏବଂ ଗଳ୍ପସୃଷ୍ଟିର ପ୍ରଧାନ ଆକର୍ଷଣ । ତାଙ୍କର ପ୍ରତ୍ୟେକ ଉପନ୍ୟାସରେ ସାମାଜିକ ଏବଂ ରାଜନୈତିକ ସମସ୍ୟାର ସମାଧାନ ଦାବୀ କରାଯାଇଛି ।

ଆଉ ଦୁଇଜଣ ତାମିଲ ଔପନ୍ୟାସିକ ନଟେଶ ଶାସ୍ତ୍ରୀ ଓ ମାଧବୟ୍ୟା ଯଥାକ୍ରମେ 'ଜନ୍ଟାବଲ୍ଲଭର' ଓ 'ପଦ୍ମାବତୀ ଚରିତମ୍' ଉପନ୍ୟାସ ରଚନାକରି ଜନପ୍ରିୟ ହୋଇଥିଲେ । ତାମିଲ ଉପନ୍ୟାସ ଆହୁରି ଏକ ଆଙ୍ଗିକ ପରିବର୍ତ୍ତନର ସମ୍ମୁଖୀନ ହେଲା ଏବଂ ଏହାର କର୍ଣ୍ଣଧାର ହେଉଛନ୍ତି ଡକ୍ଟର ଏମ୍. ଭି. ଭାରିଜାନାର । ମୁ ଭା. ନାମରେ ପରିଚିତ ପ୍ରାୟ ୧୫ ଖଣ୍ଡି ଉପନ୍ୟାସର ସେ ହେଉଛନ୍ତି ସ୍ରଷ୍ଟା । ସାମାଜିକ ପ୍ରଗତିବାଦୀ ସଂସ୍କାର ତାଙ୍କର ପ୍ରତ୍ୟେକ ଉପନ୍ୟାସରେ ବିଶେଷ ସ୍ଥାନ ଲାଭକରିଛି । ପ୍ରାଚୀନ ତାମିଲଶାସ୍ତ୍ର "ତିରୁକୁରାଲ" ତାଙ୍କୁ ବହୁଭାବରେ ଉପନ୍ୟାସ ରଚନା ପ୍ରଭାବିତ କରିଛି । ଏଥିର ଦୃଷ୍ଟାନ୍ତ ତାଙ୍କର ଉପନ୍ୟାସ "କାୟ୍ମା ମାଇ" । ତାଙ୍କର ଉପନ୍ୟାସ "ଅକ୍ଲଲ୍ ଭିଲକୁ" କେନ୍ଦ୍ର ସାହିତ୍ୟ ଏକାଡେମୀଦ୍ୱାରା ପୁରସ୍କୃତ ।

'ଅକ୍ଲିଲନ୍' ଆଧୁନିକ ଯୁଗର ଆଉ ଜଣେ ତାମିଲ ଔପନ୍ୟାସିକ । ସେନ୍ଥର୍ଥି ଭେଙ୍କଟ୍ଟାନ ମୈଡନ ହେଉଛି ତାଙ୍କର ଦୁଇଖଣ୍ଡି ଐତିହାସିକ ଉପନ୍ୟାସ । ଏହା ବ୍ୟତୀତ ସେ ପ୍ରାୟ ଦଶଖଣ୍ଡି ସାମାଜିକ ଉପନ୍ୟାସର ସ୍ରଷ୍ଟା । ତାଙ୍କର ଉପନ୍ୟାସ "ଭିଙ୍କଟ୍ଟାନ ମୈଡନ" ମଧ୍ୟ ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ ହୋଇଛି । ଉପନ୍ୟାସ କ୍ଷେତ୍ରରେ କାନ୍ନା ଶୁଭ୍ରମଣ୍ୟଙ୍କର ପ୍ରତିଷ୍ଠା ମଧ୍ୟ ସ୍ୱୀକୃତ । କ୍ଷୁଦ୍ର ଗ୍ରାମ୍ୟ ପରିବେଶ ମଧ୍ୟରେ ତାଙ୍କର ଉପନ୍ୟାସ ବେଶ୍ ରସୋତ୍ତୀର୍ଣ୍ଣ ହୋଇଥାଏ । ଓରୁନାଲ, ପଯ୍ୟୁଥେ, ଶମୀଭନ୍ ହେଉଛି ତାଙ୍କର କେତେଖଣ୍ଡି ଉପନ୍ୟାସ । ସମସାମୟିକ ପାରିବାରିକ ସମସ୍ୟାକୁ କେନ୍ଦ୍ରକରି ଲିଖିତ 'ଲକ୍ଷ୍ମୀ' ଏବଂ କୁମୁଦିନୀଙ୍କର ଉପନ୍ୟାସ ବେଶ ପରିଚିତ । ଲକ୍ଷ୍ମୀଙ୍କର ଉପନ୍ୟାସ ପେନମାଇ କଂଚନଇନ୍ ନାନାଭିରେ ଦୁଇଗୋଟି ସ୍ତ୍ରୀ ବିବାହ କରିଥିବା ସ୍ୱାମୀର କରୁଣଚିତ୍ର ପ୍ରଦତ୍ତ । ବହୁ ଲେଖକଙ୍କର ସାଧନା ଏବଂ ଦାନରେ ଆଧୁନିକ ତାମିଲ ଉପନ୍ୟାସ ବିଭାଗ ସମୃଦ୍ଧ । ସେମାନଙ୍କ ମଧ୍ୟରେ ଅନୁଥାମା, ଏଲାରଭି, ଶଙ୍କର ରାମ, ନରେଶ ଶାସ୍ତ୍ରୀ, ମାୟ୍ୟାଭି ପ୍ରଭୃତି ଉଲ୍ଲେଖଯୋଗ୍ୟ । ସାମାଜିକ, ଐତିହାସିକ, ରାଜନୈତିକ ଏହିପରି ବିଭିନ୍ନ ପର୍ଯ୍ୟାୟରେ ବର୍ତ୍ତମାନ କାଳର ତାମିଲ ଉନପ୍ୟାସ ବିଭକ୍ତ । ଇଂରେଜି ସାହିତ୍ୟକୁ ତାମିଲ ଭାଷାରେ ଅନୁବାଦ କରିବାରେ ଆରୁଣି କୁପ୍ପୁ ସ୍ୱାମୀ ସିଦ୍ଧହସ୍ତ । କୃଷ୍ଣ ସ୍ୱାମୀଙ୍କୁ ଅନୁସରଣକରି ରଙ୍ଗ ରାଜୁ ଓ ଦୁରେ ସ୍ୱାମୀ ଆୟ୍ୟାଙ୍ଗାରଙ୍କର ଯଥାକ୍ରମେ 'ବିଜୟରଙ୍ଗମ୍' ଓ 'ସୋନ୍ଦର କୋକିଲମ୍' ଉଲ୍ଲେଖଯୋଗ୍ୟ ରଚନା । ଶ୍ରୀମତୀ କୋଦାନାୟେକୀ ମନସ୍ତତ୍ତ୍ୱମୂଳକ ଆଉ ପାରିବାରିକ ଉପନ୍ୟାସ ଲେଖି ସୁନାମ

ଅର୍ଜନ କରିଛନ୍ତି । ଏସ୍. ଭେଙ୍କଟରମଣଙ୍କ 'କନ୍ଦନ' ଏସ.ଭି. ଭିଙ୍କର 'ସପଥ ବସନ୍ତମ୍' ଲୋକପ୍ରିୟତା ହାସଲ କରିଥିଲା । ବିଶିଷ୍ଟ ଐତିହାସିକ ଉପନ୍ୟାସ ଲେଖକ ରୂପେ, କଲ୍କି ହିଁ ଅଗ୍ରଗଣ୍ୟ । ଅକ୍‌କିଲନଙ୍କର କେତୋଟି କୃତି ଏହି ପର୍ଯ୍ୟାୟର ଅନ୍ତର୍ଗତ । ଜାଣ୍ଡିଲ୍ୟାନଙ୍କର "ଯବନରାଣୀ", "କାନ ମାଡାମ୍" ଏବଂ ଜେଗାସିର୍ପିୟାନ୍‌ଙ୍କର 'ନାଂଥି ଉମୀନନ୍ ତିରୁସିଖାପାନାମ୍ ପ୍ରଭୃତି ଐତିହାସିକ ଉପନ୍ୟାସ ।

ଭାରତର ବିଭିନ୍ନ ପ୍ରାଦେଶିକ ଭାଷାରୁ ମଧ୍ୟ ଅନେକ ଉପନ୍ୟାସ ତାମିଲରେ ଅନୂଦିତ ହୋଇଅଛି । ଉଭୟ ପରିମାଣ ଏବଂ ଗୁଣାତ୍ମକ ଦୃଷ୍ଟିରେ ତାମିଲ ଉପନ୍ୟାସ ସମୃଦ୍ଧି ଅର୍ଜନ କରିଛି ।

ତାମିଲ୍ କ୍ଷୁଦ୍ର ଗଳ୍ପ—ତାମିଲ କ୍ଷୁଦ୍ର ଗଳ୍ପର ସୃଷ୍ଟି ଗତ ୪୦ ବର୍ଷ ମଧ୍ୟରେ ସମ୍ଭବ ହୋଇଅଛି । ଶ୍ରେଷ୍ଠ ଉପନ୍ୟାସର ସୃଷ୍ଟି ପରେ କ୍ଷୁଦ୍ର ଗଳ୍ପର ସୃଷ୍ଟି ହୋଇଥିଲା ବୋଲି କୁହା ଯାଇ ପାରେ । ବିଂଶ ଶତାବ୍ଦୀର ପ୍ରାରମ୍ଭ ହିଁ ଏହି ଚେତନାର ଦ୍ୟୋତକ । ତାମିଲନାଡୁରେ ପ୍ରାଚୀନ କାଳରେ ଏହାର ପ୍ରଚଳନ ଥିଲା । ପ୍ରାଚୀନତମ ତାମିଲ ବ୍ୟାକରଣରେ ବ୍ୟବହୃତ ଗଦ୍ୟଲେଖାରେ ଏହାର ପ୍ରବୃତ୍ତି ନିହିତ ଥିଲା ବୋଲି ଅନୁମାନ କରାଯାଇଥାଏ । ସଂସ୍କୃତର ପଂଚତନ୍ତ୍ର ହିତୋପଦେଶ ନୀତି ଗଳ୍ପ ଅବଲମ୍ବନରେ ଏବଂ ପ୍ରାଚୀନ ତାମିଲ ସମାଜର ପୃଷ୍ଠଭୂମିରେ କେତେକ କାହାଣୀ ଓ ଗଳ୍ପ ପ୍ରାଚୀନ ଢଙ୍ଗରେ ଲେଖା ଯାଇଥିଲା । ବସ୍ତୁତଃ କହିବାକୁ ଗଲେ ସୁବ୍ରମଣ୍ୟ ଭାରତୀ ହିଁ (୧୮୮୨—୧୯୨୧) ତାମିଲରେ ଆଧୁନିକ କ୍ଷୁଦ୍ର ଗଳ୍ପର ପ୍ରଥମ ସୂଚନା ଦେଇଥିଲେ । ସଂସ୍କୃତର "ପଂଚତନ୍ତ୍ର" ଭଙ୍ଗୀରେ ସେ ତାଙ୍କର "ନବରତ୍ନ" ଗଳ୍ପ ସମୂହ ରଚନା କରିଥିଲେ । ତାଙ୍କର "ଚନ୍ଦାମ୍ବରମ୍" ଗଳ୍ପରୁ ତାଙ୍କର କ୍ଷୁଦ୍ରଗଳ୍ପ ସଂପର୍କୀୟ ସଂଜ୍ଞା ଜଣାଯାଏ । ତାଙ୍କର ଗଳ୍ପମାଳା "ଚନ୍ଦ୍ରମା ଶାସ୍ତ୍ରୀ"ରେ କେରଳର ନାମ୍ବୁଦିରି ବ୍ରାହ୍ମଣମାନଙ୍କର ଆଗ୍ରହବ୍ୟବହାର ଏବଂ ସାମାଜିକ ପ୍ରଥା ବର୍ଣ୍ଣିତ ହୋଇଥିଲା । ତାଙ୍କର "ସ୍ୱର୍ଣ୍ଣକୁମାରୀ" ରଚନାରେ ଏକ ବ୍ରାହ୍ମ ସମାଜର ସଭ୍ୟ ଜନୈକ ବ୍ରାହ୍ମ ସମାଜର ବାଳିକାକୁ ବିବାହ କରିଥିଲା । ତାମିଲ ଭାଷାରେ ନିଃସନ୍ଦିଗ୍ଧ ଆଧୁନିକ କ୍ଷୁଦ୍ର ଗଳ୍ପର ଏହା ହିଁ ପୂର୍ବାବସ୍ଥା ।

ବେଦନାୟକମ୍ ପିଲଇ (୧୮୨୪—୧୮୮୯), ଭି. ଭି. ଏସ୍. ଆୟାର (୧୮୮୧—୧୯୨୫), ମାଗଇ ମାଲଇ ଅତଗଲ ପ୍ରମୁଖ ତାମିଲ ଭାଷାରେ କ୍ଷୁଦ୍ର ଗଳ୍ପ ଲେଖିଥିଲେ । ଅତଗଲ ତାଙ୍କ ଗଳ୍ପରେ ବର୍ଣ୍ଣନାତ୍ମକ ଶୈଳୀ ଅନୁସରଣ କରିଥିଲେ । ଭି. ଭି. ଏସ୍. ଆୟାରଙ୍କର "କୁମ୍ପିକାର କୁଟ୍ଟି, କଡ଼ତାଡି କ୍କାଲ" ପ୍ରାଚୀନଧର୍ମୀ ବର୍ଣ୍ଣନାତ୍ମକ ଲେଖା । ତାଙ୍କର "ମନ୍ଦର ହସ୍ତୀ" ଗଳ୍ପରେ ସମସାମୟିକ ସମାଜର ବ୍ୟଙ୍ଗବିଦ୍ରୂପାତ୍ମକ ଚିତ୍ର ହିଁ ପ୍ରଦର୍ଶିତ ।

"ପୋଖରୀ ଭିତରୁ ଅଶ୍ୱତ୍ଥ ବୃକ୍ଷ" ଶୀର୍ଷକ ଗଳ୍ପରେ ସେ ଯୌତୁକ ପ୍ରଥାର ନିନ୍ଦା କରିଥିଲେ । ପ୍ରକୃତରେ "ମଣିକ୍‌କୋଡି" (ସ୍ୱର୍ଣ୍ଣପତାକା) ପତ୍ରିକା ପ୍ରକାଶନ ହିଁ ଆଧୁନିକ ଗଳ୍ପର ବିକାଶକୁ ତ୍ୱରାନ୍ୱିତ କରିଥିଲା । ଏହି ପତ୍ରିକାର ଯେଉଁ ଲେଖକମାନେ ଗଳ୍ପ ଲେଖୁଥିଲେ ସେମାନେ "ମଣିକ୍‌କୋଡି" ଗୋଷ୍ଠୀ ନାମରେ ପରିଚିତ ହୋଇଥିଲେ । ଗଭୀର ସମାଜବୋଧ ଏହି ପତ୍ରିକାରେ ପ୍ରକାଶିତ ଗଳ୍ପ ସମୂହର ଥିଲା ବୈଶିଷ୍ଟ୍ୟ । ଏହା ବ୍ୟତୀତ ରାଜନୈତିକ ମୁକ୍ତି ଓ ଅଧିକାର ଚେତନା ମଧ୍ୟ ଗଳ୍ପରେ ପ୍ରତିଫଳିତ ହୋଇଥିଲା । ଏହି ଗୋଷ୍ଠୀର ଲେଖକମାନେ ସାଧାରଣ ଜନତାର ଯେପରି ପ୍ରତିନିଧିତ୍ୱ କରିଥିଲେ । ତାମିଲ ଗଳ୍ପରେ ସେମାନେ ନୂତନ ଦିଗନ୍ତ ଉଦ୍‌ଘାଟନ କରିଥିଲେ ।

"କଲ୍‌କି" (ଆର. ରାମକୃଷ୍ଣ ମୂର୍ତ୍ତି) ଆଧୁନିକ ତାମିଲ୍ ଉପନ୍ୟାସ କ୍ଷେତ୍ରରେ ଯେମିତି ପ୍ରତିଷ୍ଠା ଅର୍ଜ୍ଜନ କରିଥିଲେ । କ୍ଷୁଦ୍ର ଗଳ୍ପ ବିଭାଗରେ ମଧ୍ୟ ତାଙ୍କର ଦାନ ସେହିପରି ସ୍ୱୀକୃତ । ଆଧୁନିକ ତାମିଲ, କ୍ଷୁଦ୍ର ଗଳ୍ପର ସେ ଯଥାର୍ଥରେ ଥିଲେ ଉଦ୍ଦୀପକ । ପ୍ରଥମେ "ଆନନ୍ଦ ବିକଟନ", ପରେ "କଲ୍‌କି" ପତ୍ରିକାରେ ତାଙ୍କର ଗଳ୍ପ ପ୍ରକାଶିତ ହୋଇଥିଲା । କଲ୍‌କି ପତ୍ରିକାର ସେ ଥିଲେ ପ୍ରତିଷ୍ଠାତା । ପ୍ରଥମେ ସେ କଂଗ୍ରେସ ଆନ୍ଦୋଳନରେ ଯୋଗଦାନ କରିଥିଲେ । ପରେ ରାଜନୀତିରୁ ଅଲଗା ହୋଇ "ନବଶକ୍ତି" ପତ୍ରିକାର ସହସଂପାଦକ ଭାବେ କାର୍ଯ୍ୟ କରିଥିଲେ । "ଶାରଦେଇନ୍ ତାନ୍ଦରମ୍" (ଶାରଦାର ଗୃହୁଣୀ), ସୋଲଇ ମାଲଇ ଇଲବରସୀ (ବନପର୍ବତର ରାଜକୁମାରୀ) ତାଙ୍କର ମନୋଜ୍ଞ ଗଳ୍ପଗ୍ରନ୍ଥ । ରଚନା ପ୍ରାଚୁର୍ଯ୍ୟ କଥାବସ୍ତୁର ବୈଚିତ୍ର୍ୟ, ଶାଣିତ ବ୍ୟଙ୍ଗବିଦ୍ରୂପ କଲ୍‌କିଙ୍କ କଥାଶିଳ୍ପର ଲକ୍ଷଣ । ୧୯୫୫ରେ କଲ୍‌କିଙ୍କର ମୃତ୍ୟୁ ହେଲା । କେତେକ ତାମିଲ କ୍ଷୁଦ୍ର ଗଳ୍ପରେ କଳାକାର ଓ ଜନ୍ତୁମାନଙ୍କର ଜୀବନ ବିଷୟବସ୍ତୁରୂପେ ଗୃହୀତ । କଲ୍‌କିଙ୍କର କେତେକ ଗଳ୍ପରେ ଲେଖକମାନଙ୍କର କରୁଣଜୀବନ ବର୍ଣ୍ଣିତ ହୋଇଥିଲା । କଲ୍‌କିଙ୍କର ସମସାମୟିକ ଏସ୍. ବୃଦ୍ଧାଚଳମ୍ (ଛଦ୍ମ ନାମ—ପୁଦୁମାଇ ପିଥାନ୍) (୧୯୦୮—୧୯୪୮) ଏବଂ କେ. ପି. ରାଜଗୋପାଳନ୍ ଉଭୟେ ଶକ୍ତିଶାଳୀ ଗଳ୍ପଲେଖକ ଥିଲେ । ନୂତନ ଆଙ୍ଗିକ ଏବଂ ନୂତନ ମୂଲ୍ୟବୋଧ ସେମାନଙ୍କ କ୍ଷୁଦ୍ର ଗଳ୍ପର ଲକ୍ଷଣ । ସମସାମୟିକ ନୈରାଶ୍ୟ-ପୀଡ଼ିତ ସମାଜର ଚିତ୍ର ହିଁ ସେମାନଙ୍କ ଗଳ୍ପରେ ପରିଦୃଷ୍ଟ । ଏମାନଙ୍କ ପ୍ରଭାବରେ ତରୁଣ ଗଳ୍ପ ଲେଖକମାନେ ନୂତନ ଆଙ୍ଗିକ ଓ ଶୈଳୀର ପରୀକ୍ଷା ଚଳାଇଥିଲେ । ପ୍ରାଚୀନ ପରମ୍ପରା ଅପେକ୍ଷା ନୂତନ ଲେଖକମାନେ ନୂତନତାର ପକ୍ଷପାତୀ ଥିଲେ । ଉଭୟ "ମଣିକୋଡ଼ୀ" ଗୋଷ୍ଠୀ ଅନ୍ତର୍ଭୁକ୍ତ ଥିଲେ ।

ପୁଦୁମାଇ ପିଥାନ୍ ଜଣେ ଉଚ୍ଚକୋଟୀର ମୌଳିକ ଗଳ୍ପଲେଖକ । ସେ ବିଶ୍ୱସାହିତ୍ୟରୁ କେତେକ ଶ୍ରେଷ୍ଠ ଗଳ୍ପ ତାମିଲରେ ମଧ୍ୟ ଅନୁବାଦ କରିଥିଲେ । ସେହି

ସଙ୍କଂଳନର ନାମ ହେଉଛି "ଭଲ୍‌ଗରୁ ସିରୁ କଥାଇଗଲ" ଓ "ଦବ୍ୟମ୍‌ କୋଦୁତା ବରମ୍‌"। ତାଙ୍କ ଗଳ୍ପରେ ମୋ ପାସାଁ, କପଲିଙ୍ଗ୍‌, ଟଲଷ୍ଟୟ ଏବଂ ଗର୍କିଙ୍କର ପ୍ରଭାବ ଦେଖାଯାଏ । ତାଙ୍କର ଗଳ୍ପ ସଙ୍କଂଳନ ମଧ୍ୟରେ କଂଚନାଇ, ଅନ୍‌ରୁଇରଭୁ (ସେହି ରାତି), ପୁଜାସ୍ଥାଅଲ (ନୂତନ ଆଲୋକ), ଅଭଲୁମ୍‌ ଅଭଲୁମ୍‌ (ସେ ଓ ସେ ନାରୀ) ଅନ୍ୟତମ । କଂଚନାଇ ଗଳ୍ପରେ ଜନୈକ ଗୃହସ୍ଥର ତାର ଭୃତ୍ୟା ସଂପର୍କରେ ମାନସିକ ଦ୍ୱନ୍ଦ୍ୱ ହିଁ ବର୍ଣ୍ଣିତ । ତାଙ୍କର "ତାନି ଓରୁ ଭାଲୁକ୍‌କୁ" ଗଳ୍ପ ବ୍ୟଙ୍ଗବିଦ୍ରୂପ ପୂର୍ଣ୍ଣ । ନେତାମାନଙ୍କର ଆସ୍ଫାଳନ ସତ୍ତ୍ୱେ ଜଣେ ହରିଜନ ଅନାଥ କପରି ଅନାହାରରେ ମୃତ୍ୟୁ ବରଣ କରିଥିଲା ଏହି ଗଳ୍ପରେ ତାହା ହିଁ ପ୍ରଦର୍ଶିତ । ଏକ ନୂତନ ମୂଲ୍ୟବୋଧ ତଥା ଏକ ନୂତନ ଆଙ୍ଗିକର ସେ ଥିଲେ ଉପାସକ । କେ.ପି. ରାଜଗୋପାଳନ୍‌ଙ୍କ କ୍ଷୁଦ୍ର ଗଳ୍ପରେ ଚରିତ ସମୂହ ବାସ୍ତବଧର୍ମୀ ଏବଂ ବ୍ୟାପକ । କହାତ କ୍ଷୁଦ୍ର କ୍ଷୁଦ୍ର ଘଟଣା, ସାଧାରଣ ଜୀବନର ଚିତ୍ର ତାଙ୍କ କ୍ଷୁଦ୍ର ଗଳ୍ପ ଗୁଡ଼ିକରେ ବର୍ଣ୍ଣିତ । ତାଙ୍କର ଶୈଳୀ ମଧ୍ୟ ଭାବଦ୍ୟୋତକ । ତାଙ୍କର ଭାଷା ଶକ୍ତିଶାଳୀ ଓ ତାତ୍ପର୍ଯ୍ୟପୂର୍ଣ୍ଣ । ତାଙ୍କର ମୌଳିକ କ୍ଷୁଦ୍ର ଗଳ୍ପ ସଙ୍କଳନ ମଧ୍ୟରେ "କନମାଲେ କାଉଲେ, "ପୁନର୍‌ଜନମ୍‌ ଏବଂ "ଜନକା ମୁରମ" ଉଲ୍ଲେଖଯୋଗ୍ୟ । ତାଙ୍କର "ତାମିଲ ମଙ୍ଗାଇ" ଗଳ୍ପଟି ବେଶ୍‌ ଲୋକପ୍ରିୟ ହୋଇଥିଲା । ତାଙ୍କର "ଦ୍ରୋହମ୍‌" ଗଳ୍ପ ଏବଂ କରୁଣାନିଧିଙ୍କର "ଗ୍ୟସ୍ୟାମ ଭେଙ୍କନା" ଗଳ୍ପଦ୍ୱୟରେ ତାଂଜୋର ଯେପରି ନାୟକମାନଙ୍କ ହସ୍ତରୁ ମରହଟ୍ଟାମାନଙ୍କ ହସ୍ତକୁ ଚାଲିଯାଇଥିଲା ସେହି ଐତିହାସିକ ବିବରଣୀ ପ୍ରଦତ୍ତ ।

ଚକ୍ରବର୍ତ୍ତୀ ରାଜଗୋପାଳାଚାରୀଙ୍କ କ୍ଷୁଦ୍ର ଗଳ୍ପ 'କୁନ୍ଦସୁନ୍ଦରୀ'ରେ ଜନୈକ ବେଦାନ୍ତଶାସ୍ତ୍ରୀ (ଅବସରପ୍ରାପ୍ତ ବିଚାରପତି) କପରି ଏକ ତରୁଣୀକୁ ବିବାହ କରି ସୌନ୍ଦର୍ଯ୍ୟଗତ ଦ୍ୱନ୍ଦ୍ୱର ସମ୍ମୁଖୀନ ହୋଇଥିଲେ ତାହାହିଁ ବର୍ଣ୍ଣିତ । ଏତାଦୃଶ ଗଳ୍ପ ମଧ୍ୟରେ ଜୀବଙ୍କର ଲିଖିତ ବେଦାନ୍ତକେଶରୀ, ଏନ୍‌. ଚିଦାମ୍ବରମ୍‌ ଶୁଭ୍ରମଣ୍ୟମଙ୍କର "ଇରଣ୍ଡାଇ ତାମଗ୍ରାଇ" ଉଲ୍ଲେଖଯୋଗ୍ୟ । ବ୍ୟକ୍ତି ଓ ପରିବାର ସ୍ତରରେ କ୍ଷୁଦ୍ରଗଳ୍ପ ଅନେକ ସମସ୍ୟାରେ ଦ୍ୱନ୍ଦ୍ୱ, ସଂଘର୍ଷ ତଥା ଆଦର୍ଶବିରୋଧ ପ୍ରକାଶ କରିଥାଏ । ବେଦାନ୍ତ-କେଶରୀ ଗଳ୍ପରେ ଜଣେ କୈବଲ୍ୟ କପରି ନିଜର ଶିଷ୍ୟର ସ୍ତ୍ରୀକୁ ଆକୃଷ୍ଟ କରିଥିଲେ ତାହାର ସୂଚନା ମିଳେ । ତାଙ୍କର "ପ୍ରତଭାଥି ବସ୍ୟାନ୍‌ କରମ" ଗଳ୍ପରେ ଜଣେ ସମାଜବାଦୀ ନେତା 'ଲଟେରୀ' ଦ୍ୱାରା ଜନସାଧାରଣଙ୍କୁ ପ୍ରତାରିତ କରିଥିବା ବିଷୟ ବର୍ଣ୍ଣିତ । କଲ୍ୟୋଣସ୍ୱାମୀଙ୍କ "ନନ୍ଦ କୁରୁଭି" ଗଳ୍ପରେ ଜୈନିକ କଲେଜ ଶିକ୍ଷିତା ବାଳକାର ପ୍ରବଂଚନା ବର୍ଣ୍ଣିତ । ସେ ଜୀବେ ଦୟା ପ୍ରଚାର କରୁଥିଲେ ମଧ୍ୟ ନିଜେ ହିଂସାଲିପ୍ତା ଥିଲା ।

ର୍ନ୍ ଚଦାମ୍ବର ସୁବ୍ରମଣ୍ୟଙ୍କର "ଏଲୁତାଲା କଟାଇ" (ଏକ ଅଲିଖିତ କାହାଣୀ) କ୍ଷୁଦ୍ରଗଳ୍ପ କଳାର ପ୍ରତିବନ୍ଧକ ସମ୍ପର୍କରେ ସୂଚନା ଦେଇଥିଲେ । ମାନବ ପ୍ରକୃତିର ଆବେଗପୂର୍ଣ୍ଣ ଅଧ୍ୟୟନ କେତେକ ତାମିଲ କ୍ଷୁଦ୍ର ଗଳ୍ପରେ ମଧ୍ୟ ପ୍ରତିଫଳିତ । ଏ. ରାମନାଥନ୍ ଟି. କେ. ଶ୍ରୀନିବାସନ୍ ଓ ଡକ୍ଟର ଶ୍ରୀମତୀ ଚିରପୁର ସୁନ୍ଦରୀଙ୍କର କ୍ଷୁଦ୍ର ଗଳ୍ପ ଏହି ଶ୍ରେଣୀର । ଶେଷୋକ୍ତ ଲେଖିକାଙ୍କର ଗଳ୍ପ "ବସିତୀରି ପେଙ୍ଗଲ" ଓ "ଫାଷ୍ଟକ୍ଲାସ ଟିକେଟ" ଉଲ୍ଲେଖଯୋଗ୍ୟ ।

ଅସ୍ପୃଶ୍ୟତା ନିବାରଣ, ବିଧବା ବିବାହ, ଅସବର୍ଣ୍ଣ ବିବାହ ସଦୃଶ ସାମାଜିକ ସମସ୍ୟା ବହୁ କ୍ଷୁଦ୍ର ଗଳ୍ପରେ ସ୍ଥାନ ପାଇଛି ଯଥା—କଲ୍କିଙ୍କର ଗଳ୍ପ "ବିଷ ମନ୍ତିରମ"ରେ ପୋଷ୍ଟ ଅଫିସରେ ହରିଜନ ଇନ୍ସପେକ୍ଟରର ଉପସ୍ଥିତି ସତ୍ତ୍ୱେ ପୋଷ୍ଟମାଷ୍ଟର ମନ୍ତ୍ରବଳରେ ଜଣେ ରୋଗୀଙ୍କୁ ଭଲ କରି ପାରିଥିଲେ, ଏହି ବିଷୟ ବର୍ଣ୍ଣିତ । ମାନବିକ ଆଭିମୁଖ୍ୟ ମଧ୍ୟ ଆଧୁନିକ କ୍ଷୁଦ୍ରଗଳ୍ପରେ ଯଥା—ପୁଦୁମାଇ ପିଥାନ୍ଙ୍କ "ଇନ୍ନୈକ ବ୍ୟକ୍ତିଙ୍କ ପ୍ରତି", ଗୁରୁସ୍ୱାମୀଙ୍କର 'ଦେଶାନ୍ତରୀ', ଅକିଲ୍ଲନ୍ଙ୍କ 'କର୍ସିଲ ଭିଲକକୁ' (ମନ୍ଦିର ପ୍ରଦୀପ) ରେ ପ୍ରତିଫଳିତ । ଅକିଲ୍ଲନ୍ଙ୍କ ଗଳ୍ପରେ ଗଭୀର ଅନ୍ଧକାର ରାତିରେ ଏକ ନିଃସ୍ୱ ଶିଶୁର ଜନ୍ମ ହିଁ ବର୍ଣ୍ଣିତ । ଯେଉଁ ଦୋକାନଦାର ହଜାର ହଜାର ଟଙ୍କା ବ୍ୟୟରେ ନିଜର କୌଣସି ପାରିବାରିକ ଉତ୍ସବପାଇଁ ବିଦ୍ୟୁତ୍ ଆଲୋକ ଖଞ୍ଜିପାରେ, ସେ ସେହି ନିଃସ୍ୱ ଶିଶୁର ପିତାକୁ ସାମାନ୍ୟ କିରାସିନ ଏକ ବୋତଲ ବିକ୍ରୟ କରି ନଥିଲେ । ଏମ୍. ବରଦାରାଜନ୍ଙ୍କର ଗଳ୍ପ ସଙ୍କଳନ "ବିଦ୍ୟୁତାଲୟ" ଜୀବଙ୍କର ଗଳ୍ପ, ମୁଲ୍ଲାଇ ଏବଂ ମହୁତୁମ୍ଙ୍କର "ଥିରୁ ମାରିୟନ ଥିରପୁ" ଗଳ୍ପ "କଳାପାଇଁ କଳା" ଆଦର୍ଶ ସାବ୍ୟସ୍ତ କରେ । ଅକିଲନ୍ଙ୍କ ଗଳ୍ପ "ପେନ୍ ପାବନ" ଗୋଟିଏ ମଟର ଦୁର୍ଘଟଣାକୁ କେନ୍ଦ୍ର କରି ଲିଖିତ, ମାତ୍ର ତାହାର ବର୍ଣ୍ଣନାକୌଶଳ ଅସାଧାରଣ ।

କ୍ଷୁଦ୍ରଗଳ୍ପ ଯେ ଅନ୍ୟାନ୍ୟ ସାହିତ୍ୟିକ ଆଙ୍ଗିକ ସଦୃଶ ପ୍ରଚାରର ଶକ୍ତିଶାଳୀ ମାଧ୍ୟମ, ଏହାହିଁ କରୁଣାନିଧି ଆନ୍ନାଦୁରାଇ ଏ. ଏସ୍. ପି. ଆୟର, ଯୋଗୀ ଶୁଦ୍ଧାନନ୍ଦ ପ୍ରଭୃତି ଗଳ୍ପକାରଙ୍କ ଲେଖାରେ ପରିଲକ୍ଷିତ ।

୧୯୪୭ ରେ ଆନ୍ନାଦୁରାଇଙ୍କର ପ୍ରକାଶିତ "ଟିରୁ କଥାଇଗଲ" (କ୍ଷୁଦ୍ର ଗଳ୍ପ) ଏକ ସାର୍ଥକ କ୍ଷୁଦ୍ରଗଳ୍ପ ସଙ୍କଳନ । ସେହିପରି ମାୟାବୀଙ୍କର "ଯାଭ ଥିରାଇ" ଏକ ପ୍ରଭାବଶାଳୀ କ୍ଷୁଦ୍ରଗଳ୍ପ । ଦୁଇ ବନ୍ଧୁଙ୍କ ମଧ୍ୟରେ କୋଡ଼ିଏ ବର୍ଷର ବନ୍ଧୁତା କିପରି ଗୋଟାଏ ଗୃହ ସଂପତ୍ତିକୁ କେନ୍ଦ୍ର କରି ବ୍ୟାହତ ହୋଇଥିଲା ତାହାହିଁ ଏହି ଗଳ୍ପର ବିଷୟବସ୍ତୁ ।

ଅକିଲ୍ଲାନ ଜଣେ ସାର୍ଥକ କଥାଶିଳ୍ପୀ । ତାଙ୍କର "ମିନୁଭଦେଲ୍ଲାମ" (ଯାହା ଚକ୍ ଚକ୍ କରେ), ଆନ୍ପେନ୍ (ସ୍ତ୍ରୀ ପୁରୁଷ), "ଶାନ୍ତ" ପ୍ରଭୃତି ଗଳ୍ପ

ସଙ୍କଳନ ପାଠକମାନଙ୍କ ଦ୍ୱାରା ବେଶ୍ ଆଦୃତ । ଭରତନ୍, ସୋମୁ, ସୁଖୀ, ମାୟାଭୀ, ଏଲାର୍ ଭି, ଅରଭି, ଦେବନ୍ ପ୍ରଭୃତି ଲେଖକଙ୍କର ଗଳ୍ପ ପତ୍ରପତ୍ରିକାରେ ପ୍ରକାଶିତ ।

ସାଂପ୍ରତିକ କ୍ଷୁଦ୍ରଗଳ୍ପର ପରିବର୍ତ୍ତିତ ସ୍ୱରୂପ ଟି. ଜାନକୀରମଣ, ଟି. ନା. କୁମାରସ୍ୱାମୀ ଓ ଜୟକାନ୍ତନଙ୍କ ଗଳ୍ପରେ ପରିଦୃଷ୍ଟ ।

ଜାନକୀରମଣ ଏବଂ ଜୟକାନ୍ତଙ୍କ ଶକ୍ତିଶାଳୀ ଲେଖନୀ ଯେ କୌଣସି ଚରିତ୍ର ଓ ପରିସ୍ଥିତି ଅକ୍ଲେଶରେ ବର୍ଣ୍ଣନା କରିପାରେ । ମାର୍ଜ୍ଜିତ ଶୈଳୀ ଏବଂ ଯୁଗୋପଯୋଗୀ ଅଭିବ୍ୟକ୍ତି ସେମାନଙ୍କ ଗଳ୍ପର ବିଶେଷତ୍ୱ । ଜାନକୀରମଣଙ୍କ ଗଳ୍ପ ସିବାପୁରକ୍‌ସା (ନାଲି ଶର୍କରା), କୁଞ୍ଚ ମେଲାମ (ଧୋଣ୍ଡରି ପିଠା), ମଙ୍ଗଲତୁନୀ ( ହଳଦିଆ ଲୁଗା) ଗଭୀର ଆବେଗ ତଥା ଭାବପ୍ରବଣତାପୂର୍ଣ୍ଣ ।

ଟା. ନ୍ନା. ଶୁଭ୍ରମଣ୍ୟ, ରଘୁନାଥନ୍ ଏବଂ ଉଣ୍ଣିକ୍ରିଷ୍ଣନ୍ ପ୍ରଗତିଶୀଳ ଗୋଷ୍ଠୀର ଗଳ୍ପଲେଖକ । ମାତ୍ର ସେମାନଙ୍କ ଦୃଷ୍ଟିରେ ପ୍ରଗତିର ଅର୍ଥ ପରମ୍ପରାର ବିରୋଧ କିମ୍ବା ପାଶ୍ଚାତ୍ୟ ସମାଜବାଦୀ ବାସ୍ତବତାର ନଗ୍ନ ଅନୁକରଣ ନୁହେଁ ।

ଟା. ନ୍ନା. ଶୁଭ୍ରମଣ୍ୟଙ୍କ ଗଳ୍ପ "ପାସି" (କ୍ଷୁଧା), "ଦୈବ ଜନ୍ମମ୍ ଆଦରଙ୍ଗୁ (ରଙ୍ଗମଞ୍ଚ) ତାଙ୍କର ଗଭୀର ଭାବାବେଶ ତଥା ଉଚ୍ଚ ଦାର୍ଶନିକତା ପ୍ରମାଣିତ କରେ । ଏଲ୍. ଏସ୍. ରମାମୃତମ୍ ଓ ଟି. ନା. କୁମାରସ୍ୱାମୀଙ୍କ ଗଳ୍ପଗୁଡ଼ିକ ବ୍ୟର୍ଥପ୍ରଣୟ-ଚିତ୍ରପୂର୍ଣ୍ଣ ।

କ୍ଷୁଦ୍ରଗଳ୍ପ ଲେଖିକା ଭାବରେ ଗୃହଲକ୍ଷ୍ମୀ, କୁମୁଦିନୀ, ସରସ୍ୱତୀ ଅମ୍ମାଲ ଅନୁତ୍ତମା ରାଜାମ କୃଷ୍ଣନ୍ ଏବଂ ଲକ୍ଷ୍ମୀ ତାମିଲ ପାଠକଙ୍କ ନିକଟରେ ସୁପରିଚିତା । ସେମାନଙ୍କ କ୍ଷୁଦ୍ରଗଳ୍ପରେ ନାରୀହୃଦୟର ଅପୂର୍ବ ଭାବୋଚ୍ଛ୍ୱାସ ହିଁ ପ୍ରତିଫଳିତ । ପ୍ରତିଷ୍ଠିତ ପତ୍ରପତ୍ରିକା ଯଥା, "ଆନନ୍ଦବିକଟନ", କଲ୍କି", "କୁମୁଦନ" ଏବଂ "କଲଇ ମଗଲ" ରେ ନିୟମିତରୂପେ କ୍ଷୁଦ୍ରଗଳ୍ପ ପ୍ରକାଶିତ ହେଉଅଛି । ନିକଟରେ ପ୍ରକାଶିତ "ଦୀପମ୍" ପତ୍ରିକା ବହୁ ଗଳ୍ପ ପ୍ରଚୁର କରିପାରୁଛି । ପୌରାଣିକ ଭିତ୍ତିରେ ନୀତିଗର୍ଭକ କ୍ଷୁଦ୍ରଗଳ୍ପ ଲେଖିବାରେ ଚକ୍ରବର୍ତ୍ତୀ ରାଜଗୋପାଲାଚାରୀ ଖ୍ୟାତି ଲାଭ କରିପାରିଛନ୍ତି । ତାଙ୍କର ଏତାଦୃଶ ଗଳ୍ପର ଅନ୍ତରାଳରେ ଗଭୀର ସମାଜବୋଧ ମଧ୍ୟ ବିଦ୍ୟମାନ ।

ତାମିଲ କ୍ଷୁଦ୍ରଗଳ୍ପ ହିନ୍ଦି, ବଙ୍ଗଳା, ମାଲୟାଲମ୍ ଗଳ୍ପସଦୃଶ ଅଗ୍ରଗତି ହାସଲ କରିପାରି ନାହିଁ, କି ଏହା ଅଯଥା ଅନୁକରଣକୁ ପ୍ରଶ୍ରୟ ଦେଇ ନାହିଁ । ତେବେ ସାମାଜିକ ଚେତନା ଓ ଭାବଗତ ସାମଗ୍ରୀ ଦୃଷ୍ଟିରୁ ତାମିଲ କ୍ଷୁଦ୍ରଗଳ୍ପ ଅନ୍ୟ ପ୍ରାନ୍ତର କ୍ଷୁଦ୍ରଗଳ୍ପ ସହିତ ବେଶ୍ ତୁଳନୀୟ । ଏଥିରେ ମନସ୍ତାତ୍ତ୍ୱିକ

ଗମ୍ଭୀରତା ନଥାଇ ପାରେ ମାତ୍ର ତାମିଲନାଡ଼ୁର ଗ୍ରାମ୍ୟ ଜୀବନର ସୌନ୍ଦର୍ଯ୍ୟ ତଥା ବୈଶିଷ୍ଟ୍ୟ ବହନ କରିବାରେ କ୍ଷୁଦ୍ରଗଳ୍ପ ଏକ ଶକ୍ତିଶାଳୀ ମାଧ୍ୟମରୂପେ ଗୃହୀତ । ଗଳ୍ପରେ ନୂତନ ନୂତନ ପରୀକ୍ଷାନିରୀକ୍ଷା ମଧ୍ୟ ବରାବର ଚାଲିଅଛି ।

ନାଟକ —ତାମିଲ ନାଡୁରେ ସଙ୍ଗୀତ ଓ ନାଟକର ଆଦର ତଥା ପ୍ରଚଳନ ତା'ର ସାଂସ୍କୃତିକ ଜୀବନ ସହିତ ନିବିଡ଼ ଭାବରେ ଜଡ଼ିତ । ପ୍ରାଚୀନ କାଳରୁ ତାମିଲ ସମାଜରେ ସଙ୍ଗୀତ ଓ ନାଟକ ପ୍ରଚଳିତ ହୋଇ ଆସିଅଛି । ବିଭିନ୍ନ ଯୁଗରେ ଏହାର ପ୍ରଣାଳୀ ଭିନ୍ନ ହୋଇପାରେ ।

ବିଂଶ ଶତାବ୍ଦୀର ପ୍ରାରମ୍ଭରେ ତାମିଲ ଦେଶରେ ଏହି ନାଟକର ଯେପରି ସ୍ଥିତି ଥିଲା ତାହା ଉଲ୍ଲେଖଯୋଗ୍ୟ । ମୁଖ୍ୟତଃ ଏହି ନାଟକ ପ୍ରଣାଳୀ ତିନି ପ୍ରକାରର ଥିଲା । ପ୍ରଥମତଃ ନନ୍ଦନର ଚରିତ୍ର କୀର୍ତ୍ତିନାଇ ଏବଂ ରାମନାଟକମ୍ ଜାତୀୟ ଗୀତନାଟ୍ୟ—ପ୍ରଥମଟି ଗୋପାଳକୃଷ୍ଣ ଭାରତୀଙ୍କଦ୍ୱାରା ଏବଂ ଦ୍ୱିତୀୟଟି ଅରୁଣାଚଳ କବିଙ୍କ ଦ୍ୱାରା ଲିଖିତ ହୋଇଥିଲା । ଅବଶ୍ୟ ପ୍ରାଚୀନ କାଳରେ ଏହି ଜାତୀୟ ନାଟକ ପ୍ରଚଳିତ ଥିଲା । ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଏହି ନାଟକ ଏକ ନିର୍ଦ୍ଦିଷ୍ଟ ଶ୍ରେଣୀର ବୋଲି ଚହ୍ନିତ ହୋଇଥିଲା ।

ଦ୍ୱିତୀୟଟି ହେଉଛି ନୃତ୍ୟନାଟିକା । ଏହାର ପ୍ରାଚୀନ ରୂପ କୁରଭାଞ୍ଜି, ପାଲୁ ଏବଂ ନନ୍ଦି ନାଟକମ୍‌ରେ ଦେଖିବାକୁ ମିଳେ । ତୃତୀୟତଃ, ଗଣନାଟକ କିମ୍ବା ଗଣଯାତ୍ରା । ଏହି ତିନିଗୋଟି ନାଟକ ମଧ୍ୟରେ ପ୍ରଥମ ଦୁଇଗୋଟିର. ସାହିତ୍ୟିକ ଉତ୍କର୍ଷତା ସ୍ୱୀକାର କରାଯାଏ । ସେଥିରେ ଶିଳ୍ପ ସୃଷ୍ଟିର କମନୀୟତା ପରିଲକ୍ଷିତ ହୁଏ । ପରମ୍ପରାର ମଧ୍ୟ ପ୍ରଭାବ ସେଥିରେ ଦେଖିବାକୁ ମିଳେ । ଗୀତନାଟ୍ୟ କିମ୍ବା ନୃତ୍ୟନାଟିକା ଉଭୟରେ ସଙ୍ଗୀତର ବିଶେଷ ପ୍ରାଧାନ୍ୟ ରହିଥିଲା । ଏହି ଜାତୀୟ ନାଟକମାନଙ୍କର ବିଷୟବସ୍ତୁ ଥିଲା ଧର୍ମଗତ । ଗୀତନାଟ୍ୟରେ ଦୀର୍ଘ ପୌରାଣିକ ଉପାଖ୍ୟାନ ଗଳ୍ପାଂଶରୂପେ ବ୍ୟବହୃତ ହେଉଥିଲା କିନ୍ତୁ ନୃତ୍ୟନାଟିକାରେ ଗଳ୍ପ ପ୍ରତି ସେତେ ଦୃଷ୍ଟି ଦିଆଯାଉ ନଥିଲା । ଯେକୌଣସି ଆଦର୍ଶକୁ କିମ୍ବା ଚରିତ୍ରକୁ କଳାତ୍ମକ ଭାବରେ ଓ ପ୍ରତୀକାତ୍ମକ ଭାବରେ ପ୍ରକାଶ କରିବା ଥିଲା ଲକ୍ଷ୍ୟ । ଏହି ଦ୍ୱିବିଧ ନାଟ୍ୟ ରଚନା ମଧ୍ୟରେ କେତେକ ସାମ୍ୟ ମଧ୍ୟ ଦୃଷ୍ଟିଗୋଚର ହୁଏ । ସେହି ସାମ୍ୟ ହେଉଛି ରଚନା ଶୈଳୀଗତ ସାମ୍ୟ ଓ ଭାଷାଗତ ସାମ୍ୟ ।

ସେହି ଭାଷା ଥିଲା ଜନସାଧାରଣଙ୍କ ଭାଷାର ଅନୁରୂପ । ଏତଦ୍ୱାରା ଏହି ଶ୍ରେଣୀର ନାଟ୍ୟ ରଚନା ଆଧୁନିକ ନାଟକର ବିକାଶପାଇଁ ସାହାଯ୍ୟ କରିଥିଲା । ନୃତ୍ୟନାଟିକା କୁରଭାଞ୍ଜି ଏବଂ ପାଲୁରରେ ସାଧାରଣ ଜନତାର ଚିତ୍ର ଉପସ୍ଥାପିତ

ହୋଇଥିଲା । ପୂର୍ବୋକ୍ତ ନୃତ୍ୟନାଟିକାରେ ପାର୍ବତ୍ୟ ଅଞ୍ଚଳର ଯାଯାବର ଚରିତ୍ର ଏବଂ ପାଲୁ ନୃତ୍ୟନାଟିକାରେ କୃଷୀଙ୍କର ଚରିତ୍ର ବର୍ଣ୍ଣିତ ହୋଇଥିଲା । ଏହି କ୍ରମରେ ନାଟକ ତାହାର ପ୍ରତୀକ ଧର୍ମ ତ୍ୟାଗ କରି ବାସ୍ତବ ଜୀବନର ନିଖୁଣ ଚିତ୍ର କରିଥାଏ । ଏତଦ୍ଦ୍ୱାରା ଆଧୁନିକ ନାଟକର ନୂତନ ଆଙ୍ଗିକ ଓ ଶୈଳୀର ପରିକଳ୍ପନା କରାଯାଇଥିଲା । ଲୋକ ନାଟକର ସାହିତ୍ୟିକ ସ୍ଥିତି ସେତେ ନଥିଲା । ଏଥିରେ ସଙ୍ଗୀତର ବିଶେଷ ପ୍ରଭାବ ପଡ଼ିଥିଲା । ମାତ୍ର ଏହାର ସମସ୍ତ ଅଂଶ ସଙ୍ଗୀତପୂର୍ଣ୍ଣ ନଥିଲା । ପୁନଶ୍ଚ ସଂଳାପରେ ପଦସମ୍ପର୍କୀୟ କେତେକ ବିଶେଷତ୍ୱ ଥିଲା କିନ୍ତୁ ସଂଗୀତ ଥାଉ କିମ୍ବା ନ ଥାଉ ଏପରି ଶବ୍ଦମାନଙ୍କର ସାହିତ୍ୟିକ ବୈଶିଷ୍ଟ୍ୟ ଆଦୌ ନ ଥିଲା । ବରଂ ଚରିତ୍ରମାନେ ନିଜ ଇଚ୍ଛାନୁମାନେ ସଂଳାପ ବ୍ୟବହାର କରୁଥିଲେ । ଯେତେବେଳେ ଲିଖିତ ରଚନା ମିଳୁଥିଲା ସେତେବେଳେ ଅଭିନେତାମାନେ ତାହା ମଧ୍ୟ ସମ୍ପୂର୍ଣ୍ଣ ଅନୁସରଣ କରୁ ନ ଥିଲେ । ଏପରି ଅଭିନୟରେ ଅଭିନେତାମାନେ ଦର୍ଶକମାନଙ୍କର ପ୍ରଶଂସା ଲାଭ କରୁଥିଲେ । ଅନେକ ସମୟରେ ଅଭିନେତାମାନେ କଥୋପକଥନରେ ବିଭ୍ରାଟ କରୁଥିଲେ । ଗ୍ରାମ୍ୟ ଅଭିନୟ ଓ ଗ୍ରାମ୍ୟ ନାଟକମାନଙ୍କ ବିଷୟବସ୍ତୁ ଥିଲା ପୌରାଣିକ କିମ୍ବା ସ୍ଥାନୀୟ ଲୋକସାହିତ୍ୟ । ପରିବେଷଣ ଶୈଳୀ ଖୁବ୍ ସରଳ ଥିଲା । ବିଷୟବସ୍ତୁ ନିର୍ବାଚନରେ ପରମ୍ପରା ପ୍ରତି ଦୃଷ୍ଟି ଦିଆଯାଉଥିଲା । ନାଟକରେ ବର୍ଣ୍ଣିତ ଚରିତ୍ରର ସଂଖ୍ୟା ଓ ପ୍ରକାରଭେଦ ମଧ୍ୟ ସୀମିତ ଥିଲା । ଏପରି ଚରିତ୍ରଗୁଡ଼ିକ ଥିଲେ ରାଜା, ମନ୍ତ୍ରୀ, ରାଜପୁରୋହିତ, କୃଷକ ଓ ଶ୍ରମିକ । ନାଟକରେ ଭାବଗତ କିମ୍ବା ଯୋଜନାଗତ ସଂହତି ନ ଥିଲା । ଭାଷା ମଧ୍ୟ ତଦ୍ରୂପ ଥିଲା । ବିଶେଷତଃ ଅଭିଜାତ ଚରିତ୍ରମାନଙ୍କ ଭାଷା ପାଣ୍ଡିତ୍ୟପୂର୍ଣ୍ଣ ଥିଲା । ନାଟକ ପ୍ରଦର୍ଶନ ସବୁ ସବୁ ପାହାନ୍ତା ହୋଇଯାଉଥିଲା । ଏହି ସମସ୍ତ ବିରକ୍ତିକର ପୃଷ୍ଠଭୂମିରେ କ୍ରମେ ବିଦୂଷକ ଚରିତ୍ରର ଆବିର୍ଭାବ ରଙ୍ଗମଞ୍ଚର ଲୋକପ୍ରିୟତା ବୃଦ୍ଧି କରିଥିଲା । କ୍ରମେ କ୍ରମେ ସଂଳାପର ପରିବର୍ତ୍ତନ ସାଧାରଣ ଚରିତ୍ରର ଆବିର୍ଭାବ । ସାମାଜିକ ସମସ୍ୟାର ଅନୁଶୀଳନ, ବ୍ୟଙ୍ଗବିଦ୍ରୂପ, ତାମିଲ୍ ନାଟକରେ ଦେଖାଦେଇଥିଲା । ସାମୁହିକ ତାମିଲ୍ ନାଟକର ଭବିଷ୍ୟତ ବାସ୍ତବବାଦୀ ଆଭିମୁଖ୍ୟର ଭିତ୍ତି ସ୍ଥାପନ କରିଥିଲା । ତାମିଲ ନାଟକରେ ପ୍ରଗତିଶୀଳ ଆନ୍ଦୋଳନ ବାସ୍ତବତା ଓ ସ୍ୱାଭାବିକତା ସୃଷ୍ଟି କରିଥିଲା । ପଶ୍ଚାତ୍ୟ ସାହିତ୍ୟର ପ୍ରଭାବ ଏହାମୂଳରେ ନିହିତ ଥିଲା । କେତେ ଜଣ ଲେଖକ ଇଂରେଜ ନାଟ୍ୟକାର ସେକ୍ସପିୟରଙ୍କ ଆଦର୍ଶକୁ ଅକ୍ଷରେ ଅକ୍ଷରେ ଗ୍ରହଣ କରିଥିଲେ । ସେମାନଙ୍କର ଏପରି ଅନୁସରଣ ଓ ଅନୁକରଣରେ କୌଣସି ବ୍ୟତିକ୍ରମ ନ ଥିଲା, କିନ୍ତୁ ସେମାନେ ଇତିହାସର ତଥା ଯୁଗର ପ୍ରଭାବ ପ୍ରଥା ଭୁଲି ଯାଇଥିଲେ । ସେକ୍ସପିୟର ତାଙ୍କ ସମୟକୁ ଚାହିଁ ନାଟକ ଲେଖିଥିଲେ । ଏହି ତାମିଲ୍ ଲେଖକମାନେ ବିଷୟବସ୍ତୁ ନିର୍ବାଚନ, ଭାଷାଶୈଳୀପ୍ରୟୋଗ, ଚରିତ୍ରଚୟନ ପ୍ରଭୃତି କାର୍ଯ୍ୟରେ କୌଣସି ଉଲ୍ଲେଖଯୋଗ୍ୟ ନୂତନତା ପ୍ରଦର୍ଶନ କରିନଥିଲେ । ଅବଶ୍ୟ ସେମାନେ ନାଟକରେ

ଏକ ସୁଚଲ୍ତି ଗଳ୍ପର ସୂଚନାପ୍ରବାହ ପରଣତପାଇଁ ଚେଷ୍ଟା କରଥିଲେ । ନାଟକୀୟ ଯଥାର୍ଥତା ଥାଉ କମ୍ବା ନ ଥାଉ ଲେଖକମାନେ ଲେଖି ଗ୍ଲଥିଲେ ।

ସୁନ୍ଦରମ୍ ପିଲ୍ଲଇଙ୍କର "ମନମନ୍ନୟାମ୍" ଏବଂ ସୂର୍ଯ୍ୟ ନାରାୟଣ ଶାସ୍ତ୍ରୀଙ୍କର "ମାନ ବିଜୟଂ" ଓ "କଲାବତୀ" ଏହି ପ୍ରସଙ୍ଗରେ ଉଲ୍ଲେଖଯୋଗ୍ୟ ନାଟକ । ନାଟକର ପୃଷ୍ଠଭୂମି ସହିତ ସମ୍ପର୍କ ନ ଥାଇ ଅନେକ ସମୟରେ ଜୀବନ ଦର୍ଶନ, ସାମାଜିକ ଦର୍ଶନ ଓ ବୈପ୍ଳବିକ ଚନ୍ତାଧାର ପ୍ରକାଶ ପାଇଥାଏ । ତାମିଲ୍ ନାଟକର ବାସ୍ତବତା ଓ ସ୍ୱାଭାବିକତାପାଇଁ ଯେଉଁ ସବୁ ଉଦ୍ୟମ ହେଉଥିଲା, ତାହା ଏହି ପ୍ରଗତିଶୀଳ ଆନ୍ଦୋଳନର ହେତୁ । ନାଟ୍ୟକାର ଓ ଅଭିନେତା ଭାବରେ ଯେଉଁ ଲେଖକମାନେ ଏହି ଆନ୍ଦୋଳନରେ ଯୋଗ ଦେଇଥିଲେ ସେମାନଙ୍କ ମଧ୍ୟରେ ପି. ସଂମ୍ବନ୍ଦ ମୁଦାଲିୟର୍ ହେଉଛନ୍ତି ଅଗ୍ରଣୀ । "ସୁଗୁଣ ବିଲାସ ସଭା" ନାମକ ଦଳର ସେ ଥିଲେ ପରଚାଳକ । ସେ ରଙ୍ଗମଞ୍ଚ ଉଦ୍ଦେଶ୍ୟରେ ବଭିନ୍ନ ନାଟକ ରଚନା କରଥିଲେ । ମନୋହର ରୋମାନ୍ସ ଧର୍ମୀ ନାଟକ, ଶବପନ୍ଥ ଫାର୍ସ, ସେକ୍ସପିୟରଙ୍କ ମାକ୍ବେଥ୍ ଓ ହାମ୍ଲେଟ୍ ନାଟକ ଅନୁସରଣରେ ଯଥାକ୍ରମେ ସେ "ମଗପତ" ଓ "ଅମଲ ଦତେନ" ନାଟକ ଲେଖିଥିଲେ । ସେ ତାଙ୍କ ନାଟକରେ ଚରିତ୍ରଚିତ୍ରଣ, ସଂଳାପର ଭାଷା, ସଙ୍ଗୀତର ଯଥାର୍ଥତା, ପରିସ୍ଥିତି ଓ ପରିବେଶର ବାସ୍ତବତା ପ୍ରତି ଦୃଷ୍ଟି ଦେଇଥିଲେ ।

ତାଙ୍କ ନାଟକରେ କେତେକ ତ୍ରୁଟି ଦେଖାଯାଏ, ଯଥା—ବର୍ଣ୍ଣନାର ବାସ୍ତବତା ଓ ଭାଷାର ନାଟକୀୟ ଶକ୍ତି । ଏହା ବ୍ୟକ୍ତିର ଜୀବନ ଦର୍ଶନ ଓ ମନସ୍ତତ୍ତ୍ୱର ବିଶ୍ଳେଷଣ ତାଙ୍କ ନାଟକରେ ଦେଖା ଯାଏ ନାହିଁ । ତଥାପି ତାଙ୍କର ଅର୍ଦ୍ଧଶତାଧିକ ନାଟକ ବହୁ ବର୍ଷଧର ତାମିଲନାଡୁ-ରଙ୍ଗମଞ୍ଚରେ ସାର୍ଥକତା ସହିତ ଅଭିନୀତ ହୋଇଥିଲା । ସେ ତାଙ୍କ ନାଟକରେ କିୟତ୍ ପରମାଣରେ ସିଦ୍ଧି ହାସଲ କରଥିଲେ । ଜୀବନର ପ୍ରତିଛବି ହିସାବରେ ନାଟକର ସ୍ଥାନ ଅତି ଉଚ୍ଚରେ । ଏହା ତାଙ୍କର ନାଟକରୁ ପ୍ରମାଣିତ ହୋଇଥାଏ । ଜନସାଧାରଣଙ୍କୁ ରଙ୍ଗମଞ୍ଚ ଆଗ୍ରହୀ କରବାରେ ତାଙ୍କର ଦାନ ଅଧିକ । ତାମିଲ ନାଟକକୁ ସେ ଗ୍ରାମ୍ୟ ଗୀତାଭିନୟ ସ୍ତରରୁ ଉନ୍ନୀତ କର ପାରଥିଲେ । ସେ ତାମିଲ ନାଟକର ଏକ ନୂତନ ଦିଗ ଉଦ୍ଘାଟନ କରଥିଲେ ଯାହାକି ପରବର୍ତ୍ତୀ ନାଟ୍ୟକାରମାନଙ୍କୁ ଉତ୍କୃଷ୍ଟ ନାଟକ ଲେଖିବାପାଇଁ ପ୍ରେରଣା ଦେଇଥିଲା । ସମସାମୟିକ ତାମିଲ ନାଟକର ସେ ପ୍ରବର୍ତ୍ତକ ଥିଲେ । ଏହି ଆନ୍ଦୋଳନର ଧାରରେ ବଭିନ୍ନ ପାଶ୍ଚାତ୍ୟ ସାହିତ୍ୟରୁ ଭାରତର ସଂସ୍କୃତ, ହିନ୍ଦି ଓ ବଙ୍ଗଳାରୁ ଅନେକ ନାଟକ ତାମିଲ ଭାଷାରେ ଅନୂଦିତ ହୋଇଥିଲା । ଚେକଭଙ୍କର "ଚେର ଅରଚ୍ଛର୍ଡ", ଇବସନଙ୍କର "ଘୋଷ୍ଟ", ସେକସ୍‌ପିୟରଙ୍କର ବଭିନ୍ନ ନାଟକ, ସଂସ୍କୃତରୁ କାଳିଦାସଙ୍କର "ଶକୁନ୍ତଳା", ଶୂଦ୍ରକଙ୍କର ମୃଚ୍ଛକଟିକ,

ବଙ୍ଗଳାରୁ ଦ୍ୱିଜେନ୍ଦ୍ରଲାଲ ରାୟଙ୍କର 'ନୁରଜାହାନ୍' ଉଲ୍ଲେଖଯୋଗ୍ୟ । ଏହି ସବୁ ନାଟକ ରଙ୍ଗମଞ୍ଚରେ ଅଭିନୀତ ହୋଇ ନୂତନ ନାଟ୍ୟକାରମାନଙ୍କୁ ନୂତନ ନାଟକ ଲେଖିବାପାଇଁ ପ୍ରେରଣା ଦେଇଥିଲା ।

ରାଜନୈତିକ ଅବସ୍ଥାର ପରିବର୍ତ୍ତନ ସଙ୍ଗେ ସଙ୍ଗେ ସାରାଦେଶରେ ନବ ଜାତୀୟ ଚେତନାର ସୂଚନା ମିଳିଥିଲା । ଜାତୀୟତା ପ୍ରଭାବବଶତଃ ନାଟ୍ୟକାରମାନଙ୍କ ମଧ୍ୟରେ ଏକ ଜାଗରଣ ଦେଖାଯାଇଥିଲା । ସେମାନେ ଅତୀତର ଗୌରବକୁ ନୂତନ ମୂଲ୍ୟବୋଧ ଦୃଷ୍ଟିରେ ବର୍ଣ୍ଣନା କରିବାକୁ ଚାହିଁଥିଲେ । ଏହା ଫଳରେ ପ୍ରଥମେ ତାମିଲ ଉପନ୍ୟାସରେ ଏହି ଦୃଷ୍ଟିକୋଣ ପ୍ରତିଫଳିତ ହେଲା । ଲେଖକମାନେ ପରେ ଏତାଦୃଶ ଉପନ୍ୟାସକୁ ନାଟ୍ୟ ରୂପ ଦେଇଥିଲେ । ଉଦାହରଣସ୍ୱରୂପ ବିଶିଷ୍ଟ ଲେଖକ କଲ୍‌କିଙ୍କର ଉପନ୍ୟାସ "ପାର୍ଥିପାନ କାନାଭୁ", "ଶିବ କାମିସ୍ୱିନ ଶବଥମ୍" ମଂଚସ୍ଥ କରାଯାଇଥିଲା । ବିଶିଷ୍ଟ ଐତିହାସିକ ନାଟକ ଯଥା—ରାଜା ରାଜା ଚୋଲନ୍ ଏବଂ ଅଲ୍ଲୟୁଭ୍ ଖୁବ୍ ଆଦୃତ ହୋଇଥିଲା । ନୂତନ ରାଜନୈତିକ ଚେତନା ସହିତ ସାମାଜିକ ସଂସ୍କାର ପ୍ରୟାସ ମଧ୍ୟ ଦେଖାଦେଇଥିଲା । ଏହା ଫଳରେ ଗୁମାସ୍ତାଭିନ୍ ପେନ୍ ଏବଂ ଭେଲଇକାର ସଦୃଶ ଗୁରୁତ୍ୱପୂର୍ଣ୍ଣ ନାଟକ ଲେଖାଯାଇଥିଲା । ତାମିଲ ପତ୍ରପତ୍ରିକାର ପ୍ରଚଳନ କ୍ଷୁଦ୍ର ନାଟିକା ଲେଖିବାପାଇଁ ଲେଖକମାନଙ୍କୁ ସୁଯୋଗ ଦେଇଥିଲା । ଇତିହାସ, ଜୀବନୀ ଏବଂ ସମସାମୟିକ ରାଜନୈତିକ ତଥା ସାମାଜିକ ସମସ୍ୟାକୁ କେନ୍ଦ୍ରକରି ବହୁ ଏକାଙ୍କିକା ଲେଖାଯାଇଥିଲା । ଗୀତିନାଟ୍ୟ ଲେଖକମାନଙ୍କ ମଧ୍ୟରେ ନାନଲ, ତରୁଲୋକ ସୀତାରାମଙ୍କ ନାମ ଉଲ୍ଲେଖ କରାଯାଇପାରେ । ପୂର୍ଣ୍ଣଂ ବିଶ୍ୱନାଥମ୍ ଏବଂ ଗୋମଥି ସ୍ୱାମୀନାଥମ୍ ଲଘୁ ନାଟକ ଲେଖିବାରେ ସିଦ୍ଧି ହାସଲ କରିଛନ୍ତି । ଅପେକ୍ଷାକୃତ ଗମ୍ଭୀର ଓ ଗୁରୁତ୍ୱପୂର୍ଣ୍ଣ ନାଟକ ଲେଖିବାରେ ଏସ୍. ଡି. ସୁନ୍ଦରମ୍‌କୁ. ସା. କୃଷ୍ଣମୂର୍ତ୍ତି, ଏମ୍. ବରଦାର୍ଜନ, ଏସ. ନବାସ ରାଘବନ୍, ଅରୁ ରାମନାଥଂ, ସି. ଏନ୍. ଆନାଦୁରାଇଙ୍କ ନାମ ଉଲ୍ଲେଖ କରାଯାଇଥାଏ । ବଡ଼ ଆଶ୍ଚର୍ଯ୍ୟର କଥା ପ୍ରାୟ ଅର୍ଦ୍ଧଶତାବ୍ଦୀ ତଳେ ତାମିଲ ନାଟକ ଯେଉଁ ସଙ୍ଗୀତ ଓ ନୃତ୍ୟକୁ ବିଦାୟ ଦେଇଥିଲା ତାହା ପୁଣି ଆଧୁନିକ ଯୁଗର ନାଟକରେ ପ୍ରଚଳିତ ହେଲାଣି । ଅବଶ୍ୟ ଏତାଦୃଶ ସଙ୍ଗୀତ ଓ ନୃତ୍ୟ ଆଧୁନିକ ସମାଜିକ ନାଟକର ସାମଗ୍ରୀକ ସୌନ୍ଦର୍ଯ୍ୟ ବୃଦ୍ଧି ପାଇଁ ବ୍ୟବହୃତ ହେଉଅଛି । ନୃତ୍ୟନାଟିକା ମଧ୍ୟ ଆଧୁନିକ ନାଟକରେ ପ୍ରଚଳିତ ହେଉଅଛି । ପ୍ରଣାଳୀ, ବିଷୟବସ୍ତୁ, ଉଦ୍ଦେଶ୍ୟ, ଆକାର ଓ ପ୍ରକାର ଦୃଷ୍ଟିରେ ଆଧୁନିକ ତାମିଲ ନାଟକ ବେଶ୍ ବୈଚିତ୍ର୍ୟପୂର୍ଣ୍ଣ । ଅତୀତର ସାହିତ୍ୟିକ ପରଂପରା ଲେଖକମାନଙ୍କୁ ଉତ୍କୃଷ୍ଟ ନାଟକ ଲେଖିବାପାଇଁ ପ୍ରେରଣା ଦେଇଅଛି ।

ପ୍ରବନ୍ଧ, ଜୀବନୀ, ଭ୍ରମଣ ସାହିତ୍ୟ—ଆଧୁନିକ ତାମିଲ ସାହିତ୍ୟରେ ପ୍ରବନ୍ଧ ଏବଂ ଜୀବନୀ ରଚନାର ଅଭାବ ଦେଖାଯାଏ ନାହିଁ । ବିଭିନ୍ନ ପ୍ରକାର ପ୍ରବନ୍ଧାବଳୀ ସାଧାରଣତଃ ପତ୍ରପତ୍ରିକାମାନଙ୍କ ପାଇଁ ଲେଖାଯାଇଛି ।

ପ୍ରାଚୀନ ସଂଗମ ଓ ସଂଗମ ପରବର୍ତ୍ତୀ ରଚନାମାନଙ୍କର ସମାଲୋଚନା ପ୍ରଥମେ ପ୍ରଥମେ ପ୍ରକାଶ ପାଇଥିଲା । କା. ନ୍ନା. ଶୁଭମଣ୍ୟ ଏବଂ ସାଲୈ ଇଲାଂଥିରାୟ୍ୟନ ପ୍ରଭୃତି ଆଧୁନିକ ଗପ, କବିତା ପ୍ରଭୃତିର ଉଚ୍ଚକୋଟୀର ସମାଲୋଚନା ପ୍ରତି ଧ୍ୟାନ ଦେଇଛନ୍ତି । 'ଇଲାଂଥିରାୟ୍ୟନ' ସମଗ୍ର ଆଧୁନିକ ତାମିଲ କବିତାର ଅନୁଶୀଳନ କରିଛନ୍ତି । ଗ୍ରଂଥଟିର ନାମ ହେଉଛି "ଭାରତୀ ଦାଶନ୍ କବିତାବାଲମ୍" । ବୈଜ୍ଞାନିକ ପ୍ରବନ୍ଧ କ୍ଷେତ୍ରରେ ପି. ଏନ୍. ଅପ୍ପୁସ୍ୱାମୀ, ଆର୍. କେ. ବିଶ୍ୱନାଥନ୍, ଶିଳ୍ପ ବିଷୟକ ପ୍ରବନ୍ଧ କ୍ଷେତ୍ରରେ ଟି. ଏସ୍. ଅବିନାଶ ଲିଙ୍ଗମ୍, ରାଜନୈତିକ ଓ ଅର୍ଥନୈତିକ ପ୍ରବନ୍ଧ ବିଭାଗରେ କେ. ଶାନ୍ତରମ୍ ଏବଂ ଏ. ଏନ୍. ଶିବରାମନ୍ ପ୍ରଭୃତି ଲେଖକ ପରିଚିତ ।

ଭ୍ରମଣ—ତାମିଲ ଜୀବନୀ ଭ୍ରମଣ ଏବଂ ପ୍ରବଂଧ ଭାରତୀୟ ବ୍ରାହ୍ମଣ ପରିବାରର ବିବାହ ପ୍ରଥାକୁ ବ୍ୟଙ୍ଗବିଦ୍ରୂପ କରି 'ସାବି' ଙ୍କର ଓ୍ୱାସିଙ୍ଗଟନ୍‌ଥିସମାନମ୍ ଲିଖିତ । ଶ୍ରୀଯୁକ୍ତ ଏ. କେ. ଚେଟିୟାର ସାହିତ୍ୟରେ ପର୍ଯ୍ୟଟନ ଏବଂ ଭ୍ରମଣ ଅନୁଭୂତି-ଶୀର୍ଷକ ରଚନାର ସୂତ୍ରପାତ କରିଥିଲେ । ବହୁ ଅଧ୍ୟାପକ ସାହିତ୍ୟିକ ଦେଶବିଦେଶରେ ଭ୍ରମଣ ଅଭିଜ୍ଞତା ଗ୍ରଂଥମାନଙ୍କରେ ଲିପିବଦ୍ଧ କରିଛନ୍ତି । ଶ୍ରୀଯୁକ୍ତ ଏସ. ଏଲ. ଏସ. ଲକ୍ଷ୍ମଣ ଚେଟିୟାର ବର୍ତ୍ତମାନ ତାମିଲ ସାହିତ୍ୟରେ ଉଚ୍ଚକୋଟୀର ପର୍ଯ୍ୟଟନ ସାହିତ୍ୟ ସୃଷ୍ଟିକରି ଲୋକପ୍ରିୟ ହୋଇ ପାରିଛନ୍ତି । "ଗ୍ରେମ ସମୁଦ୍ରମ୍" ୧୯୬୭ରେ ତାଙ୍କର ଭ୍ରମଣାତ୍ମକ ରଚନାପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ ହୋଇଛନ୍ତି । ପି. ଏମ୍. ଆନ୍ନା ଦୁରାଇଙ୍କର ରମ୍ୟ ରଚନା, ବିଭିନ୍ନ ସମସ୍ୟାର ପତ୍ରାବଳୀ ଏବଂ ପ୍ରବନ୍ଧ-ମାଳା ତାମିଲ ସାହିତ୍ୟରେ ବୈଶିଷ୍ଟ୍ୟ ମାନ ସୃଷ୍ଟି କରିପାରିଛି ।

ତାମିଲ ସାହିତ୍ୟର ସଂପ୍ରସାରଣ ଓ ଶ୍ରୀବୃଦ୍ଧିପାଇଁ ପତ୍ରପତ୍ରିକାର ଭୂମିକା ଗୁରୁତ୍ୱପୂର୍ଣ୍ଣ । ସମସ୍ତ ତାମିଲରେ ପତ୍ରପତ୍ରିକାର ସଂଖ୍ୟା ପଞ୍ଚାଶତାଧିକ । 'ଦିନସାରୀ' ହେଉଛି ଏକ ପ୍ରଧାନ ଦୈନିକ ପତ୍ରିକା ଓ ଏହାର ସମ୍ପାଦକ ଟି. ଏସ. ଗ୍ରେକଲିଙ୍ଗମ୍ । ଦିନମଣି ଆଉ ଏକ ଦୈନିକ ପତ୍ରିକା । ଆନନ୍ଦବିକଟନ ହାସ୍ୟରସାତ୍ମକ ପତ୍ରିକା ଓ ଏହା ଲୋକପ୍ରିୟ । 'କଲ୍କି' ଏକ ବିଖ୍ୟାତ ପତ୍ରିକା । ଖାଲି ନେତାଙ୍କ ଭାଷଣ ଓ ଖବର ଦେବା ଏହାର ମୁଖ୍ୟ ଲକ୍ଷ୍ୟ ନୁହେଁ, ବରଂ ପ୍ରତ୍ୟେକ ପରିବାରରେ ସାହିତ୍ୟିକ ମୂଲ୍ୟବୋଧ ଓ ଦାୟିତ୍ୱଜ୍ଞାନ ପ୍ରକାଶ କରିବା । 'କଲୈମଗଲ' ଆଉ ଏକ ମୁଖ୍ୟ ପତ୍ରିକା ।

ଶିଶୁ ସାହିତ୍ୟର ଉନ୍ନତି ପାଇଁ 'ଚନ୍ଦମାମା' ଏକ ହାସ୍ୟରସାତ୍ମକ ଓ ନୀତିଶିକ୍ଷା-ମୂଳକ ପତ୍ରିକା । ତୋମିଲ ଯଥାର୍ଥରେ ତାମିଲନାଡୁର ମୁକୁର । ଡକ୍ଟର ପୋପ୍‌ଙ୍କ ତାମିଲ ସାହିତ୍ୟ ସମ୍ପର୍କୀୟ ରଚନା ଐତିହାସିକ ଦୃଷ୍ଟିକୋଣରୁ ଗୁରୁତ୍ୱପୂର୍ଣ୍ଣ । ଡକ୍ଟର ପୋପ୍‌ଙ୍କ ମତରେ ପ୍ରାଚୀନ ତାମିଲ ଯଥାର୍ଥ ଉଦ୍‌ବର୍ତ୍ତନର ସଙ୍କେତ ବହନ କରିଅଛି ।

**ଜୀବନୀ**—ଊନବିଂଶ ଶତାବ୍ଦୀରେ ରାଜା, ମହାରାଜା, ଜମିଦାରମାନଙ୍କର ଜୀବନୀ ଲେଖାଯାଉଥିଲା । ସେ ସବୁ ରଚନାରେ ସାହିତ୍ୟିକ ଶୈଳୀ ଏବଂ କଳ୍ପନା-ସୌନ୍ଦର୍ଯ୍ୟ ସାଧାରଣତଃ ପରିଦୃଷ୍ଟ ହୁଏ ନାହିଁ । ଶିବପାଦ ସୁନ୍ଦରଙ୍କ ଲିଖିତ "ଭୂଙ୍କର ଅର୍ଚ୍ଚୁ ଭାରତ୍", କେ. ଚନ୍ଦ୍ରଶେଖରଙ୍କର 'ଭି. କୃଷ୍ଣସ୍ୱାମୀ ଅୟାର' ଏବଂ ମରାଇଥିରୁ ନାଭୁକାରୁସଙ୍କର "ମରାଇ ମଲାଇ ଆଦିଗଲ" ପ୍ରଭୃତି ଜୀବନୀ ଯଥାକ୍ରମେ ପିତୃବତ୍ସଳ ପୁତ୍ରଙ୍କ ଦ୍ୱାରା ଲିଖିତ ସେମାନଙ୍କର ପିତାଙ୍କର ଜୀବନୀ, ଆର. ଏ. ପଦ୍ମନାଭନଙ୍କ ଲିଖିତ 'ଚନ୍ଦ୍ରଭାରତୀ' କବି ଶୁଭ୍ରମଣ୍ୟ ଭାରତୀଙ୍କ ସମ୍ପର୍କରେ ବିସ୍ତୃତ ଗବେଷଣା ଗ୍ରନ୍ଥ । ଏମ୍. ପି. ଶିବ ଜ୍ଞାନମ୍ ଏବଂ ଏନ୍. ସଞ୍ଜୀବୀ ପ୍ରଭୃତି ଲେଖକମାନଙ୍କ ଉଦ୍ୟମରେ ତାମିଲ-ନାଡୁର ବହୁ ଜାତୀୟ କବିଙ୍କ ଜୀବନୀ ଲେଖାଯାଇଛି । 'ସଞ୍ଜୀବୀଙ୍କର' 'ରାଣିମଙ୍ଗମଲ' ଜନୈକ ତାମିଲ ରାଣୀଙ୍କର ଜୀବନୀ । ଦକ୍ଷିଣ ଭାରତ ଶୈବ ସିଦ୍ଧାନ୍ତ ପ୍ରକାଶନ ସଂସ୍ଥା ଦ୍ୱାରା ତାମିଲର ପ୍ରାଚୀନ ପଣ୍ଡିତଙ୍କର ଜୀବନୀ ଲେଖାଯାଇଛି । ବିବେକାନନ୍ଦ, ଗାନ୍ଧୀ, ରବୀନ୍ଦ୍ରନାଥ ପ୍ରଭୃତି ମନୀଷୀମାନଙ୍କର ତଥ୍ୟସମ୍ବଳିତ ଜୀବନୀସମୂହ ମଧ୍ୟ ତାମିଲରେ ଲେଖାଯାଇଛି । ଏନ୍. ଚରିତମ୍. ଏବଂ ଏନ୍. କଥାଇ ହେଉଛି ଯଥାକ୍ରମେ ମହା-ମହୋପାଧ୍ୟାୟ ସ୍ୱାମୀନାଥନ୍ ଏବଂ ନାମକଲ୍ଲ ରାମଲିଙ୍ଗମ୍ ପିଲାଇଙ୍କର ଲିଖିତ ଆତ୍ମ-ଜୀବନୀ ।

ସଂକ୍ଷେପରେ କହିବାକୁ ଗଲେ ବହୁ ପ୍ରାଚୀନ କାଳରୁ ତାମିଲ ସାହିତ୍ୟ ଦକ୍ଷିଣ-ଭାରତରେ ସଂସ୍କୃତି ଓ ସଭ୍ୟତାର ପ୍ରତିଛବି ବହନ କରିଅଛି । ଆଦି ଏବଂ ମଧ୍ୟଯୁଗର ରଚନାସମୂହ ଧର୍ମ, ରାଷ୍ଟ୍ର, ସମାଜ, ନାଗରିକତ୍ୱ, ନୈତିକତା, ପ୍ରେମ, ବୀରତ୍ୱ ପ୍ରସଙ୍ଗ ପ୍ରତିଫଳିତ କରିଥିବାବେଳେ ସାଂପ୍ରତିକ ସାହିତ୍ୟିକ ସେହିପରି ତୀବ୍ର ସମାଜ ସଚେତନତା ଓ ଜାତୀୟତା ପ୍ରତିଫଳିତ କରିପାରିଛି । ସେଥିରେ ଭାବଶୃଙ୍ଖଳା, ଚିନ୍ତା-ଐକ୍ୟ, ଆବେଗଉଚ୍ଛ୍ୱାସ ହିଁ ଚିତ୍ରିତ । ମନୁଷ୍ୟର ଅଭିଜ୍ଞତା ହିଁ ଉଭୟ ପ୍ରାଚୀନ ଓ ଆଧୁନିକ ତାମିଲ ସାହିତ୍ୟରେ ଶୈଳ୍ପିକ ରୀତିରେ ଲିପିବଦ୍ଧ ହୋଇଅଛି ।

---

# ମରାଠୀ

ପ୍ରାଚୀନ କାଳରୁ ଦଣ୍ଡକାରଣ୍ୟ ଋଷି ତଥା ସାଧୁ ଓ ସାଧକମାନଙ୍କର ଏକାନ୍ତ ବିହାରସ୍ଥଳୀ ଥିଲା । ଭକ୍ତିମାର୍ଗରେ ଜୀବନର ସାଧନା ପୂର୍ଣ୍ଣାଙ୍ଗ କରି ପୂର୍ବା-ଚାର୍ଯ୍ୟଗଣ ଯଥାର୍ଥରେ ଆଦର୍ଶ ମାନବ ଜୀବନ ଓ ଆଦର୍ଶ ସମାଜର ପରିକଳ୍ପନା କରି ଯାଇଛନ୍ତି । ଇକ୍ଷ୍ୱାକୁ ରାଜାଙ୍କର ପୁତ୍ର ହେଉଛନ୍ତି ଦଣ୍ଡ । ତାଙ୍କର ନାମାନୁସାରେ ଦଣ୍ଡକାରଣ୍ୟ ନାମିତ ହୋଇଥିଲା । ସେହି ଅଞ୍ଚଳରେ ଆର୍ଯ୍ୟମାନେ ଅବାଧ ଭାବରେ ବସତି ସ୍ଥାପନ କରିଥିଲେ । ବୃକ୍ଷଲତା ପରିପୂର୍ଣ୍ଣ ପ୍ରକାଣ୍ଡ ବନଭୂମି ଦଣ୍ଡକାରଣ୍ୟ ଦିନେ ଉନ୍ନତ ଜୀବନ ଧାରା ଦ୍ୱାରା ପ୍ଲାବିତ ହୋଇଥିଲା । ସେହି ଦଣ୍ଡକାରଣ୍ୟ ଆଧୁନିକ ମହାରାଷ୍ଟ୍ରର ଭୌଗୋଳିକ ଭିତ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ । ବିଭିନ୍ନ ଯୁଗରେ ବିଭିନ୍ନ ଧର୍ମ ସଂପ୍ରଦାୟ ଏହି ଅଞ୍ଚଳରେ ବସବାସ କରି ସେମାନଙ୍କର ସାଧନା ଓ ସିଦ୍ଧି ଦ୍ୱାରା ତା'ର ଇତିହାସକୁ ପରିପୁଷ୍ଟ କରି ଯାଇଛନ୍ତି । ଅତି ପ୍ରାଚୀନ କାଳରେ ରାଷ୍ଟ୍ରକୂଟ ଓ ଶାଲି ବାହନବଂଶୀୟ ରାଜାମାନେ ଏହି ପ୍ରାନ୍ତରେ ଶାସନ କରୁଥିଲେ ।

ଦଶମ ଶତାବ୍ଦୀରୁ ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ ଯାଦବମାନେ ଗୋଦାବରୀ ନଦୀ ଅଞ୍ଚଳରେ ରାଜତ୍ୱ କରୁଥିଲେ । ପ୍ରାୟ ଚତୁର୍ଦ୍ଦଶ ଶତାବ୍ଦୀର ଆରମ୍ଭରୁ ମୋଗଲ ଓ ପଠାଣମାନେ ଏହି ମହାରାଷ୍ଟ୍ର ରାଜ୍ୟ ଆକ୍ରମଣ କରିଥିଲେ । ପ୍ରାଚୀନ କାଳରୁ ଏକ ନିର୍ଦ୍ଦିଷ୍ଟ ସାମାଜିକ ଓ ରାଜନୈତିକ ସ୍ଥିତି ଭାବରେ ମହାରାଷ୍ଟ୍ର ବିଦିତ ହୋଇଅଛି । ଏହା ଦକ୍ଷିଣାପଥ ନାମରେ ପରିଚିତ । ଆର୍ଯ୍ୟମାନଙ୍କର ଦକ୍ଷିଣାପଥ ଅଭିଯାନର ଏହାହିଁ ଥିଲା ବିସ୍ତୃତ ଅଞ୍ଚଳ । ପାଣ୍ଡରପୁର କୃଷ୍ଣ ସଂପ୍ରଦାୟର ପୀଠ । ପାଣ୍ଡରପୁରଠାରେ ଥିବା ବିଠଲ ମୂର୍ତ୍ତି ବହୁ ପ୍ରାଚୀନ କାଳରୁ ଧର୍ମ ଓ ଭକ୍ତିର ଉପାସ୍ୟ ଦେବତା ଥିଲେ । ସେଠାରେ ଥିବା ମନ୍ଦିରରୁ ବହୁ ଶିଳାଲେଖ ମିଳି ଥାଏ । ତ୍ରୟୋଦଶ ଶତାବ୍ଦୀ ବେଳକୁ ପାଣ୍ଡରପୁରର ଦେବତା ମହାରାଷ୍ଟ୍ରୀୟମାନଙ୍କର ଜାତୀୟ ଦେବତା ରୂପେ ପ୍ରତିଷ୍ଠିତ ହୋଇଥିଲେ । ମହାରାଷ୍ଟ୍ରର ବିଭିନ୍ନ ଅଞ୍ଚଳରୁ ଯାତ୍ରୀମାନେ ସେହି ମନ୍ଦିରରେ ସମବେତ ହେଉଥିଲେ ।

କାତ୍ୟାୟନଙ୍କର 'ବାର୍ତ୍ତିକ', କୌଟିଲ୍ୟଙ୍କ ଅର୍ଥଶାସ୍ତ୍ର ଏବଂ ପରବର୍ତ୍ତୀ-କାଳୀନ ବୌଦ୍ଧ ଶାସ୍ତ୍ରରେ ଦକ୍ଷିଣାପଥର ନାମୋଲ୍ଲେଖ ପରିଦୃଷ୍ଟ ହୁଏ । ପ୍ରାଚୀନ କାଳର ଗୁପ୍ତରାଷ୍ଟ୍ର, ମାଲରାଷ୍ଟ୍ର, ପାଣ୍ଡ୍ୟରାଷ୍ଟ୍ର, ଅପରାନ୍ତ ବିଦର୍ଭ ଏବଂ ଅସ୍ମକ—ସୁଦୂର ଦକ୍ଷିଣର ଏହି ଛଅଗୋଟି ରାଜ୍ୟ କାଳକ୍ରମେ ମହାରାଷ୍ଟ୍ର ରାଜ୍ୟର ଭିତ୍ତି ସ୍ଥାପନ କରିଥିଲେ । ୫୦୦ ଖ୍ରୀ: ରେ 'ମହାବଂଶ' ନାମକ ଗ୍ରନ୍ଥରେ ମହାରାଷ୍ଟ୍ରର ପ୍ରଥମ

ନାମୋଲ୍ଲେଖ ଦେଖାଯାଏ । ବକ୍ରହମିହର ଏହି ରାଜ୍ୟର ଅଧିବାସୀମାନଙ୍କର ବର୍ଣ୍ଣନା କରଥିଲେ । ଅଭହୋଲ (ଖ୍ରୀ: ୬୩୪) ଶିଳାଲେଖରେ ମହାରାଷ୍ଟ୍ରର ପରାକ୍ରମଶାଳୀ ସମ୍ରାଟ୍ ସତ୍ୟାଶ୍ରୟ ପୁଲକେଶୀଙ୍କର ବର୍ଣ୍ଣନା ଦେଖିବାକୁ ମିଳେ । ହୁଏନ୍‌ସାଙ୍କ ବର୍ଣ୍ଣନାରେ ଏହାର ନାମ ମହୋଲାସ ବୋଲି ଉଲ୍ଲେଖ କରାଯାଇଛି । ଏହା ବ୍ୟତୀତ ଦଣ୍ଡୀ, ବରରୁଚି, ବାତ୍ସ୍ୟାୟନଙ୍କ ରଚନାରେ ମହାରାଷ୍ଟ୍ରର ମଧ୍ୟ ନାମୋଲ୍ଲେଖ ଦେଖାଯାଏ ।

ମରାଠୀ ଭାଷାର ଉତ୍ପତ୍ତି—ଏହି ଭାଷା ମହାରାଷ୍ଟ୍ରୀ ଅପଭ୍ରଂଶରୁ ଉତ୍ପତ୍ତି ଲାଭ କରିଅଛି ବୋଲି ପଣ୍ଡିତମାନଙ୍କର ମତ । ବୈଦିକ ଭାଷା ଓ ସଂସ୍କୃତରୁ ଯୁଗାନୁକ୍ରମେ ବିବର୍ତ୍ତିତ ସୌରସେନୀ, ମାଗଧୀ, ପୈଶାଚୀ ଏବଂ ମହାରାଷ୍ଟ୍ରୀ ପ୍ରାକୃତ ମଥୁରା ମଣ୍ଡଳ, ମଗଧ, ବାହ୍ଲିକ (ପଞ୍ଜାବ) ଏବଂ ମହାରାଷ୍ଟ୍ର ଅଞ୍ଚଳରେ ପ୍ରଚଳିତ ହୋଇଥିଲା । ଏହି ଭାଷାମାନଙ୍କର ପରବର୍ତ୍ତୀ ବିକାଶ ହେଉଛି ଅପଭ୍ରଂଶ । ମରାଠୀ ଭାଷା ମହାରାଷ୍ଟ୍ରୀ ଅପଭ୍ରଂଶର ସଂସ୍କୃତ, ମାର୍ଜିତ ଏବଂ ପରିବର୍ତ୍ତିତ ରୂପ ବୋଲି ଯାଇପାରେ । ପୂର୍ବବର୍ତ୍ତୀ ଗୁରୁଗୋଟି ଅପଭ୍ରଂଶ ଭାଷା ନବମ ଶତାବ୍ଦୀ ପର୍ଯ୍ୟନ୍ତ ପ୍ରଚଳିତ ଥିଲା । ରାଜଶେଖର ତାଙ୍କର ନାଟକ "କର୍ପୂରମଞ୍ଜରୀ"ରେ ମହାରାଷ୍ଟ୍ରୀ ପ୍ରାକୃତ ବ୍ୟବହାର କରଥିଲେ । ଏଥିରୁ ପ୍ରାଚୀନ ମହାରାଷ୍ଟ୍ରୀ ଭାଷାର ସାହିତ୍ୟିକ ପ୍ରତିଷ୍ଠା ସହଜରେ ଅନୁମେୟ । ମହାରାଷ୍ଟ୍ରୀ ଅପଭ୍ରଂଶ ଜୈନ ଅପଭ୍ରଂଶ ନାମରେ ମଧ୍ୟ ପରିଚିତ ହୋଇଥାଏ । ମରାଠୀ ଭାଷାର ବିକାଶ ଧାରାରେ ଏହାର ସ୍ଥାନ ସ୍ୱୀକାର୍ଯ୍ୟ । ତ୍ରୟୋଦଶ ଶତାବ୍ଦୀ ବେଳକୁ ମରାଠୀଭାଷା ଉଭୟ ସାମାଜିକ ଓ ସାହିତ୍ୟିକ ପ୍ରତିଷ୍ଠା ଅର୍ଜ୍ଜନ କରି ସାରଥିଲା । ଉତ୍ତରରେ ବିନ୍ଧ୍ୟ ଓ ସାତପୁରା ପର୍ବତମାଳା ଦକ୍ଷିଣରେ ଉତ୍ତରକାନଡ଼ା ଜିଲ୍ଲା, ପୂର୍ବରେ ଛୋଟନାଗପୁର ଓ ଆନ୍ଧ୍ର ଦେଶ, ପଶ୍ଚିମରେ ଆରବ ସାଗର—ଏହାହିଁ ଥିଲା ସେହି ଭାଷାର ବିସ୍ତୃତି । ଏହି ଭାଷାରେ ଏପର୍ଯ୍ୟନ୍ତ ପ୍ରାପ୍ତହୋଇଥିବା ସର୍ବପ୍ରଥମ ଶିଳାଲେଖର ସମୟ ହେଉଛି ୯୮୩ ଖ୍ରୀଷ୍ଟାବ୍ଦ । ପରବର୍ତ୍ତୀ ସମୟର ଶିଳାଲେମାନଙ୍କରୁ ମରାଠୀ ଭାଷା ମହୀଶୂର, ଖାନ୍ଦେଶ, ବମ୍ବେ ପ୍ରଭୃତି ଅଞ୍ଚଳରେ ପ୍ରଚଳିତ ଥିବାର ଜଣାଯାଏ । ମହୀଶୂର ନିକଟବର୍ତ୍ତୀ ଗୋମଟେଶ୍ୱର ମୂର୍ତ୍ତିଙ୍କର ପାଦଦେଶରେ ଏହି ଶିଳା ଲେଖ ଖୋଦିତ ହୋଇଥିଲା । ମହାରାଷ୍ଟ୍ରୀୟ ସମାଜର ଉଚ୍ଚ ସାଂସ୍କୃତିକ ପ୍ରତିଷ୍ଠା ଇତିହାସରେ ସ୍ୱୀକୃତ । ଭବଭୂତି, ଭାସ୍କରାଚାର୍ଯ୍ୟ ଓ କବି ରାଜଶେଖର ମହାରାଷ୍ଟ୍ରୀ ସଂପ୍ରଦାୟର ଲୋକ ଥିଲେ । ସେମାନଙ୍କ ରଚନାରୁ ଜଣାଯାଏ ଯେ ପାଣ୍ଡିତ୍ୟପୂର୍ଣ୍ଣ ଗବେଷଣା ଓ ମୌଳିକ କାବ୍ୟ ସାହିତ୍ୟର ଭାଷା ଥିଲା ସଂସ୍କୃତ କିନ୍ତୁ ସାଧାରଣ ଲୋକଙ୍କର କଥିତ ଭାଷା ଥିଲା ମରାଠୀ । ସେଥିପାଇଁ ମନ୍ଦିରମାନଙ୍କର ଖୋଦିତ ଶିଳାଲେଖର ଭାଷା ଥିଲା ମରାଠୀ । ଶାସନକ୍ଷେତ୍ରରେ ମରାଠୀ ଭାଷାର ସ୍ଥାନ ଅତି ଉଚ୍ଚରେ ଥିଲା । ରାଜା ଶିରୋମଣି ରାମଦେବ ରାଓଙ୍କ ସମୟରେ ପଣ୍ଢରପୁର ଶିଳାଲେଖ (୧୨୭୩ ଖ୍ରୀ:) ର

ଭାଷା ଶୁଦ୍ଧ ମରାଠୀ ଭାଷା । ପଣ୍ଡିତ ଓ ଗୁଣଗ୍ରାହୀ ଶାସକ ରାମଦେବରାଓଙ୍କ ସମୟରେ ବହୁ ଗ୍ରନ୍ଥ ଲିଖିତ ହୋଇଥିଲା । ଦ୍ୱାଦଶ ଶତାବ୍ଦୀରେ ଯାଦବ ନରପତିମାନଙ୍କ ସମୟରେ ଉଭୟ ଗଦ୍ୟ ଏବଂ ପଦ୍ୟରେ ବହୁ ଗ୍ରନ୍ଥ ଲିଖିତ ହୋଇଥିଲା, ଯଥା ଶିଶୁ ଉପଯୋଗୀ ରଚନା ପଞ୍ଚତନ୍ତ୍ର, ନାରୀମାନଙ୍କ ପାଇଁ ଉଦ୍ଦିଷ୍ଟ ଗଳ୍ପ ଓ ଗୀତିକା, ଯଥା :—ପୌରାଣିକ ଗଳ୍ପ, ରାମାୟଣଓ କୃଷ୍ଣଚରିତ, ଜ୍ୟୋତିଷ ଓ ଚିକିତ୍ସା ବିଜ୍ଞାନ-ମୂଳକ ଶାସ୍ତ୍ର । ଶ୍ରୀପତିଙ୍କର ଜ୍ୟୋତିଷ ସମ୍ପର୍କୀୟ ରଚନାମାଳା ଉଲ୍ଲେଖଯୋଗ୍ୟ । ରାଜଦରବାରମାନଙ୍କରେ ନଳୋପାଖ୍ୟାନ ଓ ରୁକ୍ମିଣୀ ସ୍ୱୟମ୍ବର ସଦୃଶ ଦୀର୍ଘ ଅଳଙ୍କାରବହୁଳ ବର୍ଣ୍ଣନାତ୍ମକ କାବ୍ୟ ବିଶେଷ ଆଦୃତ ହେଉଥିଲା । ଏହିସବୁ ରଚନାମାନଙ୍କର ଭାଷା ଥିଲା ମରାଠୀ ଭାଷା । କାରଣ ଏହି ମରାଠୀ ଭାଷା ମାଧ୍ୟମରେ ଅର୍ଥାତ୍ ସାଧାରଣ ବ୍ୟବହୃତ ଭାଷା ମାଧ୍ୟମରେ ରାଜଦରବାରରେ ପହଞ୍ଚି ପାରିବା ସୁବିଧା ଓ ସହଜ ଥିଲା । ମୁକୁନ୍ଦରାଜଙ୍କର ଲିଖିତ "ବିବେକ ସିନ୍ଧୁ" ଏହାର ନିଦର୍ଶନ । ତାଙ୍କର ରଚନା ଆଧ୍ୟାତ୍ମିକ ତଥ୍ୟସମ୍ବଳିତ । ସଂସ୍କୃତ ଭାଷାର ଉଚ୍ଚାଙ୍ଗ ଦର୍ଶନ ଓ ତଥ୍ୟ ପ୍ରଥମ ଥର ପାଇଁ ସେ ମରାଠୀ ଭାଷାରେ ପ୍ରକାଶ କରିପାରିଥିଲେ । ମରାଠୀ ଭାଷାର ପ୍ରାଚୀନ ଗ୍ରନ୍ଥକାରଙ୍କ ମଧ୍ୟରେ ଧ୍ୟାନେଶ୍ୱରଙ୍କ ନାମ ବିଶେଷଭାବେ ଉଲ୍ଲେଖଯୋଗ୍ୟ । ତାଙ୍କର ପ୍ରଚେଷ୍ଟାରେ ମରାଠୀ ଭାଷା ଶୁଦ୍ଧ ଏବଂ ସାହିତ୍ୟିକ ଶୈଳୀ ପ୍ରାପ୍ତ ହୋଇଥିଲା । ତାଙ୍କର ଶାନ୍ତ ସରଳ ହୃଦୟାନୁଭୂତି ଓ ଉଚ୍ଚ ଆଦର୍ଶବାଦ ମରାଠୀ ଭାଷାରେ ବେଶ୍ ପ୍ରତିଫଳିତ ହୋଇଥିଲା ।

ମୁକୁନ୍ଦରାଜ ଓ ଧ୍ୟାନେଶ୍ୱରଙ୍କ ମଧ୍ୟବର୍ତ୍ତୀ କାଳରେ ମହାନୁଭବ ସଂପ୍ରଦାୟର ପ୍ରତିଷ୍ଠାତା ଚକ୍ରଧରଙ୍କ ନାମ ଶୁଣାଯାଏ । ଚକ୍ରଧରଙ୍କର ପ୍ରଧାନ କର୍ମକେନ୍ଦ୍ର ଥିଲା ରିଧିପୁର । ସେ ଗୁଜୁରାଟର ଅଧିବାସୀ ବୋଲି ଜଣାଯାଏ । ତାଙ୍କ ସଂପର୍କରେ ବହୁ ଗଳ୍ପ ଶୁଣାଯାଏ । ତାଙ୍କ ଦରବାରରେ ପଣ୍ଡିତମାନେ ସମବେତ ହେଉଥିଲେ । ସେ ସମଗ୍ର ମହାରାଷ୍ଟ୍ର ପରିକ୍ରମା କରିଥିଲେ । ତାଙ୍କର ବହୁ ଶିଷ୍ୟ ଓ ଶିଷ୍ୟା ଥିଲେ । ସେମାନେ ମରାଠୀ ଭାଷା ବ୍ୟବହାର କରୁଥିଲେ । ଜନସାଧାରଣଙ୍କ ମଧ୍ୟରେ ଜ୍ଞାନ ଓ ଭକ୍ତି ପ୍ରଚାର କରିବା ପାଇଁ ମରାଠୀ ଭାଷା ଯେ ଶକ୍ତିଶାଳୀ ଭାଷା ତାହା ସେମାନେ ଉପଲବ୍ଧି କରିପାରିଥିଲେ । ମହାନୁଭବ ସଂପ୍ରଦାୟର ସଭ୍ୟମାନଙ୍କ ଦ୍ୱାରା ଲିଖିତ ରଚନାର ସଂଖ୍ୟା କିଛି କମ୍ ନୁହେଁ । ପ୍ରାଚୀନ ମରାଠୀ ଭାଷାରେ ସେମାନଙ୍କର ଲେଖନୀର ସ୍ୱାକ୍ଷର ସ୍ପଷ୍ଟ । ଉଭୟ ଗଦ୍ୟ ଏବଂ ପଦ୍ୟ ରଚନାରେ ସେମାନେ କୃତିତ୍ୱ ଅର୍ଜ୍ଜନ କରିଥିଲେ । ମରାଠୀ ଗଦ୍ୟ ସାହିତ୍ୟର ଉତ୍ପତ୍ତି ଏହି ସମୟରେ ଘଟିଥିଲା । ପବିତ୍ର ସନ୍ନ୍ୟାସ-ଜୀବନ ଯାପନ ଏହି ସଂପ୍ରଦାୟର ଲକ୍ଷ୍ୟ । ନାମଦେବ ତାଙ୍କ ଶିଷ୍ୟମାନଙ୍କ ମଧ୍ୟରେ ଅନ୍ୟତମ ଏବଂ ସଂପ୍ରଦାୟର ସଂଗଠକ ଥିଲେ । "ଲୀଳାଚରିତ" (ଚକ୍ରଧରଙ୍କ ଜୀବନୀ), "ଗୋବିନ୍ଦପ୍ରଭୁ ଚରିତ" ପ୍ରଭୃତି ଏହି ସଂପ୍ରଦାୟର ପ୍ରସିଦ୍ଧ ଗ୍ରନ୍ଥ । ସିଦ୍ଧାନ୍ତ ସୂତ୍ର ମଧ୍ୟ ଏହି ସଂପ୍ରଦାୟର ରଚନା ।

ଶତାଧିକ ଖଣ୍ଡ କବିତା ମଧ୍ୟ ଏହି ସଂପ୍ରଦାୟର କୃତିତ୍ୱ । ଶିଷ୍ୟମାନେ ସେମାନଙ୍କ ଗୁରୁଦେବଙ୍କର ଉପଦେଶ ଓ ମନ୍ତ୍ରକୁ ବିଭିନ୍ନ ରଚନାରେ ପ୍ରତିଫଳିତ କରି ଜନସାଧାରଣଙ୍କର ମହୋପକାର ସାଧନ କରିଛନ୍ତି । କିନ୍ତୁ ଆଶ୍ଚର୍ଯ୍ୟର ବିଷୟ ଏପର୍ଯ୍ୟନ୍ତ ଏହି ଉଚାଙ୍ଗ ରଚନାବଳୀ ଅନାବିଷ୍କୃତ ହୋଇ ରହିଥିଲା । ଶିଶୁପାଳବଧ, ବସ୍ତ୍ରାହରଣ (ଦାମୋଦର ଭଟ୍ଟ), ରୁକ୍ମଣୀ ସ୍ୱୟମ୍ବର (କବିନରେନ୍ଦ୍ର), ଉଦ୍ଧବ ଗୀତା, ଶ୍ରୀକୃଷ୍ଣଙ୍କ ଜୀବନୀ, ଏପରି ବହୁ ଦାର୍ଶନିକ ରଚନା ଏହି ସମ୍ପ୍ରଦାୟର ଦାନ । ଏହି ସଂପ୍ରଦାୟର ମୁଖ୍ୟ ଥିଲେ ଭାସ୍କର ଭଟ୍ଟ । ଶିଶୁପାଳ ବଧ ଓ ଉଦ୍ଧବ ଗୀତା ତାଙ୍କର ରଚନା । ଚକ୍ରଧରଙ୍କର ଗୁରୁ ଥିଲେ ଗୋବିନ୍ଦ ପ୍ରଭୁ । ସେମାନେ ସଂସ୍କାର ପନ୍ଥୀ ଥିଲେ ।

ଆଉ ଏକ ସଂପ୍ରଦାୟ ହେଉଛନ୍ତି ୱାରକାରସ୍ । ସେମାନେ ହେଉଛନ୍ତି ପାଣ୍ଡୁରପୁର ବିଠଲଙ୍କର ଭକ୍ତଗଣ । ଚକ୍ରଧର ବଦ୍ରୀନାରାୟଣ ଯାତ୍ରା କରି ସେଠାରେ ପ୍ରାଣତ୍ୟାଗ କରିଥିଲେ । ଅହିଂସା, ସତ୍ୟାନୁରାଗ ଏହି ସଂପ୍ରଦାୟର ମୂଳନୀତି । କେଶବରାଜ ସୂରୀଙ୍କ ସଂକଳିତ "ସିଦ୍ଧାନ୍ତ ସୂତ୍ର ପଥ"ରେ ଚକ୍ରଧରଙ୍କ ସମସ୍ତ ଉପଦେଶ ଦେଖିବାକୁ ମିଳେ । ଆଉ ଏକ ସଂପ୍ରଦାୟ ହେଉଛନ୍ତି "ନାଥ ସଂପ୍ରଦାୟ" । ଜ୍ଞାନେଶ୍ୱର ପ୍ରଥମେ ଏହି ସଂପ୍ରଦାୟଭୁକ୍ତ ଥିଲେ । ଏଥିରୁ ଜଣାଯାଏ ପ୍ରାଚୀନ ମରାଠୀ ସାହିତ୍ୟ ଦୁଇଗୋଟି ଧାରାରେ ପ୍ରବାହିତ ହୋଇଥିଲା । ପ୍ରଥମ ହେଉଛି ଧର୍ମ ଓ ଦର୍ଶନ ସମ୍ବଳିତ ମାର୍ଗ । ଦ୍ୱିତୀୟଟି ହେଉଛି ପ୍ରାଚୀନ କାଳର ସମ୍ୟକ ଗଦ୍ୟ ରଚନା । ଏତଦ୍ ବ୍ୟତୀତ ପାଓଡା (ଗାଥା କବିତା), ଲେଦନୀ (ପ୍ରେମ ଗୀତିକା) ନାମକ ରଚନା ପ୍ରାଚୀନ ମରାଠୀରେ ମଧ୍ୟ ପରିଦୃଷ୍ଟ । ପ୍ରାଚୀନ ଓଭିବୃତ୍ତ ଏବଂ ଅଭଙ୍ଗ ବୃତ୍ତ କବିହୃଦୟର ସମସ୍ତ ଆବେଗ ପ୍ରକାଶ କରିବାକୁ ବ୍ୟବହୃତ ହେଉଥିଲା । ସପ୍ତଦଶ ଶତାବ୍ଦୀରେ ମରାଠୀ କବିମାନେ ସଂସ୍କୃତ ସାହିତ୍ୟର କେତେକ ବୃତ୍ତ ଅବଲମ୍ବନ କରି କାବ୍ୟ ଲେଖିଥିଲେ । ପ୍ରାଚୀନ ମରାଠୀ ସାହିତ୍ୟର ଧାର୍ମିକ ତଥା ଦାର୍ଶନିକ ଅଭିମୁଖ୍ୟ ମୂଳରେ ବିଭିନ୍ନ ସଂପ୍ରଦାୟଭୁକ୍ତ ସାଧକ ଭକ୍ତମାନଙ୍କର ରଚନା ହିଁ ନିହିତ ଥିଲା ।

ମହାନୁଭବ ସଂପ୍ରଦାୟର ସାହିତ୍ୟରୁ ପ୍ରାଚୀନ ମରାଠୀ ଗଦ୍ୟ ସାହିତ୍ୟର ନିଦର୍ଶନ ମିଳିଥାଏ । କିନ୍ତୁ ବହୁ ବର୍ଷ ଧରି ସେମାନଙ୍କ ରଚନା ଅନାବିଷ୍କୃତ ଥିଲା । ଏହାର କାରଣ ମଧ୍ୟ ଏପର୍ଯ୍ୟନ୍ତ ନିର୍ଣ୍ଣିତ ହୋଇ ନାହିଁ । ତେବେ ଯୁଗବ୍ୟାପୀ ସାମାଜିକ ପ୍ରଥା ବିରୁଦ୍ଧରେ ସେମାନେ ନିର୍ଭୀକ ସମାଲୋଚନା କରିଥିବାରୁ ସମ୍ଭବତଃ ଅପେକ୍ଷାକୃତ ରକ୍ଷଣଶୀଳ ବ୍ୟକ୍ତିମାନଙ୍କ ଦ୍ୱାରା ଉପେକ୍ଷିତ ହୋଇଥିଲେ ।

**ମରାଠୀ ସାହିତ୍ୟ ଇତିହାସର ଐତିହାସିକ ବର୍ଗୀକରଣ** — ଏହାର ଇତିହାସ ପଞ୍ଚପର୍ଯ୍ୟାୟରେ ବିଭକ୍ତ କରାଯାଇ ପାରେ :

(୧) ଯାଦବକାଳ—ଖ୍ରୀ.୧୧୮୫ରୁ ୧୩୨୦, (୨) ବାହାମନୀକାଳ—୧୩୨୦ରୁ ୧୬୦୦, (୩) ମରହଟ୍ଟା କାଳ—୧୬୦୦ ରୁ ୧୭୦୦, (୪) ପେଶଓ୍ୱା କାଳ—ଖ୍ରୀ ୧୭୦୦ ରୁ ୧୮୫୦, (୫) ବ୍ରିଟିଶ୍ ଶାସନ କାଳ—୧୮୫୦ରୁ ୧୯୪୭ ।

ପ୍ରଥମ ଦୁଇ ଯୁଗରେ ମରାଠୀ ସାରସ୍ୱତ ପ୍ରତିଭା ମୁଖ୍ୟତଃ ଧର୍ମ ଓ ଦର୍ଶନର ଗଣ୍ଡି ମଧ୍ୟରେ ଆବଦ୍ଧ ଥିଲା । ଜ୍ଞାନଦେବ ପ୍ରାଚୀନ ମରାଠୀ ସାହିତ୍ୟରେ ଏକ ପ୍ରାତଃ ସ୍ମରଣୀୟ ନାମ । ସେ ଜଣେ ସନ୍ନ୍ୟାସୀଙ୍କ ପୁତ୍ର ଥିଲେ ଏବଂ ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ହିନ୍ଦୁଧର୍ମର କୁସଂସ୍କାର ଓ ରକ୍ଷଣଶୀଳତା ପ୍ରତି ସଚେତନ ହୋଇଥିଲେ । ତାଙ୍କର ଦୁଇଗୋଟି ବିଶିଷ୍ଟ ଗ୍ରନ୍ଥ "ଭାବାର୍ଥ ଦୀପିକା" (ଜ୍ଞାନେଶ୍ୱରୀ) ଏବଂ "ଅନୁଭବାମୃତ" ଗତ ଶହ ଶହ ବର୍ଷଧରି ମହାରାଷ୍ଟ୍ରୀୟ ସମାଜରେ ପଠିତ, ଆଦୃତ ଓ ପୂଜିତ ହୋଇ ଆସୁଅଛି । ମହାରାଷ୍ଟ୍ରୀୟ ଚିନ୍ତା ଓ ଜୀବନଦର୍ଶନ ଧାରା ଏହି ଗ୍ରନ୍ଥଦ୍ୱାରା ପ୍ରଭାବିତ ହୋଇଅଛି । ଚିନ୍ତାର ପ୍ରଖରତା, ଶୈଳୀର ସାବଲୀଳତା ଦ୍ୱାରା ଏହି ଗ୍ରନ୍ଥ ଚର୍ଚ୍ଚିତ । ଉଭୟ କାବ୍ୟ ଓ ଦର୍ଶନର ସମନ୍ୱୟ ଯେପରି ସେହି ପ୍ରତିଭାଶାଳୀ ସନ୍ନ୍ୟାସୀଙ୍କ ରଚନାରେ ସାଧିତ ହୋଇଥିଲା । ପତିତ ସମାଜରେ କର୍ତ୍ତବ୍ୟ ଓ ସ୍ୱଧର୍ମର ଚେତନା ସୃଷ୍ଟି କରିବା ତାଙ୍କ ରଚନାର ଥିଲା ଲକ୍ଷ୍ୟ । ମହାରାଷ୍ଟ୍ରର ଜନସାଧାରଣ ତାଙ୍କ ରଚନାର ମର୍ମ ଉପଲବ୍ଧି କରିଥାନ୍ତି । ତାଙ୍କର ସମାଧିସ୍ଥଳ "ଆଳନ୍ଦୀ" ବର୍ତ୍ତମାନ ସୁଦ୍ଧା ମହାରାଷ୍ଟ୍ରୀୟମାନଙ୍କ ପକ୍ଷରେ ଏକ ପବିତ୍ର ସ୍ଥାନରୂପେ ବିବେଚିତ ହେଉଅଛି । ଜ୍ଞାନେଶ୍ୱର (ଶ୍ରୀମଦ୍ ଭଗବଦ୍ ଗୀତାର ବ୍ୟାଖ୍ୟା) ଭକ୍ତି ମାଧ୍ୟମରେ ସମାଜରେ ଜାତିଭେଦ ପ୍ରଥା ଲୋପପାଇଁ ପ୍ରଚାର କରିଥିଲେ । ତାଙ୍କର ଏତାଦୃଶ ମତବାଦ ବହୁ ପ୍ରତିଭାଶାଳୀ ଲୋକଙ୍କୁ ଆକୃଷ୍ଟ କରିଥିଲା । ନାମଦେବ, ସବତା, ଗୋରା, ନରହରି, ଚୋକୋ ପ୍ରଭୃତି ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ ଏବଂ ସମସ୍ତେ ସମାନ, ଏହି ମନ୍ତ୍ରରେ ସେମାନେ ଉଦ୍‌ବୁଦ୍ଧ ହୋଇଥିଲେ । ଭକ୍ତି ଓ ପ୍ରେମ ମାଧ୍ୟମରେ ଭଗବାନଙ୍କୁ ଲାଭକରିବା ଥିଲା ସେମାନଙ୍କର ଲକ୍ଷ୍ୟ । ନାମଦେବ ଜାତିରେ ଦର୍ଜି ଥିଲେ । ନରହରି ଜଣେ ବଣିଆ, ସବତା ଜଣେ ମାଳୀ; କିନ୍ତୁ ସେମାନେ ସମସ୍ତେ ଜ୍ଞାନେଶ୍ୱରଙ୍କ ଆଦର୍ଶ ଗ୍ରହଣ କରିଥିଲେ । ନାମଦେବଙ୍କ ନେତୃତ୍ୱରେ ବାରକରୀ ଭକ୍ତି ସଂପ୍ରଦାୟ ଗଠିତ ହୋଇଥିଲା । ନାମଦେବଙ୍କ ଉଦାର ଦୃଷ୍ଟିକୋଣ ଯୋଗୁଁ ବାରକରୀ ସଂପ୍ରଦାୟ ଜନସାଧାରଣଙ୍କର ଆଦର ଅର୍ଜନ କରିପାରିଥିଲା । ଭକ୍ତ ହୃଦୟର ସ୍ୱତଃସ୍ଫୂର୍ତ୍ତ ମୂର୍ଚ୍ଛନା ଭଳି ଅସଂଖ୍ୟ 'ଅଭଙ୍ଗ' ନାମଦେବ ରଚନା କରିଥିଲେ । ନାମଦେବଙ୍କ ଅଭଙ୍ଗ ଜନସାଧାରଣ ଗାନ କରିଥିଲେ । ନାମଦେବ ନିଜେ ସମଗ୍ର ଉତ୍ତର ଭାରତ ପର୍ଯ୍ୟଟନ କରିଥିବା ଜଣାଯାଏ । ଅଭଙ୍ଗ ହେଉଛି ଏକ ପ୍ରକାର ଗୀତ କବିତା । ତାଙ୍କର ଶିଷ୍ୟମାନେ ମଧ୍ୟ ଅଜସ୍ର ଅଭଙ୍ଗ ଗୀତ କବିତା ରଚନା କରିଥିଲେ, ଯାହାର ପ୍ରଧାନ ଆବେଦନ ଥିଲା ଭକ୍ତି ।

୧୨୯୩ ମସିହାରେ ଆଲ୍ଲାଉଦ୍ଦିନ୍ ଖିଲଜି ଯାଦବମାନଙ୍କ ରାଜଧାନୀ ଦେବଗିରି ଅବରୋଧ କରିଥିଲେ । ଯାଦବ ବଂଶ ରାଜତ୍ୱର ଶୀଘ୍ର ଅବସାନ ଘଟିଥିଲା ଏବଂ ମହାରାଷ୍ଟ୍ରରେ ବାହ୍ମାମନୀ ରାଜତ୍ୱ ଆରମ୍ଭ ହେଲା । ଏହି ରାଜତ୍ୱର ପୂର୍ବରୁ ଲିଖିତ ଅଜସ୍ର ଭକ୍ତି ଧର୍ମୀ କାବ୍ୟକବିତା ମହାରାଷ୍ଟ୍ରର ଜନସାଧାରଣଙ୍କୁ ଶକ୍ତି ଓ ଆଶ୍ୱାସନା ଦେଇଥିଲା । ମୁସଲମାନ ରାଜତ୍ୱରେ ଧର୍ମାନ୍ଧର ଉଦ୍ଧତ ଶାସକମାନଙ୍କ ଅନ୍ୟାୟ ଅତ୍ୟାଚାର ଜନସାଧାରଣଙ୍କୁ ଆତଙ୍କିତ କରିଥିଲା । ଏହି ଅଶାନ୍ତି, ଅସ୍ଥିରତା ମଧ୍ୟରେ ସନ୍ନ୍ୟାସୀ କବିମାନଙ୍କର କେବଳ ପ୍ରାଚୀନ ଭକ୍ତିମୂଳକ ରଚନାବଳୀ ଅଶିକ୍ଷିତ ଅଜ୍ଞ ଜନସାଧାରଣଙ୍କୁ ଏକତାବଦ୍ଧ କରିଥିଲା । ଜ୍ଞାନେଶ୍ୱରଙ୍କ ସଦୃଶ ପ୍ରାଚୀନ କବିମାନଙ୍କ ପ୍ରଭାବ ସମାଜରେ ଅବ୍ୟାହତ ଥିଲା । ଏକନାଥ ଭାଗବତର ଏକାଦଶ ସ୍କନ୍ଧର ବ୍ୟାଖ୍ୟା ମାଧ୍ୟମରେ ମହାରାଷ୍ଟ୍ରୀୟ ସମାଜକୁ ପ୍ରଭାବିତ କରିଥିଲେ । ସେ ଭାଗବତ ଧର୍ମର ଥିଲେ ପ୍ରଧାନ ପ୍ରଚାରକ । ଏକନାଥଙ୍କ ପ୍ରବର୍ତ୍ତିତ ନୂତନ ମାନବବାଦ ସଂକ୍ଷେପରେ ଜ୍ଞାନଦେବଙ୍କର ଦାର୍ଶନିକ ବ୍ୟାଖ୍ୟାର ଅନୁକୂଳ ମାତ୍ର । ସେମାନଙ୍କ ପ୍ରଚାରିତ ଭକ୍ତି ଓ ଏକତା ପରବର୍ତ୍ତୀ କାଳରେ ରାମଦାସଙ୍କ ଦ୍ୱାରା ଗୃହୀତ ହୋଇଥିଲା ଓ ଶେଷରେ ତାହାହିଁ ହେଲା ମହାରାଷ୍ଟ୍ର ଧର୍ମର ଆଦର୍ଶ । ଭଗବତର ସାରବତ୍ତା ହେଉଛି ଭକ୍ତି । ଏକନାଥ ରମ୍ୟଭାଷାରେ ହଜାର ହଜାର ନରନାରୀଙ୍କ ମଧ୍ୟରେ ଭକ୍ତିର ବାର୍ତ୍ତା ପ୍ରଚାର କରିଥିଲେ । ରାମାୟଣ ମଧ୍ୟ ସେ ରଚନା କରିଥିଲେ । ଏହା ବ୍ୟତୀତ ଏକନାଥ ଜ୍ଞାନଦେବଙ୍କ ଲିଖିତ "ଜ୍ଞାନେଶ୍ୱରୀ"ର ମଧ୍ୟ ସମ୍ପାଦନା କରିଥିଲେ । ସେ ଜଣେ ସନ୍ନ୍ୟାସୀ କିମ୍ବା କବି ନ ଥିଲେ । ସେ ଥିଲେ ଜଣେ ସଂସ୍କାରକ । ସ୍ୱଧର୍ମ ରକ୍ଷାକରିବା ତାଙ୍କର ଆଦର୍ଶର ଶ୍ରେଷ୍ଠ ନିଦର୍ଶନ । ଏକନାଥଙ୍କର ଭାରୁଡ ବୋଲି ଏକ ଜାତୀୟ ଗଦ୍ୟରଚନା ଦେଖିବାକୁ ମିଳେ । ପରବର୍ତ୍ତୀ କବିମାନେ ଏକନାଥଙ୍କୁ ଅନୁସରଣ କରି ରଚନାରେ ବ୍ରତୀ ହୋଇଥିଲେ । ଦଶପନ୍ତ ଏକନାଥଙ୍କ ଜଣେ ପ୍ରିୟ ଶିଷ୍ୟ ଥିଲେ । ବାହ୍ମାମନୀ ରାଜତ୍ୱ ହୀନଦାସତ୍ୱ ଓ ଧର୍ମାନ୍ଧତା ଦ୍ୱାରା ଚିହ୍ନିତ । ଏହି ସମୟରେ ଧର୍ମକୁ ଭିତ୍ତିକରି ଜନସାଧାରଣଙ୍କୁ ଦଣ୍ଡ ଦିଆ ଯାଉଥିଲା । ଅନ୍ୟ ପକ୍ଷରେ କହିବାକୁ ଗଲେ ଏହି ସମୟରେ ଯେଉଁ ଧର୍ମ ଓ ଦର୍ଶନଭିତ୍ତିକ ରଚନା ସବୁ ଲିଖିତ ହୋଇଥିଲା, ମହାରାଷ୍ଟ୍ର ସମାଜ ଉପରେ ତାର ପ୍ରଭାବ ସୁଦୂରପ୍ରସାରୀ ହୋଇଥିଲା । ମୁକ୍ତେଶ୍ୱର ଏକନାଥଙ୍କ ନାତି ଥିଲେ । ସେ ମଧ୍ୟ ପ୍ରପିତାମହଙ୍କ ସଦୃଶ ସମାଜରେ ପରିବର୍ତ୍ତନ ଆଣିବା ପାଇଁ ଉଦ୍ୟମ କରିଥିଲେ । ସମ୍ଭବତଃ ଶିବାଜୀଙ୍କ ଆଗମନ ଅପେକ୍ଷାରେ ଏହି ଯୁଗ ଯେପରି ପ୍ରସ୍ତୁତ ହେଉଥିଲା । ସପ୍ତଦଶ ଶତାବ୍ଦୀ ମରାଠୀ ସାହିତ୍ୟରେ ଏକ ସ୍ମରଣୀୟ କାଳ । କାରଣ ତୁକାରାମ ଏହି ସମୟରେ ଅଭଙ୍ଗ ରଚନା କରି ମହାରାଷ୍ଟ୍ରର ସାଧାରଣ ସୁପ୍ତ ଜୀବନକୁ ସ୍ପନ୍ଦିତ କରି ଦେଇଥିଲେ । ତାଙ୍କର ଶକ୍ତିଶାଳୀ ବ୍ୟକ୍ତିତ୍ୱ ତଥା ଧର୍ମଧାରଣା ସମ୍ପର୍କରେ ବହୁ ଗଳ୍ପ ଶୁଣା ଯାଇଥାଏ ।

ତୁକାରାମଙ୍କର ଭକ୍ତିମୂଳକ କବିତାର ଭାଷା ଯେପରି ଆବେଗମୟ, ଗମ୍ଭୀର ଓ ପ୍ରାଣସ୍ପର୍ଶୀ ତାହା ମରାଠୀ ସାହିତ୍ୟରେ ଅତୁଳନୀୟ । ତାଙ୍କର ଶୈଳୀ ବସ୍ତୁତଃ ପବିତ୍ରତା ଓ ଭାବଗାମ୍ଭୀର୍ଯ୍ୟ ଦ୍ୱାରା ଚିହ୍ନିତ । ପାଣ୍ଡିତ୍ୟ କିମ୍ବା ଦର୍ଶନ ତାଙ୍କର ଦାବୀ ନଥିଲା । ପ୍ରାଣୋଚ୍ଛ୍ୱାସ ଓ ବିଶ୍ୱସ୍ତତା ତାଙ୍କ ସାହିତ୍ୟିକ କୃତିର ମୁଖ୍ୟ ଆକର୍ଷଣ । ଓ୍ୱାରକରି ପନ୍ଥାର ସେ ହେଉଛନ୍ତି ଶ୍ରେଷ୍ଠ ସାଧକ । ତାଙ୍କର ମାନବବାଦ ଓ ନମ୍ରତା ତାଙ୍କୁ ଭକ୍ତି ସାହିତ୍ୟରେ ଶ୍ରେଷ୍ଠ ଆସନ ଦେଇଅଛି । ତୁକାରାମ ମହାରାଷ୍ଟ୍ରର ଜନସାଧାରଣଙ୍କ ମଧ୍ୟରେ ଏକ ବିରାଟ ଐକ୍ୟସୂତ୍ର ରୂପେ ବିବେଚିତ ହୋଇଛନ୍ତି । ଭାଗବତ ଧର୍ମର ସେ ହେଉଛନ୍ତି ଶ୍ରେଷ୍ଠ ସାଧକ । ସମ୍ଭବତଃ ତୁକାରାମଙ୍କର ରଚନାବଳୀ ମହାରାଷ୍ଟ୍ରର ଜନସାଧାରଣଙ୍କୁ ଏକତାବଦ୍ଧକରି ଏକ ଶକ୍ତିଶାଳୀ ରାଷ୍ଟ୍ର ଗଠନରେ ସାହାଯ୍ୟ କରିଥିଲା । ସେ ନାମଦେବଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇଥିଲେ । ଦିବ୍ୟ ଜୀବନ ସନ୍ଧାନ କରିବା ଥିଲା ତାଙ୍କର ଲକ୍ଷ୍ୟ । ସେଥିପାଇଁ ଶିକ୍ଷା-ବିବର୍ଜିତ ଏହି କବି ବିଶେଷ ଭାବରେ ସାଧୁ-ଆତ୍ମିକ ଥିଲେ । ଜ୍ଞାନେଶ୍ୱରଙ୍କ ପରେ ତୁକାରାମ ହିଁ ଏକମାତ୍ର ମରାଠୀ କବି, ଯାହାଙ୍କର ସହସ୍ର ଅଭଙ୍ଗ ଗାନକରି ଜନସାଧାରଣ କୃତକୃତ୍ୟ ହୁଅନ୍ତି, ମୁକ୍ତେଶ୍ୱର ହେଉଛନ୍ତି ଏକନାଥଙ୍କର ପୌତ୍ର । ସେ ସଂସ୍କୃତ ମହାଭାରତର ଅବଲମ୍ବନରେ ମରାଠୀ ଭାଷାରେ ମହାଭାରତ ରଚନା କରିଥିଲେ । ତାହା କବିର ମୌଳିକତା ଓ ନୂତନ ପରିକଳ୍ପନାରେ ରସାଣିତ ହୋଇପାରିଥିଲା । ତାଙ୍କର ରଚନାରେ ସମସାମୟିକ ଐତିହାସିକ ଘଟଣାବଳୀର ମଧ୍ୟ ସୂକ୍ଷ୍ମ ସୂଚନା ଦେଖିବାକୁ ମିଳେ ।

ତୁକାରାମଙ୍କର ସମସାମୟିକ ହେଉଛନ୍ତି ସାଧକ ରାମଦାସ ଓ ବାମନ ପଣ୍ଡିତ । ଯେଉଁ ଜାତୀୟ ମୁକ୍ତିର ତୀବ୍ର ଅଭିଳାଷ ମହାରାଷ୍ଟ୍ର ଭୂମିରେ ଚେତନା ସୃଷ୍ଟି କରିଥିଲା, ତାହା ସାଧୁ ରାମଦାସଙ୍କ ରଚନାରେ ବ୍ୟାପକ ଭାବେ ପ୍ରତିଫଳିତ ହୋଇଥିଲା । ସାଧୁ ରାମଦାସ ଜାତୀୟ ଅବସାଦ ଓ ଅବନତି ପ୍ରତି ଅବହିତ ଥିଲେ । ସେଥିପାଇଁ ମହାରାଷ୍ଟ୍ର ସମାଜକୁ ପୁନର୍ଗଠନ କରିବା ଥିଲା ତାଙ୍କର ଏକମାତ୍ର ଲକ୍ଷ୍ୟ । ଜନସାଧାରଣଙ୍କ ଆଧ୍ୟାତ୍ମିକ ଜାଗରଣ ପାଇଁ ସେ ଅନେକ ଗ୍ରନ୍ଥ ଲେଖିଥିଲେ । ସେହି ଗ୍ରନ୍ଥମାନଙ୍କରେ ଗଭୀର ଧର୍ମଭାବ, ବାସ୍ତବଜ୍ଞାନ ଓ ସାମାଜିକ ଚେତନା ପ୍ରତିଫଳିତ ହୋଇଥିଲା । ତାଙ୍କର ଲିଖିତ 'ଦାସବୋଧ' ମହାରାଷ୍ଟ୍ରର ଜନସାଧାରଣଙ୍କର ପ୍ରଧାନ ଧର୍ମଗ୍ରନ୍ଥ ବୋଲି କୁହାଯାଇପାରେ । ରାମଦାସ ଛତ୍ରପତି ଶିବାଜୀଙ୍କ ଗୁରୁ ଭାବରେ ବେଶ୍ ସୁନାମ ଅର୍ଜନ କରିଥିଲେ । ତାଙ୍କର ସାହିତ୍ୟିକ ରଚନାବଳୀ ଓ ଶିଷ୍ୟମାନଙ୍କର ସଂଗଠନ କାର୍ଯ୍ୟ ମହାରାଷ୍ଟ୍ର ସମାଜରେ ଧାର୍ମିକ ଆନୁଗତ୍ୟ ଓ ସାମାଜିକ ଚେତନା ସୃଷ୍ଟି କରି ପାରିଥିଲା । ବାମନ ପଣ୍ଡିତଙ୍କ ରଚନାରେ ଜ୍ଞାନେଶ୍ୱରଙ୍କର ନୈଷ୍ଠିକ ଦାର୍ଶନିକ ବ୍ୟାଖ୍ୟାର ପରିମେର ଓ

ମୁକ୍ତେଶ୍ୱରଙ୍କର ଶୈଳୀର ପ୍ରତ୍ୟକ୍ଷତା ଏକନ୍ଥ ଦେଖିବାକୁ ମିଳେ । ତାଙ୍କର ଆଲୋଚନାର ପ୍ରଧାନ କେନ୍ଦ୍ର ଥିଲା ପୁରାଣ । ଶତାଧିକ ପୌରାଣିକ ଗଳ୍ପର ଅବଲମ୍ବନରେ ଏବଂ ଆଭିଜାତ୍ୟପୂର୍ଣ୍ଣ ଶୈଳୀରେ ସେ ଆଖ୍ୟାୟିକା ରଚନା କରିଥିଲେ । ତାଙ୍କର ଶୈଳୀ ମୁଖ୍ୟତଃ ବର୍ଣ୍ଣନା ପ୍ରଧାନ । ସେ ଗୀତାର ବ୍ୟାଖ୍ୟା ମଧ୍ୟ ଲେଖିଥିଲେ । ତାହାର ନାମ "ଯଥାର୍ଥ ଦୀପିକା" । ଜ୍ଞାନେଶ୍ୱରଙ୍କର "ଜ୍ଞାନେଶ୍ୱରୀ" ଅର୍ଥାତ୍ "ଭାବାର୍ଥ ଦୀପିକା" ଠାରୁ ଏହା ସଂପୂର୍ଣ୍ଣ ସ୍ୱତନ୍ତ୍ର । ବାମନ ପଣ୍ଡିତ ଜ୍ଞାନ ମାର୍ଗର ପକ୍ଷପାତୀ ଥିଲେ । କିନ୍ତୁ ଜ୍ଞାନଦେବ ଭକ୍ତିମାର୍ଗର ପକ୍ଷପାତୀ ଥିଲେ । 'ଯଥାର୍ଥ ଦୀପିକା', "ଜ୍ଞାନେଶ୍ୱରୀ" ସଦୃଶ ଜନସାଧାରଣଙ୍କର ଭକ୍ତି ଓ ଶ୍ରଦ୍ଧା ଅର୍ଜନ କରି ପାରିନାହିଁ । ବାମନ ପଣ୍ଡିତଙ୍କ ରଚନାର ସ୍ୱର ସଂପୂର୍ଣ୍ଣ ଭିନ୍ନ ! ତାହା ବୌଦ୍ଧିକତା ଓ ଆଧ୍ୟାତ୍ମିକତା ଦ୍ୱାରା ପ୍ରଭାବିତ ବା ଚାଳିତ । ନଗେଶ ଏବଂ ଭିଖଲ ପ୍ରଭୃତି କବିମାନେ ଶିବାଜୀଙ୍କ ସମୟର କାବ୍ୟକବିତାର ପୁନରାବୃତ୍ତି କରିଥିଲେ । ବାମନଙ୍କ ଆଦର୍ଶରେ ମଧ୍ୟ ଗୋଟିଏ କବିଗୋଷ୍ଠୀ ଆବିର୍ଭୂତ ହୋଇଥିଲେ । ସେହିପରି ରାମଦାସଙ୍କ ଚିନ୍ତା ଓ ଆଦର୍ଶରେ ପ୍ରଭାବିତ କତିପୟ କବି ମହାରାଷ୍ଟ୍ରର ଧାର୍ମିକ ତଥା ନୈତିକ ଜାଗରଣ ପାଇଁ ଆହ୍ୱାନ ଦେଇଥିଲେ । ଏହି ସଂପ୍ରଦାୟର କେତେକ ସଭ୍ୟ ବିଭିନ୍ନ ପ୍ରାନ୍ତକୁ ଯାଇକରି ସେମାନଙ୍କ ଗୁରୁଙ୍କ ଆଦର୍ଶ ପ୍ରଚାର କରିଥିଲେ । ଏହି ଉଦ୍ଦେଶ୍ୟରେ ସେମାନେ ତାଞ୍ଜୋର ପରିଦର୍ଶନ କରିଥିଲେ । ସେତେବେଳେ ସେଠାରେ ଶିବାଜୀଙ୍କର ବୈମାତୃକ ଭ୍ରାତା ରାଜତ୍ୱ କରୁଥିଲେ । ରାମଦାସ ସଂପ୍ରଦାୟର ଭକ୍ତମାନଙ୍କୁ ରାମଦାସପନ୍ଥୀ କୁହାଯାଏ । ତାଞ୍ଜୋରଠାରେ ରଘୁନାଥ ପଣ୍ଡିତ ନାମରେ ଜଣେ ପ୍ରସିଦ୍ଧ କବି ଥିଲେ । ତାଙ୍କ ରଚନାରେ ବାମନ ପଣ୍ଡିତଙ୍କର ଶୈଳୀ ଓ ରାମଦାସଙ୍କ ଆଦର୍ଶ ପ୍ରତିଫଳିତ ହୋଇଥିଲା । ତାଙ୍କ ଦ୍ୱାରା ଲିଖିତ "ଦମୟନ୍ତୀ ସ୍ୱୟମ୍ବର" ଏକ ପ୍ରସିଦ୍ଧ କାବ୍ୟିକ ରଚନା । ଏହି ସମୟରେ ହିଁ ପ୍ରଥମ ମରାଠୀ ନାଟକ ରଚିତ ହୋଇଥିଲା ।

ଏହି ପଣ୍ଡିତ କବି ଦ୍ୱୟଙ୍କର ପରମ୍ପରା ମରାଠୀ ସାହିତ୍ୟରେ ଅପୂର୍ବ ଉତ୍ସାହ ସୃଷ୍ଟି କରିଥିଲା । ଏହି କବିମାନେ ସଂସ୍କୃତ ଶୈଳୀରେ ଲେଖିବାପାଇଁ ଆଗ୍ରହ ପ୍ରକାଶ କରିଥିଲେ । ସେଥିପାଇଁ ରଘୁନାଥ ପଣ୍ଡିତ ସମ୍ରାଜ, ନିରଞ୍ଜନ ଓ ମାଧବ ପ୍ରଭୃତି କବିମାନଙ୍କ ଲେଖାରେ ସଂସ୍କୃତ ଆଲଙ୍କାରିକ ରୀତି ଅନୁସୃତ । ମୁକ୍ତେଶ୍ୱରଙ୍କର ଆଦର୍ଶ ଓ ପରଂପରା କବି ଶ୍ରୀଧରଙ୍କ ଲେଖାରେ ପ୍ରତିଫଳିତ ହୋଇଥିଲା । ସେ ମହାଭାରତକୁ କେନ୍ଦ୍ର କରି କେତେକ ଲେଖା ଲେଖିଥିଲେ । ଏହି ଯୁଗରେ ବିଶେଷତଃ ରାମଦାସଙ୍କ ରଚନାରେ ମରାଠାମାନଙ୍କର ସ୍ୱରାଜ୍ୟ ପ୍ରତିଷ୍ଠା ସମ୍ପର୍କରେ ଆଦର୍ଶ ପରିକଳ୍ପନା ବିଶେଷ ଭାବରେ ଦେଖିବାକୁ ମିଳେ । ସ୍ୱରାଜ୍ୟର ଯେଉଁ ମୌଳିକ ପ୍ରେରଣା, ଯେଉଁ ଉତ୍ସାହ, ତାହା ସେମାନଙ୍କ ରଚନାକୁ ସ୍ପନ୍ଦିତ

କରି ଦେଇଥିଲା। ଜାତୀୟ ଗର୍ବ ଓ ଆତ୍ମବିଶ୍ୱାସ ଏହି ଯୁଗୀୟ ସାହିତ୍ୟ କୃତିର ଥିଲା ଧର୍ମ। ଏହାରି ପ୍ରଭାବରେ ମରାଠୀ ସାହିତ୍ୟରେ ଏକ ନୂତନ କବିତାର ସୂତ୍ରପାତ ହୋଇଥିଲା। ଏତାଦୃଶ କବିମାନେ ସାହିର୍ ନାମରେ ପରିଚିତ ହୋଇଥିଲେ। ଏକ ନିହାତି ସରଳ ସଂଗୀତ ଯନ୍ତ୍ର ମାଧ୍ୟମରେ ଏହି ଗୀତ ସବୁ ଗାନ କରୁଥିଲେ। ଏହି ଗୀତଗୁଡ଼ିକ "ପାଓଡା" ଓ "ଲବଣୀ" ନାମରେ ପରିଚିତ। 'ପାଓଡା' ବୀରତ୍ୱ-ବ୍ୟଞ୍ଜକ ରଚନା। ଶିବାଜୀ ଏବଂ ଆଫଜଲ ଖାଁଙ୍କର ସାକ୍ଷାତ୍ ସମ୍ପର୍କରେ ଲିଖିତ ପଦ୍ୟ ହେଉଛି ପ୍ରଥମ 'ପାଓଡା' ଏବଂ ସିଂହଗଡ଼ ଦୁର୍ଗ ଅବରୋଧ ସଂପର୍କରେ ଲିଖିତ ପଦ୍ୟ ହେଉଛି ଦ୍ୱିତୀୟ ଅର୍ଘ୍ୟ। ପ୍ରଥମଟି ଅଗ୍ନିଦାସ ଓ ଦ୍ୱିତୀୟଟି ତୁଳସୀଦାସଙ୍କ ଦ୍ୱାରା ଲିଖିତ ହୋଇଥିଲା। ପ୍ରଥମ "ପାଓଡା" ରଚନା ଶିବାଜୀ ଏବଂ ତାଙ୍କ ମାତା ଜୀଜାବାଈ ଶୁଣିଥିଲେ। ଏହି ସବୁ ରଚନାକୁ ବାଲାଡ୍ (Ballad) ବା ଗାଥା କବିତା ଆଖ୍ୟା ଦିଆଯାଏ। "ଲବଣୀ" ହେଉଛି ପ୍ରେମ-ବର୍ଣ୍ଣନାମୂଳକ କ୍ଷୁଦ୍ର କବିତା। ଏହି ପ୍ରେମ କିନ୍ତୁ ରାଧାକୃଷ୍ଣଙ୍କ ପ୍ରେମରେ ସୀମାବଦ୍ଧ ନଥିଲା। ଏହା ସାମାଜିକ ଓ ସାଧାରଣ ସ୍ତରକୁ ସ୍ପର୍ଶ କରିଥିଲା। ଶିବାଜୀଙ୍କ ରାଜତ୍ୱ ସମୟରେ ମରାଠୀ ଗଦ୍ୟ ସାହିତ୍ୟର ମଧ୍ୟ ଅଭ୍ୟୁଦୟ ଘଟିଥିଲା। ପୂର୍ବେ ଉଲ୍ଲେଖ କରାଯାଇଛି—ମହାନୁଭବ ସମ୍ପ୍ରଦାୟର ଗଦ୍ୟ ରଚନା ଶତାବ୍ଦୀ ଧରି ପ୍ରସାରଲାଭ କରିଥିଲା। ଯାଦବମାନଙ୍କ ସମୟରେ ଏକ ପ୍ରକାର ଐତିହାସିକ ଗଦ୍ୟ ରଚନାର ସୂତ୍ରପାତ ହୋଇଥିଲା। ମରାଠୀ ବାଖାର୍କାର୍ମାନେ ରାଜାମାନଙ୍କର ଅଭିଯାନ ଗଦ୍ୟରେ ବର୍ଣ୍ଣନା କରି-ଥିଲେ। ଖ୍ରୀଷ୍ଟାନ୍ ପାଦ୍ରୀ ଷ୍ଟିଫେନ୍ଙ୍କର ରଚିତ ଖ୍ରୀଷ୍ଟ ପୁରାଣର ଗଦ୍ୟ ଭୂମିକା ଏକ ଉଲ୍ଲେଖଯୋଗ୍ୟ ଘଟନା। କିନ୍ତୁ ଶିବାଜୀଙ୍କ ସମୟର ଗଦ୍ୟ ରଚନା ମୁଖ୍ୟତଃ ସରକାରୀ ଚିଠିପତ୍ର ଓ ଶାସନ ସଂକ୍ରାନ୍ତୀୟ ଦଲିଲ୍‌ମାନଙ୍କରେ ସୀମାବଦ୍ଧ ଥିଲା। ଏହି ସମୟର ସର୍ବ ପୁରାତନ ବାଖାର ହେଉଛି ଓ୍ୱାକେନିବିସ୍ ବାଖାର୍। ସେଥିରେ ଶିବାଜୀଙ୍କର ଜୀବନ ବୃତ୍ତାନ୍ତ ବର୍ଣ୍ଣିତ ହୋଇଥିଲା। ଶିବାଜୀଙ୍କ ଜୀବନ ଚରିତର ଏହି ପୁସ୍ତକ ହେଉଛି ଭିତ୍ତି।

"ସଭାସଦୀ ବାଖାର" ହେଉଛି ଶିବାଜୀଙ୍କ ଜୀବନ ସଂପର୍କରେ ଆଉ ଏକ ସ୍ୱତନ୍ତ୍ର ରଚନା। ସେଥିରେ ଏକ ଉନ୍ନତ ଗଦ୍ୟଶୈଳୀ ପରିଲକ୍ଷିତ ହୋଇଥାଏ। ଐତିହାସିକ ଗଦ୍ୟର ଏକ ଅତୁଳନୀୟ ନିଦର୍ଶନ ହେଉଛି ଶମ୍ଭୁଜୀଙ୍କର ମନ୍ତ୍ରୀ ରାମଚନ୍ଦ୍ର ପନ୍ତ ଅମାତ୍ୟଙ୍କର ଲିଖିତ 'ଆଜ୍ଞାପତ୍ର'। ରାଜନୈତିକ ଚିନ୍ତା ତଥା ଯୁଗୀୟ ଗଦ୍ୟରୀତି ଏହି ଆଜ୍ଞାପତ୍ରରୁ ସୂଚିତ ହୋଇଥାଏ। ଶମ୍ଭୁଜୀ କୋଲ୍ହାପୁର ରାଜ୍ୟର ପ୍ରତିଷ୍ଠାତା ଥିଲେ।

ପେଶଓ୍ୱା ରାଜତ୍ୱରେ ମରାଠୀ ସାହିତ୍ୟ—ଶିବାଜୀଙ୍କ ପରବର୍ତ୍ତୀ ଯୁଗ ରାଜନୈତିକ ସଂକଟଦ୍ୱାରା ଜଟିଳ ହୋଇଥିଲା। ଜନସାଧାରଣଙ୍କର

ଆନୁଗତ୍ୟ ଓ ସାହସ ଯୋଗୁଁ ହିଁ ରାଜାରାମ ମରାଠା ରାଜ୍ୟକୁ ରକ୍ଷା କରିପାରିଥିଲେ । କିନ୍ତୁ ରାଜନୈତିକ ଅସ୍ଥିରତା କ୍ରମେ ମରାଠା ରାଜ୍ୟକୁ ଦୁର୍ବଳ କରିଥିଲା । ଆଭ୍ୟନ୍ତରୀଣ ଅଶାନ୍ତି ଯୋଗୁଁ ସାହିତ୍ୟ ଓ ସଂସ୍କୃତିର ଧାରା କ୍ଷୀଣ ହୋଇଯାଇଥିଲା । ତେବେ ରାଜା-ରାମଙ୍କର ଉଦ୍ୟମ ଯୋଗୁଁ ସେହି ଧାରା ସଂପୂର୍ଣ୍ଣ ନିଶ୍ଚିହ୍ନ ହୋଇ ପାରି ନଥିଲା । ମହାରାଷ୍ଟ୍ରର କେନ୍ଦ୍ରାଞ୍ଚଳରେ ଏହି ସମୟରେ ନିରାପତ୍ତା ଓ ସ୍ଥିରତା ଥିଲା । ବିଶେଷତଃ ପେଶୱାମାନଙ୍କର ରାଜଧାନୀ ପୁନା ବିଦ୍ୟା ଓ ସାହିତ୍ୟ ଚର୍ଚ୍ଚା କେନ୍ଦ୍ରରେ ପରିଣତ ହୋଇଥିଲା । ମହାରାଷ୍ଟ୍ରୀୟ ସଂସ୍କୃତି ଓ ସାମାଜିକ ଜୀବନର ତାହା ହିଁ ଥିଲା ପ୍ରଧାନ ପୀଠ । ପ୍ରଥମ ପେଶୱାମାନଙ୍କ ଅମଳରେ ମରାଠୀ ସାହିତ୍ୟ କେତେକ ଦୃଷ୍ଟିରୁ ଗୌରବ ଅର୍ଜ୍ଜନ କରିଥିଲା । ସେମାନଙ୍କ ଶାସନର ପ୍ରଥମ ପର୍ଯ୍ୟାୟରେ ଶ୍ରୀଧର ଓ କୃଷ୍ଣ ଦୟାର୍ଣ୍ଣବ ପ୍ରଭୃତି ବିଶିଷ୍ଟ କବି ଥିଲେ । ଶ୍ରୀଧରଙ୍କର ଭକ୍ତିରସାତ୍ମକ ରଚନା-ବଳୀ ଓ ଦୟାର୍ଣ୍ଣବଙ୍କର ଦାର୍ଶନିକ ରଚନାବଳୀ ମହାରାଷ୍ଟ୍ରୀୟ ସମାଜରେ ବିଶେଷ ଆଦୃତ ହୋଇଥିଲା । ଶ୍ରୀଧରଙ୍କର "ରାମବିଜୟ", "ହରି ବିଜୟ", "ପାଣ୍ଡବ ପ୍ରତାପ", ଭକ୍ତିପ୍ରାଣ ହିନ୍ଦୁମାନଙ୍କ ଦ୍ୱାରା ଏପର୍ଯ୍ୟନ୍ତ ପଠିତ ହେଉଅଛି ଏବଂ ତାଙ୍କର "ଶିବଲୀଲାମୃତ" ଘରେ ଘରେ ମରାଠୀ ଗୃହିଣୀମାନଙ୍କର କଣ୍ଠରେ ଏବେ ମଧ୍ୟ ପ୍ରତିଧ୍ୱନିତ ହେଉଅଛି । କିନ୍ତୁ ପେଶୱା ରାଜତ୍ୱ ସମୟର ପ୍ରକୃତ ଅବସ୍ଥା ପଣ୍ଡିତ ମୋରୋ ପନ୍ତଙ୍କ ବିଭିନ୍ନ ରଚନାରେ ପ୍ରତିଫଳିତ । ଏହାଙ୍କୁ କେହି କେହି "ଆର୍ଯ୍ୟପନ୍ତ" ବୋଲି ବର୍ଣ୍ଣନା କରିଥାନ୍ତି । ମୂଳ ସଂସ୍କୃତ କାବ୍ୟ ଓ ଅଳଙ୍କାର ଶାସ୍ତ୍ରରେ ତାଙ୍କର ଗଭୀର ପ୍ରବେଶ ଥିଲା । ବିଭିନ୍ନ ପୁରାଣର ଆଖ୍ୟାୟିକା ଶୁଣାଇ ସେ ଆବାଳବୃଦ୍ଧବନିତାମାନଙ୍କୁ ମୁଗ୍ଧ କରି ଦେଉଥିଲେ । ଅଷ୍ଟାଦଶ ଶତାବ୍ଦୀର ମରାଠା କାବ୍ୟ ସାଧନାରେ ସେ ଅଗ୍ରଣୀ କବି ଥିଲେ । ସେ ପଣ୍ଡିତ ପରମ୍ପରାର ଶେଷ ପ୍ରତିନିଧିମୂଳକ କବି ବୋଲି ମଧ୍ୟ ବିବେଚିତ ହୋଇଥାନ୍ତି । "ମନ୍ତ୍ରଭାଗବତ", 'ଆର୍ଯ୍ୟ ଭାରତ', "କୃଷ୍ଣବିଜୟ" ଏବଂ ରାମାୟଣର ବହୁବିଧ ଗାଥା କବିତା ତାଙ୍କର କୃତି । କେକାବଳୀ ତାଙ୍କର ଏକ ଦୀର୍ଘ ବର୍ଣ୍ଣନାତ୍ମକ ରଚନା । ତାଙ୍କ ବର୍ଣ୍ଣନାରେ ଆର୍ଯ୍ୟାବର୍ତ୍ତି ବିଶେଷ ବ୍ୟବହାର ଦେଖାଯାଏ । ବଡ଼ ଆଶ୍ଚର୍ଯ୍ୟର କଥା ଯେ ଅଷ୍ଟାଦଶ ଶତାବ୍ଦୀର ଇଂରେଜୀ କାବ୍ୟ ସାହିତ୍ୟର ବିଶିଷ୍ଟ ଲକ୍ଷଣ ଏହି ମରାଠୀ କବିଙ୍କ କାବ୍ୟ କବିତାରେ ପ୍ରତିଫଳିତ ହୋଇଥିଲା । ବିଭିନ୍ନ ପରିସ୍ଥିତି ଓ ପରିପ୍ରେକ୍ଷୀରେ ରାମାୟଣର ବିଭିନ୍ନ ଚରିତ୍ରକୁ କେନ୍ଦ୍ରକରି ତାଙ୍କର ରଚନାବଳୀ ପରିକଳ୍ପିତ ହୋଇଥିଲା । "ସୀତା ରାମାୟଣ" ଏହିପରି ଏକ ଆଦୃତ ରଚନା । ବର୍ଣ୍ଣନା ଚାତୁରୀ ଓ ମୌଳିକତା ମୋରୋ ପନ୍ତଙ୍କର ହେଉଛି କାବ୍ୟିକ ଯୋଗ୍ୟତା । କ୍ଷୁଦ୍ର କ୍ଷୁଦ୍ର ଭକ୍ତିମୂଳକ କବିତା, ସ୍ତୋତ୍ର ରଚନା କରିବାରେ ସେ ମଧ୍ୟ ସିଦ୍ଧହସ୍ତ ଥିଲେ । "କେକାବଳୀ", ଗଙ୍ଗାପ୍ରାର୍ଥନା, କାଶୀସ୍ତୁତି ପ୍ରଭୃତି ଏହି ଶ୍ରେଣୀର କବିତା । ପରବର୍ତ୍ତୀ କାଳରେ ବହୁ କବି ଓ ଲେଖକ ମୋରୋପନ୍ତଙ୍କୁ ଅବଲମ୍ବନ କରି ସାହିତ୍ୟ

ରଚନା କରିଥିଲେ । ସେ ମଧ୍ୟ ଚନ୍ଦବଂଧ ରଚନାର ପକ୍ଷପାତ ଥିଲେ । ପେଶଓ୍ୱାମାନଙ୍କ ରାଜତ୍ୱ ସମୟରେ ପାଓଡ଼ା ଓ ଲବଣୀ ଜାତୀୟ କ୍ଷୁଦ୍ର ଗୀତିକବିତାର ମଧ୍ୟ ପ୍ରସାର ଘଟିଥିଲା । ସାହିର କବିଗୋଷ୍ଠୀଙ୍କ ଆବିର୍ଭାବରେ ଏହି ସମୟର ମରାଠୀ ସାହିତ୍ୟ ନୂତନ ମୂର୍ଚ୍ଛନା ଓ ନୂତନ ଛନ୍ଦରେ ଝଂକୃତ ହୋଇଥିଲା । ବାଜୀରାଓ ଓ ମାଧବ ରାଓଙ୍କ ବୀରତ୍ୱ କବିମାନଙ୍କୁ ଉଦ୍‌ବୁଦ୍ଧ କରି ଦେଇଥିଲା । ସତେ ଅବା ମରାଠା ଜନସାଧାରଣଙ୍କର ଅତୀତ ଗୌରବ ଏହି କବିମାନଙ୍କ ରଚନାରେ ପ୍ରତିମୂର୍ତ୍ତି ହୋଇଥିଲା । ମରାଠା ସେନାପତିମାନଙ୍କର ବିଜୟକାହାଣୀ ଓ ସେମାନଙ୍କର ଆମୋଦପ୍ରମୋଦ ଉପରୋକ୍ତ ଗୀତିକବିତାମାନଙ୍କରେ ବଳିଷ୍ଠ ଭାବରେ ପ୍ରକାଶିତ ହୋଇଥିଲା । ସାହିର କବିମାନେ ପ୍ରକୃତରେ ଗଣକବି ଥିଲେ । ଜନସାଧାରଣଙ୍କର ଆବେଗ, ଉଚ୍ଛ୍ୱାସ ଓ ପ୍ରାଣର ନିଭୃତ ବ୍ୟଥା ସେମାନେ ଉପଲବ୍ଧି କରି ପାରିଥିଲେ । ସେନାପତିମାନଙ୍କର ବୀରତ୍ୱପୂର୍ଣ୍ଣ ଅଭିଯାନ, ଅନ୍ୟ ଦିଗରେ ବିରହିଣୀ ମହାରାଷ୍ଟ୍ର-ରମଣୀମାନଙ୍କର ସ୍ୱାମୀମାନଙ୍କ ପାଇଁ ବ୍ୟାକୁଳ ପ୍ରତୀକ୍ଷା ସାହିର କବିମାନଙ୍କ ଲେଖାରେ ରସପୂର୍ଣ୍ଣ ଭାଷାରେ ପ୍ରତିଫଳିତ ହୋଇପାରିଥିଲା । ଏହି ସମୟରେ ପ୍ରାଚୀନ ରୀତିରେ ମଧ୍ୟ ଅନେକ କାବ୍ୟ ରଚିତ ହୋଇଥିଲା । ପୁନଶ୍ଚ ସାହିର କବିମାନଙ୍କ ଲେଖାରେ ବେଦାନ୍ତ ଓ ବିଭିନ୍ନ ଦର୍ଶନ ଶାସ୍ତ୍ରର ବ୍ୟାଖ୍ୟା ମଧ୍ୟ ସ୍ଥାନ ପାଇଥିଲା । ଆତ୍ମା ପରମାତ୍ମା ସଂପର୍କୀୟ ବିଷୟର କେତେକ କବିଙ୍କ ଲେଖାରେ ଶୀର୍ଷସ୍ଥାନ ଅଧିକାର କରିଥିଲା । ତଥାପି ସାଧାରଣ ନୈତିକ ଅବସ୍ଥାର ଏହି ସମୟରେ ଅବନତି ଦେଖା ଦେଇଥିଲା । ପ୍ରାଚୀନ କାଳର ସାଧୁ ଓ ସନ୍ନ୍ୟାସୀଙ୍କର ଜୀବନୀ ପଦ୍ୟରେ ଲେଖା ଯାଇଥିଲା । ଜ୍ଞାନଦେବଙ୍କ ସମୟରୁ ଏହି ଜାତୀୟ ରଚନାର ଆରମ୍ଭ ହୋଇଥିଲା । ପଦ୍ୟରେ ସଚ୍ଚିଦାନନ୍ଦ ବାବାଙ୍କ ଦ୍ୱାରା ଲିଖିତ ଜ୍ଞାନଦେବଙ୍କ ଜୀବନୀ ଉଲ୍ଲେଖଯୋଗ୍ୟ । ଏହାପରେ ନାମଦେବ, ଏକନାଥ, ଦାଶୋପନ୍ତ, ରାମଦାସ, ତୁକାରାମ ପ୍ରଭୃତିଙ୍କର ଜୀବନୀ ପଦ୍ୟରେ ଲେଖା ହୋଇଥିଲା । ପେଶଓ୍ୱାମାନଙ୍କ ସମୟରେ ଏହି ଜାତୀୟ ରଚନାର ବିଶେଷ ଉନ୍ନତି ସାଧିତ ହୋଇଥିଲା । ଏହି ସମୟର ଲେଖକ ଓ ମହିପତିଙ୍କର ତୁକାରାମ ପ୍ରଭୃତି ମରାଠୀ କବି ଓ ସନ୍ଥମାନଙ୍କର ଜୀବନୀ ନିର୍ଭ୍ରାନ୍ତ-ଭାବରେ ସାହିତ୍ୟିକ ଖ୍ୟାତି ଅର୍ଜନ କରିଥିଲା । ତାଙ୍କର "ଭକ୍ତଲୀଳାମୃତ" ପୁସ୍ତକ ରକ୍ଷଣଶୀଳ ମରାଠୀ ପରିବାରମାନଙ୍କରେ ଏପର୍ଯ୍ୟନ୍ତ ପଠିତ ହେଉଅଛି । ଏତଦ୍ୱାରା ପ୍ରାଚୀନ ମରାଠୀ ଗଦ୍ୟର ସ୍ୱରୂପ କ୍ରମଶଃ ବିକଶିତ ହୋଇଥିଲା । ପେଶଓ୍ୱାମାନଙ୍କ ସମୟର ଗଦ୍ୟରଚନା ମରାଠୀ ଗଦ୍ୟ-ସାହିତ୍ୟରେ ସ୍ତମ୍ଭ ସ୍ୱରୂପ ବିବେଚିତ ହୋଇଥାଏ । ପେଶଓ୍ୱାମାନେ ସେମାନଙ୍କ ଶାସନସଂସ୍ଥାରେ ବାଖାରକାରଙ୍କୁ ନିଯୁକ୍ତ କରିଥିଲେ । "ଶିବ ଦିଗ୍‌ବିଜୟ" (ରଚନା କାଳ : ୧୭୧୮) ଏହି ସମୟର ଏକ ଉଲ୍ଲେଖଯୋଗ୍ୟ ଗଦ୍ୟ ରଚନା । ପାନିପଥ ଯୁଦ୍ଧ ସଂପର୍କରେ ମଧ୍ୟ କେତେକ ବାଖାର ଜାତୀୟ ରଚନା ଲିଖିତ ହୋଇଥିଲା । ସେଥି ମଧ୍ୟରେ "ଭାଉ ସାହେବ

ବାଖାର" ଉଲ୍ଲେଖଯୋଗ୍ୟ । ନାନା ଫର୍ଣ୍ଣାବିସଙ୍କର ଲିଖିତ ଆତ୍ମଜୀବନୀ ଏହି ସମୟର ଗୋଟିଏ ଗଦ୍ୟରଚନା । ମରାଠା ସର୍ଦ୍ଦାରଙ୍କ ପ୍ରଚେଷ୍ଟାରେ ଏହି ସମୟରେ ରାଜବଂଶାବଳୀ ଓ ଐତିହାସିକ ଘଟଣାସଂବଳିତ ବହୁ ଗଦ୍ୟରଚନା ଲିଖିତ ହୋଇଥିଲା । ଯାଦବ ରାଜତ୍ୱ ସମୟରୁ ପେଶୱା ରାଜତ୍ୱ ସମୟ ପର୍ଯ୍ୟନ୍ତ ମରାଠୀ ସାହିତ୍ୟ ମୁଖ୍ୟତଃ ଧର୍ମ, ଭକ୍ତି ଓ ଦର୍ଶନ ଉପରେ ଆଧାରିତ ହୋଇଥିଲା । ପ୍ରାଚୀନ ମରାଠୀ କବିତାର ମୁଖ୍ୟ ସ୍ୱର ଆଧ୍ୟାତ୍ମିକ । ଜନସାଧାରଣଙ୍କର ନୈତିକ ମାନଦଣ୍ଡ ଓ ଧାର୍ମିକ ଚେତନା ଦୃଢ଼ୀଭୂତ କରିବାରେ ପ୍ରାଚୀନ ସାହିତ୍ୟର ମୂଲ୍ୟ ଖୁବ୍ ଅଧିକ ଥିଲା । ଏହି ସମୟରେ ସାଧୁ, ପଣ୍ଡିତ ଓ ସାହିର୍—ଏହିପରି ତିନି ଶ୍ରେଣୀର କବି ଥିଲେ ।

କ୍ରମେ ସାହିତ୍ୟର ଆଭିମୁଖ୍ୟ ପରିବର୍ତ୍ତିତ ହୋଇଥିଲା । କାବ୍ୟକବିତାର ଆଙ୍ଗିକ ପରିବର୍ତ୍ତନ ହେଲା । ଭାଷାର ବିକାଶ ସାଧିତ ହେଲା । ବାହାମନୀ ରାଜତ୍ୱ ସମୟରେ ମରାଠୀ ଭାଷା ଉପରେ ପାର୍ଶୀ ଭାଷାର ପ୍ରଭାବ ପଡ଼ିଥିଲା । ଶିବାଜୀଙ୍କ ସମୟରେ ଭାଷାରେ ଆହୁରି ଶୃଙ୍ଖଳା ଓ ସଂସ୍କାର ପରିଦୃଷ୍ଟ ହେଲା ।

ମରାଠୀ ସାହିତ୍ୟରେ ଆଧୁନିକ ଯୁଗ—ଏହି ଯୁଗ ତିନିଗୋଟି ପର୍ଯ୍ୟାୟରେ ବିଭକ୍ତ । ଯଥା—୧୮୧୮ ରୁ ୧୮୭୪, ୧୮୭୪ ରୁ ୧୯୨୦ ଓ ୧୯୨୦ରୁ ୧୯୬୦ ପର୍ଯ୍ୟନ୍ତ । ପ୍ରଥମ ପର୍ଯ୍ୟାୟରେ ସାମାଜିକ ସଂସ୍କାର ଉଦ୍ଦେଶ୍ୟରେ ବହୁ ପ୍ରବନ୍ଧ ରଚିତ ହୋଇଥିଲା । ପାଠ୍ୟପୁସ୍ତକ, ବ୍ୟାକରଣ, ଅଭିଧାନ ପ୍ରଣୟନ ପ୍ରାଚୀନ କାବ୍ୟକବିତାର ସଂପାଦନ, ଆଧୁନିକ ଯୁଗର ପ୍ରଥମ ପର୍ଯ୍ୟାୟରେ ସାହିତ୍ୟିକ କାର୍ଯ୍ୟକ୍ରମର ଅନ୍ତର୍ଗତ ହୋଇଥିଲା । ବହୁ ସଂସ୍କୃତ ନାଟକ ଏହି ସମୟରେ ମରାଠୀ ଭାଷାରେ ଅନୂଦିତ ଓ ଅଭିନୀତ ହୋଇଥିଲା । ୧୮୪୩ ମସିହାରେ ପ୍ରଥମ ଥର ପାଇଁ ପୌରାଣିକ ନାଟକ ମହାରାଷ୍ଟ୍ରର ରଙ୍ଗମଞ୍ଚ ଉପରେ ଅଭିନୀତ ହେଲା । ତୃତୀୟ ପାଣିପଥ ଯୁଦ୍ଧ ସମୟରୁ (୧୭୬୧) ମରହଟ୍ଟା ସାମ୍ରାଜ୍ୟର କ୍ରମ ଅବନତି ଘଟିଲା । ଜନସାଧାରଣଙ୍କର ବୀରତ୍ୱ ଓ ଶକ୍ତି ଯେପରି ଇତିହାସର ଇଙ୍ଗିତରେ କ୍ଷୁଣ୍ଣହୋଇ ଆସିଲା । ସମାଜ, ସଂସ୍କୃତି ବିଶୃଙ୍ଖଳାର ସମ୍ମୁଖୀନ ହେଲା । ପରମ୍ପରା ପ୍ରତି ଲୋକେ ଉଦାସୀନ ହୋଇଥିଲେ । ଇଂରେଜମାନେ ମହାରାଷ୍ଟ୍ର ଦଖଲ କରିବା ପରେ ସେଠାରେ ଏକ ନୂତନ ସାଂସ୍କୃତିକ ଓ ଶିକ୍ଷାପଦ୍ଧତି ପ୍ରଚଳନ କରିଥିଲେ । ଜନସାଧାରଣଙ୍କ ଭାଷା ଓ ସଂସ୍କୃତି ପ୍ରତି ଖ୍ରୀଷ୍ଟିଆନ୍ ପାଦ୍ରୀମାନେ କମ୍ ସହାନୁଭୂତି ଦେଖାଇ ନ ଥିଲେ । ସେହିମାନଙ୍କ ଉତ୍ସାହ ଓ ପ୍ରେରଣା ପାଇ ସ୍ଥାନୀୟ ବିଦ୍ୱାନ୍ ବ୍ୟକ୍ତିମାନେ ଏବଂ ସାହିତ୍ୟିକମାନେ ନୂତନ ଢଙ୍ଗରେ ସାହିତ୍ୟ ରଚନା କରିଥିଲେ । ପାଦ୍ରୀ ଏଲ୍‌ଫିନ୍‌ଷ୍ଟୋନ୍‌ଙ୍କ ଦାନ ଶିକ୍ଷା ଓ ସଂସ୍କୃତି କ୍ଷେତ୍ରରେ ସ୍ମରଣୀୟ । ପ୍ରଥମେ ମରାଠୀ ବ୍ୟାକରଣ ଓ ଅଭିଧାନ ସେମାନଙ୍କ ଦ୍ୱାରା ହିଁ ୧୮୧୯ ମସିହାରେ ସଂକଳିତ

ହୋଇଥିଲା । ଜ୍ଞାନବିଜ୍ଞାନ ଶୀର୍ଷକ ପୁସ୍ତକ ସମୂହ ମରାଠୀ ଭାଷାରେ ଅନୂଦିତ ହେଲା । ବମ୍ବେର "Native Education Society" ଓ ଦକ୍ଷିଣ ପ୍ରାଇଜ୍ କମିଟି ଗଠିତ ହୋଇଥିଲା । ମରାଠୀ ଭାଷା ସେମାନଙ୍କ ରଚନାରେ ସଂପୂର୍ଣ୍ଣ ପରିବର୍ତ୍ତିତ ଓ ପରିବର୍ଦ୍ଧିତ ହୋଇଗଲା । ପାଶ୍ଚାତ୍ୟ ସାହିତ୍ୟ ପ୍ରଭାବରେ ମରାଠୀ କାବ୍ୟକବିତାର ଆଙ୍ଗିକ ପରିବର୍ତ୍ତନ ହୋଇଥିଲା । ବାସ୍ତବଧର୍ମୀ ଉପନ୍ୟାସ, କ୍ଷୁଦ୍ରଗଳ୍ପ; ନାଟକ ଲେଖକମାନଙ୍କୁ ଆକୃଷ୍ଟ କରିଥିଲା । ସାହିତ୍ୟର ପ୍ରାଚୀନ ରୂପ ଲୋପ ପାଇଗଲା । ଆଧୁନିକ ଇଂରାଜୀ ଶିକ୍ଷା ବିସ୍ତାର ଏହି ସାହିତ୍ୟିକ ନବୀକରଣ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିଥିଲା । ୧୮୪୦ ମସିହାରେ ମରାଠୀ ଦୈନିକ ପତ୍ରିକା 'ଦର୍ପଣ' ଓ ମାସିକ "ଦିଗ୍‌ଦର୍ଶନ" ବାଲଶାସ୍ତ୍ରୀ ଜାମ୍ଭେକରଙ୍କ ଉଦ୍ୟମରେ ଆତ୍ମପ୍ରକାଶ କରିଥିଲା । ପରେ ପରେ "ପ୍ରଭାକର" ଓ ଜ୍ଞାନ ଚନ୍ଦ୍ରୋଦୟ" ପତ୍ରିକା ପ୍ରକାଶ ପାଇଲା । କୃଷ୍ଣଶାସ୍ତ୍ରୀ ଚିପ୍ଲୁଣକରଙ୍କର 'ବିଚାରଲହରୀ' ପତ୍ରିକା (୧୮୫୨) ହିନ୍ଦୁଧର୍ମର କର୍ଣ୍ଣଧାର ବିଷ୍ଣୁ ବ୍ରହ୍ମଚାରୀ ଓ ଗୋପାଳହରି ଦେଶମୁଖ ପ୍ରଭୃତିଙ୍କର ବିଚାରଚନା ମହାରାଷ୍ଟ୍ର ଜନ-ସାଧାରଣଙ୍କ ଦୃଷ୍ଟିକୋଣ ସଂପୂର୍ଣ୍ଣ ବଦଳାଇ ଦେଲା । ଆତ୍ମମର୍ଯ୍ୟାଦା ଓ ସାମାଜିକ ଚେତନା, ସ୍ୱପରମ୍ପରା ପ୍ରତି ଆନୁଗତ୍ୟ, ଜନସାଧାରଣଙ୍କୁ ଉଦ୍‌ବୁଦ୍ଧ କରିଥିଲା । ଏତଦ୍ୱାରା କେବଳ ମରାଠୀ ଭାଷା ଓ ସାହିତ୍ୟର ନୁହେଁ, ବରଂ ସମଗ୍ର ମହାରାଷ୍ଟ୍ର ସମାଜର ବଳିଷ୍ଠ ଭିତ୍ତି ସ୍ଥାପିତ ହୋଇଥିଲା । ଏହାରି ମୂଳରେ ଥିଲା ପ୍ରଥମ ଯୁଗର ସମ୍ବାଦପତ୍ର ଓ ସମ୍ବାଦିକତା ।

ଆଧୁନିକତାର ନିଦର୍ଶନ ନୂତନ ଗଦ୍ୟ ସାହିତ୍ୟ—

ଆଧୁନିକ ଯୁଗର ପ୍ରାକ୍‌କାଳରେ ଜାମ୍ଭେକର ଆଗରକର, ଚିପ୍ଲୁଙ୍କର ପ୍ରଭୃତି ଆଧୁନିକ ମହାରାଷ୍ଟ୍ରର ଚିନ୍ତାଶୀଳ ବ୍ୟକ୍ତିମାନେ ପ୍ରବନ୍ଧ ମାଧ୍ୟମରେ ନୂତନ ସାହିତ୍ୟର ସ୍ୱପ୍ନ ଦେଖିଥିଲେ । ସେମାନେ ମହାରାଷ୍ଟ୍ରର ଜନସାଧାରଣଙ୍କୁ ଏକ ନୂତନ ସାମାଜିକ ଚେତନା ଓ ପ୍ରେରଣାରେ ଉଦ୍‌ବୁଦ୍ଧ କରି ପାରିଥିଲେ । କୃଷ୍ଣଶାସ୍ତ୍ରୀଙ୍କ ପୁତ୍ର ବିଷ୍ଣୁଶାସ୍ତ୍ରୀ ଚିପ୍ଲୁଙ୍କରଙ୍କର (୧୮୫୦-୧୮୮୨) ପ୍ରକାଶିତ ନିବନ୍ଧମାଳା (୧୮୭୪ରୁ ଆରମ୍ଭ)ସାମାଜିକ ଚେତନା ଓ ରାଜନୈତିକ ବିଶ୍ଳେଷଣରେ ପୂର୍ଣ୍ଣ ହୋଇଥିଲା । ସମସ୍ତେ ଅନୁଭବ କରିଥିଲେ ଯେ, ଶିକ୍ଷା ଓ ସାହିତ୍ୟ ମାଧ୍ୟମରେ ଲୋକଶକ୍ତି ଜାଗ୍ରତ କରିବା ଏକ ଜରୁରୀ ଜାତୀୟ କର୍ତ୍ତବ୍ୟ । ବିଷ୍ଣୁଶାସ୍ତ୍ରୀଙ୍କ ବ୍ୟଙ୍ଗ ବିଦ୍ରୂପ ପୂର୍ଣ୍ଣ ରଚନା ମହାରାଷ୍ଟ୍ରର ସାଧାରଣ ପାଠକଙ୍କୁ ଚମତ୍କୃତ କରି ଦେଇଥିଲା । ସାହିତ୍ୟରେ ଏକ ବୈଜ୍ଞାନିକ ଦୃଷ୍ଟିକୋଣ ପ୍ରୟୋଗପାଇଁ ସେ ଆହ୍ୱାନ ଦେଇଥିଲେ । ତାଙ୍କର ପ୍ରତିଷ୍ଠିତ "କେଶରୀ' ପତ୍ରିକା" ଆଧୁନିକ ମରାଠୀ ସାହିତ୍ୟର ପ୍ରଥମ ତୂର୍ଯ୍ୟନାଦ ବୋଲି ବିବେଚିତ ହୋଇଥାଏ, ସେହିପରି ନିବନ୍ଧମାଳା ଆଧୁନିକ ମରାଠୀ ପ୍ରବନ୍ଧ ସାହିତ୍ୟ ଦିଗ୍‌ଦର୍ଶନ ବୋଲି ବିବେଚିତ ହୋଇଅଛି । ସେ ହେଉଛନ୍ତି ଯଥାର୍ଥରେ

ଆଧୁନିକ ମରାଠୀ ଗଦ୍ୟର ପ୍ରତିଷ୍ଠାତା । ଇଂରାଜୀ ସାହିତ୍ୟର ଶକ୍ତିଶାଳୀ ଲେଖକ ଆଡିସନ୍ ଓ ମାକଲେଙ୍କ ଦ୍ୱାରା ସେ ପ୍ରଭାବିତ ହୋଇଥିବାର ଜଣାଯାଏ । ଚିପ୍ଲୁଙ୍କରଙ୍କର ସମସାମୟିକ ଆଗରକର ମଧ୍ୟ ଜଣେ ଉତ୍ସାହୀ ସାହିତ୍ୟସାଧକ ଥିଲେ । ସାହିତ୍ୟ ମାଧ୍ୟମରେ ସମାଜିକ ସଂସ୍କାର ଥିଲା ତାଙ୍କର ପ୍ରଧାନ ଲକ୍ଷ୍ୟ । ଅସ୍ପୃଶ୍ୟତା ନିବାରଣ, ସ୍ତ୍ରୀଶିକ୍ଷାବିସ୍ତାର, ବିଧବାବିବାହର ସେ ପକ୍ଷପାତୀ ଥିଲେ । ନିର୍ଭୀକତା ଓ ଦୁଃସାହସିକତା ତାଙ୍କ ଚିନ୍ତାର ପ୍ରଧାନ ଆଭିମୁଖ୍ୟ ଥିଲା । ଆଧୁନିକ ମରାଠୀ ସାହିତ୍ୟରେ ଉଚ୍ଚକୋଟୀର ବୃଦ୍ଧିଜୀବୀ ଭାବରେ ସେ ପରିଚିତ । ରାନାଡ଼େ, ଗୋପାଳକୃଷ୍ଣ ଗୋଖଲେ ତାହାଙ୍କ ଆଦର୍ଶରେ ମଧ୍ୟ ଅନୁପ୍ରାଣିତ ହୋଇଥିଲେ ।

ଜ୍ୟୋତି ବା ଫୁଲେ ଜଣେ ନିର୍ଭୀକ, ସ୍ୱାଧୀନଚେତା ଲେଖକ ଥିଲେ । ନାରୀଶିକ୍ଷାର ସାମାଜିକ ସଂସ୍ଥାପାଇଁ ସେ ମଧ୍ୟ ଦୃଢ଼ପ୍ରତିଜ୍ଞ ଥିଲେ । ଚିପ୍ଲୁଙ୍କରଙ୍କର ଆଦର୍ଶରେ ଅନୁପ୍ରାଣିତ ଲେଖକମାନଙ୍କ ମଧ୍ୟରେ ଗୋଲେ, ଭି. କେ. ରାଜଓ୍ୱାଡ଼େ, ଏସ. ଏମ୍. ପାରାଂଜପେ, ସି. ଭି. ବୈଦ୍ୟ ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ । ସେମାନଙ୍କ ଗଦ୍ୟ-ରଚନାରେ ଇତିହାସ, ରାଜନୀତି ଓ ସମାଜତତ୍ତ୍ୱ ପ୍ରତିଫଳିତ ହୋଇଥିଲା । ଲୋକମାନ୍ୟ ତିଲକ ଏହି ପରମ୍ପରାର ଶ୍ରେଷ୍ଠ ପ୍ରତିନିଧି ଥିଲେ । ଚିନ୍ତା ଓ ଆଦର୍ଶ ଦୃଷ୍ଟିରେ ସେ ଯେପରି ଗମ୍ଭୀର ସେପରି ସାର୍ବଜନୀନ ଥିଲେ । 'କେଶରୀରେ' ପ୍ରକାଶିତ ମୂଲ୍ୟବାନ ରଚନାବଳୀ ମରାଠୀ ଗଦ୍ୟ-ସାହିତ୍ୟର ଅମୂଲ୍ୟ ସମ୍ପଦ । ତାଙ୍କର ଗଦ୍ୟ ଶୈଳୀ ଏକ ଅସାଧାରଣ ପ୍ରତିଭାର ସଙ୍କେତ ବହନ କରିଥିଲା । ବସ୍ତୁତଃ ମରାଠୀ ଗଦ୍ୟ-ସାହିତ୍ୟର ଏହା ହିଁ ଥିଲା ସ୍ୱର୍ଣ୍ଣଯୁଗ । ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଏସ୍. କେ.କୋଲହାଟକର ମରଠୀ ପ୍ରବନ୍ଧ ସାହିତ୍ୟରେ ଏକ ନୂତନ ଦିଗ ଉଦ୍‌ଘାଟନ କରିଥିଲେ । ବ୍ୟଙ୍ଗବିଦ୍ରୂପପୂର୍ଣ୍ଣ ପ୍ରବନ୍ଧ ତାଙ୍କର କୃତିତ୍ୱ । ସୂକ୍ଷ୍ମ ପର୍ଯ୍ୟବେକ୍ଷଣ ଶକ୍ତି ଓ ବ୍ୟକ୍ତିଚରିତ୍ର ସମୀକ୍ଷା କରିବାର ଦକ୍ଷତା ତାଙ୍କର ପ୍ରବନ୍ଧରେ ପ୍ରତିଫଳିତ । ବ୍ୟଙ୍ଗାତ୍ମକ ପ୍ରବନ୍ଧ ଲେଖି ସେ ମରାଠୀ ପ୍ରବନ୍ଧ ସାହିତ୍ୟରେ ଏକ ପରଂପରା ସୃଷ୍ଟି କରିଥିଲେ । 'ସାହିତ୍ୟ ବତିଶ' ତାଙ୍କର ଏକ ବହୁଜନଆଦୃତ ବ୍ୟଙ୍ଗବିଦ୍ରୂପାତ୍ମକ ପ୍ରବନ୍ଧ ସଂଗ୍ରହ । ରାମଗଣେଶ ଆଦ୍‌କାରୀ, ସି.ଭି. ଯୋଷୀ, ପ୍ରଭୃତି ପ୍ରାବନ୍ଧିକମାନେ କୋଲହାଟକରଙ୍କ ପରଂପରା ବଜାୟ ରଖିଥିଲେ । ପ୍ରାବନ୍ଧିକ ପି. ଏଲ୍. ଦେଶପାଣ୍ଡେ ମଧ୍ୟ ଏତାଦୃଶ ପ୍ରବନ୍ଧ ଲେଖି ପ୍ରଭାବ ସୃଷ୍ଟି କରି ପାରିଥିଲେ । ପରବର୍ତ୍ତୀ କାଳରେ ଜଣେ ଶକ୍ତିଶାଳୀ ଲେଖକ ଏନ୍.ସି. କେଲ୍‌କର୍ ଓ ଏସ୍. ଏମ୍. ପାରାଂଜପେ ମରାଠୀ ପ୍ରବନ୍ଧ ସାହିତ୍ୟକୁ ଏକ ନୂତନ ରୂପ ଦେଇଥିଲେ । ଗାନ୍ଧି ଆଦର୍ଶରେ ପ୍ରଭାବିତ ଆଚାର୍ଯ୍ୟ ବିନୋବାଭାବେ, ଦାଦା ଧର୍ମାଧିକାରୀ ସରଳ ଭାଷାରେ ଗମ୍ଭୀର ଚିନ୍ତା ଉଦ୍ରେକକାରୀ ପ୍ରବନ୍ଧ ରଚନା କରିଥିଲେ । ତିଳକଙ୍କ ପରବର୍ତ୍ତୀ ପ୍ରାବନ୍ଧିକମାନେ କୌଣସି ମୌଳିକତାର ପ୍ରମାଣ ଦେଇ ନ ଥିଲେ ମଧ୍ୟ ସେମାନଙ୍କର

ପ୍ରବନ୍ଧରେ ନୂତନ ଚିନ୍ତାର ବ୍ୟାପ୍ତି ଓ ପ୍ରୟୋଗ ପରିଲକ୍ଷିତ ହୋଇଥିଲା । ପୂର୍ବବର୍ତ୍ତୀ ପ୍ରାବନ୍ଧିକମାନେ ଆଦର୍ଶ ଓ ଚିନ୍ତାର ପ୍ରଚାରପାଇଁ ବ୍ୟସ୍ତ ଥିଲେ । କିନ୍ତୁ ନୂତନ ପ୍ରାବନ୍ଧିକମାନଙ୍କର ଲେଖନୀରେ ପ୍ରବନ୍ଧ ଏକ ନୂତନ ସୃଷ୍ଟି ରୂପରେ ପ୍ରତିଭାତ ହେଲା । ସାଧାରଣ ଘଟଣାକୁ ସୂକ୍ଷ୍ମ ଭାଷାରେ ପ୍ରକାଶ କରି ତାକୁ ଅସାଧାରଣ କରିବା ନୂତନ ପ୍ରାବନ୍ଧିକମାନଙ୍କର ଲକ୍ଷ୍ୟ । ବର୍ତ୍ତମାନ କାଳରେ ଫାଡ଼କେ, ଖାଣ୍ଡେକର, ଅନନ୍ତ କାଣେକର୍, ଦଣ୍ଡେକର, ଶାନ୍ତାରାମ ଯୋଷୀ ପ୍ରଭୃତି ସାହିତ୍ୟର ଏହି ଶାଖାକୁ ବହୁ ଭାବରେ ପରିପୁଷ୍ଟ କରି ପାରିଛନ୍ତି । ମୋଟଉପରେ ଆଧୁନିକ ମରାଠୀ ପ୍ରବନ୍ଧ ସାହିତ୍ୟ ଏକ ନୂତନ ଶକ୍ତି ଓ ଜିଜ୍ଞାସାର ପରିଚୟ ଦେଇ ପାରିଛି ।

ଚିପ୍ଲୁଣଙ୍କର, ଆଗରକର ଏବଂ ତିଲକଙ୍କ ପ୍ରବନ୍ଧ ରଚନାରେ ଏକ ସ୍ୱତନ୍ତ୍ର ଶୈଳୀ ଓ ଦୃଷ୍ଟିକୋଣ ପ୍ରତିଫଳିତ । ସାଧାରଣ ଜୀବନକୁ ଭିତ୍ତିକରି ସେମାନେ ଯେଉଁ ବିଶ୍ଳେଷଣାତ୍ମକ ପ୍ରବନ୍ଧ ମରାଠୀ ସାହିତ୍ୟରେ ଆରମ୍ଭ କରିଥିଲେ, ତାହାର ରୂପରେଖ ପରବର୍ତ୍ତୀ ପ୍ରାବନ୍ଧିକମାନଙ୍କ ଲେଖନୀରେ ଆହୁରି ବିକଶିତ ତଥା ବିବର୍ଦ୍ଧିତ ହେଲା । ପ୍ରାଚୀନ ପ୍ରବନ୍ଧମାନଙ୍କ ଗତି ବିଶ୍ଳେଷଣାତ୍ମକ ଥିଲା, କିନ୍ତୁ ଆଧୁନିକ ପ୍ରବନ୍ଧର ସ୍ୱରୂପ ହେଲା ବ୍ୟଞ୍ଜନାଧର୍ମୀ । ମରାଠୀ ଗଦ୍ୟସାହିତ୍ୟର ଆଭିମୁଖ୍ୟ ବହୁବିଧ । ପ୍ରବନ୍ଧ ସେଥିମଧ୍ୟରେ ଗୋଟିଏ ଦିଗ ମାତ୍ର । ଦର୍ଶନତତ୍ତ୍ୱସମ୍ବଳିତ ରଚନା, ସମାଜ ଏବଂ ପଦାର୍ଥ ବିଜ୍ଞାନମୂଳକ ରଚନା, ଐତିହାସିକ ତଥା ଭାଷା-ସାହିତ୍ୟ ଗବେଷଣା, ଜୀବନୀ, ରମ୍ୟରଚନା ପ୍ରବନ୍ଧ-ସାହିତ୍ୟର ବହୁମୁଖିତାର ପରିଚାୟକ । ଯୁଗର ପରିବର୍ତ୍ତନ ସଙ୍ଗେ ସଙ୍ଗେ ପ୍ରବନ୍ଧର ଗୁଣ ଓ ଶୈଳୀ ମଧ୍ୟ ପରିବର୍ତ୍ତିତ ହୋଇଅଛି । ଲୋକମାନ୍ୟ ତିଲକଙ୍କର ପ୍ରଣୀତ (ଗୀତା-ରହସ୍ୟ) ମରାଠୀ ଗଦ୍ୟର ବଳିଷ୍ଠ ନିଦର୍ଶନ ।

ମହାରାଷ୍ଟ୍ରର ବିଭିନ୍ନ ଅଞ୍ଚଳରେ ଗ୍ରନ୍ଥ ପ୍ରକାଶନ ସମିତି ସମୂହ ଉଚ୍ଚକୋଟୀର ଗଦ୍ୟପୁସ୍ତକ ପ୍ରକାଶ କରିବାରେ ସାହାଯ୍ୟ କରୁଛନ୍ତି । ଏପରି ପ୍ରକାଶନମାନଙ୍କ ମଧ୍ୟରେ ସୁଲଭ ଗ୍ରନ୍ଥମାଳା, ନବଭାରତ ଗ୍ରନ୍ଥମାଳାର ନାମ ଉଲ୍ଲେଖଯୋଗ୍ୟ । ପ୍ରଥମ ଗ୍ରନ୍ଥମାଳାରେ ଆଚାର୍ଯ୍ୟ ଜାୱଡେକରଙ୍କର ବହୁ ପୁସ୍ତକ ପ୍ରକାଶିତ ହୋଇଅଛି । ଦ୍ୱିତୀୟ ଗ୍ରନ୍ଥମାଳାରେ ପ୍ରାଚୀନ ଭାରତର ଶିକ୍ଷା, ରାଷ୍ଟ୍ରୀୟ ରାଜପୁତ-ଗୌରବ ଏବଂ ଜ୍ଞାନବିଜ୍ଞାନ ବିଷୟକ ବହୁ ପୁସ୍ତକ ସ୍ଥାନ ପାଇଥିଲା । ଐତିହାସିକ ଗବେଷଣା ମରାଠୀ ପଣ୍ଡିତମାନଙ୍କର ଏକ ସ୍ୱତନ୍ତ୍ର ଆକର୍ଷଣ । ୧୮୬୭ ମସିହାରେ ଯୁବକ ନୀଳକାନ୍ତ ରାଓ, କାର୍ତ୍ତିନେ, ଗ୍ରାଣ୍ଟଡଫ୍ଙ୍କର ଲିଖିତ ମରାଠୀ ଇତିହାସ ସଂପର୍କରେ କେତେକ ଆଲୋଚନାମୂଳକ ପ୍ରବନ୍ଧ ଲେଖିଥିଲେ । ଗ୍ରାଣ୍ଟଡଫ୍ଙ୍କର ମରାଠୀ

ବକ୍‌ଖର ଇତିହାସକୁ କେହି କେହି ମରାଠୀ ଭାଷାରେ ଅନୁବାଦ କରିଥିଲେ । କାର୍ତ୍ତିନେ ଚଟ୍‌ନିସ ବକ୍‌ଖରଙ୍କୁ ମଧ୍ୟ ସଂପାଦନା କରିଥିଲେ । ଜଷ୍ଟିସ ରାନାଲଡ଼େ ଓ ଡକ୍ଟର ସାର୍ ଆର୍. ଜି. ଭଣ୍ଡାରକର୍ ଇତିହାସର ବିଶିଷ୍ଟ ଛାତ୍ରଥିଲେ । ସେମାନେ ମରାଠୀ ଇତିହାସର ଗବେଷଣା ଓ ଅନୁଶୀଳନପାଇଁ ବିଶେଷ ଉଦ୍ୟମ କରିଥିଲେ । ଏହି ପର୍ଯ୍ୟାୟରେ ବହୁ ପ୍ରାଚୀନ ନଥି ଓ ଚିଠିପତ୍ର ସଂଗୃହୀତ ହୋଇଥିଲା ଏବଂ ସଂଖ୍ୟାଧିକ ଭାବରେ "ମରାଠ୍ୟା ଚ୍ୟା ଇତିହାସ ଚି ସାଧନେ" ନାମରେ ପ୍ରକାଶିତ ହୋଇଥିଲା । ମରାଠୀ ଐତିହାସିକ ଗବେଷଣାର ପ୍ରସିଦ୍ଧ ଲେଖକ ଥିଲେ ଜି.ଏସ୍. ସର୍ଦ୍ଦେଶାସ୍ତ୍ରୀ । ମୋଗଲ, ମରାଠୀ ଏବଂ ବ୍ରିଟିସ ରାଜତ୍ୱ ସଂପର୍କୀୟ ତାଙ୍କର ତଥ୍ୟସମ୍ବଳିତ ଇତିହାସ ଅତ୍ୟନ୍ତ ଉପାଦେୟ । ସାର୍ଦ୍ଦେଶାସ୍ତ୍ରୀଙ୍କର ଗବେଷଣା ବହୁ ମରାଠୀ ଲେଖକଙ୍କୁ ଉଦ୍‌ବୁଦ୍ଧ କରିପାରିଛି । ମରାଠୀ ସାହିତ୍ୟରେ ଜୀବନୀ ଓ ରଚନା ଆଧୁନିକ ଯୁଗର ସୃଷ୍ଟି ହେଲେହେଁ ପ୍ରାଚୀନକାଳରେ ଏହାର ନିଦର୍ଶନ ଦେଖିବାକୁ ମିଳେ । ଗଦ୍ୟରେ ଲିଖିତ ମହାନୁଭବ ସଂପ୍ରଦାୟ ରଚନା ଏବଂ ପଦ୍ୟରେ ମହୀପତି ରଚନା ଏହାର ଉଦାହରଣ । ଏହି ପ୍ରାଥମିକ ଜୀବନୀ ରଚନା ସେତେ ଉନ୍ନତ ଓ ମାର୍ଜିତ ନୁହେଁ । ପ୍ରକୃତରେ ଇଂରେଜରାଜତ୍ୱ ଆରମ୍ଭରେ ଏହି ବିଭାଗର ସଂସ୍କାର ସାଧିତ ହେଲା । ଦକ୍ଷିଣ ପ୍ରାଇଜ କମିଟି ସ୍ଥାପିତ ହେବା ଦିନଠାରୁ ଲେଖକମାନେ ଜୀବନୀ-ସାହିତ୍ୟ ପ୍ରତି ଆକୃଷ୍ଟ ହୋଇଥିଲେ । ଗୋବଲ୍‌ଙ୍କର ଲିଖିତ ରାମଦାସ ସ୍ୱାମୀ ଏବଂ ଅଜର୍‌କର୍‌ଙ୍କର ଲିଖିତ ବିଷ୍ଣୁଭାଓ କର୍ମଚାରୀ ଉଲ୍ଲେଖଯୋଗ୍ୟ ଜୀବନୀ । ଆଧୁନିକ ଯୁଗର ପ୍ରଥମ ପର୍ଯ୍ୟାୟ ଲିଖିତ ଜୀବନୀ ସମୂହ ବିଶେଷ ଭାବରେ ଉପଦେଶାତ୍ମକ ଥିଲା । ୧୮୮୫ ମସିହାରେ ଭାରତୀୟ ଜାତୀୟ କଂଗ୍ରେସ ସ୍ଥାପିତ ହେବାପରେ ଦେଶରେ ରାଜନୀତିକ ଚିନ୍ତାର ପ୍ରସାର ଘଟିଥିଲା । ଏହାର ଫଳରେ ଭାରତବର୍ଷର ସର୍ବତ୍ର ସ୍ୱାଧୀନତା ଆନ୍ଦୋଳନର ବାର୍ତ୍ତା ଖେଳି ଯାଇଥିଲା ।

ରାଜନୈତିକ ନେତାମାନଙ୍କ ଜୀବନୀ ରଚନା କରିବାକୁ ଲେଖକମାନେ ଆଗ୍ରହୀ ହୋଇଥିଲେ । ଉଦାହରଣ ସ୍ୱରୂପ ଏନ୍. ସି. କେଲକରଙ୍କ ଲିଖିତ "ଗାରିବାଲ୍‌ଡି" ସଭରକରଙ୍କ ଲିଖିତ 'ମାଜିନୀ' ପ୍ରଭୃତି ଜୀବନୀ ଏହି ପ୍ରଭାବର ଫଳ । ଏହା ପୂର୍ବରୁ ବିନାୟକ କୋଣ୍ଡୋଭ ଓକା କେତେକ ବିଦେଶୀ ବୀରମାନଙ୍କର ଜୀବନୀ ରଚନା କରିଥିଲେ । ଏହି ପ୍ରସଙ୍ଗରେ ବିଷ୍ଣୁ ଶାସ୍ତ୍ରୀ ଚିପଲୁଙ୍କର ଲିଖିତ ଡକ୍ଟର ଜନ୍‌ସନ୍‌ଙ୍କର ଜୀବନୀ ମରାଠୀ ସାହିତ୍ୟରେ ବିଶେଷ ପ୍ରଶଂସିତ ହୋଇଥିଲା । ସାଧୁ, ସନ୍ନ୍ୟାସୀ ଏବଂ ସାହିତ୍ୟିକ କୃତୀ ପୁରୁଷମାନଙ୍କର ଜୀବନୀ ସଂଗ୍ରହ କରିବା କର୍ତ୍ତବ୍ୟରୂପେ ପରିଣତ ହୋଇଥିଲା । ପଙ୍ଗାରକର, ବି. ଏ. ଭିନେ, ଆଜ୍‌ଗଙ୍କର, ସନ୍ଥ ପୁରୁଷମାନଙ୍କର ଜୀବନୀ ଲେଖି ମରାଠୀ ସାହିତ୍ୟକୁ ସମୃଦ୍ଧ କରିଥିଲେ । ଐତିହାସିକ ବୀରପୁରୁଷମାନଙ୍କର ଜୀବନୀ

ସଂକଳନ କାର୍ଯ୍ୟ ଲେଖକମାନଙ୍କୁ ଉଦ୍‌ବୁଦ୍ଧ କରିଥିଲା । ଡକ୍ଟର କୋଲଟେ, ଡକ୍ଟର ପେଣ୍ଡସେ ଏବଂ ଏନ. ଆର. ପାଠକ ସୂକ୍ଷ୍ମ ବୈଜ୍ଞାନିକ ଦୃଷ୍ଟିରୁ ମହାପୁରୁଷମାନଙ୍କର ଜୀବନୀ ଆଲୋଚନା କରିଥିଲେ । ସମସାମୟିକ ସାହିତ୍ୟିକ ଓ ଜାତିର କର୍ମୀମାନଙ୍କର ଜୀବନୀ ଲେଖିବାପାଇଁ ଲେଖକମାନେ ପ୍ରବୃତ୍ତ ହେଲେ । ଲୋକମାନ୍ୟ ତିଲକଙ୍କର ବିଚିତ୍ର ଘଟଣାମୂଳକ ଜୀବନ ବହୁ ଜୀବନୀ-ଲେଖକଙ୍କୁ ଆକୃଷ୍ଟ କରିଥିଲା । ଏନ୍. ସି. କେଲ୍‌କରଙ୍କର ଲିଖିତ ତିଲକଙ୍କର ପ୍ରକାଣ୍ଡ ଜୀବନୀ ମରାଠୀ ସାହିତ୍ୟରେ ଏକ ସ୍ମରଣୀୟ କୃତି ଏବଂ ମହାରାଷ୍ଟ୍ରର ରାଜନୀତିକ ଜୀବନର ଏକ ପ୍ରାମାଣିକ ସମୀକ୍ଷା ବୋଲି ଜଣାଯାଏ । ବିଂଶଶତାବ୍ଦୀରେ ମାନବର ସ୍ୱାତନ୍ତ୍ର୍ୟ ସଂପ୍ରସାରିତ ହେବା ଫଳରେ ଜୀବନୀସାହିତ୍ୟ ଆହୁରି ପରିପୁଷ୍ଟ ହେଲା । ଦେଶବିଦେଶର କବି ଓ ଜନନାୟକଙ୍କର ଜୀବନୀ ମରାଠୀ ଲେଖକମାନଙ୍କର ଦୃଷ୍ଟି ଆକର୍ଷଣ କଲା । ବର୍ତ୍ତମାନ ଯୁଗରେ କବି ଓ ସାହିତ୍ୟିକମାନଙ୍କର ଜୀବନୀକୁ କେନ୍ଦ୍ର କରି ଅନେକ ପୁସ୍ତକ ଲେଖାଯାଇଛି । ମାଧବରାଓ ପଟ୍ଟବର୍ଦ୍ଧନଙ୍କ ସଂପର୍କରେ ଖାନୋଲକରଙ୍କର ଲିଖିତ ପୁସ୍ତକ ଆଧୁନିକ ଜୀବନୀ-ସାହିତ୍ୟର ବୈଶିଷ୍ଟ୍ୟ ପ୍ରଦର୍ଶନ କରିଅଛି । ଆତ୍ମଜୀବନୀ ଆଧୁନିକ ମରାଠୀ ସାହିତ୍ୟରେ ଏକ ନୂତନ ଆକର୍ଷଣ । ପେଶବାମାନଙ୍କ ରାଜତ୍ୱରେ ନାନାଫଡ଼ଣ୍ଡବିସ୍ ନିଜର ଆତ୍ମଜୀବନୀ ଲେଖିଥିଲେ । ବୈଷ୍ଣବ ବ୍ରହ୍ମଚାରୀ ବ୍ରିଟିସରାଜତ୍ୱ ଆରମ୍ଭରେ ନିଜର ଆତ୍ମଜୀବନୀ ସ୍ୱଲିଖିତ ପୁସ୍ତକ 'ବେଦୋକ୍ତ ଧର୍ମପ୍ରକାଶ' ପୁସ୍ତକରେ ସାମିଲ କରିଥିଲେ । ପ୍ରଥମ ମରାଠୀ ସାମାଜିକ ଉପନ୍ୟାସର ଲେଖକ ବାବାପଦମାଂଜି ନିଜର ଆତ୍ମଜୀବନୀ ଲେଖିଥିଲେ । ରମାବାଈ ରାନାଡ଼େଙ୍କର ପୁସ୍ତକରେ (Some memories of our life) ଏକ ନୂତନ ସାହିତ୍ୟିକ ଶୈଳୀର ନିଦର୍ଶନ ମିଳେ । କେଲେ୍‌କର୍‌ଙ୍କର 'ତିଳକଚରିତ' ଅପେକ୍ଷା ତାଙ୍କର ନିଜଜୀବନୀ 'ଗତଗୋଷ୍ଠୀ' ଏକ ଅଧିକ ସୁପାଠ୍ୟ ରଚନା । ତାଙ୍କର କନ୍ୟା ଡକ୍ଟର କମଳାବାଈ ଦେଶପାଣ୍ଡେ ମଧ୍ୟ ନିଜର ଜୀବନୀ ରଚନା କରିଛନ୍ତି । ମହର୍ଷି କାହାର୍ବେ ଓ ଧର୍ମାନନ୍ଦ ଗୋସ୍ୱାମୀ ବହୁ ଜୀବନୀ ରଚନା କରିଛନ୍ତି । ଲକ୍ଷ୍ମୀବାଈ ତିଲକ ନିଜର ପ୍ରକାଣ୍ଡ ଜୀବନୀ ରଚନା କରିଛନ୍ତି । ତାହା ଚାରି ଭାଗରେ ବିଭକ୍ତ । ସାଭରକରଙ୍କ ଜୀବନୀ ବିଚିତ୍ର ଅନୁଭୂତି ଓ ଅଭିଜ୍ଞତା ବର୍ଣ୍ଣନାରେ ପରିପୂର୍ଣ୍ଣ । ମଦଖୋଲଙ୍କର 'ଜୀବନୀ ଚିତ୍ର' ଶ୍ରୀମତୀ ପଟ୍ଟବର୍ଦ୍ଧନଙ୍କର 'Our Eleven Years' ଏବଂ ଖୋରେଙ୍କର 'Prison Walls' ଖଣ୍ଡିଏ ଖଣ୍ଡିଏ ଚିତ୍ତାକର୍ଷକ ଜୀବନୀ ଗ୍ରନ୍ଥ ।

ମରାଠୀ ସାହିତ୍ୟରେ ଉପନ୍ୟାସର ବିକାଶ: —

ଆଧୁନିକ ମରାଠୀ ଉପନ୍ୟାସର ଇତିହାସ ଏକ ଶତାବ୍ଦୀର ଇତିହାସ । ଏହାର ଉତ୍ପତ୍ତି ପ୍ରଥମେ ଅନୁବାଦ ଓ ଅନୁକରଣରୁ ଆରମ୍ଭ ହୋଇଥିଲା । ମରାଠୀ ଭାଷାରେ ଉପନ୍ୟାସକୁ କାଦମ୍ବରୀ କୁହାଯାଏ । ସମ୍ଭବତଃ ସଂସ୍କୃତ ଲେଖକ

ବାଣଭଟ୍ଟଙ୍କର ଗଦ୍ୟ "ରୋମାନ୍ସ୍" କାଦମ୍ବରୀର ନାମାନୁସାରେ ମରାଠୀ ଉପନ୍ୟାସର ଏପରି ନାମକରଣ ହୋଇଅଛି । ୧୮୫୦ ମସିହା ପୂର୍ବରୁ ଇଂରେଜୀ ଉପନ୍ୟାସ "Pilgrims Progress" ଓ "Gullivers Travel" ମରାଠୀ ଭାଷାରେ ଅନୂଦିତ ହୋଇଥିଲା । ଉପନ୍ୟାସ-ରଚନା କ୍ଷେତ୍ରରେ ପ୍ରଥମ ଚେଷ୍ଟା ବାବା ପଦ୍ମାଂଜି କରିଥିଲେ । ତାଙ୍କର ସେହି ଲେଖାର ନାମ ହେଉଛି "ଯମୁନା ପର୍ଯ୍ୟଟନ" (୧୮୫୭) । ହିନ୍ଦୁ ସମାଜରେ ବିଧବାମାନଙ୍କ ଦୁଃଖଦୁର୍ଦ୍ଦଶାକୁ କେନ୍ଦ୍ରକରି ଏହି ଉପନ୍ୟାସ ରଚିତ ହୋଇଥିଲା । ତଦାନୀନ୍ତନ ସାମାଜିକ ପୃଷ୍ଠଭୂମି ବର୍ଣ୍ଣନା କରିବାରେ ଲେଖକ ପ୍ରବୀଣ ଥିଲେ । ଏହାପରେ କତିପୟ ଲେଖକ ବାଣଭଟ୍ଟଙ୍କର କାଦମ୍ବରୀ ଆଦର୍ଶରେ ଉପନ୍ୟାସ ଲେଖିଥିଲେ । ସେ ସବୁର ନାମ ହେଉଛି -ମୁକ୍ତାମାଳା ମଞ୍ଜୁଘୋଷ, ରତ୍ନପୋଭା, ବସନ୍ତକୋକିଳ । ଏହି ଉପନ୍ୟାସର ଭାଷା ଅଳଙ୍କାରପୂର୍ଣ୍ଣ, ଗଳ୍ପାଂଶ, ରୋମାଞ୍ଚକର ଏବଂ ଲେଖକଙ୍କର ଦୃଷ୍ଟିକୋଣ ସଂସ୍କାରବାଦୀ । ଚରିତ୍ର-ଚିତ୍ରଣର ବୈଶିଷ୍ଟ୍ୟ ସେଥିରେ ଦେଖାଯାଏ ନାହିଁ । ପାଶ୍ଚାତ୍ୟ ସାହିତ୍ୟର ଅଖଣ୍ଡ ପ୍ରଭାବ ବିରୋଧରେ ଲେଖକମାନେ ବିଶୁଦ୍ଧ ସଂସ୍କୃତ ଭାଷା ବ୍ୟବହାର କରିଥିଲେ । ଏହି ସମୟରେ ପାର୍ସି ଓ ଅର୍ମିନୁ ବିଶିଷ୍ଟ କଥାସାହିତ୍ୟ ମରାଠୀରେ ଅନୂଦିତ ହୋଇଥିଲା । ଆରବିୟାନ୍ ନାଇଟ୍ (Arabian Night) ସଦୃଶ କାହାଣୀମାଳା ପଢ଼ି-ପାଠକମାନଙ୍କର ରୁଚି କ୍ରମଶଃ ପରିବର୍ତ୍ତିତ ହୋଇଥିଲା । ୧୮୭୧ ମସିହାରେ ଗୁଞ୍ଜିକର ଏକ ଐତିହାସିକ ଉପନ୍ୟାସ ଲେଖିଥିଲେ । ତାହାର ନାମ "ମଚନ୍ ଗଡ" ।

ଶିବାଜୀଙ୍କର ବାଲ୍ୟ ଜୀବନ ସେହି ଉପନ୍ୟାସରେ ବର୍ଣ୍ଣିତ ହୋଇଥିଲା । ଏକ ଦିଗରେ ପଦ୍ମାଂଜିଙ୍କର ବାସ୍ତବ ଦୃଷ୍ଟିକୋଣ, ଅନ୍ୟ ଦିଗରେ ପଣ୍ଡିତମାନଙ୍କର ନୀତିବାଦ ମରାଠୀ ଉପନ୍ୟାସରେ ନୂତନ ଚେତନା ସୃଷ୍ଟି କରିଥିଲା । ମାତ୍ର ପ୍ରକୃତ ଐତିହାସିକ ଓ ସାମାଜିକ ଉପନ୍ୟାସର ପ୍ରବର୍ତ୍ତକରୂପେ ହରିନାରାୟଣ ଆପ୍ଟେ ପ୍ରତିଭାତ ହୋଇଥିଲେ । ତାଙ୍କ ଉପନ୍ୟାସରେ ପ୍ରାଚୀନ ମରାଠୀ ଇତିହାସ ଓ ସମସାମୟିକ ସମାଜିକ ସମସ୍ୟା ଶୈଳିକ ଅଭିବ୍ୟକ୍ତି ଲାଭ କରିପାରିଥିଲା । ଉପନ୍ୟାସ କଳାର ପୁଷ୍ଟିସାଧନ କରିବାରେ ମରାଠୀ ସାହିତ୍ୟର ସେ କର୍ଣ୍ଣଧାର । ପୂର୍ବବର୍ତ୍ତୀ ରୋମାନ୍ସ ଧର୍ମୀ ଉପନ୍ୟାସ ଖଣ୍ଡିକ ମଧ୍ୟରୁ ସେ ସାମାଜିକ ଉପନ୍ୟାସ ସୃଷ୍ଟି କରିଥିଲେ । ସେ କବିତା, କ୍ଷୁଦ୍ରଗଳ୍ପ ଲେଖିଥିଲେ ମଧ୍ୟ ଉପନ୍ୟାସ ଥିଲା ତାଙ୍କ ସାଧନାର ଶ୍ରେଷ୍ଠ ମାଧ୍ୟମ । 'ଉଷାକାଳ' (Ushah Kal), "ଗଡଅଲା ପାନସିଂହ ଗେଲା (Gad Ala Pan Singh Gela) ସିଂହଗଡ଼ର ସିଂହ ଯାଇଛି ପଡି ସହିତ, "ସୂର୍ଯ୍ୟ ଗ୍ରହଣ" (Surya Grahan) ପ୍ରଭୃତି ଉପନ୍ୟାସ ମରହଟ୍ଟା ଇତିହାସ ଉପରେ ଆଧାରିତ । ସେଥିରେ ମରହଟ୍ଟାମାନଙ୍କର ବୀରତ୍ୱ, ଏକତା ତଥା କର୍ମକୌଶଳ ପ୍ରତିଫଳିତ । ଐତିହାସିକ ଉପାଦାନ ସମୂହର ସେ ଯଥାର୍ଥ ଉପଯୋଗ

କରିଥିଲେ । ଏହା ବ୍ୟତୀତ ୧୮୮୦ ମସିହାରୁ ୧୯୧୭ ମସିହା ମଧ୍ୟରେ ଆପ୍ଟେ ବହୁ ସାମାଜିକ ଉପନ୍ୟାସ ଲେଖି ପ୍ରକାଶ କରିଥିଲେ । ସମସାମୟିକ ମଧ୍ୟବିତ୍ତ ଶ୍ରେଣୀର ଜୀବନଚିତ୍ର, ଦୁଃଖ, ଆନନ୍ଦ, ନିରାନନ୍ଦ ତାଙ୍କ ସାମାଜିକ ଉପନ୍ୟାସମାନଙ୍କରେ ସ୍ଥାନ ପାଇଥିଲା । ଚରିତ୍ରଚିତ୍ରଣ, ଗଳ୍ପାଂଶ ବର୍ଣ୍ଣନାରେ ଆପ୍ଟେ ଅପ୍ରତିଦ୍ୱନ୍ଦ୍ୱୀ ଥିଲେ । ଏତାଦୃଶ ସାମାଜିକ ଉପନ୍ୟାସ ମଧ୍ୟରେ ମି (Mee), ପାନ୍ ଲକ୍ଷାତ୍ କୋନ୍ ଘେଟା (Pan Lakshat Kon Gheta), ଯଶୋବନ୍ତ ରାଓ ଖୋରେ(Yashwant Rao Khore), ମେୟଚା ବଜାର (Mayecha Bazar) ଉଲ୍ଲେଖଯୋଗ୍ୟ । ମରହଟ୍ଠା ପାରିବାରିକ ଜୀବନର ବିଭିନ୍ନ ଦିଗ ଏହି ଉପନ୍ୟାସମାନଙ୍କରେ ପ୍ରତିଫଳିତ । ସେ ତାଙ୍କର ଉପନ୍ୟାସମାଳାର ନାମ ଦେଇଥିଲେ "ଆଜ୍ କାଲ୍ କା ଗୋଷ୍ଠୀ" (ଆଜିକାଲିର ଗପ) । ସେଥିରେ ନିଛକ ସମାଜଚିତ୍ର ଅପେକ୍ଷା ସାମାଜିକ ଆଦର୍ଶ ମଧ୍ୟ ପ୍ରତିଫଳିତ । ଉପନ୍ୟାସ ମାଧ୍ୟମରେ ସେ ସମାଜର ସଂସ୍କାର ଚାହିଁଥିଲେ । ତାଙ୍କର "ପାନ୍ ଲକ୍ଷାତ୍‌କୋନ୍ ଘେଟା" ରେ ବ୍ରାହ୍ମଣବାଳିକା ଯମୁନା ବହୁ ନିର୍ଯାତନା ମଧ୍ୟରେ ଏକାନ୍ନପରିବାରରେ ମଧ୍ୟବିତ୍ତ ଶ୍ରେଣୀର ଦୁଃଖଦୁର୍ଦ୍ଦଶାରୂପେ ଦଣ୍ଡାୟମାନ । ଇଂରେଜ ଔପନ୍ୟାସିକ ସ୍କଟଙ୍କ ସଦୃଶ ସେ ମରାଠୀ ଜୀବନର ସୁଖ-ଦୁଃଖଦ୍ୱାରା ଅନୁପ୍ରାଣିତ ହୋଇଥିଲେ । ଆପ୍ଟେ ଚନ୍ଦ୍ରଗୁପ୍ତ ଏବଂ ବିଜୟନଗର ସାମ୍ରାଜ୍ୟପତନ ସଂପର୍କରେ ମଧ୍ୟ ଦକ୍ଷତାର ସହିତ ଲେଖିଥିଲେ । ସେ ନାରୀ ସମାଜର ସଂସ୍କାର ଚାହିଁଥିଲେ । ହରିନାରାୟଣ୍ ଆପ୍ଟେଙ୍କର ପରବର୍ତ୍ତୀ ଜନପ୍ରିୟ ଔପନ୍ୟାସିକ ହେଲେ ଏନ୍. ଏସ. ଫାଡ୍‌କେ ଏବଂ ଭି. ଏସ. ଖାଣ୍ଡେକର ।

ଆପ୍ଟେଙ୍କର ଔପନ୍ୟାସିକ ସମ୍ଭାରଦ୍ୱାରା ବହୁ ଲେଖକ ଉଦ୍‌ବୁଦ୍ଧ ଓ ପ୍ରଭାବିତ ହୋଇଥିଲେ । ତ୍ୟାଟେଭର୍‌କର ସେମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ଓ ତାଙ୍କର ଉପନ୍ୟାସ ସମୂହରେ ପୂର୍ବ ପରମ୍ପରା ଓ ସେ ସାମାଜିକ ଅଭିବ୍ୟକ୍ତି ବାସ୍ତବତା ଓ ଆଦର୍ଶବାଦର ସମନ୍ୱୟ ଦେଖିବାକୁ ମିଳେ । ଉପନ୍ୟାସବର୍ଣ୍ଣିତ ନାୟକ-ନାୟିକା ଓ ସେମାନଙ୍କର ସମସ୍ୟା ଆଧୁନିକତାର ପ୍ରଭାବ ବହନ କରିଥାନ୍ତି । ଓ୍ୟାଟେଭନ୍‌ଙ୍କ ପରେ ମରାଠୀ ଉପନ୍ୟାସରେ ପରିବର୍ତ୍ତନ ଦେଖାଗଲା । ବାମନ୍ ମଲହରଯୋଷୀଙ୍କର ପ୍ରଥମ ଉପନ୍ୟାସ "ରାଗିଣୀ" ଏକ ପଶିବର୍ତ୍ତନ ପ୍ରତିଫଳିତ କରିଥିଲା । ଆପ୍ଟେଙ୍କର ଉପନ୍ୟାସର ନାୟକ-ନାୟିକାଙ୍କର ସହାନୁଭୂତି ଓ ତାଙ୍କର ଯେଉଁ ପ୍ରଖର ଦୃଷ୍ଟି-କୋଣ ତାହା ମରାଠୀ ଉପନ୍ୟାସରୁ ବାଦ୍ ପଡ଼ିଥିଲା । "ରାଗିଣୀ ଉପନ୍ୟାସ ପରିବର୍ତ୍ତିତ ମରାଠୀ ପରିବାର ଓ ସମାଜର କେବଳ ଚିତ୍ରଣ କରି ନ ଥିଲା, ତାହା ବୌଦ୍ଧିକ ଚିନ୍ତାରାଜ୍ୟରେ ଏକ ନୂତନ ଆଭିମୁଖ୍ୟର ସୂତ୍ରପାତ କରିଥିଲା । ସମାଜରେ ନାରୀର ସ୍ଥାନ ସଂପର୍କରେ ତାଙ୍କର ଚିନ୍ତା ଥିଲା ସ୍ୱତନ୍ତ୍ର । ଉପନ୍ୟାସ କଳାର ଆଂଶିକ, ଗଳ୍ପାଂଶ ଆବେଦନ, ଆଦର୍ଶବାଦ, ସାମାଜିକ ଦର୍ଶନ ଓ

ବିପ୍ଳବ ଦୃଷ୍ଟିରୁ ଯୋଶୀଙ୍କର ଅନ୍ୟାନ୍ୟ ଉପନ୍ୟାସ ଯଥା :—ସୁଶୀଲାଚ ଦେବ (Sushila cha Dev), ଇନ୍ଦୁକାଳେ (Indukale), ସରଳାଭୋଳେ (Sarala Bhole) ଉଲ୍ଲେଖଯୋଗ୍ୟ ।

ତାଙ୍କର ଉପନ୍ୟାସଗୁଡ଼ିକ ମରାଠୀ ଉପନ୍ୟାସର ବିକାଶରେ ନୂତନ ଯୁଗର ଶ୍ରୀ ବୋଲି କୁହାଯାଇପାରେ । ଡକ୍ଟର କେଲ୍‌କର୍‌ଙ୍କ ଲେଖନୀରେ ଉପନ୍ୟାସ କଳା ଆହୁରି ପରିବର୍ତ୍ତିତ ହୋଇଥିଲା । ଭାରତୀୟ ସମାଜର ଆଭ୍ୟନ୍ତରୀଣ ସମସ୍ୟା ଓ ସାମାଜିକ ଦ୍ୱନ୍ଦ୍ୱ ତାଙ୍କ ଉପନ୍ୟାସରେ ନିପୁଣ ଭାବରେ ରୂପାୟିତ ହୋଇଥିଲା । ତାଙ୍କର ପ୍ରଥମ ଉପନ୍ୟାସଗୁଡ଼ିକରେ ଶୈଳୀଗତ ଜଟିଳତା ଦେଖାଯାଏ । ଚରିତ୍ରଚିତ୍ରଣରେ ମଧ୍ୟ କେତେ କୃତ୍ରିମତା ଦେଖାଯାଇଥିଲା । କିନ୍ତୁ ତାଙ୍କର ଉପନ୍ୟାସ "ବ୍ରାହ୍ମଣ କନ୍ୟା" ଜୀବନ୍ତ ଚରିତ୍ରଚିତ୍ରଣ ତଥା ଶୈଳୀର ପ୍ରାଞ୍ଜଳତା ଯୋଗୁ ସାଫଲ୍ୟ ଲାଭକରିଥିଲା । ତାଙ୍କର ବୌଦ୍ଧିକ ଚେତନା ଯଥା, ସାମାଜିକ ବିଶ୍ଳେଷଣ ପାଠକମାନଙ୍କୁ ଆକୃଷ୍ଟ କରିଥାଏ । ୧୯୨୦ ମସିହା ପରେ ମରାଠୀ ଉପନ୍ୟାସରେ ଆହୁରି ପରିବର୍ତ୍ତନ ଓ ଅଗ୍ରଗତି ସାଧିତ ହୋଇଥିଲା । ଏହାର କାରଣ ମରାଠୀ ଭାଷାରେ ଏକାଧିକ ପତ୍ରପତ୍ରିକା ପ୍ରକାଶନ ।

ଏହି ଯୁଗରେ ଅଲତେଭକର, ହଡ଼ପ, ନାଥମାଧବ ଏବଂ ନାରାୟଣ ହରି ଆପ୍ଟେ ମରାଠୀ ଉପନ୍ୟାସର ପରିପୁଷ୍ଟି ସାଧନ କରିଥିଲେ । ଏମାନଙ୍କ ଉପନ୍ୟାସଦ୍ୱାରା ମରାଠୀ ଉପନ୍ୟାସର ଉଭୟ ଗୁଣାତ୍ମକ ଏବଂ ପରିମାଣାତ୍ମକ ଶ୍ରୀବୃଦ୍ଧି ସାଧିତ ହେଲା । ମରାଠୀ ପାଠକ ନିକଟରେ ଉପନ୍ୟାସ ଲୋକପ୍ରିୟ କରିବାରେ ଏମାନଙ୍କ ଉଲ୍ଲେଖଯୋଗ୍ୟ ଅନୁବାଦ ମରାଠୀ ସାହିତ୍ୟର ଉନ୍ନତି ଦିଗରେ ମଧ୍ୟ ସାହାଯ୍ୟ କରିଥିଲା । ପ୍ରଥମେ ଉପଦେଶାତ୍ମକ ରଚନାର ଅନୁବାଦ କରାଯାଇଥିଲା । କ୍ରମେ ବିଭିନ୍ନ ଭାରତୀୟ ପ୍ରାଦେଶିକ ଭାଷାରୁ ବିଭିନ୍ନ ଉପନ୍ୟାସ ଅନୂଦିତ ହେଲା । ବଙ୍କିମଚନ୍ଦ୍ରଙ୍କର ଦୁର୍ଗେଶ ନନ୍ଦିନୀ (୧୮୬୪), ଗୁଜୁରାଟୀ ଉପନ୍ୟାସ କରଣ ଘେଲ (୧୮୬୮), ମରାଠୀ ଲେଖକମାନଙ୍କୁ ପ୍ରଥମେ ଅନୁପ୍ରାଣିତ କରିଥିଲା । ପ୍ରଥମେ ସରସ୍ୱତୀଚନ୍ଦ୍ରର ଅନୁବାଦ ୧୮୯୬ ଖ୍ରୀଷ୍ଟାବ୍ଦରେ ବଙ୍କିମଚନ୍ଦ୍ରଙ୍କ ଉପନ୍ୟାସ ଆନନ୍ଦ ମଠର ମରାଠୀ ଅନୁବାଦ ୧୮୯୮ରେ ପ୍ରକାଶିତ ହୋଇଥିଲା । ଓ୍ୱାରେରକର ବଙ୍ଗଳା ଔପନ୍ୟାସିକ ଶରତଚନ୍ଦ୍ରଙ୍କର ସମସ୍ତ ଉପନ୍ୟାସ ମରାଠୀ ଭାଷାରେ ଅନୁବାଦ କରି ମରାଠୀ ସାହିତ୍ୟର କଲ୍ୟାଣ ସାଧନ କରିଥିଲେ । ୧୯୨୦ ମସିହାଠାରୁ ୧୯୪୫ ମସିହା ମଧ୍ୟରେ ମରାଠୀ ଉପନ୍ୟାସର ଅଗ୍ରଣୀ ଭାବରେ ଫାଡ୍‌କେ ଦେଶ୍‌ପାଣ୍ଡେ, ଖାଣ୍ଡେକର ମାଧୋଲ୍‌କରଙ୍କ ନାମ ଉଲ୍ଲେଖଯୋଗ୍ୟ । ମରାଠୀ ଉପନ୍ୟାସକୁ ଆଙ୍ଗିକ ମାର୍ଜିତ କରିବାରେ ଫାଡ୍‌କେ ଦାୟୀ । କଳାର ଉଦ୍ଦେଶ୍ୟ ଚିତ୍ତବିନୋଦନ—ଏହା ଥିଲା ଔପନ୍ୟାସିକ ଫାଡ୍‌କେଙ୍କର ବିଶ୍ୱାସ । କଳାପାଇଁ କଳାର ସୃଷ୍ଟି (Art for art sake) ତାଙ୍କର ଥିଲା ଆଦର୍ଶ । ସେ ଏହି ଆଦର୍ଶକୁ ତାଙ୍କ ଉପନ୍ୟାସମାନଙ୍କରେ

ପ୍ରୟୋଗ କରିଥିଲେ । ନୂତନ ଆଙ୍ଗିକ ବିସ୍ତାରରେ ତାଙ୍କର ଉପନ୍ୟାସ "ଯାଦୁଘର" ଆବୃତ । ଚରିତ୍ରଚିତ୍ରଣ ତଥା ନୂତନ ଶୈଳୀ ତାଙ୍କ ଲେଖନୀର ବୈଶିଷ୍ଟ୍ୟ । ତାଙ୍କର ଉପନ୍ୟାସର ସଂଖ୍ୟା ତିରିଶରୁ ଅଧିକ । ଉପରିସ୍ଥ ମଧ୍ୟବିତ୍ତ ଶ୍ରେଣୀୟ ଚରିତ୍ର ଉପସ୍ଥାପନ କରିବାରେ ଫାଡ୍‌କେଙ୍କର ଉପନ୍ୟାସ ଉଲ୍ଲେଖଯୋଗ୍ୟ । ତାଙ୍କର ବର୍ଣ୍ଣିତ ଚରିତ୍ର ରୋମାଣ୍ଟିକ୍ ପରିବେଶରେ ସମୃଦ୍ଧ । ପ୍ରବାସୀ ଉଦ୍ଧାର ଓ ଝେଲମ୍ ପ୍ରଭୃତି ଉପନ୍ୟାସରେ ଫାଡ୍‌କେ ରାଜନୈତିକ ଓ ମନସ୍ତାତ୍ତ୍ୱିକ ସମସ୍ୟାର ବିଶ୍ଳେଷଣ କରିଥିଲେ । ତାଙ୍କ ଉପନ୍ୟାସରେ ସତେ ଯେପରି ପଳାୟନବାଦର ଅସ୍ପଷ୍ଟ ଗୁଞ୍ଜନ ଶୁଣିବାକୁ ମିଳେ । ଖାଣ୍ଡେକରଙ୍କ ଉପନ୍ୟାସ ନିର୍ଦ୍ଦିଷ୍ଟ ଆଦର୍ଶଦ୍ୱାରା ଅନୁପ୍ରାଣିତ । ସେ ନିଜର ଆଦର୍ଶବାଦକୁ ଉପନ୍ୟାସର ଚରିତ୍ରମାନଙ୍କ ମାଧ୍ୟମରେ ପ୍ରକାଶ କରିଥିଲେ । ତାଙ୍କର ଶୈଳୀ ମଧ୍ୟ ଅଳଂକରଣ ତଥା କୃତ୍ରିମତାଦ୍ୱାରା ଭାରାକ୍ରାନ୍ତ, କିନ୍ତୁ ତାଙ୍କ ଉପନ୍ୟାସର ଆଧ୍ୟାତ୍ମିକ ଚିନ୍ତାଧାରାର ପ୍ରକାଶ ଘଟିଥିଲା । ସମସାମୟିକ ମରାଠୀ ସମାଜ ଉପରେ ଲେଖକଙ୍କର ଚିନ୍ତା ପ୍ରଭାବ ପକାଇଥିଲା । ଆଧୁନିକ ମରାଠୀ ଉପନ୍ୟାସର ବିବର୍ତ୍ତନରେ ଖାଣ୍ଡେକରଙ୍କ ଉପନ୍ୟାସ ଯଥା—ଉଲ୍କା, କ୍ରୌଞ୍ଚବଧ, ବଶିଷ୍ଟ କୃତ, "ମୁକ୍ତାମା" ମରାଠୀ ଉପନ୍ୟାସର ପ୍ରଥମ ରାଜନୈତିକ ଉପନ୍ୟାସ । ଅନେକ ଦୃଷ୍ଟିରୁ ଫାଡ୍‌କେ ଓ ଖାଣ୍ଡେକରଙ୍କ ଉପନ୍ୟାସ ପରସ୍ପରଠାରୁ ସ୍ୱତନ୍ତ୍ର । ଫାଡ୍‌କେଙ୍କର ଉପନ୍ୟାସରେ ଆନନ୍ଦବାଦ ଏବଂ ଖାଣ୍ଡେକରଙ୍କ ଉପନ୍ୟାସରେ ଆଦର୍ଶବାଦ ହିଁ ଉଲ୍ଲେଖଯୋଗ୍ୟ ।

ମାଧୋଲକର ସମସାମୟିକ ରାଜନୈତିକ ତଥା ସାମାଜିକ ସମସ୍ୟା ସହିତ ବିଶେଷ ପରିଚିତ । ତେଣୁ ତାଙ୍କ ଉପନ୍ୟାସରେ ସମସାମୟିକ ଜୀବନର ଚିତ୍ର ପ୍ରତିଫଳିତ ହୋଇଥିଲା । ତାଙ୍କ ଉପନ୍ୟାସରେ ନିର୍ଦ୍ଦିଷ୍ଟ ରାଜନୈତିକ ଆଦର୍ଶର ଅଭାବ ଦେଖାଯାଏ । "ଚନ୍ଦନବାଡ଼ି" ତାଙ୍କର ଶ୍ରେଷ୍ଠ ଉପନ୍ୟାସ । ସେଥିରେ ଲେଖକ ନାଗପୁର ଶିଳାଞ୍ଚଳର ଏକ ହରିଜନ ବାଳିକାର ଜୀବନ ଚିତ୍ରଣ କରିଥିଲେ । ସେହି ବାଳିକା ପ୍ରତି ଲେଖକଙ୍କର ସହାନୁଭୂତି ପ୍ରକାଶ ପାଇଥିଲା । ତାଙ୍କର ଶୈଳୀ ସଂସ୍କୃତପୀଡ଼ିତ, ପୁରୁଷୋତ୍ତମ ଯଶୋବନ୍ତ ଦେଶପାଣ୍ଡେଙ୍କର ଉପନ୍ୟାସ ପୂର୍ବୋକ୍ତ ଉପନ୍ୟାସମାନଙ୍କ ଠାରୁ ସ୍ୱତନ୍ତ୍ର । ସେଥିରେ ବ୍ୟକ୍ତିର ଆଭିମୁଖ୍ୟ ବିଶେଷ ଭାବରେ ପ୍ରତିଫଳିତ । ଆବେଗ ତଥା ଭାବପ୍ରବଣତା ଓ ବ୍ୟକ୍ତିଗତ ଅନୁଭୂତିର ଗଭୀରତା ସେଥିରେ ପ୍ରତିଫଳିତ । ତାଙ୍କର ପ୍ରଥମ ଉପନ୍ୟାସ "ବନ୍ଦନାଚ୍ୟା ପାଲକେତେ"ରେ ଆଦର୍ଶ, ପ୍ରେମ ତଥା ବ୍ୟକ୍ତିଗତ ସ୍ୱାଧୀନତାର ଆଭାସ ଦେଖିବାକୁ ମିଳେ । ଏହା ଯେତେବେଳେ ପ୍ରକାଶିତ ହେଲା ସେତେବେଳେ ପାଠକ ସମାଜରେ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା । ତାଙ୍କର ପରବର୍ତ୍ତୀ ଉପନ୍ୟାସ "ବିଶାଳ ଜୀବନ" ବ୍ୟକ୍ତି ଉପରେ ତଦାନୀନ୍ତନ ରାଜନୈତିକ ଘଟଣାବଳୀର କିପରି ପ୍ରଭାବ ପଡ଼ିଥିଲା, ତାହାର ବିଶ୍ଳେଷଣ ଦେଖିବାକୁ ମିଳେ । ଏତାଦୃଶ ବର୍ଣ୍ଣନାରେ ନୈପୁଣ୍ୟ ଓ ଚାତୁର୍ଯ୍ୟ ଅଦ୍ୱିତୀୟ ।

ଦେଶପାଣ୍ଡେଙ୍କ ଉପନ୍ୟାସର ଲକ୍ଷଣ ହେଉଛି ବ୍ୟକ୍ତିଗତ ଦୃଷ୍ଟିକୋଣ ଏବଂ ଭାବପ୍ରବଣତା । ରଘୁବୀର ସାମନ୍ତଙ୍କ ଉପନ୍ୟାସରେ ମହାରାଷ୍ଟ୍ରର ଗାର୍ହସ୍ଥ୍ୟ ଜୀବନର ଚିତ୍ର ପରିଦୃଷ୍ଟ । ସେନ୍ ଗୁରୁଜୀଙ୍କ ଉପନ୍ୟାସ ବ୍ୟକ୍ତିର ଆବେଗ ଓ ଉଚ୍ଛ୍ୱାସ-ପ୍ଲାବିତ । ମାନବିକତା ମଧ୍ୟ ତାଙ୍କ ଉପନ୍ୟାସର ଏକ ସ୍ୱତନ୍ତ୍ର ଗୁଣ । ତାଙ୍କର ଉପନ୍ୟାସ ଯୁବକସମାଜରେ ଆଦୃତ । ଅନ୍ୟତମ ଔପନ୍ୟାସିକ ବିକଲ ନିଜର ବ୍ୟଙ୍ଗ-ବିଦ୍ରୂପ ଦୃଷ୍ଟିକୋଣ ଯୋଗୁଁ ବିଶେଷ ପରିଚିତ । ଏହି ଔପନ୍ୟାସିକଗଣ ମରାଠୀ ଉପନ୍ୟାସର ଉନ୍ନତି ସାଧନ କରିଥିଲେ । ସେମାନେ ଉପନ୍ୟାସ କ୍ଷେତ୍ରରେ କୌଣସି ନୂତନ ପ୍ରବାହ ସୃଷ୍ଟିକରି ପାରି ନ ଥିଲେ । ଫାଡ଼୍କେଙ୍କର ଯେଉଁ ପ୍ରତିଷ୍ଠା ଏବଂ ପ୍ରଭାବ ତାହା ଏମାନଙ୍କ ଉପନ୍ୟାସରେ ଦେଖାଯାଏ ନାହିଁ । କିନ୍ତୁ ପୂର୍ବ ପରମ୍ପରା ବିରୋଧରେ ଏମାନଙ୍କର ପ୍ରତିକ୍ରିୟା ପ୍ରକାଶ ପାଇଥିଲା । ସେମାନେ ମଧ୍ୟ ଖାଣ୍ଡେକରଙ୍କର କୃତ୍ରିମ ଆଦର୍ଶବାଦର ପକ୍ଷପାତୀ ନ ଥିଲେ । ପୁନଶ୍ଚ ଗତାନୁଗତିକ ଢଙ୍ଗରେ ପ୍ରେମ ଉଦ୍‌ବେଳ ନାୟକ-ନାୟିକାମାନଙ୍କର ବର୍ଣ୍ଣନାଧିକ୍ୟ ସେମାନଙ୍କ ଉପନ୍ୟାସରୁ ବାଦ ପଡ଼ି ଯାଇଥିଲା । କ୍ରମଶଃ ବାସ୍ତବତା ପ୍ରତି ଔପନ୍ୟାସିକମାନଙ୍କର ଦୃଷ୍ଟି ଆକୃଷ୍ଟ ହୋଇଥିଲା । ଅବଶ୍ୟ ରଘୁବୀର ସାମନ୍ତ ପ୍ରଭୃତିଙ୍କ ଉପନ୍ୟାସରେ କେତେକ ତ୍ରୁଟି ଓ ବିଚ୍ୟୁତି ମଧ୍ୟ ଦେଖାଯାଏ ।

ବିଭାବରୀ ସିରୁର୍‌କର ଏବଂ ଗୀତା ସେନ୍ ନାମକ ନାରୀ ଲେଖିକା ଦ୍ୱୟ ମଧ୍ୟ ଉପନ୍ୟାସ କ୍ଷେତ୍ରରେ ନିଜ ନିଜର ଦାନ ଚିହ୍ନିତ କରି ପାରିଥିଲେ । ବହୁଦିନ ପରେ ପ୍ରକାଶିତ ବିଭାବରୀ ସିରୁର୍‌କରଙ୍କର "ବଳୀ" ଉପନ୍ୟାସ (୧୯୫୦) ଏକ ନୂତନ ପଦକ୍ଷେପ । ଏହା ତାଙ୍କର ଏକ ମନୋରମ ସୃଷ୍ଟି । "ଜାଙ୍ଗ" ତାଙ୍କର ଆଉ ଖଣ୍ଡିଏ ଉପନ୍ୟାସ । ଅପରାଧପ୍ରବଣ ପାର୍ବତୀୟ ଯୁବକର ଆଧୁନିକ ପରମ୍ପରା-ବିରୋଧୀ ସଭ୍ୟତାର ପୃଷ୍ଠଭୂମିରେ ଯେଉଁ ପ୍ରତିକ୍ରିୟା, ତାହା ହିଁ ଉପନ୍ୟାସରେ ବର୍ଣ୍ଣିତ । ଊନବିଂଶ ଶତାବ୍ଦୀର ଶେଷପାଦରୁ ମରାଠୀ ଉପନ୍ୟାସ କ୍ଷେତ୍ର ପ୍ରତି ନାରୀ ଲେଖିକା ଦୃଷ୍ଟି ଦେଇଥିଲେ । ସାଲୁବାଈ ତାମ୍ବୁଓ୍ୱାଳର ପଣ୍ଡିତଗୋଷ୍ଠୀର ଉପନ୍ୟାସ ମୁକ୍ତାମାଳାର ଅନୁସରଣରେ "ଚନ୍ଦ୍ରପ୍ରଭା ବିରହ ବର୍ଣ୍ଣନ" ନାମକ ଉପନ୍ୟାସ ଲେଖିଥିବା ଜଣାଯାଏ କିନ୍ତୁ ନାରୀ ଲେଖିକାମାନଙ୍କ ଉପନ୍ୟାସ ବହୁ ତ୍ରୁଟିପୂର୍ଣ୍ଣ । ତଥାପି ନାରୀ ହୃଦୟର କରୁଣ ଆବେଗ ବର୍ଣ୍ଣନାରେ ସେ ସବୁ ଉପନ୍ୟାସ ଉଲ୍ଲେଖଯୋଗ୍ୟ । ୧୯୫୦ ମସିହା ପରେ ମରାଠୀ ଉପନ୍ୟାସ ଉଭୟ ବ୍ୟାପ୍ତି ଓ ପ୍ରକାର ଭେଦରେ ସମୃଦ୍ଧ ହୋଇ ପାରିଛି । ଆର୍. ଡବ୍ଲ୍ୟୁ. ଦିଘେଙ୍କର ଉପନ୍ୟାସର ସ୍ୱତନ୍ତ୍ର ଗୁଣ ହେଉଛି ଗ୍ରାମ୍ୟ ଜୀବନ ତଥା ଅଧିବାସୀମାନଙ୍କର ବର୍ଣ୍ଣନା । ମହାରାଷ୍ଟ୍ରର ଗ୍ରାମଗହଳର କ୍ଷେତବାଡ଼, ବର୍ଷା, ଶୀତ, ବନ୍ୟାପ୍ଳାବନ ଏବଂ ସରଳ ବିଶ୍ୱାସ ଆଦିବାସୀମାନଙ୍କର ଆବେଗ ଦିଘେଙ୍କ ଉପନ୍ୟାସରେ ରୂପାୟିତ

ହୋଇପାରିଛି । ଏହା ହିଁ ତାଙ୍କ ଉପନ୍ୟାସର ନୂତନ ଦୃଷ୍ଟିକୋଣ । ଶ୍ରୀଧର ଦେଶପାଣ୍ଡେ ଉପନ୍ୟାସ ରଚନାରେ ଫାଡ଼୍‌କେଙ୍କର ଆଦର୍ଶ ଗ୍ରହଣ କରିଥିଲେ କିନ୍ତୁ ସେ ମହାରାଷ୍ଟ୍ର ସୀମାବାହାରୁ ଅନେକ ଉପାଦାନ ତାଙ୍କ ଉପନ୍ୟାସପାଇଁ ସଂଗ୍ରହ କରିଥିଲେ । ବେଡେକର ଖଣ୍ଡିଏ ମାତ୍ର ଉପନ୍ୟାସ ଲେଖିଥିଲେ । ତାହାର ନାମ ହେଉଛି "ରଣାଙ୍ଗନ" । ନିପୁଣ ଆଙ୍ଗିକ ଓ ଆନ୍ତର୍ଜାତିକ ପୃଷ୍ଠଭୂମି ଯୋଗୁଁ ଏହାର ସ୍ଥାନ ଅତି ଉଚ୍ଚରେ, ଏଥିରେ ନିର୍ଦ୍ଦେଶିତ ଗଭୀର ମାନବିକତା ଏହାର ପ୍ରଧାନ ଆବେଦନ । ଉପନ୍ୟାସ ମାଧ୍ୟମରେ ଗ୍ରାମ୍ୟ ଜୀବନ ଚିତ୍ରଣ କରିବାରେ ଥୋକଲ୍ ସୁପରିଚିତ । ୧୯୪୨ ମସିହାର ଘଟଣାବଳୀ ଔପନ୍ୟାସିକମାନଙ୍କୁ ନୂତନ ସୃଷ୍ଟିପାଇଁ ଖୋରାକ୍ ଯୋଗାଇଥିଲା । ସିରଓ୍ୱାଡେକର ଏହି ଘଟଣାକୁ ଭିତ୍ତି କରି ଗୋଟିଏ ଗ୍ରାମ୍ୟ ଶିକ୍ଷକର ଚିତ୍ର ଅଙ୍କନ କରିଥିଲେ । ୧୯୫୦ ପରବର୍ତ୍ତୀକାଳରେ ଏକ ସାମାଜିକ, ଅର୍ଥନୈତିକ ତଥା ଉଗ୍ର ରାଜନୈତିକ ଚିନ୍ତା ନୂତନ ମରାଠୀ ଉପନ୍ୟାସର ପୃଷ୍ଠଭୂମି ଓ ଚରିତ୍ରଚିତ୍ରଣରେ ପ୍ରତିଫଳିତ ହେଲା । ଆଧୁନିକ ଔପନ୍ୟାସିକ ମାନବଧର୍ମୀ ଓ ବାସ୍ତବବାଦୀ ।

୧୯୫୦ ମସିହା ହିଁ ଆଧୁନିକ ମରାଠୀ ଉପନ୍ୟାସର ଯଥାର୍ଥ ଘଡ଼ିସନ୍ଧି ସମୟ । ଏସ୍. ଆର୍. ବିଓ୍ୱଲକରଙ୍କ "ସୁନୀତା" ଉପନ୍ୟାସ ନୂଆଖାଲିର ଘଟଣାବଳୀକୁ କେନ୍ଦ୍ର କରି ଲିଖିତ ହୋଇଥିଲା । ସେଥିରେ ଅନୁଭୂତି, ସହାନୁଭୂତି ଓ ଆଙ୍ଗିକ କୌଶଳ ପ୍ରଦର୍ଶିତ । ଏହି ଯୁଗରେ ଏସ୍. ଏନ୍. ପେଣ୍ଡ୍-ସେଙ୍କ ନାମ ଔପନ୍ୟାସିକ ଭାବରେ ବିଶେଷ ଭାବରେ ଶୁଣାଯାଏ । ତାଙ୍କର ଉପନ୍ୟାସ ଆଞ୍ଚଳିକ ବର୍ଣ୍ଣନାରେ ପରିପୂର୍ଣ୍ଣ । ତାଙ୍କର "ଏଲ୍‌ଗାର୍," "ହାଡ଼ପାର", "ଗରମ୍ ବିଗ୍ ବାପୁ" ପ୍ରଭୃତି ଉପନ୍ୟାସ ପରିପକ୍ୱତାର ପରିଚାୟକ । ତାଙ୍କର ଉପନ୍ୟାସ ବିଷୟବସ୍ତୁ କୋଙ୍କନ ଅଞ୍ଚଳରୁ ଗୃହୀତ । ଏକକ ବ୍ୟକ୍ତି ହିଁ ତାଙ୍କ ଉପନ୍ୟାସରେ ପ୍ରାଧାନ୍ୟ ଲାଭ କରିଥାଏ । ସଦାନନ୍ଦ ରେଗେ, ବସନ୍ତ କାଣେକର, ବାମନ ଚର୍‌ଘରେ, ରଞ୍ଜିତ ଦେଶାଇ ପ୍ରଭୃତିଙ୍କ ଉପନ୍ୟାସରେ ଆଧୁନିକ ସମାଜର ଚିତ୍ର ପ୍ରତିଫଳିତ । ମରାଠୀ ଉପନ୍ୟାସର ଉତ୍ପତ୍ତି ଓ ବିକାଶର ଇତିହାସ ଏହିପରି ଘଟଣାବହୁଳ । କିନ୍ତୁ କ୍ଷୁଦ୍ରଗଳ୍ପ ଓ ନାଟକ ତୁଳନାରେ ଏହି ବିଭାଗ ସେତେ ସମୃଦ୍ଧ ନୁହେଁ ।

କ୍ଷୁଦ୍ରଗଳ୍ପ—

ମରାଠୀ ଭାଷାରେ କ୍ଷୁଦ୍ରଗଳ୍ପର ପ୍ରଥମ ନାମ ଥିଲା 'ସ୍ଫୁଟଗୋଷ୍ଟୀ' । ଔପନ୍ୟାସିକ ହରିନାରାୟଣ ଆପ୍ଟେ ଦୀର୍ଘ ଉପନ୍ୟାସ ଓ କ୍ଷୁଦ୍ର ଗଳ୍ପ ମଧ୍ୟରେ ପ୍ରଭେଦ ଚିହ୍ନିତ କରିବାପାଇଁ ଏପରି ନାମକରଣ କରିଥିଲେ । ସେ ପ୍ରଥମେ କ୍ଷୁଦ୍ରଗଳ୍ପକୁ

ସାମାଜିକ ମର୍ଯ୍ୟାଦାରେ ଭୂଷିତ କରିଥିଲେ । ତାଙ୍କ ପୂର୍ବରୁ କ୍ଷୁଦ୍ରଗଳ୍ପ ନାମରେ ରୋମାଞ୍ଚକର ଗଳ୍ପ ଏବଂ ପରଗଳ୍ପ ପ୍ରଚଳିତ ଥିଲା । ସେଥିରେ କ୍ଷୁଦ୍ରଗଳ୍ପର ଶୈଳିକ ଅଭିବ୍ୟକ୍ତି ଆଦୌ ନଥିଲା କହିଲେ ଚଳେ । ଆପ୍ଟେ ସର୍ବପ୍ରଥମେ କ୍ଷୁଦ୍ରଗଳ୍ପକୁ ଜୀବନଧର୍ମୀ କରିଥିଲେ । ତଥାପି ଆପ୍ଟେଙ୍କର ଗଳ୍ପ ବହୁ ଦିଗରୁ ଅପୂର୍ଣ୍ଣ ଓ ଅସ୍ୱାଭାବିକତା ଥିଲା । ତାହାସବୁ ଘଟଣାବଳୀର ବର୍ଣ୍ଣନା ବୋଲି କୁହାଯାଇପାରେ । ସେଥିପାଇଁ ଆପ୍ଟେ ଓ ତାଙ୍କର ସମସାମୟିକ ଲେଖକମାନଙ୍କର ଯଥା—ପାଗିନ ଜୋଷୀ ଖୋଲଡାକର କେଲକର ଗଳ୍ପକୁ ଲଘୁକଥା ବୋଲି ବାସ୍ତବର ନକଲ ଷ୍ଟ୍ରଟଗୋଷ୍ଠୀ ବୋଲି ଚିହ୍ନିତ କରାଯାଏ ।

ଉନବିଂଶ ଶତାବ୍ଦୀର ଶେଷ ଭାଗରେ ୧୮୯୫ ମସିହାରେ 'ମନୋରଞ୍ଜନ ପତ୍ରିକା' ପ୍ରକାଶିତ ହେବାପରେ ଆଧୁନିକ ମରାଠୀ କ୍ଷୁଦ୍ରଗଳ୍ପର ସୂତ୍ରପାତ ହେଲା । ୧୯୧୦ ମସିହା ମଧ୍ୟରେ କ୍ଷୁଦ୍ରଗଳ୍ପ ନିର୍ଦ୍ଦିଷ୍ଟ ଶୈଳିକ ପ୍ରତିଷ୍ଠା ଲାଭ କଲା । ନାରାୟଣ ହରି ଆପ୍ଟେ, ଶ୍ରୀମତୀ କାଶୀବାଈ କାନିଟକର, ଗିରିଜାବାଈ କେଲକର ବିଶେଷତଃ ଭି. ଏସ୍. ଗୁରୁଜର ଏବଂ କେ. କେ. ଗୋକେଲ ମରାଠୀ କ୍ଷୁଦ୍ରଗଳ୍ପର ରୂପ ପ୍ରବର୍ତ୍ତିତ ହେବାରେ ସାହାଯ୍ୟ କରିଥିଲେ । ସେମାନେ ସୁପରିଚିତ ଗଳ୍ପଲେଖକ ଥିଲେ । ମୌଳିକ ଗଳ୍ପ ବ୍ୟତୀତ ସେମାନେ ବଙ୍ଗଳା ଏବଂ ଇଂରାଜୀରୁ ଗଳ୍ପ ମରାଠୀ ଭାଷାରେ ଅନୁବାଦ କରିଥିଲେ । ଏମାନଙ୍କ ଲେଖନୀରେ କ୍ଷୁଦ୍ରଗଳ୍ପ ନୂତନଶକ୍ତି ଲାଭ କରିଥିଲା । ୧୯୦୦ ରୁ ୧୯ ୦ ମସିହା ମଧ୍ୟରେ କ୍ଷୁଦ୍ରଗଳ୍ପ ମୁଖ୍ୟତଃ ବିଷୟବସ୍ତୁ ପ୍ରଧାନ ଥିଲା । ଘଟଣା ଉପରେ ଗୁରୁତ୍ୱ ଦିଆଯାଉଥିଲା । ଚରିତ୍ରଚିତ୍ରଣ ପ୍ରତି ଧ୍ୟାନ ଦିଆଯାଉ ନଥିଲା । ନୀତି ଓ ଆଦର୍ଶ ଲକ୍ଷ୍ୟ ହେଲେହେଁ ବିବାହ ପ୍ରଭୃତି ସାମାଜିକ ପ୍ରଥା ଏହି ସମୟର ଗଳ୍ପମାନଙ୍କରେ ସ୍ଥାନ ପାଇଥିଲା । ଏହି ସମୟରେ ଦିବାକର କୃଷ୍ଣଙ୍କର କ୍ଷୁଦ୍ରଗଳ୍ପ ପାଠକ ସମାଜରେ ଆଦର ଲାଭ କରିଥିଲା । ତାଙ୍କ୍ର ଯେତେବେଳେ ୨୫ ବର୍ଷ ସେତେବେଳେ ତାଙ୍କର ପ୍ରଥମ 'ଗଳ୍ପ ସଙ୍ଗ୍ରହ' ପ୍ରକାଶିତ ହୋଇଥିଲା (୧୯୨୭) । ତାଙ୍କର ଗଳ୍ପରେ କେତେକ ସ୍ୱାତନ୍ତ୍ର୍ୟ ଦେଖାଗଲା । ତାହାହେଉଛି ଘଟଣା ଅପେକ୍ଷା ଚରିତ୍ର, ଆବେଗ ଓ ଭାବର ପ୍ରାଧାନ୍ୟ । ତାଙ୍କର କ୍ଷୁଦ୍ରଗଳ୍ପରେ ମରାଠୀ କ୍ଷୁଦ୍ରଗଳ୍ପ ପ୍ରଥମଥର ପାଇଁ ଲାଳିତ୍ୟ, କାରୁଣ୍ୟ ଓ ଶିଳ୍ପ ଗୁରୁତ୍ୱ ପ୍ରାପ୍ତ ହେଲା । ଲେଖକ ତରୁଣ ହୋଇଥିବାରୁ ତାଙ୍କର ଗଳ୍ପମାନଙ୍କରେ ରୋମାଞ୍ଚବାଦ ମଧ୍ୟ ପ୍ରକଟିତ ହୋଇଥିଲା । ସ୍ୱପ୍ନ ଓ କଳ୍ପନା ସେଥିରୁ ବାଦ୍ ପଡ଼ି ନ ଥିଲା । ତଥାପି ମରାଠୀ କ୍ଷୁଦ୍ରଗଳ୍ପର କ୍ରମଶଃ ପରିବର୍ତ୍ତିତ ରୂପପାଇଁ ଦିବାକର କୃଷ୍ଣଙ୍କର ଦାନ ସ୍ମରଣୀୟ । ୧୯୨୦ରୁ ୧୯୩୫ ମସିହା ମଧ୍ୟରେ ମରାଠୀ କ୍ଷୁଦ୍ରଗଳ୍ପର ଆହୁରି ପରିବର୍ତ୍ତନ ସାଧିତ ହେଲା । ଏହି ଯୁଗରେ ବହୁ ବିଦେଶୀ ଲେଖକ ଯଥା—ଓ. ହେନେରୀ, ଡି. ମୋପାସାଁ, ଗଲ୍ସୱାର୍ଦି, ହାର୍ଡି, ଚେକଭ, ଡି. ଏଚ. ଲରେନ୍ସ ଏବଂ ଭାରତୀୟ ଲେଖକ ରବୀନ୍ଦ୍ରନାଥ

ଠାକୁର, ପ୍ରେମଚନ୍ଦ୍ରଙ୍କର ଗଳ୍ପ ମରାଠୀ ଭାଷାରେ ଅନୂଦିତ ହେଲା । ତେଣୁ ସେମାନଙ୍କର ଲେଖାର ପ୍ରଭାବ ମରାଠୀ ଗଳ୍ପକୁ ପ୍ରଭାବିତ କରିଥିଲା । ଏହି ଯୁଗରେ ମଧ୍ୟ ମାର୍କସ ଫ୍ରଏଡ଼ ପ୍ରଭୃତିଙ୍କର ଚିନ୍ତା ମରାଠୀ ବୁଦ୍ଧିଜୀବୀମାନଙ୍କୁ ସ୍ପର୍ଶ କରିପାରିଥିଲା । କ୍ଷୁଦ୍ରଗଳ୍ପ ବିଭାଗରେ ଏକାଧିକ ପ୍ରଭୃତି ଲକ୍ଷଣ ଦେଖାଗଲା । ଏହି ସମୟରେ ଏନ୍. ଏସ୍. ଫାଡ଼କେ ଓ ବି. ଏସ୍. ଖାଣ୍ଡେଲକରଙ୍କର କ୍ଷୁଦ୍ରଗଳ୍ପ ପ୍ରକାଶିତ ହେଲା । କାଳକ୍ରମେ ସେମାନେ କଥାଶିଳ୍ପୀ ଭାବରେ ପାଠକସମାଜରେ ଆଦୃତ ହେଲେ । ୧୯୨୮ ମସିହାରେ ପ୍ରକାଶିତ 'ଯଶୋବନ୍ତ' ପତ୍ରିକା କ୍ଷୁଦ୍ରଗଳ୍ପର ପରିସରକୁ ଆହୁରି ବ୍ୟାପକ କରିଦେଲା । ଫାଡ଼କେଙ୍କର କ୍ଷୁଦ୍ରଗଳ୍ପ ୧୯୨୦ ମସିହା ପୂର୍ବବର୍ତ୍ତୀ ଗଳ୍ପମାନଙ୍କର ସାମାନ୍ୟ ଉନ୍ନତି ମାତ୍ର । ଏହାର ଗଠନକଳା ସ୍ୱତନ୍ତ୍ର ବୋଲି ଜଣା ପଡ଼ିଥିଲା କିନ୍ତୁ ଏହାର ଆଭ୍ୟନ୍ତରୀଣ ବୈଶିଷ୍ଟ୍ୟ, ଯୋଗ୍ୟତା ସେତେ ନଥିଲା । ଗଳ୍ପରଚନାରେ ତାଙ୍କର ଦୃଷ୍ଟିକୋଣ ଥିଲା କଳାପାଇଁ କଳା । ମାତ୍ର ଭି. ସେ. ଖାଣ୍ଡେଲଙ୍କ ଗଳ୍ପର ଆଦର୍ଶ ଥିଲା ଜୀବନପାଇଁ କଳା । ସେ ମାନବର ସେବାରେ କ୍ଷୁଦ୍ରଗଳ୍ପ ଓ କଳାକୁ ପ୍ରୟୋଗ କରିଥିଲେ । ସେ ଶ୍ରମିକ ଓ ସର୍ବହରା-ମାନଙ୍କର ସମସ୍ୟାପ୍ରତି ସହାନୁଭୂତି ପ୍ରକାଶ କରିଥିଲେ । ତାଙ୍କ କ୍ଷୁଦ୍ରଗଳ୍ପ ଅଳଂକରଣ ଓ ଅତିରଞ୍ଜନଦ୍ୱାରା ଭାରାକ୍ରାନ୍ତ । ଫାଡ଼କେଙ୍କର ଆଙ୍ଗିକ କୌଶଳ ଓ ଆଙ୍ଗିକ ନୈପୁଣ୍ୟ ଏବଂ ଖାଣ୍ଡେଲକରଙ୍କର ଆଦର୍ଶ ଦୃଷ୍ଟିକୋଣ ତଥା ଶୈଳୀ ପାଠକମାନଙ୍କୁ ଆକୃଷ୍ଟ କରିଥିଲା । ସାମାଜିକ ସଂସ୍କାରପାଇଁ ଖାଣ୍ଡେଲକର ତାଙ୍କ ଗଳ୍ପରେ ବରାବର ଆହ୍ୱାନ ଦେଇଥିଲେ । ଏହି ଗଳ୍ପଲେଖକ ଦ୍ୱୟ ମରାଠୀ ପାଠକ ମାନଙ୍କୁ ଖୁବ୍ ପ୍ରଭାବିତ କରିପାରିଥିଲେ । ୧୯୩୦ ମସିହାରୁ ୧୯୩୫ ମସିହା ମଧ୍ୟରେ ଆଉ ଦୁଇଜଣ ଗଳ୍ପ ଲେଖକଙ୍କର ଆବିର୍ଭାବ ହୋଇଥିଲା । ସେମାନେ ହେଉଛନ୍ତି ଯଶୋବନ୍ତ ଗୋପାଳ ଯୋଷୀ ଓ ବାମନ କୃଷ୍ଣ ଛେରଘୋଡ଼େ । ଏମାନେ ମରାଠୀ କ୍ଷୁଦ୍ରଗଳ୍ପର ଆଭ୍ୟନ୍ତରୀଣ ଗଠନପ୍ରଣାଳୀକୁ ଆହୁରି ଦୃଢ଼କରି ଦେଇଥିଲେ । ଯୋଷୀଙ୍କ କ୍ଷୁଦ୍ରଗଳ୍ପରେ ଗ୍ରାମ୍ୟ-ସ୍ୱାଚ୍ଛନ୍ଦ୍ୟ ଓ ଚମତ୍କାରିତା ପ୍ରତିଫଳିତ । ତାଙ୍କର ଉଚ୍ଚଶିକ୍ଷା ନଥିଲା । ସେଥିପାଇଁ ବୈଦେଶିକ ଗଳ୍ପ ତାଙ୍କୁ ପ୍ରଭାବିତ କରିପାରି ନଥିଲା । ତାଙ୍କର ପ୍ରଖର ବୁଦ୍ଧି, ବ୍ୟଙ୍ଗବିଦ୍ରୂପ କରିବାର ଶକ୍ତି ଅସାଧାରଣ ଥିଲା । ତାଙ୍କ ଗଳ୍ପର ପ୍ରଧାନ କେନ୍ଦ୍ରବିନ୍ଦୁ ଥିଲା ମରାଠୀ ପରିବାରର ବିଭିନ୍ନ ସମସ୍ୟା । ବ୍ୟକ୍ତିର ଆବେଗ ଓ ଆଗ୍ରହ ତାଙ୍କ ଗଳ୍ପରେ ରୂପାୟିତ ହୋଇଥିଲା ।

ତାଙ୍କର ଶୈଳୀରେ କୌଣସି ଚମତ୍କାରିତା ନଥିଲା । ସେ ଲେଖୁ ଲେଖୁ ନିଜର ଶୈଳୀ ପରିପୁଷ୍ଟ କରିପାରିଥିଲେ । ସମାଜର ନିର୍ଦ୍ଦିଷ୍ଟ ନରନାରୀଙ୍କ ପାଇଁ ତାଙ୍କର ବ୍ୟଙ୍ଗବିଦ୍ରୂପ ଉଦ୍ଦିଷ୍ଟ ଥିଲା । ଛେରଘୋଡ଼େଙ୍କ କ୍ଷୁଦ୍ରଗଳ୍ପ ଦିବାକର କୃଷ୍ଣଙ୍କ ଗଳ୍ପ ସହିତ କେତେକ ଅଂଶରେ ସମାନ । ଦିବାକର କୃଷ୍ଣଙ୍କ ସଦୃଶ ସେ ତାରୁଣ୍ୟର ଆଶା, ଆକାଂକ୍ଷା, ଆବେଗ, ଭାବୋଚ୍ଛ୍ୱାସ ଓ ନୈରାଶ୍ୟ ପ୍ରତି ଅବହିତ

ଥିଲେ । ତରୁଣଭାବ ଓ ଆବେଗ ପ୍ରତି ତାଙ୍କ ଗଳ୍ପରେ ବିଶେଷ ଧ୍ୟାନ ଦେଇଥିଲେ । ତାଙ୍କ ଗଳ୍ପର ଗଠନକଳାରେ ସିଦ୍ଧହସ୍ତର ପରିଚୟ ମିଳେ । ୧୯୪୦ ମସିହା ପରେ ମରାଠୀ କ୍ଷୁଦ୍ର ଗଳ୍ପର ବିକାଶରେ ଆହୁରି ଏକ ପରିବର୍ତ୍ତନ ଦେଖାଦେଇଥିଲା । ଏହି ଯୁଗରେ ଅର୍‌ବିନ୍ଦ ଗୋଖେଲ, ଭେଙ୍କଟେଶ ମାଡ଼ଗୁଲକର, ପି.ବି. ଭାବେ, ଗଙ୍ଗାଧର ଗାଡ଼ଗିଲ ପ୍ରଭୃତି ଗଳ୍ପଲେଖକମାନେ ମରାଠୀ କ୍ଷୁଦ୍ର ଗଳ୍ପର ଉନ୍ନତି ସାଧନ କରିଥିଲେ । ସେମାନଙ୍କର ଲେଖନୀରେ ମରାଠୀ କ୍ଷୁଦ୍ର ଗଳ୍ପ ଯେପରି ନୂତନ ଦିଗ୍‌ଦର୍ଶନ ଲାଭ କରିଥିଲା । ପି. ବି. ଭାବେଙ୍କର ଗଳ୍ପ ରଙ୍ଗ ଓ ବୈଚିତ୍ର୍ୟପୂର୍ଣ୍ଣ । ତାଙ୍କର ଗଳ୍ପରେ ନରନାରୀଙ୍କର ହୃଦୟ ପ୍ରତିକ୍ରିୟା ପ୍ରତିଫଳିତ । ଭାବପ୍ରବଣତା ତାଙ୍କ କ୍ଷୁଦ୍ରଗଳ୍ପର ଆଉ ଏକ ଲକ୍ଷଣ । ଅର୍‌ବିନ୍ଦ ଗୋଖେଲ ଖୁବ୍ ସାବଧାନତା ସହିତ କ୍ଷୁଦ୍ର ଗଳ୍ପର ପରିକଳ୍ପନା କରିଥାନ୍ତି । ମଣିଷର ଅବଦମିତ ମନର ଯେଉଁ ପ୍ରତିକ୍ରିୟା ତାହା ବ୍ୟକ୍ତିର ଆଚରଣରେ ପ୍ରତିଫଳିତ । ସାଧାରଣ ନରନାରୀଙ୍କ ଦୁଃଖ ଓ କାରୁଣ୍ୟ ଚିତ୍ରଣ କରିବାରେ ତାଙ୍କର କୌଶଳ ଅଭୁତ । ତାଙ୍କ ଗଳ୍ପର ବିଷୟବସ୍ତୁର ସୀମା ମଧ୍ୟ ସୀମିତ ନୁହେଁ । ମାଡ଼ଗୁଲକରଙ୍କର କ୍ଷୁଦ୍ର ଗଳ୍ପ ମୁଖ୍ୟତଃ ଗ୍ରାମବର୍ଣ୍ଣନାଧର୍ମୀ । ତାହା ହିଁ ତାଙ୍କର ବୈଶିଷ୍ଟ୍ୟ । ୧୯୩୦ ମସିହାରେ ମରାଠୀ ଗ୍ରାମମାନଙ୍କୁ କେନ୍ଦ୍ରକରି ଯେଉଁ ଗଳ୍ପ ଲେଖାହୋଇଥିଲା, ଗାଡ଼ଗୁଲକରଙ୍କର ଗ୍ରାମ୍ୟ ଗଳ୍ପ ତାହା ଅପେକ୍ଷା ଆହୁରି ଚିତ୍ତାକର୍ଷକ ଓ ଭାବପ୍ରବଣ । ବିଭିନ୍ନ ଚରିତ୍ର-ମାନଙ୍କର ସାମାଜିକ ସଂପର୍କ ତାଙ୍କ ଗଳ୍ପର ଏକ ବିଶିଷ୍ଟ ଦିଗ । ବର୍ଣ୍ଣନାର ପ୍ରାଞ୍ଜଳତା ତଥା ସହାନୁଭୂତିପୂର୍ଣ୍ଣ ଅଭିବ୍ୟକ୍ତି ମଧ୍ୟରେ ଗ୍ରାମଗହଳର ବିଭିନ୍ନ ଚରିତ୍ର ମାଡ଼ଗୁଲଙ୍କର କ୍ଷୁଦ୍ର ଗଳ୍ପରେ ଯେପରି ରୂପାୟିତ ତାହା ଲେଖକର ଶକ୍ତି-ସାପେକ୍ଷ । ଗଙ୍ଗାଧର ଗାଡ଼ଗିଲଙ୍କର କ୍ଷୁଦ୍ର ଗଳ୍ପ ବିଭିନ୍ନ ପ୍ରକୃତିଦ୍ୱାରା ପ୍ରଭାବିତ । କେତେବେଳେ ଶିଶୁସୁଲଭ ଚପଳତା, କେତେବେଳେ ମଣିଷ ଜୀବନର ଦୁଃଖ-ଦୁର୍ଦ୍ଦଶାଜନିତ ଶୁଷ୍କ ଦାର୍ଶନିକତା ତାଙ୍କ ଗଳ୍ପରେ ପ୍ରତିଫଳିତ ।

ଆଧୁନିକ ଯୁଗର ଯାନ୍ତ୍ରିକ ପ୍ରଭାବ ତାଙ୍କ ଗଳ୍ପରୁ ମଧ୍ୟ ବାଦ୍ ପଡ଼ି ନାହିଁ । ଭାବେ ଓ ଗାଡ଼ଗିଲ ଉଭୟଙ୍କ କ୍ଷୁଦ୍ର ଗଳ୍ପରେ ସମସାମୟିକ ସମାଜର ପ୍ରତାରଣା, ଛଳନା ବ୍ୟଂଜନାପୂର୍ଣ୍ଣ ଭାଷାରେ ପ୍ରତିଫଳିତ। ମଣିଷ ମନର ଯେଉଁ କ୍ଷୁଧା ଯାନ୍ତ୍ରିକ ସଭ୍ୟତାର ଚାପରେ ଯେପରି ମରିଯାଏ ତାହାର ମାର୍ମିକ ଚିତ୍ର ଆଧୁନିକ ମରାଠୀ କ୍ଷୁଦ୍ର ଗଳ୍ପରେ ବିଶେଷଭାବରେ ଦେଖାଯାଏ । ଆଧୁନିକ ଗଳ୍ପଲେଖକ ସମାଜର କେତେଜଣ ନିର୍ଦ୍ଦିଷ୍ଟ ବ୍ୟକ୍ତିଙ୍କୁ କେନ୍ଦ୍ରକରି ସମଗ୍ର ସମାଜର ବିଶ୍ଳେଷଣ କରିଥାନ୍ତି । ଏହି ସନ୍ଦର୍ଭରେ ମରାଠୀ କ୍ଷୁଦ୍ର ଗଳ୍ପରେ ପ୍ରତୀକର ବିଶେଷ ବ୍ୟବହାର ଦେଖାଯାଏ । ଗଳ୍ପରେ ଗୋଟିଏ କଥା ବର୍ଣ୍ଣନା କରାଯାଉଥିବାବେଳେ ତାହାର ଗଭୀର ବ୍ୟାପକ ଅର୍ଥ ଆପାତତଃ ଭିନ୍ନ । ଗାଡଗିଲଙ୍କ ଗଳ୍ପରେ ବିଭିନ୍ନ ଚିତ୍ରକଳ୍ପର ବ୍ୟବହାର ମଧ୍ୟ ଦେଖାଯାଏ ।

ପ୍ରଭାକର ପାଢ଼େ କେତେକ କ୍ଷୁଦ୍ରଗଳ୍ପ ଲେଖିଛନ୍ତି । ଆଧୁନିକ ମରାଠୀଗଳ୍ପ ଆଙ୍ଗିକ ବିକାଶର ଚରମ ବିନ୍ଦୁରେ ଉପନୀତ ହୋଇଛି । ସମାଜର ପ୍ରତାରଣା ତଥା ବ୍ୟଭିଚାରକୁ ପ୍ରକାଶ୍ୟ ଭାବରେ ସମାଲୋଚନା କରିବାରେ ମରାଠୀ ଗଳ୍ପଲେଖକମାନେ ନିଜନିଜର ସ୍ୱତନ୍ତ୍ର ଶୈଳୀ ପ୍ରବର୍ତ୍ତନ କରିପାରିଛନ୍ତି । ଅଭିବ୍ୟକ୍ତିର ଭାଷା ତଥା ଆବେଦନ ଅତ୍ୟନ୍ତ ମର୍ମସ୍ପର୍ଶୀ ହୋଇ ପାରିଛି । ପ୍ରତ୍ୟେକ ଗଳ୍ପ ଲେଖକଙ୍କର ସ୍ୱତନ୍ତ୍ର ଦୃଷ୍ଟିକୋଣ ମଧ୍ୟ ଅଛି । ସାଂପ୍ରତିକ କ୍ଷୁଦ୍ରଗଳ୍ପ ସମାଜର ଦୁର୍ନୀତି ଓ ବିକ୍ଷୋଭ ଚିତ୍ରଣ କରିବାରେ ଏକ ଶକ୍ତିଶାଳୀ ଅସ୍ତ୍ରରୂପେ ବ୍ୟବହୃତ । ଆଧୁନିକ ମରାଠୀ ସାହିତ୍ୟରେ ବହୁ ପ୍ରତିଭାଶାଳୀ ଲେଖକ କ୍ଷୁଦ୍ରଗଳ୍ପକୁ ନିଜନିଜର ସାହିତ୍ୟିକ ସାଧନା ରୂପେ ଗ୍ରହଣ କରିଛନ୍ତି । ଶ୍ରୀମତୀ କମଳାବାଈ ତିଲକ, ଶ୍ରୀମତୀ ମୁକ୍ତାବାଈଲେଲେ (ବିଭାବରୀ ଶିରୁର୍କର), ଲକ୍ଷ୍ମଣରାଓ ସାର୍ଦେଶାଇ ପ୍ରଭୃତି ଅପେକ୍ଷାକୃତ ତରୁଣ କଥାଶିଳ୍ପୀ, ପ୍ରଭାକର ପାଢ଼େ, ଡି.ବି. ମୋକାଶି, ଶାନ୍ତାରାମ ସଦାନନ୍ଦ ରେଗେ, ମହାଦେବ ଶାସ୍ତ୍ରୀ ଯୋଷୀ ପ୍ରଭୃତି ଅପେକ୍ଷାକୃତ ପୂର୍ବ ଗୋଷ୍ଠୀର ଲେଖକ ।

ମରାଠୀ କ୍ଷୁଦ୍ରଗଳ୍ପର ଆଉ ଏକ ଲକ୍ଷଣ ହେଉଛି ତାହାର ବ୍ୟଙ୍ଗବିଦ୍ରୂପ ସ୍ଥୂଳଭାବରେ ପରିପ୍ରକାଶ । ଚଳିତ ଶତାବ୍ଦୀର ଗତ ୩୦ ବର୍ଷ ମଧ୍ୟରେ ଆର୍. ଭି. ଯୋଷୀ, ପି.କେ. ଆତ୍ରେ ପ୍ରଭୃତିଙ୍କର ଗଳ୍ପ ପାଠକମାନଙ୍କର ଆନନ୍ଦ ବିଧାନ କରିପାରିଛି । ଭି. ଭି. ବକଲ୍‌ଙ୍କର ଗଳ୍ପ ଅନେକଙ୍କୁ ହସାଇ ପାରିଛି । ସାମ୍ରା ଓକାଙ୍କର ରଚନା ତୀକ୍ଷ୍ଣ ବିଦ୍ରୂପରେ ପୂର୍ଣ୍ଣ । ସାଂପ୍ରତିକ ଲେଖକମାନଙ୍କ ମଧ୍ୟରେ ପି. ଏଲ୍. ଦେଶପାଣ୍ଡେଙ୍କର ବ୍ୟଙ୍ଗବିଦ୍ରୂପ ଲେଖା ମରାଠୀ ପାଠକମାନଙ୍କ ମଧ୍ୟରେ ଚାଞ୍ଚଲ୍ୟ ସୃଷ୍ଟି କରିଛି । କ୍ଷୁଦ୍ରଗଳ୍ପର ବିକାଶ ଓ ପରିପୁଷ୍ଟି ବହୁପରିମାଣରେ ପତ୍ରପତ୍ରିକାମାନଙ୍କ ଉପରେ ନିର୍ଭର କରେ । 'ମନୋରଂଜନ' ପତ୍ରିକାର ଭୂମିକା ପୂର୍ବେ କଥିତ ହୋଇଅଛି । 'କର୍ମଭୂକ୍', 'ଉଦ୍ୟାନ,' 'ମଧୁକର' ପତ୍ରିକା ଏବଂ ୧୯୬୩ ମସିହା ବେଳକୁ 'ରତ୍ନାକର' ଓ 'ଯଶୋବନ୍ତ' ପତ୍ରିକା କ୍ଷୁଦ୍ରଗଳ୍ପର ପରମ୍ପରାକୁ ନିର୍ଦ୍ଦିଷ୍ଟ ମାର୍ଗରେ ପରିଚାଳିତ କରିଥିଲେ । ଏହା ବ୍ୟତୀତ 'ପ୍ରତିଭା' (ପାକ୍ଷିକ), ପାରିଜାତ, ଯୋସ୍ନା, ସମୀକ୍ଷକ, ସାହିତ୍ୟ, ବାଗୀଶ୍ୱରୀ. ଅଭିରୁଚି, ସତ୍ୟକଥା' ସ୍ୱଗବାଣୀ ପ୍ରଭୃତି ପତ୍ରିକାର ଦାନ ଉଲ୍ଲେଖଯୋଗ୍ୟ । ସଂଜୀବନୀ, ଧନୁର୍ଦ୍ଧାରୀ, ମୌନା, ନବଯୁଗ ସଦୃଶ ସାପ୍ତାହିକ ପତ୍ରିକା ମଧ୍ୟ କ୍ଷୁଦ୍ରଗଳ୍ପର ପ୍ରସାରପାଇଁ ଯତ୍ନ କରିଥିଲେ ।

**ମରାଠୀ ନାଟକ ଓ ରଙ୍ଗମଞ୍ଚ :—**

ମରାଠୀ ନାଟକର ପରମ୍ପରା ଦୀର୍ଘ ଶତବର୍ଷ ବ୍ୟାପୀ ପ୍ରସାରିତ । ଚଳିତ ଶତାବ୍ଦୀର ଆରମ୍ଭ ବେଳକୁ ମରାଠୀ ନାଟକର କାଳାତ୍ମକରୂପ ପ୍ରକଟିତ ହୋଇଥିଲା । ଏହା ସଙ୍ଗୀତଧର୍ମୀ ଥିଲା ଓ ଗଳ୍ପାଂଶ ପୌରାଣିକ ଓ ସାମାଜିକ ଥିଲା । ଅବଶ୍ୟ

ଏହାର ଉତ୍ପତ୍ତି ଅତୀତକାଳରେ ଧର୍ମାଚରଣରେ ନିହିତ ଥିଲା । ଗନ୍ଧାଳ ଓ ବହୁ-ରୂପୀମାନେ ପୁରାଣ ତଥା କିମ୍ବଦନ୍ତୀ ଉପରେ ଭିତ୍ତିକରି ଅର୍ଦ୍ଧନାଟକୀୟ କୃତ ଅତୀତରେ ଅଭିନୟ କରୁଥିଲେ । ତାହା ସବୁ ଲଳିତ୍ ନାମରେ ଅଭିହିତ । ପ୍ରାଚୀନ ମହାରାଷ୍ଟ୍ରରେ ଏପରି ଅଭିନୟ ଦେଖାଯାଏ ନାହିଁ । ମାତ୍ର ଶିବାଜୀଙ୍କର ପିତା ଶହାଜୀଙ୍କର ଜାଗିର ଜମିରୁ ପରିବର୍ଦ୍ଧିତ ତାଞ୍ଜୋର ଅଞ୍ଚଳରେ ଏହି ପ୍ରକାର ନାଟ୍ୟ-ରଚନା ଅଭିନୀତ ହେଉଥିଲା । ଶିବାଜୀଙ୍କର ଭାଇ ଭ୍ୟାଂକୋଜୀ ଶାସ୍ତ୍ରପାଣ୍ଡିତ୍ୟର ପୃଷ୍ଠପୋଷକତା କରୁଥିଲେ । ପ୍ରାଚୀନକାଳରେ ରାଜଦରବାରପାଇଁ କେତେକ ସଂସ୍କୃତ ନାଟକ ମଧ୍ୟ ଲେଖାଯାଇଥିଲା । 'ଗଣେଶ ଲୀଳାନନ୍ଦ' ଓ 'ଗଙ୍ଗାକାବେରୀ' ସଦୃଶ ପୌରାଣିକ ନାଟକ ମଧ୍ୟ ଲେଖାଯାଇଥିଲା । ଏସବୁ ରଚନାର ଲେଖକ ଏକାଧିକ, ଉଭୟ ଗଦ୍ୟ ଓ ପଦ୍ୟରେ ଲିଖିତ ଏହି ରଚନାମାନଙ୍କରେ ସଙ୍ଗୀତ ମଧ୍ୟ ସ୍ଥାନପାଇଥିଲା । ତାହାର ଥିଲା 'ଦଗଡ଼' । ଏହା ତାମିଲ ନାଟକର ପ୍ରଭାବ । ପ୍ରଥମ ସ୍ତରରେ 'ତାମିଲ' ନାଟକ ଗଭୀରଭାବରେ ମରାଠୀ ନାଟକକୁ ପ୍ରଭାବିତ କରିଥିଲା । ତାଞ୍ଜୋରର ନାଟକୀୟ ପରମ୍ପରା ଉତ୍ତର ଦିଗକୁ ବ୍ୟାପି ଥିଲା । ୧୮୪୩ ମସିହାରେ ଉତ୍ତର-କର୍ଣ୍ଣାଟକରୁ ଗୋଟିଏ ନାଟକ ଦଳ 'ସାଙ୍ଗଲି' ରାଜ୍ୟରେ ପହଞ୍ଚିଥିଲେ । ସେମାନଙ୍କ ପ୍ରେରଣାରେ ବିଷ୍ଣୁଦାସ ଭାବେ ମରାଠୀ ଭାଷାରେ ପ୍ରଥମ ପୌରାଣିକ ନାଟକ ରଚନା କରିଥିଲେ । ଏହା ପୂର୍ବରୁ ସେ ପପେଟ୍ ସୋ ପ୍ରଭୃତି ଦେଖାଉଥିଲେ । ବିଷ୍ଣୁଦାସ ଭାବେ ପ୍ରାୟ ପଚିଶଗୋଟି ଆଖ୍ୟାନ ରଚନା କରିଥିଲେ । ବହୁ ନାଟ୍ୟ-ଦଳଙ୍କର ଏହା ଫଳରେ ଆବିର୍ଭାବ ହେଲା । କ୍ରମେ କ୍ରମେ ପୌରାଣିକ ଆଖ୍ୟାନ ସାମାଜିକ ଓ ଐତିହାସିକ ରୂପ ଗ୍ରହଣ କରିଥିଲା । ବମ୍ବେ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା, ବିଭିନ୍ନ କଲେଜ ସ୍ଥାପନ, ପାଶ୍ଚାତ୍ୟ ଶିକ୍ଷାପ୍ରସାର ଯୋଗୁଁ ଅବସ୍ଥାରେ ପରିବର୍ତ୍ତନ ଘଟିଥିଲା ।

ସଂସ୍କୃତ ଓ ଇଂରେଜୀ ନାଟକ ପଠିତ ଓ ଆଲୋଚିତ ହେଲା । ପ୍ରଥମେ ବହୁ ସଂସ୍କୃତ ନାଟକ ଓ ପରବର୍ତ୍ତୀ କାଳରେ ବହୁ ଇଂରାଜୀ ନାଟକ ମରାଠୀଭାଷାରେ ଅନୂଦିତ ହୋଇଥିଲା । ବିଶେଷତଃ ଇଂରେଜ ନାଟ୍ୟକାର ସେକ୍ସପିୟରଙ୍କର ନାଟକ ଓଥେଲୋ (୧୮୬୭), ଟେମ୍ପେଷ୍ଟ, ଜୁଲିୟସ ସିଜର (୧୮୭୨) ମରାଠୀ ଭାଷାରେ ଅନୂଦିତ ହେଲା ଏବଂ ନାଟ୍ୟ-ପ୍ରେମୀଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ଏହି ଅନୁବାଦ ମରାଠୀ ନାଟକକୁ ବିଶେଷ ପ୍ରଭାବିତ କଲା । ଭାରତୀୟ ପରମ୍ପରାର ନବଚେତନା ଓ ପାଶ୍ଚାତ୍ୟଶିକ୍ଷା ପ୍ରସାର ଯୋଗୁଁ ନବଜାଗରଣ ଫଳରେ ମରାଠୀ ଭାଷାରେ ପ୍ରଥମ ପୂର୍ଣ୍ଣାଙ୍ଗ ନାଟକ ଲିଖିତ ହୋଇଥିଲା । ନାଟକର ନାମ ହେଉଛି "The death of Madhaorao Peshwa (1861)" । ଏହାର ଲେଖକ କୀର୍ତ୍ତିନେ ମରାଠୀ ଇତିହାସର କେତେକ ତଥ୍ୟକୁ ଗ୍ରହଣ କରି ନ ଥିଲେ ।

ସେ ଗ୍ରାଣ୍ଟ ଡଫ୍‌ଙ୍କର ମନ୍ତବ୍ୟର ପ୍ରତିବାଦ କରିଥିଲେ । କୀର୍ତ୍ତିକେଙ୍କର ଉଭୟ ଐତିହାସିକ ଦୃଷ୍ଟିକୋଣ ଓ ନାଟ୍ୟ ପ୍ରତିଭା ଥିଲା । ମରାଠୀ ଇତିହାସପାଇଁ ତାଙ୍କର ବିଶେଷ ଦରଦ ଥିଲା । 'ଜୟପାଳ' ହେଉଛି ତାଙ୍କର ଦ୍ୱିତୀୟ ନାଟକ । ଏହା ରୋମାଣ୍ଟିକ୍ ଲେଖା । କୀର୍ତ୍ତିକେଙ୍କର ନାଟକରେ ଐତିହାସିକ ଟ୍ରାଜେଡ଼ି ଓ ରୋମାଣ୍ଟିକ୍ କମେଡ଼ିର ପ୍ରଥମ ସୂତ୍ରପାତ ହୋଇଥିଲା । ୧୮୭୧ ମସିହାରେ ମରାଠୀଭାଷାର ପ୍ରଥମ ସାମାଜିକ ନାଟକ 'ମନୋରମା' ପ୍ରକାଶିତ ହେଲା । ଏହାର ଲେଖକ ମହାଦେଓ, ବାଳକୃଷ୍ଣ ଚଉଲେ ଓରଫ ଭଦେଲ୍କର । ତାଙ୍କ ଲେଖା ମରାଠୀ ନାଟକୀୟ ଶୈଳୀରେ ପ୍ରଥମ ପରିବର୍ତ୍ତନ ଆଣିଥିଲା । ବଲବନ୍ତ ପାଣ୍ଡୁରଙ୍ଗ କିମ୍ବା ଆନାସାହେବ କର୍ଲୋସ୍କରଙ୍କ ନାଟକ ରଚନାରେ ମରାଠୀ ନାଟକ ପ୍ରଥମ ଆଧୁନିକ ରୂପ ପ୍ରାପ୍ତ ହୋଇଥିଲା ।

ତାଙ୍କର ଲିଖିତ ନାଟକ ସଂଖ୍ୟା ଅଧିକ ନୁହେଁ । ମାତ୍ର ଗୁଣାତ୍ମକ ଦୃଷ୍ଟିରେ ତାଙ୍କର କୃତି ଯଥା ଶକୁନ୍ତଳା (୧୮୮୦), ସୌଭଦ୍ର (୧୮୮୨), ରାମରାଜ୍ୟ ବିୟୋଗ (୧୮୮୪) ଆଧୁନିକ ମରାଠୀ ନାଟ୍ୟ ସାହିତ୍ୟର ମୂଳଭିତ୍ତି ସ୍ଥାପନ କରିଥିଲା । ତାଙ୍କ ନାଟକର ଗଳ୍ପାଂଶ ଉଭୟ ପୁରାଣ ଓ କାଳିଦାସଙ୍କ ଲେଖାରୁ ଗୃହୀତ । ତାଙ୍କ ସୌଭଦ୍ରନାଟକ ଏକ ଶ୍ରେଷ୍ଠ ପୌରାଣିକ ନାଟକ । ପୌରାଣିକ ପୃଷ୍ଠଭୂମିରେ ପାରିବାରିକ ଜୀବନର ଚିତ୍ର ଏଥିରେ ପ୍ରଦତ୍ତ ହୋଇଥିବାରୁ ଏହା ଏପର୍ଯ୍ୟନ୍ତ ଲୋକମାନଙ୍କ ଦ୍ୱାରା ଆଦୃତ ହୋଇଅଛି । ରଙ୍ଗମଞ୍ଚରେ ସଙ୍ଗୀତ ପ୍ରଚଳନ କରିବା କର୍ଲୋସ୍କରଙ୍କର ଏକ ଦାହାଦୁଷ୍ଣ ବୋଲି ଜଣାଯାଇଥାଏ । ତାଙ୍କୁ ଆଧୁନିକ ମରାଠୀ ନାଟକର ପ୍ରତିଷ୍ଠାତା ବୋଲି କୁହାଯାଇଥାଏ । କର୍ଲୋସ୍କରଙ୍କର ନାଟକ ପରମ୍ପରାକୁ ଜି. ବି. ଦେବଲ ଜୀବନ୍ତ ରଖି ପାରିଥିଲେ । ତିନିଗୋଟି ଇଂରେଜୀ ନାଟକ, ଦୁଇଗୋଟି ସଂସ୍କୃତ ନାଟକ ବ୍ୟତୀତ ତାଙ୍କର 'ସାରଦା' ନାମରେ ଏକ ମୌଳିକ ସାମାଜିକ ନାଟକ ମଧ୍ୟ ଥିଲା । ଏହା ହେଉଛି ପ୍ରଥମ ସାମାଜିକ ମରାଠୀ ନାଟକ, 'ସାରଦା ନାଟକର ବିଷୟବସ୍ତୁ ହେଉଛି ଜନୈକ ବୃଦ୍ଧ ସହିତ ଏକ ତରୁଣୀର ବିବାହ । ରଙ୍ଗମଞ୍ଚ ଯେ ଜନମତ ସୃଷ୍ଟି କରିପାରେ 'ସାରଦା' ନାଟକ ତାହାର ନିଦର୍ଶନ । କି ଚରିତ୍ରଚିତ୍ରଣ, କି ସାଜସଜ୍ଜା ପ୍ରତ୍ୟେକ ଦିଗରୁ ବିଚାର କଲେ 'ସାରଦା' ଏକ ସାର୍ଥକ କୃତି । ଦେବଲ ସଂସ୍କୃତ କାଦମ୍ବରୀ ଅବଲମ୍ବନରେ ଏକ ନାଟକ ଲେଖିଥିଲେ । ଦେବଲଙ୍କ ପରବର୍ତ୍ତୀ ନାଟ୍ୟକାର ହେଉଛନ୍ତି କୋଲ୍‌ହାଟକର । ସେ ସେକ୍ସପିଅରଙ୍କ ନାଟକଦ୍ୱାରା ବିଶେଷ ପ୍ରଭାବିତ ହୋଇଥିଲେ ।

ସାମାଜିକ ସମସ୍ୟା ପ୍ରତି ମଧ୍ୟ ସେ ଧ୍ୟାନ ଦେଇଥିଲେ । ନାଟ୍ୟ ରଚନା ସୁଲଭ ବ୍ୟଙ୍ଗବିଦ୍ରୂପକୁ ସେ ବୌଦ୍ଧିକ ସ୍ତରକୁ ଉନ୍ନୀତ କରିଥିଲେ । ତାଙ୍କର ସଂଗୀତ

ମଧ୍ୟ କାବ୍ୟ ଯୋଗ୍ୟତାରେ ପରିପୂର୍ଣ୍ଣ ହୋଇଥିଲା । ସେ 'ବାରଗୁଣ୍ଡ' ନାଟକ ଲେଖିଥିଲେ । ସେଥିରୁ 'ବୀରତନୟା' ଏକ ଉଲ୍ଲେଖଯୋଗ୍ୟ ରଚନା । 'ପ୍ରେମଧ୍ୱଜନ' ଓ 'ଇନ୍ଦ୍ରରହସ୍ୟ' ତାଙ୍କର ଦୁଇଗୋଟି ବ୍ୟଙ୍ଗାତ୍ମକ ନାଟକ । କାଳ୍ପନିକ ଓ ମୌଳିକ ବିଷୟବସ୍ତୁ, ଚରିତ୍ରମାନଙ୍କର କାଳ୍ପନିକ ବର୍ଣ୍ଣନା, ସରଳସଂଳାପ ଓ ସାମାଜିକ ବିଶ୍ଳେଷଣ ତାଙ୍କ ନାଟକ ଗୁଡ଼ିକର ଲକ୍ଷଣ । ୧୯୦୦ ମସିହାରୁ ୧୯୦୫ ମସିହା ମଧ୍ୟରେ ମରାଠୀ ରଙ୍ଗମଞ୍ଚ ସେକ୍ସପିୟରଙ୍କ ନାଟକର ଅନୁବାଦଦ୍ୱାରା ଅନୁପ୍ରାଣିତ ହୋଇଥିଲା । ନାଟ୍ୟକାର ଖାଦିଲକର ଜଣେ ସାମ୍ବାଦିକ ଭାବରେ ସୁନାମ ଅର୍ଜନ କରିଥିଲେ । ସେ ତିଲକଙ୍କର ମଧ୍ୟ ଶିଷ୍ୟ ଥିଲେ । ତୁଙ୍ଗ ଆଦର୍ଶବାଦ, ଗମ୍ଭୀର ଆବେଗ, ନାୟକନାୟିକାଙ୍କର ଜୀବନର ବୈଚିତ୍ର୍ୟ ଖାଦିଲକରଙ୍କ ଲେଖନୀରେ ଯେପରି ପ୍ରତିଫଳିତ ହୋଇଥିଲା, ସେ ଆଧୁନିକ ବାସ୍ତବ ଜୀବନକୁ ଚିତ୍ରଣ କରିବାପାଇଁ ପୌରାଣିକ ପୃଷ୍ଠଭୂମିର ସାହାଯ୍ୟ ନେଇଥିଲେ । 'କୀଚକବଧ' ନାଟକରେ ଲର୍ଡ଼-କର୍ଜନଙ୍କ ଦୁର୍ନୀତି ଓ ପ୍ରତାରଣାର ତୀବ୍ର ସମାଲୋଚନା ପ୍ରତିଫଳିତ । ଏହା ପେଶବାର-ଙ୍କର ଗଳ୍ପକୁ କେନ୍ଦ୍ରକରି ତାଙ୍କର ଭୂବନ୍ଧକୀ ନାଟକ ଲେଖାହୋଇଥିଲା । କଚ ଏବଂ ଦେବଯାନୀ ଗଳ୍ପର ଆଶ୍ରୟରେ ତାଙ୍କର 'ବିଦ୍ୟାହରଣ' ଲିଖିତ ହେଲା । ତାଙ୍କର 'ମାନାପମାନ' ନାଟକରେ ଉଭୟ ଆଦର୍ଶବାଦ ଓ ଭାବୋଚ୍ଛ୍ୱାସର ସମନ୍ୱୟ ଦେଖିବାକୁ ମିଳେ । ଗମ୍ଭୀର ଭାବୋଚ୍ଛ୍ୱାସ ଓ ଆଦର୍ଶବାଦ ଖାଦିଲକରଙ୍କର ନାଟକର ଉପଜୀବ୍ୟ ।

ପରବର୍ତ୍ତୀ ପ୍ରଭାବଶାଳୀ ନାଟ୍ୟକାର ହେଉଛନ୍ତି ରାମଗଣେଶ ଗଡ଼କରୀ, ସେ ଖାଦିଲକରଙ୍କ ଅପେକ୍ଷା କୋଲ୍‌ହାଟକରଙ୍କ ନାଟକଦ୍ୱାରା ବିଶେଷ ପ୍ରଭାବିତ ହୋଇଥିଲେ । ମୌଳିକ ଓ କାଳ୍ପନିକ ନାଟକର ପରମ୍ପରାକୁ ସେ ଅନୁସରଣ କରିଥିଲେ । ତାଙ୍କ ଲେଖାରେ ବ୍ୟଙ୍ଗବିଦ୍ରୂପର ମାତ୍ରା ସର୍ବାଧିକ । ଚରିତ୍ରଚିତ୍ରଣ ତଥା ପରିସ୍ଥିତିକୁ କେନ୍ଦ୍ରକରି ତାଙ୍କର ବ୍ୟଙ୍ଗବିଦ୍ରୂପର ଓ ମନସ୍ତାତ୍ତ୍ୱିକ ବିଶ୍ଳେଷଣ ପ୍ରକାଶ ପାଇଥିଲା । ଭାଷାର ପ୍ରାଚୁର୍ଯ୍ୟ, ସଂଗୀତର ପରମ୍ପରା ତାଙ୍କ ନାଟକସମୂହର ଅନ୍ୟତମ ଆକର୍ଷଣ । ନୈତିକ ଏବଂ ସାମାଜିକ ସମସ୍ୟା ଉପସ୍ଥାପନ କରିବାରେ ତାଙ୍କର ନାଟକ ଉଲ୍ଲେଖଯୋଗ୍ୟ । ସେ ଚାରିଗୋଟି ପୂର୍ଣ୍ଣାଙ୍ଗ ନାଟକ ଏବଂ ଏକ ଅପୂର୍ଣ୍ଣାଙ୍ଗ ନାଟକ ଲେଖିଥିଲେ । 'ରାଜସନ୍ନ୍ୟାସ' ତାଙ୍କର ଅପୂର୍ଣ୍ଣ ଐତିହାସିକ ନାଟକ । ନାଟକ 'ପ୍ରେମସନ୍ନ୍ୟାସ'ରେ ପ୍ରେମବିବାହ ଓ ବିଧବାବିବାହ, 'ପୁଣ୍ୟ-ପ୍ରଭାବ' ନାଟକରେ ନାରୀଜୀବନର ସତୀତ୍ୱ ଓ ପବିତ୍ରତା, ଅନ୍ୟ ଦିଗରେ ଏକ ଦୁର୍ବୃତ୍ତ ଚରିତ୍ରର ବିକୃତିର ଚିତ୍ର ଦେଖିବାକୁ ମିଳେ । 'ଏ କାଚ ପିଆଲା' ନାଟକରେ ମଦ୍ୟପାନ ବଶତଃ ଏକ ସୁଖୀ ପରିବାର କିପରି ଧ୍ୱଂସ ପାଇଥିଲା, ତାହାର ଚିତ୍ର ଦେଖିବାକୁ ମିଳେ । ସ୍ୱାମୀର ନିଶାପାନ ସତ୍ତ୍ୱେ ସ୍ତ୍ରୀ ସିନ୍ଧୁ ସୁଧାକର ପ୍ରତି ବରାବର ଅନୁଗତ ରହିଥିଲା । ଉଭୟ ମନସ୍ତାତ୍ତ୍ୱିକ ଓ ଆଦର୍ଶଗତ ଚିତ୍ର ତାଙ୍କ ନାଟକରେ

ପ୍ରଦର୍ଶିତ । ଏକ ବଳିଷ୍ଠ କାବ୍ୟିକ ଛଟା ତଥା ତୁଙ୍ଗ କଳ୍ପନା ତାଙ୍କ ନାଟକର ସୌନ୍ଦର୍ଯ୍ୟ ବୃଦ୍ଧିକରିଥିଲା । ଚରିତ୍ରଚିତ୍ରଣଗତ କୃତ୍ରିମତା ସତ୍ତ୍ୱେ ତାଙ୍କ ନାଟକ ପୃଥକ୍ ସ୍ୱୀକାର୍ଯ୍ୟ । ବ୍ୟକ୍ତି-ସ୍ୱାତନ୍ତ୍ର୍ୟଦ୍ୱାରା ତାଙ୍କର ଲେଖା ଚିହ୍ନିତ । କିନ୍ତୁ ଜୀବନର ବୃହତ୍ତର ଆଭିମୁଖ୍ୟ ତାଙ୍କ ନାଟକମାନଙ୍କରେ ଦେଖିବାକୁ ମିଳେ ନାହିଁ । ୧୯୧୮ରୁ ୧୯୪୦ ମସିହା ମଧ୍ୟରେ ମରାଠୀ ନାଟକର ସୁବର୍ଣ୍ଣଯୁଗ ବୋଲି କୁହାଯାଇ ପାରେ । ସମଗ୍ର ମରାଠୀ ସାହିତ୍ୟରେ ଏକତୁଙ୍ଗ ଆଦର୍ଶବାଦହିଁ ପ୍ରତିଫଳିତ ହେଲା । ଖାଦିଲକର ଏବଂ ଗଡେକରୀଙ୍କର ନାଟକ ଏହାର ନିଦର୍ଶନ । ଏହି ସମୟରେ ମରାଠୀ ସମାଜ ଯେପରି ନାଟକ-ପାଗଳ ହୋଇଯାଇଥିଲା । ବହୁ ତରୁଣ ଲେଖକ ନାଟକ ରଚନା ପ୍ରତି ଆକୃଷ୍ଟ ହୋଇଥିଲେ । ବିଭିନ୍ନ ନାଟ୍ୟଦଳ ମହାରାଷ୍ଟ୍ରର ଗ୍ରାମାଞ୍ଚଳରେ ପୌରାଣିକ ଓ ଐତିହାସିକ ନାଟକ ପ୍ରଦର୍ଶନ କରିଥିଲେ । ହରି-ନାରାୟଣ ଆପ୍ଟେଙ୍କର ଭକ୍ତିରସାତ୍ମକ ନାଟକ 'ସନ୍ତ ସଗୁବାଈ' କିମ୍ବା ଏନ୍. ସି. କେଲକରଙ୍କର 'ସନ୍ତ ଭାନୁଦାସ', ବାସୁଦେବଶାସ୍ତ୍ରୀ ଖାରେଙ୍କର 'ଶିବସମ୍ଭବ', ଟିପନିସଙ୍କର 'ସାଧୁ ଶିବାଜୀ' ପ୍ରଭୃତି ଐତିହାସିକ ନାଟକ ବିଶେଷ ଆଦୃତ ହୋଇଥିଲା । ମହାରାଷ୍ଟ୍ର ନାଟକମଣ୍ଡଳୀ ଗନ୍ଧର୍ବ ଏବଂ ଲଳିତକଳାଶୀର୍ଷକ ନାଟ୍ୟ ଅନୁଷ୍ଠାନର ଉଦ୍ୟମ ଏହି କ୍ଷେତ୍ରରେ ସ୍ମରଣୀୟ । ଅନ୍ୟ ଦିଗରେ ନାଟକରେ ଅତ୍ୟଧିକ ସଂଗୀତର ପ୍ରୟୋଗ ଶୁଷ୍କ ଆଦର୍ଶବାଦ, ଆଭିଜାତ୍ୟପୂର୍ଣ୍ଣ ଜୀବନର ଚିତ୍ର ପ୍ରବର୍ତ୍ତିତ ହେବା ଫଳରେ ମରାଠୀ ନାଟକର ଗତି ଏହାପରେ ଶିଥିଳ ହୋଇ-ଯାଇଥିଲା । ସୃଷ୍ଟିଧର୍ମୀ ନାଟ୍ୟକାର ମାମା ୱାରେରକରଙ୍କର ପ୍ରବର୍ତ୍ତିତ ବାସ୍ତବବାଦ । ଏହାପରେ ମରାଠୀ ନାଟକର ଆଭିମୁଖ୍ୟ ପରିବର୍ତ୍ତନ କରି ଦେଇଥିଲା । ସେ ପ୍ରଥମେ ପୌରାଣିକ ପୃଷ୍ଠଭୂମିରେ ନାଟକ ଲେଖିଥିଲେ । ତାଙ୍କର ନାଟକ 'କୁଞ୍ଜବିହାରୀ' ଏହାର ପ୍ରମାଣ । ପରେ କିନ୍ତୁ ସାମାଜିକ ସମସ୍ୟାପ୍ରତି ସେ ବାସ୍ତବବାଦୀ ଦୃଷ୍ଟିକୋଣରୁ ବିଚାର କରିଥିଲେ । ତାଙ୍କ ନାଟକରେ ବ୍ୟଙ୍ଗବିଦ୍ରୂପ ମଧ୍ୟ ସ୍ଥାନ ପାଇଥିଲା । ସାଂପ୍ର-ତିକ ସମାଜ ଓ ଆର୍ଥନୀତିର ନାଟକୀୟ ବିଶ୍ଳେଷଣ ତାଙ୍କର ବିଭିନ୍ନ ନାଟକମାନଙ୍କରେ ଯଥା "ହାଚ୍ ମୁଲାଚ୍ଚ ବାପ୍", 'ସୋନାଚ୍ୟା କଲସା', 'ଜଗତଜ୍ୟୋତ୍' 'ସ୍ୱୟଂ ସେବକ'ରେ ପ୍ରତିଫଳିତ । ସମସାମୟିକ ସମସ୍ୟା ଚିତ୍ରଣ କରିବାରେ ୱାରେରକର ଅଗ୍ରଣୀ ନାଟ୍ୟକାର ଥିଲେ । ବାସ୍ତବବାଦୀ ନାଟକ ହିଁ ତାଙ୍କର କୃତିତ୍ୱ ।

ନାଟକୀୟ ରଚନାଶୈଳୀରେ ଓ ରଂଗମଞ୍ଚ ସାଜସଜ୍ଜାରେ ସେ ମଧ୍ୟ ନୂତନତା ପ୍ରବର୍ତ୍ତନ କରିଥିଲେ । ନାଟକର ଅଙ୍କ, ଦୃଶ୍ୟ, ସଂଗୀତର ବ୍ୟବହାରକୁ ସେ ଶୃଙ୍ଖଳିତ କରି ଦେଇଥିଲେ । 'ସାରସ୍ୱତ' ଓ 'ଭୂମିକନ୍ୟା ସୀତା' ନାଟକଦ୍ୱୟ ତାଙ୍କର ନବର ଅଭିଜ୍ଞତା ଓ ନିପୁଣ ଅଭିବ୍ୟକ୍ତିର ନିଦର୍ଶନ । ମାମାୱାରେରକରଙ୍କର ଦ୍ୱାରା ପ୍ରବର୍ତ୍ତିତ ନାଟକୀୟ ଆଙ୍ଗିକ ଓ ଶୈଳୀ ପରବର୍ତ୍ତୀକାଳରେ ତରୁଣ ଲେଖକମାନଙ୍କୁ ଅନୁପ୍ରାଣିତ

କରିଥିଲା । ତାଙ୍କର ନାଟକ 'ପୂର୍ବବଙ୍ଗ' ବଙ୍ଗାଳୀ ପରିବାରକୁ କେନ୍ଦ୍ର କରି ଲିଖିତ ।

ଏଣିକି ନାଟକମାନଙ୍କରେ ନାରୀ ଭୂମିକାରେ ନାରୀମାନେହିଁ ଅଭିନୟ କରିଥିଲେ । 'ଏସ୍. ଭି. ବର୍ତ୍ତକ' ଙ୍କ ନେତୃତ୍ୱରେ ନାଟ୍ୟ ମନ୍ୱନ୍ତର ନାମରେ ତରୁଣ ଶିଳ୍ପୀ ନାଟକର ସର୍ବବିଧ ଉନ୍ନତିପାଇଁ ଯତ୍ନ କରିଥିଲେ । ତାଙ୍କର ନାଟକ "ଅନ୍ଧାଲୟ୍ୟା ଚ ସାଳା" ସେତେବେଳେ କମ୍ ଗୃଞ୍ଜଳା ସୃଷ୍ଟି କରି ନ ଥିଲା । ବେଡେ-କରଙ୍କର ପୌରାଣିକ ନାଟକ 'ଭ୍ରମରକୁମାରୀ' ଉତ୍ତବଲଭ ଭୋଲଙ୍କର 'ସରଳାଦେବୀ' ଉଲ୍ଲେଖଯୋଗ୍ୟ । ସରଳାଦେବୀ ଇବସନ୍‌ଙ୍କ ନାଟ୍ୟ ଆଦର୍ଶଦ୍ୱାରା ଅନୁପ୍ରାଣିତ ହୋଇଥିଲା । ପି. କେ. ଆତ୍ରେ ଏହି ସମୟରେ ସାମାଜିକ ନାଟକ ଲେଖି ଖ୍ୟାତି ଅର୍ଜନ କରିଥିଲେ । ତାଙ୍କ ନାଟକରେ ସମସାମୟିକ ମରାଠୀ ସମାଜର ସହାନୁଭୂତି-ପୂର୍ଣ୍ଣ ବିଶ୍ଳେଷଣ ଦେଖିବାକୁ ମିଳେ । ତାଙ୍କର ଫାର୍ସ "ସାଷ୍ଟାଙ୍ଗ ନମସ୍କାର" ଏବଂ ନାଟକ "ଘରବାହାରେ", 'ଉଦ୍ୟାଗ୍ୟସଂସାର" ରଂଗମଞ୍ଚମାନଙ୍କରେ ବହୁଦିନ ଧରି ପ୍ରଦର୍ଶିତ ହୋଇଥିଲା । ଦୁଃଖ, ସୁଖ, ଅଶ୍ରୁ, ହାସ୍ୟ, ବିଦ୍ରୂପ ତଥା ବ୍ୟଥା-ଜଡ଼ିତ ହୋଇ ତାଙ୍କ ଲେଖାରେ ପ୍ରତିଫଳିତ ହୋଇଥିଲା । ଏମ୍. ଜି. ରାଙ୍ଗେକରଙ୍କର ନାଟକଗୁଡ଼ିକ ଭାବଗର୍ଭକ ଓ ଆଦର୍ଶ ବ୍ୟଂଜକ । ତାଙ୍କର "କୁଳବଧୂ" ଆଧୁନିକ ଦୃଷ୍ଟିସଂପନ୍ନ । ଆଧୁନିକ ମରାଠୀ ସାହିତ୍ୟରେ ସେ ପ୍ରଥମେ ଏକାଙ୍କିକା ଲେଖି ଦକ୍ଷତା ପ୍ରଦର୍ଶନ କରିଥିଲେ । ପରବର୍ତ୍ତୀ ସମୟରେ ପି. ଏଲ୍. ଦେଶପାଣ୍ଡେ ଓ ତେଣ୍ଡୁଲକର ଏକାଙ୍କିକା ଲେଖିଥିଲେ । ଆଧୁନିକ ମରାଠୀ ନାଟକର କ୍ଷେତ୍ର ବିସ୍ତୃତ । ଐତିହାସିକ ନାଟକରୁ ଆରମ୍ଭକରି ଅତ୍ୟାଧୁନିକ ବାସ୍ତବଧର୍ମୀ ନାଟକର ସଂଖ୍ୟା କିଛି କମ୍ ନୁହେଁ । ମହାରାଷ୍ଟ୍ରର ବିଭିନ୍ନ ଅଞ୍ଚଳରେ ନାଟକ ଆନ୍ଦୋଳନ ଓ ରଂଗମଞ୍ଚ ବରାବର ଲାଗି ରହିଛି ।

ପୂର୍ବରୁ କୁହାଯାଇଛି ସେକସ୍‌ପିୟର, ଯୁସନ ପ୍ରଭୃତି ପ୍ରସିଦ୍ଧ ବିଦେଶୀ ନାଟ୍ୟକାରଙ୍କର ଲେଖା ମରାଠୀ ଭାଷାରେ ଅନୂଦିତ ହୋଇଥିଲା । କୋଲ୍‌ହାଟକର ରୋମାଣ୍ଟିକ କମେଡି, ଗଡେକରୀ ବିୟୋଗାନ୍ତକ ନାଟକର ପକ୍ଷପାତୀ ଥିଲେ । ମାମା ଓ୍ୱାରେରକର ମରାଠୀ ନାଟକର ଗତି ପରିବର୍ତ୍ତନ କରିଦେଲେ । ନଗେସ ଯୋଷୀ, ଜି. କେ. ବୋଦସ, ଭୋସଲେ, ଅନନ୍ତ କାଣେକର, ମାଧବ ମନୋହର, କୁସୁମାଗ୍ରଜ ପ୍ରଭୃତିଙ୍କ ଦ୍ୱାରା ମରାଠୀ ନାଟକ ସମୃଦ୍ଧ ହୋଇଥିଲା । ସିରଓ୍ୱାଡ଼କରଙ୍କର "ଦୂଶରା ପେଶବା", ନାନାଯୋଗଙ୍କର ସାମାଜିକ ତଥା ରାଜନୀତିକ ଲେଖା "ସଂଚୟ୍ୟଚ ଦେବ", ଦାଣ୍ଡେକରଙ୍କ 'ସିନ୍ଧୋ', ତେଣ୍ଡୁଲକରଙ୍କର 'ଶ୍ରୀମନ୍ତ', ପି.ଏଲ୍. ଦେଶପାଣ୍ଡେଙ୍କର 'ତୁଜେ ଆହେ ତୁଜପାସି' ପ୍ରଭୃତି ନାଟକ ଆଧୁନିକ ସମୟରେ ଲିଖିତ ଏବଂ ମଞ୍ଚସ୍ଥ ହୋଇପାରିଛି । ଭାବେଙ୍କର 'ସ୍ୱାମୀଜୀ' ଏବଂ ବାଲ କୋଲ୍‌ହାଟାଙ୍କର 'ଦୁରିତାଂଚେ ତିମିର ଯାଓ' ସେତେବେଳେ

ରଂଗମଞ୍ଚରେ ଅଭିନୀତ ହେଲା, ସେତେବେଳେ ନାଟ୍ୟାମୋଦୀମାନଙ୍କ ମଧ୍ୟରେ ଶୃଙ୍ଖଳା ଖେଳ ଯାଇଥିଲା । ଦେଶପାଣ୍ଡେଙ୍କର 'ଇନ୍‌ସ୍‌ପେକ୍‌ଟର-ଜେନେରାଲ' କମ୍ବା ଭଲଲଙ୍କର 'ଇନ୍‌ସ୍‌ପେକ୍‌ଟର କଲ୍‌ସ' ବ୍ୟଙ୍ଗବଦ୍ରୂପ ପୁଷ୍ଟି ଲେଖାଦ୍ୱାରା ଆଧୁନିକ ମରାଠୀ ନାଟ୍ୟସାହିତ୍ୟ ବେଶ୍ ସମୃଦ୍ଧି ହୋଇପାରିଛି । ନାଗପୁର ଏବଂ ବମ୍ବେରେ ବିଭିନ୍ନ ଅନୁଷ୍ଠାନ ନାଟକ ଓ ରଂଗମଞ୍ଚପ୍ରତି ଆଗ୍ରହ ପ୍ରକାଶ କରୁଛନ୍ତି । ସରକାରଙ୍କ ପକ୍ଷରୁ ମଧ୍ୟ ନାଟକପ୍ରସାରପାଇଁ ଉଦ୍ୟମ କରାଯାଉଛି । ମୌଳିକ ନାଟକ ସଂଗେ ଅନୂଦିତ ନାଟକର ସଂଖ୍ୟା ମଧ୍ୟ ବଢ଼ି ଚାଲିଛି । ଜନସଂସ୍କୃତିର ଏକ ଶକ୍ତିଶାଳୀ ଆଭିମୁଖ୍ୟରୂପେ ମରାଠୀ ନାଟକର ଦାନ ସ୍ୱୀକାର୍ଯ୍ୟ ।

## ମରାଠୀ କାବ୍ୟକବିତା :—

ମରାଠୀ କାବ୍ୟକବିତାର ପରମ୍ପରା ଥିଲା କିନ୍ତୁ ଗଦ୍ୟ-ସାହିତ୍ୟର ପରମ୍ପରା ନ ଥିଲା କହିଲେ ଚଳେ । ପ୍ରାଚୀନ କାବ୍ୟର ଶୈଳୀ ଓ ଛନ୍ଦ ପ୍ରାକ୍ ଆଧୁନିକ ଯୁଗରେ କବିମାନଙ୍କୁ ଆକୃଷ୍ଟ କରୁଥିଲା । କବି ବାମନ ଏବଂ ମରୋପନ୍ତ ପ୍ରଭୃତିଙ୍କର ପ୍ରଭାବ ସମ୍ପୂର୍ଣ୍ଣ ଦୂର ହୋଇ ନଥିଲା । ପର୍ଶୁରାମ ତାତ୍ୟାଗଡ଼ବଲେ ପ୍ରାଚୀନ କବିତାମାନଙ୍କର ଏକ ସଂକଳନ ପ୍ରକାଶ କରିଥିଲେ । ଆଧୁନିକ ଯୁଗର ପ୍ରାରମ୍ଭରେ କବିମାନଙ୍କୁ ଦୁଇ ଶ୍ରେଣୀରେ ବିଭକ୍ତ କରାଯାଇ ପାରେ । କୃଷ୍ଣଶାସ୍ତ୍ରୀ ଚିପ୍ଲୁଣକରଙ୍କର 'ଲେଲେ' ପରିଖିଙ୍କ ସଦୃଶ ଦଳେ କବି ସଂସ୍କୃତର ଆଲଙ୍କାରିକ କାବ୍ୟରୀତି ଅନୁସରଣ କରିଥିଲେ ଏବଂ ସଂସ୍କୃତରେ କାଳିଦାସ, ଭବଭୂତି, ଶୂଦ୍ରକ ପ୍ରମୁଖଙ୍କଙ୍କ କାବ୍ୟ ଅବଲମ୍ବନରେ କାଳିକ କାବ୍ୟ ରଚନା କରିଥିଲେ । ଆଉ ଏକଶ୍ରେଣୀର କବି ପାଶ୍ଚାତ୍ୟ ସାହିତ୍ୟର କାବ୍ୟକବିତାଦ୍ୱାରା ଅନୁପ୍ରାଣିତ ହୋଇଥିଲେ । ଫଳରେ ପାଠକମାନେ ଋତୁସଂହାର, ରଘୁବଂଶ ସଦୃଶ ମରାଠୀ କାବ୍ୟ ପଢ଼ିବାକୁ ପାଇଥିଲେ ଏବଂ ତତ୍ ସହିତ ଇଂରାଜୀ କବି ମିଲ୍‌ଟନ୍, ଡ୍ରାଇଡ଼େନ୍, ସ୍କଟ୍, ସେଲୀ, ପୋପ୍ ପ୍ରଭୃତିଙ୍କ କାବ୍ୟକବିତାର ଅନୁବାଦ,ମଧ୍ୟ ପଢ଼ିବାକୁ ପାଇଥିଲେ । ସ୍କଟ୍‌ଙ୍କର 'ଲେଡି ଅଫ ଦ ଲେକ୍' (Lady of the Lake), ଟେନିସନଙ୍କର 'ପ୍ରିନ୍‌ସେସ୍' (Princess) ର ମରାଠୀ ଅନୁବାଦ ପାଠକଙ୍କୁ ଆକୃଷ୍ଟ କରିଥିଲା । ଏହି ପର୍ଯ୍ୟାୟର କବିମାନଙ୍କ ମଧ୍ୟରେ ଏମ୍. ଏମ୍. କୁନ୍ତେଙ୍କର ନାମ ଉଲ୍ଲେଖଯୋଗ୍ୟ । ତାଙ୍କର 'ରାଜା ଶିବାଜୀ' ଏକ ନୂତନ କାବ୍ୟରୂପେ ଆଦୃତ ହୋଇଥିଲା । ସେ କବିତାରେ ଗ୍ରାମ୍ୟ ଭାଷା ପ୍ରୟୋଗର ପକ୍ଷପାତୀ ଥିଲେ । ତାଙ୍କର 'ରାଜା ଶିବାଜୀ' କାବ୍ୟ ଅପୂର୍ଣ୍ଣ ହେଲେହେଁ ମରାଠୀ କାବ୍ୟ ଶୈଳୀରେ ପରିବର୍ତ୍ତନ ଆଣି ଦେଇଥିଲା । ଇଂରେଜୀ କାବ୍ୟକବିତାର ପ୍ରଭାବରେ ମରାଠୀ କବିତା ଏଣିକି ଅଧିକ ଚିନ୍ତାଗର୍ଭକ ହୋଇ ସରଳଭାଷାରେ ଲିଖିତ ହୋଇଥିଲା । କବିତାରେ ବ୍ୟକ୍ତି ସ୍ୱାତନ୍ତ୍ର୍ୟ କ୍ରମଶଃ ପ୍ରକଟିତ ହେଲା । ଏହିପରି ସନେଟ୍, ଏଲିଜ୍ ଓ ଦୀର୍ଘବର୍ଣ୍ଣନାତ୍ମକ କବିତା ପ୍ରକାଶିତ ହୋଇ

ମରାଠୀ କାବ୍ୟକବିତାର ରୂପାନ୍ତର ଘଟାଇଥିଲା । ଏହି କାବ୍ୟିକ ଜାଗରଣ ଯୋଗୁଁ ମରାଠୀ କାବ୍ୟକବିତାରେ ନୂତନ ଯୁଗର ସୂତ୍ରପାତ ହେଲା, ଯାହାର ପରିଣତି ହେଉଛି ଏକ ଅଜସ୍ର କାବ୍ୟକବିତାର ପ୍ରବାହ ।

କେଶବସୁତ, ତିଲକ, ବିନାୟକ, ଚନ୍ଦ୍ରଶେଖର, ତାମ୍ବେ ପ୍ରଭୃତି କବି-ମାନଙ୍କର ମୌଳିକ ସୃଷ୍ଟି ଓ ସ୍ୱତନ୍ତ୍ର କାବ୍ୟପ୍ରବାହ ପାଠକସମାଜକୁ ବିସ୍ମିତ କରି-ଦେଇଥିଲା । ଏହି ଗୋଷ୍ଠୀର ସର୍ବଶ୍ରେଷ୍ଠ କବି ହେଉଛନ୍ତି କେଶବସୁତ କିମ୍ବା 'କୃଷ୍ଣାଜି କେଶବ ଡାମଲେ (୧୮୬୬-୧୯୦୮)' । ତାଙ୍କ କବିତାର ଉତ୍କୃଷ୍ଟତା ଓ ଭାବବଳିଷ୍ଠତା ଏପର୍ଯ୍ୟନ୍ତ ଅନୁଭୂତ ହେଉଥାଏ । କେବଳ ଯୁଗପ୍ରବର୍ତ୍ତକ ଭାବରେ ନୁହେଁ, ଜଣେ ସଂସ୍କାରବାଦୀ କବି ହିସାବରେ ଆଧୁନିକ ସାହିତ୍ୟରେ ତାଙ୍କର ନାମ ସର୍ବାଗ୍ରେ ଉଲ୍ଲେଖଯୋଗ୍ୟ । ସେ ପ୍ରଥମେ ପୂର୍ବଯୁଗର ପାଣ୍ଡିତ୍ୟପୂର୍ଣ୍ଣ ଗାତରେ କବିତା ଲେଖା ଆରମ୍ଭ କରିଥିଲେ ମଧ୍ୟ ପରେ ସେ ପ୍ରାଚୀନ କାବ୍ୟ ଆଙ୍ଗିକ ତ୍ୟାଗ କରିଥିଲେ । ତାଙ୍କ କବିତାରେ କ୍ରମଶଃ ଗୀତିପ୍ରାଚୁର୍ଯ୍ୟ, ଭାବ-ଗାମ୍ଭୀର୍ଯ୍ୟ ଓ ତାଙ୍କର ପ୍ରଖର ବ୍ୟକ୍ତିତ୍ୱ ପ୍ରକଟିତ ହୋଇଥିଲା । ପ୍ରକୃତି-ପ୍ରାଣତା, ସମାଜସଂସ୍କାର, ସ୍ପୃହା, ରାଜନୀତିକ ଚେତନା ତଥା ଏକ କରୁଣ ଉଚ୍ଛ୍ୱାସ ତାଙ୍କ କବିତାର ଲକ୍ଷଣ । ବ୍ୟକ୍ତିର ଉପରେ ବେଷ୍ଟନୀର ଯେଉଁ ପ୍ରଭାବ ତାହା ତାଙ୍କ କବିତାରେ ଦେଖିବାକୁ ମିଳେ । ନୂତନ ଦୃଷ୍ଟିଭଙ୍ଗୀ, ନୂତନ ଆଙ୍ଗିକ ଯୋଗୁଁ ତାଙ୍କର କବିତା ଗୁଡ଼ିକ ମୌଳିକ ସୌନ୍ଦର୍ଯ୍ୟରେ ପରିପୂର୍ଣ୍ଣ ହୋଇଥିଲା । ସେ ପ୍ରକୃତିପ୍ରତି ମୁଗ୍ଧ ନୟନରେ ଚାହିଁ ରହିଥିଲେ । ତାଙ୍କର ଗୋଟିଏ କବିତା 'ପୁଷ୍ପପ୍ରତି' ଏହାର ପରିଚାୟକ । ସମାଜର ନରନାରୀଙ୍କୁ ପ୍ରଥମଥର ପାଇଁ କେଶବସୁତ ମାନବିକ ପ୍ରେମର ଗୌରବ ପ୍ରଦାନ କରିଥିଲେ । ଜୀବନର ସାମାନ୍ୟ ସାମାନ୍ୟ ଘଟଣାକୁ କେନ୍ଦ୍ରକରି ତାଙ୍କର କବିତା ଗୁଡ଼ିକ ସାର୍ଥକ ହୋଇ ପାରିଥିଲା । ତାଙ୍କର ଗୋଟିଏ କବିତା ପରେ ସେ କହିଥିଲେ "କବିତା ଏପରି ହେବ, ସେପରି ହେବ, ବୋଲି ଯେଉଁମାନେ ମନ୍ତବ୍ୟ ଦିଅନ୍ତି ସେମାନେ ଏପରି ମନ୍ତବ୍ୟ ଦେବାକୁ କିଏ ? ଯୁବକ ଯେପରି ଯୁବତୀକୁ ପ୍ରେମ-କରେ, କବି ସେହିପରି ତାହାର କବିତାକୁ ପ୍ରେମକରେ । କବି ସେପରି କବିତାକୁ ସୁନ୍ଦର ବନ୍ଧନରେ ବାନ୍ଧିରଖେ । ଅନ୍ୟ ଲୋକର ଉପଦେଶ କି ଦରକାର ?" ତାଙ୍କର ଗୋଟିଏ କବିତା "ହରି ପଲେ ଶ୍ରେୟ" ଭାବଗାମ୍ଭୀର୍ଯ୍ୟର ଚୂଡ଼ାନ୍ତ ନିଦର୍ଶନ । ଯଥାର୍ଥତଃ ତାଙ୍କର କବିତା ପ୍ରଗତିଶୀଳ ଓ ଦୃଷ୍ଟିସଂପନ୍ନ । ତାର ଶୈଳୀ ସରଳ ଓ ତାଙ୍କର କବିତାରେ ଶିଶୁସୁଲଭ ସରଳତା ପରିଦୃଷ୍ଟ ହୋଇଥାଏ । ସମସାମୟିକ ସମାଜ ଓ ରାଜନୀତି ପ୍ରତି ସେ ମଧ୍ୟ ତାଙ୍କ କବିତାରେ ଅବହିତ ଥିଲେ । ତାଙ୍କର ଗୋଟିଏ କବିତାରେ ଜଣେ ମଜୁରିଆ ଯେପରି ଭାବରେ ନିଜର ମନର କଥା ପ୍ରକାଶ କରିଛି ତାହା ଅତ୍ୟନ୍ତ ହୃଦୟସ୍ପର୍ଶୀ । କ୍ଷୁଧିତ ଶ୍ରମିକ କହିଛି "ମୋର ଗୃହପାର୍ଶ୍ୱରେ

ଆନନ୍ଦର ଢେଉ, କିନ୍ତୁ ମୁଁ ଅନାହାରରେ ଅବସନ୍ନ । ସାରା ଦିନ ଖଟି ମୋତେ ପେଟକୁ ମୁଠେ ମିଳିଲା ନାହିଁ । କିନ୍ତୁ ମୋତେ କେହି କାମ ଦେଉନାହାନ୍ତି । ମୋ ଆଗରେ ଏସବୁ ଯେଉଁ ସୁନ୍ଦର ସୁନ୍ଦର ମନ୍ଦିର ଠିଆ ହୋଇଛି, ତାହା ସବୁ କ'ଣ ମୋର ପିତୃ-ପୁରୁଷଙ୍କର କୀର୍ତ୍ତି ନୁହେଁ ? ମୋତେ ମୁଠେ ଖାଇବାକୁ ମିଳୁନାହିଁ । ଅଥଚ ଧନିକମାନେ ନୃତ୍ୟ ଗୀତରେ ମତ୍ତ । ମୁଁ ସେମାନଙ୍କୁ ହିଂସା କରୁନାହିଁ । ସାମାନ୍ୟ ଖଣ୍ଡେ ଦୁଇଖଣ୍ଡ ରୁଟିରେ ମୁଁ ସନ୍ତୁଷ୍ଟ । କିନ୍ତୁ ହେ ଭଗବାନ, ତୁମ୍ଭର ଏ ବିଚାର କାହିଁକି ? କାହାକୁ ତୁମେ କ୍ଷୀର ଖେଚଡ଼ୀ ଦେଉଛ, ମତେ କିନ୍ତୁ ଖଣ୍ଡେ ରୁଟି ଦେଉନାହିଁ !"

୧୮୮୯ ମସିହାରେ ଏହି କବିତାଟି ଲେଖା ହୋଇଥିଲା । ତେଣୁ ତାଙ୍କର ଦୃଷ୍ଟି-କୋଣ କିପରି ପ୍ରଖର ଏବଂ ଶାଣିତ ଥିଲା, ତାହା ଅନୁମେୟ । ସେ ପ୍ରାଚୀନ କବିତା-ଶୈଳୀକୁ ସମ୍ପୂର୍ଣ୍ଣ ବାଦଦେଇ ନଥିଲେ ଏବଂ ନୂତନ ଆଙ୍ଗିକର ସର୍ବଦା ପକ୍ଷପାତୀ ଥିଲେ । ମରାଠୀ କବିତାରେ ସେ ସନେଟ୍‌ର ଏକ ନୂତନ ମାର୍ଗ ପ୍ରବର୍ତ୍ତନ କରିଥିଲେ । ଆଧୁନିକ ମରାଠୀ କବିତାର ଉଦ୍‌ଗାତା ରୂପେ କେଶବସୁତଙ୍କର ନାମ ପ୍ରଥମେ ସ୍ମରଣୀୟ । ଦାର୍ଶନିକ-ଭାବାପନ୍ନ ପ୍ରକୃତିପ୍ରେମିକ କବି ରେଭରେଣ୍ଡ ନାରାୟଣ ବାମନ ତିଲକଙ୍କ କବିତାରେ ଶିଶୁପ୍ରାଣର ସରଳତା, ସୌନ୍ଦର୍ଯ୍ୟପ୍ରେମ, ଗମ୍ଭୀର ଭଗବଦ୍ ଭକ୍ତି ପ୍ରତିଫଳିତ । ତାଙ୍କର ଭାବାତ୍ମକ କବିତା ମଧ୍ୟରେ 'ବନବାସୀ ଫୁଲ' ଓ 'ସୁଶୀଳା' ଉଲ୍ଲେଖଯୋଗ୍ୟ । ବୟସରେ ବଡ଼ ହେଲେହେଁ ସେ କେଶବସୁତଙ୍କ କବିତାଦର୍ଶ ଦ୍ୱାରା ଅନୁପ୍ରାଣିତ ହୋଇଥିଲେ । ସେ ମରାଠୀ ସନ୍ଥ କବି ପରମ୍ପରାର ଶେଷ କବି ବୋଲି ଜଣାଯାଏ । ଚନ୍ଦ୍ରଶେଖର ସମସାମୟିକ କାବ୍ୟପ୍ରବାହରୁ ସ୍ୱତନ୍ତ୍ର ଥିଲେ । ସେ ପ୍ରାଚୀନ ଧ୍ରୁପଦ କାବ୍ୟ ରୀତିର ପକ୍ଷପାତୀ ଥିଲେ । ତାଙ୍କର ଶ୍ରେଷ୍ଠ ବର୍ଣ୍ଣନାତ୍ମକ କବିତା ହେଉଛି 'କାୟ୍ ହୋ ଚମତ୍କାର' । ଚନ୍ଦ୍ରଶେଖରଙ୍କ କବିତା କୌଣସି କବିଙ୍କୁ ପ୍ରଭାବିତ କରିଥିବା ଜଣାଯାଏ ନାହିଁ । ତାମ୍ବେ କେଶବସୁତଙ୍କଠାରୁ ପୃଥକ୍ । ତାଙ୍କର କବିତା ଦ୍ୱାରା କେତେକ ଲେଖକ ଅନୁପ୍ରାଣିତ ହୋଇଥିଲେ । ଭାରତୀୟ ଦର୍ଶନ ଥିଲା ତାଙ୍କ କବିତାର ବିଷୟବସ୍ତୁ । ରୋମାନ୍‌ସ ମଧ୍ୟ ବେଳେ ବେଳେ ତାଙ୍କ କବିତାରେ ସୂଚିତ ହୋଇଥାଏ । ଐତିହାସିକ ଗାଥା ଓ ସଂଗୀତ ରଚନାରେ ବିନାୟକ ଜଣେ ସାର୍ଥକ କବି ଥିଲେ । ଆଧୁନିକ ମରାଠୀ ଦେଶାତ୍ମବୋଧ କବିତାର ସେ ଯେପରି ପ୍ରବର୍ତ୍ତକ ଥିଲେ । ଏନ୍. ଏମ୍. ଗୁପ୍ତେ (ଛଦ୍ମ ନାମ, ବୀ)ଙ୍କର କବିତା ସଂସ୍କୃତ ପ୍ରଭାବିତ ହେଲେହେଁ ପ୍ରକୃତି-ପ୍ରେମ ଦାର୍ଶନିକତା ଯୋଗୁଁ ଆଦୃତ ହୋଇଥିଲା । ଇତିହାସ ପ୍ରତି ତାଙ୍କର କମ୍ ଆନୁଗତ୍ୟ ନଥିଲା । ତାଙ୍କ ଲେଖା ଉପରେ ଇଂରେଜ କବିତାର ପ୍ରଭାବ ପଡ଼ିଥିବା ପରି ଜଣାଯାଏ । ତାଙ୍କର କବିତା 'ଚପାଂ' (ଚମ୍ପାଫୁଲ) ଅପୂର୍ବ କଳ୍ପନା ଓ ପ୍ରେମର ନିଦର୍ଶନ । ତାଙ୍କର 'ବେଦଗାଣେ' ଶୀର୍ଷକ ଦୀର୍ଘ କବିତା ଗଭୀର ଚିନ୍ତାର ପ୍ରତୀକ । ସମସାମୟିକ ସମାଜଚିନ୍ତା ତାଙ୍କ କବିତାରେ ମଧ୍ୟ ସ୍ଥାନ ପାଇଥିଲା ।

ରାମଗଣେଶ ଗଦେକରୀ (ଅନ୍ୟ ନାମ ଗୋବିନ୍ଦାଗ୍ରଜ) ଓ ବାଲକବି ତ୍ର୍ୟମ୍ବକ ବାପୁଜୀ ଠୋମରେ କେଶବସୁତଙ୍କର କବିତାମାର୍ଗ ଅନୁସରଣ କରିଥିଲେ । ଗଦେକରୀ ନିଜକୁ କେଶବସୁତଙ୍କର ଶିଷ୍ୟବୋଲି ଘୋଷଣା କରି ଗର୍ବ ଅନୁଭବ କରୁଥିଲେ । କେଶବସୁତଙ୍କର କବିତାର ଭାବୋଚ୍ଛ୍ୱାସ, ବ୍ୟକ୍ତିସ୍ୱାତନ୍ତ୍ର୍ୟ, ସାମାଜିକ ପ୍ରଗତିବାଦ ଗଦେକରୀଙ୍କ କବିତାରେ ପ୍ରତିଧ୍ୱନିତ । ଭାଷା, ଛନ୍ଦ ଓ ସଂଗୀତରେ ତାଙ୍କର ମଧ୍ୟ ଦକ୍ଷତା ଥିଲା । ମରାଠୀ କବିତାର ଭାବପ୍ରାଚୁର୍ଯ୍ୟ ଓ ଅଲଙ୍କରଣକୁ ଗଦେକରୀ ସମୃଦ୍ଧ କରିଥିଲେ । ତଥାପି ସେ କେଶବସୁତଙ୍କର ପ୍ରକୃତ ଅନୁସରଣ କରିପାରିନଥିଲେ । ଉଭୟଙ୍କ ମଧ୍ୟରେ ମାନସିକ ସ୍ୱାତନ୍ତ୍ର୍ୟ ଥିଲା । ଗଦେକରୀ ନାଟକ ଓ ପ୍ରହସନ ଲେଖି ଏହା ପୂର୍ବରୁ ପରିଚିତ ହୋଇଥିଲେ । ସେ ଯେପରି ପାଠକମାନଙ୍କ ପ୍ରତି ବରାବର ସଚେତନ ଥିଲେ । ତାଙ୍କର ଶୈଳୀ ଥିଲା ଆଲଙ୍କାରିକ । ତାହା ପୁଣି ଗୂଢ଼ାର୍ଥପୂର୍ଣ୍ଣ ଓ ସେଥିରେ କଳ୍ପନା-ବିଳାସ କିମ୍ବା ଆବେଗମୟତ୍ୱ ବିଶେଷ ପରିଦୃଷ୍ଟ ହୁଏ ନାହିଁ । ବାଲକବିଙ୍କର କବିପ୍ରତିଭା ପ୍ରଧାନତଃ ଗୀତିକବିତାଧର୍ମୀ । ତାଙ୍କର ପ୍ରାକୃତିକ ସୌନ୍ଦର୍ଯ୍ୟ ଚିତ୍ରଣରେ ଅପୂର୍ବ ଲାସ୍ୟ ଦେଖାଯାଏ । ତାଙ୍କର ଶିଶୁସୁଲଭ ଚପଳତା ତଥା ପ୍ରାକୃତିକ ସୌନ୍ଦର୍ଯ୍ୟ ଦର୍ଶନରେ ବିସ୍ମୟ ତାଙ୍କର ନାମର ସାର୍ଥକତା ପ୍ରତିପାଦନ କରେ । ଏକ ଗଭୀର ବିଷାଦବାଦ ଦ୍ୱାରା ତାଙ୍କ କବିତା ଭାରାକ୍ରାନ୍ତ ହୋଇଥିଲା । ଅଳ୍ପ ବୟସରେ ତାଙ୍କର ମୃତ୍ୟୁ ହୋଇଥିଲା । କିନ୍ତୁ ସେ ଯେଉଁ ମୁଷ୍ଟିମେୟ କବିତା ଲେଖିଯାଇଥିଲେ, ତାହା ତାଙ୍କୁ ମରାଠୀ କାବ୍ୟ କବିତା ଇତିହାସରେ ଏକ ଆସନ ଦେଇଅଛି । ବୀରତ୍ୱ ବର୍ଣ୍ଣନାମୂଳକ ପ୍ରାଚୀନ ମରାଠୀ କବିତା 'ପାର୍ୱାଡାଗ' ଆଧୁନିକ କବିତାରେ ଦେଖିବାକୁ ମିଳେ ନାହିଁ । ଗୋବିନ୍ଦାଗ୍ରଜ 'ପାନିପଥ' ଶୀର୍ଷକ ଏକ ଦୀର୍ଘ ଦେଶାତ୍ମବୋଧ କବିତା ଲେଖିଥିଲେ । ବୀର ସର୍ଭରକର୍ ମଧ୍ୟ କେତେଗୁଡ଼ିଏ ବୀରତ୍ୱବ୍ୟଂଜକ କାବ୍ୟ ରଚନା କରିଥିଲେ; ଯଥା —'ବାଜପ୍ରଭୁ' ଓ 'ତନାଜୀ'—ତୀବ୍ର ଜାତୀୟତା ତାଙ୍କର ମନ୍ତ୍ର । 'ଗୋମନ୍ତକ' ଓ 'କମଳା' ମଧ୍ୟ ଆଉ ଦୁଇଗୋଟି ତାଙ୍କର ଲେଖା । ଗୀତିକବିତା ରଚନାରେ ମଧ୍ୟ ତାଙ୍କର ଦକ୍ଷତା ଥାଏ । କେଶବସୁତଙ୍କ ଠାରୁ ବାଲକବିଙ୍କ ପର୍ଯ୍ୟନ୍ତ ଅର୍ଥାତ୍ ୧୮୮୫ ରୁ ୧୯୨୦ ମସିହା —ଏହି ଯୁଗ ମହାରାଷ୍ଟ୍ରରେ ଚେତନାର ଯୁଗବୋଲି କୁହାଯାଇ ପାରେ । ସାହିତ୍ୟ, ଶିଳ୍ପ, କଳା—ପ୍ରତ୍ୟେକ କ୍ଷେତ୍ରରେ ନୂତନ ଉତ୍ସାହ ଓ ଉଦ୍ଦୀପନା ସଞ୍ଚାର ହୋଇଥିଲା । ଜୀବନ ସଂଗ୍ରାମରତ ସାଧାରଣ ଜନତା ଓ ସେମାନଙ୍କର ପରିବାର କ୍ରମେ କ୍ରମେ କାବ୍ୟ କବିତାରେ ପ୍ରତିଫଳିତ ହେଲେ ।

କେଶବସୁତଙ୍କର ବ୍ୟକ୍ତିବାଦ ଓ ଚରମପନ୍ଥା ବାଲକବିଙ୍କର ଗୀତି ଉଚ୍ଛ୍ୱାସ କିମ୍ବା ସର୍ଭରକର୍‌ଙ୍କର ତୀବ୍ର ଜାତୀୟତା ସ୍ଥାନରେ ପରବର୍ତ୍ତୀ ଯୁଗର କବିମାନେ ମଧ୍ୟବିତ୍ତ ଶ୍ରେଣୀର ଭାବ ଓ ଚେତନାକୁ କାବ୍ୟ କବିତାରେ ରୂପାୟିତ କରିଥିଲେ । ଏହି ଯୁଗର କବିମାନେ ହେଲେ ଯଶୋବନ୍ତ ରବିକିରଣ ମଣ୍ଡଳ ଓ ଗିରୀଶ ।

ସେମାନେ ପ୍ରତ୍ୟେକେ ନିଜ ନିଜର ଦାନଯୋଗୁ ମରାଠୀ କବିତା ରାଜ୍ୟରେ ପ୍ରତିଷ୍ଠିତ । ଯଶୋବନ୍ତଙ୍କ କବିତାରେ ଭାବର ବଳିଷ୍ଠତା, ଶୈଳୀର ସରଳତା ଓ ଗୀତଧର୍ମିତ୍ୱ ପରିସ୍ଫୁଟ । ଗିରୀଶଙ୍କର କବିତା ହେଉଛି ମାର୍ଜିତ । ପଟ୍ଟବର୍ଦ୍ଧନ ପାର୍ଶୀ ଭାଷାରେ ପଣ୍ଡିତ ଥିଲେ । ତେଣୁ ତାଙ୍କ କବିତାରେ ପାର୍ଶୀ ଓ ଇଂରେଜୀର ପ୍ରଭାବ ପଡ଼ିଥିଲା ।

ଏହି କବିମାନଙ୍କର ମରାଠୀ କବିତାକୁ ଶ୍ରେଷ୍ଠ ଦାନ ହେଉଛି ସେମାନଙ୍କର ମଧ୍ୟବିତ୍ତ ଶ୍ରେଣୀର ଚେତନା । ବ୍ୟଙ୍ଗ, ବିଦ୍ରୂପର ସ୍ୱର ମଧ୍ୟ ତାଙ୍କ କବିତାରେ ଶୁଣିବାକୁ ମିଳେ । ସେମାନଙ୍କର କବିତାର ଶ୍ରେଷ୍ଠ କୃତିତ୍ୱ ହେଉଛି ସରଳ ଭାଷା ଓ ବୋଧ-ଗମ୍ୟତା । ମଧ୍ୟବିତ୍ତ ଶ୍ରେଣୀର ଚିନ୍ତା ସାହିତ୍ୟରେ ପରିସ୍ଫୁଟ କରିବାରେ ରବିକିରଣ ମଣ୍ଡଳଙ୍କର କବିତାହିଁ ସାହାଯ୍ୟ କରିଥିଲା । ଏହି ଗୋଷ୍ଠୀ ଯୋଗୁଁ ମରାଠୀ କବିତା ଖୁବ୍ ଲୋକପ୍ରିୟ ହୋଇଥିଲା । ସେମାନଙ୍କର ଶୈଳୀରେ କୃତ୍ରିମତା ନଥିଲା । ଏହି ଗୋଷ୍ଠୀର ସମସାମୟିକ ଆଉ କେତେକଜଣ ତରୁଣକବି ନିଜ ନିଜର ସ୍ୱତନ୍ତ୍ର ଶୈଳୀରେ କବିତା ଲେଖିଥିଲେ । ସେମାନଙ୍କ ମଧ୍ୟରେ ଅନନ୍ତକାଣେକର, ବୋରକର, ବି. ଏସ. ପଣ୍ଡିତ, ଜି. ଏନ୍. ଦେଶପାଣ୍ଡେ, ଏ. ଆର. ଦେଶପାଣ୍ଡେ (ଅନିଲ) ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ । ଅନନ୍ତକାଣେକରଙ୍କ ପ୍ରେମ କବିତାରେ ଉଭୟ ହର୍ଷ ଓ ବିଷାଦ ପ୍ରତିଫଳିତ । ବୋରକରଙ୍କ କବିତା ଭାଷାର ଅପୂର୍ବ ସୌନ୍ଦର୍ଯ୍ୟ ଯୋଗୁଁ ଉଲ୍ଲେଖଯୋଗ୍ୟ । ଏ. ଆର. ଦେଶପାଣ୍ଡେଙ୍କର କବିତା ବ୍ୟକ୍ତିସ୍ୱାତନ୍ତ୍ର୍ୟପୂର୍ଣ୍ଣ । ଏହି ଗୋଷ୍ଠୀର କବିମାନଙ୍କର କବିତାରେ ପ୍ରାକୃତିକ ସୌନ୍ଦର୍ଯ୍ୟର ଚେତନା ଓ ବ୍ୟକ୍ତିଗତ ଅନୁଭୂତିର ସମ୍ମିଶ୍ରଣ ଦେଖାଯାଏ । ସେହି ଅନୁଭୂତି ବେଳେବେଳେ ରହସ୍ୟବାଦର ନିଦର୍ଶନ । ବ୍ୟକ୍ତିଗତ ପ୍ରେମ ଅନେକ ସମୟରେ ସାମାଜିକ ଚେତନା ଦ୍ୱାରା ପ୍ରଭାବିତ ହୋଇଥିଲା । ମରାଠୀ କବିତାରେ ମୁକ୍ତଛନ୍ଦର ପ୍ରବର୍ତ୍ତକ ହେଉଛନ୍ତି ଅନିଲ । ଖଣ୍ଡକାବ୍ୟର ପରିକଳ୍ପନାରେ ସେ ମଧ୍ୟ ପରିବର୍ତ୍ତନ ଆଣିଥିଲେ । ତାଙ୍କର ଯୁକ୍ତି କ୍ଷୁଦ୍ରଗଳ୍ପ ଓ ଉପନ୍ୟାସର ପ୍ରସାର ସଙ୍ଗେ ଦୀର୍ଘ କାବ୍ୟର ସ୍ୱରୂପ ପରିବର୍ତ୍ତିତ ହେବା ଉଚିତ । ମୁକ୍ତଛନ୍ଦ ସେଥିପାଇଁ କାବ୍ୟରେ ବ୍ୟବହୃତ ହେବା ଆବଶ୍ୟକ । ତାଙ୍କର ଦୀର୍ଘ କବିତା 'ଭଗ୍ନମୂର୍ତ୍ତି' 'ପ୍ରେମଆଣି ଜୀବନ', 'ନିରବିନ୍ଦି ଗୃଇନମୁଳଜ' ମୁକ୍ତଛନ୍ଦରେ ଲିଖିତ ହୋଇଥିଲା । ଅନିଲ ଆଧୁନିକ ମରାଠୀ କବିତାର ଏକ ନିର୍ଦ୍ଦିଷ୍ଟ ଅଭିମୁଖ୍ୟର ପ୍ରବର୍ତ୍ତକ ।

କୁସୁମାଗ୍ରଜ, କାନ୍ତ ପ୍ରଭୃତି ମରାଠୀ କବିତାରେ ଆଉ ଏକ ଦିଗ ନିର୍ଦ୍ଦେଶ କରିଥିଲେ । ତାହା ହେଉଛି ସେମାନଙ୍କ କବିତାର ସ୍ୱାଧୀନତା ଆନ୍ଦୋଳନ ପକ୍ଷପାତି ଭାବ । ତେଣୁ ସେମାନଙ୍କର କବିତାରେ ତ୍ୟାଗ ଓ ଜାତୀୟତା ଭାବ ପ୍ରସ୍ଫୁଟିତ ହୋଇଥିଲା । କୁସୁମାଗ୍ରଜଙ୍କର କବିତା ଓ ଗୀତିକବିତା ଭାବସଂହତ ତଥା ସୁନ୍ଦର ଶୈଳୀଯୋଗୁ ଆଦୃତ ହୋଇଥାଏ । ମରାଠୀ ସାହିତ୍ୟରେ ନାରୀକବିଙ୍କର ମଧ୍ୟ ଆବିର୍ଭାବ

ଘଟିଛି । ସଞ୍ଜୀବନୀ ମାଗ୍ରଥେ, ପଦ୍ମା, ଇନ୍ଦିରା ସନ୍ତ ପ୍ରଭୃତିଙ୍କ କବିତାରେ ଯଥାକ୍ରମେ ଶିଶୁସୁଲଭ ସରଳତା, ଭାବସମୃଦ୍ଧି ଏବଂ ପ୍ରେମୋଚ୍ଛ୍ୱାସ ପ୍ରତିଫଳିତ । ସେମାନଙ୍କ କବିତାରେ ଗୀତିମୟତ୍ୱର ମଧ୍ୟ ଅଭାବ ନାହିଁ ।

ଆଧୁନିକ ମରାଠୀ କବିତାର ଉଲ୍ଲେଖଯୋଗ୍ୟ କୃତିତ୍ୱ ହେଉଛି 'ନବକାବ୍ୟ' । ବି. ଏସ୍. ମାଢ଼େକର ହେଉଛନ୍ତି ଏହି ଆନ୍ଦୋଳନର ପ୍ରବର୍ତ୍ତକ । ତାଙ୍କର କବିତା ମାନବିକ ବ୍ୟକ୍ତିତ୍ୱର ବିକେନ୍ଦ୍ରୀକରଣ ତଥା ଆଧୁନିକ ସଭ୍ୟତାର ଯେଉଁ ପ୍ରଭାବ ତାହାର ଉପରେ ଆଧାରିତ । କ୍ଷୁଧିତ ଆତ୍ମାର ବିକଳ ମୂର୍ଚ୍ଛନା ହିଁ 'ନବକାବ୍ୟ'ରେ ପ୍ରତିଫଳିତ । ଆଧୁନିକ ଆତଙ୍କିତ ପୃଥିବୀର ମାନସିକ ପ୍ରତିକ୍ରିୟା ଆଧୁନିକ କବିତାମାନଙ୍କରେ ସ୍ପଷ୍ଟ । ମାଢ଼େକରଙ୍କର କବିତା ଅପୂର୍ବ ଉପମା ଓ ଶୈଳୀଦ୍ୱାରା ଚର୍ଚ୍ଚିତ । ସେ କବିତାର ଆଙ୍ଗିକରେ କୌଣସି ପରିବର୍ତ୍ତନ ଆଣି ନଥିଲେ ମଧ୍ୟ ବୈଜ୍ଞାନିକ ଯୁଗର ଅଭିବ୍ୟକ୍ତି ତାଙ୍କ କବିତାରେ ବେଶ୍ ପ୍ରତିଫଳିତ । ଅତ୍ୟାଧୁନିକ କବିମାନଙ୍କ ମଧ୍ୟରେ ମୁକ୍ତିବୋଧ, ମଙ୍ଗେଶ୍‌ପାଡ଼ଗଡ଼ଙ୍କର, ବସନ୍ତ ବାପଠ, ଭାବେ, କରନ୍ଦିକର ପ୍ରଭୃତି ଉଲ୍ଲେଖଯୋଗ୍ୟ । ସାଂପ୍ରତିକ କବିତାର ସ୍ୱରୂପ ବିବିଧ ଓ ଏହାର ରଙ୍ଗ ଏକାଧିକ । ଯୁବକବିମାନଙ୍କ କବିତାରେ ଉଭୟ ରୋମାଣ୍ଟିସିଜ୍‌ମ ଓ ବାସ୍ତବବାଦର ସମ୍ମିଶ୍ରଣ ଦେଖାଯାଏ । ଦିଲୀପ ଚତ୍ରେ, ଅରୁଣ କୋଲ୍‌ଟ୍‌କରଙ୍କ କବିତାରେ ସାର ରିଏଲିଷ୍ଟିକ୍ ପ୍ରଭାବ ପରିଦୃଷ୍ଟ । ସୌନ୍ଦର୍ଯ୍ୟପ୍ରେମ ଏବଂ ବାସ୍ତବ ପରିସ୍ଥିତି ପ୍ରତି ତୀକ୍ଷ୍ଣ ଦୃଷ୍ଟି ବ୍ୟକ୍ତିର ଆନନ୍ଦ ନିରାନନ୍ଦ ସଂକ୍ଷେପରେ ଅଭିନୟପୂର୍ଣ୍ଣ ଜୀବନରେ ଏକ ବିଦ୍ରୂପାତ୍ମକ ଚିତ୍ର ଦେଖିବାକୁ ମିଳେ । ମାଢ଼େକରଙ୍କର କବିତା ସ୍ୱ-ଅନୁଭୂତି ପ୍ରସୂତ । ମନମୋହନଙ୍କର କବିତା କଳ୍ପନାପୂର୍ଣ୍ଣ ।

## ସମାଲୋଚନା—

ପ୍ରଥମ ଯୁଗରେ ସଂସ୍କୃତର କାବ୍ୟାଦର୍ଶ ମରାଠୀ ଲେଖକମାନଙ୍କ ଦ୍ୱାରା ଗୃହୀତ ହୋଇଥିଲା । ସେହି ଆଦର୍ଶ ସାହିତ୍ୟ ଶାସ୍ତ୍ର ନାମରେ ପରିଚିତ ଥିଲା । ଏପରି ପ୍ରାଚୀନ ସାହିତ୍ୟତତ୍ତ୍ୱ ମଧ୍ୟରେ ରସମଞ୍ଜରୀ ସମ୍ପର୍କୀୟ ଆଲୋଚନା ଅନ୍ୟତମ । କେହି ସାହିତ୍ୟିକ କାବ୍ୟତତ୍ତ୍ୱ ନିର୍ଦ୍ଦିଷ୍ଟ କରି ନ ଥିଲେ ମଧ୍ୟ ଜ୍ଞାନେଶ୍ୱର, ତୁକାରାମ, ରାମ ଦାସ ପ୍ରଭୃତି ସାର୍ଥକ କାବ୍ୟ କବିତା ଏବଂ ତାହାର ଲୋକମାନଙ୍କ ସହିତ କି ସମ୍ପର୍କ, ଏହା ଆଲୋଚନା କରିଥିଲେ । ଏହି ସମସ୍ୟା ସମ୍ପର୍କରେ ସେମାନଙ୍କର ଯେଉଁ ଚିନ୍ତା ତାହା ଉଲ୍ଲେଖଯୋଗ୍ୟ । ଏହା ପ୍ରାଚୀନ କାବ୍ୟତତ୍ତ୍ୱଠାରୁ ପୃଥକ୍ । ଠିକ୍ ଯେପରି ସେମାନଙ୍କର କବିତା ପ୍ରାଚୀନ କବିତାମାନଙ୍କଠାରୁ ସ୍ୱତନ୍ତ୍ର ଥିଲା । ଆଧୁନିକ ମହାରାଷ୍ଟ୍ରର ସୁପରିଚିତ ସମୀକ୍ଷକ ଡକ୍ଟର କେଟ୍‌କର ପ୍ରଥମେ ସନ୍ଥମାନଙ୍କର ଏହି ଦୃଷ୍ଟିକୋଣ ଉପଲବ୍ଧି କରିଥିଲେ । ପତ୍ରପତ୍ରିକାର ଆବିର୍ଭାବରେ ସମୀକ୍ଷା ସାହିତ୍ୟର

କ୍ରମଶଃ ଉନ୍ନତ ଘଟିଥିଲା । ଚିପୁଲକରଙ୍କ ସମ୍ପାଦିତ 'ନିବନ୍ଧମାଳା' ପତ୍ରିକା ମରାଠୀ ସମାଲୋଚନା ସାହିତ୍ୟରେ ଯୁଗାନ୍ତର ଆଣିଥିଲା ।

ସମାଲୋଚନା କ୍ରମେ ବଳିଷ୍ଠ ଓ ତଥ୍ୟାଶ୍ରୟୀ ହୋଇଥିଲା । ଚିପୁଲକର, ଆଗରକର, ତିଲକ ପ୍ରଭୃତିଙ୍କର ବିଭିନ୍ନ ପ୍ରବନ୍ଧ ଯୋଗୁଁ ସାହିତ୍ୟରେ ସମାଲୋଚନାର ଗୁରୁତ୍ୱ ବୃଦ୍ଧି ପାଇଥିଲା । ଏହି କ୍ଷେତ୍ରରେ ଯଥାର୍ଥ କର୍ଣ୍ଣଧାର ହେଉଛନ୍ତି କୋଲହାଟ୍କର । ସେ ସମାଲୋଚନା ସାହିତ୍ୟକୁ ପତ୍ରପତ୍ରିକାର ମାମୁଲି ପ୍ରବନ୍ଧ ସ୍ତରରୁ ଏକ ଶିକ୍ଷା ସ୍ତରକୁ ଉନ୍ନୀତ କରିଥିଲେ । ତାଙ୍କର ସମସାମୟିକ କେଲକର ମଧ୍ୟ ଏହି ବିଭାଗରେ ଲେଖନୀ ଚାଳନା କରୁଥିଲେ । ବାମନ୍ ମଲହର ଯୋଶି ହେଉଛନ୍ତି ଏହି ସମୟର ଜଣେ ପୋଖତ ସମାଲୋଚକ । ୧୯୩୦ ମସିହା ବେଳକୁ ମରାଠୀ ସାହିତ୍ୟରେ ସାହିତ୍ୟର ପ୍ରକୃତ ଉଦ୍ଦେଶ୍ୟ କ'ଣ ହେବା ଉଚିତ, ଏହାକୁ କେନ୍ଦ୍ର କରି ତୁମୁଳ ବାଦବିସମ୍ବାଦ ଦେଖାଦେଇଥିଲା । ଫାଡ଼କେ ପ୍ରଭୃତି 'କଳା ପାଇଁ କଳା' ସାହିତ୍ୟିକ ଆଦର୍ଶର ପକ୍ଷପାତୀ ଥିଲେ । ସଂସ୍କୃତ ସାହିତ୍ୟ ଶାସ୍ତ୍ରର ଅଳଙ୍କାର, ଧ୍ୱନି ଏବଂ ରସପ୍ରସଙ୍ଗ ସାହିତ୍ୟ ରଥୀମାନଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ଇଂରେଜୀ ସାହିତ୍ୟର ସମାଲୋଚନା ପଦ୍ଧତି ମରାଠୀ ସମାଲୋଚନା ସାହିତ୍ୟକୁ ପ୍ରଭାବିତ କଲା । କାବ୍ୟ, କବିତା, କ୍ଷୁଦ୍ରଗଳ୍ପ, ଉପନ୍ୟାସ, ନାଟକର ତାତ୍ତ୍ୱିକ-ବିଶ୍ଳେଷଣ କରାଗଲା । ଲଲଜୀ ପେଣ୍ଡସେ ମାର୍କସବାଦୀ ଦୃଷ୍ଟିକୋଣରୁ ମରାଠୀ ସାହିତ୍ୟର ଆଲୋଚନା କରିଥିଲେ । ପି. ଓ୍ୱାଲ ଦେଶପାଣ୍ଡେ ତାହାର ଉତ୍ତରରେ ସାହିତ୍ୟିକଙ୍କର ବ୍ୟକ୍ତିଗତ ଅନୁଭୂତ ପରିସ୍ଥିତି ଦୃଷ୍ଟିରୁ ଆଲୋଚନା କରିଥିଲେ । ପାଢ଼େ, ଡବ୍ଲ୍ୟୁ. ଏଲ୍. କୁଲ୍‌କାର୍ଣ୍ଣୀ, ମାଢ଼େକର, କ୍ଷୀରସାଗର, ଡି. କେ. କେଡ଼େକର ପ୍ରଭୃତି ଲେଖକମାନେ ସାହିତ୍ୟର ଏହି ଶାଖାକୁ ସମୃଦ୍ଧ କରିଛନ୍ତି । ସାହିତ୍ୟରେ ବ୍ୟକ୍ତିନିଷ୍ଠତା ଓ ବସ୍ତୁନିଷ୍ଠତା ସମ୍ପର୍କରେ ଆଧୁନିକ ମରାଠୀ ସମାଲୋଚକ ବେଶ୍ ଅବହିତ । ସାହିତ୍ୟର ଆଙ୍ଗିକ ପରିବର୍ତ୍ତନଶୀଳ; କିନ୍ତୁ ତାହାର ଶକ୍ତି ନିର୍ଭର କରେ ତାର ପରିବର୍ତ୍ତନଶୀଳତା ଉପରେ । ସେ ଗତାନୁଗତିକ ସମାଲୋଚନାର ପକ୍ଷପାତୀ ନୁହେଁ; କାରଣ ସେ ଜାଣେ ମାନବସମାଜର ଦୃଷ୍ଟିକୋଣ ସମ୍ପ୍ରସାରିତ, ଜାଗ୍ରତ, ଆଶ୍ୱସ୍ତ କରିବାରେ ସାହିତ୍ୟର ଶକ୍ତି ନିହିତ ।

**ଜୀବନୀ ସାହିତ୍ୟ—**

ତ୍ରୟୋଦଶ ଶତାବ୍ଦୀରୁ ମରାଠୀ ସାହିତ୍ୟରେ ଜୀବନୀ ରଚନା ଆରମ୍ଭ ହୋଇଥିଲା । 'ଲୀଳା ଚରିତ'(୧୨୪୭) ଏବଂ 'ଗୋବିନ୍ଦ ପ୍ରଭୁ ଚରିତ' ଏତାଦୃଶ ଗଦ୍ୟରଚନା । ନାମଦେବଙ୍କ ଲିଖିତ 'ସନ୍ଥ ଧ୍ୟାନେଶ୍ୱର' ଜୀବନୀ ଏହି ଶତାବ୍ଦୀର କୃତୀ । ମହାରାଷ୍ଟ୍ର ଏବଂ ଭାରତର ଅନ୍ୟାନ୍ୟ ପ୍ରାନ୍ତର ସନ୍ଥମାନଙ୍କର ଜୀବନୀ ଗଦ୍ୟରେ ପରବର୍ତ୍ତୀ କାଳରେ ବହୁ ପରିମାଣରେ ଲିଖିତ ହୋଇଥିଲା । ବ୍ରିଟିଶ ରାଜତ୍ୱର ପ୍ରଭାବରେ ଊନବିଂଶ

ଶତାବ୍ଦୀରେ ଯେଉଁ ସବୁ ଜୀବନୀ ରଚିତ ହୋଇଥିଲା, ତାହାର ମୂଳରେ ଥିଲା, ସମସାମୟିକ ସାମାଜିକ ପ୍ରେରଣା ଏବଂ ରାଜନୈତିକ ଚେତନା । ସମାଜ, ଧର୍ମ ଏବଂ ରାଜନୀତି କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ କୃତୀ ସନ୍ତାନମାନଙ୍କର ଜୀବନୀ ରଚନା ଏହି ଯୁଗୀୟ ସାହିତ୍ୟର ଏକ ବଳିଷ୍ଠ ସଙ୍କେତ । ୧୮୭୪ ରେ ବିଷ୍ଣୁଶାସ୍ତ୍ରୀଙ୍କ ପ୍ରଯୋଜିତ 'ନିବଂଧମାଳା' ଆଧୁନିକ ମରାଠୀ ଗଦ୍ୟ ତଥା ଜୀବନୀ ରଚନାର ଆଦ୍ୟ ପଦକ୍ଷେପ । ତାଙ୍କର ଲିଖିତ ଡକ୍ଟର ଜନ୍‌ସନ୍‌ଙ୍କ ଜୀବନୀ ଏକ ନୂତନ ଶୈଳୀସଂପନ୍ନ ଗଦ୍ୟ ରଚନା । 'ତୁକାରାମ' (୧୮୮୦), ମୋରପନ୍ତ (୧୮୮୨), ବାମନ ପଣ୍ଡିତ (୧୮୮୪), ଏକନାଥ (୧୮୮୩) ଶୀର୍ଷକ ଜୀବନୀ ପାଠକମାନଙ୍କ ଦ୍ୱାରା ବେଶ୍ ଆଦୃତ ହୋଇଥିଲା । ସେନାପତି ବାପୁ ଗୋଖଲେ ଚକ୍ରବର୍ତ୍ତୀ ନେପୋଲିଅନ (୧୯୧୬) ସଭରକର (୧୯୪୩) ରବୀନ୍ଦ୍ରନାଥ ଜୀବନୀ କଥା (୧୯୬୧) ମହାତ୍ମାଗାନ୍ଧୀଙ୍କ ଜୀବନୀ ଏହିପରି ସଂଖ୍ୟାଧିକ ଜୀବନୀ ମରାଠୀ ଭାଷାରେ ପରିଲକ୍ଷିତ ହୁଏ । ଜୀବନୀ ଏବଂ ଆତ୍ମଜୀବନୀ ସାହିତ୍ୟ ଏକ କଳାତ୍ମକ କୃତି ଭାବରେ ମରାଠୀ ଭାଷାରେ ଉଚ୍ଚସ୍ଥାନ ଅଧିକାର କରିପାରିଛି । ପ୍ରସିଦ୍ଧ ଔପନ୍ୟାସିକ ଏନ୍. ଏସ୍, ଫାଡ଼କେଙ୍କର ଆତ୍ମଜୀବନୀ 'ମେଜେ ଜୀବନ ଏକ କାଦମ୍ବରୀ' (୧୯୬୯) କଳା ମହିମାରେ ପ୍ରତିଷ୍ଠିତ ।

ସଂକ୍ଷେପରେ ଆଧୁନିକ ଜୀବନ ଓ ଜିଜ୍ଞାସାର ଯଥାର୍ଥ ପ୍ରତିଫଳନ ମରାଠୀ ସାହିତ୍ୟରେ ଦେଖାଯାଏ ।

# ଗୁଜୁରାଟୀ

ଓଡ଼ିଆ, ବଙ୍ଗଳା, ହିନ୍ଦୀ ଓ ମରାଠୀ ସଦୃଶ ଗୁଜୁରାଟୀ ଏକ ଆଧୁନିକ ଭାରତୀୟ ଆର୍ଯ୍ୟ ଭାଷା । ସୌରସେନୀ ପ୍ରାକୃତର ପରବର୍ତ୍ତୀ ରୂପ ହେଉଛି ଅପଭ୍ରଂଶ ଏବଂ ଦ୍ୱାଦଶ ଶତାବ୍ଦୀ ବେଳକୁ ତାହା ନିର୍ଦ୍ଦିଷ୍ଟ ରୂପରେଖ ଗ୍ରହଣ କରି ସାରିଥିଲା । ସଂସ୍କୃତରୁ ପ୍ରାକୃତ ମାଧ୍ୟମରେ ଗୁଜୁରାଟୀ ଶବ୍ଦ ପ୍ରକରଣ ଉତ୍ପତ୍ତି ଲାଭ କରିଥିଲା । ପ୍ରାୟ ପଞ୍ଚଦଶ ଶତାବ୍ଦୀ ପର୍ଯ୍ୟନ୍ତ ବର୍ତ୍ତମାନ ଗୁଜୁରାଟ ରାଜ୍ୟ ଚିହ୍ନିତ ପଶ୍ଚିମ ଭାରତରେ ଏକ ସାଧାରଣ ଭାଷା ପ୍ରଚଳିତ ହେଉଥିଲା । ସଂସ୍କୃତ ବରାବର ଅପେକ୍ଷାକୃତ ଶିକ୍ଷିତ ସମାଜ ଏବଂ ରାଜ-ଦରବାର ଦ୍ୱାରା ବ୍ୟବହୃତ ହେଉଥିଲା । ସଂସ୍କୃତରୁ ଉତ୍ପତ୍ତି ଲାଭ କରିଥିବା ସୌରସେନୀ ପ୍ରାକୃତ ପଞ୍ଚମ ଶତାବ୍ଦୀରେ ଅପଭ୍ରଂଶରେ ପରିଣତ ହେଲା । ସଂସ୍କୃତ, ପାର୍ସୀ, ଆରବୀ, ପର୍ତ୍ତୁଗୀଜ ଭାଷା ଗୁଜୁରାଟୀ ଭାଷାର ଶବ୍ଦ ଭଣ୍ଡାରକୁ ସମୃଦ୍ଧ କରିଥିଲା । ବିଭିନ୍ନ ଯୁଗର ବିକାଶ ପର୍ଯ୍ୟାୟରେ ହିଁ ଗୁଜୁରାଟୀ ଭାଷା ଓ ସାହିତ୍ୟ ଆଧୁନିକ, ଉନ୍ନତ ଏବଂ ସୁଦୃଢ଼ପ୍ରାପ୍ତ ହୋଇଅଛି । କାଥିଆୱାଡ଼, କଚ୍ଛ ପ୍ରଭୃତ ରାଜ୍ୟର ଲୋକଗୀତ ଓ ଲୋକକଥା ଯୁଗ ଯୁଗ ଧରି ଗୁଜୁରାଟର ସାଂସ୍କୃତିକ ପରିଚୟ ଦେଉଥିଲା । ବହୁ ପ୍ରାଚୀନ କାଳର ଚାରଣ କବିମାନେ ମଧ୍ୟ ସାହିତ୍ୟକୁ ବଞ୍ଚାଇ ରଖୁଥିଲେ । କେତେକ ପାର୍ସୀ ରଚନା ପ୍ରଥମେ ସଂସ୍କୃତ, ପରେ ଗୁଜୁରାଟୀ ଭାଷାରେ ଅନୂଦିତ ହେବା ବ୍ୟତୀତ ପ୍ରାଥମିକ ରଚନାମାନଙ୍କ ମଧ୍ୟରେ ଜୈନ ସନ୍ନ୍ୟାସୀମାନଙ୍କକୃତ ପଦ୍ୟସମୂହ ସ୍ମରଣୀୟ । ଦଶମ ଶତାବ୍ଦୀର ଧନପାଳଙ୍କ ନାମ ଏ କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ । ସେ ମାଉଣ୍ଟ ଆବୁ ନିକଟରେ ବାସ କରୁଥିଲେ । ବ୍ୟାକରଣଠାରୁ ଆରମ୍ଭ କରି ମୌଳିକ କାବ୍ୟ, କବିତା ପର୍ଯ୍ୟନ୍ତ ପ୍ରତ୍ୟେକ କ୍ଷେତ୍ରରେ ସେମାନଙ୍କ ଦାନ ସୁସ୍ପଷ୍ଟ । ତାଙ୍କର 'ଭବିଷ୍ୟତ କଥା' ଏକ ସାମାଜିକ ଧର୍ମଶାସ୍ତ୍ର । ପଞ୍ଚଦଶ ଶତାବ୍ଦୀ ପରେ ହିଁ ଜୈନ ସନ୍ନ୍ୟାସୀମାନଙ୍କ ଅପେକ୍ଷା ଅନ୍ୟାନ୍ୟ ଲେଖକମାନେ ଧର୍ମଶାସ୍ତ୍ର ପ୍ରତି ବିଶେଷ ଧ୍ୟାନ ଦେଇଥିଲେ ।

ଦଶମ ଶତାବ୍ଦୀରୁ ଦ୍ୱାଦଶ ଶତାବ୍ଦୀ ମଧ୍ୟରେ ଅପଭ୍ରଂଶର ପ୍ରଭାବ ହ୍ରାସ ହୋଇ ଆସିଥିଲା । ପ୍ରାଚୀନ ପରମ୍ପରାର ଅବସାନ ସହିତ ଭାଷାରେ ପ୍ରାଦେଶିକ ବୈଶିଷ୍ଟ୍ୟ ପରିସ୍ଫୁଟ ହେଉଥିଲା । ଗୁର୍ଜର ଅପଭ୍ରଂଶ ପଶ୍ଚିମ ରାଜସ୍ଥାନରେ ପରିଣତ ହେଲା ଏବଂ ଏହାହିଁ ଥିଲା ପ୍ରାଚୀନ ଗୁର୍ଜର ଭାଷା । ଏହାର ସମୟ ହେଉଛି ଦ୍ୱାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରୁ ପଞ୍ଚଦଶ ଶତାବ୍ଦୀର ପ୍ରଥମାର୍ଦ୍ଧ ପର୍ଯ୍ୟନ୍ତ । ଦରବାର ଏବଂ ଜୈନ ସନ୍ନ୍ୟାସୀମାନଙ୍କ ପ୍ରୋତ୍ସାହନରେ ଚଳିତ ସାଧାରଣ ଭାଷାରେ ଗ୍ରନ୍ଥ ଲେଖାଯାଉଥିଲା । ବିଶେଷତଃ ଜୈନ ଲେଖକମାନେ ସର୍ବସାଧାରଣଙ୍କ ଭାଷାରେ ଗ୍ରନ୍ଥ ରଚନାର ପକ୍ଷପାତୀ ଥିଲେ । ଏହି ପର୍ଯ୍ୟାୟରେ ସଂଗ୍ରାମ ସିଂହଙ୍କର ସଂସ୍କୃତ ପରିଚୟ ଶୀର୍ଷକ 'ବାଳଶିକ୍ଷା',

(୧୨୮୦), କୁଳମଣ୍ଡନଙ୍କର ଗୁଜୁରାଟୀ ଭାଷାରେ ଲିଖିତ ସଂସ୍କୃତ ବ୍ୟାକରଣ 'ମୁଗ୍ଧ ଅବବୋଧ ଓ୍ୟୈକ୍ତିକ' (୧୩୯୪) ଉଲ୍ଲେଖ କରାଯାଇ ପାରେ । ଧନପାଳ ଦଶମ ଶତାବ୍ଦୀରେ 'ଭବିଷ୍ୟତ କଥା' ରଚନା କରିଥିଲେ । ଏହା ଥିଲା 'ସମାଜଭିତ୍ତିକ ।'

ପ୍ରତ୍ୟେକ ସାହିତ୍ୟର ଅଭିବୃଦ୍ଧି ସ୍ୱତନ୍ତ୍ର ପରିବେଶ ଏବଂ ସାମାଜିକ ଭିତ୍ତି ଭୂମି ଉପରେ ସୁପ୍ରତିଷ୍ଠିତ ହୋଇଥାଏ । ଜନସମାଜର ଆଶା ଆକାଂକ୍ଷାର ପରିପୂର୍ଣ୍ଣ ପ୍ରକାଶ ହେଉଛି ସାହିତ୍ୟ । ଯେଉଁ ସାହିତ୍ୟରେ ଭକ୍ତପ୍ରାଣା ମୀରାବାଈ (୧୪୦୩-୭୦)ଙ୍କର ଭକ୍ତିପୂତ ସଙ୍ଗୀତ ମୂର୍ଚ୍ଛନା ଯୁଗ ଯୁଗ ଧରି ଅମରାକ୍ଷରରେ ଲିପିବଦ୍ଧ ହୋଇ ରହିଛି, ତାହାହିଁ ହେଉଛି ଗୁଜୁରାଟୀ ସାହିତ୍ୟ । ଏହି ଯୁଗର ଜଣେ ଶ୍ରେଷ୍ଠ ମାନବ ମହାତ୍ମା ଗାନ୍ଧୀଙ୍କର ପବିତ୍ର ପ୍ରଭାବ ଦ୍ୱାରା ସେହି ସାହିତ୍ୟ ଆହୁରି ପରିପୁଷ୍ଟ, ରସୋଜ୍ଜ୍ୱଳ ଏବଂ ଉଚ୍ଚାଙ୍ଗ ବାସ୍ତବଧର୍ମୀ ହୋଇଛି । ସେହି ପୁରାଣପ୍ରସିଦ୍ଧ ଗୁର୍ଜର ଭୂମିର ସମସ୍ତ ସଂସ୍କୃତି ଏବଂ ପରମ୍ପରା ତାର ସାହିତ୍ୟରେ ଯଥାର୍ଥ ଭାବରେ ପ୍ରତିଫଳିତ ହୋଇଛି । ୯୫୦ରୁ ୧୨୫୦ ମଧ୍ୟରେ ଅପଭ୍ରଂଶର ଶେଷ ପର୍ଯ୍ୟାୟ ଗୁଜୁରାଟୀ ଭାଷାର ଉତ୍ପତ୍ତି ଏବଂ ଗୁଜୁରାଟର ସ୍ୱତନ୍ତ୍ର ରାଜନୈତିକ ସ୍ଥିତି ସହିତ ଜଡ଼ିତ । ଗୁଜୁରାଟୀ ସାହିତ୍ୟର ଇତିହାସ ମୁଖ୍ୟତଃ ଚାରିଗୋଟି ପର୍ଯ୍ୟାୟରେ ବିଭକ୍ତ; ଯଥା—୧୨୫୦-୧୪୫୭, ୧୪୫୭-୧୬୫୦, ୧୬୫୦-୧୮୫୦ ଏବଂ ୧୮୫୦-୧୯୫୦ । ଗୁଜୁରାଟୀ ସାହିତ୍ୟର ମୂଳଭିତ୍ତି ଦଶମ ଶତାବ୍ଦୀର ମଧ୍ୟଭାଗରେ ବିଦ୍ୟୋତ୍ସାହୀ ଚାଲୁକ୍ୟ ନରପତି ମୂଳ୍‌ ରାଜାଙ୍କ ଦ୍ୱାରା ସ୍ଥାପିତ ହୋଇଥିଲା । ଜୟସିଂହ ସିଦ୍ଧରାଜ (୧୦୯୪-୧୧୪୩), କୁମାରପାଳ (୧୧୪୩-୧୧୭୦) ଏବଂ ଭାଗେଲା (୧୨୦୦-୧୨୫୦) ପ୍ରଭୃତି ଶାସକଙ୍କ ନେତୃତ୍ୱରେ ଗୁଜୁରାଟ ଏକ ସ୍ୱତନ୍ତ୍ର କ୍ଷମତାଶୀଳ ରାଷ୍ଟ୍ରରେ ପରିଗଣିତ ହୋଇଥିଲା । ସେ ଜଣେ ନିଷ୍ଠାପର ଜୈନ ଥିଲେ; ମାତ୍ର ଆର୍ଯ୍ୟ ସଂସ୍କୃତି ପ୍ରତି ବରାବର ଅନୁଗତ ଥିଲେ । ତାଙ୍କର ଏବଂ ତାଙ୍କ ଶିଷ୍ୟମାନଙ୍କର ଅବଦାନ ଯୋଗୁ ଗୁଜୁରାଟୀ ସାହିତ୍ୟ ସମୃଦ୍ଧ ହୋଇଥିଲା । ସେହି ସମୟରୁହିଁ ଗୁର୍ଜର ଭୂମିର କଳା, ସାହିତ୍ୟ ଏବଂ ଚିତ୍ରବିଦ୍ୟା ପ୍ରଭୃତିର ବିକାଶପର୍ବ ଆରମ୍ଭ ହେଲା । ଅପଭ୍ରଂଶ ବ୍ୟାକରଣ ସିଦ୍ଧ ହେମଚନ୍ଦ୍ର ପ୍ରଣେତା ହେମଚନ୍ଦ୍ର (୧୦୮୯-୧୧୭୩) ଶିକ୍ଷା ଓ ସଂସ୍କୃତିର ପୃଷ୍ଠପୋଷକ ଥିଲେ । ବ୍ୟାକରଣ ସୂତ୍ର ବ୍ୟାଖ୍ୟାମୂଳକ ତାଙ୍କର ଅସଂଖ୍ୟାଧିକ ଭାବୋଦ୍ଦୀପକ ପଦ୍ୟ, ତତ୍କାଳୀନ ସମାଜର ଚିତ୍ର ତଥା ପାଣ୍ଡିତ୍ୟ ବୀରତ୍ୱର ସୂଚନା ଦେଇଥାଏ । ହେମଚନ୍ଦ୍ରଙ୍କର ପଦ୍ୟସମୂହର ବର୍ଣ୍ଣନାପଟୁତା ଓ କଳ୍ପନାସୌନ୍ଦର୍ଯ୍ୟ ମଧ୍ୟ ଉଲ୍ଲେଖଯୋଗ୍ୟ । ପ୍ରେମ ଓ ବୀରତ୍ୱ ତାଙ୍କ ରଚନାର ମୁଖ୍ୟ ଆବେଦନ । ହେମଚନ୍ଦ୍ରଙ୍କ ବର୍ଣ୍ଣନାରେ ପ୍ରେମିକାର ଯେଉଁ ସ୍ୱରୂପ ପ୍ରତିଫଳିତ, ତାହା ଏକାନ୍ତ ଭାବରେ ସ୍ୱାଦ୍ୟ । ପ୍ରେମିକା କହୁଛି, "ମୋର ପ୍ରେମିକ ମୋ ପାଖରେ ଯେତେବେଳେ ଥାଆନ୍ତି, ସେତେବେଳେ ମୁଁ ଶୋଇପାରେ ନାହିଁ । ପ୍ରେମିକ ଯେତେବେଳେ ମୋ ପାଖରୁ ଚାଲିଯାଆନ୍ତି, ସେତେବେଳେ ମଧ୍ୟ ମୁଁ ଶୋଇପାରେ ନାହିଁ ।"

ଶୈବ ଧର୍ମର ଏବଂ ପରେ ଜୈନ ଧର୍ମର ପ୍ରଭାବ ଗୁଜୁରାଟୀ ସାହିତ୍ୟରେ କମ୍ ପ୍ରତିବିମ୍ବିତ ହୋଇ ନଥିଲା । ଉଭୟ ଶଙ୍କର ଏବଂ କେଶବଙ୍କର ଉପାସନା ଅନୁସୃତ ହେଉଥିଲା । ରାଜା କୁମାରପାଳଙ୍କ ସମୟରେ ଲିଖିତ ସାହିତ୍ୟ ଯୁଦ୍ଧଭୂମିର ବୀରତ୍ୱ ବର୍ଣ୍ଣନାରେ ପୂର୍ଣ୍ଣ ଥିଲା । ଏହି ସମୟର ସାମାଜିକ ଆଇନ ପ୍ରଣୟନ ଗୁଜୁରାଟର ଜାତୀୟ ଜୀବନ ଉପରେ ଯଥେଷ୍ଟ ପ୍ରଭାବ ପକାଇଥିଲା । ହେମଚନ୍ଦ୍ରଙ୍କ 'ସିଦ୍ଧ ହେମଚନ୍ଦ୍ର', ରାମଚନ୍ଦ୍ର (୧୦୯୩-୧୧୭୪)ଙ୍କ ନାଟ୍ୟ ଦର୍ପଣ ମୌଳିକ କୃତି ରୂପେ ଉଲ୍ଲେଖଯୋଗ୍ୟ । ତାଙ୍କ ମତରେ କରୁଣ ଏବଂ ଆହ୍ଲାଦହିଁ ନାଟକର ପ୍ରଧାନ ରସ । ରାଜନୀତି ଏବଂ ବିଦ୍ୟାନୁରାଗୀ ନରପତି ବସ୍ତୁପାଳ (୧୧୮୦-୧୨୫୦)ଙ୍କ ପୃଷ୍ଠପୋଷକତାରେ ତଦାନୀନ୍ତନ ଲିଖିତ ରଚନାମାନଙ୍କରେ ମହାକାବ୍ୟର ଆଦର୍ଶ ଓ ପରମ୍ପରା ଅନୁସୃତ ହେଉଥିଲା । ନିଜେ ବସ୍ତୁପାଳ ମଧ୍ୟ ଷୋଡ଼ଶ ସର୍ଗବିଶିଷ୍ଟ 'ନର ନାରାୟଣାନନ୍ଦ' ମହାକାବ୍ୟ ରଚନା କରିଥିଲେ । ହେମଚନ୍ଦ୍ର ଜଣେ ପ୍ରତିଭାଶାଳୀ ଜୈନ ପଣ୍ଡିତ ଥିଲେ । ଗୁଜୁରାଟର ନରପତି ହେମଚନ୍ଦ୍ରଙ୍କ ବ୍ୟାକରଣକୁ ହସ୍ତୀ ପୃଷ୍ଠରେ ରଖି ଏକ ଶୋଭାଯାତ୍ରାରେ ନେଉଥିଲେ ଏବଂ ତାର ପ୍ରତିଲିପି ଭାରତୀୟ ନରପତିମାନଙ୍କୁ ପ୍ରେରଣ କରିଥିଲେ । ସାହିତ୍ୟର ପ୍ରତ୍ୟେକ ବିଭାଗରେ ତାଙ୍କର ସ୍ୱାକ୍ଷର ମୁଦ୍ରିତ ହୋଇଥିଲା । ଅପଭ୍ରଂଶ ଗୁଜୁରାଟର ଏକ ସାହିତ୍ୟିକ ବୈଶିଷ୍ଟ୍ୟ ଥିଲା ଏବଂ ଏହାର ସ୍ୱରୂପ କଥିତ ଭାଷାର ଅନୁବର୍ତ୍ତୀ ଥିଲା । ପରବର୍ତ୍ତୀକାଳରେ ଏହା ବିଭିନ୍ନ ଆଂଚଳିକ ଭାଷାରେ ରୂପାନ୍ତରିତ ହେଲା । ୧୨୯୭ ମସିହାରେ ଉଲୁଗ ଖାଁଙ୍କ ଦ୍ୱାରା ସୋମନାଥ ମନ୍ଦିର ଆକ୍ରମଣ ଓ ଲୁଣ୍ଠନ ଗୁଜୁରାଟର ସାହିତ୍ୟ ଏବଂ ସଂସ୍କୃତିର ଇତିହାସରେ ଏକ କରୁଣ ଅଧ୍ୟାୟ । ଆଲାଉଦ୍ଦୀନଙ୍କ ଭ୍ରାତା ଗୁଜୁରାଟ ଆକ୍ରମଣ କରି ତାହାର ବହୁ ରାଜ୍ୟ ଓ ସହର ଧ୍ୱଂସ କରିଥିଲେ । ରାଜନୈତିକ ଉତ୍ଥାନ ପତନ ମଧ୍ୟରେ ସାହିତ୍ୟ ଚର୍ଚ୍ଚା ପ୍ରତିହତ ହେଲା । ସାମାଜିକ ଅଶାନ୍ତି, ଅସ୍ଥିରତା ଏବଂ ସମଗ୍ର ରାଜ୍ୟରେ ଏକ ଅନୈଶ୍ଚିତ୍ୟ ଭାବ ଏହି ପାରଂପରିକ ବିଦ୍ୟାଚର୍ଚ୍ଚାର ଅବନତି ଘଟାଇଲା । ୧୪୧୧ ମସିହାରେ ସ୍ୱତନ୍ତ୍ର ସୁଲତାନ ରୂପେ ଅହମଦ ସାହଙ୍କ ଆବିର୍ଭାବ ପର୍ଯ୍ୟନ୍ତ ଏହି ଅବସ୍ଥା ଲାଗି ରହିଥିଲା ।

ସଂସ୍କୃତ ବ୍ୟାକରଣ ପୁସ୍ତକରେ ଗୁଜୁରାଟୀ ଭାଷାର ପ୍ରାଥମିକ ରୂପ ଦେଖିବାକୁ ମିଳେ । ପ୍ରାଚୀନ ପଶ୍ଚିମ ରାଜସ୍ଥାନୀ ଗୁଜୁରାଟୀ ଭାଷା ପରବର୍ତ୍ତୀ ଅପଭ୍ରଂଶରୁ ଏକ ନିର୍ଦ୍ଦିଷ୍ଟ ରୂପ ଧାରଣ କରିଥିଲା । ବୀରତ୍ୱପୂର୍ଣ୍ଣ ସମରଗାଥା, ଐତିହାସିକ ବିବରଣୀ ସାହିତ୍ୟରେ ବିଶେଷ ସ୍ଥାନ ଲାଭ କରୁଥିଲା । ଫଗୁ, ବାରମାସୀ ପ୍ରଭୃତି କ୍ଷୁଦ୍ର ଗୀତିକବିତା, ଜାତୀୟ ରାସ ଅପଭ୍ରଂଶ ସାହିତ୍ୟରେ ଏକ ପ୍ରକାର ଲୋକପ୍ରିୟ ଐତିହାସିକ ରଚନା । ଏହା ସାଧାରଣତଃ ଗାଥାଧର୍ମୀ ଏବଂ ଲୋକନୃତ୍ୟରୁ ଏହାର ଉତ୍ପତ୍ତି । ପରେ ଏହା ରୂପକ ନାମ ଧାରଣ କରିଥିଲା । ଗୁଜୁରାଟ ଇତିହାସ ସଂକଳନରେ ଏହି ଜାତୀୟ ରଚନାର ଉପାଦେୟତା ସ୍ୱୀକାର୍ଯ୍ୟ । ସେଥିରେ ମୁସଲମାନମାନଙ୍କ ବିରୋଧରେ ଜନସାଧାରଣଙ୍କ

ପ୍ରତିରୋଧ ଉଚ୍ଛ୍ୱାସ, ସାମାଜିକ ପାରିବାରିକ ଜୀବନର ବିରହ ମିଳନାନ୍ତକ କରୁଣ ଛବି ପ୍ରତିଧ୍ୱନିତ ହୋଇଥିଲା । ପଦ୍ମନାଭଙ୍କ (୧୪୫୬) 'କାହ୍ନାଦାଦେ ପ୍ରବନ୍ଧ' ବୀରତ୍ୱପୂର୍ଣ୍ଣ ଏକ ଶ୍ରେଷ୍ଠ ପ୍ରାଚୀନ କାବ୍ୟକୃତି । ମଦମତ୍ତ ଉଲୁଗ ଖାଁ କାହ୍ନାଦାଦେଙ୍କୁ ଶାସ୍ତିଦେବା ପାଇଁ ବାରମ୍ବାର ଆକ୍ରମଣ କରିଥିଲା । ପ୍ରଥମେ ସେ ପରାସ୍ତ ହେଲେ । ମାତ୍ର ପରେ ରାଜପୁତସୈନ୍ୟ କ୍ଳାନ୍ତ ହୋଇ ପଡ଼ିଲେ । କାହ୍ନାଦାଦେ ଏବଂ ତାଙ୍କ ବୀର ପୁତ୍ର ନିହତ ହେଲେ । ଏହି କାବ୍ୟରେ ଜନ୍ମଭୂମିର ସ୍ୱାଧୀନତା ରକ୍ଷା କରିବା ପାଇଁ ମୁସଲମାନ ଆକ୍ରମଣକାରୀମାନଙ୍କ ବିରୋଧରେ ଗୁଜୁରାଟ ଅଧିବାସୀଙ୍କର ଯେଉଁ ପ୍ରାଣମୂର୍ଚ୍ଛା ସଂଗ୍ରାମ, ତାହାହିଁ ବର୍ଣ୍ଣିତ । କାହ୍ନାଦାଦେଙ୍କ ସ୍ୱଦେଶ ପ୍ରୀତି, ତାଙ୍କ ପୁତ୍ର ବିରମଙ୍କ ଦୁର୍ଦ୍ଧର୍ଷ ବୀରତ୍ୱ, ଆଲାଉଦ୍ଦୀନଙ୍କ କନ୍ୟା ଫିରୋଜାଙ୍କ ଆତ୍ମହତ୍ୟା ଏହି ବର୍ଣ୍ଣନାତ୍ମକ କାବ୍ୟର ପ୍ରଧାନ ଉପଜୀବ୍ୟ । ଶାଲୀଭଦ୍ର (୧୧୮୫)ଙ୍କ ଲିଖିତ 'ଭରତ ବାହୁବଳୀ ରାସ' ଗୁଜୁରାଟୀ ଭାଷାରେ ପ୍ରଥମ ଲିଖିତ ରଚନା ବୋଲି ବିବେଚିତ ହୋଇଥାଏ ।

ବିଜୟସେନଙ୍କ ରେବନ୍ତଗିରି ରାସରେ ବସ୍ତୁପାଳଙ୍କ ଗିରିନାରକୁ ତୀର୍ଥଯାତ୍ରା ବର୍ଣ୍ଣିତ । ଏହି ରଚନା ଏବଂ ବିନୟ ପ୍ରଭ (୧୩୫୬)ଙ୍କ 'ଗୌତମ ସ୍ୱାମୀ' ରାସରେ ପ୍ରକୃତିର ଅପୂର୍ବ ବର୍ଣ୍ଣନା ଦେଖାଯାଏ । 'ଫଗୁ' ଏକ ଅପେକ୍ଷାକୃତ କ୍ଷୁଦ୍ର ଛନ୍ଦୋବଦ୍ଧ ଗୀତିକବିତା । ପ୍ରକୃତିର ପୃଷ୍ଠଭୂମିରେ ପ୍ରେମ ବିରହ ବିଚ୍ଛେଦକୁ ଏହା ବର୍ଣ୍ଣନା କରିଥାଏ ଏବଂ ଏକ ସୁଦୂର ଅତୀତର ସୁଖ ସମୃଦ୍ଧିମୟ ସାମାଜିକ ଜୀବନର ସ୍ମୃତିରେ ଏହା ପରିପୂର୍ଣ୍ଣ । ଫଗୁର ନାୟକ ପୌରାଣିକ କଥାବସ୍ତୁରୁ ଗୃହୀତ । ବସନ୍ତର ପ୍ରେମୋଚ୍ଛ୍ୱାସ ସଂଗୀତର ମାଦକତା, ପ୍ରକୃତିର ବିଳାସ, ବିରହିଣୀମାନଙ୍କ ବେଦନା ଏବଂ ସ୍ୱାମୀ ସୋହାଗିନୀମାନଙ୍କର ଆମୋଦ ପ୍ରମୋଦ ଏହି ରଚନାରେ ସାଧାରଣତଃ ସ୍ଥାନ ପାଇ-ଥାଏ । ନେମିନାଥ ଏବଂ ରାଜୁଲଙ୍କର ପ୍ରେମ ଫଗୁ ରଚନାର କାହାଣୀ । ଜିନପଦ୍ମଙ୍କର ସ୍ଥୂଳଭଦ୍ର ଫଗୁ (୧୩୩୪), ରାଜଶେଖରଙ୍କ 'ନେମିନାଥ ଫଗୁ' (୧୩୦୪) ସୋମସୁନ୍ଦରଙ୍କ 'ରଙ୍ଗ ସାଗର ନେମିନାଥ ଫଗୁ' (୧୪୦୦) ପ୍ରଭୃତି ଏହି ସମୟରେ ଲେଖା ଯାଇଥିଲା । ଯଥାର୍ଥରେ ଫଗୁ ସର୍ବାପେକ୍ଷା ମିଷ୍ଟ ମାଧୁର୍ଯ୍ୟପୂର୍ଣ୍ଣ ସାଙ୍ଗୀତିକ ରଚନା । ବିନୟ ଚନ୍ଦ୍ରଙ୍କ ଲିଖିତ ନେମିନାଥ ଚତୁଷ୍ପଦିକା (୧୨୬୯) ଏହି ଶ୍ରେଣୀର ଉତ୍କୃଷ୍ଟ ରଚନା । ଜନୈକ ଅଜ୍ଞାତ କବିଙ୍କ ଲିଖିତ 'ବସନ୍ତ ବିଳାସ'ରେ (ଚତୁର୍ଦ୍ଦଶ ଶତାବ୍ଦୀ) ନାୟିକାର ଉତ୍କଣ୍ଠା ରସୋତ୍ତୀର୍ଣ୍ଣ ଭାଷାରେ ପ୍ରତିଫଳିତ । ଗୁଣାଢ୍ୟ, ସୋମଦେବ ଓ କ୍ଷେମେନ୍ଦ୍ରଙ୍କ ପ୍ରାଚୀନ ପ୍ରାକୃତ ଗଳ୍ପ ସମୂହ ଏହି ଯୁଗର ଲେଖକମାନଙ୍କୁ ପ୍ରେରଣା ଦେଇଥିଲା । ଏତାଦୃଶ କାହାଣୀ ମଧ୍ୟରେ ହୀରାନନ୍ଦଙ୍କର 'ବିଦ୍ୟାବିଳାସ' (୧୪୬୯), ଭୀମଙ୍କର 'ସଦୟବତ୍ସ' କଥା (୧୪୧୦) ଉଲ୍ଲେଖଯୋଗ୍ୟ ।

ଜୈନ ସାଧୁମାନେ ଯେପରି ଧର୍ମନିଷ୍ଠ ଥିଲେ, ସେହିପରି ମଧ୍ୟ ସାହିତ୍ୟାନୁରାଗୀ ଥିଲେ । ସରଳ, ଚିତ୍ତାକର୍ଷକ ଏବଂ ଉପଦେଶାତ୍ମକ କ୍ଷୁଦ୍ର କ୍ଷୁଦ୍ର ଧର୍ମ କଥାମାନଙ୍କ

ସାହାଯ୍ୟରେ ସେମାନେ ଧର୍ମ ପ୍ରଚାର କରୁଥିଲେ । ଚତୁର୍ଦ୍ଦଶ ଶତାବ୍ଦୀରେ ତରୁଣପ୍ରଭ ଏବଂ ସୋମସୁନ୍ଦରୀଙ୍କ ଦ୍ୱାରାହିଁ ସରଳ ଏବଂ ପ୍ରାଞ୍ଜଳ ଗଦ୍ୟରଚନା ଆରମ୍ଭ ହୋଇଥିଲା । ସେମାନଙ୍କ ଦ୍ୱାରା ଲିଖିତ ଗଳ୍ପମାନଙ୍କରେ ଏହି ରୀତି ସୁସ୍ପଷ୍ଟ । ପଂଚଦଶ ଶତାବ୍ଦୀରେ ମାଣିକ୍ୟ ଚନ୍ଦ୍ର (୧୪୨୨)ଙ୍କ ଲିଖିତ 'ପୃଥ୍ୱୀ ଚନ୍ଦ୍ର ଚରିତ' ଏକ ଆଦର୍ଶ କାବ୍ୟଧର୍ମୀ ଗଦ୍ୟରଚନା । ଏହାର ଭିତ୍ତି ଧର୍ମୀୟ । ପୈଥାନର ରାଜା ପୃଥ୍ୱୀଚନ୍ଦ୍ର କୋଶଳ ରାଜକନ୍ୟା ରତ୍ନମଂଜରୀଙ୍କ ଅପୂର୍ବ ରୂପ ଦର୍ଶନରେ ଆକୃଷ୍ଟ ହୋଇଥିଲେ । ସେ ଅବଶ୍ୟ ତାଙ୍କୁ ସ୍ୱପ୍ନରେ ଦେଖିଥିଲେ । ସେ ସ୍ୱୟଂବର ସଭାରେ ଯୋଗ ଦେଲେ, ରତ୍ନମଞ୍ଜରୀଙ୍କୁ ବିବାହ କଲେ । ଶେଷରେ ସେମାନଙ୍କ ବିବାହ ସମ୍ପାଦିତ ହେଲା ଏବଂ ସେମାନଙ୍କ ଦାମ୍ପତ୍ୟ ଜୀବନ ସର୍ବବିଧ ସୁଖ ସଂଭୋଗରେ ପୂର୍ଣ୍ଣ ହୋଇଥିଲା । ଧର୍ମ କଥାର ଚିରାଚରିତ ପ୍ରଥାନୁସାରେ ନାୟକ ଜୈନଧର୍ମରେ ଦୀକ୍ଷିତ ହୋଇଥିଲେ । ପଞ୍ଚଦଶ ଶତାବ୍ଦୀର ଏହାହିଁ ହେଉଛି ଗୁଜୁରାଟୀ ସାହିତ୍ୟରେ ଏକ ଶକ୍ତିଶାଳୀ ପଦ୍ୟାତ୍ମକ ଗଦ୍ୟ ରଚନା । ଏହି ଗଦ୍ୟ ରଚନାରେ ତଦାନୀନ୍ତନ ଦରବାର ଚିତ୍ର ମଧ୍ୟ ପ୍ରଦତ୍ତ ହୋଇଅଛି ।

୧୪୫୭ରୁ ୧୫୫୭ ମଧ୍ୟରେ ଗୁଜୁରାଟର ରାଜନୈତିକ ଆକାଶ ଅନ୍ଧକାରଚ୍ଛନ୍ନ ହୋଇଥିଲା । ମାତ୍ର ସଂସ୍କୃତି ଏବଂ ସାହିତ୍ୟ କ୍ଷେତ୍ରରେ ଏହା ଥିଲା ଏକ ସ୍ମରଣୀୟ ଯୁଗ । ରାଜସ୍ଥାନୀ ଗଣ୍ଡିରୁ ମୁକ୍ତ ହୋଇ ଗୁଜୁରାଟୀ ଭାଷା ସ୍ୱତନ୍ତ୍ର ରୂପ ପ୍ରାପ୍ତ ହୋଇଥିଲା । ପ୍ରାଚୀନ ଅପଭ୍ରଂଶର ମୂଳ ଭିତ୍ତି ରକ୍ଷା କରି ଏହା ଏକ ବର୍ଦ୍ଧିଷ୍ଣୁ ଭାଷାରେ ପରିଣତ ହେଲା । ଜୈନଧର୍ମର ପ୍ରଭାବ ହ୍ରାସ ହୋଇ ହିନ୍ଦୁ ଧର୍ମର ପ୍ରାଧାନ୍ୟ ସ୍ଥାପିତ ହେଲା । ପୁରାଣ ଏବଂ ବିଭିନ୍ନ ଭକ୍ତିରସାତ୍ମକ ରଚନା ହେଲା ସାହିତ୍ୟର ପ୍ରେରଣା । ତେଣୁ ଭାଗବତ, ରାମାୟଣ, ମହାଭାରତ ସମ୍ପର୍କିତ ଗଳ୍ପ ସାହିତ୍ୟରେ ଶୀର୍ଷ ସ୍ଥାନ ଅଧିକାର କଲା । ଧର୍ମ ଓ ସାହିତ୍ୟର ସମନ୍ୱୟରେ ଯେପରି ସାହିତ୍ୟିକ ଓ ସାଂସ୍କୃତିକ ଚେତନାର ଏକ ନୂତନ ଅଧ୍ୟାୟ ସୃଷ୍ଟି ହେଲା । ନରସିଂହ ମେହେତା (୧୪୧୪-୧୪୮୦), ମୀରାବାଈ (୧୪୯୯-୧୫୪୭), ଆଖୋ (୧୬୧୫-୧୬୭୫), ପ୍ରେମାନନ୍ଦ (୧୬୩୬-୧୭୩୪) ପ୍ରଭୃତି ଏହି ଯୁଗର ଭକ୍ତିମାର୍ଗ ପ୍ରଦର୍ଶକ ବିଶିଷ୍ଟକବି । ଭକ୍ତକବି ନରସିଂହ ମେହେତା ଗୁଜୁରାଟୀ ଭାଷାକୁ ଏକ କାବ୍ୟିକ ମର୍ଯ୍ୟାଦାରେ ଭୂଷିତ କରିଥିଲେ । ନରସିଂହଙ୍କର ଭକ୍ତି ଏବଂ ପ୍ରେମ ଦର୍ଶନ ସମ୍ବଳିତ ମଧୁର ପଦ୍ୟାବଳୀ ମନୁଷ୍ୟର ଗଭୀର ଅନ୍ତରାତ୍ମା ସମାଜର ଅନୁଭୂତି ସହିତ ସମନ୍ୱିତ । ତାଙ୍କର ଅସାଧାରଣ ବର୍ଣ୍ଣନା ଶକ୍ତି, ଅନୁଭୂତିର ଗଭୀରତା ସ୍ୱୀକାର୍ଯ୍ୟ । ଗୁଜୁରାଟର ଆଦିକବି ନ ହେଲେ ସୁଦ୍ଧା ସେ ଜଣେ ଅପ୍ରତିଦ୍ୱନ୍ଦ୍ୱୀ ସାହିତ୍ୟ-ସ୍ରଷ୍ଟା ଥିଲେ । ପଞ୍ଚଦଶ ଶତାବ୍ଦୀରୁ ଉନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଭଜନଧର୍ମୀ ଆଖ୍ୟାନ ରଚନା ବିଶେଷ ପ୍ରଚଳିତ ଓ ଆଦୃତ ହୋଇଥିଲା । ଉଭୟ ତତ୍ତ୍ୱ ପ୍ରଚାର ଓ ସାହିତ୍ୟିକ ରସାସ୍ୱାଦନ ଏହାର ଲକ୍ଷ୍ୟ ଥିଲା । 'ଗୋବିନ୍ଦ ଗମନ', 'ସୁରାଟ ସଂଗ୍ରାମ' ଏବଂ 'ସୁଦାମ ଚରିତ' ପ୍ରଭୃତି କୃତି ନରସିଂହଙ୍କର କାବ୍ୟ ମୌଳିକତା, ପ୍ରକୃତି ପ୍ରେମ, ଛନ୍ଦ ଯୋଜନା,

ଭାଷାଜ୍ଞାନ, ଶ୍ରୀକୃଷ୍ଣଙ୍କର ବାଲ୍ୟଲୀଳା ବର୍ଣ୍ଣନା ତାଙ୍କ ଲେଖନୀରେ ଅତ୍ୟନ୍ତ ବାସ୍ତବ ହୋଇପାରିଥିଲା । ଜାତିଧର୍ମ ନିର୍ବିଶେଷରେ ନରସିଂହ ଭକ୍ତମାନଙ୍କ ସହିତ ସଖ୍ୟ ସ୍ଥାପନ କରୁଥିଲେ ଏବଂ ହରିଜନମାନଙ୍କ ସହିତ ତାଙ୍କର ସଂପୃକ୍ତି ସେହି ସମୟର ଏକ ପ୍ରଧାନ ଘଟଣା । କୃଷ୍ଣଲୀଳା ବର୍ଣ୍ଣନାରେ ସେ ନିଜକୁ ଗୋପୀତୁଲ୍ୟ ମନେକରୁଥିଲେ । ତାଙ୍କର ଏହି ଭାବପ୍ରବଣତା ପରେ ଗଭୀର ଦର୍ଶନରେ ପରିଣତ ହୋଇଥିଲା । ରାଜକୁମାରୀ ଭକ୍ତପ୍ରାଣା ମୀରାବାଈ (୧୪୯୯-୧୫୪୭) ଭାରତବର୍ଷର ଜଣେ ଶ୍ରେଷ୍ଠ ନାରୀକବି ରୂପରେ ସୁପରିଚିତା । ତାଙ୍କର ଭକ୍ତିରସାତ୍ମକ ଭଜନାବଳୀ ଆଜି ସାରା ଭାରତରେ ଆଦୃତ । ଉପାସ୍ୟ ଦେବତା ନିକଟରେ ତାଙ୍କର ଆତ୍ମସମର୍ପଣ ଅତ୍ୟନ୍ତ ପ୍ରୀତିପ୍ରଦ ଏବଂ ତାହା ପ୍ରଣୟିନୀ ନିକଟରେ ପ୍ରଣୟିନୀର ଆତ୍ମୋତ୍ସର୍ଗ ତୁଲ୍ୟ ଅପୂର୍ବ । ତାଙ୍କର ସଂଖ୍ୟାଧିକ ସଙ୍ଗୀତରେ ହୃଦୟର ଗଭୀର ପ୍ରେମହିଁ ପ୍ରତିବିମ୍ବିତ । ମଣିଷ ଇତିହାସରେ ମୀରାବାଈ ହିଁ ଏକ ପ୍ରତିଭାଶାଳିନୀ କବି ରୂପେ ପରିଗଣିତ । ତାଙ୍କର କୃଷ୍ଣ ଭକ୍ତି ବାସ୍ତବିକ ଅନନ୍ୟ-ସାଧାରଣ ଏବଂ ସାର୍ବଜନୀନ ପ୍ରେମର ପ୍ରତୀକ । ଯୌନଭାବ ଏବଂ ବୈଷୟିକ ଭୋଗବିଳାସ ତାଙ୍କ ଲେଖନୀରେ ଏକ ଶ୍ରେଷ୍ଠ ଦାର୍ଶନିକ ରହସ୍ୟବାଦରେ ପରିଣତ ହୋଇଥିଲା । ଏହି ଭକ୍ତିପ୍ରଧାନ ଯୁଗର ଅନ୍ୟାନ୍ୟ କବିମାନଙ୍କ ମଧ୍ୟରେ ହରିଲୀଳା ଷୋଡ଼ ସକଳ (୧୪୮୫)ର ରଚୟିତା ଭୀମ ଏବଂ କୃଷ୍ଣଲୀଳା କାବ୍ୟ (୧୪୭୩)ର ରଚୟିତା କେଶବ ଦାସ, ଭାଲନ (୧୪୩୪-୧୫୧୪), ନାକର (୧୫୦୦-୧୫୭୫), ବିଷ୍ଣୁ ଦାସ ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ । ଭାଲନାଙ୍କର ଆଧ୍ୟାତ୍ମିକ ଉଚ୍ଛ୍ୱାସ ଭକ୍ତିପ୍ରଭାବିତ । ତାଙ୍କ ରଚନାରେ ରାମ, କୃଷ୍ଣ ଏବଂ ଶିବଙ୍କର ଉପାସନା ଦେଖିବାକୁ ମିଳେ । ତାଙ୍କର ବିଶିଷ୍ଟ କୃତି କାଦମ୍ବରୀ, ଦଶମସ୍କନ୍ଧ ନଳ ଆଖ୍ୟାନ ରାମବାଲା ଚରିତରେ ଏକ ବଳିଷ୍ଠ କାବ୍ୟ ପରମ୍ପରା ଓ ବର୍ଣ୍ଣନାଶୈଳୀ ପରିଲକ୍ଷିତ । ବାଣଙ୍କର କାଦମ୍ବରୀର ପଦ୍ୟାନୁରୂପ ହେଉଛି ଭାଲନାଙ୍କ କାଦମ୍ବରୀ । ଆଖ୍ୟାନର ମର୍ଯ୍ୟାଦା ଏବଂ ବୈଶିଷ୍ଟ୍ୟ ଭାଲନ ନିଜ ରଚନାରେ ପ୍ରତିଫଳିତ କରିପାରିଥିଲେ । ଏହି ଆଖ୍ୟାନ-ସାହିତ୍ୟର ଅଧିକ ଉନ୍ନତି କବି ନାକର ଏବଂ ବିଷ୍ଣୁଦାସ ସାଧନ କରିଥିଲେ । ସେମାନେ ସଂସ୍କୃତ ରାମାୟଣ, ମହାଭାରତ, ପୁରାଣ ଏବଂ ଭାଗବତର ପୃଷ୍ଠଭୂମିରେ ସାଂପ୍ରତିକ ସାମାଜିକ ପରିବେଶକୁ ଲକ୍ଷ୍ୟ କରି ରଚନା ସମୂହ ଲେଖିଥିଲେ । ସେମାନଙ୍କ ରଚନାରେ ଭାଲନାଙ୍କ କାବ୍ୟାଦର୍ଶ ପ୍ରତିଫଳିତ ହୋଇଥିଲା ।

'ରାସ' ସାହିତ୍ୟ ମଧ୍ୟ ଗୁଜୁରାଟୀ ସାହିତ୍ୟରେ ଏକ ସ୍ୱତନ୍ତ୍ର ଦିଗ । ଜୈନ ଲେଖକମାନେ ରାସ 'ପରମ୍ପରା' ଅବ୍ୟାହତ ରଖିଥିଲେ । ନୟା ସୁନ୍ଦରଙ୍କର ରୂପଚନ୍ଦ୍ର କୁମାର ରାସ, ନଳଦମୟନ୍ତୀ ରାସ (୧୭୦୧), ଶିବ ବ୍ୟାସମୟଙ୍କର 'ବିମଳା ପ୍ରବନ୍ଧ' (୧୫୧୨) ଉଲ୍ଲେଖଯୋଗ୍ୟ ।

'ଚିତ୍ତବିଚାର ସମ୍ବାଦ', 'ଅନୁଭବ ବିନ୍ଦୁ', 'ଆଖୋଗୀତା' ପ୍ରଭୃତି ବେଦାନ୍ତଦର୍ଶନ ଆଧାରିତ ଦାର୍ଶନିକ ରଚନାର ପ୍ରଣେତା ଆଖୋ (୧୫୫୧-୧୬୫୬) ଗୁଜୁରାଟୀ ସାହିତ୍ୟରେ ଏକ ବିଶିଷ୍ଟ ବେଦାନ୍ତିକ କବି । ସେ ଅହମଦାବାଦର ଅଧିବାସୀ ସ୍ୱର୍ଣ୍ଣକାର ଥିଲେ । ବହୁ ଗୁରୁ ଏବଂ ସନ୍ନ୍ୟାସୀ ଶିକ୍ଷାରେ ସେ ଅନୁପ୍ରାଣିତ ହୋଇଥିଲେ । ବହୁ ଭ୍ରମଣ ଏବଂ ଅଧ୍ୟୟନ ପିପାସା ତାଙ୍କ ପ୍ରତିଭାର ବିକାଶ ପାଇଁ ସହାୟତା କରିଥିଲା । ସମାଜର ଦୁର୍ନୀତି, କଳୁଷ ପ୍ରତି ସେ ଯେତିକି ଅବହିତ ଥିଲେ, ସେହି ପରିମାଣରେ ଉଚ୍ଚାଙ୍ଗ ବେଦାନ୍ତ ଦର୍ଶନ ପ୍ରତି ମଧ୍ୟ ଆକୃଷ୍ଟ ଥିଲେ । ବେଦାନ୍ତର ଗଭୀର ଦର୍ଶନ ସେ ଉପଲବ୍ଧି କରିଥିଲେ ଏବଂ ତାହାକୁ ସାଧାରଣ ବୋଧଗମ୍ୟ ଭାଷାରେ ପ୍ରକାଶ କରିଥିଲେ ।

ଜାତିରେ ସେ ସ୍ୱର୍ଣ୍ଣକାର ଥିଲେ । ମାତ୍ର ଜୀବନର ଦୁଃଖ ଓ ବାସ୍ତବତାକୁ ସେ ଏକ ନୂତନ ସ୍ୱର୍ଣ୍ଣାଭ ସ୍ପର୍ଶ ଦେଇପାରିଥିଲେ । ବେଦାନ୍ତ ବ୍ୟାଖ୍ୟା ତାଙ୍କ ଚିନ୍ତାଧାରାର ଥିଲା ମହତ୍ତ୍ୱ । ଆତ୍ମଦର୍ଶନ, ଭକ୍ତି, ବ୍ରହ୍ମଜ୍ଞାନର ବିଚାର ଓ ବିଶ୍ଳେଷଣ ଆଖୋ ଯେପରି କରିଥିଲେ, ତାହା ବାସ୍ତବିକ ତାଙ୍କର କୌଣସି ନିର୍ଦ୍ଦିଷ୍ଟ ସୀମିତ ଆଦର୍ଶର ଅନୁଗାମୀ ନୁହେଁ । ଧର୍ମ, ଦର୍ଶନ ଓ ସମାଜର ପରିପ୍ରେକ୍ଷୀରେ ଆଖୋଙ୍କ ଲିଖିତ ସାହିତ୍ୟର ପ୍ରଭାବ ଅତ୍ୟଧିକ । ଏତଦ୍‌ବ୍ୟତୀତ ବିଦ୍ରୂପ ମଧ୍ୟ ତାଙ୍କ ଲେଖାରେ ସ୍ଥାନ ପାଇଥିଲା । ଆଖୋ ଷଷ୍ଠପଦବିଶିଷ୍ଟ ବହୁ ପଦ୍ୟ ରଚନା କରିଥିଲେ । ସେସବୁର ବିଷୟବସ୍ତୁ ମଧ୍ୟ ବ୍ୟାପକ ଥିଲା । ତୀବ୍ର ଅଭିଳାଷ ବ୍ୟତୀତ ଈଶ୍ୱରଙ୍କୁ କେହି କେବେ ଲାଭ କରି ନ ପାରେ । ଆଖୋଙ୍କର ଏହା ଥିଲା ଦୃଷ୍ଟିଭଙ୍ଗୀ ।

ଜୈନ ଲେଖକମାନଙ୍କର ପରମ୍ପରାର ପ୍ରଭାବ ଯେତେବେଳେ ହ୍ରାସ ହୋଇ-ଥିଲା, ସେତେବେଳେ ଗୁଜୁରାଟୀ ସାହିତ୍ୟରେ- ବର୍ଣ୍ଣନାତ୍ମକ ରୋମାନ୍‌ସ୍ ଧର୍ମୀ କାବ୍ୟ ଲେଖାଯାଇଥିଲା । କବି ମଣ୍ଡନଙ୍କର 'ପ୍ରବୋଧ ବତିଶି' (୧୪୮୦) ଏକ ନୂତନ କାବ୍ୟରୀତି ପ୍ରଦର୍ଶନ କରିଥିଲା । ସପ୍ତଦଶ ଶତାବ୍ଦୀର ମଧ୍ୟ ଭାଗରୁ ଊନବିଂଶ ଶତାବ୍ଦୀର ପ୍ରଥମପାଦ ଶେଷ ପର୍ଯ୍ୟନ୍ତ ଗୁଜୁରାଟର ଶାସନ, ସମାଜ ଓ ସାହିତ୍ୟ କ୍ଷେତ୍ରରେ ଏକ ନୂତନ ଅଧ୍ୟାୟ ସୃଷ୍ଟି ହୋଇଥିଲା । ଜନସାଧାରଣ ଶାନ୍ତିର ନିଃଶ୍ୱାସ ମାରିଥିଲେ । ପାଣ୍ଡିତ୍ୟ ବିଦ୍ୟାର ପ୍ରସାର ଘଟିଥିଲା । ଭକ୍ତି ରସାତ୍ମକ ବହୁ ରଚନା; ଯଥା ଭଜନ, ଗୁଜୁରାଟୀ ସାହିତ୍ୟରେ ଲେଖାଯାଇଥିଲା । ୧୫୭୩ ମସିହାରେ ସମ୍ରାଟ ଆକବରଙ୍କର ଗୁଜୁରାଟ ପ୍ରଦେଶ ଗଠନ ଏକ ସ୍ମରଣୀୟ ଘଟଣା । ଗୁଜୁରାଟ 'ମାରବାଡ଼' ଅଞ୍ଚଳରୁ ଏକ ସ୍ୱତନ୍ତ୍ର ରାଜ୍ୟ ବୋଲି ଘୋଷିତ ହେଲା । ଏହା ପରେ ଏକ ଶତବର୍ଷ ବ୍ୟାପୀ ଗୁଜୁରାଟ ପ୍ରଦେଶରେ ଜୀବନଧାରା ଓ ସାଂସ୍କୃତିକ ପ୍ରବାହ ଅପ୍ରତିହତ ଭାବରେ ପ୍ରବାହିତ ହେଲା । ଇତିହାସରେ ମୋଗଲ ରାଜତ୍ୱର ଅବସାନ ଏବଂ ମରହଟ୍ଟା ଶକ୍ତିର ଆବିର୍ଭାବ -- ଏହି ଗୁରୁତ୍ୱପୂର୍ଣ୍ଣ ସମୟରେ ଗୁଜୁରାଟ ସାହିତ୍ୟରେ କୌଣସି ଉଲ୍ଲେଖଯୋଗ୍ୟ ଅଗ୍ରଗତି ପରିଦୃଷ୍ଟ ହୁଏନାହିଁ ।

ସପ୍ତଦଶ ଶତାବ୍ଦୀର କବି ପ୍ରେମାନନ୍ଦ (୧୬୩୬-୧୭୩୪) ଗୁଜୁରାଟର ଶ୍ରେଷ୍ଠ ପ୍ରାଚୀନ କବି ଥିଲେ । ସାହିତ୍ୟ କ୍ଷେତ୍ରରେ ଲୋକପ୍ରିୟ ପରମ୍ପରା ପ୍ରତି ସେ ଧ୍ୟାନ ଦେଇଥିଲେ । ଲୋକପ୍ରିୟ ଆଖ୍ୟାନ ମାଧ୍ୟମରେ ପୌରାଣିକ କାବ୍ୟର ପ୍ରସାର ଏବଂ ଆବୃତ୍ତି ତାଙ୍କ ସାଧନାର ଥିଲା ମୂଳସୂତ୍ର । ସେ ଆଖ୍ୟାନ ରଚନାର ପୁଷ୍ଟିସାଧନ କରିଥିଲେ । ସୁରାଟ୍, ବରୋଦା ପ୍ରଭୃତି ସମୃଦ୍ଧ ସହରରେ ଶିକ୍ଷିତ, ଅର୍ଦ୍ଧଶିକ୍ଷିତ ଶ୍ରୋତାମାନଙ୍କ ଉପସ୍ଥିତିରେ ସେ କବିତା ଆବୃତ୍ତି କରି ସମସ୍ତଙ୍କୁ ମୁଗ୍ଧ କରି ଦେଉଥିଲେ । ଗୁଜୁରାଟର ଜନମାନସ-ପଟରେ ଆଉ କୌଣସି କବିଙ୍କର ସ୍ଥିତି ଏପରି ସଂଜୀବିତ ହୋଇ ରହିନାହିଁ । ନଳା-ଖ୍ୟାନ, ଅଭିମନ୍ୟୁ ଆଖ୍ୟାନ, ସୁଦାମଚରିତ, ରଣଯଜ୍ଞ, ଦଶମ ସ୍କନ୍ଦ ପ୍ରଭୃତି ଗୃହ୍ଲାଶ ଖଣ୍ଡ କାବ୍ୟ ତାଙ୍କ ସାହିତ୍ୟିକ ସିଦ୍ଧିର ନିଦର୍ଶନ । ତାଙ୍କର ରଚନାମାନଙ୍କରେ ବର୍ଣ୍ଣିତ ରାମ, ଲକ୍ଷ୍ମଣ, ସୀତା, କୃଷ୍ଣ, ରାଧା, ଯଶୋଦା, ରାବଣ, କୁମ୍ଭକର୍ଣ୍ଣ ପୌରାଣିକ ଗଣ୍ଡି ମଧ୍ୟରେ ଏକ ନୂତନ ସାମାଜିକ ବାସ୍ତବତାର ପ୍ରତୀକ । ସେଥିପାଇଁ ବିଷୟବସ୍ତୁ ପୌରାଣିକ ହେଲେ ମଧ୍ୟ କବି ପ୍ରେମାନନ୍ଦଙ୍କ ଚରିତ୍ର ସୃଷ୍ଟି ତତ୍କାଳୀନ ସାମାଜିକ ଚେତନା ତଥା ଆଭିମୁଖ୍ୟ ପ୍ରଦର୍ଶନ କରିଥିଲେ । ଚରିତ୍ର ଚିତ୍ରଣ ବାସ୍ତବ ଏବଂ ମାନବିକ ଆବେଦନରେ ପରିପୂର୍ଣ୍ଣ । ତାଙ୍କ କୃତି ସମୂହରେ ଗମ୍ଭୀର ଚିନ୍ତନ ଅପେକ୍ଷା ତାତ୍ତ୍ୱିକ ବିଶ୍ଳେଷଣ ଅଧିକ ଦେଖା-ଯାଏ ।

ଜୈନମାନଙ୍କ ଲିଖିତ ସାମାଜିକ ରୋମାନ୍ସଧର୍ମୀ ରଚନା ଏବଂ ଅଜସ୍ର ଗାଥା କବିତା ଗୁଜୁରାଟୀ ସାହିତ୍ୟକୁ ଷୋଡ଼ଶ ଏବଂ ସପ୍ତଦଶ ଶତାବ୍ଦୀରେ ସମୃଦ୍ଧ କରିଥିଲା । ପ୍ରେମ ଏହିସବୁ ରଚନାର କଥାବସ୍ତୁ ଥିଲା । ଜୈନମାନଙ୍କ ସାମାଜିକ ତଥ୍ୟ-ସଂବଳିତ ରଚନାରେ ନୀତିବାଦ ଅଧିକ ପରିସ୍ଫୁଟ ହେଉଥିଲା । ସେମାନଙ୍କ ସାମାଜିକ ରୋମାନ୍ସ ରଚନାରୁ ସମସାମୟିକ ମଧ୍ୟବିତ୍ତ ଶ୍ରେଣୀର ଚିତ୍ର ମିଳିଥାଏ । ଜୈନ ଲେଖକ-ମାନଙ୍କର ପାଣ୍ଡିତ୍ୟ ଏବଂ ଶୈଳୀର ପ୍ରାଚୀନତା ବେଶ୍ ସ୍ପଷ୍ଟ ହୋଇଥିଲା । ରୋମାନ୍ସ୍ ଧର୍ମୀ କାହାଣୀ ପାଇଁ ଷୋଡ଼ଶ ଶତାବ୍ଦୀ ପ୍ରସିଦ୍ଧ ଥିଲା । ଏତାଦୃଶ କାହାଣୀ ମଧ୍ୟରେ ଆସୟିତ୍ତଙ୍କର ହଂସାବଲୀ, ଭୀମଙ୍କର ସଦୟବତ୍ସ କଥା ଉଲ୍ଲେଖଯୋଗ୍ୟ । ନରପତି, ଗଣପତି, ମଧୁସୂଦନ ବ୍ୟାସ ପ୍ରଭୃତିଙ୍କର ରୋମାନ୍ସ୍ କାହାଣୀ ସ୍ମରଣୀୟ ।

ଏହି ରୋମାନ୍ସ୍ କାହାଣୀ ପରମ୍ପରା ଅଷ୍ଟାଦଶ ଶତାବ୍ଦୀରେ ଅହମଦାବାଦର ଲେଖକ 'ସାମଲ' (୧୬୯୯-୧୭୬୯)ଙ୍କ ଦ୍ୱାରା ଆହୁରି ପ୍ରସାରିତ ହେଲା । କାହାଣୀ ଓ ଗଳ୍ପ କଥନ ପାଇଁ ତାଙ୍କର ଯେପରି ଅପୂର୍ବ ଶକ୍ତି ଥିଲା । ବତିଶ ପୁତଳୀ, ପଦ୍ମାବତୀ (୧୭୧୮), ସୁଦାବହୋତେରୀ (୧୭୬୫), ନନ୍ଦ ବତିଶୀ, ଉଦ୍ୟମକୋଷା-ନି-ବାର୍ତ୍ତା, ମଦନ-ମୋହନ ପ୍ରଭୃତି ତାଙ୍କର କାହାଣୀ କୃତି । ତାଙ୍କର କୃତି ମଦନମୋହନ ବିହ୍ଲଶୀୟ ରୋମାଣ୍ଟିକ୍ ଗଳ୍ପଧାରା ଉପରେ ପ୍ରତିଷ୍ଠିତ । ଜନୈକ ରାଜକୁମାରୀ ତାଙ୍କର ଘରୋଇ ଶିକ୍ଷକଙ୍କ ପ୍ରେମରେ ଆବଦ୍ଧ ହୋଇଥିବାର ଏହି ଗଳ୍ପରେ ବର୍ଣ୍ଣିତ । ପ୍ରେମର ଅପୂର୍ବ

ନଷ୍ଟାହିଁ ହେଉଥିବା ପ୍ରେମିକ ଏବଂ ପ୍ରେମିକାଙ୍କ ଚରିତ୍ରରେ ପରିଲକ୍ଷିତ । 'ସାମନ' ମଧ୍ୟ ଛପା ଜାତୀୟ ସାହିତ୍ୟିକ ରଚନାର ପୃଷ୍ଠପୋଷକ ଥିଲେ । ତାଙ୍କ ରଚନାରେ କୃଷିଜୀବୀ ଏବଂ ତାର ଗୋ-ସଂପଦର ଭୂରିଭୂରି ଉଲ୍ଲେଖ କରାଯାଇଥିଲା । କବିଙ୍କ ମତରେ କୃଷିଜୀବୀ ଏବଂ ଗୋମାତା ହେଉଛନ୍ତି ପୃଥିବୀ ମାତାର ଉତ୍ତରାଧିକାରୀ । ତେଣୁ ସମସ୍ତଙ୍କର ନମସ୍ୟ ।

ଗୁଜୁରାଟୀ ସାହିତ୍ୟରେ ବିଭିନ୍ନ ଧର୍ମଧାରାର ପ୍ରଭାବ ପରିଦୃଷ୍ଟ ହୋଇଥାଏ । ପ୍ରତ୍ୟେକ ଧର୍ମ ସମ୍ବନ୍ଧୀୟ ଆନ୍ଦୋଳନ ଓ ପ୍ରଚାର ସାହିତ୍ୟ କ୍ଷେତ୍ରରେ ନୂତନ ଆଙ୍ଗିକ ତଥା ଚିନ୍ତନର କାରଣ ହୋଇଥିବାର ଜଣାଯାଏ । ପୁନଶ୍ଚ ପ୍ରାଚୀନ ସଂସ୍କୃତ ସାହିତ୍ୟର ବହୁଳ ଅଧ୍ୟୟନ ଓ ଚର୍ଚ୍ଚା ହେଉଥିଲା । ଏହି ସାହିତ୍ୟିକ ଆନ୍ଦୋଳନ ଶୈଳୀ, କଥାବସ୍ତୁ ଏବଂ ଦୃଷ୍ଟିଭଙ୍ଗୀରେ ପ୍ରତିଫଳିତ ହେଉଥିଲା । ସାହିତ୍ୟିକମାନେ କ୍ରମଶଃ ଜନ-ସାଧାରଣଙ୍କ ସାଂସ୍କୃତିକ ଆବଶ୍ୟକତା ପ୍ରତି ଅବହିତ ହେଉଥିଲେ ।

ପ୍ରାଚୀନ ଗୁଜୁରାଟୀ ସାହିତ୍ୟର ବିଭିନ୍ନ ଆଙ୍ଗିକ; ଯଥା - ରାସ, ଫଗୁ, ଭଜନ, ଆଖ୍ୟାନ, ରୋମାଣ୍ଟିକ୍ କାହାଣୀ, ଛପା, ଗରବୀ ଜନପ୍ରିୟ ସାହିତ୍ୟିକ ପ୍ରକାଶନ ତଥା ପ୍ରକାଶ ଭଙ୍ଗୀର ପ୍ରତୀକ । ଜନସାଧାରଣଙ୍କ ବୋଧଗମ୍ୟ ଭାଷାରେ ଏହି ପ୍ରାଚୀନ ରଚନା ସବୁ ଲେଖାଯାଇଥିଲା । ଗମ୍ଭୀର ଦର୍ଶନ ଏବଂ ଆଧ୍ୟାତ୍ମିକ ସଂବଳିତ ରଚନା ଦ୍ୱାରା ଅଷ୍ଟାଦଶ ଶତାବ୍ଦୀର ସାହିତ୍ୟ ସମୃଦ୍ଧ ହୋଇଥିଲା ଏବଂ ଏହା ମୂଳରେ ପ୍ରଚାରକ ସହଜାନନ୍ଦ (୧୭୮୧-୧୮୩୦)ଙ୍କର ପ୍ରଭାବ ନିହିତ ଥିଲା । ଆଖୋଙ୍କ କାବ୍ୟ ପରମ୍ପରା ଦ୍ୱାରା କବି ପ୍ରୀତମ ଦାସ ପ୍ରଭାବିତ ହୋଇଥିଲେ । ତାଙ୍କର ଭାବପୂର୍ଣ୍ଣ ଭଜନାବଳୀ ଗୁଜୁରାଟର ଭକ୍ତପ୍ରାଣ ବ୍ୟକ୍ତିମାନଙ୍କ ଦ୍ୱାରା ଆବୃତ୍ତି କରାଯାଏ । ପ୍ରୀତମ ଦାସଙ୍କ ଦୃଷ୍ଟିରେ ପ୍ରତ୍ୟେକ ଭକ୍ତ ଜଣେ ଲେଖାଏଁ ବୀର । ତେଣୁ ବୀର ଯେପରି ଯୁଦ୍ଧ ଭୂଇଁରେ ଜୀବନୋତ୍ସର୍ଗ କରେ, ଭକ୍ତ ସେହିପରି ନିଜର ଆଦର୍ଶ ପାଇଁ ନିଜକୁ ଉତ୍ସର୍ଗ କରିବା ଉଚିତ । କବି 'ଭୋଜ' ପ୍ରଚାର କରିଥିଲେ ଯେ, ଜୀବାତ୍ମା ସହିତ ପରମାତ୍ମା ଅବିଚ୍ଛେଦ୍ୟ ଭାବରେ ଜଡ଼ିତ । ନିଜ ଭିତରେ ବିଶ୍ୱବ୍ରହ୍ମର ପ୍ରତିଫଳନ ଏବଂ ବିଶ୍ୱବ୍ରହ୍ମରେ ବ୍ୟକ୍ତିସତ୍ତାର ଅବଗାହନ, ଏହାହିଁ ଥିଲା ତାଙ୍କର ସ୍ୱପ୍ନ । ବଲ୍ଲଭାଚାର୍ଯ୍ୟଙ୍କ ପରିପୁଷ୍ଟ ପୁଷ୍ଟି ମାର୍ଗ ଦର୍ଶନ ଦ୍ୱାରା ମଧ୍ୟ ଗୁଜୁରାଟୀ କାବ୍ୟ କବିତା ବହୁ ପରିମାଣରେ ପ୍ରଭାବିତ ହୋଇଥିଲା । ଧର୍ମ ସମ୍ବନ୍ଧୀୟ ଦର୍ଶନ କାବ୍ୟ କବିତାର ବିକାଶରେ ସହାୟତା କରିଥିଲା । ସେଥିପାଇଁ ପ୍ରାଚୀନ ଏବଂ ମଧ୍ୟଯୁଗୀୟ ଗୁଜୁରାଟୀ କାବ୍ୟ କବିତାରେ ଶାନ୍ତରସର ଆଧିକ୍ୟ ଦେଖାଯାଏ । ପଞ୍ଚଦଶ ଶତାବ୍ଦୀର କବି ଭାଲନାଙ୍କ ବାତ୍ସଲ୍ୟରସ ପ୍ଲାବିତ କବିତା ଏବଂ ଊନବିଂଶ ଶତାବ୍ଦୀର ପ୍ରାରମ୍ଭର ସ୍ୱାମୀ ନାରାୟଣ ସଂପ୍ରଦାୟ କବିମାନଙ୍କର କବିତା ଗୁଜୁରାଟୀ ପ୍ରାଚୀନ କବିତାର ଦୁଇଗୋଟି ଦିଗ ବୋଲି କୁହାଯାଇପାରେ । ସହଜାନନ୍ଦ ଥିଲେ ସ୍ୱାମୀ ନାରାୟଣ ସଙ୍ଘର ପ୍ରତିଷ୍ଠାତା ଏବଂ ସେମାନେ ଭକ୍ତିର ପ୍ରାଧାନ୍ୟକୁ ସ୍ୱୀକାର କରିଥିଲେ । ବ୍ୟକ୍ତିର ଜୀବନରେ ଶୁଦ୍ଧ ଆଚରଣ ପ୍ରତି ସେମାନେ ଗୁରୁତ୍ୱ ଦେଉଥିଲେ । ଗୁଜୁରାଟ ଏବଂ ସୌରାଷ୍ଟ୍ରର

ଜନ-ସାଧାରଣଙ୍କର ନୈତିକ ବିକାଶ ପାଇଁ ଧ୍ୟାନ ଦେଇଥିଲେ । ରାମାନୁଜାଚାର୍ଯ୍ୟଙ୍କ ପ୍ରବର୍ତ୍ତିତ ଆଦର୍ଶ ସେ ଗ୍ରହଣ କରିଥିଲେ । ତାଙ୍କର ପ୍ରଧାନ ଶିଷ୍ୟମାନଙ୍କ ମଧ୍ୟରେ ବ୍ରହ୍ମାନନ୍ଦ, ନିଷ୍କୁଳାନନ୍ଦ, ପ୍ରେମାନନ୍ଦ ବିଶିଷ୍ଟ କବି ଥିଲେ । ମାତୃପୂଜା ଗୁଜୁରାଟ ଅଂଚଳରେ ପ୍ରାଚୀନ କାଳରୁ ପ୍ରଚଳିତ । ଏବେ ମଧ୍ୟ ସେହି ଶକ୍ତି ପୂଜାର ପ୍ରଭାବ ବିଦ୍ୟମାନ । ମାତ୍ର ଏହି ପୂଜା ଓ ଆଦର୍ଶ ବ୍ୟାପକ ସାହିତ୍ୟିକ ପ୍ରେରଣା ସୃଷ୍ଟି କରି ନ ଥିଲା । ତଥାପି ଜନୈକ କବି ଜନନୀ ରୂପିଣୀ ଶକ୍ତିଙ୍କର ଯେପରି ବର୍ଣ୍ଣନା କରିଥିଲେ, ତାହା ତାଙ୍କର ଉଚ୍ଚାଙ୍ଗ କଳ୍ପନା ବିଳାସର ନିଦର୍ଶନ; ଯଥା - ନୃତ୍ୟରତା ଜନନୀଙ୍କ ମସ୍ତକରେ ସ୍ୱର୍ଗରୂପୀ ପାତ୍ର ଚନ୍ଦ୍ରସୂର୍ଯ୍ୟ ତାଙ୍କର ଗଣ୍ଡକକ୍ଷ, ପୃଥିବୀ ହେଉଛି ତାଙ୍କର ମୃତ୍ତିକା ଦୀପ ଏବଂ ସମୁଦ୍ର ହେଉଛି ସେହି ପ୍ରଦୀପର ତୈଳ । କବି ରତ୍ନେଶ୍ୱର (୧୭୫୦-୧୭୨୦), ଗିରିଧର (୧୭୮୭-୧୮୫୨) ପ୍ରାଚୀନ ଆଖ୍ୟାନ ପରଂପରାର ଭକ୍ତ ଥିଲେ । ଗୁଜୁରାଟ ସାହିତ୍ୟିକ ବିବର୍ତ୍ତନରେ ଭକ୍ତିମାର୍ଗର ଗୁରୁତ୍ୱ ସ୍ୱୀକାର୍ଯ୍ୟ ।

ଊନବିଂଶ ଶତାବ୍ଦୀର କବି ଦୟାରାମ (୧୭୭୭-୧୮୫୨) ଜଣେ ପ୍ରଭାବଶାଳୀ ସାହିତ୍ୟ ସ୍ରଷ୍ଟା ଥିଲେ । ଭାଷାର ସାବଳୀଳତା, ପ୍ରକାଶଭଙ୍ଗୀର ନୂତନତା, ଆବେଗର ପ୍ରାଚୁର୍ଯ୍ୟ ଏବଂ ଭକ୍ତି ବିଚାରରେ କବି ଦୟାରାମ ସମଗ୍ର ଗୁଜୁରାଟର ପ୍ରାଚୀନ କାବ୍ୟ କବିତାର ଶେଷ ପ୍ରସିଦ୍ଧ କବି । ସେ ବଲ୍ଲଭ ସଂପ୍ରଦାୟଭୁକ୍ତ ଥିଲେ । ପବିତ୍ର ନର୍ମଦାନଦୀ ତୀରସ୍ଥ ଚନ୍ଦୋଦା ଗ୍ରାମରେ କବି ଜନ୍ମଗ୍ରହଣ କରିଥିଲେ । ଯୌବନରେ ସେ ଯେପରି ଉଦ୍‌ଭ୍ରାନ୍ତ ଥିଲେ ପରବର୍ତ୍ତୀ କାଳରେ ସେ ସେହିପରି ଗୁରୁଗମ୍ଭୀର, ଶାନ୍ତ ଏବଂ ଭକ୍ତିନିଷ୍ଠ ହୋଇ ପାରିଥିଲେ । ବିସ୍ତୃତ ପର୍ଯ୍ୟଟନ, ପ୍ରାଚୀନ କାବ୍ୟ କବିତା ଅଧ୍ୟୟନ, ଗୁରୁମାନଙ୍କ ଠାରୁ ଦୀକ୍ଷା ଲାଭ ତାଙ୍କର କବିତ୍ୱ ବିକାଶ ପାଇଁ ପ୍ରେରଣା ଦେଇଥିଲା । ତାଙ୍କର ବିଶିଷ୍ଟ ଭକ୍ତିଧର୍ମୀ ରଚନା ମଧ୍ୟରେ 'ଭକ୍ତି ପୋଷଣ', 'ରସିକ ବଲ୍ଲଭ' ଉଲ୍ଲେଖ-ଯୋଗ୍ୟ । ପଦ ଓ 'ଗରବୀ' ମାଧ୍ୟମରେ ଦୟାରାମ ନିଜର ଭାବ ସମ୍ଭାର ବ୍ୟକ୍ତ କରିଥିଲେ । ରାଧାକୃଷ୍ଣଙ୍କ ମଧୁର ମିଳନ ରାସ ଏହି କବିଙ୍କ ରଚନାରେ ପ୍ରାଣବନ୍ତ ହୋଇପାରିଥିଲା । ଦୟାରାମଙ୍କ ମତରେ ଇପ୍‌ସିତ ଦେବତା ସହିତ ମିଳିତ ହେବାକୁ ହେଲେ ନାୟିକାର ଭାବପ୍ରବଣତା ହାସଲ କରିବାକୁ ହେବ । ଦୟାରାମଙ୍କ ଯୁଗ ଥିଲା ଅବକ୍ଷୟର ଯୁଗ ଏବଂ ପ୍ରାଚୀନ ଯୁଗ ସାହିତ୍ୟର ତାହା ଥିଲା ଶେଷ ସନ୍ଧ୍ୟା । ଦୟାରାମଙ୍କ ତିରୋଧାନ ସମୟକୁ ସମଗ୍ର ଗୁଜୁରାଟ ଏକ ସଂପୂର୍ଣ୍ଣ ସାଂସ୍କୃତିକ ଜାଗୃତି ପାଇଁ ପ୍ରସ୍ତୁତ ହେଉଥିଲା । ସେତେ-ବେଳକୁ ୧୮୧୮ରୁ ଇଂରେଜମାନେ ଗୁଜୁରାଟ ଅଧିକାର କରି ସାରିଥିଲେ ଏବଂ ପାଶ୍ଚାତ୍ୟ ଶିକ୍ଷା ସଂସ୍କୃତିର ସ୍ପର୍ଶ କ୍ରମଶଃ ପ୍ରବାହିତ ହେବାକୁ ଲାଗିଥିଲା ।

ଇତିହାସର ଚକ ଘୂରିଗଲା, ଯେତେବେଳେ ଇଂରେଜମାନେ ଗୁଜୁରାଟ ଅଧିକାର କଲେ । ସମଗ୍ର ଗୁଜୁରାଟର ଶିକ୍ଷା, ସାହିତ୍ୟ ଏବଂ ସଂସ୍କୃତି କ୍ଷେତ୍ରରେ ଆରମ୍ଭ ହେଲା ଏକ ନୂତନ ଅଧ୍ୟାୟ, ଯାହାର ଯୁଗାନ୍ତକାରୀ ଚେତନା ସାହିତ୍ୟରେ ପ୍ରତିଫଳିତ

ହେଲା । ପାଶ୍ଚାତ୍ୟ ଶିକ୍ଷାର ପ୍ରସାର ଏବଂ ପଶ୍ଚାତ୍ୟ ସାହିତ୍ୟାଦର୍ଶର ଅନୁସରଣବଶତଃ ପ୍ରାଚୀନ ଏବଂ ମଧ୍ୟଯୁଗୀୟ ପରଂପରାସର୍ବସ୍ୱ ସାହିତ୍ୟରେ ଦେଖାଦେଲା ନୂତନ ଆଙ୍ଗିକ, ନୂତନ ରୁଚି ଏବଂ ସାମାଜିକ ମୂଲ୍ୟବୋଧ । ଅବକ୍ଷୟ, ଅଜ୍ଞତା ଏବଂ କୁସଂସ୍କାର ବିରୋଧରେ ଯେପରି ବୌଦ୍ଧିକ ଚେତନା ପ୍ରକାଶ ପାଇଲା । ବମ୍ବେ ଏଡୁକେଶନ୍ ସୋସାଇଟିର ଏକ ଶାଖା ୧୮୨୫ରେ ନେଟିଭ୍ ଏଡୁକେଶନ୍ ସୋସାଇଟି ନାମରେ ସ୍ଥାପିତ ହୋଇଥିଲା । ଦୁର୍ଗାରାମ ମେହେତାଜୀ ଏବଂ ଭୁଲଜାରାମ ସୁଖରାମ୍ଙ୍କ ନୂତନ ଶିକ୍ଷାପ୍ରଣାଳୀରେ ତାଲିମ୍ ଦିଆଯାଇଥିଲା । ଦୁର୍ଗାରାମ ସୁରଟଠାରେ ୧୮୪୪ ମସିହାରେ ମାନବଧର୍ମ ସଭା ନାମକ ଏକ ଧର୍ମ ଓ ସମାଜ ସଂସ୍କାରମୂଳକ ଅନୁଷ୍ଠାନ ପ୍ରତିଷ୍ଠା କଲେ । ୧୮୪୮ ମସିହାରେ ଅହମଦାବାଦଠାରେ ଗୁଜୁରାଟ ଭର୍ଣ୍ଣାକୁଲାର ସୋସାଇଟି ସ୍ଥାପିତ ହେଲା । ଦଲପତ୍‌ରାମ କବିଙ୍କ ଉଦ୍ୟମରେ ସୋସାଇଟି ପକ୍ଷରୁ ପାଠ୍ୟପୁସ୍ତକ ପ୍ରକାଶିତ ହେଲା । ସେହିପରି ବମ୍ବେର ଏଲଫିନ୍‌ଷ୍ଟୋନ୍ (୧୮୨୭) କଲେଜରୁ ଶିକ୍ଷାପ୍ରାପ୍ତ ଦାଦାଭାଇ ନାରୋଜି ଏବଂ ନର୍ମଦାଶଙ୍କର ପ୍ରଭୃତି କେତେକ ଯୁବକ ସେତେବେଳେ ପତ୍ରପତ୍ରିକା ପ୍ରକାଶ କଲେ ଏବଂ ସମାଜ ସଂସ୍କାର ତଥା ସାଂସ୍କୃତିକ ବିକାଶ ପାଇଁ ବିଭିନ୍ନ ଅନୁଷ୍ଠାନର ଶୁଭ ଦେଲେ । ପାଶ୍ଚାତ୍ୟ ଜଗତର ଶିକ୍ଷା, ସଂସ୍କୃତି ତଥା ସାହିତ୍ୟ ଏବଂ ଖ୍ରୀଷ୍ଟୀୟ ଚେତନା ସେମାନଙ୍କୁ ଅନୁପ୍ରାଣିତ କରିଥିବାର ଜଣାଯାଏ । ଊନବିଂଶ ଶତାବ୍ଦୀର ଗୁଜୁରାଟୀ ସାହିତ୍ୟ ତେଣୁ ସୌନ୍ଦର୍ଯ୍ୟଜ୍ଞାନ ଅପେକ୍ଷା ସାମାଜିକ ଏବଂ ନୈତିକ ପ୍ରୟୋଜନ ଦ୍ୱାରା ଅଧିକ ପ୍ରଭାବିତ ହୋଇଥିଲା । ପ୍ରଥମେ ସମାଜ ସଂସ୍କାର ଏବଂ ଜ୍ଞାନ ପ୍ରସାର ପ୍ରତି ସାହିତ୍ୟିକଗଣ ସେତେବେଳେ ବିଶେଷ ଧ୍ୟାନ ଦେଇଥିଲେ । ପ୍ରଥମ ପର୍ଯ୍ୟାୟରେ ପାଶ୍ଚାତ୍ୟ ଚିନ୍ତାଧାରାର ପ୍ରଭାବ ପରିଲକ୍ଷିତ ହୁଏ । ମାତ୍ର କ୍ରମଶଃ ପ୍ରାଚ୍ୟ ଭୂ-ଖଣ୍ଡର ସନାତନ ଚିନ୍ତାଧାରା ଲେଖକମାନଙ୍କୁ ଉତ୍ସାହିତ କରିଥିଲା । ୧୮୫୭ର ସିପାହୀ ବିଦ୍ରୋହ ଐତିହାସିକ ଘଟଣା ଅପେକ୍ଷା ୧୮୫୭ର ଏଲ୍‌ଫିନ୍ ଷ୍ଟୋନ୍ କଲେଜର ସ୍ଥାପନ, ପରେ ବରୋଦା, ଅହମଦାବାଦ, ଜୁନାଗଡ଼, ଭାବନଗର ପ୍ରଭୃତି କେନ୍ଦ୍ରସ୍ଥଳମାନଙ୍କରେ ଶିକ୍ଷାନୁଷ୍ଠାନ ଆରମ୍ଭ ଗୁଜୁରାଟର ଶିକ୍ଷା, ସାମାଜିକ ଓ ଅର୍ଥନୈତିକ ଜୀବନରେ ବିରାଟ ପରିବର୍ତ୍ତନର ସୂତ୍ରପାତ କରିଥିଲା । ନବ୍ୟ ଶିକ୍ଷିତ ଯୁବକମାନଙ୍କର ଏକ ଗଭୀର ଦେଶାତ୍ମବୋଧ ଚେତନା ଦେଶରୁ ସାଂସ୍କୃତିକ ଜଡ଼ତା ଦୂର କରିବାରେ ଦାୟୀ ହେଲା । ପ୍ରାଚୀନ ସଂସ୍କୃତ ସାହିତ୍ୟର ଐତିହ୍ୟ, ପାଶ୍ଚାତ୍ୟ ସାହିତ୍ୟର ଯୁଗୋପଯୋଗୀ ଉପଯୋଗିତା, ବିଜ୍ଞାନର ଉପାଦେୟତା ସହିତ ଜାତୀୟସ୍ୱଭାବାପନ୍ନ ଏକ ଉଦ୍‌ବେଳିତ ମନୋବୃତ୍ତି ଏହି ଶତାବ୍ଦୀରେ ସାହିତ୍ୟିକର ମାନସପଟରେ ବିଶେଷଭାବରେ ପ୍ରତିଫଳିତ ହୋଇଥିଲା । ଏକାଧିକ ଧର୍ମୀୟ ଏବଂ ଦାର୍ଶନିକ ଅନୁଷ୍ଠାନ ଯଥା ଆର୍ଯ୍ୟସମାଜ (୧୮୭୫) ଏବଂ ଥିଓସଫିକାଲ୍ ସୋସାଇଟି (୧୮୭୫), ପ୍ରାର୍ଥନା ସମାଜ (୧୮୬୭) ସାହିତ୍ୟରେ ଦୃଷ୍ଟିକୋଣର ପରିବର୍ତ୍ତନ ପାଇଁ ଉପାଦାନ ଯୋଗାଇ ଦେଇଥିଲା । ସେହି ଯୁଗରେ

ଭାରତୀୟ ଧର୍ମ ଓ ସମାଜ ଯେଉଁମାନଙ୍କର ଗମ୍ଭୀର ଚିନ୍ତା ତଥା ଆଦର୍ଶବାଦ ଦ୍ୱାରା ପ୍ରଭାବିତ ହୋଇଥିଲା, ସେମାନଙ୍କ ମଧ୍ୟରେ ସ୍ୱାମୀ ଦୟାନନ୍ଦ (୧୮୬୩), ସ୍ୱାମୀ ବିବେକାନନ୍ଦ ଓ ଶ୍ରୀ ଅରବିନ୍ଦ, ଶ୍ରୀମତୀ ଆନିବେସାନ୍ତ ଅଗ୍ରଣୀ ଥିଲେ । ଭାରତୀୟ ହିନ୍ଦୁଦର୍ଶନ ଆନ୍ତର ରୂପାନ୍ତରିତ ହେଲା । ଗୀତାର ଆଦର୍ଶବାଣୀ ସମସ୍ତଙ୍କୁ କର୍ମର ଆହ୍ୱାନ ଦେଇଥିଲା । ଫଳରେ ପରିବର୍ତ୍ତିତ ସାମାଜିକ, ଦାର୍ଶନିକ ତଥା ଐତିହାସିକ ପୃଷ୍ଠଭୂମିରେ ଏକ ସମ୍ପୂର୍ଣ୍ଣ ନୂତନ ରାଷ୍ଟ୍ରୀୟ ଜାତୀୟତା ପରିଦୃଷ୍ଟ ହୋଇଥିଲା । ସ୍ୱଦେଶପ୍ରେମର ଆଦର୍ଶ ବୁଦ୍ଧିଜୀବୀମାନଙ୍କୁ ପ୍ରବୁଦ୍ଧ କରିଥିଲା । ଏହି ଜାତୀୟ ଜାଗରଣ ପର୍ବର ପ୍ରାକ୍‌କାଳରେ ଦୁଇଜଣ ଶକ୍ତିଶାଳୀ ଦଲପତ୍‌ରାମ କବି (୧୮୨୦-୧୮୯୮) ଓ ନର୍ମଦଶଂକର (୧୮୩୩-୧୮୮୬)ଙ୍କର ନାମ ଉଲ୍ଲେଖଯୋଗ୍ୟ । ଦଲପତ୍‌ରାମ ଗୁଜୁରାଟୀ ଭାଷାକୁ ଏକ ପ୍ରାମାଣିକ ରୂପ ଦେଇଥିବା ସ୍ଥଳେ କବି ନର୍ମଦଶଂକର ଆଧୁନିକ ଶକ୍ତିଶାଳୀ ଗୁଜୁରାଟୀ ଗଦ୍ୟ ସାହିତ୍ୟର ଭିତ୍ତି ପ୍ରତିଷ୍ଠା କଲେ । ଦଲପତ୍‌ରାମଙ୍କର ବର୍ଣ୍ଣନାତ୍ମକ କବିତା 'ବେଣ ଚରିତ୍ର' ବିଧବା ବିବାହ ସପକ୍ଷରେ ପ୍ରଚାର କରିଥିଲା । ନର୍ମଦଶଂକରଙ୍କ କାବ୍ୟକବିତାରେ ଇଂରେଜ ସାହିତ୍ୟର ରୋମାଣ୍ଟିକ୍ ଦୃଷ୍ଟିକୋଣ ପ୍ରତିଫଳିତ ହୋଇଥିଲା । ସ୍ୱାଧୀନତା, ବୀରତ୍ୱ, ପ୍ରକୃତିବର୍ଣ୍ଣନା ତାଙ୍କ କବି ସୃଷ୍ଟିର ଉପଜୀବ୍ୟ ବିଷୟବସ୍ତୁ । ଗଦ୍ୟର ଶୈଳିକ ଅଭିବ୍ୟକ୍ତି ନର୍ମଦଶଂକରଙ୍କର କୃତିତ୍ୱ । ସଂଖ୍ୟାଧିକ ପ୍ରବନ୍ଧ, ଆତ୍ମଜୀବନୀ, ନାଟକ ପ୍ରମୁଖ ବିବିଧ ଗଦ୍ୟରଚନା ଦ୍ୱାରା ନର୍ମଦଶଂକର ସୌନ୍ଦର୍ଯ୍ୟ ପ୍ରକାଶକ୍ଷମ ନିର୍ଦ୍ଦିଷ୍ଟ ଗଦ୍ୟଶୈଳୀ ପ୍ରବର୍ତ୍ତନ କରିଥିଲେ । ତାଙ୍କର ପ୍ରବନ୍ଧ ସମୂହରେ ଜାତି, ରାଷ୍ଟ୍ର, ଶିକ୍ଷା, ସଂସ୍କୃତି, ଶିଳ୍ପ, ସଭ୍ୟତା ଏବଂ ଗୁଜୁରାଟର ପ୍ରାଚୀନ ଗୀତିକାବ୍ୟକାର ଏହିପରି—ବହୁ ମୌଳିକ ବିଷୟବସ୍ତୁ ତାଙ୍କ ପ୍ରବନ୍ଧ ସମୂହରେ ସ୍ଥାନ ପାଇଥିଲା । ଗୁଜୁରାଟୀ ଅଭିଧାନ 'ନର୍ମକୋଷ' ନର୍ମଦଶଂକରଙ୍କର ବହୁ ସାଧନାପ୍ରସୂତ ଏକ ଉଜ୍ଜ୍ୱଳ କୃତି ।

ଊନବିଂଶ ଶତାବ୍ଦୀରେ ଅନ୍ୟାନ୍ୟ ବିଶିଷ୍ଟ ଲେଖକମାନଙ୍କ ମଧ୍ୟରେ ପଦ୍ୟ ଲେଖକ ନବଲରାମ ପାଣ୍ଡିଆ (୧୮୩୬-୮୮) ଏବଂ ନନ୍ଦଶଙ୍କର ମେହେଟା (୧୮୩୫-୧୯୦୫), ନାଟ୍ୟକାର ରଣଛୋଡ଼ଭାଇ ଉଦୟରାମ (୧୮୩୩—୧୯୨୩), ଭକ୍ତକବି ଭୋଳାନାଥ (୧୮୨୨-୧୮୮୬) ପ୍ରଭୃତି ସ୍ମରଣୀୟ । ନବଲରାମ ଏକାଧାରରେ ଶିକ୍ଷାବିତ୍ କବି ଏବଂ ସମାଲୋଚକ ଥିଲେ । ତାଙ୍କର ନାଟ୍ୟ ସାହିତ୍ୟ ଆଲୋଚନା ସମୂହ ଅତ୍ୟନ୍ତ ମୂଲ୍ୟବାନ ବୋଲି ଜଣାଯାଏ । ଗୁଜୁରାଟ ପ୍ରାର୍ଥନା-ସମାଜର ଭକ୍ତକବି ଭାବରେ ଭୋଳାନାଥ ପରିଚିତ ହୋଇଥିଲେ ।

ଗୁଜୁରାଟୀ ସାହିତ୍ୟର ପ୍ରଥମ ଔପନ୍ୟାସିକ ଭାବରେ ନନ୍ଦଶଂକରଙ୍କର ପ୍ରତିଷ୍ଠା ସ୍ୱୀକୃତ । ୧୨୯୭ ମସିହାରେ ଗୁଜୁରାଟର ପତନ ଘଟଣାକୁ କେନ୍ଦ୍ରକରି ତାଙ୍କ ଉପନ୍ୟାସ 'କରନ୍ ଘେଲୋ' (୧୮୬୬) ଲିଖିତ । ଏହା ଐତିହାସିକ ଏବଂ ପରମ୍ପରାଗ୍ରାମୀ । ସମଗ୍ର

ଆଧୁନିକ ଭାରତୀୟ ସାହିତ୍ୟରେ ଐତିହାସିକ ଉପନ୍ୟାସଭାବରେ ଏହା ଯଥାର୍ଥ ମର୍ଯ୍ୟାଦାର ଅଧିକାରୀ । ଏହି ସମୟରେ ଅନ୍ୟାନ୍ୟ ଲେଖକ ଥିଲେ ମହୀପତରାମ, ହରଗୋବିନ୍ଦ ଦାସ, କର୍ଣ୍ଣଓ୍ୱାଲା, ଜାହାଙ୍ଗୀର ଓଲ୍ୟାଖାଁ । ମୁସଲମାନ ଆକ୍ରମଣ ପରେ ଗୁଜୁରାଟ ଜନଜୀବନରେ ସାଂସ୍କୃତିକ ଭିନ୍ନତା ଦେଖାଦେଇଥିଲା । ସେହି ସମୟରେ ରାସଲୀଳା, ଭବେଇ ସଦୃଶ ଗ୍ରାମ୍ୟ ନାଟକ ପ୍ରଚଳିତ ଥିଲା । ଏହି ସମୟରେ ଉଦୟରାମ ସାହିତ୍ୟ ଶୈଳୀମଣ୍ଡିତ କତିପୟ ନାଟକ ରଚନା କରିଥିଲେ —ଯଥା 'ଜୟକୁମାରୀ', 'ଲଳିତା ଦୁଃଖ ଦର୍ଶକ' ।

ଆଧୁନିକ ଜାଗରଣର ଦ୍ୱିତୀୟ ପର୍ଯ୍ୟାୟରେ ଶକ୍ତିଶାଳୀ ପ୍ରବର୍ତ୍ତକ ଥିଲେ ଗୋବର୍ଦ୍ଧନରାମ (୧୮୫୫-୧୯୦୭) । ଉଦ୍ଦେଶ୍ୟର ଗାମ୍ଭୀର୍ଯ୍ୟ, ଶୈଳୀର ବୈଚିତ୍ର୍ୟ ଏବଂ ଦୃଷ୍ଟିକୋଣର ସ୍ୱାତନ୍ତ୍ର୍ୟ ଏହି ଯୁଗୀୟ ସାହିତ୍ୟର ଥିଲା ପ୍ରାଣସ୍ପନ୍ଦନ । ସମନ୍ୱୟବାଦୀ ଦୂରଦୃଷ୍ଟି, ଶୈଳୀଚେତନା ଏବଂ ଗଭୀର ଅଧ୍ୟୟନ ଦକ୍ଷତା ବଳରେ ଗୋବର୍ଦ୍ଧନ ଗୁଜୁରାଟ ଜୀବନଧାରା ଓ ସମାଜକୁ କେନ୍ଦ୍ରକରି ଏକ ଅପୂର୍ବ ସାହିତ୍ୟ ଶିଳ୍ପ ସୃଷ୍ଟି କରିପାରିଥିଲେ । ଚାରିଭାଗରେ ବିଭକ୍ତ ବିରାଟ ଉପନ୍ୟାସ 'ସରସ୍ୱତୀଚନ୍ଦ୍ର' ତାଙ୍କର ଶ୍ରେଷ୍ଠ କୃତି । ଗୁଜୁରାଟରେ ଇଂରେଜମାନଙ୍କର ୧୮୧୮ ମସିହାରେ ଆବିର୍ଭାବ ସମୟରୁ ୧୯୦୦ ପର୍ଯ୍ୟନ୍ତ ଦୀର୍ଘ ଅଶୀ ବର୍ଷର ଇତିହାସ ଗୁଜୁରାଟ ଅଧିବାସୀଙ୍କର ଚଳଣି, ରୁଚି ଏବଂ ଆଦର୍ଶ ଏହି ଉପନ୍ୟାସରେ ନିପୁଣ ଭାଷାରେ ବର୍ଣ୍ଣିତ । ବମ୍ବେର ପରମ୍ପରାପୂର୍ଣ୍ଣ ଧନଶାଳୀ ଗୁଜୁରାଟୀ ପରିବାରର ପୃଷ୍ଠଭୂମିରେ ବର୍ଣ୍ଣିତ ବିଶ୍ୱବିଦ୍ୟାଳୟର ଶିକ୍ଷାପ୍ରାପ୍ତ ଜନୈକ ଯୁବକ 'ସରସ୍ୱତୀଚନ୍ଦ୍ର' ଏବଂ କାଥିଓ୍ୱାବାଡ଼ ଶାସକବର୍ଗଙ୍କର କୂଟନୀତିରେ ତାର ପ୍ରତିକ୍ରିୟା ଶେଷରେ ଭାରତୀୟ ସାଧୁ ସନ୍ଥ ପ୍ରଦର୍ଶିତ ମାର୍ଗରେ ତାର ଚୂଡ଼ାନ୍ତ ଦୀକ୍ଷାନ୍ତକରଣ ଲେଖକଙ୍କ ଦୃଷ୍ଟିରେ ଭବିଷ୍ୟତ ଭାରତ-ଭୂମିର ଚିତ୍ର ଏହି ଉପନ୍ୟାସରେ ବର୍ଣ୍ଣିତ । 'ସରସ୍ୱତୀଚନ୍ଦ୍ର' ଯେପରି ଭବିଷ୍ୟତ ବୌଦ୍ଧିକ ଭାରତର ଗୋଟିଏ ଗତିଶୀଳ ବିନ୍ଦୁ । ଏହି ଉପନ୍ୟାସରେ ନାୟିକା କୁମୁଦ ତାର ବାଞ୍ଛିତ ପ୍ରେମିକ ସହିତ ମିଳିତ ହୋଇ ନ ପାରି ମାନସିକ ରାଜ୍ୟରେ ପ୍ରେମ ଓ ସନ୍ତୋଷଲାଭ କରିପାରିଥିଲା । ଦର୍ଶନ ଦୂରଦୃଷ୍ଟି-ଯୁକ୍ତ ଭାରତର ଅସାଧାରଣ ସଂହିତ ଏହି ଉପନ୍ୟାସର ଶ୍ରେଷ୍ଠତ୍ୱ ତଥା ମହତ୍ତ୍ୱର ଏକ ଏକ ପ୍ରତୀକ । ଶିଳ୍ପକଳାର ବିଚାରରେ ମଧ୍ୟ ଏହି ଉପନ୍ୟାସର ମହତ୍ତ୍ୱ ସ୍ୱୀକାର୍ଯ୍ୟ । ଉଭୟ ବାସ୍ତବତା ଏବଂ ଆଦର୍ଶର ସମନ୍ୱୟ ଏହାର ପ୍ରଧାନ ଆବେଦନ । ଏଥିରେ ଜୀବନର ବୈଚିତ୍ର୍ୟ, ସୃଜନିକ ବିବିଧତା ମଧ୍ୟ ଉଲ୍ଲେଖଯୋଗ୍ୟ । ଗୋବର୍ଦ୍ଧନ ଜୀବନରେ ସୌନ୍ଦର୍ଯ୍ୟ ଏବଂ ଆଦର୍ଶର ଆବିଷ୍କାର କରିଥିଲେ, ସମସାମୟିକ ସମାଜରୁ ସେ ତାଙ୍କର ବିଷୟବସ୍ତୁ ଗ୍ରହଣ କରିଥିଲେ ।

ଏହି ଯୁଗରେ ଆନନ୍ଦଶଂକର ଧ୍ରୁବ, ମଣିଲାଲ ଦ୍ୱିବେଦୀ, ରମଣଭାଇ ନୀଳକଣ୍ଠ ପ୍ରଭୃତି ଚିନ୍ତାଶୀଳ ସାହିତ୍ୟିକ, ନରସିଂହ ରାଓ ଭୋଳାନାଥ ଦିବାଟିଆ (୧୮୫୯-୧୯୩୭), ମଣିଶଙ୍କର ଭଟ୍ଟ (କାନ୍ତ), ପ୍ରିନ୍ସ ଅଫ୍ ଲାଥି (କଲାପୀ), ନାନାଲାଲ ଖବର ଦାର, ଅଧ୍ୟାପକ ବ. କେ. ଠାକୁର, ସୁର୍ସିଂହ ପ୍ରମୁଖ କବି ଏବଂ କେଶବଲାଲ ଧ୍ରୁବ, କମଲାଶଙ୍କର ତ୍ରିବେଦୀ ପ୍ରଭୃତି ପଣ୍ଡିତ ସେମାନଙ୍କର ବିବିଧ ରଚନା ଦ୍ୱାରା ଗୁଜୁରାଟୀ ସାହିତ୍ୟକୁ ସମୃଦ୍ଧ କରିଥିଲେ । ଏହି ସାହିତ୍ୟିକମାନଙ୍କର ବୌଦ୍ଧିକ ସ୍ୱାତନ୍ତ୍ର୍ୟ ହିଁ ଥିଲା ଯୁଗର ଲକ୍ଷଣ । କାରଣ କବିମାନଙ୍କ ରଚନାରେ ନୂତନ ମୂଲ୍ୟବୋଧର ଏକ ଅପୂର୍ବ ଆଭାସ ପରିଦୃଷ୍ଟ ହୁଏ । ଆହରଣ ଏବଂ ସମନ୍ୱୟ ସାଧନ ଥିଲା ସାହିତ୍ୟିକମାନଙ୍କର ଲକ୍ଷ୍ୟ ।

ଆନନ୍ଦଶଙ୍କର ଏବଂ ମଣିଲାଲ ଏକ ଉଚ୍ଚ ଦର୍ଶନ ଭିତ୍ତିରେ ସମାଜ ସଂସ୍କାର ପାଇଁ ଆହ୍ୱାନ ଦେଇଥିଲେ । ସେମାନଙ୍କ ରଚନାରେ ଦାର୍ଶନିକ ସତ୍ୟ ଏବଂ ମାନବିକ ସହାନୁଭୂତି ପ୍ରତିଫଳିତ । ଇଂରେଜ କବି ଓ୍ୱାର୍ଡ଼ସ୍‌ଓ୍ୱାର୍ଥଙ୍କ ଦ୍ୱାରା ନରସିଂହ ରାଓ ଏବଂ କଲାପୀ ପ୍ରଭାବିତ ହୋଇଥିଲେ । ମାତ୍ର ନାନାଲାଲଙ୍କ କବିତାରେ ଟେନିସନ୍ ଏବଂ କୀଟ୍‌ସ୍‌ଙ୍କ ପ୍ରଭାବ ପରିଲକ୍ଷିତ ହୁଏ । ରମଣଭାଇଙ୍କ ରଚନା ଉପନିଷଦ ଏବଂ ପାଶ୍ଚାତ୍ୟ ଚିନ୍ତା ଦ୍ୱାରା ପ୍ରଭାବିତ ହୋଇଥିଲା । ଠାକୋରଙ୍କ କବିତାରେ ବ୍ରାଉନିଂଙ୍କ କବିତାର ପ୍ରଭାବ ପଡ଼ିଥିଲା ।

କବି ନରସିଂହ ରାଓ, ଭୋଳନାଥ ଦିବାଟିଆ (୧୮୫୯-୧୯୩୭) ଜଣେ ଗବେଷକ, ଭାଷାତତ୍ତ୍ୱବିତ୍ ଏବଂ ସମାଲୋଚକ ଥିଲେ । ତାଙ୍କର ଶ୍ରେଷ୍ଠ କୃତି 'ସ୍ମରଣ ସଂହିତା' ଏକ ଶୋକ ଗୀତିକା । ଇଂରେଜ କବି ଟେନିସନ୍‌ଙ୍କ ପ୍ରସିଦ୍ଧ ରଚନା In Memoriamର ପ୍ରଭାବ ଏଥିରେ ପରିଦୃଷ୍ଟ । ପ୍ରବନ୍ଧ ସ୍ମୃତି ଚରିତ ଶୀର୍ଷକ ତାଙ୍କର ବହୁ ହାସ୍ୟରସାତ୍ମକ ଗଦ୍ୟରଚନା ଗୁଜୁରାଟୀ ସାହିତ୍ୟରେ ବିଶେଷ ଅଦ୍ଭୁତ ।

ପ୍ରାବନ୍ଧିକ ଏବଂ ଦାର୍ଶନିକ ମଣିଲାଲ ଦ୍ୱିବେଦୀ (୧୮୫୮-୧୮୯୮) ପରମ୍ପରା ପ୍ରତି ଆସକ୍ତ ଥିଲେ । ସେ କବିତା, ନାଟକ ଏବଂ ଉପନ୍ୟାସ ଲେଖିଥିଲେ । ତାଙ୍କ ନାଟକ ଏବଂ ଉପନ୍ୟାସର ନାମ ଯଥାକ୍ରମେ 'କାନ୍ତା' ଓ 'ଗୁଲାବ ସିଂ' (୧୮୮୭) । ମଣିଶଙ୍କର ଭଟ୍ଟ (୧୮୬୭-୧୯୨୩)ଙ୍କ କବିତାରେ ଜୀବନର ଆଧ୍ୟାତ୍ମିକ ସଙ୍ଘର୍ଷ ଏବଂ କରୁଣ ବାସ୍ତବତା ପ୍ରତିଫଳିତ । କଲାପୀ (୧୮୭୪-୧୯୦୦) ଜଣେ ଉଚ୍ଚକୋଟୀର କବି ଥିଲେ । ତାଙ୍କ କବିତାରେ ବ୍ୟକ୍ତିଜୀବନର କରୁଣ ନୈରାଶ୍ୟ ହିଁ ପ୍ରତିଫଳିତ । ତାଙ୍କ କବିତାର ଗଠନକଳା ଏବଂ ଅନ୍ତର୍ଦୃଷ୍ଟି ମଧ୍ୟ ପ୍ରଶଂସନୀୟ । କବି ନାନାଲାଲ (୧୮୭୭-୧୯୪୬) ପ୍ରଭାବଶାଳୀ କବିରୂପେ ସୁପରିଚିତ । ଛନ୍ଦ, ଅଲଙ୍କାର ଶୈଳୀ ଏବଂ ବିଷୟବସ୍ତୁର ବିବିଧତା ତାଙ୍କ କବିତାର ମୁଖ୍ୟ ଯୋଗ୍ୟତା ।

ଭଜନ, ଗୀତିକବିତା, ସମ୍ବୋଧନ ଗୀତିକା, ବର୍ଣ୍ଣନାତ୍ମକ କାବ୍ୟ, ଉପନ୍ୟାସ, ନାଟକ, ଗଳ୍ପ, ପ୍ରବନ୍ଧ, ଜୀବନୀ ଏପରି ବିବିଧ ସାହିତ୍ୟ କର୍ମ ନାନାଲାଲଙ୍କ ପ୍ରତିଭାର ନିଦର୍ଶନ । ସେଥିପାଇଁ ନାନାଲାଲ ଏହି ଯୁଗର ଶ୍ରେଷ୍ଠ କବିରୂପେ ବିବେଚିତ ହୋଇଥାନ୍ତି । ତାଙ୍କର ଶ୍ରେଷ୍ଠ ଅପାଦ୍ୟଗଦ୍ୟ କବିତା 'ବସନ୍ତୋତ୍ସବ' ପାଠକମାନଙ୍କ ଦ୍ୱାରା ବେଶ୍ ଆଦୃତ ହୋଇଥିଲା । ବୀରତ୍ୱ, ସ୍ୱଦେଶାନୁରାଗ, ପ୍ରେମ, ସୌନ୍ଦର୍ଯ୍ୟ ଏବଂ ଗଭୀର ସତ୍ୟାନୁଭୂତି ତାଙ୍କ କବିତାରେ ପ୍ରତିବିମ୍ବିତ । ବ୍ୟକ୍ତି, ସମାଜ ଓ ଇତିହାସର ବିଶ୍ଳେଷଣ କରିବା ତାଙ୍କ ପ୍ରତିଭାର ସଙ୍କେତ । ତାଙ୍କର ଇନ୍ଦ୍ରକୁମାରରେ ପ୍ରେମ ଓ ବିବାହର ସମସ୍ୟା ବର୍ଣ୍ଣିତ । ଏକ ଗୀତିନାଟ୍ୟ 'ଜୟଜୟନ୍ତ' ଏବଂ ବିଶ୍ୱ ଗୀତାରେ ଜୀବନଦର୍ଶନ ପ୍ରତିବିମ୍ବିତ । ନାନାଲାଲ ଜଣେ ଉଚ୍ଚକୋଟୀର କବି ଏବଂ ତାଙ୍କ କାବ୍ୟ କବିତାରେ ବିଶ୍ୱ ସୌନ୍ଦର୍ଯ୍ୟର ଏକ ତୀବ୍ର ଚେତନା ସହିତ କବିର ଗଭୀର ଅନ୍ତର୍ଦୃଷ୍ଟି, କଳ୍ପନାବିଳାସ ଦେଖିବାକୁ ମିଳେ ।

ଜଣେ ବଳିଷ୍ଠ ସମାଲୋଚକଭାବେ ରମଣ ଭାଇ ନୀଳକଣ୍ଠ (୧୮୬୮-୧୯୨୮)ଙ୍କର ଦାନ ସ୍ୱୀକାର୍ଯ୍ୟ । ତାଙ୍କର 'ଭଦ୍ରମ୍-ଭଦ୍ରା' ଏବଂ 'ରାଏ ନୋ ପାବତ' ଯଥାକ୍ରମେ ଉପନ୍ୟାସ ଏବଂ ନାଟକ ।

ଆନନ୍ଦଶଙ୍କର ଧ୍ରୁବ (୧୮୬୯-୧୯୪୨) ଜଣେ ସଂସ୍କୃତ ପଣ୍ଡିତ ଓ ଦାର୍ଶନିକ ଥିଲେ ଏବଂ ତାଙ୍କର ରଚନାରେ ଜୀବନର ମୌଳିକ ମୂଲ୍ୟବୋଧ ତଥା ଧର୍ମପ୍ରାଣତାହିଁ ପରିସ୍ଫୁଟ ହୋଇଥିଲା । ସେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ସୌନ୍ଦର୍ଯ୍ୟତତ୍ତ୍ୱର ଏକ ନିପୁଣ ବିଶ୍ଳେଷଣ କରିପାରିଥିଲେ ।

କବି, ସମାଲୋଚକ ଏବଂ ଗଦ୍ୟ ଲେଖକ ପ୍ରଫେସର ବି.କେ. ଠାକୁର (୧୮୬୯-୧୯୫୨)ଙ୍କ ପ୍ରତିଭାର ସ୍ୱାକ୍ଷର ଗୁଜୁରାଟୀ ସାହିତ୍ୟର ବିଭିନ୍ନ ବିଭାଗରେ ପରିସ୍ଫୁଟ । ରୋମାଣ୍ଟିକ୍ ଆଦର୍ଶବାଦ ଯୁଗରେ ସେ କାବ୍ୟ କବିତାର ଗଭୀର ମୂଲ୍ୟବୋଧ ତଥା ଆଭ୍ୟନ୍ତରୀଣ ଯୋଗ୍ୟତା ଉପରେ ଗୁରୁତ୍ୱ ଦେଇଥିଲେ । ସେ ରାଜନୈତିକ ତଥା ସାମାଜିକ ଆନ୍ଦୋଳନ ଯୁଗରେ ସାହିତ୍ୟ କ୍ଷେତ୍ରରେ ଥିଲେ ଏକ ସଂଯୋଗ ରକ୍ଷାକାରୀ ପ୍ରତିଭା । ତାଙ୍କର ଶ୍ରେଷ୍ଠ କବିତା ସଂକଳନ ହେଉଛି 'ଭଣାକର' । ଗୁଜୁରାଟୀ ସାହିତ୍ୟରେ ସେ ଚତୁର୍ଦ୍ଦଶପଦୀ କବିତାର ଭିତ୍ତି ସ୍ଥାପନ କରିଥିଲେ । ପ୍ରକୃତି ସୌନ୍ଦର୍ଯ୍ୟ ପ୍ରତି ତାଙ୍କର ଭିନ୍ନ ଦୃଷ୍ଟିକୋଣ ଥିଲା । ସେ ପ୍ରକୃତିରେ ଦାର୍ଶନିକ ସୌନ୍ଦର୍ଯ୍ୟ କିମ୍ବା ନୀତିବାଦର ସନ୍ଧାନ କରି ପ୍ରାକୃତିକ ସୌନ୍ଦର୍ଯ୍ୟର ସ୍ୱାଭାବିକ ପ୍ରବାହରେ ଅଭିଭୂତ ହେଉଥିଲେ । ଏହି ପ୍ରସଙ୍ଗରେ ତାଙ୍କର କବିତା ଆରୋହଣ ପ୍ରଣିଧାନଯୋଗ୍ୟ । ଅଧ୍ୟବସାୟ, ସାଧନା ଯଥାର୍ଥରେ ତାଙ୍କ କାବ୍ୟ କବିତାର ଆଦ୍ୟ ପ୍ରେରଣା । ଉଚ୍ଚକୋଟୀର କବିତା ସମୂହରେ ଯେଉଁ ଭାବ-ସ୍ୱାଚ୍ଛନ୍ଦ୍ୟ ଦେଖାଯାଏ ତାହା ତାଙ୍କ କବିତାରେ ଦେଖିବାକୁ ମିଳେ ନାହିଁ ।

  

କବି ଅର୍ଦ୍ଦେଶିର ଫରମାଜି ଖବରଦାର (୧୮୮୨-୧୯୫୩) ବିଶେଷ ଭାବରେ କବି ଦଲପତ୍‌ରାମଙ୍କ ଦ୍ୱାରା ପ୍ରଭାବିତ ହୋଇଥିଲେ । ସେ ଅମିତାକ୍ଷର ଛନ୍ଦ ପ୍ରଥମେ ପ୍ରବର୍ତ୍ତନ କରିଥିଲେ । ତାଙ୍କର ଭକ୍ତିଧର୍ମୀ ଏବଂ ଦେଶାତ୍ମବୋଧମୂଳକ କବିତାଗୁଡ଼ିକ ବେଶ୍ ଆଦୃତ ହୋଇଥିଲା । 'କଲିକା' ଏବଂ 'ଦାର୍ଶନିକା' ଯଥାକ୍ରମେ ତାଙ୍କର ଦୀର୍ଘ ପ୍ରେମ କବିତା ଓ ଦାର୍ଶନିକ ତଥ୍ୟସମ୍ବଳିତ କବିତା ।

୧୯୦୫ ମସିହାରେ ଗୁଜୁରାଟୀ ସାହିତ୍ୟ ସଭା ଗଠିତ ହୋଇଥିଲା । ବିଂଶ ଶତାବ୍ଦୀର ପ୍ରଥମ ପାଦରେ ଗୁଜୁରାଟୀ ସାହିତ୍ୟର ସ୍ୱରୂପ ଏବଂ ଆଭିମୁଖ୍ୟ ଏହିପରି ଏକ ଆଗାମୀ ଭବିଷ୍ୟତର ଆହ୍ୱାନରେ କ୍ରମଶଃ ପ୍ରବର୍ତ୍ତିତ ହେଉଥିଲା । ଏକ ବଳିଷ୍ଠ ଜାତୀୟ ଜୀବନର ଇଙ୍ଗିତରେ ସବୁଠି ମାନସ ରାଜ୍ୟରେ ବିପ୍ଳବର ସୂତ୍ରପାତ ହେଲା । ରାଜନୈତିକ ସ୍ୱାଧୀନତାର ଉନ୍ମାଦନା ଜନସାଧାରଣଙ୍କୁ ଆଲୋଡ଼ିତ କରିଥିଲା । ୧୮୮୫ରେ ଜାତୀୟ କଂଗ୍ରେସ ପ୍ରତିଷ୍ଠା, ୧୯୦୧ ମସିହାରେ ଅହମଦାବାଦଠାରେ ଜାତୀୟ କଂଗ୍ରେସ ବୈଠକ, ୧୯୦୫ ମସିହାରେ ବଙ୍ଗ ବିଚ୍ଛେଦ, ସ୍ୱଦେଶୀ ଆନ୍ଦୋଳନ, ଗୁଜୁରାଟର ଜନଜୀବନରେ ଅବଶ୍ୟ ପ୍ରଭାବ ପକାଇଥିଲା । ପୁନଶ୍ଚ ଗୁଜୁରାଟର ମୋହନଦାସ କରମଚାନ୍ଦ ଗାନ୍ଧୀଙ୍କର ଆବିର୍ଭାବରେ (୧୮୬୯-୧୯୪୮) କେବଳ ରାଜନୀତି କ୍ଷେତ୍ରରେ ନୁହେଁ, ଗୁଜୁରାଟୀ ସାହିତ୍ୟରେ ମଧ୍ୟ ଏକ ଅଭୂତପୂର୍ବ ଜାଗରଣ ଏବଂ ଚାଞ୍ଚଲ୍ୟ ଦେଖାଦେଇଥିଲା । ରାଜନୈତିକ, ସାମାଜିକ ଏବଂ ବୌଦ୍ଧିକ ଏପରି ପ୍ରତ୍ୟେକ କ୍ଷେତ୍ରରୁ ପୂର୍ବ ଯୁଗର ଶିଥିଳତା ତଥା ଅବସାଦ ଦୂରୀଭୂତ ହେଲା । ଗୁଜୁରାଟର ରାଜନୈତିକ ପ୍ରାଧାନ୍ୟ ବୃଦ୍ଧି ସଙ୍ଗେ ସଙ୍ଗେ ବୌଦ୍ଧିକ ତଥା ସାହିତ୍ୟିକ ଗୌରବ ମଧ୍ୟ ପ୍ରତିଷ୍ଠିତ ହେଲା । କାବ୍ୟ କବିତା, ଉପନ୍ୟାସ ପ୍ରଭୃତି ରଚନାରେ ଏହି ରାଷ୍ଟ୍ରୀୟ ସାମାଜିକ ଚେତନା ସହିତ ମହାତ୍ମା ଗାନ୍ଧୀଙ୍କ ପ୍ରଭାବରେ ଏକ ଅପୂର୍ବ ଆଧ୍ୟାତ୍ମିକ ସ୍ପର୍ଶ ଯେପରି ଅନୁଭୂତ ହେଲା । ସାମ୍ପ୍ରତିକ ରାଜନୈତିକ ଆଦର୍ଶ ମଧ୍ୟ ବାଲଗଙ୍ଗାଧର ତିଲକ, ଗୋପାଳକୃଷ୍ଣ ଗୋଖଲେ, ଆନିବେସାନ୍ତଙ୍କ ସଦୃଶ ଚିନ୍ତାନାୟକମାନଙ୍କ ଦ୍ୱାରା ପ୍ରବର୍ତ୍ତିତ ହେଲା । ଇନ୍ଦୁଲାଲ ଯାଜ୍ଞିକଙ୍କ ଗୁଜୁରାଟୀ ଭାଷାରେ 'ନବଜୀବନ ଏବଂ ସତ୍ୟ' ପତ୍ରିକାହିଁ ସାହିତ୍ୟରେ ନବଯୁଗର ବାଣୀ ବହନ କରିଥିଲା । ଏହି ସମୟରେ ଗୁଜୁରାଟୀରେ ଲିଖିତ ସମସ୍ତ କାବ୍ୟ କବିତା, ଗଳ୍ପ ଉପନ୍ୟାସମାନଙ୍କରେ ଗାନ୍ଧୀଙ୍କର ପ୍ରବର୍ତ୍ତିତ ସତ୍ୟ, ଅହିଂସା ଏବଂ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଆଦର୍ଶହିଁ ପ୍ରତିଧ୍ୱନିତ ହୋଇଥିଲା । ସ୍ୱଦେଶୀ ଆଦର୍ଶର ଏକ ଅପୂର୍ବ ବାଣୀ କବିର ଲେଖନୀରେ ମୂର୍ଚ୍ଛିତ ହୋଇଥିଲା ।

୧୯୨୦ ମସିହା ପରବର୍ତ୍ତୀ କାଳରେ ଗୁଜୁରାଟୀ ସାହିତ୍ୟରେ ଗାନ୍ଧୀଜୀଙ୍କର ନୂତନ ଦୃଷ୍ଟିକୋଣ, ନୂତନ ସଙ୍ଗଠନଶକ୍ତି ଏବଂ ଅଧ୍ୟାତ୍ମିକ ଧ୍ୟାନ ଧାରଣା ଶୁଭଙ୍କର ପ୍ରଭାବ ସୃଷ୍ଟି କରିପାରିଥିଲା । ତାଙ୍କର ଲିଖିତ ଦକ୍ଷିଣ ଆଫ୍ରିକାନା-ସତ୍ୟାଗ୍ରହ-ନୋ-ଇତିହାସ ଆତ୍ମକଥା ଜଣେ ମୁକ୍ତିପିପାସୁ ଆଦର୍ଶ ପୁରୁଷର ଅଭିଜ୍ଞତା ପ୍ରସୂତ ହେଲେହେଁ

ସେଥିରେ ସାଧାରଣ ଜୀବନର ଅସାଧାରଣ ଚିନ୍ତା ମଧ୍ୟ ପ୍ରତିଫଳିତ । ଇଂରେଜ ସରକାର ସହିତ ବ୍ୟକ୍ତି ଓ ଜାତିର ବାହ୍ୟ ସଙ୍ଘର୍ଷ ଅପେକ୍ଷା ବ୍ୟକ୍ତି ଓ ଜାତିର ଆଭ୍ୟନ୍ତରୀଣ ସଙ୍ଘର୍ଷହିଁ ଗାନ୍ଧୀଙ୍କ ବିଭିନ୍ନ ରଚନାରେ ପରିଦୃଷ୍ଟ । ବିଭିନ୍ନ ଧର୍ମ ଓ ସମ୍ପ୍ରଦାୟର ବିଶ୍ୱାସ ମଧ୍ୟରେ ଗାନ୍ଧୀ ଏକ ସାର୍ବଜନୀନ ଧର୍ମ ଓ ଧର୍ମବିଶ୍ୱାସର ସାରବସ୍ତୁ ଉପଲବ୍ଧି କରିପାରି ଥିଲେ । ଆତ୍ମାର ବିଜୟହିଁ ଥିଲା ଗାନ୍ଧୀଙ୍କ ଶିକ୍ଷା ଓ ସାଧନାର ମୂଳ ମନ୍ତ୍ର; ତଥା ଗୀତାଶ୍ରୀୟ ସାଧନାର ଉଦ୍ଦେଶ୍ୟ । ତେବେ ଏହି ଚେତନା ଓ ପ୍ରଭାବ କ୍ରମଶଃ ସମ୍ପ୍ରସାରିତ ହୋଇଥିଲା ଏବଂ ଗାନ୍ଧିଜୀଙ୍କ ସହକର୍ମୀମାନଙ୍କ ଅଜସ୍ର ରଚନାରେହିଁ ତାହା ପ୍ରତ୍ୟକ୍ଷୀଭୂତ ହେଲା । ସେମାନଙ୍କ ମଧ୍ୟରେ ପ୍ରାବନ୍ଧିକ କାକା କାଲେଲ୍‌କରଙ୍କର ପ୍ରବନ୍ଧାବଳୀ, କାବ୍ୟକବିତା ଉଲ୍ଲେଖଯୋଗ୍ୟ । ସୌନ୍ଦର୍ଯ୍ୟପ୍ରେମ, ଜୀବନ ଓ ସମାଜ, କଳା ଓ ସାହିତ୍ୟର ସମୀକ୍ଷାହିଁ ତାଙ୍କର ବଳିଷ୍ଠ ଲେଖନୀର ସ୍ମାରକୀ । ତାଙ୍କର ସୌନ୍ଦର୍ଯ୍ୟ ଧାରଣା ନୈତିକ ସତ୍ୟ ଉପରେହିଁ ଆଧାରିତ । 'ହିମାଳୟ-ନୋ-ପ୍ରବାସ', 'ସ୍ମରଣଯାତ୍ରା', 'ଜୀବନ-ନୋ-ଆନନ୍ଦ', 'ଲୋକମାତା' ପ୍ରଭୃତି ତାଙ୍କର ବହୁ ପଠିତ ରଚନାବଳୀ । ଗାନ୍ଧିଜୀଙ୍କ ଅନୁପ୍ରାଣିତ ଲେଖକମାନଙ୍କର ରଚନାରେ ସତ୍ୟହିଁ ବିଶେଷ ପ୍ରକଟିତ । କିଶୋରୀଲାଲ ମଶ୍ରୁୱାଲା, ମହାଦେବ ଦେଶାଇ, ନରହରି ପରେଖ ପ୍ରମୁଖଙ୍କ ରଚନା ସତ୍ୟାନୁସନ୍ଧାନ ଦ୍ୱାରା ବିଶେଷ ଚହ୍ନିତ । ଶିକ୍ଷା, ସମାଜ, ଅର୍ଥନୀତି ପ୍ରସଙ୍ଗରେ ଏହି ଲେଖକମାନେ ବରାବର ଆଲୋକପାତ କରୁଥିଲେ ।

ଗାନ୍ଧିଜୀଙ୍କ ଆଦର୍ଶ ଅନୁପ୍ରାଣିତ ଲେଖକମାନଙ୍କର ଅଜସ୍ର ରଚନା ମାଧ୍ୟମରେ ଗୁଜୁରାଟୀ ସାହିତ୍ୟକୁ ବିଶିଷ୍ଟ ଦାନ ହେଉଛି ଏକ ନିର୍ଦ୍ଦିଷ୍ଟ ବଳିଷ୍ଠ ଗଦ୍ୟଶୈଳୀ । ନରହରି ପରେଖ ଓ କିଶୋରୀଲାଲ ମଶ୍ରୁୱାଲାଙ୍କର ସତ୍ୟାନୁସନ୍ଧାନ, ଶିକ୍ଷା ଓ ସମାଜ ସଂସ୍କାରପ୍ରାଣତା ଗୁଜୁରାଟୀ ପ୍ରବନ୍ଧ ସାହିତ୍ୟର ଜୀବନୀଶକ୍ତି ବୃଦ୍ଧି କରିଥିଲା । ମହାଦେବ ଦେଶାଇ ଗାନ୍ଧୀଙ୍କର ସମସ୍ତ ଗଦ୍ୟରଚନା ଅନୁବାଦ କରିଥିଲେ । ଏହି ଗାନ୍ଧିବାଦୀ ପ୍ରାବନ୍ଧିକମାନଙ୍କ ରଚନାସମୂହ ଭାଷାର ସ୍ୱାତନ୍ତ୍ର୍ୟ, ବୌଦ୍ଧିକତାର ତୀକ୍ଷ୍ଣତା ଏବଂ ମାନବିକ ମୂଲ୍ୟବୋଧ ଦ୍ୱାରା ଚହ୍ନିତ ।

ଏହି କାଳରେ କାକା କାଲେଲ୍‌କାର ବିଶିଷ୍ଟ ପ୍ରାବନ୍ଧିକଭାବେ ପ୍ରସିଦ୍ଧି ଅର୍ଜନ କରିଥିଲେ । ରତିଲାଲ ତ୍ରିବେଦୀଙ୍କ ପ୍ରବନ୍ଧ ପାଣ୍ଡିତ୍ୟପୂର୍ଣ୍ଣ । ଜ୍ୟୋତୀନ୍ଦ୍ର ଡାଭେଙ୍କର (୧୯୦୧) ପ୍ରବନ୍ଧସମୂହ ବ୍ୟଙ୍ଗ-ବିଦ୍ରୂପାତ୍ମକ । ସେଥିପାଇଁ ଡାଭେ ଗୁଜୁରାଟୀ ସାହିତ୍ୟର ଜଣେ ପ୍ରଧାନ ବ୍ୟଙ୍ଗଧର୍ମୀ ପ୍ରାବନ୍ଧିକ ବୋଲି କୁହାଯାଏ । ଲୀଲାବତୀ ମୁନ୍‌ସୀ, ରାମନାରାୟଣ ପାଠକ ପ୍ରମୁଖ ପ୍ରବନ୍ଧ ରଚନା କରିଥିଲେ । ସମାଲୋଚନା ସାହିତ୍ୟ କ୍ଷେତ୍ରରେ ବିଜୟ ରାୟ ବୈଦ୍ୟ (୧୮୯୭), ବିଶ୍ୱନାଥ ଭଟ୍ଟ (୧୮୯୧), ବିଷ୍ଣୁପ୍ରସାଦ ତ୍ରିବେଦୀଙ୍କର ନାମ ଉଲ୍ଲେଖଯୋଗ୍ୟ । ପ୍ରାଚ୍ୟ ପାଶ୍ଚାତ୍ୟ ସାହିତ୍ୟରେ ସମାଲୋଚନା

ପଦ୍ଧତି ସମ୍ପର୍କରେ ଏହି ଲେଖକମାନେ ଅବହିତ ଥିଲେ । ଗୁଜୁରାଟୀରେ ଚିନ୍ତାତ୍ମକ ଗଦ୍ୟ ସାହିତ୍ୟର ବିକାଶ ଶ୍ରୀ ଅରବିନ୍ଦଙ୍କର ଦାର୍ଶନିକ ପ୍ରବନ୍ଧର ଅନୁବାଦ ଦ୍ୱାରା ସମ୍ଭବ ହୋଇଥିଲା । କବି ପୁରଣୀ ଏବଂ ସୁନ୍ଦରମ୍ ଏହି ଅନୁବାଦ କରିଥିଲେ ।

ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଗୁଜୁରାଟୀ ସାହିତ୍ୟରେ ସର୍ବଶ୍ରେଷ୍ଠ ଜୀବନଧର୍ମୀ ସ୍ରଷ୍ଟା ଓ ଅପ୍ରତିଦ୍ୱନ୍ଦ୍ୱୀ ଔପନ୍ୟାସିକ ଭାବରେ କହ୍ନେଇଲାଲ ମାନେକଲାଲ ମୁନ୍‌ସୀ (୧୮୮୭-୧୯୭୦) । ସେ ଥିଲେ ଏକ ବହୁମୁଖୀ ପ୍ରତିଭା, ଯାହାର ଉଜ୍ଜ୍ୱଳ ସ୍ପର୍ଶରେ ଗୁଜୁରାଟର ଭାଷା, ସଂସ୍କୃତି ଓ ସାହିତ୍ୟ ଓତଃପ୍ରୋତ ଭାବରେ ରୂପାନ୍ତରିତ ହୋଇପାରିଥିଲା । ପ୍ରବନ୍ଧ, ଉପନ୍ୟାସ, ଜୀବନୀ, ଗଳ୍ପ, ନାଟକ—ସାହିତ୍ୟର ଏପରି ବିଭିନ୍ନ ବିଭାଗରେ ତାଙ୍କର ଜ୍ୱାଳାମୟୀ ବାଣୀ ପ୍ରତିଧ୍ୱନିତ ହୋଇଥିଲା । ତାଙ୍କର ସାହିତ୍ୟ ସୃଷ୍ଟି ଉଭୟ ଆନନ୍ଦ, ଆଶା ଓ କଳାତ୍ମକତା ଦ୍ୱାରା ଚିହ୍ନିତ । ଏକ ନିର୍ଦ୍ଦିଷ୍ଟ ଶୈଳ୍ପିକ ଅଭିବ୍ୟକ୍ତିର ଅଧିକାରୀ ସେ ହୋଇପାରିଥିଲେ । 'ଜୟସୋମନାଥ' 'ଭଗବାନ ପର୍ଶୁରାମ', 'ପୃଥିବୀ ବଲ୍ଲଭ', 'ଗୁଜୁରାଟ ନୋ ନାଥ' ପ୍ରଭୃତି ତାଙ୍କର ଅଦ୍ଭୁତ ଉପନ୍ୟାସ ଏବଂ ଏହି ଉପନ୍ୟାସଗୁଡ଼ିକରେ ମୁନ୍‌ସୀ ନିଜ ଅପୂର୍ବ ସୃଷ୍ଟିଧର୍ମୀ ଶକ୍ତିର ପରିଚୟ ଦେଇପାରିଛନ୍ତି । ଉପନ୍ୟାସର ବିଭିନ୍ନ ଚରିତ୍ରମାନଙ୍କରେ ଲେଖକଙ୍କର ଆଦର୍ଶ ତଥା ଜୀବନଦର୍ଶନ ପ୍ରତିଫଳିତ । ମୁନ୍‌ସୀଙ୍କର ସଂଖ୍ୟାଧିକ କ୍ଷୁଦ୍ର ଗଳ୍ପ ତାଙ୍କ ସାହିତ୍ୟ ସାଧନାର ଆଉ ଏକ ନୂତନ ଦିଗ । 'ତର୍ପଣ', 'କାକା-ନିଶଶୀ', 'ଧ୍ରୁବ ସ୍ୱାମିନୀ' ଦେଖି ହେଉଛୁ ତାଙ୍କର କତିପୟ ଚିତ୍ତାକର୍ଷକ ନାଟକ । ରଚନାର ଗଠନକଳା ଅର୍ଥାତ୍ ଗଠନ ନୈପୁଣ୍ୟ ହେଉଛି ମୁନ୍‌ସିଙ୍କର କୃତିତ୍ୱ । ଶୈଳ୍ପିକ ଯୋଗ୍ୟତା ବ୍ୟତୀତ ମୁନ୍‌ସୀଙ୍କର ସାହିତ୍ୟ ଏକ ଅପୂର୍ବ ଆଦର୍ଶବାଦ ଦ୍ୱାରା ପରିପୁଷ୍ଟ । ତାହା ହେଉଛି ଜୀବନର ପବିତ୍ରତା, ଶୁଦ୍ଧତା ଏବଂ ନୀତିବାଦ । ବ୍ୟକ୍ତିର ଜୀବନରେ ଏହି ଆଦର୍ଶବାଦର ବିରାଟ ଉପାଦେୟତା ସ୍ୱୀକୃତ । ଆଦର୍ଶ ନିକଟରେ ଓ ବଳିଷ୍ଠ ବ୍ୟକ୍ତିତ୍ୱ ନିକଟରେ ଆଡ଼ମ୍ବରର ପରାଜୟ ମୁନ୍‌ସୀଙ୍କ କୃତିରେ ପ୍ରଦର୍ଶିତ । ସେଥିପାଇଁ ମୁନ୍‌ସୀଙ୍କ ଗଳ୍ପ ଉପନ୍ୟାସ ପ୍ରବନ୍ଧର ନୈତିକ ପ୍ରେରଣା ସର୍ବାପେକ୍ଷା ଅଧିକ । ସମାଜରେ ଆଦର୍ଶ ବ୍ୟକ୍ତି ଓ ଆଦର୍ଶବାଦ ସୃଷ୍ଟି କରିବା ମୁନ୍‌ସୀଙ୍କର ଲକ୍ଷ୍ୟ ଥିଲା । ବମ୍ବେର 'ବିଦ୍ୟାଭବନ' ମୁନ୍‌ସିଙ୍କ ପରିକଳ୍ପିତ ଶୁଦ୍ଧ ଜୀବନର ଯେପରି କର୍ମକେନ୍ଦ୍ର ଥିଲା । ଆଧୁନିକ ସମାଜର ହିତ ଦୃଷ୍ଟିରୁ ସେ ଭଗବତ୍ ଗୀତାର ବିଶ୍ଳେଷଣ କରିଥିଲେ ।

ଗୁଜୁରାଟୀ ସାହିତ୍ୟର ଇତିହାସ ପ୍ରଣୟନ କ୍ଷେତ୍ରରେ ମୁନ୍‌ସୀ ମଧ୍ୟ ଅଗ୍ରଣୀ । ତାଙ୍କର 'ଗୁଜୁରାଟ ଏବଂ ତାର ଇତିହାସ' (Gujrat and its Literature) ଏକ ମୂଲ୍ୟବାନ ଗ୍ରନ୍ଥ ।

ଏହି ସମୟରେ ରାମଲାଲ ଦେଶାଇ, ମେଘାନି, ଚୁନିଲାଲ ସାହା ଏବଂ ଗୌରୀଶଙ୍କର ଯୋଶୀ (ଧୂମକେତୁ), ଧନସୁଖଲାଲ ମେହେଟା, ରାମନାରାୟଣ ପାଠକ ପ୍ରଭୃତି ଲେଖକମାନେ ଯଥାକ୍ରମେ ବହୁ ଉପନ୍ୟାସ ଓ ଗଳ୍ପ ରଚନା କରିଥିଲେ ।

ଇତିହାସ, ତତ୍କାଳୀନ ସମାଜ ସେମାନଙ୍କ ଉପନ୍ୟାସର ଉପଜୀବ୍ୟ ଥିଲା । ରାମଲାଲ ଏବଂ ମେଘାଣୀଙ୍କ ଉପନ୍ୟାସ ସମସାମୟିକ ସମାଜ ଉପରେ ଆଧାରିତ ହୋଇଥିବା ସ୍ଥଳେ ଚୁନୀଲାଲଙ୍କ ଉପନ୍ୟାସ ଇତିହାସଧର୍ମୀ ହୋଇଥିଲା । ରାମଲାଲଙ୍କ ଉପନ୍ୟାସ ମଧ୍ୟରେ 'କୋକିଳ', 'ଦିବ୍ୟ ଚକ୍ଷୁ', 'ଗ୍ରାମଲକ୍ଷ୍ମୀ', 'ଭରେଲୋ ଅଗ୍ନି' ଉଲ୍ଲେଖଯୋଗ୍ୟ । ମାନବିକ ସହାନୁଭୂତି, ଗଳ୍ପ କଥନଶୈଳୀ ଏବଂ ଚରିତ୍ର ଚିତ୍ରଣଗତ ନିପୁଣତା ରାମଲାଲଙ୍କ ଉପନ୍ୟାସର ପ୍ରାଣ । ଧୂମକେତୁଙ୍କ ଉପନ୍ୟାସରେ ସୌନ୍ଦର୍ଯ୍ୟ, ମାନବିକ ଭାବପ୍ରବଣତା, ତଥା ଆଦର୍ଶ ପରିଦୃଷ୍ଟ ଏବଂ ମେଘାନୀଙ୍କ ଉପନ୍ୟାସରେ ଜୀବନରେ ଯାହା ବାସ୍ତବ ସତ୍ୟ, ତାହାହିଁ ପ୍ରତିଫଳିତ ।

ଧନସୁଖଲାଲ ମେହେଟା ଏବଂ ଜ୍ୟୋତୀନ୍ଦ୍ର ଡାଭେଙ୍କ ମିଳିତ ସମ୍ପାଦନାରେ 'ଆମେ ବଡଣ' ନାମକ ଉପନ୍ୟାସ ପ୍ରକାଶିତ ହୋଇଥିଲା । ଏହି ଉପନ୍ୟାସରେ ସୌରାଷ୍ଟ୍ରର ଚିତ୍ର ପ୍ରତିଫଳିତ । ଏହି ଯୁଗରେ ଔପନ୍ୟାସିକମାନଙ୍କ ଲେଖନୀରେ ଗୁଜୁରାଟ, ବମ୍ବେ ଏବଂ ସୌରାଷ୍ଟ୍ରର ବାସ୍ତବଚିତ୍ର ବିଶେଷ ପ୍ରକଟିତ ହୋଇଥିଲା । ପାନାଲାଲ ପଟେଲ ଏବଂ ଗୁଣବନ୍ତରାୟ ଆଚାର୍ଯ୍ୟ (ସୋପାନ) ମଧ୍ୟ ଉପନ୍ୟାସ ରଚନା କରିଥିଲେ ।

ଏହି ପର୍ଯ୍ୟାୟରେ ଉପନ୍ୟାସ ଅପେକ୍ଷା କ୍ଷୁଦ୍ରଗଳ୍ପ ପ୍ରଥମେ କଳାତ୍ମକ ରୂପ ପ୍ରବର୍ତ୍ତିନ କରିପାରିଥିଲା । ଗୁଜୁରାଟୀ ନାଟକ ମଧ୍ୟ ବହୁ ବିଳମ୍ବରେ ବିକାଶପ୍ରାପ୍ତ ହୋଇଥିଲା । ଲୋକପ୍ରିୟ ରଙ୍ଗମଞ୍ଚ ଏବଂ ଆଧୁନିକ ନାଟ୍ୟ ରଚନା ମଧ୍ୟରେ ଯେଉଁ ବ୍ୟବଧାନ ଥିଲା, ଚନ୍ଦ୍ରମୋହନ ମେହେଟ୍ଟା (୧୯୦୧) ତାହା ଦୂର କରିପାରିଥିଲେ । 'ଆଗାଗାଡ଼ି' ହେଉଛି ତାଙ୍କର ଗୋଟିଏ ଲୋକପ୍ରିୟ ନାଟକ । ଗୁଜୁରାଟୀ ସାହିତ୍ୟରେ ନୂତନ ନାଟ୍ୟଶୈଳୀର ସେ ଥିଲେ ପ୍ରବର୍ତ୍ତକ । ଗଳ୍ପ, ଉପନ୍ୟାସ, ନାଟକ ମାଧ୍ୟମରେ ଗୁଜୁରାଟ ଜନଜୀବନର ଯେଉଁ ମହିମାମୟ ରୂପ ପ୍ରକଟିତ, ତାହାର କମନୀୟ ଏବଂ ଶାନ୍ତ ବିରହ ତଥା ଆତ୍ମାର ମୃଦୁ ଗୁଞ୍ଜନ କାବ୍ୟ କବିତା ମାଧ୍ୟମରେ ଉଦ୍‌ଘୋଷିତ । ଏହି ଯୁଗରେ ଇନ୍ଦୁଲାଲ ଗାନ୍ଧୀ, ଉମାଶଙ୍କର ଯୋଶୀ, ସୁନ୍ଦରଜୀ ବେଟାଇ, ମନସୁଖଲାଲ ଜାଭେରୀ, ସୁନ୍ଦରମ୍, ଜେବରଚାନ୍ଦ ମେଘାନୀ, ରାମନାରାୟଣ ପାଠକ, ସ୍ନେହରଶ୍ମି ଏହି ପର୍ଯ୍ୟାୟର କାବ୍ୟକାର । ଭଜନ, ବୈଚିତ୍ର୍ୟମୟ ଗୀତି କବିତା, ଚତୁର୍ଦ୍ଦଶପଦୀ କବିତା, ବର୍ଣ୍ଣନାତ୍ମକ କାବ୍ୟ ଏହି ଯୁଗର ଉଲ୍ଲେଖଯୋଗ୍ୟ ସୃଷ୍ଟି । ଉପଯୋଗୀ ଭାଷା, ଛନ୍ଦ ଏବଂ ନୂତନ ଆଙ୍ଗିକର ପ୍ରୟୋଗ ଏହି ଯୁଗରେ ଆରମ୍ଭ ହେଲା । ଏହି ଯୁଗର ଉମାଶଙ୍କରଙ୍କ ବିବିଧ କବିତା ଏବଂ ସୁନ୍ଦରମ୍‌ଙ୍କ ରଚନା ଅଧିକ ସ୍ୱାତନ୍ତ୍ର୍ୟ ପ୍ରଦର୍ଶନ କରିଥିଲା । ସେମାନଙ୍କ କବିତାର ଗାମ୍ଭୀର୍ଯ୍ୟ, ଅନ୍ତର୍ଦୃଷ୍ଟି ଏବଂ ସାର୍ବଜନୀନ ଆବେଦନ ଉଲ୍ଲେଖଯୋଗ୍ୟ । ଏହି ଯୁଗର କବିମାନଙ୍କ କବିତାବଳୀରେ ଜୀବନର ବିଶ୍ଳେଷଣ ସଙ୍ଗେ ସଙ୍ଗେ ଆଧ୍ୟାତ୍ମିକ ମୂଲ୍ୟବୋଧ ମଧ୍ୟ ପ୍ରତିଫଳିତ ହୋଇଥିଲା ।

ଆଦର୍ଶ, ବିଶ୍ୱାସ ଏବଂ ଧର୍ମଜଗତର ବିଭିନ୍ନ ଚିନ୍ତା ମଧ୍ୟ ଆଧୁନିକ ଗୁଜୁରାଟୀ କାବ୍ୟ କବିତାକୁ ସମୃଦ୍ଧ କରିପାରିଛି । ନିର୍ଦ୍ଦିଷ୍ଟ ଜୀବନଦର୍ଶନ ଏବଂ ଧର୍ମବିଶ୍ୱାସ ଯୋଗୁ କାବ୍ୟ କବିତା ଉଲ୍ଲେଖଯୋଗ୍ୟ ଭାବରେ ପରିପୁଷ୍ଟ ହୋଇଛି । ଏହି ପ୍ରସଙ୍ଗରେ ସାଧକ ଶ୍ରୀଅରବିନ୍ଦଙ୍କର ଚିନ୍ତା ଓ ପ୍ରଭାବ ଉଦାହୃତ । ଯୁବ କବିଗୋଷ୍ଠୀ ଶ୍ରୀଅରବିନ୍ଦଙ୍କ ଦର୍ଶନ ଓ ଧ୍ୟାନ ଧାରଣା ଦ୍ୱାରା ପ୍ରଭାବିତ ହୋଇ ବହୁ ଉଚ୍ଚକୋଟୀର କାବ୍ୟ କବିତା ରଚନା କରିଛନ୍ତି । ଭୋଗସର୍ବସ୍ୱ ଯାନ୍ତ୍ରିକ ସମାଜରେ ଏତାଦୃଶ କବିତା ଏକ ଆହ୍ୱାନ ବୋଲି ଜଣାଯାଏ । ଅମ୍ବାଲାଲ ପୁରାଣୀ, ସୁନ୍ଦରମଙ୍କ ଦ୍ୱାରା ଶ୍ରୀ ଅରବିନ୍ଦଙ୍କର ବିବିଧ ରଚନା ଅନୂଦିତ ହୋଇଥିଲା । ଫଳରେ ଗୁଜୁରାଟୀ ସାହିତ୍ୟରେ ସର୍ବୋଚ୍ଚ ଆଧ୍ୟାତ୍ମିକ ଶକ୍ତି ପାଇଁ ପ୍ରବଳ ଆଲୋଡ଼ନ ଅନୁଭୂତ ହେଲା । ସୁନ୍ଦରମ୍‌ଙ୍କ କବିତା ଆଧ୍ୟାତ୍ମିକ ଚିନ୍ତାଦ୍ୱାରା ଅନୁପ୍ରାଣିତ । ପିନାକୀନ ଠାକୁର, ଜୟନ୍ତ ପାଠକ, ପ୍ରଜାରାମ ରୱାଲ ପ୍ରଭୃତିଙ୍କ କବିତାରେ ଶ୍ରୀ ଅରବିନ୍ଦଙ୍କର ଦର୍ଶନ ପ୍ରତିଫଳିତ ଏବଂ ପୂଜାଲାଲ 'ଅରବିନ୍ଦ' ଆଦର୍ଶରେ ଅନୁପ୍ରାଣିତ କବି ବୋଲି ସୁପରିଚିତ ।

ଉମାଶଙ୍କର ଯୋଶୀଙ୍କ ଦ୍ୱାରା ପ୍ରାଚୀନ କବି 'ଅଖୋ'ଙ୍କର ଅଧ୍ୟୟନ ଓ ମୂଲ୍ୟାୟନ ଗୁଜୁରାଟୀ ସମାଲୋଚନା ସାହିତ୍ୟରେ ସ୍ୱତନ୍ତ୍ର କାବ୍ୟକାରଙ୍କର ପଥିକୃତ ଗବେଷଣାଧର୍ମୀ ରଚନା । ରାମନାରାୟଣ ପାଠକଙ୍କର ସାହିତ୍ୟିକ ବିଶ୍ୱର ଆଲୋଚନା ମଧ୍ୟ ସମାଲୋଚନା ସାହିତ୍ୟକୁ ପରିପୁଷ୍ଟ କରିଥିଲା ।

## ଆଧୁନିକ ଗୁଜୁରାଟୀ କବିତା—

ଗୁଜୁରାଟୀ କାବ୍ୟ କବିତା ଆଧୁନିକ କାଳରେ ଏକ ଶକ୍ତିଶାଳୀ ଶିଳ୍ପ କଳା ରୂପରେ ବିବେଚିତ । ଆଧୁନିକ କବିତାର ମୁଖ୍ୟ ପ୍ରେରଣା ହେଉଛି ବ୍ୟକ୍ତି, ଇତିହାସ; ତଥା ଜାତିର ସୀମାରେଖା ଅତିକ୍ରମ କରିବା । ଉମାଶଙ୍କର ଯୋଶୀ ସେଥିପାଇଁ ତାଙ୍କର ଗୋଟିଏ କବିତାରେ ଲେଖିଥିଲେ "ଏହା କ'ଣ ସମୟର ଚିରନ୍ତନତା ପାଇଁ ଅଭିଳାଷ ନୁହେଁ କି ?" ଆଧୁନିକ ଗୁଜୁରାଟୀ କବିତାର ଅର୍ଥ ବ୍ୟାପ୍ତି ସେଥିପାଇଁ ବ୍ୟାପକ ଏବଂ ଏହି ଅଭିଳାଷର ଅନୁଗାମୀ । କାବ୍ୟ କବିତାର ଇତିହାସରେ ଏହି ପ୍ରଥମ ଥର ପାଇଁ ଆଧୁନିକ କବି ଇତିହାସ, ଧର୍ମ ଏବଂ ସମାଜର ପ୍ରଭାବକୁ ଅସ୍ୱୀକାର କରିଛି । ପଞ୍ଚଦଶ ଶତାବ୍ଦୀଠାରୁ ବିଂଶ ଶତାବ୍ଦୀର ଶୁଭାରମ୍ଭ ପର୍ଯ୍ୟନ୍ତ ଗୁଜୁରାଟୀ କାବ୍ୟ ଧର୍ମ ତଥା ଐତିହାସିକ ପ୍ରଭାବ ଓ ପରମ୍ପରା-ସଚେତନ ଥିଲା । ଏହାପରେ ମଧ୍ୟ କବିତା ସମାଜବାଦ ଏବଂ ରାଜନୈତିକ ଆଦର୍ଶର ଗଣ୍ଡି ମଧ୍ୟରେ ବନ୍ଦୀ ହେଲା । ସାଂପ୍ରତିକ କବିତା କାହାକୁ ଅପେକ୍ଷା କରେ ନାହିଁ । ସେ ନିଜ ପାଇଁ ନିଜକୁ ଅଭିବ୍ୟକ୍ତ କରେ । ଅନୁଭୂତି, ଆଭିମୁଖ୍ୟ, ଆଙ୍ଗିକ ତଥା ଆତ୍ମିକ ବିଭବ ଆଧୁନିକ କବିତାରେ ପରସ୍ପରସହ ଜଡ଼ିତ ।

ପଞ୍ଚଦଶ ଶତାବ୍ଦୀଠାରୁ ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଗୁଜୁରାଟୀ କବିତାର ସମସ୍ୟା ଥିଲା ଧର୍ମ ଓ ସମାଜ । କାବ୍ୟ କବିତା ଯେ ଧର୍ମର ପ୍ରଧାନ ଅସ୍ତ୍ର ଥିଲା, ବିଂଶ ଶତାବ୍ଦୀର ଜନପ୍ରିୟ ରଚନା ଏହାର ନିଦର୍ଶନ । ୧୯୩୦ ମସିହା ବେଳକୁ ଗୁଜୁରାଟୀ କବିତାର ପ୍ରଧାନ ଉପଜୀବ୍ୟ ଥିଲା କ୍ଷୁଧା, ଦାରିଦ୍ର୍ୟ ଏବଂ ଏହା ପରେ ରୁଚି ତଥା ବାଣୀଭଙ୍ଗୀହିଁ ହେଲା କବିତାର ଲକ୍ଷଣ । ମେଘାନି, ଜହରଗୃନ୍ଦ, ମାନେକ, କରସନ ଦାସ, ଉମାଶଙ୍କର ସୁନ୍ଦରମ୍ ପ୍ରମୁଖ ୧୯୩୦ ମସିହା ପର୍ଯ୍ୟାୟର କବି ଏବଂ ବେଣୀଭାଇ ପୁରୋହିତ, ପ୍ରହ୍ଲାଦ ପରେଖ, ବାଲମୁକୁନ୍ଦ ଦାଭେ, ରାଜେନ୍ଦ୍ର ସାହା ହେଉଛନ୍ତି ଦ୍ୱିତୀୟ ପର୍ଯ୍ୟାୟର ଛାତ୍ରକାଳୀ କବି ।

ପ୍ରହ୍ଲାଦ ପରେଖଙ୍କ କବିତା ଚକ୍ଷୁ, କର୍ଣ୍ଣ ତଥା ନାସିକାର ପ୍ରଭାବଦ୍ୱାରା ଚିହ୍ନିତ । ରାଜେନ୍ଦ୍ର ସାହାଙ୍କର କବିତା ପ୍ରେମାନୁଭୂତିରେ ପୂର୍ଣ୍ଣ । ମେଘାନି ଜାତୀୟ କବି ରୂପେ ଗାନ୍ଧୀଙ୍କ ଦ୍ୱାରା ଅଭିହିତ ହୋଇଥିଲେ । ତାଙ୍କର 'ଯୁଗବନ୍ଦନା' କବିତା ଗ୍ରନ୍ଥ ଯୁଗୀୟ ସଙ୍କେତ ବହନ କରିଥିଲା । ବେଣୀଭାଇ ପୁରୋହିତ (୧୯୧୮), ବାଲମୁକୁନ୍ଦ ଦାଭେ (୧୯୧୬), ରାଜେନ୍ଦ୍ର ସାହା (୧୯୧୩) ଏବଂ ପ୍ରହ୍ଲାଦ ପରେଖ (୧୯୧୧-୧୯୬୨) ଯୁଗର ପରମ୍ପରାକୁ ଅସ୍ୱୀକାର କରିଥିଲେ ।

**ଗୁଜୁରାଟୀ ନାଟକ—**

ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧରେ ଆଧୁନିକ ଗୁଜୁରାଟୀ ନାଟକର ଜନ୍ମ ହୋଇ-ଥିଲା । ଏହାର କାରଣ ସ୍ୱରୂପ ତଦାନୀନ୍ତନ ଅବସ୍ଥାହିଁ ଦାୟୀ ଥିଲା । ପାରମ୍ପରିକ ଭାଭାୟୀ (Bhavai) ବିରୁଦ୍ଧରେ ପ୍ରତିକ୍ରିୟା ଆଧୁନିକ ରଙ୍ଗମଞ୍ଚର ଆବିର୍ଭାବ, ସଂସ୍କୃତ ଏବଂ ପାଶ୍ଚାତ୍ୟ ନାଟକର ଅନୁଶୀଳନ ଯୁଗଯୁଗ ଧରି ଭାଭାୟୀ (Bhavai) ଅଭ୍ୟସ୍ତ ନାଟ୍ୟା-ମୋଦୀ ଜନସାଧାରଣଙ୍କୁ ଆକୃଷ୍ଟ କରି ରଖିଥିଲା । ଏହା ହେଉଛି ଏକ ମୌଳିକ ଲୋକନାଟ୍ୟ । ଏହି ଲୋକନାଟ୍ୟରେ କାହାଣୀ ପଦ୍ୟ ଓ ଅଭିନୟର ଏକତ୍ର ସମାବେଶ ଦେଖିବାକୁ ମିଳେ; ଅର୍ଥାତ୍ ଏହି ଲୋକନାଟ୍ୟ ନୃତ୍ୟ ଏବଂ ସଂଗୀତ ଉପରେ ପ୍ରତିଷ୍ଠିତ ଥିଲା । ପାଶ୍ଚାତ୍ୟ ନାଟକ ଓ ରଙ୍ଗମଞ୍ଚ ଅନୁସରଣରେ ବମ୍ବେ ସହରରେ ମରାଠୀ ରଙ୍ଗମଞ୍ଚ ପ୍ରତିଷ୍ଠା ଓ ନାଟକ ଅଭିନୟ ସଙ୍ଗେ ସଙ୍ଗେ ଗୁଜୁରାଟୀ ରଙ୍ଗମଞ୍ଚ ଓ ନାଟକର ଆବିର୍ଭାବ ଘଟିଥିଲା । ଏଇ କ୍ଷେତ୍ରରେ ମଧ୍ୟ ପାର୍ଶିମାନେହିଁ ବିଶେଷ ଉଦ୍ୟମ କରିଥିଲେ । ସଂସ୍କୃତ ଅନୁଶୀଳନ ଏବଂ ପାଶ୍ଚାତ୍ୟ ଶିକ୍ଷା ପ୍ରବର୍ତ୍ତନ ଫଳରେ ଦ୍ୱିବିଧ ନାଟକୀୟ ରଚନା ଦେଖାଦେଇଥିଲା । ଉଭୟ ରଙ୍ଗମଞ୍ଚ ପ୍ରତିଷ୍ଠା ଓ ନାଟକ ରଚନା ପ୍ରତି ସମସ୍ତଙ୍କର ଦୃଷ୍ଟି ଆକୃଷ୍ଟ ହେଲା । ପ୍ରଥମାବସ୍ଥାରେ ପୌରାଣିକ, ଐତିହାସିକ ଓ ସାମାଜିକ ନାଟକ ପ୍ରଦର୍ଶନ ଯୋଗୁଁ ରଙ୍ଗମଞ୍ଚର ଲୋକପ୍ରିୟତା ବୃଦ୍ଧି ପାଇଥିଲା । କିନ୍ତୁ ପ୍ରକୃତ ପକ୍ଷେ ମୌଳିକ ଅଭିବ୍ୟକ୍ତି ପୂର୍ଣ୍ଣ ନାଟକ ରଚନା ବିଳମ୍ବରେ ହୋଇଥିଲା । ରଣଛୋଡ଼୍ ଭାଇ

ହେଉଚନ୍ତି ଗୁଜୁରାଟୀ ନାଟକର ପ୍ରତିଷ୍ଠାତା । ତାଙ୍କର ନାଟକ ଗୁଡ଼ିକର ଐତିହାସିକ ତାତ୍ପର୍ଯ୍ୟ ସ୍ୱୀକୃତ । ନବଲରାମଙ୍କର ଭୀରମାତି, ଭଟନୁ ଭୋପାଲନ୍ ଏବଂ ଗଣପତିରାମଙ୍କର ପ୍ରତାପ ନାଟକ ପ୍ରଶଂସା ଲାଭ କରିଥିଲା । ମଣିଲାଲ ଦ୍ୱିବେଦୀଙ୍କର ନାଟକ କାନ୍ତା ସଂସ୍କୃତ ନାଟକ ଅବଲମ୍ବନରେ ଲିଖିତ । ପ୍ରକୃତ ସାହିତ୍ୟିକ ଯୋଗ୍ୟତାସମ୍ପନ୍ନ ନାଟକ ବିଂଶ ଶତାବ୍ଦୀର ଜଟିଳ ପରିପ୍ରେକ୍ଷୀରେ ଲିଖିତ ହୋଇଥିଲା । କିନ୍ତୁ ଦୁଃଖର କଥା, ପେଷାଦାର ରଙ୍ଗମଞ୍ଚ ଏତାଦୃଶ ସାହିତ୍ୟିକ ନାଟକ ମଞ୍ଚସ୍ଥ କରିବାରେ କୁଣ୍ଠା ପ୍ରକାଶ କରୁଥିଲେ । ଫଳରେ ସାହିତ୍ୟିକ ନାଟକ ଉପେକ୍ଷା କରି ଗୋଟିଏ ବ୍ୟବସାୟୀ ଗୋଷ୍ଠୀଙ୍କର ସୃଷ୍ଟି ହୋଇଥିଲା । ସେମାନେ କବି ନାମରେ ପରିଚିତ ହେଉଥିଲେ । ରମଣଭାଇ ନୀଳକଂଠଙ୍କର 'ରାଇନୋ ପର୍ବତ' (୧୯୧୪) ନାଟକ ସଂସ୍କୃତ ନାଟକର ଆଦର୍ଶ ଓ ସେକ୍ସପିଅରଙ୍କ ନାଟକର ପ୍ରେରଣାରେ ପରିପୁଷ୍ଟ ହୋଇଥିଲା । ଏହି ନାଟକରେ ପାଶ୍ଚାତ୍ୟ ଓ ପ୍ରାଚ୍ୟ ନାଟକଶୈଳୀର ସମ୍ମିଶ୍ରଣ ଦେଖାଯାଏ । ନିକଟରେ ପ୍ରକାଶିତ ରସିକଲାଲ ପରିଖଙ୍କର 'ସର୍ବିଲକ' ନାଟକ ସଂସ୍କୃତ ପ୍ରଭାବର ପ୍ରମାଣ ଦେଇଥାଏ । ଅତ୍ୟାଧୁନିକ ଗୁଜୁରାଟୀ ନାଟକରେ ପାଶ୍ଚାତ୍ୟର ପ୍ରଭାବହିଁ ବିଶେଷ ପରିଦୃଷ୍ଟ । ନାନାଲାଲ କବିଙ୍କର ଗୀତିନାଟ୍ୟ ଇଂରାଜୀ କବି ସେଲି ଓ ଜର୍ମାନୀର ଲେଖକ ଗେଟେଙ୍କ ଶୈଳୀ ଦ୍ୱାରା ପ୍ରଭାବିତ । ତାଙ୍କର 'ଇନ୍ଦୁକୁମାର', 'ଜୟଜୟନ୍ତ', ପ୍ରଭୃତି ଗୀତିନାଟ୍ୟ ବିଶେଷ ଆଦୃତ ହୋଇଥିଲା । ନାଟ୍ୟକାର କାନ୍ତଙ୍କର ରଚନା ବିଶେଷ ଭାବରେ ଇତିହାସକୁ ଅନୁସରଣ କରିଥିଲା । ବି. କେ. ଠାକୁରଙ୍କର 'ଭଗତ ଯୁବାନୀ' ନାଟକ ଏକ ବାସ୍ତବବାଦୀ ଦୃଷ୍ଟିକୋଣ ଦ୍ୱାରା ପରିପୁଷ୍ଟ । ପାଶ୍ଚାତ୍ୟ ସାହିତ୍ୟର ଗଦ୍ୟନାଟକ କ୍ରମଶଃ ଗୁଜୁରାଟୀ ସାହିତ୍ୟରେ ପ୍ରସାର ଲାଭକଲା । ଇବସନ୍‌ଙ୍କର ବିଭିନ୍ନ ନାଟକ ଗୁଜୁରାଟୀରେ ଯେତେବେଳେ ଅନୂଦିତ ହେଲା, ସେତେବେଳେ ସମସ୍ତେ ପାଶ୍ଚାତ୍ୟ ନାଟକ ଶୈଳୀର ଅନୁସରଣ କଲେ । ପ୍ରାଣ ଜୀବନ ପାଠକ ଇବସନଙ୍କର ରଚନା ଗୁଜୁରାଟୀରେ ଅନୁବାଦ କରିଥିଲେ । କନ୍ହେଇଲାଲ ମାଣିକଲାଲ ମୁନ୍‌ସୀ ଏବଂ ଚନ୍ଦ୍ରବଦନ ମେହେଟ୍ଟା ପ୍ରଭୃତି ନାଟ୍ୟକାରମାନେ ଗୁଜୁରାଟୀ ନାଟକ ରଙ୍ଗମଞ୍ଚ ଉପଯୋଗିତା ପ୍ରତି ଧ୍ୟାନ ଦେଇଥିଲେ । କେହି କେହି ଲେଖକ ନାଟକର ବୌଦ୍ଧିକତା ପ୍ରତି ଦୃଷ୍ଟି ଦେଇଥିଲେ । ମୁନ୍‌ସୀ ଏବଂ ମେହେଟ୍ଟା ବହୁ ନାଟକ ରଚନା କରିଥିଲେ । ପୌରାଣିକ ନାଟକ ଏବଂ ସାମାଜିକ ଫାର୍ଶ, ଦାର୍ଶନିକ ଭାବାପନ୍ନ ନାଟକ ମୁନ୍‌ସୀଙ୍କ ନାଟ୍ୟ ପ୍ରତିଭାର ବିଶେଷତ୍ୱ । ମୁନ୍‌ସୀ ତାଙ୍କ ନାଟକ ସମୂହରେ ବୈଦିକ ଯୁଗର ଭାବଚେତନା ପ୍ରତିଫଳିତ କରିଥିଲେ । ଗୁଜୁରାଟୀ ସୌଖୀନ ରଙ୍ଗମଞ୍ଚର ମେହେଟ୍ଟା ଶ୍ରୀବୃଦ୍ଧି ସାଧନ କରିଥିଲେ । ସେ ନିଜେ ଏକାଧିକ ଶୈଳୀରେ ଫାର୍ଶ, ନାଟକ, ଏକାଙ୍କିକା ରଚନା କରିଥିଲେ ।

ମୁନ୍‌ସୀ ଏବଂ ମେହେଟ୍ଟାଙ୍କର ନାଟକ ସାହିତ୍ୟିକ ନାଟକ ଓ ରଙ୍ଗମଞ୍ଚ ଉପଯୋଗୀ ନାଟକ ମଧ୍ୟରେ ବ୍ୟବଧାନ ଦୂର କରିଦେଇଥିଲା । ୧୯୩୦ ମସିହା ପରେ

ଟକର ଆବିର୍ଭାବ ଯୋଗୁଁ ଗୁଜୁରାଟୀ ରଙ୍ଗମଞ୍ଚ ଦୁର୍ଦ୍ଦଶାର ସମ୍ମୁଖୀନ ହୋଇଥିଲା । କିନ୍ତୁ ଶୈଳୀସମୃଦ୍ଧ ନାଟକର କ୍ରମବିକାଶ ଅପ୍ରତିହତ ରହିଥିଲା । ୧୯୩୦ ମସିହା ପରେହିଁ ନାଟକର ପରିମାଣ ବୃଦ୍ଧି ପାଇଥିଲା । ଉମାଶଙ୍କର ଯୋଷୀଙ୍କର ଏକାଙ୍କିକା ସଂଚୟନ 'ସପନ ଭାର' ଏବଂ ଚନ୍ଦ୍ରବଦନ ମେହେଟ୍ଟାଙ୍କର 'ଆଗାଗାଡ଼ି', ଏକ ବାସ୍ତବବାଦୀ ଦୃଷ୍ଟିକୋଣ ଦ୍ୱାରା ଚିହ୍ନିତ ହୋଇଥିଲା । ସାମାଜିକ ଓ ମାନବିକ ଚେତନା ଆଧ୍ୟାତ୍ମିକ ଚିନ୍ତା କ୍ରମଶଃ ଗୁଜୁରାଟୀ ନାଟକକୁ ପରିପୁଷ୍ଟ କଲା । କିଷ୍ଟଲାଲ ଶ୍ରୀଧରାଣୀ ଆଧୁନିକ ଚେତନାସମ୍ବଳିତ ନାଟକ ରଚନା କରିଥିଲେ । ତାଙ୍କ ନାଟକରେ ମହାତ୍ମାଗାନ୍ଧୀ, ଇବ୍‌ସେନ, ରବୀନ୍ଦ୍ରନାଥ ଠାକୁର ଓ ମାଟର ଲିଙ୍କଙ୍କର ପ୍ରଭାବ ପରିଦୃଷ୍ଟ । ସ୍ୱାଧୀନତା ପରବର୍ତ୍ତୀ ଯୁଗରେ ବମ୍ବେ, ଅହମଦାବାଦ, ସୁରାଟ ଏବଂ ବରୋଦା ପ୍ରଭୃତି ସ୍ଥାନରେ ସୌଖୀନ ଅଭିନୟଗୋଷ୍ଠୀ ସ୍ଥାପିତ ହୋଇଥିଲା । ପୁନଶ୍ଚ ଆକାଶବାଣୀ ପ୍ରତିଷ୍ଠା ଦ୍ୱାରା ନାଟ୍ୟକାରମାନେ ନାଟକ ଲେଖିବାପାଇଁ ଉଦ୍‌ବୁଦ୍ଧ ହୋଇଥିଲେ । ଏହି ଯୁଗରେ ରାଷ୍ଟ୍ରୀୟ ପୃଷ୍ଠପୋଷକତା ମଧ୍ୟ ନାଟ୍ୟ ସାହିତ୍ୟ ରଚନାକୁ ଉତ୍ସାହିତ କରୁଥିଲା । ଚଳଚ୍ଚିତ୍ରର ପ୍ରସାର ଫଳରେ ନାଟ୍ୟସାହିତ୍ୟ ଆନ୍ଦୋଳନ ସବିଶେଷ ବୃଦ୍ଧି ପାଇଅଛି । ଏକାଙ୍କିକା ଗୁଜୁରାଟୀ ନାଟ୍ୟସାହିତ୍ୟରେ ଏକ ପରିପୁଷ୍ଟ ବିଭାଗ । ଉମାଶଙ୍କର ଯୋଷୀ, ଜୟନ୍ତୀ ଦଲାଲ, ଦୁର୍ଗେଶ ଶୁକ୍ଳ, ଚୁନିଲାଲ ମାଡ଼ିଆ, ଶିବକୁମାର ଯୋଷୀ, ଗୁଲାବ ଦାସ ବ୍ରୋକରଙ୍କ ଲେଖନୀ ଏକାଙ୍କିକାର ଶୈଳ୍ପିକ ରୂପ ପରିବର୍ଦ୍ଧିତ କରିବାରେ ଦାୟୀ । ଏତଦ୍‌ବ୍ୟତୀତ ଲଘୁ ନାଟକ ଭାବରେ ମୁନ୍‌ସୀଙ୍କର 'ଛୁଟେଲିଥିକ୍' ଏବଂ 'ଭାରେ ମେଭ', ଚନ୍ଦ୍ରବଦନ ମେହେଟ୍ଟାଙ୍କର 'ଫଜରୀ ପୋଲ', ଯତିଶାଦର୍ ମେହେଟ୍ଟାଙ୍କର 'ମୃଣ୍ମୟୋ ମୃଣ୍ମୟୋ', ପାନ୍ନାଲାଲ ପଟେଲଙ୍କର 'ଜମାଇରାଜ', ଚୁନିଲାଲ ମାଡ଼ିଆଙ୍କର 'ହୁନନୋ ମେର ବହୁ', ଲୋକପ୍ରିୟତା ହାସଲ କରିଥିଲା । ଗୁଣବନ୍ତରାୟ ଆଚାର୍ଯ୍ୟଙ୍କର 'ଅଲାବେଲି', ଧନ ସୁଖଲାଲ ମେହେଟ୍ଟାଙ୍କର 'ଧୂମ୍ର ସେଦ୍', ବଟୁଭାଇ ଶୁକ୍ଳଙ୍କର 'ହିରରତ ଚଳେଇ', ନନ୍ଦକୁମାର ପାଠକଙ୍କର 'ପରକାୟାନୀ', ଶିବକୁମାର ଯୋଷୀଙ୍କର 'ସୁମାନ ବାଲୀ', ଭାରନ୍ତୀ ସରାଭାଇଙ୍କର 'ପରଲୋକୋଟି', 'ବେନାରୀ' ପ୍ରଭୃତି ଉଚ୍ଚ ଦାର୍ଶନିକ ଭାବାପନ୍ନ ନାଟ୍ୟ ରଚନା । ଗୁଜୁରାଟୀ ନାଟକର ଧାରା ବହୁମୁଖୀ । ଯଥା :—ନୃତ୍ୟନାଟ୍ୟ, ବେତାର ରୂପକ, ଗଦ୍ୟ ନାଟକ ଏବଂ ଦୀର୍ଘ ଫଳାପଧର୍ମୀ କାବ୍ୟ ନାଟକ । ଉମାଶଙ୍କର ଯୋଷୀଙ୍କର କାବ୍ୟନାଟକ 'ପ୍ରାଚୀନା' ଏକ ସ୍ୱତନ୍ତ୍ର କୃତି । ଗୁଜୁରାଟୀ ନାଟକର ବର୍ତ୍ତମାନ ବୟସ ଏକଶତ ବର୍ଷରୁ କମ୍ । ଉପନ୍ୟାସ ଓ କ୍ଷୁଦ୍ର ଗଳ୍ପ ସଦୃଶ ଏହା ସେତେ ସୁପ୍ରତିଷ୍ଠିତ ନୁହେଁ ।

**କ୍ଷୁଦ୍ରଗଳ୍ପ—**

ଗୁର୍ଜ୍ଜର ଅଞ୍ଚଳରେ କ୍ଷୁଦ୍ର ଗଳ୍ପ ଓ କାହାଣୀ ବହୁ ପ୍ରାଚୀନ କାଳରୁ ପ୍ରଚଳିତ ଥିଲା । ଅବଶ୍ୟ ବିଭିନ୍ନ ଯୁଗରେ ଏହାର ଆକୃତି ଓ ପ୍ରକୃତି ବିଭିନ୍ନ ଥିଲା । ଉପନିଷଦ୍, ଜାତକ, ପଞ୍ଚତନ୍ତ୍ର, ବୃହତ୍ କଥା, କଥା ସରିତ ସାଗର ଭାରତର ବିଭିନ୍ନ ପ୍ରାନ୍ତର

ଗଳ୍ପାମୋଦୀ ପାଠକମାନଙ୍କୁ ଆକୃଷ୍ଟ କରିଅଛି । ପ୍ରାଚୀନ ଏବଂ ମଧ୍ୟ ଭାରତରେ ଗଳ୍ପ କଥକମାନେ ଏତାଦୃଶ ପ୍ରାଚୀନ କାହାଣୀରୁ ଉପାଦାନ ସଂଗ୍ରହ କରୁଥିଲେ । ଏକ ନିର୍ଦ୍ଦିଷ୍ଟ କଳାମୂଳକ ଶିଳ୍ପକର୍ମ ଭାବରେ କ୍ଷୁଦ୍ର ଗଳ୍ପର ସୃଷ୍ଟି ପରବର୍ତ୍ତୀ କାଳରେ ଘଟୁଥିଲା । ଏହା ମୂଳରେ ପାଶ୍ଚାତ୍ୟ ସାହିତ୍ୟର ପ୍ରଭାବ ଥିଲା । ବିଶେଷତଃ କେତେକ ପାଶ୍ଚାତ୍ୟ ଗଳ୍ପ ଲେଖକ ଏହି ଦେଶର ଯୁବକ-ମାନଙ୍କୁ ପ୍ରଭାବିତ କରିଥିଲେ ।

ଗୁଜୁରାଟୀ ସାହିତ୍ୟରେ ନର୍ମଦ ଗଦ୍ୟ ସାହିତ୍ୟର ବିଭିନ୍ନ ଧାରା ପ୍ରବର୍ତ୍ତନ କରିଥିଲେ; ମାତ୍ର ଉପନ୍ୟାସ କ୍ଷୁଦ୍ର ଗଳ୍ପ ପ୍ରତି ତାଙ୍କର ଆଗ୍ରହ ନଥିଲା । ନର୍ମଦଙ୍କର ଗୁଜୁରାଟୀ ଉପନ୍ୟାସର ଭିତ୍ତି ସ୍ଥାପନ କରିଥିଲେ । ତାଙ୍କର ପ୍ରଥମ ଉପନ୍ୟାସ ୧୮୬୮ ମସିହାରେ ପ୍ରକାଶିତ ହୋଇଥିଲା । 'ବାର୍ତ୍ତାବାରିଧି' ଏବଂ 'ସୁନ୍ଦରୀ ସୁବୋଧ' ନାମକ ପତ୍ରିକାରେ ପ୍ରଥମେ ଗୁଜୁରାଟୀ ଗଳ୍ପ ପ୍ରକାଶିତ ହୋଇଥିଲା । ମାତ୍ର ପ୍ରକୃତ ପକ୍ଷେ ନାଟକ ଉପନ୍ୟାସ ପରେ ହିଁ ଗୁଜୁରାଟୀ ଗଳ୍ପର ସୃଷ୍ଟି ହେଲା । ୧୯୧୮ ମସିହା ପର୍ଯ୍ୟନ୍ତ ଗଳ୍ପ ପ୍ରାଚୀନ ଢଙ୍ଗରେ ଲେଖା ହୋଇଥିଲା । ମାଲେୟାନିଲ୍ (ପ୍ରକୃତ ନାମ କଞ୍ଚନଲାଲ ମେହେଟ୍ଟା) ହେଉଛନ୍ତି ଆଧୁନିକ ଗୁଜୁରାଟୀ ଗଳ୍ପର ସ୍ରଷ୍ଟା । ତାଙ୍କର ପ୍ରଥମ ଗଳ୍ପ 'ଗୋଆଲଣୀ' (ମେଷପାଳିକା) ୧୯୧୮ରେ ତଦାନୀନ୍ତନ ଜନପ୍ରିୟ ପତ୍ରିକା 'ବିଂଶମ ସାଦୀ' (ବିଂଶ ଶତାବ୍ଦୀ)ରେ ପ୍ରକାଶିତ ହୋଇଥିଲା । ଏହା ପରେ କହ୍ନେଇଲାଲ ମୁନ୍‌ସି ଏବଂ ଧନସୁଖଲାଲ ମେହେଟ୍ଟା କ୍ଷୁଦ୍ର ଗଳ୍ପ ଲେଖକ ଭାବରେ ପରିଚିତ ହେଲେ । ପ୍ରଥମାବସ୍ଥାରେ ଗୁଜୁରାଟୀ ଗଳ୍ପର ବିଷୟବସ୍ତୁ ଗତାନୁଗତିକ ଥିଲା, ଯଥା :—ସମ୍ଭ୍ରାନ୍ତ ପରିବାରର ବିଳାସବ୍ୟସନ ଓ ପ୍ରଣୟର ଚିତ୍ର ।

ପ୍ରଥମ ମହାଯୁଦ୍ଧ ପରେ ରୁଷ-ବିପ୍ଳବ ଏବଂ ଭାରତବର୍ଷରେ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ସ୍ୱାଧୀନତା ଆନ୍ଦୋଳନ ଗୁଜୁରାଟୀ କ୍ଷୁଦ୍ରଗଳ୍ପର ରୂପାନ୍ତର ସାଧନ କରିଥିଲା । ମହାତ୍ମା ଗାନ୍ଧୀଙ୍କ ପରିକଳ୍ପିତ ଗ୍ରାମସ୍ୱରାଜ୍ୟର ପ୍ରେରଣା ଗୁଜୁରାଟୀ ଲେଖକମାନଙ୍କୁ ପ୍ରଭାବିତ କଲା । ସାହିତ୍ୟରେ ମାନବିକତାର ସ୍ୱର ଉତ୍ତୋଳିତ ହେଲା । ଗୁଜୁରାଟୀ ଗଳ୍ପ ଲେଖକମାନେ ଗ୍ରାମ୍ୟ ଜୀବନ ପ୍ରତି ଆକୃଷ୍ଟ ହେଲେ ଏବଂ ସହାନୁଭୂତିର ସହିତ ଗ୍ରାମବାସୀଙ୍କର ସୁଖ ଦୁଃଖ ଗଳ୍ପ ମାଧ୍ୟମରେ ଚିତ୍ରଣ କରିଥିଲେ ।

ଧୂମକେତୁହିଁ ସର୍ବପ୍ରଥମେ ଶୈଳ୍ପିକ ଆଙ୍ଗିକ ରୂପେ କ୍ଷୁଦ୍ରଗଳ୍ପକୁ ଗ୍ରହଣ କରିଥିଲେ । ତାଙ୍କର ପ୍ରକୃତ ନାମ ହେଉଛି ଗୌରୀଶଙ୍କର ଯୋଶୀ । ୧୯୨୬ ମସିହାରେ ପ୍ରକାଶିତ ତାଙ୍କର ପ୍ରଥମ ଗଳ୍ପ ସଙ୍କଳନ ହେଲା ଗୁଜୁରାଟୀ ସାହିତ୍ୟର ଏକ ସ୍ମରଣୀୟ କୃତି । ଏହାର ପ୍ରଭାବ ବିଶେଷ ଭାବରେ ପ୍ରକଟିତ ହେଲା । ତାଙ୍କ ଲେଖନୀରେ ଆଧୁନିକ ଗୁଜୁରାଟୀ ଗଳ୍ପର ସୌନ୍ଦର୍ଯ୍ୟ ପ୍ରକଟିତ ହୋଇଥିଲା । ସହର ଜୀବନର

ନୈସର୍ଗ୍ୟ ଏବଂ ଗ୍ରାମ୍ୟ ଜୀବନର ସୌନ୍ଦର୍ଯ୍ୟ ତାଙ୍କ ଗଳ୍ପର ଥିଲା ସ୍ପନ୍ଦନ । ବହୁ ସାର୍ଥକ କ୍ଷୁଦ୍ର ଗଳ୍ପ ଧୂମକେତୁ ସୃଷ୍ଟି କରିପାରିଥିଲେ । ତାଙ୍କ ଗଦ୍ୟ ଶୈଳୀ ଅସାଧାରଣ ଥିଲା । ଗୁଜୁରାଟୀ କ୍ଷୁଦ୍ର ଗଳ୍ପକୁ ସେ ପୂର୍ଣ୍ଣତା ଦେଇଥିଲେ । ଏହି ସମୟରେ ଗାନ୍ଧିଜୀଙ୍କ ଆଦର୍ଶରେ ପ୍ରଭାବିତ ହୋଇ ରାମନାରାୟଣ ପାଠକ ବହୁ କ୍ଷୁଦ୍ର ଗଳ୍ପ ରଚନା କରିଥିଲେ । ତାଙ୍କର ଛଦ୍ମ ନାମ ହେଉଛି ଦ୍ୱିରେଫ (ଭ୍ରମର) । ଧୂମକେତୁଙ୍କ ଗଳ୍ପ ଭାବ ଏବଂ ବିଷୟ ପ୍ରଧାନ । କିନ୍ତୁ ପାଠକଙ୍କର ଗଳ୍ପ ଶୈଳୀ ପ୍ରଧାନ ଏବଂ ହାସ୍ୟରସପୂର୍ଣ୍ଣ । ଗାନ୍ଧୀଙ୍କ ପ୍ରବର୍ତ୍ତିତ ସତ୍ୟାଗ୍ରହ ଆନ୍ଦୋଳନ ଫଳରେ ଅନେକ ପ୍ରତିଭାଶାଳୀ ଗୁଜୁରାଟୀ ଯୁବକ କାରାବରଣ କରିଥିଲେ । ମାର୍କସ୍ ଏବଂ ଫ୍ରୟେଡ୍‌ଙ୍କ ଚିନ୍ତାଧାରା ତରୁଣ ଲେଖକମାନଙ୍କୁ ଆକୃଷ୍ଟ କରିଥିଲା । ମୌଳିକ ଅଧିକାର ଏବଂ ସାମ୍ୟ-ଧାରଣା ଯୁବକମାନଙ୍କୁ ଆକୃଷ୍ଟ କଲା । ଉମାଶଙ୍କର ଯୋଶୀ, ଗୋଲାବ ଦାସ ବ୍ରୋକର, ସୁନ୍ଦରମ୍ ଏବଂ ପାନ୍ନାଲାଲ୍ ପଟେଲ୍ ଗୁଜୁରାଟୀ କ୍ଷୁଦ୍ରଗଳ୍ପର ପୁନଃ ନୂତନ ଜୀବନ୍ୟାସ କରିଥିଲେ । ସେମାନେ ସାମଗ୍ରିକ ଦୃଷ୍ଟିରେ ଜୀବନର ଚିତ୍ର ଅଙ୍କନ କଲେ । ବାସ୍ତବତା ସେମାନଙ୍କ କ୍ଷୁଦ୍ର ଗଳ୍ପର ହେଲା ପ୍ରଧାନ ଆବେଦନ । ଉମାଶଙ୍କରଙ୍କ କ୍ଷୁଦ୍ର ଗଳ୍ପରେ ନୂତନ ପରୀକ୍ଷା, ଗୋଲାବ ଦାସ ବ୍ରୋକରଙ୍କ ଗଳ୍ପରେ ମଣିଷ ମନର ଗଭୀର ପ୍ରତିକ୍ରିୟା, ସୁନ୍ଦରମ୍‌ଙ୍କ ଗଳ୍ପରେ ପରମ୍ପରାବିହୀନ ବାସ୍ତବବାଦୀ ଯୌନ-ଚିତ୍ର କ୍ଷୁଦ୍ର ଗଳ୍ପର ପରିମାଣାତ୍ମକ, ଗୁଣାତ୍ମକ ସୀମା ବୃଦ୍ଧି କରିଥିଲା । ଗୁଜୁରାଟୀ ସାହିତ୍ୟରେ ଏହା ହେଉଛି ଗାନ୍ଧିଜୀଙ୍କ ପ୍ରଭାବିତ ଯୁଗ । ଜାଭେରଚନ୍ଦ ମେଘାନି ଏହି ଯୁଗରେ ବହୁ କ୍ଷୁଦ୍ର ଗଳ୍ପ ରଚନା କରିଥିଲେ । ଉମାଶଙ୍କରଙ୍କର 'ଶ୍ରାବଣ ମେଳୋ' ଗଳ୍ପ ୧୯୩୦ ସମୟର ଶ୍ରେଷ୍ଠ କୃତି । ପାନାଲାଲ୍ ପଟେଲ୍‌ଙ୍କ କ୍ଷୁଦ୍ର ଗଳ୍ପ ଗୁଜୁରାଟ ଗ୍ରାମ୍ୟ ଜୀବନର ବିଶ୍ୱସ୍ତ ଚିତ୍ର ବହନ କରିଥିଲା । ପାନ୍ନାଲାଲ ଗ୍ରାମ୍ୟ ଜୀବନର ବିଭିନ୍ନ ସମସ୍ୟା ଉପଲବ୍‌ଧି କରିଥିଲେ । ଅଭାବ ଅନଟନ, ଦାରିଦ୍ର୍ୟ, ସାମାଜିକ ସମସ୍ୟା ମଧ୍ୟରେ ଗ୍ରାମ୍ୟ ଜୀବନର ଯେଉଁ ସୌନ୍ଦର୍ଯ୍ୟ ଓ ଆନନ୍ଦ ତାହା ପାନାଲାଲଙ୍କ ଲେଖନୀରେ ପ୍ରତିଫଳିତ ହୋଇଥିଲା ।

କ୍ଷୁଦ୍ର ଗଳ୍ପ ପ୍ରସାର କାର୍ଯ୍ୟରେ ୧୯୩୦ ମସିହା ପରବର୍ତ୍ତୀ ସମୟ ଖୁବ୍ ଅନୁକୂଳ ହୋଇଥିଲା । କ୍ଷୁଦ୍ର ଗଳ୍ପରେ ପରୀକ୍ଷା ନିରୀକ୍ଷା ଚାଲିଥିଲା । ଏହି ସମୟରେ ସାହିତ୍ୟରେ ପ୍ରଗତି ଆନ୍ଦୋଳନର ସ୍ୱର ଶୁଣାଯାଇ ଥିଲା । ଏହି ପ୍ରଗତିଶୀଳ ଗୋଷ୍ଠୀର ଦୁଇଜଣ ବିଶିଷ୍ଟ ଲେଖକ ହେଉଛନ୍ତି ବକୁଲେଶ ଓ ଜୟନ୍ତ କ୍ଷତ୍ରୀ । 'ବକୁଲେଶ' ବିଶେଷ ଭାବରେ ଗଳ୍ପ ସଚେତନ ଥିଲେ । ତାଙ୍କର ଗଳ୍ପ ସଙ୍କଳନ "କାଦଭ—ନା—କଙ୍କୁ" (କର୍ଦ୍ଦମ କୁଙ୍କୁମ) ତାଙ୍କ ବାସ୍ତବ ଦୃଷ୍ଟି ଭଙ୍ଗୀର ପରିଚାୟକ । ସମାଜରେ ଯେଉଁମାନେ ନିର୍ଯ୍ୟାତିତ, ପଦ-ଦଳିତ, ସେମାନଙ୍କର ଚିତ୍ର ବକୁଲେଶଙ୍କ ଗଳ୍ପରେ ବିଶେଷ ପରିଦୃଷ୍ଟ । ଜୟନ୍ତ କ୍ଷତ୍ରୀ ସେହିପରି ଜଣେ ନିପୁଣ ଗଳ୍ପ ଲେଖକ । ତାଙ୍କର ଦୁଇଟି ଗଳ୍ପ ସଙ୍କଳନ 'ଫରନ' (କାକର) 'ବେହେତାନ ଝରଣା' (ପ୍ରବାହିତ ଝରଣା) ଗୁଜୁରାଟୀ କ୍ଷୁଦ୍ର ଗଳ୍ପ କ୍ଷେତ୍ରରେ

ସ୍ୱାତନ୍ତ୍ର୍ୟ ମଣ୍ଡିତ । ଗୁଜୁରାଟୀ କ୍ଷୁଦ୍ରଗଳ୍ପର ନୂତନ ଦିଗନ୍ତ ଉଦ୍‌ଘାଟନ କରିବାରେ ଏହି ଲେଖକଦ୍ୱୟଙ୍କର ଦାନ ସ୍ୱୀକୃତ । ଗୁଜୁରାଟୀ କ୍ଷୁଦ୍ରଗଳ୍ପ ପର୍ଯ୍ୟାୟରେ ଜୟନ୍ତୀ ଦଲାଲ୍ ଆହୁରି ଏକ ନୂତନ ସ୍ୱର ।

୧୯୪୦ ମସିହା ପରେ ଗୁଜୁରାଟୀ କ୍ଷୁଦ୍ରଗଳ୍ପର ଆଙ୍ଗିକରେ ଆହୁରି ପରିବର୍ତ୍ତନ ଆସିଥିଲା । ଏହି ଯୁଗରେ ପରିବର୍ତ୍ତିତ ଶୈଳ୍ପିକ ଆଙ୍ଗିକ ଭାବରେ ଗୁଜୁରାଟୀ କ୍ଷୁଦ୍ରଗଳ୍ପର ପରୀକ୍ଷା ନିରୀକ୍ଷା ଚାଲିଥିଲା । ଆମେରିକା କ୍ଷୁଦ୍ରଗଳ୍ପ, ଋଷୀୟ କ୍ଷୁଦ୍ରଗଳ୍ପ ଯୁବକ ଲେଖକମାନଙ୍କ କଳ୍ପନାକୁ ପ୍ରଜ୍ୱଳିତ କରିଥିଲା ।

ଜୟନ୍ତୀ ଦଲାଲ୍, ଚୁନିଲାଲ ମେଡ଼ିଆ, ଈଶ୍ୱର ପେଟି, କଲଙ୍କର କଷନ୍ ସିଂହ ଚଭଡ଼ା କ୍ଷୁଦ୍ରଗଳ୍ପ ଲେଖି ଏହାକୁ ଏକ ଶୈଳ୍ପିକ ଆଭିଜାତ୍ୟରେ ମଣ୍ଡିତ କରିଥିଲେ । ଜୟନ୍ତୀ ଦଲାଲ୍ 'ରେଖା' ନାମକ ଏକ ପତ୍ରିକା ପ୍ରକାଶ କରିଥିଲେ । କ୍ଷୁଦ୍ରଗଳ୍ପର ତାହାହିଁ ଥିଲା ମୁଖପତ୍ର । ଆଧୁନିକ ଗଳ୍ପ କଳା ସଚେତନ ଦଲାଲଙ୍କର କ୍ଷୁଦ୍ରଗଳ୍ପ ବୈଶିଷ୍ଟ୍ୟପୂର୍ଣ୍ଣ । ଶିଳ୍ପ ପ୍ରଭାବିତ ସହର ଜୀବନ ତାଙ୍କ ଗଳ୍ପରେ ଚିତ୍ରିତ । ତାଙ୍କର ଗଳ୍ପ ମୁକାମକଲେଟି ଆଧୁନିକ ଲେଖକମାନଙ୍କୁ ଅନୁପ୍ରାଣିତ କରିଥିଲା । ତାଙ୍କର ଗଳ୍ପ 'ଉଭରୀ' ଏବଂ 'ଯୁଜଭି' ଏତାଦୃଶ ବର୍ଣ୍ଣନାରେ ପୂର୍ଣ୍ଣ । ସେ ପ୍ରଥମେ ଆଧୁନିକ ପରିପ୍ରେକ୍ଷୀରେ ପୁରାଣ ଏବଂ କିମ୍ବଦନ୍ତୀର ପ୍ରୟୋଗ କରିଥିଲେ । ଧୂମକେତୁ କ୍ଷୁଦ୍ରଗଳ୍ପ ଛାଡ଼ି ଉପନ୍ୟାସ ରଚନା ପ୍ରତି ଆକୃଷ୍ଟ ହୋଇଥିଲେ । ମୁନ୍‌ସି, ପାଠକ, ଉମାଶଙ୍କର ପ୍ରମୁଖ ଗଳ୍ପଲେଖା ଛାଡ଼ିଦେଇଥିଲେ । କେତେ ଜଣ ପାର୍ସି ଲେଖକ ମଧ୍ୟ ସଫଳତାର ସହିତ କ୍ଷୁଦ୍ରଗଳ୍ପ ଲେଖିଥିଲେ । ସେମାନଙ୍କ ମଧ୍ୟରେ ରୂଷତମ ଜମ୍‌ ମେହେଟା, ଦାରକାପଡ଼ିଆ ନରିମ୍ୟାନ ଗୋଲ୍‌ଓ୍ୱାଲାଙ୍କ ନାମ ଉଲ୍ଲେଖଯୋଗ୍ୟ । ପୁଷ୍କର ଚନ୍ଦରଭାକର ସୌରାଷ୍ଟ୍ର ଗ୍ରାମ୍ୟ ଜୀବନକୁ କେନ୍ଦ୍ର କରି ବହୁ କ୍ଷୁଦ୍ରଗଳ୍ପ ଲେଖିଛନ୍ତି ।

ଗୁଜୁରାଟୀ କ୍ଷୁଦ୍ରଗଳ୍ପର ଆୟୁଷ ପଚିଶ ବର୍ଷ ମାତ୍ର । ଏହି ସମୟ ମଧ୍ୟରେ ଉଭୟ ଆଙ୍ଗିକ ଓ ବିଷୟବସ୍ତୁ ଦୃଷ୍ଟିରୁ କ୍ଷୁଦ୍ରଗଳ୍ପ ବିରାଟ ସଫଳତାର ଅଧିକାରୀ ହୋଇଅଛି । ବହୁ ପ୍ରତିଭାଶାଳୀ ଯୁବକଙ୍କର ଏହି କ୍ଷୁଦ୍ରଗଳ୍ପ ହିଁ ଆତ୍ମପ୍ରକାଶର ମାଧ୍ୟମ ହୋଇପାରିଛି । କ୍ଷୁଦ୍ରଗଳ୍ପର କଳାନୈପୁଣ୍ୟ କ୍ରମଶଃ ବୃଦ୍ଧି ପାଇପାରିଛି । ଜୀବନର ବିବିଧ ଅନୁଭୂତି ନାଟକୀୟ ଛଟାରେ ଗୋଲାପ ଦାସ ବ୍ରୋକର, ଜହରଚନ୍ଦ ମେଘାଡ, କଷନ ସିଂହ ଚୁଭେଡ଼ା ପ୍ରଭୃତିଙ୍କ କ୍ଷୁଦ୍ରଗଳ୍ପରେ ପ୍ରତିଫଳିତ ହୋଇପାରିଅଛି । ଯୁଦ୍ଧ, ଭାରତୀୟ ସ୍ୱାଧୀନତା, ଭାରତର ବିଭାଜନ ପ୍ରଭୃତି ଘଟଣା ଗୁଜୁରାଟୀ କ୍ଷୁଦ୍ରଗଳ୍ପର ସ୍ୱରୂପକୁ ପ୍ରଭାବିତ କରିଅଛି ।

ନୂତନ କାମ, ନୂତନ ପରୀକ୍ଷାନିରୀକ୍ଷା ଆଧୁନିକ ଗୁଜୁରାଟୀ କ୍ଷୁଦ୍ରଗଳ୍ପ ରାଜ୍ୟରେ ପରିଦୃଷ୍ଟ ହେଉଅଛି । ନୂତନ ଗୋଷ୍ଠୀର ଯୁବଲେଖକମାନେ ମାସିକ ସାହିତ୍ୟ ପତ୍ର

ମାଧ୍ୟମରେ ନୂଆ ନୂଆ ଗଳ୍ପ ଲେଖୁଛନ୍ତି । ନୂତନ ଆଙ୍ଗିକର ପ୍ରୟୋଗ ଅତ୍ୟାଧୁନିକ ଗଳ୍ପ ଲେଖକମାନଙ୍କର ମୁଖ୍ୟ ଆକର୍ଷଣ ବୋଲି ଜଣାଯାଏ । ଲକ୍ଷ୍ମୀକାନ୍ତ ଭଟ୍ଟ ଜଣେ ବିଶିଷ୍ଟ କଥାଶିଳ୍ପୀ । ଉମାଶଙ୍କର ଯୋଷୀଙ୍କ ସମ୍ପାଦିତ 'ସଂସ୍କୃତି' ପତ୍ରିକାରେ ତାଙ୍କ ଗଳ୍ପ ପ୍ରକାଶିତ ଏବଂ ଆଦୃତ ହୋଇଥିଲା । ଅଳ୍ପ ସଂଖ୍ୟକ ହେଲେହେଁ ତାଙ୍କର ଗଳ୍ପଗୁଡ଼ିକ ନୂତନତା ଚିହ୍ନିତ । ସେହିପରି କିଶୋର ଯାଦବ ଜଣେ ମୌଳିକ ଗଳ୍ପ-ଲେଖକ । ନିଛକ ବାସ୍ତବବାଦ ଅପେକ୍ଷା ତାଙ୍କ ଗଳ୍ପରେ ସ୍ୱପ୍ନାତୁର ବାସ୍ତବତା ଅଧିକ ପ୍ରତିଫଳିତ । ଯାଦବଙ୍କର ପ୍ରସିଦ୍ଧ ଗଳ୍ପ 'ପ୍ରାଗୈତିହାସିକ' ଓ 'ଶୋକସଭା' ସ୍ୱକୀୟ ବୈଶିଷ୍ଟ୍ୟର ପରିଚାୟକ । ଯାଦବ ଭାରତୀୟ ଶାସନ ବିଭାଗରେ ଜଣେ ଉଚ୍ଚ କର୍ମଚାରୀ; କିନ୍ତୁ ଗୁଜୁରାଟୀ କ୍ଷୁଦ୍ରଗଳ୍ପର ସ୍ୱାତନ୍ତ୍ର୍ୟ ପ୍ରତିଷ୍ଠା କରିବାରେ ତାଙ୍କର ଲେଖନୀହିଁ ଦାୟୀ । ତାଙ୍କର ଗଳ୍ପଶୈଳୀ ସ୍ୱକୀୟତା ପରିପୂର୍ଣ୍ଣ ଏବଂ ବହୁ ଯୁବକ ଲେଖକଙ୍କୁ ପ୍ରଭାବିତ କରିପାରିଛି । ସୁରେଶ ଯୋଷୀ ଜଣେ ପ୍ରତିଭାଶାଳୀ, ପରୀକ୍ଷାବାଦୀ ଗଳ୍ପଲେଖକ । ତାଙ୍କର ଗଳ୍ପ ଆଖ୍ୟାନରହିତ । ସେ ଗଳ୍ପରେ ଗଳ୍ପାଂଶ ପ୍ରତି ଆଦୌ ଧ୍ୟାନ ଦେଇ ନ ଥାନ୍ତି । ଯୋଷୀ ଆଉ ଯାଦବଙ୍କ ଗଳ୍ପ ମଧ୍ୟରେ ଏହାହିଁ ପାର୍ଥକ୍ୟ । 'ଧୂମକେତୁ'ଙ୍କ ସଦୃଶ ସେ ମଧ୍ୟ ଶୈଳୀର ପକ୍ଷପାତୀ । ତାଙ୍କ କ୍ଷୁଦ୍ରଗଳ୍ପରେ ଏକ ସ୍ୱତନ୍ତ୍ର ଗଦ୍ୟ ପରିଲକ୍ଷିତ । ସେହି ଗଦ୍ୟର ଶୈଳୀ ଗୀତିଧର୍ମୀ ଏବଂ ପ୍ରେମାଶ୍ରିତ ।

ଆଧୁନିକ ଗଳ୍ପ ଲେଖକମାନେ ଗତାନୁଗତିକ ଗଳ୍ପଶୈଳୀର ଆଦୌ ପକ୍ଷପାତୀ ନୁହନ୍ତି । ଚନ୍ଦ୍ରକାନ୍ତ ବକ୍ସି ସ୍ୱଗଳ୍ପରେ ସ୍ୱାତନ୍ତ୍ର୍ୟ ବଜାୟ ରଖିପାରିଛନ୍ତି । ତାଙ୍କ ଗଳ୍ପର କୈନ୍ଦ୍ରିକ ବିନ୍ଦୁ ହେଉଛି ଯୌନବର୍ଣ୍ଣନା । ଅବଶ୍ୟ ସେହି ବର୍ଣ୍ଣନା ଶସ୍ତା ନୁହେଁ । 'ଦ୍ୱିରେଫ'ଙ୍କର ଗଳ୍ପରେ ମଧ୍ୟ ଯୌନବର୍ଣ୍ଣନା ପରିଦୃଷ୍ଟ, ମାତ୍ର ତାହାଠାରୁ ବକ୍ସିଙ୍କର ବର୍ଣ୍ଣନା ସ୍ୱତନ୍ତ୍ର । ବକ୍ସିଙ୍କର ଗଳ୍ପ ସଂକଳନ 'ମୀରା' ଶୈଳୀଗତ ଆଡ଼ମ୍ବରଶୂନ୍ୟ ଏବଂ ସ୍ୱାଭାବିକ ସୌନ୍ଦର୍ଯ୍ୟରେ ପରିପୂର୍ଣ୍ଣ । ବର୍ଦ୍ଦୋଲୀ କଲେଜରେ ଅଧ୍ୟାପନାରତ ନାରୀଲେଖିକା ସରୋଜ ପାଠକଙ୍କର ଗଳ୍ପଗୁଡ଼ିକ ମଧ୍ୟ ସ୍ୱାଭାବିକ ସୌନ୍ଦର୍ଯ୍ୟସମ୍ପନ୍ନ । ଗଳ୍ପର ଆଙ୍ଗିକ ସମ୍ପର୍କରେ ତାଙ୍କର ପରୀକ୍ଷାନିରୀକ୍ଷା ଉଲ୍ଲେଖଯୋଗ୍ୟ । ତାଙ୍କ ଗଳ୍ପଗୁଡ଼ିକ ବିଷୟବସ୍ତୁଦୃଷ୍ଟିରେ ପ୍ରତାରଣାଶୂନ୍ୟ । ତାଙ୍କର ଗଳ୍ପ ସଂକଳନ 'ବିରାଟ ଆପକୁନ୍' (ରାକ୍ଷସୀ ବିନ୍ଦୁ) ଉଚ୍ଚପ୍ରଶଂସିତ ।

କୁନ୍ଦନିକା କାପାଡ଼ିଆ ହେଉଛନ୍ତି ଅନ୍ୟତମ ପ୍ରଭାବଶାଳିନୀ ଗଳ୍ପଲେଖିକା । ତାଙ୍କ ଗଳ୍ପରେ ନୂତନତାର ଛଳନା ଶୂନ୍ୟ; କିନ୍ତୁ ତାଙ୍କ ଗଳ୍ପଶୈଳୀ ଆଧୁନିକ ଶୈଳୀଠାରୁ ଆହୁରି ନୂତନ । ତାଙ୍କ ଗଳ୍ପରେ ଗୀତିକବିତାର ବୈଶିଷ୍ଟ୍ୟ ପ୍ରତିଫଳିତ । ତାଙ୍କର ଗଳ୍ପ ସଂକଳନ "ସୁନ୍ଦର ବଧୂ ସୁନ୍ଦର" (ସୁନ୍ଦର ଖୁବ୍ ସୁନ୍ଦର)

ଏକ ଶ୍ରେଷ୍ଠ କୃତି । ଆଧୁନିକ ଗଳ୍ପଲେଖକମାନଙ୍କ ମଧ୍ୟରେ ଯେଉଁମାନେ ଗତାନୁଗତିକ ଗଳ୍ପଶୈଳୀ ପ୍ରତ୍ୟାହାର କରିଛନ୍ତି, ସେମାନଙ୍କ ମଧ୍ୟରେ ମଧୁରାୟଙ୍କ ନାମ ଉଲ୍ଲେଖ-ଯୋଗ୍ୟ । ତାଙ୍କର ଗଳ୍ପ ସଂକଳନ "ବଂଶୀନାମନ ଏକ ଗ୍ରେନ୍ଦୀ'' ମୌଳିକତାପୂର୍ଣ୍ଣ । ସାମାଜିକ ପ୍ରତିବାଦ, ଅର୍ଥନୈତିକ ଦୁର୍ଗତି, ନିରକ୍ଷରତା, ଦାରିଦ୍ର୍ୟ, ଯୌବନବିକାର, ଆଧୁନିକ ଗୁଜୁରାଟୀ କ୍ଷୁଦ୍ରଗଳ୍ପରେ ବିଶେଷଭାବରେ ବର୍ଣ୍ଣିତ । ଆଙ୍ଗିକପ୍ରତି ଆନୁଗତ୍ୟ ଅନେକ ସମୟରେ କ୍ଷୁଦ୍ରଗଳ୍ପର ବିଷୟବସ୍ତୁକୁ ଉପେକ୍ଷା କରିଅଛି । ଜୀବନର ପରିବର୍ତ୍ତିତ ମୂଲ୍ୟବୋଧ, ନୈରାଶ୍ୟ, ଆଧୁନିକ ଗୁଜୁରାଟୀ କ୍ଷୁଦ୍ରଗଳ୍ପର ପ୍ରଧାନ ଆବେଦନ ବୋଲି କୁହାଯାଇପାରେ । ଉପନ୍ୟାସକୁ ଛାଡ଼ିଦେଲେ ଆଧୁନିକ ଗୁଜୁରାଟୀ ସାହିତ୍ୟରେ କ୍ଷୁଦ୍ରଗଳ୍ପ ଏକ ବିଶିଷ୍ଟ ସ୍ଥାନ ଅଧିକାର କରିପାରିଅଛି ।

## ଜୀବନୀ-ସାହିତ୍ୟ—

ପ୍ରାଚୀନ ଯୁଗରୁ ମଧ୍ୟ ଗୁଜୁରାଟୀ ଲେଖକମାନେ ଜୀବନୀ ସାହିତ୍ୟ ରଚନା ପ୍ରତି ଆକୃଷ୍ଟ ହୋଇଥିଲେ । ହେମଚନ୍ଦ୍ରଙ୍କ (୧୦୮୯-୧୧୭୩) 'କୁମାରପାଳ ଚରିତ' ଏହି ପ୍ରସଙ୍ଗରେ ଉଲ୍ଲେଖଯୋଗ୍ୟ ।

ନର୍ମଦ ଗୁଜୁରାଟୀ ସାହିତ୍ୟରେ ବହୁ ବିଭାଗରେ ଆଦ୍ୟ ପ୍ରବର୍ତ୍ତକ ଥିଲେ । ତାଙ୍କର 'କବିଚରିତ' ଜୀବନୀ ରଚନାରେ ପ୍ରଥମ ପଦକ୍ଷେପ । ତେବେ ନବଲରାମ ଓ ଗୋବର୍ଦ୍ଧନ ହିଁ ଜୀବନୀ-ସାହିତ୍ୟର ଭିତ୍ତିନ୍ୟାସ କରିଥିଲେ । ଜୀବନୀ-ସାହିତ୍ୟର ଶିଳ୍ପରୂପ ସେମାନଙ୍କ ରଚନାରେ ହିଁ ପ୍ରବର୍ତ୍ତିତ ହେଲା । ଜୀବନୀରେ ସମୟ, ବ୍ୟକ୍ତିଗତ ଏବଂ ଐତିହାସିକ ଉପାଦାନ ସ୍ଥାନ ପାଇଥାଏ; ତେବେ ଜୀବନୀ-ସାହିତ୍ୟରେ ଏହା ଅପରିହାର୍ଯ୍ୟ ନୁହେଁ । ବ୍ୟକ୍ତି ଜୀବନର ବହୁ ଘଟଣା ବିସ୍ମୃତ ହୋଇଥାଏ, ବହୁ ଘଟଣା ମଧ୍ୟ ଜୀବିତ ଥାଏ । ବିଶ୍ୱନାଥ ଭଟ୍ଟଙ୍କର ଲିଖିତ 'ବୀର ନର୍ମଦ' ଏକ ଗୁରୁତ୍ୱପୂର୍ଣ୍ଣ ଜୀବନୀ । ଅମ୍ବୁଭାଇ ପୁରାଣୀଙ୍କର 'ଅରବିନ୍ଦ ଜୀବନ' ଏବଂ ମଧୁରୱାଲାଙ୍କ ଲିଖିତ 'ସ୍ୱାମୀ ସହଜାନନ୍ଦ' ମଧ୍ୟ ଉଲ୍ଲେଖଯୋଗ୍ୟ ।

୧୯୩୦ ପରେ ଜୀବନୀ-ସାହିତ୍ୟର ବିଶେଷ ଉନ୍ନତି ସାଧିତ ହୋଇଥିଲା । କହ୍ନାଇଲାଲ ମୁନ୍‌ସି ମଧ୍ୟ କତିପୟ ଜୀବନୀ ସଂକଳନ କରିଥିଲେ । ସ୍ୱାଧୀନତା ପରବର୍ତ୍ତୀ କାଳରେ ଜୀବନୀ ସାହିତ୍ୟ ପର୍ଯ୍ୟାୟରେ 'ଆତ୍ମଜୀବନୀ' ଏକ ନୂତନ ଆଭିମୁଖ୍ୟରୂପେ ବିଶେଷ ପ୍ରଚଳିତ ଏବଂ ଆଦୃତ ।

ପ୍ରଭୁଦାସ ଗାନ୍ଧୀଙ୍କର 'ଜୀବନ୍-ନନ୍-ପରୋଧ' (ଜୀବନ-ପ୍ରଭାତ) ଗାନ୍ଧିଜୀଙ୍କର ଏକ ସାର୍ଥକ ଜୀବନୀ । ସ୍ୱାମୀ ଆନନ୍ଦଙ୍କର 'କୁଳକାଥୋ' ଏକ ତଥ୍ୟପୂର୍ଣ୍ଣ ରଚନା ।

ଏଥିରେ ସମାଜର ଏକାଧିକ ବ୍ୟକ୍ତିଜୀବନର ଘଟଣା ପ୍ରତିବିମ୍ବିତ । ଜୀବନୀ-ସାହିତ୍ୟ କ୍ଷେତ୍ରରେ ଏହା ଏକ ନୂତନ ପରୀକ୍ଷା ।

ନରହରି ପରେଖଙ୍କର 'ସର୍ଦ୍ଦାର ପଟେଲ୍' ଏକ ବିଶିଷ୍ଟ ଜୀବନୀ । ମାତ୍ର ଏଥିରେ ସର୍ଦ୍ଦାରଜୀଙ୍କର ପ୍ରଚଣ୍ଡ ବ୍ୟକ୍ତିତ୍ୱ ତଥା ରାଜନୈତିକ ପ୍ରତିଭା ବିଶ୍ୱସ୍ତଭାବରେ ପ୍ରତିଫଳିତ ହୋଇପାରିନାହିଁ । ଏହି ଲେଖକଙ୍କର 'ମହାଦେବଭାଇନୁ ପୂର୍ବଚରିତ' ଏକ ମୂଲ୍ୟବାନ୍ ରଚନା । ଆମ୍ବେଲାଲର ନରେନ୍‌ଜୀ ଯୋଶୀ କେତେଗୁଡ଼ିଏ ଜୀବନୀ ପ୍ରଣୟନ କରିଛନ୍ତି; ମାତ୍ର ସେଥିରେ ଶୈଳିଗତ ନିଷ୍ଠା ପ୍ରତିଫଳିତ ହୋଇପାରିନାହିଁ ।

୧୯୪୦ ମସିହା ବେଳକୁ ଗୁଜୁରାଟୀ ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ଅସ୍ଥିରତା ଦେଖାଦେଇଥିଲା । ତାହାର କାରଣ ସ୍ୱରୂପ ରାଜନୈତିକ ଅସ୍ଥିରତା, ଆର୍ଥିକ ଦୁର୍ଗତି ହିଁ ଉଲ୍ଲେଖ କରାଯାଇପାରେ । ମଧ୍ୟବିତ୍ତଶ୍ରେଣୀ, କୃଷକ ଏବଂ ଶ୍ରମିକ ସଂପ୍ରଦାୟ ଆର୍ଥିକ ଦୁରବସ୍ଥାର ସମ୍ମୁଖୀନ ହୋଇଥିଲେ । ଭାରତବର୍ଷର ରାଜନୀତିରେ ହିନ୍ଦୁ ମୁସଲମାନ ବିବାଦ, ଭାରତବର୍ଷର ବିଭାଜନ ପ୍ରଶ୍ନ ନେତୃବୃନ୍ଦଙ୍କୁ ବିଚଳିତ କରିଥିଲା । ଜୀବନର ମୂଲ୍ୟବୋଧରେ ଏକ ନୈରାଶ୍ୟସୂଚକ ପରିବର୍ତ୍ତନ ଆସିଥିଲା । ଏହିସବୁ ଘଟଣାର ପରିଣତିସ୍ୱରୂପ ଦେଶରେ ଯେପରି ସାଂସ୍କୃତିକ ସଙ୍କଟର ସୂତ୍ରପାତ ହୋଇଥିଲା; ମାତ୍ର ୧୯୪୭ ମସିହାରେ ସ୍ୱାଧୀନତା ସଂଗ୍ରାମର ଚୂଡ଼ାନ୍ତ ସଫଳତା ଯୋଗୁ ସମଗ୍ର ଦେଶବାସୀ ନୂତନ ଯୁଗର ଆଶା ଅଭିଳାଷଦ୍ୱାରା ଅନୁପ୍ରାଣିତ ହୋଇଥିଲେ । ଏହା ସଙ୍ଗେ ସଙ୍ଗେ ପ୍ରତ୍ୟେକ ପ୍ରାଦେଶିକ ଭାଷା ଓ ସାହିତ୍ୟ ମଧ୍ୟ ଏକ ନୂତନ ଆହ୍ୱାନର ସମ୍ମୁଖୀନ ହୋଇଥିଲା । ଏହି ସୁଦୂରପ୍ରସାରୀ ପ୍ରଭାବ ଗୁଜୁରାଟୀ ସାହିତ୍ୟରେ ନୂତନ ସୃଷ୍ଟିପାଇଁ ଉପାଦାନ ଯୋଗାଇ ଦେଇଥିଲା । ସ୍ୱାଧୀନତାପ୍ରାପ୍ତି ପରେ ଦେଶରେ ସାଂପ୍ରଦାୟିକ ଅଶାନ୍ତି ଏବଂ ୧୯୪୮ ମସିହାରେ ମହାତ୍ମା ଗାନ୍ଧୀଙ୍କ ହତ୍ୟା ଦେଶବାସୀଙ୍କ ମନରେ ପ୍ରଚଣ୍ଡ ଧକ୍‌କା ଦେଇଥିଲା । ସର୍ଦ୍ଦାର ବଲ୍ଲଭଭାଇ ପଟେଲ, ଠକ୍‌କରବାପାଙ୍କ ମୃତ୍ୟୁ ମଧ୍ୟ ଗୁଜୁରାଟୀ ଜନଜୀବନରେ ଦାରୁଣ ଆଘାତ ଦେଇଥିଲା । ଗୁଜୁରାଟ ବିଶ୍ୱବିଦ୍ୟାଳୟ (୧୯୫୦), ବରୋଦା ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠାଦ୍ୱାରା ବୌଦ୍ଧିକ ବିକାଶର ପଥ ସୁଗମ ହୋଇଥିଲା । ଗୁଜୁରାଟ, ସୌରାଷ୍ଟ୍ର ଏବଂ କଚ୍ଛ ଅଞ୍ଚଳରେ ସାଂସ୍କୃତିକ ଅଭ୍ୟୁଦୟ ପର୍ବ ଆରମ୍ଭ ହେଲ । ଉଚ୍ଚଶିକ୍ଷା ପ୍ରସାର, ଏକାଧିକ କଲେଜ ପ୍ରତିଷ୍ଠା, ବହୁ ପତ୍ରପତ୍ରିକାର ସମ୍ପାଦନା, ବିବିଧ ବିଷୟକ ପୁସ୍ତକ ପ୍ରଣୟନ ଏହି ଅଭ୍ୟୁଦୟ ପର୍ବର ଶୁଭ ନିଦର୍ଶନ-ରୂପେ ପ୍ରତୀତ ।

ସ୍ୱାଧୀନତା ପରବର୍ତ୍ତୀ ଯୁଗରେ ଗବେଷଣା କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ ସିଦ୍ଧି ଓ କୃତିତ୍ୱ ହାସଲ ହୋଇଥିବାର ଜଣାଯାଏ । ଗୁଜୁରାଟୀ ଭାଷା ଓ ସାହିତ୍ୟର ବିଭିନ୍ନ

ବିଭାଗର ଅନୁଶୀଳନ ଗବେଷକମାନଙ୍କର ଦୃଷ୍ଟି ଆକର୍ଷଣ କରିଛି । ପ୍ରାଚୀନ ଗୁଜୁରାଟୀ ଭାଷାର ଗବେଷକ ଡକ୍ଟର ଭୋଗୀଲାଲ ସନ୍‌ଦେଶରା ଉଚ୍ଚକୋଟୀର ପ୍ରବନ୍ଧ ଲେଖିଛନ୍ତି । ବସ୍ତୁପାଳଙ୍କ ସମ୍ପର୍କରେ ତାଙ୍କର ଗବେଷଣା ବିଶେଷ ଭାବରେ ଆଦୃତ । ଡକ୍ଟର ଆର୍. ଆଇ. ପଟେଲ ଗୁଜୁରାଟୀ ଉପନ୍ୟାସର ଇତିହାସ ଲେଖିଛନ୍ତି ଏବଂ ଡକ୍ଟର ରତନ ମାର୍ଶଲ ଗୁଜୁରାଟରେ ସାମ୍ବାଦିକତା ବିଷୟରେ ଗବେଷଣା କରିଛନ୍ତି । ଅନେକ ତରୁଣ ଗବେଷକ ପ୍ରାଚୀନ କାବ୍ୟ-କବିତାର ଶୁଦ୍ଧ ଆଲୋଚନାତ୍ମକ ସଂସ୍କରଣ ମଧ୍ୟ ପ୍ରକାଶ କରିଥିଲେ । ଏତାଦୃଶ ପ୍ରକାଶନ ମଧ୍ୟରେ କବି ଭାଲନ୍‌ଙ୍କର 'କାଦମ୍ବରୀ' ଓ ପଦ୍ମନାଭଙ୍କର 'କହ୍ନାଦାଦା ପ୍ରବନ୍ଧ' ଅନ୍ତର୍ଭୁକ୍ତ ।

ପତ୍ରପତ୍ରିକା ଆଧୁନିକ ସାହିତ୍ୟର ଏକ ଶକ୍ତିଶାଳୀ ଆୟୁଧ । ମଣିଭାଇଙ୍କ ସମ୍ପାଦିତ ସାପ୍ତାହିକ 'ହରିଜନ', ଗଟୁଲାଲ ଧ୍ରୁବଙ୍କର ସମ୍ପାଦିତ 'ଜ୍ୟୋତିଧାରା', ଉମାଶଙ୍କର ଯୋଶୀଙ୍କ ସମ୍ପାଦିତ ସାହିତ୍ୟପତ୍ର 'ସଂସ୍କୃତି' ଆଧୁନିକ ଗୁଜୁରାଟୀ ସାହିତ୍ୟରେ ବଳିଷ୍ଠ ରାଷ୍ଟ୍ରୀୟ ଚିନ୍ତା ତଥା ପ୍ରାମାଣିକ ସାହିତ୍ୟିକ ଶୈଳୀ ପ୍ରବର୍ତ୍ତନ କରିବାରେ ସହାୟତା କରିଥିଲା । ତରୁଣ ଲେଖକମାନଙ୍କୁ ଉତ୍ସାହ ଏବଂ ପ୍ରେରଣା ଦେବାରେ 'କୁମାର' ପତ୍ରିକାର ଭୂମିକା ସ୍ୱୀକାର୍ଯ୍ୟ । 'ହରିଜନ' ଏବଂ 'ଶିକ୍ଷଣ ଆନେ ସାହିତ୍ୟ' ପତ୍ରିକା ଗାନ୍ଧୀ ଆଦର୍ଶବାଦ ତଥା ଶିକ୍ଷା ସମ୍ପର୍କୀୟ ସଂସ୍କାର ସପକ୍ଷରେ ବରାବର ଆନ୍ଦୋଳନ କରିଛନ୍ତି । ଗୁଜୁରାଟୀ ସାହିତ୍ୟରେ ବୈପ୍ଳବିକ ଆଭିମୁଖ୍ୟ ପ୍ରବର୍ତ୍ତନ କରିବାରେ 'ଗୁଜୁରାଟ ମିତ୍ର', 'ପ୍ରଜାବନ୍ଧୁ', 'ସନ୍ଦେଶ' ଏବଂ 'ଜନ୍ମଭୂମି' ସମ୍ବାଦପତ୍ରର ଦାନ ମଧ୍ୟ ସ୍ୱୀକାର୍ଯ୍ୟ ।

ଗୁଜୁରାଟୀ ସାହିତ୍ୟ ବହୁ ଆକର୍ଷଣ ବ୍ୟକ୍ତିତ୍ୱର ସୌରଭରେ ଆମୋଦିତ ହୋଇପାରିଛି । ମୀରାବାଈଙ୍କଠାରୁ ଆରମ୍ଭ କରି ମହାତ୍ମା ଗାନ୍ଧୀ, ସର୍ଦ୍ଦାର ବଲ୍ଲଭଭାଇ ପଟେଲ, କାକା କାଲେଲ୍‌କର, କହ୍ନାଇଲାଲ ମୁନ୍‌ସି, ବିଶ୍ୱନାଥ ବାଭେ ପ୍ରମୁଖ ଚିନ୍ତାଶୀଳ, ଦାର୍ଶନିକ, ସମାଜସଂସ୍କାରକ ଓ ଦେଶସେବକ ସେମାନଙ୍କର ମୂଲ୍ୟବାନ୍ ରଚନାଦ୍ୱାରା ଗୁଜୁରାଟୀ ସାହିତ୍ୟଧାରାକୁ ଓତପ୍ରୋତ ଭାବରେ ଜଡ଼ିତ ଓ ପ୍ରଭାବିତ କରିପାରିଛନ୍ତି ।

---

# ଉର୍ଦ୍ଦୁ

**ଭାଷାର କ୍ରମବିକାଶ—**

ଉର୍ଦ୍ଦୁ ଶବ୍ଦ ତୁରସ୍କଭାଷାରୁ ଉତ୍ପନ୍ନ । ତୁରସ୍କଭାଷାରେ ଏହି ଶବ୍ଦର ଅର୍ଥ 'ସେନା' ବା 'ଶିବିର'କୁ ବୁଝାଏ । କାଳକ୍ରମେ ଏହା ସୈନ୍ୟବାହିନୀର ଭାଷାରୂପେ ପ୍ରଚଳିତ ହେଲା ।

ଇଣ୍ଡୋ-ଏରିଆନ୍ (Indo-Ariyan) ଭାଷାର ଉତ୍ପତ୍ତି ଖ୍ରୀଷ୍ଟାବ୍ଦ ଦଶମ ଶତାବ୍ଦୀ ବେଳକୁ ସମ୍ଭବ ହୋଇଥିଲା । ଭାରତରେ ଯେଉଁ ଇଣ୍ଡୋ-ଏରିଆନ୍‌ମାନେ ଥିଲେ, ସେମାନଙ୍କର ଭାଷା ହେଉଛି 'ଇଣ୍ଡୋ-ଏରିଆନ୍' । ସେମାନେ ଭାରତବର୍ଷରେ ପଦାର୍ପଣ କରି ବସବାସ କରିବା ପର୍ଯ୍ୟନ୍ତ ପ୍ରାୟ ଅନେକ ସମୟ ଲାଗିଥିଲା । କାଳକ୍ରମେ ଅନାର୍ଯ୍ୟମାନଙ୍କ ଭାଷା ସହିତ ସେମାନଙ୍କ ଭାଷାର ମିଶ୍ରଣ ହୋଇଥିଲା । ତାହାର ପ୍ରଭାବ-ଫଳରେ ଇଣ୍ଡୋ-ଏରିଆନ୍ ଭାଷାରେ ଆମେ କେତେକ ଶବ୍ଦର ପ୍ରଚଳନ ଦେଖୁ ; ଯଥା—ପହିଲ୍ (First), ନୀଳ (Blue), କାଳ (Time) ଏବଂ ରାତି (Night) ଇତ୍ୟାଦି । ଇଣ୍ଡୋ-ଏରିଆନ୍‌ଭାଷାର ବିକାଶ ସହିତ ଅନ୍ୟାନ୍ୟ କେତେଗୁଡ଼ିଏ ଭାଷାର ମଧ୍ୟ ଉତ୍ପତ୍ତି ଘଟିଥିଲା । ଦଶମ, ଏକାଦଶ ଶତାବ୍ଦୀ ବେଳକୁ ଭାରତରେ ମୁସଲିମ ବା ପଠାଣମାନଙ୍କର କ୍ରମଶଃ ପ୍ରସାର ଭାଷା ଦୃଷ୍ଟିରୁ ତାତ୍ପର୍ଯ୍ୟପୂର୍ଣ୍ଣ । ସେମାନଙ୍କ ସହିତ ଏକ ନୂତନ ଧର୍ମ, ନୂତନ ଭାଷା ଏବଂ ନୂତନ ସମାଜର ଉଦ୍ଭବ ହେଲା । ସେହି ସମୟରେ ପାର୍ସିଭାଷା ଭାରତରେ ପ୍ରଚଳିତ ହେଲା । ପାର୍ସିଭାଷାର ମୂଳରେ ଆର୍ଯ୍ୟଭାଷାର ପ୍ରଭାବ ନ ଥିଲା । ପୁନଶ୍ଚ ଆରବିକ୍ ଓ ଟର୍କିସ ଭାଷାର ପ୍ରଭାବ ମଧ୍ୟ ନ ଥିଲା । ପଶ୍ଚିମାଞ୍ଚଳର ହିନ୍ଦୀଭାଷାକୁ ପାର୍ସିଭାଷା ବହୁ ପରିମାଣରେ ପ୍ରଭାବିତ କରିଥିଲା । ପଞ୍ଚଦଶ ଓ ଷୋଡ଼ଶ ଶତାବ୍ଦୀ ପର୍ଯ୍ୟନ୍ତ ପଶ୍ଚିମାଞ୍ଚଳ ହିନ୍ଦୀଭାଷା ଉପରେ ପାର୍ସିଭାଷାର ପ୍ରଭାବ ଲାଗିରହିଥିଲା । କାଳକ୍ରମେ ଅନେକ ପାର୍ସି ଶବ୍ଦ ହିନ୍ଦୀଭାଷାରେ କ୍ରମଶଃ ପ୍ରଯୁକ୍ତ ଏବଂ ବ୍ୟବହୃତ ହେଲା । ଏହା ମୂଳରେ ମୁସଲିମ ସମ୍ପ୍ରଦାୟର ପ୍ରଭାବ ପଡ଼ିଥିଲା । ଠିକ୍ ସେହିପରି ପାର୍ସିଭାଷାରେ ମଧ୍ୟ ଉତ୍ତର-ଭାରତୀୟ ଭାଷାମାନଙ୍କର ପ୍ରଭାବ ପଡ଼ିଥିଲା । ଉଦାହରଣସ୍ୱରୂପ ଆଲବିରୁଣି ତାଙ୍କର ରଚନାରେ ପ୍ରଚୁର ଭାବରେ ହିନ୍ଦୀ ଶବ୍ଦ ପ୍ରୟୋଗ କରିଥିଲେ ।

ଉର୍ଦ୍ଦୁଭାଷା ଯେତେବେଳେ ସାହିତ୍ୟିକ ରୂପ ଗ୍ରହଣ କଲା, ସେତେବେଳକୁ ତାହା ପାର୍ସିଭାଷାରୁ ଅନେକ ଶବ୍ଦ ଗ୍ରହଣ କରିସାରିଥିଲା ଏବଂ ପାର୍ସିଭାଷା ମାଧ୍ୟମରେ

ଆରବିକ୍ ଓ ତୁରସ୍କଭାଷାରୁ ବହୁ ଶବ୍ଦ ଉର୍ଦ୍ଦୁଭାଷାରେ ପ୍ରବେଶ କରିଥିଲା । ପାର୍ସି ସେତେବେଳେ ଆକ୍ରମଣକାରୀମାନଙ୍କର ଭାଷା ଥିଲା । ପଠାଣମାନେ ଭାରତରେ ଆଧିପତ୍ୟ ବିସ୍ତାର କରିବା ସଙ୍ଗେ ସଙ୍ଗେ ଦିଲ୍ଲୀରେ ସେମାନଙ୍କର ରାଜଧାନୀ ସ୍ଥାପନ କରିଥିଲେ (୧୨୦୬) । ଦିଲ୍ଲୀ ସେତେବେଳେ ଖଡ଼ିବୋଲି, ହରିଆଣି, ବ୍ରଜ ପ୍ରଭୃତି ଭାଷାର ପ୍ରାଣକେନ୍ଦ୍ର ଥିଲା । ନବାଗତ ଶାସକ ଓ ଭାରତୀୟମାନଙ୍କ ମଧ୍ୟରେ କ୍ରମଶଃ ସମ୍ପର୍କ ପ୍ରତିଷ୍ଠିତ ହେଲା । ପରସ୍ପରର ଭାବ ଆଦାନପ୍ରଦାନରୁ ଏକ ନୂତନ ଭାଷାର ଆବଶ୍ୟକତା ଅନୁଭୂତ ହେଲା । ମୁସଲମାନମାନେ ସେମାନଙ୍କ ସହିତ ଯେଉଁ ଭାଷା-ସଂପଦ ଆଣିଥିଲେ ଏବଂ ଉତ୍ତର ଭାରତରେ ଯେଉଁ ଭାଷାସମୂହ ପ୍ରଚଳିତ ଥିଲା, ତାହାର ମିଶ୍ରଣରୁ ହିଁ ଯେଉଁ ନୂତନ ଭାଷାର ଉତ୍ପତ୍ତି ହେଲା, ତାହା ହିଁ ହେଉଛି 'ଉର୍ଦ୍ଦୁଭାଷା' ।

ମୁସଲମାନମାନଙ୍କ ଆଗମନ ସମୟରେ ସୌରସେନୀ ଅପଭ୍ରଂଶ ଏକରକମ ଅଚଳ ହୋଇଯାଇଥିଲା ଏବଂ ପଶ୍ଚିମାଞ୍ଚଳ ହିନ୍ଦୀ ନାନାଦି ଭାବରେ ପରିବର୍ତ୍ତିତ ହୋଇଥିଲା । ଭାଷା-ରାଜ୍ୟରେ ଏ ଯେଉଁ ପରିବର୍ତ୍ତନ ଚାଲିଥିଲା, ମୁସଲମାନମାନଙ୍କ ଆଗମନ ଏବଂ ଶାସନ ପ୍ରତିଷ୍ଠା ଏହି କାର୍ଯ୍ୟକୁ ତ୍ୱରାନ୍ୱିତ କରିଦେଇଥିଲା ।

ଉର୍ଦ୍ଦୁଭାଷାର ସର୍ବପ୍ରାଚୀନ ଏବଂ ପ୍ରାମାଣିକ ରଚନା ଏକରକମ ଦୁଷ୍ପ୍ରାପ୍ୟ । ପ୍ରାଥମିକ କାଳ ରଚନା ଭିତରେ ଅମିର ଖସ୍ରୁ ପ୍ରଭୃତିଙ୍କ ଲେଖାରେ ପ୍ରାଚୀନ ଉର୍ଦ୍ଦୁ ସାହିତ୍ୟର ନମୁନା ଦେଖିବାକୁ ମିଳେ । ଅମିର ଖସ୍ରୁ (୧୨୫୫-୧୩୨୫) ତାଙ୍କର ଜୀବନକାଳ ମଧ୍ୟରେ ଅନେକ ରଚନା ଲେଖିଥିଲେ; ଯାହାର ସ୍ୱରୂପ ହେଉଛି ଉର୍ଦ୍ଦୁଭାଷା । ଆଦି ଅବସ୍ଥାରେ ବା ପ୍ରଥମ ପର୍ଯ୍ୟାୟରେ ଉର୍ଦ୍ଦୁର ଅବସ୍ଥା ଓ ବ୍ୟବହାର ଦ୍ୱି-ବିଧ ଥିଲା । ପ୍ରଥମତଃ ସାଧୁ, ଫକୀର ଏବଂ ସନ୍ନ୍ୟାସୀମାନଙ୍କର ରଚନାରେ ପ୍ରଚଳିତ ଭାଷା, ଦ୍ୱିତୀୟତଃ ଭାରତୀୟ ସାହିତ୍ୟରେ ଭକ୍ତି-ଆନ୍ଦୋଳନର ପୁରୋଧାମାନଙ୍କ ଦ୍ୱାରା ବ୍ୟବହୃତ ଭାଷା । ଉଭୟଙ୍କର ଉଦ୍ଦେଶ୍ୟ ଥିଲା ସ୍ୱ ସ୍ୱ ଧର୍ମମତ ପ୍ରଚାର । ଏହି ଧର୍ମପ୍ରଚାର ଫଳରେ ଭାଷା-ରାଜ୍ୟରେ ଗୋଟିଏ ସମାଧାନ ସମ୍ଭବ ହୋଇଥିଲା । ଆଲ୍ଲାଉଦ୍ଦିନ ଖିଲିଜିଙ୍କର ଆକ୍ରମଣ (୧୨୯୬-୧୩୦୬), ଦିଲ୍ଲୀରୁ ଦୌଲତାବାଦ ରାଜଧାନୀ ପରିବର୍ତ୍ତନ, ୧୩୪୭ ଖ୍ରୀଷ୍ଟାବ୍ଦରେ ବାହାମନୀ ରାଜ୍ୟ ସ୍ଥାପନା ଏବଂ ମୁସଲମମାନଙ୍କ ପକ୍ଷରେ ସେମାନଙ୍କର ସଂସ୍କୃତି ଓ ଧର୍ମକୁ ଭାରତରେ ପ୍ରଚାର କରିବାପାଇଁ ଯେଉଁ ଆଗ୍ରହ, ଦାକ୍ଷିଣାତ୍ୟ ଆକ୍ରମଣ ଓ ଆଓରଙ୍ଗାବାଦଠାରେ ଦ୍ୱିତୀୟ ରାଜଧାନୀ ସ୍ଥାପନ—ଭାରତର ବିଭିନ୍ନାଞ୍ଚଳରେ ଉର୍ଦ୍ଦୁଭାଷା ପ୍ରଚାର ଏବଂ ପ୍ରସାରର ଏହା ହିଁ ହେଲା କାରଣ ।

ସମ୍ରାଟ୍ ଆକବର (୧୫୪୨-୧୬୦୫) ଆଗ୍ରାଠାରେ ତାଙ୍କର ରାଜଧାନୀ ସ୍ଥାପନ କରିଥିଲେ । ଆଗ୍ରା ସେତେବେଳେ ବ୍ରଜଭାଷାର କେନ୍ଦ୍ରସ୍ଥଳୀ ଥିଲା । ସମ୍ଭବତଃ ଏହି କାରଣରୁ ଉର୍ଦ୍ଦୁ ଉପରେ ବ୍ରଜଭାଷାର ପ୍ରଭାବ ପଡ଼ିଥିଲା । ଉତ୍ତର ଭାରତର ଉର୍ଦ୍ଦୁ ବହୁ ପରିବର୍ତ୍ତନର ସମ୍ମୁଖୀନ ହୋଇଥିଲା । ସଂସ୍କୃତ ଶବ୍ଦର ମିଶ୍ରଣ, ଭାଷାର ପ୍ରଭାବ ଓ ଶୈଳୀରେ ପରିବର୍ତ୍ତନ, ଉଚ୍ଚାରଣଗତ ପରିବର୍ତ୍ତନ ଆଗ୍ରାଠାରୁ ହିଁ ଆରମ୍ଭ ହେଲା ଏବଂ ପରବର୍ତ୍ତୀକାଳରେ ଲକ୍ଷ୍ନୌଠାରେ ଏହି ପରିବର୍ତ୍ତନ ଚରମ ସ୍ଥାନରେ ଉପନୀତ ହୋଇଥିଲା । ଶା'ଜାହାନ ୧୬୨୮ ମସିହାରେ ଦିଲ୍ଲୀକୁ ତାଙ୍କର ରାଜଧାନୀ ସ୍ଥାନାନ୍ତରିତ କଲେ । ଏହି ସ୍ଥାନାନ୍ତର ଯୋଗୁଁ ଉର୍ଦ୍ଦୁଭାଷା ବହୁଭାବରେ ପରିବର୍ତ୍ତିତ ଓ ପ୍ରଭାବିତ ହେବାକୁ ଲାଗିଲା । ଉର୍ଦ୍ଦୁ ଶବ୍ଦ ପ୍ରଥମ ଥର ପାଇଁ ବାବରଙ୍କର 'ତାରିଖ ପାରିକ୍କସ'ଙ୍କ ଲେଖାରେ ଉଲ୍ଲିଖିତ ହୋଇଥିଲା । ବାବର ତାଙ୍କର ସୈନ୍ୟମାନଙ୍କୁ 'ଉର୍ଦ୍ଦୁ ନସ୍‌ରତ' ବୋଲି ଅଭିହିତ କରିଥିଲେ । ଏହାର ଅର୍ଥ 'ବିଜୟୀ ସେନା' । କିନ୍ତୁ ଭାଷାଭାବରେ ଉର୍ଦ୍ଦୁ ଶବ୍ଦର ପ୍ରଚଳନ ବିଶେଷ ପ୍ରାଚୀନ ନୁହେଁ । ମୀର୍‌ଙ୍କର ଲେଖା 'ନିକାତୁସ୍‌ସୁର୍' (୧୭୫୨)ରେ ଉର୍ଦ୍ଦୁଶବ୍ଦ ପ୍ରଥମ ଥର ପାଇଁ ଭାଷା ଅର୍ଥରେ ବ୍ୟବହୃତ ହୋଇଥିଲା । ଲାହୋରର ମୁରାଦଶାହଙ୍କର କବିତା 'ନାମେଇମୁରାଦ୍' (୧୭୮୮), ମୌଲାନା ବାକାର ଆଗାଙ୍କର ଗଦ୍ୟ ବ୍ୟାଖ୍ୟାରେ ଏହି ଉର୍ଦ୍ଦୁଶବ୍ଦ ଭାଷା ଅର୍ଥରେ ବ୍ୟବହୃତ ହୋଇଥିଲା । ମୁସାଫିଙ୍କ ଲେଖା 'ତାଜକୀରସୁରହିନ୍ଦ'ରେ ହିନ୍ଦୀଶବ୍ଦ ଉର୍ଦ୍ଦୁଭାଷା ଅର୍ଥରେ ବ୍ୟବହୃତ ହୋଇଥିଲା (୧୭୯୪) । ହିନ୍ଦୀ ଶବ୍ଦ ଉର୍ଦ୍ଦୁଭାଷା ଅର୍ଥରେ ବହୁଦିନଧରି ବ୍ୟବହୃତ ହୋଇଥିବା ଜଣାଯାଏ । ଏପରି କି ମୀର୍ଜା ଗାଲିବଙ୍କ ସମୟରେ ( ୧୮୬୯ ମୃତ୍ୟୁ ) ଉର୍ଦ୍ଦୁଭାଷା ଅର୍ଥରେ ହିନ୍ଦୀ ଶବ୍ଦ ବ୍ୟବହୃତ ହୋଇଥିଲା । ଯେତେବେଳେ କାବ୍ୟକବିତାରେ ଏହା ବ୍ୟବହୃତ ହେଉଥିଲା, ସେତେବେଳେ ଏହାର ନାମ ଥିଲା 'ରେକ୍ତା' । ଭାରତବର୍ଷର ପ୍ରାଚୀନ ଲେଖକ ଡେଲୀ ଏବଂ ଫ୍ରାୟର ସେତେବେଳେ ଉର୍ଦ୍ଦୁକୁ 'ଇନ୍ଦୋସ୍ଥାନ' ବୋଲି ଅଭିହିତ କରିଥିଲେ । ଡକ୍‌ଟର ଜନ ଗିଲକ୍ରାଇଷ୍ଟଙ୍କ ପରି କେତେକ ଲେଖକ ଏହି ଭାଷାକୁ ହିନ୍ଦୁସ୍ଥାନୀ ବୋଲି କହୁଥିଲେ ।

**ଉତ୍ତରଭାରତରେ ଉର୍ଦ୍ଦୁର ପ୍ରସାର—**

ଅଷ୍ଟାଦଶ ଶତାବ୍ଦୀର ପ୍ରାକ୍‌କାଳରେ ଉତ୍ତର-ଭାରତରେ ଉର୍ଦ୍ଦୁଭାଷାର ବିଶେଷ ଉନ୍ନତି ହେଲା । ୱାଲି ଔରଙ୍ଗାବାଦୀଙ୍କ 'ଦିୱାନ' ୧୭୦୦ ମସିହାରେ ଦିଲ୍ଲୀକୁ ଅଣାଯାଇଥିଲା । ଅନେକ କବି ୱାଲିଙ୍କ ଦ୍ୱାରା ପ୍ରଭାବିତ ହୋଇଥିଲେ ଏବଂ ଯୁଗାନୁକ୍ରମେ କବିମାନେ ୱାଲିଙ୍କ ଆଦର୍ଶରେ ବିଭିନ୍ନ ରଚନା ସୃଷ୍ଟି କରିଥିଲେ । କେନ୍ଦ୍ରରେ ମୋଗଲ ଶାସନ ଦୁର୍ବଳ ହେବା ସଙ୍ଗେ ସଙ୍ଗେ

ପାର୍ସିଭାଷାର ପ୍ରସାର କ୍ରମେ ସୀମିତ ହୋଇଯାଇଥିଲା ଏବଂ ତା' ପରିବର୍ତ୍ତେ ଉର୍ଦ୍ଦୁଭାଷା କ୍ରମଶଃ ଲୋକପ୍ରିୟତା ହାସଲକଲା । ଏପରି କି ପାର୍ସିକବି ବେଦିଲ ଉମିଦ ଖାନେ ଅରଜୁ ଓ ଫୀଡ଼ଲଭ୍ ଏକ ସାଧାରଣ ଉର୍ଦ୍ଦୁଭାଷାରେ ଲେଖିବାପାଇଁ ଆଗ୍ରହ ପ୍ରକାଶ କରିଥିଲେ । ଅଓରଙ୍ଗଜେବଙ୍କ ମୃତ୍ୟୁ ପରେ (୧୭୦୭) ସମଗ୍ର ମୋଗଲ ସାମ୍ରାଜ୍ୟର ପତନ ହେଲା । ଅସ୍ଥିରତା ଓ ଅଶାନ୍ତି ଚାରିଆଡ଼େ ବ୍ୟାପିଯାଇଥିଲା । ମହମ୍ମଦଶାହ ୧୭୦୯-୧୭୪୮ ପର୍ଯ୍ୟନ୍ତ ଶାସନ କରିଥିଲେ । ଏହି ସମୟରେ ପାର୍ସିମାନଙ୍କ ଆକ୍ରମଣ ଫଳରେ ସମଗ୍ର ଦେଶ ସନ୍ତ୍ରସ୍ତ ହୋଇଯାଇଥିଲା । ନାଦିରଶାହାଙ୍କ ଦିଲ୍ଲୀ ଆକ୍ରମଣ, ଆହମ୍ମଦଶାହ ଅବଦାଲି (୧୭୪୧-୧୭୬୧)ଙ୍କ ବାରମ୍ବାର ଆକ୍ରମଣ, ଜାଠ, ମରହଟ୍ଟା ଏବଂ ରୋହିଲାମାନଙ୍କର ଉପଦ୍ରବ ଦେଶରେ କମ୍ ଅରାଜକତା ସୃଷ୍ଟି କରି ନଥିଲା । ଏହି ସମସ୍ତ ରାଜନୀତିକ ଓ ସାମରିକ ଘଟଣାବଳୀର ପ୍ରଧାନ କେନ୍ଦ୍ର ଥିଲା ଦିଲ୍ଲୀ । ୧୭୩୯ରେ ପାର୍ସି, ୧୭୫୭ରେ ଆଫଗାନ, ୧୭୬୦ରେ ମରହଟ୍ଟା, ୧୭୮୮ରେ ରୋହିଲା ଏବଂ ସର୍ବଶେଷରେ ୧୮୦୩ ରେ ଜେନେରାଲ ଲେକ୍— ଏମାନଙ୍କର ଆକ୍ରମଣ ଓ ଅଭିଯାନ ଦିଲ୍ଲୀର ଶାସନକୁ କକ୍ଷଚ୍ୟୁତ କରିଦେଉଥିଲା । ଏହି ଐତିହାସିକ ପରିପ୍ରେକ୍ଷିରେ ଉର୍ଦ୍ଦୁଭାଷାର କ୍ରମିକ ପ୍ରଗତି ଦେଖିବାକୁ ହେବ । ଏହି ରାଜନୀତିକ ଘାତପ୍ରତିଘାତବେଳେ ଉତ୍ତର ଭାରତରେ ଉର୍ଦ୍ଦୁଭାଷା ତାହାର ଶକ୍ତି ସଂଗ୍ରହ କରୁଥିଲା । ସେନା ପତି ଓ ସାମନ୍ତମାନଙ୍କ ମଧ୍ୟରେ ସଂଘର୍ଷ ଲାଗିଥିବାବେଳେ ଜନସାଧାରଣଙ୍କ ଭାଷାଭାବରେ ଉର୍ଦ୍ଦୁ ଆଦୃତ ହେଉଥିଲା । ଏହି ସମୟରେ ଆବ୍ରୁ (ମୃତ୍ୟୁ ୧୭୪୭ ), ନାଜ ( ମୃତ୍ୟୁ ୧୭୫୪ ), ମାଜନୁ (ମୃତ୍ୟୁ ୧୭୪୫ ), ମାଜହା (୧୭୮୧) ପ୍ରଭୃତି କବିମାନେ ଉର୍ଦ୍ଦୁ କବିତାର ଉନ୍ନତି ସାଧନ କରିଥିଲେ । ହାତମ୍ ଦିଲ୍ଲୀସ୍ଥିତ କବିମାନଙ୍କର ଅଗ୍ରଣୀ ଥିଲେ । ଏହି କବିମାନେ ଭାଷାର ସଂପୂର୍ଣ୍ଣ ସଂସ୍କାର ପାଇଁ ଚେଷ୍ଟା କରିଥିଲେ । ମୀର୍ଜା ମଜହର୍ ଉର୍ଦ୍ଦୁ କବିତାକୁ ଆଧ୍ୟାତ୍ମିକ ଓ ଅତୀନ୍ଦ୍ରିୟ ବ୍ୟାଖ୍ୟାରେ ପରିପୂର୍ଣ୍ଣ କରିଦେଇଥିଲେ । ଉର୍ଦ୍ଦୁଭାଷାର ଅନ୍ୟତମ ସାଧକ ସୌଉଦ୍ (୧୭୧୩-୧୭୮୦) ଦିଲ୍ଲୀରେ ବସବାସ କରୁଥିଲେ । ସେ ସମାଜର ପ୍ରତାରଣା ଓ ଛଳନା ବିରୁଦ୍ଧରେ ତାଙ୍କର ଲେଖନୀ-ଚାଳନା କରିଥିଲେ । ତାର ପରବର୍ତ୍ତୀ ଶାସକମାନଙ୍କର ଅପାରଗତା ଓ କୁଶାସନ, କର୍ମଚାରୀମାନଙ୍କର ଦୁର୍ନୀତି, ସାମନ୍ତମାନଙ୍କର ଷଡ଼ଯନ୍ତ୍ରକୁ ସୌଉଦ୍ ନିର୍ଭୀକ ଭାବରେ ଦମନ କରିଥିଲେ । ସାମରିକ ଶାସନର ଦୁର୍ବଳତାକୁ ଲକ୍ଷ୍ୟ କରି ସେ ବ୍ୟଙ୍ଗ ବିଦ୍ରୂପାତ୍ମକ ଲେଖା ରଚନା କରିଥିଲେ । ସୌଉଦଙ୍କର ବ୍ୟଙ୍ଗ-ବିଦ୍ରୂପାତ୍ମକ ଲେଖା, ଯଥା—'ସହର୍ ଅଶୋଭ' (ଅର୍ଥାତ୍ ବିପର୍ଯ୍ୟସ୍ତ ସମୟ) ଅପେକ୍ଷା ଆଉ ଶକ୍ତିଶାଳୀ ବ୍ୟଙ୍ଗ-ବିଦ୍ରୂପାତ୍ମକ ଲେଖା ଉର୍ଦ୍ଦୁ ସାହିତ୍ୟରେ ନାହିଁ । ଯୁଗର ପ୍ରତାରଣା ଓ ଦୁର୍ବଳତା ଏହି କବିତାରେ ଅତି ବଳିଷ୍ଠ ଭାଷାରେ ବର୍ଣ୍ଣିତ ହୋଇଅଛି । ସୌଉଦ୍

ତଦାନୀନ୍ତନ ପ୍ରହସି ବ୍ୟବସ୍ଥାକୁ ମଧ୍ୟ ନାପସନ୍ଦ କରିଥିଲେ । କାରଣ ତାଙ୍କ ମତରେ କଟୁଆଲ ହେଉଛି ଅପାରଗତା ଓ ପ୍ରତାରଣାର ପ୍ରତିମୂର୍ତ୍ତି । ସୌଉଦ୍ ତାଙ୍କର ଲେଖନୀ ଚାଳନା କରି ସମାଜରେ ପ୍ରତ୍ୟେକ କୁସଂସ୍କାର ଓ ଅନୁଷ୍ଠାନ ବିରୁଦ୍ଧରେ ଚମତ୍କାର କରିଥିଲେ । ମୋଗଲ ଶାସନର ପତନ ଓ ଧ୍ୱଂସ ତାଙ୍କର ଉର୍ଦ୍ଦୁ କାବ୍ୟ କବିତାରେ ବିଚକ୍ଷଣଭାବରେ ବର୍ଣ୍ଣିତ ହୋଇଥିଲା । ସମାଲୋଚନା ସାହିତ୍ୟରେ ମଧ୍ୟ ସେ ସିଦ୍ଧହସ୍ତ ଥିଲେ । ଗଜଲ୍ ମଧ୍ୟ ତାଙ୍କର ସାର୍ଥକ କବିତ୍ୱର ନିଦର୍ଶନ । ଏହା କୁହାଯାଏ ଯେ, ତାଙ୍କର ଗଜଲ୍ ଓ୍ୱାସିଦ୍ ଅପେକ୍ଷା ଶକ୍ତିଶାଳୀ; ଅର୍ଥାତ୍ ଉଭୟ କାବ୍ୟିକ ଓ ଆଙ୍ଗିକ ସଫଳତା ସେ ହାସଲ କରିଥିଲେ । ମୀର୍ ତାକିମୀର (୧୭୨୪-୧୮୧୦) ଆଗ୍ରାରେ ଜନ୍ମଗ୍ରହଣ କରିଥିଲେ; କିନ୍ତୁ ଦିଲ୍ଲୀରେ ବସବାସ କରୁଥିଲେ (୧୭୮୩ ପର୍ଯ୍ୟନ୍ତ) । ସେ ଅବଧଠାରେ ପ୍ରାଣତ୍ୟାଗ କରିଥିଲେ । ଦୁଃଖ ନିର୍ଯ୍ୟାତନା ମଧ୍ୟରେ ତାଙ୍କର ଜୀବନ ଗଢ଼ିଉଠିଥିଲା । କିନ୍ତୁ ସେ ପ୍ରାଚୀନ ମୂଲ୍ୟବୋଧ ପ୍ରତି କଦାପି ଆନୁଗତ୍ୟ ଦେଖାଇ ନଥିଲେ । ତାଙ୍କୁ ଉର୍ଦ୍ଦୁରେ 'କାବ୍ୟ କବିତାର ଦେବତା' ବୋଲି କୁହାଯାଏ ।

ମୀର୍ତାକିମୀରଙ୍କର ଜୀବନ ଦୁଃଖ ଓ ନୈରାଶ୍ୟରେ ପରିପୂର୍ଣ୍ଣ ଥିଲା । କିନ୍ତୁ ସେ ସେଥିପାଇଁ ଭାଙ୍ଗି ପଡ଼ିନଥିଲେ ବା କୌଣସି ଦୁର୍ବଳତାକୁ ପ୍ରଶ୍ରୟ ଦେଇ ନ ଥିଲେ । ଗଜଲ ଏବଂ ମାସନବିସ୍ ପ୍ରଭୃତି ରଚନା କରି ସେ ଖ୍ୟାତି ଅର୍ଜନ କରିଥିଲେ । ସମସାମୟିକ ସମାଜ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ତାଙ୍କର ଗଜଲ୍‌-ଗୁଡ଼ିକ ଜନସାଧାରଣଙ୍କ ପ୍ରାଣକୁ ସ୍ପର୍ଶ କରିପାରିଥିଲା । ସେଥିପାଇଁ ତାଙ୍କୁ ହୃଦୟ ଓ ପ୍ରାଣର କବି ବୋଲି କେହି କେହି ମଧ୍ୟ ବର୍ଣ୍ଣନା କରିଥାଆନ୍ତି । ଗୀତିକବିତାରେ ତାଙ୍କର ପ୍ରତିଭା ସମୁଜ୍ଜ୍ୱଳ ଓ ସ୍ପଷ୍ଟ ସ୍ୱାକ୍ଷରିତ । ଜନସାଧାରଣଙ୍କର ଦୁଃଖ ଓ ଦରିଦ୍ର ତାଙ୍କର ସଂଗୀତମୟ ଗଜଲଗୁଡ଼ିକରେ ଯେପରି ପ୍ରତିଫଳିତ ହୋଇଥିଲା, ତାହା ବାସ୍ତବିକ ଅପୂର୍ବ ପ୍ରତିଭାର ନିଦର୍ଶନ । ଜୀବନର ଅନ୍ଧକାରମୟ ଘଡ଼ିସନ୍ଧିବେଳେ ସେ ଅନ୍ୟମାନଙ୍କୁ ସାନ୍ତ୍ୱନା ଦେଇ ଗୀତିକବିତା ଲେଖିଥିଲେ । କଳ୍ପନା, ଉପମା ଓ ଅଲଙ୍କାର ପ୍ରୟୋଗରେ ସେ ଉର୍ଦ୍ଦୁ ସାହିତ୍ୟରେ ଅଦ୍ୱିତୀୟ ଥିଲେ । ସାଧାରଣ ଶବ୍ଦ ହେଲେହେଁ ତହିଁରେ ଗୂଢ଼ ଅର୍ଥ ନିହିତ ଥିଲା । ବଳିଷ୍ଠ ମାନବିକତା ମୀର୍ଙ୍କର କବିତାର ଅନ୍ୟ ଏକ ଆଭିମୁଖ୍ୟ । ସେ କୌଣସି ସଙ୍କୀର୍ଣ୍ଣ ଦୃଷ୍ଟିକୋଣକୁ କବିତାରେ ପ୍ରଶ୍ରୟ ଦେଉନଥିଲେ । ସେ ଥରେ କହିଥିଲେ, "ଜୀର୍ଣ୍ଣ ଦେଉଳ ବା ମସ୍‌ଜିଦ୍‌ର ଦୀପ ନିକଟରେ କୌଣସି ପ୍ରଭେଦ ଦେଖେନାହିଁ ।"

ରହସ୍ୟବାଦ ବା ଅତୀନ୍ଦ୍ରିୟବାଦ ଏହି ସମୟରେ ଦେଶର ସାମାଜିକ ଇତିହାସରେ ବିଶେଷ ପ୍ରଭାବ ବିସ୍ତାର କରିଥିଲା । ମୀର୍ଙ୍କର ରହସ୍ୟବାଦୀ କବିତା

ଓ ମୀର୍ ମଜହରଙ୍କ ରହସ୍ୟବାଦୀ କବିତାଗୁଡ଼ିକରେ ବେଦାନ୍ତିକ ରହସ୍ୟର ସୂଚନା ମିଳିଥାଏ । ଏହି ସମୟର ଅନ୍ୟାନ୍ୟ କବିମାନଙ୍କ ମଧ୍ୟରେ ଖଜ୍‌ଜା ମୀରର୍ଦ୍ଦା (୧୭୨୧-୧୭୮୫), ମୀର୍ ହାସାନ୍ (ମୃତ୍ୟୁ ୧୭୮୬), ମୁସାଫି (୧୭୫୦-୧୮୨୪), ଜୁରାତ୍ (ମୃତ୍ୟୁ ୧୮୧୦), ରଙ୍ଗିନ (ମୃତ୍ୟୁ ୧୮୩୫), ତାଲିଲ ପ୍ରଭୃତି କବିମାନଙ୍କର ନାମ ଉଲ୍ଲେଖଯୋଗ୍ୟ । ଖଜ୍‌ଜା ମୀରର୍ଦ୍ଦା କେବଳ ରହସ୍ୟବାଦୀ ଗଜଲ ରଚନା କରିଥିଲେ । ତାଙ୍କର ରଚନାରେ ଆଧ୍ୟାତ୍ମିକ ଭାବ ବିଶେଷଭାବରେ ପରିଲକ୍ଷିତ ହୁଏ । ଉଭୟ ସରଳତା ଓ ଉଚ୍ଚାଙ୍ଗ ଆଦର୍ଶ ହିଁ ତାଙ୍କ ଗଜଲ୍‌ର ଏକମାତ୍ର ଲକ୍ଷ୍ୟ ଥିଲା । ଉର୍ଦ୍ଦୁ କବିତା ମୀରଜାଙ୍କ ଲେଖନୀରେ ଅଧିକ ସମୃଦ୍ଧିଲାଭ କରିଥିଲା । ଅବଶ୍ୟ ସୌଉଦ ଓ ମଜହାର୍ ପ୍ରଭୃତି କବି ଉର୍ଦ୍ଦୁ ଭାଷା ପାଇଁ ଏହି ସମୟରେ ବିଶେଷ କାର୍ଯ୍ୟ କରିଥିଲେ । ସେମାନେ ସମସ୍ତେ ପାର୍ସି ଭାଷାରୁ ଅବାଧରେ ଭାବ, ଭାଷା ତଥା ରସ ଗ୍ରହଣ କରିଥିଲେ । ଉର୍ଦ୍ଦୁ କବିତା-ରାଜ୍ୟରେ ମୀର୍ ହାସାନଙ୍କ ସ୍ଥାନ ଉଚ୍ଚରେ । ତାଙ୍କର କୃତି "ଶେହରୁଲ ବେୟାନ" ଉର୍ଦ୍ଦୁ କବିତାରେ ଏକ ସ୍ଥାୟୀ ରଚନା । ତାଙ୍କର କବିତା ଉଭୟ ଭାବ ଓ କଳ୍ପନାଦ୍ୱାରା ଅନୁରଞ୍ଜିତ ହୋଇଥିଲା । ମୀର୍ ସୌଉଦ ଓ ମୀର୍ ହାସାନ ଆଦି ତିନିଜଣ କବି ଉର୍ଦ୍ଦୁ କବିତାର ପ୍ରାମାଣିକ ସ୍ଥାନ ନିର୍ଦ୍ଦେଶ କରି ଦେଇଥିଲେ । ସେମାନଙ୍କର ରଚନା ଯଥାକ୍ରମେ ଗଜଲ୍, କାସିଦା ଓ ମସନ୍‌ଵିସ୍ ଯେକୌଣସି ଉର୍ଦ୍ଦୁ ପାଠକ ନିକଟରେ ଆଦରଣୀୟ । ଉର୍ଦ୍ଦୁ କବିତାରେ ଅତୀନ୍ଦ୍ରିୟବାଦୀ ଆଦର୍ଶର ଯେଉଁ ଶ୍ରେଷ୍ଠ ପରମ୍ପରା ଥିଲା, ତାହା ଏହି କବିମାନଙ୍କର କବିତାରେ ସୁରକ୍ଷିତ ହୋଇପାରିଅଛି ।

ଏହି ସମୟରେ 'ମୁସାୟାରା' (କବିସମ୍ମିଳନୀ) ବହୁ ସ୍ଥାନରେ ଅନୁଷ୍ଠିତ ହୋଇଥିଲା । ଉର୍ଦ୍ଦୁ ଭାଷାର ପ୍ରସାର ଓ ପ୍ରଚାର ପାଇଁ ଏହା ଅଧିକ ସହାୟକ ହୋଇଥିବାର ଜଣାଯାଏ । ଦ୍ୱିତୀୟ ଶାହା ଆଲମଙ୍କ ଦ୍ୱାରା ଦିଲ୍ଲୀ ସେତେବେଳେ ଶାସିତ ହେଉଥିଲା । ଆଭ୍ୟନ୍ତରୀଣ କଳହ, ଯୁଦ୍ଧ ଯୋଗୁଁ ଦେଶର ଅର୍ଥନୀତି ଓ ଶାସନନୀତିରେ ବିଶୃଙ୍ଖଳା ଦେଖାଦେଇଥିଲା । ଏହାଫଳରେ ବହୁ କବି ଦିଲ୍ଲୀ ଛାଡ଼ି ଅନ୍ୟତ୍ର ଚାଲିଯିବାପାଇଁ ବାଧ୍ୟ ହୋଇଥିଲେ । ଫରକାବାଦ, ଅବଧ, ଆଜମ୍‌ବାଦ ଓ ହାଇଦ୍ରାବାଦ ପ୍ରଭୃତି ଅଞ୍ଚଳ ଉପରେ ଏହି କବିମାନଙ୍କର ଦୃଷ୍ଟି ପଡ଼ିଥିଲା । ଏହାର ଫଳରେ କବିମାନଙ୍କର ଦୃଷ୍ଟି ଦିଲ୍ଲୀରୁ ଅପସାରିତ ହୋଇ ଲକ୍ଷ୍ନୌ ଉପରେ ପଡ଼ିଥିଲା । ଅନେକ କବି ସେତେବେଳେ ଲକ୍ଷ୍ନୌରେ ଅବସ୍ଥାନ କରୁଥିଲେ । ଦିଲ୍ଲୀର ପତନ, ଲକ୍ଷ୍ନୌର ଶ୍ରୀବୃଦ୍ଧି ସାଧନରେ ଯଥେଷ୍ଟ ସହାୟକ ହୋଇଥିଲା । ଏପର୍ଯ୍ୟନ୍ତ ଦିଲ୍ଲୀ ପଠାଣ ଓ ମୋଗଲ ସଂସ୍କୃତିର କେନ୍ଦ୍ରସ୍ଥଳୀ ଥିଲା; କିନ୍ତୁ ବର୍ତ୍ତମାନ ସେହି ସଂସ୍କୃତି କେନ୍ଦ୍ର ଲକ୍ଷ୍ନୌକୁ ପରିବର୍ତ୍ତିତ ହୋଇଗଲା । ରାଜନୀତି କ୍ଷେତ୍ର ସଦୃଶ ଲକ୍ଷ୍ନୌ ବର୍ତ୍ତମାନ ସାହିତ୍ୟ କ୍ଷେତ୍ରରେ ସ୍ୱାଧୀନ ଅଞ୍ଚଳରୂପେ ପରିଗଣିତ ହୋଇଥିଲା ।

ଏପର୍ଯ୍ୟନ୍ତ ଦିଲ୍ଲୀରେ ରଚିତ କାବ୍ୟକବିତା ସାଧାରଣତଃ ଆଧ୍ୟାତ୍ମିକ ଚେତନା ସହିତ ଜଡ଼ିତ ହୋଇଥିଲା; କିନ୍ତୁ ଲକ୍ଷ୍ନୌଠାରେ ଏହି ଆଭିମୁଖ୍ୟ ସମ୍ପୂର୍ଣ୍ଣ ପରିବର୍ତ୍ତିତ ହୋଇଗଲା । ବିଳାସ ଏବଂ ଆଡ଼ମ୍ବରପୂର୍ଣ୍ଣ ଜୀବନ, ସଭ୍ରାନ୍ତ ଆଭିଜାତ୍ୟପୂର୍ଣ୍ଣ ବ୍ୟକ୍ତିମାନଙ୍କର ଆମୋଦପ୍ରମୋଦ ବର୍ତ୍ତମାନ କବିତାର ବିଷୟବସ୍ତୁ ହୋଇଥିଲା । ଏହାର ପ୍ରଭାବରେ ରାଜକାର୍ଯ୍ୟ ବା ଦରବାରର ଅନୁଗ୍ରହ ପ୍ରତି କବିମାନେ ଆକୃଷ୍ଟ ହୋଇଥିଲେ । କବିମାନଙ୍କ ମଧ୍ୟରେ ଦରବାରର ଅନୁଗ୍ରହ ଲାଭ କରିବାପାଇଁ ପ୍ରତିଦ୍ୱନ୍ଦ୍ୱିତା ଦେଖାଗଲା । ଏହି ସମୟର ଉର୍ଦ୍ଦୁ କବିତା ଉପମା ଓ ଅଳଙ୍କାର ପ୍ରଭୃତି ସାହିତ୍ୟିକ କୌଶଳରେ ପୂର୍ଣ୍ଣ; କିନ୍ତୁ ଯଥାର୍ଥ ବିଷୟବସ୍ତୁ ସେଥିରେ ନଥିଲା । ଦରବାର ଆଶ୍ରୟରେ କବିମାନେ ଯେପରି ମୁଗ୍ଧ ଭାଟ ସଦୃଶ କର୍ତ୍ତୃପକ୍ଷଙ୍କର ସ୍ତୁତିଗାନ କରିଥିଲେ ।

ମୁସାଫି ତାଙ୍କର ପୂର୍ବବର୍ତ୍ତୀ କବିମାନଙ୍କର ପଦାଙ୍କ ଅନୁସରଣ କରିଥିଲେ; କିନ୍ତୁ ସେତେ ସଫଳତା ହାସଲ କରିପାରିନଥିଲେ । ଇନ୍‌ସା (ମୃତ୍ୟୁ ୧୮୧୭) ଜଣେ ପ୍ରତିଭାଶାଳୀ କବି ଥିଲେ; ମାତ୍ର ସେ ତାଙ୍କର ପ୍ରତିଭା ଓ କାବ୍ୟକୌଶଳ ଦରବାରର ପ୍ରଶସ୍ତିଗାନ କରିବାରେ ଉତ୍ସର୍ଗ କରିଥିଲେ । ସେଥିପାଇଁ ଜଣେ ସମୀକ୍ଷକ କହିଥିଲେ —"କବିତା ଇନ୍‌ସାଙ୍କୁ ପଥଭ୍ରଷ୍ଟ କରିଥିଲା; କିନ୍ତୁ ତାଙ୍କର କବିତା ନବାବ୍‌ଙ୍କ ଦ୍ୱାରା ପଥଭ୍ରଷ୍ଟ ହୋଇଥିଲା ।" 'ରାଣୀ କେତକୀକୀ କହାନୀ' ଶୀର୍ଷକ ଏକ ଗଦ୍ୟରଚନାର ସେ ଥିଲେ ଲେଖକ । ଏହି ରଚନାର ଭାଷା ଶୁଦ୍ଧ ହିନ୍ଦୀ ଭାଷା । ସେ ଉର୍ଦ୍ଦୁର ସର୍ବପ୍ରଥମ ବ୍ୟାକରଣ ପାର୍ସି ଭାଷାରେ ରଚନା କରିଥିଲେ । ଏହି ବ୍ୟାକରଣର ନାମ ହେଉଛି 'ଦରିଆ ଇ ଲତିଫ୍' । ଜୁରାତ୍ ମୀରଙ୍କୁ କବିତା-ରାଜ୍ୟରେ ଅନୁକରଣ କରିଥିଲେ । ସେଥିପାଇଁ ମୀର୍ ତାଙ୍କୁ ଉପହାସ କରି କହିଥିଲେ—"କବିତା ସମ୍ପର୍କରେ ତୁମେ କିଛି ଜାଣନାହିଁ । ତୁମେ କେବଳ ପ୍ରେମଚିତ୍ର ବର୍ଣ୍ଣନା କରିପାର ।" ତାଙ୍କର ଅଧିକାଂଶ କବିତାରେ ପ୍ରେମର ଉତ୍କଟ ବର୍ଣ୍ଣନା ଦେଖାଯାଏ । ରଙ୍ଗିନ୍‌ଙ୍କ କବିତାରେ ଲକ୍ଷ୍ନୌ ଅଞ୍ଚଳର ସାମାଜିକ ଦୁର୍ଗତି ପ୍ରତିଫଳିତ ହୋଇଥିଲା । ଏହି ଜାତୀୟ କବିତା ଜନସହିଦ୍‌ଙ୍କ ଲେଖାରେ ଅନୁସୃତ ହୋଇଥିଲା । ସେ ନିଜେ ପୋଷାକପରିହିତ ହୋଇ ନାୟିକାଣ୍ଡ ସଦୃଶ କଣ୍ଠରେ କବିତା ଆବୃତ୍ତି କରୁଥିଲେ । ଉର୍ଦ୍ଦୁଭାଷା ଓ ସାହିତ୍ୟର ଏହି ଘଡିସନ୍ଧି ସମୟରେ ନାଜିର ଅକବର ଓ୍ୱାଲି ସାହିତ୍ୟ କ୍ଷେତ୍ରରେ ଜଣେ କର୍ଣ୍ଣଧାର ସ୍ୱରୂପ ଆବିର୍ଭୂତ ହୋଇଥିଲେ । ଜନସାଧାରଣଙ୍କ ଦୁର୍ଗତି ଓ ଦୁଃଖ ତାଙ୍କ ରଚିତ କବିତାର ଉପଜୀବ୍ୟ ହୋଇଥିଲା । ସେ କବିପଦର ପ୍ରକୃତ ସାର୍ଥକତା ହାସଲ କରିଥିଲେ । ତାଙ୍କ କବିତାରେ ସମନ୍ୱୟ ଓ ସଂଗତିର ସ୍ୱର ଶୁଣାଯାଇଥିଲା । ହିନ୍ଦୁ ଓ ମୁସଲମାନ ସଂସ୍କୃତିର ସାମ୍ୟ ସେ ନିଜ କବିତାରେ ବର୍ଣ୍ଣନା କରିଥିଲେ ।

ଆଧୁନିକ ଉର୍ଦ୍ଦୁ କବିତାରେ ସେ ଯଥାର୍ଥରେ 'ପ୍ରଭାତୀ ତାରା'। ଆଧୁନିକ ଉର୍ଦ୍ଦୁ କବିତାର ନିର୍ଦ୍ଦିଷ୍ଟ ଲକ୍ଷଣ ଓ ସୂଚନା ସର୍ବପ୍ରଥମେ ତାଙ୍କର କବିତାରେ ପ୍ରତିଫଳିତ ହୋଇଥିଲା ।

ଏହି ସମୟର ପଣ୍ଡିତ ଦୟାଶଙ୍କର ନାସିମ୍‌ଙ୍କର ମସ୍‌ନବି ଏକ ପ୍ରସିଦ୍ଧ ରଚନା । ଅଳଙ୍କାରବହୁଳତା ଓ ଶୈଳୀଗତ କ୍ଲିଷ୍ଟତା ହିଁ ଏହାର ଲକ୍ଷଣ । ଲକ୍ଷ୍ନୌ କବିଗୋଷ୍ଠୀଙ୍କର ଶ୍ରେଷ୍ଠ ଅବଦାନ ହେଉଛି ମର୍ସିଆ (Marsia) । ମୀର୍ ଅନିସ୍ (୧୮୦୨-୧୮୭୪), ମୀର୍ଜା ଦବିର୍ (୧୮୦୩-୧୮୭୫) ଏହି ସମୟର ପ୍ରସିଦ୍ଧ ମର୍ସିଆ-ରଚନାର ପ୍ରଧାନ ଲେଖକ । ଏମାନେ ଉର୍ଦ୍ଦୁ ସାହିତ୍ୟର ଏହି ଶାଖାଟିକୁ ଯଥେଷ୍ଟ ଭାବରେ ପରିପୁଷ୍ଟ କରିଥିଲେ । କୃତ୍ରିମତା ପରିହାରପୂର୍ବକ ଏମାନେ କବିତାରେ ଉଚ୍ଚ ଆବେଗ ଓ ହୃଦୟର ବ୍ୟଥା ସମନ୍ୱିତ କରିପାରିଥିଲେ । ଆନିସ୍‌ଙ୍କ ଲେଖାରେ ପୌରାଣିକ ଅଭିବ୍ୟକ୍ତି ସହିତ ବାସ୍ତବତାର ମିଶ୍ରଣ ହୋଇଥିଲା । ଉର୍ଦ୍ଦୁ କବିତାରେ ଏହା ଏକ ନୂତନ ଢଗ । ସମର ବର୍ଣ୍ଣନା, ପ୍ରକୃତିଚିତ୍ର ବର୍ଣ୍ଣନା ତାଙ୍କର ଦକ୍ଷତା ପ୍ରମାଣିତ କରେ ।

ଅପେରା ବା ଇନ୍ଦର୍‌ସଭା ଆକାରରେ ଆଧୁନିକ ଉର୍ଦ୍ଦୁ ନାଟକର ବିକାଶ ଏହି ସମୟରେ ଆରମ୍ଭ ହେଲା । ନାଟ୍ୟକାର ଅମାନତ୍ (୧୮୧୫-୫୮)ଙ୍କ ଲେଖା ଇନ୍ଦରସଭା ଏହି ଅପେରା ଜାତୀୟ ରଚନା । ମସ୍‌ନବି ରଚନାରେ ମୀର୍ଜା ସକ୍‌କଙ୍କର କୃତିତ୍ୱ ମଧ୍ୟ କମ୍ ନୁହେଁ । ଯୁଗର କେତେକ ପ୍ରଭାବ ତାଙ୍କର ରଚନାରେ ପରିଦୃଷ୍ଟ ହୁଏ । ଏହା ପରେ ଉର୍ଦ୍ଦୁ ସାହିତ୍ୟରେ ଆଉ ଏକ ପରିବର୍ତ୍ତନ ଦେଖାଦେଲା । ତାହା ହେଉଛି ୧୮୫୭ ମସିହାର କଥା; ଯେତେବେଳେ ଓ୍ୱାଜିଦ୍‌ଆଲି ସାହା (ଅବଧର ଶେଷ ଶାସକ) ସିଂହାସନଚ୍ୟୁତ ହୋଇ କଲିକତାକୁ ବିତାଡ଼ିତ ହୋଇଥିଲେ । ସେ କବିମାନଙ୍କର ପୃଷ୍ଠପୋଷକ ଥିଲେ । ଅବଧର ମିଶ୍ରଣ ସଙ୍ଗେ ସଙ୍ଗେ ଲକ୍ଷ୍ନୌ କବି-ଗୋଷ୍ଠୀ ଦିଲ୍ଲୀର ଭାବଧାରା ପ୍ରତି ଆକୃଷ୍ଟ ହେଲେ । ଦିଲ୍ଲୀରେ ବ୍ରିଟିଶ ରାଜତ୍ୱ ପ୍ରତିଷ୍ଠା ପରେ, ୧୮୫୭ ମସିହାରେ ଜାତୀୟ ଜାଗରଣ ପୂର୍ବରୁ ଦେଶରେ କିଛି ସମୟ ପାଇଁ ଶାନ୍ତି ଦେଖାଦେଇଥିଲା । ମୋଗଲ ଶାସନର ଶେଷ ବର୍ତ୍ତିକା ଲିଭିଆସୁଥିଲା; ମାତ୍ର ବର୍ତ୍ତିକା ଲିଭିବା ପୂର୍ବରୁ ତାହାର ଶେଷ ଶିଖା ଆହୁରି ଉଦ୍ଦୀପ୍ତ ହୋଇଥିଲା । ଏହି ସମୟର ଦିଲ୍ଲୀର କବିମାନଙ୍କ ମଧ୍ୟରେ ଜାକ୍ (୧୭୮୯-୧୮୫୪), ନାସିମ୍ (୧୭୯୪-୧୮୬୪), ମମୀମ୍ (୧୮୦୦-୧୮୫୧) ଏବଂ ମୀର୍ଜା ଗାଲିବ୍ (୧୭୯୬-୧୮୬୯) । ଏମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ କବି ହେଉଛନ୍ତି ମୀର୍ଜା ଗାଲିବ୍ ।

ମୀର୍ଜା ଗାଲିବ୍‌ଙ୍କର କବିତା ଜୀବନର ପ୍ରତ୍ୟେକ କ୍ଷେତ୍ରକୁ ସ୍ପର୍ଶ କରି-ପାରିଥିଲା । ସର୍ବାପେକ୍ଷା ଅଧିକ ମାନବବାଦୀ, ସାର୍ବଜନୀନ ଓ ଶକ୍ତିଶାଳୀ କବି

ହେଉଛନ୍ତି ଏହି ଗାଲିବ୍ । ଉର୍ଦ୍ଦୁ ସାହିତ୍ୟର ବିକାଶରେ ସେ ହେଉଛନ୍ତି ଦୃଢ଼ ସ୍ତମ୍ଭ । ତାଙ୍କ କବିତାର ଆଭିମୁଖ୍ୟ ପ୍ରେମାଶ୍ରୟୀ ସତ, କିନ୍ତୁ ତାହାର ସ୍ୱଭାବସୁଲଭ ସୌନ୍ଦର୍ଯ୍ୟ ଆବେଗ ଓ ଭାବଗାମ୍ଭୀର୍ଯ୍ୟ ଅଦ୍ୱିତୀୟ । ଛନ୍ଦ ଏବଂ ସଙ୍ଗୀତ ତାଙ୍କ କବିତାର ଅନ୍ୟତମ ଆକର୍ଷଣ । ତାଙ୍କ ରଚିତ ଗଜଲସମୂହ ଉର୍ଦ୍ଦୁ କବିତାର ଶ୍ରେଷ୍ଠ ଅର୍ଘ୍ୟ । ଉର୍ଦ୍ଦୁ ସାହିତ୍ୟରେ ଗାଲିବ୍ ହେଉଛନ୍ତି ଏକ ପ୍ରଥିତଯଶା କବି । ତାଙ୍କର କାବ୍ୟ-କବିତାର ଆବେଦନ ଯେପରି ବ୍ୟାପକ, ତାଙ୍କର ପରିକଳ୍ପନା ଓ ଭାବସାନ୍ଦ୍ରଶୀଳତା ସେହିପରି ଅନନ୍ୟସାଧାରଣ । ମନୁଷ୍ୟ-ଜୀବନର ଅଭିବ୍ୟକ୍ତି ଯେପରି ତାଙ୍କ ଲେଖନୀରେ ମନ୍ତ୍ରୀଭୂତ ହୋଇଯାଇଥିଲା । ସେ ତାଙ୍କ କବିତାରେ ଉଚ୍ଚ ଦର୍ଶନ ମଧ୍ୟ ପ୍ରକାଶ କରିଥିଲେ । ଏକ ନିର୍ଦ୍ଦିଷ୍ଟ ଚେତନା ଓ ଆଗାମୀ ଯୁଗର ଚିନ୍ତା ତାଙ୍କୁ ଯେପରି ବରାବର ଉଦ୍‌ବୁଦ୍ଧ କରିଥିଲା । ମାନବପ୍ରେମ, ସାର୍ବଜନୀନ ଚିନ୍ତା କବି ମୀର୍ଜା ଗାଲିବ୍‌ଙ୍କୁ ଯୁଗେ ଯୁଗେ ଅମର କରି ରଖିଥିବ । ସେ ଯେପରି ପ୍ରକାଶଭଙ୍ଗୀ ଓ ଚିନ୍ତାରାଜ୍ୟରେ ସର୍ବଦା ନୂତନ । ବହୁ ତରୁଣ କବି ଗାଲିବଙ୍କ ଦ୍ୱାରା ପରବର୍ତ୍ତୀକାଳରେ ପ୍ରଭାବିତ ହୋଇଥିଲେ । ଉର୍ଦ୍ଦୁଭାଷା ମଧ୍ୟ ତାଙ୍କ ଲେଖନୀରେ ପୁଷ୍କଳ ହୋଇଥିଲା । "ଯେକୌଣସି କଥାରେ ସରଳ ହେବା ଆଦୌ ସହଜ ନୁହେଁ । କାରଣ ମଣିଷ ନିଜେ ମଣିଷପରି ଆଚରଣ କରିବା ମଧ୍ୟ ସମ୍ଭବ ହୋଇନାହିଁ"—ଏହି ଗଭୀର ବିଶ୍ୱାସର ବଶବର୍ତ୍ତୀ ହୋଇ ଯେଉଁ କବି ତାଙ୍କର କାବ୍ୟସାଧନା କରିଥିଲେ ଓ ଲେଖନୀଚାଳନା କରିଥିଲେ, ସେ ହେଉଛନ୍ତି ଊନବିଂଶ ଶତକର ଉର୍ଦ୍ଦୁ କବିତାର ପ୍ରବର୍ତ୍ତକ କବି ମିର୍ଜା ଗାଲିବ୍ । ୧୭୯୭ ମସିହା ଡିସେମ୍ବର ୨୭ ତାରିଖ ଦିନ ଆଗ୍ରାଠାରେ ତାଙ୍କର ଜନ୍ମ ହୋଇଥିଲା । ତାଙ୍କର ବଂଶଧରମାନେ ପୂର୍ବକାଳରେ ଏକ ବିରାଟ ଅଞ୍ଚଳରେ ଶାସନ କରୁଥିଲେ । ସେହି ଅଞ୍ଚଳ ତୁର୍କୀସ୍ଥାନଠାରୁ ଆରମ୍ଭ କରି ଭୂମଧ୍ୟସାଗର ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଏହି ସମୟରେ ଅମରକବି ଉମାର ଖାଁ ତାଙ୍କର ରସୋତ୍ତୀର୍ଣ୍ଣ କାବ୍ୟକବିତା ଲେଖି ସମଗ୍ର ଇରାନକୁ ସଂଗୀତର ମୂର୍ଚ୍ଛନାରେ ପ୍ରତିଧ୍ୱନିତ କରିଥିଲେ । ଠିକ୍ ତାର କେତେ ଶତାବ୍ଦୀ ପରେ ଗାଲିବ୍ ଭାରତବର୍ଷରେ ଉର୍ଦ୍ଦୁଭାଷାରେ କାବ୍ୟକବିତା ଲେଖି ତାଦୃଶ ଖ୍ୟାତି ଓ ଗୌରବ ଅର୍ଜ୍ଜନ କରିପାରିଥିଲେ । ଗାଲିବ୍‌ଙ୍କର ପିତା ଅବ୍‌ଦୁଲ୍ଲା ବେଗ୍ ଖାଁ ଲକ୍ଷ୍ନୌର ନବାବ୍‌ଙ୍କ ଅଧୀନରେ କାର୍ଯ୍ୟ କରୁଥିଲେ । ହାଇଦରାବାଦକୁ ପ୍ରସ୍ଥାନ ପରେ ସେ ସୈନ୍ୟବାହିନୀରେ ଯୋଗଦାନ କରିଥିଲେ ଏବଂ ୧୮୦୨ରେ ଯୁଦ୍ଧଭୂମିରେ ନିହତ ହୋଇଥିଲେ । ଗାଲିବ୍ ଏବଂ ତାଙ୍କର ଭାଇ ୟୁସୁଫ୍ ସେତେବେଳେ ଅପ୍ରାପ୍ତବୟସ୍କ ଥିଲେ । ସେମାନଙ୍କର ପିତୃବ୍ୟ ଉସ୍ତୁଲ୍ଲା ବେଗ୍ ଇଂରେଜ ସୈନ୍ୟବିଭାଗରେ ଚାକିରି କରିଥିଲେ । ଗାଲିବ୍ ଏବଂ ତାଙ୍କର ଭ୍ରାତା ଇଂରେଜ ଖଜଣାଖାନାରୁ ସେମାନଙ୍କର ଭତ୍ତା ପ୍ରାପ୍ତ ହୋଇଥିଲେ । କିନ୍ତୁ ଗାଲିବ୍‌ଙ୍କଠାରୁ ହିଁ ତାଙ୍କ ବଂଶର ସାମରିକ ପରମ୍ପରାରେ ଯବନିକା ପଡ଼ିଥିଲା । ମାତ୍ର

୧୩ ବର୍ଷ ବୟସରେ ଦିଲ୍ଲୀର ମିର୍ଜା ଇଲାହୀବକ୍ସ ଖାଁଙ୍କର କନ୍ୟା ଉମ୍ରାଓ ବେଗମ୍‌ଙ୍କୁ ଗାଲିବ୍ ବିବାହ କରିଥିଲେ । ୧୮୧୨ରେ କବି ମୋଗଲ ରାଜଧାନୀକୁ ତାଙ୍କର ବାସଗୃହ ପରିବର୍ତ୍ତନ କରିଥିଲେ । ଗାଲିବ୍‌ଙ୍କର ଚେହେରା ମଧ୍ୟ ସମସ୍ତଙ୍କ ଦୃଷ୍ଟି ଆକୃଷ୍ଟ କରିପାରିଥିଲା । ଦୀର୍ଘବପୁ-ବଳିଷ୍ଠ ଏବଂ ସୁନ୍ଦର, ଏହାହିଁ ତାଙ୍କର ଚେହେରାର ବର୍ଣ୍ଣନା । ସର୍ବଦା ଆୟ ଅପେକ୍ଷା ଅଧିକ ବ୍ୟୟ କରିବାରୁ ସେ ଜୀବନରେ ଦୁର୍ଦ୍ଦଶାର ସମ୍ମୁଖୀନ ହୋଇଥିଲେ । ଏପରିକି ତାଙ୍କୁ ଜେଲଦଣ୍ଡ ଭୋଗିବାକୁ ପଡ଼ିଥିଲା । ଏହା ବିରୋଧରେ ବାହାଦୂର ଶାହ ବ୍ରିଟିଶ ରେସିଡେଣ୍ଟଙ୍କୁ ଶତ ଅନୁରୋଧ କରିଥିଲେ । ଦୁଃଖଦୁର୍ଦ୍ଦଶା ତାଙ୍କୁ ପ୍ରତ୍ୟେକ ସ୍ତରରେ ମ୍ରିୟମାଣ କରିଥିଲା । ଋଣ ଭାରରେ ସେ ଉତ୍ପୀଡ଼ିତ ହୋଇଥିଲେ । ଏପରିକି ମୃତ୍ୟୁ ପରେ ତାଙ୍କର ଋଣ-ବେଗମ୍ ପରିଶୋଧ କରିଥିଲେ । ପାରିବାରିକ ଜୀବନରେ ମଧ୍ୟ ତାଙ୍କର ଶାନ୍ତି ନଥିଲା । ତାଙ୍କର ସାତଗୋଟି ସନ୍ତାନ ଜନ୍ମ ହୋଇଥିଲେ; କିନ୍ତୁ ସମସ୍ତେ କବିଙ୍କୁ ଅଳ୍ପ ବୟସରେ ଛାଡ଼ି ଚାଲିଯାଇଥିଲେ । କବି ଜଣକୁ ପୋଷ୍ୟପୁତ୍ରରୂପେ ଗ୍ରହଣ କରିଥିଲେ । ସେ ମଧ୍ୟ ରହିପାରିଲେ ନାହିଁ । ଏପରି ଦୁଃଖ ଦରଦ ଓ ଅଭାବ ମଧ୍ୟରେ କବି-ବ୍ୟକ୍ତିତ୍ୱ ବାଧାପ୍ରାପ୍ତ ହେଉଥିଲା ସତ; କିନ୍ତୁ ତାଙ୍କର କବିତ୍ୱ ଗ୍ରୀଷ୍ମଦଗ୍ଧ ମଲ୍ଲିକା ସଦୃଶ ପ୍ରସ୍ଫୁଟିତ ହୋଇଥିଲା । ସେ ଦୁଃଖରେ ଭାଙ୍ଗିପଡ଼ି ଗୋଟିଏ କବିତା ଲେଖିଥିଲେ ।

"ସବୁ ଦୁଃଖ ମତେ ଗ୍ରାସ କରିସାରିଛି । ମୁଁ କେବଳ ମୃତ୍ୟୁ ଅପେକ୍ଷାରେ ଗୃହିଁ ବସିଛି ।" 'ଗଜଲ୍' ଗାଲିବ୍‌ଙ୍କର ଶ୍ରେଷ୍ଠ ରଚନା । ସେ ତାଙ୍କର ସମସ୍ତ ଆବେଗ ଓ ଭାବପ୍ରବଣତା ଗଜଲ୍‌ରେ ଫୁଟାଇ ପାରିଥିଲେ । ସେ ଭଗବାନଙ୍କ ଉଦ୍ଦେଶ୍ୟରେ ଥରେ ଗାଇଥିଲେ, "ହେ ଭଗବାନ ! ଅପୂର୍ଣ୍ଣ ଶତ ଅଭିଳାଷ ମୋର ଜୀବନରେ କେତେ କ୍ଷତ ସୃଷ୍ଟି କରିଛି । ତାହାର ସ୍ମୃତି ଅତି କରୁଣ । ହେ ଭଗବାନ, ମୋର ସନ୍ତାନମାନଙ୍କର ବିବରଣୀ ପାଇଁ ମୋତେ ଆଉ ବିବ୍ରତ କରନାହିଁ ।" ସେ ପ୍ରତି ମୁହୂର୍ତ୍ତରେ ଅନୁଭବ କରିଥିଲେ, ମୃତ୍ୟୁ ଯେପରି ତାଙ୍କ ସହିତ ଲୁଚକାଳି ଖେଳ ଆରମ୍ଭ କରିଥିଲା । ଜୀବନରେ ଭୌତିକ ସୌଭାଗ୍ୟରୁ ସେ ବଞ୍ଚିତ ଥିଲେ । କିନ୍ତୁ ଦାରିଦ୍ର୍ୟ, ଅଭିଶାପ ଓ ପରାଜୟ ନିକଟରେ ସେ ସହଜରେ ମୁଣ୍ଡ ନୁଆଁଇ ଦେଉ ନ ଥିଲେ । ଦୁଃଖ ଓ ନିପୀଡ଼ନା ଯେପରି ତାଙ୍କର କବି-ଜୀବନର ଅଭିଜ୍ଞତାକୁ ସମ୍ପ୍ରସାରିତ କରି ଦେଉଥିଲା । ତାଙ୍କର କଳ୍ପନା ଓ ସୌନ୍ଦର୍ଯ୍ୟବୋଧ ଉର୍ଦ୍ଦୁ ସାହିତ୍ୟରେ ଅନନ୍ୟସାଧାରଣ । ତାଙ୍କର ଦୁଃଖ ଓ ଦରଦ ମଧ୍ୟରେ ବ୍ୟଙ୍ଗବିଦ୍ରୂପ କରିବାପାଇଁ ଦକ୍ଷତା ମଧ୍ୟ ତାଙ୍କର ଥିଲା । ସେ ନିଜର ଅପୂର୍ଣ୍ଣ ଜୀବନରେ ପୂର୍ଣ୍ଣମାନବର ସନ୍ଧାନ ଦେଇପାରିଥିଲେ । ଗାଲିବ୍ ଯେ କଳ୍ପନା ବଳରେ ଆକାଶ, ଧରିତ୍ରୀ, ସମୁଦ୍ର ଏକାଦିକ୍ରମେ ପରିକ୍ରମା କରିପାରନ୍ତି, ତାହାର ନିଦର୍ଶନ ତାଙ୍କର ଅସଂଖ୍ୟ

କବିତା । ସେ ସାଧାରଣ ମାନବସ୍ତରରୁ ଏକ ଦାର୍ଶନିକ ସୋପାନକୁ ଉନ୍ନୀତ ହୋଇପାରିଥିଲେ । ତାଙ୍କର ଏହି ଆଭିମୁଖ୍ୟର ପ୍ରଧାନ ସଙ୍କେତ ଥିଲା ବଳିଷ୍ଠ ଜୀବନଦର୍ଶନ । ସେ ଭଗବାନଙ୍କ ଉଦ୍ଦେଶ୍ୟରେ ବହୁ କବିତା ରଚନା କରିଥିଲେ । ତାଙ୍କର ଗୋଟିଏ କବିତାର ମର୍ମ ହେଉଛି—"ହେ ଈଶ୍ୱର, ତୁମର ସନ୍ଧାନ ପାଇବା ସମ୍ଭବ ନୁହେଁ; କିନ୍ତୁ ମୋର ଶୋଷ ଯେ ତୁମକୁ ପାଇବା ଅତି କଷ୍ଟ ନୁହେଁ । ମଣିଷ ଯେ ନିଜେ ସରଳ ନୁହେଁ, ସେ ବାରମ୍ବାର ତାଙ୍କ କବିତାରେ ସୂଚାଇଥିଲେ । ଗାଲିବ୍‌ଙ୍କର ଅଧିକାଂଶ ଗୀତିକବିତା, ପ୍ରେମ ଓ ବ୍ୟକ୍ତିଗତ ନୈରାଶ୍ୟକୁ କେନ୍ଦ୍ର କରି ଲିଖିତ । ମଣିଷ ଓ ମଣିଷସମାଜ ପ୍ରତି ତାଙ୍କର ଗଭୀର ଦରଦ ଥିଲା । ତାଙ୍କର କବିତା ଭାବଧର୍ମୀ ହେଲେହେଁ ସେଥିରେ ଜୀବନର ଜଟିଳ ଅନୁଶୀଳନ ମଧ୍ୟ ଦେଖିବାକୁ ମିଳେ ।

ସେ ମଦ୍ୟପାନ କରୁଥିଲେ; କିନ୍ତୁ ଜୀବନର ଦୁଃଖ ଓ ଆଘାତ ଭୁଲିଯିବା ପାଇଁ ସେ ଏପରି କରୁଥିଲେ । ସେ ଜୀବନର ଶେଷ ବୟସରେ ନିଜ ସାମନାରେ ପାନପାତ୍ର ରଖି ଆନନ୍ଦ ଉପଭୋଗ କରୁଥିଲେ । ସେ ନିଜର ଏହି ଆସକ୍ତିକୁ ବୁଝାଇବାକୁ ଯାଇ ଲେଖିଥିଲେ—"ଦିନ ରାତି ଭୁଲିଯିବା ପାଇଁ ମୁଁ ମଦ୍ୟପାନର ଆଶ୍ରୟ ନିଏ ।"

ଗାଲିବ୍‌ଙ୍କର ସମସ୍ତ କାବ୍ୟକବିତା ଓ ସାଧନାର ଶକ୍ତିଶାଳୀ ମାଧ୍ୟମ ଥିଲା 'ଗଜଲ୍' । ତାଙ୍କର ଶୈଳୀ ଯେପରି ସ୍ୱତନ୍ତ୍ର, ଭାବବହୁଳ, ମଧ୍ୟ ସେହିପରି ସ୍ୱକୀୟତାପୂର୍ଣ୍ଣ । ସରଳତା, ଲାସ୍ୟ ଏବଂ ଉଦ୍‌ବେଳିତ କଳ୍ପନା ତାଙ୍କୁ ଅନ୍ୟ କବିମାନଙ୍କଠାରୁ ସ୍ୱତନ୍ତ୍ର କରିପାରିଥିଲା । ତାଙ୍କର ପ୍ରେମକବିତାଗୁଡ଼ିକ ଅଧିକାଂଶ ଈଶ୍ୱରଙ୍କ ଉଦ୍ଦେଶ୍ୟରେ ଲିଖିତ । ସେ ପ୍ରତ୍ୟେକ ପ୍ରେମକବିତାରେ ନିଜର ବାଞ୍ଛିତ ନାୟିକା ଓ ଅବାଞ୍ଛିତ ଦେବତାଙ୍କ ଉଦ୍ଦେଶ୍ୟରେ ଅର୍ଘ ବାଢ଼ିଛନ୍ତି ।

ଉର୍ଦ୍ଦୁ ସାହିତ୍ୟରେ ଗଦ୍ୟରଚନାର ସୂତ୍ରଧରଭାବରେ ଗାଲିବ୍‌ଙ୍କର ନାମ ମଧ୍ୟ ସ୍ମରଣୀୟ । ତାଙ୍କର ପାର୍ଶୀ ଭାଷାରେ ମଧ୍ୟ ଦକ୍ଷତା ଥିଲା । ତାଙ୍କ ପୂର୍ବରୁ ଉର୍ଦ୍ଦୁ ସାହିତ୍ୟ ଗଦ୍ୟରଚନାର ଗୌରବ ଅର୍ଜନ କରିପାରି ନଥିଲା । ଗାଲିବ୍‌ଙ୍କଠାରୁ ଆଧୁନିକ ଉର୍ଦ୍ଦୁ ଗଦ୍ୟ ସାହିତ୍ୟର ଖଡ଼ିଛୁଆଁ ହେଲା ବୋଲି କୁହାଯାଇପାରେ । ସହଜ ସର୍ବଜନବୋଧ ଓ ସାବଲୀଳ ଗଦ୍ୟରଚନା ଗାଲିବ୍‌ଙ୍କର କୃତିତ୍ୱ । ତାଙ୍କର ଶତାଧିକ ପତ୍ରାବଳୀ ଗଦ୍ୟର କୋମଳତା ତଥା ଶକ୍ତି ବହନ କରୁଅଛି । ତାଙ୍କର ସୃଷ୍ଟିଶିଳ୍ପ ଏକ ନୂତନ ଛନ୍ଦ-ମୂର୍ଚ୍ଛନାରେ ତରଙ୍ଗାୟିତ ହୋଇପାରିଥିଲା । କିବ ଥରେ ତାଙ୍କର ଜଣେ ପ୍ରିୟ ଶିଷ୍ୟ ନିକଟକୁ ଖଣ୍ଡିଏ ପତ୍ର ଲେଖି ସେଥିରେ ତାଙ୍କର ମନର କଥା ପ୍ରକାଶ କରିଥିଲେ । ତାହା ହେଉଛି—"ମୁଁ ନିର୍ଜନ ସମୟରେ

ବନ୍ଧୁମାନଙ୍କର ଚିଠି ସବୁକୁ ମୋର ବନ୍ଧୁ ବୋଲି ମନେକରେ । ଜଣେ ବନ୍ଧୁଙ୍କଠାରୁ ଖଣ୍ଡେ ଚିଠି ପାଇବା ଅର୍ଥ ବନ୍ଧୁଙ୍କର ଦର୍ଶନ ଲାଭ କରିବା ।”

ଜୀବିତାବସ୍ଥାରେ ଗାଲିବ୍‌ଙ୍କର ବହୁ ବନ୍ଧୁ ଥିଲେ । ସେ ସର୍ବଦା କବିଭାବରେ ଆଦୃତ ହେଉଥିଲେ । ନିଜେ ବାହାଦୂର ଶାହ (ଦ୍ୱିତୀୟ) ଗାଲିବ୍‌ଙ୍କୁ ଖୁବ୍ ଆଦର କରୁଥିଲେ । କବିଙ୍କର ନିର୍ଭୀକ ଦୃଷ୍ଟିକୋଣ ଯୋଗୁଁ ବ୍ରିଟିଶ ସରକାର ତାଙ୍କର ପେନ୍‌ସନ୍ କାଟିଦେବାପାଇଁ ବନ୍ଦ କରି ଦେଇଥିଲେ । ସେଥିପାଇଁ ଗାଲିବଙ୍କୁ କଷ୍ଟ ସହ୍ୟ କରିବାକୁ ପଡ଼ିନଥିଲା । ଗାଲିବ୍‌ଙ୍କର ବୈଶିଷ୍ଟ୍ୟ ଊନବିଂଶ ଶତାବ୍ଦୀର ଉର୍ଦ୍ଦୁ ସାହିତ୍ୟରେ ସର୍ବଦା ସ୍ୱୀକୃତ । ପ୍ରତିଷ୍ଠିତ ସାହିତ୍ୟିକ ପରଂପରା, ପ୍ରେମ, ସୌନ୍ଦର୍ଯ୍ୟ ଓ ମଦିରାର ଆକର୍ଷଣ—ଏହାର ବିରୁଦ୍ଧରେ ଗାଲିବ୍ ଲେଖନୀଚାଳନା କରିଥିଲେ ଏବଂ ନିଜେ ଏକ ପରଂପରା ସୃଷ୍ଟି କରିଥିଲେ । କବିତାକୁ କଳ୍ପନାର ମିନାର ଭିତରୁ ଦୁଃଖ ବ୍ୟଥା ଜର୍ଜରିତ ମର୍ତ୍ତ୍ୟକୁ ଟାଣିଆଣିଥିଲେ । ତାଙ୍କର କାବ୍ୟାଦର୍ଶ ପରବର୍ତ୍ତୀ ଯୁଗର ଆଜାଦ୍ ଏବଂ ହାଲି ପ୍ରଭୃତି ଉର୍ଦ୍ଦୁ କବିମାନଙ୍କ ଦ୍ୱାରା ଅନୁସୃତ ହୋଇଥିଲା; ଯାହାର ପରିଣତି ହେଉଛି କବି ଇକ୍‌ବାଲ୍‌ଙ୍କର ଗଭୀର ଦାର୍ଶନିକତା ।

ଆଧୁନିକ ଉର୍ଦ୍ଦୁ କାବ୍ୟକବିତା ବହୁ ପରିମାଣରେ ଗାଲିବ୍‌ଙ୍କର କବିପ୍ରତିଭା ନିକଟରେ ଋଣୀ । ଦୁଃଖ ଓ ଅବସାଦରେ ଗାଲିବ୍ ଭାଙ୍ଗିପଡ଼ିଥିଲେ । ୧୮୬୯ ମସିହା ଫେବୃୟାରୀ ମାସ ୧୫ ତାରିଖରେ ଦିଲ୍ଲୀଠାରେ ତାଙ୍କର ଦେହାବସାନ ଘଟିଥିଲା । ଉର୍ଦ୍ଦୁସାହିତ୍ୟରେ ସେ ଜଣେ ଶକ୍ତିଶାଳୀ କବି ଥିଲେ; ମାତ୍ର ଦୁଃଖ ଥିଲା ତାଙ୍କ ଜୀବନର ସହଚର । ଜାକ୍ ଓ ମମୀମ୍ ମଧ୍ୟ ନିଜ ନିଜର ସାହିତ୍ୟିକ କୃତୀଯୋଗୁଁ ସ୍ମରଣୀୟ । ଓ୍ୱାଜିଦ୍ ଆଲିଶାହାଙ୍କର ସ୍ଥାନାନ୍ତର ଲକ୍ଷ୍ନୌ କବିଗୋଷ୍ଠୀଙ୍କ ମଧ୍ୟରେ କିଛି ଦିନ ନୈରାଶ୍ୟ ଓ ବିଷାଦ ସୃଷ୍ଟି କରିଥିଲା । ତଥାପି ଅମୀର (୧୮୨୮-୧୯୦୦) ପ୍ରଭୃତି କବିମାନେ ନିରୁତ୍ସାହିତ ନ ହୋଇ ସଫଳତାର ସହିତ ସାହିତ୍ୟ ସେବା କରିଥିଲେ । ଜାଗି (୧୮୩୦) ନୂତନ ଗୀତିକବିତାର ଧାରା ପ୍ରବର୍ତ୍ତନ କରିଥିଲେ ।

ଏହାପୂର୍ବରୁ ଉର୍ଦ୍ଦୁ କବିତା ଅଳଂକରଣ ଓ ଉପମାପୀଡ଼ିତ ଥିଲା । ତାହା ଯେପରି କ୍ଳିଷ୍ଟ ସେହିପରି ମଧ୍ୟ ଅନେକ ସମୟରେ ଅର୍ଥହୀନ ହୋଇ ପଡ଼ୁଥିଲା । ଏହିପରି ପରିସ୍ଥିତିରେ ଆଧୁନିକ ଉର୍ଦ୍ଦୁକବିତାର ପ୍ରତିଷ୍ଠାତା ହାଲିଙ୍କର ଆବିର୍ଭାବ ଘଟିଥିଲା । ଏହା ଅବଶ୍ୟ ଆକସ୍ମିକ କିଂବା ଅସ୍ୱନିକ ନୁହେଁ । ତାଙ୍କର ନେତୃତ୍ୱରେ ବହୁ କବି ଉର୍ଦ୍ଦୁ କବିତାକୁ ପ୍ରାଚୀନତାର ନିଗଡ଼ବନ୍ଧନରୁ ରକ୍ଷାକରି ତାକୁ ଏକ ନୂତନ ଗୌରବରେ ଅଭିଷିକ୍ତ କରିଥିଲେ । ସେହି କବିମାନଙ୍କ ମଧ୍ୟରେ ଇକ୍‌ବାଲ୍ (୧୮୭୭-୧୯୩୮), ଇସ୍‌ମାଇଲ (୧୮୪୪-୧୯୧୭), ଜୋସମଲିହାବାଦୀ ହେଉଛନ୍ତି ପ୍ରଧାନ ।

ଏହି ଯୁଗରେ ଉର୍ଦ୍ଦ କବିତା ବାସ୍ତବରେ ନୂତନ ଜନ୍ମଲାଭ କଲା । ଶୈଳୀ, ଭାଷା, ଭାବ, ବିଷୟବସ୍ତୁ ଦୃଷ୍ଟିରେ ଏମାନଙ୍କର କବିତା ଅନ୍ୟମାନଙ୍କୁ ପ୍ରଭାବିତ କରିପାରିଥିଲା । ଲକ୍ଷ୍ନୌ କବିଗୋଷ୍ଠୀ କବିତାରେ ଅଳଂକରଣ ଓ ଶବ୍ଦକାଠିନ୍ୟର ପକ୍ଷପାତୀ ଥିଲେ । ୧୮୫୭ ମସିହା କେବଳ ଭାରତବର୍ଷର ରାଜନୀତିକ ଇତିହାସରେ ନୁହେଁ, ଭାଷା ଓ ସାହିତ୍ୟ ରାଜ୍ୟରେ ମଧ୍ୟ ଏକ ଯୁଗାନ୍ତକାରୀ ଘଟଣା । ଶିଳ୍ପ, ସଂସ୍କାର, ବିକାଶ, ବିଜ୍ଞାନର ଅଗ୍ରଗତି, ପାଶ୍ଚାତ୍ୟ ଶିକ୍ଷା ଓ ସାହିତ୍ୟର ପ୍ରସାର— ଏହାର ପରିଣତି ହିଁ ହାଲିଙ୍କର ନୂତନ କବିତାର ଜନନୀ । ଆଧୁନିକ ଉର୍ଦ୍ଦୁ କବିତାରେ ଆଜାଦ୍ ଏବଂ ହାଲି ହେଉଛନ୍ତି କର୍ଣ୍ଣଧାର । ହାଲି (୧୮୩୭-୧୯୧୦) ଙ୍କର ଲେଖାବଳୀ ବା କବିତାବଳୀ ଉର୍ଦ୍ଦୁ କବିତାରେ ନୂତନ ଚେତନା ସଂଚାର କରିଥିଲା । ହାଲିଙ୍କର ଏହି ଯୁଗର ଶ୍ରେଷ୍ଠ କବିତା ହେଉଛି ମୁସାଦାସ । ଭାରତରେ ମୁସଲମାନ-ମାନଙ୍କର ପତନକୁ ଲକ୍ଷ୍ୟ କରି ଏହି କବିତା ଲେଖାହୋଇଥିଲା । ହାଲିଙ୍କର ଅନ୍ୟାନ୍ୟ କବିତା ହେଉଛି ଉମିଦ୍, ଇନ୍‌ସାଫ, ହବେର୍ଓ୍ବାକନ୍ । ଏହିପରି ଏକ ନୂତନ ଜାତୀୟ କବିତା ଉର୍ଦ୍ଦୁ ସାହିତ୍ୟରେ ବିସ୍ତାରଲାଭ କରିଥିଲା । ତାଙ୍କ କବିତା ବିଦ୍ରୋହ ଅପେକ୍ଷା ସଂସ୍କାର ମନୋବୃତ୍ତିଦ୍ୱାରା ବିଶେଷ ପ୍ରଭାବିତ । କବିତାରାଜ୍ୟରେ କୃତ୍ରିମତାର ସେ ଥିଲେ ବିରୋଧୀ । ସେଥିପାଇଁ ପାରଂପରିକ ଶୈଳୀ ଓ ଆଙ୍ଗିକକୁ ସେ ବିରୋଧ କରିଥିଲେ । ହାଲି ତାଙ୍କର ନୂତନ ଚିନ୍ତା, ନୂତନ ପରିକଳ୍ପନା ଓ ଏକ ତୀବ୍ର ଚେତନାଦ୍ୱାରା ଉର୍ଦ୍ଦୁ ସାହିତ୍ୟରେ ନବଯୁଗର ସ୍ରଷ୍ଟାଭାବରେ ଗୌରବର ଅଧିକାରୀ ହୋଇଥିଲେ । ସାହିତ୍ୟରାଜ୍ୟରେ ଏକ ନୂତନ ଆନ୍ଦୋଳନର ସେ ଥିଲେ ପୁରୋଧା । ଦାଗ୍, ଅମୀର ପ୍ରଭୃତି କବିମାନେ ପରିବର୍ତ୍ତିତ ଅବସ୍ଥାରେ ସନ୍ତୁଷ୍ଟ ହୋଇନଥିଲେ । ତେଣୁ ସେମାନେ ବାଧ୍ୟହୋଇ ଦିଲ୍ଲୀ ପରିତ୍ୟାଗ କରିଥିଲେ ।

ଇସ୍‌ମାଇଲ ଏହି ସମୟର ଅନ୍ୟତମ ବିଶିଷ୍ଟ କବି । ତାଙ୍କର କବିତାରେ ପ୍ରକୃତିର ପ୍ରଭାବ ପରିଦୃଷ୍ଟ । ତାଙ୍କର ଅଧିକାଂଶ ରଚନା ଶିଶୁମାନଙ୍କ ଉଦ୍ଦେଶ୍ୟରେ ଲିଖିତ । ଆକବର (୧୮୪୬-୧୯୨୧)ଙ୍କ କବିତା ବ୍ୟଙ୍ଗ-ବିଦ୍ରୂପାତ୍ମକ ସ୍ୱରଦ୍ୱାରା ଚିହ୍ନିତ । ସେଥିରେ ପାଶ୍ଚାତ୍ୟ ସଭ୍ୟତାର ଅନୁକରଣର ନିନ୍ଦା କରାଯାଇଥିଲା । ଏହି ସମୟରେ ଚକ୍‌ବସ୍ତ, ଦୁର୍ଗାସହାଇସରୁର ପ୍ରଭୃତି କବିମାନେ ସ୍ୱ ସ୍ୱ ରଚନାରେ ନିଜ ଦେଶର ପ୍ରକୃତ ଅବସ୍ଥା ପ୍ରତିଫଳିତ କରାଇଥିଲେ । ଇକ୍‌ବାଲ (୧୮୭୫-୧୯୩୮) ଉର୍ଦ୍ଦୁ ସାହିତ୍ୟରେ ଏକ ସର୍ବଜନସମ୍ମତ ଶ୍ରେଷ୍ଠ କବି । ଦର୍ଶନ, ଉଚ୍ଚଚିନ୍ତା, ଭାବ-ଗାମ୍ଭୀର୍ଯ୍ୟ ହେଉଛି ଏହାଙ୍କ କବିତାର ଶ୍ରେଷ୍ଠ ଲକ୍ଷଣ । ଆତ୍ମଶକ୍ତିର ବିକାଶ କରିବା-ଲାଗି ସେ ଯେପରି କବିତାମାଧ୍ୟମରେ କବିମାନଙ୍କୁ ଆହ୍ୱାନ ଦେଇଥିଲେ । ଜୀବନର ପ୍ରତ୍ୟେକ ସମସ୍ୟାର ସେ ତନ୍ନ ତନ୍ନ କରି କବିତାରେ ବିଶ୍ଳେଷଣ କରିଯାଇଅଛନ୍ତି । ସ୍ୱାର୍ଥସର୍ବସ୍ୱ ବ୍ୟକ୍ତିଗତ ଜୀବନର ଭିତ୍ତି ଉପରେ କୌଣସି ଆଦର୍ଶ କେବେ ଗଢ଼ିଉଠି-

ପାରେନା ଏବଂ ଭୌତିକ ଭୋଗବିଳାସ ସଭ୍ୟତାର କଦାପି ନାସ୍ତିତ୍ମକ ନୁହେଁ । ଆଧ୍ୟାତ୍ମିକ ଜୀବନର ଅଭିଳାଷ ହିଁ ତାଙ୍କ କବିତାର ମୁଖ୍ୟସ୍ୱର । ତାଙ୍କର ଶୈଳୀ ମଧ୍ୟ ସ୍ୱକୀୟତାରେ ପରିପୂର୍ଣ୍ଣ । ତାଙ୍କର ପ୍ରକାଶଭଙ୍ଗୀ, ଶବ୍ଦଯୋଜନା ଅସାଧାରଣ । ଆଧୁନିକ ଉର୍ଦ୍ଦୁ ସାହିତ୍ୟର ପ୍ରତ୍ୟେକ କବି ଇକ୍‌ବାଲ୍‌ଙ୍କ ପ୍ରଭାବରେ ପ୍ରଭାବିତ । ପ୍ରତିଭାର ଜ୍ୱଳନ୍ତ ଶିଖାରେ ତାଙ୍କର ପ୍ରତ୍ୟେକ ରଚନା ଯେପରି ଦୀପ୍ତିମନ୍ତ ହୋଇଥିଲା । ଏହି ଯୁଗର ବିଦ୍ରୋହୀ କବିଭାବରେ ଜୋସ୍ ମଲିହାବାଦୀ ହିଁ ପରିଚିତ । ସମଗ୍ର ଭାରତ-ବର୍ଷରେ ବିଂଶ ଶତାବ୍ଦୀର ପ୍ରଥମ ପାଦରେ ଯେଉଁ ଶିକ୍ଷା, ଶିଳ୍ପ, ଶ୍ରମ ସମ୍ପର୍କୀୟ ବିପ୍ଳବ ଦେଖାଦେଇଥିଲା, ତାହାର ପ୍ରତିଧ୍ୱନି ମଲିହାବାଦୀଙ୍କ କବିତାରେ ଶୁଣାଯାଇଥିଲା । ଜୋସ ଉର୍ଦ୍ଦୁ ସାହିତ୍ୟରେ ଯେପରି ବିପ୍ଳବର ପ୍ରତିମୂର୍ତ୍ତି ଥିଲେ । ଦେଶରେ ଜାତୀୟ ସଂଗ୍ରାମ, ଲାଗି ଲାଗି ଦୁଇ ଦୁଇଟି ମହାଯୁଦ୍ଧର ବିଭୀଷିକା ତାଙ୍କୁ ବିଶେଷ ପ୍ରଭାବିତ କରିଥିଲା । ପ୍ରଥମ ମହାଯୁଦ୍ଧ ପରେ ଉର୍ଦ୍ଦୁ ଗଜଲ୍ ରଚନା କେତେ ପରିମାଣରେ ପରିବର୍ତ୍ତିତ ହୋଇଥିଲା । ପ୍ରାଚୀନ କାଳରୁ ଗଜଲ୍ କେତେକ ପରିମାଣରେ ଗତାନୁ-ଗତିକ ଥିଲା । ହାଲି ଏବଂ ଅନ୍ୟାନ୍ୟ କବିଙ୍କ ଗଜଲ୍‌ଲେଖାରେ ଏହି ପରିବର୍ତ୍ତନ ସୂଚିତ ହୋଇଥିଲା । ଉର୍ଦ୍ଦୁ ଗଜଲ୍ କ୍ରମଶଃ ସମାଜସଚେତନ ହେଲା ଏବଂ ଏଥିପାଇଁ କବି ଇକ୍‌ବାଲଙ୍କ ପ୍ରତିଭା ଦାୟୀ କହିଲେ ଅତ୍ୟୁକ୍ତି ହେବ ନାହିଁ । ଇକ୍‌ବାଲଙ୍କୁ ଅନୁସରଣ କରି ହାଲି ଜନସାଧାରଣଙ୍କ ଉଦ୍ଦେଶ୍ୟରେ ଗଜଲ୍ ରଚନା କରିଥିଲେ । ତାଙ୍କର ହସ୍ତରେ ଗଜଲ୍ ପ୍ରତ୍ୟକ୍ଷ ଏବଂ ବାସ୍ତବ ରୂପ ଗ୍ରହଣ କରିଥିଲା । ଫାନୀ ଏହି ସମୟର ଜଣେ ବିଶିଷ୍ଟ ଗଜଲ୍-ଲେଖକ । ତାଙ୍କର ଗଜଲ୍ କରୁଣ ବେଦନା ଓ ଅଶ୍ରୁରେ ପରିପୂର୍ଣ୍ଣ । ଅସ୍‌ଗର ଗାଲିବ୍‌ଙ୍କ ଦ୍ୱାରା ଅନୁପ୍ରାଣିତ ହୋଇଥିଲେ । ଜିଗର ପ୍ରେମକବିତା ପାଇଁ ପ୍ରସିଦ୍ଧିଲାଭ କରିଥିଲେ । ତାଙ୍କର କବିତାରେ ଆବେଗର ମାତ୍ରା ସବୁଠାରୁ ଅଧିକ । ଏହି ସମୟର ଆଉ ଦୁଇଜଣ କବି ହେଉଛନ୍ତି ଫିରାଗ୍ ଓ ଫୈଜ୍ । ଏମାନେ ମଧ୍ୟ ବହୁ ଗଜଲ ଲେଖିଥିଲେ । ସେମାନେ ଭାଷା ଓ ଗତାନୁଗତିକ ଶୈଳୀର ପରିବର୍ତ୍ତନ କରିଥିଲେ । ୧୯୬୦ ମସିହା ପରେ ଉର୍ଦ୍ଦୁ କବିତାର ସ୍ୱର ଆହୁରି ପରିବର୍ତ୍ତିତ ହୋଇଥିଲା; ଅର୍ଥାତ୍ ଉର୍ଦ୍ଦୁ କବିତାରେ ନୂତନ ପରୀକ୍ଷା-ନିରୀକ୍ଷା ଆରମ୍ଭ ହୋଇଥିଲା । ଆଜମ୍‌ତୁଲ୍ଲା ଖାଁ, ଅକ୍‌ତର ସିରାନୀ, ହାଫିଜ ପ୍ରଭୃତି ଉର୍ଦ୍ଦୁ କବିତାରେ ପରୀକ୍ଷା ନିରୀକ୍ଷା-ଚଳାଇଥିଲେ ।

୧୯୩୬ ମସିହାରେ ଉର୍ଦ୍ଦୁ ସାହିତ୍ୟରେ ପ୍ରଗତିଶୀଳ ଆନ୍ଦୋଳନ (Progressive Movement) ଆରମ୍ଭ ହେଲା । ଏହାଫଳରେ ଉର୍ଦ୍ଦୁ ସାହିତ୍ୟ ଏକ ନୂତନ ଶକ୍ତିରେ ଅଧିଷ୍ଠିତ ହୋଇଥିଲା । ଏହି ପ୍ରଗତିଶୀଳ ଆନ୍ଦୋଳନର ଉଲ୍ଲେଖଯୋଗ୍ୟ କବି ହେଉଛନ୍ତି ଫୈଜ୍, ଫିରାଗ, ଜାଫର୍ ଓ ଜୋସ୍ । ଉର୍ଦ୍ଦୁ କବିତା ଏହିପରି ଗତିକରି ଆଧୁନିକ ଅବସ୍ଥାକୁ ଆସିଅଛି । ସେଥିରେ ଦେଶାତ୍ମବୋଧ,

ମୁକ୍ତିବୋଧ ଓ ନୂତନ ସାମାଜିକ ଚେତନା ବଳିଷ୍ଠ ଭାବରେ ପ୍ରତିଫଳିତ । ଉର୍ଦ୍ଦୁ କବିତା ପଢ଼ିବା ପାଇଁ ଏବଂ ଶୁଣିବାପାଇଁ ଖୁବ୍ ହୃଦୟସ୍ପର୍ଶୀ । ପୁନଶ୍ଚ ସମସାମୟିକ ସମାଜର ଚିତ୍ର ସେଥିରେ ନିପୁଣତାର ସହିତ ପ୍ରତିଫଳିତ ।

କ୍ଷୁଦ୍ରଗଳ୍ପ—

ଆଧୁନିକ ଉର୍ଦ୍ଦୁ କ୍ଷୁଦ୍ରଗଳ୍ପ ନରନାରୀମାନଙ୍କର ବାସ୍ତବ ବର୍ଣ୍ଣନା ଅପେକ୍ଷା ନିର୍ଦ୍ଦିଷ୍ଟ ମୁହୂର୍ତ୍ତର ବର୍ଣ୍ଣନାକୁ ବେଶୀ ଆଗ୍ରହ କରିଥାଏ । ପାରିପାର୍ଶ୍ୱିକ ପରିପ୍ରେକ୍ଷୀରେ ବ୍ୟକ୍ତିନିଷ୍ଠ କଳ୍ପନା ବହୁ ସମୟରେ ବୌଦ୍ଧିକ ପ୍ରଖରତାଦ୍ୱାରା ଆଚ୍ଛାଦିତ ହୋଇଥାଏ । ସେଥିରେ ନିର୍ଦ୍ଦିଷ୍ଟ ଗଳ୍ପାଂଶର ଆବଶ୍ୟକତା ନାହିଁ, ସୁଚିନ୍ତିତ ପରିଣତିର ମଧ୍ୟ ଆବଶ୍ୟକତା ନାହିଁ । ଏଥିଯୋଗୁଁ ଆଧୁନିକ ଉର୍ଦ୍ଦୁ କ୍ଷୁଦ୍ରଗଳ୍ପ କଳାର ଅଭିବ୍ୟକ୍ତି । ସେଥିରେ ବର୍ଣ୍ଣିତ ଘଟଣା ଓ ଚରିତ୍ରାବଳୀ ସଂଘର୍ଷ ଓ ଦ୍ୱନ୍ଦ୍ୱର ପୃଷ୍ଠଭୂମିରେ ପ୍ରତିଫଳିତ ହୋଇଥାଆନ୍ତି । ମୁହୂର୍ତ୍ତର ଉତ୍ତେଜନା ଓ ଉଷ୍ଣତା ଗଭୀର-ଭାବରେ ଉପଲବ୍ଧି କରିବା ଆଧୁନିକ କ୍ଷୁଦ୍ରଗଳ୍ପର ଲକ୍ଷଣ । ଏହି ଉପଲବ୍ଧି କଳାତ୍ମକ ହେବା ଯଥାର୍ଥ । ଆଧୁନିକ ଉର୍ଦ୍ଦୁ କ୍ଷୁଦ୍ରଗଳ୍ପ ଲେଖକମାନେ ବିଭିନ୍ନ ଗୋଷ୍ଠୀରେ ବିଭକ୍ତ; ଯଥା:—ପ୍ରଗତିଶୀଳ ଗୋଷ୍ଠୀ ଓ ଆଧୁନିକ ଗୋଷ୍ଠୀ ।

ରାଜେନ୍ଦ୍ର ସିଂ ବେଦୀ ପ୍ରଗତିଶୀଳ ଲେଖକ ଭାବରେ ପରିଚିତ । ରାମଲାଲ, ଇକ୍‌ବାଲ୍ ମାତିନ୍, ସତୀଶ ବାତ୍ରା, ଦେବୀନ୍ଦର ଇସାର୍—ଏମାନେ ପ୍ରଥମେ ପ୍ରଗତିଶୀଳ ଗୋଷ୍ଠୀର ଲେଖକ ଭାବରେ ପରିଚିତ ଥିଲେ । କିନ୍ତୁ ପରବର୍ତ୍ତୀକାଳରେ ଏମାନେ ଉର୍ଦ୍ଦୁ କ୍ଷୁଦ୍ରଗଳ୍ପର ଆଙ୍ଗିକ ଓ ଗଳ୍ପାଂଶ ବହୁ ପରିମାଣରେ ପରିମାର୍ଜିତ କରିଦେଇଅଛନ୍ତି । ସେମାନଙ୍କର ଗଳ୍ପ ରଚନାଶୈଳୀ ସ୍ୱାଧୀନତା ପୂର୍ବବର୍ତ୍ତୀ କାଳରେ ଯାହା ଥିଲା, ବର୍ତ୍ତମାନ ତାହା ନାହିଁ । କ୍ୱାରିତିଲ ଆହମ ହାଇଦର୍ ଜଣେ ବିଶିଷ୍ଟ ଗଳ୍ପଲେଖିକା । ତାଙ୍କର ଶୈଳୀ ସ୍ୱକୀୟତାରେ ପରିପୂର୍ଣ୍ଣ । ବ୍ୟକ୍ତିର ଅଧ୍ୟୟନ, ତାର ଅତୀତ ଓ ବର୍ତ୍ତମାନର ସମୀକ୍ଷା ହାଇଦର୍‌ଙ୍କ ଗଳ୍ପରେ ବରାବର ଦେଖିବାକୁ ମିଳେ । ତାଙ୍କର ଗଳ୍ପ 'କାରମନ' (Carmon), 'ସୀତାହରଣ', 'House in Society' ପ୍ରଭୃତିରେ ସେହି ଏକ ଆବେଗମୟୀ ନାରୀ ବରାବର ସଭ୍ୟତାର ଅନ୍ତରାଳରେ ନିଜକୁ ପ୍ରତିଫଳିତ କରାଇ ପାରିଛି ।

ଜିଲାନି ବନୋ, ଯୋଗୀନ୍ଦର ପଲ, ଓ୍ୱାଜିଦା ତବସମ୍, ଇକ୍‌ବଲ ମାଜିଦ୍, ଓ୍ୱାସୀ ଅବଦୁଲ ସତାର, ଘିଆସ ଅହମ୍ମଦ ଗାଦ୍ଦୀ ୧୯୫୦ ମସିହା ପରବର୍ତ୍ତୀ ଉର୍ଦ୍ଦୁ ସାହିତ୍ୟରେ ବିଶିଷ୍ଟ ଗଳ୍ପଲେଖକ । ଏମାନଙ୍କର ଗଳ୍ପରେ ସାମାଜିକ ଚେତନା ଓ ସମସାମୟିକ ପରିପ୍ରେକ୍ଷୀରେ ବ୍ୟକ୍ତିର ପ୍ରତିକ୍ରିୟା ପ୍ରତିଫଳିତ । ଜେଲାନୀବନୋ ତାଙ୍କର ବୁଦ୍ଧିର ପ୍ରଖରତା ଓ ଉପଲବ୍ଧି କରିବାର ଗଭୀରତା ଗଳ୍ପରେ ପ୍ରକାଶ କରି-

ପାରିଥାନ୍ତି । ତାଙ୍କ ଗଳ୍ପରେ ଗଳ୍ପାଂଶର ସେତେ ଗୁରୁତ୍ୱ ନ ଥାଏ; ମାତ୍ର କୌଣସି ନିର୍ଦ୍ଦିଷ୍ଟ ମୁହୂର୍ତ୍ତର ଉତ୍ତାପ ଓ ଉତ୍ତେଜନା ତାଙ୍କ ଗଳ୍ପରେ ବିଶେଷଭାବରେ ଦେଖିବାକୁ ମିଳେ । ଅନେକ ସମୟରେ ତାଙ୍କ ଗଳ୍ପର ଉପସଂହାର ମଧ୍ୟ ନଥାଏ । ସେ ସ୍ଥାନରୁ କୌଣସି ନିର୍ଦ୍ଦିଷ୍ଟ ପରିସ୍ଥିତିର ଗୁରୁତ୍ୱ ଯେପରି ପାଠକ ଉପଲବ୍ଧି କରିପାରିବ । ତାଙ୍କର ଗଳ୍ପରେ ସ୍ଥାନୀୟ ବର୍ଣ୍ଣନା (ହାଇଦ୍ରାବାଦ ଅଞ୍ଚଳର) ମଧ୍ୟ ଦେଖିବାକୁ ମିଳେ । ତାଙ୍କର ଗଳ୍ପ ସଂକଳନ ନିର୍ବାଣରେ ଦଶହରା ଉତ୍ସବର ପୃଷ୍ଠଭୂମିରେ ତେଲେଙ୍ଗାନା ଗ୍ରାମାଞ୍ଚଳର ଜମିଦାରଶ୍ରେଣୀୟ ଲୋକଙ୍କଦ୍ୱାରା ଦରିଦ୍ର ଲୋକମାନଙ୍କର ନିର୍ଯାତନା ଓ ଅତ୍ୟାଚାରର ବର୍ଣ୍ଣିତ ହୋଇଅଛି । ଜନୈକ ନିମ୍ନହା ହରିଜନ ବାଳିକା ପ୍ରତି ଜମିଦାରଶ୍ରେଣୀୟ କୌଣସି ଯୁବକ ଆକୃଷ୍ଟ ହୋଇଥିଲେ । ସେହି ବାଳିକାର ପିତା ଏହା ପୂର୍ବରୁ କୌଣସି ଏକ ଚୋରି ଅଭିଯୋଗରେ ଆତ୍ମହତ୍ୟା କରିଥିଲେ । ଯୁବକ ଜାଣିଥିଲେ ଯେ, ସେମାନଙ୍କ ବିବାହ କେବେହେଁ ସମ୍ଭବ ନୁହେଁ । ମନ୍ଦିରରେ ପୁରୋହିତଙ୍କ ଦ୍ୱାରା ନିର୍ଯାତିତା ହୋଇ ସେହି ନିମ୍ନହା ବାଳିକା ଶେଷନିଶ୍ୱାସ ତ୍ୟାଗ କରିଥିଲା । ଶେଷ ମୁହୂର୍ତ୍ତରେ ସେ ଘୋଷଣା କରିଥିଲା—"ମୁଁ ଆଉ ଘରକୁ ଫେରିବିନାହିଁ । ତୁମେ ମୋତେ ଏଠାରେ ଛାଡ଼ିଦିଅ, ମୁଁ ନିର୍ବାଣପ୍ରାପ୍ତ ହୋଇଅଛି ।" ଏହାହିଁ 'ନିର୍ବାଣ' ଗଳ୍ପର ସାରାଂଶ । ତାଙ୍କର ଆଉ ଗୋଟିଏ ଗଳ୍ପ 'ସୋନାଅଙ୍ଗନ' ଭାରତବର୍ଷରେ ମିଳିତ ପାରିବାରିକ ଜୀବନର ଦୁର୍ଦ୍ଦଶା ଓ ଅବସାନକୁ ଦେଖି ଲେଖା-ଯାଇଥିଲା । ଏକଦା ଯେଉଁ ଅଙ୍ଗନ ଶିଶୁମାନଙ୍କର କୋଳାହଳରେ ଝଂକୃତ ହେଉଥିଲା, ତାହା ଦିନେ ଶୂନ୍ୟ-ପରିତ୍ୟକ୍ତ ହୋଇଥିଲା । କାରଣ ଯୁବକ ଓ ଯୁବତୀ (ପୁଅ-ବୋହୂ) ଚାକିରି ଉଦ୍ଦେଶ୍ୟରେ ପିତାମାତା ଓ ଘରଦ୍ୱାର ଛାଡ଼ି ଚାଲିଗଲେ—ପଛରେ କେବଳ ସେମାନଙ୍କର ବୃଦ୍ଧା ଜନନୀ ପଡ଼ିରହିଥିଲେ ।

ଗଳ୍ପଲେଖକ ରାମଲାଲଙ୍କର ବାସ୍ତବବାଦୀ ଦୃଷ୍ଟିକୋଣ ଓ ବ୍ୟଞ୍ଜନାପୂର୍ଣ୍ଣ ଶୈଳୀ ତାଙ୍କ ଗଳ୍ପମାନଙ୍କରେ ପରିଦୃଷ୍ଟ । ତାଙ୍କର ଗୋଟିଏ ଗଳ୍ପ ହେଉଛି 'ଛାପ୍' (Chaap) । ଏହି ଗଳ୍ପରେ ଜନୈକ ପ୍ରେମଉଦ୍‌ଭ୍ରାନ୍ତ ଗୃହସ୍ୱାମୀର ଦ୍ୱନ୍ଦ୍ୱ ଓ ସଂଘର୍ଷ ବର୍ଣ୍ଣିତ । ଏକ ନିଃସ୍ୱ କିରାଣୀ ଜୀବନରେ ଧନପାଇଁ ଯେଉଁ ଦୁର୍ଦ୍ଦମ ଲାଳସା ଦେଖା-ଦେଇଥିଲା, ତାହା ମଧ୍ୟ ଏହି ଗଳ୍ପରେ ବର୍ଣ୍ଣିତ ।

ଯୋଗୀନ୍ଦର ପଲ୍ ବହୁ ଦେଶ-ବିଦେଶ ଭ୍ରମଣ କରି ଅଭିଜ୍ଞତା ଅର୍ଜନ କରିଛନ୍ତି । ତାଙ୍କ ଗଳ୍ପରେ ପ୍ରାଚୀନ ମୂଲ୍ୟବୋଧ ଓ ନୂତନ ମୂଲ୍ୟବୋଧର ସଂଘର୍ଷ ଦେଖିବାକୁ ମିଳେ । ମଣିଷ ମଣିଷ ଭିତରର ଆଧୁନିକ ସଭ୍ୟତାରେ ଯେଉଁ ଆନ୍ତରିକତା-ହୀନ ଜଟିଳ ସମ୍ପର୍କ, ତାହାର ପୃଷ୍ଠଭୂମିରେ ଲିଖିତ ଗଳ୍ପ ତାଙ୍କର ବାଜ୍ୟାପ୍ତ । ଏହି ଗଳ୍ପରେ ଜନୈକ ଅବିବାହିତ ଯୁବକ ଏକାଧିକ ମହଲାବିଶିଷ୍ଟ ସୌଧ ଭିତରେ ପ୍ରବେଶ କରିଛି । ତା' ହାତରେ ଏକ ମଦ ବୋତଲ । ପ୍ରତ୍ୟେକ କୋଠରିର

ଅନ୍ତେବାସୀମାନଙ୍କ ସହିତ ବିଭିନ୍ନ ଭାବରେ ସେ ଆଲୋଚନା କରିଥିଲା । ତା'ର ପ୍ରତିକ୍ରିୟା ଏହାପରେ ସେ ନିଜେ ପ୍ରକାଶ କରିଥିଲା । ଏହି ଗଳ୍ପରେ ଲେଖକ ମଣିଷ ଭିତରର ପ୍ରକୃତ ଚେତନାଶକ୍ତିକୁ ଉଦ୍‌ଘାଟନ କରିବାପାଇଁ ତତ୍ପରତା ଦେଖାଇଛନ୍ତି ।

ଯୁଗୋପଯୋଗୀ ସମସ୍ୟାମାନଙ୍କୁ କେନ୍ଦ୍ର କରି ଇକ୍‌ବାଲ ମଜିଦ୍‌ଙ୍କର କ୍ଷୁଦ୍ର ଗଳ୍ପଗୁଡ଼ିକ ଲିଖିତ । ତାଙ୍କର ଗୋଟିଏ ଉଲ୍ଲେଖଯୋଗ୍ୟ ଗଳ୍ପ ହେଉଛି 'ପେଟ୍ କା କୋଚୁଆ' । ଏଥିରେ ଲେଖକ ଯୁକ୍ତିବାଦୀ ବ୍ୟକ୍ତି ଓ ଧାର୍ମିକ ପରଂପରା ମଧ୍ୟରେ ଧର୍ମ ଓ ସଂଘର୍ଷର ଚିତ୍ରଣ କରିଛନ୍ତି । ଗଳ୍ପରେ ଜଣେ ନାସ୍ତିକର ପୁତ୍ରର ଆକସ୍ମିକ ମୃତ୍ୟୁରେ ମନରେ ଦ୍ୱନ୍ଦ୍ୱ ଦେଖାଦେଇଛି । ତାହା ମଧ୍ୟରେ ତା'ର ପ୍ରକୃତ ସତ୍ତା ତାକୁ ବରାବର ପ୍ରଶ୍ନ ପଚାରି ବ୍ୟସ୍ତ କରୁଛି । ତୁମେ ତୁମ ପୁତ୍ରର ଶବ କେଉଁ ଧର୍ମର ନିୟମ ଅନୁଯାୟୀ ସତ୍କାର କରିବାକୁ ଭାବୁଛ ? ଖ୍ରୀଷ୍ଟଧର୍ମ କିମ୍ବା ହିନ୍ଦୁ ଧର୍ମ କିବା ମୁସଲମାନ ଧର୍ମରେ ସଂସ୍କାର କରିବ; ନା ତୁମେ ତୁମର ପୁତ୍ରର ଶବକୁ ରାସ୍ତାପାଖରେ ପରିତ୍ୟକ୍ତ କରିବ ? ଶେଷରେ ସେହି ନାସ୍ତିକ ସ୍ୱୀୟ ଧର୍ମପରାୟଣା ସ୍ତ୍ରୀର କରୁଣ ପ୍ରାର୍ଥନାରେ ତାର ହୃଦୟ ପରିବର୍ତ୍ତିତ ହୋଇଥିଲା । ପଡ଼ୋଶୀମାନଙ୍କର ବାରମ୍ବାର ଦୃଷ୍ଟିବାଣ ତାକୁ ମଧ୍ୟ କ୍ଷତ-ବିକ୍ଷତ କରିଥିଲା । ଶେଷରେ ସେ ନିଜର ପରାଜୟ ସ୍ୱୀକାର କରିଥିଲା ଯେ, ମନୁଷ୍ୟ ନିଜ ଭିତରେ ଥିବା ଶତ୍ରୁର ସମ୍ମୁଖୀନ ହେବା ସମ୍ଭବ ନୁହେଁ ।

ଇସ୍‌ମାଥ ଚୁଗତାଇ ଜଣେ ଆଧୁନିକ ଗଳ୍ପଲେଖିକା । ତାଙ୍କର ଅଧିକାଂଶ ଗଳ୍ପ ଯୌନ-ସମସ୍ୟାକୁ କେନ୍ଦ୍ର କରି ଲିଖିତ । ସେ ନିର୍ଭୀକ ଭାବରେ ମୁସଲମାନ ସଂପ୍ରଦାୟର ମଧ୍ୟବିତ୍ତଶ୍ରେଣୀୟ ଯୁବକମାନଙ୍କର ଆଚରଣକୁ ଆକ୍ଷେପ କରିଥିଲେ । ବଲରାଜ ମେନେରା, ସୁରେନ୍ଦର ପରକାଶ ଗତ କେତେ ବର୍ଷଧରି କ୍ଷୁଦ୍ରଗଳ୍ପରେ ନୂତନ ଆଙ୍ଗିକ ଓ ନୂତନ ଟେକନିକ୍‌ର ପରୀକ୍ଷା-ନିରୀକ୍ଷା ଚଳାଇଛନ୍ତି । ଆଧୁନିକ ସଂଘର୍ଷ ଓ ଦ୍ୱନ୍ଦ୍ୱପୀଡ଼ିତ ବିଭକ୍ତ ବ୍ୟକ୍ତିତ୍ୱର ଏକ ଭିନ୍ନ ଚିତ୍ରକଳ୍ପ ଚିତ୍ରଣ କରିବାରେ ଆଧୁନିକ ଗଳ୍ପଲେଖକମାନେ ପ୍ରୟାସୀ । ଏହିପ୍ରକାର ପରୀକ୍ଷା-ନିରୀକ୍ଷା ଆଧୁନିକ ଉର୍ଦ୍ଦୁ କ୍ଷୁଦ୍ରଗଳ୍ପର ଶୈଳୀ ଓ ନୂତନ ଟେକନିକ୍ ଆବିଷ୍କାର ପ୍ରବର୍ତ୍ତିତ କରିବାରେ ସାହାଯ୍ୟ କରୁଛି । ଅତ୍ୟାଧୁନିକ ଉର୍ଦ୍ଦୁ କ୍ଷୁଦ୍ରଗଳ୍ପରେ ଭାବସଂଗତ, ଘଟଣାସଂଗତ ବିଶେଷ ଭାବରେ ଦେଖାଯାଏ । ଆଧୁନିକତାର ଅର୍ଥ ପାଶ୍ଚାତ୍ୟର କେବଳ ଅନୁକରଣ ନୁହେଁ । କାରଣ ପାଶ୍ଚାତ୍ୟ ସାହିତ୍ୟର ମୂଲ୍ୟବୋଧ ଭାରତୀୟ ସାହିତ୍ୟର ମୂଲ୍ୟବୋଧର ବିକାଶ ହେବାରେ କଦାପି ସାହାଯ୍ୟ କରିପାରିବ ନାହିଁ । ନୂତନ ସାମାଜିକ ପରିପ୍ରେକ୍ଷୀରେ ଭାରତୀୟ ସାହିତ୍ୟର ମୂଲ୍ୟବୋଧ ପ୍ରତିଷ୍ଠିତ ହେବା ଉଚିତ । ଶୈଳୀ କିମ୍ବା ଟେକ୍‌ନିକ୍ ଅନୁକରଣ କରାଯାଇପାରେ; କିନ୍ତୁ ତାହା ସମସାମୟିକ ଭାରତୀୟ ସମାଜର ସାଂସ୍କୃତିକ ଓ ସାହିତ୍ୟିକ ପ୍ରୟୋଜନ ସହିତ ଖାପ ଖାଇବା ଉଚିତ । ଏହି ସ୍ୱାଙ୍ଗୀକରଣ ଦୃଷ୍ଟିକୋଣରୁ ଆଧୁନିକ ଉର୍ଦ୍ଦୁ କ୍ଷୁଦ୍ରଗଳ୍ପରେ ପରୀକ୍ଷା ଚାଲିଛି ।

## ଉର୍ଦ୍ଦୁ ଉପନ୍ୟାସ—

ଉର୍ଦ୍ଦୁ ସାହିତ୍ୟରେ ଉପନ୍ୟାସର ସୃଷ୍ଟି ବିଶେଷ ପ୍ରାଚୀନ ନୁହେଁ । କିନ୍ତୁ ପ୍ରାଚୀନ ଉର୍ଦ୍ଦୁରେ ଉପନ୍ୟାସଧର୍ମୀ ରଚନା ପରିଦୃଷ୍ଟ ହୁଏ । ଉର୍ଦ୍ଦୁ ଉପନ୍ୟାସର ପୁରାତନ ନାମ ହେଉଛି 'ଦାସ୍ତାନ' । ଏହାର (ଦାସ୍ତାନର) ଅର୍ଥ ହେଉଛି ଗଦ୍ୟ ଲିଖିତ ଦୀର୍ଘ କାହାଣୀ । ପ୍ରାଚୀନ ପାର୍ସିଭାଷାରୁ ଏହି ଦାସ୍ତାନର ଉତ୍ପତ୍ତି ହୋଇଥିଲା ଓ ଭାରତବର୍ଷର ନବାବ ଅମୀରମାନଙ୍କର ସାହାଯ୍ୟରେ ଦାସ୍ତାନ ପୃଷ୍ଠପୋଷକତା ଲାଭ କରିଥିଲା । ଡାସ୍ତାନର ଏକମାତ୍ର ଲକ୍ଷ୍ୟ ହେଉଛି, ପାଠକମାନଙ୍କର ସନ୍ତୋଷ-ବିଧାନ । ସେହି ରଚନାରେ ଘଟଣାବଳୀର ରସପୂର୍ଣ୍ଣ ସମାବେଶ ଦେଖିବାକୁ ମିଳିଥିଲା । ଦାସ୍ତାନ-ରଚୟିତାମାନେ ନବାବ ଦରବାରରେ ବିଶେଷ ଆଦୃତ ହେଉଥିଲେ । ସମୟର ଗତିରେ ଏହି ଦାସ୍ତାନ ଆଧୁନିକ ଉପନ୍ୟାସରେ ରୂପାନ୍ତରିତ ହୋଇଅଛି ବୋଲି କୁହାଯାଇପାରେ । ସାଂପ୍ରତିକ କେତେକ ଉର୍ଦ୍ଦୁ ଉପନ୍ୟାସରେ ମଧ୍ୟ ଦାସ୍ତାନର କେତେକ ପ୍ରଭାବ ଦେଖାଯାଏ । ଏହିପରି ପ୍ରାଚୀନଧର୍ମୀ ଔପନ୍ୟାସିକ ହେଉଛନ୍ତି ଫୟଜ୍ ଅଲ୍ଲୀ ଓ ମହମ୍ମଦ ଆସଲମଦ୍ । କିନ୍ତୁ ଆଧୁନିକ ଉପନ୍ୟାସର ଆଙ୍ଗିକ, ସାମାଜିକ ଓ ରାଜନୀତିକ ପୃଷ୍ଠଭୂମି ଦାସ୍ତାନରେ ଦେଖିବାକୁ ମିଳେନାହିଁ । ପ୍ରାଚୀନ ଉର୍ଦ୍ଦୁ ଉପନ୍ୟାସ ଭାବରେ 'ହାମେଶ୍ରା ହାମଜା' ଓ 'ତିଲସ୍‌ମେ ଓସରୋବା'ର ନାମ ଉଲ୍ଲେଖଯୋଗ୍ୟ । ଏହିସବୁ ରଚନାରେ ଆରବ୍ୟ ଉପନ୍ୟାସର ପ୍ରଭାବ ପଡ଼ିଅଛି; କିନ୍ତୁ ଉଚ୍ଚାଙ୍ଗ ସୃଷ୍ଟିଶିଳ୍ପ ଭାବରେ ଏହା କଦାପି ଉପନ୍ୟାସ ପଦବାଚ୍ୟ ନୁହେଁ । ରଜବ୍‌ଆଲ୍ଲୀ ବେଗ୍ ସଫର୍‌ଙ୍କର 'ଫାସାନେସ୍ୱେ,' ଆଦାୟି ମୀର୍ ଆନାନେର୍‌ଙ୍କର 'ବାଗ୍ ଓ ବାହାର' ଏବଂ କିସ୍‌ସାଏ ଗୃହାର 'ଦରବେସ୍' ପ୍ରଭୃତି ଗ୍ରନ୍ଥରେ ଉପନ୍ୟାସର କେତେକ ଲକ୍ଷଣ ଦେଖାଯାଏ ।

ନାଜିର ଅହମ୍ମଦ (୧୮୩୧-୧୯୧୨) ଉର୍ଦ୍ଦୁ ସାହିତ୍ୟର ପ୍ରଥମ ଔପନ୍ୟାସିକ । ସାର୍ ସୟଦଙ୍କର ଏ ହେଉଛନ୍ତି ସମସାମୟିକ ଓ ତାହାଙ୍କ ଦ୍ୱାରା କେତେକ ପରିମାଣରେ ପ୍ରଭାବିତ । 'ଇବନ୍ ଉଲ୍‌ଓ୍ୱାକଥ୍,' 'ମୀରାତ୍ ଉଲଉରସ୍' ଏବଂ 'ବିନତ୍ ଉନ୍‌ନାସ୍' ପ୍ରଭୃତି ରଚନାରେ କ୍ରମଶଃ ପ୍ରଗତିଶୀଳ ଦୃଷ୍ଟିଭଙ୍ଗୀ ପ୍ରତିଫଳିତ ହୋଇ-ଥିଲା । ସର୍ବପ୍ରଥମେ ପାଶ୍ଚାତ୍ୟ ଢଙ୍ଗରେ ଉପନ୍ୟାସ ଲେଖିବାରେ ସେ ଅଗ୍ରଣୀ ଥିଲେ । ତାଙ୍କର ଉପନ୍ୟାସମାନଙ୍କରେ ସମସାମୟିକ ମୁସଲମାନ ସମ୍ପ୍ରଦାୟର ଚିତ୍ର ମଧ୍ୟ ଦେଖିବାକୁ ମିଳେ । ପାଶ୍ଚାତ୍ୟ ଇଂରେଜୀ ଶିକ୍ଷାପ୍ରାପ୍ତ ମୁସଲମାନ ଯୁବକ ଏବଂ ପ୍ରାଚୀନ ପରମ୍ପରା ମଧ୍ୟରେ ଯେଉଁ ପ୍ରଭେଦ, ତାହା ଏହାଙ୍କ ଉପନ୍ୟାସରେ ସୂଚିତ ହୋଇଥିଲା । ବିବାହ, ନାରୀଶିକ୍ଷାର ପ୍ରୟୋଜନ ଓ ଅନ୍ୟାନ୍ୟ ସମସ୍ୟା ତାଙ୍କ ଉପନ୍ୟାସରେ ଦେଖିବାକୁ ମିଳେ । ଆଧୁନିକ ଉର୍ଦ୍ଦୁ ଉପନ୍ୟାସର ପ୍ରାକ୍‌କାଳରେ 'ନବାବୀ ଦରବାର'

ନାମକ ଉପନ୍ୟାସ ଲିଖିତ ହୋଇଥିଲା । ଏହାର ଲେଖକ ହେଉଛନ୍ତି ଢାକାର ନବାବ ସୟଦ ମହମ୍ମଦ ଆଜାଦ୍ । ଜମିଦାରଗୋଷ୍ଠୀର ଯେଉଁ ଚରିତ୍ରଗତ ଓ ଆଚରଣଗତ ତ୍ରୁଟି, ତାହା ଉପନ୍ୟାସରେ ବର୍ଣ୍ଣିତ ହୋଇଥିଲା ।

ନାଜିର ଅହମ୍ମଦଙ୍କ ପରବର୍ତ୍ତୀ ବିଶିଷ୍ଟ ଔପନ୍ୟାସିକ ହେଲେ ଅବଦୁଲ ହେଲିମ୍ ସର୍ଫର୍ ଓ ରତନନାଥ ସରସାର୍ । ଅବଦୁଲ ହେଲିମ୍ ଐତିହାସିକ ଗଳ୍ପାଂଶକୁ ଭିତ୍ତିକରି ଉପନ୍ୟାସ ରଚନା କରିଥିଲେ । ସେଥିପାଇଁ ତାଙ୍କୁ ଉର୍ଦ୍ଦୁ ସାହିତ୍ୟରେ ଓ୍ୱାଲଟର୍ ସ୍କଟ୍ ବୋଲି ଆଖ୍ୟା ଦିଆଯାଇଛି । ସାରସର୍ଙ୍କ ଏକ ବିଶିଷ୍ଟ ଉପନ୍ୟାସର ନାମ ହେଉଛି 'ଫିସନା-ଇ-ଆଜାଦ-ଉର୍ଦ୍ଦୁ' । ୧୮୮୦ ମସିହାରେ ଏହି ଉପନ୍ୟାସ ପ୍ରକାଶିତ ହୋଇଥିଲା; କିନ୍ତୁ ଉପନ୍ୟାସ-ରାଜ୍ୟରୁ ଏହାର ମୂଲ୍ୟ ଏପର୍ଯ୍ୟନ୍ତ ହ୍ରାସ ପାଇନାହିଁ । ଏହି ଉପନ୍ୟାସରେ ଲକ୍ଷ୍ନୌର ବିଳାସବ୍ୟସନ-ମତ୍ତ ମୁସଲମାନଗୋଷ୍ଠୀର କଦର୍ଯ୍ୟ ଅସଂଗତ ଆଚରଣ ବର୍ଣ୍ଣିତ ହୋଇଥିଲା । ଏହି ଉପନ୍ୟାସରେ ବାସ୍ତବ ଘଟଣାର ବର୍ଣ୍ଣନାଯୋଗୁଁ ବିଶେଷ ଆଦୃତ ହୋଇଥିଲା । ବିଳାସ-ବ୍ୟସନବହ୍ୱଳ ନବାବ ତାଙ୍କର ତୋଷାମୋଦକାରୀ ଅନୁଚରବର୍ଗ ଓ ଅନ୍ୟାନ୍ୟ ହୀନଚରିତ୍ର ଜନଦୃଷ୍ଟିର ଅନ୍ତରାଳରେ ଲକ୍ଷ୍ନୌର ଜୀବନକୁ ଯେପରି କଳୁଷିତ କରୁଥିଲା, 'ଫିସନ୍-ଇ-ଆଜାଦ-ଉର୍ଦ୍ଦୁ' ତାହାର ଏକ ନୀରବ ପ୍ରତିବାଦ ମାତ୍ର । ଲେଖକ ଏହି ଗ୍ରନ୍ଥରେ ସାଧାରଣ ମନୁଷ୍ୟକୁ ଅତି ଉଚ୍ଚ ଆସନ ଦେଇଛନ୍ତି । ଉର୍ଦ୍ଦୁ ଉପନ୍ୟାସର ଯୋଗଜନ୍ମା କଥାଶିଳ୍ପୀ ପ୍ରେମଚନ୍ଦଙ୍କର ଏ ହେଉଛନ୍ତି ପୂର୍ବବର୍ତ୍ତୀ ଔପନ୍ୟାସିକ ।

ପ୍ରେମଚନ୍ଦଙ୍କର ଅଭ୍ୟୁଦୟ ପୂର୍ବରୁ ମୀର୍ଜା ରସଓ୍ୱା ଉପନ୍ୟାସ ଲେଖି ଖ୍ୟାତି ହାସଲ କରିଥିଲେ । ତାଙ୍କର ଉପନ୍ୟାସ ସମସାମୟିକ ଘଟଣାକୁ କେନ୍ଦ୍ର କରି ଲିଖିତ ହୋଇଥିଲା । ଗଣିକା-ଜୀବନର ଚିତ୍ର ତାଙ୍କର ନାଟକ 'ଉମରାଓ ଜାନ ଆଦା'ରେ ଦେଖିବାକୁ ମିଳେ । ଉର୍ଦ୍ଦୁ ଉପନ୍ୟାସ-ରାଜ୍ୟରେ ମୁନ୍‌ସୀ ପ୍ରେମଚନ୍ଦଙ୍କର ଆବିର୍ଭାବ ଏକ ଯୁଗାନ୍ତକାରୀ ଘଟଣା । କାରଣ ସର୍ବାଧୁନିକ ଉର୍ଦ୍ଦୁ ଉପନ୍ୟାସର ସେ ହେଉଛନ୍ତି ସ୍ରଷ୍ଟା । ତାଙ୍କର ପ୍ରକୃତ ନାମ ହେଉଛି ଧନପତ୍ ରାୟ । ପ୍ରେମଚନ୍ଦ ଉର୍ଦ୍ଦୁରେ ଲେଖା ଆରମ୍ଭ କରିଥିଲେ ଓ ହିନ୍ଦୀରେ ତାହା ସେ ସମ୍ପୂର୍ଣ୍ଣ କରିଥିଲେ । ସେଥିପାଇଁ ତାଙ୍କର ଅନେକ ଉପନ୍ୟାସ ଉଭୟ ହିନ୍ଦୀ ଓ ଉର୍ଦ୍ଦୁ ଭାଷାରେ ଲିଖିତ ହୋଇଥିଲା । ତାଙ୍କର ହିନ୍ଦୀ ଉପନ୍ୟାସ 'ରଙ୍ଗଭୂମି'; ଉର୍ଦ୍ଦୁରେ ଏହାର ନାମ ହେଉଛି 'ମୟଦାନ୍‌ଆମଲ୍' । ପ୍ରସିଦ୍ଧ କଥାଶିଳ୍ପୀଭାବରେ ଉଭୟ ଉର୍ଦ୍ଦୁ ଓ ହିନ୍ଦୀ ସାହିତ୍ୟରେ ପ୍ରେମଚନ୍ଦଙ୍କର ଆସନ ସ୍ୱୀକୃତ । ୧୮୮୦ ଖ୍ରୀଷ୍ଟାବ୍ଦରେ ତାଙ୍କର ଜନ୍ମ ।

ମୁନ୍‌ସୀ ପ୍ରେମଚନ୍ଦଙ୍କର ଉପନ୍ୟାସ-ସୃଷ୍ଟି କେତେକ ନୂତନ ଲକ୍ଷଣ ଓ ଯୋଗ୍ୟତାଦ୍ୱାରା ଚିହ୍ନିତ ହୋଇଥିଲା । ତାଙ୍କ ଉପନ୍ୟାସର ଚରମ ଆବେଦନ

ହେଉଛି ସାଧାରଣ ଚରିତ୍ରସୃଷ୍ଟି ଓ ସାଧାରଣ ଜୀବନପ୍ରତି ଔପନ୍ୟାସିକର ଦୃଷ୍ଟି ଆକର୍ଷଣ କରିବା । ପ୍ରେମଚନ୍ଦଙ୍କର ଜୀବନ ଯେପରି ଘଟଣାବହୁଳ, ସେହିପରି ଅଭିଜ୍ଞତାପୂର୍ଣ୍ଣ । ରାଜନୀତିକ ଜୀବନରେ ସେ ବହୁବାର କର୍ତ୍ତୃପକ୍ଷଙ୍କ ଦ୍ୱାରା ଦଣ୍ଡିତ ହୋଇଥିଲେ । ପ୍ରେମଚନ୍ଦଙ୍କର ପ୍ରଥମ ଉପନ୍ୟାସ ହେଉଛି 'ସେବାସଦନ' । 'ସେବାସଦନ'ର ଉର୍ଦ୍ଦୁ ନାମ ହେଉଛି 'ହମ ଖୁର୍ମା' । ସମାଜରେ ପ୍ରଚଳିତ ହୀନ ଗଣିକାବୃତ୍ତି ହେଉଛି, ଏହି ଉପନ୍ୟାସର କଥାବସ୍ତୁ । ଆମ ସମାଜରେ ଯୌତୁକ ପ୍ରଥା ଓ ବାଲ୍ୟ-ବିବାହ ପ୍ରଥା ସେତେବେଳେ ଯେପରି ସାମାଜିକ ବିଭ୍ରାଟ ସୃଷ୍ଟି କରିଥିଲା, ତାହାର ନିଖୁଣ ଚିତ୍ର 'ସେବାସଦନରେ' ଦେଖିବାକୁ ମିଳେ । ପ୍ରେମଚନ୍ଦଙ୍କର ଔପନ୍ୟାସିକ ଆଦର୍ଶ ହେଉଛି ମାନବବାଦ ।

## ଉପନ୍ୟାସ—

ପ୍ରେମଚନ୍ଦ ନିଜେ ଘୋଷଣା କରିଥିଲେ ଯେ ଜମିଦାର, ଦୁର୍ନୀତିଗ୍ରସ୍ତ ସାମନ୍ତବାଦୀ ଏବଂ ନ୍ୟସ୍ତସ୍ୱାର୍ଥ ବ୍ୟବସାୟୀଗୋଷ୍ଠୀ ଯେଉଁ ସମାଜରେ ସମ୍ମାନ ପାଆନ୍ତି, ସେ ସମାଜରେ ଗଣିକାବୃତ୍ତି କାହିଁକି ନିନ୍ଦନୀୟ ହେବ ? ସାମନ୍ତବାଦର ଅତ୍ୟାଚାର ଓ ପାପ ଯେଉଁ ଦିନ ଲୋପ ପାଇଯିବ, ସେଇଦିନ ଗ୍ରାଏଁ-ଗ୍ରାଏଁ ଗଣିକାବୃତ୍ତି ମଧ୍ୟ ସମାଜରୁ ଲୋପ ପାଇଯିବ । ଏହା କେବଳ ଜଣେ ଆଦର୍ଶବାଦୀ ମାନବପ୍ରେମୀ ଲେଖକ ପକ୍ଷରେ ସମ୍ଭବ । ଔପନ୍ୟାସିକ ପ୍ରେମଚନ୍ଦଙ୍କର ସମାଜଚେତନା ତାଙ୍କର ରଚନା-ମାନଙ୍କରେ ସ୍ପଷ୍ଟ । ତାଙ୍କ 'ସେବାସଦନ' ଉପନ୍ୟାସ ମାନସିକ ଆଦର୍ଶର ଏକ ଜୀବନ୍ତ ପ୍ରତୀକ । ସେହି ସେବାସଦନ ହେଉଛି ପତିତା ରମଣୀମାନଙ୍କର ଏକମାତ୍ର ଆଶ୍ରୟ-ସ୍ଥଳ । ଜମିଦାରଶ୍ରେଣୀୟ ସମ୍ଭ୍ରାନ୍ତମାନଙ୍କର କୃଷୀଗୋଷ୍ଠୀ ଉପରେ ଯେଉଁ ଅତ୍ୟାଚାର, ତାହାର ନିଖୁଣ ଚିତ୍ର ତାଙ୍କର 'ପ୍ରେମାଶ୍ରମ' ଉପନ୍ୟାସରେ ପ୍ରତିଫଳିତ । ଏକ ଦିଗରେ ଶୋଷକଗୋଷ୍ଠୀ ଏବଂ ଅନ୍ୟ ଦିଗରେ ଶୋଷିତଗୋଷ୍ଠୀ—ଏମାନଙ୍କ ମଧ୍ୟରେ ଯେଉଁ ସଂଘର୍ଷ, ତାହାର ବାସ୍ତବଚିତ୍ର ଏହି 'ପ୍ରେମାଶ୍ରମ' ଉପନ୍ୟାସରେ ବର୍ଣ୍ଣିତ ହୋଇଅଛି । ନିରୀହ ଅସହାୟ କୃଷୀ ଜମିଦାରର ଶୋଷଣରୁ କିପରି ମୁକ୍ତ । ସେହି ମୁକ୍ତିର ଆନ୍ଦୋଳନ ଓ ତାହାର ଆଭାସ, ଏହି ଉପନ୍ୟାସଟିରେ ବିସ୍ତୃତଭାବରେ ବର୍ଣ୍ଣିତ । କଂଗ୍ରେସର ଜାତୀୟ ଆନ୍ଦୋଳନ ଓ ସତ୍ୟାଗ୍ରହର ପରୋକ୍ଷ ପ୍ରଭାବ ଏହି ଉପନ୍ୟାସରେ ଦେଖାଯାଏ । 'ରଙ୍ଗଭୂମି' ପ୍ରେମଚନ୍ଦଙ୍କର ଅନ୍ୟତମ ଉପନ୍ୟାସ । ଏଥିରେ ତାଙ୍କର ବାସ୍ତବବାଦୀ ଦୃଷ୍ଟିକୋଣ ତଥା ପ୍ରଗତିଶୀଳ ଚିନ୍ତା ପ୍ରତିଫଳିତ । 'ପ୍ରେମାଶ୍ରମ' ଉପନ୍ୟାସର ରୋମାଣ୍ଟିକ୍ ଆଦର୍ଶବାଦ 'ରଙ୍ଗଭୂମି' ଉପନ୍ୟାସରେ ସମ୍ପୂର୍ଣ୍ଣ ପରିବର୍ତ୍ତିତ ହୋଇଯାଇଅଛି । ଆଧୁନିକ ଉପନ୍ୟାସରେ ସାଧାରଣ ମନୁଷ୍ୟ ଉତ୍ପୀଡ଼ିତ ଓ ଅତ୍ୟାଚାରିତ । ସତେ ଯେପରି ଜନସାଧାରଣ ପଶୁତୁଲ୍ୟ ନ୍ୟସ୍ତସ୍ୱାର୍ଥଗୋଷ୍ଠୀଙ୍କ

ହାତରେ ବ୍ୟବହୃତ ହୋଇଥାନ୍ତି । ଏହି ଉପନ୍ୟାସ ଜାତୀୟ କଂଗ୍ରେସର ସତ୍ୟାଗ୍ରହ ଆନ୍ଦୋଳନଦ୍ୱାରା ପ୍ରଭାବିତ । ରଙ୍ଗଭୂମିକୁ ରାଷ୍ଟ୍ରୀୟ କାବ୍ୟର ଆଖ୍ୟା ମଧ୍ୟ ଦିଆ-ଯାଇଥାଏ । 'ପ୍ରେମାଶ୍ରମ' ଉପନ୍ୟାସର ରୋମାଣ୍ଟିକ୍ ଆଦର୍ଶବାଦ ଏବଂ 'ରଙ୍ଗଭୂମି' ଉପନ୍ୟାସର ରାଜନୀତିକ ଆଦର୍ଶବାଦ ଯଥାକ୍ରମେ ଭାରତୀୟ ସାହିତ୍ୟର ଦୁଇଗୋଟି ଦିଗ ନିର୍ଦ୍ଦେଶିତ କରିଥାଏ । ଔପନ୍ୟାସିକ ପ୍ରେମଚନ୍ଦ ତାଙ୍କର ଉପନ୍ୟାସମାନଙ୍କରେ ଧନତାନ୍ତ୍ରିକ ସଭ୍ୟତା ଓ ସୌଦାଗରୀ ସଭ୍ୟତାର ତୀବ୍ର ସମାଲୋଚନା କରିଅଛନ୍ତି । ଆଧୁନିକ ସୌଦାଗରୀ ସଭ୍ୟତାରେ ମନୁଷ୍ୟଙ୍କୁ ପଶୁତୁଲ୍ୟ ବ୍ୟବହାର କରିବାର ଦେଖାଯାଇଥାଏ । ପ୍ରେମଚନ୍ଦ ବ୍ରିଟିଶ ଶାସନର ଶୋଷଣ ଏବଂ ସ୍ଥାନୀୟ ଜମିଦାର-ମାନଙ୍କର ଅତ୍ୟାଚାରକୁ ତାଙ୍କର 'କର୍ମଭୂମି' ଉପନ୍ୟାସରେ ଟେକଠୋକ୍ ଭାଷାରେ ବର୍ଣ୍ଣନା କରିଅଛନ୍ତି । ଏହି ସଂଘର୍ଷ ଓ ଦ୍ୱନ୍ଦ୍ୱ ମଧ୍ୟରେ କଂଗ୍ରେସର ସତ୍ୟାଗ୍ରହ ଆନ୍ଦୋଳନ ସର୍ବାପେକ୍ଷା ବ୍ୟାପକ ଓ ପ୍ରଭାବଶାଳୀ ହୋଇପାରିଛି । ସ୍ୱାଧୀନତା ଆନ୍ଦୋଳନର ପୃଷ୍ଠଭୂମିରେ ପ୍ରେମଚନ୍ଦଙ୍କର 'କର୍ମଭୂମି' ଉପନ୍ୟାସ ପରିକଳ୍ପିତ । କେହି କେହି ପ୍ରେମଚନ୍ଦଙ୍କୁ ବସ୍ତୁସର୍ବସ୍ୱ ଓ ଘଟଣାସର୍ବସ୍ୱ କଥାଶିଳ୍ପୀ ବୋଲି ଅଭିହିତ କରିଥାଆନ୍ତି, ଏହା କିନ୍ତୁ ପୂରାପୂରି ସତ୍ୟ ନୁହେଁ । ତାଙ୍କର ଉପନ୍ୟାସରେ ଉଭୟ ବାସ୍ତବତା ଓ ଆଦର୍ଶବାଦ ଦେଖିବାକୁ ମିଳେ । ଭାରତରେ ଗ୍ରାମ୍ୟ କୃଷକ ଜୀବନର ଚନ୍ଦ ଉପରେ ତାଙ୍କର ସର୍ବଶ୍ରେଷ୍ଠ ଉପନ୍ୟାସ 'ଗୋଦାନ' ଆଧାରିତ । ଉତ୍ତରଭାରତୀୟ କୃଷକର ମର୍ମନ୍ତୁଦ ଚନ୍ଦ ଏହି ଉପନ୍ୟାସର ଉପଜୀବ୍ୟ ବିଷୟ । 'ଗବନ' ପ୍ରେମଚନ୍ଦଙ୍କର ଆଉ ଏକ ଉପନ୍ୟାସ । ଏହା ବ୍ୟତୀତ 'ନିର୍ମଳା' ଓ 'ପ୍ରତିଜ୍ଞା' ତାଙ୍କର ଦୁଇଖଣ୍ଡ କ୍ଷୁଦ୍ର ଉପନ୍ୟାସ ।

ପ୍ରେମଚନ୍ଦ ଯଥାର୍ଥରେ ସମାଜସଚେତନ, ମାନବଧର୍ମୀ, ଆଦର୍ଶବାଦୀ କଥାଶିଳ୍ପୀ । ତାଙ୍କର ଦୃଷ୍ଟିଭଙ୍ଗୀ ସାର୍ବଜନୀନ । ଯୁଗର ପରିବେଶଦ୍ୱାରା ସେ କିୟତ୍ ପରିମାଣରେ ପ୍ରଭାବିତ ମଧ୍ୟ ହୋଇଥିଲେ । ଆଧୁନିକ ଉର୍ଦ୍ଦୁ କଥାସାହିତ୍ୟର ପ୍ରାକ୍-କାଳରେ ସାଧାରଣତଃ ଦୁଇଗୋଟି ଧାରା ଦେଖାଯାଏ । ଗୋଟିଏ ଧାରା ହେଉଛି ନବଶିକ୍ଷିତ ମଧ୍ୟବିତ୍ତଶ୍ରେଣୀପାଇଁ କେତେକ ଲେଖକଙ୍କର ଆଗ୍ରହ ଏବଂ ଦ୍ୱିତୀୟ ଧାରା ହେଉଛି ହୃତପ୍ରାୟ ମୁସଲିମ୍ ଗୌରବ ଓ ଭୋଗବିଳାସପ୍ରିତ ଗଭୀର ଆସକ୍ତି । ବଡ଼ ଚତୁରତା ସହିତ ପ୍ରେମଚନ୍ଦ ଜନସାଧାରଣ ଜୀବନକୁ ତାଙ୍କ ଗଳ୍ପ ଓ ଉପନ୍ୟାସରେ ସ୍ଥାନ ଦେଲେ । ଅନ୍ୟ ଲେଖକମାନେ ଯେତେବେଳେ କଳ୍ପନାବିଳାସୀ ରୋମାଣ୍ଟିକ୍ ଭାବପ୍ରବଣ ଥିଲେ, ପ୍ରେମଚନ୍ଦ ସେତେବେଳେ ଖାଣ୍ଟି ବାସ୍ତବତାର ଉପାସକ । ଗ୍ରାମ୍ୟ କୃଷକ ଓ ମଜଦୁର ସମାଜର ଦୁଃଖଦୁର୍ଦ୍ଦଶା ଓ ସମସ୍ୟାକୁ ସହାନୁଭୂତିର ସହିତ ପ୍ରେମଚନ୍ଦ ଆଲୋଚନା କରିଥିଲେ । କେହି କେହି ତାଙ୍କୁ ସଂସ୍କାରବାଦୀ ବୋଲି ମଧ୍ୟ ଆଖ୍ୟା ଦେଇଥାନ୍ତି । ସେ ଜୀବନକାଳ ମଧ୍ୟରେ ବିଧବା ବିବାହ କରିଥିଲେ ଏବଂ

ଅସହଯୋଗ ଆନ୍ଦୋଳନର ପ୍ରେରଣାରେ ସରକାରୀ ଚାକିରିରୁ ଇସ୍ତଫା ଦେଇଥିଲେ । ସେ ସମ୍ପୂର୍ଣ୍ଣ ଆଦର୍ଶବାଦୀ ଏବଂ ଗାନ୍ଧୀବାଦର ନିର୍ଭୀକ ଭକ୍ତ । କଥାଶିଳ୍ପୀଭାବରେ ତାଙ୍କର ମାନସିକ ବ୍ୟାପ୍ତି ଯଥାର୍ଥତଃ ଅସହଯୋଗ ଆନ୍ଦୋଳନର ପରିପ୍ରେକ୍ଷୀରେ ପରିପୁଷ୍ଟ । ପ୍ରଥମ ମହାଯୁଦ୍ଧ ଓ ଭାରତର ରାଜନୀତିକ ଘଡ଼ିସନ୍ଧି ସମୟରେ ଉର୍ଦ୍ଦୁ ସାହିତ୍ୟରେ ଯେଉଁ ଅସ୍ଥିରତା ଦେଖାଦେଇଥିଲା, ପ୍ରେମଚନ୍ଦ ତାର ପ୍ରତିରୋଧ କରି-ଥିଲେ । ସେ ସ୍ରଷ୍ଟାଭାବରେ ଗଣଜୀବନର ଉପାସକ ଥିଲେ । ଶିଳ୍ପସୃଷ୍ଟିର ପ୍ରଥମ ଯୋଗ୍ୟତା ହେଉଛି ସାମାଜିକ ଆବଶ୍ୟକତା—ଏହାହିଁ ଥିଲା ପ୍ରେମଚନ୍ଦଙ୍କର ଦୃଢ଼ ବିଶ୍ୱାସ । ସେ ସେଥିପାଇଁ ଘୋଷଣା କରିଥିଲେ, ପ୍ରତ୍ୟେକ ଶିଳ୍ପସୃଷ୍ଟି (Art) ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ହେଉ, ସମାଜର ସହାୟତା କରେ । ଯେଉଁମାନେ ଏହାକୁ ପ୍ରଚାର ନାମରେ ନିନ୍ଦିତ କରନ୍ତି, ସେମାନେ ଯଥାର୍ଥରେ ସ୍ରଷ୍ଟା-ଜୀବନର ଆବେଗ ଓ ଭାବପ୍ରବଣତାପ୍ରତି ଦୃଷ୍ଟି ଦେଉନଥାନ୍ତି । ଜନସାଧାରଣଙ୍କ ନିକଟରେ ନିପୁଣ ଓ ଚତୁର ଭାଷାରେ କବି ଓ ଔପନ୍ୟାସିକ ଯେତେବେଳେ ନିଜର ଆବେଗ ପ୍ରକାଶ କରିପାରେ, ସେତେବେଳେ ତାହାହିଁ ଶିଳ୍ପସୃଷ୍ଟିର ସ୍ଥିଏ ଚୂଡ଼ାନ୍ତ ପରୀକ୍ଷା ।

ପ୍ରେମଚନ୍ଦଙ୍କ ବ୍ୟତୀତ ଆଉ ତିନିଜଣ ଔପନ୍ୟାସିକଙ୍କ ନାମ ଉଲ୍ଲେଖଯୋଗ୍ୟ । ସେମାନେ ହେଉଛନ୍ତି କାଜୀ ଅବ୍ଦୁଲ ଗଫ୍ଫାର ଓ ରସେଦୁଲ ଖଇରୀ ନିୟାଜ ଫତେପୁରୀ । ଏମାନେ ପ୍ରେମଚନ୍ଦଙ୍କର ସମସାମୟିକ ଏବଂ ସେମାନଙ୍କ ଉପନ୍ୟାସରେ ମଧ୍ୟବିତ୍ତ ଜୀବନର ବ୍ୟାପକ ଚିତ୍ର ଦେଖିବାକୁ ମିଳେ । କାଜୀ ଅବ୍ଦୁଲଙ୍କର 'ଲୟଲାକେ ଖତୁତ୍' (ଲୟଲାର ଚିଠି), 'ମଜ୍ନୁକେ ଡାଏରୀ' (ପ୍ରେମିକାର ଡାଏରୀ) ଦୁଇଖଣ୍ଡି ପ୍ରସିଦ୍ଧ ଉର୍ଦ୍ଦୁ ଉପନ୍ୟାସ । ପ୍ରଥମ ଉପନ୍ୟାସରେ ସେ ଏକ ଗଣିକାର ଜୀବନ ଅଙ୍କନ କରିଛନ୍ତି । ତାଙ୍କର ଏହି ଦୁଇଟି ଉପନ୍ୟାସରେ ଲେଖକଙ୍କର ସମାଜ-ଚେତନତା ନିବିଡ଼ଭାବେ ପ୍ରକଟିତ । ଉର୍ଦ୍ଦୁ ସାହିତ୍ୟରେ ଏହି ଔପନ୍ୟାସିକଙ୍କର ଶିଳ୍ପଦକ୍ଷତା ଉଲ୍ଲେଖଯୋଗ୍ୟ । ରସେଦୁଲ୍ ଟ୍ରାଜେଡ଼ିଧର୍ମୀ ଲେଖକ ଭାବରେ ସୁପରିଚିତ । ତାଙ୍କର ରଚନା ମୁଖ୍ୟତଃ ମଧ୍ୟବିତ୍ତ ଜୀବନକୁ କେନ୍ଦ୍ର କରି । ପ୍ରେମଚନ୍ଦଙ୍କ ଭଳି ସେ ମଧ୍ୟ ବାସ୍ତବତାର ପୃଷ୍ଠପୋଷକ ଥିଲେ । ତାଙ୍କର ଅସାଧାରଣ ରଚନା-ଶୈଳୀ ତାଙ୍କୁ ଉର୍ଦ୍ଦୁ କଥାସାହିତ୍ୟରେ ବିଶିଷ୍ଟ ସ୍ଥାନ ପ୍ରଦାନ କରିଅଛି । ନିୟାଜ୍ ଫତେପୁରୀ ଯେକୌଣସି ପ୍ରାଚୀନ କଥା ଓ ଗତାନୁଗତିକତାର ବିରୋଧୀ । ତାଙ୍କର ରଚନାମାନଙ୍କରେ ସେ ବିଦ୍ରୂପାତ୍ମକ ଦୃଷ୍ଟିଭଙ୍ଗୀର ପରିଚୟ ଦେଇଛନ୍ତି ।

ଆଧୁନିକ କଥା-ଶିଳ୍ପୀମାନଙ୍କ ମଧ୍ୟରେ କୃଷନ୍ ଚନ୍ଦର୍, ରାଜେନ୍ଦ୍ର ସିଂ ବେଦୀ, ଖାଜା ଅହମ୍ମଦ ଆବ୍ବାସ, ଇସମତ ଚୁଗତାଇ, ବଲବନ୍ତ ସିଂ ଗର୍ଗୀ, ହାଜରା ବେଗମ୍, ଉପେନ୍ଦ୍ରନାଥ ଆସକ୍ ପ୍ରଭୃତି ପ୍ରଧାନ । ଶକ୍ତିମାନ୍ କଥାଶିଳ୍ପୀ-

ଭାବରେ ଏମାନଙ୍କର ଦାନ ଉଲ୍ଲେଖଯୋଗ୍ୟ । ଆଧୁନିକ ଉର୍ଦ୍ଦୁ ଉପନ୍ୟାସରେ ବ୍ୟାପକ ଚରିତ୍ରସୃଷ୍ଟି, ଘଟଣାର ସମାବେଶ, ମନସ୍ତାତ୍ତ୍ୱିକ ବିଶ୍ଳେଷଣ ଓ ଜୀବନଜିଜ୍ଞାସା ବିଶେଷ ଭାବରେ ଦେଖିବାକୁ ମିଳେ । ଆଧୁନିକ ଯୁବଗୋଷ୍ଠୀର ଉଚ୍ଛୃଙ୍ଖଳତା, ଯୌନବିକାର ଉର୍ଦ୍ଦୁ ଉପନ୍ୟାସରେ ମଧ୍ୟ ବର୍ଣ୍ଣିତ ହେଉଅଛି । ଆଧୁନିକ କାଳରେ ସର୍ବାପେକ୍ଷା ଶକ୍ତିଶାଳୀ କଥାଶିଳ୍ପୀ ହେଉଛନ୍ତି କୃଷନ୍ ଚନ୍ଦର୍ । ସେ ଧନସର୍ବସ୍ୱ ଗୋଷ୍ଠୀର ସଂପୂର୍ଣ୍ଣ ବିରୋଧୀ ଏବଂ ସମାଜରେ ସାମ୍ୟବାଦ ପ୍ରତିଷ୍ଠାର ପକ୍ଷପାତୀ । ଏଥିପାଇଁ ତାଙ୍କୁ ପ୍ରଗତିଶୀଳ କଥାଶିଳ୍ପୀ ବୋଲି ଅଭିହିତ କରାଯାଇଥାଏ । ଏହି ଦୃଷ୍ଟିରୁ ଦେଖିବାକୁଗଲେ ତାଙ୍କର ପ୍ରତ୍ୟେକ ଉପନ୍ୟାସ ଓ କ୍ଷୁଦ୍ରଗଳ୍ପରେ ଏକ ବିଦ୍ରୋହର ଧ୍ୱନି ଶୁଣାଯାଏ । ଏହା ସହିତ ଗଭୀର ମାନବିକତା ଏକ ବ୍ୟାପକ ଦୃଷ୍ଟିଭଙ୍ଗୀ ମଧ୍ୟ ତାଙ୍କ ଉପନ୍ୟାସକୁ ଶ୍ରୀମଣ୍ଡିତ କରିଥାଏ । ସମାଜର ଚେତନ ମାନବଧର୍ମୀ କୃଷନ୍‌ଚନ୍ଦର୍ ବରାବର ତାଙ୍କର ଉପନ୍ୟାସମାନଙ୍କରେ ଆଶାବାଦର ସୂଚନା ଦେଇଛନ୍ତି । କେହି କେହି ତାଙ୍କୁ ମାର୍କସବାଦୀ ଲେଖକ ବୋଲି ଅଭିହିତ କରିଥାନ୍ତି । ତାଙ୍କର ଉପନ୍ୟାସ 'ଶିକସ୍ତ' (ପରାଜୟ) ପ୍ରକାଶିତ ହେବାପରେ ପାଠକ ମହଲରେ ଚାଞ୍ଚଲ୍ୟ ସୃଷ୍ଟି ହୋଇଥିଲା । ତାଙ୍କର 'ଅନ୍ନଦାତା' ଏକ କ୍ଷୁଦ୍ର ଉପନ୍ୟାସ । 'ଫୁଲସୁରକ୍‌ହୈଁ', 'ହମ୍ ୱହ୍‌ସିହୈଁ' 'ଜିନ୍ଦେଗୀ କେ ମୋଡ଼ପର' ପ୍ରଭୃତି ଗଳ୍ପଗ୍ରନ୍ଥରେ ତାଙ୍କର ପ୍ରଗତିଶୀଳ ଦୃଷ୍ଟିଭଙ୍ଗୀର ପରିଚୟ ମିଳେ । କୃଷନ୍‌ଚନ୍ଦର୍ ତାଙ୍କର ଲେଖା ମାଧ୍ୟମରେ ପୁଂଜିବାଦ ବିରୁଦ୍ଧରେ ବରାବର ଆଲୋଚନା କରିଥାନ୍ତି । ତାଙ୍କର ଉପନ୍ୟାସର ଚରିତ୍ରଗୁଡ଼ିକ ସମାଜର ପରିପ୍ରେକ୍ଷୀରୁ ଗୃହୀତ । ତେଲେଙ୍ଗାନା ଅଞ୍ଚଳର କୃଷକ-ଆନ୍ଦୋଳନର ପୃଷ୍ଠଭୂମିରେ ତାଙ୍କର 'କ୍ଷେତ ଜାଗେ' ଉପନ୍ୟାସଟି ପରିକଳ୍ପିତ । ପରବର୍ତ୍ତୀ କାଳରେ କୃଷନ୍‌ଚନ୍ଦର୍‌ଙ୍କ ଲେଖାରେ ବାସ୍ତବଚରିତ୍ର ଅପେକ୍ଷା ଆଦର୍ଶର ବ୍ୟାଖ୍ୟା ହିଁ ଦେଖାଦେଇଥିଲା । ତାଙ୍କର ଗଳ୍ପଗୁଡ଼ିକରେ ସମାଜ ସଚେତନତା ପ୍ରତିଫଳିତ, ମାତ୍ର ସେଥିରେ ଅତ୍ୟଧିକ ଆଦର୍ଶର ସୂଚନା ମିଳେ । ସେ ତାଙ୍କର ଲେଖାରେ କଳ୍ପନାକୁ ମଧ୍ୟ ସ୍ଥାନ ଦେଇଥିଲେ । ଭାରତୀୟ ସମାଜ ଓ କୃଷକ, ଶ୍ରମିକସମାଜ ଓ ସମସ୍ୟା ଏବଂ ଭାରତର ବିଭିନ୍ନ ଅଞ୍ଚଳର ସମସ୍ୟାକୁ କେନ୍ଦ୍ର କରି ମଧ୍ୟ ସେ ଗଳ୍ପ ଉପନ୍ୟାସ ସୃଷ୍ଟି କରିପାରିଛନ୍ତି । ଉଦାହରଣସ୍ୱରୂପ, ବଙ୍ଗଳାର ଦୁର୍ଭିକ୍ଷର ଚିତ୍ରକୁ କେନ୍ଦ୍ର କରି ସେ ଉପନ୍ୟାସ ଲେଖିଥିଲେ । କୃଷନ୍‌ଚନ୍ଦର୍ ତାଙ୍କର ଚମତ୍କାର ସୃଷ୍ଟିଯୋଗୁଁ ଉର୍ଦ୍ଦୁ ସାହିତ୍ୟରେ ଗୌରବ ଅଧିକାର କରିଛନ୍ତି । କେ· ଏ· ଆବସ୍ କ୍ଷୁଦ୍ରଗଳ୍ପ-ଲେଖକ ଭାବରେ ସୁପରିଚିତ । ତାଙ୍କର 'ନୟା ସଂସାର' ଓ 'ଜାଫ୍ରାନ କେ ଫୁଲ୍' ଦୁଇଟି ଲୋକପ୍ରିୟ ରଚନା । ଆବ୍‌ବାସଙ୍କ ଲେଖାରେ ହୃଦୟର ଆବେଦନ ଅପେକ୍ଷା ମାନସିକ ଆବେଦନ ଓ ପ୍ରଖର ବୌଦ୍ଧିକତା ବିଶେଷ ଭାବରେ ଦେଖାଯାଏ ।

ସେଥିପାଇଁ ତାଙ୍କର ରଚନାସମୂହ ଆବେଗର ଅନୁପସ୍ଥିତି ଓ ବୌଦ୍ଧିକତାର ପ୍ରାଧାନ୍ୟଦ୍ୱାରା ଚିହ୍ନିତ । କୃଷନ୍‌ଚନ୍ଦର୍‌ ଓ ଆବ୍‌ବାସ ସମସାମୟିକ ଲେଖକ । ଜଣେ ପ୍ରଗତିବାଦୀ, ଅନ୍ୟ ଜଣେ ଅଧିକ ଭାବରେ ପ୍ରତିକ୍ରିୟାଶୀଳ । ସେମାନଙ୍କ ମଧ୍ୟରେ ଆଦର୍ଶ ଓ ଆବେଦନଗତ ପ୍ରଭେଦ ଦେଖାଗଲେ ମଧ୍ୟ ଉର୍ଦ୍ଦୁ ସାହିତ୍ୟରେ ସେମାନେ ଯେ ଶୀର୍ଷସ୍ଥାନ ଅଧିକାର କରିଛନ୍ତି, ଏଥିରେ ସନ୍ଦେହ ନାହିଁ । ଔପନ୍ୟାସିକ ଉପେନ୍ଦ୍ରନାଥ ଆସିକ୍ ନିମ୍ନ ମଧ୍ୟବିତ୍ତ ସମାଜର ଚିତ୍ର ନିପୁଣ ଭାବରେ ପ୍ରକାଶ କରିଥିଲେ । ତାହା ଅନନ୍ୟସାଧାରଣ । ପ୍ରେମଚନ୍ଦ ଜଣେ ସହାନୁଭୂତିଶୀଳ ଜୀବନଧର୍ମୀ କଥାଶିଳ୍ପୀ । ଉପେନ୍ଦ୍ର ନାଥ ଉପନ୍ୟାସ-ରାଜ୍ୟରେ ପ୍ରେମଚନ୍ଦଙ୍କୁ ତାଙ୍କର ଆଦର୍ଶରୂପେ ଗ୍ରହଣ କରିଥିଲେ । ହିନ୍ଦୀଭାଷାରେ ମଧ୍ୟ ତାଙ୍କର କୃତିତ୍ୱ ସ୍ପଷ୍ଟ ।

କାହା କାହା ମତରେ ରାଜେନ୍ଦର ସିଂ ବେଦୀ କୃଷନ୍‌ଚନ୍ଦର୍‌ଙ୍କ ଅପେକ୍ଷା ଶ୍ରେଷ୍ଠ ଲେଖକ ବୋଲି କୁହାଯାଏ । ଆଙ୍ଗିକ, ଗଳ୍ପାଂଶ, ଭାଷାନୈପୁଣ୍ୟ ଏହାଙ୍କ ଲେଖାରେ ନ ଥାଇପାରେ; କିନ୍ତୁ କୃଷନ୍‌ଚନ୍ଦର୍‌ଙ୍କଠାରୁ ଏହାଙ୍କ ଲେଖାରେ ସ୍ୱାତନ୍ତ୍ର୍ୟ ହେଉଛି ଗଭୀର ମାନବିକ ଆବେଦନ । ଗ୍ରାମ୍ୟ ଜୀବନର ନିମ୍ନ ମଧ୍ୟବିତ୍ତ ପରିବାରକୁ କେନ୍ଦ୍ର କରି ତାଙ୍କର ଉପନ୍ୟାସ 'ନୟା କୋର୍ଟ' ରଚିତ ହୋଇଥିଲା । ଆଧୁନିକ ଉର୍ଦ୍ଦୁ ସାହିତ୍ୟରେ ଏହା ଏକ ଶ୍ରେଷ୍ଠ ଗଳ୍ପଗ୍ରନ୍ଥ ବୋଲି ବିବେଚିତ ହୋଇଥାଏ । ଶିଖ୍ ସମାଜକୁ କେନ୍ଦ୍ରକରି ବଲବନ୍ତ ସିଂ ଗାର୍ଗୀ କେତେଗୁଡ଼ିଏ କ୍ଷୁଦ୍ରଗଳ୍ପ ଲେଖିଛନ୍ତି । ଉପନ୍ୟାସ ଓ କ୍ଷୁଦ୍ରଗଳ୍ପ ବ୍ୟତୀତ ଆଧୁନିକ ଉର୍ଦ୍ଦୁ ସାହିତ୍ୟରେ ପ୍ରବନ୍ଧ ଓ ଅନୁବାଦ ମଧ୍ୟ ପରିପୁଷ୍ଟି ଲାଭ କରିଛି । ପାଶ୍ଚାତ୍ୟ ସାହିତ୍ୟ ଓ ବିଭିନ୍ନ ଭାରତୀୟ ସାହିତ୍ୟରୁ ସାର୍ଥକ ଉପନ୍ୟାସ, କ୍ଷୁଦ୍ରଗଳ୍ପ ଓ ନାଟକ ଉର୍ଦ୍ଦୁ ଭାଷାରେ ଅନୂଦିତ ହୋଇଅଛି । ବଙ୍ଗଳାଭାଷାରୁ ବହୁ ଗଳ୍ପ ଓ ଉପନ୍ୟାସ ଉର୍ଦ୍ଦୁଭାଷାରେ ଅନୂଦିତ ହୋଇଅଛି । ଆଧୁନିକ ବଙ୍ଗୀୟ ଔପନ୍ୟାସିକ ତାରାଶଙ୍କର, ମାଣିକ୍ ବନ୍ଦୋପାଧ୍ୟାୟ, ନବେନ୍ଦୁ ଘୋଷ, ନରେନ୍ଦ୍ରନାଥ ମିତ୍ର, ନନୀ ଭୌମିକଙ୍କର ଗଳ୍ପ ଓ ଉପନ୍ୟାସ ଉର୍ଦ୍ଦୁରେ ଅନୂଦିତ ହୋଇଅଛି । ଏହା ପୂର୍ବରୁ ବଙ୍କିମଚନ୍ଦ୍ର, ରବୀନ୍ଦ୍ରନାଥ, ଶରତ୍‌ଚନ୍ଦ୍ର ଏବଂ ନଜରୁଲଙ୍କ ରଚନାସମ୍ଭାର ଉର୍ଦ୍ଦୁରେ ଦେଖିବାକୁ ମିଳେ । ନବେନ୍ଦୁ ଘୋଷଙ୍କ ଲିଖିତ 'ଫିଆର୍ସ ଲେନ' (Fears Lane) ଏକ ଲୋକପ୍ରିୟ ଉପନ୍ୟାସ; ଯାହା କି ଉର୍ଦ୍ଦୁରେ ଅନୂଦିତ ଏବଂ ଆଦୃତ ହୋଇଅଛି । ପ୍ରଗତିଶୀଳ ଲେଖକମାନଙ୍କ ଦୃଷ୍ଟିରେ ରବୀନ୍ଦ୍ରନାଥ ପ୍ରଭୃତି କବିମାନଙ୍କର ସୃଷ୍ଟି ଯେତେ ସମାଲୋଚିତ ହେଲେ ମଧ୍ୟ ସେଥିରେ ସମସାମୟିକ ସମାଜର ଚିତ୍ର ଊଣା-ଅଧିକେ ଦେଖିବାକୁ ମିଳେ ।

ଭ୍ରାମ୍ୟମାଣ ପାର୍ଶି ଥିଏଟର ଉଦ୍ୟୋକ୍ତାମାନଙ୍କର ଅନୁଷ୍ଠାନ ଉର୍ଦ୍ଦୁ ନାଟ୍ୟ-ସାହିତ୍ୟର ଇତିହାସରେ ପ୍ରଥମେ ଉଲ୍ଲେଖ କରାଯାଇଥାଏ । ଉର୍ଦ୍ଦୁ ନାଟ୍ୟ-ସାହିତ୍ୟର

ଉନ୍ମେଷର ଆଦ୍ୟକାଳରେ ଲକ୍ଷ୍ନୌ ପ୍ରଭୃତି ସହରମାନଙ୍କରେ ଏହି ପାର୍ଶି ଥିଏଟର ଅଭିନୟ ପ୍ରଦର୍ଶନ କରୁଥିଲେ । ଏଇପରି ଏକ ଅଭିନୟଗୋଷ୍ଠୀ ହେଉଛି ଆଲ୍‌ଫ୍ରେଡ୍ ଥିଏଟ୍ରିକାଲ୍ କମ୍ପାନୀ । ସହରରେ ପ୍ରବେଶ କରିବା ପୂର୍ବରୁ ସର୍ବତ୍ର ପ୍ରଚାର ହୋଇ-ଯାଉଥିଲା ଯେ, 'ବିଶିଷ୍ଟ ଥିଏଟର ଦଳ ସହରକୁ ଆସୁଛନ୍ତି' । ସେତେବେଳେ ଅଭିନୀତ ନାଟକମାନଙ୍କ ମଧ୍ୟରେ 'ସଫେଦଖୁନ୍', 'ଖୁନ୍‌ସଗ୍ଧିବାଲ', 'ଅସିରହର'ର ନାମ ଉଲ୍ଲେଖ କରାଯାଇପାରେ । ଏତାଦୃଶ ଥିଏଟରଦଳରେ ଯେଉଁମାନେ ସଙ୍ଗୀତ ପରିବେଷଣ କରୁଥିଲେ, ସେମାନଙ୍କୁ 'ମାଷ୍ଟର' କୁହାଯାଉଥିଲା ।

ଊନବିଂଶ ଶତାବ୍ଦୀର ଶେଷ ଓ ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଯେଉଁ ନାଟ୍ୟକାରମାନେ ଉର୍ଦ୍ଦୁରେ ନାଟକ ରଚନା କରିଥିଲେ, ସେମାନେ ହେଉଛନ୍ତି ଆଗା ହସର୍ କାଶ୍ମୀର (କାଶ୍ମୀର ଦେଶୀୟ ଜଣେ ଶାଲ୍‌ଗ୍ର ବ୍ୟବସାୟୀଙ୍କ ପୁତ୍ର), ମୁନ୍‌ସୀ ବିନାୟକ ପ୍ରସାଦ (ବନାରସ), ଅହସନ (ଲକ୍ଷ୍ନୌ) । ଭ୍ରାମ୍ୟମାଣ ପାର୍ଶି ଥିଏଟରଦଳ ବମ୍ବେ ପ୍ରଭୃତି ଅଞ୍ଚଳରେ ବିଶେଷ ଲୋକପ୍ରିୟତା ଅର୍ଜନ କରିଥିଲେ । ସେହି ସମୟରେ ଏପରି ପାର୍ଶି ଥିଏଟର ଯେଉଁଠାରେ ଅଭିନୀତ ହେଉଥିଲା, ସେଠାରେ ଶହ ଶହ ଦେଖଣାହାରି ସମବେତ ହେଉଥିଲେ । ସେଇ ଦେଖଣାହାରିମାନଙ୍କ ମଧ୍ୟରେ ଶ୍ରମିକ ମଜଦୁର, ଟାଙ୍ଗାବାଲ ଏବଂ ଏକାବାଲମାନଙ୍କର ସଂଖ୍ୟା ସବୁଠାରୁ ଅଧିକ ଥିଲା । ଭାରତୀୟ ପୁରାଣ କିମ୍ବଦନ୍ତୀ ଏହିସବୁ ପ୍ରାଥମିକ ନାଟକମାନଙ୍କର ବିଷୟବସ୍ତୁରୂପେ ଗୃହୀତ ହେଉଥିଲା । ଦାନବୀର ହରିଶ୍ଚନ୍ଦ୍ର ଉପାଖ୍ୟାନ ଅଭିନୀତ ହୋଇ ଦେଖଣାହାରିମାନଙ୍କର ଦୃଷ୍ଟି ଆକର୍ଷଣ କରୁଥିଲା । ଏହା ବ୍ୟତୀତ ପ୍ରାଚୀନ ପାର୍ଶି ରୋମାଞ୍ଚକର କାହାଣୀ, ଆର୍‌ବିୟାନ ନାଇଟ୍, ଇଂରେଜୀ ନାଟ୍ୟକାର ସେକସପିଅରଙ୍କର ନାଟକାବଳୀ ଅନେକ ସମୟରେ ନାଟ୍ୟକାରମାନଙ୍କୁ ସେମାନଙ୍କ ନାଟ୍ୟସାହିତ୍ୟ ବିଷୟବସ୍ତୁ ବା ଉପାଦାନ ଯୋଗାଇ ଦେଉଥିଲା । ରାଜାରାଣୀ, ସେନାପତି ଓ ସୈନିକମାନଙ୍କର ଅପୂର୍ବ କାହାଣୀ ବା ଗଳ୍ପ ସେହିସବୁ ନାଟକର ଥିଲା ବିଷୟବସ୍ତୁ । ଅଭିନେତା ଓ ଅଭିନେତ୍ରୀମାନଙ୍କର ପୋଷାକପରିଚ୍ଛଦ ସାଜସଜ୍ଜା ମଧ୍ୟଯୁଗୀୟ ଥିଲା । ସେସବୁ ନାଟକ ବାସ୍ତବତା-ବିବର୍ଜିତ ଥିଲା । ବସ୍ତୁତଃ କହିବାକୁ ଗଲେ ପ୍ରାରମ୍ଭିକ ଯୁଗର ନାଟକସମୂହ ଅପରିପକ୍ୱ ଥିଲା । ଶୈଳୀ ଏବଂ ବିଷୟବସ୍ତୁଗତ ଯୋଗ୍ୟତା ସେଥିରେ ଦେଖିବାକୁ ମିଳେନାହିଁ । ଏହିସବୁ ଅପରିପକ୍ୱ ରଚନାରୁ ପରବର୍ତ୍ତୀ କାଳରେ ସାହିତ୍ୟିକ ଶୈଳୀସମ୍ପନ୍ନ ମର୍ଯ୍ୟାଦାବନ୍ତ ନାଟକ ସୃଷ୍ଟି ହୋଇଥିଲା ।

ଯଥାର୍ଥ ଉର୍ଦ୍ଦୁ ନାଟକ ଅଯୋଧ୍ୟାର ବିଳାସୀ ବ୍ୟସନପ୍ରିୟ ଓ୍ୱାଜିଦ୍ ଅଲ୍ଲି ସାହାଙ୍କର ପୃଷ୍ଠପୋଷକତାର ପରିଣତି ବୋଲି ଜଣାଯାଏ । କଥକ ନୃତ୍ୟ, ଠୁମ୍ରୀ

ଏବଂ ଦାଦରା ସଙ୍ଗୀତର ସେ ମଧ୍ୟ ପୃଷ୍ଠପୋଷକ ଥିଲେ । ଲୋକମୁଖରେ ଶୁଣାଯାଏ ଯେ, ଓ୍ୱାଜିଦ୍ ଅଲ୍ଲି ସାହା ତାଙ୍କର ଜନୈକ ଅମାତ୍ୟଙ୍କୁ ଏକଦା ସଙ୍ଗୀତାନୁଷ୍ଠାନ ଇନ୍ଦ୍ରସଭା ବ୍ୟବସ୍ଥା କରିବାପାଇଁ ନିର୍ଦ୍ଦେଶ ଦେଇଥିଲେ । ନିଜେ ଓ୍ୱାଜିଦ୍ ଅଲ୍ଲି ସାହା ଇନ୍ଦ୍ର ଭୂମିକାରେ ଅଭିନୟ କରୁଥିଲେ ବୋଲି ଜଣାଯାଏ । ୧୮୫୩ ମସିହା ଲିଖିତ ଏହି 'ଇନ୍ଦ୍ରସଭା' ବିଶେଷ ଆଦୃତ ହୋଇଥିଲା ଓ ଏକାଧିକବାର ଅଭିନୀତ ହୋଇଥିଲା । ପରବର୍ତ୍ତୀକାଳରେ ଯେଉଁମାନେ ପାର୍ଶି ଥିଏଟର୍ ପାଇଁ ନାଟକ ଲେଖିଥିଲେ, ସେମାନେ ଏହି 'ଇନ୍ଦ୍ରସଭା' ରଚନାଦ୍ୱାରା ପ୍ରଭାବିତ ହୋଇଥିଲେ । ୧୮୩୦ ମସିହା ବେଳକୁ ଏହି ପର୍ଶି ଥିଏଟର କମ୍ପାନୀ ଭାଙ୍ଗିଯାଇଥିଲା । ତେଣୁ ଏହି ଥିଏଟରର ପରଂପରା ଓ ପ୍ରତିଭାକୁ ଆଶ୍ରା କରି ତରୁଣ ଲେଖକମାନେ ଆଧୁନିକ ନାଟକ ରଚନା ପ୍ରତି ଧ୍ୟାନ ଦେଲେ । ସୌଖୀନ କଳାକାରମାନଙ୍କ ସମ୍ମିଳିତ ଉଦ୍ୟମରେ ନାଟକ ମଧ୍ୟ ପ୍ରଦର୍ଶିତ ହେଉଥିଲା । ଇମ୍ତିଆଜ୍ ଆଲିଆଜ୍‌ଙ୍କର ଲେଖା 'ଆନାରକଲି' ଏହିପରି ଏକ ସୌଖୀନ ନାଟକ । ଏହି ନାଟକରେ ରୂପବତୀ ଆନାରକଲି ଯୁବରାଜ ସେଲିମଙ୍କୁ ପ୍ରେମ କରୁଥିବାରୁ ସମ୍ରାଟ୍ ଆକବରଙ୍କ ଦ୍ୱାରା ଦଣ୍ଡିତ ହୋଇଥିଲା । ଦ୍ୱିତୀୟ ମହାଯୁଦ୍ଧ ସମୟରେ ଭାରତୀୟ 'ଲୋକ ଥିଏଟର୍' ( Indian People's Theatre) ପ୍ରତିଷ୍ଠିତ ହୋଇଥିଲା । ବାଲରାଜ ସାହାଣୀ, ଜୋହର, ସୈଗଲ ପ୍ରଭୃତି ସୌଖୀନ କଳାକାରମାନେ ଆଧୁନିକ ନାଟକ ମଞ୍ଚସ୍ଥ କରାଇଥିଲେ । ସେମାନେ ନିଜେ ମଧ୍ୟ ଅଭିନୟ କରିଥିଲେ । ଖ୍ୱାଜା ଅହମ୍ମଦ ଆବାସଙ୍କର ଲିଖିତ 'ଯୁବୈଦା' ଏବଂ ସର୍ଦ୍ଦାର ଜାଫ୍ରିଙ୍କ ଲିଖିତ 'ୟହ କିସ୍‌କା ଖୁନ୍ ହୈ' ନାଟକରେ ସେମାନେ ଅଭିନୟ କରିଥିଲେ । ଏହି ନାଟକଦ୍ୱୟର ବିଷୟବସ୍ତୁ ବାସ୍ତବ, ସାମାଜିକ ଓ ରାଜନୈତିକ ଘଟଣାଦ୍ୱାରା ପରିକଳ୍ପିତ ହୋଇଥିଲା । ଅବିଦ୍ ହୁସେନ୍ ଏବଂ ମୁଜିବ୍‌ଙ୍କ ଲିଖିତ ଏକାଧିକ ନାଟକ ଦିଲ୍ଲୀର ଜାମିଆ ମିଲିଆ ପ୍ରଦର୍ଶନ କରିଥିଲେ । ଏହା ଉଲ୍ଲେଖଯୋଗ୍ୟ ଯେ, ଆଧୁନିକ ଉର୍ଦ୍ଦୁ କଥାଶିଳ୍ପର ସ୍ରଷ୍ଟାଗଣ ଯଥା : ରାଜେନ୍ଦ୍ର ସିଂ ବେଦୀ, କୃଷନ୍‌ଚନ୍ଦର, ମହେନ୍ଦ୍ରନାଥ, ଉପେନ୍ଦ୍ରନାଥ ଅଶ୍କ୍, ଜିଲାନବାନୁ, ସଦତ୍-ହୁସେନ୍ ମନ୍‌ଟୋ, ଇସମତ୍, ଛୁଗତାଇ, ନାଟକ ଏବଂ ଏକାଙ୍କିକା ରଚନା କରିଛନ୍ତି । ସେମାନଙ୍କର ଅଧିକାଂଶ ନାଟକ ବେତାରକେନ୍ଦ୍ରରୁ ପ୍ରଚାରିତ ହୋଇଛି । ଏହିସବୁ ନାଟକ ଚରିତ୍ରକର୍ଷକ ଏବଂ ଆଧୁନିକ ସମାଜର ଜଟିଳ ମନସ୍ତାତ୍ତ୍ୱିକ ବିଶ୍ଳେଷଣରେ ପୂର୍ଣ୍ଣ । ଆଧୁନିକ ବ୍ୟକ୍ତିର ଯେଉଁ ସମସ୍ୟା, ସେଇ ସମସ୍ୟାର ବିଶ୍ଳେଷଣ ମଧ୍ୟ ଉର୍ଦ୍ଦୁ ନାଟକରେ ଦେଖାଯାଏ । ସାଂପ୍ରତିକ ନାଟ୍ୟ ଆନ୍ଦୋଳନଧାରା ବିଚାର କଲେ ଉର୍ଦ୍ଦୁ ନାଟ୍ୟକାର ପୃଥ୍ୱୀରାଜ କାପୁର ଏବଂ ତାଙ୍କର ପୃଥ୍ୱୀ ଥିଏଟରସ୍ ବମ୍ବେର ଦାନ ସ୍ୱୀକାର୍ଯ୍ୟ । ସମସ୍ତ ଅଭାବ ଅସୁବିଧା ମଧ୍ୟରେ ଏହି ଶକ୍ତିଶାଳୀ ନାଟ୍ୟକାର ଓ ପ୍ରଯୋଜକ ଉର୍ଦ୍ଦୁ ନାଟ୍ୟସାହିତ୍ୟର ପୁଷ୍ଟି ସାଧନ କରିଛନ୍ତି । ତାଙ୍କର କୃତି

'ପଠାଣ୍' 'ଦିଓ୍ୱାର୍', 'କିଶାନ୍', 'ଗଦର୍' ସାଂପ୍ରତିକ, ସାମାଜିକ ଓ ନୈତିକ ସମାଜକୁ ଆଶ୍ରୟ କରି ଲିଖିତ । ଦିଲ୍ଲୀର ବେଗମ୍ କ୍ୱାଦିଶା ଜୈଦିଙ୍କ ପ୍ରଚେଷ୍ଟାରେ ହିନ୍ଦୁସ୍ଥାନୀ ଥିଏଟରସ୍ ଦିଲ୍ଲୀରେ ପ୍ରତିଷ୍ଠିତ ହୋଇଥିଲା । ଏହାର ପ୍ରଥମ ଅର୍ଘ୍ୟ କାଳିଦାସଙ୍କ ଲିଖିତ 'ଶକୁନ୍ତଳା' ଉର୍ଦ୍ଦୁରେ ପରିବେଷଣ କରାଯାଇଥିଲା । ଉର୍ଦ୍ଦୁ ଯେଉଁଠାରେ ଇତିହାସ ବିସ୍ତୃତ ନୁହେଁ; କିନ୍ତୁ ଏହାର ଭବିଷ୍ୟତ ସମ୍ଭାବନାପୂର୍ଣ୍ଣ ଆଶା କରାଯାଏ ।

---

# ପଞ୍ଜାବୀ

ଭାରତର ଉତ୍ତର-ପଶ୍ଚିମ ପ୍ରାନ୍ତରେ ଅବସ୍ଥିତ ପଞ୍ଚ ଅପ୍ ବା ପଞ୍ଚନଦର ଦେଶ ପଞ୍ଜାବ ଯୁଗେ ଯୁଗେ ବୀରପ୍ରସବିନୀ ରାଜ୍ୟ ନାମରେ ଇତିହାସରେ ସୁବିଦିତ । ସିନ୍ଧୁ ନଦୀର ଉପନଦୀ ଶତଦ୍ରୁ ଏବଂ ବିପାଶା ଏହି ରାଜ୍ୟରେ ପ୍ରବାହିତ । ବହିର୍ଦ୍ଦେଶମାନଙ୍କ ସହିତ ସମ୍ପର୍କ ସ୍ଥାପନ କରିବାର ପ୍ରଧାନ ମାର୍ଗ ହେଉଛି ପଞ୍ଚନଦର ଦେଶ । ମହାଭାରତର ବହୁ ବୀର ଏହି ଭୂମିର ସନ୍ତାନ ବୋଲି ଶାସ୍ତ୍ରୀୟ ପ୍ରମାଣ ବିଦ୍ୟମାନ । ସେହି ଭୂମିବାଟେ ଆର୍ଯ୍ୟମାନେ ଏବଂ ପରେ ବିଦେଶୀୟ ଆକ୍ରମଣକାରୀମାନେ ଭାରତ ଭୂମିରେ ପଦାର୍ପଣ କରିଥିଲେ ।

ଯୁଗେ ଯୁଗେ ଇତିହାସର ଅନ୍ଧକାର ମଧ୍ୟରେ କେତେ ସଭ୍ୟତା, କେତେ ସଂସ୍କୃତିର ସ୍ପର୍ଶ ଲାଭ କରିଛି ଏବଂ ସଭ୍ୟତାର ପରଖ ମଧ୍ୟରେ ନିଜର ସ୍ୱାତନ୍ତ୍ର୍ୟ ବରାବର ବଜାୟ ରଖିପାରିଛି । ଏହି ସେହି ପଞ୍ଜାବ, ଯେଉଁଠାରେ 'ଋଗ୍‌ବେଦ'ର ମନ୍ତ୍ର ଲିଖିତ ହୋଇଥିଲା, ଯେଉଁଠାରେ ଉଶୀନାର ଏବଂ ତାଙ୍କ ପୁତ୍ର ଶିବ ଉଶୀନାର ରାଜତ୍ୱ କରିଥିଲେ, ଅଗସ୍ତି, ବିଶ୍ୱାମିତ୍ର ପଦସଞ୍ଚାରଣ କରିଥିଲେ ଏବଂ ରବି ନଦୀରେ ବନ୍ୟା ପ୍ରତ୍ୟାହାର ପାଇଁ ବଶିଷ୍ଠ ମହାମୁନି ତପସ୍ୟା କରିଥିଲେ । ସେହି ରାଜ୍ୟର ପୁଣ୍ୟ କୁରୁକ୍ଷେତ୍ରରେ ଭଗବାନ ଶ୍ରୀକୃଷ୍ଣ ଭଗବତ୍ ଗୀତା ପ୍ରଖ୍ୟାପନ କରିଥିଲେ । କେତେବେଳେ ବହିଃଶତ୍ରୁର ଆକ୍ରମଣ, କେତେବେଳେ ଅନ୍ତର୍ଦ୍ୱନ୍ଦ୍ୱ, ଏହିପରି ରାଜନୈତିକ ଅସ୍ଥିରତା ଭାରତର ଏହି ସୁଗଠିତ ପ୍ରାନ୍ତକୁ ବରାବର ବିଚଳିତ କରିଥିଲା । ୮୪୯ ମସିହାରୁ ୧୯୪୭ ପର୍ଯ୍ୟନ୍ତ ଏହା ବ୍ରିଟିଶ ଶାସନାଧୀନ ପ୍ରଦେଶ ଥିଲା । ସ୍ୱାଧୀନୋତ୍ତର ଯୁଗରେ ଏହା ପୂର୍ବ-ପଞ୍ଜାବ ଏବଂ ପଶ୍ଚିମ-ପଞ୍ଜାବ ଏପରି ଦୁଇ ଭାଗରେ ବିଭକ୍ତ ହେଲା । ପଶ୍ଚିମ-ପଞ୍ଜାବ ବର୍ତ୍ତମାନ ପାକିସ୍ଥାନ ଅନ୍ତର୍ଗତ । ହରପ୍ପା ତକ୍ଷଶିଳାର ସ୍ମୃତି ଏବେ ମଧ୍ୟ ଏହି ରାଜ୍ୟର ପ୍ରାଚୀନ ସାଂସ୍କୃତିକ ପରମ୍ପରା ପ୍ରମାଣ କରିଥାଏ ।

ଅନାବୃଷ୍ଟିପୀଡ଼ିତ, ପ୍ରଚୁର ଗହମ ଉତ୍ପାଦନକାରୀ ଏହି ରାଜ୍ୟ କୃଷି, ଶିଳ୍ପ ଏବଂ ସଂସ୍କୃତି ପ୍ରତ୍ୟେକ କ୍ଷେତ୍ରରେ ଏବକାଳରେ ପ୍ରତିଷ୍ଠା ଅର୍ଜନ କରିଅଛି । ପୂର୍ବ-ପଞ୍ଜାବରେ ଲୋକସଂଖ୍ୟା ୨,୦୧,୯୮,୧୫୧ ଏବଂ କ୍ଷେତ୍ରଫଳ ୧୭,୦୮୪ ବର୍ଗମାଇଲ । ନବନିର୍ମିତ ସୁରମ୍ୟ ନଗରୀ ଚଣ୍ଡୀଗଡ଼ ଆଧୁନିକ ପଞ୍ଜାବର ରାଜଧାନୀ । ଏବର

ଜନଗଣନାନୁଯାୟୀ ପଞ୍ଜାବୀ ଭାଷାଭାଷୀଙ୍କ ସଂଖ୍ୟା ହେଉଛି । ଦିନେ ଏହି ରାଜ୍ୟ କାବୁଲ ଏବଂ ପେଶଓ୍ୱାରରୁ ଦିଲ୍ଲୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ପୁରାଣବିଦିତ ସେହି ପଞ୍ଚନଦ ମଧ୍ୟ ଦିନେ ଏହି ରାଜ୍ୟର ପ୍ରାକୃତିକ ଭାଷା ଏବଂ ସାଂସ୍କୃତିକ ସୀମା ନିର୍ଦ୍ଦେଶ କରିଥିଲା । ଦୁର୍ଗମ ଅରଣ୍ୟ, ପର୍ବତମାଳା ଏବଂ ଦିଗନ୍ତବିସ୍ତାରୀ ବନଭୂମି ଏହି ରାଜ୍ୟର ସାଂସ୍କୃତିକ ଶ୍ରେଣୀକରଣରେ ଯଥାର୍ଥ ସାହାଯ୍ୟ କରିଥିଲା । ପ୍ରାକ୍-ହିନ୍ଦୁ ଯୁଗରେ ଏହି ସମଗ୍ର ଭୂମି କ୍ଷୁଦ୍ର କ୍ଷୁଦ୍ର ସ୍ୱାଧୀନ ସାଧାରଣତନ୍ତ୍ରରେ ବିଭକ୍ତ ଥିଲା । ଯଥା; ଲାହୋର, ନଗରକୋଟ, ପେଶଓ୍ୱାର ଏବଂ ଏହା ସବୁ ଜଣେ ରାଜାଙ୍କର ନିୟନ୍ତ୍ରଣାଧୀନ ଥିଲା । 'ପୁରୁଷପୁର'ରୁ ପେଶଓ୍ୱାର ଏବଂ 'ଲବପୁର'ରୁ ଲାହୋର ନାମିତ ହୋଇଥିବା ଜଣାଯାଏ । ସେହିପରି ସତଲେଜ ଏବଂ ବିପ୍ଳାଜ ନଦୀର ପୂର୍ବ ନାମ ଶତଦ୍ରୁ ଏବଂ ବିପାଶା ଥିଲା ବୋଲି ଅନୁମାନ କରାଯାଏ ।

୧୨୦୭ ମସିହାରେ ଦିଲ୍ଲୀ ଏହି ସମଗ୍ର ରାଜ୍ୟର ରାଜଧାନୀ ଥିଲା ବୋଲି ଇତିହାସରୁ ଜଣାଯାଏ । 'ହରପ୍ପା' ପ୍ରାଚୀନ କାଳରେ ଏକ ସମୃଦ୍ଧ ସହର ଥିଲା । ଏହାର ନାମକରଣ 'ଶିବ'ଙ୍କର ଅର୍ଥ ସୂଚିତ କରିଥାଏ । ହିରଣ୍ୟକଶିପୁ-ପ୍ରହ୍ଲାଦ ଚରିତ, ଯୁଧିଷ୍ଠିର ଆଉ ଯମଙ୍କର ଭେଟ ସଂପର୍କରେ ଏହି ରାଜ୍ୟର ଇତିହାସ ବହୁ ସ୍ମୃତି ଆଲୋଡ଼ନ କରିଥାଏ । ଏହି ଭୂମିରେ ପାଣିନି, କୌଟିଲ୍ୟ ଏବଂ ବାଲ୍ମୀକି ଯଥାକ୍ରମେ ସ୍ୱସ୍ୱ ବିଶ୍ୱବିଶ୍ରୁତ ଗ୍ରନ୍ଥ ବ୍ୟାକରଣ, ଅର୍ଥଶାସ୍ତ୍ର ଏବଂ ରାମାୟଣ ରଚନା କରିଥିବାର ଜଣାଯାଏ । ପ୍ରାଚୀନ ଶିକ୍ଷା ସଂସ୍କୃତି କ୍ଷେତ୍ରରେ ତକ୍ଷଶିଳାର ବୌଦ୍ଧିକ ବିଶ୍ୱବିଦ୍ୟାଳୟ, ପେଶଓ୍ୱାରର କନିଷ୍କ ବିହାର ପ୍ରଭୃତି ସଦୃଶ ଭଗ୍ନାବଶେଷ ଅବସ୍ଥାରେ ଦଣ୍ଡାୟମାନ । ଡାରାୟୁସ୍, ଚନ୍ଦ୍ରଗୁପ୍ତ ମୌର୍ଯ୍ୟ, ଗୋରଖନାଥ ପ୍ରଭୃତି ଐତିହାସିକ ମହାପୁରୁଷମାନଙ୍କର ସ୍ମୃତି ଏହି ଭୂମି ସହିତ ଜଡ଼ିତ । ଚୀନ ପରିବ୍ରାଜକ ହୁଏନ୍‌ସାଂ ଏହି ରାଜ୍ୟର ଜଳନ୍ଧର ପରିଦର୍ଶନ କରିଥିବା ଜଣାଯାଏ । ଶଙ୍କରାଚାର୍ଯ୍ୟ କାଶ୍ମୀର ଯିବା ବାଟରେ ଏହି ଭୂମିରେ ପଦାର୍ପଣ କରିଥିଲେ । ଦକ୍ଷିଣ ଭାରତ, ମହାରାଷ୍ଟ୍ର, ଗୁର୍ଜର ପ୍ରଭୃତି ରାଜ୍ୟରୁ କେତେ କବି, ପଣ୍ଡିତ, ସାହିତ୍ୟସାଧକ ଦିନେ ଏହି ରାଜ୍ୟ ପରିକ୍ରମା କରିଥିଲେ ।

ଏହାର ରାଜନୈତିକ ଇତିହାସ ମଧ୍ୟ ରହସ୍ୟପୂର୍ଣ୍ଣ । ଶହ ଶହ ବର୍ଷଧରି ଡାରାୟୁସ (ପ୍ରଥମ)ଙ୍କର ବଂଶଧର, ପରେ ଗ୍ରୀକ୍ ଆଲେକ୍‌ଜାଣ୍ଡାରଙ୍କ ବଂଶଧରମାନେ ଏବଂ ତାପରେ ତୁର୍କମାନେ ଏହି ରାଜ୍ୟ ଶାସନ କରିଥିଲେ । ହୁଣ, କୁଶାଣ, ତୁର୍କ ଏବଂ ମଙ୍ଗୋଲମାନେ ଏଠାରେ ଅବସ୍ଥାନ କରି ଏହି ଆର୍ଯ୍ୟାବର୍ତ୍ତର ଧର୍ମ, ସଂସ୍କୃତିକୁ ପରିପୁଷ୍ଟ କରିବାରେ ସାହାଯ୍ୟ କରିଥିଲେ । ପରବର୍ତ୍ତୀ ସମୟରେ ଦକ୍ଷିଣ-ପଶ୍ଚିମ ଏବଂ ଦକ୍ଷିଣ-ପୂର୍ବରୁ ରାଜପୁତ୍ର ଏବଂ ଜାଠମାନେ ଆସି ଏଠାରେ ବସବାସ କରିଥିଲେ ।

ଏହି ରାଜ୍ୟର ପ୍ରାଚୀନ ପୁରାଣ ଇତିହାସ ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । ଏହାର ଭୌଗୋଳିକ ଅବସ୍ଥାନ ମଧ୍ୟ ତଦ୍ରୂପ ଗୁରୁତ୍ୱପୂର୍ଣ୍ଣ । ଭୌଗୋଳିକ ଅବସ୍ଥିତି ସାଧାରଣତଃ ପ୍ରତ୍ୟେକ ଦେଶର ସଂସ୍କୃତି, ଧର୍ମ, ଭାଷା ଓ ସାହିତ୍ୟର ଧାରାକୁ ନିୟନ୍ତ୍ରିତ କରିଥାଏ । ପ୍ରାଚୀନ ରାଜ୍ୟମାନଙ୍କର ନାମକରଣ ସାମାଜିକ ଚଳଣିରୁ ସାଂସ୍କୃତିକ ବିକାଶଧାରାର ସୂଚନା ମିଳିଥାଏ । ଉଦାହରଣସ୍ୱରୂପ 'ପଞ୍ଜାବ' ନାମ ପଞ୍ଚନଦ-ପ୍ରବାହିତ ରାଜ୍ୟକୁ ସୂଚୀତ କରିଥାଏ । ଭାଷା ଅର୍ଥରେ 'ପଂଗ୍ରିଜୀ' ଶବ୍ଦ ବ୍ୟବହାର ପାର୍ଶୀ ପ୍ରଭାବର ଫଳ ।

ପଞ୍ଜାବୀ ଭାଷାର ଉତ୍ପତ୍ତି ଭାରତର ଅନ୍ୟାନ୍ୟ ମୁଖ୍ୟ ଭାଷାମାନଙ୍କ ସଦୃଶ ପ୍ରଥମେ ସଂସ୍କୃତ ଏବଂ ପରେ ଅପଭ୍ରଂଶ ସହିତ ଜଡ଼ିତ । ଅପଭ୍ରଂଶ ଉପନାଗର, ଆଭୀର ଏବଂ ଗ୍ରାମ୍ୟ—ଏପରି ତିନିଭାଗରେ ବିଭକ୍ତ ଥିଲା । ସ୍ଥାନୀୟ ପ୍ରଭାବବଶତଃ ଅନେକେ ମଧ୍ୟ ଅପଭ୍ରଂଶକୁ "ଦେଶୀ" କମ୍ବା "ଦେଶଭାକ୍" ନାମରେ ଚିହ୍ନିତ କରୁଥିଲେ । ପଞ୍ଜାବୀ ଭାଷା ଶାସନଗତ କାରଣଯୋଗୁ ଆରବୀ ଏବଂ ପାର୍ଶୀ ଭାଷା ଦ୍ୱାରା ପ୍ରଭାବିତ ହୋଇଥିଲା । ମୁଲତାନ୍, ଲାହୋର, ପେଶଓ୍ୱାର, କାନଗ୍ରାଂ, ଆଦିସ୍ୱର ପ୍ରଭୃତି ଅଞ୍ଚଳରେ ପ୍ରାକ୍‌ଯୁଗର ପଞ୍ଜାବୀ ଭାଷା ପ୍ରଚଳିତ ଥିଲା । ପଞ୍ଜାବୀ ସାହିତ୍ୟର ଭକ୍ତିଧର୍ମୀ ରଚନାବଳୀ ହିନ୍ଦୁ, ଶିଖ, ମୁସଲମାନ, ସୁଫି ସମସ୍ତଙ୍କ ଦ୍ୱାରା ପ୍ରଭାବିତ । ସେମାନଙ୍କର ରଚନାର ଏକମାତ୍ର କୈନ୍ଦ୍ରିକ ବସ୍ତୁ ହୋଇଛି ସୃଷ୍ଟି-ରହସ୍ୟ ଅବଗାହନ । ଶିଖ୍ ଗୁରୁମାନେ ମଧ୍ୟ ନିଜ ନିଜ ଦୃଷ୍ଟିକୋଣରୁ ଐଶ୍ୱରିକ ତତ୍ତ୍ୱ ବିଶ୍ଳେଷଣ କରିଥିଲେ ।

ପଞ୍ଜାବୀ ଭାଷା ଯେପରି ସଂସ୍କୃତିରୁ ଉତ୍ପତ୍ତି ଲାଭ କରି ଆରବିକ, ପାର୍ଶୀ ଏବଂ ମାରଓ୍ୱାଡ଼ୀ ପ୍ରଭୃତି ଭାଷା ସଂସର୍ଗରେ ଆସି ପ୍ରଭାବିତ ହୋଇଥିଲା, ପଞ୍ଜାବୀ ସାହିତ୍ୟ ସେହିପରି ବୈଦିକ ଏବଂ ଅପଭ୍ରଂଶ ସାହିତ୍ୟର ପ୍ରଭାବରେ ପରିପୁଷ୍ଟ ହେଲା । ନାଟକ, କଥା ପ୍ରଭୃତି ପ୍ରାଚୀନ ପଞ୍ଜାବୀ ସାହିତ୍ୟରେ କ୍ରମେ କ୍ରମେ ଲକ୍ଷିତ ହେଲା । ନବମ ଏବଂ ଦଶମ ଶତାବ୍ଦୀରେ ଯୁଦ୍ଧ, ପ୍ରେମ, ବୀରତ୍ୱ ଏବଂ ସଂଘର୍ଷକୁ କେନ୍ଦ୍ର କରି ରଚନା ଲେଖାଯାଉଥିଲା । ପଞ୍ଚଦଶ ଏବଂ ଷୋଡ଼ଶ ଶତାବ୍ଦୀ ବେଳକୁ ନିର୍ଦ୍ଦିଷ୍ଟ ଭକ୍ତି ଏବଂ ଧର୍ମ ଉପାସନା କବିମାନଙ୍କ ରଚନାରେ ପ୍ରତିଫଳିତ ହୋଇଥିଲା । 'ଗଜଲ'ର ପ୍ରଭାବବଶତଃ କେତେକ ରାଗରାଗିଣୀ ପଞ୍ଜାବୀ ସାହିତ୍ୟରେ ପ୍ରବେଶ କରିଥିଲା । ଏକ ଦିଗରେ ମୂଳ ସଂସ୍କୃତ ପ୍ରାକୃତ-ସାହିତ୍ୟସମ୍ଭାର, ଅନ୍ୟ ଦିଗରେ ଆରବୀ ଏବଂ ପାର୍ଶୀ ଭାଷା ଓ ସାହିତ୍ୟ । ଏହି ଅବସ୍ଥାରେ ପଞ୍ଜାବୀ ସାହିତ୍ୟ ପକ୍ଷରେ କୌଣସି ଉଲ୍ଲେଖଯୋଗ୍ୟ କୃତିତ୍ୱ ହାସଲ କରିବା ଅନ୍ତତଃ ସମ୍ଭବ ନଥିଲା । ଆହରଣ, ଅନୁବାଦ, ଅନୁକରଣ ଓ ମୌଳିକ ରଚନା; ଏପରି ବିଭିନ୍ନ ପନ୍ଥାରେ ପ୍ରାଚୀନ ସାହିତ୍ୟ କ୍ରମଶଃ ନିଜର କଳେବର ପରିପୁଷ୍ଟ କରୁଥିଲା ଏବଂ ମଧ୍ୟଯୁଗର ଶେଷ ଆଡ଼କୁ ପଞ୍ଜାବୀ

ସାହିତ୍ୟ (ଶିଖ୍ ସାହିତ୍ୟ) ନିର୍ଦ୍ଦିଷ୍ଟ ରୂପରେଖ ଗ୍ରହଣ କରିଥିଲା । ପ୍ରାଚୀନ ପଞ୍ଜାବୀ ସାହିତ୍ୟକୁ ଯୁଗକ୍ରମରେ ତ୍ରି-ପର୍ଯ୍ୟାୟରେ ବିଭକ୍ତ କରାଯାଇପାରେ; ଯଥା—(୧) ନାଥ-ଯୋଗୀ, ଅର୍ଥାତ୍ ରାଜପୁତଯୁଗ—ଏହା ଅଷ୍ଟମ ଶତାବ୍ଦୀରୁ ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ ପରିବ୍ୟାପ୍ତ, (୨) ମୁସଲମାନଯୁଗ—ଏହା ସାଧାରଣତଃ ତ୍ରୟୋଦଶ ଶତାବ୍ଦୀରୁ ପଞ୍ଚଦଶ ଶତାବ୍ଦୀ ମଧ୍ୟରେ ବିସ୍ତୃତ, (୩) ଗୁରୁ ଶିଖ୍ ଯୁଗ, ଅର୍ଥାତ୍ ପ୍ରକୃତ ପଞ୍ଜାବୀ ସାହିତ୍ୟର ପ୍ରାକ୍-ଅଭ୍ୟୁଦୟ ଯୁଗ—ଏହା ଷୋଡ଼ଶ ଶତାବ୍ଦୀର ପ୍ରାରମ୍ଭରୁ ଊନବିଂଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ବିସ୍ତୃତ ।

ପୌରାଣିକ ଯୁଗ ପରେ ପ୍ରାକୃତ-ପ୍ରଭାବିତ ସମୟରେ ପାରସ୍ୟ ଏବଂ ଗ୍ରୀସ୍‌ବାସୀମାନେ ପଞ୍ଜାବରେ ପଦାର୍ପଣ କରିଥିଲେ । ଏହା ସମ୍ଭବତଃ ଖ୍ରୀ:ପୂ: ୨୦୦—୩୨୦ ସମୟର ଘଟଣା । ଏହାପରେ ଇତିହାସର ଘଟଣା ପ୍ରବାହରେ ପଞ୍ଜାବ ଯେତେବେଳେ ମୌର୍ଯ୍ୟ-ସାମ୍ରାଜ୍ୟ ଅନ୍ତର୍ଭୁକ୍ତ ହୋଇଥିଲା, ସେତେବେଳେ ଜୈନ ଏବଂ ବୌଦ୍ଧଧର୍ମର ଅର୍ଥାତ୍ ପାଲି ଏବଂ ପ୍ରାକୃତର ପ୍ରଭାବ ପଞ୍ଜାବରେ ଅନୁଭୂତ ହୋଇଥିଲା । ଖ୍ରୀ: ୩୦୦ ପର୍ଯ୍ୟନ୍ତ ଏହି ପ୍ରଭାବ (ବୌଦ୍ଧଯୁଗ) ଲାଗିରହିଥିଲା । ଏହାପରେ ସିଥିଆନ, ଶକ, କୁଶାଣମାନେ କ୍ରମେ ଭାରତବର୍ଷକୁ ଆସିଥିଲେ । କନିଷ୍କ ଯେତେବେଳେ ପଞ୍ଜାବ, କାଶ୍ମୀର ପ୍ରଭୃତି ଶାସନ କଲେ, ସେତେବେଳେ ତାଙ୍କର ପେଶୱାରଠାରେ ରାଜଧାନୀ ଥିଲା । କନିଷ୍କ ବୌଦ୍ଧଧର୍ମାବଲମ୍ବୀ ଥିଲେ । ହର୍ଷବର୍ଦ୍ଧନ ତାଙ୍କ ରାଜତ୍ୱରେ (ଖ୍ରୀ:୬୦୬-୬୪୮) ସିନ୍ଧୁ ଏବଂ ଗଙ୍ଗା ନଦୀର ଉପତ୍ୟକାବ୍ୟାପୀ ଆସାମଠାରୁ ପଞ୍ଜାବ ପର୍ଯ୍ୟନ୍ତ ନିଜ ଅଧୀନକୁ ଆଣିଥିଲେ । ଏହାପରେ ଅଷ୍ଟମ ଶତାବ୍ଦୀରୁ ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ ରାଜପୁତ୍‌ମାନଙ୍କ ସମୟରେ କ୍ରମଶଃ ରାଜସ୍ଥାନ, ଗୁଜୁରାଟ, ଦକ୍ଷିଣ ଏବଂ ମଧ୍ୟଭାରତର ପ୍ରଭାବ ପଞ୍ଜାବରେ ଅନୁଭୂତ ହେଲା ।

ମୁସଲମାନମାନଙ୍କ ଦ୍ୱାରା ଭାରତ ଆକ୍ରମଣଠାରୁ ସମଗ୍ର ସିନ୍ଧୁ ଉପତ୍ୟକାରେ ସେମାନଙ୍କର ଆଧିପତ୍ୟ ବିସ୍ତାର, ତୈମୁରଙ୍କର ଲୁଣ୍ଠନ ପର୍ଯ୍ୟନ୍ତ ବହୁ ଐତିହାସିକ ଘଟଣା ଶତାବ୍ଦୀ ଶତାବ୍ଦୀ ଧରି ଲାଗିରହିଥିଲା । ପୂର୍ବ ମଧ୍ୟଯୁଗରେ ପଞ୍ଜାବୀ ସାହିତ୍ୟରେ ବର୍ଣ୍ଣନାତ୍ମକ ପଦ୍ୟ, ସମର ଏବଂ ପ୍ରେମଗାଥାମୂଳକ ପଦ୍ୟ ବହୁଳ ଲକ୍ଷିତ ହୋଇଥିଲା । ରାଜପୁତ୍‌ମାନଙ୍କ ସମୟରେ ହିନ୍ଦୁ ଧର୍ମର ପୁନରୁଦ୍ଧାର ହୋଇଥିଲା । ସେତେବେଳକୁ ଏହା ବିଭିନ୍ନ ଧର୍ମ ଏବଂ ସମ୍ପ୍ରଦାୟ; ଯଥା—ଜୈନ, ବୌଦ୍ଧ ଏବଂ ଇସଲାମଦ୍ୱାରା ପ୍ରଭାବିତ ଏବଂ ପରିବର୍ତ୍ତିତ ହୋଇ ସାରିଥିଲା । ପୁନଶ୍ଚ ସେଥିରେ ଶୈବ ଏବଂ ବୈଷ୍ଣବ ଧର୍ମର ପ୍ରଭାବ ଅନୁଭୂତ ହେଲା । ସାଧାରଣ ଜନତା ଶୈବ କିମ୍ବା ବୈଷ୍ଣବଧର୍ମ ପ୍ରତି ଆକୃଷ୍ଟ ହେଲେ; କିନ୍ତୁ ସାଧୁ ମହାପୁରୁଷମାନେ ଯୋଗକୁ ଗ୍ରହଣ କରିଥିଲେ । ଏହା ଫଳରେ ସାହିତ୍ୟରେ କ୍ରମଶଃ ଭକ୍ତିମାର୍ଗ ଅନୁସୃତ ହେଲା ।

ଏହି ଭକ୍ତିମାର୍ଗରେ ପ୍ରେମ ହିଁ ବିଶେଷ ପ୍ରତିଫଳିତ ହେଲା । ଶିଖ୍ ଗୁରୁମାନଙ୍କ ସମସ୍ତ ପ୍ରଚ୍ଛର ଏବଂ ସାଧନା ସାଧାରଣ ନରନାରୀଙ୍କୁ ସେମାନଙ୍କର ମୌଳିକ ଅଧିକାର ପ୍ରଦାନ କରି ସମାଜରେ ସେମାନଙ୍କର ପ୍ରତିଷ୍ଠା ଘୋଷଣା କରିଥିଲା । ଭଗବଦ୍‌ପ୍ରେମ ଏବଂ ନରନାରୀଙ୍କ ମଧ୍ୟରେ ଯେଉଁ ଗଭୀର ଆକର୍ଷଣ, ସେ ସମସ୍ତ ସାହିତ୍ୟରେ ସମପରିମାଣରେ ସ୍ଥାନ ପାଇଥିଲା ।

ପୁରାତନ ସାହିତ୍ୟ ଏବଂ ଧର୍ମ ପର୍ଯ୍ୟାୟରେ 'ଗୋରଖ' (ଦଶମ-ଏକାଦଶ ଶତାବ୍ଦୀ) ବିଶେଷ ପ୍ରଭାବଶାଳୀ ବ୍ୟକ୍ତି ଥିଲେ ବୋଲି ଜଣାଯାଏ । ତାଙ୍କ ଉପରେ ଶଙ୍କରାଚାର୍ଯ୍ୟଙ୍କର ପ୍ରଭାବ ପଡ଼ିଥିଲା ଏବଂ ତାଙ୍କ ପରେ 'ନାନକ' ହିଁ ବିରାଟ ଶକ୍ତିରୂପେ ପଞ୍ଜାବ ଭୂମିରେ ଆବିର୍ଭୂତ ହୋଇଥିଲେ । ଗୋରଖଙ୍କ ସମ୍ପର୍କରେ ପ୍ରାଚୀନ ପରମ୍ପରା ଏବଂ ମୌଖିକ ସାହିତ୍ୟ କତିପୟ ବିବରଣୀ ଯୋଗାଇଥାଏ । ଗୋରଖଙ୍କ ଜୀବନ ବୈଚିତ୍ର୍ୟପୂର୍ଣ୍ଣ । ପ୍ରଥମେ ସେ ଜନୈକ ଗୃହସ୍ଥଙ୍କର ଭୃତ୍ୟରୂପେ କାର୍ଯ୍ୟ କରୁଥିଲେ । ସେ ବହୁ ଦେଶ ପର୍ଯ୍ୟଟନ କରିଥିଲେ । ତାଙ୍କର ସାହିତ୍ୟ 'ଯୋଗୀ'ମାନଙ୍କର ଅଭିବ୍ୟକ୍ତି । ନାଥଧର୍ମ ଶଙ୍କରାଚାର୍ଯ୍ୟ ଏବଂ ରାମାନନ୍ଦଙ୍କ ମଧ୍ୟରେ ଯଥାର୍ଥ ଯୋଗସୂତ୍ର । ଗୋରଖଙ୍କ ଭାଷାରେ ପ୍ରାଦେଶିକ ଭାଷାର ସରଳତା ପ୍ରକଟିତ ।

ଚରପଟିନାଥ (୮୯୦-୯୯୦) ଏବଂ ମାସୁଦ (୧୧୭୩-୧୨୬୫) ଉଭୟ ଭକ୍ତିମାର୍ଗର ସାଧକ ଥିଲେ । ଚରପଟିନାଥ ଯୋଗପନ୍ଥୀ ଥିଲେ । ମାସୁଦଙ୍କର ଜୀବନ-ଇତିହାସ ଅତି ବିଚିତ୍ର । ଆରବୀ, ପାର୍ଶୀ ଭାଷାରେ ତାଙ୍କର ପାଣ୍ଡିତ୍ୟ ଥିଲା । କିନ୍ତୁ ସେ ଆଞ୍ଚଳିକ ଭାଷାରେ ଅଜସ୍ର ପଦ୍ୟ ରଚନା କରିଥିଲେ । ନାଥ-ସଂପ୍ରଦାୟର ସାଧକମାନେ ଯେପରି ଆରବୀ, ପାର୍ଶୀ ଭାଷାରୁ ଶବ୍ଦ ଗ୍ରହଣ କରିଥିଲେ, ମାସୁଦ ସେହିପରି ତାଙ୍କର ରଚନାରେ ବହୁ ହିନ୍ଦୁ ଶବ୍ଦ ଏବଂ ହିନ୍ଦୁ-କଳ୍ପନା ପ୍ରୟୋଗ କରିଥିଲେ । ମାସୁଦଙ୍କ ରଚନାର ସର୍ବଜନବୋଧତା ହିଁ ତାଙ୍କର ବିଶେଷ କୃତି । ପଞ୍ଜାବୀ ସାହିତ୍ୟ ଏବଂ ଭାଷା ମୁସଲମାନ ଲେଖକମାନଙ୍କ ରଚନାଦ୍ୱାରା ପୁଷ୍ଟ ହୋଇଥିବା ଜଣାଯାଏ । ସେମାନଙ୍କ ରଚନା ଆରବୀ ଏବଂ ପାର୍ଶୀ ଭାଷାର ବହୁଳ ପ୍ରୟୋଗଦ୍ୱାରା ପୀଡ଼ିତ ହେଲେହେଁ ସେଥିରେ ପଞ୍ଜାବୀ ଭାଷାର ଅପେକ୍ଷାକୃତ ସରଳତା ନିହିତ ।

ପଞ୍ଜାବୀ ଭାଷାରେ ଏକ ପ୍ରଧାନ ସମସ୍ୟା ହେଉଛି ଲିପିସମସ୍ୟା । ଭାଷା ଏକ ହେଲେ ମଧ୍ୟ ଲିପି ବିଭିନ୍ନ । ବିଭିନ୍ନ ସଂପ୍ରଦାୟ ବିଭିନ୍ନ ଲିପି ବ୍ୟବହାର କରନ୍ତି । ଶିଖ୍‌ମାନଙ୍କର ଦେବନାଗରୀ ପ୍ରଭାବିତ ଗୁରୁମୁଖୀ ଲିପି; ଅନ୍ୟମାନେ ବ୍ୟବହାର କରନ୍ତି ପାର୍ଶୀ ଲିପି । ଶିଖ୍‌ମାନଙ୍କର ଧର୍ମଗ୍ରନ୍ଥ ପ୍ରଭୃତି ଗୁରୁମୁଖୀ ଲିପିରେ ଲିଖିତ ।

ପଞ୍ଜାବୀ ସାହିତ୍ୟର ଆବିର୍ଭାବ ମଧ୍ୟଯୁଗର ଶେଷ ଭାଗରେହିଁ ଘଟିଥିଲା । ଧର୍ମର ଅବସାନ ସମୟରେ ଜଣେ ଈଶ୍ୱର-ପ୍ରେରିତ ସଂସ୍କାରକରୂପେ ଗୁରୁ ନାନକ (୧୪୬୯-୧୫୩୮) ପଞ୍ଜାବରେ ଦେଖାଦେଇଥିଲେ ଏବଂ ଶିଖ୍‌ଧର୍ମ ପ୍ରତିଷ୍ଠା କରିଥିଲେ । ତଲଓ୍ୱାଣ୍ଡିସ୍ଥିତ ଜନୈକ ସାମାନ୍ୟ କର୍ମଚାରୀର ପୁତ୍ରରୂପେ ନାନକ ଜନ୍ମଗ୍ରହଣ କରିଥିଲେ । ଆଫଗାନ ବାହାଲୋଲ ଲୋଦୀ, ସିକନ୍ଦର ଲୋଦୀ, ଇବ୍ରାହିମ ଲୋଦୀ, ମୋଗଲ ବାବର ଏବଂ ହୁମାୟୁନ ଏପରି ପଞ୍ଚଶାସକଙ୍କ ଶାସନ ନାନକ ନିଜ ଜୀବଦ୍ଦଶାରେ ଭୋଗ କରିଥିଲେ । ସେ ତାଙ୍କ ଜୀବନର ପ୍ରଥମ ପଚିଶ-ବର୍ଷକାଳ କେବଳ ଦେଶପର୍ଯ୍ୟଟନ କରି ଲୋକଙ୍କର ଅବସ୍ଥା, ଚଳଣି ପର୍ଯ୍ୟବେକ୍ଷଣ କରିଥିଲେ । ସେତେବେଳେ ସେ ହୁଏତ ଜଣେ ସାମାନ୍ୟ ସାଧୁ ଥିଲେ । କିନ୍ତୁ ଜୀବନର ଶେଷ ଦଶବାର ବର୍ଷ ତାଙ୍କ ସାତ୍ତ୍ୱିକ ଜୀବନର ଚୂଡ଼ାନ୍ତ ସାଧନାଦ୍ୱାରା ଚିହ୍ନିତ ହୋଇଥିଲା । ତାଙ୍କର ସେହି ସାଧନାର ପରିଣତି ସ୍ୱରୂପ ଶିଖ୍ ସମ୍ପ୍ରଦାୟ ନିର୍ଦ୍ଦିଷ୍ଟ ଧର୍ମ, ନିର୍ଦ୍ଦିଷ୍ଟ ଆଦର୍ଶ ପ୍ରାପ୍ତ ହୋଇଥିଲା । ଶିଷ୍ୟମାନଙ୍କର ବିବରଣୀରୁ ଜଣାଯାଏ ଯେ, ନାନକ ମକ୍କା, ମଦିନା, ବାଗଦାଦ ପ୍ରଭୃତି ବହୁ ଦେଶ ପରିଦର୍ଶନ କରିଥିଲେ । ଭକ୍ତିରସାଣିତ, ନୀତିସମ୍ବଳିତ ପଦ୍ୟମାଳାହିଁ ତାଙ୍କ ସାହିତ୍ୟିକ ସାଧନାର ଉଭୟ ପରିମାଣ ଏବଂ ଯୋଗ୍ୟତା ସୂଚିତ କରିଥାଏ । ତାଙ୍କର ଏତାଦୃଶ ପଦ୍ୟ ରଚନାର ସଂଖ୍ୟା ହେଉଛି ପଚିଶ ସହସ୍ର । ଶିଖ୍‌ମାନଙ୍କର ପ୍ରଥମ ଏବଂ ପବିତ୍ର ଧର୍ମଶାସ୍ତ୍ର "ଆଦିଗ୍ରନ୍ଥ'' ହେଉଛି ଗୁରୁ ନାନକଙ୍କର ରଚନା । 'ଆଦିଗ୍ରନ୍ଥ' ପାଇଁ ଶିଖ୍‌ମାନଙ୍କର ଶ୍ରଦ୍ଧା, ଭକ୍ତି ଅସୀମ । ଏହା "ଗୁରୁ ଗ୍ରନ୍ଥସାହେବ" ନାମରେ ପରିଚିତ । ରାଗରାଗିଣୀର ଭିନ୍ନତା, କାବ୍ୟିକ ସଫଳତା 'ଆଦିଗ୍ରନ୍ଥ'ର ପ୍ରଧାନ ଆକର୍ଷଣ । ସତେ ଅବା ଭକ୍ତପ୍ରାଣର ଆବେଗ ବିନମ୍ର ଆବେଦନର ପ୍ରତିମୂର୍ତ୍ତି ହେଉଛି ଆଦିଗ୍ରନ୍ଥ । ସାତ୍ତ୍ୱିକତା, ନୈଷ୍ଠିକତା ଏବଂ କର୍ମ ଧର୍ମ ଜ୍ଞାନ ସମର୍ପଣ, ପ୍ରତି ପଦରେ ସୂଚିତ । 'ଆଦିଗ୍ରନ୍ଥ'ର ଅନ୍ୟ ଏକ ଉଲ୍ଲେଖଯୋଗ୍ୟ କୃତିତ୍ୱ ହେଉଛି ଏହାର ଭାଷାଗତ ସରଳତା । ଆଦିଗ୍ରନ୍ଥର ଭାଷା ସର୍ବସାଧାରଣ ପଞ୍ଜାବୀ ଭାଷା ବୋଲି ସ୍ୱୀକୃତ । ଷୋଡ଼ଶ ଶତାବ୍ଦୀରେ ରଚିତ ଏହି ପୁସ୍ତକ ପୂର୍ବ ପଞ୍ଜାବୀ ଭାଷାର ପ୍ରାଚୀନ ନିଦର୍ଶନ । ସାର୍ବଜନୀନ ସତ୍ୟ ଉପଲବ୍‌ଧି ଉଦ୍ଦେଶ୍ୟରେ ସେ ଧର୍ମ, ଜ୍ଞାନ ଏବଂ କର୍ମମାର୍ଗକୁ ସମନ୍ୱିତ କରିଥିଲେ । ତାଙ୍କର ରଚନାବଳୀ ମାନବିକ ଆବେଦନରେ ପରିପୂର୍ଣ୍ଣ । ଏହା ସମାଜର ପ୍ରତ୍ୟେକ ଶ୍ରେଣୀର ଲୋକଙ୍କ ପାଇଁ ଉଦ୍ଦିଷ୍ଟ । କି କୃଷକ, କି ମେଷପାଳକ ପ୍ରତ୍ୟେକଙ୍କୁ ସେ ତାଙ୍କର ପ୍ରାଣସ୍ପର୍ଶୀ ଭକ୍ତିପୂର୍ଣ୍ଣ ବାଣୀରେ ଉଦ୍‌ବୁଦ୍ଧ କରିବା ପାଇଁ ବ୍ୟଗ୍ର ଥିଲେ । ପଦଦଳିତ, ଦୁଃଖୀ, ନିଃସ୍ୱମାନଙ୍କ ପ୍ରାଣରେ ମାନବିକ ବିଶ୍ୱାସ ଏବଂ ଭଗବତ୍ ସତ୍ତା ସଂଗ୍ରହ କରିବାଲାଗି ଗୁରୁ ନାନକ ଯେପରି ଆପ୍ରାଣ ଚେଷ୍ଟା କରୁଥିଲେ ଏବଂ ସେଥିପାଇଁ ଭକ୍ତିପ୍ରଧାନ ପଦ୍ୟ-ସାହିତ୍ୟକୁ ପ୍ରଧାନ ଅସ୍ତ୍ରରୂପେ

ଗ୍ରହଣ କରିଥିଲେ । ଗୁରୁ ଅର୍ଜ୍ଜୁନଦେବଙ୍କ (୧୫୬୩-୧୬୦୬) ଦ୍ୱାରା "ଆଦିଗ୍ରନ୍ଥ"ର ସଙ୍କଳନ କାର୍ଯ୍ୟ ପୂର୍ଣ୍ଣାଙ୍ଗ ହୋଇଥିଲା । କିନ୍ତୁ ସମ୍ରାଟ୍ ଜାହାଙ୍ଗୀରଙ୍କ ଆଦେଶରେ ତାଙ୍କୁ ନିଷ୍ଠୁର ଭାବରେ ହତ୍ୟା କରାଯାଇଥିଲା । ପଞ୍ଜାବୀ ସାହିତ୍ୟରେ ମଧ୍ୟଯୁଗୀୟ ଦୀର୍ଘତମ ଏବଂ ଦାର୍ଶନିକ ରଚନା "ସୁଖମଣି" ଗୁରୁ ଅର୍ଜ୍ଜୁନଦେବଙ୍କର କୃତି । ସେ ଉଭୟ ମୁସଲମାନ ଓ ହିନ୍ଦୁମାନଙ୍କର ଭକ୍ତି-ସାହିତ୍ୟ ପ୍ରତି ଆକୃଷ୍ଟ ଥିଲେ । ସୁଖମଣି ୬୦,୦୦୦ ପଂକ୍ତିବିଶିଷ୍ଟ ଏବଂ ଏହା ୨୪ ଅଷ୍ଟପଦୀ-ସମନ୍ୱିତ । ଶିଖ୍ ଦାର୍ଶନିକତାର ଶ୍ରେଷ୍ଠତମ ବିଶ୍ଳେଷଣ ତାଙ୍କର ରଚନା "ବାବନ ଅକ୍ଷର", "ବାରମାହା" ଏବଂ "ଗାଥା"ରେ ସୂଚିତ । ଭାଇ ଗୁରୁଦାସ (୧୫୫୧-୧୬୨୯) ପୂର୍ବବର୍ତ୍ତୀ ଗୁରୁମାନଙ୍କ ଦ୍ୱାରା ପ୍ରବର୍ତ୍ତିତ ଭକ୍ତି ଏବଂ ସତ୍ୟ ମାର୍ଗକୁ ଜନପ୍ରିୟ କରିବା ପାଇଁ ଯତ୍ନ କରିଥିଲେ । ସେ ଯେପରି ପଣ୍ଡିତ ଥିଲେ, ସେହିପରି ଗୁରୁମାନଙ୍କ ପ୍ରବର୍ତ୍ତିତ ରଚନାବଳୀକୁ ଜନତା ଉଦ୍ଦେଶ୍ୟରେ ଆଲୋଚନା କରିଥିଲେ । ତାଙ୍କର ୩୯ ସଂଖ୍ୟକ (ଦୀର୍ଘପଦ୍ୟ) ବାର (Vars) ଏବଂ ଶତାଧିକ ପଦ୍ୟ (Kabits) "ଆଦିଗ୍ରନ୍ଥ"ର ଏବଂ ଶିଖଧର୍ମତତ୍ତ୍ୱର ସହାୟକ ଟୀକାରୂପେ ସ୍ୱୀକୃତ ହୋଇଥିଲା । ସାହିତ୍ୟ କ୍ଷେତ୍ରରେ ଧର୍ମ ନାମରେ କୌଣସି ମତାନ୍ଧତାର ସେ ଥିଲେ ବିରୋଧୀ ଏବଂ ଉପମା ଅଳଙ୍କାର ଭାଷାଗତ ବିକାଶ ଦୃଷ୍ଟିରେ ତାଙ୍କର ରଚନା ସାର୍ଥକତା ଲାଭ କରିଥିଲା ।

ଗୁରୁଗୋବିନ୍ଦ ସିଂହ (୧୬୬୬-୧୭୦୮) ବିହାରର ପାଟନାରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପୂର୍ବପୁରୁଷମାନେ 'ତୀର୍ଥଯାତ୍ରା' କରି ଯାଇଥିବା ସମୟରେ ସେଠାରେ ବସବାସ କରି ରହି ଯାଇଥିଲେ । ଛନ୍ଦୋବଦ୍ଧ ଅନୁବାଦ ଗୋବିନ୍ଦ ଗୀତା ଏବଂ ସାଧୁ ଜୀବନୀ ତତ୍ତ୍ୱ ପ୍ରଖ୍ୟାପକ "ପ୍ରେମ-ଅବୋଧ" ପ୍ରଭୃତି ତାଙ୍କର ତରୁଣ ବୟସର ପ୍ରଧାନ ପ୍ରଧାନ ଘଟଣା । ପଞ୍ଜାବୀ ସାହିତ୍ୟ ଏହି ଦଶମ ଗୁରୁ ଗୋବିନ୍ଦ ସିଂହଙ୍କ ଲେଖନୀ ସ୍ପର୍ଶରେ ମୌଳିକ ସୃଷ୍ଟି ପ୍ରେରଣାରେ ଝଂକୃତ ହୋଇଥିଲା । ଏହାଙ୍କ ସମୟର କବିମାନେ ବେଦ, ଉପନିଷଦ୍ ଏବଂ ପୁରାଣ ପ୍ରତି ଆକୃଷ୍ଟ ହୋଇଥିଲେ ଏବଂ ଜୀବନର ବିବିଧ ଅଭିନୟ ଏବଂ ଅଭିଜ୍ଞତା ସେମାନଙ୍କୁ ଭାବବିହ୍ୱଳ କରିଥିଲା । ଆତ୍ମ-ବିଶ୍ଳେଷଣ, ଆତ୍ମ-ପ୍ରଖ୍ୟାପନ ଏବଂ ବ୍ୟକ୍ତି ଓ ସମାଜର ଆବିଷ୍କାର ହେଲା ସେକାଳର ପ୍ରଧାନ ବ୍ରତ । ସାହିତ୍ୟରେ ଭାବବୈଚିତ୍ର୍ୟ ତଥା ଭାବବିଳାସ ଉପରେହିଁ ଗୁରୁ ଗୋବିନ୍ଦସିଂହ ଅଧିକ ଗୁରୁତ୍ୱ ଆରୋପ କରିଥିଲେ । ନିରାଶ୍ରିତ, ଅସହାୟମାନଙ୍କର ରକ୍ଷା ଏବଂ ପାପୀମାନଙ୍କର ଦଣ୍ଡବିଧାନ ଥିଲା ତାଙ୍କ ସାହିତ୍ୟିକ ରଚନାର ସ୍ୱାତନ୍ତ୍ର୍ୟ । ତାଙ୍କ ରଚନାବଳୀରେ ସୁରଦାସ, ତୁଳସୀଦାସଙ୍କ ସଦୃଶ ଭକ୍ତ କବିମାନଙ୍କର ରଚନାର ମୂର୍ଚ୍ଛନା ମଧ୍ୟ ପ୍ରତିଧ୍ୱନିତ । ବହୁ ନୂତନ ନୂତନ ଶବ୍ଦ ନିର୍ମାଣ ମଧ୍ୟ ତାଙ୍କ କବିତାର ପରିଚାୟକ । କୃଷ୍ଣଲାଲଙ୍କ ସଦୃଶ ବହୁ କବି ଗୋବିନ୍ଦ ସିଂହଙ୍କ ଦ୍ୱାରା ପ୍ରଭାବିତ ହୋଇଥିଲେ ଏବଂ ପଦ୍ୟରେ ବିଶାଳ ମହାଭାରତ ସଂକଳନ କରିଥିଲେ ।

'ଜନ୍ମ-ସାକ୍ଷୀ' ନାନକଙ୍କର ଜନ୍ମବୃତ୍ତାନ୍ତ ବର୍ଣ୍ଣନାମୂଳକ ଗଦ୍ୟ ରଚନା ଏବଂ ଏହା ପ୍ରାଥମିକ ପଞ୍ଜାବୀ ଗଦ୍ୟରୂପେ ପରିଗଣିତ । ପଞ୍ଜାବୀ ଗଦ୍ୟ ପଞ୍ଚଦଶ ଶତାବ୍ଦୀ-ବେଳକୁ ମାର୍ଜିତ ଏବଂ ଉନ୍ନତ ରୂପ ଗ୍ରହଣ କରିଥିବା ଜଣାଯାଇଥାଏ । ଏହି ସବୁ ରଚନାରୁ ନାନକଙ୍କ ଜୀବନର ବିସ୍ତୃତ ବିବରଣୀ ମିଳେ । ସର୍ବପ୍ରାଚୀନ ଜନ୍ମସାକ୍ଷୀ (୧୫୩୫), ଦ୍ୱିତୀୟ ସ୍ତରର ଜନ୍ମସାକ୍ଷୀ ( ୫୮), ତୃତୀୟ ପର୍ଯ୍ୟାୟର ଜନ୍ମସାକ୍ଷୀ (୧୭୩୭) ଯଥାକ୍ରମେ ବାଲା, ସେବାସିଂହ ଏବଂ ମଣିସିଂହଙ୍କ ଦ୍ୱାରା ଲିଖିତ ।

୧୭୦୧ ମହିହାର ଏକ ଗଦ୍ୟ ପାଣ୍ଡୁଲିପି ମଧ୍ୟ ପଞ୍ଜାବୀ ଗଦ୍ୟର ଧାରା-ବାହିକତା ସୂଚିତ କରିଥାଏ । ଏହି ପାଣ୍ଡୁଲିପିର ଗଦ୍ୟ ଚତୁର୍ବିଧ, ଯଥା— ବିଶ୍ଳେଷଣାତ୍ମକ, ଚରିତାତ୍ମକ, ନାଟକାତ୍ମକ ଏବଂ ବର୍ଣ୍ଣନାତ୍ମକ । ଏହି ପାଣ୍ଡୁଲିପିରେ ମଧ୍ୟ ଗୁରୁ ନାନକ ଏବଂ ଉତ୍ତରପ୍ରଦେଶର ଜନୈକ ପର୍ଯ୍ୟଟକଙ୍କ ମଧ୍ୟରେ ଘଟିଥିବା କଥୋପକଥନର ପ୍ରମାଣ ମିଳେ । ଦିଲ୍ଲୀ ବାଦସାହ ଆକବରଙ୍କ ସମ୍ମୁଖରେ ପଞ୍ଜାବୀ ଗଦ୍ୟରେ ଲିଖିତ ଏକ କାହାଣୀ ପଠିତ ହୋଇଥିଲା ବୋଲି ଏହି ପାଣ୍ଡୁଲିପି ପ୍ରମାଣ ଦିଏ ।

ପ୍ରାଚୀନ ପଞ୍ଜାବୀ ସାହିତ୍ୟର ଆଉ ଏକ ପ୍ରଧାନ ଜନପ୍ରିୟ ସମ୍ପଦ ହେଉଛି, ଦୀର୍ଘ ଗାଥା-କବିତା । ପଞ୍ଜାବ ଏବଂ ସମଗ୍ର ଉତ୍ତରଭାରତରେ ଗାଥା-କବିତା ବିଶେଷ ଆଦୃତ ଏବଂ ଅଧିକାଂଶ ଗାଥା-କବିତାର କଥାବସ୍ତୁ ହେଉଛି "ହୀର ରାନ୍‌ଝା"ଙ୍କର ପ୍ରଣୟ କାହାଣୀ । ଚେନାବ୍ ନଦୀକୂଳରେ ଅବସ୍ଥିତ ଝାଙ୍ଗ୍‌ର ଦଳପତିଙ୍କ କନ୍ୟା ହେଉଛି ହୀର ଏବଂ ଏକ ଗ୍ରାମ୍ୟମୁଖ୍ୟର ପୁତ୍ର ହେଉଛି ଧୀଦୋ । ନିଜ ଗୋଷ୍ଠୀର ନାମାନୁଯାୟୀ ଧୀଦୋର ନାମ ହେଉଛି ରାନ୍‌ଝା । ହୀର ଏବଂ ରାନ୍‌ଝା ମଧ୍ୟରେ ପ୍ରୀତି ଆରମ୍ଭ ହେଲା । କିନ୍ତୁ ହୀରର ପିତା ରାନ୍‌ଝା ପ୍ରତି ଅତ୍ୟାଚାର କରିଥିଲେ । ରାନ୍‌ଝା ଏହାପରେ ଫକୀର ସାଜିଥିଲା । ଅନ୍ୟ ଜଣକ ସହିତ ହୀରର ବିବାହ ସମ୍ପାଦିତ ହେଲା । ଏହାପରେ ଘଟଣାଚକ୍ରରେ ହୀର ସହିତ ରାନ୍‌ଝାର ମିଳନ ହୋଇଥିଲା । କିନ୍ତୁ ବିଶ୍ୱାସଘାତକତା ଯୋଗୁଁ ହୀର ତାର ସ୍ୱାମୀଦ୍ୱାରା ନିହତ ହେଲା । କେହି କେହି କହନ୍ତି, ରାନ୍‌ଝା ଆଉ ହୀର ପଳାୟନ କରି ସୁଖରେ ବାସ କରିଥିଲେ ।

ଆକବରଙ୍କ ସମୟର କବି ଦାମୋଦର, କବି ମୁକବିଲ (ଅଷ୍ଟାଦଶ ଶତାବ୍ଦୀ) କବି ଓ୍ୱାରିସାହ (ଅଷ୍ଟାଦଶ ଶତାବ୍ଦୀ) ଏହି ଲୋକପ୍ରିୟ କଥାବସ୍ତୁକୁ କେନ୍ଦ୍ର କରି କବିତା ରଚନା କରିଥିଲେ । ଓ୍ୟାରସାହଙ୍କର ରଚନା "ହୀର" (୧୭୬୬) ଭାଷା, ଭାବଗମ୍ଭୀର୍ଯ୍ୟ ବିସ୍ତାରରେ ଅତି ଉଚ୍ଚକୋଟୀର । ତାହା ପଞ୍ଜାବ ଗ୍ରାମ୍ୟଜୀବନର ସହାନୁଭୂତିପୂର୍ଣ୍ଣ ନିଖୁଣ ଚିତ୍ର ।

“ସୋହ୍ନୀ” ସେହିପରି ପ୍ରାଚୀନ ପଞ୍ଜାବ ସାହିତ୍ୟର ଆଉ ଏକ ଦୁଃଖାନ୍ତକ ପ୍ରେମଧର୍ମୀ କଥାବସ୍ତୁ । ପ୍ରଣୟିନୀ ସୋହନୀ ତାର ପ୍ରେମିକ ‘ମହୀୱାଲ’ଙ୍କୁ ରାତିରେ ଭେଟିବାପାଇଁ ନଦୀପାର ହୋଇ ଗଲା; କିନ୍ତୁ ଦୁର୍ଯ୍ୟୋଗାନ୍ତ ପରିଣତିହିଁ ସେମାନଙ୍କ ମିଳନର ଏକମାତ୍ର ସୂତ୍ର । ଲାହୋରର ଫଜଲସାହଙ୍କ ଲେଖନୀରେ ଏହି କଥାବସ୍ତୁ ଅତ୍ୟନ୍ତ ପ୍ରାଣସ୍ପର୍ଶୀ ହୋଇପାରିଥିଲା । ପ୍ରେମକାହାଣୀ ବ୍ୟତୀତ ଐତିହାସିକ ପ୍ରସଙ୍ଗ ମଧ୍ୟ ପ୍ରାଚୀନ ପଞ୍ଜାବୀ କାବ୍ୟ-କବିତାରେ ସ୍ଥାନ ପାଇଥିଲା । କବି ‘ନଜାବତ୍’ଙ୍କ ଦୀର୍ଘ ପଦ୍ୟରେ (viar) ନାଦିରସାହଙ୍କ ଭାରତ ଆକ୍ରମଣ (୧୭୩୮-୩୯) ବିଷୟ ବର୍ଣ୍ଣିତ ହୋଇଥିଲା ।

ଧର୍ମକେନ୍ଦ୍ରିକ ଭକ୍ତିପ୍ରଧାନ ସାହିତ୍ୟର ପ୍ରୟୋଜକଭାବେ ଗୁରୁ ନାନକ, ଗୁରୁ ଅର୍ଜୁନଦେବ ପ୍ରଭୃତି ସ୍ମରଣୀୟ । ସେହିପରି ଇସଲାମପନ୍ଥୀ ସାହିତ୍ୟିକମାନଙ୍କ ମଧ୍ୟରେ ଶାହଶୋହେନ, ନାକାରତ୍ରି, କାଦରଇୟାର, ହମିଦଇୟାର ପ୍ରଭୃତି ପରିଚିତ । ରହସ୍ୟବାଦହିଁ ପ୍ରାଚୀନ କାବ୍ୟର ଥିଲା ପ୍ରଧାନ ଲକ୍ଷଣ ।

## ପ୍ରାକ୍-ଆଧୁନିକ ଯୁଗ

ରାଜନୈତିକ ପଟ୍ଟପରିବର୍ତ୍ତନ, ସିପାହୀ-ବିଦ୍ରୋହ (୧୮୫୭), ସାଂସ୍କୃତିକ-ଅଭ୍ୟୁଦୟ, ପଞ୍ଜାବୀ ଭାଷାର ସ୍ୱାତନ୍ତ୍ର୍ୟପ୍ରାପ୍ତି (୧୮୫୦-୧୯୧୫) ।

ମହାରାଜା ରଣଜିତ୍ ସିଂହଙ୍କ (୧ ୪୭) ରାଜତ୍ୱରେ ପାର୍ଶୀ ସରକାରୀ ଭାଷା-ରୂପେ ପ୍ରଚଳିତ ହୋଇଥିଲା; କିନ୍ତୁ ପଞ୍ଜାବୀ ଭାଷାକୁ ସରକାରୀ ଭାଷାରୂପେ ପ୍ରବର୍ତ୍ତନ କରିବାପାଇଁ କ୍ରମଶଃ ଆନ୍ଦୋଳନ ହେଲା । ପାତିଆଲାର ‘ଅତରସିଂହ’ ହିଁ ନବଯୁଗର ପ୍ରାକ୍‌କାଳରେ ପଞ୍ଜାବୀ ଭାଷା ଓ ସାହିତ୍ୟକୁ ସ୍ୱତନ୍ତ୍ର ଆସନ ଦେବାପାଇଁ ସର୍ବବିଧ ଆନ୍ଦୋଳନ ଚଳାଇଥିଲେ । ତାଙ୍କ ଆନ୍ଦୋଳନ ତ୍ରିମୁଖୀ ଥିଲା । ପ୍ରଥମେ ଅନୁବାଦ-ଦ୍ୱାରା ପଞ୍ଜାବୀ ସାହିତ୍ୟର ପ୍ରଚାର, ଦ୍ୱିତୀୟତଃ ଅନ୍ୟ ଭାଷାରୁ ପଞ୍ଜାବୀ ଭାଷାରେ ଅନୁବାଦଦ୍ୱାରା ତାହାର ପରିପୁଷ୍ଟି, ତୃତୀୟତଃ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠାଦ୍ୱାରା ପଞ୍ଜାବୀ ଭାଷା ଓ ସାହିତ୍ୟର ବ୍ୟାପକ ଚର୍ଚ୍ଚା । ଏହି ଉଦ୍ଦେଶ୍ୟରେ ଲାହୋରଠାରେ ସେ ଓରିଏଣ୍ଟାଲ କଲେଜ ସ୍ଥାପନ କରିଥିଲେ । ଉର୍ଦ୍ଦୁ ଏବଂ ହିନ୍ଦୀ ସାହିତ୍ୟର ଉନ୍ନତି ମଧ୍ୟ ପଞ୍ଜାବୀ ଲୋକମାନଙ୍କୁ ନିଜ ମାତୃଭାଷାର ବିକାଶ ସାଧନ ନିମନ୍ତେ ପ୍ରେରଣା ଦେଇଥିଲା ।

ଖ୍ରୀଷ୍ଟିୟାନ୍ ପାଦ୍ରୀମାନେ ମଧ୍ୟ ସ୍ଥାନୀୟ ପଞ୍ଜାବୀ ଭାଷାର ଉନ୍ନତି ସାଧନ ଉଦ୍ଦେଶ୍ୟରେ କମ୍ ଉଦ୍ୟମ କରିନଥିଲେ । ଡକ୍ଟର ଗ୍ରାହାମ୍ ବେଲିଙ୍କର ‘ନିଉ ଟେଷ୍ଟାମେଣ୍ଟ’ର ପଞ୍ଜାବୀ ଗଦ୍ୟାନୁବାଦ ଉଲ୍ଲେଖଯୋଗ୍ୟ । ୧୮୧୦-୧୫ ମସିହା ମଧ୍ୟରେ

ବାଇବେଲର ପ୍ରଥମ ପଞ୍ଜାବୀ ଅନୁବାଦ ପ୍ରକାଶିତ ହୋଇଥିଲା । ସମ୍ଭବତଃ ୧୮୫୦ ବେଳକୁ ଲୁଧିଆନାଠାରେ ଏକ ଖ୍ରୀଷ୍ଟିଆନ୍ ମିଶନ ସ୍ଥାପିତ ହେଲା । ସେମାନଙ୍କ ଯତ୍ନରେ ୧୮୫୪ରେ ପଞ୍ଜାବୀ ଭାଷାର ଏକ ଅଭିଧାନ ମଧ୍ୟ ପ୍ରକାଶିତ ହୋଇଥିଲା । ୧୮୯୦ ମସିହାରେ ପଞ୍ଜାବୀ ଭାଷା ନିମନ୍ତେ ଗୋଟିଏ ମୁଦ୍ରାଯନ୍ତ୍ର ସ୍ଥାପନ ଏକ ପ୍ରଧାନ ଘଟଣା । ମୁଦ୍ରାଯନ୍ତ୍ର ସ୍ଥାପନ ଫଳରେ ଶିଖ୍ ସମ୍ପ୍ରଦାୟର ଭାଷା, ସାହିତ୍ୟ ଏବଂ ବୈପ୍ଳବିକ ଚିନ୍ତା ପ୍ରଚାର ସମ୍ଭବ ହେଲା । ଉର୍ଦ୍ଦୁ କବିମାନଙ୍କର 'ମୋସାୟାରା' ମଧ୍ୟ ପଞ୍ଜାବୀ କବିମାନଙ୍କୁ ଯଥେଷ୍ଟ ପ୍ରେରଣା ଦେଇଥିଲା । ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଉର୍ଦ୍ଦୁ ସାହିତ୍ୟରେ ନବ କବିତା ଏବଂ ଆଧୁନିକ ସମାଲୋଚନାର ଭିତ୍ତି ସ୍ଥାପିତ ହେଲା । ତେଣୁ ଏହାର ପ୍ରଭାବ ପଞ୍ଜାବୀ ସାହିତ୍ୟ ଉପରେ ପଡ଼ିଥିଲା । ପ୍ରଥମେ ଲାହୋରଠାରୁ ପ୍ରକାଶିତ 'ଖାଲସା ଆକବର' ଏବଂ ପରେ ଅମୃତସରଠାରୁ ପ୍ରକାଶିତ ଖାଲସା ସମାଚାର ମଧ୍ୟ ପଞ୍ଜାବୀ ସାହିତ୍ୟର ଆଧୁନିକ ଜାଗରଣକୁ ତ୍ୱରାନ୍ୱିତ କରିଥିଲା । ଏସବୁ ସତ୍ତ୍ୱେ ୧୯୧୫ ମସିହା ଅର୍ଥାତ୍ ପ୍ରଥମ ମହାଯୁଦ୍ଧ ପରେ ହିଁ ପଞ୍ଜାବୀ ଭାଷା ଓ ସାହିତ୍ୟ ଏକ ନୂତନ ଚେତନାର ବଶବର୍ତ୍ତୀ ହେଲା । ମୁଦ୍ରାଯନ୍ତ୍ର ଏବଂ ସମ୍ବାଦପତ୍ର ହିଁ ଏହି ଚେତନା ସୃଷ୍ଟି କରିଥିଲେ । ଉର୍ଦ୍ଦୁଲିପିରେ ଏବଂ ପଞ୍ଜାବୀ ଭାଷାରେ ଏକ ମାସିକ ପତ୍ରିକା ପ୍ରକାଶିତ ହେଲା । ୧୯୨୫ ମସିହା ବେଳକୁ ଆହୁର ଏକ ଆନ୍ଦୋଳନ ଆରମ୍ଭ ହେଲା; ଯାହାର ପୃଷ୍ଠଭୂମିରେ ଥିଲା ଜାତୀୟ କଂଗ୍ରେସର ପ୍ରଭାବ । ଶିଖ-ମୁସଲିମ୍ ସଂଘର୍ଷ, ବିପ୍ଳବୀମାନଙ୍କର ଜାତୀୟତା, ଅକାଳୀ ଆନ୍ଦୋଳନ ଏହି ସମ୍ପର୍କରେ ଉଲ୍ଲେଖଯୋଗ୍ୟ ।

ପାଶ୍ଚାତ୍ୟ ଶିକ୍ଷାପ୍ରାପ୍ତ ଜଣେ ଅଧେ କର୍ମୀପୁରୁଷ ପଞ୍ଜାବୀ ସାହିତ୍ୟରେ ବୈପ୍ଳବିକ ଆଦର୍ଶବାଦ ପ୍ରଚାର କରିଥିଲେ । ଏହି ଦୃଷ୍ଟିରେ 'କ୍ରାନ୍ତି' ଏବଂ 'ସହିତ' ପତ୍ରିକାର ଭୂମିକା ବଡ଼ ତାତ୍ପର୍ଯ୍ୟପୂର୍ଣ୍ଣ । କ୍ରାନ୍ତି-କିଷାନ-ଆନ୍ଦୋଳନ ଏବଂ ଏହାର ଉଦ୍ୟୋକ୍ତାମାନେ ସାଧାରଣତଃ ଶିଖ୍ ସମ୍ପ୍ରଦାୟର ଲୋକ ଏବଂ ସେମାନେ ସାଧାରଣ ବୋଧଗମ୍ୟ ଭାଷାରେ ଗ୍ରାମବାସୀମାନଙ୍କୁ ଉଦ୍‌ବୋଧିତ କରିଥିଲେ । ଏହି ସମୟରେ ହୀରା ସିଂହ ଦାର୍ଦ, ମୋହନ ସିଂହ ଯୋଶ୍, ଅଓଓ୍ୱାର ସିଂହ ପ୍ରଭୃତି ସାମ୍ବାଦିକମାନେ ବିଶେଷ ଯତ୍ନ କରିଥିଲେ । ବିଦ୍ୟାଳୟସଂଖ୍ୟା ବୃଦ୍ଧି ଦୃଷ୍ଟିରେ ବହୁ ପାଠ୍ୟ ପୁସ୍ତକ ଲେଖାଯାଇଥିଲା । ଯେଉଁମାନେ ବିଶ୍ୱବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ହେଲେ, ସେମାନେ ସମସ୍ତେ ପଞ୍ଜାବୀ ଭାଷାର ପୁଷ୍ଟୀକରଣ ନିମନ୍ତେ ସଂକଳ୍ପ କଲେ । ଊନବିଂଶ ଶତାବ୍ଦୀର ଶେଷ ପାଦରେ ଯେଉଁ କେତେଜଣ ଶକ୍ତିଶାଳୀ ଯୁଗପ୍ରବର୍ତ୍ତକ ସାହିତ୍ୟିକ ଆବିର୍ଭୂତ ହେଲେ, ସେମାନଙ୍କ ମଧ୍ୟରେ ଭାଇ ବୀର ସିଂହ (ଡିସେମ୍ବର ୮, ୧୮୭୨—୧୦ ଜୁନ୍ ୧୯୫୭), ମୋହନସିଂହ ଭେଦ, ଧନୀରାମ ଛତ୍ରିକ ପ୍ରଭୃତି ସ୍ମରଣୀୟ । ହୀରାସିଂହ ଦର୍ଦ ପ୍ରଭୃତି ବିପ୍ଳବୀ ଲେଖକ ଇଂରେଜ ଶାସନ ବିରୋଧରେ ଲେଖକମାନଙ୍କୁ ଆହ୍ୱାନ

କରିଥିଲେ । ଉଗ୍ର ଜାତୀୟତାର ଉପାସକ ଭାବେ ନାନକ ସିଂହ, ଧନୀରାମ ଛତ୍ରିକ, ଈଶ୍ୱରଚନ୍ଦ୍ର ନନ୍ଦାଙ୍କର ନାମ ଉଲ୍ଲେଖଯୋଗ୍ୟ । ଭାଇ ବୀର ସିଂହ ହେଉଛନ୍ତି ଆଧୁନିକ ପଞ୍ଜାବୀ ସାହିତ୍ୟର ପ୍ରବର୍ତ୍ତକ ।

ପଞ୍ଜାବୀ ଭାଷା ଓ ସାହିତ୍ୟକୁ ଧର୍ମ ଏବଂ ରୋମାନ୍ସର ପ୍ରାଚୀନ ପରମ୍ପରାରୁ ମୁକ୍ତ କରି ଭାଇ ବୀର ସିଂହ ତାକୁ ଆଧୁନିକ ମର୍ଯ୍ୟାଦା ଓ ମହିମାରେ ମଣ୍ଡିତ କରିଥିଲେ । ତାଙ୍କର କାବ୍ୟସୃଷ୍ଟି ଯେତିକି ବ୍ୟାପକ, ତାଙ୍କର ଗଦ୍ୟକୃତିର ପରିମାଣ ଓ ସ୍ୱକୀୟତା ମଧ୍ୟ ସେହିପରି ଉଲ୍ଲେଖଯୋଗ୍ୟ । ଆଧୁନିକ କାବ୍ୟ-କବିତା କ୍ଷେତ୍ରରେ ତାଙ୍କ କାବ୍ୟକୃତିର ଶ୍ରେଷ୍ଠତ୍ୱ ପ୍ରମାଣିତ । ୧୯୦୫ ମସିହାରେ ଲିଖିତ ତାଙ୍କର 'ରାଣା ସୁରତ୍ ସିଂ' ବର୍ଣ୍ଣନାତ୍ମକ, ରୂପକଧର୍ମୀ ଆଧ୍ୟାତ୍ମିକ, କାବ୍ୟନାଟକ ପାଠକମାନଙ୍କ ନିକଟରେ ସର୍ବାଦୌ ନୂତନ କୃତିରୂପେ ଆଦୃତ ହୋଇଥାଏ । ଚାରି ଗୋଟି ଉପନ୍ୟାସ, ତିନି ଗୋଟି ଐତିହାସିକ ଉପନ୍ୟାସ, ସାତଖଣ୍ଡ କାବ୍ୟ-କବିତା ଶିଖଧର୍ମ ସମ୍ପର୍କୀୟ ବ୍ୟାଖ୍ୟାଧର୍ମୀ ପରିବ୍ୟାପ୍ତ ରଚନା ଗୁରୁଗ୍ରନ୍ଥ 'ସାହିବ'ର ଏକ ଅଭିଧାନ (ଗୁରୁଗ୍ରନ୍ଥ କୋଷ), ଭାଇ ବୀର ସିଂଙ୍କ ସାହିତ୍ୟିକ ସୃଷ୍ଟିର ବ୍ୟାପ୍ତି ଓ ପୁଷ୍ଟି । ତାଙ୍କର ପ୍ରଥମ ଉପନ୍ୟାସ 'ସୁନ୍ଦରୀ'ର (୧୮୯୮ ପ୍ରକାଶିତ) ଏପର୍ଯ୍ୟନ୍ତ ଏକଲକ୍ଷ ଖଣ୍ଡ ବିକ୍ରି ହୋଇ ସାରିଛି । 'ସୁନ୍ଦରୀ' ଉପନ୍ୟାସ ପରେ ତାଙ୍କର "ବିଜେ ସିଂ" ଏବଂ "ସତଓନ୍ କଉର" ଉପନ୍ୟାସ ପ୍ରକାଶିତ ହୋଇଥିଲା । ଏହି ସମସ୍ତ ଉପନ୍ୟାସର ବିଷୟବସ୍ତୁ ଓ ପରିକଳ୍ପନାରେ ଅଷ୍ଟାଦଶ ଶତାବ୍ଦୀର ପଞ୍ଜାବହିଁ ବିଶେଷ ପ୍ରତିଫଳିତ, ଯେଉଁ ସମୟରେ କି ପଞ୍ଜାବ ରାଜ୍ୟର ସୌନ୍ଦର୍ଯ୍ୟ ଓ ସମ୍ପଦ ଉପରେ ବିଦେଶୀୟମାନଙ୍କର ଶ୍ୟେନଦୃଷ୍ଟି ଠୁଳ ହେଉଥିଲା । ତାଙ୍କର ଉପନ୍ୟାସ "ବାବା ନଧସିଂ"ରେ ଶିଖ-ମାନଙ୍କର ବୀରତ୍ୱ ଓ ଗୌରବର ସୂଚନା ଦେଖିବାକୁ ମିଳେ । ସେହିପରି 'ସୁନ୍ଦରୀ' ଉପନ୍ୟାସର ନାୟିକା ମୁସଲିମ୍ ଦୁର୍ବୃତ୍ତ କବଳରୁ ନିଜର ସତୀତ୍ୱ ଅକ୍ଳେଶରେ ରକ୍ଷା କରିପାରିଥିଲା ।

କଥନକଳା ଏବଂ ଶିଳ୍ପକଳା ଦୃଷ୍ଟିରେ ଭାଇ ବୀର ସିଂହଙ୍କର ଉପନ୍ୟାସରେ କେତେକ ଦୁର୍ବଳତା ପରିଲକ୍ଷିତ ହୁଏ । ମାତ୍ର ପଞ୍ଜାବୀ ସାହିତ୍ୟରେ ଏହା ଆଧୁନିକ ଯୁଗର ପ୍ରାକ୍-ସମୟ ହୋଇଥିବାରୁ ଏତାଦୃଶ ଶୈଳ୍ପିକ ଅଭାବ ଉପେକ୍ଷିତ ହେବାର କଥା । ଭାଇ ବୀର ସିଂହଙ୍କର ଉପନ୍ୟାସ ଓ ଗଳ୍ପସମୂହ ଆଖ୍ୟାନ ଏବଂ ନୀତିବାଦ-ଦ୍ୱାରା ଚାଳିତ । ତାଙ୍କ କଥାଶିଳ୍ପର ଚରିତ୍ରସମୂହ ନିର୍ଦ୍ଦିଷ୍ଟ ଆଦର୍ଶାନୁସାରେ ପରିକଳ୍ପିତ । ଶିଖ୍ ଧର୍ମତତ୍ତ୍ୱ ଏବଂ ଶିଖ୍ ସମ୍ପ୍ରଦାୟର ଇତିହାସ ଅନୁଶୀଳନ କରି ଭାଇ ବୀର ସିଂହ କେତେକ ନୂତନ ଆଲୋକପାତ କରିଥିବାର ଜଣାଯାଏ ।

ଭାଇ ବୀର ସିଂହଙ୍କ କାବ୍ୟ-କବିତାରେ ଜୀବନର ନୂତନ ମୂଲ୍ୟବୋଧ, ମାନବିକ ମର୍ଯ୍ୟାଦା, ପ୍ରକୃତି-ସୌନ୍ଦର୍ଯ୍ୟପ୍ରାଣତା ଏବଂ ବ୍ୟକ୍ତିର ମୌଳିକ ଅଧିକାର ବହୁଭାବରେ ବର୍ଣ୍ଣିତ । ତାଙ୍କ କବିତାରେ ଆଧ୍ୟାତ୍ମିକ ସ୍ୱର ମୁଖ୍ୟ ହେଲେହେଁ, ତାହାର ଯେଉଁ ବାସ୍ତବ କଳାନୈପୁଣ୍ୟ, ଭାବଗାମ୍ଭୀର୍ଯ୍ୟ ତାହା ଅନୁକରଣୀୟ । ପ୍ରକୃତିର ଅପୂର୍ବ ସୌନ୍ଦର୍ଯ୍ୟ ତାଙ୍କ କାବ୍ୟ-କବିତାରେ ଛନ୍ଦୋବଦ୍ଧ ଭାଷାରେ ବେଶ୍ ଜୀବନ୍ତ ଏବଂ ବିଶ୍ୱସ୍ତ ହୋଇପାରିଛି । ନୈସର୍ଗ ପ୍ରକୃତି ମଧ୍ୟରେ କବି ଯେପରି ଈଶ୍ୱରଙ୍କ ସତ୍ତା ଉପଲବ୍ଧି କରିପାରିଥିଲେ । କବିଙ୍କୁ କେହି କେହି ସମାଲୋଚକ ଇଂରେଜ କବି ଉଇଲିୟମ ଓ୍ୱାର୍ଡ଼ସ୍‌ଓ୍ୱାର୍ଥଙ୍କ ସହିତ ତୁଳନା କରିଥାନ୍ତି । ପ୍ରକୃତିର ରୂପ ରସ ମଧ୍ୟରେ ଅବଗାହନ କରି କବି ମଣିଷର ସୁଖଦୁଃଖ ଓ ବେଦନା ଗାନ କରିବାରେ ମଧ୍ୟ ଅଗ୍ରଣୀ ଥିଲେ ।

ସାର୍ବଜନୀନ ମଣିଷର ସମସ୍ୟା ସମାଧାନ କରିବା ପାଇଁ ଭାଇ ବୀର ସିଂହ ଯେପରି ବ୍ୟାକୁଳ ଥିଲେ । ମଣିଷ ସାର୍ବଭୌମ ଓ ଅଖଣ୍ଡ ଶକ୍ତିର ପ୍ରତୀକ । ମୁକ୍ତି ତାର ଜନ୍ମଗତ ଅଧିକାର । ଏକ ବିହଙ୍ଗ ଏବଂ ପାନ୍ଥ ମଧ୍ୟରେ କଥୋପକଥନ ଛଳରେ କବି ମୁକ୍ତିର ଯେପରି ସ୍ୱରୂପ ନିର୍ଦ୍ଦେଶ କରିଛନ୍ତି, ତାହାର ମର୍ମ ହେଉଛି—

ମୁକ୍ତିର ଅଭାବଠାରୁ ମୃତ୍ୟୁ ଶ୍ରେୟସ୍କର । ଆତ୍ମାର ମୁକ୍ତି ନଥିବା ସ୍ଥଳେ ମୃତ୍ୟୁ ବାଞ୍ଛନୀୟ । ଏ ମଣିଷ ମୁକ୍ତି ପାଇଁ କରିଛି ସଂଗ୍ରାମ । ମଣିଷର ମୁକ୍ତି ପାଇଁ ଯେଉଁମାନେ ନିଜକୁ ଉତ୍ସର୍ଗ କରନ୍ତି, ଧନ୍ୟ ସେହିମାନେ, ଧନ୍ୟ ସେହିମାନେ ନିଖିଳ ସୃଷ୍ଟିରେ ।

ସ୍ୱଦେଶ ଭାବନା, ଦେଶାତ୍ମବୋଧ ଭାଇ ବୀର ସିଂହଙ୍କ କାବ୍ୟ କବିତାର ଅନ୍ତର ଏକ ଉଜ୍ଜ୍ୱଳ ପରମ୍ପରା । ସାର୍ବଜନୀନ ପ୍ରେମ, ତ୍ୟାଗର ମହତ୍ତ୍ୱ, ବିଶ୍ୱଭ୍ରାତୃଭାବ ତାଙ୍କ କବିଜୀବନର ପ୍ରଧାନ ଆକାଂକ୍ଷା । ଶିଖ୍ ସମ୍ପ୍ରଦାୟର ଜଡ଼ତା ଦେଖି ସେ ଲଜ୍ଜିତ ହୋଇଥିଲେ ଏବଂ ମୁସଲମାନମାନଙ୍କର ଅତ୍ୟାଚାର ତାଙ୍କୁ ଆନ୍ତର ବ୍ୟଥିତ କରିଥିଲା । ଆଧୁନିକ ପଞ୍ଜାବୀ ସାହିତ୍ୟରେ ଦୃଢ଼ ଦେଶାତ୍ମବୋଧ ଓ ଜାତୀୟତାର ବୀର ସିଂହ ଥିଲେ ପ୍ରବର୍ତ୍ତକ । ପଞ୍ଜାବୀ ସାହିତ୍ୟରେ ସେ ହେଉଛନ୍ତି ସର୍ବପ୍ରଥମ ସାହିତ୍ୟ ଏକାଡ଼େମୀ ପୁରସ୍କାର ବିଜେତା । 'ରାଣା ସୁରତ୍ ସିଂ'ର ନାୟିକା ରାଣୀ ରାଜ୍ ଏବଂ ନାୟକ ରାଣା ସୁରତ୍ ସିଂହ ଯଥାକ୍ରମେ ମୁକ୍ତ ଆତ୍ମାର ପ୍ରତୀକ । ପ୍ରଥମ ଥର ପାଇଁ ଅମିତ୍ରାକ୍ଷର ଛନ୍ଦ ଏଥିରେ ବ୍ୟବହୃତ । କବିତା, ନାଟକ, ଗଳ୍ପ, ଉପନ୍ୟାସ, ପ୍ରବନ୍ଧ ପ୍ରଭୃତି ବିଭିନ୍ନ ବିଭାଗରେ ଭାଇ ବୀର ସିଂହଙ୍କର କୃତିତ୍ୱ ସୁସ୍ପଷ୍ଟ । ଗ୍ରନ୍ଥସାହେବ ତାଙ୍କର ଅଧିକାଂଶ ରଚନାର ପ୍ରେରଣା । ଶିଖ୍ ଧର୍ମର ମୌଳିକ ତତ୍ତ୍ୱ ଓ ବାଣୀ ତାଙ୍କର ସାହିତ୍ୟିକ କୃତିମାନଙ୍କରେ ପ୍ରତିଫଳିତ । ଅତୀତର ଭିତ୍ତି ଉପରେ ଆଧୁନିକ ସମାଜ ଗଠନ ନିମନ୍ତେ ସେ ଯେପରି ଆଗ୍ରହୀ ଥିଲେ ।

ପଞ୍ଜାବୀ କବିତାରେ ବାସ୍ତବତାର ପୁରୋଧାରୂପେ ଭାଇ ପୂରଣ ସିଂହ (୧୮୮୧-୧୯୩୧) ନୂତନ କାବ୍ୟରୀତି, ଭାବ ସ୍ୱାତନ୍ତ୍ର୍ୟ ଏବଂ ଚିନ୍ତା-ନୂତନତା ନିମନ୍ତେ ସୁପରିଚିତ । ପୁରାତନ ଛନ୍ଦୋବଦ୍ଧ ଶୈଳୀ ପରିତ୍ୟାଗ କରି ସେ ଅପେକ୍ଷାକୃତ ଆଧୁନିକ ଶୈଳୀ ଅବଲମ୍ବନ କଲେ । ପଞ୍ଜାବୀ କବିତାରେ ସେ ଆଧୁନିକ ଛନ୍ଦ ଓ ପାଶ୍ଚାତ୍ୟ ଭାବର ପ୍ରବର୍ତ୍ତକ । ଏହି କବିଙ୍କର 'ଖୁଲେ ଘଣ୍ଡ' (୧୯୧୩), 'ଖୁଲେ ମଏଦାନ' (୧୯୨୫) ବିଶିଷ୍ଟ କାବ୍ୟଗ୍ରନ୍ଥ । ସେହିପରି ଲାଲ୍ କବି ଧନୀରାମ ଚାତ୍ରିକ (୧୮୭୬)ଙ୍କ କବିତାରେ ନୂତନ ଯୁଗର ଦେଶାତ୍ମବୋଧ, ସୂକ୍ଷ୍ମ ପ୍ରକୃତି ଚିତ୍ରଣ ଏବଂ ମାନବ ମନର ସୂକ୍ଷ୍ମ ଆବେଗାନୁଭୂତିହିଁ ଶୋଭନ ଭାବରେ ପ୍ରତିବିମ୍ବିତ । ଭାଇ ବୀର ସିଂହ ଏବଂ ପୂରଣ ସିଂହଙ୍କ ପରେ ପ୍ରାକ୍ ଆଧୁନିକ ପଞ୍ଜାବୀ କାବ୍ୟ-କବିତା କ୍ଷେତ୍ରରେ ଧନୀରାମ ଚାତ୍ରିକହିଁ ଶ୍ରେଷ୍ଠ ବିବେଚିତ । ତାଙ୍କର 'ହିମାଲୟ', 'ଗଙ୍ଗା', 'ରାତ୍ରି', 'ଚନ୍ଦନବାରୀ' ଏବଂ 'କେଶରକିୟାରୀ' ପ୍ରଭୃତି ପ୍ରଶଂସିତ କାବ୍ୟ-କବିତା । 'କୃପାସାଗର' (୧୮୭୨-୧୯୩୨)ଙ୍କର ରୋମାନ୍ସଧର୍ମୀ 'ଲକ୍ଷ୍ମୀ ଦେବୀ' (୧୯୨୦) ଏକ ଐତିହାସିକ ରଚନା ।

ବିଂଶ ଶତାବ୍ଦୀର ପ୍ରଥମ ପାଦରେ ଗୁରୁମୁଖ ସିଂହ ମୁସାଫିର, ନନ୍ଦଲାଲ ନୁରପୁରୀ, ହୀରା ସିଂହ ଦର୍ଦ, ଚରଣ ସିଂହ ଶହୀଦ, ହିଦାୟେତୁଲ୍ଲା ପ୍ରଭୃତି କବିମାନଙ୍କର କୃତି ପଞ୍ଜାବୀ ସାହିତ୍ୟକୁ ସମୃଦ୍ଧ କରିଥିଲା । 'ଗଜଲ'ର ଆଙ୍ଗିକ ମଉଲାବକ୍ସ ଫାର୍ସୀଙ୍କ କବିତାରେ ପରିବର୍ତ୍ତିତ, ହୀରା ସିଂଙ୍କ କବିତାରେ ପ୍ରଗତିଶୀଳ ଦୃଷ୍ଟିଭଙ୍ଗୀ, ଗୁରୁମୁଖ ସିଂହଙ୍କ କବିତାରେ ରବୀନ୍ଦ୍ରନାଥଙ୍କ ପ୍ରଭାବ (ଅନୁବାଦକ), ନନ୍ଦଲାଲ ନୁରପୁରୀଙ୍କ ରଚନାରେ ଲୋକଗୀତି ଧର୍ମ ପ୍ରତିଫଳିତ । କିନ୍ତୁ ଏହି କବିମାନଙ୍କଠାରୁ ଭାବ ଓ ଭଙ୍ଗୀରେ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ହେଉଛନ୍ତି ଅତ୍ୟାଧୁନିକ ଯୁଗର କତିପୟ କବି; ଯଥା—ମୋହନ ସିଂହ (୧୯୦୫), ପ୍ରୀତମ୍ ସିଂହ ସଫିର (୧୯୧୬) ଏବଂ ଶ୍ରୀମତୀ ଅମୃତା ପ୍ରୀତମ୍ (୧୯୧୯) । ଏମାନଙ୍କ କବିତା ସମାଜ-ସଚେତନତା ଏବଂ ପ୍ରଗତିଶୀଳ ଦୃଷ୍ଟିକୋଣଦ୍ୱାରା ଚିହ୍ନିତ । ପ୍ରଭଜୋତ କାଉରଙ୍କ କବିତାକୃତି ପଞ୍ଜାବୀ ପାଠକ ସମାଜରେ ଖୁବ୍ ଆଦୃତ ହୋଇପାରିଛି । 'ପାବି' ତାଙ୍କର ଶ୍ରେଷ୍ଠ କୃତି । ଅମୃତା ପ୍ରୀତମ୍‌ଙ୍କର 'କାଗଜ ତେ କାନଭାସ' (କାଗଜ ଓ କାନଭାସ) ତାଙ୍କ କବିତା ପରମ୍ପରାର ଚରମ ପରିଣତି ।

ମୋହନ ସିଂହଙ୍କର କାବ୍ୟ-କବିତା ବହୁମୁଖୀ ପ୍ରତିଭାର ସଙ୍କେତ ବହନ କରିଥାଏ । ଗାଥାକବିତା, ଗୀତିକବିତା ଏବଂ ଲୋକସାହିତ୍ୟ ତାଙ୍କର ବୈଶିଷ୍ଟ୍ୟ । ପରମ୍ପରା ଏବଂ ବୈଜ୍ଞାନିକ ଦୃଷ୍ଟିକୋଣ ଉଭୟର ମିଳନରେ ତାଙ୍କର କାବ୍ୟ ସାଧନା ଦୀପ୍ତ । 'ସବେ ପତର' ତାଙ୍କର ବହୁ ପ୍ରଶଂସିତ କବିତା ପୁସ୍ତକ । ସେ ମଧ୍ୟ 'ପଂଜ-ଦରିୟା' ମାସିକପତ୍ରର ସମ୍ପାଦକ । ଶ୍ରୀମତୀ ଅମୃତା ପ୍ରୀତମ୍‌ଙ୍କ କବିତା

ଆଧୁନିକ ଉପମା, ରୂପକଳ୍ପରେ ମଣ୍ଡିତ । କିନ୍ତୁ ପ୍ରୀତମ୍ ସିଂହଙ୍କ କବିତା ଅତ୍ୟାଧୁନିକ ଗୀତ ଓ ଚିନ୍ତାର ପ୍ରତୀକ । ଜୀବନ ଓ ସମାଜର ଯଥାର୍ଥ ଦ୍ୱନ୍ଦ୍ୱାତ୍ମକ ଚିତ୍ର ପରିବେଷଣ କରିବାରେ ସେ ଯେପରି ସିଦ୍ଧହସ୍ତ । ତାଙ୍କ କବିତାର ଆଙ୍ଗିକ ସମ୍ପୂର୍ଣ୍ଣ ନୂତନ । ଆଧୁନିକ ଯୁଗରେ ଅବତାର ସିଂହ ଆଜାଦ, ବାବା ବଲବନ୍ତ ପ୍ରଭୃତି କବିଙ୍କ ରଚନାରେ ଗଭୀର ଜାତୀୟତା ସୂଚିତ । "ବିଶ୍ୱବେଦନା" ଓ "ଜ୍ୱାଲାମୁଖୀ" ଯଥାକ୍ରମେ ସେମାନଙ୍କର ବହୁ ପଠିତ ରଚନା । ଅବତାର ସିଂହ ଗୁରୁଗୋବିନ୍ଦ ସିଂହଙ୍କ ଜୀବନୀକୁ ଭିତ୍ତି କରି "ମର୍ଦଆଗାମ୍ରା" ନାମରେ ଏକ ପୁସ୍ତକ ଲେଖିଥିଲେ । ନୂତନ ଯୁଗର ଆହ୍ୱାନରେ ଏହି କବିମାନଙ୍କୁ ରକ୍ଷଣଶୀଳ ଆଖ୍ୟା ଦେଇ ଉଗ୍ରପନ୍ଥୀ ତରୁଣ କବିମାନେ କବିତାର ରୂପାନ୍ତର ପାଇଁ ଧ୍ୟାନ ଦେଇଥିଲେ ।

ଅତ୍ୟାଧୁନିକ ପଞ୍ଜାବୀ କବିତାର ସ୍ୱର ଓ ସ୍ୱରୂପ ଗତ କୋଡ଼ିଏ ବର୍ଷ ମଧ୍ୟରେ ସମ୍ପୂର୍ଣ୍ଣ ପରିବର୍ତ୍ତିତ ହୋଇଯାଇଛି । ଆଙ୍ଗିକ, ସାଜସଜ୍ଜା, ଜଟିଳ ବୌଦ୍ଧିକତା, ବସ୍ତୁବାଦୀ ରୂପକଳ୍ପ ଏବଂ ଧର୍ମନିରପେକ୍ଷ ଦୃଷ୍ଟିକୋଣ, ଷଷ୍ଠଦଶକ ଏବଂ ସପ୍ତଦଶକ କବିତାରେ ବିଶେଷ ପ୍ରତିଫଳିତ । କବିତା ଆନ୍ଦୋଳନର ପୃଷ୍ଠଭୂମିରେ ବହୁ ଶକ୍ତିଧର ତରୁଣ କବିଙ୍କର ଆବିର୍ଭାବ ଉଲ୍ଲେଖଯୋଗ୍ୟ । ନୂତନ ସମ୍ଭାବନା, ନୂତନ ଆବିଷ୍କାର ସେମାନଙ୍କ କବିତାରେ ପ୍ରତିଫଳିତ ହେଲା । ସାମାଜିକ ସଂସ୍କାର ଏବଂ ପରିବର୍ତ୍ତନର ଆୟୁଧରୂପେ ଆଧୁନିକ କବିତାର ବ୍ୟବହାର ଏକ ଉଲ୍ଲେଖଯୋଗ୍ୟ ଘଟଣା । ବିଦ୍ରୋହୀ ସ୍ରଷ୍ଟା ଓ ରକ୍ତାକ୍ତ ସମାଜର ଏହାହିଁ ହେଉଛି ସ୍ପନ୍ଦନ । କିନ୍ତୁ ଅତ୍ୟାଧୁନିକ କବି ତାର କବିତା ସୃଷ୍ଟିକୁ ଅତ୍ୟାଧୁନିକ କରି ସଜାଇବାର ଚେଷ୍ଟାରେ ଯେପରି ପ୍ରତିକ୍ରିୟାଶୀଳ ହୋଇଛି, ତାହା ଶିଳ୍ପସୃଷ୍ଟିରେ ସମର୍ଥିତ ହୋଇ ନ ପାରେ । କ୍ରୋଧ, ବିରକ୍ତି, ଚିତ୍କାର ଏତାଦୃଶ କବିତାର ଉତ୍ସ୍ଥିତା ବୋଲି ଜାଣିବାକୁ ହେବ । ସୃଷ୍ଟି ନୈପୁଣ୍ୟ ସାହିତ୍ୟିକ ମର୍ଯ୍ୟାଦା ଅପେକ୍ଷା ଅତ୍ୟାଧୁନିକ କବିତାରେ ଭାବ-ପ୍ରଗଲ୍‌ଭତାହିଁ ବିଶେଷ ପରିଦୃଷ୍ଟ । ପୂର୍ବ ଯୁଗର ଯେଉଁ କବିମାନେ ଯଥା ତାରାସିଂ କମଳ, ଏସ୍. ଏସ୍. ମିଶା, ଦେବେନ୍ଦ୍ର ସତ୍ୟାର୍ଥୀ ଏବଂ ସୁଖବୀର ପଞ୍ଜାବୀ କବିତାର ମର୍ଯ୍ୟାଦା ବୃଦ୍ଧି କରିଥିଲେ ।

ହରଭଜନ ସିଂହଙ୍କର "ନା ଧୂପ ନା ରୁଚିସ୍ୱେଁ" (ନୁହେଁ ସୂର୍ଯ୍ୟକିରଣ ନୁହେଁ ଛାଇ) କବିତା କୃତି ଅତ୍ୟାଧୁନିକ ପଞ୍ଜାବୀ କବିତାର ରୂପରେଖ ପ୍ରଥମ ଥର ପାଇଁ ନିର୍ଦ୍ଦିଷ୍ଟ କରିଥିଲା ।

ଅତ୍ୟାଧୁନିକ ପଞ୍ଜାବୀ କବିତାର ଭିତ୍ତି ସ୍ଥାପନ କରିବାରେ ହରଭଜନ ସିଂହଙ୍କର ଦାନ ସ୍ୱୀକାର୍ଯ୍ୟ । ଗଭୀର ତତ୍ତ୍ୱ ଦାର୍ଥ ଜୀବନର ଅର୍ଥପୂର୍ଣ୍ଣ ବିଶ୍ଳେଷଣ, ପରିସ୍ଥିତିର ସମ୍ମୁଖୀନ ହେବାପାଇଁ ଏକ ଦୁର୍ଦ୍ଦମ ଅଭିଳାଷ ତାଙ୍କ କବିତାର ଲକ୍ଷଣ ।

କୋଳାହଳ ଏବଂ ଦୁଃଖ-ଜଞ୍ଜାଳପୂର୍ଣ୍ଣ ପୃଥିବୀରେ କବି ହରଭଜନ ସିଂହ ଯେପରି ଏକ ନିଃସଙ୍ଗ ଏବଂ ବିବିକ୍ତ ସ୍ୱର । ତାଙ୍କର ଆଉ ଏକ କବିତାକୃତି ହେଉଛି "ସାରକ୍ ଦେ ସାଫ୍ ତେ" (ରାସ୍ତା ଉପରେ) ନୂତନ ଆଙ୍ଗିକ ଏବଂ ନୂତନ ଭାବକଳ୍ପ ନିମନ୍ତେ ପ୍ରସିଦ୍ଧ । କବିର ବିଦ୍ରୋହୀ ଜଙ୍ଗମ ମନୋବୃତ୍ତି କବିତାର ପ୍ରତ୍ୟେକ ପଂକ୍ତିରେ ପ୍ରତିଫଳିତ । ସର୍ବବିଧ ସାମାଜିକ ସଂସ୍ଥା ବିରୋଧରେ ସେ ଥିଲେ ବିଦ୍ରୋହୀ । ହରିଭଜନ ତାଙ୍କର ଏକ କବିତାରେ ନିଜ ସ୍ଥିତିର ଯେପରି ବିଶ୍ଳେଷଣ କରିଛନ୍ତି, ତାହା ଉଲ୍ଲେଖଯୋଗ୍ୟ । କବିତାର ମର୍ମ ହେଉଛି—

ମୋର ଶଯ୍ୟନ ପୂର୍ବରୁ,
ଯାହାକି ତୁମେ ଫେରାଇ ଦେଇଛ
ମୁଁ ମୋହର ସତ୍ତାରୁ ବିସ୍ମୃତ ହୋଇଯାଏ
ଶୂନ୍ୟ ବିନ୍ଦୁ ସଦୃଶ ବନ୍ଦୀ ନିଜ ବେଷ୍ଟନୀରେ
ଶୂନ୍ୟମଣ୍ଡଳରେ ମୁଁ ଘୂରିବୁଲେ
ମୋର କେହି ସାଙ୍ଗସାଥୀ ନାହିଁ
ମୋର ସାଙ୍ଗ ସାଥୀ ଏହି ମୋର ନିଃସଙ୍ଗତା ।

କବି ହରଭଜନ ସିଂହଙ୍କର ଏତାଦୃଶ କାବ୍ୟିକ ନିଃସଙ୍ଗତା ଯୁବ କବିମାନଙ୍କ କବିତାରେ ଭିନ୍ନ ରୂପ ଧାରଣ କରିଥିଲା । ମହନ୍‌ଜିତ୍, ସତୀକୁମାର, ହରନାମ, ମିନ୍ଦର ପ୍ରଭୃତି କବିମାନେ କବିତାରେ ଆହୁରି ନୂତନ ସ୍ୱର ଉତ୍ତୋଳନ କରିଥିଲେ । ସମାଜ, ସାହିତ୍ୟ, ପରମ୍ପରା ଏବଂ ପ୍ରତାରଣା ବିରୋଧରେ ସେମାନେ କବିତା ମାଧ୍ୟମରେ ଉଦ୍‌ଗୀରଣ କରିଥିଲେ ।

ସାହିତ୍ୟର ମୌଳିକ ଆଦର୍ଶ ଓ ଭିତ୍ତିକୁ ଆଶ୍ରୟ କରି ଯୁବ କବିମାନଙ୍କର କବିତା ସାର୍ବଜନୀନ ସତ୍ୟ ପ୍ରତିଫଳିତ କରିଥିଲା । ଆଧୁନିକ ମଣିଷର ଯେଉଁ କରୁଣ ବିୟୋଗାତ୍ମକ ସ୍ଥିତି, ତାହାହିଁ ଅତ୍ୟାଧୁନିକ କବିତାର ପ୍ରାଣସ୍ପନ୍ଦନ । ସମାଜରେ ବ୍ୟକ୍ତିର ଯେଉଁ ସ୍ଥିତି, ତାହାହିଁ ଆଧୁନିକ କବିତାରେ ପ୍ରତିପାଦିତ ବସ୍ତୁ । ସାଂପ୍ରତିକ ବ୍ୟକ୍ତି ଯେପରି ନିଃସଙ୍ଗ ଜୀବନ ଯାପନ କରୁଛି, ତାହାର ପ୍ରତିକ୍ରିୟା ଯୁବ କବିର ହୃଦୟରେ କଂପନ ସୃଷ୍ଟି କରିପାରୁଛି । ସହରି ସଭ୍ୟତାର ଯାନ୍ତ୍ରିକ ବୈକଲ୍ୟ ବ୍ୟକ୍ତିକୁ ତାର ମୌଳିକ ସତ୍ତାରୁ ବଂଚିତ କରୁଛି । ଏହି ଯାନ୍ତ୍ରିକ ବିଫଳତା ମିନ୍ଦରଙ୍କ କବିତାରେ ନୂତନ ଚିତ୍ରକଳ୍ପ ସାହାଯ୍ୟରେ ପ୍ରକଟିତ ହୋଇପାରୁଛି । ଶୈଳିକ ସ୍ୱୀକାର୍ଯ୍ୟତାରେ ତାଙ୍କର କବିତାସମୂହ ଚର୍ଚ୍ଚିତ । ସତୀକୁମାରଙ୍କ କବିତା ବିଦ୍ରୋହୀ ଆତ୍ମାର ପ୍ରତିଫଳନ ବୋଲି ଜଣାଯାଏ । ଗଭୀର ଅଭିଜ୍ଞତା ବୌଦ୍ଧିକତା, ପାଣ୍ଡିତ୍ୟ,

ନୈତିକ ବିଶ୍ବର ତାଙ୍କ କବିତାରେ ପ୍ରତିଫଳିତ । ହରିନାମଙ୍କ କବିତା ସମସ୍ତ ସାହିତ୍ୟିକ ମୀତବାଦ ବିରୋଧରେ ଉଦ୍ଦିଷ୍ଟ । ହରିନାମଙ୍କ ଗୋଟିଏ କବିତାର ମର୍ମ ହେଉଛି—

ପ୍ରତ୍ୟେକ ନୂତନ ମୃତ୍ୟୁର ଚନ୍ଦନ ସହିତ
ମୁଁ ବାସ କରିବାକୁ ଅଭ୍ୟାସ କରିଛି,
ଅତୀତର କୌଣସି ଅନ୍ଧକାର ଗୁମ୍ଫା
ମୋତେ ଆକ୍ରାନ୍ତ କରି ନପାରେ···
ମୋତେ ହତ୍ୟା କରିବାକୁ ଇଚ୍ଛା ଥିଲେ
ମୋଠାରୁ ମୋ ଚିନ୍ତା ଫେରାଇ ନିଅ ।

ନୂତନ ଆନ୍ଦୋଳନପନ୍ଥୀ କବିମାନେ ବ୍ୟକ୍ତି ଓ ସମାଜର ଆତ୍ମପ୍ରତାରଣାକୁ ଘୃଣା କରିଛନ୍ତି । ଅମିତୋଜ, ଖୁରସିଦ ଅଜବକମଲ, ରବିନ୍ଦର ରବି ପ୍ରମୁଖ ତରୁଣ କବି ପରୀକ୍ଷା-ନିରୀକ୍ଷା ଚଳାଇଛନ୍ତି । ସେମାନଙ୍କ ପରୀକ୍ଷା-ନିରୀକ୍ଷା ପଞ୍ଜାବୀ କବିତା-ରାଜ୍ୟରେ ନୂତନ ଢେଉ (new wave) ସୃଷ୍ଟି କରିପାରିଛି । ଯୁବକବିଗଣ ସେମାନଙ୍କ କବିତାରେ ଶିଖ୍ ଇତିହାସରୁ ବହୁଳ ଦୃଷ୍ଟାନ୍ତ ପ୍ରୟୋଗ କରୁଛନ୍ତି । ଗୁରୁ ଗୋବିନ୍ଦ ସିଂହ ଏବଂ ବାବା ଦୀପସିଂହଙ୍କ ସ୍ମୃତି ସେମାନଙ୍କ କବିତାରେ ବାରମ୍ବାର ଉଦ୍‌ବୋଧିତ ହୋଇଛନ୍ତି । ଅତ୍ୟାଧୁନିକ ବିଦ୍ରୋହୀ କବିମାନଙ୍କର ସ୍ୱର, ଭାବ ଏବଂ ଚିନ୍ତନ ଏପରି ବୈପ୍ଲବିକ ହେଲେହେଁ, ପଞ୍ଜାବୀ କାବ୍ୟ-କବିତାପ୍ରତି ସେମାନଙ୍କର ଦାନ ସମ୍ପର୍କରେ ପାଠକ ମନରେ ସନ୍ଦେହ ଦେଖାଦିଏ ।

ପ୍ରାଚୀନ ପଞ୍ଜାବୀ କବିତାର ଆଧ୍ୟାତ୍ମିକତା ସ୍ଥାନରେ ଆଧୁନିକ କବିମାନେ ରୋମାନ୍‌ଟିସିଜମ ଏବଂ ମାର୍କସବାଦ ପ୍ରକଟିତ କରିପାରିଛନ୍ତି । ମାତ୍ର ଏହିସବୁ ଅତ୍ୟାଧୁନିକ ବୌଦ୍ଧିକ ଜଟିଳ ସୃଷ୍ଟିର ସାହିତ୍ୟିକ ତଥା ଶୈଳିକ ମୂଲ୍ୟ କେତେ ଦୂର, ତାହା ବିଚାର୍ଯ୍ୟ ।

ନାଟକ—

ପଞ୍ଜାବୀ ସାହିତ୍ୟରେ ଆଧୁନିକ ନାଟକର ଜନ୍ମ ମଧ୍ୟ ଅନୁବାଦରୁ ହୋଇଥିଲା । ପ୍ରଥମେ ସଂସ୍କୃତ ଏବଂ ହିନ୍ଦୀରୁ କେତେକ ନାଟକ ପଞ୍ଜାବୀ ଭାଷାରେ ଅନୂଦିତ ହେଲା । ପରେ ସେକ୍ସ୍‌ପିୟରଙ୍କର କେତେକ ନାଟକ ମଧ୍ୟ ଅନୂଦିତ ହୋଇଥିଲା । ପଞ୍ଜାବୀ ନାଟକର ପ୍ରଥମ ପର୍ଯ୍ୟାୟ ବ୍ୟଙ୍ଗଧର୍ମୀ । ଦୟାଲ ସିଂହ କଲେଜର ଜି. ଇ. ଗ୍ରିଟର୍କଙ୍କ ପତ୍ନୀ ଲେଡି ରିଚାର୍ଡ଼ ସର୍ବପ୍ରଥମେ ଇଂରେଜ ନାଟକ ଛାଞ୍ଚରେ

ପଞ୍ଜାବୀ ଭାଷାରେ ନାଟକ ଲେଖିବାପାଇଁ ତାଙ୍କର କେତେକ ଛାତ୍ରଙ୍କୁ ପ୍ରବର୍ତ୍ତାଇଥିଲେ । ସେ ୧୯୧୩ ମସିହାରେ ପଞ୍ଜାବୀ ନାଟକ 'ଦ ବ୍ରାଇଡ୍'ର ପରିଚାଳନା କରିଥିଲେ । ୧୯୧୯ ମସିହାରେ ଲାହୋର କଲେଜରେ "ବୃଦ୍ଧେ ଡ଼ ମଟ" ନାମକ ନାଟକ ପ୍ରସ୍ତୁତ ଏବଂ ମଞ୍ଚସ୍ଥ କରିଥିଲେ । ଏହା ସମସାମୟିକ ବିବାହ ପ୍ରଥାକୁ କେନ୍ଦ୍ର କରି ଲିଖିତ । ଆଧୁନିକ ପଞ୍ଜାବୀ ନାଟକର ପ୍ରକୃତ ପ୍ରବର୍ତ୍ତକ ଅଧ୍ୟାପକ ଈଶ୍ୱରଚନ୍ଦ୍ର ନନ୍ଦା ନୂତନ ନୂତନ କଥାବସ୍ତୁ, ଆଧୁନିକ ଜୀବନ ସମସ୍ୟାକୁ କେନ୍ଦ୍ର କରି କେତେଖଣ୍ଡି ନାଟକ ରଚନା କରିଥିଲେ । ଚରିତ୍ରଚିତ୍ରଣ, ସଂଳାପ ଏବଂ ନାଟକୀୟ ଚମତ୍କାରିତା ଦୃଷ୍ଟିରେ ତାଙ୍କର ନାଟକଗୁଡ଼ିକ ରସୋତ୍ତୀର୍ଣ୍ଣ ଏବଂ ସାଫଲ୍ୟମଣ୍ଡିତ । ସେ ନିଜେ ନାଟକ ଲେଖି ଗ୍ରାମାଞ୍ଚଳକୁ ଯାଇ ରଙ୍ଗମଞ୍ଚରେ ଅଭିନୀତ କରାଉଥିଲେ । ସ୍ତ୍ରୀଶିକ୍ଷା, ବିଧବା ବିବାହ, ଯୌତୁକପ୍ରଥା ଏବଂ ସାମାଜିକ ଦୁର୍ନୀତିହିଁ ତାଙ୍କ ନାଟକମାନଙ୍କରେ ବ୍ୟଙ୍ଗାତ୍ମକ ଭାଷାରେ ଚିତ୍ରିତ । ତାଙ୍କର 'ସୁଭଦ୍ରା' ୧୯୨୦ ଏବଂ 'ଲୀଲାଦୀ ଭାୟୁ' ୧୯୩୦ ନାଟକ ପୂର୍ବ ପ୍ରଚଳିତ କୁସଂସ୍କାର ଏବଂ ଯୌତୁକ ପ୍ରଥାର ବିରୋଧ କରିଥିଲା । ନାଟକରେ କଥିତ ଗ୍ରାମ୍ୟ ଭାଷାର ଉପଯୋଗିତା ପ୍ରଥମେ ନନ୍ଦା ଅନୁଭବ କରିଥିଲେ । 'ସାମୁସାହା' ସୋସିଏଲ ସର୍କଲ ତାଙ୍କର ନାଟକ ଏବଂ 'ଝାଲକେରୀ' ତଥା 'ଲିସ୍‌କାରୀ' ତାଙ୍କର ଦୁଇଖଣ୍ଡି ଏକାଙ୍କିକା ସଂକଳନ । ତାଙ୍କ ନାଟକର ଚରିତ୍ରସମୂହ ସ୍ୱାତନ୍ତ୍ର୍ୟପୂର୍ଣ୍ଣ ଏବଂ କଥାବସ୍ତୁ ଅତ୍ୟନ୍ତ ବାସ୍ତବଧର୍ମୀ । ଗୁରୁବକ୍ସ ସିଂହ ତାଙ୍କର 'ପୂର୍ବତେ ପଶ୍ଚିମ' ନାଟକରେ ଇଂରାଜୀ ଶିକ୍ଷାପ୍ରାପ୍ତ ଭାରତୀୟ ଯୁବକମାନେ କିପରି ସ୍ୱଦେଶ ସମାଜରେ ଚଳିବାପାଇଁ ଅନୁପଯୁକ୍ତ, ତାହା ଦର୍ଶାଇଥିଲେ । "ନଓ୍ୱାଗୃନନ" ନାଟକଟି ବ୍ୟଙ୍ଗବିଦ୍ରୂପାତ୍ମକ ଏବଂ ତାହା ମଧ୍ୟବିତ୍ତ ପରିବାରର ଶିକ୍ଷିତ କିନ୍ତୁ ପଥଭ୍ରଷ୍ଟ ଯୁବକମାନଙ୍କୁ କେନ୍ଦ୍ର କରି ଲିଖିତ । କବି କୃପାସାଗରଙ୍କର 'ରଣଜିତ୍ ସିଂହ' (୧୯୨୩) ଏକ ଐତିହାସିକ ନାଟକ । ଏକାଙ୍କିକା ରଚନାରେ ସନ୍ତ ସିଂ ସେଖୋଁ (୧୯୦୮) ହରଚରଣ ସିଂ, ବଲବନ୍ତ ଗର୍ଗୀ (୧୯୧୮), ସୀଲ୍, ଭାଟିୟା ଗୁରୁଦୟାଲ ସିଂ ଖୋସଲା, ବଲବୀର ସିଂ ପ୍ରଭୃତି ସୁନାମ ଅର୍ଜନ କରିଅଛନ୍ତି । ସନ୍ତ ସିଂ ସେଖୋଁଙ୍କର ଏକାଙ୍କିକା ସଙ୍କଳନ 'ଗୃହଘର' ଏବଂ ନାଟକ କଳାକାର (ଶିଳ୍ପୀ) ଉଲ୍ଲେଖଯୋଗ୍ୟ । ଗର୍ଗୀଙ୍କର 'ଘୁଗ୍‌ଗୀ' (ପାପୀବତ) ଏକ ସାର୍ଥକ ସୃଷ୍ଟି ।

୧୯୩୦ ମସିହା ପରେ ପଞ୍ଜାବୀ ନାଟକ ତାର ଅଗ୍ରଗତିର ଦ୍ୱିତୀୟ ପର୍ଯ୍ୟାୟରେ ଉପନୀତ ହୋଇଥିଲା । ସାମାଜିକ ସଂସ୍କାରସ୍ତରରୁ କ୍ରମେ ପଞ୍ଜାବୀ ନାଟକ ମନସ୍ତାତ୍ତ୍ୱିକ ସ୍ତରକୁ ଉନ୍ନୀତ ହୋଇଥିଲା । ସନ୍ତ ସିଂ ଶେଗୋ କତିପୟ ନାଟକ ରଚନା କରିଥିଲେ । ମାତ୍ର ତାଙ୍କର ନାଟକ କେତେକ ଅଭାବପୀଡ଼ିତ, ଚରିତ୍ରଗତ ପରମ୍ପରା ବିରୋଧରେ ବିପ୍ଳବ କରିଥିଲା । ସେ କିନ୍ତୁ ନାଟକର ଗଠନକୌଶଳରେ ପ୍ରବୀଣ ନ ଥିଲେ । ତାଙ୍କ ନାଟକର ଚରିତ୍ରମାନଙ୍କର ସଂଳାପ ବହୁ ସମୟରେ କୃତ୍ରିମ

ବୋଲି ମନେ ହୋଇଥାଏ । ତାଙ୍କ ଲିଖିତ 'ଭାବୀ' ନାଟକ ଏକ ସାର୍ଥକ ସୃଷ୍ଟି । ମଧ୍ୟଯୁଗୀୟ ପୃଷ୍ଠଭୂମିରେ ପରିକଳ୍ପିତ ଏହି ନାଟକ ମାତା ଓ କନ୍ୟାଙ୍କର ପରସ୍ପର ବିଦ୍ୱେଷକୁ ବର୍ଣ୍ଣନା କରିଥିଲା । ଏହି ନାଟକ ଆବେଗପୂର୍ଣ୍ଣ ଓ ଭାବଗମ୍ଭୀର ।

ପଞ୍ଜାବୀ ନାଟ୍ୟସାହିତ୍ୟକୁ 'ଯଶୋଆ ଫଜର ଦୀନ' ଓ 'ରଫି ପିର'ଙ୍କ ଦାନ ବହୁତ । ଯଶୋଆ ତାଙ୍କ ନାଟକ 'ପିଣ୍ଡ ଦେଓ୍ୱାର'ରେ ସାଂପ୍ରତିକ ମଦ୍ୟପାନ ଓ ଋଣପ୍ରଥାକୁ ସମାଲୋଚନା କରିଥିଲେ । ନାଟକ ମାଧ୍ୟମରେ ସେ ପଞ୍ଜାବ ଗାଁଗହଳର କୃଷୀମାନଙ୍କ ପ୍ରତି ସହାନୁଭୂତି ପ୍ରକାଶ କରିଥିଲେ । ତାଙ୍କ ନାଟକର ଭାଷା ଉପଭୋଗ୍ୟ ତଥା କୃଷୀର ଅଭିବ୍ୟକ୍ତିରେ ପରିପୂର୍ଣ୍ଣ । ରଫି ପିର ନିଜେ ଅଭିନେତା ଓ ନିର୍ଦ୍ଦେଶକ ଥିଲେ । ତାଙ୍କ ଲିଖିତ ଦୀର୍ଘ ଏକାଙ୍କିକା "ଆଁଖିଆଭ୍ୟାର" ଉଲ୍ଲେଖଯୋଗ୍ୟ । ପ୍ରେମ ଓ ଈର୍ଷାକୁ କେନ୍ଦ୍ର କରି ତାଙ୍କର ନାଟକ ଲିଖିତ । ତାଙ୍କ ନାଟକମାନଙ୍କରେ ଭାବଗମ୍ଭୀରତା ଓ ଆବେଗପ୍ରଖରତା ପ୍ରତିଫଳିତ ।

ହରଚରଣ ସିଂହ ଜଣେ ବିଶିଷ୍ଟ ନାଟ୍ୟକାର । ତାଙ୍କ ନାଟକର ସଂଖ୍ୟା ଅଧିକ । ସେ କଲେଜରେ ଛାତ୍ରାବସ୍ଥାରୁ ନାଟକ ରଚନା ପ୍ରତି ଆକୃଷ୍ଟ ହୋଇଥିଲେ । ପଞ୍ଜାବର ଗ୍ରାମ୍ୟଜୀବନ ଚିତ୍ରଣରେ ସେ ଅଦ୍ୱିତୀୟ ନାଟ୍ୟକାର ।

ନାଟ୍ୟକାର କର୍ତ୍ତାର ସିଣ୍ଡୁଗଲ ପଞ୍ଜାବୀ ନାଟକରେ ପ୍ରତୀକବାଦର ପ୍ରବର୍ତ୍ତକ ବୋଲି ବିବେଚିତ ହୋଇଥାଆନ୍ତି । ସେ ମଧ୍ୟ ଜଣେ ବିଶିଷ୍ଟ କଥାଶିଳ୍ପୀ । ତାଙ୍କର ଗୋଟିଏ ଏକାଙ୍କିକା 'ଦୀପ ବୁଜଗିୟା' ନାଟ୍ୟଶିଳ୍ପ ଗୌରବର ଅଧିକାରୀ । ସେଥିରେ ନାଟ୍ୟକାର ଜନୈକା କାଶ୍ମୀର ଓ ତାର ପୁତ୍ରର ତ୍ୟାଗପୂର୍ଣ୍ଣ ଚିତ୍ର ପ୍ରଦାନ କରିଥିଲେ । ତାଙ୍କ ନାଟକର ଭାଷା କାବ୍ୟଧର୍ମୀ ।

ଦେଶ ବିଭାଜନ ପରେ ଅନେକ ପଞ୍ଜାବୀ ଲେଖକ ଲହୋରରୁ ଦିଲ୍ଲୀକୁ ପଳାୟନ କରିଥିଲେ । ୧୯୫୦ ମସିହାରେ 'ଗୁରୁଦୟାଲ ସିଂ ଖୋସଲା' ପଞ୍ଜାବୀ ଥିଏଟର ପ୍ରତିଷ୍ଠା କରିଥିଲେ । ସେ ରେଲୱେର ଜଣେ ଉଚ୍ଚକର୍ମଚାରୀ । ତାଙ୍କ ନାଟକ ମଧ୍ୟରେ 'ବୁହେବୈଠିଧି' ଏବଂ 'ଜୁଡ଼ିୟାନ'ଦା ଓ ଦାରଦା ଉଲ୍ଲେଖଯୋଗ୍ୟ । ସେ ବର୍ଣ୍ଣାଡ଼ ଶ'ଙ୍କର ଖଣ୍ଡିଏ ନାଟକ ପଞ୍ଜାବୀଭାଷାରେ ଅନୁବାଦ କରିଥିଲେ ।

"ତେଲଆର୍ଟ ଥିଏଟର" ଏହି ସମୟରେ ଅନେକ ସାମାଜିକ ବାସ୍ତବଧର୍ମୀ ନାଟକ ପରିବେଷଣ କରିଥିଲେ । ଶ୍ରୀମତୀ ସିଲା ଭାଟିଆଙ୍କ ନାଟକ "ହୀରରାନଝା" ଯେତେବେଳେ ପରିବେଷିତ ହୋଇଥିଲା, ସେତେବେଳେ ଦର୍ଶକମାନଙ୍କର ଦୃଷ୍ଟି

*

ପଞ୍ଜାବୀମାନଙ୍କ ପ୍ରତି ଆକୃଷ୍ଟ ହୋଇଥିଲା । ଗ୍ରାମ୍ୟଜୀବନର ଲଳିତ ମୂର୍ଚ୍ଛନା କ୍ରମେ ପଞ୍ଜାବୀ ନାଟକରେ ଓ ରଙ୍ଗମଞ୍ଚରେ ପ୍ରତିଫଳିତ ହୋଇପାରିଥିଲା । 'ହୀରରାନଝା'କୁ ପଞ୍ଜାବୀର ପ୍ରଥମ ଉଲ୍ଲେଖଯୋଗ୍ୟ ଅପେରା ବୋଲି କୁହାଯାଏ ।

ଆଧୁନିକତା ଓ ଗଭୀର ମାର୍ମିକତା ବିସ୍ତାରରେ ଭାଇ ବୀରସିଂହଙ୍କର 'ସତୱନ୍ତ କଉର' ଓ 'ସୁନ୍ଦରୀ' ହେଉଛି ଉଲ୍ଲେଖଯୋଗ୍ୟ ସୃଷ୍ଟି । ଶିଖମାନଙ୍କ ବୀରତ୍ୱର 'ସୁନ୍ଦରୀ' ହେଉଛି ଏକ କରୁଣ କାହାଣୀ । ନାନକ ସିଂ (୧୮୯୮) ପଞ୍ଜାବୀ ଲଘୁ ଉପନ୍ୟାସ ଓ କ୍ଷୁଦ୍ର ଗଳ୍ପର ପ୍ରକୃତ ଜନ୍ମଦାତା । ସାଧାରଣ ମନୁଷ୍ୟର ସୁଖଦୁଃଖର ଚିତ୍ର, ସମାଜ-ସଂଘର୍ଷ, ସର୍ବହରାଶ୍ରେଣୀର ଚିତ୍ର ଯୋଗୁଁ ତାଙ୍କର କଥାଶିଳ୍ପ ସାର୍ଥକ ସୃଷ୍ଟି । ସେ 'ଚିଟ୍ଟାଲହୁ' (୧୯୩୨), 'ଗରିବ ଦି ଦୁନିଆ', 'ଚିତ୍ରକାର' ପ୍ରଭୃତି ଉପନ୍ୟାସରେ ଧନୀ ଦରିଦ୍ର ଶ୍ରେଣୀର ବାସ୍ତବ ଚିତ୍ର ସଂଘର୍ଷ ହିଁ ନିପୁଣଭାଷାରେ ଉପସ୍ଥାପନ କରିପାରିଛନ୍ତି । ସଂସ୍କାରପନ୍ଥୀ ଦୃଷ୍ଟିକୋଣ ତାଙ୍କର ଉପନ୍ୟାସ ଏବଂ ଶତାଧିକ କ୍ଷୁଦ୍ରଗଳ୍ପରେ ପ୍ରତିଫଳିତ । ତଥାପି ସେଥିରେ କେତେକ ପରିମାଣ ସୃଷ୍ଟିନୈପୁଣ୍ୟ ଏବଂ ଆଧୁନିକ ପ୍ରଗତିବାଦର ଅଭାବ ବୋଲି କେହି କେହି କହନ୍ତି; ନଚେତ୍ ତାଙ୍କର ଉପନ୍ୟାସ ବହୁପଠିତ ଏବଂ ପ୍ରଶଂସିତ ।

ପଞ୍ଜାବୀ ଉପନ୍ୟାସର ବିକାଶ ଓ ଅଗ୍ରଗତି ତାଙ୍କ ପୂର୍ବରୁ ସେତେ ସମ୍ଭବ ହୋଇନଥିଲା । ଯେଉଁ ମୁଷ୍ଟିମେୟ ଉପନ୍ୟାସ ଥିଲା ତାହା ସବୁ ଧର୍ମବିଶ୍ୱାସ ଓ ସଂସ୍କାର ମନୋବୃତ୍ତିଦ୍ୱାରା ପ୍ରଭାବିତ ହୋଇଥିଲା । ନାନକ ସିଂଙ୍କ ଉପନ୍ୟାସ ପଞ୍ଜାବର ସାମାଜିକ, ରାଜନୈତିକ ଓ ସାଂସ୍କୃତିକ ଜୀବନର ପ୍ରତ୍ୟେକ ବିଭାଗକୁ ସ୍ପର୍ଶ କରିପାରିଥିଲା । ସେ ଯେପରି ସମସାମୟିକ ସମାଜର ଆହ୍ୱାନରେ ଯଥାର୍ଥ ଉତ୍ତର ଦେଇପାରିଥିଲେ । ସାମାଜିକ ସମସ୍ୟା ହିଁ ତାଙ୍କ ଉପନ୍ୟାସର ପ୍ରଧାନ ଆବେଦନ । ବିଧବା ବିବାହ, ଗଣିକା ପ୍ରଥା, ନିରକ୍ଷରତା, ପାରିବାରିକ ଦ୍ୱନ୍ଦ୍ୱ, ଶାସନକଳର ଦୁର୍ନୀତି, ଶିଳ୍ପ ବିଭାଗର ସଂଘର୍ଷ ଓ ହରିଜନ ସମସ୍ୟା ଏହାହିଁ ତାଙ୍କ ଉପନ୍ୟାସର ଉପଜୀବ୍ୟ । ପ୍ରତିଭାଶାଳୀ, ଔପନ୍ୟାସିକ ନାନକ ସିଂ ଆଧୁନିକ ପଞ୍ଜାବୀ ସାହିତ୍ୟର ପରିପୁଷ୍ଟି ପାଇଁ ବହୁ ପରିମାଣରେ ଦାୟୀ । ତାଙ୍କ ରଚନାର ଅଜସ୍ରତା ମଧ୍ୟ ଉଲ୍ଲେଖଯୋଗ୍ୟ । ପ୍ରାୟ ୪୦ ଖଣ୍ଡ ଉପନ୍ୟାସ, ୫ଖଣ୍ଡ ଗଳ୍ପ ସଂକଳନ, ଏକାଧିକ କବିତା ପୁସ୍ତକ ଓ ଅନୁବାଦ ରଚନା ତାଙ୍କ ସାହିତ୍ୟିକ କୀର୍ତ୍ତିର ନିଦର୍ଶନ ।

ଔପନ୍ୟାସିକ ଭାବରେ ନ୍ୟାୟ ଓ ନୈତିକତାର ମାନଦଣ୍ଡରୂପେ ଉପନ୍ୟାସକୁ ସେ ପ୍ରୟୋଗ କରିଥିଲେ । ମାତ୍ର ୧୫ ବର୍ଷ ବୟସରେ ସେ ଲେଖା ଆରମ୍ଭ କରିଥିଲେ । ତାଙ୍କର ପ୍ରଥମ ରଚନା "ସତ୍‌ଗୁରୁ ମହିମା" ଏବେ ମଧ୍ୟ

ପାଠକ ସମାଜରେ ବିଶେଷ ଭାବରେ ଆଦୃତ । ତାଙ୍କର ଜନ୍ମ ପେଶାବାରଠାରେ ୧୮୯୭ ମସିହାରେ ଏକ ହିନ୍ଦୁ ପରିବାରରେ ହୋଇଥିଲା । ସେ ପରେ ଅମୃତସରକୁ ପ୍ରସ୍ଥାନ କରିଥିଲେ । ପଞ୍ଜାବୀ ପତ୍ରିକା "ପ୍ରୀତଲଡ଼ୀ"ର ସମ୍ପାଦକ ଗୁରୁବକ୍‌ସ ସିଂହଙ୍କ ସହିତ ପରିଚୟ ତାଙ୍କ ଜୀବନର ଏକ ପ୍ରଧାନ ଘଟଣା । ଗୁରୁବକ୍‌ସ ସିଂହ ଆମେରିକା ପ୍ରଭୃତି ବିଦେଶରେ ବହୁ ଭ୍ରମଣ କରିଥିଲେ । ସେ ବିଶ୍ୱଭ୍ରାତୃଭାବ ପ୍ରତିଷ୍ଠା ଉଦ୍ଦେଶ୍ୟରେ ଏକ ସଂସ୍ଥା ଗଢ଼ିଥିଲେ । ସେହି ସଂସ୍ଥାର ଜଣେ ପ୍ରଧାନ ସଭ୍ୟ ହୋଇଥିଲେ ନାନକ ସିଂ । ନାନକ ସିଂ ତାଙ୍କର ଦୁଇଗୋଟି ଉପନ୍ୟାସ "ଗରିବଦି ଦୁନିଆ" ଓ "ପିଆରଦି ଦୁନିଆ"ରେ ଏହି ଭ୍ରାତୃଭାବ ପ୍ରଚାର କରିଥିଲେ । ତାଙ୍କର ପ୍ରଥମ ଉପନ୍ୟାସ ଯେତେବେଳେ ପ୍ରକାଶିତ ହେଲା ପାଠକ-ସମାଜରେ ସେତେବେଳେ ଗୃଞ୍ଜଲ୍ୟ ଖେଳିଗଲା । ତାଙ୍କର ଉପନ୍ୟାସମାନଙ୍କ ମଧ୍ୟରେ "ଅଦ୍‌ଖୁଧା ଫୁଲ୍", "ଏକମେଁ ଦୋ ତଲଓ୍ୱାର", "ପବିତ୍ର ପାପୀ", "ଚିତ୍ରାଲହ୍ନ" ଉଲ୍ଲେଖଯୋଗ୍ୟ । "ଚିତ୍ରାଲହ୍ନ" ଏକ ପ୍ରସିଦ୍ଧ ଉପନ୍ୟାସରୂପେ ଆଧୁନିକ ପଞ୍ଜାବୀ ସାହିତ୍ୟରେ ପ୍ରଶଂସିତ । ୧୯୬୦ ମସିହାରେ ଏହି ଉପନ୍ୟାସ ପାଇଁ ସେ ସାହିତ୍ୟ ଏକାଡ଼େମୀଦ୍ୱାରା ପୁରସ୍କାରପ୍ରାପ୍ତ ହୋଇଥିଲେ ।

ନାନକ ସିଂ ପୂର୍ବ ପରମ୍ପରା, ଗତାନୁଗତିକତା ଓ ଜୀର୍ଣ୍ଣପରିପ୍ରେକ୍ଷୀରୁ ପଞ୍ଜାବୀ ଉପନ୍ୟାସକୁ ମୁକ୍ତ କରିଥିଲେ । ମାନବିକତା ତାଙ୍କ ଉପନ୍ୟାସର ଥିଲା ପ୍ରଧାନ ମନ୍ତ୍ର । ତାଙ୍କୁ ପଞ୍ଜାବୀ ଉପନ୍ୟାସରେ ବିଦ୍ରୋହୀ ଲେଖକ ବୋଲି ଆଖ୍ୟା ଦିଆ-ଯାଇଥିଲା । ତାଙ୍କ ଉପନ୍ୟାସଶିଳ୍ପର ଆଦର୍ଶ ହେଉଛି—ଦେଶ ଓ ଦେଶବାସୀଙ୍କୁ ସାମାଜିକ ଦୁର୍ନୀତି ଓ ଆବର୍ଜନା ସମ୍ପର୍କରେ ଅବହିତ କରାଇବା । ଶ୍ରମିକ ସମସ୍ୟା ମଧ୍ୟ ତାଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ପ୍ରେମଚନ୍ଦ ଓ ବଙ୍କିମଚନ୍ଦ୍ରଙ୍କ ସଦୃଶ ସେ ସଂଗ୍ରାମବାଦୀ ଥିଲେ । ସ୍ୱାଧୀନତା ଆନ୍ଦୋଳନ ପାଇଁ ସେ କାରାବରଣ କରିଥିଲେ ଏବଂ ତାହାହିଁ ତାଙ୍କୁ ଦେଶର ବିଭିନ୍ନ ଅବସ୍ଥା ଅନୁଧ୍ୟାନ କରିବା ପାଇଁ ସୁବିଧା ଯୋଗାଇ ଦେଇଥିଲା । ହିନ୍ଦୀ ଔପନ୍ୟାସିକ ପ୍ରେମଚନ୍ଦଙ୍କ ଦ୍ୱାରା ସେ ପ୍ରଭାବିତ ହୋଇଥିବା ଜଣାଯାଏ । ତାଙ୍କ ଉପନ୍ୟାସରେ ବିଭିନ୍ନ ଅଭିମୁଖ୍ୟ ପ୍ରତିଫଳିତ । "ଚିତଲହୁ" ଉପନ୍ୟାସ ଓ "ଏକମେଁ ଦୋ ତଲଓ୍ୱାର" ଉପନ୍ୟାସରେ ଶିଖଧର୍ମରେ ଦେଖାଯାଇଥିବା ଦୁର୍ନୀତିର ଆଲୋଚନା କରାଯାଇଛି ।

ମହାତ୍ମା ଗାନ୍ଧୀଙ୍କ ଅହିଂସ ଆନ୍ଦୋଳନ ମଧ୍ୟ ତାଙ୍କୁ ପ୍ରଭାବିତ କରିଥିଲା । ସେହି ପ୍ରଭାବବଶତଃ ସେ ତାଙ୍କ ଉପନ୍ୟାସମାନଙ୍କରେ ହିନ୍ଦୁ, ମୁସଲିମ, ଶିଖ ସମ୍ପ୍ରଦାୟର ଏକତା, ଗ୍ରାମ୍ୟ ସ୍ୱରାଜ୍ୟର ବିକାଶ, ଶିକ୍ଷାର ପ୍ରସାର ଇତ୍ୟାଦି ବିଷୟବସ୍ତୁ ଗୃହୀତ ହୋଇଥିଲା । ନାରୀଚରିତ୍ର ବିଶ୍ଳେଷଣ କରିବାରେ ନାନକ ସିଂ

ଯଥେଷ୍ଟ ଦୂରଦୃଷ୍ଟି ପ୍ରଦର୍ଶନ କରିଥିଲେ । ତ୍ୟାଗ ଓ ସହିଷ୍ଣୁତା ନାୱାର ଭୂଷଣ ହେବା ଉଚିତ । ତାଙ୍କ ଉପନ୍ୟାସରେ ବର୍ଣ୍ଣିତ ନାରୀଚରିତ୍ରମାନଙ୍କରୁ ଏହା ଜଣାପଡ଼େ । ପ୍ରଥମତଃ ଭାବପ୍ରବଣତା, ଦ୍ୱିତୀୟତଃ ଏକ ବାସ୍ତବବାଦୀ ସମାଜ, ତୃତୀୟତଃ ଏକ ସଂସ୍କାରକ ଓ ବିଦ୍ରୋହୀର ଦୃଷ୍ଟିକୋଣ ତାଙ୍କ ଉପନ୍ୟାସମାନଙ୍କରେ ପ୍ରତିଫଳିତ ।

ନୂତନ ଔପନ୍ୟାସିକମାନଙ୍କ ମଧ୍ୟରେ ବଲବନ୍ତ ସିଂ କମଲ (ପାଲ୍ଲି, ପୂର୍ଣ୍ଣିମାସୀ), ନରେନ୍ଦ୍ରପାଲ ସିଂହ, ହରନାମ ଦାସ, କର୍ତ୍ତାର ସିଂହ ଡୁଗ୍ଗଲ, ସୁଖିନ୍ଦର ସିଂହ ନରୁଲା ପ୍ରଭୃତି ପରିଚିତ । କର୍ତ୍ତାର ସିଂ ଡୁଗଲଙ୍କର ଉପନ୍ୟାସ "ନହୁଁ ତେ ମାସ" ଦେଶର ସାମ୍ପ୍ରଦାୟିକ ସମସ୍ୟା ପଛଭୂମିରେ ଲିଖିତ । ସନ୍ତ ସିଂହ ସେଖୋଁଙ୍କର "ଲୌ ତେ ମିଟି" (ରକ୍ତ ଓ ମାଟି) କୃଷକ ସଂଘର୍ଷକୁ କେନ୍ଦ୍ର କରି ଲିଖିତ ଏବଂ ଆଧୁନିକ ବାସ୍ତବବାଦ ଏଥିରେ ଉତ୍ତମରୂପେ ପରୀକ୍ଷିତ ।

**କଥା ସାହିତ୍ୟ**—ଆଧୁନିକ ପଞ୍ଜାବୀ ସାହିତ୍ୟର ଏକ ବିଶିଷ୍ଟ ବିଭାବ ହେଉଛି କଥା-ସାହିତ୍ୟ । ବ୍ୟାପକ ମାନବିକତା, ଅନୁଭୂତିର ବିବିଧତା ସେଥିରେ ପ୍ରତିଫଳିତ ।

ପ୍ରାଚୀନ କାଳରେ ପଞ୍ଜାବଭୂମିର ବୀରତ୍ୱପୂର୍ଣ୍ଣ କାହାଣୀକୁ ଆଶ୍ରୟ କରି ଏକ ଜାତୀୟ କାବ୍ୟ ଲେଖାଯାଉଥିଲା । ତାହାର ନାମ 'ବାରେ' । ଏହି 'ବାରେ' କାବ୍ୟ ପଞ୍ଜାବୀ ଗଳ୍ପ-ସାହିତ୍ୟର ଆଦ୍ୟ ଉତ୍ସ ବୋଲି ଜଣାଯାଏ । ପ୍ରଥମେ ପ୍ରଥମେ କଥନଭଙ୍ଗୀରେ ହିଁ ଏତାଦୃଶ ଗଳ୍ପର ସ୍ୱରୂପ ନିର୍ଦ୍ଦେଶିତ ହୋଇଥିଲା । ମୁଖ୍ୟତଃ ଏହା କାହାଣୀକଥନକଳାର ଗଣ୍ଡି ମଧ୍ୟରେ ଆବଦ୍ଧ ଥିଲା । କ୍ରମେ ଜୀବନର ବିବିଧତା ଓ ବ୍ୟାପକତାକୁ ସ୍ୱୀକାର କରି ଆଧୁନିକ ଗଳ୍ପକଳାର ଜନ୍ମ ହେଲା । ପଞ୍ଜାବୀ ଭାଷାରେ ଗଦ୍ୟ-ସାହିତ୍ୟର କ୍ରମିକ ବିକାଶ ଗୁରୁ ନାନକଙ୍କ ନାମ ଓ ଆଦର୍ଶବାଦ ସହିତ ଜଡ଼ିତ ଥିଲା । ଗୁରୁ ନାନକ କିମ୍ବା ଗୁରୁମାନଙ୍କୁ କେନ୍ଦ୍ର କରି ଯେଉଁ ଗଦ୍ୟ-ରଚନା ସୃଷ୍ଟି ହୋଇଥିଲା, ତାହା 'ସାଖୀ' ନାମରେ ପରିଚିତ ଥିଲା । ଏହି ସାଖୀରଚନାର ନାୟକ ହେଉଛନ୍ତି ଜନନେତା ଗୁରୁ ନାନକ । 'ସାଖୀ'କୁ କେହି କେହି 'ଧର୍ମ-କାହାଣୀ' ବୋଲି ନାମିତ କରିଥାନ୍ତି ।

'ସାଖୀ' ରଚନାରେ ଧର୍ମାନ୍ଧତା, ସାମ୍ପ୍ରଦାୟିକତା କିମ୍ବା ସଂକୀର୍ଣ୍ଣ ଗୋଷ୍ଠୀ ଭାବନା ଆଦୌ ନ ଥିଲା । 'ସାଖୀ'ର ବର୍ଣ୍ଣିତ ଚରିତ୍ରମାନଙ୍କ ମଧ୍ୟରେ ସାମନ୍ତ, ଜମିଦାର ଥିଲେ ଏବଂ ଦରିଦ୍ର କୃଷକ, ଶ୍ରମିକ ମଧ୍ୟ ବାଦ ପଡ଼ି ନ ଥିଲେ । ଧର୍ମଭାବାପନ୍ନ ହେଲେ ହେଁ ସାଖୀଗୁଡ଼ିକରେ ବାସ୍ତବଜୀବନର ଏକାନ୍ତ ବିଶ୍ୱସ୍ତ ଚିତ୍ରର ଅଭାବ ନ ଥିଲା । ଜୀବନର ଭିନ୍ନ ଭିନ୍ନ ମୌଳିକ ସମସ୍ୟା ସେଥିରେ

ଉପସ୍ଥାପିତ ହେଉଥିଲା । ଏହି ପ୍ରାଚୀନ 'ସାଖୀ' ରଚନା ହିଁ ଆଧୁନିକ ପଞ୍ଜାବୀ କ୍ଷୁଦ୍ର ଗଳ୍ପର ପ୍ରାଥମିକ ରୂପ । ପଞ୍ଜାବୀ ଗଳ୍ପର ଦୁଇଗୋଟି ଦିଗ ପରିଦୃଷ୍ଟ; ଯଥା—(୧) ପଞ୍ଜାବୀ କିସ୍‌ସେ, (୨) ଚରିତ୍ରୋପାଖ୍ୟାନ ।

ପ୍ରାଚୀନ ଓ ମଧ୍ୟଯୁଗରେ ମଣିଷ ଯେପରି ଜୀବନ ଧାରଣ କରୁଥିଲା, ସେଥିରେ 'ସାଖୀ' ରଚନା ପାଇଁ ମଧ୍ୟ ବିଶେଷ ଉପାଦାନ ନିହିତ ଥିଲା । ପରମ୍ପରା, ଦାସତ୍ୱ ପ୍ରଥା, ସମାଜର ଅନଗ୍ରସରତା ବିରୋଧରେ 'ସାଖୀ'ର ଲେଖକଗଣ ସ୍ୱର ଉତ୍ତୋଳନ କରିଥିଲେ । ମଧ୍ୟଯୁଗୀୟ ମୂଲ୍ୟବୋଧ ବିରୋଧରେ ବ୍ୟକ୍ତି ବିଦ୍ରୋହୀ ହୋଇଉଠିଥିଲା । ଝିଅମାନେ ଗତାନୁଗତିକ ପରମ୍ପରା ସହିତ ସ୍ୱର ମିଳେଇ ଆଉ ପିତାମାତାଙ୍କର ଆଦେଶ ଶିରୋଧାର୍ଯ୍ୟ କଲେ ନାହିଁ । ଫଳରେ ଅପାରମ୍ପରିକ ସାମାଜିକ ସମ୍ପର୍କ, ପରମ୍ପରାବିରୋଧି ପ୍ରେମ ବ୍ୟକ୍ତି-ଜୀବନରେ ଗୁରୁତ୍ୱ ଲାଭ କରିଥିଲା । ମଣିଷ ବ୍ୟକ୍ତି-ସ୍ୱାତନ୍ତ୍ର୍ୟତାର ଉପାସନା କରିଥିଲା । ନାରୀମାନେ ପ୍ରତିହିଂସା ବହ୍ନି ପ୍ରଜ୍ଜ୍ୱଳିତ କରି ରଖିଥିଲେ । ଶତାବ୍ଦୀବ୍ୟାପୀ ନିରଙ୍କୁଶ ସୁଲତାନ ଓ ବାଦଶାହମାନଙ୍କ ଅତ୍ୟାଚାରରୁ ମୁକ୍ତିଲାଭ, ଦାସତ୍ୱ ପ୍ରଥାର ବିଲୋପସାଧନ ସାହିତ୍ୟିକଙ୍କୁ ଆହୁରି ସାହସୀ କରିଦେଇଥିଲା । ସାହିତ୍ୟ ହେଲା ଜୀବନସଂଗ୍ରାମର ଉଦ୍ଧାର ମନ୍ତ୍ର । ଆଉ ଗଳ୍ପସାହିତ୍ୟ ହେଉଛି ଏହାର ପ୍ରଥମ ନିଦର୍ଶନ । ବୈପ୍ଳବିକ ଚିନ୍ତାଧାରା ଯୋଗୁଁ 'କିସ୍‌ସେ' ଏବଂ ନୂତନ ମୂଲ୍ୟବୋଧ ଯୋଗୁଁ 'ଚରିତ୍ରୋପାଖ୍ୟାନ' ପଞ୍ଜାବୀ ଗଦ୍ୟସାହିତ୍ୟରେ ବେଶ୍ ଆଦୃତ ହୋଇଥାଏ । ଏହି ସବୁ ରଚନାରେ ମାନବିକତାର ସ୍ୱର କିଛି କମ୍ ନ ଥିଲା । ପ୍ରାଚୀନ ପଞ୍ଜାବୀ ଗଳ୍ପଲେଖକମାନେ ବ୍ୟକ୍ତି ଉପରେ ବରାବର ଅତୁଟ ଆସ୍ଥା ଓ ବିଶ୍ୱାସ ରଖିଥିଲେ । ଗଳ୍ପରଚନାର ପ୍ରଥମାବସ୍ଥାରେ ସଂସ୍କୃତରୁ ମଧ୍ୟ କେତେକ ଗଳ୍ପ ଅନୁଦିତ ହୋଇଥିଲା ।

ଆଧୁନିକ ପଞ୍ଜାବୀ ସାହିତ୍ୟରେ 'କ୍ଷୁଦ୍ର ଗଳ୍ପ' ଶାଖା ଉପନ୍ୟାସ ତୁଳନାରେ ଅତି ସମୃଦ୍ଧ ବୋଲି ଜଣାଯାଏ । ଉଭୟର ଆଙ୍ଗିକ ଓ ଆତ୍ମିକ ନୂତନ । ଏହି କ୍ଷେତ୍ରରେ ମଧ୍ୟ ନାନକ ସିଂହ ଆଦ୍ୟ ଲେଖକ । ନାନକ ସିଂହଙ୍କର ଗଳ୍ପଗୁଡ଼ିକର ପ୍ରଧାନ ଲକ୍ଷଣ ହେଲା ମଧ୍ୟବିତ୍ତ ପରିବାରର ଚିତ୍ର । ତାହା ଯେପରି ଦଳିତ ଜୀବନର ସହାନୁଭୂତିଶୀଳ ଆଲେଖ୍ୟ । ସର୍ଦ୍ଦାର ଗୁରୁ ବକ୍‌ସ ସିଂହ, ଡକ୍ଟର ମୋହନ ସିଂ, କର୍ତ୍ତାର ସିଂ ଦୁଗଲ, ଦେବେନ୍ଦ୍ର ସତ୍ୟାର୍ଥୀ, ସନ୍ତ ସିଂ ସେଖୋଁ, ସୁଜାନ ସିଂ, ଲୋଚନ ସିଂ, ନଓତେଜ ସିଂହ ପ୍ରମୁଖ ପ୍ରବୀଣ ଲେଖକ ଗଳ୍ପ ଲେଖି ସୁନାମ ଅର୍ଜନ କରିଛନ୍ତି । ନାନକ ସିଂଙ୍କ ପରେ ଗୁରୁବକ୍‌ସ ସିଂଙ୍କ ପ୍ରଭାବଶାଳୀ ଗଳ୍ପମାନଙ୍କରେ ଗଭୀର ସମାଜ-ସଚେତନତା ଏବଂ ଶ୍ରେଣୀସଂଘର୍ଷ ପ୍ରତିଫଳିତ । ତାଙ୍କର ଗଳ୍ପଗୁଡ଼ିକ ଲେଖକଙ୍କର ପାଶ୍ଚାତ୍ୟ ଭୂମିରେ ପର୍ଯ୍ୟଟନଲବ୍ଧ ଅନୁଭୂତିଦ୍ୱାରା

ରଞ୍ଜିତ । ଗଳ୍ପରଚନାରେ ସେ ଆଧୁନିକ ଚିନ୍ତାଧାରାର ପ୍ରବର୍ତ୍ତକ । ତାଙ୍କର କେତେକ ଗଳ୍ପ ନଗ୍ନ ପ୍ରେମବର୍ଣ୍ଣନାପୀଡ଼ିତ । ସମାଜର ସମସ୍ୟାବଳୀ, ରାଜନୈତିକ ସଂଘର୍ଷ ଆଧୁନିକତାର ପୃଷ୍ଠଭୂମିକାରେ ତାଙ୍କର ଗଳ୍ପମାନଙ୍କରେ ପ୍ରତିଫଳିତ । "ପ୍ରୀତ-ଲଡ଼ୀ" ନାମକ ଆଧୁନିକ ସାହିତ୍ୟ ପତ୍ରିକାର ସେ ହେଉଛନ୍ତି ସଂପାଦକ । ତାଙ୍କର ଗଳ୍ପଗୁଡ଼ିକ ଆଦର୍ଶ ଉପରେ ଆଧାରିତ । ତାଙ୍କର ଗଳ୍ପ ଆଦର୍ଶ ଓ ବାସ୍ତବବାଦ ମଧ୍ୟରେ ଏକ ସମାଧାନ ଆଣିବାପାଇଁ ଉଦ୍ଦିଷ୍ଟ । ପଞ୍ଜାବୀ ସାହିତ୍ୟର ପ୍ରବୀଣ ଗାଳ୍ପିକ କର୍ତ୍ତାର ସିଂ ଦୁଗଲଙ୍କ ଗଳ୍ପ ସାଧାରଣତଃ ଆଭିଜାତ୍ୟପୂର୍ଣ୍ଣ ସମାଜର ଦୟନୀୟ ଚିତ୍ର । ସେଥିରେ ଉଭୟ ଆଙ୍ଗିକ ଏବଂ ଭାବଗତ ସ୍ୱାତନ୍ତ୍ର୍ୟ ଚିହ୍ନିତ । ଆଭିଜାତ୍ୟପୂର୍ଣ୍ଣ ଗୋଷ୍ଠୀରେ ଯେଉଁ ପ୍ରତାରଣା, ଯେଉଁ ଛଳନା ଆଜି ଦେଖାଦେଇଛି, ତାହାହିଁ ଦୁଗଲଙ୍କ ଗଳ୍ପରେ ଉପଭୋଗ୍ୟ ଶୈଳୀରେ ବର୍ଣ୍ଣିତ । ଦେଶରେ ୧୯୪୭ର ପୂର୍ବବର୍ତ୍ତୀ ଏବଂ ପରବର୍ତ୍ତୀ ଅବସ୍ଥା, ଦେଶବିଭାଜନ ପ୍ରଭୃତି ଘଟଣାରେ ତାଙ୍କର ଗଳ୍ପ ଅନୁରଞ୍ଜିତ । ତାଙ୍କର ଗଳ୍ପ ପୁସ୍ତକମାନଙ୍କ ମଧ୍ୟରେ 'ଡଙ୍ଗର', 'ନମାକାର' ପ୍ରଭୃତି ପ୍ରଧାନ । ଜୀବନ ପ୍ରତି ଗଭୀର ନିଷ୍ଠା, ସମାଜ-ସଚେତନତା ତାଙ୍କ ଗଳ୍ପରେ ବିଶେଷ ପ୍ରତିଫଳିତ । ଯୌନଚିତ୍ର ତାଙ୍କର ଗଳ୍ପରେ ଆଦୌ ପରିଦୃଷ୍ଟ ହୁଏ ନାହିଁ । ଉଭୟ ମନସ୍ତାତ୍ତ୍ୱିକ ବିଶ୍ଳେଷଣ ଏବଂ ରାଷ୍ଟ୍ରୀୟ ଚିନ୍ତା ତାଙ୍କ କୃତିଗୁଡ଼ିକରେ ସମନ୍ୱିତ ହୋଇପାରିଛି ।

ପଣ୍ଡିତ ସନ୍ତ ସିଂ ସେଖୋଁଙ୍କ ଗଳ୍ପ ଭାବପୂର୍ଣ୍ଣ ଏବଂ ଗ୍ରାମ୍ୟଜୀବନଧର୍ମୀ; ବିଶେଷତଃ ରୋମାନ୍ସାଶ୍ରିତ । ତାଙ୍କ ଗଳ୍ପରେ ଭାଷାଗତ ସାବଲୀଳତା ଏବଂ ବୌଦ୍ଧିକ ପରିପକ୍ୱତା ନିହିତ । ସର୍ଦ୍ଦାର ଗୁରୁବକ୍ସ ସିଂଙ୍କ ପୁତ୍ର ନଓତେଜ ସିଂ ଜଣେ ଜୀବନଧର୍ମୀ ଗଳ୍ପକାର । ବଳବନ୍ତ ସିଂ ଏବଂ ଦେବେନ୍ଦ୍ର ସତ୍ୟାର୍ଥୀ ମଧ୍ୟ ଏହି ଶ୍ରେଣୀର ଲେଖକ । ବଙ୍ଗ ସମାଜର ପୃଷ୍ଠଭୂମିରେ ସୁଜାନ ସିଂଙ୍କ ଗଳ୍ପଗୁଡ଼ିକ ପରିକଳ୍ପିତ । ଅମୃତାପ୍ରୀତମଙ୍କ ଗଳ୍ପସମୂହରେ ମନସ୍ତତ୍ତ୍ୱ ଏବଂ ଆଧୁନିକ ଛିନ୍ନ-ବିଚ୍ଛିନ୍ନ ଗୋଷ୍ଠୀଜୀବନ ଚିତ୍ର ପ୍ରଦତ୍ତ । ତରୁଣ ଗଳ୍ପଲେଖକମାନଙ୍କ ମଧ୍ୟରେ ଗୁରୁମୁଖ ସିଂ ଜିତଙ୍କ ଗଳ୍ପ ଅତ୍ୟନ୍ତ ଆଶାପୂର୍ଣ୍ଣ । ଭାଷାର ଦକ୍ଷତା ଏବଂ ମନସ୍ତାତ୍ତ୍ୱିକ ବିଶ୍ଳେଷଣ ହିଁ ତାଙ୍କର ଗଳ୍ପଗୁଡ଼ିକୁ ସୁଖପାଠ୍ୟ କରିଛି । ଦେଶବିଭାଜନ ପଞ୍ଜାବର ଜନଜୀବନକୁ ଯେପରି ପ୍ରପୀଡ଼ିତ କରିଦେଇଥିଲା, ତାହାର ପ୍ରତିକ୍ରିୟା ସାହିତ୍ୟର ବିଭିନ୍ନ ଆଙ୍ଗିକରେ ଦେଖାଦେଇଥିଲା । ତାହାର ପ୍ରଭାବ ବହୁ ପଞ୍ଜାବୀ ଗଳ୍ପରେ ଅନୁଭୂତ ହୁଏ । ବିଦ୍ୱେଷ ଅପେକ୍ଷା କାରୁଣ୍ୟ ଏବଂ ବୈକଲ୍ୟ ଏହି ଜାତୀୟ ଗଳ୍ପର ଭାରସାମ୍ୟ ରକ୍ଷା କରିଥାଏ । କୁଲୱନ୍ତ ସିଂ ବିର୍କ ଏବଂ କୃଶ୍ୱନ୍ତ ସିଂଙ୍କ ଗଳ୍ପ ମଧ୍ୟ ଉଚ୍ଚକୋଟୀର । ପ୍ରବନ୍ଧ ଓ ସାହିତ୍ୟର ଅନ୍ୟାନ୍ୟ ବିଭାଗରେ ମଧ୍ୟ ଭାଇ ବୀର ସିଂଙ୍କର ଲେଖନୀ ପ୍ରଥମ ଭିତ୍ତି ସ୍ଥାପନ କରିଥିଲା ।

ଧର୍ମପ୍ରଚାରକମାନଙ୍କର ଜୀବନୀ, ସାହିତ୍ୟ ସମାଲୋଚନା, ଚିନ୍ତାତ୍ମକ ରମ୍ୟରଚନା, ଭ୍ରମଣ ସାହିତ୍ୟ କ୍ରମେ କ୍ରମେ ଆତ୍ମପ୍ରକାଶ କରିଅଛି । ପ୍ରଥମ ପଞ୍ଜାବୀ ଅଭିଧାନର ପ୍ରଣେତା ହେଉଛନ୍ତି ବିସନ୍‌ଦାସ ପୁରୀ । ସେହିପରି ବ୍ୟାକରଣଲେଖକ ହେଉଛନ୍ତି କରମ ସିଂହ । ଏହା ସବୁ ପ୍ରାକ୍-ଆଧୁନିକ କାଳର ଉଦ୍ୟମ । "ଗୁରୁ ଶବ୍ଦ-ରତ୍ନାକର ମହାକୋଷ" ହେଉଛି ଶିଖ-ସମ୍ପ୍ରଦାୟ ସାହିତ୍ୟର ଅଭିଧାନ । ଏହା କାହାନ ସିଂହଙ୍କ କୃତ । ଏହାର ଆକାର ବିରାଟ ।

କିନ୍ତୁ ପ୍ରଥମ ପର୍ଯ୍ୟାୟରେ ଲିଖିତ ଏହି ସମସ୍ତ ଧର୍ମତତ୍ତ୍ୱ ଜୀବନୀ କିମ୍ବା ଚରିତମୂଳକ ଗ୍ରନ୍ଥସମୂହ ପ୍ରକୃତ ସାହିତ୍ୟିକ ଶୈଳୀ ଅଭାବପୀଡ଼ିତ । ସର୍ଦ୍ଦାର କ. ବି. ସିଂହଙ୍କ ଲିଖିତ ଆଦିଗ୍ରନ୍ଥ ସାହେବ, ଭାଇ ବୀର ସିଂହଙ୍କର ଶିଖଧର୍ମ ସଂପର୍କିତ ବିଭିନ୍ନ ପ୍ରବନ୍ଧାବଳୀ, ଶିଖଧର୍ମ ପ୍ରତିଷ୍ଠାତା ଏବଂ ପ୍ରଚାରକଙ୍କ ଜୀବନୀ ରଚନା ସାଧାରଣତଃ ପ୍ରଥମାବସ୍ଥାର ଗଦ୍ୟରଚନା । ତେଣୁ ଆଧୁନିକ ପଞ୍ଜାବୀ ସାହିତ୍ୟରେ ପ୍ରବନ୍ଧ-ସାହିତ୍ୟର ଅଭ୍ୟୁଦୟ ଜୀବନୀ, ଧର୍ମ ଏବଂ ଦର୍ଶନ ଆଲୋଚନାରେ ହିଁ ସମ୍ଭବ ହୋଇଥିଲା । ଆଧୁନିକ ପ୍ରବନ୍ଧ-ସାହିତ୍ୟର ପ୍ରକୃତ ପ୍ରଯୋଜକ ହେଉଛନ୍ତି ଭାଇ ପୂରଣ ସିଂହ, ଏବଂ ସମସାମୟିକ ହେଉଛନ୍ତି ଅଧକ୍ଷ ତେଜା ସିଂ ଓ ଗୁରୁବକ୍‌ସ ସିଂ । ଭାଇ ପୂରଣ ସିଂହ କବିତାକ୍ଷେତ୍ରରେ ପରିଚିତ, ତଥାପି ସୃଷ୍ଟିଶିଳ୍ପସମ୍ମତ ନୂତନ ମୌଳିକ ଗଦ୍ୟରଚନା ତାଙ୍କର ଲେଖନୀରେ ପ୍ରଥମେ ସମ୍ଭବ ହୋଇଥିଲା । ଜୀବନର ଶେଷାବସ୍ଥାରେ କବି, ପ୍ରାବନ୍ଧିକ ପୂରଣ ସିଂହ ବେଦାନ୍ତ ଦର୍ଶନ ଅଧ୍ୟୟନ ପ୍ରତି ମନୋନିବେଶ କରିଥିଲେ । ପ୍ରଗତିଶୀଳ ଦୃଷ୍ଟିଭଙ୍ଗୀ ଏବଂ ନୂତନ ଶୈଳୀ ପ୍ରୟୋଗ ଯୋଗୁ ସର୍ଦ୍ଦାର ଗୁରୁବକ୍‌ସ ସିଂ ଏବଂ ଅଧକ୍ଷ ତେଜା ସିଂଙ୍କ ପ୍ରବନ୍ଧ ଆଧୁନିକ ଶ୍ରେଣୀର । ଇତିହାସ, ଜୀବନୀ ଏବଂ ସମାଲୋଚନା ଏପରି ପ୍ରତ୍ୟେକ ବିଭାଗ ସେମାନଙ୍କ ପ୍ରବନ୍ଧରେ ପ୍ରତିଫଳିତ । ସର୍ଦ୍ଦାର ଗୁରୁବକ୍‌ସ ସିଂଙ୍କ ପ୍ରବନ୍ଧ ସଂଗ୍ରହ "ସାଓୟୀ" ଉଲ୍ଲେଖଯୋଗ୍ୟ । ସେ ଆଧୁନିକ ଯୁଗର ଶ୍ରେଷ୍ଠ ପ୍ରାବନ୍ଧିକ ।

ପଞ୍ଜାବୀ ସାହିତ୍ୟ ଇତିହାସ ପ୍ରଣୟନ ଦିଗରେ ସନ୍ତ ସିଂ ସେଖୌଁ, ସୁରିନ୍ଦର ସିଂ କୋହ୍ଲି, ହରଦୟାଲ ସିଂ, ଗୋପାଲ ସିଂ ଦର୍ଦ ପ୍ରମୁଖଙ୍କ ଉଦ୍ୟମ ପ୍ରଶଂସନୀୟ । ଦେବେନ୍ଦ୍ର ସତ୍ୟାର୍ଥୀଙ୍କର ପଞ୍ଜାବୀ ଲୋକଗୀତ ସଙ୍କଳନ "ଗୀଦା" ଏକ ସାର୍ଥକ ଉଦ୍ୟମ । ନରିନ୍ଦ୍ର ପାଲ ସିଂଙ୍କ ପ୍ରବନ୍ଧସମୂହ ଲଘୁ ଜାତୀୟ ।

ଶିଶୁ-ସାହିତ୍ୟ କ୍ଷେତ୍ରରେ ମଧ୍ୟ ପଞ୍ଜାବୀ ସାହିତ୍ୟରେ ଆଶାନୁରୂପ ରଚନା ଦେଖାଯାଏ ନାହିଁ । ଶିଶୁମାନଙ୍କ ଉଦ୍ଦେଶ୍ୟରେ ପଞ୍ଜାବୀ ଭାଷାରେ ଅବଶ୍ୟ କେତେ ଖଣ୍ଡି ପତ୍ରିକା ପ୍ରକାଶିତ ହେଉଅଛି । ଉନ୍ନତ ଏବଂ ଉଚ୍ଚ ସାହିତ୍ୟ ସୃଷ୍ଟି କାର୍ଯ୍ୟରେ

"ପଂଜଦରିଆ", "ପ୍ରୀତଲଡ଼ୀ", "ପାଞ୍ଜାବୀ ଦୁନିଆ", "ପଞ୍ଜାବୀ ସାହିତ", "ପ୍ରୀତମ" ପ୍ରଭୃତି ପତ୍ରିକା ବୃତ୍ତି । ଆଧୁନିକ ସାହିତ୍ୟର ପରିପୁଷ୍ଟି ପକ୍ଷରେ ଅନୁବାଦ ସାହିତ୍ୟ କେତେକାଂଶରେ ଦାୟୀ । ପଞ୍ଜାବୀ ଭାଷାରେ ଅନୁବାଦର ପରିମାଣ ମଧ୍ୟ ଯଥେଷ୍ଟ ନୁହେ । କେତେ ଖଣ୍ଡି ବିଦେଶୀ ପୁସ୍ତକ ବଙ୍ଗଳା, ହିନ୍ଦୀରୁ କେତେଖଣ୍ଡି ଉପାଦେୟ ଗ୍ରନ୍ଥ ପଞ୍ଜାବୀରେ ଅନୂଦିତ । ପ୍ରେମଚନ୍ଦ୍, ଶରତ୍‌ଚନ୍ଦ୍ର, ବଙ୍କିମ ଏବଂ ରବୀନ୍ଦ୍ରନାଥଙ୍କର ମନୋନୀତ ଉପନ୍ୟାସ, କବିତା ପଞ୍ଜାବୀରେ ଅନୂଦିତ । ରବି ଠାକୁରଙ୍କ ଗୀତାଞ୍ଜଳୀ, ପ୍ରବୋଧକୁମାର ସାନ୍ୟାଲଙ୍କ 'ମହାପ୍ରସ୍ଥାନେର୍ ପଥେ' ଅନୁବାଦ ମଧ୍ୟରେ ଉଲ୍ଲେଖଯୋଗ୍ୟ ।

ପଞ୍ଜାବୀ ଭାଷାର ନିମ୍ନଲିଖିତ ପୁସ୍ତକମାନ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାରପ୍ରାପ୍ତ ହୋଇଅଛି—

୧୯୫୫ରେ ମେରେ ସଇନା ଜିଓ (Merey Saina Jio) କବିତା—ଲେଖକ ସ୍ୱର୍ଗତ ଭାଇ ବୀର ସିଂ
୧୯୫୬ରେ ସୁନେହୁରେ (କବିତା)—ଅମୃତା ପ୍ରୀତମ୍
୧୯୫୮ରେ ଓ୍ୱାଦା ଭେଲ (କବିତା)—ମୋହନ ସିଂ
୧୯୬୧ରେ ରଙ୍ଗମଞ୍ଚ (ପ୍ରବନ୍ଧ)—ବଳବନ୍ତ ଗର୍ଗୀ
୧୯୬୪ରେ ପାବ୍ବ (କବିତା)—ଶ୍ରୀମତୀ ପ୍ରଭୋଜିତ କାଉର ।

---

# ବଙ୍ଗଳା

ବଙ୍ଗଳା, ଆସାମୀ ଓ ଓଡ଼ିଆ—ଏହି ତିନି ଭାଷାର ମୂଳଭାଷା ଏକଦା ଏକ ଓ ଅଭିନ୍ନ ଥିଲା । କୌଣସି ସାହିତ୍ୟର ବିକାଶଧାରା ନିର୍ଣ୍ଣୟ କରିବା ସେହି ଭାଷାର ଉତ୍ପତ୍ତି ଓ ବିକାଶ ଉପରେ ନିର୍ଭର କରେ । କାରଣ, ଭାଷାର ଉତ୍ପତ୍ତି ସଙ୍ଗେ ସାହିତ୍ୟର ବିକାଶ ଜଡ଼ିତ । ଯେକୌଣସି ଭାଷା ହଠାତ୍ ଉଦ୍‌ଭୂତ ହୋଇନାହିଁ ବା ସମ୍ଭୂତ ହୋଇନାହିଁ । କାରଣ, ଭାଷାର ବିକାଶ ଓ ବିବର୍ତ୍ତନ ସମୟସାପେକ୍ଷ । ବଙ୍ଗଳା ଭାଷା କେବେ, କେଉଁ ସମୟରୁ ତା'ର ପ୍ରାକୃତ ସ୍ୱରୂପ ତ୍ୟାଗକଲା ଓ ସର୍ବଜନବୋଧ୍ୟ ସାହିତ୍ୟିକ ରୂପ ପରିଗ୍ରହ କଲା, ତାହା ବିତର୍କିତ ।

'ଚର୍ଯ୍ୟାପଦ' ବୌଦ୍ଧ ସିଦ୍ଧାଚାର୍ଯ୍ୟମାନଙ୍କ ରଚନା । ବଙ୍ଗଳାର ଭାଷାବିତ୍-ମାନଙ୍କ ମତରେ ସେହି 'ଚର୍ଯ୍ୟାପଦ' ହିଁ ବଙ୍ଗଳାଭାଷାର ମୂଳ ସାହିତ୍ୟିକ କୃତି । ନେପାଳରୁ ତାହା ଆବିଷ୍କୃତ ହୋଇଥିଲା ଏବଂ ତତ୍‌ସହିତ କେତେକ ଅପଭ୍ରଂଶ ରଚନା ମଧ୍ୟ ଲୋକଲୋଚନକୁ ଆସିଥିଲା । ତାହା 'ଦୋହା' ନାମରେ ଅଭିହିତ । 'ଚର୍ଯ୍ୟାପଦ'ର ଭାଷା ବଙ୍ଗଭାଷାର ପ୍ରାକ୍‌ଉତ୍ପତ୍ତିକାଳୀନ ଭାଷା । ମାତ୍ର 'ଦୋହା'ର ଭାଷା ପଶ୍ଚିମୀ ଅପଭ୍ରଂଶ ।

'ଚର୍ଯ୍ୟା' ହେଉଛି ଭକ୍ତିଭାବପ୍ରଣୋଦିତ କ୍ଷୁଦ୍ର କ୍ଷୁଦ୍ର ରଚନା ବା ପଦ୍ୟ । ସେଥିରେ ତାନ୍ତ୍ରିକ ବୌଦ୍ଧମାନଙ୍କର ବିଚାର, ଆଚାର ଓ ମନ୍ତ୍ର ପ୍ରତିଫଳିତ । ତାନ୍ତ୍ରିକ ବୌଦ୍ଧମାନଙ୍କୁ ସହଜିଆ ବୌଦ୍ଧ ବୋଲି ମଧ୍ୟ କୁହାଯାଇଥାଏ । ସେମାନଙ୍କୁ ସହଜିଆ କୁହାଯିବାର କାରଣ ହେଉଛି, ସେମାନେ ସାଧନାମାର୍ଗରେ ଆତ୍ମାର ଉପଲବ୍ଧି ଚାହୁଁଥିଲେ । ଏହା ଛଡ଼ା ସେମାନଙ୍କୁ ସହଜିଆ କୁହାଯିବାର କାରଣ, ସେମାନେ ପ୍ରଶସ୍ତ, ପ୍ରତ୍ୟକ୍ଷ ଓ ସହଜ ପଥରେ ସେମାନଙ୍କ ସାଧନାକୁ ନିୟନ୍ତ୍ରିତ କରିଥିଲେ । ଧର୍ମପ୍ରଣୋଦିତ ହେଲେହେଁ ଚର୍ଯ୍ୟାରଚନା ସାହିତ୍ୟିକ ଗୁଣରହିତ ।

ଡକ୍‌ଟର ଦୀନେଶ ଚନ୍ଦ୍ର ସେନ୍ ପ୍ରାଚୀନ ବଙ୍ଗସାହିତ୍ୟର ନିଦର୍ଶନ ସ୍ୱରୂପ ନିମ୍ନଲିଖିତ କେତେଗୋଟି ରଚନାକୁ ନିର୍ଦ୍ଦେଶ କରିଅଛନ୍ତି । ଯଥା :—

(୧) ଶୂନ୍ୟ ପୁରାଣ ଓ ଧର୍ମପୂଜାବିଧାନ ।

(୨) ଖନା ଓ ଡାକବଚନ ।

(୩) ବିଭିନ୍ନ ବ୍ରତକଥା ।

(୪) ନାଥ-ସାହିତ୍ୟ

(୫) ସଂସ୍କୃତ ସାହିତ୍ୟରୁ ଅନୂଦିତ କିମ୍ବା ସଂସ୍କୃତ ସାହିତ୍ୟର ଛାୟାରେ ଲିଖିତ କେତେକ କାବ୍ୟକବିତା ପ୍ରଧାନ ।

ଚତୁର୍ଦ୍ଦଶ ଶତାବ୍ଦୀର ମଧ୍ୟଭାଗରୁ ବଙ୍ଗଳା ସାହିତ୍ୟର ଯଥାର୍ଥ ବିକାଶ ଆରମ୍ଭ ହୋଇଥିଲା । ବୈଷ୍ଣବ କବି ଚଣ୍ଡୀଦାସ ହେଉଛନ୍ତି ଏହି ଯୁଗର ସାହିତ୍ୟର କର୍ଣ୍ଣଧାର । ତାଙ୍କୁ ରାଧାକୃଷ୍ଣଙ୍କର ଭକ୍ତକବି ବୋଲି ମଧ୍ୟ କୁହାଯାଇଥାଏ । ତାଙ୍କ କବିତାର ଲଳିତ ମୂର୍ଚ୍ଛନା ତଥା ଭାବଗାମ୍ଭୀର୍ଯ୍ୟ ଯୋଗୁଁ ବୈଷ୍ଣବ ସାହିତ୍ୟରେ ଏହାର ମୂଲ୍ୟ ସର୍ବାପେକ୍ଷା ଅଧିକ । ସ୍ୱୟଂ ଚୈତନ୍ୟ ଦେବ ଚଣ୍ଡୀଦାସଙ୍କ ଗୀତିକବିତାର ଜଣେ ପ୍ରଶଂସକ ଥିଲେ ବୋଲି ଜଣାଯାଏ । ଏହି ଚଣ୍ଡୀଦାସଙ୍କ ବ୍ୟାପକ ପରିଚୟ ପ୍ରସଙ୍ଗରେ ଅନେକ ସମୟରେ ମତଦ୍ୱୈଧ ଦେଖାଯାଏ । "ଶ୍ରୀକୃଷ୍ଣକୀର୍ତ୍ତନ" ତାଙ୍କର ରଚନା ଅଟେ । ସେହି ଗ୍ରନ୍ଥରେ ବଡ଼ୁ ଚଣ୍ଡୀଦାସ ଓ ଅନନ୍ତ ବଡ଼ୁଦାସ ତାହାର ପ୍ରଣେତା ବୋଲି ଉଲ୍ଲେଖ ଥିଲା । ମତଦ୍ୱୈଧ ସତ୍ତ୍ୱେ ପରମ୍ପରା ଅନୁଯାୟୀ "ଶ୍ରୀକୃଷ୍ଣକୀର୍ତ୍ତନ"ର ପ୍ରକୃତ ପ୍ରଣେତା ଚଣ୍ଡୀଦାସ ଅଟନ୍ତି । ସେ ନିଜକୁ ଜଣେ ଭକ୍ତ ବୋଲି ପରିଚୟ ଦେଇଥିଲେ । କୃଷ୍ଣ ଏବଂ ରାଧାଙ୍କ ମଧ୍ୟରେ ଯେଉଁ ପ୍ରେମ, ତାହାର ଆଧ୍ୟାତ୍ମିକ ଦିଗପ୍ରତି କବି ଦୃଷ୍ଟି ଦେଇଥିବା ଜଣାଯାଏ । ଏହି କାବ୍ୟ ସମ୍ପର୍କରେ ବଙ୍ଗୀୟ ସାହିତ୍ୟିକମାନେ ବହୁ ଗବେଷଣା ମଧ୍ୟ କରିଛନ୍ତି ।

## ପ୍ରାଚୀନ ସଂସ୍କୃତରୁ ଅନୁବାଦ ଓ ଅନୁସରଣ—

ପଞ୍ଚଦଶ ଶତାବ୍ଦୀର ପ୍ରଥମ ଭାଗରୁ ବଙ୍ଗଳାରେ ସାଧାରଣତଃ ସେନ-ବଂଶର ରାଜତ୍ୱ ପରେ ଏବଂ ତୁର୍କ ଆକ୍ରମଣ ସମୟଠାରୁ ହିଁ ଅନୁବାଦ କାର୍ଯ୍ୟ ଆରମ୍ଭ ହୋଇଥିଲା ।

ପଞ୍ଚଦଶ ଶତାବ୍ଦୀର ଜଣେ ପ୍ରସିଦ୍ଧ କବି ହେଉଛନ୍ତି କୃତ୍ତିବାସ ଓଝା । ବଙ୍ଗଳାରେ ରାମାୟଣ କାବ୍ୟ-ସାହିତ୍ୟର ସେ ସର୍ବଶ୍ରେଷ୍ଠ କବି ବୋଲି ବିବେଚିତ । କୃତ୍ତିବାସଙ୍କ ରାମାୟଣ ସଦୃଶ ଆଉ କୌଣସି ରାମାୟଣବିଷୟକ ରଚନା ବଙ୍ଗଳାର ପାଠକ ସମାଜରେ ଏତେ ଆଦୃତ ଓ ପରିଚିତ ନୁହେ । ଗୌଡ଼ ନରପତିଙ୍କ ଦରବାରର ପୃଷ୍ଠପୋଷକତା ଲାଭ କରି କବି ରାମାୟଣ ରଚନା କରିଥିବା ଜଣାଯାଏ । ଏହା ମୂଳ ବାଲ୍ମୀକି ସଂସ୍କୃତ ରାମାୟଣର ଅନୁବାଦ ନୁହେଁ, ଅନୁସରଣ ମାତ୍ର । କୃତ୍ତିବାସ ତାଙ୍କ ରଚନାରେ ମୂଳ ରାମାୟଣଠାରୁ ଅନେକ

ସ୍ୱାତନ୍ତ୍ର୍ୟ ପ୍ରଦର୍ଶନ କରିଛନ୍ତି । ସେଥିରେ ତାଙ୍କ ରାମାୟଣର ଧର୍ମୀୟ ଭାବ ଅପେକ୍ଷା ସାମାଜିକ ଧାରା ଉଲ୍ଲେଖଯୋଗ୍ୟ । ଉତ୍ତର ଭାରତରେ ରାମ ଓ କୃଷ୍ଣ ସମ୍ପ୍ରଦାୟ ଧର୍ମର ବିଶ୍ଳେଷଣ ଉପରେ ପୃଥକ୍ ହୋଇଥିଲେ ହେଁ ବଙ୍ଗଳାରେ ରାମ ଉପାସନା ବିଶେଷ ପ୍ରସାର ଲାଭ କରି ନଥିଲା । କାରଣ, ବଙ୍ଗଳାରେ କୃଷ୍ଣଭକ୍ତି ବିଶେଷ ପ୍ରସାରିତ ହୋଇଥିଲା । କୃତ୍ତିବାସଙ୍କ ରାମାୟଣର ଆବେଦନ ଆଧ୍ୟାତ୍ମିକ ଅପେକ୍ଷା ବିଶେଷ ମାନବିକ । ଏହା ବଙ୍ଗଳାର ଘରେ ଘରେ ଧର୍ମଦୃଷ୍ଟିରୁ ନୁହେଁ, ସାମାଜିକ ଆଦର୍ଶର ପ୍ରଖ୍ୟାପକରୂପେ ଆଦୃତ; ଯଥା "କୃତ୍ତିବାସ ପଣ୍ଡିତେର କବିତ୍ୱ ମଧୁର, ଶୁନିଲେ ପରମାନନ୍ଦ ପାପ ଯାୟ ଦୂର ।"

ପଞ୍ଚଦଶ ଶତାବ୍ଦୀର ଶେଷାର୍ଦ୍ଧରେ ମାଳାଧର ବସୁ ନାମକ ଜଣେ ପ୍ରସିଦ୍ଧ କବି "ଶ୍ରୀକୃଷ୍ଣ ବିଜୟ" ବା "ଗୋବିନ୍ଦ ବିଜୟ" ନାମକ ଏକ କାବ୍ୟ ରଚନା କରିଥିଲେ । ବର୍ଦ୍ଧମାନ ନିକଟବର୍ତ୍ତୀ କୁଳୀନ ଗ୍ରାମର ସେ ଅଧିବାସୀ ଥିଲେ । କୃତ୍ତିବାସ ଜଣେ ହିନ୍ଦୁ ନରପତିଙ୍କ ପ୍ରୋତ୍ସାହନ ଲାଭ କରିଥିଲେ; କିନ୍ତୁ ମାଳାଧର ବସୁ ଜଣେ ମୁସଲ୍‌ମାନ୍ ନବାବଙ୍କର ପୃଷ୍ଠପୋଷକତା ଲାଭ କରିଥିଲେ । ସେହି ନବାବଙ୍କ ନାମ ଥିଲା—ରୁକୁନ୍-ଉଦ୍ଦିନ୍-ବର୍‌ବାକ୍ ଶାହ । ଏହି ଘଟଣାର ଐତିହାସିକ ଗୁରୁତ୍ୱ କିଛି କମ୍ ନୁହେଁ । ମୁସଲ୍‌ମାନ୍‌ମାନେ ପ୍ରଥମେ ଆକ୍ରମଣକାରୀ ଭାବରେ ଏ ଦେଶକୁ ଆସିଥିଲେ । ପରବର୍ତ୍ତୀ କାଳରେ ସେମାନେ ଦେଶର ସାମାଜିକ, ଧାର୍ମିକ ତଥା ସାଂସ୍କୃତିକ ଧାରା ସହିତ ନିଜକୁ ଜଡ଼ିତ କରିଥିଲେ । ସମ୍ଭବତଃ ସେହି ଉଦ୍ଦେଶ୍ୟରେ ମୁସଲ୍‌ମାନ୍ ନବାବମାନେ ହିନ୍ଦୁ କବିମାନଙ୍କର ପୃଷ୍ଠପୋଷକତା କରୁଥିଲେ । କୁଳୀନ ଗ୍ରାମ ପଞ୍ଚଦଶ ଶତାବ୍ଦୀରେ ବୈଷ୍ଣବ ସଂସ୍କୃତିର ଏକ କେନ୍ଦ୍ର ଥିଲା । ମାଳାଧର ବସୁ ଜନସାଧାରଣଙ୍କ ମଧ୍ୟରେ ଭଗବତ୍ ଚିନ୍ତା ପ୍ରଚାର କରିବା ପାଇଁ ସାହିତ୍ୟର ଆଶ୍ରୟ ନେଇଥିଲେ । ତାଙ୍କୁ ଚୈତନ୍ୟଙ୍କର ପ୍ରବର୍ତ୍ତିତ ପ୍ରେମଧର୍ମର ପୂର୍ବବର୍ତ୍ତୀ ସୂଚନା ବୋଲି କୁହାଯାଇଥାଏ ।

କୃତ୍ତିବାସ ପଞ୍ଚଦଶ ଶତାବ୍ଦୀର ପ୍ରଥମ ଭାଗରେ ଆବିର୍ଭୂତ ହୋଇଥିଲେ । ତାଙ୍କ ଆତ୍ମ-ବିବରଣୀରେ ଉଲ୍ଲେଖ ଅଛି—

"ଆଦିତ୍ୟ ବାର ଶ୍ରୀପଞ୍ଚମୀ ପୂର୍ଣ୍ଣ ମାଘ ମାସ
ତଥି ମଧ୍ୟେ ଜନ୍ମ ହଇଲାମ କୃତ୍ତିବାସ ।"

× × × ×

"ବାପ ମାୟେର ଆଶୀର୍ବାଦେ ଗୁରୁଆଜ୍ଞାଦାନ
ରାଜାଜ୍ଞାୟ ରଚି ଗୀତ ସପ୍ତକାଣ୍ଡ ଗାନ ।"

ବିଦ୍ୟାଶିକ୍ଷା ପାଇଁ ଗୁରୁଗୃହରେ ଅବସ୍ଥାନ, ରାଜା ଗୌଡ଼େଶ୍ୱରଙ୍କ ଦରବାରରେ ପ୍ରଶଂସା ଲାଭ, ରାମାୟଣ ରଚନା ତାଙ୍କ ଜୀବନର ବିଶେଷ ବିଶେଷ ଘଟଣା । ସାର୍ଥକ ବଙ୍ଗଳା ରାମାୟଣରୂପେ କୃତ୍ତିବାସଙ୍କ ରାମାୟଣ ଗୃହୀତ ହୋଇଥାଏ । କୃତ୍ତିବାସଙ୍କ ପରେ ଯେଉଁମାନେ ରାମାୟଣର କବି ଭାବରେ ପରିଚିତ ସେମାନେ ହେଲେ ନିତ୍ୟାନନ୍ଦ ଆଚାର୍ଯ୍ୟ (ଅଦ୍ଭୁତାଚାର୍ଯ୍ୟ), ଦ୍ୱିଜ ଭବାନୀ ନାଥ ଓ ଅମାନନ୍ଦ ଘୋଷ ।

ବଙ୍ଗଳା ପଦ୍ୟରେ ଭାଗବତ ପୁରାଣ ଅନୁବାଦ କରି ମାଲାଧର ବସୁ ଏକ ମହତ୍ତ୍ୱ କର୍ତ୍ତବ୍ୟ ସମ୍ପାଦନ କରିଥିଲେ । ଚୈତନ୍ୟଙ୍କ ପ୍ରେମଧର୍ମର ଶୁଭ ଆଗମନୀ ଯେପରି ମାଲାଧର ବସୁଙ୍କ ରଚନାରେ ପ୍ରତିଧ୍ୱନିତ ହୋଇଥିଲା ।

ମୁସଲ୍‌ମାନମାନଙ୍କର ବଙ୍ଗଳା ଅଭିଯାନ ପରୋକ୍ଷଭାବରେ ବଙ୍ଗଭାଷା ଓ ସାହିତ୍ୟର ପରିପୁଷ୍ଟିତା ପାଇଁ ସାହାଯ୍ୟ କରିଥିଲା । ଫଳରେ, ସାହିତ୍ୟରେ ନୂତନ ମାର୍ଗ ଅନୁସୃତ ହେଲା ଓ ନୂତନ ବିଷୟବସ୍ତୁ ସ୍ଥାନ ପାଇଲା । ବିଭିନ୍ନ ଦେବଦେବୀ କ୍ରମେ ବଙ୍ଗ ସମାଜରେ ଓ ସାହିତ୍ୟରେ ସ୍ଥାନ ଲାଭ କରିଥିଲେ । ପରବର୍ତ୍ତୀ କାଳରେ ବୌଦ୍ଧଧର୍ମର ତନ୍ତ୍ରବାଦ ମଧ୍ୟ କେତେକ ଦେବଦେବୀଙ୍କର ଉପାସନା ପ୍ରବର୍ତ୍ତନ କରିଥିଲା । ମୁଖ୍ୟତଃ ଏହି ଅଧିଷ୍ଠାତ୍ରୀ ଦେବୀମାନଙ୍କର ଉପାସନା ଓ ପୂଜା ସାହିତ୍ୟରେ ସ୍ୱୀକୃତି ଲାଭ କରିଥିଲା ଏବଂ ସେମାନଙ୍କର ବର୍ଣ୍ଣନା ଓ ଅସାଧସାଧନ ଇତ୍ୟାଦ ଯେଉଁ କାବ୍ୟମାନଙ୍କରେ ବର୍ଣ୍ଣିତ ହୋଇଥିଲା, ତାକୁ "ମଙ୍ଗଳକାବ୍ୟ" କୁହାଯାଉଥିଲା । ସେହି ମଙ୍ଗଳକାବ୍ୟ ବର୍ଣ୍ଣନାତ୍ମକ ଓ ଦୀର୍ଘ ପଦ୍ୟାକାରରେ ଦେଖିବାକୁ ମିଳେ । ସେଥିରେ ଜଣେ ଦେବତା ବା ଦେବୀ ଅନ୍ୟାୟ ଓ ଅତ୍ୟାଚାର ବିରୁଦ୍ଧରେ ଅଭିଯାନ କରୁଥିବା ବିଷୟ ସାଧାରଣତଃ ବର୍ଣ୍ଣିତ ହେଉଥିଲା । ଏହି ଦେବୀ ଅତ୍ୟାଚାରୀମାନଙ୍କୁ ଦମନ କରି ନିଜର ପ୍ରତିଷ୍ଠିତ ଧର୍ମ ସମାଜରେ ବଜାୟ ରଖନ୍ତି । ମାନବସମାଜରେ ଅନ୍ୟାୟ ବିରୁଦ୍ଧରେ ଯେଉଁ ରକ୍ତାକ୍ତ ବିପ୍ଳବ ଏବଂ ଶକ୍ତି ନିକଟରେ ଦୁର୍ବୃତ୍ତମାନଙ୍କର ଆତ୍ମସମର୍ପଣ— ଏହିପରି ଅଲୌକିକ ଘଟଣାର ବର୍ଣ୍ଣନାରେ ମଙ୍ଗଳକାବ୍ୟ ପରିପୂର୍ଣ୍ଣ । ଧର୍ମପ୍ରଚାର ମଙ୍ଗଳ-କାବ୍ୟର ଲକ୍ଷ୍ୟ ହେଲେହେଁ ତାହା ଗୌଣ । କାରଣ, ମଙ୍ଗଳକାବ୍ୟର କବିମାନେ ଯେଉଁ କବିତ୍ୱ ଓ ପାଣ୍ଡିତ୍ୟ ପ୍ରଦର୍ଶନ କରିଛନ୍ତି, ତାହା ସେମାନଙ୍କର ଧର୍ମପ୍ରଚାର କାର୍ଯ୍ୟକୁ ଅତିକ୍ରମ କରି ସାହିତ୍ୟିକ ସିଦ୍ଧି ଅର୍ଜନ କରିଅଛି । ମଙ୍ଗଳକାବ୍ୟ ସେହି ସମୟର ଏକ ମନସ୍ତାତ୍ତ୍ୱିକ ପରିପ୍ରକାଶ ବୋଲି କୁହାଯାଇପାରେ । ଏହାର ଭିତ୍ତି ଧର୍ମମୂଳକ ହେଲେହେଁ ପରବର୍ତ୍ତୀ ଯୁଗରେ ଏହାର ସାମାଜିକ ପ୍ରଭାବ ଅତ୍ୟଧିକ ବୋଲି ଜଣାପଡ଼େ । ସହାନୁଭୂତି,

ଦୟା ଓ କାରୁଣ୍ୟ ମଙ୍ଗଳକାବ୍ୟ ରଚନାର ଗୌରବ । ଦୈବୀଶକ୍ତିର ଆବିର୍ଭାବ ସଙ୍ଗେ ସଙ୍ଗେ ସମାଜର ଯେଉଁ ବାସ୍ତବଚିତ୍ର କବିମାନେ ମଙ୍ଗଳକାବ୍ୟରେ ପରିବେଷଣ କରିଥିଲେ, ସେଥିରେ ସମସାମୟିକ ସମାଜର ସାଂସ୍କୃତିକ, ରାଜନୈତିକ ଓ ଅର୍ଥନୈତିକ ଚିତ୍ର ଦେଖିବାକୁ ମିଳେ । କେତେକ ମଙ୍ଗଳକାବ୍ୟରେ ଭୌଗୋଳିକ ବର୍ଣ୍ଣନା ମଧ୍ୟ ପରିଦୃଷ୍ଟ ହୁଏ । ପୌରାଣିକ ଏବଂ ଲୌକିକ ଏପରି ଦୁଇଗୋଟି ଧାରା ଏହି ରଚନାରେ ପରିଦୃଷ୍ଟ । ମଙ୍ଗଳକାବ୍ୟର ଲୋକପ୍ରିୟତା ଯୋଗୁଁ ବୈଷ୍ଣବ କବିମାନେ ମଧ୍ୟ ନିଜ ରଚନାକୁ ମଙ୍ଗଳକାବ୍ୟ ନାମରେ ଅଭିହିତ କରୁଥିଲେ ।

ପଞ୍ଚଦଶ ଶତାବ୍ଦୀରେ ପୂର୍ଣ୍ଣାଙ୍ଗ 'ମଙ୍ଗଳକାବ୍ୟ' ପ୍ରଣୀତ ହୋଇଥିଲେହେଁ, ତ୍ରୟୋଦଶ ଶତାବ୍ଦୀରୁ ମଙ୍ଗଳକାବ୍ୟର ରୂପରେଖର ସୂଚନା ମିଳିଥିଲା ବୋଲି ଅନେକ ପଣ୍ଡିତ ମତ ଦିଅନ୍ତି । ମଙ୍ଗଳକାବ୍ୟ ସାଧାରଣତଃ ଚାରି ପ୍ରକାର— (୧) ମନସାମଙ୍ଗଳ, (୨) ଚଣ୍ଡୀମଙ୍ଗଳ, (୩) ଧର୍ମମଙ୍ଗଳ, (୪) ଅନ୍ନଦାମଙ୍ଗଳ । ଦେବଦେବୀଙ୍କର ବନ୍ଦନା, ସୃଷ୍ଟିତତ୍ତ୍ୱ ଏହି ରଚନାର ଉପଜୀବ୍ୟ । ସ୍ୱର୍ଗଭ୍ରଷ୍ଟ ଦେବଦେବୀ ଏହାର ନାୟକ-ନାୟିକା ।

'ମନସାମଙ୍ଗଳ' ସର୍ପଦେବୀ ମନସାଙ୍କୁ କେନ୍ଦ୍ର କରି, 'ଚଣ୍ଡୀମଙ୍ଗଳ' ଆଦ୍ୟାଶକ୍ତି ଚଣ୍ଡୀଙ୍କୁ କେନ୍ଦ୍ର କରି ଏବଂ 'ଧର୍ମମଙ୍ଗଳ' ଦକ୍ଷିଣ-ପଶ୍ଚିମ ବଙ୍ଗଳାର 'ଧର୍ମଠାକୁର' ନାମକ ଏକ ସ୍ଥାନୀୟ ଦେବତାଙ୍କୁ କେନ୍ଦ୍ର କରି ପ୍ରଣୀତ ହୋଇଥିଲା । "ମନସାମଙ୍ଗଳ" ସର୍ବାପେକ୍ଷା ପ୍ରାଚୀନ ଓ ତାର ଅନ୍ୟ ନାମ ପଦ୍ମପୁରାଣ । ପଞ୍ଚଦଶ ଶତାବ୍ଦୀରେ ଜୀବିତ ଥିବା ବିଜୟଗୁପ୍ତ ନାମକ ଜଣେ କବିଙ୍କଦ୍ୱାରା 'ମନସା-ମଙ୍ଗଳ' ରଚିତ ହୋଇଥିବା ଜଣାଯାଏ ।

ବଙ୍ଗ ଦେଶର ମନସାପୂଜା ଅତି ପ୍ରାଚୀନ ଏବଂ ମନସା ସର୍ପଦେବୀ ଭାବରେ ପୂଜିତା । ଦକ୍ଷିଣ ଭାରତର ମନସା ଆମ୍ମା ପୂଜା ଏଠାରେ ଉଲ୍ଲେଖ-ଯୋଗ୍ୟ ।

## ୧୪୮୬-୧୭୫୦

ଖ୍ରୀ: ୧୪୮୬ରୁ ୧୭୫୦—ଏହି କାଳକୁ ବଙ୍ଗସାହିତ୍ୟରେ "ଚୈତନ୍ୟଦେବ-ଯୁଗ" ବା "ଦ୍ୱିତୀୟ ମଧ୍ୟଯୁଗ" କୁହାଯାଏ । ଚୈତନ୍ୟଦେବଙ୍କ ପ୍ରଭାବ ବଙ୍ଗସମାଜ ଓ ସାହିତ୍ୟରେ ସର୍ବାପେକ୍ଷା ଅଧିକ । କେବଳ ବଙ୍ଗସାହିତ୍ୟ ନୁହେଁ, ସମଗ୍ର ରାଜ୍ୟର ସାଂସ୍କୃତିକ ଇତିହାସରେ ଚୈତନ୍ୟଦେବଙ୍କ ଆବିର୍ଭାବ ଏକ ଯୁଗାନ୍ତକାରୀ

ଘଟଣା । ଏହା ବାସ୍ତବିକ ଇତିହାସରେ ଏକ ନୂତନ ପର୍ଯ୍ୟାୟ । ପଞ୍ଚଦଶ ଶତାବ୍ଦୀର ଶେଷ ଭାଗ ଓ ଷୋଡ଼ଶ ଶତାବ୍ଦୀରୁ ଅଷ୍ଟାଦଶ ଶତାବ୍ଦୀ ମଧ୍ୟରେ ବଙ୍ଗଳା-ସାହିତ୍ୟ ଚୈତନ୍ୟଦେବଙ୍କ ଭାବଧାରାଦ୍ୱାରା ପ୍ରଭାବିତ ହୋଇଥିଲା । ବଙ୍ଗସଂସ୍କୃତିର କେନ୍ଦ୍ରରୂପେ ନବଦ୍ୱୀପ ସେତେବେଳେ ବିଶେଷ ପ୍ରସିଦ୍ଧି ଲାଭ କରିଥିଲା । କେବଳ ବୈଷ୍ଣବଧର୍ମର କେନ୍ଦ୍ରରୂପେ ନୁହେଁ, ସଂସ୍କୃତି ଓ ଅନ୍ୟାନ୍ୟ ଶାସ୍ତ୍ରର ମୂଳପୀଠରୂପେ ନଦୀଆର (ନବଦ୍ୱୀପର) ଗୁରୁତ୍ୱ ଖୁବ୍ ବେଶି । ଚୈତନ୍ୟଙ୍କ (୧୪୮୬-୧୫୩୩) ପ୍ରବର୍ତ୍ତିତ ବୈଷ୍ଣବଧର୍ମ ଧର୍ମ ତଥା ସାହିତ୍ୟ ଭାବରେ ବଙ୍ଗଳାରେ ଆନ୍ଦୋଳନର ସୂତ୍ରପାତ କରିଥିଲା । ଚୈତନ୍ୟଙ୍କ ପୂର୍ବରୁ ବୈଷ୍ଣବଧର୍ମ ବଙ୍ଗଳାରେ ପ୍ରସାର ଲାଭ କରିଥିଲା; କିନ୍ତୁ ଚୈତନ୍ୟ ଓ ସେହି ଯୁଗର କବିମାନେ ବୈଷ୍ଣବଧର୍ମକୁ ବ୍ୟାପକ ତଥା ସର୍ବଜନଗ୍ରାହୀ କରିବାରେ ଦାୟୀ ହୋଇଥିଲେ ।

ଚୈତନ୍ୟଙ୍କର ଛଅଜଣ ଶିଷ୍ୟ ଥିଲେ । ସେମାନେ ଷଟ୍ ଗୋସ୍ୱାମୀ ନାମରେ ପରିଚିତ । ଧର୍ମକ୍ଷେତ୍ରରେ ତାଙ୍କର ଏହି ଶିଷ୍ୟମାନେ ଓ ସାହିତ୍ୟକ୍ଷେତ୍ରରେ ସଂଖ୍ୟାଧିକ କବି ରାଧାକୃଷ୍ଣ ଲୀଳା ଓ ଚୈତନ୍ୟଙ୍କ ଲୀଳା ବିଷୟ ବର୍ଣ୍ଣନା କରି ସହସ୍ର ସହସ୍ର ଗୀତିକା ରଚନା କରିଥିଲେ । ଗୋସ୍ୱାମୀମାନଙ୍କ ମଧ୍ୟରୁ ସନାତନ, ରୂପଗୋସ୍ୱାମୀ ଓ ଜୀବଗୋସ୍ୱାମୀ ବଙ୍ଗଭାଷାରେ ତାତ୍ତ୍ୱିକ କାବ୍ୟମାନ ରଚନା କରିଥିଲେ ଏବଂ ସଂସ୍କୃତଭାଷାରେ ଅଲଙ୍କାର ଗ୍ରନ୍ଥମାନ ରଚନା କରିଥିଲେ । ଏତଦ୍‌ଭିନ୍ନ ସେମାନେ ବଙ୍ଗଳାରେ ଚୈତନ୍ୟଙ୍କ ବିଶ୍ୱାସ ଓ ଆଦର୍ଶକୁ ସମାଜରେ ଲୋକପ୍ରିୟ ଓ ପ୍ରଚାର କରିପାରିଥିଲେ ।

ଷୋଡ଼ଶ ଶତାବ୍ଦୀରେ ଚୈତନ୍ୟଙ୍କ ପ୍ରତ୍ୟକ୍ଷ ପ୍ରଭାବରେ ଓ ପ୍ରେରଣାରେ ଯେଉଁ ରଚନା ପ୍ରଣୀତ ହୋଇଥିଲା, ତାହା ମୁଖ୍ୟତଃ ଦୁଇଭାଗରେ ବିଭକ୍ତ — ପ୍ରଥମ ହେଉଛି ପଦ୍ୟାତ୍ମକ ଓ ଦ୍ୱିତୀୟ ହେଉଛି ଜୀବନଚରିତମୂଳକ । ଗୀତିକବିମାନଙ୍କ ମଧ୍ୟରେ ଚୈତନ୍ୟଙ୍କ ସମସାମୟିକ ଓ ଶିଷ୍ୟ ମୁରାରି ଗୁପ୍ତ, ନରହରି ସରକାର, ବାସୁଦେବ ଘୋଷ ଓ ରାମାନନ୍ଦ ବସୁଙ୍କ ନାମ ବିଶେଷ ଉଲ୍ଲେଖ-ଯୋଗ୍ୟ । ଯେଉଁ ସଂଖ୍ୟାଧିକ କବି ଚୈତନ୍ୟଙ୍କ ପରେ ଆବିର୍ଭୂତ ହୋଇଥିଲେ, ସେମାନଙ୍କ ମଧ୍ୟରେ ଲୋଚନ ଓ ବଳରାମ ଦାସ ପ୍ରଭୃତିଙ୍କ ନାମ ସ୍ମରଣୀୟ । ଶେଖର ମଧ୍ୟ ଜଣେ ବିଶିଷ୍ଟ କବି ଥିଲେ । ପରିମାଣ ଓ ଗୁଣାତ୍ମକ, ଉଭୟ ଦୃଷ୍ଟିରୁ ସେମାନଙ୍କର ଗୀତିକବିତା ଉଚ୍ଚାଙ୍ଗ ହୋଇଥିଲା । ପ୍ରାୟ ୧୫୦ରୁ ଅଧିକ କବି କେବଳ ବୈଷ୍ଣବ ପଦାବଳୀ ରଚନା କରିଥିବା ଜଣାଯାଏ । ସେମାନଙ୍କ ମଧ୍ୟରେ ମୁସଲମାନ ସମ୍ପ୍ରଦାୟର କବି ମଧ୍ୟ ଥିଲେ । ସେମାନେ ଧର୍ମାନ୍ତର ଗ୍ରହଣ କରିନଥିଲେ; ମାତ୍ର ରାମକୃଷ୍ଣଙ୍କ ଲୀଳା ଲୋକସମାଜରେ ଏତେଦୂର ଆଦୃତ ହୋଇଥିଲା ଯାହା-

ଫଳରେ କି ମୁସଲ୍‌ମାନ କବିମାନେ ମଧ୍ୟ ଗୀତିକା ଲେଖିବା ପାଇଁ ଆକୃଷ୍ଟ ହୋଇଥିଲେ । ଚୈତନ୍ୟଙ୍କୁ କେନ୍ଦ୍ର କରି ଲିଖିତ ପଦାବଳୀ ସାଧାରଣତଃ ତିନି-ଭାଗରେ ବିଭକ୍ତ; ଯଥା—ପ୍ରଥମତଃ ଗୌରାଙ୍ଗଙ୍କ ଜୀବନକୁ କେନ୍ଦ୍ର କରି ଲିଖିତ ପଦାବଳୀ; ଦ୍ୱିତୀୟତଃ ଶ୍ରୀକୃଷ୍ଣଙ୍କର ଅବତାରରୂପେ ଗୌରାଙ୍ଗଙ୍କର ନବଦ୍ୱୀପରେ ଲୀଳାବର୍ଣ୍ଣନା; ତୃତୀୟତଃ ରାଧା କିମ୍ବା କୃଷ୍ଣଙ୍କର ଗଭୀର ଆବେଗର ବର୍ଣ୍ଣନା । ଏହି ସବୁ ଗୀତସମୂହ ଗୌରଚନ୍ଦ୍ରିକା ନାମରେ ପରିଚିତ । ରାଧା ଏବଂ କୃଷ୍ଣଙ୍କର ପ୍ରେମଲୀଳା ହିଁ ଏତାଦୃଶ ଗୀତିରଚନାର ପ୍ରଧାନ ଉପଜୀବ୍ୟ । ବଙ୍ଗଳାର ସମସ୍ତ କବି ରାଧାକୃଷ୍ଣଙ୍କର ଅବ୍ୟକ୍ତ ମଧୁରଲୀଳା ବୃନ୍ଦାବନରେ ସନ୍ଦର୍ଶନ କରି ବିହ୍ୱଳ ହୋଇଥାନ୍ତି । ରାଧାକୃଷ୍ଣଙ୍କର ମଧୁର ପ୍ରେମଲୀଳା ପୃଷ୍ଠଭୂମିରେ ମାନବିକ ପ୍ରେମର ସ୍ପର୍ଶ ବୈଷ୍ଣବ କବିମାନେ ଅବଶ୍ୟ ଅନୁଭବ କରିଥିଲେ । ମାନବ ଏବଂ ଦେବତା ମଧ୍ୟରେ ବୈଷ୍ଣବ କବିର ସଙ୍ଗୀତ ଯେପରି ସୂକ୍ଷ୍ମ ଆଧ୍ୟାତ୍ମିକ ଯୋଗସୂତ୍ର । ନରନାରୀ ହୃଦୟର ପ୍ରେମ-ସ୍ପନ୍ଦନ, ଗଭୀର ଆବେଗ ଏହି ସବୁ ସଙ୍ଗୀତ ମଧ୍ୟରେ ହିଁ ପ୍ରତିଫଳିତ । ସହଜିଆ ବୈଷ୍ଣବ ସଂପ୍ରଦାୟର କବିମାନେ ପ୍ରେମକୁ ହିଁ ସେମାନଙ୍କ ସାଧନାରେ ଶ୍ରେଷ୍ଠ ସ୍ଥାନ ଦେଇଥିଲେ । ସେମାନଙ୍କ ମତରେ ପ୍ରତ୍ୟେକ ପୁରୁଷଠାରେ ଶ୍ରୀକୃଷ୍ଣଙ୍କର ଏବଂ ପ୍ରତ୍ୟେକ ନାରୀଠାରେ ଶ୍ରୀରାଧାଙ୍କର ସତ୍ତା ହିଁ ନିହିତ । ରାଧାକୃଷ୍ଣଙ୍କର ମିଳନରେ ହିଁ ଚରନ୍ତନ ଆନନ୍ଦାନୁଭୂତି ଏବଂ ମୁକ୍ତି ପ୍ରତିଫଳିତ । ଷୋଡ଼ଶ ଶତାବ୍ଦୀ ପରେ ବୈଷ୍ଣବ ସାହିତ୍ୟରେ ଜୀବନୀ ରଚନା ବିଶେଷ ସ୍ଥାନ ଲାଭ କରିଥିଲା । ଭଗବାନ ଶ୍ରୀକୃଷ୍ଣଙ୍କର ଅବତାରରୂପେ ଶ୍ରୀଚୈତନ୍ୟଙ୍କୁ ଶିଷ୍ୟମାନେ ଗ୍ରହଣ କରିସାରିଥିଲେ । ମୁରାରି ଗୁପ୍ତଙ୍କର ସଂସ୍କୃତରେ ଲିଖିତ ଚୈତନ୍ୟଙ୍କ ଜୀବନୀ, ପରମାନନ୍ଦ ସେନଙ୍କ (କବିକର୍ଣ୍ଣପୁର ନାମେ ପରିଚିତ) ଲିଖିତ କାବ୍ୟ 'ଚୈତନ୍ୟ ଚରିତାମୃତ' ଏବଂ ନାଟକ 'ଚୈତନ୍ୟ ଚନ୍ଦ୍ରୋଦୟ', ବୃନ୍ଦାବନ ଦାସଙ୍କର ଜୀବନୀ 'ଚୈତନ୍ୟ ଭାଗବତ' ଉଲ୍ଲେଖଯୋଗ୍ୟ । ଏହାର ପରବର୍ତ୍ତୀ କାଳରେ ଲୋଚନ ଦାସ ଏବଂ ଜୟାନନ୍ଦ 'ଚୈତନ୍ୟ ମଙ୍ଗଳ' ନାମରେ ସ୍ୱତନ୍ତ୍ର ଜୀବନୀ ରଚନା କରିଥିଲେ । କୃଷ୍ଣଦାସ କବିରାଜଙ୍କର "ଚୈତନ୍ୟଚରିତାମୃତ" ଏକ ବିଶେଷତ୍ୱପୂର୍ଣ୍ଣ ଜୀବନୀ ଗ୍ରନ୍ଥ । ଏଥିମଧ୍ୟରୁ ବୃନ୍ଦାବନ ଦାସଙ୍କର ଚୈତନ୍ୟ ଭାଗବତ ଏବଂ କୃଷ୍ଣଦାସ କବିରାଜଙ୍କର ଚୈତନ୍ୟଚରିତାମୃତରୁ ସମସାମୟିକ ସମାଜଚିତ୍ର, ବୈଷ୍ଣବଧର୍ମତତ୍ତ୍ୱ ଏବଂ ସାଂସ୍କୃତିକ ସ୍ଥିତିର ପରିଚୟ ମିଳିଥାଏ । ସପ୍ତଦଶ ଶତାବ୍ଦୀରେ ବଙ୍ଗଳା ବୈଷ୍ଣବଧର୍ମର ଇତିହାସରେ ଶ୍ରୀନିବାସ, ନରୋତ୍ତମ ଏବଂ ଶ୍ୟାମାନନ୍ଦଙ୍କର ନାମ ଉଲ୍ଲେଖଯୋଗ୍ୟ । ନିତ୍ୟାନନ୍ଦ ଦାସଙ୍କ ଲିଖିତ 'ପ୍ରେମବିଳାସ', ନରହରି ଚକ୍ରବର୍ତ୍ତୀଙ୍କର 'ନରୋତ୍ତମବିଳାସ' ଏବଂ 'ଭକ୍ତି ରତ୍ନାକର' ଏମାନଙ୍କ ଜୀବନୀ ତଥା ଧର୍ମପ୍ରଚାର ପ୍ରସଙ୍ଗରେ ଉଲ୍ଲେଖଯୋଗ୍ୟ ଗ୍ରନ୍ଥ ।

ଚୈତନ୍ୟଙ୍କ ଯୁଗ ଏବଂ ତାଙ୍କ ପରବର୍ତ୍ତୀ ଦୁଇ ଶତାବ୍ଦୀ କେବଳ ବୈଷ୍ଣବ ସାହିତ୍ୟ ରଚନାଦ୍ୱାରା ଚିହ୍ନିତ ହୋଇନଥିଲା । ଏହି ଯୁଗରେ ଲିଖିତ ସାହିତ୍ୟକୁ ସମ୍ଭାର ଦୁଇ ଶ୍ରେଣୀରେ ବିଭକ୍ତ କରାଯାଇପାରେ; ଯଥା ମଙ୍ଗଳ କାବ୍ୟ ଏବଂ ଅନୁବାଦ-ସାହିତ୍ୟ । ଅନୁବାଦ ପର୍ଯ୍ୟାୟରେ ସାଧାରଣତଃ ରାମାୟଣ, ମହାଭାରତ ଏବଂ ଭାଗବତ ପୁରାଣ ନାମ ହିଁ ବିଶେଷ ଭାବରେ ଶୁଣାଯାଏ । ଅନେକ ସ୍ଥଳରେ ଅନୁବାଦ ଅପେକ୍ଷା ଅନୁସରଣରେ ହିଁ ବିଭିନ୍ନ ଗ୍ରନ୍ଥ ଲେଖାଯାଇଥିଲା । ପୂର୍ବରୁ କୁହାଯାଇଛି ଯେ କୃତ୍ତିବାସ ହେଉଛନ୍ତି ବଙ୍ଗଳା ଭାଷାରେ ରାମାୟଣର ପ୍ରଥମ ଏବଂ ଶ୍ରେଷ୍ଠ କବି । କୃତ୍ତିବାସଙ୍କ ପଦାଙ୍କ ଅନୁସରଣ କରି ନାରୀକବି ଚନ୍ଦ୍ରାବଳୀ, ଅବଧୂତାଚାର୍ଯ୍ୟ, ଷଷ୍ଠିବର ସେନ୍ ଏବଂ ତାଙ୍କ ପୁତ୍ର ଗଙ୍ଗାଦାସ ସେନ୍ ପ୍ରଭୃତି ରାମାୟଣ ରଚନା କରିଥିଲେ । ପଞ୍ଚଦଶ ଶତାବ୍ଦୀ କିମ୍ବା ଷୋଡ଼ଶ ଶତାବ୍ଦୀର ପ୍ରାରମ୍ଭରେ କୌଣସି କବି 'ମହାଭାରତ' ରଚନା ଆରମ୍ଭ କରି ନଥିଲେ । ସପ୍ତଦଶ ଶତାବ୍ଦୀର ପ୍ରଥମ ଭାଗରେ ରଚିତ କାଶୀରାମ ଦାସଙ୍କ ମହାଭାରତ ହିଁ ଉଲ୍ଲେଖ-ଯୋଗ୍ୟ କୃତି । ଜଣାଯାଏ ଯେ କାଶୀରାମ ଦାସ ମହାଭାରତ ରଚନା ସମ୍ପୂର୍ଣ୍ଣ କରି ପାରିନଥିଲେ । ତାଙ୍କ ପୁତ୍ର ତାହା ପୂର୍ଣ୍ଣ କରିଥିଲେ । ଲୋକପ୍ରିୟତା, ନୈତିକ ପ୍ରଭାବ ବିଚାରରେ କାଶୀରାମ ଦାସଙ୍କ ମହାଭାରତ ବଙ୍ଗଳାର ସାଂସ୍କୃତିକ ଜୀବନରେ ଏକ ଅପୂର୍ବ ପ୍ରଭାବ ସୃଷ୍ଟି କରିପାରିଛି । ମାଳାଧର ବାସୁଙ୍କ ଆଦର୍ଶରେ ମାଧବ ଆଚାର୍ଯ୍ୟ, ରଘୁନାଥ ପଣ୍ଡିତ ପ୍ରଭୃତି କବି ମଧ୍ୟ ଷୋଡ଼ଶ ଶତାବ୍ଦୀରେ ଭାଗବତ ଅନୁବାଦ କରିଥିଲେ । ମନସାମଙ୍ଗଳ କାବ୍ୟର ଆଦ୍ୟ ରଚୟିତାରୂପେ ହରିଦତ୍ତ (ଚତୁର୍ଦ୍ଦଶ ଶତାବ୍ଦୀ) ନାମକ ଜଣେ କବିଙ୍କର ନାମ ଉଲ୍ଲେଖଯୋଗ୍ୟ । ତାଙ୍କ ପରେ ବିଜୟ ଗୁପ୍ତ ମନସାମଙ୍ଗଳ ଅଥବା ପଦ୍ମ ପୁରାଣ ପ୍ରଣୟନ କଲେ । ତାଙ୍କ ରଚନାରେ ହାସ୍ୟରସ, ଦେବତାର ମାନବୋଚିତ ଆଚରଣ ପରିଦୃଷ୍ଟ । ସେ ବରିଶାଲ ଅନ୍ତର୍ଗତ ଗୈଲ-ଫୁଲଶ୍ରୀ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ବସୀରହାଟ ଅଞ୍ଚଳର ମୁକୁନ୍ଦ ପଣ୍ଡିତ ପୁତ୍ର ବିପ୍ରଦାସ ଚକ୍ରବର୍ତ୍ତୀ ମଧ୍ୟ ମନସାମଙ୍ଗଳ କାବ୍ୟ ରଚନା କରିଥିଲେ । ତାଙ୍କ ମନସାମଙ୍ଗଳ ରଚନାରେ 'ଜାଗୁଲି' ନାମର ଏବଂ ଧର୍ମଠାକୁର ନାମର ଉଲ୍ଲେଖ ଦେଖାଯାଏ । ତାଙ୍କ ରଚନାରେ ମଧ୍ୟ-ଯୁଗୀୟ ପଶ୍ଚିମ-ବଙ୍ଗ ସମାଜର ଚିତ୍ର ଦେଖିବାକୁ ମିଳେ । ନାରାୟଣ ଦେବଙ୍କ ମନସାମଙ୍ଗଳ ପାଠକ-ପ୍ରାଣରେ କରୁଣରସ ଉଦ୍ରେକ କରିଥାଏ । ତାଙ୍କ ଘର ଥିଲା ମଇମନସିଂହ ଅଞ୍ଚଳରେ ଏବଂ ସେହି ଅଞ୍ଚଳର ସପ୍ତଦଶ ଶତାବ୍ଦୀରେ ଆଉ ଜଣେ ମନସାମଙ୍ଗଳ-ରଚୟିତା ଥିଲେ ଦ୍ୱିଜ ବଂଶୀଦାସ । ତାଙ୍କ କାବ୍ୟରେ ବୈଷ୍ଣବ ଭାବୁକତା ପ୍ରତିଫଳିତ । ତାଙ୍କ ମନସାମଙ୍ଗଳ କାବ୍ୟ ଶ୍ରବଣ କରି ଡକାୟତର ମଧ୍ୟ ପରିବର୍ତ୍ତନ ଆସିଥିଲା ବୋଲି ଶୁଣାଯାଏ । ସପ୍ତଦଶ ଶତାବ୍ଦୀର କବି କେତକଦାସ କ୍ଷେମାନନ୍ଦ, ବୀରଭୂମି ଜିଲ୍ଲାର

କବି ବିଷ୍ଣୁପାଲଙ୍କ ବ୍ୟତୀତ ପଶ୍ଚିମବଙ୍ଗର କାଳୀଦାସ, ରସିକ ମିଶ୍ର, ସୀତାରାମ ଦାସ; ଅଷ୍ଟାଦଶ ଶତାବ୍ଦୀର ଉତ୍ତରବଙ୍ଗର ଜୀବନ ମିଶ୍ର ପ୍ରମୁଖ ବହୁ କବି ମନସା ମଙ୍ଗଳ ରଚନା କରିଥିଲେ । ପଶ୍ଚିମ ବଙ୍ଗ ଅପେକ୍ଷା ପୂର୍ବ ବଙ୍ଗରେ ମନସା ପୂଜାର ପ୍ରଚଳନ ଅଧିକ ।

**ଚଣ୍ଡୀମଙ୍ଗଳ**—ଷୋଡ଼ଶ ଶତାବ୍ଦୀର ପୂର୍ବରୁ ମଧ୍ୟ ବଙ୍ଗଳାରେ ମଙ୍ଗଳଚଣ୍ଡୀ ପୂଜା ପ୍ରଚଳିତ ଥିଲା । ଚଣ୍ଡୀ ବୈଦିକ ଦେବତା ନଥିଲେ । ପ୍ରାଚୀନ କାଳରେ ଦୁର୍ଗା, ଉମା, ଗୌରୀ, ପାର୍ବତୀ, କାଳୀଙ୍କ ସଙ୍ଗେ ଚଣ୍ଡୀଙ୍କର ପାର୍ଥକ୍ୟ ଥିଲେ ହେଁ ପରବର୍ତ୍ତୀକାଳରେ ସର୍ବେ ଏକ ହୋଇଥିଲେ । ଚଣ୍ଡୀମଙ୍ଗଳର ଆଖ୍ୟାନ ବସ୍ତୁ ତିନିଭାଗରେ ବିଭକ୍ତ । ପ୍ରଥମଭାଗରେ ସୃଷ୍ଟିତତ୍ତ୍ୱ, ଦେବଦେବୀଙ୍କ ବର୍ଣ୍ଣନା, ଶିବଙ୍କର ପାରିବାରିକ ଜୀବନଚିତ୍ର ଏବଂ ଦ୍ୱିତୀୟ ଓ ତୃତୀୟ ଭାଗରେ ଯଥାକ୍ରମେ କାଳକେତୁ ଓ ଧନପତି ଉପାଖ୍ୟାନ ଅନ୍ତର୍ଭୁକ୍ତ । ଇନ୍ଦ୍ରଙ୍କ ପୁତ୍ର ନୀଳାମ୍ବର ଦ୍ୱାରା ମର୍ତ୍ତ୍ୟରେ ନିଜର ପୂଜା ପାଇଁ ଚଣ୍ଡୀଦେବୀଙ୍କର ଇଚ୍ଛା । ଶିବଙ୍କ ଦ୍ୱାରା ଏହି ପ୍ରସ୍ତାବ ପ୍ରତ୍ୟାଖ୍ୟାନ ପରେ ନୀଳାମ୍ବରପ୍ରସୁତ ଫୁଲମାଳର କୀଟ ଶିବଙ୍କ ଗଳାଦଂଶନ ଫଳରେ ନୀଳାମ୍ବର ଅଭିଶପ୍ତ ହୋଇ ଧର୍ମକେତୁ ବ୍ୟାଧ ଘରେ କାଳକେତୁ ରୂପରେ ଏବଂ ତାର ସ୍ତ୍ରୀ ଛାୟା ମଧ୍ୟ ଆଉ ଏକ ବ୍ୟାଧର କନ୍ୟା ଫୁଲରା ନାମରେ ଜନ୍ମ ଗ୍ରହଣ କରିଥିଲେ ।

ଏହାପରେ କାଳକେତୁ ଏବଂ ଫୁଲରାଙ୍କର ବିବାହ ହୋଇଥିଲା । ବନ୍ୟପଶୁ ଶୀକାର କରି ସେମାନେ ଜୀବିକା ଅର୍ଜ୍ଜନ କରୁଥିଲେ । ଦିନେ କାଳକେତୁ ଶିକାର ଅଭାବରେ ଗୋଟାଏ ସୁନାଗୋଧିକୁ ବାନ୍ଧିନେଲା । ଗୋଧିକୁ ପୋଡ଼ି ଖାଇବା ଥିଲା ତାର ଅଭିପ୍ରାୟ । କାଳକେତୁ ବାହାରକୁ ମାଂସ ବିକ୍ରି କରିବାକୁ ଯାଇଥିବା ସମୟେ ତାର ସ୍ତ୍ରୀ ସ୍ନାନ କରିସାରି ଆସି ଦେଖିଲା ଗୋଧି ପରିବର୍ତ୍ତେ ଘର ଭିତରେ ଏକ ସୁନ୍ଦରୀ ଯୁବତୀ ଠିଆ ହୋଇଥିଲା । ସେହି ସୁନ୍ଦରୀ ଯୁବତୀ ସ୍ୱୟଂ ଚଣ୍ଡୀଦେବୀ । କାଳକେତୁ ବହୁ ପ୍ରଶ୍ନ ପଚାରିଲା । ଚଣ୍ଡୀଦେବୀ ତା' ଉପରେ ସନ୍ତୁଷ୍ଟ ହୋଇ ପ୍ରଚୁର ଧନସମ୍ପତ୍ତି ପ୍ରଦାନ କରିଥିଲେ । ହଠାତ୍ କାଳକେତୁ ବଡ଼ଲୋକ ହୋଇଥିଲା ଏବଂ ନୂତନ ନଗର ସ୍ଥାପନ କରିଥିଲା । ରାଜ୍ୟର ଜନୈକ ଧୂର୍ତ୍ତ ବ୍ୟକ୍ତିର ଚକ୍ରାନ୍ତ ଯୋଗୁଁ କାଳକେତୁ କଳିଙ୍ଗ ରାଜ୍ୟ ସହିତ ଯୁଦ୍ଧ କରି ବନ୍ଦୀ ହୋଇଥିଲା । ଚଣ୍ଡୀପୂଜା କରି କାଳକେତୁ ମୁକ୍ତିଲାଭ କରିଥିଲା । କିଛିଦିନ ରାଜତ୍ୱ ପରେ କାଳକେତୁ ଆଉ ଫୁଲରା ନୀଳାମ୍ବର ଏବଂ ଛାୟା ରୂପେ ସ୍ୱର୍ଗ ପ୍ରତ୍ୟାବର୍ତ୍ତନ କରିଥିଲେ ।

**ଧନପତି ଉପାଖ୍ୟାନ**—

ଉଜାନୀ ନଗରର ଶ୍ରେଷ୍ଠୀ ଧନପତିର ପ୍ରଥମ ସ୍ତ୍ରୀ ଲହନାର ସନ୍ତାନ ନ ହେବାରୁ, ସେ ଖୁଲ୍ଲଣାକୁ ବିବାହ କରିବାକୁ ଇଚ୍ଛା ପ୍ରକାଶ କଲେ । ଲହନା ପ୍ରଥମେ

ଆପତ୍ତି କରି ପରେ ସ୍ୱୀକୃତ ହେଲେ । ଧନପତି ଖୁଲ୍ଲଣାକୁ ବିବାହ କଲା । ଏହାପରେ ଧନପତି ଗୌଡ଼େଶ୍ୱର ନିର୍ଦ୍ଦେଶରେ ଲହନାଙ୍କ ଦାୟିତ୍ୱରେ ଖୁଲ୍ଲଣାଙ୍କୁ ଛାଡ଼ି ଗୌଡ଼ ରାଜ୍ୟ ଯାତ୍ରା କଲେ । ପ୍ରଥମେ ଲହନା ଏବଂ ଖୁଲ୍ଲଣାଙ୍କ ମଧ୍ୟରେ ସଦ୍‌ଭାବ ଥିଲା; ମାତ୍ର ପରେ ଜଣୈକା ଦୁଷ୍ଟା ସଖୀର କୁ-ପରାମର୍ଶରେ ଲହନା ଖୁଲ୍ଲଣା ଉପରେ ଅତ୍ୟାଚାର କଲା । ଖୁଲ୍ଲଣା ବଣରେ ଛେଳି ଚରାଇ ଓ ଲୋକଉପାସରେ ଦିନ ଅତିବାହିତ କଲା । ଏପରି ଅବସ୍ଥାରେ ଖୁଲ୍ଲଣା ବନଚଣ୍ଡୀଙ୍କୁ ପୂଜା କରି ପୁତ୍ରଲାଭ ବର ପ୍ରାପ୍ତ ହୋଇଥିଲା । ଧନପତି ବିଦେଶରୁ ଫେରି ଲହନାକୁ ତିରସ୍କାର କଲା । ଧନପତି ଶୈବ ଥିଲା, ସେ ଖୁଲ୍ଲଣାର ଉପାସ୍ୟ ବନଦେବୀଙ୍କୁ ଅସ୍ୱୀକାର କରି ପୂଜାଘଟ ଭାଙ୍ଗିଦେଲା । ଏହାପରେ ଡଙ୍ଗାରେ ଧନପତି ସିଂହଳ ଯାତ୍ରା କରିବା, ଜଳପଥରେ ଡଙ୍ଗା ବୁଡ଼ିଯିବା ଏବଂ ମଝିସମୁଦ୍ରରେ ଦେବୀ ତାହାକୁ 'କମଳେ କାମିନୀ' ରୂପରେ ଦେଖା ଦେବା, ଏହାପରେ ସିଂହଳରେ ପହଞ୍ଚି ସିଂହଳରାଜାଙ୍କ ଦ୍ୱାରା ସେ ବନ୍ଦୀ ହେଲା । କାରଣ ସେ ରାଜାଙ୍କୁ 'କମଳେ କାମିନୀ' ରୂପ ଦେଖାଇ ପାରି ନଥିଲା । ଇତିମଧ୍ୟରେ ଖୁଲ୍ଲଣାର ଏକ ପୁତ୍ର ଜାତ ହେଲା । ତାର ନାମ ଶ୍ରୀମନ୍ତ । ଶ୍ରୀମନ୍ତ ବୟଃପ୍ରାପ୍ତ ହେବା ସଙ୍ଗେ ସଙ୍ଗେ ପିତାଙ୍କୁ ଖୋଜି ଖୋଜି ଯାଇ ସିଂହଳରେ ଉପନୀତ ହେଲା । ସେ ମଧ୍ୟ ରାଜାଙ୍କୁ କମଳେ କାମିନୀ ରୂପ ଦେଖାଇ ନପାରି ପ୍ରାଣଦଣ୍ଡରେ ଦଣ୍ଡିତ ହେଲା । ଶ୍ରୀମନ୍ତର ବଧ ଦିନ ବନଦେବୀଙ୍କ ଚଣ୍ଡୀ-ଚାମୁଣ୍ଡା ସିଂହଳ ରାଜାଙ୍କୁ ଆକ୍ରମଣ କରି ରକ୍ତ ସ୍ରୋତ ବୁହାଇ ଦେଲେ । ଏହାପରେ ସିଂହଳ ରାଜା ଦେବୀଙ୍କର କମଳକାମିନୀ ରୂପ ଦେଖି ନିଜର ଭ୍ରମ ବୁଝିପାରି ପିତାପୁତ୍ରଙ୍କୁ କାରାମୁକ୍ତ କରିଦେଲେ । ସିଂହଳରାଜ ନିଜ କନ୍ୟାଙ୍କୁ ଶ୍ରୀମନ୍ତ ସହିତ ବିବାହ ଦେଲେ । ଧନପତି ଏବଂ ଶ୍ରୀମନ୍ତ ସ୍ୱଦେଶକୁ ଫେରିଲେ । ଦେଶରେ ଚଣ୍ଡୀ ପୂଜା ପ୍ରଚଳିତ ହେଲା । କାଲକେତୁ ଏବଂ ଖୁଲ୍ଲଣା ଉଭୟେ ବନ-ଚଣ୍ଡୀଙ୍କୁ ପୂଜା କରିଥିଲେ । ଏହି ବନଚଣ୍ଡୀ ପରବର୍ତ୍ତୀ କାଳରେ ମଙ୍ଗଳ ଚଣ୍ଡୀ ରୂପରେ ବଙ୍ଗାଳୀଙ୍କ ଘରେ ଘରେ ପୂଜିତ ହୋଇଥିଲେ । ଉତ୍ତରବଙ୍ଗର ମାଣିକ ଦତ୍ତ (ପଞ୍ଚଦଶ ଏବଂ ଷୋଡ଼ଶ ଶତାବ୍ଦୀ), ଦ୍ୱିଜ ମାଧବ (ଷୋଡ଼ଶ ଶତାବ୍ଦୀ) ପ୍ରଭୃତି କବି ଚଣ୍ଡୀମଙ୍ଗଳର ପ୍ରଣେତା ଥିଲେ । ମଧ୍ୟଯୁଗରେ ଅନ୍ୟତମ ଶ୍ରେଷ୍ଠ କବି ମୁକୁନ୍ଦ ରାମ (ଷୋଡ଼ଶ ଶତାବ୍ଦୀ) କବିତ୍ୱ ଶକ୍ତିର ପୁରସ୍କାର ସ୍ୱରୂପ 'କବି କଙ୍କଣ' ଉପାଧି ପ୍ରାପ୍ତ ହୋଇଥିଲେ । ସେ ବିଶ୍ୱସ୍ତ ଭାବରେ ମାନବ ଚରିତ୍ର ବିଶ୍ଳେଷଣ କରି-ପାରିଥିଲେ । ସେ ନିଜ ଜୀବନର ଦୁଃଖ, ଅଭାବ ଏବଂ ଅନଟନ ମଧ୍ୟରେ ସମାଜର ଚିତ୍ର ଅଙ୍କନ କରିଥିଲେ । ମଧ୍ୟଯୁଗୀୟ ସମାଜ ଅର୍ଥନୀତି, ରାଜନୀତି ଏବଂ ଇତିହାସ ସମ୍ପର୍କୀୟ ବିବିଧ ବିବରଣୀ ତାଙ୍କ ରଚନାମାନଙ୍କରୁ ମିଳିଥାଏ । ବଙ୍ଗ ସମାଜ ଉପରେ ମୁକୁନ୍ଦରାମଙ୍କ କାବ୍ୟର ପ୍ରଭାବ ଅଧିକ । ମୁକୁନ୍ଦରାମଙ୍କୁ ପ୍ରାଚୀନ ବଙ୍ଗଳା

ସାହିତ୍ୟର 'ଚସର' ବୋଲି ଅଭିହିତ କରାଯାଏ । ଏହାର କାରଣ ତାଙ୍କ ରଚନାର ଚରିତ୍ର ଚିତ୍ରଣ, କଥାବସ୍ତୁର ଉପସ୍ଥାପନା, କାବ୍ୟର ନାଟକୀୟତା ଓ ବଳିଷ୍ଠ ହାସ୍ୟରସ । ପୁନଶ୍ଚ ସମଗ୍ର ମଧ୍ୟଯୁଗୀୟ ବଙ୍ଗ ସାହିତ୍ୟରେ ଏପରି ଜଣେ ସମାଜ ସଚେତନ ଏବଂ ବାସ୍ତବବାଦୀ କବି ପରିଦୃଷ୍ଟ ହୋଇ ନଥାନ୍ତି । ନାଟକୀୟ ଶୈଳୀ ଏବଂ ଗୀତି କବିତାର ମୂର୍ଚ୍ଛନା ତାଙ୍କ ରଚନାର ପ୍ରଧାନ ଆକର୍ଷଣ । ମାଣିକ ଦତ୍ତଙ୍କ କାବ୍ୟରେ ଫିରିଙ୍ଗି ଶବ୍ଦର ପ୍ରୟୋଗ ଏବଂ ଚୈତନ୍ୟ ମହାପ୍ରଭୁଙ୍କ ସୂଚନା ଏବଂ ଛନ୍ଦବୈଚିତ୍ର୍ୟ ଉଲ୍ଲେଖଯୋଗ୍ୟ । ଠିକ୍ ସେହିପରି ପୂର୍ବବଙ୍ଗର କବି ଦ୍ୱିଜମାଧବଙ୍କ କାବ୍ୟ 'ସାରଦା ଚରିତ' ନାମରେ ପରିଚିତ । ତାଙ୍କ କାବ୍ୟରେ ବୈଷ୍ଣବ ପ୍ରଭାବ ଏବଂ ତାନ୍ତ୍ରିକ ପ୍ରଭାବ ସ୍ପଷ୍ଟ ।

ମୁକୁନ୍ଦରାମ ପ୍ରଭୃତି ଚଣ୍ଡୀମଙ୍ଗଳ ପ୍ରଣେତାଙ୍କ ପରେ ଦ୍ୱିଜ କମଳଲୋଚନ, ଦ୍ୱିଜ ଜନାର୍ଦ୍ଦନ, ରାମାନନ୍ଦ ଯତି, ଭବାନୀଶଙ୍କର ଦାସ, ମୁକ୍ତାରାମ ସେନ, ରାମଶଙ୍କର ଦେବ ପ୍ରମୁଖ କବିଗଣ ଯଥାକ୍ରମେ ଚଣ୍ଡିକା ବିଜୟ, ମଙ୍ଗଳଚଣ୍ଡୀ ପାଞ୍ଚାଳୀ, ଚଣ୍ଡୀମଙ୍ଗଳ, ମଙ୍ଗଳଚଣ୍ଡୀ ପାଞ୍ଚାଳିକା, ସାରଦାମଙ୍ଗଳ, ଅଭୟାମଙ୍ଗଳ କାବ୍ୟ ରଚନା କରିଥିଲେ ।

**ଧର୍ମମଙ୍ଗଳ କାବ୍ୟ**—ମଙ୍ଗଳ କାବ୍ୟ ଧାରାରେ ଧର୍ମମଙ୍ଗଳ ରଚନା ମଧ୍ୟ ଏକ ଉଲ୍ଲେଖଯୋଗ୍ୟ ସୃଷ୍ଟି । ଏହା ପ୍ରାୟ ସପ୍ତଦଶ ଶତାବ୍ଦୀରୁ ପ୍ରଚଳିତ । ଏହି ରଚନାମାନଙ୍କରେ ସାଧାରଣତଃ ଧର୍ମଠାକୁରଙ୍କର ଆବାହନ ଓ ପୂଜା କରାଯାଇଥାଏ । ଧର୍ମଠାକୁରର ପ୍ରତୀକ ସ୍ୱରୂପ କୂର୍ମାକୃତି କିମ୍ବା ଡିମ୍ବାକୃତି ପଥର ହିଁ ପୂଜିତ । ଏହି ଧର୍ମପୂଜା ମଧ୍ୟରେ ବୌଦ୍ଧଧର୍ମର ପ୍ରଚ୍ଛନ୍ନ ପ୍ରଭାବ ପରିଦୃଷ୍ଟ । ଧର୍ମଠାକୁର ଅନାବୃଷ୍ଟି, ଚକ୍ଷୁରୋଗ ଏବଂ ନାରୀର ବନ୍ଧ୍ୟାତ୍ୱ ଦୂର କରି ପାରନ୍ତି ବୋଲି ଲୋକ ସମାଜର ବିଶ୍ୱାସ । ଧର୍ମଠାକୁରଙ୍କର ବହୁନାମ; ଯଥା—ଦଲୁରାୟ, କାଙ୍କଡ଼ାବିଚ୍ଛା, ଶୀତଳ ନାରାୟଣ, ଯାତ୍ରାସିଦ୍ଧି ରାୟ, ବାଙ୍କୁଡ଼ାରାୟ, କାଲୁରାୟ । 'ସଦାଡୋମ' ଏବଂ 'ଲାଉସେନ ରଞ୍ଜାବତୀ' ଏପରି ଦୁଇଗୋଟି ଉପାଖ୍ୟାନ ଧର୍ମମଙ୍ଗଳ କାବ୍ୟରେ ବର୍ଣ୍ଣିତ । ସଦାଡୋମକୁ ପରୀକ୍ଷା କରିବା ଉଦ୍ଦେଶ୍ୟରେ ଧର୍ମଠାକୁର ତାର ଘରେ ପହଞ୍ଚିଥିଲେ । ସଦା ଅପୁତ୍ରକ । ଅପୁତ୍ରକ ଘରେ ଜଳସ୍ପର୍ଶ କରିବା ଅନୁଚିତ କହି ଧର୍ମଠାକୁର ପ୍ରସ୍ଥାନ କରିଥିଲେ । ଏଥିରେ ସଦା ଦୁଃଖରେ ଆତ୍ମହତ୍ୟା କରିବାକୁ ବସିଥିଲା । ଧର୍ମଠାକୁର ପ୍ରସନ୍ନ ହୋଇ ତାହାକୁ ପୁତ୍ରଲାଭ ବର ଦେଇଥିଲେ । ସଦାର ସ୍ତ୍ରୀ "ମୋର ଯେବେ ପୁଅହେବ, ତେବେ ଧର୍ମଙ୍କୁ ମୁଁ ତାହା ଦାନ କରିଦେବି" ବୋଲି ପ୍ରତିଜ୍ଞା କରିଥିଲେ । ବର୍ତ୍ତମାନ ପୁତ୍ରଜନ୍ମ ପରେ ଧର୍ମଠାକୁର ସେହି ପୁତ୍ର ଦାବି କରିଥିଲେ । ଏପରିକି ସେ ପୁତ୍ର ମାଂସ ରନ୍ଧନ କରି ଆଣିବାକୁ

ସଦାର ସ୍ତ୍ରୀକୁ ପ୍ରସ୍ତାବ ଦେଲେ । ଶେଷରେ ଧର୍ମଠାକୁରଙ୍କ ଆଶୀର୍ବାଦରେ ହିଁ ଦ୍ୱିଖଣ୍ଡିତ ପୁତ୍ର ପୁନର୍ବାର ଜୀବନ ଲାଭକଲା । ଏହି ଉପାଖ୍ୟାନ ସହିତ ପୁରାଣର ହରିଶ୍ଚନ୍ଦ୍ର ଉପାଖ୍ୟାନର ଯଥେଷ୍ଟ ସାମ୍ୟ ଥିବାର ଜଣାଯାଏ । ଲାଉସେନ ରଞ୍ଜାବତୀ ଉପାଖ୍ୟାନ ହେଉଛି, ଧର୍ମପାଳଙ୍କ ପୁତ୍ର ଗୌଡ଼ଦେଶର ରାଜା ଆଉ କର୍ଣ୍ଣସେନ ଥିଲେ ମୟନାଗଡ଼ର ସାମନ୍ତରାଜା । କର୍ଣ୍ଣସେନଙ୍କର ସୁପୁତ୍ରଙ୍କର ଯୁଦ୍ଧରେ ବିନାଶ । ତାଙ୍କ ସ୍ତ୍ରୀଙ୍କର ପ୍ରାଣତ୍ୟାଗ, କର୍ଣ୍ଣସେନଙ୍କର ପୁନର୍ବାର ଗୌଡ଼େଶ୍ୱରଙ୍କ ଶାଳୀ ରଞ୍ଜାବତୀଙ୍କ ସହିତ (ରଞ୍ଜାବତୀଙ୍କ ଭାଇ ମହାମଦଙ୍କ ଆପତ୍ତି ସତ୍ତ୍ୱେ) ବିବାହ । ମହାମଦର ବନ୍ଧ୍ୟା ଭଉଣୀ ଓ ଭଣୋଇଙ୍କୁ ତିରସ୍କାର । ରଞ୍ଜାବତୀ ଧର୍ମଠାକୁରଙ୍କୁ ପୂଜା କରୁଥିଲେ । ଧର୍ମଠାକୁରଙ୍କ ନିକଟରେ ଅଧା ପଡ଼ି ରଞ୍ଜାବତୀ ପୁତ୍ରଲାଭ କଲେ ।

ସେହି ପୁତ୍ରର ନାମ ହେଉଛି ଲାଉସେନ୍ । ଧର୍ମଠାକୁରଙ୍କ କୃପା ବଳରେ ଲାଉସେନ ଶାସ୍ତ୍ର ଏବଂ ଯୁଦ୍ଧବିଦ୍ୟାରେ ପ୍ରବୀଣ ହୋଇ ଉଠିଲା । ଅଥଚ ମାତୁଳ ମହାମଦ ତାର ଜୀବନ ନାଶକରିବା ପାଇଁ ସମସ୍ତ ଷଡ଼ଯନ୍ତ୍ର କରୁଥିଲା । ଗୌଡ଼ ରାଜାଙ୍କ ନିକଟରେ ନିଜ ବାହୁବଳର ପରୀକ୍ଷା ଦେବାକୁ ଲାଉସେନ ଇଚ୍ଛା ପ୍ରକାଶ କରିଥିଲା । ତେଣୁ ପୋଷ୍ୟଭ୍ରାତା କର୍ପୂର ଧବଳକୁ ସାଙ୍ଗରେ ଧରି ଲାଉସେନ ଗୌଡ଼ ଦେଶ ଯାତ୍ରା କଲା । ପଥ ମଧ୍ୟରେ ବ୍ୟାଘ୍ର କୁମ୍ଭୀର ଶିକାର କଲା ଏବଂ ଶେଷରେ ଗୌଡ଼ ରାଜାଙ୍କ ସମ୍ମୁଖରେ ନିଜ ଶକ୍ତିମତ୍ତାର ପରିଚୟ ଦେଇ ପୁରସ୍କୃତ ହୋଇଥିଲା । ଏହାପରେ ମହାମଦର ମନ୍ତ୍ରଣା କ୍ରମେ ଗୌଡ଼ରାଜା କାମରୂପ ସହିତ ଯୁଦ୍ଧ କରିବାକୁ ଲାଉସେନକୁ ପଠାଇଥିଲେ । ଲାଉସେନ କାମରୂପ ରାଜାଙ୍କୁ ଯୁଦ୍ଧରେ ପରାସ୍ତ କରି ତାଙ୍କ କନ୍ୟା କଳିଙ୍ଗାଙ୍କୁ ବିବାହ କରିଥିଲା । ପୁନଶ୍ଚ ମଙ୍ଗଳକୋଟ ଏବଂ ବର୍ଦ୍ଧମାନର ରାଜକନ୍ୟା ବିମଳା ଏବଂ ଅମଲାଙ୍କୁ ବିବାହ କରିଥିଲା । ଏହାପରେ ସିମୁଳାରାଜା ହରିପାଳଙ୍କ କନ୍ୟା କାନଡ଼ାଦେବୀଙ୍କୁ ବିବାହ କରିବାକୁ ଗୌଡ଼ରାଜାଙ୍କର ଇଚ୍ଛା । ମାତ୍ର କାନଡ଼ା ଦେବୀ ପ୍ରତିଜ୍ଞା କରିଥିଲା ଯେ ତାର ଦେବୀ ପ୍ରଦତ୍ତ ଲୌହ ଗଣ୍ଡାରକୁ ଯେ ଦ୍ୱିଖଣ୍ଡିତ କରିପାରିବ, ସେ କେବଳ ତାକୁ ବିବାହ କରିପାରିବ । ଲାଉସେନ ଅକ୍ଳେଶରେ ଲୌହଗଣ୍ଡାରକୁ ଦ୍ୱିଖଣ୍ଡିତ କରି କାନାଡ଼ାକୁ ବିବାହ କଲା । ଯୋଷକ ସହିତ ପ୍ରଚଣ୍ଡ ଯୁଦ୍ଧରେ ଲାଉସେନ ମଧ୍ୟ ଜୟଲାଭ କଲା । ଗୌଡ଼ ରାଜ୍ୟରେ ପ୍ରବଳ ବନ୍ୟା ହେଲା । ଲାଉସେନ ବନ୍ୟାକୁ ମଧ୍ୟ ଆୟତ୍ତ କରି ଦେଇଥିଲା । ଲାଉସେନ ପ୍ରତି ପଶ୍ଚିମରେ ସୂର୍ଯ୍ୟୋଦୟ ଦେଖାଇବାକୁ ପୁଣି ଆଦେଶ ହେଲା । 'ଧର୍ମ'ଙ୍କର ବରଲାଭ କରି ଲାଉସେନ ଗୌଡ଼ ରାଜାଙ୍କୁ ପଶ୍ଚିମ ଦିଗରେ ସୂର୍ଯ୍ୟୋଦୟ ଦେଖାଇଥିଲା । ତାର ସାକ୍ଷୀ ହରିହରକୁ ମିଥ୍ୟା ସାକ୍ଷୀ କହି ଶୂଳି ଦିଆଗଲା ।

ଲଉସେନର ଅନୁପସ୍ଥିତିରେ ମହାମଦ ତାର ରାଜ୍ୟ ମୟନାଗଡ଼ ଆକ୍ରମଣ- କରି ରାଣୀ କାନଡ଼ା ଦେବୀଙ୍କ ଦ୍ୱାରା ପରାଜିତ ହେଲା । ଏହି ଆକ୍ରମଣରେ କାଲୁ- ଡୋମ ଓ ତାର ସ୍ତ୍ରୀ ଲକ୍ଷ୍ୟାଦେବୀ ପ୍ରାଣ ହରାଇଥିଲେ । ମହାମଦ ନିଜ କୃତ ପାପ ଯୋଗୁ କୁଷ୍ଠରୋଗାକ୍ରାନ୍ତ ହୋଇଥିଲା ମାତ୍ର ପରେ ଲଉସେନର ଦୟା ଯୋଗୁ ସେ ରୋଗମୁକ୍ତ ହେଲା । ରାଜ୍ୟକୁ ଫେରି ଲାଉସେନ୍ ଧର୍ମଠାକୁରଙ୍କର ଉପାସନା କରିଥିଲେ । ଯୁଦ୍ଧରେ ନିହତ ବ୍ୟକ୍ତିମାନେ ପୁଣି ବଞ୍ଚି ଉଠିଥିଲେ । କିଛିଦିନ ରାଜତ୍ୱ ପରେ ସେ ପୁତ୍ର ଚନ୍ଦ୍ରସେନଙ୍କୁ ରାଜ୍ୟଭାର ଅର୍ପଣ କରି ସପରିବାର ସ୍ୱର୍ଗାରୋହଣ କରିଥିଲେ ।

ବିବରଣୀରୁ ଜଣାଯାଏ ଯେ ଧର୍ମମଙ୍ଗଳ କାବ୍ୟ ମୁଖ୍ୟତଃ ବୀରରସାଶ୍ରିତ । ପାଠକମାନଙ୍କ ମତରେ ଏହା ହେଉଛି ରାଢ଼ ଅଞ୍ଚଳର ସାମାଜିକ ଓ ଅର୍ଥନୈତିକ ତଥ୍ୟସମ୍ବଳିତ ଜାତୀୟ କାବ୍ୟ । ଅଲୌକିକତା ସହିତ ମାନବ ଜୀବନର ବାସ୍ତବ ସୁଖ ଦୁଃଖର ଚିତ୍ର ମଧ୍ୟ ଏଥିରେ ବର୍ଣ୍ଣିତ । ନିଜର ଦୁଃଖଦାରିଦ୍ର୍ୟପୀଡ଼ିତ ଜୀବନରେ ଧର୍ମ ଏବଂ ପୁଣ୍ୟର ପ୍ରଭାବ କବିମାନଙ୍କୁ ଅନୁପ୍ରାଣିତ କରିଥିଲା । ଏହି କାବ୍ୟ ସମୂହରେ ସାଧାରଣ ଜୀବନର ଯଥେଷ୍ଟ ଇଙ୍ଗିତ ହିଁ ଦେଖିବାକୁ ମିଳେ ।

ମୟୂରଭଟ୍ଟ ହେଉଛନ୍ତି ଧର୍ମମଙ୍ଗଳର ପ୍ରାଚୀନତମ କବି । ତାଙ୍କର କୌଣସି କାବ୍ୟ ଏପର୍ଯ୍ୟନ୍ତ ମିଳନାହିଁ । କବି ସୀତାରାମ ଦାସଙ୍କ ରଚନାରେ ମୟୂରଭଟ୍ଟଙ୍କର ସୂଚନା ମିଳିଥାଏ । ଅଷ୍ଟାଦଶ ଶତାବ୍ଦୀର କବିମାନଙ୍କ ମଧ୍ୟରେ ବର୍ଦ୍ଧମାନସ୍ଥିତ କୃଷ୍ଣପୁରର ଘନରାମ ଚକ୍ରବର୍ତ୍ତୀ ଶ୍ରେଷ୍ଠ କବି । ସେ ବର୍ଦ୍ଧମାନ ରାଜା କୀର୍ତ୍ତିଚନ୍ଦ୍ରଙ୍କ ଦରବାରରେ ଥିଲେ ଏବଂ ମଙ୍ଗଳ କାବ୍ୟ ରଚନା ଶେଷ କରିଥିଲେ (୧୭୧୧) ।

କବିଙ୍କର ଗୋଟିଏ ପଂକ୍ତି "ରାଜାର ମଙ୍ଗଲ ଚନ୍ତ ଦେଶେ'ରେ କଲ୍ୟାଣ''ରୁ ସେହି ସମୟର ଜାତିପ୍ରୀତି ଏବଂ ଦେଶପ୍ରୀତିର ପ୍ରମାଣ ମିଳେ । ଷୋଡ଼ଶ ଶତାବ୍ଦୀର ଖେଲାରାମ, ସପ୍ତଦଶ ଶତାବ୍ଦୀର ରୂପରାମ ଚକ୍ରବର୍ତ୍ତୀ ମଧ୍ୟ ଧର୍ମମଙ୍ଗଳ କାବ୍ୟ ରଚନା କରିଥିଲେ ।

ବର୍ଦ୍ଧମାନ ଅଞ୍ଚଳର ଅନ୍ୟ କେତେକ ପ୍ରାଚୀନ ଧର୍ମମଙ୍ଗଳ କବିଙ୍କର ନାମ ହେଉଛି ନରସିଂହ ବସୁ, ରାମଚନ୍ଦ୍ର ବନ୍ଦୋପାଧ୍ୟାୟ, ମାଣିକରାମ ଗାଙ୍ଗୁଲି ଓ ରାମକାନ୍ତ ରାୟ । ସହଦେବ ଚକ୍ରବର୍ତ୍ତୀଙ୍କ କାବ୍ୟରେ ତୁର୍କି ଆକ୍ରମଣର ଚିତ୍ର ପ୍ରତିଫଳିତ ।

ମଧ୍ୟଯୁଗୀୟ ମଙ୍ଗଳକାବ୍ୟର କଥାବସ୍ତୁରେ ଯଥାକ୍ରମେ ମନସା ଚଣ୍ଡୀ ଏବଂ ଧର୍ମଠାକୁର ପ୍ରଧାନ ସ୍ଥାନ ଗ୍ରହଣ କରିଥିଲେ । ସେହି କାବ୍ୟଧାରାର

ଅନୁସରଣ ଏବଂ ଅନୁକରଣରେ ସେହି ଯୁଗରେ ବହୁବିଧ ମଙ୍ଗଳକାବ୍ୟ ରଚିତ ହୋଇଥିଲା । ସେହି ରଚନାମାନଙ୍କରେ ଯୁଗଧର୍ମ, ଯୁଗର ପ୍ରୟୋଜନ, ସମାଜ ଏବଂ ସଂସ୍କୃତି ପର୍ଯ୍ୟାପ୍ତ ଭାବରେ ଦେଖିବାକୁ ମିଳେ । ମଙ୍ଗଳକାବ୍ୟ ଧାରାରେ ଜନପ୍ରିୟ ଏବଂ ଏକକ କାବ୍ୟ ଭାବରେ ଅନ୍ନଦାମଙ୍ଗଳ ରଚନା ଉଲ୍ଲେଖଯୋଗ୍ୟ । ଅନ୍ନଦାମଙ୍ଗଳ କାବ୍ୟ ଭାରତଚନ୍ଦ୍ରଙ୍କ ଶ୍ରେଷ୍ଠ ରଚନା । ଏହା ତିନିଭାଗରେ ବିଭକ୍ତ; ଯଥା—ପ୍ରଥମଭାଗରେ ଦକ୍ଷଯଜ୍ଞ, ଶିବ ବିବାହ, ଦେବୀଙ୍କର ଅନ୍ନପୂର୍ଣ୍ଣା ରୂପ ଧାରଣ ପ୍ରଭୃତି ଉପାଖ୍ୟାନ ବର୍ଣ୍ଣିତ । ଦ୍ୱିତୀୟଭାଗରେ ମାନସିଂହ ପ୍ରତାପାଦିତ୍ୟଙ୍କ ଦମନ କରିସାରି କୃଷ୍ଣଚନ୍ଦ୍ରଙ୍କ ପୂର୍ବପୁରୁଷ ଭବାନନ୍ଦ ମଜୁମଦାରଙ୍କଠାରୁ ବିଦ୍ୟାସୁନ୍ଦର ଉପାଖ୍ୟାନ ଶୁଣିବା । ତୃତୀୟଭାଗରେ ମାନସିଂହଙ୍କର ବର୍ଦ୍ଧମାନରୁ ଯଶୋର ଯାତ୍ରା, ଦିଲ୍ଲୀଗମନ, ବାଟରେ ପ୍ରତାପାଦିତ୍ୟଙ୍କର ମୃତ୍ୟୁ । ଦିଲ୍ଲୀଠାରେ ସମ୍ରାଟ ଜାହାଙ୍ଗୀରଙ୍କ କର୍ତ୍ତୃକ ଭବାନନ୍ଦଙ୍କର ବନ୍ଧନ । ପରେ ଅନ୍ନଦାଙ୍କ କୃପାରେ ତାଙ୍କର ମୁକ୍ତିଲାଭ ପ୍ରଭୃତି ଘଟଣା ବର୍ଣ୍ଣିତ । ଏଥିରୁ ଜଣାଯାଏ ଯେ ପ୍ରଥମଖଣ୍ଡରେ ଦେବଦେବୀଙ୍କର ବନ୍ଦନା, ଦ୍ୱିତୀୟଖଣ୍ଡରେ ବଙ୍ଗଳା ଦେଶରେ ପୂର୍ବରୁ ପ୍ରଚଳିତ ବିଦ୍ୟାସୁନ୍ଦର କାହାଣୀ ଏବଂ ତୃତୀୟଖଣ୍ଡରେ ଏକ ଐତିହାସିକ କାହାଣୀ ବର୍ଣ୍ଣିତ । ବିଦ୍ୟାସୁନ୍ଦର ଗଳ୍ପ ହେଉଛି ଅପୂର୍ବ ସୁନ୍ଦରୀ ଏବଂ ଚତୁରୀ ବିଦ୍ୟା ଏବଂ ପ୍ରବାସୀ ରାଜପୁତ୍ର ସୁନ୍ଦରର ମିଳନାତ୍ମକ କାହାଣୀ । ମାଳୁଣୀ ସାହାଯ୍ୟରେ ସେମାନଙ୍କର ସମ୍ପର୍କ ପ୍ରଥମେ ସ୍ଥାପିତ ହେଲା । ରାଜକନ୍ୟା ଅନ୍ତଃସତ୍ତ୍ୱା ଥିବା ସମୟରେ ସେମାନଙ୍କ ପ୍ରେମ ବ୍ୟାପାର ଜଣାପଡ଼ିବାରୁ ରାଜା ସୁନ୍ଦରକୁ ପ୍ରାଣଦଣ୍ଡ ଆଦେଶ ଦେଲେ । ମାତ୍ର ରାଜପୁତ୍ର କାଳିକାଙ୍କର କୃପାବଳରୁ ଏହି ଦଣ୍ଡାଦେଶରୁ ରକ୍ଷାପାଇଥିଲା । ପରେ ରାଜା ନିଜର କନ୍ୟାଙ୍କୁ ସେହି ରାଜପୁତ୍ରଙ୍କ ହସ୍ତରେ ଅର୍ପଣ କରିଥିଲେ । ଏହି କଥାବସ୍ତୁ ଉପସ୍ଥାପନ କରିବାରେ ଭାରତଚନ୍ଦ୍ରଙ୍କ କବିତ୍ୱ, ସଂସ୍କୃତ ଛନ୍ଦର ନିପୁଣ ପ୍ରୟୋଗ ଏବଂ ଆଧୁନିକତା ପ୍ରତି ଆନୁଗତ୍ୟ ବେଶ୍ ପ୍ରତିଫଳିତ ହୋଇଥିଲା । ମଧ୍ୟଯୁଗୀୟ ବଙ୍ଗଳା କାବ୍ୟ କବିତାର ଉତ୍ତରାଧିକାରୀ ହୋଇ ମଧ୍ୟ ସେ ବଙ୍ଗଳା କାବ୍ୟରେ ବାସ୍ତବତାକୁ ପ୍ରଥମଥର ପାଇଁ ପ୍ରବର୍ତ୍ତିନ କଲେ । ତାଙ୍କ କାବ୍ୟର ଯଥାର୍ଥ ଆବେଦନ ହେଉଛି ତାର ମାନବିକତା ଏବଂ ସହାନୁଭୂତିଶୀଳତା, ଯାହାକି ପୂର୍ବବର୍ତ୍ତୀ କାବ୍ୟମାନଙ୍କରେ ଦେବଦେବୀମାନଙ୍କର ବର୍ଣ୍ଣନା ଥିଲା ପ୍ରଧାନ । ବଙ୍ଗଳାପୟାର, ସେ ପ୍ରଥମେ ପ୍ରୟୋଗ କରିଥିଲେ ।

ହୁଗୁଲି ଜିଲ୍ଲାର ଭୂରିଶୁଠ ପ୍ରଗଣାସ୍ଥିତ ପେଣ୍ଡୋ-ବସନ୍ତପୁର ଗ୍ରାମରେ କବି ଭାରତଚନ୍ଦ୍ରଙ୍କର ସମ୍ଭବତଃ ୧୭୧୨ ଖ୍ରୀଷ୍ଟାବ୍ଦରେ ଜନ୍ମ । ତାଙ୍କର ପିତା ସେତେବେଳେ ଜଣେ ଜମିଦାର ଥିଲେ । ବର୍ଦ୍ଧମାନ ରାଜାଙ୍କ ବିଷଦୃଷ୍ଟିରେ ପଡ଼ି ଭାରତଚନ୍ଦ୍ର ନିଜ ଗ୍ରାମ ଛାଡ଼ି ଚାଲିଯାଇଥିଲେ ।

ନିଜ ଚେଷ୍ଟାରେ ସଂସ୍କୃତ, ପାରସୀ, ଆରବୀ, ହିନ୍ଦୀ ପ୍ରଭୃତି ଭାଷାରେ ଦକ୍ଷତା ଲାଭ କରିଥିଲେ, ପରେ ଦେଶକୁ ଫେରି ରାଜାଙ୍କ ଦ୍ୱାରା କାରାରୁଦ୍ଧ ହେଲେ । ମହାରାଜା କୃଷ୍ଣଚନ୍ଦ୍ରଙ୍କର ସଭାକବି ଭାବରେ ସେ ନିଯୁକ୍ତ ହୋଇଥିଲେ । ମହାରାଜା କବିଙ୍କର କବିତ୍ୱ ଶକ୍ତିରେ ମୁଗ୍ଧ ହୋଇ ତାଙ୍କୁ 'କବି ଗୁଣାକର' ଉପାଧିରେ ଭୂଷିତ କରିଥିଲେ । ମହାରାଜାଙ୍କ ପ୍ରସ୍ତାବକ୍ରମେ କବି ୧୭୫୨-୫୩ ମସିହାରେ ଅନ୍ନଦାମଙ୍ଗଳ କାବ୍ୟ ରଚନା କରିଥିଲେ । ୧୭୬୦ ମସିହାରେ ତାଙ୍କର ପରଲୋକ ହେଲା । ଅନ୍ନଦାମଙ୍ଗଳ ବ୍ୟତୀତ କବି ସତ୍ୟନାରାୟଣ ପାଞ୍ଚାଳୀ ଏବଂ ରସମଞ୍ଜରୀର ଅନୁବାଦ ରଚନାରେ ମଧ୍ୟ ତାଙ୍କ କବିତ୍ୱ ଶକ୍ତିର ପ୍ରମାଣ ଦେଇଥିଲେ ।

ବଙ୍ଗଳା କାବ୍ୟ କବିତାର ଛନ୍ଦ ଭାରତଚନ୍ଦ୍ରଙ୍କ ଲେଖନୀରେ ସମ୍ପୂର୍ଣ୍ଣ ନୂତନ ରୂପ ଧାରଣ କରିଥିଲା, ଏବଂ ଆଧୁନିକ ଛନ୍ଦର ପ୍ରଥମ ନିଦର୍ଶନ ତାଙ୍କର କାବ୍ୟରେ ହିଁ ଦେଖିବାକୁ ମିଳିଥିଲା । ବ୍ୟଙ୍ଗୋକ୍ତି ଛନ୍ଦ ସୌକୁମାର୍ଯ୍ୟ, କାବ୍ୟ ଗଠନଗତ କାରୁକାର୍ଯ୍ୟ ଏବଂ ବାକ୍ ବୈଦଗ୍ଧ୍ୟ ଯୋଗୁ ତାଙ୍କର ରଚନା-ସମୂହର ଆଦର ଅଧିକ ।

କାବ୍ୟ ଏବଂ ଗାନ ସମୂହରେ ରୂଢ଼ି ଭାଗ ପ୍ରୟୋଗ ନବଧାରା ପ୍ରବର୍ତ୍ତକ ଏହି କବିଙ୍କର ଆଉ ଏକ ବିଶେଷତ୍ୱ । ତାଙ୍କୁ ମଧ୍ୟଯୁଗୀୟ କାବ୍ୟଧାରାର ଶେଷ ଶକ୍ତିଶାଳୀ କବି ବୋଲି ମଧ୍ୟ କୁହାଯାଇଥାଏ । କବିଙ୍କର ବିଭିନ୍ନ କାବ୍ୟୋକ୍ତି ପାଠକପାଠିକା ମାନଙ୍କ ଦ୍ୱାରା ପ୍ରବାଦ ପ୍ରବଚନ ସଦୃଶ ଉଦ୍ଧୃତ ହୋଇଥାଏ ।

ଧର୍ମମଙ୍ଗଳ କାବ୍ୟର ପ୍ରଥମ ପ୍ରଣେତା ମୟୂରଭଟ୍ଟଙ୍କ ପରେ ଷୋଡ଼ଶ ଶତାବ୍ଦୀରେ ଖେଲାରାମ ଚକ୍ରବର୍ତ୍ତୀ ଓ ସପ୍ତଦଶ ଶତାବ୍ଦୀରେ ରୂପରାମ ଚକ୍ରବର୍ତ୍ତୀ ପ୍ରମୁଖ କବି ବିଭିନ୍ନ କାବ୍ୟ ରଚନା କରିଥିଲେ ।

ଶିବାୟନ—'ଶିବାୟନ' ଶିବଙ୍କ ମାହାତ୍ମ୍ୟ ବିଷୟକ କାବ୍ୟ ରଚନା । ବଙ୍ଗଦେଶରେ ପୂଜିତ ଶିବ ସାଧାରଣତଃ ବୈଦିକ ରୁଦ୍ର ଦ୍ରାବିଡ ଶମ୍ଭୁ ରୂପରେ ପ୍ରଚଳିତ । ମଧ୍ୟଯୁଗରେ ଶିବଙ୍କ ବ୍ୟତୀତ କାବ୍ୟ ଲେଖା ଯାଉନଥିଲା । ସପ୍ତଦଶ ଶତାବ୍ଦୀରୁ ଏତାଦୃଶ କାବ୍ୟ ଲିଖିତ ହେଲେ ହେଁ ଏହା ପଞ୍ଚଦଶ ଶତାବ୍ଦୀରୁ ପ୍ରଚଳିତ ଥିଲା । ବଙ୍ଗଳାର ପୁରପଲ୍ଲୀର କୃଷିଜୀବିମାନଙ୍କ ଦ୍ୱାରା ଅନୁସୃତ ଶୈବଧର୍ମ ମଧ୍ୟରେ କୃଷି ସଂପର୍କୀୟ ପ୍ରଭାବ ପ୍ରତିଫଳିତ ହୋଇଥିବାର ଜଣାଯାଏ । ଶିବାୟନ କାବ୍ୟରେ ପୌରାଣିକ ଏବଂ ଲୌକିକ ଏପରି ଦୁଇଟି କାହାଣୀ ଗୃହୀତ । ପୌରାଣିକ ଅଂଶରେ ଏବେ ଦକ୍ଷଯଜ୍ଞ ପ୍ରଭୃତି ବର୍ଣ୍ଣିତ । ଲୌକିକ କାହାଣୀ ଅଂଶରେ ଶିବ ପାର୍ବତୀଙ୍କ ବିବାହ, ଶିବଙ୍କର ଦାରିଦ୍ର୍ୟ ଫଳରେ କୃଷିପ୍ରତି ତାଙ୍କର ଆଗ୍ରହ, ଶିବ କୃଷି କାର୍ଯ୍ୟରେ ବ୍ୟସ୍ତ ରହି ଘରକୁ ଫେରିଲେ ନାହିଁ ତେଣୁ ପାର୍ବତୀଙ୍କ ମନରେ ଦୁଃଖ,

ଶିବ ଛେଣ୍ଡି ପାର୍ବତୀଙ୍କୁ ନିଜର ବାପ ଘରକୁ ଫେରିଯିବା ପାଇଁ ପ୍ରସ୍ତାବ, ଅଭିମାନରେ ପାର୍ବତୀଙ୍କର ବାପ ଘରକୁ ପ୍ରସ୍ଥାନ । ପରେ ଭିକାରି ଶିବ ଶଙ୍ଖାରି ବେଶରେ ଯାଇ ପାର୍ବତୀଙ୍କୁ ଶଙ୍ଖା ପିନ୍ଧାଇବା ଓ ଏହାପରେ ସେମାନଙ୍କର ମିଳନ ହୋଇଥିଲା । ଏତାଦୃଶ କାହାଣୀକୁ ଭିତ୍ତି କରି ସପ୍ତଦଶ ଶତାବ୍ଦୀରେ କବିଚନ୍ଦ୍ର ଏବଂ ଅଷ୍ଟାଦଶ ଶତାବ୍ଦୀରେ ମେଦନୀପୁର ଜିଲ୍ଲାର ରାମେଶ୍ୱର ଭଟ୍ଟାଚାର୍ଯ୍ୟ ଶିବାୟନ କାବ୍ୟ ପ୍ରଣୟନ କରିଥିଲେ । ଶିବଚତୁର୍ଦ୍ଦଶୀର ମାହାତ୍ମ୍ୟ ବର୍ଣ୍ଣନା କରି କେତେକ କାବ୍ୟ ମଧ୍ୟ ଏହି ଯୁଗରେ ଲେଖାଯାଇଥିଲା ।

ମଧ୍ୟଯୁଗର କୃଷ୍ଣଲୀଳା ବିଷୟକ କାବ୍ୟ, ରାୟ ମଙ୍ଗଳ କାବ୍ୟ ଏବଂ ସତ୍ୟ-ନାରାୟଣ ପାଠାଳୀ ପ୍ରଭୃତି ରଚନା ଉଲ୍ଲେଖଯୋଗ୍ୟ କୃତି । ଷୋଡ଼ଶ ଶତାବ୍ଦୀରୁ ଆରମ୍ଭ କରି ବହୁ କବି କୃଷ୍ଣଲୀଳା କାବ୍ୟ ରଚନା କରିଥିଲେ । କବି ରଘୁନାଥ ଭାଗବତ ଅନୁସରଣରେ 'କୃଷ୍ଣପ୍ରେମ ତରଙ୍ଗିଣୀ' ରଚନା କରିଥିଲେ । ମାଧବାଚାର୍ଯ୍ୟ ନାମରେ ଜଣେ କବି ଶ୍ରୀକୃଷ୍ଣ ମଙ୍ଗଳ କାବ୍ୟ ରଚନା କରିଥିଲେ । କବି ଶେଖରଙ୍କର 'ଗୋପାଳ ବିଜୟ' ଦୁଃଖୀଶ୍ୟାମ ଦାସଙ୍କର 'ଗୋବିନ୍ଦମଙ୍ଗଳ' କାବ୍ୟ ଜନସାଧାରଣଙ୍କ ଦ୍ୱାରା ବେଶ୍ ଆଦୃତ । ଅଷ୍ଟାଦଶ ଶତାବ୍ଦୀରେ ରଚିତ କବିଚନ୍ଦ୍ରଙ୍କର ଶ୍ରୀକୃଷ୍ଣମଙ୍ଗଳ, ବଳରାମ ଦାସଙ୍କର କୃଷ୍ଣଲୀଳାମୃତ, ଘନଶ୍ୟାମ ଦାସଙ୍କର ଶ୍ରୀକୃଷ୍ଣ ବିଳାସ ମଧ୍ୟ ଉଲ୍ଲେଖଯୋଗ୍ୟ ।

ସପ୍ତଦଶ ଶତାବ୍ଦୀରେ ମନସା, ଚଣ୍ଡୀ, ଧର୍ମଠାକୁର ଏବଂ ଅନ୍ୟାନ୍ୟ ଦେବ-ଦେବୀ ବଙ୍ଗଳା କାବ୍ୟ ସମୂହରେ ବର୍ଣ୍ଣିତ ହୋଇଥିଲେ । ଦକ୍ଷିଣ ରାୟ ସେହିପରି ଏକ ପ୍ରତ୍ୟକ୍ଷ ଦେବତା । ବାଘ ଏବଂ କୁମ୍ଭୀରର ଉପଦ୍ରବ, ଅନ୍ୟଦିଗରେ ମୁସଲ୍‌ମାନ ଶକ୍ତିର ଅତ୍ୟାଚାର ଓ ଆତଙ୍କ—ଏହି ସବୁ ମିଳିତ କଥାବସ୍ତୁକୁ କେନ୍ଦ୍ର କରି ସମ୍ଭବତଃ ରାୟ ମଙ୍ଗଳ କାବ୍ୟ ଲିଖିତ । ବ୍ୟାଘ୍ର ପୂଜା ପ୍ରାଚୀନ କାଳରୁ ଭାରତର ବିଭିନ୍ନ ରାଜ୍ୟରେ ପ୍ରଚଳିତ । ରାୟମଙ୍ଗଳ କାବ୍ୟର କଥାବସ୍ତୁ ଚଣ୍ଡୀମଙ୍ଗଳ କାବ୍ୟ ବର୍ଣ୍ଣିତ ଧନପତି-ଶ୍ରୀମନ୍ତ ଉପାଖ୍ୟାନ ସଦୃଶ ।

ରାୟ ମଙ୍ଗଳ କାବ୍ୟର ଆଦି ରଚୟିତା ହେଉଛନ୍ତି କୃଷ୍ଣରାମ ଦାସ (ରଚନାକାଳ ୧୬୮୬ ଖ୍ରୀଷ୍ଟାବ୍ଦ ଆନୁମାନିକ) । ସାଂପ୍ରଦାୟିକ ବିରୋଧାଚରଣ କରିଥିବାରୁ ଏହି କାବ୍ୟର ଉପାଦେୟତା ଉଲ୍ଲେଖଯୋଗ୍ୟ । ସତ୍ୟନାରାୟଣ ପାଠାଳୀ ଏକ ପ୍ରାଚୀନ ଧର୍ମଭିତ୍ତିକ ରଚନା । ଏଥିରେ ହିନ୍ଦୁ ଓ ମୁସଲମାନ ଧର୍ମର ସମନ୍ୱୟ ବର୍ଣ୍ଣିତ । ଖୋଦା ଏବଂ ଈଶ୍ୱର ଏକ । ବହୁ କବି ସତ୍ୟନାରାୟଣ ପାଠାଳୀ ରଚନା କରିଥିଲେ । ଏହାର ପ୍ରଥମ କବି ହେଉଛନ୍ତି ଭୈରବଚନ୍ଦ୍ର ଘଟକ ।

# ଆଧୁନିକତାର ପ୍ରଥମ ଉନ୍ମେଷ

**ଗଦ୍ୟର ବିକାଶ—**

ଊନବିଂଶ ଶତାବ୍ଦୀରୁ ବସ୍ତୁତଃ ବଙ୍ଗଳା ସାହିତ୍ୟରେ ଆଧୁନିକ ଯୁଗର ସୂତ୍ରପାତ ହେଲା । କେବଳ ରାଜନୀତି କ୍ଷେତ୍ରରେ ନୁହେଁ, ସାମାଜିକ ଓ ସାଂସ୍କୃତିକ କ୍ଷେତ୍ରରେ ପଲାସୀ ଯୁଦ୍ଧ ଏକ ଯୁଗାନ୍ତକାରୀ ଘଟଣା । ସିରାଜଉଦ୍ଦୌଲାଙ୍କ ପରାଜୟ ଓ କ୍ଲାଇବଙ୍କର ବିଜୟ ବଙ୍ଗପ୍ରଦେଶରେ ହଠାତ୍ କୌଣସି ପରିବର୍ତ୍ତନ ଆଣିପାରିନଥିଲା । ସର୍ବତ୍ର ରାଜନୈତିକ ଅସ୍ଥିରତା ଓ ଅନିଶ୍ଚିତତା ଲାଗି ରହିଥିଲା । ୧୭୭୦ ମସିହାର ଭୟାନକ ଦୁର୍ଭିକ୍ଷ ବଙ୍ଗଳାର ଜାତୀୟ ଜୀବନର ପ୍ରବାହରେ ଏକ ପ୍ରତିବନ୍ଧକ ସୃଷ୍ଟି କରିଥିଲା । କ୍ରମଶଃ ଏହି ଅସ୍ଥିରତା ଓ ଅନିଶ୍ଚିତତା ଦୂରୀଭୂତ ହେଲା । ବଙ୍ଗର ଆକାଶରୁ ମେଘ ହଟିଯାଇଥିଲା । ଊନବିଂଶ ଶତାବ୍ଦୀର ପୂର୍ବବର୍ତ୍ତୀ ବଙ୍ଗଳା ସାହିତ୍ୟ କେବଳ ପଦ୍ୟପ୍ରଧାନ ଥିଲା । ସେତେବେଳେ ଗଦ୍ୟସାହିତ୍ୟର ବିଶେଷ ପ୍ରଚଳନ ନଥିଲା; କିନ୍ତୁ ଅଷ୍ଟାଦଶ ଶତାବ୍ଦୀରେ ସରକାରୀ ଚିଠିପତ୍ର ଓ ନଥିପତ୍ର ଆକାରରେ ଗଦ୍ୟଭାଷା ବ୍ୟବହୃତ ହେଉଥିଲା । ଊନବିଂଶ ଶତାବ୍ଦୀରେ ଖ୍ରୀଷ୍ଟିୟାନ ପାଦ୍ରୀମାନଙ୍କ ପ୍ରଚେଷ୍ଟାରେ ବଙ୍ଗଳା ଗଦ୍ୟସାହିତ୍ୟର ବିରାଟ ପରିବର୍ତ୍ତନ ସାଧିତ ହୋଇଥିଲା । ଏଥିପୂର୍ବରୁ ସପ୍ତଦଶ ଶତାବ୍ଦୀରେ ପର୍ତ୍ତୁଗୀଜ୍ ପାଦ୍ରୀମାନେ ଖ୍ରୀଷ୍ଟଧର୍ମ ପ୍ରଚାର ଉଦ୍ଦେଶ୍ୟରେ ବଙ୍ଗଳା ଗଦ୍ୟରେ କେତେକ ଧର୍ମ ବୃତ୍ତାନ୍ତ ଲିପିବଦ୍ଧ କରିଥିଲେ । ଜଣେ ରକ୍ଷଣଶୀଳ ହିନ୍ଦୁ ବ୍ରାହ୍ମଣ ଓ ରୋମାନ୍ କ୍ୟାଥଲିକଙ୍କ ମଧ୍ୟରେ ଯେଉଁ ଆଳାପ ହୋଇଥିଲା, ତାହା 'ବ୍ରାହ୍ମଣରୋମାନ୍‌କ୍ୟାଥଲିକ୍ ସମ୍ବାଦ' ନାମରେ ଏବେ ଦେଖିବାକୁ ମିଳେ । ଏହା ଜଣେ ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିବା ବଙ୍ଗାଳୀଙ୍କର ଲେଖା । ସେହିପରି ଆଉ ଜଣେ ପର୍ତ୍ତୁଗୀଜ୍ ପାଦ୍ରୀ ଅଷ୍ଟାଦଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ବଙ୍ଗଳା ବ୍ୟାକରଣ ଲେଖିଥିଲେ । ଲିସ୍‌ବନ୍‌ଠାରେ ରୋମାନ୍ ଲିପିରେ ଏହା ମୁଦ୍ରିତ ହୋଇଥିଲା । ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ପର୍ତ୍ତୁଗୀଜ୍ ପାଦ୍ରୀମାନଙ୍କର ବିଭିନ୍ନ କାର୍ଯ୍ୟକ୍ରମ ଇଂରାଜୀ ଓ ସ୍କଟିଶ୍ ପାଦ୍ରୀମାନେ ଅନୁସରଣ କରି ଲେଖାଲେଖି ଆରମ୍ଭ କଲେ । ନାଥାନିଏଲ୍ ବ୍ରାସେ ହାଲ୍‌ହେଡ୍ (Nathaniel Brassey Halhed) ନାମକ ଜଣେ ସରକାରୀ କର୍ମଚାରୀ ୧୭୭୮ ମସିହାରେ ବଙ୍ଗଳାଭାଷାର ବ୍ୟାକରଣ ପ୍ରକାଶ କରିଥିଲେ । ହୁଗ୍ଳୀ ସ୍ଥିତ ସରକାରୀ ପ୍ରେସରେ ଏହା ହେଉଛି ବଙ୍ଗଳା ଅକ୍ଷରରେ ମୁଦ୍ରିତ ପ୍ରଥମ ପୁସ୍ତକ । ଏହାର ଲିପି (type) ଆଉ ଜଣେ ସରକାରୀ କର୍ମଚାରୀ ଚାର୍‌ଲେସ୍ ଓ୍ୱିଲ୍‌କିନ୍‌ସ୍

ପ୍ରସ୍ତୁତ କରିଥିଲେ । ତାଙ୍କଠାରୁ ଶ୍ରୀରାମପୁରର ପଞ୍ଚାନନ କର୍ମକାର ନାମରେ ଜଣେ କମାର ଏହି ଅକ୍ଷର ନିର୍ମାଣ ପ୍ରଣାଳୀ ଶିକ୍ଷା କରିଥିଲେ ।

ବଙ୍ଗଳାରେ ମୁଦ୍ରାଯନ୍ତ୍ରର ପ୍ରତିଷ୍ଠା ଗଦ୍ୟ ବିକାଶର ଇତିହାସରେ ଏକ ପ୍ରଧାନ ଘଟଣା । ସେହିପରି ଆଉରି ଏକ ଘଟଣା ହେଉଛି, ୧୮୦୦ ମସିହାରେ କଲିକତାରେ ଫୋର୍ଟ ଉଇଲିୟମ୍ କଲେଜର ପ୍ରତିଷ୍ଠା । ୟୁରୋପୀୟ କର୍ମଚାରୀମାନଙ୍କୁ ସ୍ଥାନୀୟ ଭାଷାରେ ଶିକ୍ଷା ଦେବା ପାଇଁ ସେହି କଲେଜ ସରକାରଙ୍କ ଦ୍ୱାରା ସେତେବେଳେ ପ୍ରତିଷ୍ଠିତ ହୋଇଥିଲା । ଏହି କଲେଜର ଇତିହାସରେ ଭାରତୀୟ ଭାଷାପ୍ରେମୀ ରେଭରେଣ୍ଡ୍ ଉଇଲିୟମ୍ କେରୀଙ୍କ ନାମ ସର୍ବାଗ୍ରେ ସ୍ମରଣୀୟ । ପ୍ରାଚ୍ୟ ଭାରତୀୟ ଭାଷା ବିଭାଗର ଦାୟିତ୍ୱ ରେଭରେଣ୍ଡ୍ କେରୀଙ୍କ ଉପରେ ନ୍ୟସ୍ତ ଥିଲା । କେରୀ ନିଜେ ଖଣ୍ଡିଏ ବଙ୍ଗଳା ବ୍ୟାକରଣ, ଇଂରାଜୀ-ବଙ୍ଗଳା ଅଭିଧାନ, ଗ୍ରାମ୍ୟ ବଙ୍ଗଳା ଭାଷା ସମ୍ପର୍କୀୟ ପୁସ୍ତକ ଏବଂ ଏକ ଇତିହାସ ପୁସ୍ତକ ପ୍ରଣୟନ କରିଥିଲେ । ନିଜ ସହକର୍ମୀମାନଙ୍କ ବ୍ୟତୀତ କେରୀ ସ୍ଥାନୀୟ ବହୁ ପଣ୍ଡିତ ଓ ବିଦ୍ୱାନ୍ ବ୍ୟକ୍ତିଙ୍କୁ ଭାଷା ଓ ସାହିତ୍ୟର ଉନ୍ନତିମୂଳକ କାର୍ଯ୍ୟକ୍ରମରେ ଉଦ୍‌ବୁଦ୍ଧ କରାଇ ପାରିଥିଲେ । ମୃତ୍ୟୁଞ୍ଜୟ ବିଦ୍ୟାଲଙ୍କାରଙ୍କ ନାମ ଏଠାରେ ଉଲ୍ଲେଖଯୋଗ୍ୟ । କାରଣ, କେବଳ ପାଠ୍ୟପୁସ୍ତକ ରଚନା ଦୃଷ୍ଟିରୁ ନୁହେଁ, ବଙ୍ଗଳା ଗଦ୍ୟଶୈଳୀର ସାହିତ୍ୟିକ ଶ୍ରୀବୃଦ୍ଧି ପାଇଁ ସେ ସ୍ମରଣୀୟ । ଫୋର୍ଟ ଉଇଲିୟମ୍ କଲେଜର ଅଧ୍ୟାପକମାନଙ୍କର ଦାୟିତ୍ୱ ଥିଲା, ଉପଯୁକ୍ତ ପାଠ୍ୟପୁସ୍ତକ ରଚନା ଓ ସ୍ଥାନୀୟ ଭାଷାର ବିକାଶସାଧନ ।

୧୮୧୭ ମସିହାରେ ପ୍ରତିଷ୍ଠିତ ସ୍କୁଲ୍ ବୁକ୍‌ସ ସୋସାଇଟି (School Books Society) ବଙ୍ଗଳା ଭାଷାରେ ବହୁ ଗଦ୍ୟପୁସ୍ତକ ଲେଖାଇ ପ୍ରକାଶ କରିଥିଲେ । ରେଭରେଣ୍ଡ୍ ଉଇଲିୟମ୍ କେରୀ, ରାମକମଲ୍ ସେନ୍ ଓ ରାଧାକାନ୍ତ ଦେଓ ପ୍ରଭୃତି ଏହି ସ୍କୁଲ୍ ବୁକସ୍ ସୋସାଇଟିର ସଭ୍ୟ ଥିଲେ । ଫୋର୍ଟ ଉଇଲିୟମ୍ କଲେଜ ଓ ସ୍କୁଲ୍‌ବୁକ୍‌ସ ସୋସାଇଟି ଊନବିଂଶ ଶତାବ୍ଦୀରେ ବିବିଧ ଗଦ୍ୟ ପୁସ୍ତକ ରଚନା କରାଇ ପାରିଥିଲେ । ଏହି ସବୁ ଗଦ୍ୟପୁସ୍ତକ ପ୍ରାଥମିକ ଧରଣର ହୋଇପାରେ । କିନ୍ତୁ ସେଥିରେ ପରବର୍ତ୍ତୀକାଳର ଗଦ୍ୟସାହିତ୍ୟର ପ୍ରଭୂତ ବିକାଶ ପାଇଁ ଯଥେଷ୍ଟ ଉପାଦାନ ନିହିତ ଥିଲା । ଏହି ପ୍ରସଙ୍ଗରେ ଶ୍ରୀରାମପୁରସ୍ଥିତ ଖ୍ରୀଷ୍ଟିୟାନ ପାଦ୍ରୀମାନଙ୍କର ସାମୂହିକ ଚେଷ୍ଟା ମଧ୍ୟ ଉଲ୍ଲେଖଯୋଗ୍ୟ । ମୁଦ୍ରାଯନ୍ତ୍ରର ପ୍ରତିଷ୍ଠା, ଗଦ୍ୟରେ ବାଇବେଲ୍‌ର ଅନୁବାଦ, ବିଭିନ୍ନ ଗଦ୍ୟପୁସ୍ତକର ପ୍ରକାଶନ, ପ୍ରାଚୀନ ବଙ୍ଗଳା ରଚନା; ଯଥା :—କୃତ୍ତିବାସ

ରାମାୟଣ, କାଶୀରାମ ମହାଭାରତ, ଭାରତଚନ୍ଦ୍ରଙ୍କ ଅନ୍ନଦାମଙ୍ଗଳର ପ୍ରକାଶ ସେମାନଙ୍କର କୃତିତ୍ୱ ।

ମୁଦ୍ରାଯନ୍ତ୍ରର ସଫଳତା ବଙ୍ଗଳାରେ ପତ୍ରପତ୍ରିକାର ପ୍ରକାଶନ ପାଇଁ ବିଶେଷ ସହାୟକ ହୋଇଥିଲା । ୧୮୧୮ ମସିହାର 'ଦିଗ୍‌ଦର୍ଶନ' ପତ୍ରିକାର ନାମ ଏଠାରେ ଉଲ୍ଲେଖଯୋଗ୍ୟ । ଏହାର ସମ୍ପାଦକ ଥିଲେ ଜନ୍ କ୍ଲାର୍କ୍ ମାର୍‌ସ୍‌ମେନ୍ । ଏହି ମାସିକ ପତ୍ର ତିନିବର୍ଷ ପର୍ଯ୍ୟନ୍ତ ଚାଲିଥିଲା । 'ସମାଚାର ଦର୍ପଣ' ବଙ୍ଗଳା ପତ୍ରପତ୍ରିକା ରାଜ୍ୟରେ ଦ୍ୱିତୀୟ ପଦକ୍ଷେପ । ଏହି ଦୁଇଟିଯାକ ପତ୍ରିକା ପାଦ୍ରୀମାନଙ୍କ ଦ୍ୱାରା ପରିଚାଳିତ ହୋଇଥିଲା । ପ୍ରଥମ ବଙ୍ଗଳା ପତ୍ରିକା ହେଉଛି, 'ବେଙ୍ଗଲ୍ ଗେଜେଟ' । ଏହାର ସମ୍ପାଦକ ଥିଲେ ଗଙ୍ଗାକିଶୋର ଭଟ୍ଟାଚାର୍ଯ୍ୟ । ପ୍ରଥମ ଦୁଇଟି ପତ୍ରିକାରେ ପାଦ୍ରୀମାନଙ୍କୁ ସୁହାଉଥିଲା ଭଳି ଲେଖା ପ୍ରକାଶ ପାଉଥିଲା । ଅନେକ ସମୟରେ ହିନ୍ଦୁଧର୍ମ ବିଦ୍ୱେଷୀ ଲେଖା ମଧ୍ୟ ସେଥିରେ ସ୍ଥାନ ପାଉଥିଲା । ସମ୍ଭବତଃ, ଏହି କାରଣରୁ ୧୮୨୧ ମସିହାରେ ରାଜା ରାମମୋହନ ରାୟଙ୍କ ଉତ୍ସାହରେ 'ସମ୍ବାଦ କୌମୁଦୀ' ପ୍ରକାଶିତ ହେଲା । ଏହାପରେ ୧୮୨୨ ମସିହାରେ ଭବାନୀଚରଣ ବନ୍ଦୋପାଧ୍ୟାୟଙ୍କ ସମ୍ପାଦକତ୍ୱରେ 'ସମାଚାର ଚନ୍ଦ୍ରିକା' ନାମକ ସାପ୍ତାହିକ ପତ୍ରିକା ପ୍ରକାଶ ପାଇଲା । ଏହାପରେ ନୀଳରତ୍ନ ହାଲ୍‌ଦାର୍‌ଙ୍କ ସମ୍ପାଦକତ୍ୱରେ 'ବଙ୍ଗଦୂତ' ଏବଂ ଈଶ୍ୱର ଗୁପ୍ତଙ୍କ ସମ୍ପାଦକତ୍ୱରେ 'ସମ୍ବାଦ ପ୍ରଭାକର' ପତ୍ରିକା ପ୍ରକାଶ ପାଇଥିଲା । ବଙ୍ଗଳା ପତ୍ରପତ୍ରିକା ଇତିହାସର ଏହା ହେଉଛି ଏକ ସଂକ୍ଷିପ୍ତ ବିବରଣୀ ।

ଊନବିଂଶ ଶତାବ୍ଦୀର ପ୍ରଥମ ପାଦରେ ବଙ୍ଗଳା ଗଦ୍ୟର ସାହିତ୍ୟିକ ରୂପ ସେତେ ବିକଶିତ ହୋଇନଥିଲା । କାରଣ, ସେତେବେଳେ ଗଦ୍ୟର କୌଣସି ନିର୍ଦ୍ଦିଷ୍ଟ ଶୈଳୀ ପ୍ରବର୍ତ୍ତିତ ହୋଇପାରିନଥିଲା । କେତେଜଣ ଲେଖକ ସଂସ୍କୃତ ଶୈଳୀର ସମର୍ଥକ ଓ ଅନ୍ୟ କେତେଜଣ ପାର୍ଶୀ ଓ ବଙ୍ଗଳାର ଗ୍ରାମ୍ୟଭାଷା ସମ୍ପୃକ୍ତ ଶୈଳୀର ପକ୍ଷପାତୀ ଥିଲେ । ବସ୍ତୁତଃ, ଦେଖିବାକୁ ଗଲେ, ଊନବିଂଶ ଶତାବ୍ଦୀର ଦ୍ୱିତୀୟ ପାଦରେ ହିଁ ବଙ୍ଗଳା ଗଦ୍ୟର କଳାତ୍ମକ ରୂପ ପ୍ରକଟିତ ହୋଇଥିଲା । ଏକ ନୂତନ ଦୃଷ୍ଟିକୋଣର ପ୍ରବର୍ତ୍ତନ ଯେଉଁ ଶକ୍ତିଶାଳୀ ଲେଖକ ତଥା ଭାବୁକମାନଙ୍କ ସହାୟତାରେ ସମ୍ଭବ ହୋଇଥିଲା, ସେମାନେ ହେଉଛନ୍ତି, ବଙ୍ଗସମାଜର ଅଗ୍ରଦୂତ ରାଜା ରାମମୋହନ ରାୟ (୧୭୭୪-୧୮୩୩), ଈଶ୍ୱରଚନ୍ଦ୍ର ବିଦ୍ୟାସାଗର (୧୮୨୧-୧୮୯୪), ପ୍ୟାରୀଚାନ୍ଦ ମିତ୍ର, କାଳୀପ୍ରସନ୍ନ ସିଂହ, ମହର୍ଷି ଦେବେନ୍ଦ୍ରନାଥ ଠାକୁର, ଅକ୍ଷୟ କୁମାର ଦତ୍ତ (୧୮୨୦-୧୮୮୬), ଭୂଦେବ ମୁଖୋପାଧ୍ୟାୟ (୧୮୨୫-୧୮୯୪), ବଙ୍କିମ

ଖ୍ରୀଷ୍ଟାବ୍ଦୀ । ଏମାନେ ମୁଖ୍ୟତଃ ନବୀନ ବଙ୍ଗଳାର ଯୁବକ ସମାଜ ଆଦର୍ଶର ପ୍ରତିନିଧି ଥିଲେ ।

ସମସ୍ତଙ୍କ ମଧ୍ୟରେ ରାମମୋହନ ରାୟ ଏକ ପ୍ରଭାବଶାଳୀ ବ୍ୟକ୍ତିତ୍ୱ ବୋଲି ବଙ୍ଗଳାର ସାହିତ୍ୟିକ ଓ ସାଂସ୍କୃତିକ ଇତିହାସରେ ସମସ୍ତେ ସ୍ୱୀକାର କରିଛନ୍ତି । ହିନ୍ଦୁଧର୍ମର ସଂସ୍କାର, ପାଶ୍ଚାତ୍ୟ ଧର୍ମ ଓ ସଂସ୍କୃତିର ପୃଷ୍ଠଭୂମିରେ ଇଂରେଜୀ ଶିକ୍ଷିତ ଯୁବକ ମାନଙ୍କ ପାଇଁ ବ୍ରାହ୍ମସମାଜ ପ୍ରତିଷ୍ଠା, ଏକ ବୈପ୍ଳବିକ ଓ ସାମାଜିକ ଦୃଷ୍ଟିକୋଣ ହେଉଛି ବଙ୍ଗଳାର ଇତିହାସକୁ ରାମମୋହନ ରାୟଙ୍କର ସ୍ମରଣୀୟ ଦାନ । ଇଂରାଜୀ ସାହିତ୍ୟ ଊନବିଂଶ ଶତାବ୍ଦୀରେ କ୍ରମଶଃ ପ୍ରସାରଲାଭ କଲା ଏବଂ ଏହାର ଫଳ ସ୍ୱରୂପ ବଙ୍ଗଳାର ଯୁବକସମାଜରେ ପରିବର୍ତ୍ତନ ଦେଖା ଦେଇଥିଲା । ସେହି ପରିବର୍ତ୍ତନ ଓ ପରିବର୍ତ୍ତିତ ଚିନ୍ତାଧାରାକୁ ଲକ୍ଷ୍ୟକରି ରାମମୋହନ ରାୟ ସେତେବେଳେ ବ୍ରାହ୍ମଧର୍ମ ପ୍ରତିଷ୍ଠା କରିଥିଲେ । ଜାତି ଓ ସମାଜକୁ ଉଜ୍ଜୀବିତ କରିବା ପାଇଁ ଯେଉଁ ବଳିଷ୍ଠ ଜୀବନାଦର୍ଶ ତଥା ଭାବାଦର୍ଶର ଆବଶ୍ୟକତା ଥିଲା, ରାମମୋହନ ରାୟ ନିଜର ପ୍ରଗତିଶୀଳ ଦୃଷ୍ଟିଭଙ୍ଗୀ ସାହାଯ୍ୟରେ ତାହା ହିଁ ପରିକଳ୍ପନା କରିଥିଲେ । ରାମମୋହନ ରାୟଙ୍କ ଠାରୁ ଆରମ୍ଭ କରି ମହର୍ଷି ଦେବେନ୍ଦ୍ରନାଥ ଠାକୁର, କେଶବ ଚନ୍ଦ୍ର ସେନ୍, ଶିବନାଥ ଶାସ୍ତ୍ରୀ, ଆନନ୍ଦମୋହନ ବସୁ, ଅକ୍ଷୟକୁମାର ଦତ୍ତଙ୍କ ପର୍ଯ୍ୟନ୍ତ ବହୁ ଚିନ୍ତାଶୀଳ ବ୍ୟକ୍ତି ବ୍ରାହ୍ମ ଆନ୍ଦୋଳନ ଦ୍ୱାରା ଧର୍ମ ଓ ସାହିତ୍ୟ, ଉଭୟର ସଂସ୍କାରପାଇଁ ଅକ୍ଳାନ୍ତ ଉଦ୍ୟମ କରିଥିଲେ । ଇଂରେଜମାନଙ୍କର ଔପନିବେଶିକ ସାମ୍ରାଜ୍ୟବାଦ ବିରୁଦ୍ଧରେ ଯେଉଁ ସ୍ୱର ପ୍ରଥମେ ଶିକ୍ଷିତ ବୁଦ୍ଧିଜୀବୀ ସମାଜରେ ଶୁଣାଯାଇଥିଲା, ତାହାର ହେତୁ ହେଉଛି, ଉପରୋକ୍ତ ଚିନ୍ତାଶୀଳ ସାଧକମାନଙ୍କର ସ୍ୱପ୍ନ ଓ ଜାତୀୟତାବୋଧ । ଜାତିର ସେହି ଅନ୍ଧକାର ମୁହୂର୍ତ୍ତରେ ଏହି ସମାଜସେବୀ ଓ ଜାତିପ୍ରାଣ ବ୍ୟକ୍ତିମାନଙ୍କର ବିଭିନ୍ନ ଆନ୍ଦୋଳନ ସମାଜକୁ ଅଗ୍ରଗତି ପଥରେ ନେଇଯିବା ପାଇଁ ସାହାଯ୍ୟ କରିଥିଲା । ତେଣୁ ୧୯ଶ ଶତାବ୍ଦୀର ବଙ୍ଗଳା ଗଦ୍ୟ ସାହିତ୍ୟର ପ୍ରସାରର ଏକମାତ୍ର କାରଣ ହେଉଛି ଗଭୀର ଦେଶାତ୍ମବୋଧ, ଜାତିପ୍ରୀତି ଓ ସଂସ୍କୃତିପ୍ରାଣତା । ନବ୍ୟଶିକ୍ଷିତ ବଙ୍ଗାଳୀ ଯୁବକମାନେ ଏହି ଜାତୀୟତାବୋଧରେ ଉଦ୍‌ବୁଦ୍ଧ ହୋଇ ସାହିତ୍ୟକ୍ଷେତ୍ରରେ ଅବତୀର୍ଣ୍ଣ ହୋଇଥିଲେ । ସମାଜ ଓ ବ୍ୟକ୍ତିସଚେତନତା ତଦାନୀନ୍ତନ ସାହିତ୍ୟର ଏକ ବିଶିଷ୍ଟ ଲକ୍ଷଣ ।

ରାମମୋହନ ରାୟଙ୍କ ଦ୍ୱାରା ପ୍ରବର୍ତ୍ତିତ ଧର୍ମଗତ ଆନ୍ଦୋଳନ ସମଗ୍ର ବଙ୍ଗଳାରେ ଏକ ନୂତନ ଯୁଗର ସୂତ୍ରପାତ କରିଥିଲା । ଏ ପ୍ରସଙ୍ଗରେ ବ୍ରାହ୍ମସମାଜର ମୁଖପତ୍ର 'ତତ୍ତ୍ୱବୋଧିନୀ' (୧୮୪୩)ର ବଙ୍ଗଳା ସାହିତ୍ୟକୁ

ଦାନ ଅବିସ୍ମରଣୀୟ । ଅକ୍ଷୟକୁମାର ଦତ୍ତ (୧୮୨୦-୧୮୮୬) ଓ ଅନ୍ୟାନ୍ୟମାନେ 'ତତ୍ତ୍ୱବୋଧିନୀ' ପତ୍ରିକାରେ ନିୟମିତ ଲେଖୁଥିଲେ ।

ଏହି ଯୁଗର ବଙ୍ଗଳାର ବିଶିଷ୍ଟ ଗଦ୍ୟ ଲେଖକ ଭାବରେ ଈଶ୍ୱର ଚନ୍ଦ୍ର ବିଦ୍ୟାସାଗରଙ୍କ (୧୮୨୦-୧୮୯୧) ନାମ ସର୍ବାଗ୍ରେ ଉଲ୍ଲେଖଯୋଗ୍ୟ । ବଙ୍ଗଳାର ଗଦ୍ୟସାହିତ୍ୟରେ ସେ ଏକ ଜ୍ୱଳନ୍ତ ପ୍ରତିଭା ବୋଲି ବିବେଚିତ ହୋଇଥାନ୍ତି । ସଂସ୍କାରକ, ପ୍ରାବନ୍ଧିକ ଓ ପାଠ୍ୟପୁସ୍ତକ ଲେଖକ ଭାବରେ ତାଙ୍କର ସିଦ୍ଧି ସ୍ୱୀକୃତ । ତାଙ୍କର ପୁସ୍ତକଗୁଡ଼ିକ ମଧ୍ୟରେ ବାସୁଦେବ ଚରିତ, ବେତାଳ ପଞ୍ଚବିଂଶତି, ବାଙ୍ଗଲାର୍ ଇତିହାସ, ଶକୁନ୍ତଳା, କଥାମାଳା, ଚରିତାବଳୀ, ମହାଭାରତେର ଉପକ୍ରମଣିକା, ସୀତାର ବନବାସ, ଆଖ୍ୟାନମଞ୍ଜରୀ, ଭ୍ରାନ୍ତି ବିଳାସ (ସେକ୍ସପିଅର୍‌ଙ୍କ Comedy of Errorsର ଅନୁବାଦ) । ଏତଦ୍ ବ୍ୟତୀତ ବିଧବା ବିବାହ ପ୍ରଚଳନ ସମ୍ପର୍କରେ ସେ କେତେକ ପ୍ରବନ୍ଧ ରଚନା କରିଥିଲେ । ଶିଶୁମାନଙ୍କର ବର୍ଣ୍ଣପରିଚୟ, ବୋଧୋଦୟ ପ୍ରଭୃତି ପାଠ୍ୟପୁସ୍ତକ ମଧ୍ୟ ସେ ପ୍ରଣୟନ କରିଥିଲେ । ସେ ସଂସ୍କୃତ ଗଦ୍ୟଲେଖାର କେତେକ ଅନୁବାଦ ମଧ୍ୟ କରିଥିଲେ । ବିଦ୍ୟାସାଗର ଆକ୍ଷରିକ ଅନୁବାଦରେ ବିଶ୍ୱାସ କରୁନଥିଲେ । ସେ ଯେଉଁ ଭାଷା ବ୍ୟବହାର କରୁଥିଲେ, ତାହା ସଂସ୍କୃତପୀଡ଼ିତ ଥିଲା ।

**କାବ୍ୟକବିତା :—**

ବଙ୍ଗଳା କାବ୍ୟକବିତାରେ ଏକ ନୂତନ ଦିଗନ୍ତ ଆବିଷ୍କାର କରିବାରେ ଊନବିଂଶ ଶତାବ୍ଦୀ ପ୍ରଥମ ସଙ୍କେତ ଦେଇଥିଲା । ତେଣୁ ବଙ୍ଗଳା କବିତାର ଆଧୁନିକ ଯୁଗ ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଆରମ୍ଭ ହୋଇଥିଲା । ଯେଉଁମାନେ ଏହି ଆଧୁନିକତାର ପ୍ରଯୋଜକ ଥିଲେ, ସେମାନେ ହେଉଛନ୍ତି, ଈଶ୍ୱର ଗୁପ୍ତ, ରଙ୍ଗଲାଲ ବାନାର୍ଜୀ, ମଧୁସୂଦନ ଦତ୍ତ ଓ ହେମଚନ୍ଦ୍ର ।

ଈଶ୍ୱର ଗୁପ୍ତ ହେଉଛନ୍ତି ଏ ଯୁଗର ପ୍ରତିଷ୍ଠାତା । ତାଙ୍କ କବିତାରେ ଆଧୁନିକ ଲକ୍ଷଣ ସହିତ କେତେକ ପୁରାତନ ଲକ୍ଷଣ ମଧ୍ୟ ପ୍ରକାଶ ପାଇଥିଲା । ସେ ଓଡ଼ିଶାର କବିବର ରାଧାନାଥ ରାୟଙ୍କ ପରି ପ୍ରାଚୀନ ରୀଗରାଗିଣୀ ଓ କାବ୍ୟର ଅଳଂକରଣ ପ୍ରଥା ସମ୍ପୂର୍ଣ୍ଣ ବିସ୍ମୃତ ହୋଇ ନଥିଲେ । 'ସମ୍ବାଦ ପ୍ରଭାକର' ନାମକ ପତ୍ରିକାର ସେ ଥିଲେ ପ୍ରତିଷ୍ଠାତା । ତାଙ୍କ ପତ୍ରିକା ସାହାଯ୍ୟରେ ସେ ଏକ ସାହିତ୍ୟିକ ଗୋଷ୍ଠୀ ଗଠନ କରିପାରିଥିଲେ । ରଙ୍ଗଲାଲ ବାନାର୍ଜୀ, ମଧୁସୂଦନ ଦତ୍ତ (୧୮୨୪-୧୮୭୩) ପ୍ରଭୃତି ଏହି ଗୋଷ୍ଠୀର ଲେଖକ ଅଟନ୍ତି । କବି ଭାବରେ ଈଶ୍ୱର ଗୁପ୍ତଙ୍କର ଯେଉଁ ଐତିହାସିକ ଗୁରୁତ୍ୱ, ଆଧୁନିକ ବଙ୍ଗଳା କାବ୍ୟକବିତାରେ ତାହା ସ୍ୱୀକୃତ । ପ୍ରାଚୀନ ସାହିତ୍ୟ, ସଂସ୍କୃତ ଓ ଇଂରାଜୀ ସାହିତ୍ୟ ପ୍ରତି ମଧ୍ୟ

ତାଙ୍କର ଯଥେଷ୍ଟ ଆଦର ଓ ଅନୁରକ୍ତି ଥିଲା । ତାଙ୍କ କାବ୍ୟର ନୂତନ ଚନ୍ଦକଲା ଓ ନୂତନ ଗଦ୍ୟଶୈଳୀର ବ୍ୟଙ୍ଗାତ୍ମକତା ଯୋଗୁଁ ସେ ସମାଜରେ ବିଶେଷ ଆଦୃତ ହୋଇଥିଲେ । ତାଙ୍କ କାବ୍ୟକବିତାରେ ଦେଶାତ୍ମବୋଧର ମୂର୍ଚ୍ଛନା ପ୍ରଥମ ଥର ପାଇଁ ପ୍ରତିଫଳିତ ହୋଇଥିଲା ।

ରଙ୍ଗଲାଲ ବାନାର୍ଜୀ ଈଶ୍ୱର ଗୁପ୍ତଙ୍କର ଜଣେ ବିଶ୍ୱସ୍ତ ଶିଷ୍ୟ ଥିଲେ । ତାଙ୍କର କାବ୍ୟ 'ପଦ୍ମିନୀ ଉପାଖ୍ୟାନ', 'ଶୂର ସୁନ୍ଦରୀ', 'କର୍ଣ୍ଣଦେବୀ' ଓ 'କାଞ୍ଚିକାବେରୀ' ପ୍ରଭୃତି ବିଶେଷ ଉଲ୍ଲେଖଯୋଗ୍ୟ । ଦେଶାତ୍ମବୋଧ ଓ ବୀରତ୍ୱଗାଥା ବର୍ଣ୍ଣନା କରିବା ଏହି କାବ୍ୟମାନଙ୍କର ଆକର୍ଷଣ । ଊନବିଂଶ ଶତାବ୍ଦୀର ମଧ୍ୟଭାଗର ବିଶିଷ୍ଟ କବି ମାଇକେଲ୍ ମଧୁସୂଦନ ଦତ୍ତ ତାଙ୍କର ପ୍ରତିଭାଶାଳୀ ଲେଖନୀ ଚାଳନା କରି ବଙ୍ଗଳା କାବ୍ୟ କବିତାର ସଂସ୍କାର ଓ ରୂପାନ୍ତର ସାଧନ କରିଥିଲେ । କବି ମଧୁସୂଦନ ଦତ୍ତ ବଙ୍ଗଳାର ତରୁଣ ସମାଜର ପ୍ରତିନିଧିରୂପେ ବିବେଚିତ ହୋଇ-ଥିଲେ । ସେ ସତେ ଯେପରି କାବ୍ୟକବିତା ରାଜ୍ୟରେ ଏକ ଅପୂର୍ବ ପ୍ରତିଭା ଥିଲେ । ତାଙ୍କ କାବ୍ୟସମୃଦ୍ଧ ପାଶ୍ଚାତ୍ୟ ସାହିତ୍ୟର ଆଦର୍ଶରେ ଅନୁପ୍ରାଣିତ ହୋଇଥିଲା । ମାତ୍ର ୪ବର୍ଷ ମଧ୍ୟରେ (୧୮୫୯-୧୮୬୨) ସେ ବଙ୍ଗଳାରେ ଲେଖାଲେଖି କରି ଏହିପରି ଗୌରବ ଅର୍ଜନ କରିଥିଲେ । ସେ ପ୍ରଥମେ ଇଂରାଜୀରେ ଲେଖା ଲେଖି କରୁଥିଲେ । ସେ ଯେ କିପରି ପ୍ରତିଭାଶାଳୀ କବି ଥିଲେ, ତାହା ସହଜରେ ବିଶ୍ୱାସ କରାଯାଇପାରେନା । ବଙ୍ଗଳା ସାହିତ୍ୟରେ ନିଜର ସ୍ଥାନ ଓ ଦାନ ସମ୍ପର୍କରେ ସେ ଥରେ ତାଙ୍କର ଜଣେ ବନ୍ଧୁ ରାଜନାରାୟଣ ବସୁଙ୍କୁ ଖଣ୍ଡିଏ ପତ୍ରରେ ସୂଚନା ଦେଇଥିଲେ । ସେ ଲେଖିଥିଲେ, "ମୁଁ ଏକ ଦୁର୍ଦ୍ଦାନ୍ତ ଧୂମକେତୁ, ଏଥିରେ ତୁମେ ଯାହା ଭାବୁଛ ଭାବିପାର ।"

ତାଙ୍କର ସାରସ୍ୱତ କୃତି ନାଟକ, କାବ୍ୟ ଓ ଗୀତିରଚନା ମଧ୍ୟରେ ଅନ୍ତର୍ଭୁକ୍ତ ଥିଲା । ତାଙ୍କର ଉନ୍ନକର୍ଣ୍ଣି ନାଟକ ଗ୍ରୀକ୍ ଟ୍ରାଜେଡ଼ି ନାଟକର ଆଦର୍ଶରେ ଲିଖିତ ହୋଇଥିଲା । ତାଙ୍କର କାବ୍ୟ 'ବୀରାଙ୍ଗନା', 'ବ୍ରଜାଙ୍ଗନା' ଓ 'ମେଘନାଦ ବଧ' ଆଧୁନିକ ବଙ୍ଗଳା କାବ୍ୟ କବିତାର ପ୍ରଥମ ପର୍ଯ୍ୟାୟର ଗୋଟିଏ ଗୋଟିଏ ଦୀପଶିଖା ସ୍ୱରୂପ । ମଧୁସୂଦନଙ୍କ ସମଗ୍ର କୃତିତ୍ୱର ପରାକାଷ୍ଠା 'ମେଘନାଦ ବଧ' କାବ୍ୟରେ ପରିଦୃଷ୍ଟ ହୁଏ । କାବ୍ୟର ପାଶ୍ଚାତ୍ୟ ସଂଜ୍ଞା ଦୃଷ୍ଟିରୁ ବିଚାର କଲେ, 'ମେଘନାଦ ବଧ' ସର୍ବପ୍ରଥମ ବଙ୍ଗଳା କାବ୍ୟ । ଏଥିରେ ଭାରତୀୟ ରାମାୟଣ ଓ ମହାଭାରତର ପ୍ରେରଣା ସଙ୍ଗେ ସଙ୍ଗେ ପାଶ୍ଚାତ୍ୟ ସାହିତ୍ୟର ହୋମ୍ର, ଭର୍ଜିଲ୍, ଦାନ୍ତେ ଓ ମିଲ୍ଟନ୍ ପ୍ରଭୃତିଙ୍କର ପ୍ରେରଣା ଓ ପ୍ରଭାବ ମଧ୍ୟ ପରିଦୃଷ୍ଟ ହୁଏ । କବି ମଧୁସୂଦନଙ୍କ ଦୃଷ୍ଟିରେ ମିଲ୍ଟନ୍ ଜଣେ ସ୍ୱର୍ଗୀୟ ପୁରୁଷ ଥିଲେ । ଏଥିରୁ ଜଣାଯାଏ ଯେ, ମଧୁସୂଦନଙ୍କ କାବ୍ୟ କବିତାରେ ବୀରତ୍ୱ ଓ ତ୍ୟାଗର ଜ୍ୱଳନ୍ତ ଶିଖା ଜଳି

ଛୁଟିଥିଲା । ଅର୍ଥାତ୍, ଊନବିଂଶ ଶତାବ୍ଦୀରେ ବଙ୍ଗଳା ଏକ ବିଦ୍ରୋହ ଓ ବିପ୍ଳବର ସମ୍ମୁଖୀନ ହୋଇଥିଲା । ସେହି ବିଦ୍ରୋହ ଓ ବିପ୍ଳବ ଥିଲା ପରାଧୀନତା ବିରୁଦ୍ଧରେ । ମଧୁସୂଦନଙ୍କ କାବ୍ୟ କବିତାରେ ଏହି ସାମାଜିକ ଓ ଜାତୀୟ ଚେତନା ସ୍ତରେ ସ୍ତରେ ପ୍ରତିଫଳିତ ହୋଇଥିଲା ।

ଅମିତ୍ରାକ୍ଷର ଛନ୍ଦର ପ୍ରବର୍ତ୍ତକ ଭାବରେ ସେ ବଙ୍ଗଳା କବିତାକୁ ବିପ୍ଳବାନ୍ୱିତ କରିଥିଲେ । ବଙ୍ଗଳା ନାଟକ ମଧ୍ୟ ତାଙ୍କର ପ୍ରଭାବରୁ ମୁକ୍ତ ହୋଇନଥିଲା । ସଂକ୍ଷେପରେ କହିବାକୁ ଗଲେ, ମଧୁସୂଦନଙ୍କ କାବ୍ୟର ମହତ୍ତ୍ୱ ଯୁଗର ଆବେଦନ ଓ ନିବେଦନକୁ କେନ୍ଦ୍ର କରି ପରିସ୍ଫୁଟ ହୋଇଥିଲା । ଯୁଗର ବୈପ୍ଳବିକ ମନ୍ତ୍ରରେ ଦୀକ୍ଷିତ ହୋଇ ହେମଚନ୍ଦ୍ର ଓ ନବୀନସେନ୍ ପ୍ରଭୃତି କବିମାନେ ସାହିତ୍ୟ କ୍ଷେତ୍ରରେ ଅବତୀର୍ଣ୍ଣ ହୋଇଥିଲେ । ଏହି ଯୁଗର କବିମାନଙ୍କ କାବ୍ୟର ବିଷୟବସ୍ତୁ ଥିଲା, ଦେଶର ଅତୀତ ଗୌରବ, ବୀରଗାଥା ଓ ପୌରାଣିକ ଆଖ୍ୟାନ । ସ୍ୱାଧୀନତାର ସ୍ୱପ୍ନ ଓ ତାହାର ପୃଷ୍ଠଭୂମିରେ ସମ୍ଭବତଃ ହେମଚନ୍ଦ୍ର (୧୮୩୮-୧୯୦୩) 'ବୃତ୍ରସଂହାର' କାବ୍ୟ ଓ ନବୀନ ସେନ୍ (୧୮୪୭-୧୯୧୯) 'ପଲାସୀର ଯୁଦ୍ଧ' କାବ୍ୟ ରଚନା କରିଥିଲେ । ହେମଚନ୍ଦ୍ର ମଧୁସୂଦନଙ୍କ ପ୍ରଶଂସକ ଥିଲେ । ନବୀନ ସେନ୍ କବି ହିସାବରେ କଳ୍ପନାବିଳାସୀ ଓ ଦେଶାତ୍ମବୋଧର ସମର୍ଥକ ଥିଲେ । ଏହି ଯୁଗର ରଚନାବଳୀରେ ପାଶ୍ଚାତ୍ୟ ସାହିତ୍ୟର ପ୍ରଭାବ ମଧ୍ୟ ଦେଖାଯାଏ । ମଧୁସୂଦନ ଓ ତାଙ୍କର ସମସାମୟିକ କବିମାନଙ୍କ ପରେ ବିହାରୀଲାଲ ଚକ୍ରବର୍ତ୍ତୀ ପ୍ରଭୃତି କେତେ-ଜଣ ସାଧକ ବଙ୍ଗଳା କାବ୍ୟରାଜ୍ୟରେ ଦେଖା ଦେଇଥିଲେ । ତୁଳନାତ୍ମକ ବିଚାରରେ ଏହି ଗୋଷ୍ଠୀର ପ୍ରତ୍ୟେକ କବିଙ୍କର ସ୍ୱାତନ୍ତ୍ର୍ୟ ଥିଲା । ଏମାନଙ୍କ ସୃଷ୍ଟି ମୁଖ୍ୟତଃ କାବ୍ୟଧର୍ମୀ । ପୂର୍ବଯୁଗୀୟ କାବ୍ୟରେ ବର୍ଣ୍ଣିତ ଦେବଦେବୀଙ୍କ ପରିବର୍ତ୍ତେ ବର୍ତ୍ତମାନ ମାନବ ହିଁ କାବ୍ୟରେ ମୁଖ୍ୟସ୍ଥାନ ଗ୍ରହଣ କରିଥିଲା । ଏହି କବି ଚତୁଷ୍ଟୟଙ୍କ ସାହିତ୍ୟ ସାଧନାର ପୃଷ୍ଠ ଭୂମିରେ ଆଉ ଏକ ଉଦ୍ଦୀପ୍ତ କାବ୍ୟଧାରା ଅନ୍ତଃସଲିଳା ଫଲ୍‌ଗୁବତ୍ ପ୍ରବାହିତ ହେଉଥିଲା । ତାହା ହେଉଛି ଗୀତିକବିତାର ପ୍ରବାହ ।

ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ କବି ବିହାରୀଲାଲ୍ ଚକ୍ରବର୍ତ୍ତୀଙ୍କର (୧୮୧୪-୧୮୭୫) ଆବିର୍ଭାବ ଏକ ଐତିହାସିକ ଘଟଣା । ତାଙ୍କର କବିମାନସ ମୁଖ୍ୟତଃ ଗୀତିକବିତାଧର୍ମୀ । ତାଙ୍କର ବହୁଳସଂଖ୍ୟକ ଗୀତ କବିତା ବଙ୍ଗଳାର କାବ୍ୟ ଧାରାରେ ନୂତନ ପରିବର୍ତ୍ତନ ଆଣି ଦେଇଥିଲା । ସେ ଗୀତିକାବ୍ୟର ପ୍ରଥମ ସାର୍ଥକ ସ୍ରଷ୍ଟା ଭାବରେ ବଙ୍ଗଳା ସାହିତ୍ୟର ଇତିହାସରେ ପ୍ରତିଷ୍ଠିତ । ତାଙ୍କର ସାହିତ୍ୟ ସୃଷ୍ଟିରେ ମଧୁସୂଦନଙ୍କ କାବ୍ୟାଦର୍ଶ ବିଶେଷ ଭାବରେ ପ୍ରତିଫଳିତ । ମାଇକେଲ୍ ମଧୁସୂଦନଙ୍କ ମହାକାବ୍ୟର ଗାମ୍ଭୀର୍ଯ୍ୟ, ବିହାରୀଲାଲ ଚକ୍ରବର୍ତ୍ତୀଙ୍କ ଗୀତ କବିତାର ମାଧୁର୍ଯ୍ୟ ଓ ଆନନ୍ଦବାଦ ପାଠକମାନଙ୍କ ଦୃଷ୍ଟି ଆକର୍ଷଣ କରିଥାଏ ।

ଗୀତିକାବ୍ୟର ପ୍ରାଣଧର୍ମ ଓ ବାସ୍ତବ ମୂର୍ଚ୍ଛନା ତାଙ୍କର ରଚନା ସମୂହକୁ ସର୍ବଜନ ଗ୍ରହଣୀୟ କରି ପାରିଥିଲା । ତେଣୁ ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧର ପ୍ରସିଦ୍ଧ କବି ବିହାରୀଲାଲ ରବୀନ୍ଦ୍ରନାଥଙ୍କ କାବ୍ୟ କବିତା କ୍ଷେତ୍ରରେ ପୂର୍ବସୂରି ବୋଲି ଅଭିହିତ ହୋଇଥାନ୍ତି । ଭାବପ୍ରବଣତା ଓ ପ୍ରାଣନିଷ୍ଠତା ତାଙ୍କ ଗୀତିକବିତାର ଅପୂର୍ବ ମାଧୁରୀ । ଇଂରାଜୀରେ 'lyric' ଅର୍ଥ ଯାହା, ତାହାର ପ୍ରକୃତ ସ୍ୱର ବିହାରୀ ଲାଲଙ୍କ ଲେଖନୀରେ ଅନୁରଣିତ ହୋଇଥିଲା । ନୂତନ ଦୃଷ୍ଟିଭଙ୍ଗୀ, ନୂତନ ମୂଲ୍ୟବୋଧ ତାଙ୍କ ରଚନାରେ ସ୍ପଷ୍ଟତର ହୋଇଥିଲା । କବି ବିହାରୀଲାଲ ଆନନ୍ଦ ଉତ୍କଣ୍ଠାର ସହିତ କବିତା ରାଜ୍ୟରେ ନିଜକୁ ନିମଗ୍ନ ରଖିଥିଲେ । ତାଙ୍କର ଆଦର୍ଶ ଓ ଭାବାନୁଯାୟୀ ତାଙ୍କ କାବ୍ୟ ଲକ୍ଷ୍ମୀର ନାମ ଥିଲା 'ଶାରଦା' । ସେ ଯେପରି ସେହି କାବ୍ୟଲକ୍ଷ୍ମୀଙ୍କୁ ହୃଦୟର ବାହାରେ ଓ ଭିତରେ ଉପଲବ୍ଧି କରି ପାରିଥିଲେ । ତାଙ୍କର ରଚନା ଗୁଡ଼ିକର ନାମ ହେଲା, 'ବନ୍ଧୁବିୟୋଗ' (୧୮୭୦), 'ପ୍ରେମପ୍ରବାହିନୀ' (୧୮୭୦), 'ବଙ୍ଗ ସୁନ୍ଦରୀ' (୧୮୭୦), 'ନିସର୍ଗସନ୍ଦର୍ଶନ' (୧୮୭୦) ।

ସେ ସଂସାରରେ ପ୍ରକୃତ ପ୍ରେମର ଅନୁସନ୍ଧାନ କରିଥିଲେ । 'ପ୍ରେମ-ପ୍ରବାହିନୀ' କାବ୍ୟ ଏହି ଅନୁସନ୍ଧାନର ପ୍ରତିବିମ୍ବ ମାତ୍ର । 'ବଙ୍ଗ ସୁନ୍ଦରୀ' କାବ୍ୟରେ କବି କବିତ୍ୱର ମୌଳିକତା ସମ୍ପର୍କରେ ଆଲୋକପାତ କରିଛନ୍ତି । 'ନିସର୍ଗସନ୍ଦର୍ଶନ' କାବ୍ୟରେ ୧୮୭୦ ମସିହାରେ ବଙ୍ଗଳାରେ ଯେଉଁ ଭୀଷଣ ଝଡ଼ ବୃଷ୍ଟି ଦେଖା ଦେଇଥିଲା, ତାହାର ଅନୁଭୂତି ହିଁ ଏହି କାବ୍ୟରେ ପ୍ରତିଫଳିତ ହୋଇଥିଲା । ତାଙ୍କର 'ବଙ୍ଗସୁନ୍ଦରୀ' କାବ୍ୟ ୧୦ ସର୍ଗ ବିଶିଷ୍ଟ ଓ 'ନିସର୍ଗ ସନ୍ଦର୍ଶନ' ୭ ସର୍ଗ ବିଶିଷ୍ଟ । କବି ବିହାରୀଲାଲଙ୍କ ଶ୍ରେଷ୍ଠ ରଚନା ହେଉଛି, 'ଶାରଦା ମଙ୍ଗଳ ।' ଏହି କାବ୍ୟଟି ଏକାନ୍ତ ଭାବରେ ଆତ୍ମିକ । କବିଙ୍କର ବିଭିନ୍ନ ସମୟର ବିଭିନ୍ନ ଭାବ ଓ ଅନୁଭୂତି ଏଥିରେ ସ୍ଥାନ ପାଇଛି । କବି ଶାରଦାଙ୍କୁ କନ୍ୟା, ପ୍ରିୟା ଓ ଦେବୀ ରୂପେ କଳ୍ପନା କରିଛନ୍ତି । ସୃଷ୍ଟିର ଆନନ୍ଦ ଓ ବେଦନା ତାଙ୍କର 'ଶାରଦା ମଙ୍ଗଳ' କାବ୍ୟ ମାଧ୍ୟମରେ ଯେପରି ପ୍ରବାହିତ ହୋଇଥିଲା । ଏହାପରେ କବି 'ଶରତ୍ କାଳ', 'ବାଉଦ ବିଂଶତି', 'ସଙ୍ଗୀତଶତକ', 'ମାୟାଦେବୀ' ପ୍ରଭୃତି କାବ୍ୟ-ସଙ୍ଗୀତ ରଚନା କରିଥିଲେ । କବିର ଯେଉଁ ଆନ୍ତରିକତା ଓ ବିଶ୍ୱାସନିଷ୍ଠତା, ତାହା ବିହାରୀଲାଲଙ୍କ ରଚନାରେ ବିଶେଷ ଭାବରେ ପରିଦୃଷ୍ଟ ହୁଏ । ଊନବିଂଶ ଶତାବ୍ଦୀରେ ବଙ୍ଗଳା କାବ୍ୟ କବିତାରେ ଉପରୋକ୍ତ ମୁଖ୍ୟ କବିଙ୍କ ବ୍ୟତୀତ ବହୁ ଗୌଣକବି ମଧ୍ୟ ଲେଖନୀ ଚାଳନା କରିଥିଲେ । ବିହାରୀଲାଲ୍ ଯେପରି ଏକ ନିଶାନ୍ତ ବିହଙ୍ଗ ସଦୃଶ ବଙ୍ଗଳା କାବ୍ୟ କବିତାର ସ୍ୱର୍ଣ୍ଣିମୟ ପ୍ରଭାତର ମାଙ୍ଗଳିକ ବନ୍ଦନା ଗାନ କରିଥିଲେ । ସେଥିପାଇଁ ତାଙ୍କୁ ପ୍ରତିଭାଶାଳୀ କବି ରବୀନ୍ଦ୍ରଙ୍କ ପୂର୍ବସୂରି ବୋଲି କୁହାଯାଏ ।

# ଗୀତି କବିତା ଓ ରବୀନ୍ଦ୍ରନାଥ

ରବୀନ୍ଦ୍ରନାଥ ହେଉଛନ୍ତି ଆଧୁନିକ ବଙ୍ଗଳା କାବ୍ୟ କବିତାର ଭଗୀରଥ । ତାଙ୍କୁ କେହି କେହି 'ଶତାବ୍ଦୀର ଉଦ୍ଦୀପ୍ତ ସାରସ୍ୱତ ପ୍ରତିଭା' ବୋଲି ମଧ୍ୟ ବର୍ଣ୍ଣନା କରିଥାନ୍ତି । ରବୀନ୍ଦ୍ରନାଥଙ୍କ କବିମାନସ ବହୁଧାରାରେ ପ୍ରବାହିତ ହୋଇଥିଲା । ତାଙ୍କର ସାହିତ୍ୟିକ କୃତିର ଅଜସ୍ରତା ତଥା ଗୁଣାତ୍ମକ ଉତ୍କର୍ଷ ଏବଂ ଭାବଗାମ୍ଭୀର୍ଯ୍ୟ ଓ ସାର୍ବଜନୀନତା ତାଙ୍କୁ ବିଶ୍ୱକବି ଆସନରେ ଅଧିଷ୍ଠିତ କରାଇଥିଲା । ବଙ୍ଗଳା ସାହିତ୍ୟର ପ୍ରତ୍ୟେକ ବିଭାଗରେ ତାଙ୍କର ଲେଖନୀର ଯାଦୁକାରୀ ସ୍ପର୍ଶ ବିପ୍ଳବ ଆଣି ଦେଇଥିଲା । ସେଥିପାଇଁ ବଙ୍ଗଳା ସାହିତ୍ୟରେ ତାଙ୍କର ଆବିର୍ଭାବ, ଯେପରି ଏକ ଶତାବ୍ଦୀର ଅନୁଭୂତ ପ୍ରୟୋଜନ । ଏଣୁ ତାଙ୍କର ପାରିବାରିକ ପୃଷ୍ଠଭୂମି ଓ ବଙ୍ଗଳା ସାହିତ୍ୟର ତଦାନୀନ୍ତନ ଅବସ୍ଥା ସମ୍ୟକ୍ ଭାବରେ ଜାଣିବା ଉଚିତ । ବଙ୍ଗଳା ନବଜାଗରଣର ଯେଉଁ ପର୍ବ ଉଦ୍‌ଘାଟିତ ହୋଇଥିଲା, ଊନବିଂଶ ଶତାବ୍ଦୀର ପ୍ରାରମ୍ଭରେ ସେହି ଧାରାର ଏକ ବଳିଷ୍ଠ ସଙ୍କେତ ରୂପେ ରବୀନ୍ଦ୍ର ନାଥ ଆବିର୍ଭୂତ ହୋଇଥିଲେ ।

ତିନଗୋଟି ନିର୍ଦ୍ଦିଷ୍ଟ ପ୍ରଭାବ ରବୀନ୍ଦ୍ରନାଥଙ୍କ କବି ପ୍ରତିଭାର କାରଣ ହୋଇଥିଲା । ପ୍ରଥମତଃ, ତାଙ୍କ ଉପରେ ତାଙ୍କ ପିତାଙ୍କର ପ୍ରଭାବ । ତାଙ୍କ ପିତା ବ୍ରାହ୍ମ ସମାଜର ଜଣେ ବିଶିଷ୍ଟ ସଭ୍ୟ ଥିଲେ । ତାଙ୍କର ପରିବାର ଭାରତୀୟ ସଭ୍ୟତାର ସୁମହାନ ପରମ୍ପରା ଦ୍ୱାରା ପ୍ରଭାବିତ ହୋଇଥିଲା । ଦ୍ୱିତୀୟ ପ୍ରଭାବ ହେଉଛି, ବଙ୍ଗଳାର କର୍ମବର୍ଦ୍ଧିଷ୍ଣୁ ସମାଜର ଏକ ନୂତନ ଆହ୍ୱାନ । ତୃତୀୟ ପ୍ରଭାବ ହେଉଛି, ପ୍ରାଚ୍ୟ ଓ ପାଶ୍ଚାତ୍ୟ ସାହିତ୍ୟ ତଥା ସଂସ୍କୃତିର ଏକ ସମନ୍ୱୟକାରୀ ଶକ୍ତି । ସେ ସତ୍-ଚିତ୍-ଆନନ୍ଦର ପରମ ଉପାସକ ଥିଲେ । ବେଦାନ୍ତ ଓ ଉପନିଷଦ୍‌ର ମହାନ୍ ଜୀବନବୋଧ ଦ୍ୱାରା ସେ ଯୌବନରେ ଉଦ୍‌ବୁଦ୍ଧ ହୋଇଥିଲେ । ତାଙ୍କ ଜୀବନର ଏକ ନିର୍ଦ୍ଦିଷ୍ଟ ଦୃଷ୍ଟିକୋଣ ଗଢ଼ି ଉଠିଥିଲା ଏବଂ ତାହା ହେଉଛି— ସାର୍ବଜନୀନ ମାନବବାଦୀ ଦୃଷ୍ଟିକୋଣ । ତାଙ୍କର ପ୍ରଥମ ଲେଖା 'ବଲାକା' ଠାରୁ ଆରମ୍ଭ କରି 'ମେଷରେଖା' ପର୍ଯ୍ୟନ୍ତ ସେ ମାନବବାଦୀ ଦୃଷ୍ଟିକୋଣ ଅକ୍ଷୁର୍ଣ୍ଣ ରଖି ପାରିଥିଲେ । ତାଙ୍କର କାବ୍ୟ କବିତାରେ ମାନବ ପ୍ରକୃତି ଓ ବିଶ୍ୱପ୍ରେମର ତ୍ରିବେଣୀ ଧାରା ଯେପରି ପ୍ରବାହିତ । ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ରବୀନ୍ଦ୍ର ଶ୍ରେଷ୍ଠ ଗୀତି-କବି ଭାବରେ ସମଗ୍ର ବିଶ୍ୱ ସମୀପରେ ମଶାଲ ଧରି ରହିଥିଲେ । ଭାବର ଆନ୍ତରିକତା, ଚିତ୍ରକଳ୍ପର ସଜୀବତା, ସର୍ବୋପରି ଚିରନ୍ତନ ଆହ୍ୱାନର ମୂର୍ଚ୍ଛନା ତାଙ୍କର ଅଜସ୍ର ଗୀତି କବିତାର ମାନବିକ ଆକର୍ଷଣ । ୨୦ ବର୍ଷ ପୂର୍ବରୁ ତାଙ୍କର 'ନିର୍ଝରେର ସ୍ୱପ୍ନଭଙ୍ଗ'ରେ ସଙ୍ଗୀତ ମାଧୁର୍ଯ୍ୟ, ଭାଷାର ସାବଲୀଳତା ଓ କବି ହୃଦୟର ଅନୁଭୂତ ନିପୁଣ ଛନ୍ଦରେ ପ୍ରକଟିତ ହୋଇଥିଲା ।

*

ତାଙ୍କର ପ୍ରକୃତି ବର୍ଣ୍ଣନାମୂଳକ ଗୀତିକବିତାରେ ପ୍ରକୃତି ଓ ପୁରୁଷର ଅପୂର୍ବ ମିଳନ ଦେଖାଯାଏ । ତାଙ୍କ ଦୃଷ୍ଟିରେ ସମଗ୍ର ପ୍ରକୃତି ହେଉଛି, ସ୍ରଷ୍ଟାର ସ୍ୱତଃ ଆତ୍ମପ୍ରକାଶ । ସତେ ଯେପରି ଆକାଶର ନୀଳିମା ଓ ଧରଣୀର ସବୁଜିମା ଭିତରେ ସ୍ରଷ୍ଟାର ସ୍ୱର ମର୍ତ୍ତ୍ୟଲୋକର ବାସ୍ତବ ଜଞ୍ଜାଳ ମଧ୍ୟରେ ସ୍ପଷ୍ଟରୁ ସ୍ପଷ୍ଟତର ହୋଇଅଛି । ରବୀନ୍ଦ୍ରନାଥ ଏକାନ୍ତ ଭାବରେ ଏହି ପୃଥିବୀକୁ ଭଲ ପାଉଥିଲେ । ବିଭିନ୍ନ ଋତୁର ବିକାଶ ଓ ଆବର୍ତ୍ତନ ମଧ୍ୟରେ ଏକ ଅନନ୍ତ ଶକ୍ତିର ଉଷ୍ମସ୍ପର୍ଶ ଯେପରି ବାରିବାର ଅନୁଭବ କରିପାରିଥିଲେ । ସେହି ରୂପ, ରସ ଓ ଗନ୍ଧର ଆବାହନରେ ତାଙ୍କର ଦରଦୀ କବି ହୃଦୟରେ ବିଶ୍ୱବେଦନାର ସହାନୁଭୂତି ପ୍ରକାଶ ପାଇଥିଲା । ତାଙ୍କର ଗୀତିକବିତାଗୁଡ଼ିକର ଗୁଣାତ୍ମକ ବିଗ୍ରହ ସୀମିତ ହୋଇନପାରେ । ତାଙ୍କର କବିତାକୃତି—(୧) ସ୍ୱର୍ଗ ହଇତେ ବିଦାୟ, (୨) ବସୁନ୍ଧରା, (୩) ଗୁରୁଗୋବିନ୍ଦ, (୪) ପ୍ରବାସୀ, (୫) ଉର୍ବଶୀ ଓ (୬) ତାଜମହଲ ପ୍ରଭୃତି ଦରଦୀ ହୃଦୟର ଯେପରି ଗୋଟିଏ ଗୋଟିଏ ମୁହୂର୍ତ୍ତର ସ୍ୱପ୍ନ ମାତ୍ର । ସେଥିରେ ଏକତାର ସ୍ୱର ସବୁଠାରୁ ଅଧିକ । ତାଙ୍କର 'ସନ୍ଧ୍ୟା ସଙ୍ଗୀତ' ଓ 'ଗୀତାଞ୍ଜଳି' ସେହିପରି ଦରଦ, ଭକ୍ତି ଓ ବେଦନାର ସ୍ୱତଃସ୍ଫୂର୍ତ୍ତି ଆଲେଖ୍ୟ । 'ନୈବେଦ୍ୟ' ଓ 'ବଲାକା' ପ୍ରେମିକ ହୃଦୟର ଚଞ୍ଚଳତି ଭାବଗାମ୍ଭୀର୍ଯ୍ୟ ପ୍ରକାଶ କରେ । ଯେଉଁ କବି ଏକ ସହସ୍ରାଧିକ କବିତା ଓ ଦୁଇ ସହସ୍ରାଧିକ ସଂଗୀତ ରଚନା କରିଥିଲେ, ତାଙ୍କର ପ୍ରତିଭା ନିଶ୍ଚୟ ଶତାବ୍ଦୀର ପ୍ରତିଭା । ଦେଶାତ୍ମବୋଧ ଓ ଭାରତୀୟ ଐତିହ୍ୟର ପରମ୍ପରା ତାଙ୍କର ଅଧିକାଂଶ କବିତାରେ ପ୍ରତିଫଳିତ ହୋଇଥିଲା । ଗୀତିକବିତା ସହିତ ଦରଦୀ ହୃଦୟର ଯେଉଁ ଭାବ, ତାହା ତାଙ୍କର ପ୍ରତ୍ୟେକ ରଚନାରେ ପରସ୍ପରକୁ ଜଡ଼ିତ କରି ପାରିଛନ୍ତି । ଅନ୍ୟ କେତେକ କବିତାରେ ସେ ପ୍ରାଚୀନ ଭାରତୀୟ ସଂସ୍କୃତି ଓ ପରମ୍ପରାର ଏକ ନୂତନ ବିଶ୍ଳେଷଣାତ୍ମକ ଚିତ୍ର ପ୍ରଦାନ କରିଛନ୍ତି ।

ଗୀତାଞ୍ଜଳି—ଏହା କବି ରବୀନ୍ଦ୍ରନାଥଙ୍କର ଶ୍ରେଷ୍ଠ ଗୀତିକବିତାଗୁଚ୍ଛ । ଭକ୍ତ ଯେପରି ସ୍ରଷ୍ଟା ସହିତ ସଂଗୋପନରେ ଆଳାପ କରେ, କବି ରବୀନ୍ଦ୍ରନାଥ ମଧ୍ୟ ସେହିପରି, ସମଗ୍ର ବିଶ୍ୱ ଆନନ୍ଦରେ ପରିପୂର୍ଣ୍ଣ— ଏହି ଭାବକୁ ଗୀତାଞ୍ଜଳିର ସଂଗୀତ-ଗୁଡ଼ିକରେ ସଫଳତାର ସହିତ ପ୍ରଦର୍ଶନ କରିଛନ୍ତି । ଅତୀନ୍ଦ୍ରିୟତା ଓ ରହସ୍ୟବାଦ ତାଙ୍କ କାବ୍ୟକବିତାର ଅନ୍ୟ ଏକ ଲକ୍ଷଣ ବୋଲି କୁହାଯାଇଥାଏ । ମାତ୍ର ଏହି ରହସ୍ୟବାଦ କୌଣସି ନିର୍ଦ୍ଦିଷ୍ଟ ଧର୍ମ ବା ବିଶ୍ୱାସ ମଧ୍ୟରେ ସୀମାବଦ୍ଧ ନଥିଲା । କାରଣ, କବି ମନୁଷ୍ୟକୁ ବିଶେଷ ଭଲ ପାଉଥିଲେ ।

ସେ ୧୯୧୩ ଖ୍ରୀ:ରେ ଆନ୍ତର୍ଜାତିକ ନୋବେଲ୍ ପୁରସ୍କାର ଲାଭ କରିଥିଲେ । ନୂତନ ଅନୁଭୂତି, ନୂତନ ଅଭିମୁଖ୍ୟ ଏବଂ ନୂତନ ଅନୁସନ୍ଧାନ ତାଙ୍କୁ ଚରମ ସତ୍ୟ ଦିଗରେ ବାରିବାର ଆକୃଷ୍ଟ କରିଥିଲା । ମନୁଷ୍ୟର ଅସ୍ତିତ୍ୱ ସମ୍ପର୍କରେ ରବୀନ୍ଦ୍ରନାଥ

ଅନେକ ସମୟରେ ନିଜକୁ ନିଜେ ପ୍ରଶ୍ନ କରିଛନ୍ତି । ସଂକ୍ଷେପରେ କହିବାକୁ ଗଲେ, ରବୀନ୍ଦ୍ରନାଥଙ୍କ କବିତାଗୁଡ଼ିକ ସାର୍ବଜନୀନ ଭାବଦ୍ୱାରା ପ୍ଲାବିତ । ଆଧୁନିକ ବଙ୍ଗଳା କାବ୍ୟକବିତାର ଇତିହାସରେ ରବୀନ୍ଦ୍ରନାଥଙ୍କ ଦାନର ଅଜସ୍ରତା କଳ୍ପନାତୀତ । ସେ ଥିଲେ ଏ ଯୁଗରେ ଭାରତର ପ୍ରାଚୀନ ପରମ୍ପରାର ବାର୍ତ୍ତାବହ ଏବଂ ସମଗ୍ର ବିଶ୍ୱସଭ୍ୟତାର ରକ୍ଷଣାବେକ୍ଷଣ ପାଇଁ ସେ ନିଜର କାବ୍ୟକବିତା, ଉପନ୍ୟାସ ଓ ନାଟକ ମାଧ୍ୟମରେ ସବୁ ଯୁଗର ନରନାରୀଙ୍କୁ ଯେପରି ଉଦ୍‌ବୋଧନ ଦେଇଯାଇଛନ୍ତି ।

ରବୀନ୍ଦ୍ରନାଥଙ୍କ ସାହିତ୍ୟିକ ପ୍ରତିଭାର ଅନ୍ୟ ଏକ ଦିଗ ହେଉଛି ଗୀତି-ନାଟ୍ୟ । ତାଙ୍କର ପ୍ରଥମ ନାଟକ 'ବାଲ୍ମୀକି ପ୍ରତିଭା' ୧୮୮୧ ମସିହାରେ ଓ ପରବର୍ତ୍ତୀ ନାଟକ 'କାଳମୃଗୟା' ୧୮୮୨ ମସିହାରେ ପ୍ରକାଶିତ ହୋଇଥିଲା । ତାଙ୍କର ଅନ୍ୟ ନାଟକ 'ରାଜା ଓ ରାଣୀ' ପାଞ୍ଚ ଅଙ୍କ ବିଶିଷ୍ଟ ଏକ ବିୟୋଗାନ୍ତକ ନାଟକ । ଏହାପରେ ରବୀନ୍ଦ୍ରନାଥଙ୍କ 'ତପତି' ନାଟକ ପ୍ରକାଶିତ ହୋଇଥିଲା । 'ବିସର୍ଜନ' ତାଙ୍କର ଅନ୍ୟ ଏକ ଗୀତିନାଟ୍ୟ । ଏତଦ୍‌ବ୍ୟତୀତ 'ଚିତ୍ରାଙ୍ଗଦା' (୧୮୯୨) 'ବିଦାୟ ଅଭିଶାପ' (୧୮୯୪), 'ମାଲିନୀ' (୧୮୯୫) ପ୍ରଭୃତି ରବୀନ୍ଦ୍ରନାଥଙ୍କର ଅନ୍ୟ କେତୋଟି ଗୀତିନାଟ୍ୟ । ସେ କେତୋଟି ଫାର୍ଶ ମଧ୍ୟ ଲେଖିଥିଲେ । 'ଚିର କୁମାର ସଭା' (୧୯୦୧) ତାଙ୍କର ଏକ ଅଭିନବ ହାସ୍ୟ-ରସାତ୍ମକ ନାଟକ । ରବୀନ୍ଦ୍ର ନାଥଙ୍କର ବିଭିନ୍ନ ନାଟ୍ୟ ରଚନାରେ ଗଭୀର ଆଧ୍ୟାତ୍ମିକ ଭାବ ପ୍ରତିଫଳିତ । ତାଙ୍କର 'ଶାରଦୋତ୍ସବ' (୧୯୦୮), 'ଫାଲ୍‌ଗୁନୀ' (୧୯୧୫), 'ବସନ୍ତ' (୧୯୨୩) ପ୍ରଭୃତି ଗୀତିନାଟ୍ୟରେ ପ୍ରକୃତିର ମନୋରମ ଚିତ୍ର ଦେଖିବାକୁ ମିଳେ । ରବୀନ୍ଦ୍ରନାଥଙ୍କ ଗୀତିନାଟ୍ୟରେ ଅନ୍ୟ ଏକ ଧର୍ମ ହେଉଛି, ପ୍ରତୀକାତ୍ମକତା । 'ରାଜା' ତାଙ୍କର ଏହିପରି ଏକ ରଚନା । ୧୯୨୪-୨୫ରେ ପ୍ରକାଶିତ 'ରକ୍ତକରବୀ' ତାଙ୍କର ଏକ ଶ୍ରେଷ୍ଠ ପ୍ରତୀକଧର୍ମୀ ନାଟକ । ଏଥିରେ କବିଙ୍କର ସୌନ୍ଦର୍ଯ୍ୟପିପାସା ଓ ମାନବ ଅନ୍ତରର ଚିରନ୍ତନ କ୍ଷୁଧା ପ୍ରତିଫଳିତ । ଏଥିରେ ବର୍ଣ୍ଣିତ ଚରିତ୍ରଗୁଡ଼ିକ ମାନବିକ ଆବେଗ ଓ ଅନୁଭୂତିର ଅଧିକାରୀ । ପ୍ରକୃତି ମନୁଷ୍ୟର ଜୀବନକୁ ରସସିକ୍ତ କରିବାରେ କିପରି ସହାୟକ, ତାହାର ସୂଚନା ଏହି ନାଟକରୁ ମିଳିଥାଏ । 'ଗୃହପ୍ରବେଶ' ତାଙ୍କର ଆଉ ଏକ କ୍ଷୁଦ୍ର ନାଟକ । ଏଥିରେ ପ୍ରତୀକ ଆଦୌ ବ୍ୟବହୃତ ହୋଇନାହିଁ । 'ଚଣ୍ଡାଳିକା' ତାଙ୍କର ଏକ ନୃତ୍ୟନାଟିକା । ଏହା 'ଚିତ୍ରାଙ୍ଗଦା' ସହିତ ତୁଳନୀୟ ହୋଇପାରେ ।

ସଂକ୍ଷେପରେ କହିବାକୁ ଗଲେ, ରବୀନ୍ଦ୍ରନାଥଙ୍କ ନାଟକଗୁଡ଼ିକ ବୈଶିଷ୍ଟ୍ୟପୂର୍ଣ୍ଣ । ତାଙ୍କର 'ଡାକଘର' ଏକ ସଙ୍କେତଧର୍ମୀ ନାଟକ । ଜୀବନ ତଥା ସମାଜର ଏକ ସୂକ୍ଷ୍ମ ରୂପର ପରିଚୟ, ନରନାରୀଙ୍କ ଦ୍ୱନ୍ଦ୍ୱ ଓ ସଂଘର୍ଷ ରବୀନ୍ଦ୍ରନାଥଙ୍କ ନାଟ୍ୟ

ପ୍ରତିଭାର ଏକ ବିଶିଷ୍ଟ ଲକ୍ଷଣ । କେଉଁଠାରେ କରୁଣରସ ଓ କେଉଁଠାରେ ଶାନ୍ତରସ ପରିବେଷଣ କରି ଲେଖକ ତାଙ୍କର ପ୍ରତ୍ୟେକ ରଚନାକୁ ରସୋତ୍ତୀର୍ଣ୍ଣ କରିପାରିଛନ୍ତି । 'ଡାକଘର' ନାଟକଟିରେ ନିଗୃହିତ ଶିଶୁ ଅମଲ ଯେଉଁ ମାନସିକ କ୍ଷୁଧାରେ ଅସ୍ଥିର ଓ ଚଞ୍ଚଳ ହୋଇଥିଲା, ତାହା ଅନନ୍ୟ ବିରଳ । ଶ୍ରେଷ୍ଠ ରବୀନ୍ଦ୍ରନାଥଙ୍କ ନାଟ୍ୟସମ୍ଭାର ପ୍ରତୀକସର୍ବସ୍ୱ ବୋଲି କୁହାଯାଇଥାଏ ।

ରବୀନ୍ଦ୍ରନାଥଙ୍କ ସମକାଳରେ ଓ ପରବର୍ତ୍ତୀ ଯୁଗରେ ଯେଉଁ ଶକ୍ତିଶାଳୀ ସ୍ରଷ୍ଟାଗଣ ବଙ୍ଗଳା କାବ୍ୟକବିତା କ୍ଷେତ୍ରରେ ପ୍ରତିଷ୍ଠା ଅର୍ଜନ କରିଥିଲେ ସେମାନେ ହେଲେ ସତ୍ୟେନ୍ଦ୍ରନାଥ ଦତ୍ତ, କରୁଣା ନିଧାନ ବନ୍ଦୋପାଧ୍ୟାୟ, ମୋହିତଲାଲ ମଜୁମଦାର, କୁମୁଦ ରଞ୍ଜନ ମଲ୍ଲିକ, ନଜରୁଲ ଇସଲାମ, କାଳିଦାସ ରାୟ,ସୁକାନ୍ତ ଭଟ୍ଟାଚାର୍ଯ୍ୟ । ସତ୍ୟେନ୍ଦ୍ରନାଥ, ମୋହିତଲାଲ ଓ ନଜରୁଲଙ୍କର ଉର୍ଦ୍ଦୁ, ପାର୍ଶୀ ଶବ୍ଦ ପ୍ରୟୋଗ ପ୍ରତି ଅତ୍ୟଧିକ ମୋହ ଥିଲା । ଓମାରଖୟାମୀ ଆବେଗ, ଭାରତୀୟ ଜାତୀୟ ଆନ୍ଦୋଳନର ଉଷ୍ଣତା, ଫ୍ରୟେଡ଼ଙ୍କ ମନସ୍ତତ୍ତ୍ୱ, ପାଶ୍ଚାତ୍ୟ ଶିଳ୍ପ ବିପ୍ଳବ, ରୁଷ ବିପ୍ଳବ ଆଦି ଏମାନଙ୍କ କାବ୍ୟରଚନାକୁ ଉପାଦାନ ଯୋଗାଇଥିଲା । କବି କରୁଣା ନିଧାନଙ୍କର 'ଝରାଫୁଲ' ଏକ ଅମଳିନ କାବ୍ୟକୃତି । ତାଙ୍କୁ ବଙ୍ଗଳା ସାହିତ୍ୟରେ ପ୍ରକୃତିର ଦୁଲାଲ କୁହାଯାଏ । ସତ୍ୟେନ୍ଦ୍ରନାଥଙ୍କର କବିତାରେ ଧ୍ୱନିଗତ ସୌନ୍ଦର୍ଯ୍ୟ ଓ ସ୍ପନ୍ଦନପ୍ରତି ପାଠକର ସ୍ୱତଃ ଆକର୍ଷଣ ଆସେ । ତାଙ୍କର 'କଣୋଗି', 'ନାଗକେଶର', 'ଫୁଲେର ରାଣୀ' ପ୍ରଭୃତି କବିତା ଏକ ଅପୂର୍ବ ସ୍ୱପ୍ନସୁଷମାରେ ବିମଣ୍ଡିତ । କରୁଣା ନିଧାନ ମଧ୍ୟ ଏହି ସ୍ୱପ୍ନ ଏବଂ କଳ୍ପନା ବିଳାସରେ ବିଭୋର ଥିଲେ ।

କୁମୁଦରଞ୍ଜନଙ୍କ କାବ୍ୟବୈଶିଷ୍ଟ୍ୟ ହେଲା ତାଙ୍କ ମନରେ ବକ୍ତବ୍ୟ ବିଷୟଟି ଯେପରି ଭାବରେ ଦେଖାଦିଏ, ସେ ସେହିଭାବେ ତା' ପ୍ରକାଶ କରିଥାନ୍ତି । ପଶ୍ଚିମ-ବଙ୍ଗର ପଲ୍ଲୀ-ଜୀବନର ସରଳତା ତାଙ୍କ କବିତାରେ ସତେ ଯେପରି ରୂପ ପାଇଛି । ପଲ୍ଲୀ ପ୍ରକୃତିର ଭକ୍ତ ଓ ବୈଷ୍ଣବୀୟ ଭାବନାର ପ୍ରଖ୍ୟାପକଭାବେ ବଙ୍ଗ କାବ୍ୟ-ସାହିତ୍ୟରେ ତାଙ୍କର ପ୍ରତିଷ୍ଠା । ସ୍ୱଦେଶର ପୁରାକଥା ବର୍ଣ୍ଣନାରେ ମଧ୍ୟ ତାଙ୍କର ଥିଲା ଅଶେଷ ଆଗ୍ରହ । ଅତୀତର କୀର୍ତ୍ତିକାହାଣୀ କମ୍ବୁଦନ୍ତୀ କୃଷକର ସୁଖଦୁଃଖର କଳ୍ପକଥା ବର୍ଣ୍ଣନା ସହିତ ପରିହାସ-ମଧୁର ବିହ୍ୱଳତା ତାଙ୍କର କବିତାରେ ଲକ୍ଷିତ ହୁଏ ।

କାଳିଦାସ ରାୟଙ୍କର ପ୍ରଥମ ରଚନାଗୁଡ଼ିକୁ ପଢ଼ି ରବୀନ୍ଦ୍ରନାଥ ଲେଖିଥିଲେ—"ତୁମର ଏଇ କାବ୍ୟଗୁଡ଼ିକ ପଢ଼ିଲେ ବଙ୍ଗଳାର ଗ୍ରାମ୍ୟାଶୀତଳ ନିଭୃତ ଅଗଣାର ତୁଳସୀମଞ୍ଚ ଓ ମାଧବୀକୁଞ୍ଜ ମନେପଡ଼େ ।" ଶବ୍ଦ, ଛନ୍ଦ, ଅଳଙ୍କାର ପ୍ରଭୃତି ବାହ୍ୟ-ପ୍ରସଙ୍ଗର ଆଲୋଚନାରେ କାଳିଦାସ ରାୟଙ୍କର ଦୀର୍ଘ ସାଧନା ଅତିବାହିତ ହୋଇଥିଲା । ଜଣେ ଏକନିଷ୍ଠ ସାଧକଭାବେ ବଙ୍ଗସାହିତ୍ୟରେ ସେ ଅନନ୍ୟତମ ।

ନଜରୁଲଙ୍କର 'ଅଗ୍ନି ବୀଣା' ପ୍ରକାଶିତ ହୁଏ ୧୯୨୨ ମସିହାରେ । ନଜରୁଲ ପ୍ରଥମ ବିଶ୍ୱଯୁଦ୍ଧର ସୈନିକ ଥିଲେ । ଆବେଗ, ଉଚ୍ଛ୍ୱାସ ଏବଂ ଉଦ୍ଦୀପନାରେ ତାଙ୍କର କବି-ହୃଦୟ ପ୍ଲାବିତ ହୋଇଯାଇଥିଲା । 'ବିଦ୍ରୋହୀ' ଲେଖି ସେ ବିଦ୍ରୋହୀ-କବି ନାମରେ ବିଖ୍ୟାତ ହେଲେ । ଜନସାଧାରଣଙ୍କର ନିକଟରେ ମଣିଷ ହିସାବରେ ନଜରୁଲଙ୍କୁ ଦେଖିବାକୁ ପାଉଁ । ନଜରୁଲ ମଣିଷର ବନ୍ଧନ-ମୁକ୍ତିର ସଙ୍ଗୀତ ଗାନ କଲେ । ଶବ୍ଦ-ଛନ୍ଦ-ଭାଷାର ବିଚିତ୍ର ପ୍ରୟୋଗରେ ତାଙ୍କର କବିତା ଶ୍ରୁତିମଧୁର ଓ ଧ୍ୱନିମାଧୁର୍ଯ୍ୟମଣ୍ଡିତ । ଦୃଢ଼ବିଶ୍ୱାସର ଅଭିବ୍ୟକ୍ତି ତାଙ୍କ କବିତାରେ ଦେଖିବାକୁ ମିଳେ । ବାସ୍ତବ ସଂସାରର ସ୍ୱୀକୃତି ସହିତ ଦୁଃଖର ଉପଲବ୍ଧି ନିମନ୍ତେ ସତ୍ୟର ପୂର୍ଣ୍ଣ ପରିଚୟ ତାଙ୍କ କବିତାରୁ ମିଳେ ।

'ସ୍ମରଗରଳ', 'ସ୍ୱପନ-ପସାରୀ', 'ବିସ୍ମରଣୀ' ପ୍ରଭୃତି କାବ୍ୟଗ୍ରନ୍ଥର ରଚୟିତା ମୋହିତଲାଲ ମଜୁମ୍ଦାର ନବୀନ ବଙ୍ଗଳାର ଅନ୍ତରାତ୍ମାର ଉଚ୍ଛୃଙ୍ଖଳ୍ୟକୁ ଓ ବିଦ୍ରୋହକୁ ପ୍ରକୃତ ଗୁଣଗ୍ରାହିତା ସହିତ ସ୍ୱୀକାର କରିଥିଲେ । ଅନ୍ୟମାନଙ୍କ ତୁଳନାରେ ସେ ଅଧିକ ଶୈଳୀ-ସମ୍ପନ୍ନ କବି । ନାରୀ-ବନ୍ଦନା, ଦୁଃଖବାଦ ଓ ଅଲଙ୍କରଣ-ପ୍ରୀତି—ଏହି ତିନି ଦିଗରେ ମୋହିତଲାଲଙ୍କର ବିଶେଷତ୍ୱ ନିହିତ । 'ହେମନ୍ତ ଗୋଧୂଳି', 'ମହାସରସ୍ୱତୀ', 'ପାନ୍ଥ' ପ୍ରଭୃତି ତାଙ୍କର ସାର୍ଥକ କବିତା ।

## ଆଧୁନିକ ବଙ୍ଗଳା କାବ୍ୟକବିତା

ଆଧୁନିକ ବଙ୍ଗଳା କବିତାର ଐତିହାସିକ ଅଧ୍ୟୟନରୁ ଜଣାଯାଏ ଯେ, ସ୍ୱାଧୀନତା ପରବର୍ତ୍ତୀ କାଳରେ ବଙ୍ଗଳା କବିତାର ଆଙ୍ଗିକ ଏବଂ ଭାବକଳ୍ପ ପର୍ଯ୍ୟାପ୍ତ ଭାବରେ ପରିକଳ୍ପିତ ହେଲା । ୧୯୩୦ ମସିହା ପରେ ଆଧୁନିକ ବଙ୍ଗଳା କାବ୍ୟକବିତା କ୍ଷେତ୍ରରେ ଜୀବନାନନ୍ଦ ଦାସ, ବିଷ୍ଣୁ ଦେ, ସୁଧୀନ୍ଦ୍ରନାଥ ଦତ୍ତ, ପ୍ରେମେନ୍ଦ୍ର ମିତ୍ର, ବୁଦ୍ଧଦେବ ବସୁ, ଅମୀୟ ଚକ୍ରବର୍ତ୍ତୀ ପ୍ରମୁଖଙ୍କ ନାମ ସର୍ବାଗ୍ରେ ଉଲ୍ଲେଖଯୋଗ୍ୟ । ବନଲତା ସେନ କବିତା ସଂକଳନର ସ୍ରଷ୍ଟା । ଜୀବନାନନ୍ଦ ଦାସ ତାଙ୍କ କବିତା ସମୂହରେ ଉଭୟ ଆନନ୍ଦ ଓ ନୈରାଶ୍ୟର ଚିତ୍ର ଅଙ୍କନ କରିପାରିଛନ୍ତି । ତାଙ୍କ ବର୍ଣ୍ଣିତ ନୈରାଶ୍ୟ ଏବଂ ବିଫଳତା ବ୍ୟକ୍ତିର କରୁଣଷ୍ଟ ତର ସୂଚକ ଏବଂ ଆନନ୍ଦାନୁଭୂତ ବ୍ୟକ୍ତିର ସାମୟିକ ଭାବଐଶ୍ୱର୍ଯ୍ୟର ପ୍ରତୀକ । ସ୍ୱାଧୀନତା ପରବର୍ତ୍ତୀ ବଙ୍ଗଳା କାବ୍ୟ କବିତାରେ ତାଙ୍କର ଲେଖନୀ ନୂତନ ଚିତ୍ରକଳ୍ପ ସୃଷ୍ଟି କରିପାରିଛି । ବିଷ୍ଣୁ ଦେ'ଙ୍କର କବିତାରେ ନୈରାଶ୍ୟ ଏବଂ ବ୍ୟଙ୍ଗ ବିଦ୍ରୂପର ସମ୍ମିଶ୍ରଣ ପରିଲକ୍ଷିତ । ମାର୍କସଚିନ୍ତାଧାରା ତାଙ୍କ କୃତି ସମୂହରେ ପ୍ରତିଫଳିତ । ସମସ୍ତ ପ୍ରକାର ବନ୍ଧନରୁ ମୁକ୍ତି ପାଇଁ କବି ବିଷ୍ଣୁ ଦେ ଯେପରି ତାଙ୍କ କବିତାରେ ସଂଗ୍ରାମର ସ୍ୱର ତୋଳିପାରିଛନ୍ତି । ଏହି ବିଶ୍ୱାସ ହିଁ ତାଙ୍କୁ ତୀକ୍ଷ୍ଣ

ବୌଦ୍ଧିକତା ଅପେକ୍ଷା ଗଣଜୀବନର ମୂଲ୍ୟବୋଧ ପ୍ରତି ବିଶେଷ ସଚେତନ କରାଇପାରିଛି । କିନ୍ତୁ ସୁଧୀନ୍ଦ୍ରନାଥ ଦତ୍ତଙ୍କ କବିତା ବୌଦ୍ଧିକଗୋଷ୍ଠୀ ଅନ୍ତର୍ଭୁକ୍ତ । ଠିକ୍ ସେହିପରି ପ୍ରେମେନ୍ଦ୍ର ମିତ୍ରଙ୍କ କବିତା ଗଣଧର୍ମୀ ନୁହେଁ ଏବଂ ଅମୀୟ ଚକ୍ରବର୍ତ୍ତୀଙ୍କ ରଚନା ଆଧ୍ୟାତ୍ମିକତାପୂର୍ଣ୍ଣ । ବୁଦ୍ଧଦେବଙ୍କ କବିତାରେ ପ୍ରେମ, ଯୌବନର ପ୍ରତିଛବି ଐଶ୍ୱର୍ଯ୍ୟପୂର୍ଣ୍ଣ ଭାଷାରେ ପ୍ରତିବିମ୍ବିତ । ଅପେକ୍ଷାକୃତ ବୟୋଜ୍ୟେଷ୍ଠ ଏହି କବିମାନଙ୍କ ଉତ୍ତରାଧିକାରୀ ଭାବରେ ବୀରେନ୍ଦ୍ର ଚଟ୍ଟୋପାଧ୍ୟାୟ, ସମର ସେନ୍, ଦୀନେଶ ଦାସ, କିରଣ ଶଙ୍କର ସେନ୍‌ଗୁପ୍ତ, ହରପ୍ରସାଦ ମିତ୍ର, ମନୀନ୍ଦ୍ର ରାୟ, ସୁଭାସ ମୁଖୋପାଧ୍ୟାୟ, ମଙ୍ଗଳା ଚରଣ ଚଟ୍ଟୋପାଧ୍ୟାୟ, ନୀରେନ୍ଦ୍ର ଚକ୍ରବର୍ତ୍ତୀ ପ୍ରଭୃତି ଆବିର୍ଭୂତ ହୋଇଥିଲେ ।

ସୁଭାସ ମୁଖୋପାଧ୍ୟାୟଙ୍କର ପ୍ରଥମ କବି ଜୀବନର କବିତାଠାରୁ ଆଧୁନିକ କାଳର କବିତା ସ୍ୱତନ୍ତ୍ର । ବୀରେନ୍ଦ୍ର ଚଟ୍ଟୋପାଧ୍ୟାୟଙ୍କ କବିତାରେ ରାଜନୈତିକ ବିଦ୍ରୋହ-ସ୍ୱର ବ୍ୟକ୍ତିଗତ ଜୀବନର ଯନ୍ତ୍ରଣା ଏବଂ ଜ୍ୱାଳାରେ ରୂପାନ୍ତରିତ ହୋଇପାରିଛି । ନୀରେନ୍ଦ୍ରନାଥ ସେହିପରି ତାଙ୍କ କବିତାରେ ଏକ ସ୍ୱତନ୍ତ୍ର ସ୍ୱର ଉତ୍ତୋଳନ କରିପାରିଛନ୍ତି । ମନୀନ୍ଦ୍ର ରାୟ ତାଙ୍କର କବିକୃତି 'ମୋହିନୀ ଅଡ଼ାଲ' ପାଇଁ ସାହିତ୍ୟ ଏକାଡ଼େମୀ ପୁରସ୍କାର ପ୍ରାପ୍ତ ହୋଇଛନ୍ତି । ଏହି ସ୍ରଷ୍ଟାମାନଙ୍କର କାବ୍ୟକବିତା ବାସ୍ତବଧର୍ମୀ ଏବଂ ଦୃଷ୍ଟିକୋଣ ସମ୍ପୂର୍ଣ୍ଣ ସମାଜଭିତ୍ତିକ । ବିଶେଷତଃ ସୁଭାସ ମୁଖୋପାଧ୍ୟାୟ ଏବଂ ବୀରେନ୍ଦ୍ର ଚଟ୍ଟୋପାଧ୍ୟାୟଙ୍କ କବିତାର ଯୋଗ୍ୟତା ହେଉଛି ତୀକ୍ଷ୍ଣ ସାମାଜିକ ବ୍ୟଙ୍ଗ ବିଦ୍ରୂପ, ଭାବ ଗାମ୍ଭୀର୍ଯ୍ୟ ଏବଂ ତନ୍ମୟତା ।

ଉପରୋକ୍ତ କବିମାନଙ୍କ ବ୍ୟତୀତ ଆଉ ତିନିଗୋଷ୍ଠୀର କବି ପରିଦୃଷ୍ଟ ହୋଇଛନ୍ତି । ଗୋଟିଏ ଗୋଷ୍ଠୀ ନିଜ ନିଜ କବିତାରେ 'ଜୀବନ ସଂଗ୍ରାମ'ର ବାର୍ତ୍ତା କାବ୍ୟିକ ପରିସୀମା ମଧ୍ୟରେ ପ୍ରତିଫଳିତ କରାଇଛନ୍ତି । ଆଉ ଗୋଟିଏ ଗୋଷ୍ଠୀ ସାଧାରଣ ପ୍ରଚଳିତ ସମାଜ ଓ ଜୀବନଧାରାରୁ ସଂପୂର୍ଣ୍ଣ ଦୂରେଇ ଯାଇଛନ୍ତି । ସେମାନେ ଆମେରିକାର ବିଟ୍‌ନିକମାନଙ୍କ ସହିତ ତୁଳନୀୟ । ତୃତୀୟ ଗୋଷ୍ଠୀ କବିତା ଆନ୍ଦୋଳନରେ କବିତାର ନୂତନ ଚିନ୍ତାକଳ୍ପ ପ୍ରବର୍ତ୍ତନ ପାଇଁ ଚେଷ୍ଟିତ । ପ୍ରଥମ ଗୋଷ୍ଠୀର କବି ଭାବରେ ରାମ ବସୁ, ଜଗନ୍ନାଥ ଚକ୍ରବର୍ତ୍ତୀ, ତରୁଣ ସାନ୍ୟାଲ, ଅମିତାଭ ଚଟ୍ଟୋପାଧ୍ୟାୟ, ମାନସ ରାୟ ଚୌଧୁରୀ, ଧନଞ୍ଜୟ ଦାସ, ସିଦ୍ଧେଶ୍ୱର ସେନ୍, କୃଷ୍ଣଧର, ଅମିତାଭ ଦାସଗୁପ୍ତ ପ୍ରମୁଖ ପରିଚିତ । ସେମାନଙ୍କ ମଧ୍ୟରୁ କେହି କେହି ସ୍ୱାଧୀନତା ପୂର୍ବରୁ କବିତା ଲେଖା ଆରମ୍ଭ କରିଥିଲେ । ବସ୍ତୁତଃ ସ୍ୱାଧୀନତା ପରବର୍ତ୍ତୀକାଳରୁ ସେମାନେ କବି ଭାବରେ ସ୍ୱୀକୃତି ଲାଭ କରିଛନ୍ତି । ଭାରତ ବିଭକ୍ତ ହେବା ସମୟରେ ରାମ ବସୁ କେବଳ ରାଜନୈତିକ କବିତା ରଚନା କରିଥିଲେ । ପରେ ତାଙ୍କ କବିତାରେ ପରଂପରା ଏବଂ କବିତାର

ମୌଳିକ ଉତ୍ସ ପ୍ରତି ଆଗ୍ରହ ପ୍ରକାଶ ପାଇଥିଲା । ରାମ ବସୁ ଜଣେ ଅନ୍ତଃଦୃଷ୍ଟି ମୁଖୀ କବି ବୋଲି ପରିଚିତ । ତରୁଣ ସାନ୍ୟାଲ ସ୍ୱାଧୀନତା ପରେ କବିତା ରଚନା ଆରମ୍ଭ କରନ୍ତି ଏବଂ ତାଙ୍କର ପ୍ରଥମ କବିତା ପୁସ୍ତକ 'ମାଟିର ବେହେଲା' ୧୯୬୫ରେ ପ୍ରକାଶିତ ହେଲା । ତାଙ୍କ କବିତାରେ ଭୌତିକ ଆସ୍ୱାଦନପୂର୍ଣ୍ଣ, ପରଂପରାର ଅର୍ଥଶୂନ୍ୟ ବନ୍ଧନରୁ ମୁକ୍ତ । ସେ ମାର୍କିଷ୍ଟ କବି । ତେଣୁ ତାଙ୍କର କବିତା ମାର୍କିଷ୍ଟ ଚିନ୍ତାଧାରାର ବହିଃପ୍ରକାଶ । କୃଷ୍ଣଧରଙ୍କ ୧୯୬୧ ମସିହାରେ କବିତା ପୁସ୍ତକରେ ନିର୍ଦ୍ଦିଷ୍ଟ କବିଦର୍ଶନ ପ୍ରତିଫଳିତ । ତାଙ୍କର ଭାବୋଚ୍ଛ୍ୱାସ ସମ୍ବଳିତ କବିତା ପାଠକ ମନର ନିର୍ଦ୍ଦିଷ୍ଟ ଚିତ୍ରକଳ୍ପ ଏବଂ ଦୃଶ୍ୟ ଅଙ୍କନ କରିବା ପାଇଁ ସମର୍ଥ । ତାଙ୍କର ପ୍ରଥମ କବିତାଗୁଡ଼ିକରେ ଏକପ୍ରକାର ଅନିଶ୍ଚିତତା ପ୍ରକାଶ ପାଇଥିଲା । ଜଗନ୍ନାଥ ଚକ୍ରବର୍ତ୍ତୀଙ୍କର କବିତାରେ ବୌଦ୍ଧିକତାର ତୀକ୍ଷ୍ଣ ରୂପ ପ୍ରତିଫଳିତ । ନିଜକୁ, କବିତାକୁ ସାଧାରଣ ଅର୍ଥ ପ୍ରଯୁକ୍ତ ରୀତିରୁ ମୁକ୍ତ କରିପାରିଛନ୍ତି ଏବଂ କଠିନ ଗଦ୍ୟପ୍ରୟୋଗ ଯୋଗୁଁ ତାଙ୍କର କବିତା ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ । ତାଙ୍କର ଲିଖିତ "ସରଲ୍ ରେଖାରଜନ୍ୟ" କବିତାଟିର କିୟଦଂଶ ଏଠାରେ ଉଦ୍ଧାର କରାଗଲା ।

"ସାମାନ୍ୟ ଏକଟା ସରଲ୍ ରେଖାର ଜନ୍ୟ ମାଥା ଖୁଁଡ଼ଛି ପାଚ୍ଛିନା
ପୃଥିବୀତେ କୋଥାଓ ଏକଟା ସରଲ୍ ରେଖା ନେଇ ।
ଆକାଶ ଅପରାଜିତା ନୀଲ, କିନ୍ତୁ ଗୋଲାକାର,
ଦିଗନ୍ତ ଓ ଚକ୍ରନେମି କ୍ରମ,
ନଦୀ ଆଁକାବାଁକା, ପାହାଡ଼ ଏବଡ଼ୋଖେବଡ଼ୋ,
ହ୍ରଦ ଖାପ୍ଛା, ଉପକୂଳ ବୁକେ ହାଁଟା ସରୀସୃପେର ମତୋ ଖାଁଜକାଟା,
କୁକୁରେର୍ ଲେଜ କୁଣ୍ଡଲୀ, ହରିଣେର ଶିଂ ଝାଂକମ୍
ଗୋରୁର୍ ଖୁର୍ ଦ୍ୱିଧା, ଆର୍ ଗ୍ରାଣ୍ଡ୍ ଟ୍ରାଂକ୍ ରୋଡ଼ ଉଧାଓ
କିନ୍ତୁ ଏଲୋମେଲୋ ।
ସୃଷ୍ଟିତେ ସରଲ୍ ରେଖା ବୋଧହୟ ଏଖନୋ ଜନ୍ମାୟନି ।"

ଆଧୁନିକ ଯୁଗର ଦ୍ୱିତୀୟ ଗୋଷ୍ଠୀ କବି 'କୃତ୍ତିବାସ' ଗୋଷ୍ଠୀ ନାମରେ ପରିଚିତ । 'କୃତ୍ତିବାସ'ର ସଂପାଦକୀୟ ସ୍ତମ୍ଭରେ ସେମାନଙ୍କ କବିତାର ଉଦ୍ଦେଶ୍ୟ ଏବଂ ଲକ୍ଷ୍ୟ ବେଶ୍ ପରିସ୍ଫୁଟ । ସେଥିରେ ସ୍ପଷ୍ଟ ଉଲ୍ଲେଖ ଅଛି—"କବିତାକୁ ବିଶୁଦ୍ଧ କଳାର ଏକ ଅଂଶ ବୋଲି ବିଚାର ନକରି କିମ୍ବା ଦୂରରୁ ଏହାକୁ ନିସ୍ପୃହ ସହିତ ପୂଜା ନକରି କୃତ୍ତିବାସ ଗୋଷ୍ଠୀର କବିମାନେ ଏହାକୁ ସେମାନଙ୍କ ଜୀବନର ନିତ୍ୟ-ନୈମିତିକ ଅଭ୍ୟାସ ସ୍ଥାନ, ଖାଦ୍ୟ ଆହରଣ ସଦୃଶ ଏକ ଅଂଶ ବୋଲି ବିଚାର କରନ୍ତି ।" ସେମାନେ ଯୁକ୍ତି କରନ୍ତି ଯେ ବ୍ୟକ୍ତିଗତ ଏବଂ ଗୋପନୀୟ ଅଭିଜ୍ଞତାହିଁ

କବିତାରେ ପ୍ରକାଶନ ଯୋଗ୍ୟ । ଏହି ଗୋଷ୍ଠୀର ସୁନୀଲ୍ ଗଙ୍ଗୋପାଧ୍ୟାୟ ଆମେରିକାର ବିଟ୍ନିକ୍ ମାନଙ୍କ ସଦୃଶ କବିତାର ରୁଚି ଏବଂ ଧାରାବିଶେଷ ପରିବର୍ତ୍ତନ କରିପାରି-ଛନ୍ତି । ତାଙ୍କ ସପକ୍ଷରେ ସମୀକ୍ଷକ କହନ୍ତି ଯେ—"ସେ ନିର୍ଲଜ୍ଜଭାବରେ ତାଙ୍କ କବିତାରେ ଯୌନଚିନ୍ତ ଅଙ୍କନ କରିପାରନ୍ତି ଏବଂ ତାଙ୍କ କବିତାରେ ରାଜନୀତିଠାରୁ ଜନରବ ସବୁକିଛି ସ୍ଥାନ ପାଇପାରେ । ତାଙ୍କ କବିତା ପାଠକଲେ ଜଣାଯାଏ କବି କେଉଁପରି ତରୁଣ ଅବସ୍ଥାରେ କବିତା ଲେଖୁଛନ୍ତି ।

ତାରାପଦ ରାୟଙ୍କର କବିତାରେ ଭାବ ଲଘବ, ସ୍ୱଚ୍ଛନ୍ଦତା ପ୍ରତିଫଳିତ । ତାଙ୍କର ଗୋଟିଏ କବିତାର ନାମ ହେଉଛି—"ବାଇ ସାଇକଲ, ଗଧ ଏବଂ ଲଣ୍ଡ୍ରି ବାଲ" । ଏହି କବିତାଟିରେ କବିର ବ୍ୟଙ୍ଗ ବିଦ୍ରୂପାତ୍ମକ ଦୃଷ୍ଟିକୋଣ ପରିଦୃଷ୍ଟ । ଶକ୍ତି ଚଟ୍ଟୋପାଧ୍ୟାୟ ମଧ୍ୟ ଜଣେ ପ୍ରତିଭାଶାଳୀ କବି । ଷଷ୍ଠ ଦଶକର ତରୁଣ କ୍ଷୁବ୍ଧ କବିମାନଙ୍କ ମଧ୍ୟରେ ସେ ବିପ୍ଳବୀ ରୂପେ ପରିଚିତ । କ୍ରମେ ସେ କୌଣସି କାବ୍ୟିକ ଆନ୍ଦୋଳନ ସହିତ ସଂପୃକ୍ତ ନ ହୋଇ ବର୍ତ୍ତମାନ ସ୍ୱାଧୀନ ଭାବରେ ଲେଖୁଛନ୍ତି । ତାଙ୍କ କବିତାର ପ୍ରତୀକାତ୍ମକତା, ଛନ୍ଦ ପ୍ରଯୋଗ, ଚିତ୍ରକଳ୍ପ ଉଲ୍ଲେଖଯୋଗ୍ୟ ।

ଆଧୁନିକ କବିମାନଙ୍କ ମଧ୍ୟରେ ତୃତୀୟ ଗୋଷ୍ଠୀର କବିହେଉଛନ୍ତି ଶଙ୍କର ଘୋଷ, ଅଲୋକ ସରକାର, ଅରବିନ୍ଦ ଗୁହ, ପ୍ରଣବେନ୍ଦୁ ଦାସଗୁପ୍ତ, ଅଲୋକରଞ୍ଜନ ଦାସଗୁପ୍ତ ଏବଂ ସମରେନ୍ଦ୍ର ସେନ୍‌ଗୁପ୍ତ ।

ଶଙ୍କର ଘୋଷଙ୍କର କବିତା ଏକ ନୂତନ ଏବଂ ବଳିଷ୍ଠ ଜୀବନ ଦର୍ଶନର ପ୍ରତିଧ୍ୱନି । ତାଙ୍କ କବିତାରେ ସାଙ୍ଗୀତିକ ଲାଳିତ୍ୟ ଏବଂ ସରଳ ପଦଯୋଜନା ସୁସ୍ପଷ୍ଟ ।

ଅଲୋକ ସରକାରଙ୍କ କବିତା ନୂତନ ପରୀକ୍ଷା ନିରୀକ୍ଷାଦ୍ୱାରା ଚିହ୍ନିତ । ଏହି ପରୀକ୍ଷା ଚିତ୍ରକଳ୍ପ, ପଦପ୍ରକରଣ ଏବଂ ପ୍ରତୀକମାନଙ୍କୁ ନେଇ ଉର୍ଦ୍ଧ୍ୱଷ୍ଟ ।

ଅଲୋକରଞ୍ଜନ ଦାଶଗୁପ୍ତଙ୍କ କବିତାରେ କେତେକ ଲକ୍ଷଣ ଉଲ୍ଲେଖ-ଯୋଗ୍ୟ । ସାଧାରଣତଃ ତାଙ୍କ କବିତା ରାବିନ୍ଦ୍ରିକ ଦର୍ଶନ ପ୍ରଭାବିତ । ବୌଦ୍ଧିକତା ଏବଂ ଆବେଗର ଅପୂର୍ବ ସମିଶ୍ରଣରେ କବି ବରାବର ଦାର୍ଶନିକ ପରିକଳ୍ପନାର ସାହାଯ୍ୟ ନେଇଛନ୍ତି । ପ୍ରଣବେନ୍ଦୁ ଦାସଗୁପ୍ତ ଆମେରିକାର ତରୁଣ କବିଗୋଷ୍ଠୀର ଚିନ୍ତାଧାରା ଦ୍ୱାରା ପ୍ରଭାବିତ ହେବାପରି ଜଣାଯାଏ । ତାଙ୍କର କାବ୍ୟିକ ପରିକଳ୍ପନାରେ ଶବ୍ଦ, ଚିତ୍ରକଳ୍ପ ସମ୍ବନ୍ଧୀୟ ବୈଶିଷ୍ଟ୍ୟ ସ୍ପଷ୍ଟ ।

ଆଙ୍ଗିକ ଦୃଷ୍ଟିରୁ ବଙ୍ଗଳା କବିତା କ୍ରମେ ପରୀକ୍ଷା ନିରୀକ୍ଷାର ବଶବର୍ତ୍ତୀ ହେଲା । ଷଷ୍ଠ ଦଶକରେ ବଙ୍ଗଳା କାବ୍ୟ କବିତାରେ ସ୍ୱରୂପ ଏବଂ ଧାରା ବହୁ ପରିମାଣରେ ପରିବର୍ତ୍ତିତ ହୋଇଥିଲା । ଏହି ଦୃଷ୍ଟିରେ ସୁନୀଲ ଗାଙ୍ଗୁଲି, ତୁଷାର

ରାୟ, ଶକ୍ତି ଚଟ୍ଟୋପାଧ୍ୟାୟ, ତାରାପଦ ରାୟ, ଶମ୍ଭୁ ରକ୍ଷିତ, ମଞ୍ଜୁ ମୁଦ୍ରାଫା ବଙ୍ଗଳା କାବ୍ୟ କବିତାରେ ନିଚ୍ଛକ ବାସ୍ତବଧର୍ମିତା ପ୍ରବର୍ତ୍ତନ କରିବାରେ ଦାୟୀ । ପୁନଶ୍ଚ ଶୈଳୀ ଓ ତତ୍ତ୍ୱଗତ ସ୍ୱାତନ୍ତ୍ର୍ୟ ଦୃଷ୍ଟିରେ ଡକ୍ଟର ଜଗନ୍ନାଥ ଚକ୍ରବର୍ତ୍ତୀ, ଆଶିସ ସାନ୍ୟାଲ ପ୍ରଭୃତି ଯୁବ କବିଙ୍କର କବିତା ସମ୍ଭାବନା ପରିପୂର୍ଣ୍ଣ । ସମାଜର ଆମୂଳଚୂଳ ପରିବର୍ତ୍ତନ ପାଇଁ ଅତ୍ୟାଧୁନିକ କବିମାନେ ସେମାନଙ୍କ କବିତାରେ ଉଗ୍ର ଜୀବନ ଦର୍ଶନ ଏବଂ ସମ୍ପୂର୍ଣ୍ଣ ନୂତନ ଆଭିମୁଖ୍ୟକୁ ପ୍ରଶ୍ରୟ ଦେଇଥାନ୍ତି । ଅତ୍ୟାଧୁନିକ ବଙ୍ଗଳା କବିତାରେ ଯେପରି ପ୍ରଚ୍ଛନ୍ନ ଇଙ୍ଗିତ ହେଉଛି ସମାଜଧର୍ମୀ ବାସ୍ତବବାଦ ।

ଅତ୍ୟାଧୁନିକ କବିମାନଙ୍କ ମଧ୍ୟରେ ସମସ୍ତ ପ୍ରଭେଦ ସତ୍ତ୍ୱେ ଏକ ବଳିଷ୍ଠ ଐକ୍ୟ ପରିଲକ୍ଷିତ ହୁଏ । ତାହା ହେଉଛି କବିମାନଂକର ସମାଜ ସଚେତନତା । ଅଧିକାଂଶ କବି ଜୀବନ, ସମାଜ ଏବଂ ଯୁଗର ଦାବିପ୍ରତି ସଚେତନ ।

କ୍ଷୁଦ୍ରଗଳ୍ପ

୧୮୮୪ ମସିହାରେ ରବୀନ୍ଦ୍ରନାଥଙ୍କର ଦୁଇଗୋଟି ବଙ୍ଗଳା କ୍ଷୁଦ୍ରଗଳ୍ପ ପ୍ରକାଶ ପାଇଥିଲା । ସେତେବେଳେ ବଙ୍ଗଳାର ସାମାଜିକ ଜୀବନରେ ଅସ୍ଥିରତା ଓ ବଙ୍ଗ ସାହିତ୍ୟରେ ବୈପ୍ଳବିକ ଆଭିମୁଖ୍ୟ ଦେଖା ଦେଇଥିଲା ।

ବିଂଶ ଶତାବ୍ଦୀର ପ୍ରାରମ୍ଭରେ କାଳ୍ପନିକ ରୋମାଣ୍ଟିସିଜମ୍‌ର ସୂଚନା ବଙ୍ଗଳା ସାହିତ୍ୟରେ ପ୍ରକାଶ ପାଇଥିଲା । ଏହା ବୈଦେଶିକ ପ୍ରଭାବ ହେତୁ ଘଟିଥିଲା ବୋଲି କୁହାଯାଇ ପାରେ । ଏହାର ମୂଳରେ ସାମାଜିକ ପ୍ରତିକ୍ରିୟା ମଧ୍ୟ ନିହିତ ଥିଲା । ରବୀନ୍ଦ୍ରନାଥଙ୍କ ରଚନା 'ସ୍ତ୍ରୀର ପତ୍ର' ଏବଂ 'ସବୁଜପତ୍ର'ର ଉଦ୍ୟୋକ୍ତା ପ୍ରମଥ ଚୌଧୁରୀଙ୍କର କେତେକ ରଚନା ବଙ୍ଗଳା କ୍ଷୁଦ୍ରଗଳ୍ପର ଆଦ୍ୟ-ସଂକେତ ବୋଲି କୁହାଯାଇପାରେ । ଫରାସୀ ଲେଖକ ମୋପାଁସାଙ୍କର କେତେକ କ୍ଷୁଦ୍ରଗଳ୍ପ ବଙ୍ଗଳାରେ ଅନୂଦିତ ହୋଇଥିଲା । କ୍ରମେ ସାମାଜିକ ପରିସ୍ଥିତି ଓ ସମାଜ-ବିପ୍ଳବ କ୍ଷୁଦ୍ରଗଳ୍ପର ବିକାଶକୁ ତ୍ୱରାନ୍ୱିତ କରି ଦେଇଥିଲା ।

୧୮୮୫ ମସିହାରେ ରବୀନ୍ଦ୍ରନାଥଙ୍କର ଦୁଇଗୋଟି ଗଦ୍ୟ କବିତା ପ୍ରକାଶିତ ହେଲା । ସେଥିରେ ମଧ୍ୟ କ୍ଷୁଦ୍ରଗଳ୍ପର ସୂଚନା ଦିଆଯାଇଥିଲା । ବିଭୂତିଭୂଷଣ ବନ୍ଦୋପାଧ୍ୟାୟଙ୍କର କେତେକ କ୍ଷୁଦ୍ର ରଚନା ଆଧୁନିକ କ୍ଷୁଦ୍ରଗଳ୍ପର ସଂକେତ ବହନ କରିଥିଲା । ତାଙ୍କ ଗଳ୍ପରେ ଗ୍ରାମ୍ୟ ଜୀବନର ସରଳ ଚିତ୍ର ସମବେଦନାପୂର୍ଣ୍ଣ ଭାଷାରେ ବର୍ଣ୍ଣିତ । ଶରତ୍‌ଚନ୍ଦ୍ର ଗୃଷ୍ଠାଙ୍କ ସେହିପରି ଗ୍ରାମ୍ୟ ଜୀବନକୁ କେନ୍ଦ୍ରକରି ଅନେକ ଗଳ୍ପ ଲେଖିଥିଲେ । ତାଙ୍କର ପ୍ରଥମ କ୍ଷୁଦ୍ରଗଳ୍ପ 'ମନ୍ଦିର' ପାଠକମାନଙ୍କ ଦ୍ୱାରା ବିଶେଷ ଭାବରେ ଆଦୃତ ହୋଇଥିଲା । ଗଳ୍ପର ନାୟକ ଜଣେ ବ୍ରାହ୍ମଣ ବାଳକ ଓ ନାୟିକା ଜଣେ ବିଧବା ତରୁଣୀ । ବାଳକ ମାଟିର ମୂର୍ତ୍ତି ତିଆରି

କରେ । ଏହି ଗଳ୍ପର ଗୁରୁତ୍ୱ ଓ କରୁଣ ଆବେଦନ ସେତେବେଳେ ସମସ୍ତଙ୍କୁ ଆକୃଷ୍ଟ କରିଥିଲା । ଶରତ୍ଚନ୍ଦ୍ରଙ୍କ ଗଳ୍ପରେ ଏହିପରି ପ୍ରତିକ୍ରିୟା ଓ ସାମାଜିକ ବୈପ୍ଳବିକ ସ୍ୱର ଶ୍ରୁତ ହେଲା । ତାଙ୍କର ଦ୍ୱିତୀୟ ରଚନା 'ବିନ୍ଦୁର ଛେଲେ' ମଧ୍ୟ ସେହିପରି ପ୍ରସିଦ୍ଧି ଅର୍ଜନ କରିଥିଲା । ରବୀନ୍ଦ୍ରନାଥଙ୍କ ପ୍ରଥମ ଗଳ୍ପ ଦୁଇଟିକୁ ଛାଡ଼ି ଦେଲେ ପରବର୍ତ୍ତୀ ଗଳ୍ପମାନଙ୍କରେ ଏକ ସ୍ୱପ୍ନପୁରର ପରିବେଶର ବର୍ଣ୍ଣନା ଦେଖିବାକୁ ମିଳେ । ତାଙ୍କର କ୍ଷୁଦ୍ରଗଳ୍ପରେ ରୋମାଣ୍ଟିସିଜମ୍ (Romanticism) ଓ କଳ୍ପନାର ଅପୂର୍ବ ସମନ୍ୱୟ ଦେଖିବାକୁ ମିଳେ । 'କ୍ଷୁଧିତ ପାଷାଣ' ଓ 'ଦୁରାଶା' ଏହି ଦୁଇଟି ଗଳ୍ପ ଏହାର ନିଦର୍ଶନ । ପ୍ରମଥ ଚୌଧୁରୀଙ୍କର ଗଳ୍ପ 'ଆହୁତି' (୧୯୧୬), ତାରାଶଙ୍କର ବନ୍ଦୋପାଧ୍ୟାୟଙ୍କର 'ଜଲ୍‌ସା ଘର', 'ରାଇକମଲ' ଜୁଏଲ୍', ୧୯୩୦ ଭିତରେ ଲିଖିତ ମନୋଜ ବସୁଙ୍କର କ୍ଷୁଦ୍ର କ୍ଷୁଦ୍ର କାନ୍ତିକାରି ଗଳ୍ପ ଅବିସ୍ମରଣୀୟ ସୃଷ୍ଟି ।

ପ୍ରମଥ ଚୌଧୁରୀଙ୍କ 'ନୀଲଲୋହିତ' ଗଳ୍ପମାଳା ବଙ୍ଗଳା କ୍ଷୁଦ୍ରଗଳ୍ପର ଆଉ ଏକ ରୂପ ଉଦ୍‌ଘାଟନ କରିଥିଲା । ପ୍ରାଚୀନ ଗଳ୍ପକୁ ଲେଖକ ଆଧୁନିକ ପରିବେଶରେ ବର୍ଣ୍ଣନା କରିଥିଲେ ।

ରାଜଶେଖର ବୋଷ୍ (ପର୍ଶୁରାମ) ବଙ୍ଗଳା କ୍ଷୁଦ୍ରଗଳ୍ପର ସଂସ୍କାର ପାଇଁ ଉଦ୍ୟମ କରିଥିଲେ । ପ୍ରଭାତ କୁମାର ମୁଖାର୍ଜୀଙ୍କର କ୍ଷୁଦ୍ରଗଳ୍ପ ଯଥାର୍ଥରେ ଭାବପ୍ରବଣ ଓ ଆବେଗଧର୍ମୀ । ତାଙ୍କର 'ଆଦରିଣୀ' ଗଳ୍ପରେ ଜନୈକ ଓକିଲଙ୍କର ଜୀବନ ସଂଗ୍ରାମର ଚିତ୍ର ଦେଖିବାକୁ ମିଳେ । ମଣୀନ୍ଦ୍ରଲାଲ ବସୁଙ୍କର 'ସୁକାନ୍ତ' ଗଳ୍ପ ଏକ ରୋଗଗ୍ରସ୍ତ ବୈଜ୍ଞାନିକର ବ୍ୟର୍ଥ ପ୍ରଣୟ କାହାଣୀ । ସୁକାନ୍ତ ପ୍ରଥମ ମହାଯୁଦ୍ଧ ପରେ ବଙ୍ଗଳା କ୍ଷୁଦ୍ରଗଳ୍ପ ସାହିତ୍ୟରେ ଏକ ପ୍ରତିନିଧି ସ୍ଥାନୀୟ ଚରିତ୍ର । ପ୍ରେମେନ୍ଦ୍ର ମିତ୍ରଙ୍କର 'ପୁନାମ' ଗଳ୍ପରେ ଗୋଟିଏ ଅସହାୟ ଶିଶୁର କରୁଣ ଜୀବନ କାହାଣୀ ବର୍ଣ୍ଣିତ । ବିମଳ ମିତ୍ର, ଯାହାଙ୍କ କ୍ଷୁଦ୍ରଗଳ୍ପ ୧୯୫୦ ମସିହା ପରେ ପ୍ରଶସ୍ତି ଲାଭ କରିଛି, ମଧ୍ୟବିତ୍ତ ଶ୍ରେଣୀର ଜୀବନ ବର୍ଣ୍ଣନା କରିଛନ୍ତି । ବନଫୁଲ୍ (ବଲାଇଚାନ୍ଦ୍) ସେହିପରି ଜଣେ ଶକ୍ତିଶାଳୀ କ୍ଷୁଦ୍ରଗଳ୍ପ ଲେଖକ । ତାଙ୍କର କ୍ଷୁଦ୍ରଗଳ୍ପ ତିଲୋତ୍ତମାରେ ଜନୈକ ଅସୁନ୍ଦରୀ ବାଳିକାର ମନଗହନର କଥା ସହାନୁଭୂତିର ସହିତ ଲେଖକ ବର୍ଣ୍ଣନା କରିଛନ୍ତି ।

ଉପରୋକ୍ତ ଲେଖକମାନଙ୍କର ଗଳ୍ପ ଯଥାର୍ଥରେ ମଣିଷ ହୃଦୟର କରୁଣ ଅଭିବ୍ୟକ୍ତି ବୋଲି କୁହାଯାଇ ପାରେ । ସେଥିରେ ମନସ୍ତତ୍ତ୍ୱ ମଧ୍ୟ ପ୍ରତିଫଳିତ ହୋଇଛି । ବ୍ୟକ୍ତିର ଜୀବନର ଅନ୍ତର୍ଦ୍ୱନ୍ଦ୍ୱ ଏହି ଗଳ୍ପ ମାନଙ୍କରେ ନିଖୁଣ ଭାବରେ ବର୍ଣ୍ଣିତ ହୋଇଥିଲା । ରବୀନ୍ଦ୍ରନାଥଙ୍କ 'କାବୁଲିବାଲା' ଏକ ସ୍ୱୟଂ ସମ୍ପୂର୍ଣ୍ଣ ପ୍ରତିନିଧି ସ୍ଥାନୀୟ ଗଳ୍ପ । ଗୁରୁ ବନ୍ଦୋପାଧ୍ୟାୟଙ୍କ 'ଚାଉଲିବାଲା' କ୍ଷୁଦ୍ରଗଳ୍ପରେ ତାଦୃଶ

ମାନବିକ ସଂପର୍କ ପ୍ରତିଫଳିତ । ରବୀନ୍ଦ୍ରନାଥଙ୍କର ଅନ୍ୟ ଏକ ଗଳ୍ପ ହେଉଛି 'ନଷ୍ଟ ନୀଡ଼' । ପ୍ରବୋଧ କୁମାର ସାନ୍ୟାଲ୍‌ଙ୍କର ଗଭୀର ଗଳ୍ପ ଗୋଟିଏ ଷ୍ଟେସନ୍‌ର ଓ୍ୱେଟିଂରୁମ୍‌କୁ କେନ୍ଦ୍ର କରି ଲେଖା ଯାଇଥିଲା । ଏହାର ନାୟିକା ଜଣେ ନବବିବାହିତା ଶିକ୍ଷିତା ଯୁବତୀ ଓ ନାୟକ ପ୍ଲାଟଫର୍ମର ଜଣେ toy ବିକାଳୀ । ବଙ୍ଗଳା କ୍ଷୁଦ୍ରଗଳ୍ପରେ 'ଦାସୀ' (Maid Servant) ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଛି । ବହୁ ପରିବାରରେ ତାହାର ଯେଉଁ ଭୂମିକା, ତାହା ଅଧିକାଂଶ ଗଳ୍ପ ଲେଖକଙ୍କୁ ଆକୃଷ୍ଟ କରିଛି । ଅମଲେନ୍ଦୁ ଚକ୍ରବର୍ତ୍ତୀଙ୍କ ଲେଖାରେ ଏହାର ବିଶେଷ ପ୍ରମାଣ ମିଳେ । ସେହିପରି ତରୁଣୀ ବିଧବା ବଙ୍ଗଳା କ୍ଷୁଦ୍ରଗଳ୍ପରେ ବିଶେଷ ଭାବରେ ବର୍ଣ୍ଣିତ ହୋଇଥାନ୍ତି । ବିଶେଷତଃ କଲ୍ଲୋଳ ଗୋଷ୍ଠୀର ଲେଖକଗଣ, ଅଚିନ୍ତ୍ୟ କୁମାର ସେନ୍‌ଗୁପ୍ତ ଓ ପ୍ରେମେନ୍ଦ୍ର ମିତ୍ରଙ୍କର ଗଳ୍ପରେ ଏତାଦୃଶ ସମସ୍ୟା ବରିବର ସ୍ଥାନ ପାଇଥାଏ । ପ୍ରେମେନ୍ଦ୍ର ମିତ୍ରଙ୍କର ଗୋଟିଏ ଗଳ୍ପରେ ଜନୈକ ବିଧବା ସ୍ୱାମୀର ପକେଟ୍‌ରେ ଗୋଟିଏ କର୍ଣ୍ଣେଇ ଦେଖି କିପରି ତାର ମାନସିକ ଅସ୍ଥିରତା ଦେଖା ଦେଇଛି, ତାହା ଦେଖିବାକୁ ମିଳେ । ବୈବାହିକ ସମ୍ପର୍କକୁ କେନ୍ଦ୍ର କରି ବହୁ ଗଳ୍ପ ଲିଖିତ ହୋଇଛି । ବୁଦ୍ଧଦେବ ବସୁ ଓ ଅନ୍ନଦାଶଙ୍କର ରାୟ ଏହି ଶ୍ରେଣୀର ଗଳ୍ପ ଲେଖକ । ଆଉ ଗୋଟିଏ ଗଳ୍ପ ହେଉଛି, 'ରାଣୀ ପ୍ରସନ୍ନ' । ପାରିବାରିକ ଜୀବନ, ବିଶେଷତଃ ଶିକ୍ଷିତା ଯୁବତୀ ମାନଙ୍କର ସମସ୍ୟା ଅଧିକାଂଶ ବଙ୍ଗଳା କ୍ଷୁଦ୍ରଗଳ୍ପମାନଙ୍କରେ ସ୍ଥାନ ପାଇଛି ।

ଏହି ଶତାବ୍ଦୀର ପ୍ରାରମ୍ଭରେ ଶାନ୍ତା ଓ ସୀତାଦେବୀ ଦୁଇ ଭଉଣୀ ଏହିପରି କେତେକ କ୍ଷୁଦ୍ରଗଳ୍ପ ଲେଖିଥିଲେ । ଆଶାପୂର୍ଣ୍ଣା ସିଂହ, ବାଣୀ ରାୟ ପ୍ରଭୃତି ସାଂପ୍ରତିକ ଯୁଗର ପ୍ରସିଦ୍ଧା କ୍ଷୁଦ୍ରଗଳ୍ପ-ଲେଖିକା ଅଟନ୍ତି । ଲୀଳା ମଜୁମ୍‌ଦାରଙ୍କ କ୍ଷୁଦ୍ରଗଳ୍ପରେ ପାରିବାରିକ ଜୀବନର ସହାନୁଭୂତିଶୀଳ ଚିତ୍ର ଦେଖିବାକୁ ମିଳେ । ଅମଲେନ୍ଦୁ ଚକ୍ରବର୍ତ୍ତୀଙ୍କର 'କାଞ୍ଚିବୋଉ' ଏକ ଶକ୍ତିଶାଳୀ କ୍ଷୁଦ୍ରଗଳ୍ପ । ଏହି ଗଳ୍ପରେ ଜନୈକ ଗ୍ରାମବାସୀ ଏକ ବଗିଚ୍ଛ ଘରେ ଆଶ୍ରୟ ନେଇଥିଲା । ସେଠାରେ ପଡ଼ୋଶୀର ସ୍ତ୍ରୀ ଆଗରୁ ଆସି ଦୈବାତ୍ ରହିଥିଲା । ଇତି ମଧ୍ୟରେ ଆଉ ଜଣେ ଗ୍ରାମବାସୀ ସେମାନଙ୍କୁ ଏକତ୍ର ଦେଖି ସନ୍ଦେହ କରିଥିଲା । ଏହାପରେ ସେହି ସ୍ତ୍ରୀ ତା'ର ସ୍ୱାମୀ ନିକଟରେ ଅବିଶ୍ୱାସିନୀ ବୋଲି ବିବେଚିତ ହୋଇଥିଲା ଓ ତା' ଜୀବନର କରୁଣ ପରିଣତି ଏବେ ଦେଖାଦେଲା ଏବଂ ସେହି ନିର୍ଦ୍ଦୋଷ ଗ୍ରାମବାସୀ ମଧ୍ୟ ଜେଲ୍ ଯାଇଥିଲା । ଜେଲ୍‌ରୁ ଫେରି ଦେଖିଲା, ଏହି ସଂସାରରେ ବିଶ୍ୱାସର ସ୍ଥାନ ନାହିଁ ଏବଂ ଏହି ଅମୂଳକ ସନ୍ଦେହ ବିରୁଦ୍ଧରେ ସେ ବିଦ୍ରୋହ କରିଥିଲା ।

ମାଣିକ ବନ୍ଦୋପାଧ୍ୟାୟଙ୍କର 'କୁଷ୍ଠର ଦଉ' ସାମାଜିକ ଅନ୍ୟାୟ ଓ ଦୁର୍ନୀତିର ନିଦର୍ଶନ । ସମାଜରେ ଯେପରି ଅତ୍ୟାଚାର ଓ ଶୋଷଣ ଲାଗି ରହିଛି,

ତା'ର ବିରୁଦ୍ଧରେ ଏହି ଗଳ୍ପଟି ଏକ ପ୍ରତିବାଦର ସ୍ୱର । ଯେଉଁମାନେ ସମାଜରେ ବଞ୍ଚିତ, ଅବହେଳିତ ଓ ଅତ୍ୟାଚରିତ, ସେମାନଙ୍କ ପ୍ରତି ସହାନୁଭୂତି ପ୍ରଦର୍ଶନ କରି କଲ୍ଲୋଳଗୋଷ୍ଠୀର ଲେଖକମାନେ, ବିଶେଷତଃ ସ୍ୱାଧୀନତା ପରବର୍ତ୍ତୀ ଯୁଗର ଲେଖକମାନେ କ୍ଷୁଦ୍ରଗଳ୍ପ ଲେଖୁଛନ୍ତି । 'କଲ୍ଲୋଳଯୁଗ' ଯଥାର୍ଥରେ ବଙ୍ଗଳା କ୍ଷୁଦ୍ର-ଗଳ୍ପର ସଂପ୍ରସାରଣ ପାଇଁ ଦାୟୀ ହୋଇଥିଲା । ଏହି ଗୋଷ୍ଠୀ ସହିତ ଶୈଳଜାନନ୍ଦ ମୁଖାର୍ଜି, ପ୍ରେମେନ୍ଦ୍ର ମିତ୍ର, ଅଚିନ୍ତ୍ୟ କୁମାର ସେନଗୁପ୍ତ, ବୁଦ୍ଧଦେବ ବସୁ ଓ ଅନ୍ନଦାଶଙ୍କର ରାୟ ପ୍ରଭୃତି ସଂପୃକ୍ତ ଥିଲେ । ସମାଜ ତଥା ବ୍ୟକ୍ତିଗତ ଜୀବନର ଅନୁଭୂତି ସେମାନଙ୍କ ଗଳ୍ପରେ ପ୍ରତିଫଳିତ ହୋଇଥିଲା । ମନୀଷ ଘଟକ ମଧ୍ୟ ଏହି ଗୋଷ୍ଠୀ ଅନ୍ତର୍ଭୁକ୍ତ ଲେଖକ । ଅନ୍ନଦାଶଙ୍କର ରାୟ ଓ ବୁଦ୍ଧଦେବ ବସୁଙ୍କର କ୍ଷୁଦ୍ରଗଳ୍ପରେ ବୌଦ୍ଧିକ ଚେତନାର ପରୀକ୍ଷା-ନିରୀକ୍ଷା ପାଇଁ ସାହସ ପରିଦୃଷ୍ଟ ହୁଏ । କଲ୍ଲୋଳ ଗୋଷ୍ଠୀର କ୍ଷୁଦ୍ରଗଳ୍ପ ବଙ୍ଗଳା ଗଳ୍ପକଳାର ଯୁଗାନ୍ତର ଆଣିଥିଲା । ସେମାନଙ୍କର ପ୍ରେରଣା ଓ ପ୍ରଭାବ କ୍ଷୁଦ୍ରଗଳ୍ପର ଆଙ୍ଗିକକୁ ବହୁଭାବରେ ରୂପାନ୍ତରିତ କଲା । ତାରାଶଙ୍କର ବାନାର୍ଜି, ମାଣିକ ବନ୍ଦୋପାଧ୍ୟାୟ ଓ ବିଭୂତି ଭୂଷଣ ବନ୍ଦୋପାଧ୍ୟାୟ ମଧ୍ୟ ପ୍ରଖ୍ୟାତ କଥାଶିଳ୍ପୀ । ସେମାନଙ୍କ ଗଳ୍ପରେ ସାମାଜିକ ବ୍ୟଙ୍ଗବିଦ୍ରୂପ ବେଶି ସ୍ଥାନ ପାଇଥିଲା । ବଳାଇଚାନ୍ଦ ମୁଖାର୍ଜି ଓ ରାଜଶେଖର ବସୁ ମଧ୍ୟ ବଙ୍ଗଳା କ୍ଷୁଦ୍ରଗଳ୍ପକୁ ସମୃଦ୍ଧ କରିଛନ୍ତି । କ୍ଷୁଦ୍ରଗଳ୍ପରେ ଏକ ନୂତନ ଦିଗନ୍ତ ଉଦ୍‌ଘାଟନ କରିବା ଏମାନଙ୍କର ଥିଲା ପ୍ରଧାନ ଲକ୍ଷ୍ୟ ।

ସମସାମୟିକ ଗଳ୍ପଲେଖକମାନଙ୍କ ମଧ୍ୟରେ ଶରଦେନ୍ଦୁ ବାନାର୍ଜି, ନରେଶ ସେନଗୁପ୍ତ, ବିଭୂତିଭୂଷଣ ମୁଖାର୍ଜି, ମନୋଜ ଲଲ ବୋଷ୍, ଶରତକୁମାର ରାୟଚୌଧୁରୀ, ଆଶାପୂର୍ଣ୍ଣା ଦେବୀ, ଶାନ୍ତାଦେବୀ, ଉପେନ୍ଦ୍ର-ନାଥ ଗାଙ୍ଗୁଲି, ପ୍ରବୋଧ କୁମାର ସାନ୍ୟାଲ ପ୍ରଭୃତିଙ୍କର ନାମ ବିଶେଷ ଉଲ୍ଲେଖଯୋଗ୍ୟ । ଏମାନଙ୍କ କ୍ଷୁଦ୍ରଗଳ୍ପରେ ମଧ୍ୟଯୁଗୀୟ ସମାଜର ମୂଲ୍ୟବୋଧ ପରିବର୍ତ୍ତିତ ହୋଇଥିଲା । ବାସ୍ତବବାଦ ଏମାନଙ୍କ କ୍ଷୁଦ୍ରଗଳ୍ପରେ ସ୍ଥାନ ପାଇଥିଲା । କ୍ଷୁଦ୍ରଗଳ୍ପରେ ଆଧୁନିକତା ଅନେକ ପରିମାଣରେ ଆଙ୍ଗିକର ପରୀକ୍ଷାନିରୀକ୍ଷା ଉପରେ ନିର୍ଭର କଲା । ମଧ୍ୟବିତ୍ତ ବଙ୍ଗଳା ପରିବାରର ଚିତ୍ର ଅଧିକାଂଶ ଗଳ୍ପ ଲେଖକଙ୍କୁ ଆକୃଷ୍ଟ କରିଥିଲା । ବିଂଶ ଶତାବ୍ଦୀର ପ୍ରାରମ୍ଭରେ ବହୁଦିନ ଧରି କ୍ଷୁଦ୍ରଗଳ୍ପ ଏକ ପ୍ରାଚୀନ ମୂଲ୍ୟବୋଧ ଉପରେ ନିର୍ଭର କରିଥିଲା । କ୍ରମଶଃ ୧୯୪୦ ମସିହା ବେଳକୁ ବଙ୍ଗଳା କ୍ଷୁଦ୍ରଗଳ୍ପର ସ୍ୱରୂପ ଅଧିକ ପରିବର୍ତ୍ତିତ ହୋଇଗଲା । ପୃଥିବୀ ମହାଯୁଦ୍ଧ, ଭାରତଛାଡ଼ ଆନ୍ଦୋଳନ, ଦୁର୍ଭିକ୍ଷ, ସାଂପ୍ରଦାୟିକ ସଂଘର୍ଷ, ବଙ୍ଗବିଚ୍ଛେଦ, ଶରଣାର୍ଥୀ ସମସ୍ୟା ବଙ୍ଗଳା ସାହିତ୍ୟରେ ଏକ ବାସ୍ତବବାଦୀ ଲେଖକ ଗୋଷ୍ଠୀ ସୃଷ୍ଟି କରିଥିଲା । ବିମଲ ମିତ୍ରଙ୍କର 'ଅମୀର ଓ ଉର୍ବଶୀ' କ୍ଷୁଦ୍ରଗଳ୍ପ

ରାଜ୍ୟରେ ଏକ ବୈଚିତ୍ର୍ୟପୂର୍ଣ୍ଣ ସୃଷ୍ଟି । ସେହିପରି ନାରାୟଣ ଗାଙ୍ଗୁଲିଙ୍କର 'ଦ୍ରୌପଦୀ' ଗଳ୍ପ ପୁରାଣ ଭିତ୍ତିକ ହେଲେହେଁ ସମସାମୟିକ ସାମାଜିକ ଶୋଷଣ ଓ ଅତ୍ୟାଚାରର ପ୍ରତୀକ ରୂପେ ଗୃହୀତ ହୁଏ । ସେହିପରି ସମରେଶ ବୋଷଙ୍କର 'ଅକାଳବସନ୍ତ' ଗଳ୍ପ ସାମାଜିକ ପରିପ୍ରେକ୍ଷୀରେ ଏକ ସ୍ନିଗ୍ଧ ଫେରନ୍ତା ଯୁବକର ଚିତ୍ର ପ୍ରଦାନ କରିଅଛି । ବିମଲ ମିତ୍ର, ହରିନାରାୟଣ ଚଟ୍ଟୋପାଧ୍ୟାୟ, ତାରାଶଙ୍କର ବନ୍ଦୋପାଧ୍ୟାୟ, ସୁବୋଧ ଘୋଷ, ସତୀନାଥ ଭାଦୁଡ଼ୀ, ଜ୍ୟୋତିନ୍ଦ୍ର ନନ୍ଦୀ, ନବେନ୍ଦ୍ର ଘୋଷ, ସମରେଶ ବୋଷ୍, ନରେନ୍ଦ୍ର ନାଥ ମିତ୍ର, ନାରାୟଣ ଗାଙ୍ଗୁଲି, ବାଣୀରାୟ, ସନ୍ତୋଷ ନନ୍ଦୀ, ବିମଲ କର, ରମାପଦ ଚୌଧୁରୀ, ସୁଶୀଲ ରାୟ--ଏମାନେ ହେଉଛନ୍ତି, ଆଧୁନିକ ବଙ୍ଗଳା କ୍ଷୁଦ୍ରଗଳ୍ପର ବିକାଶରେ ଦ୍ୱିତୀୟ ପର୍ଯ୍ୟାୟର ଶକ୍ତିଶାଳୀ ଲେଖକ । ସୁଧୀର ରଞ୍ଜନ ମୁଖାର୍ଜି ଓ ନିରଞ୍ଜନ ମଜୁମ୍‌ଦାରଙ୍କ ଗଳ୍ପରେ ନୂତନ ରୋମାଞ୍ଚ ବା ନୂତନ Romanticism ପ୍ରକଟିତ । ସ୍ୱାଧୀନତା ପରବର୍ତ୍ତୀ ବଙ୍ଗଳା କ୍ଷୁଦ୍ରଗଳ୍ପରେ ପରମ୍ପରା ବିରୋଧ ବିଶେଷ ଦେଖାଯାଏ । ସମାଜ ଯେପରି ବିପ୍ଳବର ସମ୍ମୁଖୀନ ହେଉଅଛି, ସାହିତ୍ୟର ବିଭିନ୍ନ ବିଭାଗରେ ତାହାର ପ୍ରତିକ୍ରିୟା ଦେଖାଯିବା ସ୍ୱାଭାବିକ । କଲ୍ଲୋଲ ଗୋଷ୍ଠୀର ଲେଖକମାନେ ଏ ପର୍ଯ୍ୟନ୍ତ ଲେଖନୀଚାଳନା କରୁଛନ୍ତି ଏବଂ ସେମାନଙ୍କ ମଧ୍ୟରୁ କେତେଜଣ ସମୟର ଗତି ଦୃଷ୍ଟିରୁ କ୍ଷୁଦ୍ରଗଳ୍ପର ଆଙ୍ଗିକ ପରିବର୍ତ୍ତନ କରାଉଛନ୍ତି । ସେମାନଙ୍କ ନୂତନ ସୃଷ୍ଟି ପିପାସା ବଙ୍ଗଳା ସାହିତ୍ୟକୁ ଜୀବନ୍ତ ଓ ସତେଜ କରି ପାରିଛି ।

୧୯୫୦ ମସିହା ବେଳକୁ ବଙ୍ଗଳା କ୍ଷୁଦ୍ରଗଳ୍ପ କେତେଜଣ ବିଶ୍ୱବିଦ୍ୟାଳୟ ଶିକ୍ଷାପ୍ରାପ୍ତ ଯୁବକ ଓ ଲେଖକଙ୍କ ଲେଖନୀରେ ବିଦ୍ରୋହ ଓ ବିପ୍ଳବର ସମ୍ମୁଖୀନ ହେଲା । ଉଚାଙ୍ଗ ମୌଳିକ କ୍ଷୁଦ୍ରଗଳ୍ପ ସେମାନଙ୍କର ଦାନ । ରାଜନୈତିକ ଓ ସାମାଜିକ ପ୍ରତିକ୍ରିୟାର ଅପୂର୍ବ ପ୍ରଭାବ ସେମାନଙ୍କ କ୍ଷୁଦ୍ରଗଳ୍ପରେ ଦେଖିବାକୁ ମିଳିଲା । ଗୋଷ୍ଠୀଗତ ଉଦ୍ୟମ ବ୍ୟତୀତ ବ୍ୟକ୍ତିଗତ ଭାବରେ ମଧ୍ୟ କେତେଜଣ ଲେଖକ କ୍ଷୁଦ୍ରଗଳ୍ପର ବିକାଶ ପାଇଁ ଉଦ୍ୟମ କରିଥିଲେ । ଅତ୍ୟାଧୁନିକ ବଙ୍ଗଳା କ୍ଷୁଦ୍ରଗଳ୍ପର ଲେଖକଙ୍କ ମଧ୍ୟରୁ ଅନେକ କବି ମଧ୍ୟ ଥିଲେ । ତେଣୁ ସେମାନଙ୍କ କ୍ଷୁଦ୍ରଗଳ୍ପର ଭାଷା ଓ ଶୈଳୀ ଅନେକ ପରିମାଣରେ କାବ୍ୟକୁ ଅନୁସରଣ କରିଅଛି । ୧୯୫୦ ମସିହା ପରେ ବଙ୍ଗଳା କ୍ଷୁଦ୍ରଗଳ୍ପ ଲେଖକଙ୍କ ଦୃଷ୍ଟିକୋଣ ଆହୁରି ସଂପ୍ରସାରିତ ହୋଇଗଲା । ସେମାନେ ପୂର୍ବଯୁଗର କ୍ଷୁଦ୍ରଗଳ୍ପ ଠାରୁ ନିଜର କ୍ଷୁଦ୍ରଗଳ୍ପକୁ ବ୍ୟକ୍ତିଗତ ସ୍ୱାତନ୍ତ୍ର୍ୟ ବଳରେ ସଂପୂର୍ଣ୍ଣ ସ୍ୱତନ୍ତ୍ର କରିପାରିଥିଲେ ।

ସୁନୀଲ ଗାଙ୍ଗୁଲିଙ୍କର 'ଖିଦେ' ଶୀର୍ଷକ କ୍ଷୁଦ୍ରଗଳ୍ପର ମନସ୍ତାତ୍ତ୍ୱିକ ଅଧ୍ୟୟନ ଆଧୁନିକ କ୍ଷୁଦ୍ରଗଳ୍ପ ବିରୁଦ୍ଧରେ ଅଶ୍ଳୀଳତାର ଅଭିଯୋଗ ଆଣିଥାଏ । ମାତ୍ର ଏ ଅଭିଯୋଗ ଅମୂଳକ । ବରଂ, ସମାଜର ପରିପ୍ରେକ୍ଷୀରେ ଆଧୁନିକ ଗଳ୍ପକାର

କେତେକ ପରିମାଣରେ ଅଶ୍ଳୀଳତାକୁ ପ୍ରଶ୍ରୟ ଦେଇଛି । ଭାଷାଗତ ଜଟିଳତା କିମ୍ବା ଦୁର୍ବୋଧ୍ୟତା ମଧ୍ୟ ଆଧୁନିକ କ୍ଷୁଦ୍ରଗଳ୍ପର ଏକ ଲକ୍ଷଣ । କମଳ ମଜୁମ୍ଦାରଙ୍କ ଗଳ୍ପରେ ଅତ୍ୟାଧୁନିକ ରୂପକଳ୍ପ ଉପମାବୈଚିତ୍ର୍ୟ ପ୍ରତିଫଳିତ । ଆଧୁନିକ ଲେଖକମାନେ ନୂତନ ଆଙ୍ଗିକର ବିଶେଷ ପକ୍ଷପାତୀ । ତ୍ରୈଲୋକ୍ୟନାଥ ମୁଖାର୍ଜୀଙ୍କର ଗଳ୍ପସଂକଳନ 'ଡମାରୁ ଚରିତ', ମନୀଷ ଘଟକଙ୍କର ଗଳ୍ପସଂକଳନ 'ପାଟୋଲ ଡଙ୍ଗାର ପାଞ୍ଚାଳୀ', ତାରାଶଙ୍କର ବାନାର୍ଜୀଙ୍କର 'ନାଗ ଓ ନାଗିଣୀ', ମାଣିକ୍ ବାନାର୍ଜୀଙ୍କର 'ମହାକାଳେର ଯନ୍ତାସ୍ତ', ସୁବୋଧ ଘୋଷଙ୍କର 'ଫସିଲ୍', ନରେନ୍ ମିତ୍ରଙ୍କର 'ରସ' ଅତ୍ୟାଧୁନିକ କ୍ଷୁଦ୍ରଗଳ୍ପର ପରିବର୍ତ୍ତିତ ସଂଜ୍ଞା ଓ ସ୍ୱରୂପର ପ୍ରମାଣ ଦିଏ । ଗତ ୪୦ ବର୍ଷ ଧରି ବଙ୍ଗଳା କ୍ଷୁଦ୍ରଗଳ୍ପରେ ଯେଉଁ ନୂତନ ପରୀକ୍ଷା-ନିରୀକ୍ଷା ଚାଲିଛି, ତାହା ୧୯୫୦ ମସିହା ପରେ ଆହୁରି ତୀବ୍ର ହୋଇଥିଲା । କ୍ରମଶଃ ଆଧୁନିକ କ୍ଷୁଦ୍ରଗଳ୍ପରେ ଭବିଷ୍ୟତ ମଣିଷର ପଦଧ୍ୱନି ଯେପରି ଶୁଣାଯାଇଥିଲା । ୧୯୫୦ ମସିହା ପରବର୍ତ୍ତୀ ଗଳ୍ପ ଲେଖକମାନେ ଗାମ୍ଭୀର୍ଯ୍ୟ, ବୈଚିତ୍ର୍ୟ ଓ ଜଟିଳତା ପ୍ରଭୃତି ସେମାନଙ୍କ କ୍ଷୁଦ୍ରଗଳ୍ପରେ ପ୍ରବେଶ କରାଇଥିଲେ । କ୍ଷୁଦ୍ରଗଳ୍ପର Structure ବା ଗଠନକଳା ସେମାନଙ୍କୁ ଯେପରି ଏକ ଆହ୍ୱାନ ଦେଇଥିଲା । ଦେବେଶ୍ ରାୟଙ୍କର ଗଳ୍ପ 'ଦୁ ଫଲ୍' ପରିବର୍ତ୍ତିତ ପରିପ୍ରେକ୍ଷୀରେ ଏକ ଅସାଧାରଣ କ୍ଷୁଦ୍ରଗଳ୍ପ । ଆଧୁନିକ ଚେତନାର ସମନ୍ୱୟ ସାଧନ କରିବା ପାଇଁ ଯେପରି ପ୍ରାଚୀନ ଉପାଖ୍ୟାନ ଓ ବୃତ୍ତାନ୍ତ କ୍ଷୁଦ୍ର-ଗଳ୍ପରେ ବ୍ୟବହୃତ ହୋଇଥିଲା । ଅମିୟଭୂଷଣ ମଜୁମ୍ଦାରଙ୍କ କ୍ଷୁଦ୍ରଗଳ୍ପ ଏ ପ୍ରସଙ୍ଗରେ ଉଲ୍ଲେଖଯୋଗ୍ୟ ।

ଅତ୍ୟାଧୁନିକ ଗଳ୍ପମାନଙ୍କରେ ଗଠନଗତ ସୌନ୍ଦର୍ଯ୍ୟ ତଥା ଆଙ୍ଗିକ ସୌନ୍ଦର୍ଯ୍ୟ ମାଧ୍ୟମରେ ଶିଳ୍ପୀପ୍ରାଣର ଏକ ନୈର୍ବ୍ୟକ୍ତିକବୋଧ ପ୍ରତିଫଳିତ ହେଉଅଛି । ଇତିହାସ ଓ ପରମ୍ପରା ପରିବର୍ତ୍ତେ ଆଧୁନିକ ଚେତନାର ପ୍ରଭାବରୁ ଗଳ୍ପମାନଙ୍କରେ ଏ ଭାବ ସାମାଜିକତା ପରିଦୃଷ୍ଟ ହୋଇଥାଏ । ସାହିତ୍ୟିକ ବିବର୍ତ୍ତନ ସ୍ୱରୂପ କ୍ଷୁଦ୍ରଗଳ୍ପର ବିଶେଷ ସଂସ୍କାର ସାଧିତ ହେଉଅଛି । ଯାହା କିଛି ପ୍ରାଚୀନ ଓ ବୈଚିତ୍ର୍ୟହୀନ, ତାହା ବିରୋଧରେ ଆହ୍ୱାନ ଦେବା ପାଇଁ ଆଜି କ୍ଷୁଦ୍ରଗଳ୍ପ ଯେପରି ଏକ ମାଧ୍ୟମ ରୂପେ ବିବେଚିତ ହୋଇଛି । 'କଲ୍ଲୋଳ ଗୋଷ୍ଠୀର' ଯେଉଁ ଆତ୍ମମୁଖ୍ୟ, ତାହା ମଧ୍ୟ ଆହ୍ୱାନର ସମ୍ମୁଖୀନ ହେଲା । ଯେଉଁ ନୂତନ ଲେଖକମାନେ ଏହି ଆହ୍ୱାନ ଦେଇଥିଲେ, ସେମାନେ ହେଉଚନ୍ତି, ସଂଦୀପନ୍ ଚଟ୍ଟୋପାଧ୍ୟାୟ, ଦେବେଶ୍ ରାୟ, ମୋତି ନନ୍ଦୀ, ଶଙ୍କର ଚଟ୍ଟୋପାଧ୍ୟାୟ, ସମରଜିତ୍ ବାନାର୍ଜୀ, ପୂର୍ଣ୍ଣେନ୍ଦୁ ନନ୍ଦୀ ଓ ବିମଲକର । କେତେକଜଣ ପ୍ରାକ୍ତନ ଲେଖକ ମଧ୍ୟ ଏମାନଙ୍କ କ୍ଷୁଦ୍ରଗଳ୍ପର ଆଦର୍ଶକୁ ଗ୍ରହଣ କରିଥିଲେ । ଏହି ଲେଖକମାନେ ହେଲେ, ଅନ୍ନଦାଶଙ୍କର ରାୟ ଓ ରାଜଶେଖର

ଘୋଷ ପ୍ରଭୃତି । ସଂଦୀପନ୍ ଚ୍ୟାଟାର୍ଜୀଙ୍କର 'ମୀରାବାଈ', ଦେବେଶ ରାୟଙ୍କର 'ପା', ମୋତି ନନ୍ଦୀଙ୍କର 'ବେହୁଲାର୍ ଭେଲା', ଶଙ୍କର ଚ୍ୟାଟାର୍ଜୀଙ୍କର 'ଯୌବନ', ସମରଜିତ୍ ବାନାର୍ଜୀଙ୍କର 'ଜାଲପୋକ', ଜ୍ୟୋତିନ୍ଦ୍ର ନନ୍ଦୀଙ୍କର 'ଗିର୍‌ଗିଟ୍', ବିମଲ କରଙ୍କର 'ଆତ୍ମଜା' ପ୍ରଭୃତି ଗଳ୍ପରେ ଗତ କୋଡ଼ିଏ ବର୍ଷର ସାମାଜିକ ଓ ଶୈଳ୍ପିକ ଅଭିମୁଖ୍ୟ ଦେଖିବାକୁ ମିଳେ । ଏହି ନୂତନ ଲେଖକମାନଙ୍କ ମଧ୍ୟରେ ଦ୍ଵିପେନ୍ଦ୍ର ନାଥ ବାନାର୍ଜୀଙ୍କର 'ଅଶ୍ୱମେଧର ଘୋଡ଼ା', ସାନ୍ଦୀପନ୍ ଚ୍ୟାଟାର୍ଜୀଙ୍କର 'କ୍ରୀତଦାସ ଓ କ୍ରୀତଦାସୀ', ବିମଲ କରଙ୍କ ସମ୍ପାଦିତ 'ଏଗାରଜଣଙ୍କର ଗଳ୍ପ' ଆଧୁନିକ କ୍ଷୁଦ୍ର ଗଳ୍ପ ରାଜ୍ୟରେ ଗୋଟିଏ ଗୋଟିଏ ସୋପାନ । ବୟୋଜ୍ୟେଷ୍ଠ ଲେଖକମାନେ ମଧ୍ୟ କେତେକ ଗଳ୍ପ ସଂକଳନ ଏହି ଗତ ଦଶବର୍ଷ ମଧ୍ୟରେ ପ୍ରକାଶ କରିଛନ୍ତି । ରବୀନ୍ଦ୍ରନାଥଙ୍କର 'ନଷ୍ଟନୀଡ଼' ଶରତ୍‌ଚନ୍ଦ୍ରଙ୍କର 'ମହେଶ୍', ତାରାଶଙ୍କରଙ୍କର 'ଡାଇନୀ', ପ୍ରେମେନ୍ଦ୍ର ମିତ୍ରଙ୍କର 'ତେଲେନା ପୋତା ଆବିଷ୍କାର' ଗଳ୍ପଗୁଡ଼ିକ ଶିଳ୍ପମୂଲ୍ୟ ଦୃଷ୍ଟିରୁ ଅତୁଳନୀୟ ।

ପରବର୍ତ୍ତୀ କାଳରେ ଯେଉଁମାନେ କ୍ଷୁଦ୍ର ଗଳ୍ପ ଲେଖି ଗୌରବ ଅର୍ଜନ କରିଥିଲେ, ସେମାନେ ହେଲେ ସାନ୍ଦୀପନ ଚଟ୍ଟୋପାଧ୍ୟାୟ, ଦ୍ଵିପେନ୍ଦ୍ରନାଥ ବନ୍ଦୋପାଧ୍ୟାୟ, ଦେବେଶ ରାୟ, ପ୍ରଫୁଲ୍ଲ ରାୟ, ବରେନ୍ ଗଙ୍ଗୋପାଧ୍ୟାୟ, ଶ୍ୟାମଲ ଗଙ୍ଗୋପାଧ୍ୟାୟ, ସମୀର ଚଟ୍ଟୋପାଧ୍ୟାୟ, ପ୍ରଳୟ ସେନ୍, ରମାନାଥ ରାୟ, ବଲରାମ ବସାକ୍, ମତି ନନ୍ଦୀ ପ୍ରମୁଖ । ସେମାନଙ୍କ ଗଳ୍ପ ଆଧୁନିକ ଜୀବନର ସାମାଜିକ ଜଟିଳତା, ଦୁର୍ବହତା, ମଧ୍ୟବିତ୍ତ ପରିବାରର ଶୋଚନୀୟତାକୁ ଭିତ୍ତିକରି ଲିଖିତ । ପୁନଶ୍ଚ ଆଂଶିକ ପରୀକ୍ଷା ନିରୀକ୍ଷାଗତ ପ୍ରୟାସ ଏ ପ୍ରତିକ ଯୁଗର ଅଧିକାଂଶ ଗଳ୍ପର ମୂଳ ହେତୁ ।

ଆଧୁନିକ ଗଳ୍ପ ପ୍ରତି ପାଠକମାନେ ମଧ୍ୟ ବିଶେଷ ଦରଦ ଓ ସହାନୁଭୂତି ପ୍ରକାଶ କରିଥାଆନ୍ତି । କ୍ରମଶଃ ବଙ୍ଗଳା କ୍ଷୁଦ୍ର ଗଳ୍ପରେ କ୍ଷୟିଷ୍ଣୁ ସମାଜର କରୁଣ ଚିତ୍ର ସହିତ ବିପ୍ଳବୀ ମଣିଷ ମନର ସ୍ୱରୂପ ଏକାନ୍ତ ଦେଖିବାକୁ ମିଳେ । ରାଜନୈତିକ ଓ ସାମାଜିକ ଚେତନା ଉପରେ ନିର୍ଭର କରି ବହୁ ଗଳ୍ପ ଲେଖକ ପ୍ରତିଦିନ ନୂତନ ନୂତନ ଗଳ୍ପ ସୃଷ୍ଟି କରିବାରେ ଆଗ୍ରହୀ । ସଂକ୍ଷେପରେ କହିବାକୁ ଗଲେ, ବଙ୍ଗଳା ସାହିତ୍ୟର ଆଧୁନିକ କ୍ଷୁଦ୍ର ଗଳ୍ପ ବିଭାଗଟି ବହୁ ପ୍ରାଚୀନ ଓ ନବୀନ କଥାଶିଳ୍ପୀଙ୍କ ଯତ୍ନରେ ବୃଦ୍ଧିମନ୍ତ ହୋଇପାରିଛି ।

**ଉପନ୍ୟାସ:**—ଊନବିଂଶ ଶତାବ୍ଦୀର ପ୍ରାକ୍‌କାଳରେ ବଙ୍ଗଳା ସାହିତ୍ୟରେ ଆଧୁନିକ ଉପନ୍ୟାସ ଅର୍ଥରେ କୌଣସି ରଚନା ନ ଥିଲା । ପ୍ରାଚୀନ ଗଦ୍ୟ ରଚନା ମଧ୍ୟରେ ସଂସ୍କୃତର କତିପୟ ଗଦ୍ୟରଚନା ଅନୂଦିତ ହୋଇ ଭାରତୀୟ ଭାଷାମାନଙ୍କରେ ପ୍ରଚଳିତ ଥିଲା । 'ପଞ୍ଚତନ୍ତ୍ର', 'କଥାସରିତ ସାଗର', 'ବୌଦ୍ଧ ଜାତକ'—ଏହାହିଁ ଥିଲା ଗଦ୍ୟ ସାହିତ୍ୟର ନମୁନା । ବାଣଭଟ୍ଟଙ୍କ

ଗଦ୍ୟକାବ୍ୟ 'କାଦମ୍ବରୀ' ଭାରତୀୟ ପ୍ରାଚୀନ ଉପନ୍ୟାସର ଗୋଟାଏ ଛାୟା ମାତ୍ର । ଇଂରାଜୀ ଶିକ୍ଷା ଓ ସାହିତ୍ୟର ପ୍ରସାର ପୂର୍ବରୁ ଆଧୁନିକ ଭାରତୀୟ ସାହିତ୍ୟରେ ପୂର୍ଣ୍ଣାଙ୍ଗ ଉପନ୍ୟାସ ଲେଖାଯାଇ ନ ଥିଲା । ଛୋଟ କଥାଶିଳ୍ପ ଓ ଉପନ୍ୟାସ କହିଲେ ଆମେ ଯାହା ବୁଝୁ, ତାହାର ପ୍ରାରମ୍ଭ ଇଂରେଜମାନଙ୍କ ଆଗମନ ପରେ ।

ସୁବନ୍ଧୁଙ୍କ ଲିଖିତ 'ସ୍ୱପ୍ନ ବାସବଦତ୍ତା' ସେହିପରି ଏକ ସଂସ୍କୃତ ଗଦ୍ୟ ରୋମାନ୍ସ । 'କାଦମ୍ବରୀ' ଓ 'ସ୍ୱପ୍ନ ବାସବଦତ୍ତା'ର ଅବଲମ୍ବନରେ ବଙ୍ଗଳାର କେତେକ ପ୍ରାଚୀନ ରଚନା ମଧ୍ୟ ଦେଖାଯାଏ । ତାରାଶଙ୍କର ତର୍କରତ୍ନଙ୍କ 'କାଦମ୍ବରୀ'ର ବଙ୍ଗଳା ଅନୁବାଦ ୧୮୫୪ ମସିହାରେ ପ୍ରକାଶିତ ହୋଇଥିଲା । ତାପରେ କେତେକ ଗଳ୍ପ, ଆଖ୍ୟାନ ଇତସ୍ତତଃ ଭାବରେ ପ୍ରକାଶିତ ହେଲା, ଯାହାର ଉଦ୍ଦେଶ୍ୟ ଥିଲା ନୀତିଶିକ୍ଷା ପ୍ରଚାର । ଗଦ୍ୟର ବହୁଳ ପ୍ରଚାର ଓ ସମ୍ବାଦପତ୍ରର ପ୍ରଚଳନ ବଙ୍ଗଳାଭାଷାରେ ଆଧୁନିକ ଉପନ୍ୟାସର ବିକାଶ ଓ ଉତ୍ପତ୍ତିକୁ ତ୍ୱରାନ୍ୱିତ କରିଥିଲା । ଏଠାରେ ଉନବିଂଶ ଶତାବ୍ଦୀର ମଧ୍ୟଭାଗର ବଙ୍ଗଳାସମାଜର ଚିତ୍ର ଦେବା ଆବଶ୍ୟକ । ସେତେବେଳେ ବଙ୍ଗସମାଜ ନାନାଦି ସମସ୍ୟା ଦ୍ୱାରା ପୀଡ଼ିତ ଥିଲା । କୁସଂସ୍କାର, ରାଜନୈତିକ ପରାଧୀନତା, ଅର୍ଥନୈତିକ ସମସ୍ୟା ଦେଶରେ ମୁଣ୍ଡଟେକି ଉଠିଥିଲା । ବିଶେଷତଃ ଇଂରେଜୀ ଶିକ୍ଷିତ ଯୁବକମାନଙ୍କର ଛଳନା ଓ ପ୍ରତାରଣା ଲେଖକମାନଙ୍କୁ ବିଚଳିତ କରିଥିଲା । 'ନବବାବୁ ବିଳାସ' ଏକ ବ୍ୟଙ୍ଗବିଦ୍ରୂପାତ୍ମକ ଗଦ୍ୟ ରଚନା । ସେଥିରେ ପାଶ୍ଚାତ୍ୟଭାବ—ଅନୁପ୍ରାଣିତ ଶିକ୍ଷିତ ଯୁବକମାନଙ୍କୁ ସମାଲୋଚନା କରାଯାଇଥିଲା । ପ୍ୟାରୀଚରଣ ମିତ୍ର, ଓରଫ ଟେକ୍‌ଚାନ୍ଦ ଠାକୁରଙ୍କର ଲିଖିତ 'ଆଲାଲେର ଘରେ ଦୁଲାଲ' (୧୮୫୮ ମସିହାରେ ପ୍ରକାଶିତ) ପ୍ରଥମ ବଙ୍ଗଳା ଉପନ୍ୟାସ ବୋଲି ଅନୁମାନ କରାଯାଏ । ଗଦ୍ୟସାହିତ୍ୟରେ ଏହା ଏକ ନୂତନ ପରୀକ୍ଷା ହେଲେହେଁ ଉପନ୍ୟାସ ପଦବାଚ୍ୟ ନୁହେଁ । କିନ୍ତୁ ଗଳ୍ପାଂଶ, ଚରିତ୍ର ଚିତ୍ରଣ ଓ ସଂଳାପ, ଯାହାକି ଉପନ୍ୟାସର ମୂଳଲକ୍ଷଣ, ତାହା ଏହି ଉପନ୍ୟାସରେ ଦେଖିବାକୁ ମିଳିଥିଲା । ପାରିବାରିକ ଚିତ୍ର ଭାବରେ ଏହା ପାଠକମାନଙ୍କ ମଧ୍ୟରେ ବିଶେଷ ଆଦୃତ ହୋଇଥିଲା । କାଳୀପ୍ରସନ୍ନ ସିଂହଙ୍କର 'ହୁତୋମ୍', ପ୍ୟାଁଚାର ନକ୍‌ସାରେ ଉପନ୍ୟାସର ଆଦ୍ୟ ଉତ୍ସ ନିହିତ ଥିଲା । ଆଧୁନିକ ବଙ୍ଗଳା ଉପନ୍ୟାସର ପ୍ରବର୍ତ୍ତକ ଭାବରେ ବଙ୍କିମଚନ୍ଦ୍ର ଚଟ୍ଟୋପାଧ୍ୟାୟ (୧୮୩୮—୧୮୯୪)ଙ୍କର ନାମ ସର୍ବପ୍ରଥମେ ଉଲ୍ଲେଖଯୋଗ୍ୟ । ଔପନ୍ୟାସିକ ଭାବରେ ବଙ୍କିମଚନ୍ଦ୍ର ଅପୂର୍ବ ସଫଳତା ଲାଭ କରିଥିଲେ । ତାଙ୍କର ଏତାଦୃଶ ସୃଷ୍ଟି ସଫଳତାର ପ୍ରଧାନ କାରଣ ହେଉଛି, ତତ୍କାଳୀନ ସମସ୍ୟାବହୁଳ ସମାଜର ପ୍ରେରଣା । ଔପନ୍ୟାସିକ ସାଧାରଣତଃ ପରିବାର ଓ ସମାଜରୁ ନିଜର ସାରସ୍ୱତ ସୃଷ୍ଟି ପାଇଁ ପ୍ରେରଣା ଲାଭ କରିଥାନ୍ତି । ବଙ୍ଗଳାର ବୈପ୍ଳବିକ ଇତିହାସ ସମସ୍ୟାପୀଡ଼ିତ ସମାଜ ଓ ଆଦର୍ଶଗତ ସଂଘର୍ଷ

ପ୍ରକୃତ ବଙ୍କିମଚନ୍ଦ୍ରଙ୍କୁ ଉପନ୍ୟାସ ଲେଖିବା ପାଇଁ ଉପାଦାନ ଯୋଗାଇଥିଲା । କଳ୍ପନାବିଳାସ ଥିଲା ପ୍ରାଚୀନ କାବ୍ୟକବିତାର ଲକ୍ଷଣ । କିନ୍ତୁ ଲେଖକ କ୍ରମେ ତାହା ପରିହାର କରି ବାସ୍ତବ ଅଭିମୁଖୀ ବା ବାସ୍ତବବାଦୀ ସାହିତ୍ୟ ସୃଷ୍ଟି କଲେ । ବଙ୍କିମଚନ୍ଦ୍ରଙ୍କ ଉପନ୍ୟାସ ହେଉଛି ଏହାର ନିଦର୍ଶନ । ପାଶ୍ଚାତ୍ୟ ସାହିତ୍ୟ ଓ ଶିକ୍ଷାର ପ୍ରଭାବ ଫଳରେ ଦେଶରେ ଯେଉଁ ନବୀନ ଚେତନା ଦେଖାଦେଲା, ତାହାର ସ୍ୱର ଗଦ୍ୟ ସାହିତ୍ୟରେ ହିଁ ପ୍ରତିଧ୍ୱନିତ ହୋଇଥିଲା । ବଙ୍କିମଚନ୍ଦ୍ର କଳ୍ପନାକୁ ପୂରାପୂରି ବାଦ୍ ଦେଇନଥିଲେ । କାରଣ, ତାଙ୍କର ଉପନ୍ୟାସଗୁଡ଼ିକ ମୁଖ୍ୟତଃ ରୋମାନ୍ସଧର୍ମୀ । କାବ୍ୟଧର୍ମୀ ରୋମାଣ୍ଟିସିଜମ୍ ବଙ୍କିମଚନ୍ଦ୍ରଙ୍କ ଉପନ୍ୟାସରେ ବିଶେଷ ପରିମାଣରେ ପରିଦୃଷ୍ଟ ହେଲେହେଁ ଆଙ୍ଗିକ ଓ ଭାବଦୃଷ୍ଟିରୁ ବଙ୍କିମଚନ୍ଦ୍ରଙ୍କର ଉପନ୍ୟାସସମୂହ ଶ୍ରେଷ୍ଠକୃତି । ବଙ୍କିମଚନ୍ଦ୍ର ପ୍ରଥମେ ଇଂରାଜୀରେ ଲେଖାଲେଖି କରୁଥିଲେ । ସେ କଲିକତା ବିଶ୍ୱବିଦ୍ୟାଳୟର ପ୍ରଥମ ଗ୍ରାଜୁଏଟମାନଙ୍କ ମଧ୍ୟରେ ଅନ୍ୟତମ । ହୁଗୁଲି କଲେଜରେ ପଢ଼ିବାଦିନଠାରୁ ସେ ସାହିତ୍ୟ ପ୍ରତି ଆକୃଷ୍ଟ ହୋଇଥିଲେ । 'Rajmohan's Wife' (୧୮୬୪) ତାଙ୍କର ପ୍ରଥମ ଇଂରାଜୀ ଉପନ୍ୟାସ । ବଙ୍ଗଳା ଭାଷାରେ ତାଙ୍କର ପ୍ରଥମ ଉପନ୍ୟାସ 'ଦୁର୍ଗେଶ ନନ୍ଦିନୀ' ୧୮୬୫ ମସିହାରେ ପ୍ରକାଶିତ । ଏହା ପ୍ରଥମେ 'ବଙ୍ଗ ଦର୍ଶନ' ପତ୍ରିକାରେ ପ୍ରକାଶିତ ହୋଇଥିଲା । ଆଙ୍ଗିକ, ଚରିତ୍ର ଚିତ୍ରଣ, ଘଟଣାପ୍ରବାହ ଓ ପରିବେଷଣ ନୈପୁଣ୍ୟ ଦିଗରୁ 'ଦୁର୍ଗେଶ ନନ୍ଦିନୀ' ପାଠକମାନଙ୍କ ଦ୍ୱାରା ଉଚ୍ଛ୍ୱସିତ ପ୍ରଶଂସା ଲାଭ କରିଥିଲା । ଇତିହାସର ପୃଷ୍ଠଭୂମିରେ ବୀରତ୍ୱ, ପ୍ରତିହିଂସା, ପ୍ରେମ ଓ ସଂଘର୍ଷ ଏହି ଉପନ୍ୟାସରେ ବର୍ଣ୍ଣିତ ହୋଇଥିଲା । ମୋଗଲ, ପଠାଣ, ରାଜପୁତ ଓ ବଙ୍ଗାଳୀ ଏବଂ ଅନ୍ୟ ଦିଗରେ ଐତିହାସିକତା ଓ ରୋମାନ୍ସର ସଂଯୋଗ—ଏହି ଉପନ୍ୟାସର ବିଶିଷ୍ଟ ବିଭଗ । ରୋମାନ୍ସଧର୍ମୀ ଉପନ୍ୟାସ ଭାବରେ ଏହାର ପ୍ରଭାବ ସ୍ୱୀକୃତ । ଏହା ସାର୍ ୱାଲ୍ଟର ସ୍କଟଙ୍କର 'Ivon Ho' କିମ୍ବା ଭୂଦେବ ମୁଖୋପାଧ୍ୟାୟଙ୍କ 'ଅଙ୍ଗୁରୀୟ ବିନିମୟ' ରଚନା ସଙ୍ଗେ ତୁଳନୀୟ । ତାଙ୍କର ଦ୍ୱିତୀୟ ଉପନ୍ୟାସ 'କପାଳକୁଣ୍ଡଳା' (୧୮୬୬) ମଧ୍ୟ ଏକ କାବ୍ୟଧର୍ମୀ ଐତିହାସିକ ଉପନ୍ୟାସ । କିନ୍ତୁ ଇତିହାସ ଅପେକ୍ଷା ସମାଜର ଆଭିମୁଖ୍ୟ ଏଥିରେ ବିଶେଷଭାବରେ ପ୍ରତିଫଳିତ । ତଦାନୀନ୍ତନ ବଙ୍ଗ-ପରିବାରର ଚିତ୍ର ବଙ୍କିମଚନ୍ଦ୍ର ଏହି ଉପନ୍ୟାସରେ ଉପସ୍ଥାପନ କରିଛନ୍ତି । ଏହାର ବିୟୋଗାନ୍ତ ସ୍ୱର ଅତ୍ୟନ୍ତ ମର୍ମସ୍ପର୍ଶୀ । ଲେଖକଙ୍କର ସୃଷ୍ଟି ନୈପୁଣ୍ୟ ବା କଳାନୈପୁଣ୍ୟ ଏହି ଉପନ୍ୟାସରେ କମ୍ ନୁହେଁ । ତାଙ୍କର 'ମୃଣାଳିନୀ' ଉପନ୍ୟାସ (୧୮୬୯) ତୁର୍କୀମାନଙ୍କ ବଙ୍ଗ ଅଭିଯାନର ପଟ୍ଟଭୂମିରେ ଲିଖିତ; କିନ୍ତୁ ଏଥିରେ ଯୋପନମାନ । କାରଣ ବଙ୍କିମଚନ୍ଦ୍ର ଏହି ଉପନ୍ୟାସରେ

*

ମଧ୍ୟଯୁଗୀୟ ଓ ପ୍ରାଚୀନଯୁଗର ବଙ୍ଗ-ସମାଜର ଚିତ୍ର ଦେବାପାଇଁ ଭୁଲି ନାହାନ୍ତି । ଏଥିରେ ପଶୁପତି ଓ ମନୋରମା ଚରିତ୍ର ବ୍ୟତୀତ ଅନ୍ୟ ଚରିତ୍ରଗୁଡ଼ିକ ସମ୍ପୂର୍ଣ୍ଣ ସ୍ପଷ୍ଟ ହୋଇପାରିନାହିଁ ।

ସମାଲୋଚକମାନେ କହନ୍ତି ଯେ, ଐତିହାସିକ ତଥ୍ୟର ଗୃପରେ ଉପନ୍ୟାସରେ କେତେକ ଜଟିଳତା ଦେଖାଦେଇଛି । ବଙ୍କିମଚନ୍ଦ୍ର ବଙ୍ଗଳାର ସାଂସ୍କୃତିକ ଜୀବନର ପୁନରୁଦ୍ଧାର ପାଇଁ ବିଶେଷ ଚେଷ୍ଟା କରିଥିଲେ । ତେଣୁ ୧୮୭୨ ମସିହାରୁ ସେ 'ବଙ୍ଗଦର୍ଶନ' ପତ୍ରିକା ପ୍ରକାଶ କରିଥିଲେ । ଏହି ପତ୍ରିକାରେ ବଙ୍କିମଚନ୍ଦ୍ରଙ୍କର ବହୁମୁଖୀ ରଚନା; ଯଥା—ଗଳ୍ପ, ଉପନ୍ୟାସ, ପ୍ରବନ୍ଧ ଓ ସମାଲୋଚନା ପ୍ରକାଶିତ ହୋଇଥିଲା । ତାଙ୍କର 'ବିଷବୃକ୍ଷ' ଉପନ୍ୟାସ (୧୮୭୩) 'ବଙ୍ଗଦର୍ଶନ' ପତ୍ରିକାରେ ଧାରାବାହିକଭାବରେ ପ୍ରକାଶିତ ହୋଇଥିଲା । ତତ୍କାଳୀନ ବିଧବାବିବାହଜନିତ କରୁଣ ପାରିବାରିକ ଜୀବନର ଚିତ୍ର ଏହି ଉପନ୍ୟାସରେ ଚିତ୍ରିତ । ଏହି ଗଳ୍ପର ପରିଣତି ବିୟୋଗାନ୍ତକ । ୧୮୭୪ରେ 'ଯୁଗଳାଙ୍ଗୁରୀୟ' ଉପନ୍ୟାସ ଲିଖିତ ହୋଇଥିଲା । 'ଚନ୍ଦ୍ରଶେଖର' ଉପନ୍ୟାସ (୧୮୭୬) ସେପରି ବିଶେଷ ସଫଳତା ଲାଭ କରିନଥିଲା । 'ଇନ୍ଦିରା' ପ୍ରଥମେ ଦୀର୍ଘ ଗଳ୍ପ ଆକାରରେ 'ବଙ୍ଗଦର୍ଶନ' ପତ୍ରିକାରେ ପ୍ରକାଶିତ ହୋଇଥିଲା । ଜଣୈକା ନାରୀ ନିଜ ସ୍ୱାମୀର ସନ୍ଧାନରେ ବହିର୍ଗତ ହୋଇ ଯେଉଁ ଅନୁଭୂତି ହାସଲ କରିଥିଲା, ତାହାହିଁ ଏଥିରେ ବର୍ଣ୍ଣିତ । 'ଚନ୍ଦ୍ରଶେଖର' ଉପନ୍ୟାସରେ ପ୍ରଣୟଜନିତ ଦ୍ୱନ୍ଦ୍ୱ ଓ ସଂଘର୍ଷ ବର୍ଣ୍ଣିତ ହୋଇଛି । ଏକ ଦିଗରେ ସାମନ୍ତବାଦୀ ଯୁଗର ପ୍ରଭାବ, ଅନ୍ୟ ଦିଗରେ ଇଂରେଜ ରାଜତ୍ୱ ଆରମ୍ଭରେ ଦେଶରେ ଯେଉଁ ପରିବର୍ତ୍ତନ ଦେଖାଦେଲା, ତାହାର ସୂଚନା ଏହି ଉପନ୍ୟାସରେ ଦେଖିବାକୁ ମିଳେ । ବଙ୍କିମଚନ୍ଦ୍ର ଏହି ଉପନ୍ୟାସରେ ନିଜକୁ ମିତବାଦୀ ଭାବରେ ପରିଚିତ କରାଇଛନ୍ତି । ଏହି ଉପନ୍ୟାସରେ ଲେଖକ ଇଂରାଜୀ ସଭ୍ୟତା ଓ ସମାଜ ପ୍ରତି ନିଜର ମନୋଭାବ ବ୍ୟକ୍ତ କରିଛନ୍ତି ।

'ରାଧାରାଣୀ' ତାଙ୍କର ଏକ ଦୀର୍ଘ ରୋମାଣ୍ଟିକ୍ ଗଳ୍ପ । ପରବର୍ତ୍ତୀ ଉପନ୍ୟାସ 'ରଜନୀ' (୧୮୭୭)—ଏହାର ପୃଷ୍ଠଭୂମି ସାମାଜିକ । ଜଣୈକା ଅନ୍ଧରମଣୀର ଜୀବନରେ ପ୍ରେମ କିପରି ସାର୍ଥକତା ଲାଭ କରିପାରେ, ବଙ୍କିମଚନ୍ଦ୍ର ତାହାହିଁ ଏହି ଉପନ୍ୟାସରେ ପ୍ରତିପାଦନ କରିଛନ୍ତି । ୧୮୭୮ ମସିହାରେ ତାଙ୍କର ବିଖ୍ୟାତ ସାମାଜିକ ଉପନ୍ୟାସ 'କୃଷ୍ଣକାନ୍ତେର ଉଇଲ୍' ପ୍ରକାଶିତ ହେଲା । ଏକ ଧନୀ ପରିବାରକୁ କେନ୍ଦ୍ର କରି ଏହି ଉପନ୍ୟାସର କାହାଣୀ ଗଢ଼ି ଉଠିଥିଲା । ବିଧବା ଜୀବନର ସମସ୍ୟା ଏହି ଉପନ୍ୟାସରେ ସହାନୁଭୂତିର ସହିତ ଲେଖକ ଉତ୍ଥାପନ କରିଥିଲେ । ନାରୀର ସତୀତ୍ୱ, ତା'ର ସୌନ୍ଦର୍ଯ୍ୟ, ପୁରୁଷର ପ୍ରେମାଭିଳାଷ,

ରୂପଜମୋହ—ଭାଷା ତଥା କାହାଣୀର ମାୟାଜାଲରେ ଅତି ନିଖୁଣଭାବରେ ଏହି ଉପନ୍ୟାସରେ ବର୍ଣ୍ଣିତ । ବିଧବା ରୋହିଣୀ ପ୍ରତି ଲେଖକଙ୍କର ଅଖଣ୍ଡ ସହାନୁଭୂତି ଥିଲା । ଏହି ଉପନ୍ୟାସଟି ମଧ୍ୟ 'ଚନ୍ଦ୍ରଶେଖର' ଓ 'ମୃଣାଳିନୀ' ସଦୃଶ ବିୟୋଗାନ୍ତକ ଥିଲା ।

'ରାଜସିଂହ' ଉପନ୍ୟାସରେ ବଙ୍କିମଚନ୍ଦ୍ର ପୁଣି ଅତୀତ ଇତିହାସକୁ ଫେରିଯାଇଛନ୍ତି । ଜାତିର ଅତୀତ ଗୌରବ ଏଥିରେ ଏପରି ପ୍ରତିଫଳିତ ହୋଇଛି ଯେ, ସେଥିରୁ ଐତିହାସିକ ଉପନ୍ୟାସ ଲେଖକ ବଙ୍କିମଚନ୍ଦ୍ରଙ୍କର ସ୍ରଷ୍ଟାମାନସ ସହଜରେ ଉପଲବ୍ଧ ହୁଏ । ଏହା ଯଥାର୍ଥରେ ଏକ ଐତିହାସିକ ଉପନ୍ୟାସ । ଏକଦିଗରେ ଭାରତ ସମ୍ରାଟ ଆଲମଗୀର ଓ ଅନ୍ୟ ଦିଗରେ ରାଣା ରାଜସିଂହ । ନିର୍ମଳ ଦେଶପ୍ରେମ, ଗମ୍ଭୀର ସେବାମନୋଭାବ ଓ ଧର୍ମବୋଧ ତାଙ୍କର 'ଆନନ୍ଦ ମଠ' ଉପନ୍ୟାସରେ ପ୍ରତିଫଳିତ । ବଙ୍କିମଚନ୍ଦ୍ର ଏହି ଉପନ୍ୟାସରେ ସୂଚାଇଥିଲେ ଯେ ସନ୍ନ୍ୟାସୀମାନେ ନିଜର ଆଧ୍ୟାତ୍ମିକ ଦୁର୍ବଳତା ପାଇଁ ପରାଜୟର ସମ୍ମୁଖୀନ ହୁଅନ୍ତି । ସ୍ୱଦେଶୀ ଆନ୍ଦୋଳନର ଅଗ୍ନିସ୍ଫୁଲିଙ୍ଗ ରୂପେ ତାଙ୍କର 'ଆନନ୍ଦ ମଠ' ଉପନ୍ୟାସ ବିବେଚିତ ହୋଇଥିଲା । ତାଙ୍କର 'ଦେବୀ ଚଉଧୁରାଣୀ' ଉପନ୍ୟାସ (୧୮୮୪) ନିଷ୍କାମ ଧର୍ମ ଓ ବିଶୁଦ୍ଧ ଦେଶସେବାର ସଙ୍କେତ ବହନ କରିଅଛି । 'ସୀତାରାମ' ଉପନ୍ୟାସ (୧୮୮୭) ଐତିହାସିକ ପୃଷ୍ଠଭୂମିରେ ଲିଖିତ । ବଙ୍କିମଚନ୍ଦ୍ର ନିଜର ଉପନ୍ୟାସଗୁଡ଼ିକରେ ଭାରତର ବିଭିନ୍ନ ଯୁଗର ବିଭିନ୍ନ ସମସ୍ୟା ଉପସ୍ଥାପିତ କରିଥିଲେ । ବଙ୍ଗଳାର ବ୍ୟକ୍ତିଜୀବନ ଓ ସାମାଜିକ ଜୀବନ ତାଙ୍କର ଉପନ୍ୟାସ ମଧ୍ୟରେ ପ୍ରକଟିତ ହୋଇଥିଲା । ଗୀତାର ନିଷ୍କାମ ଧର୍ମବୋଧ, ଜାତୀୟ ଆନ୍ଦୋଳନର 'ବନ୍ଦେମାତରମ୍' ଧ୍ୱନି, ପାରିବାରିକ ଓ ସାମାଜିକ ଜୀବନର ବୈଚିତ୍ର୍ୟ, ଇତିହାସର ଅରାଜକତା ଓ ବିଦ୍ରୋହ ଏବଂ ତା'ର ପରିଣାମ ତାଙ୍କର ବିଭିନ୍ନ ଉପନ୍ୟାସରେ ବିଭିନ୍ନ ରୂପରେ ସ୍ଥାନ ପାଇଥିଲା । ବଙ୍ଗଳା ଉପନ୍ୟାସରେ ସେଥିପାଇଁ ବଙ୍କିମଚନ୍ଦ୍ର ଆଦ୍ୟ ପ୍ରବର୍ତ୍ତକ ରୂପେ ଗୌରବର ସ୍ଥାନ ଅଧିକାର କରିଛନ୍ତି । ଜୀବନ ସମ୍ପର୍କରେ ତାଙ୍କର ଗମ୍ଭୀର ଜିଜ୍ଞାସା ତାଙ୍କୁ ଶ୍ରେଷ୍ଠ କଥାଶିଳ୍ପୀ ରୂପେ ଗଢ଼ି ପାରିଥିଲା । ଓଡ଼ିଆ ସାହିତ୍ୟରେ ଫକୀରମୋହନଙ୍କ ଉପନ୍ୟାସର ଯେଉଁ ସ୍ଥାନ, ବଙ୍ଗଳା ସାହିତ୍ୟରେ ଔପନ୍ୟାସିକ ବଙ୍କିମଚନ୍ଦ୍ରଙ୍କର ସେହି ସ୍ଥାନ ।

ପରବର୍ତ୍ତୀ ବିଶିଷ୍ଟ ଔପନ୍ୟାସିକ ହେଉଛନ୍ତି, **ରମେଶଚନ୍ଦ୍ର ଦତ୍ତ** (୧୮୪୮-୧୯୦୯) । ସେ ଜଣେ ଆଇ.ସି.ଏସ୍. ଅଫିସର୍ ଥିଲେ । କେବଳ ଉପନ୍ୟାସ କ୍ଷେତ୍ରରେ ନୁହେଁ, ଶାସ୍ତ୍ରାଲୋଚନା, ସାହିତ୍ୟ ଓ ସଂସ୍କୃତିର ଆଲୋଚନା ରମେଶ-ଚନ୍ଦ୍ରଙ୍କ ମୌଳିକ ଚିନ୍ତାର ପରିଚାୟକ । ବଙ୍କିମଚନ୍ଦ୍ରଙ୍କ ପରି ତାଙ୍କର ଉପନ୍ୟାସ ମଧ୍ୟ ଦ୍ୱିବିଧ, ଐତିହାସିକ ଉପନ୍ୟାସ ଓ ସାମାଜିକ ଉପନ୍ୟାସ । ଐତିହାସିକ

ଉପନ୍ୟାସରେ ପ୍ରାଚୀନ ଇତିହାସ ପ୍ରତି ଆନୁଗତ୍ୟ ଓ ସମାଜରେ ତରୁଣତରୁଣୀଙ୍କର ଯେଉଁ ରୋମାନ୍ସ, ତାହା ହିଁ ସ୍ଥାନ ପାଇଥିଲା । ଏକ ଗଭୀର ଭାବାଦର୍ଶ ଐତିହାସିକ ଉପନ୍ୟାସ ରଚନା କରିବାରେ ରମେଶଚନ୍ଦ୍ରଙ୍କୁ ଅନୁପ୍ରାଣିତ କରିଥିଲା । ସେ ଗୁରୁତ୍ୱପୂର୍ଣ୍ଣ ଭାଷାରେ ଇତିହାସର କଥାକୁ ଅଭିବ୍ୟକ୍ତ କରିଥିଲେ । ତାଙ୍କର ଉପନ୍ୟାସ ପଢ଼ିଲେ ଜଣାଯାଏ ଯେ ସ୍ୱଦେଶପ୍ରୀତି ଓ ଜାତୀୟତା ବୋଧ ଥିଲା ତାଙ୍କ ଲେଖାର ପ୍ରଧାନ ଆକର୍ଷଣ । ତାଙ୍କର ପ୍ରଥମ ଉପନ୍ୟାସ 'ବଙ୍ଗବିଜେତା' (୧୮୭୪) ଇତିହାସର ପୃଷ୍ଠଭୂମିରେ ଲେଖାଯାଇଥିଲା ଓ ଏହା ରୋମାନ୍ସଧର୍ମୀ ଥିଲା । ୧୮୭୭ ମସିହାରେ ପ୍ରକାଶିତ ତାଙ୍କର ଦ୍ୱିତୀୟ ଉପନ୍ୟାସ 'ମାଧବୀ କଙ୍କଣ' ଶାହାଜାହାନଙ୍କ ରାଜତ୍ୱ ସମୟର ଐତିହାସିକ ଓ ସାମାଜିକ ପରିବେଶରେ ପରିକଳ୍ପିତ । ଏହା ଐତିହାସିକ ଉପନ୍ୟାସ ହେଲେ ହେଁ, ରୋମାନ୍ସଧର୍ମୀ ଉପନ୍ୟାସ ରୂପେ ବିଶେଷ ପରିଚିତ । ଏହି ଉପନ୍ୟାସରେ ରମେଶଚନ୍ଦ୍ରଙ୍କ ଚିନ୍ତା, ଆଦର୍ଶ ସ୍ପଷ୍ଟଭାବରେ ପ୍ରତିବିମ୍ବିତ । ତାଙ୍କର ଏକ ଉଲ୍ଲେଖଯୋଗ୍ୟ ଉପନ୍ୟାସ 'ମହାରାଷ୍ଟ୍ର-ଜୀବନ-ପ୍ରଭାତ' ୧୮୭୮ ମସିହାରେ ପ୍ରକାଶିତ ଓ ଆଉ ଖଣ୍ଡିଏ ହେଉଛି, 'ରାଜପୁତ୍ ଜୀବନ-ସନ୍ଧ୍ୟା' (୧୮୭୯)—ଏହି ଦୁଇଟି ଯଥାର୍ଥରେ ଐତିହାସିକ ଉପନ୍ୟାସ । ପ୍ରଥମଟିରେ ଇଂରେଜ ଓ ମହାରାଷ୍ଟ୍ରର ଛତ୍ରପତି ଶିବାଜୀଙ୍କର ଐତିହାସିକ ସଂଘର୍ଷର କାହାଣୀ ବର୍ଣ୍ଣିତ । ଦ୍ୱିତୀୟ ଉପନ୍ୟାସଟିରେ ଆକ୍‌ବର ଓ ଜାହାଙ୍ଗୀରଙ୍କ ସମୟର ଏକ କାହାଣୀ ବର୍ଣ୍ଣିତ । ପ୍ରଥମ ଉପନ୍ୟାସରେ ଛତ୍ରପତି ଶିବାଜୀଙ୍କର ତୀକ୍ଷ୍ଣ ବୁଦ୍ଧି, ଅସାଧାରଣ ବୀରତ୍ୱ ଓ ଦୁଃସାହସର ପରିଚୟ ମିଳେ । 'ରାଜପୁତ୍ ଜୀବନ-ସନ୍ଧ୍ୟା' ଉପନ୍ୟାସରେ ମଧ୍ୟ ସେହିପରି ମୋଗଲ ଶକ୍ତି ବିରୁଦ୍ଧରେ ରାଣା ପ୍ରତାପସିଂହଙ୍କର କଠୋର ପ୍ରତିଜ୍ଞା ଓ ଦୀର୍ଘ ସଂଗ୍ରାମର ଲୋମ-ହର୍ଷଣକାରୀ କାହାଣୀ ବର୍ଣ୍ଣିତ । ପ୍ରଥମ ଉପନ୍ୟାସରେ ଗୋଟିଏ ଜାତିର ଭାଗ୍ୟୋଦୟ ଓ ଅନ୍ୟଟିରେ ଗୋଟିଏ ଜାତିର ଭାଗ୍ୟ ବିପର୍ଯ୍ୟୟ, କଥାଶିଳ୍ପୀର ସହାନୁଭୂତି ଓ ସମବେଦନା ସହିତ ଚିତ୍ରିତ ହୋଇଛି । ଏହି ଉପନ୍ୟାସରେ ଔପନ୍ୟାସିକଙ୍କର ନିର୍ମଳ ଦେଶପ୍ରୀତି, ଅତୀତ ପ୍ରତି ଆଗ୍ରହ ଓ ଗଭୀର ଶ୍ରଦ୍ଧା ପ୍ରତିବିମ୍ବିତ ହୋଇଛି । 'ସଂସାର' (୧୮୮୭) ଓ 'ସମାଜ' (୧୮୯୩) ତାଙ୍କର ଦୁଇ ଖଣ୍ଡି ସାମାଜିକ ଉପନ୍ୟାସ । ଏହି ସାମାଜିକ ଉପନ୍ୟାସରେ ମଧ୍ୟ ତାଙ୍କର ସଫଳତା ବେଶ୍ ପରିଲକ୍ଷିତ । ଏହି ଦୁଇଟି ଉପନ୍ୟାସରେ ଊନବିଂଶ ଶତାବ୍ଦୀର ସାମାଜିକ ଜୀବନ ବର୍ଣ୍ଣିତ ହୋଇଥିଲା । ରମେଶଚନ୍ଦ୍ର ଏହି ଉପନ୍ୟାସରେ ମଧ୍ୟବିତ୍ତ ଶ୍ରେଣୀର ଚିତ୍ର ପ୍ରଦାନ କରିଥିଲେ । ବଙ୍ଗଳାର ନିର୍ଜନ ପଲ୍ଲୀଗ୍ରାମର ଜୀବନଧାରା ଓ ସାମାଜିକ ପରିବେଶର ଚିତ୍ର ରମେଶଚନ୍ଦ୍ର ନିଜର ଲେଖନୀରେ ପରିସ୍ଫୁଟ କରିଥିଲେ । ଅସବର୍ଣ୍ଣ ବିବାହ, ବିଧବା ବିବାହ ପ୍ରଭୃତି ସାମାଜିକ ସମସ୍ୟା ମଧ୍ୟ

ଏହି ଉପନ୍ୟାସରେ ଲେଖକଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ବଙ୍ଗଳା ଉପନ୍ୟାସରେ ରମେଶଚନ୍ଦ୍ରଙ୍କ ସ୍ଥାନ ଔପନାସିକ ଭାବରେ ସମଧିକ । ପରବର୍ତ୍ତୀ ଔପନ୍ୟାସିକମାନଙ୍କୁ ତାଙ୍କର ଲେଖା ଅନୁପ୍ରାଣିତ କରିଥିଲା ।

**ରେଭରେଣ୍ଡ୍ ଲାଲବିହାରୀ ଦେଙ୍କର** ଉପନ୍ୟାସ ବେଙ୍ଗଲ ପ୍ରେଜେଣ୍ଟ ଲାଇଫ୍ (୧୮୭୪)ରେ ଗ୍ରାମାଞ୍ଚଳର କୃଷକ ସମାଜର ମର୍ମସ୍ପର୍ଶୀ ଚିତ୍ର ଦେଖିବାକୁ ମିଳେ । **ପ୍ରଭାତ କୁମାର ମୁଖୋପାଧ୍ୟାୟ** (୧୮୭୩-୧୯୩୨) ଉପନ୍ୟାସ ଓ କ୍ଷୁଦ୍ରଗଳ୍ପ ରଚନାରେ ରବୀନ୍ଦ୍ରନାଥଙ୍କ ଦ୍ୱାରା ବିଶେଷ ପ୍ରଭାବିତ ହୋଇଥିଲେ । ବଙ୍କିମଚନ୍ଦ୍ରଙ୍କ ପ୍ରଭାବ ମଧ୍ୟ ତାଙ୍କ ଉପରେ ଢ଼ଣାଅଧିକେ ପଡ଼ିଥିଲା । ଉପନ୍ୟାସ ଅପେକ୍ଷା କ୍ଷୁଦ୍ରଗଳ୍ପରେ ତାଙ୍କର ସ୍ୱାତନ୍ତ୍ର୍ୟ ବିଶେଷ ପରିସ୍ଫୁଟ । ବଙ୍ଗଳା ସାହିତ୍ୟରେ ଆଧୁନିକ କ୍ଷୁଦ୍ରଗଳ୍ପର ଲେଖକ ଭାବରେ ତାଙ୍କର କୃତିତ୍ୱ ବିଶେଷ ଉଲ୍ଲେଖ-ଯୋଗ୍ୟ । ହାସ୍ୟରସ ପରିବେଷଣ ଓ ବିଭିନ୍ନ ରସର ସମାବେଶ ତାଙ୍କର କ୍ଷୁଦ୍ରଗଳ୍ପ ଓ ଉପନ୍ୟାସର ଏକ ବିଶିଷ୍ଟ ଲକ୍ଷଣ । ବ୍ୟକ୍ତି ଓ ସମାଜର ପରିପ୍ରେକ୍ଷୀରେ ଯେଉଁ ଅସଂଗତି ଦେଖାଯାଏ, ପ୍ରଭାତକୁମାର ତାହାର ପର୍ଯ୍ୟବେକ୍ଷକ । ଉପନ୍ୟାସରେ ସେ ଜଣେ ସହାନୁଭୂତିଶୀଳ ସଚେତନ ଶିଳ୍ପୀ ରୂପେ ପରିଚିତ । ମାନବ ଜୀବନର ବୈଚିତ୍ର୍ୟ ଓ ସଂଘର୍ଷ ତଥା ଜାତି ଜାତି ମଧ୍ୟରେ ସମ୍ପର୍କ ପ୍ରଭୃତିର ରୂପଚିତ୍ର, ବିଶେଷତଃ ମଧ୍ୟବିତ୍ତ ଶିକ୍ଷିତ ସମାଜର ଚିତ୍ର ତାଙ୍କ ଉପନ୍ୟାସରେ ଦେଖିବାକୁ ମିଳେ । କ୍ଷୁଦ୍ରଗଳ୍ପ ଲେଖିବା ଦିଗରେ ସେ ରବୀନ୍ଦ୍ରନାଥଙ୍କୁ ଅନୁକରଣ କରିଥିଲେ । ତାଙ୍କର ପ୍ରଥମ ଗଳ୍ପ ପୁସ୍ତକ 'ନବକଥା' ଅବଶ୍ୟ ବିଶେଷ କଳାନୈପୁଣ୍ୟ ପ୍ରଦର୍ଶନ କରିନଥିଲା । 'ଷୋଡ଼ଶୀ', 'ଦେଶୀ ଓ ବିଲାତି' 'ଗଳ୍ପାଞ୍ଜଳି', 'ଗଳ୍ପବୀଥି', 'ପତ୍ରପୁଷ୍ପ', 'ଗହନାର ବାକ୍ସ', 'ହତାଶ-ପ୍ରେମିକ' ଓ 'ନୂତନ ବୋଉ' ପ୍ରଭୃତି ଉଲ୍ଲେଖଯୋଗ୍ୟ । ତାଙ୍କର ଉପନ୍ୟାସ-ଗୁଡ଼ିକ ମଧ୍ୟରେ 'ରମା ସୁନ୍ଦରୀ', 'ନବୀନ ସନ୍ନ୍ୟାସୀ', 'ଜୀବନର ମୂଲ୍ୟ', 'ରତ୍ନ ଦୀପ', 'ସିନ୍ଦୁର କୌଟା' ପ୍ରଭୃତି ପ୍ରଧାନ । ମୁଖୋପାଧ୍ୟାୟ ଉପନ୍ୟାସମାନଙ୍କରେ ଶୈତାନ୍ ଚରିତ୍ର ଚିତ୍ରଣ କରିବାରେ ବିଶେଷ ନିପୁଣତା ହାସଲ କରିଛନ୍ତି । ତାଙ୍କର ଉପନ୍ୟାସରେ ମଧ୍ୟବିତ୍ତ ଜୀବନର ତଥା ସମାଜର ଚିତ୍ର ଦେଖିବାକୁ ମିଳେ ।

## ଶରତଚନ୍ଦ୍ର ଚଟ୍ଟୋପାଧ୍ୟାୟ (୧୮୭୬-୧୯୩୮)

ଊନବିଂଶ ଶତାବ୍ଦୀର ଶେଷପାଦ ବଙ୍ଗଳା ସାହିତ୍ୟର ଏକ ଗୁରୁତ୍ୱପୂର୍ଣ୍ଣ ପର୍ଯ୍ୟାୟ । ଏହି ପର୍ଯ୍ୟାୟରେ ଆଧୁନିକ ବଙ୍ଗଳା ସାହିତ୍ୟର କେବଳ ଯେ

ସୂର୍ଯ୍ୟୋଦୟ ଘଟିଥିଲା, ତାହା ନୁହେଁ, ସେଇ ନବୀନ ସୂର୍ଯ୍ୟାଲୋକରେ ସମଗ୍ର ବଙ୍ଗଳାଭାଷା ଓ ସାହିତ୍ୟ ଆଲୋକିତ ତଥା ଭାବପ୍ଲାବିତ ହୋଇଥିଲା । ଗଳ୍ପ, ଉପନ୍ୟାସ, କାବ୍ୟକବିତା, ନାଟକ, ପ୍ରବନ୍ଧ ଓ ସମାଲୋଚନାର ସୁଦୃଢ଼ ଭିତ୍ତି ଏ ସମସ୍ତ ସାହିତ୍ୟିକ ବିଭବକୁ ନେଇ ସ୍ଥାପିତ ହୋଇଥିଲା । ନୂତନ ମୂଲ୍ୟବୋଧ ଓ ନୂତନ ସମାଜବୋଧ ସାହିତ୍ୟରେ ସ୍ଥାନ ପାଇଲା । ଯୁଗର ଦ୍ୱନ୍ଦ୍ୱ ଓ ସଙ୍ଘର୍ଷ-ପୀଡ଼ିତ ପରିବେଶରେ ଔପନ୍ୟାସିକ ଶରତ୍‌ଚନ୍ଦ୍ରଙ୍କର ଆବିର୍ଭାବ ଘଟିଥିଲା । ସେ ଜଣେ ପ୍ରତିଭାଶାଳୀ ଔପନ୍ୟାସିକ ଥିଲେ । ତାଙ୍କର ଆବିର୍ଭାବ ଅପ୍ରତ୍ୟାଶିତ ଓ ଆକସ୍ମିକ ବୋଲି ଜଣାଯାଏ । ବଙ୍କିମଚନ୍ଦ୍ର ବଙ୍ଗଳା ଉପନ୍ୟାସର ଯେଉଁ ଶୁଭଭିତ୍ତି ସ୍ଥାପନ କରିଥିଲେ ଏବଂ ରବୀନ୍ଦ୍ରନାଥ ତା'ର ଉତ୍କର୍ଷ ସାଧନ କଲେ, ସେ କ୍ରମରେ ଶରତଚନ୍ଦ୍ର ବଙ୍ଗଳା ଉପନ୍ୟାସ ଓ କ୍ଷୁଦ୍ରଗଳ୍ପରେ ଚୂଡ଼ାନ୍ତ ସାର୍ଥକତା ଅର୍ଜନ କରିଥିଲେ । ବିଷୟବସ୍ତୁ, ଭାବପ୍ରକାଶ ଓ ପରିବେଶ, ଯାହାକି ଉପନ୍ୟାସର ପ୍ରାଣ, ଶରତଚନ୍ଦ୍ର ସେଥିପାଇଁ ବେଶୀ ଚିନ୍ତିତ ନ ଥିଲେ । ବଙ୍କିମଚନ୍ଦ୍ର ମନୁଷ୍ୟର ଉତ୍‌ଥାନ-ପତନକୁ ଲକ୍ଷ୍ୟକରି ତାଙ୍କର ଉପନ୍ୟାସ-ଗୁଡ଼ିକରେ ଏକ ଦୃଢ଼ ନୈତିକବାଦ ପ୍ରଚାର କରିଥିଲେ । ଊନବିଂଶ ଶତାବ୍ଦୀର ସମାଜର ଚିତ୍ର ବଙ୍କିମଚନ୍ଦ୍ରଙ୍କ ଉପନ୍ୟାସରେ ପ୍ରତିଫଳିତ । କିନ୍ତୁ ରବୀନ୍ଦ୍ରନାଥ ସାମନ୍ତବାଦୀ ସମାଜ ଓ ଉଚ୍ଚ ମଧ୍ୟବିତ୍ତ ସମାଜ, ଏହି ଦୁଇଟି ସାମାଜିକ ସ୍ତରର ମନସ୍ତାତ୍ତ୍ୱିକ ବିଶ୍ଳେଷଣ କରିଥିଲେ । ମାତ୍ର ଶରତଚନ୍ଦ୍ର ମଧ୍ୟବିତ୍ତ ଓ ସାଧାରଣ ଲୋକଙ୍କ ଚିତ୍ର ତାଙ୍କ ଉପନ୍ୟାସରେ ଅଙ୍କନ କରିଥିଲେ । ଏହି ଔପନ୍ୟାସିକଦ୍ୱୟ ବଙ୍ଗଳା ଉପନ୍ୟାସରେ ତିନିଗୋଟି ଧାରାର ପ୍ରବର୍ତ୍ତକ । ରବୀନ୍ଦ୍ରନାଥ ନିଜର ଉପନ୍ୟାସରେ ବାସ୍ତବ ଜୀବନର ଆଲେଖ୍ୟ ଦେଇଥିଲେ । କିନ୍ତୁ ଶରତଚନ୍ଦ୍ର ତାଙ୍କ ଉପନ୍ୟାସ ମାଧ୍ୟମରେ ବାସ୍ତବ ଜୀବନକୁ ଏକମାତ୍ର ଉପଜୀବ୍ୟ ବିଷୟ ରୂପେ ଗ୍ରହଣ କଲେ । ବଙ୍ଗସମାଜ ଯେଉଁ ପ୍ରାଚୀନ କୁସଂସ୍କାର ଦ୍ୱାରା କବଳିତ ହୋଇଥିଲା, ଶରତଚନ୍ଦ୍ର ତାହାର କରୁଣତା ନିଜେ ବେଶ୍ ଉପଲବ୍ଧି କରିପାରିଥିଲେ । ସେ ଅନୁଭବ କରିଥିଲେ ଯେ, ଯେଉଁ ସାମାଜିକ ବ୍ୟବସ୍ଥା, ବ୍ୟକ୍ତିର ବ୍ୟକ୍ତିତ୍ୱ ବିକାଶର ପରିପନ୍ଥୀ ତାହା ସର୍ବଦା ପରିତ୍ୟାଜ୍ୟ । ତେଣୁ ସେ ଯୁଗଜୀର୍ଣ୍ଣ ସାମାଜିକ ସମସ୍ୟାକୁ ନିଜ ଉପନ୍ୟାସ ମଧ୍ୟରେ ବର୍ଣ୍ଣନାପୂର୍ବକ ସହୃଦୟ ପାଠକମାନଙ୍କ ମନରେ ଗଭୀର ରେଖାପାତ କରିଥିଲେ । ମାନବଜୀବନର ପରାଜୟ ଓ ବ୍ୟର୍ଥତାବୋଧ ତାଙ୍କ ଉପନ୍ୟାସରେ ମର୍ମସ୍ପର୍ଶୀ ଭାଷାରେ ପ୍ରତିଧ୍ୱନିତ ହୋଇଥିଲା । ତେଣୁ ତାଙ୍କର ଉପନ୍ୟାସଗୁଡ଼ିକ ବ୍ୟକ୍ତିଜୀବନର ଟ୍ରାଜେଡ଼ି ବୋଲି କୁହାଯାଇପାରେ । ଔପନ୍ୟାସିକ ଭାବରେ ଶରତ୍‌ଚନ୍ଦ୍ର ବ୍ୟକ୍ତି ଓ ସମାଜର ଅତ୍ୟନ୍ତ ନିକଟବର୍ତ୍ତୀ ଥିଲେ । ପାରିବାରିକ ଜୀବନର ସୁଖଦୁଃଖ, ଉତ୍‌ଥାନ-ପତନ ଓ ସଙ୍ଘର୍ଷ

ତାଙ୍କର ଲେଖନୀ ସ୍ପର୍ଶରେ ଦୀପ୍ତିମନ୍ତ ହୋଇଉଠିଥିଲା । ସଂଘର୍ଷପୀଡ଼ିତ ସମାଜ ହିଁ ଶରତ୍‌ଚନ୍ଦ୍ରଙ୍କ ଉପନ୍ୟାସର ବର୍ଣ୍ଣିତ ସମାଜ । ସେ ଜୀବନକୁ ସୁନ୍ଦର ଓ ମଧୁର କରିବା ପାଇଁ ସ୍ରଷ୍ଟାଭାବରେ ବ୍ୟାକୁଳ ହୋଇଉଠିଥିଲେ । ଚରିତ୍ରଚିତ୍ରଣ ତାଙ୍କ ଉପନ୍ୟାସର ଅନ୍ୟ ଏକ ବୈଚିତ୍ର୍ୟ । ସମାଜର ନିଷ୍ଠୁର ତାଡ଼ନାରେ ଆମର ପାରିବାରିକ ଜୀବନ ଯେତେବେଳେ ଛିନ୍ନଭିନ୍ନ ହୋଇଯାଉଛି, ସେତେବେଳେ ବ୍ୟକ୍ତି ତାର ଜୀବନରେ ଆଶ୍ରୟଶୂନ୍ୟ ହୋଇ ଯାଉଛି । ଯେଉଁଠାରେ ଦୁଃଖୀ ଓ ଦରିଦ୍ର ପାଇଁ ସହାନୁଭୂତି ନାହିଁ, ସେଠାରେ ଔପନାସିକର ତୀବ୍ର ପ୍ରତିକ୍ରିୟା ଅବଶ୍ୟମ୍ଭାବୀ । ତେଣୁ ଶରତ୍‌ଚନ୍ଦ୍ର ନରନାରୀଙ୍କର ହୃଦୟର ପ୍ରକୃତ ଆବେଗ ତାଙ୍କ ଉପନ୍ୟାସରେ ପ୍ରତିଫଳିତ କରାଇ ପାରିଛନ୍ତି । ସମାଜର ଅବହେଳିତ ଚରିତ୍ର ପାଇଁ ତାଙ୍କର ଅଶେଷ ସହାନୁଭୂତି ଥିଲା । ଜୀବନର ଗଭୀର ଦରଦ ଓ ଖେଦ ତାଙ୍କ ସ୍ରଷ୍ଟା ପ୍ରାଣରେ ଆନ୍ତର ବିଷାଦ ଓ ଅନୁତାପ ତୋଳିଥିଲା । ଶରତ୍‌ଚନ୍ଦ୍ରଙ୍କ ଉପନ୍ୟାସଗୁଡ଼ିକ ହେଲା 'ବଡ଼ଦିଦି' (୧୯୧୩), 'ବିନ୍ଦୁର ଛେଲେ' (୧୯୧୪), 'ପଣ୍ଡିତ ମଶାଇ' (୧୯୧୪), 'ବିରାଜ ବୋଉ' (୧୯୧୪), 'ପରିଣୀତା' (୧୯୧୪), 'ମେଜଦିଦି' (୧୯୧୫), 'ଚନ୍ଦ୍ରନାଥ' (୧୯୧୬), 'ଅରକ୍ଷଣୀୟା' (୧୯୧୬), 'ବୈକୁଣ୍ଠେର ଉଇଲ' (୧୯୧୬), 'ପଲ୍ଲୀସମାଜ' (୧୯୧୬), 'ଦେବଦାସ' (୧୯୧୭), 'ଚରିତ୍ରହୀନ' (୧୯୧୭), 'କାଶୀନାଥ' (୧୯୧୭), ନିଷ୍କୃତି (୧୯୧୭, 'ଗୃହଦାହ' (୧୯୨୦), 'ଛବି' (୧୯୨୦), 'ଦେନା ପାଉଣା' (୧୯୨୩), 'ଦତ୍ତା' (୧୯୨୪), 'ନବବିଧାନ' (୧୯୨୪), 'ପଥେର ଦାବୀ', 'ଶ୍ରୀକାନ୍ତ', 'ଶେଷ ପ୍ରଶ୍ନ', 'ହରିଲକ୍ଷ୍ମୀ', ଓ 'ଶେଷେର ପରିଚୟ' ।

ଶରତ୍‌ଚନ୍ଦ୍ରଙ୍କ ଉପନ୍ୟାସର କୃତିତ୍ୱ ହେଉଛି, ନାରୀଚରିତ୍ର ଚିତ୍ରଣ କରିବାରେ ତାଙ୍କର ଅସାମାନ୍ୟ ଦକ୍ଷତା ।

## ସ୍ୱାଧୀନତା ପରବର୍ତ୍ତୀ ବଙ୍ଗଳା ଉପନ୍ୟାସ

ବୃହତ୍ତର ଜୀବନର ପରିପ୍ରକାଶ ବିଶ୍ୱକବି ରବୀନ୍ଦ୍ରନାଥଙ୍କ ସାହିତ୍ୟସୃଷ୍ଟିରେ ପ୍ରତିଫଳିତ ହୋଇଥିଲା । ବଙ୍ଗପ୍ରଦେଶ ଗତ ଅର୍ଦ୍ଧଶତାବ୍ଦୀ ଧରି ରାଜନୈତିକ ଅଶାନ୍ତି ଓ ଅସ୍ଥିରତା ମଧ୍ୟରେ ଗତି କରିଛି । ଏତାଦୃଶ ଅସ୍ଥିରତା ମଧ୍ୟରେ ଜୀବନର ମୂଲ୍ୟବୋଧ ମଧ୍ୟ ପରିବର୍ତ୍ତିତ ହେଉଛି । ଦୁଇଗୋଟି ମହାଯୁଦ୍ଧ, ଜାତୀୟ ମୁକ୍ତିସଂଗ୍ରାମ, ୧୯୪୩ର ବଙ୍ଗଳା ଦୁର୍ଭିକ୍ଷ, ନୂଆଖାଲିର ସାମ୍ପ୍ରଦାୟିକ ଦଙ୍ଗା, ମାର୍କସ ଓ ଫ୍ରଏଡ଼ଙ୍କ ଜୀବନ ଦର୍ଶନର ପ୍ରଭାବ, ବଙ୍ଗ ବିଚ୍ଛେଦ—ଏହି ଘଟଣାବଳୀ ବଙ୍ଗଳା କଥାସାହିତ୍ୟର ଆଙ୍ଗିକ ଓ ରୂପ ପୁନଃ ପୁନଃ ପ୍ରବର୍ତ୍ତିତ ହେବା ପାଇଁ ସାହାଯ୍ୟ କରିଥିଲା । କଲିକତା ମହାନଗରୀ ଥିଲା ରାଜନୈତିକ ଓ ସାମାଜିକ ବିପ୍ଳବର କେନ୍ଦ୍ରସ୍ଥଳୀ । ସୁତରାଂ ଏହି ସମସ୍ତ ପ୍ରଭାବ ବଙ୍ଗଳା ଉପନ୍ୟାସରେ ପତିତ ହେବା ସ୍ୱାଭାବିକ । ୧୯୨୩ ମସିହା

ବଙ୍ଗଳା ଉପନ୍ୟାସର ଇତିହାସରେ ଏକ ସ୍ମରଣୀୟ ସମ୍ବତ୍ସର । ଗୋକୁଳଚନ୍ଦ୍ର ନାଗ୍‌ଙ୍କର ସମ୍ପାଦକତ୍ୱରେ ଏହି ବର୍ଷ 'କଲ୍ଲୋଳ' ପତ୍ରିକାର ପ୍ରକାଶନ ଆରମ୍ଭ ହୋଇଥିଲା । ଆଧୁନିକ ବଙ୍ଗଳା ଉପନ୍ୟାସ ଓ କଥାଶିଳ୍ପର ପ୍ରକୃତ ପ୍ରେରଣାଦାତା ହେଉଛି, 'କଲ୍ଲୋଳ' ପତ୍ରିକା । ଏହି ପତ୍ରିକା ପୂର୍ବରୁ 'ଭାରତୀ' ଓ 'ସବୁଜ ପତ୍ର' ନାମକ ଦୁଇଗୋଟି ପତ୍ରିକା ଉପନ୍ୟାସ ଓ କ୍ଷୁଦ୍ରଗଳ୍ପର କ୍ଷେତ୍ର ପ୍ରସ୍ତୁତ କରିସାରିଥିଲେ । ନୂତନ ଔପନ୍ୟାସିକମାନଙ୍କର ପ୍ରଧାନ ମନ୍ତ୍ର ହେଲା ବାସ୍ତବତା ଓ ପ୍ରଖର ବୌଦ୍ଧିକତା । ପ୍ରମଥ ଚୌଧୁରୀ 'ସବୁଜପତ୍ର'ର ସମ୍ପାଦକ ଥିଲେ । 'କଲ୍ଲୋଳ' ପୂର୍ବରୁ ବଙ୍ଗଳା ଉପନ୍ୟାସରେ ନରେଶ ସେନ୍‌ଗୁପ୍ତ ପ୍ରଥମେ ଯୌନ ସମସ୍ୟା ଉତ୍ଥାପନ କରିଥିଲେ । 'କଲ୍ଲୋଳ' ଆଧୁନିକ ବଙ୍ଗଳା ଉପନ୍ୟାସର ପ୍ରବର୍ତ୍ତକ ହେଲେହେଁ, ପରବର୍ତ୍ତୀକାଳର ବହୁ ପ୍ରସିଦ୍ଧ ଔପନ୍ୟାସିକ 'କଲ୍ଲୋଳ ଗୋଷ୍ଠୀ' ଭୁକ୍ତ ନଥିଲେ । ସେହିପରି ଔପନ୍ୟାସିକ ହେଉଛନ୍ତି, ତାରାଶଙ୍କର ବନ୍ଦ୍ୟୋପାଧ୍ୟାୟ, ବିଭୂତିଭୂଷଣ ବନ୍ଦୋପାଧ୍ୟାୟ, ମାଣିକ ବନ୍ଦୋପାଧ୍ୟାୟ, ପ୍ରେମେନ୍ଦ୍ର ମିତ୍ର, ଅଚନ୍ତ୍ୟ ସେନ୍‌ଗୁପ୍ତ, ବୁଦ୍ଧଦେବ ବସୁ, ଶୈଳଜାନନ୍ଦ ମୁଖୋପାଧ୍ୟାୟ । ତେଣୁ 'କଲ୍ଲୋଳ' ପତ୍ରିକା ଉପନ୍ୟାସ ଧାରାର ଏକ ଜଳସ୍ପ ସଙ୍କେତ ବୋଲି ଗ୍ରହଣ କରିବାକୁ ହେବ । ଆଧୁନିକ ସମାଜର ସ୍ରୋତ ସହିତ ଏହି ଔପନ୍ୟାସିକମାନେ ନିଜକୁ ମିଳାଇ ନେଇ ପାରିଛନ୍ତି । ବିଶେଷତଃ, ୧୯୪୦ ମସିହା ପରେ ବଙ୍ଗଳା ଉପନ୍ୟାସରେ ପରୀକ୍ଷାନିରୀକ୍ଷାର ସୀମା ନାହିଁ । ସାମାଜିକ ସଂଘର୍ଷ ଓ ସାମାଜିକ ପରିବର୍ତ୍ତନ ନୂତନ ଉପନ୍ୟାସର ପ୍ରଧାନ ଆକର୍ଷଣ । ପରିବର୍ତ୍ତିତ ମୂଲ୍ୟବୋଧ ଏହି ଉପନ୍ୟାସମାନଙ୍କରେ ବିଶେଷ ପ୍ରତିଫଳିତ । ଆଧୁନିକ ଜୀବନ ସମ୍ପର୍କରେ ସଚେତନତା ଓ ଆଧୁନିକ ଜୀବନର ବିଭିନ୍ନ ସମସ୍ୟାର ବିଶ୍ଳେଷଣ ଔପନ୍ୟାସିକମାନଙ୍କୁ ବିଶେଷ ଆକୃଷ୍ଟ କରିଅଛି । ସ୍ୱାଧୀନତା-ପରବର୍ତ୍ତୀ ଯୁଗରେ ବଙ୍ଗଳା ଉପନ୍ୟାସ ଆହୁରି ଗୁଣାତ୍ମକ ଦୃଷ୍ଟିରେ ସମ୍ପ୍ରସାରିତ ହୋଇଥିଲା । ଆଶାବାଦ ଓ ନୈରାଶ୍ୟବାଦ ଏହି ଉପନ୍ୟାସମାନଙ୍କରେ ପରସ୍ପର ବିରୋଧୀ ଅଭିମୁଖ୍ୟ ନେଇ ପ୍ରତିଫଳିତ । ଔପନ୍ୟାସିକର ସ୍ୱପ୍ନ ଓ ଆଦର୍ଶ ପ୍ରାଚୀନ ସମାଜର ଗଣ୍ଡି ମଧ୍ୟରେ ଆଜି ଆବଦ୍ଧ ନୁହେଁ । ସେ ସମଗ୍ର ବିଶ୍ୱଜୀବନ ସହିତ ତାଳ ଦେଇ ଚାଲିବାକୁ ଚାହେଁ । କ୍ଷୟ, ଧ୍ୱଂସ ଓ ଅସ୍ଥିରତା ଆଜି ବ୍ୟକ୍ତିକୁ ବିଚଳିତ କରିଅଛି । ସେହି ବ୍ୟକ୍ତି ହିଁ ଆଜି ଉପନ୍ୟାସର କେନ୍ଦ୍ରବିନ୍ଦୁ । ବୃହତ୍ତର ଜୀବନ ପାଇଁ ବ୍ୟାକୁଳତା ତାରାଶଙ୍କରଙ୍କର 'ଧାତ୍ରୀ ଦେବତା', 'ଗଣ ଦେବତା' ଓ 'ସପ୍ତପଦୀ' ଉପନ୍ୟାସରେ ପ୍ରତିଫଳିତ । ଅନ୍ନଦାଶଙ୍କର ରାୟଙ୍କର 'ସତ୍ୟାସତ୍ୟ', ବନ୍‌ଫୁଲ୍‌ଙ୍କର 'ଦୁଇ ରଥ', ନାରାୟଣ ଗାଙ୍ଗୁଲିଙ୍କର 'ଉପନିବେଶ' ପ୍ରଭୃତି ଉପନ୍ୟାସରେ ଅତ୍ୟାଧୁନିକ ଜୀବନର ଚିତ୍ର ଦେଖିବାକୁ ମିଳେ । ବିଖ୍ୟାତ ଔପନ୍ୟାସିକ ପ୍ରମଥନାଥ ବିଶିଙ୍କର 'କେରି ସାହେବର ମୁନ୍‌ସୀ', ବିମଳମିତ୍ରଙ୍କର

'ସାହେବ ବିବି ଗୋଲାମ', ତାରାଶଙ୍କରଙ୍କର 'କାର୍ତ୍ତିହାଟେର୍ କରଚା', ମହାଶ୍ୱେତା ଭଟ୍ଟାଚାର୍ଯ୍ୟଙ୍କର 'ନଟୀ' ପ୍ରଭୃତି ବିଶିଷ୍ଟ ଉପନ୍ୟାସଗୁଡ଼ିକ କ୍ରମଶଃ ପାଠକମାନଙ୍କ ସମକ୍ଷରେ ଏକ ନୂତନ ଦିଗନ୍ତ ଉଦ୍‌ଘାଟନ କରୁଅଛି । ଗତ ୨୫ ବର୍ଷ ମଧ୍ୟରେ ଲେଖାଯାଇଥିବା ବଙ୍ଗଳା ଉପନ୍ୟାସଗୁଡ଼ିକ ମଧ୍ୟରେ ତାରାଶଙ୍କରଙ୍କର 'ରାଧା', 'ବିଚାରକ', ସୁବୋଧ ଘୋଷଙ୍କର 'ଶତକିୟା', 'ତିଲାମାଧବୀ', ପ୍ରମଥ ବିଶିଙ୍କର 'କେରି ସାହେବ୍‌ର ମୁନ୍‌ସୀ', ସନ୍ତୋଷ ଘୋଷଙ୍କର 'ମୁଖେର୍ ରେଖା', ସତୀନାଥ ଭାଦୁଡ଼ିଙ୍କର 'ଢୋଣଚରିତମାନସ', ନରେନ ମିତ୍ରଙ୍କର 'ଚେହ୍ନାମହଲ' ଓ 'ତନ୍ଦ୍ରନ୍ ତନ୍ ରାତ୍ରୀ', ରାମପଦ ଚୌଧୁରୀଙ୍କର 'ବନପଲାସୀର ପଦାବଲୀ', ନାରାୟଣ ଗାଙ୍ଗୁଲିଙ୍କର 'ବିଦୂଷକ', ଦୀପକ ଚୌଧୁରୀଙ୍କର 'ଲଳିତା ପ୍ରସଙ୍ଗ', ବନଫୁଲ୍‌ଙ୍କର 'ହାଟେବଜାରେ', 'ନିବର୍ତ୍ତି', ସନତ୍ ବାନାର୍ଜୀଙ୍କର 'ଲଳିତା ବିଭାସ', ଜରାସନ୍ଧଙ୍କର 'ତାମ୍‌ସୀ', 'ମସୀରେଖା' ଓ 'ଲୌହ କପାଟ', ସମରେଶ ବସୁଙ୍କର 'ଶେଷ ଦରବାର', 'ସୌଦାଗର', ପ୍ରେମେନ୍ଦ୍ର ମିତ୍ରଙ୍କର 'ପ୍ରତିଧ୍ୱନି ଫେରେ', ବିମଲ କରଙ୍କର 'ନତୁନ ହାଓ୍ୱା', 'ଏଇ ଦେହ ଓ ଅନ୍ୟ ମୁଖ', ଗୁଣକ୍ୟ ସେନଙ୍କର 'ସେ ନାହିଁ ସେ ନାହିଁ'—ଏହିସବୁ ଉପନ୍ୟାସରେ ବଙ୍ଗସମାଜର ବିଭିନ୍ନ ସମସ୍ୟାବହୁଳ ଚିତ୍ର ଦେଖିବାକୁ ମିଳେ । କଲିକତା ମହାନଗରୀ ଆଧୁନିକ ଜନମାନସର ପ୍ରକୃତ ପ୍ରତୀକ । ଶରତ୍‌ଚନ୍ଦ୍ରଙ୍କ ଉପନ୍ୟାସରେ ଆଧୁନିକ ସମାଜର ଯେଉଁ ଚିତ୍ର ଦେଖିବାକୁ ମିଳେ ଓ ତାରାଶଙ୍କର, ବିଭୂତିଭୂଷଣ ଓ ମାଣିକ ବନ୍ଦୋପାଧ୍ୟାୟଙ୍କ ଉପନ୍ୟାସରେ ଯେଉଁ ଚିତ୍ର ଦେଖିବାକୁ ମିଳେ, ତାହା ମଧ୍ୟ ସମ୍ପୂର୍ଣ୍ଣଭାବରେ ଆଧୁନିକ ।

ନାରାୟଣ ଗଙ୍ଗୋପାଧ୍ୟାୟଙ୍କର 'ନିର୍ଜନ ଶିଖରେ' ମଧ୍ୟବିତ୍ତଶ୍ରେଣୀର ବିଶ୍ୱସ୍ତ ଚିତ୍ର । ଏଥିରେ ବ୍ୟକ୍ତିଗତ ସ୍ୱାର୍ଥର ସଙ୍ଘର୍ଷ ସହିତ ବ୍ୟକ୍ତି ଅହମିକା ପ୍ରତିଫଳିତ । ଅଧିକାଂଶ ଉପନ୍ୟାସରେ କେବଳ ନ୍ୟସ୍ତସ୍ୱାର୍ଥ ଭୋଗଭିତ୍ତିକ ପାରିବାରିକ ଜୀବନଯାପନ ପାଇଁ ବ୍ୟସ୍ତତା ଏବଂ ବ୍ୟାକୁଳତା ହିଁ ସ୍ପଷ୍ଟ । ମଧ୍ୟବିତ୍ତଶ୍ରେଣୀୟ ବିବିଧ ଜୀବନଚିତ୍ର ଅତ୍ୟାଧୁନିକ ଉପନ୍ୟାସର ପ୍ରଧାନ ପ୍ରତିପାଦିତ କଥାବସ୍ତୁ । ଉଦାହରଣ-ସ୍ୱରୂପ, ନରେନ୍ଦ୍ର ମିତ୍ରଙ୍କର 'ଛେନା ମହଲ', 'ତନ୍ଦ୍ରନ୍ ତନତାନାଇ', ଜ୍ୟୋତିନ୍ଦ୍ର ନନ୍ଦୀଙ୍କର 'ବଡ଼ୋ ଘରର ଏକ ଉତ୍ଥାନ' । ସମାଜଧର୍ମୀ ବାସ୍ତବତାର ପରିପ୍ରେକ୍ଷୀରେ କେତେକ ଔପନ୍ୟାସିକ ମାନବ ଅନ୍ତରାତ୍ମାର ଗୂଢ଼ ରହସ୍ୟ ଉଦ୍‌ଘାଟନ କରିବାରେ ଚେଷ୍ଟିତ । ଏତାଦୃଶ ଅନୁସନ୍ଧାନ କେବଳ ଆଧ୍ୟାତ୍ମିକତାଧର୍ମୀ । ଏହି ଦୃଷ୍ଟିକୋଣ ଅମିୟଭୂଷଣଙ୍କର 'Freedom Island', କମଲ ମଜୁମଦାରଙ୍କର 'ଅନ୍ତର ଜଳି ଯାତ୍ରା'ରେ ପ୍ରତିଫଳିତ । ସନ୍ତୋଷ କୁମାର ଘୋଷଙ୍କର 'ଶେଷ ନମସ୍କାର' ସମରେଶ ବସୁଙ୍କର 'ବିବର', 'ପ୍ରଜାପତି', 'ପାତକ' ଚରିତ୍ରୋପନ୍ୟାସ । ଅତୀତ ପ୍ରତି ଗଭୀର ଆସକ୍ତି କେତେକ ଉପନ୍ୟାସରେ

*

ପ୍ରତିଫଳିତ, ଯଥା : ପ୍ରଫୁଲ୍ଲ ରାୟଙ୍କ ଲିଖିତ 'କେୟା ପାତାର ନଉକା' ଏବଂ ଅତନ ବନ୍ଦୋପାଧ୍ୟାୟଙ୍କର 'ନୀଲ୍ କଥା ପକ୍ଷୀର ଖୋଁଜେ' ସମସାମୟିକ ଜୀବନର ଜ୍ୱାଳା ଏବଂ ଯନ୍ତ୍ରଣା, ସମସ୍ୟା ଏବଂ ଗ୍ଲାନି ମଧ୍ୟ ଭାବପ୍ରବଣ ଔପନ୍ୟାସିକମାନଙ୍କର ଲେଖନୀରୁ ବାଦ୍ ପଡ଼ିନାହିଁ । ସେଥିପାଇଁ ଆଧୁନିକ ଯୁବ-ଅଶାନ୍ତି, ଯୁବ-ବିକ୍ଷୋଭ ବିମଳ କର, ରମାପଦ ଚୌଧୁରୀ ଏବଂ ଗୌରକିଶୋର ଘୋଷଙ୍କ ଲିଖିତ ଯଥାକ୍ରମେ 'ଯଦୁବଂଶୀ', 'ଏଖନଇ' 'ତଲିୟା ଜାବାର ଆଗେ' ଉପନ୍ୟାସ-ଗୁଡ଼ିକରେ ପ୍ରତିଫଳିତ । ସନ୍ତୋଷକୁମାର ଘୋଷଙ୍କ ଉପନ୍ୟାସ 'ସମୟ ଆମାର ସମୟ' ସାଂପ୍ରତିକ ସ୍ଥିତିର ଏକ ତାର୍କିକ୍ ଚିତ୍ର । ବ୍ୟକ୍ତି ଉପରେ ପରିସ୍ଥିତି ବିରୋଧରେ ସ୍ୱର ଉତ୍ତୋଳନ କରିନପାରି ସମୟର ବଶତା ସ୍ୱୀକାର କରେ, ତାହାର ନିର୍ମମ କାହାଣୀ ଏହି ଉପନ୍ୟାସରେ ବର୍ଣ୍ଣିତ । ନବାଗତ ଯୁବ ଔପନ୍ୟାସିକମାନଙ୍କ ମଧ୍ୟରେ ଶୀର୍ଷେନ୍ଦୁ ମୁଖୋପାଧ୍ୟାୟ, ସୁନୀଲ ଗଙ୍ଗୋପାଧ୍ୟାୟ, ଶ୍ୟାମଲ ଗଙ୍ଗୋପାଧ୍ୟାୟ, ଦିବେନ୍ଦୁ ପାଲିତଙ୍କ ନାମ ଉଲ୍ଲେଖଯୋଗ୍ୟ । ସୁନୀଲ ଗଙ୍ଗୋପାଧ୍ୟାୟଙ୍କର 'ସରଳ ସତ୍ୟ' 'ଆତ୍ମପ୍ରକାଶ' ଏବଂ ଶ୍ୟାମଲ ଗଙ୍ଗୋପାଧ୍ୟାୟଙ୍କର 'କୁବେର୍‌ର ବିଷୟ ଆଶୟ' ମୋତି ନନ୍ଦୀଙ୍କର 'ସୁକ ଏ ବି ଦୁଃଖେର୍ ଜନ୍ୟ', ଶୀର୍ଷେନ୍ଦୁ ମୁଖୋପାଧ୍ୟାୟଙ୍କର 'ଘନକୋ' 'ପରାପର' ଏବଂ ସୟଦ୍ ମୁସ୍ତାଫା ସିରାଜଙ୍କର 'ନିଷିଦ୍ଧ ପ୍ରାନ୍ତର' ଆଧୁନିକ ଜୀବନଧାରା ପ୍ରତିଫଳିତ କରିପାରିଛି ।

## ନାଟକ

ନାଟକ—ଉନବିଂଶ ଶତାବ୍ଦୀର ମଧ୍ୟଭାଗରେ ବଙ୍ଗଳାରେ ଆଧୁନିକ ଧରଣର ନାଟକ ରଚନା । ରଙ୍ଗମଞ୍ଚ ପ୍ରତିଷ୍ଠା ପୂର୍ବରୁ ପ୍ରାଚୀନକାଳରେ ବଙ୍ଗ ଦେଶରେ ଏକପ୍ରକାର ନାଟକ ପ୍ରଚଳିତ ଥିଲା । ମଧ୍ୟଯୁଗରେ ଅଷ୍ଟାଦଶ ଶତାବ୍ଦୀ ପର୍ଯ୍ୟନ୍ତ ନାଟ୍ୟାଭିନୟ ପ୍ରଚଳିତ ଥିଲା । ଏହା ପ୍ରାୟ ଚୈତନ୍ୟଙ୍କ ସମୟର କଥା । ଅଷ୍ଟାଦଶ ଶତାବ୍ଦୀ ପରେ ବଙ୍ଗ ଦେଶରେ ରାଜନୈତିକ ଅସ୍ଥିରତା, ସାମାଜିକ, ଅର୍ଥନୈତିକ ଏବଂ ସାଂସ୍କୃତିକ ଦୁର୍ବଳତା ପ୍ରକାଶ ପାଇଥିଲା । ପଲାସୀ ଯୁଦ୍ଧର ବିପର୍ଯ୍ୟୟ, ଦେଶର ସାଂସ୍କୃତିକ ଜୀବନରେ ଥିଲା ଏକ ଦାରୁଣ ଘଟଣା । ଭାରତଚନ୍ଦ୍ରଙ୍କଠାରୁ ଅଷ୍ଟାଦଶ ଶତାବ୍ଦୀର ଆବିର୍ଭାବ ପର୍ଯ୍ୟନ୍ତ ବଙ୍ଗସାହିତ୍ୟ କେବଳ କେତେକ କବିଗାନ, ପାଠଶୃଲୀଗାନ, ମାଲସୀଗାନ ମଧ୍ୟରେ ସୀମିତ ଥିଲା । ପଲ୍ଲୀ-ବୈଚିତ୍ର୍ୟପ୍ରଧାନ ଜୀବନଧାରାରେ ନୂତନତା କ୍ରମଶଃ ପ୍ରବେଶ କରିଥିଲା । ଫଳରେ ଜନସାଧାରଣଙ୍କ ଜୀବନରେ ରସାସ୍ୱାଦନର ଏକମାତ୍ର ମାଧ୍ୟମ ଥିଲା ପଲ୍ଲୀ-କୈନ୍ଦ୍ରିକ କବିଗାନ, ଯାତ୍ରା, ପାଠଶୃଲୀଗାନ ପ୍ରଭୃତି ।

'ଯାତ୍ରା' ଅର୍ଥାତ୍ ଯାତ୍ରାଭିନୟ ପ୍ରାଚୀନ ବଙ୍ଗଳା ଗ୍ରାମ୍ୟ ସମାଜରେ ଏକ ପ୍ରଧାନ ନାଟକୀୟ ସଂସ୍ଥା ଥିବାର ଜଣାଯାଏ । ଏହି ଯାତ୍ରା ଓ ଯାତ୍ରାଭିନୟର ଉଦ୍ଦେଶ୍ୟ ଥିଲା—ଦେବଦେବୀଙ୍କ ମହିମାଗାନ ଓ ପ୍ରଶସ୍ତି ବର୍ଣ୍ଣନା । ରାମାୟଣ, ମହାଭାରତ, ଭାଗବତ ପ୍ରଭୃତିରୁ କାହାଣୀ ସଂଗ୍ରହ କରି ଯାତ୍ରାଭିନୟ ପ୍ରସ୍ତୁତ ହେଉଥିଲା । ନିଜେ ଚୈତନ୍ୟ ଦେବ ଭକ୍ତମାନଙ୍କ ସହିତ କୃଷ୍ଣଲୀଳା ଅଭିନୟ କରିଥିଲେ ।

'ପାଠଗୃହୀଗାନ' ଖୁବ୍ ପ୍ରାଚୀନ । ବହୁବିଧ ବାଦ୍ୟଯନ୍ତ୍ର ସାହାଯ୍ୟରେ 'ପାଠଗୃହୀଗାନ' ଗାନ କରାଯାଏ । ଯାତ୍ରାଗାନ ଉପରେ ଏହି ପାଞ୍ଚାଳୀର ପ୍ରଭାବ ମଧ୍ୟ ପଡ଼ିଥିଲା । ପାଠଗୃହୀଗାନ-ପ୍ରଣେତାଙ୍କ ମଧ୍ୟରେ ଦାଶରଥି ରାୟ (୧୮୦୪-୧୮୫୭) ଉଚ୍ଚକୋଟୀର କବି ଥିଲେ । ତାଙ୍କ ରଚନା ମଧ୍ୟରେ 'ମାନଭଞ୍ଜନ', 'ଦକ୍ଷ ଯଜ୍ଞ', 'ବିଧବା ବିବାହ' ପ୍ରଧାନ ।

ମଧ୍ୟଯୁଗର ଶେଷଠାରୁ 'ମାଲସୀଗାନ' ରଚିତ ହୋଇଥିଲା । ରାମପ୍ରସାଦ ଏତାଦୃଶ ବହୁ ଗାନ ରଚନା କରିଥିଲେ । ସେହିପରି ଆଉ ଏକ ଗାନର ନାମ ହେଉଛି—'ଆଖଡ଼ାଗାନ' । ଅଷ୍ଟାଦଶ ଶତାବ୍ଦୀର ଶେଷ ଆଡ଼କୁ ଏବଂ ଊନବିଂଶ ଶତାବ୍ଦୀର ପ୍ରାରମ୍ଭରେ 'କବିଗାନ' ସଂସ୍ଥା ପ୍ରଚଳିତ ହୋଇଥିଲା । ଦୁଇଦଳ ମଧ୍ୟରେ ସାଧାରଣତଃ ଏହି ଗାନ ଆବଦ୍ଧ ଥିଲା । ଏହି ଗାନକାରୀ ଦଳ 'କବି ଓ ୟାଲା' ନାମରେ ପରିଚିତ । ଏହି ସଂସ୍ଥାକୁ 'କବି ଲଢ଼େଇ' ଆଖ୍ୟା ଦିଆଯାଇ-ପାରେ । କବିମାନଙ୍କର ଏହି ଗାନ ପ୍ରତିଯୋଗିତା ଜନସାଧାରଣଙ୍କର ବେଶ୍ ଉପଭୋଗ୍ୟ ହେଉଥିଲା । ଏତାଦୃଶ କବିମାନଙ୍କ ମଧ୍ୟରେ ଠାକୁର ସିଂହ, ହରେକୃଷ୍ଣ ଦୀଘାଡ଼ି, ନୃସିଂହ ଠାକୁର, ମୃଜା ହୁସେନ ଆଲି, କୃଷ୍ଣକାନ୍ତ ଚମାର, ନୀଳମଣି ପାଟନୀ, ଭୋଲା ମୟୂରା, ରଘୁ ତାନ୍ତି ପ୍ରମୁଖଙ୍କ ନାମ ଶୁଣାଯାଏ ।

କିନ୍ତୁ ସାଧାରଣତଃ ଊନବିଂଶ ଶତାବ୍ଦୀର ମଧ୍ୟଭାଗରୁ ହିଁ ବଂଗଳା ସାହିତ୍ୟରେ ଶିଳ୍ପଶୈଳୀସମ୍ପନ୍ନ ନାଟକର ଉତ୍ପତ୍ତି ହୋଇଛି ବୋଲି କୁହାଯାଇଥାଏ । ସେହି ଯୁଗରୁ ଏପର୍ଯ୍ୟନ୍ତ ଲେଖାଯାଇଥିବା ନାଟକଗୁଡ଼ିକୁ କଥାବସ୍ତୁ, ଶିଳ୍ପରୀତି ତଥା ଭାଷା ଦୃଷ୍ଟିରୁ ତିନଗୋଟି ପର୍ଯ୍ୟାୟରେ ବିଭକ୍ତ କରାଯାଏ ।

ଯଥା—(୧) ଆଦିମଯୁଗ, (୨) ମଧ୍ୟଯୁଗ, (୩) ଆଧୁନିକ-ଯୁଗ ।

କେତେକ ସମାଲୋଚକଙ୍କ ମତରେ ୧୮୫୨ ମସିହାରେ ପ୍ରକାଶିତ ତାରାଚରଣ ସିକଦାରଙ୍କ ପୌରାଣିକ ନାଟକ 'ଭଦ୍ରାର୍ଜ୍ଜୁନ' ହେଉଛି ପ୍ରଥମ ବଂଗଳା ନାଟକ । ତାହାର ଭାଷା ସଂସ୍କୃତ ପୀଡ଼ିତ ଏବଂ ରଚନା ଶିଳ୍ପ ତ୍ରୁଟିପୂର୍ଣ୍ଣ ।

୧୮୭୨ ମସିହା ଡିସେମ୍ବର ମାସର ଘଟଣା । ସେତେବେଳେ ବଙ୍ଗଳାର ପ୍ରଥମ ରଙ୍ଗମଞ୍ଚ ସ୍ଥାପିତ ହୋଇଥିଲା । ସେହି ରଙ୍ଗମଞ୍ଚ ସ୍ଥାପିତ ହେବା ଦିନଠାରୁ

ନାଟ୍ୟକାର ଗିରିଶ୍‌ଚନ୍ଦ୍ର ଘୋଷ ତାହା ସହିତ ସଂପୃକ୍ତ ଥିଲେ । ସେହି ବର୍ଷ ପ୍ରଥମ ବଙ୍ଗଳା ନାଟକ ରଙ୍ଗମଞ୍ଚରେ ଅଭିନୀତ ହୋଇଥିଲା । କିନ୍ତୁ ତତ୍ପୂର୍ବରୁ ଅର୍ଥାତ୍ ୧୮୫୨ଠାରୁ ୧୮୭୨ ମସିହା ପର୍ଯ୍ୟନ୍ତ ବଙ୍ଗଳା ନାଟକର ପ୍ରାକ୍‌ବିକାଶ ଯୁଗରେ ସଂସ୍କୃତ ଓ ଇଂରାଜୀ ଭାଷାରୁ ଅନୁବାଦ ନାଟ୍ୟସାହିତ୍ୟ ରଚନାକୁ ସାହାଯ୍ୟ କରିଥିଲା । ରାମନାରାୟଣ ତର୍କରତ୍ନ (୧୮୨୨-୧୮୮୬), ମାଇକେଲ ମଧୁସୂଦନ ଦତ୍ତ (୧୮୨୪-୧୮୭୩) ଓ ଦୀନବନ୍ଧୁ ମିତ୍ର (୧୮୨୯-୧୮୭୩) ପ୍ରଭୃତି ନାଟ୍ୟକାରଗଣ ଏ ଯୁଗର ମୌଳିକ ଲେଖକରୂପେ ପ୍ରତିଭାତ ହୁଅନ୍ତି । ତର୍କରତ୍ନଙ୍କ ରଚନା "କୁଲୀନକୁଳ-ସର୍ବସ୍ୱ ନାଟକ" ପ୍ରଥମ ବଙ୍ଗଳା ସାମାଜିକ ନାଟକ (୧୮୫୪) ଏବଂ ଏହା ବିଧିବଦ୍ଧ ନାଟକ ବୋଲି କୁହାଯାଏ ।

## ରାମନାରାୟଣ ତର୍କରତ୍ନ (୧୮୨୨-୧୮୮୬)

ବଙ୍ଗଳା ନାଟ୍ୟସାହିତ୍ୟରେ ଯେଉଁମାନେ ପ୍ରଥମେ ପୂର୍ଣ୍ଣାଙ୍ଗ ନାଟକ ଲେଖିବା ପାଇଁ ଯତ୍ନ କରିଥିଲେ, ସେମାନଙ୍କ ମଧ୍ୟରେ ରାମନାରାୟଣଙ୍କ ନାମ ସର୍ବ-ପ୍ରଥମେ ଉଲ୍ଲେଖଯୋଗ୍ୟ । ଊନବିଂଶ ଶତାବ୍ଦୀରେ ବଙ୍ଗଳାର ସାମାଜିକ ପରିବେଶ ଯେପରି ଥିଲା, ସେହି ଅବସ୍ଥାରେ ଯେଉଁମାନେ ସଂସ୍କାର ପ୍ରବର୍ତ୍ତନ ପାଇଁ ଆଗେଇ ଆସିଥିଲେ, ସେମାନଙ୍କ ମଧ୍ୟରେ ତର୍କରତ୍ନ ଅନ୍ୟତମ । ସେହି ସମୟର ସାମାଜିକ କୁସଂସ୍କାର ବିରୋଧରେ ପ୍ରବଳ ପ୍ରତିକ୍ରିୟା ସଦୃଶ ଲିଖିତ 'କୁଲୀନ କୂଳ-ସର୍ବସ୍ୱ ନାଟକ'ର କଥାବସ୍ତୁ ହେଉଛି—ତଦାନୀନ୍ତନ ସମାଜରେ କୁଲୀନ ବ୍ରାହ୍ମଣ ବାଳିକା-ମାନଙ୍କର କରୁଣ ଏବଂ ଅତ୍ୟାଚାରିତ ଜୀବନ-ଚିତ୍ର । ଜଣେ କୁଲୀନ ବ୍ରାହ୍ମଣ ଯୁବକ ସେତେବେଳେ ମନଇଚ୍ଛା ଏକାଧିକ ବାଳିକା ବିବାହ କରିପାରୁଥିଲା । ଏପରି ଯୁବକ ଇଚ୍ଛାନୁସାରେ ଅର୍ଥଦାନ କରୁଥିଲା ଏବଂ ବିବାହ କରିସାରିବା ପରେ ପୁଣି ଅନ୍ୟତ୍ର ଯାଇ ଆଉ ଥରେ ବିବାହ କରପାରୁଥିଲା । ଏପରି ଦୁଷ୍ଟ ଯୁବକକୁ ବିବାହ କରିବା ଛଡ଼ା କୌଣସି ବାଳିକାର ଗତ୍ୟନ୍ତର ନଥିଲା । ଏହି ନାଟକର ନାୟିକା ହେଉଛନ୍ତି ଚାରିଜଣ ଅବିବାହିତା ବାଳିକା । ସେମାନଙ୍କର ଦୁର୍ଗତି ନାଟକର ପ୍ରଧାନ ଆବେଦନ । ଜନୈକ ଜମିଦାର ଗୋଟିଏ ସାମାଜିକ ନାଟକ ପାଇଁ ପୁରସ୍କାର ଘୋଷଣା କରିଥିଲେ । ତର୍କରତ୍ନ ଏହି ନାଟକ ଲେଖି ପୁରସ୍କୃତ ହୋଇଥିଲେ ।

ସମୟର ପ୍ରତିକ୍ରିୟା ଓ ପ୍ରତିଧ୍ୱନି ତର୍କରତ୍ନ ଯେପରି ତାଙ୍କ ନାଟକରେ ପ୍ରତିଫଳନ କରାଇପାରିଥିଲେ । ତାଙ୍କର ପ୍ରହସନ-ଜାତୀୟ ଲେଖାରେ ମଧ୍ୟ ସମାଜର ଦୋଷଦୁର୍ବଳତା ବର୍ଣ୍ଣିତ ହୋଇଥିଲା । ତାଙ୍କର ପ୍ରହସନ 'ଉଭୟ ସଙ୍କଟ' (୧୮୬୯) ରେ ବହୁବିବାହ ବିରୁଦ୍ଧରେ ମତବ୍ୟକ୍ତ ହୋଇଥିଲା । ତାଙ୍କର 'ଚକ୍ଷୁଦାନ'

ନାଟକ ସେହି ସମୟର ଶିକ୍ଷିତ, କିନ୍ତୁ କୁରୁଚିପୂର୍ଣ୍ଣ ଯୁବକମାନଙ୍କ ବିରୁଦ୍ଧରେ ଉଦ୍ଦିଷ୍ଟ ଥିଲା । ସେହିପରି 'ଯେମନ କର୍ମ ତେମନ ଫଲ୍' ତାଙ୍କର ଅନ୍ୟ ଏକ ପ୍ରହସନ । ଏହା ସଙ୍ଗେ ସଙ୍ଗେ 'ବେଣୀସଂହାର' (୧୮୫୬) 'ରତ୍ନାବଳୀ' (୧୮୫୮), ଅଭିଜ୍ଞାନ ଶକୁନ୍ତଳା' (୧୮୬୦) 'ମାଳତୀ ମାଧବ' (୧୮୬୭) ପ୍ରଭୃତି ପୌରାଣିକ ନାଟକ ତାଙ୍କର କୃତିତ୍ୱ ।

ମାଇକେଲ ମଧୁସୂଦନ (୧୮୨୪-୧୮୭୩)

'ମେଘନାଦ ବଧ' ମହାକାବ୍ୟର ପ୍ରସିଦ୍ଧ କବି ମାଇକେଲ୍ ମଧୁସୂଦନ ଦତ୍ତ ନାଟକ ରଚନାରେ ମଧ୍ୟ ଅଗ୍ରଣୀ ଥିଲେ । ସେ ତାଙ୍କର ସାହିତ୍ୟିକ ଜୀବନର ପ୍ରଥମ ପର୍ଯ୍ୟାୟରେ ନାଟକ ଲେଖି ପରେ କାବ୍ୟକବିତା ପ୍ରତି ଆକୃଷ୍ଟ ହୋଇଥିଲେ । 'ଶର୍ମିଷ୍ଠା' (୧୮୫୯) ତାଙ୍କର ପ୍ରଥମ ନାଟକ ଅଟେ । ସେହି ନାଟକର ପ୍ରସ୍ତାବନା ଅଂଶରେ ସେ ପୂର୍ବ ନାଟକମାନଙ୍କରେ ଥିବା ତ୍ରୁଟି କଥା ସୂଚାଇଥିଲେ । ଏହା ପୂର୍ବରୁ ଲିଖିତ ବଙ୍ଗଳା ନାଟକମାନଙ୍କରେ ସଂସ୍କୃତର ପ୍ରଭାବ ବିଶେଷଭାବରେ ପଡ଼ୁଥିଲା । ସେ ନାଟକ ରଚନାରେ ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ନାଟ୍ୟଶୈଳୀର ସମନ୍ୱୟ ଘଟାଇଥିଲେ । ଏହି ପ୍ରସଙ୍ଗରେ ତାଙ୍କର ଶର୍ମିଷ୍ଠା ନାଟକ ଉଲ୍ଲେଖଯୋଗ୍ୟ । ନାଟକର ଗଳ୍ପାଂଶ ମହାଭାରତ ଅନ୍ତର୍ଗତ 'ଯଯାତି ଉପାଖ୍ୟାନ'ରୁ ଗୃହୀତ । କିନ୍ତୁ ନାଟକ ପରିବେଷଣରେ ସେ ସଂପୂର୍ଣ୍ଣ ନୂତନ ଦୃଷ୍ଟିଭଙ୍ଗୀ ପ୍ରଦର୍ଶନ କରିଥିଲେ । ତାଙ୍କର ଦ୍ୱିତୀୟ ନାଟକ 'ପଦ୍ମାବତୀ'ର ବିଷୟବସ୍ତୁ ପାଶ୍ଚାତ୍ୟ ସାହିତ୍ୟରୁ ଗୃହୀତ ହୋଇଥିଲା ପରି ମନେହୁଏ । ହୋମରଙ୍କର 'ଇଲିୟାଡ୍'ର ଟ୍ରୋଜାନ୍ ରାଜାଙ୍କର ପୁତ୍ର ଓ ନାରୀର ସୌନ୍ଦର୍ଯ୍ୟ—ଏହା ନାଟକରେ ସ୍ପଷ୍ଟଭାବରେ ପ୍ରତିଫଳିତ ହୋଇଛି । ନାଟକର ସଂଳାପରେ ଅମିତ୍ରାକ୍ଷର ଛନ୍ଦ ବ୍ୟବହୃତ । କବି ମଧୁସୂଦନ ପ୍ରଥମେ 'ତିଲୋତ୍ତମା ସମ୍ଭବ', କାବ୍ୟ ଏହି ଅମିତ୍ରାକ୍ଷର ଛନ୍ଦରେ ଲେଖିଥିଲେ । ରାଜପୁତ୍ର ଇତିହାସର ପୃଷ୍ଠଭୂମିରେ ଲିଖିତ ତାଙ୍କର 'କୃଷ୍ଣକୁମାରୀ' ନାଟକ (୧୮୬୧) ସାର୍ଥକତା ଲାଭ କରିଥିଲା । ଏହି ନାଟକରେ ଗ୍ରୀକ୍ ଟ୍ରାଜେଡ଼ିର ପ୍ରଭାବ ଦେଖିବାକୁ ମିଳେ । କୃଷ୍ଣକୁମାରୀ ବଙ୍ଗଳା ନାଟକର ପ୍ରଥମ ବିୟୋଗାନ୍ତକ ନାଟକ ବୋଲି କୁହାଯାଇଥାଏ । ମଧୁସୂଦନ ପ୍ରହସନ ମଧ୍ୟ ଲେଖିଥିଲେ । ତାଙ୍କର ଦୁଇ-ଗୋଟି ପ୍ରହସନ 'ଏକେଇକି ବଲେ ସଭ୍ୟତା' (୧୮୬୦) ଓ 'ବୁଢ଼ୋ ସାଲିକେର୍ ଘାଡ଼େ ରୌଁ'—ଏଥିରେ ସାମାଜିକ ବ୍ୟଙ୍ଗ ବିଦ୍ରୂପ ପ୍ରତିଫଳିତ । କେବଳ ସେତିକି ନୁହେଁ; ମଦ୍ୟପାନ, ଆଧୁନିକତା ନାମରେ ବର୍ବରତା, ଶିକ୍ଷିତ ଯୁବକମାନଙ୍କର ସଂସ୍କାର ନାମରେ ଅନ୍ଧାନୁସରଣ ତଥା ରକ୍ଷଣଶୀଳ ସମାଜର ଅନ୍ଧବିଶ୍ୱାସ ଏହି ଦୁଇଟି ପ୍ରହସନରେ ସ୍ଥାନ ପାଇଛି । ପରିଣତ ବୟସରେ ମଧୁସୂଦନ 'ମାୟା କାନନ' ନାମକ ଏକ ନାଟକ ମଧ୍ୟ ଲେଖିଥିଲେ ।

ସାଧାରଣ ଜୀବନର ସୁଖ-ଦୁଃଖ, ଆଶା-ନିରାଶା, ବାସ୍ତବ ଦୃଷ୍ଟିକୋଣରୁ ଯେଉଁ ନାଟ୍ୟକାର ନିଜ ନାଟକରେ ଚିତ୍ରଣ କରିଥିଲେ, ସେ ହେଉଛନ୍ତି— ମାଇକେଲ ମଧୁସୂଦନଙ୍କ ସମସାମୟିକ ଦୀନବନ୍ଧୁ ମିତ୍ର (୧୮୨୯-୧୮୭୩)। ସେ ସଂଖ୍ୟାଧିକ ନାଟକ ଲେଖି ବଂଗଳା ନାଟକର ଅଭିବୃଦ୍ଧି ସାଧନ କରିଥିଲେ। ତାଙ୍କର ଜୀବନ ନାନା ଅଭିଜ୍ଞତାରେ ପରିପୂର୍ଣ୍ଣ। ଅନ୍ନସଂସ୍ଥାନ ଓ ଚାକିରି ଅନୁସନ୍ଧାନରେ ସେ ଭିନ୍ନ ଭିନ୍ନ ସ୍ଥାନ ଭ୍ରମଣ କରି ବିଭିନ୍ନ ବ୍ୟକ୍ତି ଓ ସମାଜ ସଂପର୍କରେ ଅଭିଜ୍ଞତା ଅର୍ଜନ କରିଥିଲେ। ଦୀନବନ୍ଧୁ ମିତ୍ର ଜନସାଧାରଣଙ୍କ ସହିତ ଅକୁଣ୍ଠିତ ଚିତ୍ତରେ ମିଳାମିଶା କରୁଥିଲେ। ବାସ୍ତବ ଜୀବନ ସମ୍ପର୍କରେ ଯାହାର ଧାରଣା ଏପରି ଗଭୀର, ତାହାର ନାଟକ ସେହିପରି ଜୀବନଧର୍ମୀ ହେବା ସ୍ୱାଭାବିକ।

ତାଙ୍କର ପ୍ରଥମ ନାଟକ 'ନୀଳଦର୍ପଣ' ୧୮୬୦ ମସିହାରେ ରଚିତ ହୋଇଥିଲା। ଏହି ନାଟକରେ ଏକଦିଗରେ ଦରିଦ୍ର ନୀଳଚାଷୀ ଓ ଅନ୍ୟ ଦିଗରେ ନୀଳରାଜସ୍ୱ ଆଦାୟକାରୀ ଅତ୍ୟାଚାରୀ ଗୋରା ସାହେବ ଥିଲେ। ଉକ୍ତ ନାଟକ ଦେଶର ଭୌଗୋଳିକ ସୀମା ଅତିକ୍ରମ କରି ସୁଦୂର ବିଲାତରେ ଆନ୍ଦୋଳନର ସୂତ୍ରପାତ କରିଥିଲା। ଏହାର ଇଂରାଜୀ ଅନୁବାଦ କରିଥିଲେ ରେଭରେଣ୍ଡ୍ ଲଙ୍ଗ୍ ସାହେବ ଏବଂ ଏଥିପାଇଁ ତାଙ୍କୁ କାରାବରଣ କରିବାକୁ ପଡ଼ିଥିଲା। ଏଥିରୁ ଏହି ନାଟକର ରାଜନୈତିକ ପ୍ରଭାବ ସହଜରେ ଅନୁମେୟ। ଇଂରେଜ ରାଜତ୍ୱ ବିରୁଦ୍ଧରେ ଏହା ଏକ ପ୍ରତିବାଦସ୍ୱରୂପ ଥିଲା। ଏହି ନାଟକର ଚରିତ୍ର, ସଂଳାପ ଏବଂ ପରିବେଷଣ ସେତେବେଳେ ନାଟ୍ୟାମୋଦୀ ସମାଜରେ ବିଶେଷ ପ୍ରଭାବ ପକାଇଥିଲା। ତାଙ୍କର କତିପୟ ନାଟକ ହେଉଛି 'ସଧବାର ଏକାଦଶୀ' (୧୮୬୬), 'ଲୀଳାବତୀ (୧୮୬୭)', 'ବିୟେ ପାଗଲା ବୁଢ଼ା' (୧୮୬୬)', 'ଜାମାଇଁ ବାରିକ' (୧୮୭୨)।

'ସଧବାର ଏକାଦଶୀ' ନାଟକର ନିମଚାଁଦ ଚରିତ୍ର ଭଗ୍ନମନୋରଥ ଶିକ୍ଷିତ ବଂଗାଳୀ ଯୁବକର ନୈରାଶ୍ୟର ଚିତ୍ର। ବଂଗଳାର ରଙ୍ଗମଞ୍ଚ ଓ ନାଟ୍ୟଶାଳାର ଭିତ୍ତି ଦୃଢ଼ କରିବାରେ ଦୀନବନ୍ଧୁଙ୍କ ନାଟକ ସାହାଯ୍ୟ କରିଥିଲା। ତାଙ୍କର ଆଉ ଦୁଇଖଣ୍ଡି ନାଟକ ହେଉଛି—'ନବୀନ ତପସ୍ୱିନୀ' ଓ 'କମଲେ କାମିନୀ।' ଦୀନବନ୍ଧୁ ନାଟକର ପ୍ରଧାନ ଆକର୍ଷଣ ହେଉଛି—ସମସାମୟିକ ସମସ୍ୟାର ବିଶ୍ଳେଷଣ ଓ ଗଭୀର ରସବୋଧ। ବଂଗଳାର 'ନ୍ୟାସନାଲ ଥିଏଟର' ଦୀନବନ୍ଧୁଙ୍କର ବହୁ ନାଟକ ମଞ୍ଚସ୍ଥ କରିଥିଲେ।

ମନମୋହନ ବସୁ (୧୮୩୧-୧୯୧୨) ଏହି ସମୟରେ କେତେଗୋଟି ପୌରାଣିକ ନାଟକ ରଚନା କରିଥିଲେ। 'ରାମାଭିଷେକ ନାଟକ' (୧୮୬୭), 'ସତୀ ନାଟକ' (୧୮୭୩), 'ହରିଶ୍ଚନ୍ଦ୍ର ନାଟକ' (୧୮୭୫), 'ପାର୍ଥ ପରାଜୟ', 'ପ୍ରଣୟ ପରୀକ୍ଷା' (୧୮୬୯), ଆନନ୍ଦମୟ (୧୮୯୦), ନାଗାଶ୍ରମୀର ଅଭିନୟ (୧୮୭୮) ପ୍ରଭୃତି

ତାଙ୍କର ଶ୍ରେଷ୍ଠ ନାଟକ ଅଟେ । ଶେଷୋକ୍ତ ତନୋଟି ନାଟକ ସାମାଜିକ । ମନମୋହନ ବସୁ ନାଟକ ରଚନାରେ ପ୍ରାଚୀନପନ୍ଥୀ ଥିଲେ ।

ବଙ୍ଗଳା ନାଟକର ମଧ୍ୟଯୁଗ ୧୮୭୨ ମସିହାରୁ ସ୍ୱଦେଶୀ ଆନ୍ଦୋଳନ ସମୟ ପର୍ଯ୍ୟନ୍ତ ବିସ୍ତୃତ । ଏହି ଯୁଗରେ ବଙ୍ଗଳା ନାଟକର ପ୍ରକୃତ ବିକାଶ ଓ ବିବର୍ତ୍ତନ ଆରମ୍ଭ ହୋଇଥିଲା । ଗିରିଶ ଚନ୍ଦ୍ର ଘୋଷ, ଅମୃତଲାଲ ବୋଷ, ରାଜକୃଷ୍ଣ ରାୟ, ଅମରେନ୍ଦ୍ର ଦତ୍ତ ପ୍ରଭୃତ ନାଟ୍ୟକାରମାନେ ନିଜେ ରଙ୍ଗମଞ୍ଚରେ ଅଭିନୟ କରି ନାଟକର ଲୋକପ୍ରିୟତା ବୃଦ୍ଧି କରିଥିଲେ । ଖ୍ରୀ: ୧୮୭୦ ପରେ ବଙ୍ଗଳାର ରଙ୍ଗମଞ୍ଚ ଓ ନାଟକ ସୃଷ୍ଟି କ୍ଷେତ୍ରରେ ପରିବର୍ତ୍ତନ ଦେଖାଦେଇଥିଲା । ବଙ୍କିମଚନ୍ଦ୍ର ଚଟ୍ଟୋପାଧ୍ୟାୟ, ରମେଶଚନ୍ଦ୍ର ଦତ୍ତ ପ୍ରଭୃତଙ୍କର ଦୃଶ୍ୟକାବ୍ୟ; ମାଇକେଲ ମଧୁସୂଦନ ଦତ୍ତ, ହେମଚନ୍ଦ୍ର ବାନାର୍ଜୀ, ନବୀନଚନ୍ଦ୍ର ସେନ ପ୍ରଭୃତଙ୍କର ପୌରାଣିକ ନାଟକ ରଙ୍ଗମଞ୍ଚରେ ଅଭିନୀତ ହେଲା । ନାଟକ କ୍ରମଶଃ ପରିବେଷଣ ଓ ଉପସ୍ଥାପନାଗତ ନୈପୁଣ୍ୟ ହାସଲ କଲା । ଉପେନ୍ଦ୍ରନାଥ ଦାସ 'ଗ୍ରେଟ୍ ନ୍ୟାସନାଲ ଥିଏଟର' ସହିତ ସଂପୃକ୍ତ ଥିଲେ ଏବଂ ତାଙ୍କ ଉଦ୍ୟମରେ ବଙ୍ଗଳା ନାଟକ କ୍ରମେ ପ୍ରାଚୀନତା ପରିହାରପୂର୍ବକ ଆଧୁନିକତା ପ୍ରାପ୍ତ ହେଲା ।

ଗିରିଶ୍‌ଚନ୍ଦ୍ର ଘୋଷ (୧୮୪୪—୧୯୧୧) ବଙ୍ଗଳା ନାଟକର ଦ୍ୱିତୀୟ ପର୍ଯ୍ୟାୟର ସିଦ୍ଧହସ୍ତ ନାଟ୍ୟକାର ଅଟନ୍ତି । ଏହି ପର୍ଯ୍ୟାୟରେ ରଙ୍ଗମଞ୍ଚ, ନାଟକ ଓ ଅଭିନୟର ଗୁରୁତ୍ୱ ନାଟ୍ୟକାରଗଣ ଉପଲବ୍ଧି କରିଥିଲେ । ଗିରିଶଚନ୍ଦ୍ର ବଙ୍ଗଳା-ନାଟକ ତଥା ନାଟ୍ୟଶାଳାର ଯୁଗାନ୍ତର ଆଣିଥିଲେ ବୋଲି କୁହାଯାଏ । ନାଟକର ସାର୍ଥକତା ନିର୍ଭର କରେ ଅଭିନୟକଳା ଉପରେ । ଗିରିଶଚନ୍ଦ୍ରଙ୍କ ନାଟକର ତାହାହିଁ ଥିଲା ସାର୍ଥକତା ଓ ବୈଶିଷ୍ଟ୍ୟ । ବାସ୍ତବଜୀବନର ଚିତ୍ର ପରିବେଷଣ କରିବାରେ ସେ ଅଗ୍ରଣୀ ଥିଲେ । ରଙ୍ଗମଞ୍ଚର ଉପଯୋଗିତା ଅନୁଯାୟୀ ସେ ତାଙ୍କର ନାଟକ ରଚନା କରିଥିଲେ । ସେ ଉପଲବ୍ଧି କରିଥିଲେ ଯେ, ନାଟକ ସର୍ବଦା ଯୁଗୋପଯୋଗୀ ହେବା ଆବଶ୍ୟକ । କାରଣ, ନାଟକର ଲକ୍ଷ୍ୟ ହେଉଛି ଜନସାଧାରଣଙ୍କର ଜୀବନକୁ ସ୍ପର୍ଶ କରି ତାକୁ ପ୍ରଭାବିତ କରିବା । ନାଟ୍ୟକାରର ଏତାଦୃଶ ସଚେତନତା ପ୍ରଥମେ ତାଙ୍କର ନାଟକରେ ହିଁ ପ୍ରତଫଳିତ ହୋଇଥିଲା । ଏହାଙ୍କ ପୂର୍ବରୁ ଅଭିନୟ ଓ ରଙ୍ଗମଞ୍ଚ ବିଷୟରେ ବଙ୍ଗଳା ନାଟକ ଆଦୌ ଅବଗତ କରି ନଥିଲା । ରଙ୍ଗମଞ୍ଚ ଓ ନାଟ୍ୟଶାଳା ଜାତର ପ୍ରାଣସ୍ପନ୍ଦନ ଅଟେ । ଗିରିଶଚନ୍ଦ୍ରଙ୍କର ବିଭିନ୍ନ ନାଟକ; ଯଥା—ସାମାଜିକ, ଐତିହାସିକ, ପୌରାଣିକ, ଭକ୍ତିମୂଳକ ଓ ବ୍ୟଙ୍ଗମୂଳକ ନାଟକ ଏହାର ପ୍ରକୃଷ୍ଟ ପ୍ରମାଣ । ଉତ୍କୃଷ୍ଟ ଧରଣର ନାଟକ ଲେଖିବା ସଙ୍ଗେ ସଙ୍ଗେ ଅଭିନୟ ଓ ଅଭିନେତା ସୃଷ୍ଟି କରିବା ଦିଗରେ ମଧ୍ୟ ତାଙ୍କର ଦାନ ଅବିସ୍ମରଣୀୟ । ଦର୍ଶକମାନଙ୍କର ମନୋରଞ୍ଜନ ନିମନ୍ତେ ସେ

ନାଟ୍ୟକଳାକୁ ସାହିତ୍ୟରେ ପ୍ରୟୋଗ କରିଥିଲେ । ଏହାହିଁ ଥିଲା ତାଙ୍କର ମୌଳିକତା । ରସସୃଷ୍ଟି, ଚରିତ୍ରପ୍ରାଧାନ୍ୟ, ଭାଷାର ଉପଯୋଗିତା ପ୍ରଭୃତି ହେଉଛି ତାଙ୍କ ରଚିତ ନାଟକଗୁଡ଼ିକର ପ୍ରଧାନ ସମ୍ପଦ । ବିଭିନ୍ନ ଚରିତ୍ର ଅନୁଯାୟୀ ସେ ବିଭିନ୍ନ ଭାଷା ମଧ୍ୟ ନାଟକରେ ପ୍ରୟୋଗ କରୁଥିଲେ । ତାଙ୍କ ନାଟକର ସଂଖ୍ୟା ମଧ୍ୟ କିଛି କମ୍ ନୁହେଁ । ପୌରାଣିକ ସ୍ତରରୁ ସାମାଜିକ ସ୍ତର ପର୍ଯ୍ୟନ୍ତ ପ୍ରତ୍ୟେକ କ୍ଷେତ୍ରରେ ସେ ତାଙ୍କର ନାଟ୍ୟ-ପ୍ରତିଭାର ସ୍ୱାକ୍ଷର ଅଙ୍କନ କରିପାରିଛନ୍ତି । ତାଙ୍କର ନାଟକଗୁଡ଼ିକ ହେଲା—ଆନନ୍ଦ ରହୋ (୧୮୮୧), ରାବଣ ବଧ (୧୮୮୮), ସୀତାବନବାସ, ଅଭିମନ୍ୟୁବଧ, ଦକ୍ଷଯଜ୍ଞ, ସୀତାହରଣ, ଲକ୍ଷ୍ମଣ ବର୍ଜନ, ଜନା, ନଳଦମୟନ୍ତୀ—ଏସବୁ ପୌରାଣିକ ନାଟକ ।

ଚୈତନ୍ୟ ଲୀଳା (୧୮୮୫), ବିଲ୍ୱମଙ୍ଗଳ ଠାକୁର (୧୮୮୬), ବୁଦ୍ଧଦେବ ଚରିତ (୧୮୮୭), ଶଙ୍କରାଚାର୍ଯ୍ୟ ପ୍ରଭୃତି ଚରିତ୍ରାଶ୍ରିତ ନାଟକ ।

ପ୍ରଫୁଲ୍ଲ (୧୮୯୧), ବଳିଦାନ (୧୯୦୫) ସାମାଜିକ ନାଟକ ।

ସିରାଜଉଦ୍ଦୌଲ (୧୯୦୫), ମିର୍‌କାଶିମ୍ (୧୯୦୬), ଛତ୍ରପତି ଶିବାଜୀ (୧୯୦୭), ନସୀରାମ, ଅଶୋକ, ସତ୍‌ନାମ—ଏସବୁ ଐତିହାସିକ ଓ ଦେଶାତ୍ମବୋଧ ନାଟକ ।

ତାଙ୍କ ରଚିତ ନାଟକର ସଂଖ୍ୟା ୮୦ରୁ ଅଧିକ । ଜଣେ ବ୍ୟକ୍ତିପକ୍ଷରେ ବହୁସଂଖ୍ୟକ ଉଚ୍ଚକୋଟୀର ନାଟକ ଲେଖିବା କମ୍ ପ୍ରତିଭାର ବିଷୟ ନୁହେଁ । ତାଙ୍କର 'ଚୈତନ୍ୟଲୀଳା' ପ୍ରଭୃତି ଭକ୍ତିରସାତ୍ମକ ନାଟକ ଶ୍ରୀ ରାମକୃଷ୍ଣ ପରମହଂସଙ୍କ ପ୍ରଭାବଦ୍ୱାରା ନିୟନ୍ତ୍ରିତ । 'ସିରାଜଉଦ୍ଦୌଲା', 'ମୀରକାଶିମ୍' ଓ 'ଛତ୍ରପତି ଶିବାଜୀ' ପ୍ରଭୃତି ଉଗ୍ର ଐତିହାସିକ ଚରିତ୍ରଧର୍ମୀ ନାଟକର ପରିବେଷଣକୁ ଇଂରେଜ ସରକାର ନିଷେଧ କରିଥିଲେ । ସମସାମୟିକ ସାମାଜିକ ପରିବେଶକୁ ଲକ୍ଷ୍ୟ କରି ତାଙ୍କର ସାମାଜିକ ନାଟକ ରଚିତ ହୋଇଥିଲା । ସେ ତାଙ୍କ ନାଟକରେ ଏକ ନୂତନ ଛନ୍ଦ ପ୍ରଚଳନ କରିଥିଲେ, ଯାହାକି 'ଗିରିଶ ଛନ୍ଦ' ନାମରେ ପରିଚିତ । ଏସବୁ ଦୃଷ୍ଟିରୁ କେହି କେହି ଗିରିଶ୍‌ଚନ୍ଦ୍ରଙ୍କୁ ବଙ୍ଗଳା ରଙ୍ଗମଞ୍ଚର ପ୍ରବର୍ତ୍ତକ ବା କର୍ଣ୍ଣଧାର ବୋଲି ମଧ୍ୟ କହନ୍ତି । ସ୍ୱ ଲିଖିତ ନାଟକମାନଙ୍କରେ ସେ ନିଜେ ଅଭିନୟ ମଧ୍ୟ କରୁଥିଲେ । ଗିରିଶ୍ ଚନ୍ଦ୍ର ଘୋଷ କେତେଗୁଡ଼ିଏ ବଙ୍ଗଳା କାବ୍ୟକୁ ନାଟ୍ୟରୂପ ପ୍ରଦାନ କରିଥିଲେ । ଅପେରା ଓ ଗୀତିନାଟ୍ୟ ମଧ୍ୟ ସେ ରଚନା କରିଥିଲେ । ଏହିପରି ପୌରାଣିକ, ଐତିହାସିକ ଓ ଆଧ୍ୟାତ୍ମିକ ବା ଭକ୍ତିରସାତ୍ମକ ନାଟକ ରଚନା କରିବାରେ ସେ ପ୍ରବୀଣ ଥିଲେ । ତାଙ୍କର ଭକ୍ତିରସାତ୍ମକ ନାଟକ 'ରାବଣ ବଧ' ଉଲ୍ଲେଖଯୋଗ୍ୟ ଅଟେ । 'ବୁଦ୍ଧଚରିତ' ନାଟକ ୧୮୮୫ ମସିହାରେ ପ୍ରକାଶିତ ହୋଇଥିଲା । ପାରିବାରିକ ଓ ସାମାଜିକ ଉପାଦାନକୁ କେନ୍ଦ୍ର କରି ସେ ଯେତେ

ଗୁଡ଼ିଏ ନାଟକ ଲେଖିଥିଲେ, ତନ୍ମଧ୍ୟରେ 'ପ୍ରଫୁଲ୍ଲ' ନାଟକ (୧୮୯୧) ଶ୍ରେଷ୍ଠ ବୋଲି ଜଣାଯାଏ ।

ଏହି ସମୟରେ ଜାତୀୟ ଆନ୍ଦୋଳନର ପ୍ରଭାବ ଫଳରେ ନାଟ୍ୟକାର ଦ୍ୱିଜେନ୍ଦ୍ରଲାଲ ରାୟ କେତେଗୁଡ଼ିଏ ଜାତୀୟବାଦୀ ବୈପ୍ଳବାତ୍ମକ ନାଟକ ପ୍ରଣୟନ କରିଥିଲେ । ଜାତୀୟବାଦୀ ନାଟକ ରଚନାର ଏକମାତ୍ର ହେତୁ ହେଉଛି ଦେଶରେ କ୍ରମବର୍ଦ୍ଧିଷ୍ଣୁ ଜନଜାଗରଣ । ଗଭୀର ଦେଶାତ୍ମବୋଧ ଏହିସବୁ ନାଟକକୁ ଆବେଦନଶୀଳ କରିପାରିଥିଲା । ଜାତୀୟ ଭାବୋଚ୍ଛ୍ୱାସ ଏହିଯୁଗରେ ଲିଖିତ ନାଟକର ଥିଲା ପ୍ରଧାନ ଲକ୍ଷ୍ୟ । ଗିରିଶ୍ ଚନ୍ଦ୍ର ଘୋଷ ଓ ଦ୍ୱିଜେନ୍ଦ୍ରଲାଲ ପ୍ରଭୃତି ସମାଜଆଡ଼ୁ ନିଜର ଦୃଷ୍ଟି ଫେରାଇଆଣି ଦେଶର ରାଜନୈତିକ ଅବସ୍ଥା ପ୍ରତି ଧ୍ୟାନ ଦେଇଥିଲେ । ଦ୍ୱିଜେନ୍ଦ୍ରଲାଲ ରାୟଙ୍କର ଦେଶାତ୍ମବୋଧ ନାଟକ ଐତିହାସିକ ପ୍ରେରଣା ଓ ଉପାଦାନ ଦ୍ୱାରା ଅନୁରଞ୍ଜିତ ହୋଇଥିଲା । ଫଳରେ ସାଂପ୍ରତିକ କାଳରେ ବଙ୍ଗଳା ଐତିହାସିକ ନାଟକ ପାଶ୍ଚାତ୍ୟ ନାଟ୍ୟକାରମାନଙ୍କ ଭାବଧାରା ଦ୍ୱାରା ପ୍ରଭାବିତ । କିନ୍ତୁ ପୂର୍ବଯୁଗର ଐତିହାସିକ ନାଟକ ସ୍ୱଦେଶୀ ଆନ୍ଦୋଳନ ଦ୍ୱାରା ପ୍ରଭାବିତ ହୋଇଥିଲା । ମନମୋହନ ବସୁଙ୍କର ଭକ୍ତିରସାତ୍ମକ ନାଟକ ମଧ୍ୟ ସେହି ସମୟରେ ଦେଖଣାହାରିମାନଙ୍କୁ ଆକୃଷ୍ଟ କରିଥିଲା । ପ୍ରହସନ, ଯାତ୍ରା ଓ ବିଦ୍ରୂପାତ୍ମକ ନାଟକ 'ଲୀଳା' ନାଟ୍ୟ ସାହିତ୍ୟର ବିକାଶକାଳୀନ ପ୍ରଥମ ଯୁଗରେ ଜନସମାଜ ଦ୍ୱାରା ବିଶେଷ ଆଦୃତ ହେଉଥିଲା । ଆଧୁନିକ ନାଟକର ଆଙ୍ଗିକ ପ୍ରବର୍ତ୍ତନ ହେବାରେ ରାଜକୃଷ୍ଣ ରାୟଙ୍କର ଦାନ ସ୍ୱୀକାର୍ଯ୍ୟ । ସେ ମାଇକେଲ ମଧୁସୂଦନ ଦତ୍ତଙ୍କର ଅବଲମ୍ବିତ ମୁକ୍ତଛନ୍ଦକୁ ନିଜ ନାଟକରେ ଗ୍ରହଣ କରିଥିଲେ । ହରିଲାଲ ରାୟଙ୍କର ରୋମାଣ୍ଟିକ୍ ନାଟକ 'ହେମଲତା' ଓ 'ବଙ୍ଗେର ସୁଖାବସାନ' ନାଟକରେ ଜାତୀୟ ରୂପରେଖ ମଧ୍ୟ ଦେଖିବାକୁ ମିଳିଥିଲା । ସେ ସେକ୍ସପିୟରଙ୍କ 'ହାମ୍‌ଲେଟ୍'ର ଅବଲମ୍ବନରେ 'ରୁଦ୍ରପାଲ', ସଂସ୍କୃତନାଟକ 'ବେଣୀ ସଂହାର' ଓ 'ଶକୁନ୍ତଳା'ର ଅବଲମ୍ବନରେ ଯଥାକ୍ରମେ 'ଶତ୍ରୁସଂହାର' ଓ 'କନକ ପଦ୍ମ' ରଚନା କରିଥିଲେ । ତାଙ୍କର ଏହି ପାଞ୍ଚଗୋଟି ନାଟକ ବଙ୍ଗଳାର ରଙ୍ଗମଞ୍ଚରେ ଅଭିନୀତ ହୋଇ ସାର୍ଥକତା ଲାଭ କରିଥିଲା । ଜ୍ୟୋତିରିନ୍ଦ୍ରନାଥ ଠାକୁର ଜଣେ ସଂଗୀତଜ୍ଞ ଓ ଅଭିନେତା ମଧ୍ୟ ଥିଲେ । ସେ ଏହି ସମୟରେ କେତେଗୁଡ଼ିଏ ଏକାଙ୍କିକା ପ୍ରଣୟନ କରିଥିଲେ । ଦେବେନ୍ଦ୍ରନାଥ ଠାକୁର ମଧ୍ୟ ନାଟକ ରଚନା ପ୍ରତି ଆକୃଷ୍ଟ ହୋଇଥିଲେ ।

ଜାତୀୟତାବୋଧ ଓ ସ୍ୱଦେଶପ୍ରେମ ଏହି ସମୟରେ ରଚିତ ନାଟକମାନଙ୍କର ଥିଲା ଏକମାତ୍ର ଯୋଗ୍ୟତା । ଜ୍ୟୋତିରିନ୍ଦ୍ରନାଥଙ୍କ ଲିଖିତ 'ପୁରୁବିକ୍ରମ' ନାଟକ (୧୮୭୪) ଜାତୀୟସ୍ପନ୍ଦନର ଏକ ପ୍ରତୀକ । ତାଙ୍କର 'ସରୋଜିନୀ' ନାଟକ

❊

(୧୮୭୫) ପାରିବାରିକ ଦ୍ୱନ୍ଦ୍ୱ ଓ ସଂଘର୍ଷ ଉପରେ ଆଧାରିତ । ମାଇକେଲ ମଧୁସୂଦନ ଦତ୍ତଙ୍କର 'କୃଷ୍ଣକୁମାରୀ' ନାଟକର ପ୍ରଭାବ 'ସରୋଜିନୀ' ଉପରେ ପଡ଼ିଥିବା ଜଣାଯାଏ । ବଙ୍ଗଳା ନାଟ୍ୟ ସାହିତ୍ୟରେ ପ୍ରହସନ ଓ ଫାର୍ସର ସ୍ଥାନ ମଧ୍ୟ କମ୍ ନୁହେଁ । ଜ୍ୟୋତିରିନ୍ଦ୍ର ନାଥଙ୍କର କେତେଗୁଡ଼ିଏ ଫାର୍ସ ସେତେବେଳେ ଅଭିନୀତ ହୋଇ ଥିଏଟରପ୍ରେମୀମାନଙ୍କ ମଧ୍ୟରେ ଆଲୋଡ଼ନ ସୃଷ୍ଟି କରିଥିଲା । ରାଜପୁତ୍ ଇତିହାସକୁ ଭିତ୍ତିକରି ତାଙ୍କର 'ଅଶ୍ରୁମତୀ' ନାଟକ ରଚିତ ହୋଇଥିଲା । ପ୍ରଣୟ ଓ ପରିବାରର ଦ୍ୱନ୍ଦ୍ୱ ଏହି ନାଟକରେ ପ୍ରତିଫଳିତ । ଆକବରଙ୍କ ପୁଅ ସହିତ ଚିତୋର୍‌ର ରାଣା ପ୍ରତାପସିଂଙ୍କ କନ୍ୟାର ବିବାହ ଏଥିରେ ବର୍ଣ୍ଣିତ । ତାଙ୍କର ନାଟକ 'ସ୍ୱପ୍ନମୟୀ' (୧୮୮୦) ସେକ୍ସପିୟରଙ୍କ 'A Midsummer Night's Dream'ର ଅବଲମ୍ବନରେ ଲିଖିତ । ଏହା ତାଙ୍କର ଏକ ସାର୍ଥକ ମୌଳିକ ନାଟକ । ଏହାର ଗଳ୍ପାଂଶ ମଧ୍ୟ ଇତିହାସରୁ ସଂଗୃହୀତ । ଏହାଛଡ଼ା 'ହିତେ ବିପରୀତ' (ଫାର୍ସ) ମଧ୍ୟ ତାଙ୍କର ରଚନା । ସେ ସେକ୍ସପିୟରଙ୍କର କେତେକ ନାଟକ ମଧ୍ୟ ଅନୁବାଦ କରିଥିଲେ । ଉପେନ୍ଦ୍ର ନାଥ ଦାସଙ୍କର 'ଶରତ-ସରୋଜିନୀ' (୧୮୧୦) ଓ 'ସୁରେନ୍ଦ୍ର ବିନୋଦିନୀ' ଦୁଇଟି ବ୍ୟଙ୍ଗଧର୍ମୀ ନାଟକବୋଲି ଜଣାଯାଏ । ସେଥିରେ ସାମାଜିକ ବାସ୍ତବତା ପ୍ରତିଫଳିତ ହୋଇଥିଲା । ରାଜକୃଷ୍ଣ ରାୟ (୧୮୪୯-୧୮୯୪) ନିଜେ ଏକ ଥିଏଟର ପାର୍ଟି ପରିଚାଳନା କରୁଥିଲେ । ତାଙ୍କର ଉଚାଙ୍ଗ ଓ ଭାବବ୍ୟଞ୍ଜକ ନାଟକଗୁଡ଼ିକ ପୌରାଣିକ ଗଳ୍ପାଂଶ ଉପରେ ଆଧାରିତ ହୋଇଥିଲା । ସେ ରଙ୍ଗମଞ୍ଚରେ ଜନପ୍ରିୟ ଯାତ୍ରାଗୁଡ଼ିକ ଅଭିନୟ କରାଇଥିଲେ । ତାଙ୍କର ମୀରାବାଈ, ତରଣୀରେ ନବ୍ୟ, ପତିବ୍ରତା, ସାବିତ୍ରୀ ସତ୍ୟବାନ କାହାଣୀ (୧୮୭୫), ନାଟ୍ୟ ସମ୍ଭବ, ପ୍ରହ୍ଲାଦ ଚରିତ (୧୮୭୭), ହରଧନୁ ଭଙ୍ଗ (୧୮୮୦) ପ୍ରଭୃତି ତାଙ୍କର ନାଟ୍ୟ ପ୍ରତିଭାର ପରିଚୟ ଦିଏ । ସ୍ୱ ନାଟକ ପାଇଁ ସେ ଇତିହାସରୁ ମଧ୍ୟ କଥାବସ୍ତୁ ସଂଗ୍ରହ କରିଥିଲେ । ପ୍ରହସନ ରଚନା ମଧ୍ୟ ତାଙ୍କ ନାଟ୍ୟ ପ୍ରତିଭାର ଅନ୍ୟ ଏକ ଦିଗ । ସେ ଜଣେ କବି ଥିଲେ । ଗଳ୍ପ ଓ ଉପନ୍ୟାସ ମଧ୍ୟ ସେ ଲେଖିଥିଲେ । ଏତଦ୍‌ବ୍ୟତୀତ ସେ 'ବୀଣା' ନାମକ ଏକ ପତ୍ରିକାର ସଂପାଦନା ମଧ୍ୟ କରୁଥିଲେ ।

ନାଟ୍ୟକାର ଏବଂ ଅଭିନେତା ଅମୃତଲାଲ ବସୁ (୧୮୫୩-୧୯୨୯) ଥିଲେ ନାଟ୍ୟକାର ଗିରୀଶ ଚନ୍ଦ୍ରଙ୍କର ସମସାମୟିକ । ଅମୃତ ଲାଲ ବସୁଙ୍କର ନାଟ୍ୟ ରଚନାର ପ୍ରକୃତ ବୈଶିଷ୍ଟ୍ୟ ହେଉଛି ତୀକ୍ଷ୍ଣ ବ୍ୟଙ୍ଗ ବିଦ୍ରୂପ ଏବଂ ହାସ୍ୟରସର ନିପୁଣ ପ୍ରୟୋଗ । ବ୍ୟକ୍ତି ଜୀବନର ନାନାଦି ଅପରାଧ, ଦୋଷ ଏବଂ ସାମାଜିକ ତ୍ରୁଟି ବିଚ୍ୟୁତି ତାଙ୍କ ନାଟକ ଗୁଡ଼ିକରେ ବ୍ୟଙ୍ଗବିଦ୍ରୂପାତ୍ମକ ଭାଷାରେ ପ୍ରତିଫଳିତ । ତାଙ୍କର ଶରବ୍ୟ ଚରିତ୍ରମାନଙ୍କ ମଧ୍ୟରେ ଇଂରେଜ୍ ପାଠ ପଢ଼ୁଆ ବ୍ୟକ୍ତିମାନେ ହିଁ

ପ୍ରଥମେ ଉଲ୍ଲେଖଯୋଗ୍ୟ । ପାଶ୍ଚାତ୍ୟ ଶିକ୍ଷା, ରୁଚି ପ୍ରଭାବରେ ଯୁବ ସମାଜ ଯେପରି ବିଶୃଙ୍ଖଳ ହୋଇଥିଲେ ତାହାର ବିଦ୍ରୂପାତ୍ମକ ସମୀକ୍ଷା କରିଥିଲେ ନାଟ୍ୟକାର ଅମୃତଲାଲ ବସୁ । ସେଥିପାଇଁ ତାଙ୍କର ନାଟକ 'ବିବାହ ବିଭ୍ରାଟ'ରେ (୧୮୮୪) ଆଧୁନିକ ଶିକ୍ଷାପ୍ରାପ୍ତ ନାରୀମାନଙ୍କର ଦୁର୍ଦ୍ଦଶା ବର୍ଣ୍ଣିତ । ତଥାକଥିତ ସ୍ତ୍ରୀ ସ୍ୱାଧୀନତାର ସେ ବିରୋଧୀ ଥିଲେ । ତାଙ୍କର ଅନ୍ୟାନ୍ୟ ନାଟକଗୁଡ଼ିକ ହେଉଛି—ବାବୁ (୧୮୯୩), ତାଜବ୍ ବ୍ୟାପାର (୧୮୯୭), ଏକାକାର (୧୮୯୪), ଚୋରେର ଉପର, ବାଟ ପାଡ଼, କୃପଣେର ଧନ, ଅବତାର (୧୯୦୧), ଖାସ୍ ଦଖଲ (୧୯୧୨), ଗୃଷ୍ଟୁଯ୍ୟା, ବାଁକୁଯ୍ୟା (୧୮୮୬)

ହାରକଚୂଣ୍ଡି କମ୍ପା ଗାଇକୋଓ୍ୱାଡ଼୍ ନାଟକ (୧୮୭୫) ସମସାମୟିକ ଘଟଣା ଉପରେ ଆଧାରିତ । ତାଙ୍କର ଅଧିକାଂଶ ନାଟକରେ ତୀବ୍ର ହାସ୍ୟରସ ହିଁ ପ୍ରକଟିତ । ହାସ୍ୟରସ ମାଧ୍ୟମରେ ନାଟ୍ୟକାର ସାମାଜିକ ସମାଲୋଚନା ହିଁ ଅଭିବ୍ୟକ୍ତ । ଅମୃତଲାଲ ଶଡ୍ରା ଜାତୀୟତାର ପକ୍ଷପାତୀ ନଥିଲେ । ସେଥିପାଇଁ ସେ ରକ୍ଷଣଶୀଳ ହିନ୍ଦୁ ଥିଲେ ବୋଲି କେହି କେହି ସମାଲୋଚକ କହିଛନ୍ତି । ସେ ସ୍ୱଦେଶୀ ଆନ୍ଦୋଳନ ସହିତ ସଂପୃକ୍ତ ଥିଲେ । ତଥାପି ଦରକାର ପଡ଼ିଲେ ସେ ଆନ୍ଦୋଳନର ସମାଲୋଚନା କରୁଥିଲେ ।

ଏହି ସମୟରେ କେତେଜଣ ଗୌଣ ନାଟ୍ୟକାର ମଧ୍ୟ ଲେଖନୀ ଚଳାଇ-ଥିଲେ । ସେମାନେ ହେଲେ—ବିହାରୀଲାଲ ଚଟ୍ଟୋପାଧ୍ୟାୟ, ଉମେଶଚନ୍ଦ୍ର ଗୁପ୍ତ, ଉପେନ୍ଦ୍ରନାଥ ଦାସ, ମୀର ମଶାରଫ୍ ହୋସେନ ।

ବଙ୍ଗଳା ନାଟ୍ୟ ସାହିତ୍ୟରେ ଜଣେ ଉଚ୍ଚକୋଟୀର ନାଟ୍ୟକାର ଭାବରେ ଦ୍ୱିଜେନ୍ଦ୍ରଲାଲ ରାୟ (୧୮୬୩-୧୯୧୩) ଙ୍କ ଆସନ ସୁପ୍ରତିଷ୍ଠିତ । ସେ ଏକାଧାରରେ କବି, ନାଟ୍ୟକାର ଓ ସଙ୍ଗୀତର ରଚୟିତା ଥିଲେ । ଊନବିଂଶ ଶତାବ୍ଦୀର ଜାତୀୟ ଜାଗରଣ ଓ ଦେଶାତ୍ମବୋଧ ସେ ଯେଉଁପରି ଭାବରେ ନିଜ ନାଟକରେ ପ୍ରୟୋଗ କରିଥିଲେ, ସେହିପରି ଅଧିକାଂଶ ନାଟ୍ୟକାର ଏହି ଦେଶାତ୍ମବୋଧତା ଦ୍ୱାରା ପ୍ରଭାବିତ ହୋଇଥିଲେ । ନାଟ୍ୟକାର ଦ୍ୱିଜେନ୍ଦ୍ର ଲାଲ ଜଣେ ସହାନୁଭୂତିଶୀଳ ଓ ଅନୁଭୂତିସମ୍ପନ୍ନ ସ୍ରଷ୍ଟା ବୋଲି କୁହାଯାଇପାରେ ।

ଦ୍ୱିଜେନ୍ଦ୍ରଲାଲ ରାୟଙ୍କ ହାସ୍ୟରସ ପ୍ରଧାନ ନାଟକ ମଧ୍ୟରେ 'ବିରହ', 'ପ୍ରାୟଶ୍ଚିତ୍ତ', 'କଲ୍କି ଅବତାର', 'ପୁନର୍ଜନ୍ମ', 'ଏକ୍‌ଘରେ' ପ୍ରଭୃତି ଉଲ୍ଲେଖଯୋଗ୍ୟ । ତାଙ୍କର ଯୁଗାନ୍ତକାରୀ ଐତିହାସିକ ନାଟକ ମଧ୍ୟରେ 'ତାରାବାଈ', 'ପ୍ରତାପସିଂହ' (୧୯୦୫), ଦୁର୍ଗାଦାସ (୧୯୦୬), ନୁରଜାହାନ୍, ମେବାର ପତନ (୧୯୦୮), ଶାହାଜାହାନ୍ (୧୯୧୨), ଚନ୍ଦ୍ରଗୁପ୍ତ (୧୯୧୧) ଓ 'ସିଂହଳ ବିଜୟ' ପ୍ରଧାନ ।

ରାମାୟଣକୁ କେନ୍ଦ୍ର କରି ତାଙ୍କର 'ସୀତା' (୧୯୦୨) ଓ 'ପାଷାଣୀ' (୧୯୦୦) ନାଟକ ରଚିତ ହୋଇଥିଲା । 'ସୀତା' ନାଟକ ଆମୂଳଚୂଳ ମିତ୍ରାକ୍ଷରରେ ଲିଖିତ । 'ବଙ୍ଗନାରୀ' ଓ 'ପରପାରେ' ତାଙ୍କର ଦୁଇଟି ସାମାଜିକ ନାଟକ । ତାଙ୍କର ନାଟକ-ଗୁଡ଼ିକରେ ବହୁ ଜାତୀୟଭାବମୂଳକ ଗୀତ ସଂଯୋଜିତ ହୋଇଥିଲା । ଦ୍ୱିଜେନ୍ଦ୍ରଲାଲଙ୍କ ନାଟକଗୁଡ଼ିକ ଏକ ସ୍ୱତନ୍ତ୍ର ମହିମାରେ ମହିମାନ୍ୱିତ । ଚରିତ୍ରସୃଷ୍ଟି, ହୃଦୟବତ୍ତା ଓ ବ୍ୟକ୍ତିବ୍ୟକ୍ତିର ସଂଘର୍ଷ ତାଙ୍କ ନାଟକର ଲକ୍ଷଣ । ଐତିହାସିକ ନାଟକ ଲେଖିବାରେ ସେ ବରାବର ଇତିହାସକୁ ଗ୍ରହଣ କରିଛନ୍ତି । ଊନବିଂଶ ଶତାବ୍ଦୀର ଦେଶାତ୍ମବୋଧ ତାଙ୍କ ନାଟ୍ୟସୃଷ୍ଟିର କେନ୍ଦ୍ର, ଆବେଦନ ତଥା ଆବେଗ । ଦେଶର ଇତିହାସ ପ୍ରତି ନାଟ୍ୟକାରଙ୍କ ସଂବେଦନଶୀଳତା ସ୍ୱୀକାର୍ଯ୍ୟ । ବିଭିନ୍ନ ବ୍ୟକ୍ତିତ୍ୱସମ୍ପନ୍ନ ଚରିତ୍ରସୃଷ୍ଟି ଓ ଗ୍ରନ୍ଥିକ ଅନୁଶୀଳନ ତାଙ୍କ ନାଟକଗୁଡ଼ିକର ସଫଳତା ପାଇଁ ଦାୟୀ ।

ଅନ୍ୟତମ ନାଟ୍ୟକାର କ୍ଷୀରୋଦପ୍ରସାଦ ବିଦ୍ୟାବିନୋଦ (୧୮୬୩-୧୯୨୭) ସ୍କଟିଶ୍ ଚର୍ଚ୍ଚ କଲେଜର ରସାୟନ ଅଧ୍ୟାପକ ଥିଲେ । ସେ ଜାତୀୟ ଆନ୍ଦୋଳନ ଓ ଦେଶାତ୍ମବୋଧରେ ଉଦ୍‌ବୁଦ୍ଧ ହୋଇ ବିଭିନ୍ନ ନାଟକ ଲେଖିଥିଲେ । ତାଙ୍କର ପୌରାଣିକ ଓ ଧର୍ମମୂଳକ ନାଟକଗୁଡ଼ିକ ମଧ୍ୟରେ, 'ଭୀଷ୍ମ' (୧୯୧୩), 'ରାମାନୁଜ' (୧୯୧୬), 'ନରନାରାୟଣ' (୧୯୨୬), 'ସାବିତ୍ରୀ' ପ୍ରଭୃତି ଉଲ୍ଲେଖଯୋଗ୍ୟ । ଏହାଛଡ଼ା ଐତିହାସିକ ନାଟକଗୁଡ଼ିକ ମଧ୍ୟରେ 'ପଦ୍ମିନୀ', 'ଚାନ୍ଦବିବି', 'ନନ୍ଦକୁମାର', 'ପ୍ରତାପ ଆଦିତ୍ୟ', 'ପଲାସୀର ପ୍ରାୟଶ୍ଚିତ୍ତ', 'ଆଲମ୍‌ଗୀର', 'ବାଂଲାର ମସନଦ୍' ପ୍ରଭୃତି ପ୍ରଧାନ । ତାଙ୍କର 'ଆଲମ୍ଗୀର' ନାଟକ ବହୁ ଲୋକଙ୍କ ଦ୍ୱାରା ପ୍ରଶଂସିତ ଓ ଆଦୃତ ହୋଇଥିଲା । ଐତିହାସିକ ଚରିତ୍ର ଓ କଳ୍ପନାର ସମନ୍ୱୟରେ ସେ କେତେଗୋଟି ନାଟକ ପ୍ରଣୟନ କରିଥିଲେ; ଯଥା—ବଙ୍ଗେରରାଠୋର, ରଘୁବୀର, ଆହେରିୟା ପ୍ରଭୃତି ପ୍ରଧାନ । ଗୀତିନାଟ୍ୟ ଲେଖିବା ଦିଗରେ ମଧ୍ୟ କ୍ଷୀରୋଦ ପ୍ରସାଦଙ୍କ ଉଦ୍ୟମ କିଛି କମ୍ ନୁହେଁ । ତାଙ୍କର 'ଆଲିବାବା' (୧୮୯୭), 'ଜୁଲିଆ' (୧୯୦୦) ଓ 'କିନ୍ନରୀ' (୧୯୧୮) ପ୍ରଭୃତି ଗୀତିନାଟ୍ୟ ପ୍ରଧାନ । ଏତଦ୍‌ବ୍ୟତୀତ କ୍ଷୀରୋଦ ପ୍ରସାଦ ବିଭିନ୍ନ ବିଷୟରେ ଅନ୍ୟ କେତୋଟି ନାଟକ ରଚନା କରିଥିଲେ । ସଂକ୍ଷେପରେ କହିବାକୁଗଲେ, ଊନବିଂଶ ଶତାବ୍ଦୀର ଶେଷଭାଗ ଓ ବିଂଶ ଶତାବ୍ଦୀର ପ୍ରଥମ ପାଦରେ ବଙ୍ଗଳା ନାଟକ ତା'ର ବିକାଶର ପ୍ରଥମ ସୋପାନ ଅତିକ୍ରମ କରିସାରିଥିଲା ।

ଏହାହିଁ ହେଲା ସଂକ୍ଷେପରେ ବଙ୍ଗଳା ନାଟକର ଉତ୍ପତ୍ତି ଓ ବିକାଶର ପ୍ରଥମ ପର୍ଯ୍ୟାୟର ସୂଚନା । ୧୯୩୦ ମସିହା ପରେ ବଙ୍ଗଳା ନାଟକର ଗତି ଓ ପ୍ରକୃତି ବହୁ ଭାବରେ ପରିବର୍ତ୍ତିତ ହୋଇଥିଲା । ଦ୍ୱିଜେନ୍ଦ୍ରଲାଲ ରାୟଙ୍କର ଐତିହାସିକ ନାଟକ ହିନ୍ଦୁଜାତିର ଭାବୋଚ୍ଛ୍ୱାସ ଉପରେ ଗୁରୁତ୍ୱ ଦେଇଥିଲା । କିନ୍ତୁ ୧୯୩୦ ପରେ ଲିଖିତ ଐତିହାସିକ ନାଟକ ସାମାଜିକ ଓ ବ୍ୟକ୍ତିଗତ ଜୀବନର ସଙ୍ଘର୍ଷ ପ୍ରଭୃତି

ଜଟିଳତା ପ୍ରତି ଗୁରୁତ୍ୱ ଦେଇଥିଲା । ଇବ୍‌ସେନ୍‌ଙ୍କର ନାଟକର ପ୍ରଭାବ ବଙ୍ଗଳା ନାଟକରେ ଦେଖାଦେଇଥିଲା । ସେହିପରି ଇଂରାଜୀ ନାଟ୍ୟକାର ବାର୍ଣ୍ଣାଡ଼ଶ' ଓ ଗଲ୍‌ସୱାର୍ଦ୍ଦିଙ୍କ ନାଟକୀୟ ଶୈଳୀ ଓ ଆଙ୍ଗିକତା ବଂଗଳା ନାଟ୍ୟକାରମାନଙ୍କୁ ବିଶେଷଭାବରେ ଅନୁପ୍ରାଣିତ କରିଥିଲା । ସମାଜରେ ସ୍ତ୍ରୀ ଓ ପୁରୁଷ ସମ୍ପର୍କ ଏବଂ ସେହି ସମ୍ପର୍କର ବିଶ୍ଳେଷଣ କ୍ରମେ ନାଟକର ଦୃଷ୍ଟି ଆକର୍ଷଣ କଲା । ରବୀନ୍ଦ୍ରନାଥଙ୍କ କେତେକ ଶ୍ରେଷ୍ଠ ନାଟକ ଚଳିତ ଶତାବ୍ଦୀର ପ୍ରାରମ୍ଭରେ ଲିଖିତ ହୋଇଥିଲା । କିନ୍ତୁ କ୍ରମେ ରବୀନ୍ଦ୍ରନାଥ ବଙ୍ଗଳା ନାଟକର ପରମ୍ପରା ଓ ପ୍ରଭାବଠାରୁ ଦୂରେଇ ଯାଇଥିଲେ । ତାଙ୍କର ନାଟକ ପ୍ରତୀକଧର୍ମୀ ଓ ସମ୍ବେଦନଶୀଳ ହୋଇଥିଲା । ରବୀନ୍ଦ୍ରୋତ୍ତର ଯୁଗରେ ନାଟ୍ୟସାହିତ୍ୟର ଆଙ୍ଗିକ ଓ ଗଳ୍ପାଂଶ ଆହୁରି ବିପ୍ଳବ ଓ ସଂସ୍କାରର ସମ୍ମୁଖୀନ ହେଲା । ପରଂପରାର ବ୍ୟତିକ୍ରମ ଓ ନୂତନ ସାମାଜିକ ପରିବେଶରେ ସଂସ୍କାର ଦୃଷ୍ଟିକୋଣରେ ପରିବର୍ତ୍ତନ କ୍ରମେ ନାଟକମାନଙ୍କରେ ପ୍ରତିଫଳିତ ହେଲା । ୧୯୪୦ ମସିହା ବେଳକୁ ବଂଗଳାନାଟକରେ ବ୍ୟକ୍ତି ଓ ସମାଜର ସଂଘର୍ଷ ତଥା ସାମାଜିକ ଅର୍ଥନୀତିର ଦୁର୍ଗତି ନାଟକମାନଙ୍କରେ ସ୍ଥାନ ପାଇଲା । ଏହିପରି ସହରି ଜୀବନ ତା'ର ସଭ୍ୟତା ଓ ସଙ୍ଘର୍ଷ ନାଟ୍ୟକାରଙ୍କୁ ବିଶେଷ ଉପାଦାନ ଯୋଗାଇଥିଲା । ଏହି ଯୁଗର ନାଟ୍ୟକାରଗଣ ଶାନ୍ତ ଓ ନିରଳସ ଗ୍ରାମ୍ୟଜୀବନ ମଧ୍ୟରେ ନିଜକୁ ବନ୍ଦୀ କରିପାରିନଥିଲେ । ଶିଳ୍ପ ଓ ଯନ୍ତ୍ରପାତିର ସଂପ୍ରସାରଣ କ୍ରମେ ସେମାନେ ସହରାଞ୍ଚଳ ପ୍ରତି ଆକୃଷ୍ଟ ହେଲେ । ଗ୍ରାମ୍ୟ ଜୀବନର ଅର୍ଥନୀତି, କୃଷିନୀତି (ଅର୍ଥ-ଶୃଙ୍ଖଳା ଓ କୃଷି ଶୃଙ୍ଖଳା) କ୍ରମେ ବିଲୟପ୍ରାପ୍ତ ହୋଇଥିଲା । ତେଣୁ ଅତ୍ୟାଧୁନିକ ବଙ୍ଗଳା ନାଟକର ଅବଦାନ ଗତାନୁଗତିକ ମନୋରଞ୍ଜନ ବ୍ୟବସ୍ଥାପାଇଁ ନୁହେଁ, ମାତ୍ର ବୌଦ୍ଧିକ ଓ ସାଂସ୍କୃତିକ ରୁଚିର ସମନ୍ୱୟ ସାଧନ କରିବା – ସାଂପ୍ରତିକ ବଙ୍ଗଳା ନାଟକର ଏହାହିଁ ନୂତନ ମୂଲ୍ୟବୋଧ । ସାମାଜିକ ଓ ଧର୍ମମୂଳକ ଗଣ୍ଡି ମଧ୍ୟରେ ଆଜିର ନାଟ୍ୟକାର ବ୍ୟକ୍ତିର ସମୀକ୍ଷା କରିବାକୁ ଚାହେଁନାହିଁ । ଜୀବନସଂଗ୍ରାମୀ ବ୍ୟକ୍ତିର ମାନସପଟରେ ଦୈନନ୍ଦିନ ସମସ୍ୟା ଯେଉଁ ଜଟିଳ ପ୍ରତିକ୍ରିୟା ସୃଷ୍ଟି କରେ, ତାହାହିଁ ଆଧୁନିକ ନାଟକର କେନ୍ଦ୍ରବିନ୍ଦୁ । ଆଧୁନିକ ନାଟ୍ୟକାର ମନ୍ମଥରାୟ ତାଙ୍କର କେତେକ ପୌରାଣିକ ନାଟକରେ ମଧ୍ୟ ଏହି ସାଂପ୍ରତିକ ଦୃଷ୍ଟିକୋଣ ରୂପାୟିତ କରିଛନ୍ତି । ତାଙ୍କ ନାଟକରେ ଆଧୁନିକତାର ସ୍ୱାଦ ବିଶେଷପରିମାଣରେ ରହିଛି । ଉଦାହରଣସ୍ୱରୂପ, ତାଙ୍କର କାରାଗାର ନାଟକରେ କଂସ ଦ୍ୱାରା ଦେବକୀ ଓ ବସୁଦେବଙ୍କ ଯନ୍ତ୍ରଣା ତଥା ନିର୍ଯାତନା ପ୍ରତିଫଳିତ ହେଲେ ହେଁ, ଏହି ପୌରାଣିକ ପୃଷ୍ଠଭୂମିରେ ବିଦେଶୀ ଅତ୍ୟାଚାରୀ ଶାସନଦ୍ୱାରା ଭାରତ କିପରି ଅତ୍ୟାଚାରିତ ଓ ଉତ୍ପୀଡ଼ିତ, ତାହାହିଁ ପ୍ରତିଫଳିତ ହୋଇଥିଲା । ତାଙ୍କର 'ସାବିତ୍ରୀ' ନାଟକ ଆଧୁନିକ ମାନବସମାଜର

ଆଭ୍ୟନ୍ତରୀଣ ଦ୍ୱନ୍ଦ୍ୱକୁ ପ୍ରତିଫଳିତ କରାଇଛି । ଅତ୍ୟାଧୁନିକ ବଙ୍ଗଳା ନାଟକରେ ଏହାହିଁ ସର୍ବାପେକ୍ଷା ଶକ୍ତିଶାଳୀ ଆବେଗ । ସେହିପରି ଚନ୍ଦ ସୌଦାଗର ନାଟକ ଆଧୁନିକ ମାନବ ଓ ସମାଜର ଭଗବତ୍ ଶକ୍ତି ପ୍ରତି ଯେଉଁ ଉଦାସୀନ ଦୃଷ୍ଟିକୋଣ, ତାହା ପ୍ରଦର୍ଶନ କରିଛି । ମନ୍ମଥରାୟ କେତେଗୁଡ଼ିଏ ଐତିହାସିକ ଓ ରୋମାନସ୍ ଧର୍ମୀ ନାଟକ ମଧ୍ୟ ଲେଖିଥିଲେ । ସେଥିରେ ମଧ୍ୟ ସାଂପ୍ରତିକ ପ୍ରଗତିବାଦୀ ଦୃଷ୍ଟିକୋଣ ପ୍ରତିଫଳିତ । ବଙ୍ଗଳା ପରିବାରର ଦୈନନ୍ଦିନ ଚିତ୍ରକୁ କେନ୍ଦ୍ର କରି ସେ ବହୁ ଏକାଙ୍କିକା ରଚନା କରିଛନ୍ତି । ତାଙ୍କର ଦୀର୍ଘ ନାଟକର ଶୈଳୀ ଅପେକ୍ଷାକୃତ ସାର୍ଥକ ।

ନାଟ୍ୟକାର ସଚୀନ୍ଦ୍ରନାଥ ସେନଗୁପ୍ତ ନିଜ ଲେଖାର ଗଭୀରତା ଓ ଚିନ୍ତାର ନୂତନତା ଦ୍ୱାରା ବଙ୍ଗଳା ନାଟ୍ୟ ସାହିତ୍ୟରେ ପ୍ରସିଦ୍ଧି ଲାଭ କରିଛନ୍ତି । ତାଙ୍କ ନାଟକଗୁଡ଼ିକ ମଧ୍ୟରେ ଆଧୁନିକ ଦୃଷ୍ଟିକୋଣ ପରିଲକ୍ଷିତ ହୁଏ । ସିରାଜ ଉଦ୍ଦୌଲା ନାଟକ ହିନ୍ଦୁ, ମୁସଲମାନ ଏକତା ଉପରେ ଗୁରୁତ୍ୱ ଦେଉଥିଲାବେଳେ ତାଙ୍କର ଗୈରିକ ପତାକା ନାଟକ ସ୍ୱଦେଶ ପ୍ରେମର ଆଧୁନିକ ସଂଜ୍ଞା ଉପରେ ପ୍ରତିଷ୍ଠିତ । ଏହି ନାଟକର ଗଳ୍ପାଂଶ ଛତ୍ରପତି ଶିବାଜୀଙ୍କ ଜୀବନୀ ଉପରେ ଲିଖିତ । ସେହିପରି ତାଙ୍କର ଅନ୍ୟ ଏକ ନାଟକ 'ଧାତ୍ରୀପାନ୍ନା' ରାଜପୁତ କାହାଣୀରୁ ଗୃହୀତ । ଏହି ନାଟକ ଚରିତ୍ରଗତ ସଂଘର୍ଷ ପ୍ରଦର୍ଶନ କରିଛି । ସେନଗୁପ୍ତ ନିଜର ସାମାଜିକ ନାଟକମାନଙ୍କରେ ଆଧୁନିକଜୀବନର ବ୍ୟକ୍ତି ଓ ସମଷ୍ଟିଗତ ପ୍ରତିକ୍ରିୟା ବର୍ଣ୍ଣନା କରିଛନ୍ତି ।

ମହେନ୍ଦ୍ର ଗୁପ୍ତ ଐତିହାସିକ ନାଟ୍ୟକାର ଭାବରେ ସୁପରିଚିତ । ତାଙ୍କର ନାଟକ 'ଟିପୁସୁଲ୍‌ତାନ' ଓ 'ମହାରାଜା ନନ୍ଦକୁମାର' ତାଙ୍କ ଦେଶାତ୍ମବୋଧ ତଥା ବିଦେଶୀଶାସନ ପ୍ରତି ଘୃଣା ଦ୍ୱାରା ଚିହ୍ନିତ । ସେ କଲିକତାର ବ୍ୟବସାୟୀ ରଙ୍ଗମଞ୍ଚ ସହିତ ସମ୍ପୃକ୍ତ । ବିଧାୟକ ଭଟ୍ଟାଚାର୍ଯ୍ୟ ତାଙ୍କର ସାମାଜିକ ନାଟକ ନିମନ୍ତେ ସୁପରିଚିତ । ତାଙ୍କ ନାଟକର ବିଷୟବସ୍ତୁ 'ସହରାଞ୍ଚଳ ଜୀବନ', 'ମାଟିର ଘର' ଏକ ସମ୍ଭ୍ରାନ୍ତ ବଙ୍ଗାଳୀ ପରିବାରର ପରସ୍ପର ବିରୋଧୀ ସମସ୍ୟାକୁ କେନ୍ଦ୍ର କରି ଲିଖିତ । 'ମେଘମୁକ୍ତି' ସହରାଞ୍ଚଳର ମଧ୍ୟବିତ୍ତ ଜୀବନର ଆର୍ଥିକ ସମସ୍ୟାକୁ ଭିତ୍ତିକରି ଲିଖିତ । ନିଖୁଣ ବିଶ୍ଳେଷଣ ଓ ପର୍ଯ୍ୟବେକ୍ଷଣ ଶକ୍ତି ତାଙ୍କର ନାଟକଗୁଡ଼ିକରେ ପରିଲକ୍ଷିତ । ପ୍ରମଥନାଥ ବିଶୀଙ୍କର ନାଟ୍ୟସୃଷ୍ଟି କେବଳ ସାମାଜିକ ନାଟକ ମଧ୍ୟରେ ସୀମିତ । ସାଂପ୍ରତିକ ସମାଜର ପରସ୍ପର ବିରୋଧୀ ଆଦର୍ଶ ଓ ଦୁର୍ଗତି ତାଙ୍କ ଲେଖନୀରେ ସ୍ପଷ୍ଟ ହୋଇଥାଏ । କିନ୍ତୁ ସମାଜର କୌଣସି ସମସ୍ୟାର ଗଭୀର ଅଧ୍ୟୟନ ସାଧାରଣତଃ ତାଙ୍କ ନାଟକରେ ଦେଖାଯାଏ ନାହିଁ । ଶାଣିତ ବ୍ୟଙ୍ଗ ବିଦ୍ରୂପ ତାଙ୍କ ସାମାଜିକ ନାଟକର ଅନ୍ୟ ଏକ ବିଭବ ।

ତାରାଶଙ୍କର ବନ୍ଦୋପାଧ୍ୟାୟ, ଶରଦେନ୍ଦୁ ବନ୍ଦୋପାଧ୍ୟାୟ ଓ ମନୋଜ ବସୁ —ଏମାନେ ଆଧୁନିକ ବଙ୍ଗଳା ସାହିତ୍ୟରେ ଔପନ୍ୟାସିକ ଭାବରେ ପରିଚିତ ହେଲେ ହେଁ, ଆଧୁନିକ ବଂଗୀୟ ନାଟ୍ୟ ସାହିତ୍ୟକୁ ଏମାନଙ୍କ ଦାନ କିଛି କମ୍ ନୁହେଁ । ସେମାନେ ପ୍ରତ୍ୟେକେ ଆଧୁନିକ ବିଶୃଙ୍ଖଳ ସମାଜକୁ ଲକ୍ଷ୍ୟକରି ନାଟକ ରଚନା କରିଛନ୍ତି । ରବୀନ୍ଦ୍ର ମୈତ୍ରଙ୍କର 'ମାନମୟୀ', 'ଗାର୍ଲ୍‌ସ୍କୁଲ୍' ଏବଂ ଜଳଧର ଚଟ୍ଟୋପାଧ୍ୟାୟଙ୍କର 'ଖାତମତି' ନାଟକ ଦର୍ଶକମାନଙ୍କ ଦ୍ୱାରା ବିଶେଷ ପ୍ରଶଂସିତ ହୋଇଥିଲା । ବଙ୍ଗ ବିଚ୍ଛେଦ ପରେ ପୂର୍ବବଂଗର ବିପର୍ଯ୍ୟସ୍ତ ଗ୍ରାମ୍ୟଜୀବନ ଅଧିକାଂଶ ବଙ୍ଗଳା ନାଟକରେ ବର୍ଣ୍ଣିତ ହୋଇଥିଲା । ୧୯୫୦ ମସିହା ପରେ ବଙ୍ଗଳା ନାଟକ ବିଶେଷତଃ ବାସ୍ତବବାଦୀ ହୋଇପଡ଼ିଛି । ଅନୁଭୂତିର ଗଭୀରତା, ଆବେଗର ପ୍ରଖରତା ଓ ଭାବର ଗାମ୍ଭୀର୍ଯ୍ୟ ୧୯୫୦ ମସିହା ପରବର୍ତ୍ତୀ ବଙ୍ଗଳା ନାଟକମାନଙ୍କରେ ବିଶେଷଭାବରେ ପ୍ରକଟିତ ହେଲା । ଏତାଦୃଶ ବାସ୍ତବଧର୍ମୀ ନାଟକ ଭାବରେ ସଲିଲ୍ ସେନ୍‌ଙ୍କର 'ନୂତନ ଇହୁଦୀ' ନାଟକ ରଙ୍ଗମଞ୍ଚ ଆମୋଦୀମାନଙ୍କ ମଧ୍ୟରେ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା । ତରୁଣ ରାୟଙ୍କର 'ଧ୍ରୁବତାରା' ଓ 'ରୂପାଲୀ ଚାନ୍ଦ' ଏବଂ ଛବି ବାନାର୍ଜୀଙ୍କର 'କବିନର ଜୀବନ' ନାଟକ ଅପେକ୍ଷାକୃତ ପ୍ରଗତିଧର୍ମୀ ନାଟକ ଅଟେ । ଗତ ୨୦ ବର୍ଷ ମଧ୍ୟରେ ବଙ୍ଗଳା ରଙ୍ଗମଞ୍ଚ ଓ ନାଟ୍ୟଶାଳାର ବିପୁଳ ପରିବର୍ତ୍ତନ ଘଟିଅଛି ।

ଗତିଶୀଳ ରଙ୍ଗମଞ୍ଚ, ବିଦ୍ୟୁତ୍ ସାଜସଜ୍ଜା ଓ ଅନ୍ୟାନ୍ୟ ନାଟକୀୟ ଉପକରଣର ବିଶେଷ ଉନ୍ନତି ହୋଇଛି । ନାଟକର ଟେକ୍‌ନିକ ମଧ୍ୟରେ ପାଞ୍ଚଅଙ୍କ ବିଶିଷ୍ଟ ନାଟକ ପରିବର୍ତ୍ତେ ତିନିଅଙ୍କ ବିଶିଷ୍ଟ ନାଟକ ବିଶେଷ ଆଦୃତ ହୋଇଅଛି । ଅଭିନୟକଳା ମଧ୍ୟ ଇତିମଧ୍ୟରେ ବିଶେଷ ପରିବର୍ତ୍ତିତ ହୋଇଅଛି । ସାଂପ୍ରତିକ ଯୁଗର ଶିଶିରକୁମାର ଭାଦୁଡ଼ି ଅଭିନୟ ଜଗତରେ ପରିବର୍ତ୍ତନ ଆଣିପାରିଛନ୍ତି । ନାଟ୍ୟକାର ଗିରିଶ୍‌ଚନ୍ଦ୍ର ଘୋଷଙ୍କ ସମୟର ଅଭିନୟ ଶୈଳୀ ବର୍ତ୍ତମାନ ଆଉ ଆଦୃତ ହେଉନାହିଁ । ସଂକ୍ଷେପରେ କହିବାକୁ ଗଲେ ରଙ୍ଗମଞ୍ଚ ଓ ନାଟକ ଉଭୟର ବୈପ୍ଳବିକ ଉନ୍ନତି ସାଧନ ହୋଇଛି । ଏହି ବିପ୍ଳବର ପ୍ରେରଣାପୀଠ ହେଉଛି—ଜନାକୀର୍ଣ୍ଣ ଓ ଶିଳ୍ପ ସମୃଦ୍ଧ କଲିକତା ନଗରୀ । ସେଠାର ବହୁ ଅନୁଷ୍ଠାନ ରଙ୍ଗମଞ୍ଚ ଓ ନାଟକର ବିକାଶପାଇଁ ଉଦ୍ୟମ କରିଛନ୍ତି । 'Indian Peoples' Theatre Association', ଜାତୀୟ ନାଟ୍ୟ ପରିଷଦ, ବହୁରୂପୀ, ବିଶ୍ୱରୂପା, ନାଟ୍ୟ ଉନ୍ନୟନ ପରିକଳ୍ପନା, Children's Little Theatre ପ୍ରଭୃତିଙ୍କ ଦାନ ଉଲ୍ଲେଖଯୋଗ୍ୟ । ଜନସାଧାରଣ ମଧ୍ୟ 'ନାଟ୍ୟଶାଳା' ଓ ନାଟକର ବିକାଶପାଇଁ ଆଗ୍ରହ ପ୍ରଦର୍ଶନ କରୁଛନ୍ତି । ସଂଗୀତ ନାଟକ ଏକାଡ଼େମୀ ନାଟ୍ୟାମୋଦୀମାନଙ୍କୁ ଏ ଦିଗରେ ଉତ୍ସାହିତ କରୁଛନ୍ତି ।

## ନାଟ୍ୟକାର ରବୀନ୍ଦ୍ରନାଥ

ପୂର୍ବେ କୁହାଯାଇଛି ଯେ କବି ଭାବରେ ପରିଚିତ ହେଲେ ମଧ୍ୟ ରବୀନ୍ଦ୍ରଙ୍କର ନାଟ୍ୟପ୍ରତିଭା ସର୍ବଥା ସ୍ୱୀକୃତ । ସେ 'ଚଣ୍ଡା', 'ସନ୍ନ୍ୟାସୀ' ପ୍ରଭୃତି ନୃତ୍ୟନାଟିକା ଲେଖି ନାଟ୍ୟାମୋଦୀମାନଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ତାଙ୍କର ନାଟକଗୁଡ଼ିକୁ ଦୁଇ ଭାଗରେ ବିଭକ୍ତ କରାଯାଇପାରେ; ଯଥା—(୧) ବାସ୍ତବଧର୍ମୀ ନାଟକ (୨) ଭାବଧର୍ମୀ ନାଟକ । ତାଙ୍କର ନାଟକଗୁଡ଼ିକ ହେଲା—ବିସର୍ଜନ (Secrifice), ମୁକ୍ତାଧାରା (Waterfall), ସନ୍ନ୍ୟାସୀ । ତାଙ୍କ ନାଟକର ସଂଳାପରେ ଚରିତ୍ର-ଚିତ୍ରଣ ଅପେକ୍ଷା ଗୀତିମୟତା ବିଶେଷ ପରିମାଣରେ ପ୍ରକଟିତ । ତାଙ୍କର 'ମାଳିନୀ' ଏକ ବାସ୍ତବଧର୍ମୀ ନାଟକ । ମହାଭାରତର ବିଭିନ୍ନ ଉପାଖ୍ୟାନକୁ ଆଶ୍ରୟକରି ରବୀନ୍ଦ୍ରନାଥ କେତେକ ନାଟକ ପ୍ରଣୟନ କରିଥିଲେ । 'ଦେବଯାନୀ', 'ଚଣ୍ଡା' ସେଗୁଡ଼ିକ ମଧ୍ୟରେ ଉଲ୍ଲେଖଯୋଗ୍ୟ । ଭାବଧର୍ମୀ ଓ ପ୍ରତୀକଧର୍ମୀ ନାଟକ ଭାବରେ 'ମୁକ୍ତାଧାରା'ର ନାମ ଉଲ୍ଲେଖଯୋଗ୍ୟ । 'The King of the Dark Chamber' ତାଙ୍କର ସର୍ବଶ୍ରେଷ୍ଠ ପ୍ରତୀକଧର୍ମୀ ନାଟକ । ସେହିପରି 'ରକ୍ତକରବୀ' ଏକ ବ୍ୟଞ୍ଜନାଧର୍ମୀ ନାଟକ । ରବୀନ୍ଦ୍ରନାଥଙ୍କ ନାଟକରେ କେତେକ ସ୍ଥଳରେ ଆଙ୍ଗିକ ତ୍ରୁଟି ମଧ୍ୟ ଦେଖାଯାଏ । କିନ୍ତୁ ସେହିସବୁ ନାଟ୍ୟ ରଚନାର କବିତ୍ୱ ବିଳାସ ଓ ଦାର୍ଶନିକ ଆବେଗ ଏଡ଼େ କ୍ଷିପ୍ର ଯେ ଦର୍ଶକମାନେ ତାହାର ସାର୍ବଜନୀନ ଭାବରୁ ନିଜକୁ ମୁକ୍ତ କରି ପାରନ୍ତି ନାହିଁ । ନାଟକର ଗଳ୍ପାଂଶ ଯାହା ହେଉ ପଛକେ, ଜୀବନର ଯେଉଁ ଗଭୀର ସତ୍ୟ ନାଟ୍ୟକାର ରବୀନ୍ଦ୍ରନାଥ ବିଶ୍ଳେଷଣ କରିଛନ୍ତି, ତାହା ସବୁ ଯୁଗରେ ଓ ସବୁ ଦେଶରେ ନିଶ୍ଚୟ ଆଦୃତ ହେବ ।

## ଆଧୁନିକ ନାଟ୍ୟଧାରା

ରଙ୍ଗମଞ୍ଚ ସମ୍ବନ୍ଧୀୟ ପରୀକ୍ଷା ନିରୀକ୍ଷା ଆଧୁନିକ ବଙ୍ଗଳା ନାଟକ ଏବଂ ଥିଏଟର ଆନ୍ଦୋଳନର ମୁଖ୍ୟ ଭୂମିକା । ସର୍ବାଧୁନିକ ନାଟକମାନଙ୍କରେ ପ୍ରତିଫଳିତ ଦୃଷ୍ଟିକୋଣ ହେଉଛି ସମାଜଧର୍ମୀ ବାସ୍ତବବାଦ । ବିମଲ କରଙ୍କର 'ଯଦୁବଂଶ', ଉତ୍ପଳଦତ୍ତଙ୍କର 'ଅଙ୍ଗାର', ବିଜନ ଭଟ୍ଟାଚାର୍ଯ୍ୟଙ୍କର 'ଗର୍ଭବତୀ ଜନନୀ', 'ଦେବୀ ଗର୍ଜ୍ଜନ' ପ୍ରଭୃତି ନାଟକରେ ସମାଜବାଦୀ ଦୃଷ୍ଟିକୋଣ ପ୍ରତିଫଳିତ ।' ଧନଞ୍ଜୟ ବୈରାଗୀଙ୍କ 'ରଜନୀଗନ୍ଧା' ରୋମାନ୍ସଧର୍ମୀ ମୋହିତ ଚଟ୍ଟୋପାଧ୍ୟାୟଙ୍କର 'ଦ୍ୱୀପେର ରାଜ୍ୟ', 'ମୃତ୍ୟୁ ସଂବାଦ', 'ଚନ୍ଦ୍ରାଲୋକେ ଅଗ୍ନିକାଣ୍ଡ', କ୍ୟାପ୍‌ଟେନ ହୁରା, 'ରାଜରକ୍ତ', ବାଦଲ ସରକାରଙ୍କର ଏବଂ ଇନ୍ଦ୍ରଜିତ୍ ପ୍ରତୀକ ଏବଂ ଉଦ୍ଭଟ ଧର୍ମୀ ନାଟକ । ଧୀରେନ୍ଦ୍ରନାଥ ଗଙ୍ଗୋପାଧ୍ୟାୟଙ୍କ, 'ସମ୍ରାଟ' ଏବଂ ସନ୍ତୋଷକୁମାର ଘୋଷଙ୍କ

'ଆଲୋକ' ନାଟକରେ ମନସ୍ତତ୍ତ୍ୱ ହିଁ ପ୍ରତିଫଳିତ । ସେହିପରି ଶମ୍ଭୁ ମିତ୍ରଙ୍କର 'କାଞ୍ଚନ ରଙ୍ଗ', ବାଦଲ ସରକାରଙ୍କ 'ଜବବାହିନୀ' ବେଶ୍ ବ୍ୟଙ୍ଗ-ବିଦ୍ରୂପାତ୍ମକ କୃତି । ଏ ମୌଳିକ ନାଟକରଚନା ବ୍ୟତୀତ ପାଶ୍ଚାତ୍ୟ ସାହିତ୍ୟରୁ ଗତ ବର୍ଷମାନଙ୍କରେ ବହୁ ନାଟକ ବଂଗଳାରେ ଅନୂଦିତ ହୋଇପାରିଛି; ଯଥା—ରୁଦ୍ରପ୍ରସାଦ ସେନ୍‌ଗୁପ୍ତଙ୍କର 'ଯଖନ୍ ଏକା', ଶମ୍ଭୁ ମିତ୍ରଙ୍କର 'ରଜା ଓଡ଼ିପସ୍‌ର ପୁତୁଲ୍ ଖେଲା', ଅଜିତ ବନ୍ଦୋପାଧ୍ୟାୟଙ୍କର 'ନାଟ୍ୟକାରର ସଂଧାନେ ଛଅଟି ଚରିତ୍ର', 'ମଞ୍ଜରୀ ଆମେର୍ ମଞ୍ଜରୀ', 'ତିନ ପଇସାର ପାଲା' । କାବ୍ୟ-ନାଟିକା ମଧ୍ୟ ଆଧୁନିକ ନାଟ୍ୟ-ସାହିତ୍ୟ ରଚନାର ଏକ ମୁଖ୍ୟ ବିଭାଗ । ବୁଦ୍ଧଦେବ ବସୁଙ୍କର 'ତପସ୍ୱୀ ଓ ତରଙ୍ଗିଣୀ' ଏକ ସାର୍ଥକ ସୃଷ୍ଟି । ତାଙ୍କର 'ଅନାମ୍ନୀ ଅଙ୍ଗନା' ମହାଭାରତର ଏକ ବିସ୍ମୃତ ଅଧ୍ୟାୟ ଉପରେ ଆଧାରିତ କାବ୍ୟ-ନାଟିକା ।

## ପ୍ରବନ୍ଧ, ସମାଲୋଚନା ଓ ଭ୍ରମଣ-ସାହିତ୍ୟ

ଆଧୁନିକ ବଙ୍ଗଳା ସାହିତ୍ୟ ପ୍ରବନ୍ଧ, ସମାଲୋଚନା ପ୍ରଭୃତି ରଚନାରେ ମଧ୍ୟ ବେଶ୍ ସମୃଦ୍ଧ । ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ସଂଖ୍ୟାଧିକ ପତ୍ରିକାର ପ୍ରକାଶନଯୋଗୁଁ ଏତାଦୃଶ ମୌଳିକ ରଚନା ପ୍ରତି ସାହିତ୍ୟିକ-ମାନେ ଧ୍ୟାନ ଦେଇଥିଲେ । କାବ୍ୟକବିତା, କ୍ଷୁଦ୍ରଗଳ୍ପ, ଉପନ୍ୟାସ ଅପେକ୍ଷା ପ୍ରବନ୍ଧ ରଚନା ଲେଖକର ଆତ୍ମପ୍ରକାଶ ପକ୍ଷେ ବିଶେଷ ସହାୟକ । ପୂର୍ବେ କୁହାଯାଇଛି ଯେ ଦିଗ୍‌ଦର୍ଶନ ସମାଚାର ଦର୍ପଣ, ସମାଚାର ଚନ୍ଦ୍ରିକା, ସମ୍ବାଦ କୌମୁଦୀ, ଜ୍ଞାନାନ୍ୱେଷଣ ସମ୍ବାଦ ପ୍ରଭାକର ପ୍ରଭୃତି ପତ୍ରପତ୍ରିକାର ଆବିର୍ଭାବରେ ବଙ୍ଗଳା ପ୍ରବନ୍ଧର ଆଶ୍ଚର୍ଯ୍ୟକର ବିକାଶ ଘଟିଥିଲା । ଧର୍ମ, ଦର୍ଶନ, ସାମାଜିକ ସମସ୍ୟାବଳୀ, ବିଜ୍ଞାନ ପ୍ରସଙ୍ଗ, ପ୍ରକାଶିତ କାବ୍ୟକବିତାର ଆଲୋଚନା ବିଷୟର ପ୍ରଥମ ପର୍ଯ୍ୟାୟର ପ୍ରବନ୍ଧ ରଚନା ହିଁ ସ୍ଥାନ ପାଇଥିଲା । ସଂସ୍କାରକ ରାମମୋହନ ରାୟଙ୍କଠାରୁ ଆରମ୍ଭ କରି ବିଂଶ ଶତାବ୍ଦୀର ପ୍ରାରମ୍ଭ ପର୍ଯ୍ୟନ୍ତ ବହୁ ଚିନ୍ତାଶୀଳ ବ୍ୟକ୍ତି ସମାଜ, ଦେଶ, ରାଷ୍ଟ୍ର, ବିଜ୍ଞାନ, ପ୍ରକୃତିକୁ କେନ୍ଦ୍ର କରି ପ୍ରବନ୍ଧସମୂହ ରଚନା କରିଥିଲେ । ସାହିତ୍ୟରେ ଆଧୁନିକ ଜାଗରଣର ପ୍ରାକ୍‌କାଳରେ ରାମମୋହନ ରାୟ, ଭବାନୀଚରଣ ବନ୍ଦୋପାଧ୍ୟାୟ, ଈଶ୍ୱରଚନ୍ଦ୍ର ବିଦ୍ୟାସାଗର, ଈଶ୍ୱର ଗୁପ୍ତ, ଅକ୍ଷୟକୁମାର ଦତ୍ତ, ମହର୍ଷି ଦେବେନ୍ଦ୍ରନାଥ ଠାକୁର, ରାଜନାରାୟଣ ବସୁ, ଭୂଦେବ ମୁଖୋପାଧ୍ୟାୟ ପ୍ରମୁଖ ସମାଜ-ସଂସ୍କାରକ ଏବଂ ସୁଲେଖକ ବିଭିନ୍ନ ଧରଣର ପ୍ରବନ୍ଧ ଲେଖି ସାହିତ୍ୟର ଗୁଣାତ୍ମକ ଏବଂ ପରିମାଣାତ୍ମକ ଅଭିବୃଦ୍ଧିର ଭିତ୍ତି ପ୍ରତିଷ୍ଠା କରିଥିଲେ । କ୍ରମେ ରାଜେନ୍ଦ୍ରଲାଲ ମିତ୍ର, ବଙ୍କିମଚନ୍ଦ୍ର, ଚଟ୍ଟୋପାଧ୍ୟାୟ, କେଶବଚନ୍ଦ୍ର ସେନ୍, ଶିବନାଥ ଶାସ୍ତ୍ରୀଙ୍କ ସଦୃଶ ପ୍ରାବନ୍ଧିକ ଏବଂ ସଂପାଦକଙ୍କ

ଲେଖନୀରେ ପ୍ରବନ୍ଧସାହିତ୍ୟର ନୂତନ ରୂପ ପ୍ରବର୍ତ୍ତିତ ହେଲା । ଗବେଷକ ହରପ୍ରସାଦ ଶାସ୍ତ୍ରୀ, ସ୍ୱାମୀ ବିବେକାନନ୍ଦ, କାଳିପ୍ରସନ୍ନ ଘୋଷଙ୍କର ବିବିଧ ଗଦ୍ୟରଚନା ବଙ୍ଗଳା ଗଦ୍ୟ-ସାହିତ୍ୟର ବଳିଷ୍ଠତା ପାଇଁ ଦାୟୀ ହୋଇଥିଲା । ମହର୍ଷି ଦେବେନ୍ଦ୍ରନାଥ ଠାକୁରଙ୍କ ପ୍ରତିଷ୍ଠିତ 'ତତ୍ତ୍ୱବୋଧିନୀ' ପତ୍ରିକାର ସମ୍ପାଦକ ଅକ୍ଷୟ କିଶୋର ଦତ୍ତଙ୍କ ରଚନାବଳୀ ମଧ୍ୟରେ ଜ୍ଞାନବିଜ୍ଞାନ, ଆଲୋଚନା, ମନନଶୀଳ ପ୍ରବନ୍ଧ, ଆଧ୍ୟାତ୍ମିକ ବ୍ୟାଖ୍ୟା, ଦର୍ଶନ, ଇତିହାସ ଅନ୍ତର୍ଗତ । ଅକ୍ଷୟକୁମାର ପ୍ରଥମେ 'ବିଦ୍ୟାଦର୍ଶନ' ନାମକ ପତ୍ରିକା ସଂପାଦନା କରିଥିଲେ । 'Constitution of Men' ନାମକ ଇଂରେଜୀ ପୁସ୍ତକର ଅବଲମ୍ବନରେ ଅକ୍ଷୟକୁମାର ବାହ୍ୟବସ୍ତୁ ସହିତ ମାନବପ୍ରକୃତିର ସମ୍ବନ୍ଧ ବିଚାରଶୀର୍ଷକ ଗ୍ରନ୍ଥ ରଚନା କରିଥିଲେ । ଗ୍ରନ୍ଥର ପ୍ରଥମ ଭାଗ ମିତାଚାର, ଜୀବନଯାତ୍ରାର ପଦ୍ଧତି, ନିରାମିଷ ଖାଦ୍ୟ ସଂପର୍କୀୟ ଆଲୋଚନା ରହିଛି ଏବଂ ଦ୍ୱିତୀୟ ଭାଗରେ ଧର୍ମ, ସାମାଜିକତା, ନିଶାପାନର କୁପରିଣତି ଆଲୋଚିତ । ତାଙ୍କର 'ଚାରୁପାଠ' (ପ୍ରଥମ ଭାଗ ୧୮୫୩ ଓ ୨ୟ ଭାଗ ୧୮୫୪ରେ ପ୍ରକାଶିତ) ବହୁଦିନ ଧରି ପାଠ୍ୟ ପୁସ୍ତକରୂପେ ପ୍ରଚଳିତ ହୋଇଥିଲା । 'ଧର୍ମନୀତି' (୧୮୫୬), 'ପଦାର୍ଥବିଦ୍ୟା' (୧୮୫୬), ଭାରତବର୍ଷୀୟ ଉପାସକ ସମ୍ପ୍ରଦାୟ (ଦୁଇ ଭାଗସମ୍ପନ୍ନ), ପ୍ରାଚୀନ ହିନ୍ଦୁ ଦିଗେର ଯାତ୍ରା ଓ ବାଣିଜ୍ୟ ବିସ୍ତାର (୧୯୦୧) ପ୍ରଭୃତି ଗ୍ରନ୍ଥ ଅକ୍ଷୟକୁମାର ଲେଖିଥିଲେ । ତାଙ୍କର ଗଦ୍ୟଶୈଳୀ ସାଧାରଣତଃ ଗମ୍ଭୀର ସଂସ୍କୃତ ଶବ୍ଦାବଳୀ, ଯୁକ୍ତିନିଷ୍ଠା ଏବଂ ସ୍ୱଦେଶାନୁରାଗଦ୍ୱାରା ଚିହ୍ନିତ ।

ରାଜା ରାମମୋହନ ରାୟଙ୍କ ପ୍ରତିଷ୍ଠିତ ବ୍ରାହ୍ମସଭା ମହର୍ଷି ଦେବେନ୍ଦ୍ରନାଥଙ୍କ ପ୍ରଚେଷ୍ଟାରେ ବ୍ରାହ୍ମସମାଜରେ ପରିଣତ ହେଲା । ସେହି ଶତାବ୍ଦୀରେ ବଙ୍ଗଳାର ସମସ୍ତ ସାମାଜିକ ଏବଂ ଧାର୍ମିକ ଆନ୍ଦୋଳନ ସହିତ ଠାକୁର ପରିବାର ନିବିଡ଼ଭାବରେ ସଂଶ୍ଳିଷ୍ଟ ଥିଲେ । ୧୮୩୯ରେ ତତ୍ତ୍ୱବୋଧିନୀ ସଭା ପ୍ରତିଷ୍ଠିତ ହୋଇଥିଲା । ବଙ୍ଗଳା ଗଦ୍ୟ-ସାହିତ୍ୟର ବିକାଶମୂଳରେ ତାଙ୍କର ଦାନ ନିହିତ । ସେଥିପାଇଁ ବଙ୍ଗଳା ପ୍ରବନ୍ଧ-ସାହିତ୍ୟର ପ୍ରଥମ ଶିଳ୍ପୀ ମହର୍ଷି ଦେବେନ୍ଦ୍ରନାଥ ଠାକୁର ବୋଲି କୁହାଯାଏ । ବ୍ରାହ୍ମଧର୍ମଶୀର୍ଷକ ବିବିଧ ଆଲୋଚନା ଏବଂ ତାଙ୍କ ଲିଖିତ ଜୀବନଚରିତ (୧୮୯୮)ରୁ ତାଙ୍କ ଗଦ୍ୟଶୈଳୀର ନିଦର୍ଶନ ମିଳିଥାଏ ।

ଭୂଦେବ ମୁଖୋପାଧ୍ୟାୟ (୧୮୪୫-୧୮୯୪) ବଙ୍ଗଳା ପ୍ରବନ୍ଧ-ସାହିତ୍ୟରେ ଜଣେ ଶକ୍ତିଶାଳୀ ପ୍ରବର୍ତ୍ତକ । ସେ ନିଜେ ଉଚ୍ଚଶିକ୍ଷା ଲାଭ କରିଥିଲେ । ସରକାରୀ ଶିକ୍ଷା ବିଭାଗରେ ମଧ୍ୟ ଉଚ୍ଚପଦବୀ ପ୍ରାପ୍ତ ହୋଇଥିଲେ । ହିନ୍ଦୁ ସଭ୍ୟତା ଏବଂ ସଂସ୍କୃତି ମଧ୍ୟରେ ମାନବଜୀବନର ଯେ ବାସ୍ତବ ରୂପ ପ୍ରକଟିତ, ତାହା ସେ ଉପଲବ୍ଧି କରିଥିଲେ । ଫଳରେ ତାଙ୍କର ଅଜସ୍ର ଗଦ୍ୟରଚନା ପ୍ରାଚ୍ୟ ଓ

ପ୍ରତୀଚ୍ୟ ସଭ୍ୟତାର ସମନ୍ୱୟ ବ୍ୟାଖ୍ୟାକାରୀ ବାଣୀରେ ପରିପୂର୍ଣ୍ଣ । ସ୍ୱଦେଶ ଧର୍ମ, ଶାସ୍ତ୍ର, ସମାଜ, ସାହିତ୍ୟ, ସଂସ୍କାର ପ୍ରତି ତାଙ୍କର ପ୍ରଗାଢ଼ ଅନୁରାଗ ତାଙ୍କ ଲିଖିତ ରଚନାସମୂହରେ ବଳିଷ୍ଠଭାବରେ ପ୍ରତିଫଳିତ । ସାହିତ୍ୟ ମାଧ୍ୟମରେ ହିନ୍ଦୁଧର୍ମର ପୁନର୍ଗଠନ ପାଇଁ ସମସ୍ତଙ୍କୁ ଆହ୍ୱାନ ଜଣାଇଥିଲେ । ତାଙ୍କ ସଂପାଦିତ ଏଡୁକେଶନ ଗେଜେଟ୍ ପତ୍ରିକା (୧୮୬୮) ହେମଚନ୍ଦ୍ର, ନବୀନ ଚନ୍ଦ୍ର, ଦୀନବନ୍ଧୁ ମିତ୍ର ପ୍ରଭୃତି ଲେଖକଙ୍କର ବିଭିନ୍ନ ବିଷୟକ ପ୍ରବନ୍ଧ ବରାବର ପ୍ରକାଶ କରୁଥିଲା । ସାମାଜିକ, ପାରିବାରିକ ପ୍ରବନ୍ଧରଚନା ଏହି ପତ୍ରିକାର ଥିଲା ବିଶେଷତ୍ୱ । ଭୂଦେବଙ୍କ ଲିଖିତ ଗଦ୍ୟ ପୁସ୍ତକ ମଧ୍ୟରେ ଶିକ୍ଷା ବିଷୟକ ପ୍ରସ୍ତାବ (୧୮୫୬), ଐତିହାସିକ ଉପନ୍ୟାସ (୧୮୫୭-୬୮) ପ୍ରାକୃତିକ ବିଜ୍ଞାନ, ପୁରାବୃତ୍ତସାର (୧୮୫୮, ଇଂଲଣ୍ଡେର ଇତିହାସ (୧୮୬୨), ରୋମେର୍ ଇତିହାସ (୧୮୬୩), ପାରିବାରିକ ପ୍ରବନ୍ଧ (୧୮୮୨), ସାମାଜିକ ପ୍ରବନ୍ଧ (୧୮୯୨) ଆଚାର ପ୍ରବନ୍ଧ, (୧୮୯୫), ବିବିଧ ପ୍ରବନ୍ଧ (ପ୍ରଥମ ଓ ଦ୍ୱିତୀୟ ଭାଗ (୧୮୯୫, ୧୯୦୫), ବଙ୍ଗଳାର ଇତିହାସ (୧୯୦୦) ଉଲ୍ଲେଖଯୋଗ୍ୟ । ଭୂଦେବଙ୍କ ଶୈଳୀରେ ସରଳତା ଏବଂ ପ୍ରାଞ୍ଜଳତା ପରିଲକ୍ଷିତ ହୁଏ ।

ଔପନ୍ୟାସିକ ବଙ୍କିମଚନ୍ଦ୍ର ଆଧୁନିକ ବଙ୍ଗଳା ଗଦ୍ୟ-ସାହିତ୍ୟର ଧାରା ନିର୍ଣ୍ଣୟ କରିବାରେ ମଧ୍ୟ ଜଣେ କୃତବିଦ୍ୟ ଶିଳ୍ପୀ ଥିଲେ । ସଂବାଦପତ୍ର ସଂପାଦନା, ପ୍ରବନ୍ଧ ରଚନା ମଧ୍ୟରେ ତାଙ୍କ ଗଦ୍ୟରୀତି ସ୍ପଷ୍ଟ । ସେ ବଙ୍ଗ-ଦର୍ଶନ (୧୮୭୨) ପତ୍ରିକାର ସଂପାଦକ ଥିଲେ । ସେହି ପତ୍ରିକାରେ ପ୍ରକାଶିତ ତାଙ୍କର 'ଲୋକରହସ୍ୟ' ଏବଂ 'କମଲାକାନ୍ତେର ଦପ୍ତର' ପ୍ରଭୃତି ରଚନା ସେତେବେଳେ ପାଠକଙ୍କ ମଧ୍ୟରେ ଚହଳ ସୃଷ୍ଟି କରିଥିଲା । ନୂତନ ଧ୍ୟାନଧାରଣା, ନୂତନ ଚିନ୍ତା ଏବଂ ବ୍ୟକ୍ତି ତଥା ସମାଜର ଅନୁଶୀଳନ ବଙ୍କିମଚନ୍ଦ୍ରଙ୍କ ଗଦ୍ୟରେ ସ୍ପଷ୍ଟ ହୋଇଥିଲା । ସେ ସମୟରେ ଆତ୍ମ-ମର୍ଯ୍ୟାଦାବୋଧହୀନ ବଙ୍ଗାଳୀ ବାବୁଙ୍କୁ ଲକ୍ଷ୍ୟ କରି ବଙ୍କିମଚନ୍ଦ୍ର 'ବାବୁ' ପ୍ରବନ୍ଧରେ କଟୁ ସମାଲୋଚନା କରିଥିଲେ । ବାବୁର ପରିଚୟ ଦେଇ ସେ ଲେଖିଥିଲେ—"ଯିଏ ମିଶନାରୀ ନିକଟରେ ଖ୍ରୀଷ୍ଟିୟାନ, କେଶବଚନ୍ଦ୍ର ନିକଟରେ ବ୍ରାହ୍ମ, ପିତାର ନିକଟରେ ହିନ୍ଦୁ ଏବଂ ଭିକ୍ଷୁକ ବ୍ରାହ୍ମଣ ନିକଟରେ ନାସ୍ତିକ, ସେ ହେଉଛି ବାବୁ ।" ତାଙ୍କର 'ବିଜ୍ଞର ରହସ୍ୟ' (୧୮୭୫), 'ସାମ୍ୟ' (୧୮୭୯), 'ବିବିଧ ପ୍ରବନ୍ଧ'ରେ ସମାଜ ଏବଂ ବିଜ୍ଞାନର ଆଲୋଚନା କରାଯାଇଛି । 'ବିବିଧ ପ୍ରବନ୍ଧ' ପୁସ୍ତକରେ ଅନ୍ତର୍ଭୁକ୍ତ ତାଙ୍କର 'ବଙ୍ଗ ଦେଶର କୃଷକ' ଏକ ଶକ୍ତିଶାଳୀ ରଚନା । ବଙ୍ଗଳାର କୃଷକ କିପରି ଭୂସ୍ୱାମୀମାନଙ୍କ ଦ୍ୱାରା କବଳିତ, ତାହାହିଁ ଏହି ପ୍ରବନ୍ଧରେ ଆଲୋଚିତ । ବଙ୍କିମଚନ୍ଦ୍ର 'କୃଷ୍ଣ ଚରିତ' (୧୮୮୬) ଗ୍ରନ୍ଥରେ କୃଷ୍ଣଙ୍କୁ ମାତ୍ର ଜଣେ ମନୁଷ୍ୟ ରୂପରେ ଉପସ୍ଥାପିତ (The wisest and Great of Hindus) କରିଛନ୍ତି ।

'ଧର୍ମତତ୍ତ୍ୱ' ଗ୍ରନ୍ଥରେ ଲେଖକ ଗୁରୁ-ଶିଷ୍ୟ କଥୋପକଥନ ଛଳରେ ଧର୍ମର ଗୂଢ଼ ତତ୍ତ୍ୱ ଆଲୋଚନା କରିଛନ୍ତି । ବିଭିନ୍ନ ଗଦ୍ୟରଚନା ମଧ୍ୟରେ ହିଁ ଯୁକ୍ତିବାଦୀ ସଂସ୍କାରକ ବଙ୍କିମ, କବି ବଙ୍କିମ, ସ୍ୱଦେଶପ୍ରେମୀ ବଙ୍କିମଙ୍କର ଦୃଷ୍ଟିକୋଣ ହିଁ ପ୍ରତିଫଳିତ । ତାଙ୍କର ଗଦ୍ୟଶୈଳୀ ଆପାତତଃ ଲଳିତଧର୍ମୀ ।

ଶିବନାଥ ଶାସ୍ତ୍ରୀ (୧୮୪୭-୧୯୧୯) ଜୀବନୀ-ଲେଖକ ଭାବରେ ପରିଚିତ । ସେ ବ୍ରାହ୍ମଧର୍ମାବଲମ୍ବୀ ଥିଲେ । ରାମତନୁ ଲହିଡ଼ୀ ଓ ତତ୍କାଳୀନ ବଙ୍ଗ ସମାଜ, ଆତ୍ମଚରିତ, ମହର୍ଷି ଦେବେନ୍ଦ୍ରନାଥ, ରାମମୋହନ ରାୟ, କେଶବଚନ୍ଦ୍ର ସେନଙ୍କର ଜୀବନୀ, ଧର୍ମଜୀବନ ପ୍ରଭୃତି ତାଙ୍କର ଗଦ୍ୟରଚନା । ତାଙ୍କର ବିଭିନ୍ନ ଜୀବନଚରିତ ଊନବିଂଶ ଶତାବ୍ଦୀର ସାମାଜିକ ଏବଂ ସାଂସ୍କୃତିକ ଉପାଦାନରେ ପୂର୍ଣ୍ଣ । ତାଙ୍କର ଗଦ୍ୟଶୈଳୀ ସରଳ ଏବଂ ସେଥିରେ କୌଣସି ସ୍ୱାତନ୍ତ୍ର୍ୟ ଦେଖାଯାଏ ନାହିଁ । ଶିବନାଥ ଶାସ୍ତ୍ରୀ କବିତା ଏବଂ ଉପନ୍ୟାସ ମଧ୍ୟ ରଚନା କରିଥିଲେ । ନିର୍ବାସିତର ବିଳାପ (୧୮୬୮), ପୁଷ୍ପାଞ୍ଜଳି (୧୮୮୮), ଛାୟାମୟୀ ପରିଣୟ ପ୍ରଭୃତି ବିଶିଷ୍ଟ କବିତା ଗ୍ରନ୍ଥ ଏବଂ ନୟନତାରା, (୧୮୯୯), ଯୁଗାନ୍ତର (୧୮୯୧), ମେଜ ବୌ (୧୯୦୧) ପ୍ରଭୃତି ତାଙ୍କର ପରିଚିତ ଉପନ୍ୟାସ । ସଂକ୍ଷେପରେ, ତାଙ୍କର ବିଭିନ୍ନ ଗଦ୍ୟରଚନାରେ ସଂସ୍କାରକ ଏବଂ ଐତିହାସିକର ଦୃଷ୍ଟିଭଙ୍ଗୀ ପ୍ରତିଫଳିତ ।

ରଜନୀକାନ୍ତ ଗୁପ୍ତ (୧୮୪୯-୧୯୦୦) ଐତିହାସିକ ବିବରଣୀ ବର୍ଣ୍ଣନା ମାଧ୍ୟମରେ ସ୍ୱଦେଶଗୌରବ ଏବଂ ଐତିହ୍ୟ ପାଠକମାନଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ତାଙ୍କର 'ସିପାହି ଯୁଦ୍ଧେର ଇତିହାସ' ଏକ ଉଲ୍ଲେଖଯୋଗ୍ୟ ଗଦ୍ୟକୃତି । ତାହା ପାଞ୍ଚ ଭାଗରେ ବିଭକ୍ତ । ତାଙ୍କର 'ଆର୍ଯ୍ୟକୀର୍ତ୍ତି' ପୁସ୍ତକରେ ବିଭିନ୍ନ ସମସ୍ୟା ଆଲୋଚନାମୂଳକ ପ୍ରବନ୍ଧ ସନ୍ନିବେଶିତ । ଏତଦ୍‌ବ୍ୟତୀତ ଲେଖକ ତାଙ୍କର ଜୟଦେବ ଚରିତ (୧୮୭୩), ପାଣିନି (୧୮୭୬), ଭାରତ କାହାଣୀ, ବୀର ମହିମା, ଐତିହାସିକ ପାଠ, ପ୍ରତିଭା, ଭାରତ ପ୍ରସଙ୍ଗ, ଭୀଷ୍ମ ଚରିତ ପ୍ରଭୃତି ଗ୍ରନ୍ଥରେ ଦେଶର ତରୁଣତରୁଣୀମାନଙ୍କ ମନରେ ସ୍ୱଦେଶାନୁରାଗ ସୃଷ୍ଟି କରିବା ପାଇଁ ପ୍ରୟତ୍ନ କରିଥିଲେ । ସେଥିପାଇଁ ତାଙ୍କର ଗଦ୍ୟଭାଷା ଦେଶ, ସମାଜ ଏବଂ ସଂସ୍କୃତିର ଯଥାର୍ଥ ମାଧ୍ୟମ ହୋଇପାରିଛି ।

ଊନବିଂଶ ଶତାବ୍ଦୀରେ ବଙ୍ଗଳା ଗଦ୍ୟ-ସାହିତ୍ୟର ଏକ ନୂତନ ଧାରା-ପ୍ରବର୍ତ୍ତକ ଭାବରେ ଗବେଷକ, ସଂସ୍କୃତ ପଣ୍ଡିତ ହରପ୍ରସାଦ ଶାସ୍ତ୍ରୀ (୧୮୫୩-୧୯୩୧)ଙ୍କ ନାମ ଉଲ୍ଲେଖଯୋଗ୍ୟ । ବୌଦ୍ଧ ଧର୍ମଶାସ୍ତ୍ରରେ ତାଙ୍କର ଗଭୀର ପ୍ରବେଶ ଥିଲା । ସେ ନେପାଳରୁ ବୌଦ୍ଧଗାନ ଓ ଦୋହା ଆବିଷ୍କାର କରି ତାହାର ପ୍ରସଂଗରେ ପାଣ୍ଡିତ୍ୟପୂର୍ଣ୍ଣ ପ୍ରବନ୍ଧ ରଚନା କରିଥିଲେ । ତାଙ୍କର ବିଭିନ୍ନ ବିଷୟକ ସଂଖ୍ୟାଧିକ ପ୍ରବନ୍ଧ, ଜୀବନୀ, ସମାଲୋଚନା, ଇତିହାସ ବଙ୍ଗଳା ଗଦ୍ୟ-ସାହିତ୍ୟର

ସ୍ୱରୂପ ଏବଂ କଳେବର ବୃଦ୍ଧି କରିଥିଲା । ବାଲ୍ମୀକିର ଜୟ (୧୮୭୬), ଭାରତ ମହିଳା, ପ୍ରାଚୀନ ବଙ୍ଗଳାର ଗୌରବ, ବୌଦ୍ଧଧର୍ମ, ମେଘଦୂତ, ବଙ୍ଗଳା ସାହିତ୍ୟ ଆଲୋଚନା, ସାହିତ୍ୟାଲୋଚନା, ଐତିହାସିକ ନିବନ୍ଧମାଳା, ଶିକ୍ଷା ସଂଦର୍ଭ, ଭାରତେର ଇତିହାସ ପ୍ରଭୃତି ଲେଖା ପ୍ରାବନ୍ଧିକଙ୍କର ବଙ୍ଗଳା ପ୍ରବନ୍ଧ-ସାହିତ୍ୟ ପ୍ରତି ଉଲ୍ଲେଖଯୋଗ୍ୟ ଦାନ । ବଙ୍ଗଳା ପ୍ରବନ୍ଧ ସାହିତ୍ୟବିକାଶର ଆଦି ଯୁଗରେ ବିଜ୍ଞାନ ଅଧ୍ୟାପକ ରାମେନ୍ଦ୍ର ସୁନ୍ଦର ତ୍ରିବେଦୀ (୧୮୬୪-୧୯୧୯)ଙ୍କର ବିଜ୍ଞାନ, ଧର୍ମ, ଦର୍ଶନଶୀର୍ଷକ ବହୁବିଧ ପ୍ରବନ୍ଧ ପାଠକଙ୍କର ଦୃଷ୍ଟି ଆକର୍ଷଣ କରିଥାଏ । ସେ ବିଚିତ୍ର ପ୍ରସଙ୍ଗ, ଶବ୍ଦକଥା, ବିଚିତ୍ର ଜଗତ, ପ୍ରକୃତି, ଚରିତକଥା, ବଙ୍ଗଳା ଲକ୍ଷ୍ମୀବ୍ରତ କଥା, ଜଗତ କଥା, ପ୍ରଭୃତି ପୁସ୍ତକ ରଚନା କରିଥିଲେ । ତାଙ୍କ ରଚନାରେ ତଥ୍ୟ ଏବଂ ତତ୍ତ୍ୱର ମିଶ୍ରଣ ଏବଂ ନିର୍ଭୀକ ଚିନ୍ତାର ନିଦର୍ଶନ ଦେଖିବାକୁ ମିଳେ । ମାନବପ୍ରକୃତିର ଅଧ୍ୟୟନ, ପ୍ରକୃତି-ଜଗତର ପର୍ଯ୍ୟାଲୋଚନା ଏହି ପ୍ରବନ୍ଧକଳାର ବୈଶିଷ୍ଟ୍ୟ ।

ଉପରୋକ୍ତ ପ୍ରାବନ୍ଧିକମାନଙ୍କ ବ୍ୟତୀତ ଆଧୁନିକ ଯୁଗର ଅଭ୍ୟୁଦୟ କାଳରେ ବହୁ ଲେଖକ ପ୍ରବନ୍ଧ, ସମାଲୋଚନା, ଜୀବନୀ, ଆଲୋଚନା କ୍ଷେତ୍ରରେ ଲେଖନୀ ଚଳାଇଥିଲେ । ରବୀନ୍ଦ୍ରନାଥ ଠାକୁର ମଧ୍ୟ ସମାଲୋଚନା ଓ ପ୍ରବନ୍ଧ-ସାହିତ୍ୟଧାରାକୁ ପୁଷ୍ଟ କରିଥିଲେ । କାଳିପ୍ରସନ୍ନ ଘୋଷ, ଜଳଧର ସେନ୍, ରାଖାଲଦାସ ବନ୍ଦୋପାଧ୍ୟାୟ, ଶଶାଙ୍କମୋହନ ସେନ୍, ପ୍ରମଥ ଚୌଧୁରୀଙ୍କ ନାମ ମୌଳିକ ପ୍ରାବନ୍ଧିକମାନଙ୍କ ପ୍ରସଂଗରେ ଉଲ୍ଲେଖଯୋଗ୍ୟ । ପ୍ରମଥ ଚୌଧୁରୀଙ୍କ ଛଦ୍ମନାମ ହେଉଛି 'ବୀରବଲ' । ଚଳିତ ଭାଷାର ବ୍ୟବହାର, ବ୍ୟଙ୍ଗାତ୍ମକ ଦୃଷ୍ଟିକୋଣ ବୀରବଲଙ୍କ ଗଦ୍ୟରୀତିର ବିଶେଷତ୍ୱ । ତାଙ୍କ ସଂପାଦିତ 'ସବୁଜ ପତ୍ର' (୧୯୧୬) ଲେଖକମାନଙ୍କ ମଧ୍ୟରେ ବିଶେଷ ପ୍ରଭାବ ସୃଷ୍ଟି କରିପାରିଥିଲା । ପ୍ରମଥ ଚୌଧୁରୀ ବଙ୍ଗଳା ଗଦ୍ୟକୁ ପ୍ରାଚୀନତାରୁ ରକ୍ଷାକରିଥିଲେ । ସେଥିପାଇଁ ତାଙ୍କର ଗଦ୍ୟଶୈଳୀ ସଂପୂର୍ଣ୍ଣ ଅଭିନବ ବୋଲି ପ୍ରଶଂସିତ ହୋଇଥିଲା । 'ସବୁଜ ପତ୍ର' ସହିତ ସଂପୃକ୍ତ ପ୍ରାବନ୍ଧିକଗୋଷ୍ଠୀ ପରେ ସୁଧୀନ୍ଦ୍ରନାଥ ଦତ୍ତଙ୍କ ସଂପାଦିତ 'ପରିଚୟ' ପତ୍ରିକାର ସମାଲୋଚକ-ଗୋଷ୍ଠୀର ଆବିର୍ଭାବ ହେଲା । ଏହି ଦୁଇ ଗୋଷ୍ଠୀର ଲେଖକମାନଙ୍କ ହାତରେ ବଙ୍ଗଳା ପ୍ରବନ୍ଧ ସାହିତ୍ୟ ଏବଂ ସମାଲୋଚନା ସାହିତ୍ୟ ବେଶ୍ ଯୁଗଧର୍ମାନୁଯାୟୀ ରୂପାନ୍ତରିତ ହୋଇପାରିଥିଲା । ସମାଲୋଚନା ଶକ୍ତି ମୌଳିକ ସାହିତ୍ୟ ସୃଷ୍ଟିଶକ୍ତି ସହିତ ସମାନ । ଫଳରେ ବଙ୍ଗଳା ସମାଲୋଚନା ସାହିତ୍ୟରେ ରୋମାଣ୍ଟିକ୍, କ୍ଲାସିକାଲ୍ ଏବଂ ମାର୍କିଷ୍ଟ ଏପରି ବିଭିନ୍ନ ଆନ୍ଦୋଳନର ସୂତ୍ରପାତ ହେଲା । ସମାଲୋଚକମାନେ କେବଳ ସାହିତ୍ୟର ତାତ୍ତ୍ୱିକ ଆଲୋଚନା ମଧ୍ୟରେ ସୀମିତ ନ ଥିଲେ । ସମାଲୋଚନାର ତୀକ୍ଷ୍ଣତା, ମୌଳିକତା ହିଁ ପ୍ରବନ୍ଧର ବୈଶିଷ୍ଟ୍ୟ ପାଇଁ ଦାୟୀ ହୋଇଥିଲା ।

୧୯୩୦ ମସିହା ପରେ ପ୍ରାବନ୍ଧକମାନେ କୌଣସି ରଚନାର କେବଳ ଆଭ୍ୟନ୍ତରୀଣ ସୌନ୍ଦର୍ଯ୍ୟ ଉଦ୍‌ଘାଟନ କରିବାରେ ବ୍ୟସ୍ତ ଥିଲେ । ସୁଧୀନ୍ଦ୍ର ନାଥ ଦତ୍ତ, ଡକ୍ଟର ଅମିୟ ଚକ୍ରବର୍ତ୍ତୀ, ବିଷ୍ଣୁ ଦେ, ବୁଦ୍ଧଦେବ ବସୁ, ନଳିନୀକାନ୍ତ ଗୁପ୍ତ, ଶିବନାରାୟଣ ରାୟ, ଡ: ହରପ୍ରସାଦ ମିତ୍ର, ପ୍ରବୋଧ ସାନ୍ୟାଲ, ପ୍ରେମେନ୍ଦ୍ର ମିତ୍ର, ବିମଳ ପ୍ରସାଦ ମୁଖାର୍ଜୀ, ହୀରେନ୍ଦ୍ର ନାଥ ଦତ୍ତ (ଇନ୍ଦ୍ରଜିତ୍) ପ୍ରଭୃତିଙ୍କ ସମାଲୋଚନା ନୂତନ ସମାଲୋଚନା ବୋଲି ଗୃହୀତ ହେଲା । ସେମାନଙ୍କ ଉପରେ ସମ୍ଭବତଃ ପାଶ୍ଚାତ୍ୟ ଲେଖକ ଏଜ୍‌ରା ପାଉଣ୍ଡ, ଟି. ଏସ୍. ଇଲିଅଟଙ୍କ ପ୍ରଭାବ ପଡ଼ିଥିଲା । ବୁଦ୍ଧଦେବ ବସୁଙ୍କର ହଠାତ୍ 'ଆଲୋର ଝଲକାନି'ରେ ଗଦ୍ୟ-ପ୍ରବାହଶୀଳତା ସମସ୍ତଙ୍କୁ ଅଭିଭୂତ କରିଦେଇଥିଲା । ସେହିପରି ମାର୍କ୍‌ସ-ପ୍ରଭାବିତ ସମାଲୋଚକମାନଙ୍କ ମଧ୍ୟରେ ହୀରେନ୍ଦ୍ର ନାଥ ରାୟ, ଡ: ଅରବିନ୍ଦ ପୋଦ୍ଦାର, ଗୋପାଲ ହାଲଦାରଙ୍କ ନାମ ଉଲ୍ଲେଖଯୋଗ୍ୟ । ପ୍ରାଚୀନ ତତ୍ତ୍ୱଧର୍ମୀ ସମାଲୋଚନା କ୍ଷେତ୍ରରେ ଡ: ସୁରେନ୍ଦ୍ର ନାଥ ଦାଶଗୁପ୍ତ, ମୋହିତ ଲାଲ ମଜୁମଦାର, ଡ: ଶଶିଭୂଷଣ ଦାଶ ଗୁପ୍ତ, ଡ: ଶ୍ରୀକୁମାର ବାନାର୍ଜି, ଡ: ସୁବୋଧ ଚନ୍ଦ୍ର ସେନ୍ ଗୁପ୍ତ, ଅମୂଲ୍ୟଧନ ମୁଖାର୍ଜି, କାଳିଦାସ ରାୟ, ଅମୀୟରତ୍ନ ମୁଖାର୍ଜି ପ୍ରାବନ୍ଧକମାନଙ୍କ ରଚନା-ସ୍ୱାତନ୍ତ୍ର୍ୟ ଚିହ୍ନିତ । ତପନମୋହନ ଚଟ୍ଟୋର୍ଜି 'ପଲାସୀ ଯୁଦ୍ଧ'ରେ ଏକ ଭିନ୍ନ ଗଦ୍ୟରୀତି ପ୍ରୟୋଗ କରିଥିଲେ ।

ବଙ୍ଗଳା ସମାଲୋଚନାଧାରା ରୋମାଣ୍ଟିକ୍ କଳ୍ପନାତତ୍ତ୍ୱଦ୍ୱାରା ବହୁ ଭାବରେ ପ୍ରଭାବିତ । ଏହି ଧାରା ପ୍ରାୟ ଊନବିଂଶ ଶତାବ୍ଦୀର ଶେଷପାଦରୁ ଆରମ୍ଭ ହୋଇଥିଲା । ରବୀନ୍ଦ୍ରନାଥ, ପ୍ରିୟନାଥ ସେନ୍, ଲୋକେନ୍ଦ୍ରନାଥ ପାଲିତ, ଠାକୁରଦାସ ମୁଖାର୍ଜି ଏହି ତତ୍ତ୍ୱ ବିଶ୍ଳେଷଣ କରିଥିଲେ । ସେଥିରେ ଇଂରେଜ ସମାଲୋଚକ କଲରିଜ୍‌ଙ୍କ ଦୃଷ୍ଟିକୋଣ ହିଁ ବିଶେଷଭାବରେ ପ୍ରକଟିତ । ସମାଲୋଚକର କଳ୍ପନା, ଯୁକ୍ତି, ଚିନ୍ତା ଏବଂ ଉପଲବ୍‌ଧି ପ୍ରବନ୍ଧରେ ଅଭିବ୍ୟକ୍ତ ହେଲା ।

ଇଂରେଜକବି ଓ୍ୱାର୍ଡ଼ସଓ୍ୱାର୍ଥଙ୍କର କାବ୍ୟଦର୍ଶନ "Emotions recollected in tranqullity' ବଙ୍ଗଳା ସମାଲୋଚନା ସାହିତ୍ୟରେ ମଧ୍ୟ ପ୍ରତିଧ୍ୱନିତ ହୋଇଥିଲା । ସମାଲୋଚନାରେ ସୌନ୍ଦର୍ଯ୍ୟତତ୍ତ୍ୱ ପ୍ରତି ଗୁରୁତ୍ୱ ଦେବା କାର୍ଯ୍ୟ ଇଂରେଜ ଲେଖକ ରସ୍କିନ୍, ଓ୍ୱାଲଟର ପାଟେର, ମାଥ୍ୟୁ ଆରନଲ୍ଡ଼ଙ୍କ ଦର୍ଶନଦ୍ୱାରା ପ୍ରଭାବିତ ହୋଇଥିଲା । ରସ୍କିନଙ୍କ ମତରେ ସୌନ୍ଦର୍ଯ୍ୟକଳା ଏବଂ ନୈତିକତା ସାହିତ୍ୟକ୍ଷେତ୍ରରେ ପରସ୍ପର ସଂପର୍କିତ । ପରମ ଏବଂ ଚରମ ଆନନ୍ଦପ୍ରଦାନ କଳାର ଲକ୍ଷ୍ୟ । 'ଭାରତୀ', 'ସବୁଜପତ୍ର' ବିଭିନ୍ନ ପ୍ରବନ୍ଧ ମାଧ୍ୟମରେ ଏହି ତତ୍ତ୍ୱ ପ୍ରଚାର କରିଥିଲେ । ହେମେନ୍ଦ୍ରକୁମାର ରାୟ, ମଣିଲାଲ ଗାଙ୍ଗୁଲି, ପ୍ରମଥ ଚୌଧୁରୀ, ଅତୁଲ ଗୁପ୍ତ, ନଳିନୀକାନ୍ତ ଗୁପ୍ତ ଏବଂ କଲ୍ଲୋଲଗୋଷ୍ଠୀ

ଲେଖକ ଏହି ଧାରାର ସମର୍ଥକ ଥିଲେ । ମାଥ୍ୟୁ ଆରନଲ୍‌ଡ଼ଙ୍କ ସଦୃଶ ବଙ୍କିମଚନ୍ଦ୍ର ତାଙ୍କର ସଂଖ୍ୟାଧିକ ପ୍ରବନ୍ଧ ଏବଂ ଅନୁଶୀଳନ ମାଧ୍ୟମରେ (ବିବିଧ ପ୍ରବନ୍ଧ ପ୍ରଥମ ଭାଗ ୧୮୮୮ ଏବଂ ଦ୍ୱିତୀୟ ଭାଗ ୧୮୯୨) ସାଂସ୍କୃତିକ ଏବଂ ସାମାଜିକ ସମସ୍ୟା ଉପସ୍ଥାପନ କରିଥିଲେ । ପରିପୂର୍ଣ୍ଣତାର ଅନୁଶୀଳନ ଥିଲା ତାଙ୍କ ସମାଲୋଚନାର ଉଦ୍ଦେଶ୍ୟ । ମୋହିତ ଲାଲ ମଜୁମଦାର ତାଙ୍କର ସମାଲୋଚନା ମାଧ୍ୟମରେ (ଆଧୁନିକ ବାଙ୍ଗଲା ସାହିତ୍ୟ, ବାଙ୍ଗଲା ନବଯୁଗ, ବଙ୍କିମଚରଣ) ଲେଖକ ଏବଂ ସମାଜ ମଧ୍ୟରେ ସଂପର୍କ ସ୍ଥାପନ କରିପାରିଥିଲେ । କାବ୍ୟ-କବିତା ଶିଳ୍ପୀ ଏବଂ ସ୍ରଷ୍ଟାର ବୌଳିକ ଦୃଷ୍ଟିଭଙ୍ଗୀର ନିଦର୍ଶନ ବୋଲି ମୋହିତ ଲାଲ ଉପଲବ୍ଧି କରିଥିଲେ ।

'ପରିଚୟ'ଗୋଷ୍ଠୀର ସାହିତ୍ୟିକଗଣ ଏଜ୍ରା ପାଉଣ୍ଡ, ଟି. ଏସ୍. ଇଲିଅଟଙ୍କ ସମାଲୋଚନା ପଦ୍ଧତି ତଥା ଆଦର୍ଶଦ୍ୱାରା ଉଦ୍‌ବୁଦ୍ଧ ହୋଇଥିବାର ଜଣାଯାଏ ।

ସୁଧୀନ୍ଦ୍ରନାଥ ଦତ୍ତ ତାଙ୍କର ବିଭିନ୍ନ ରଚନା (ସ୍ୱଗତ, କୁଳାୟ ଓ କାଳ-ପୁରୁଷ) ମାଧ୍ୟମରେ ବଙ୍ଗଳାରେ ନୂତନ ସମାଲୋଚନାଧାରା ପ୍ରବର୍ତ୍ତନ କଲେ । କବିତା କେବଳ ଆବେଗ ଏବଂ ଉଚ୍ଛ୍ୱାସର ପରିପ୍ରକାଶ ନୁହେଁ; ଏହା ଆବେଗ-ମୁକ୍ତ । ବ୍ୟକ୍ତିତ୍ୱର ଏହା ପରିପ୍ରକାଶ ନୁହେଁ; ଏହା ବ୍ୟକ୍ତିତ୍ୱମୁକ୍ତ । କବିର ମାନସ-ପ୍ରଦେଶ କାବ୍ୟ ସୃଷ୍ଟି ପାଇଁ ଏକ ପରିପୂର୍ଣ୍ଣ ମାଧ୍ୟମ ।

ବଙ୍ଗଳା ପ୍ରବନ୍ଧ ସାହିତ୍ୟ ବିଭାଗ ଏକ ପରିପୂର୍ଣ୍ଣ ବିଭାଗ । ଗତ କେତେ ବର୍ଷଧରି ବହୁ ଶକ୍ତିଶାଳୀ ସମାଲୋଚକ ଏବଂ ପ୍ରାବନ୍ଧିକଙ୍କର ଆବିର୍ଭାବ ଘଟିଛି । ଯଥା—ଡ: ସୁନୀତି କୁମାର ଚଟର୍ଜୀ, ଡ: ସୁକୁମାର ସେନ୍, ବୁଦ୍ଧଦେବ ବସୁ, ଅନ୍ନଦା-ଶଙ୍କର ରାୟ, ବିନୟ ଘୋଷ, ଶଶିଭୂଷଣ ଦାସଗୁପ୍ତ, ଅମିୟ ବନ୍ଦୋପାଧ୍ୟାୟ, ଆଶୁତୋଷ ଭଟ୍ଟାଚାର୍ଯ୍ୟ, ଶ୍ରୀକୁମାର ବାନାର୍ଜୀ, ଦୀନେଶ୍ ଚନ୍ଦ୍ର ସେନ, ଶୀର୍ଷଚନ୍ଦ୍ର ଦାସ, ଡ: ଜୀବନ ସିଂହ ରାୟ, ଶିବନାରାୟଣ ରାୟ, ଡ: ଅରବିନ୍ଦ ପୋଦାର, ଡ: ସୁଶୀଲ କୁମାର ଦେ ପ୍ରମୁଖ ଏକ ଧାରାରେ ଗବେଷକ, ପ୍ରାବନ୍ଧିକ ଏବଂ ଭାଷା ତଥା ସାହିତ୍ୟର ତାତ୍ତ୍ୱିକ ଆଲୋଚକ । ଡ: ଚଟାର୍ଜୀଙ୍କର Origin and development of Bengali Language, ଭାରତେର୍ ଭାଷା ଓ ସମସ୍ୟା, ଜାତି, ସଂସ୍କୃତି ଓ ସାହିତ୍ୟ, ଡ. ସୁକୁମାର ସେନଙ୍କର ଭାଷାର ଇତିବୃତ୍ତ, ବଂଗଲା ସାହିତ୍ୟର ଇତିହାସ, ଦୀନେଶ୍ ଚନ୍ଦ୍ର ସେନ୍‌ଙ୍କର ବଂଗଭାଷା ଓ ସାହିତ୍ୟ, ଶଶିଭୂଷଣ ଗୁପ୍ତଙ୍କର ଶ୍ରୀରାଧାର କ୍ରମବିକାଶ, ଆଶୁତୋଷ ଭଟ୍ଟାଚାର୍ଯ୍ୟଙ୍କର ବାଙ୍ଗଲାର ଲୋକ ସାହିତ୍ୟ, ବାଙ୍ଗଲା ନାଟ୍ୟ-ସାହିତ୍ୟର ଇତିହାସ, ବାଙ୍ଗଲାର କଥା ସାହିତ୍ୟର ଇତିହାସ, ବାଙ୍ଗଲା ସାହିତ୍ୟର ସଂକ୍ଷିପ୍ତ ଇତିହାସ, ଅତୁଲ ଗୁପ୍ତଙ୍କର କାବ୍ୟ ଜିଜ୍ଞାସା ଉଲ୍ଲେଖଯୋଗ୍ୟ କୃତି ।

ଏହିପରି ବଙ୍ଗଳା ଭାଷା, ସାହିତ୍ୟ, ସଂସ୍କୃତି, ଗଳ୍ପ, ଉପନ୍ୟାସ, କାବ୍ୟକଳା ସଂପର୍କରେ ବହୁ ଗବେଷଣା ଏବଂ ଆଲୋଚନା ପ୍ରକାଶିତ ହୋଇଛି ।

ଊନବିଂଶ ଶତାବ୍ଦୀରୁ ଆଧୁନିକ ଭ୍ରମଣ ସାହିତ୍ୟର ଭିତ୍ତି ସ୍ଥାପିତ ହୋଇଥିଲା । ଈଶ୍ୱର ଗୁପ୍ତଙ୍କର ଭ୍ରମଣକାଶୀ ବନ୍ଧୁର ପତ୍ର, ଦୁର୍ଗାଚରଣ ରାୟଙ୍କର ଦେବଗଣ ମର୍ତ୍ତ୍ୟ ଆଗମନ, ରମେଶଚନ୍ଦ୍ର ଦତ୍ତଙ୍କର ଇଂଲଣ୍ଡେ ତିନବର୍ଷ, ରାମଦାସ ସେନ୍ଙ୍କର ବଙ୍ଗାଲୀର ଇଉରୋପ ଦର୍ଶନ, ଶିବନାଥ ଶାସ୍ତ୍ରୀଙ୍କର ଇଂଲଣ୍ଡ ଡାଏରୀ, ଗିରୀଶ ଘୋଷଙ୍କର ବିଲାତରେ ପତ୍ର ଏଠାରେ ଉଲ୍ଲେଖ କରାଯାଇପାରେ । ବିଂଶ ଶତାବ୍ଦୀର ପ୍ରଥମ ପାଦରେ 'ହିମାଳୟ' ବଙ୍ଗଳା ଭ୍ରମଣ-ସାହିତ୍ୟରେ ପ୍ରଧାନ ସ୍ଥାନ ଅଧିକାର କରିଥିଲା । ପ୍ରବୋଧ ସାନ୍ୟାଲ୍ଙ୍କର ମହାପ୍ରସ୍ଥାନରେ ଏବଂ ଦେବତାତ୍ମା ହିମାଳୟ, ବୀରେନ୍ଦ୍ର ସରକାରଙ୍କ ରହସ୍ୟମୟ ରୂପକୁଣ୍ଡ, କ୍ୟାପଟେନ୍ ସୁଧାଂଶୁ ଦାସଙ୍କର ଏଭେରେଷ୍ଟ ଡାଏରୀ ଉଲ୍ଲେଖଯୋଗ୍ୟ । ଅନ୍ନଦାଶଙ୍କର (ପଥେ ପ୍ରବାସେ, ଫେରା, ଜାପାନେ), ମନୋଜ ବସୁ (ନୂତନ ଇଉରୋପ, ଚୀନ୍ଦେର ଏଲାମ୍, ସୋଭିଏତେର ଦେଶ ), ସୟଦ୍ ମୁଜତବା ଆଲି ( ଦେଶେ ବିଦେଶେ), ତାରାଶଙ୍କର ବନ୍ଦୋପାଧ୍ୟାୟ, (ମସ୍କୋ ଇ ନ'ଦିନ), ସୁଧୀରଞ୍ଜନ ମୁଖାର୍ଜୀ (ମୁଖର ଲଣ୍ଡନ), ମୋହନଲାଲ ଗଙ୍ଗୋପାଧ୍ୟାୟ (ଗୃହିଣିକା), ମନ୍ମଥ ରାୟ (ଆମରା ଦେଖି ଡେନମାର୍କ), ରବୀନ୍ଦ୍ରନାଥ ଠାକୁର (ଇଉରୋପ ପ୍ରବାସୀର ପତ୍ର, ଜାପାନଯାତ୍ରୀ, ରୁଷିଆ ଚିଠି), ଚିତ୍ତରଞ୍ଜନ ମାଇତି (କଳାଭୂମି କଳିଙ୍ଗ), ବିଶ୍ୱ ସରକାର (ପଥେର ଡାକେ), ମାୟାଲତା ଦେଶ (ଯାତ୍ରୀ), ଦେବେଶ ଦାସ (ଇଉରୋପ) ପ୍ରମୁଖ ଲେଖକ ବିଭିନ୍ନ ସମୟରେ ବଙ୍ଗଳା-ଭ୍ରମଣ ସାହିତ୍ୟର ପୁଷ୍ଟି ସାଧନ କରିଛନ୍ତି ।

'ପୁଣ୍ୟତୀର୍ଥ ଭାରତ', 'ଭାରତ ଦର୍ଶନ' ଯଥାକ୍ରମେ ସ୍ୱାମୀ ବିବ୍ୟକ୍ଷାନାନନ୍ଦ ଏବଂ କମଲ ବାନାର୍ଜୀଙ୍କର ଲେଖା । ସୁବୋଧ କୁମାର ଚକ୍ରବର୍ତ୍ତୀ ଶ୍ରେଷ୍ଠ ପର୍ଯ୍ୟଟନ ସାହିତ୍ୟ ସୃଷ୍ଟି କରିବାରେ ସମର୍ଥ ହୋଇପାରିଛନ୍ତି । ଭାରତର ବିଭିନ୍ନ ପ୍ରାନ୍ତର ଭ୍ରମଣ ଅନୁଭୂତି ତାଙ୍କର 'ରମ୍ୟାଣିବୀକ୍ଷ୍ୟ' ଗ୍ରନ୍ଥର ବିଭିନ୍ନ ଖଣ୍ଡରେ କାଳିନ୍ଦୀ ପର୍ବ, ଦ୍ରାବିଡ଼ ପର୍ବ, ରାଜସ୍ଥାନ ପର୍ବ, ଉତ୍କଳ ପର୍ବରେ ଲିପିବଦ୍ଧ କରିପାରିଛନ୍ତି । ଅମୀୟ କୁମାର ବାନାର୍ଜୀ ମଧ୍ୟ ତାଙ୍କର ବିଭିନ୍ନ ସମୟର ଭ୍ରମଣ ଅଭିଜ୍ଞତା କେତୋଟି ପୁସ୍ତକରେ ଲିପିବଦ୍ଧ କରିପାରିଛନ୍ତି । ବଙ୍ଗଳାରେ ଭ୍ରମଣ ସାହିତ୍ୟ ଏକ ପରିପୁଷ୍ଟ ବିଭାଗ । ବ୍ୟକ୍ତି, ଜାତି ଏବଂ ସମାଜର ଚିତ୍ର ଅଙ୍କନ କରିବାରେ ତାହା ସମର୍ଥ ହୋଇପାରିଛି ।

ବଙ୍ଗଳା ଶିଶୁ-ସାହିତ୍ୟ, ଜୀବନୀ ସାହିତ୍ୟର ଗତ ତିରିଶ ବର୍ଷ ମଧ୍ୟରେ ଅଭୁତ ବିକାଶ ଘଟିପାରିଛି । ଶତାଧିକ ସାହିତ୍ୟପତ୍ର, ସମ୍ବାଦପତ୍ର, ଶିଶୁ ପତ୍ରିକାର ପ୍ରକାଶ ଯୋଗୁଁ ଲେଖକ ଓ ଲେଖିକାଙ୍କ ସଂଖ୍ୟାବୃଦ୍ଧି ସମ୍ଭବ ହୋଇଛି ଏବଂ

ସେମାନଙ୍କ ଲେଖନୀଚାଳନା ଯୋଗୁଁ ରଚନାର ମୌଳିକ ସୌନ୍ଦର୍ଯ୍ୟ ଏବଂ ଗୁଣାତ୍ମକ ବିକାଶ ମଧ୍ୟ ଘଟିଛି । ବଙ୍ଗଳାରେ ପ୍ରତ୍ୟେକ କବି, ନାଟ୍ୟକାର, ଗଳ୍ପକାର ଶିଶୁ-ସାହିତ୍ୟ ସୃଷ୍ଟି କରିଥାନ୍ତି । ସଂକ୍ଷେପରେ ସାହିତ୍ୟ ଯେ ସାମାଜିକ ଏବଂ ସାଂସ୍କୃତିକ ମୂଲ୍ୟବୋଧର ଅଗ୍ରବାଣୀ, ଜାତି ତଥା ବ୍ୟକ୍ତିର ଆକାଙ୍‌କ୍ଷାର ପରିପ୍ରକାଶ-ବଙ୍ଗଳା ସାହିତ୍ୟରୁ ଏହା ସହଜରେ ପ୍ରମାଣିତ ହୁଏ ।

❋

# ହିନ୍ଦୀ

କୌଣସି ଭାଷାର ଶକ୍ତି ଏବଂ ସାମର୍ଥ୍ୟ ତାର ଚିରପ୍ରବହମାନ ଗତି ଏବଂ ଆଭ୍ୟନ୍ତରୀଣ ଯୋଗ୍ୟତା ଉପରେ ନିର୍ଭର କରେ । ଲିଖିତ ତଥା ବ୍ୟାକରଣ ଶୃଙ୍ଖଳିତ ଭାଷାଠାରୁ ପୃଥକ ଜନସାଧାରଣଙ୍କ କଥିତ ଭାଷାର ଗତି ଏବଂ ପରିବର୍ତ୍ତନଶୀଳତାବଶତଃ ଭାଷାରେ ଯୁଗାନୁକ୍ରମେ ପରିବର୍ତ୍ତନ ଘଟିଥାଏ । ପ୍ରାଚୀନ ଭାରତର ଜନସାଧାରଣଙ୍କର ଲିଖିତ ଏବଂ କଥିତ ଭାଷା ମଧ୍ୟରେ ନିଶ୍ଚୟ ବ୍ୟବଧାନ ଥିବ ଏବଂ ସେହି ବ୍ୟବଧାନର ପରିଧି ମଧ୍ୟରେ ନିହିତ ଆଧୁନିକ ଯୁଗର କଥିତ ଲୋକପ୍ରିୟ ଭାଷାର ସଞ୍ଜୀବନୀ ସତ୍ତା ଯୁଗ-ଯୁଗର ଖଣ୍ଡନା ମଣ୍ଡନ ବାଟଦେଇ ଆଧୁନିକ ରୂପ ପ୍ରାପ୍ତ ହେବା କିଛି ଅସମ୍ଭବ ନୁହେଁ । ବିଶେଷତଃ ହିନ୍ଦୀ ଭାଷାର ପଣ୍ଡିତମାନେ ହିନ୍ଦୀଭାଷାର ଉତ୍ପତ୍ତି ପ୍ରସଙ୍ଗରେ ତାଦୃଶ ମତବାଦର ପକ୍ଷପାତୀ । ସେମାନଙ୍କ ମତରେ ଋକ୍ ବେଦର ଭାଷା ସେହି ସମୟରେ ପ୍ରଚଳିତ ଜନସାଧାରଣଙ୍କ କଥିତ ଭାଷାଠାରୁ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ଥିଲା । ବୈଦିକ ଯୁଗର ଲିଖିତ ସାହିତ୍ୟିକ ଭାଷା ଅପେକ୍ଷା ଜନସାଧାରଣଙ୍କର ଆଉ ଏକ କଥିତ ଭାଷା ମଧ୍ୟ ଥିବାର ଜଣାଯାଏ । ହିନ୍ଦୀଭାଷାବିଶାରଦମାନଙ୍କ ମତରେ ଏହାହିଁ ହେଉଛି ହିନ୍ଦୀଭାଷାର ଐତିହାସିକ ପୃଷ୍ଠଭୂମିର ବ୍ୟାଖ୍ୟା । ଜନସାଧାରଣଙ୍କ କଥିତ ପ୍ରାଚୀନ ଭାଷାର ଉତ୍ତରାଧିକାରୀରୂପେ ହିନ୍ଦୀଭାଷାକୁ କେହି କେହି ନାମିତ କରିଥାନ୍ତି । ପତଞ୍ଜଳିଙ୍କ ବ୍ୟବହୃତ ସଂସ୍କୃତ ବ୍ରାହ୍ମଣମାନଙ୍କର ଶୁଦ୍ଧ ଏବଂ ପାଣ୍ଡିତ୍ୟପୂର୍ଣ୍ଣ ଭାଷାରୂପେ ନିଜର କଠୋରତା ବଜାୟ ରଖିଥିବା ସ୍ଥଳେ ସାଧାରଣ ଚଳିତ ଭାଷା ଜନସାଧାରଣଙ୍କର ଶକ୍ତିଶାଳୀ ଭାବବାହକରୂପେ ଗଢ଼ିଉଠିଲା । ଏହିପରି ପ୍ରାକୃତ ଭାଷାର ସୃଷ୍ଟି ହେଲା । ସାଧାରଣ କଥିତ ଭାଷାର ଉଦ୍‌ବର୍ତ୍ତନର ଇତିହାସରେ ପାଲି, ସାହିତ୍ୟିକ ପ୍ରାକୃତ ଏବଂ ଅପଭ୍ରଂଶର ନାମୋଲ୍ଲେଖ କରାଯାଇଥାଏ । ପାଲି ହେଉଛି ସର୍ବାପେକ୍ଷା ଲୋକପ୍ରିୟ ଭାଷା ଏବଂ ଏହି ଭାଷା ବୌଦ୍ଧ ଓ ଜୈନମାନଙ୍କ ରଚନାରେ ଏବଂ ଅଶୋକଙ୍କ ସମୟରେ ଦେଖିବାକୁ ମିଳେ । ଲିପି ହେଉଛି ବ୍ରାହ୍ମୀ ଏବଂ ଖରୋଷ୍ଠି । ପ୍ରାଚୀନସ୍ତରୀୟ ଭାଷାର ବିକାଶସାଧନ କରିବା ପ୍ରଚେଷ୍ଟାରେ ପରିଣତ ହେଉଛି ସାହିତ୍ୟିକ ପ୍ରାକୃତ । ମଧ୍ୟଯୁଗରେ ପ୍ରାକୃତ ଭାଷାରେ କାବ୍ୟ-ନାଟିକା ପ୍ରଭୃତି ଲେଖା ହୋଇଥିଲା । ସଂସ୍କୃତ ପକ୍ଷରେ ଯେପରି ଶୁଦ୍ଧିକରଣ କିମ୍ବା ସମ୍ଭବ ହୋଇଥିଲା, ପ୍ରାକୃତକୁ ମଧ୍ୟ ମାର୍ଜିତ ଏବଂ ଶୃଙ୍ଖଳିତ କରିବା ଲାଗି ଚେଷ୍ଟାର ଅଭାବ ହେଲା ନାହିଁ । ଏହି

ସାହିତ୍ୟିକ ସୃଷ୍ଟି ପ୍ରାକୃତର ଚାରିଗୋଟି ଶାଖା ପ୍ରଚଳିତ ଥିବାର ଜଣାଯାଏ; ଯଥା—ଶୌରସେନୀ (ପଶ୍ଚିମାଞ୍ଚଳରେ ବ୍ୟବହୃତ), ମାଗଧି (ପୂର୍ବ), ଅର୍ଦ୍ଧମାଗଧୀ, ମହାରାଷ୍ଟ୍ରୀ । ପ୍ରାକୃତ ଭାଷା ବ୍ୟାକରଣ-ଶୃଙ୍ଖଳିତ ହେବା ପରେ ଜନସାଧାରଣଙ୍କ କଥିତ ଭାଷାରେ କେତେକ ଶିଥିଳତା ଦେଖାଦେଲା । ଏହି ସ୍ୱତନ୍ତ୍ର କଥିତ ଭାଷାର ନାମ ହେଉଛି ଅପଭ୍ରଂଶ । ଅପଭ୍ରଂଶର ତିନିଗୋଟି ଶାଖା ପରିଦୃଷ୍ଟ; ଯଥା – ନାଗର, ବ୍ରାଚର, ଉପନାଗର । ଏହି ଅପଭ୍ରଂଶ ଭାଷାର ସମୟ ହେଉଛି ଷଷ୍ଠ ଶତାବ୍ଦୀରୁ ଦଶମ ଶତାବ୍ଦୀ । ସଂସ୍କୃତର ସ୍ୱାଭାବିକ ଗତି ଯେପରି କାତ୍ୟାୟନ ଏବଂ ପତଞ୍ଜଳିଙ୍କ ଦ୍ୱାରା ଶୃଙ୍ଖଳିତ ହୋଇଥିଲା । ପ୍ରାକୃତର ବିକାଶ ସେହିପରି ବରରୁଚି ଏବଂ ହେମଚନ୍ଦ୍ରଙ୍କ ଦ୍ୱାରା ନିର୍ଦ୍ଦିଷ୍ଟ କରାଯାଇଥିଲା । ସାଧାରଣତଃ ଉତ୍ତର-ପଶ୍ଚିମ ଭାରତରେ ହୂନ୍‌ମାନଙ୍କ ଦ୍ୱାରା ଅପଭ୍ରଂଶ କଥିତ ହେଉଥିଲା । ସେହି ହୂନ୍‌ମାନେ କ୍ରମେ ପୂର୍ବ ଦିଗକୁ ଯାତ୍ରା କରି ସିନ୍ଧୁ, ଗୁଜରାଟ ଏବଂ ରାଜସ୍ଥାନ ଅଞ୍ଚଳରେ ପ୍ରସାର ଲାଭ କଲେ । ସେମାନଙ୍କର ଜନୈକ ନରପତି ଭୋଜ (୮୪୩-୮୮୧) ମଗଧ ପର୍ଯ୍ୟନ୍ତ ରାଜ୍ୟ ବିସ୍ତାର କରିଥିଲେ । ଦଶମ ଶତାବ୍ଦୀବେଳକୁ ହୂନ୍‌ମାନଙ୍କର ଭାଷା ସମଗ୍ର ଉତ୍ତର-ଭାରତରେ ପ୍ରଚଳିତ ହୋଇ ସାରିଥିଲା । ଗୁଜରାଟରେ ପ୍ରଥମେ ସାହିତ୍ୟିକ ଉଦ୍ଦେଶ୍ୟରେ ଅପଭ୍ରଂଶ ବ୍ୟବହୃତ ହୋଇଥିଲା । ଗୁଜରାଟର ପଣ୍ଡିତମଣ୍ଡଳୀ ନାଗର ସଂପ୍ରଦାୟ ଥିଲେ । ସେଥିପାଇଁ ସେମାନଙ୍କ ଦ୍ୱାରା ବ୍ୟବହୃତ ଅପଭ୍ରଂଶର ନାମ ହୋଇଥିଲା—ନାଗର ଅପଭ୍ରଂଶ । ଏହି ନାଗର ଅପଭ୍ରଂଶ ଭାରତର ବିଭିନ୍ନ ପ୍ରାନ୍ତରେ ପ୍ରଚଳିତ ଅପଭ୍ରଂଶ ଅପେକ୍ଷା ଅଧିକ ଜନପ୍ରିୟ ଥିଲା । ଉତ୍ତର-ଭାରତର ଆଧୁନିକ ଭାଷାର ଏହାହିଁ ହେଉଛି ମୂଳଭାଷା । ନାଗର ଅପଭ୍ରଂଶରୁ ସୃଷ୍ଟି ହୋଇଥିବା ଚାରିଗୋଟି ଭାଷା କାଳକ୍ରମେ ସାହିତ୍ୟିକ ମର୍ଯ୍ୟାଦାର ଅଧିକାରୀ ହୋଇପାରିଥିଲେ । ସେହି ଚାରିଗୋଟି ଭାଷା ହେଲା—ଡିଙ୍ଗଲ, ପିଙ୍ଗଲ, ଅବଧି ଏବଂ ମୈଥିଳୀ । 'ଡିଙ୍ଗଲ'ର ଅର୍ଥ ହେଉଛି ଏପରି ଏକ ଭାଷା, ଯାହା ଉଚ୍ଚାରିତ ହେଲେ ଶିବଙ୍କ ଡମ୍ବରୁ ସଦୃଶ ଧ୍ୱନି ସୃଷ୍ଟି କରେ । ଡିଙ୍ଗଲ କବିତା ରାଜସ୍ଥାନରେ ଲେଖା ହୋଇଥିଲା ଏବଂ ସେଥିରେ ରାଜପୁତ୍ ସାମରିକ ଗୌରବ ପ୍ରତିଫଳିତ ହୋଇଥିଲା । ଏହି ଭାଷାର ସ୍ୱଭାବ ରୁଦ୍ର ଏବଂ କର୍କଶ ବୋଲି କୁହାଯାଇପାରେ । ଡିଙ୍ଗଲର ଠିକ୍ ବିପରୀତ ହେଉଛି 'ପିଙ୍ଗଲ' ଭାଷା । କାରଣ ଏହା ମୃଦୁ, ଲଳିତ । ଏହା ସଂସ୍କୃତ ଓ ପ୍ରାକୃତ ଦ୍ୱାରା ପ୍ରଭାବିତ ଏବଂ ଏହା ଯମୁନାର ପଶ୍ଚିମ ତଟବର୍ତ୍ତୀ ବ୍ରଜଭୂମିରେ କଥିତ ହେଉଥିଲା । କୃଷ୍ଣଙ୍କ ଲୀଳାଭୂମିରେ ଏହା କଥିତ ହେଉଥିବାରୁ ଏବଂ ଏଥିରେ କୃଷ୍ଣଙ୍କର ମହିମା ବର୍ଣ୍ଣିତ ହୋଇଥିବାରୁ ବ୍ରଜଭାଷା ନାମରେ ମଧ୍ୟ ଚିହ୍ନିତ । ଅବଧିଭାଷା ଗଙ୍ଗା-ଯମୁନା ମଧ୍ୟବର୍ତ୍ତୀ ଅଯୋଧ୍ୟା ଅଞ୍ଚଳରେ ପ୍ରଚଳିତ ଥିଲା । ତୁଳସୀଦାସଙ୍କ

ପ୍ରସିଦ୍ଧ 'ରାମଚରିତମାନସ' ଏହି ଭାଷାରେ ଲିଖିତ । ଏହା ଅର୍ଦ୍ଧ ମାଗଧୀରୁ ସୃଷ୍ଟ ହୋଇଥିଲା । ସେହିପରି ଜନକଙ୍କ ରାଜ୍ୟରେ (ଆଧୁନିକ ବିହାର) ମାଗଧୀ ପ୍ରାକୃତରୁ ସୃଷ୍ଟ ମୈଥିଳୀଭାଷା ପ୍ରଚଳିତ ଥିଲା । ଏହି ଭାଷାରେ କବି ବିଦ୍ୟାପତିଙ୍କର ଶ୍ରେଷ୍ଠ ରଚନା ଦେଖିବାକୁ ମିଳେ ।

ଆଧୁନିକ ହିନ୍ଦୀ ଭାଷାର ପୂର୍ବ ବିଭିନ୍ନ ରୂପ ନାଗର ଏବଂ ଉପନାଗର ଅପଭ୍ରଂଶରୁ ଉତ୍ପତ୍ତି ଲାଭ କରିଥିଲା । ଇତିହାସର ବିଭିନ୍ନ ପର୍ଯ୍ୟାୟରେ ହିନ୍ଦୀ ଭାଷା ପୃଷ୍ଠପୋଷକତା ପରିବର୍ତ୍ତେ ମୁସଲମାନ ଶାସକବର୍ଗଙ୍କର ଶତ୍ରୁତାର ସମ୍ମୁଖୀନ ହୋଇଥିଲା । ମାତ୍ର ଜନସାଧାରଣଙ୍କର କଥିତ ଭାଷା ହୋଇଥିବାରୁ ତାର ଆତ୍ମସଂରକ୍ଷଣ ଶକ୍ତି ଯଥେଷ୍ଟ ଥିଲା । ବିଶେଷତଃ ଧର୍ମୀୟ ପ୍ରଭାବ ହିନ୍ଦୀ ଭାଷାର ବିକାଶରେ ସହାୟତା କରିଥିଲା । ପ୍ରାଚୀନ ଯୁଗର ହିନ୍ଦୀ ଭାଷାର ନିର୍ଭରଯୋଗ୍ୟ ନିଦର୍ଶନ ଦେଖାଯାଏ ନାହିଁ । ଶାସନକ୍ଷେତ୍ରରେ ମୁସଲମାନମାନଙ୍କର ପ୍ରାଦୁର୍ଭାବ ଯୋଗୁଁ ହିନ୍ଦୀ ଭାଷାରେ ପୁରାତନ ନଥିପତ୍ର ଲେଖାହୋଇ ନ ଥିଲା । ତେବେ ଅପଭ୍ରଂଶ ପଦ୍ୟରେ ହିନ୍ଦୀର ପ୍ରାଚୀନ ରୂପ ସନ୍ଧାନ କରାଯାଇଥାଏ । ରାହୁଲ ସାଂକୃତ୍ୟାୟନଙ୍କର ନିବନ୍ଧାବଳୀ, ହିନ୍ଦୀ କାବ୍ୟଧାରାରୁ ନାଥପନ୍ଥୀ ଏବଂ ବ୍ରଜଯାନୀ ସିଦ୍ଧଙ୍କ କୃତ ରଚନାର ପ୍ରମାଣ ମିଳେ । ସେହିପରି ଡକ୍ଟର ବର୍ଥ୍ୱାଲ୍‌ଙ୍କ 'ହିନ୍ଦୀ କବିତା ମେ ଯୋଗପ୍ରବାହ' ଏବଂ ଗୋରଖବାଣୀରୁ ସେହି ଯୁଗର ହିନ୍ଦୀ ଭାଷାର ଆଭାସ ମିଳିଥାଏ । ପ୍ରାଚୀନ ଯୁଗର ଚାରଣ କବିଙ୍କର ଧର୍ମସମ୍ବନ୍ଧୀୟ ରଚନାରୁ ମଧ୍ୟ ପୁରାତନ ହିନ୍ଦୀ ଭାଷାର ନିଦର୍ଶନ ମିଳିଥାଏ, ଯଦ୍ୟପି କେତେକ ଭାଷାତାତ୍ତ୍ୱିକ ବିଚାରରେ ଏହିସବୁ ପ୍ରାଚୀନ ରଚନାର ମୂଲ୍ୟ ପ୍ରଶ୍ନଯୋଗ୍ୟ । ପ୍ରାକୃତ ଶବ୍ଦମିଶ୍ରିତ ଗୁଜୁରାଟୀ, ରାଜସ୍ଥାନୀ ଶବ୍ଦର ମିଶ୍ରଣରେ ଗଠିତ ଡିଙ୍ଗଲ ଏବଂ ପୁରାତନ ବ୍ରଜଭାଷା ଏବଂ ଗଂଦାରୀ ଶବ୍ଦ ମିଶ୍ରଣରେ ଗଠିତ ଡିଙ୍ଗଲ, ଏହିପରି ଦୁଇଗୋଟି ଭାଷା ସେତେବେଳେ ବ୍ୟବହୃତ ହେଉଥିଲା । ଆଧୁନିକ ଖଡ଼ିବୋଲିର ପୂର୍ବରୂପ ହେଉଛି 'ହିନ୍ଦଭି' ଭାଷା । ଯେଉଁ ଭାଷାରେ 'ସୁଫି' ସଂପ୍ରଦାୟର ସନ୍ଥମାନେ କବିତା ରଚନା କରିଥିଲେ ।

ପଞ୍ଚଦଶ ଶତାବ୍ଦୀରୁ ହିନ୍ଦୀ ଭାଷାର ଏବଂ ଷୋଡ଼ଶ ଶତାବ୍ଦୀରୁ ଅବଧି ଏବଂ ବ୍ରଜଭାଷାର ବିକାଶ ଆରମ୍ଭ ହେଲା । ହିନ୍ଦୀର ପ୍ରାଚୀନ ରୂପ ବ୍ରଜ, ଅବଧି ଏବଂ ଖଡ଼ିବୋଲିର ଏହିପରି କ୍ରମଶଃ ବିକାଶ ସାଧିତ ହେଲା । ପୁରାତନ ହିନ୍ଦୀର ଆଦ୍ୟ ନିଦର୍ଶନ ହେଉଛି ଅବଧି । ନିର୍ଗୁଣପନ୍ଥୀ କବିମାନଙ୍କର ଧର୍ମ ସମ୍ବନ୍ଧୀୟ ରଚନା ଏହି ଭାଷାରେ ଲିଖିତ ହୋଇଥିଲା । ସେମାନଙ୍କର ଭାଷା ବିଶେଷମାତ୍ରାରେ ଆଧ୍ୟାତ୍ମିକ ବ୍ୟାଖ୍ୟାସମ୍ବଳିତ । ତୁଳସୀଦାସଙ୍କର କବିପ୍ରତିଭା ଏହି ଭାଷାର ସାହିତ୍ୟିକ ମର୍ଯ୍ୟାଦା ବୃଦ୍ଧି କରିଥିଲା । ଷୋଡ଼ଶ ଶତାବ୍ଦୀ ପରେ ବ୍ରଜଭାଷା ସମଗ୍ର

ହିନ୍ଦୀଭାଷୀ ଅଞ୍ଚଳର ସାହିତ୍ୟିକ ଭାଷାରୂପେ ଗୌରବ ଲାଭ କଲା । ସପ୍ତଦଶ ଶତାବ୍ଦୀର ଅଷ୍ଟଛାପ କବିଗଣଙ୍କର ରଚନା ଏବଂ ତା'ପରେ ରୀତିକାଳର କବିଙ୍କ ରଚନା ଏଥିରେ ସହାୟତା କରିଥିଲା । ବ୍ରଜଭାଷା କ୍ରମେ ମାର୍ଜିତ ଏବଂ ଅଳଂକୃତ ହୋଇଥିଲା । କବି ଘନାନନ୍ଦଙ୍କ ନାମ ଏହି ପ୍ରସଙ୍ଗରେ ଉଲ୍ଲେଖଯୋଗ୍ୟ । ବ୍ରଜଭାଷା ଏବଂ ଅବଧି ବ୍ୟତୀତ ଖଡ଼ିବୋଲି ଭାଷାରେ କେତେକ ଲେଖା ଦେଖିବାକୁ ମିଳେ । ଅଷ୍ଟାଦଶ ଶତାବ୍ଦୀ ପର୍ଯ୍ୟନ୍ତ ମୁସଲମାନ କବିମାନେ ଏହି ଅବଧି କିମ୍ବା ବ୍ରଜଭାଷାରେ ଲେଖୁଥିଲେ । ମୋଗଲ ସାମ୍ରାଜ୍ୟର ପତନ ସାହିତ୍ୟକୁ ମଧ୍ୟ ପ୍ରଭାବିତ କରିଥିଲା । ଆଫଗାନ୍, ମରହଟ୍ଟା ଏବଂ ଇଂରେଜମାନଙ୍କର ସଂଘର୍ଷ ଯୋଗୁଁ ହିନ୍ଦୀଭାଷୀ ଅଞ୍ଚଳରେ କେତେକ ପରିମାଣରେ ଜାଗରଣ ଦେଖାଦେଲା । ଖଡ଼ିବୋଲି ଭାଷା କାବ୍ୟ ରଚନାରେ ବ୍ୟବହୃତ ହୋଇଥିଲା । ମାତ୍ର ଜନସାଧାରଣଙ୍କ ବ୍ୟବହାର ଉପଯୋଗୀ ଭାଷା ଭାବରେ ଉର୍ଦ୍ଦୁ, ଖଡ଼ିବୋଲି ସମର୍ଥକଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ଇଂରେଜମାନେ ଜନସାଧାରଣଙ୍କ ବ୍ୟବହୃତ ଭାଷାର ଉପାଦେୟତା ଉପଲବ୍ଧି କରି ହିନ୍ଦୀ-ଖଡ଼ିବୋଲି ଭାଷାର ବିକାଶ ପାଇଁ ପ୍ରଯତ୍ନ କରିଥିଲେ । ସେହି ସମୟରେ ଫୋର୍ଟ ଉଇଲିୟମ୍ କଲେଜର ଉଦ୍ୟୋକ୍ତାମାନଙ୍କ ଯତ୍ନରେ ହିନ୍ଦୀ-ଖଡ଼ିବୋଲି ଭାଷାରେ କେତେକ ପୁସ୍ତକ ପ୍ରକାଶିତ ହୋଇଥିଲା । ଏହି ଖଡ଼ିବୋଲି ଭାଷାର ନିଦର୍ଶନ ପୂର୍ବ ଯୁଗରେ ମଧ୍ୟ ମିଳିଥିଲା । ଅମୀର ଖୁସ୍ରୋ, ତା'ପରେ କବୀର ଏହି ଭାଷାରେ ରଚନା କରିଥିଲେ । କିନ୍ତୁ ଖଡ଼ିବୋଲିର ପ୍ରାଚୀନ ରୂପ ଉର୍ଦ୍ଦୁ ଥିଲା ବୋଲି କୁହାଯାଇ ନ ପାରେ । ଖଡ଼ିବୋଲି ଭାଷା ମୁସଲମାନ ଶାସକଙ୍କ ଦ୍ୱାରା କେତେ ପରିମାଣରେ ମାର୍ଜିତ ଏବଂ ପ୍ରଭାବିତ ହୋଇଥିଲା । ପ୍ରକୃତ ଘଟଣା ହେଉଛି, ଖଡ଼ିବୋଲି ଅନ୍ୟାନ୍ୟ ଭାଷା ସହିତ କଥିତ ହେଉଥିଲା ଏବଂ ଏକାନ୍ତଭାବରେ ଏହା ସେତେବେଳେ ସାହିତ୍ୟିକ ଭାଷା ନ ଥିଲା । ପାର୍ଶି-ପ୍ରଭାବିତ ଉର୍ଦ୍ଦୁ ଭାଷା ପାର୍ଶିଭାଷା ସ୍ଥାନରେ ଇଂରେଜ ଶାସକଙ୍କ ନିର୍ଦ୍ଦେଶରେ କଚେରିମାନଙ୍କରେ ପ୍ରଚଳିତ ହୋଇଥିଲା; ସେହି ସମୟରେ ଉର୍ଦ୍ଦୁଲିପି ଜାଣିଥିବା ବ୍ୟକ୍ତିମାନଙ୍କୁ ଗୃକର କ୍ଷେତ୍ରରେ ଅଗ୍ରାଧିକାର ଦିଆଯାଉଥିଲା । ଖଡ଼ିବୋଲି ହିନ୍ଦୀ ତାର ସ୍ୱକୀୟ ଶକ୍ତି ଯୋଗୁଁ କ୍ରମଶଃ ଅଗ୍ରଗତି କରିଥିଲା ।

ଆଜି ଦେଶରେ ଯେଉଁ ହିନ୍ଦୀ ଭାଷାର ମର୍ଯ୍ୟାଦା ଏବଂ ପ୍ରାଧାନ୍ୟ ଏତେ ସ୍ୱୀକୃତ, ତାହା କେବଳ ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳର ଭାଷା ନୁହେଁ; ବରଂ ବିଭିନ୍ନ ପ୍ରାନ୍ତରେ ପ୍ରଚଳିତ ହିନ୍ଦୀ ଭାଷା ଏବଂ ତାର ଉପଭାଷାମାନଙ୍କର ତାହା ଏକ ସମନ୍ୱିତ ଭାଷା । ଏକାଧିକ ଉପଭାଷାର (Dialect) ମିଳନରେ ସେହି କେନ୍ଦ୍ରୀୟ ହିନ୍ଦୀ ଭାଷାଟି ସମୃଦ୍ଧ ଏବଂ ବଳିଷ୍ଠ । ପଶ୍ଚିମାଞ୍ଚଳ ହିନ୍ଦୀ ଭାଷା ଏବଂ ପୂର୍ବାଞ୍ଚଳ ହିନ୍ଦୀ ଭାଷା ଯଥାକ୍ରମେ ଖଡ଼ିବୋଲି, ବାଙ୍ଗରୁ, ବ୍ରଜ, କନୌଜ, ବୁନ୍ଦେଲି ଏବଂ ଅବଧି,

ବାଗ୍‌ହେଲ, ଛତିଶଗଡ଼ ଓ ଭୋଜପୁରୀକୁ କେନ୍ଦ୍ର କରି ପରିଚିତ । ପୂର୍ବାଞ୍ଚଳୀୟ ହିନ୍ଦୀ ମଧ୍ୟରେ ଅବଧ ରାଜ୍ୟରେ ପ୍ରଚଳିତ ଅବଧି ହିଁ ଉଲ୍ଲେଖଯୋଗ୍ୟ । ଏହି ଭାଷା-ଭାଷୀଙ୍କ ସଂଖ୍ୟା ପ୍ରାୟ ଦେଢକୋଟିରୁ ଅଧିକ । ମଧ୍ୟପ୍ରଦେଶର ଛତିଶଗଡ଼ ଭାଷା-ଭାଷୀଙ୍କ ସଂଖ୍ୟା ଅଠତିରିଶ୍ ଲକ୍ଷ । କାଶୀ ଏବଂ ଗ୍ରେଟନାଗପୁର ମଧ୍ୟବର୍ତ୍ତୀ ଅଞ୍ଚଳ-ମାନଙ୍କରେ କଥିତ ଭୋଜପୁରୀ ଭାଷାଭାଷୀଙ୍କ ସଂଖ୍ୟା ପ୍ରାୟ ଦୁଇ କୋଟି । ବାଗ୍‌ବୋଲି ଅବଧିର ଦକ୍ଷିଣାଞ୍ଚଳର କଥିତ ଭାଷା ଏବଂ ଏହି ଭାଷାଭାଷୀଙ୍କ ସଂଖ୍ୟା ପ୍ରାୟ ଅର୍ଦ୍ଧକୋଟି । ଏହିପରି ପଶ୍ଚିମାଂଚଳର ଖଡ଼ିବୋଲି ଭାଷାର ଗୋଟିଏ ଶାଖା ବୁନ୍ଦେଲଖଣ୍ଡ ଅଞ୍ଚଳରେ କଥିତ । ଏହି ଲୋକଙ୍କ ସଂଖ୍ୟା ପ୍ରାୟ ପଞ୍ଚାବନ ଲକ୍ଷ । ଖଡ଼ିବୋଲିର ଆଉ ଏକ ଶାଖା ବାଙ୍ଗରୁ । ଏହା ସାଧାରଣତଃ ଦିଲ୍ଲୀ, କର୍‌ନାଲ୍, ରୋହତକ୍, ହିସାର୍, ପଟିଆଲା ଅଞ୍ଚଳରେ କଥିତ । ଏହି ଭାଷା ଉପରେ ପଞ୍ଜାବୀ ଏବଂ ରାଜସ୍ଥାନୀ ଭାଷାର ପ୍ରଭାବ ମଧ୍ୟ ପରିଲକ୍ଷିତ । ବାଙ୍ଗରୁ ଭାଷାଭାଷୀଙ୍କ ସଂଖ୍ୟା ପ୍ରାୟ ପଚିଶ ଲକ୍ଷ । କନୌଜି ଭାଷାଭାଷୀଙ୍କ ସଂଖ୍ୟା ପ୍ରାୟ ପଚିଶ ଲକ୍ଷ । ବୁନ୍ଦେଲ-ଖଣ୍ଡି ଅଞ୍ଚଳରେ କଥିତ ବୁନ୍ଦେଲି ଭାଷା ଏବଂ କନୌଜି ଭାଷା ବ୍ରଜଭାଷାର ଭିନ୍ନ ରୂପ ।

କଥିତ ଅଞ୍ଚଳର ପ୍ରକାଣ୍ଡ ବିସ୍ତାର ହିଁ ହିନ୍ଦୀ ଭାଷାର ପ୍ରଧାନ ଗୌରବ ଏବଂ ମର୍ଯ୍ୟାଦାର ହେତୁ । ବିଭିନ୍ନ ଶାଖାଭାଷା ମାଧ୍ୟମରେ ଏହି ହିନ୍ଦୀ ଭାଷା ବାଙ୍ଗରୁ ଭାଷା-ଭାଷୀ ହିନ୍ଦୀର ସୀମାନ୍ତରୁ ମଧ୍ୟପ୍ରଦେଶ ପର୍ଯ୍ୟନ୍ତ ଏବଂ ରାଜସ୍ଥାନରୁ ବିହାର ପର୍ଯ୍ୟନ୍ତ ଏକ ବିରାଟ ଅଞ୍ଚଳରେ ପ୍ରଚଳିତ । କେହି କେହି ଭାଷାତତ୍ତ୍ୱବିତ୍ ହିନ୍ଦୀ ଭାଷା ଅନୁଶୀଳନ କ୍ରମରେ ତାକୁ ମଧ୍ୟପ୍ରଦେଶର ଭାଷା ବୋଲି ଅଭିହିତ କରିଥାନ୍ତି । ଏହି ମଧ୍ୟପ୍ରଦେଶ ହିମାଳୟ ଏବଂ ବିନ୍ଧ୍ୟ ପର୍ବତମାଳା ମଧ୍ୟରେ ଅବସ୍ଥିତ । ଏହି ପ୍ରଦେଶର ଅଧିବାସୀମାନଙ୍କର ପାଣ୍ଡିତ୍ୟ ଯେପରି ସ୍ୱୀକୃତ, ସେମାନଙ୍କ ଭାଷା ମଧ୍ୟ ସେହିପରି ଉନ୍ନତ ଏବଂ ପ୍ରାମାଣିକ । ଭୌଗୋଳିକ ଅବସ୍ଥିତି ଦୃଷ୍ଟିରେ ପ୍ରୋକ୍ତ ମଧ୍ୟଦେଶର ଏକ ସାଂସ୍କୃତିକ ବୈଶିଷ୍ଟ୍ୟ ଅଛି । ବିଭିନ୍ନ ଭାଷା ଏବଂ ସଂସ୍କୃତିର ସଂସର୍ଗରେ ଆସି ତାର ଭାଷା ଏବଂ ସଂସ୍କୃତି ଆଦାନ-ପ୍ରଦାନ ସୂତ୍ରରେ ଯୁଗାନୁକ୍ରମେ ପରିପୁଷ୍ଟ ଏବଂ ପ୍ରଭାବିତ ହୋଇପାରିଛି । ଆହରଣ ପ୍ରକ୍ରିୟା ହିନ୍ଦୀ ଭାଷାରେ କମ୍ ପରିଦୃଷ୍ଟ ହୁଏ ନାହିଁ । ହିନ୍ଦୀ ଭାଷାର ଶବ୍ଦବୈଚିତ୍ର୍ୟ ହିଁ ଏହାର ପ୍ରମାଣ । ବହୁ ସଂଖ୍ୟାରେ ତତ୍ସମ ଏବଂ ତଦ୍‌ଭବ ଶବ୍ଦ ଏହି ଭାଷାରୁ ଯେପରି ହ୍ରାସ ପାଇଛି । ସେହି ପରିମାଣରେ ବହୁ ସଂଖ୍ୟକ ବିଦେଶୀ ଶବ୍ଦ ସେଥିରେ ପ୍ରବେଶ କରି ତାର ଶବ୍ଦ-ବିଭବ ସୃଷ୍ଟି କରିପାରିଛି । ଏତଦ୍‌ବ୍ୟତୀତ ବହୁ ପ୍ରାନ୍ତୀୟ ଭାଷାର ପ୍ରଭାବ ମଧ୍ୟ ହିନ୍ଦୀରେ ପରିଲକ୍ଷିତ ହୁଏ । ବିଦେଶୀ ଶବ୍ଦାବଳୀ ମଧ୍ୟରେ ଏକ ଦିଗରେ ପାର୍ଶୀ, ଉର୍ଦ୍ଦୁ, ଆରବୀ ଏବଂ ଅନ୍ୟ ଦିଗରେ ଇଉରୋପୀୟ ଭାଷା; ଯଥା—ଇଂରେଜୀ,

ତ୍, ଫାରସୀ ଭାଷାର ପ୍ରଭାବ ସ୍ପଷ୍ଟ । ଅବଶ୍ୟ ଇଂରେଜୀ ଭାଷାର ପ୍ରଭାବ ସର୍ବାପେକ୍ଷା ଅଧିକ ବୋଲି କୁହାଯାଇପାରେ । ହିନ୍ଦୀ ଭାଷାରେ ବିଦେଶୀ ଶବ୍ଦର ପ୍ରବେଶ ପ୍ରକ୍ରିୟା ଅନୁଶୀଳନ କଲେ ଜଣାଯାଏ ଭାଷାତତ୍ତ୍ୱର ବିଭିନ୍ନ ବିଧି କିପରି କାର୍ଯ୍ୟକାରୀ ହୋଇଛି । କେଉଁଠି ଏପରି ଶବ୍ଦାବଳୀର ବିକୃତି ଘଟିଛି, କେଉଁଠି ଏପରି ଶବ୍ଦ ଅବିକଳ ସ୍ଥାନ ପାଇଛି, ଯେପରିକି ଷ୍ଟେସନ, ସ୍କୁଲ୍, ଅଫିସ୍ ପ୍ରଭୃତି ଶବ୍ଦର ମୂଳ ରୂପ ଦେଖିବାକୁ ମିଳେ । କେବଳ ଇଂରେଜୀ ଶବ୍ଦର ନୁହେଁ, ଅନ୍ୟ ବିଦେଶୀ ଭାଷାରୁ ଆନୀତ ଶବ୍ଦମାନଙ୍କ ପକ୍ଷରେ ମଧ୍ୟ ଏହା କୁହାଯାଇପାରେ । ପ୍ରାଧାନ୍ୟ ଦୃଷ୍ଟିରୁ ହିନ୍ଦୀ ଭାଷାର ଲିପି ପ୍ରସଂଗରେ ମଧ୍ୟ ସମ୍ୟକ୍ ସୂଚନା ଦିଆଯିବା ଆବଶ୍ୟକ ।

ଯେପରି ପ୍ରାଚୀନ କାଳରେ ମଧ୍ୟପ୍ରଦେଶ ଚିହ୍ନିତ ଅଞ୍ଚଳରେ ହିନ୍ଦୀ ପ୍ରଚଳନ ପୂର୍ବରୁ ଅପଭ୍ରଂଶ ବ୍ୟବହୃତ ହେଉଥିଲା, ସେହିପରି ଦେବନାଗରୀ ଲିପିର ପ୍ରବର୍ତ୍ତନ ଦୃଷ୍ଟିରୁ ବ୍ରାହ୍ମୀଲିପି ବ୍ୟବହୃତ ହେଉଥିଲା । ଦେବନାଗରୀ ଲିପି ବ୍ରାହ୍ମୀ ଲିପିର ରୂପାନ୍ତରିତ ଅବସ୍ଥା ବୋଲି କୁହାଯାଇପାରେ । କେବଳ ଉତ୍ତର-ଭାରତ ନୁହେଁ, ଦକ୍ଷିଣ-ଭାରତରେ ମଧ୍ୟ ଏହି ବ୍ରାହ୍ମୀଲିପିର ଏକ ପରିବର୍ତ୍ତିତ ରୂପ ପ୍ରଚଳିତ ଥିଲା । ଭାଷା ଏବଂ ଲିପିର ପରସ୍ପର ସମ୍ପର୍କ ନିବିଡ଼, ଯେହେତୁ ଲିପି ଭାଷାର ଅର୍ଥାତ୍ ଧ୍ୱନିର ପରିମୂର୍ତ୍ତି ପ୍ରକାଶ । ଦଶମ ଶତାବ୍ଦୀରୁ ଦେବନାଗରୀ ଲିପି ପ୍ରଚଳିତ ହେଲେ ହେଁ ବସ୍ତୁତଃ ଦ୍ୱାଦଶ ଶତାବ୍ଦୀର ଦେବନାଗରୀ ଲିପି ସଙ୍ଗେ ଆଧୁନିକ କାଳର ଲିପିର ମେଳ ଅଧିକ । ଦକ୍ଷିଣ-ଭାରତରେ ଦେବନାଗରୀ ଲିପିର ନାମ ହେଉଛି 'ନନ୍ଦିନାଗରୀ' ।

ଶତାବ୍ଦୀର ଆହରଣ, ସଂସ୍କାର ଏବଂ ପରିବର୍ତ୍ତନ ସୂତ୍ରରେ ହିନ୍ଦୀ ଭାଷା ତା'ର ଆଧୁନିକ ରୂପ ପ୍ରାପ୍ତ ହୋଇପାରିଛି । ରାଜନୈତିକ ଅସ୍ଥିରତା, ବିଦେଶୀ ଶାସନର ଅବ୍ୟବସ୍ଥା ସତ୍ତ୍ୱେ ହିନ୍ଦୀ ଭାଷା କ୍ରମେ କ୍ରମେ ତାର ଶକ୍ତି ସଞ୍ଚୟ କରିପାରିଛି । ଭାରତର କେବଳ ସୁବିସ୍ତୃତ ଅଞ୍ଚଳର ଜନସାଧାରଣଙ୍କର କଥିତ ଭାଷା ନୁହେଁ, ଏହା ଆଜି ଜାତୀୟ ଚେତନା, ସଂସ୍କୃତି ଏବଂ ଏକତାର ଶକ୍ତିଶାଳୀ ବାହନରୂପେ ପ୍ରତିଷ୍ଠିତ ହୋଇଛି । ଏହାର ପୃଷ୍ଠଭୂମିରେ ସଂସ୍କୃତ ଭାଷାର ଅବଦାନ ପରବର୍ତ୍ତୀ ଯୁଗରେ ଏକାଧିକ ଉପଭାଷାର ସହଯୋଗ । ଏହାର ବୈଚିତ୍ର୍ୟ ରୂପ ପରିପୁଷ୍ଟି ପାଇଁ ଦାୟୀ । ସଂସ୍କୃତ, ପ୍ରାକୃତ, ଅପଭ୍ରଂଶର ସାହିତ୍ୟିକ ପରଂପରା ହିନ୍ଦୀ ସାହିତ୍ୟର ପ୍ରାଥମିକ ପର୍ଯ୍ୟାୟରେ ପରିଲକ୍ଷିତ ।

## ହିନ୍ଦୀ ସାହିତ୍ୟର କାଳ ନିରୂପଣ

୬୪୭ ଖ୍ରୀଷ୍ଟାବ୍ଦରେ ହର୍ଷବର୍ଦ୍ଧନଙ୍କ ମୃତ୍ୟୁ ପରେ ଏବଂ ଗୁପ୍ତବଂଶର ପତନ ପରେ ଭାରତବର୍ଷରେ ଅରାଜକତା ଦେଖାଦେଇଥିଲା । ଏହି ଅବସରରେ ରାଜପୁତ୍-

ମାନଙ୍କର ଅଭ୍ୟୁଦୟ ଘଟିଲା । ଏହି ରାଜପୁତ୍ରମାନଙ୍କର ବୀରତ୍ୱ, ଯୁଦ୍ଧଜୟ ଏବଂ ପରାକ୍ରମର ଅସାଧାରଣ କଥାବସ୍ତୁ ମଧ୍ୟରୁ ହିଁ ପ୍ରାଚୀନ ହିନ୍ଦୀ କାବ୍ୟକବିତାର ସୃଷ୍ଟି ହୋଇଥିଲା । ପ୍ରତ୍ୟେକ ଦରବାରରେ ଭାଟ, ଚାରଣ, ସେଭଗ୍, ଫଗେଲଶ୍‌ମାନେ ନିଯୁକ୍ତ ଥିଲେ । ଯୁଦ୍ଧରେ ରାଜପୁତ୍ରମାନଙ୍କର ବୀରତ୍ୱସୂଚକ କାହାଣୀ ଥିଲା ସେମାନଙ୍କ କବିତାର ଆବେଦନ । ତେବେ ଏହି ସମର-ବର୍ଣ୍ଣନାଧର୍ମୀ କାବ୍ୟକବିତା ରଚିତ ହେବା ପୂର୍ବରୁ ହିନ୍ଦୀ ସାହିତ୍ୟର ଅବସ୍ଥା ଯାହା ଥିଲା, ତା'ର ଏଠାରେ କିଞ୍ଚିତ୍ ସୂଚନା ପ୍ରଦାନ କରିବା ଆବଶ୍ୟକ ।

ହିନ୍ଦୀର ଆବିର୍ଭାବ ପୂର୍ବରୁ ମଧ୍ୟଦେଶ-ଚିହ୍ନିତ ଭୂଖଣ୍ଡରେ ଅପଭ୍ରଂଶ ପ୍ରଚଳିତ ଥିଲା ଏବଂ ଠିକ୍ କେଉଁ ସମୟରେ ଅପଭ୍ରଂଶ ପରିବର୍ତ୍ତେ ହିନ୍ଦୀ ପ୍ରଚଳିତ ଥିଲା ତାହା ସୂକ୍ଷ୍ମ ଗବେଷଣାସାପେକ୍ଷ । ଅପଭ୍ରଂଶ ପରଂପରା ଉଦ୍‌ବର୍ତ୍ତିନ, ସଂସ୍କାର ବାଟ ଦେଇ ହିନ୍ଦୀର ସୃଷ୍ଟି ହେଲା । ଏହା ଆନୁମାନିକ ଦଶମ ଶତାବ୍ଦୀର ଘଟଣା । ହିନ୍ଦୀର ଏତାଦୃଶ ବିକାଶରେ ଅପଭ୍ରଂଶ ରଚନାର କବିମାନଙ୍କର ପ୍ରଭାବ କମ୍ ପଡ଼ି ନଥିଲା । ହିନ୍ଦୀ ସାହିତ୍ୟର ପ୍ରାକ୍ ଆଦିକାଳର କାବ୍ୟ ପରଂପରା, ଭକ୍ତିସାହିତ୍ୟର ପରଂପରା, ଶୃଙ୍ଗାରପୀଡ଼ିତ ରଚନା ପରଂପରାର ପୃଷ୍ଠଭୂମିରେ ଭାରତୀୟ ଅପଭ୍ରଂଶ ସାହିତ୍ୟର ବିଭିନ୍ନ ପ୍ରଭାବ ଥିଲା ବୋଲି ଜଣାଯାଏ । ଏତଦ୍‌ବ୍ୟତୀତ ଯୁଗୀୟ ଚେତନାର ମଧ୍ୟ ସେଥିରେ ପ୍ରତିଫଳନ ଘଟିଥିବ । ପୁନଶ୍ଚ ହିନ୍ଦୀ ସାହିତ୍ୟ ନିଜର ପରଂପରା ଓ ପ୍ରତିକୃତି ସହିତ ବିଦେଶୀ ସାହିତ୍ୟର ପ୍ରଭାବ ମଧ୍ୟ ଜଡ଼ିତ କରିପାରିଥିଲା । ସାହିତ୍ୟ କିମ୍ବା ସାହିତ୍ୟିକ ସମାଜଠାରୁ ବିଚ୍ଛିନ୍ନ ନୁହେଁ । କାରଣ କାବ୍ୟ-କବିତା ବ୍ୟକ୍ତିକ ଅନୁଭୂତ ତଥା ଅଭିଜ୍ଞତାର ଅଭିବ୍ୟକ୍ତି ହେଲେହେଁ, ତାହା ପ୍ରଭୂତ ଭାବରେ ପରିବେଷ୍ଟନୀ ଏବଂ ପରିପ୍ରେକ୍ଷୀଦ୍ୱାରା ନିୟନ୍ତ୍ରିତ । ଜୀବନ ସତ୍ୟ ଏବଂ ଜୀବନାନୁଭୂତ ବ୍ୟକ୍ତିର କଳ୍ପନାରେ ରୂପାୟିତ ହୁଏ । ଜୀବନାଦର୍ଶ, ଜୀବନର ଆଧ୍ୟାତ୍ମିକ ଅଭିଳାଷ ପ୍ରାଚୀନ ହିନ୍ଦୀ ସାହିତ୍ୟରେ ପ୍ରତିଫଳିତ ହେବା ଆଦୌ ଅସ୍ୱାଭାବିକ ନୁହେଁ । ସେଥିପାଇଁ ପ୍ରାଚୀନ ଯୁଗୀୟ ବିଭିନ୍ନ ରଚନା ମୂଳରେ ନିର୍ଦ୍ଦିଷ୍ଟ ଆଭିମୁଖ୍ୟ ଥିଲା । ଏହା ବୀରରସବ୍ୟଞ୍ଜକ ରଚନା ହୋଇପାରେ କିମ୍ବା ଶୃଙ୍ଗାରପୀଡ଼ିତ ରଚନା ହୋଇପାରେ । ସେଥିପାଇଁ ପ୍ରାଚୀନ ହିନ୍ଦୀ ଗାଥା କବିତା ଏବଂ ଯୋଗୀମାନଙ୍କର ଗୀତିକାର ମର୍ମ ପରଂପରା ନିର୍ଦ୍ଦିଷ୍ଟ ବୋଲି କୁହାଯାଇଥାଏ । ଗୀତ କାବ୍ୟ, ସୁଫି କବିମାନଙ୍କର ଭକ୍ତିଧର୍ମୀ ରଚନାର ପ୍ରବାହ ପ୍ରାଚୀନ ଐତିହ୍ୟଦ୍ୱାରା ପରିପୁଷ୍ଟ । ଯୁଗର ସାମାଜିକ, ଧାର୍ମିକ ଏବଂ ରାଜନୈତିକ ଚେତନା ମଧ୍ୟ ଏହି ରଚନା-ସମୂହକୁ ପ୍ରଭାବିତ କରିଥିବ । ହିନ୍ଦୀ ସାହିତ୍ୟ ଇତିହାସର କାଳ ବିଭାଗ ଏହି ସବୁ ଐତିହାସିକ ଦୃଷ୍ଟିକୋଣରୁ କରାଯାଇଛି । ବିଭିନ୍ନ ସମାଲୋଚକମାନେ ବିଭିନ୍ନ ଯୁଗର ନାମକରଣ ବିଭିନ୍ନ ଭାବରେ କରିଛନ୍ତି । ତଥାପି ନିମ୍ନୋକ୍ତ କାଳ ନିରୂପଣ ସମସ୍ତଙ୍କ

ଦ୍ୱାରା ଗୃହୀତ :

ଆଦିକାଳ (ବୀରଗାଥା ଯୁଗ)

ପୂର୍ବ ମଧ୍ୟକାଳ (ଭକ୍ତି ଯୁଗ)

ଉତ୍ତର ମଧ୍ୟକାଳ (ରୀତି ଯୁଗ)

ପ୍ରାକ୍ ଆଧୁନିକ କାଳ (ପ୍ରାକ୍ ଗଦ୍ୟରଚନା ଯୁଗ)

ଆଧୁନିକ ଯୁଗ—(ପ୍ରବନ୍ଧ, ଗଳ୍ପ, ଉପନ୍ୟାସ, ରମ୍ୟରଚନା, ନାଟକ, ସମ୍ବାଦପତ୍ର ଯୁଗ)

ଆଦିକାଳ ପୂର୍ବର ହିନ୍ଦୀ ସାହିତ୍ୟର ସୂଚନା ସେହି ଭାଷାର ଗତି ଓ ପ୍ରକୃତି ସହିତ ଜଡ଼ିତ ବୋଲି ଜଣାଯାଏ । ଜନସାଧାରଣଙ୍କ କଥ୍ୟ ଭାଷାରେ ସେତେବେଳେ ସରଳ ରୀତିରେ ରଚିତ ପଦ୍ୟସମୂହର ନିଦର୍ଶନ ମିଳିଥାଏ । ହିନ୍ଦୀର ପ୍ରାଥମିକ ରୂପ ସୌରସେନୀ ଅପଭ୍ରଂଶର ଅନ୍ୟାନ୍ୟ ଅପଭ୍ରଂଶ ସହିତ ମଧ୍ୟ ସାଦୃଶ୍ୟ ଥିଲା । ଏହି ପ୍ରାଚୀନତମ ରଚନାସମୂହର କଥାବସ୍ତୁ ଏବଂ ଆଭିମୁଖ୍ୟ ମୁଖ୍ୟତଃ ଆଧ୍ୟାତ୍ମିକ ଭାବନାକ୍ରାନ୍ତ । ସିଦ୍ଧ, ଜୈନ ଏବଂ ନାଥପନ୍ଥୀମାନଙ୍କର ଧ୍ୟାନ-ଧାରଣା ସେହିସବୁ ରଚନାରେ ପ୍ରତିଫଳିତ । ନାଳନ୍ଦା ଏବଂ ବିକ୍ରମଶିଳାର ସିଦ୍ଧମାନେ ବୌଦ୍ଧଧର୍ମ ଅନ୍ତର୍ଗତ ବଜ୍ରଯାନ ସମ୍ପ୍ରଦାୟର ଆଦର୍ଶ ଓ ବିଶ୍ୱାସକୁ ପ୍ରତିଫଳିତ କରି ସାଧାରଣ ବୋଧ ଭାଷାରେ ଯେଉଁ ଗୀତିକାସମୂହ ଲେଖିଥିଲେ, ତାହା ହିଁ ହିନ୍ଦୀ କବିତାର ପ୍ରାଚୀନତମ ନିଦର୍ଶନ । ହିନ୍ଦୀ ସାହିତ୍ୟରେ ସେମାନଙ୍କ ପରଂପରା ବହୁଦିନଧରି ରହିଥିଲା । ଏହାପରେ ମତ୍ସ୍ୟେନ୍ଦ୍ର ନାଥ ଏବଂ ଗୋରକ୍ଷନାଥଙ୍କ ପ୍ରବର୍ତ୍ତିତ 'ନାଥପନ୍ଥା'ର ଆଦର୍ଶ ହିନ୍ଦୀ କବିତାରେ ପ୍ରତିଫଳିତ ହୋଇଥିଲା । ଏତାଦୃଶ ରଚନାର ପୃଷ୍ଠଭୂମିରେ ହିଁ ହିନ୍ଦୀ ସାହିତ୍ୟରେ ଭକ୍ତିଯୁଗର ସୂତ୍ରପାତ ହୋଇଥିଲା । ପଣ୍ଡିତ ରାହୁଲ ସାଂକୃତ୍ୟାୟନ ସିଦ୍ଧ ସାହିତ୍ୟର କେତେକ ମୂଲ୍ୟବାନ ରଚନା ଲୋକଲୋଚନକୁ ଆଣିଥିଲେ । ସେ ଗବେଷଣା କରି ମତ ପ୍ରକାଶ କରିଥିଲେ ଯେ ସେହି ସିଦ୍ଧମାନଙ୍କର ସମୟ ହେଉଛି—ଅଷ୍ଟମ ଶତାବ୍ଦୀର ଅର୍ଦ୍ଧଭାଗରୁ ତ୍ରୟୋଦଶ ଶତାବ୍ଦୀର ପ୍ରଥମାର୍ଦ୍ଧ ପର୍ଯ୍ୟନ୍ତ । ତଙ୍ଗିତଷ୍ଟିତ ସାକ୍ଷ୍ୟନିହାରର ପାଞ୍ଚଜଣ ସିଦ୍ଧଙ୍କ ସମ୍ପର୍କରେ ତାଙ୍କର ଗବେଷଣା ଉଲ୍ଲେଖଯୋଗ୍ୟ । ତାଙ୍କ ମତରେ, ସରହପା ହେଉଛନ୍ତି ଆଦ୍ୟସିଦ୍ଧ । ବଜ୍ରଯାନ ସମ୍ପ୍ରଦାୟର ଧର୍ମ-ଧାରଣା ସେମାନଙ୍କ ରଚନାର ଭାବଗତ ବୈଶିଷ୍ଟ୍ୟ । ରଚନାର ଭାଷା ହେଉଛି ସାନ୍ଧ୍ୟଭାଷା ଏବଂ ଶାନ୍ତ ଓ ଶୃଙ୍ଗାର ରସ ହିଁ ସେହି ରଚନାରେ ପ୍ରକଟିତ । ପ୍ରାଚୀନ ହିନ୍ଦୀ ସାହିତ୍ୟର ଦ୍ୱିତୀୟ ଧାରା ହେଉଛି—ଜୈନଧର୍ମ ବିଶ୍ୱାସ-ପ୍ରଭାବିତ ରଚନାମାଳା । ପ୍ରାଚୀନ ପରଂପରା ଏବଂ ନୂତନ ଚିନ୍ତାର ସମନ୍ୱୟ ଯୋଗୁ ଏହି ଧାରାରେ କେତେକ ନୂତନ ବିଷୟବସ୍ତୁ ମଧ୍ୟ ସ୍ଥାନ ପାଇଥିଲା । ଅର୍ଥାତ୍ ଜୈନ ତୀର୍ଥଙ୍କରଙ୍କ ଚିନ୍ତାବିଭବ ଓ ତାର ବ୍ୟାଖ୍ୟା ସହିତ ରାମାୟଣ ଏବଂ

*

ମହାଭାରତ ବିବରଣୀ ମଧ୍ୟ ଏହି ଯୁଗର ହିନ୍ଦୀ ସାହିତ୍ୟରେ ବର୍ଣ୍ଣିତ ହୋଇଥିଲା । କଥାବସ୍ତୁ, କାହାଣୀ, ପ୍ରକାଶୋକ୍ତି, କବିତ୍ୱ, ବର୍ଣ୍ଣନାପଟୁତା, ଛନ୍ଦପ୍ରୟୋଗ, ଏପରି ବିଭିନ୍ନ ଦୃଷ୍ଟିକୋଣରୁ ବିଚାର କରିଗଲେ ଏହି ଯୁଗର ରଚନା ମାଧ୍ୟମରେ ହିନ୍ଦୀ କାବ୍ୟର ବିକାଶଧାରା ନିହିତ ଥିଲା ବୋଲି ସ୍ପଷ୍ଟ ଜଣାଯାଏ । ଜୈନମାନଙ୍କର ବିଭିନ୍ନ ରଚନା, ବିଶେଷତଃ ପ୍ରେମ କାହାଣୀ ବର୍ଣ୍ଣନା ବେଶ୍ ପଠନଯୋଗ୍ୟ ।

ଅପଭ୍ରଂଶ ଭାଷାର କବି ସ୍ୱୟମ୍ଭୂ, ରାମାୟଣ ଏବଂ ମହାଭାରତ ଉପରେ ନିର୍ଭର କରି କେତେକ ଗ୍ରନ୍ଥ ଲେଖିଥିଲେ । ସେଥିମଧ୍ୟରୁ 'ପୌମଚରିୟୁ' (ରାମାୟଣ) 'ରିଥୋମି ଚରିୟୁ', ପଂଚମୀ ଚରିୟୁ', 'ସ୍ୱୟମ୍ଭୂଛନ୍ଦ' ପ୍ରଭୃତି ରଚନା ମିଳୁଛି । ଅପଭ୍ରଂଶ କବିଗୋଷ୍ଠୀ ମଧ୍ୟରେ ହେମଚନ୍ଦ୍ରଙ୍କ ନାମ ପାଣ୍ଡିତ୍ୟ ଏବଂ ଜ୍ଞାନ ଯୋଗୁଁ ଶୁଣାଯାଇଥାଏ । ଦ୍ୱାଦଶ ଶତାବ୍ଦୀର ହେମଚନ୍ଦ୍ର ଗୁଜରାଟ ନରପତି ଜୟସିଂହଙ୍କ ସଭାକବି ଥିଲେ । ପ୍ରସିଦ୍ଧ ବ୍ୟାକରଣ ଗ୍ରନ୍ଥ 'ଶବ୍ଦାନୁଶାସନ'ର ସେ ହେଉଛନ୍ତି ପ୍ରଣେତା । ସଂସ୍କୃତ, ପ୍ରାକୃତ ଏବଂ ଅପଭ୍ରଂଶ ଭାଷାର ଆଲୋଚନା ଏହି ଗ୍ରନ୍ଥର ଅନ୍ତର୍ଭୁକ୍ତ । ହେମଚନ୍ଦ୍ରଙ୍କର ଆଉ ଖଣ୍ଡିଏ ଗ୍ରନ୍ଥ ହେଉଛି କୁମାରପାଳ-ଚରିତ । ଏହା ଜୟପାଳ ସିଂହଙ୍କ ପୁତୁରାଙ୍କର (ରାଜତ୍ୱକାଳ—୧୧୪୨-୧୧୭୩) ଜୀବନୀମୂଳକ ଲେଖା । ଉପରୋକ୍ତ କବିମାନେ ଅପଭ୍ରଂଶ ଦୋହା ମଧ୍ୟ ସଂକଳନ କରିଥିଲେ । ଆଧୁନିକ ଯୁଗରେ ଏହି ଅପଭ୍ରଂଶ ସାହିତ୍ୟ ସମ୍ବନ୍ଧରେ ଗବେଷଣା କରିଯାଉଛି । କାରଣ ତଦ୍ୱାରା ହିନ୍ଦୀ ସାହିତ୍ୟର ବିକାଶର କ୍ରମ ଜଣାଯିବ । ପ୍ରଥମ ପର୍ଯ୍ୟାୟର ଅପଭ୍ରଂଶ ଏବଂ ତାର ପରବର୍ତ୍ତୀ ରୂପ ପ୍ରାଚୀନ ହିନ୍ଦୀ ଭାଷାରେ ବହୁ ଦାର୍ଶନିକ କାବ୍ୟିକ ଚିନ୍ତାର ପ୍ରତିଫଳନ ଘଟିଥିଲା । ଉଭୟ ବୈଷୟିକ ଏବଂ ଆଧ୍ୟାତ୍ମିକ ଭାବନାର ସମନ୍ୱୟ ସେତେବେଳେ ପ୍ରାଚୀନ ସାହିତ୍ୟରେ ଘଟିଥିଲା । ମେରୁତୁଙ୍ଗଙ୍କ 'ଚିନ୍ତାମଣି' ନାମକ ଦୀର୍ଘ ରଚନାରେ ଅପଭ୍ରଂଶ ଦୋହାର ନିଦର୍ଶନ ମିଳେ । ହିନ୍ଦୀ ସାହିତ୍ୟରେ ଶୃଙ୍ଗାରାତ୍ମକ ରଚନା ପର୍ଯ୍ୟାୟରେ ମେରୁତୁଙ୍ଗଙ୍କ ନାମ ଉଲ୍ଲେଖ କରିଯାଇଥାଏ ।

ନାଥପନ୍ଥୀ କବିମାନେ ବଜ୍ରଯାନୀ ସିଦ୍ଧମାନଙ୍କ ଚିନ୍ତା ଏବଂ ଧ୍ୟାନ-ଧାରଣା ପ୍ରତିଫଳିତ କରିପାରିଥିଲେ । ବଜ୍ରଯାନରୁ ସହଜଯାନ ଏବଂ ସହଜଯାନରୁ ନାଥ-ପନ୍ଥା ଏହି କ୍ରମରେ ପ୍ରାଚୀନ ହିନ୍ଦୀ ସାହିତ୍ୟର ଧାରା ମଧ୍ୟ ନିୟନ୍ତ୍ରିତ ହୋଇଥିଲା ।

ନାଥ ସଂପ୍ରଦାୟର ପ୍ରବର୍ତ୍ତକରୂପେ ପରିଚିତ ଗୋରଖନାଥଙ୍କ ଇତିହାସ ସଂପର୍କରେ ଗବେଷକମାନଙ୍କ ମଧ୍ୟରେ ମତଦ୍ୱୈଧ ଦେଖାଯାଏ । କେହି କହନ୍ତି, ସେ ପଞ୍ଚଦଶ ଶତାବ୍ଦୀର ଲୋକ; ଆଉ କେହି କହନ୍ତି ସେ ଥିଲେ ଏକାଦଶ ଶତାବ୍ଦୀର ଲୋକ । ଗୋରଖନାଥ ଜନସାଧାରଣଙ୍କ ଭାଷାରେ ନିଜ ଧର୍ମମତ ଲିପିବଦ୍ଧ କରିଥିଲେ । ପ୍ରସିଦ୍ଧ 'ନବନାଥ'ଙ୍କ ମଧ୍ୟରେ ମତ୍ସ୍ୟେନ୍ଦ୍ରନାଥ, ଭରତୀନାଥ, ଗୋପୀଚନ୍ଦ

ନାଥ ପ୍ରମୁଖଙ୍କ ନାମ ଶୁଣାଯାଏ ।

ତେବେ ପ୍ରଶ୍ନ ଉଠେ ଅପଭ୍ରଂଶ ଏବଂ ହିନ୍ଦୀ ସାହିତ୍ୟ ମଧ୍ୟରେ ସୀମାରେଖା କେଉଁଠି ? ସେହି ପ୍ରଭେଦ କ'ଣ ଭାଷାଗତ ନା ଭାବଗତ ? ଦଶମ ଶତାବ୍ଦୀରୁ ଚତୁର୍ଦ୍ଦଶ ଶତାବ୍ଦୀରେ ମଧ୍ୟଦେଶ ଭାଷା ହିଁ ହିନ୍ଦୀ ଭାଷାରୂପେ ଗଢ଼ି ଉଠୁଥିଲା । ଏହି ସମୟ ନିଶ୍ଚିତ ଭାବରେ ଦଶମ ଶତାବ୍ଦୀର ଶେଷାର୍ଦ୍ଧ କମ୍ବା ଏକାଦଶ ଶତାବ୍ଦୀର ପ୍ରଥମାର୍ଦ୍ଧ । ଏହି ସମୟ ଭାରତବର୍ଷରେ ବିଶେଷତଃ 'ମଧ୍ୟଦେଶ' ଭୂଖଣ୍ଡରେ ଐତିହାସିକ ଓ ରାଜନୈତିକ ଅଶାନ୍ତି ଏବଂ ଅସ୍ଥିରତାଦ୍ୱାରା ଚିହ୍ନିତ ହୋଇଥିଲା । ଉତ୍ତର-ପଶ୍ଚିମ ଦିଗର ମୁସଲମାନମାନଙ୍କର ଆକ୍ରମଣ ହିଁ ମଧ୍ୟଦେଶରେ ଅସ୍ଥିରତାର ହେତୁ ଥିଲା । ଏହି ଭୂଖଣ୍ଡରେ ବହୁ ପ୍ରସିଦ୍ଧ ରାଜବଂଶ ଶାସନ କରୁଥିଲେ ଏବଂ ସଂସ୍କୃତ, ପାଣ୍ଡିତ୍ୟ ତଥା ଧର୍ମ କ୍ଷେତ୍ରରେ ଏହି କନୌଜ, ଦିଲ୍ଲୀ, ଆଜମୀର ଅଞ୍ଚଳର ଦାନ ମଧ୍ୟ କମ ନ ଥିଲା । ମାତ୍ର ଇତିହାସର ଗତି ବିଚିତ୍ର ! ହର୍ଷବର୍ଦ୍ଧନଙ୍କ ରାଜତ୍ୱପରେ କ୍ଷୁଦ୍ର କ୍ଷୁଦ୍ର ସ୍ୱତନ୍ତ୍ର ରାଜ୍ୟରେ ଭାରତବର୍ଷ ବିଭକ୍ତ ହେବା ସଙ୍ଗେ ସଙ୍ଗେ ଦୀର୍ଘ ଦିନର ହିନ୍ଦୁ ଏକତା ଘୋର ବାଧାପ୍ରାପ୍ତ ହେଲା । ପୁନଶ୍ଚ ହିନ୍ଦୁ ରାଜାମାନେ ପରସ୍ପର ମଧ୍ୟରେ ବ୍ୟକ୍ତିଗତ ସ୍ୱାର୍ଥ ଉଦ୍ଦେଶ୍ୟରେ କଳହ-ପ୍ରବୃତ୍ତ ହେଉଥିଲେ । ଭାରତୀୟ ହିନ୍ଦୁ ଛତ୍ରପତିମାନଙ୍କର ବୀରତ୍ୱର ଅଭାବ ନ ଥିଲା; ମାତ୍ର ଅଭାବ ଥିଲା ସେମାନଙ୍କ ମଧ୍ୟରେ ଏକତା । ତଥାପି ହିନ୍ଦୁ ନରପତିମାନେ ଏକାଧିକବାର ମୁସଲମାନ ଆକ୍ରମଣକାରୀଙ୍କୁ ପଦାନତ କରିପାରିଥିଲେ । ତଥାପି ତଦାନୀନ୍ତନ ଭାରତ ବିଦେଶୀ ଆକ୍ରମଣ ଯୋଗୁଁ ଯୁଦ୍ଧଭୂମିରେ ପରିଣତ ହୋଇଥିଲା । ସେମାନଙ୍କ ବୀରତ୍ୱକାହାଣୀ, ବୀର-ପ୍ରଶସ୍ତି ଯୁଗ ହିନ୍ଦୀ କାବ୍ୟସମୂହରେ ପ୍ରାଞ୍ଜଳ ଭାବରେ ବର୍ଣ୍ଣିତ ।

ଆଦିକାଳ

ଏହି ବୀର-ପ୍ରଶସ୍ତି ଯୁଗରେ ଦ୍ୱିବିଧ ଶ୍ରେଣୀୟ ରଚନା ଦେଖିବାକୁ ମିଳେ । ପ୍ରଥମ ଶ୍ରେଣୀୟ ରଚନା ହେଉଛି ପୂର୍ବବର୍ଣ୍ଣିତ ଜୈନ, ସିଦ୍ଧ ଏବଂ ନାଥ ସଂପ୍ରଦାୟଙ୍କ ତତ୍ତ୍ୱସମ୍ବଳିତ ରଚନାବଳୀ । ଦ୍ୱିତୀୟ ଶ୍ରେଣୀୟ ରଚନା ହେଉଛି 'ରାସୋ' ସାହିତ୍ୟ । ରାଜଦରବାରରେ ଭାଟ ଓ କବିମାନେ ରାଜାମାନଙ୍କୁ ବୀର, ଶକ୍ତିଶାଳୀ ବୋଲି ବର୍ଣ୍ଣନା କରୁଥିଲେ । ସେମାନଙ୍କ କାବ୍ୟ ସୈନ୍ୟମାନଙ୍କ ହୃଦୟରେ ବୀରତ୍ୱ ଭାବ ଜାଗ୍ରତ କରିବା ପାଇଁ ଉଦ୍ଦିଷ୍ଟ ଥିଲା ।

'ରାସୋ' ହେଉଛି ବୀରଗାଥା କାବ୍ୟ । 'ରାସୋ' ଶବ୍ଦର ଅର୍ଥ ଓ ବ୍ୟୁତ୍ପତ୍ତି ସଂପର୍କରେ ପଣ୍ଡିତମାନେ ବିଭିନ୍ନ ମତ ପୋଷଣ କଲେହେଁ, 'ରାସୋ' ଶବ୍ଦର ବୀର-ରସାତ୍ମକ ଗାଥାର ବର୍ଣ୍ଣନା ରାଜସ୍ଥାନୀ, ଗୁଜରାଟୀ, ବ୍ରଜଭାଷାରେ 'ରାସୋ' ଶବ୍ଦ

ବିଭିନ୍ନ ଅର୍ଥରେ ପ୍ରଯୁକ୍ତ । ତଥାପି 'ରାସୋ' ଶବ୍ଦ ବୀରରସାତ୍ମକ ଗାଥା-ବର୍ଣ୍ଣନାକୁ ବୁଝାଇଥାଏ । ଚାରଣ କବିମାନେ କାବ୍ୟ ରଚନା କରିଥିଲେ ଏବଂ ଭାଟମାନେ ଗାଥା କବିତା ରଚନା କରିଥିଲେ । ଉଭୟ ରଚନାର ଆବେଦନ ଅପୂର୍ବ ବୀରତ୍ୱ ଏବଂ ପ୍ରେମ । ଏହି ରାଜପୁତ୍ ବୀରମାନଙ୍କୁ ମଧ୍ୟଯୁଗୀୟ ଇଉରୋପର ନାଇଟ୍ ଏରାଣ୍ଟ-ମାନଙ୍କ ସହିତ ତୁଳନା କରାଯାଇପାରେ । ହିନ୍ଦୀ କାବ୍ୟକାରଗଣ ଏକରକମ ଗ୍ରୀକ୍ କାବ୍ୟାଦର୍ଶର ନିକଟବର୍ତ୍ତୀ ହୋଇଥିଲେ ବୋଲି କୁହାଯାଇପାରେ । ପ୍ରାଚୀନ ଚିତୋର ରାଜ୍ୟରେ ଖୁମନ୍ ନାମରେ ତିନିଜଣ ରାଜା ଥିଲେ – ଖୁମନ୍ ପ୍ରଥମ (୭୫୩-୭୭୮), ଖୁମନ ଦ୍ୱିତୀୟ (୮୧୦-୮୪୦), ଖୁମନ ତୃତୀୟ (୯୦୮-୯[illegible]) । ବାଗଦାଦ୍‌ର ଖଲିଫାଙ୍କ ଭାରତ ଆକ୍ରମଣ 'ଖୁମ୍ମନ୍ ରାସୋ'ରେ ବର୍ଣ୍ଣିତ । ଏହାର ରଚୟିତା ଦଲପତ୍ ବିଜୟ । ଏହି କୃତିରେ ସମ୍ରାଟ୍ ଆକବରଙ୍କ ସମସାମୟିକ ମହାରାଣା ପ୍ରତାପସିଂହଙ୍କ ପର୍ଯ୍ୟନ୍ତ ଚିତୋର ରାଜବଂଶାବଳୀ ମଧ୍ୟ ଅନ୍ତର୍ଭୁକ୍ତ । ଆଜମିରର ନରପତି ବିଶାଳଦେବ (ଖ୍ରୀ: ୧୦୦୧) ଦିଲ୍ଲୀ ଏବଂ ହାନ୍‌ସିକୁ ତୋମାର-ମାନଙ୍କ କବଳରୁ ରକ୍ଷା କରିଥିଲେ । ପୃଥ୍ୱୀରାଜ ଦିନେ ସେହି ଚୌହାନ ସାମ୍ରାଜ୍ୟର ସର୍ବେସର୍ବା ହୋଇଥିଲେ । ବିଶାଳଦେବଙ୍କ ଦରବାରର କବି ନରପତି ନାଲ୍ହା 'ବିଶାଳଦେବ ରାସୋ' ରଚନା କରିଥିଲେ । ଚାରିଭାଗରେ ବିଭକ୍ତ ଏହି 'ରାସୋ'ରେ ରାଜମତୀଙ୍କ ସହିତ ବିଶାଳଦେବଙ୍କର ବିବାହ, ଓଡ଼ିଶା ପଥେ ଯାତ୍ରା, ରାଜମତୀଙ୍କର ବିଚ୍ଛେଦ, ପିତୃଗୃହ ଯାତ୍ରା ପରେ ସେମାନଙ୍କ ମିଳନ, ବିଶାଳଦେବଙ୍କର ଗୃହ ପ୍ରତ୍ୟାବର୍ତ୍ତନ ଏବଂ ରାଜାରାଣୀଙ୍କର ମିଳନ ଅନ୍ତର୍ଭୁକ୍ତ । ଏହାର ଆନୁମାନିକ ରଚନାକାଳ ହେଉଛି ୧୦୧୬ ଖ୍ରୀଷ୍ଟାବ୍ଦ ।

'ପୃଥ୍ୱୀରାଜ ରାସୋ'ର ପ୍ରଣେତା କବିଚାନ୍ଦ (୧୧୨୬-୧୧୯୨) ଥିଲେ ପରାକ୍ରମଶାଳୀ ରାଜା ପୃଥ୍ୱୀରାଜଙ୍କର ସେନାପତି । ତାଙ୍କର ଜନ୍ମସ୍ଥଳୀ ଥିଲା ଲାହୋର । ଚାନ୍ଦ ଏକାଧାରରେ ଯୁଦ୍ଧରେ ସୈନିକ ଏବଂ ଦରବାରରେ କବି ଥିଲେ । ସେଥିପାଇଁ 'ପୃଥ୍ୱୀରାଜ ରାସୋ' ଯୁଦ୍ଧଭୂମିର ପ୍ରତ୍ୟକ୍ଷ ବର୍ଣ୍ଣନାରେ ପରିପୂର୍ଣ୍ଣ । ପୃଥ୍ୱୀରାଜଙ୍କୁ କବିଶ୍ରେଷ୍ଠ ବୀରରୂପେ ତାଙ୍କ କାବ୍ୟରେ ବର୍ଣ୍ଣନା କରିଛନ୍ତି । ଇଂରେଜୀ ସାହିତ୍ୟର ଜନ୍‌ସନ୍‌ଙ୍କ ଜୀବନୀ ଲେଖକ ବସ୍‌ଓଏଲ (Boswell)ଙ୍କ ସହିତ ପ୍ରାଚୀନ ହିନ୍ଦୀ କବି ଚାନ୍ଦ୍‌ଙ୍କୁ ତୁଳନା କରାଯାଇଥାଏ । ମାତ୍ର ଚାନ୍ଦଙ୍କ ବର୍ଣ୍ଣିତ ବୀର ବସଓଏଲଙ୍କ ବର୍ଣ୍ଣିତ ବୀରଙ୍କଠାରୁ ଅଧିକ ବୈଚିତ୍ର୍ୟପୂର୍ଣ୍ଣ । ପ୍ରଥମେ ଏହି ପ୍ରସିଦ୍ଧ 'ରାସୋ' କାବ୍ୟର ସତ୍ୟତା, କାଳ ନିରୂପଣ ଏବଂ ପାଣ୍ଡୁଲିପି ସମ୍ପର୍କରେ ନାଗରୀ ପ୍ରଚାରିଣୀ ସଭାର ଅଧ୍ୟାପକ ଡକ୍ଟର ଜି. ବୁହଲର, ଶ୍ୟାମଚାନ୍ଦ ଓଝା, ମୁନ୍‌ସି ଦେବୀପ୍ରସାଦ ପ୍ରମୁଖଙ୍କ ମଧ୍ୟରେ ବାଦାନୁବାଦ ଦେଖାଦେଇଥିଲା । ଡକ୍ଟର ବୁହଲର କାଶ୍ମୀରରୁ 'ପୃଥ୍ୱୀରାଜ ବିଜୟ' ପାଣ୍ଡୁଲିପି ପାଇବା ପରେ ମୂଳଗ୍ରନ୍ଥ ସମ୍ପର୍କରେ ସନ୍ଦେହ ପ୍ରକାଶ

ପାଇଥିଲା । ଏହାର ଭାଷାରେ ଅପଭ୍ରଂଶ, ସୌରସେନୀ, ପାର୍ଶି ଶବ୍ଦର ବ୍ୟବହାର ଦେଖାଯାଏ ।

ଯାଜ୍ଞିକଙ୍କର ଲିଖିତ 'ପରମଲ ରାସୋ' ଏହିପରି ଏକ ରାସୋ ରଚନା । ଏହିସବୁ ରଚନାର ଐତିହାସିକ ସଠିକତା ଅନେକ ସମୟରେ ସନ୍ଦେହଜନକ; ତଥାପି ସାହିତ୍ୟର ଇତିହାସରେ ତାହା ଉଲ୍ଲେଖଯୋଗ୍ୟ । ଅବଦୁଲ୍ ରହିମାନଙ୍କ ଲିଖିତ 'ସନ୍ଦେଶରସକ'ରେ ବିରହିଣୀ ପ୍ରିୟାର ପ୍ରିୟତମ ନିକଟକୁ ବାର୍ତ୍ତା ପ୍ରେରଣା ହିଁ ବର୍ଣ୍ଣିତ ।

ବିଦ୍ୟାପତିଙ୍କର 'କୀର୍ତ୍ତିଲତା' ପଦାବଳୀ 'କୀର୍ତ୍ତିପତାକା' ଏହି ଯୁଗର ଗୀତରଚନା । ଗୋଟିଏ ମହୁମାଛି ଏବଂ ତାର ସାଥୀର କଥୋପକଥନ 'କୀର୍ତ୍ତିଲତା' କାବ୍ୟରେ ବର୍ଣ୍ଣିତ । 'କୀର୍ତ୍ତିପତାକା'ରେ ପ୍ରେମମୂଳକ ଗଳ୍ପ ବର୍ଣ୍ଣିତ ।

ଉପରୋକ୍ତ ଆଲୋଚନାରୁ ଜଣାଯାଏ ଯେ ଏହି ଯୁଗ ଏକ ଦିଗରେ ବୌଦ୍ଧ ଏବଂ ନାଥ ସିଦ୍ଧମାନଙ୍କ ରଚନା; ଅନ୍ୟ ଦିଗରେ ବୀର ପ୍ରଶସ୍ତିମୂଳକ ରଚନାଦ୍ୱାରା ଚିହ୍ନିତ । ପଣ୍ଡିତ ରାମଚନ୍ଦ୍ର ଶୁକ୍ଲ, ପଣ୍ଡିତ ରାହୁଲ ସାଂକୃତାୟନ ଏହି ଯୁଗର ଏପରି ନାମକରଣରେ ମଧ୍ୟ ନିଜ ନିଜ ମତ ଦେବା ପାଇଁ ଛାଡ଼ିନାହାନ୍ତି ।

ପୂର୍ବ-ମଧ୍ୟଯୁଗ—

ଦେଶର ପ୍ରାଚୀନ ଧର୍ମ, ଦର୍ଶନ ଏବଂ ଆଧ୍ୟାତ୍ମିକ ତତ୍ତ୍ୱ ଅନୁଶୀଳନ ଉପରେ ଏହି ଯୁଗର ରଚନାବଳୀ ଆଧାରିତ । ଆଦିଯୁଗର ସାହିତ୍ୟିକ ଧାରାରେ କ୍ରମଶଃ ପରିବର୍ତ୍ତନ ଦେଖାଦେଲା । ଗଭୀର ଆଧ୍ୟାତ୍ମିକ ଚେତନା, ଭକ୍ତିସର୍ବସ୍ୱ ସାଧନା, ଏବଂ ବିଭିନ୍ନ ଧର୍ମର ଆନ୍ଦୋଳନ ଦେଶରେ ଆଉ ଏକ ପ୍ରଭାବ ସୃଷ୍ଟି କରିଥିଲା, ତାହା ହେଉଛି ସର୍ବପ୍ରକାର ରାଜନୈତିକ ଏବଂ ସାମାଜିକ ଅଶାନ୍ତି ମଧ୍ୟରେ ଜନସାଧାରଣଙ୍କ ମନରେ ସାନ୍ତ୍ୱନା ଏବଂ ପ୍ରେରଣାର ସୃଷ୍ଟି । ଧର୍ମ ଅଉ ଆଧ୍ୟାତ୍ମିକ ଚିନ୍ତାର ସମନ୍ୱୟ ହିଁ ମଧ୍ୟଯୁଗ ହିନ୍ଦୀ ସାହିତ୍ୟର ଯଥାର୍ଥ ସ୍ପନ୍ଦନ । ସେଥିପାଇଁ ଚତୁର୍ଦ୍ଦଶ ଶତାବ୍ଦୀରୁ ସପ୍ତଦଶ ଶତାବ୍ଦୀବ୍ୟାପୀ ସମସ୍ତ ହିନ୍ଦୀ ସାହିତ୍ୟରେ ଭକ୍ତିଯୁଗ ନାମରେ ପରିଚିତ । କେହି କେହି ଏହାକୁ ପ୍ରାଚୀନ ହିନ୍ଦୀସାହିତ୍ୟରେ 'ସ୍ୱର୍ଣ୍ଣଯୁଗ' ବୋଲି ଚିହ୍ନିତ କରିଥାନ୍ତି । ଏକଦିଗରେ ମୁସଲମାନ ଶାସକବର୍ଗଙ୍କର ଇସଲାମ ଧର୍ମ ପ୍ରଭାବିତ ସିଦ୍ଧାନ୍ତ, ଅନ୍ୟ ଦିଗରେ ହିନ୍ଦୁସମାଜରେ ପରିଲକ୍ଷିତ ବିଭିନ୍ନ ଧର୍ମତତ୍ତ୍ୱ ଓ ମତବାଦ । ଏହାର ବିରୋଧ ଓ ସଂଘର୍ଷ ଏବଂ ତା'ର ପ୍ରତିକ୍ରିୟା ହିନ୍ଦୀ ସାହିତ୍ୟରେ ଭକ୍ତିଯୁଗର ପ୍ରଧାନ ସ୍ୱର । ଶଙ୍କରାଚାର୍ଯ୍ୟଙ୍କର ପ୍ରଚାରିତ ଅଦ୍ୱୈତ ତଥା ମାୟାବାଦ ଦର୍ଶନ ବିରୋଧରେ ରାମାନୁଜାଚାର୍ଯ୍ୟ, ମାଧବାଚାର୍ଯ୍ୟ, ବିଷ୍ଣୁସ୍ୱାମୀ, ନିମ୍ବାର୍କାଚାର୍ଯ୍ୟ ପ୍ରମୁଖଙ୍କର ବିଭିନ୍ନ ମତବାଦ ଗଢ଼ିଉଠିଥିଲା । ଆତ୍ମା ଏବଂ ବ୍ରହ୍ମ ଏକ ଆଉ ଅଭିନ୍ନ ।

କେବଳ ମାୟାଚ୍ଛନ୍ନତା ଯୋଗୁଁ ଆତ୍ମା ଏବଂ ବ୍ରହ୍ମର ଏକତ୍ୱ ଉପଲବ୍ଧ ହୋଇପାରିନଥାଏ । 'ସତ୍ୟ ବ୍ରହ୍ମ, ଜଗତ୍ ମିଥ୍ୟା'—ସିଦ୍ଧାନ୍ତ ସମସ୍ତଙ୍କ ଦ୍ୱାରା ଗୃହୀତ ହେଲ ନାହିଁ । ସେଥିରେ ପରିବର୍ତ୍ତନର ଆବଶ୍ୟକତା ସାଧୁ ସନ୍ଥମାନେ ଯେପରି ଅନୁଭବ କରିଥିଲେ, ଧର୍ମ ଓ ସଂସ୍କୃତି କ୍ଷେତ୍ରରେ ଏହି ନବୀନ ଚେତନା ହିଁ ହିନ୍ଦୀ ସାହିତ୍ୟରେ ବହୁ ଉଚ୍ଚକୋଟୀର ରଚନାର ପ୍ରାଣ-ନିର୍ଯ୍ୟାସ ଯୋଗାଇଥିଲା । ଏହି ଭକ୍ତିଯୁଗର ହିନ୍ଦୀ ସାହିତ୍ୟ ଯୁଗ୍ମଧାରାରେ ବିଭକ୍ତ; ନିର୍ଗୁଣ ଭକ୍ତିଧାରା ଓ ସଗୁଣ ଭକ୍ତିଧାରା । ନିର୍ଗୁଣ ଭକ୍ତିଧାରା ଦୁଇ ଭାଗରେ ବିଭକ୍ତ; ଯଥା—ଜ୍ଞାନାଶ୍ରୟୀ ନିର୍ଗୁଣ ଭକ୍ତି ଓ ପ୍ରେମାଶ୍ରୟୀ ନିର୍ଗୁଣ ଭକ୍ତି । ସଗୁଣ ଭକ୍ତିଧାରା ମଧ୍ୟ ଦୁଇ ଭାଗରେ ବିଭକ୍ତ । ଯଥା—ସଗୁଣ ରାମଭକ୍ତି ଶାଖା ଓ ସଗୁଣ କୃଷ୍ଣଭକ୍ତି ଶାଖା । ଜ୍ଞାନାଶ୍ରୟୀ ନିର୍ଗୁଣ ଭକ୍ତିଶାଖାର ମର୍ମ ହେଉଛି ଏକେଶ୍ୱରବାଦ, ନିର୍ଗୁଣ, ନିରାକାର ଈଶ୍ୱରଙ୍କ ଉପାସନା, ହଠଯୋଗ ଦ୍ୱାରା ସିଦ୍ଧି ଲାଭ । ଗୁରୁଙ୍କର ଏହି ଅହିଂସା ଓ ସାମ୍ୟନୀତିର ମହତ୍ତ୍ୱ ପ୍ରତିପାଦନ ଜାତିଭେଦ ଭାବର ମୂଳୋତ୍ପାଟନ । ପ୍ରେମାଶ୍ରୟୀ ନିର୍ଗୁଣ ଭକ୍ତିରେ ଆତ୍ମା ଓ ପରମାତ୍ମାର ମିଳନ ମାଧ୍ୟମ ହେଉଛି ପ୍ରେମ । ଏହି ପନ୍ଥା ଅନ୍ତର୍ଗତ ସୁଫିସନ୍ଥ କାବ୍ୟରେ ଈଶ୍ୱର ଏବଂ ଆତ୍ମାର ଅଦ୍ୱୈତ ଭାବହିଁ ନିର୍ଦ୍ଦେଶିତ । ଏହି ଆଦର୍ଶବାଦୀଙ୍କ ମତରେ ଶେଷାବସ୍ଥାରେ ପରମାତ୍ମା ସହିତ ଆତ୍ମାର ମିଳନ ହୋଇଥାଏ ଏବଂ ବ୍ୟକ୍ତି ଓ ପରମାତ୍ମା ମିଳନର ଭିତ୍ତି ହେଉଛି ନିଷ୍କାମ ପ୍ରେମ । ମିଳନପଥରେ ଦେଖାଦେଇଥିବା ବାଧାବିଘ୍ନ ଅତିକ୍ରମ କରିବା ଲାଗି ଗୁରୁଙ୍କର ଆଶୀର୍ବାଦ ଆବଶ୍ୟକ ହୋଇଥାଏ । ସୁଫି ପରଂପରାରେ ପରିବର୍ଦ୍ଧିତ କବିମାନଙ୍କ ମଧ୍ୟରେ ମୁସଲମାନ କବିଙ୍କ ସଂଖ୍ୟା ଅଧିକ ଥିଲା । ପ୍ରେମୋପାଖ୍ୟାନମୂଳକ ବର୍ଣ୍ଣନାରେ ସୁଫି କବିମାନଙ୍କର ପ୍ରାଧାନ୍ୟ ବିଶେଷ ପରିଲକ୍ଷିତ ।

ରାମାନନ୍ଦ ହେଉଛନ୍ତି ବିଷ୍ଣୁ ଓ ନାରାୟଣଙ୍କ ଉପାସନା ପଦ୍ଧତିର ପ୍ରବର୍ତ୍ତକ ଏବଂ ସେ ବିଷ୍ଣୁଙ୍କ ଅବତାର ରାମଙ୍କ ଉପାସନା ତଥା ଭକ୍ତି ପ୍ରସାର କରିଥିଲେ । ଏହି ରାମଭକ୍ତି କାବ୍ୟ ରାମାନୁଜାଚାର୍ଯ୍ୟଙ୍କ ପ୍ରବର୍ତ୍ତିତ 'ବିଶିଷ୍ଟାଦ୍ୱୈତବାଦ' ଉପରେ ଆଧାରିତ । ସେହିପରି କୃଷ୍ଣଭକ୍ତି ସାହିତ୍ୟ ବଲ୍ଲଭାଚାର୍ଯ୍ୟଙ୍କ ଦ୍ୱାରା ପ୍ରବର୍ତ୍ତିତ ବିଶୁଦ୍ଧାଦ୍ୱୈତ ସିଦ୍ଧାନ୍ତ ଉପରେ ଆଧାରିତ । ଏହା ସଖ୍ୟଭକ୍ତିର ଭାବଦ୍ୱାରା ପ୍ରଣୋଦିତ । ସେଥିପାଇଁ କୃଷ୍ଣଭକ୍ତି ସାହିତ୍ୟରେ ଶୃଙ୍ଗାର ଶାନ୍ତ ଏବଂ ବିଭତ୍ସ ରସର ସମାବେଶ ଦେଖିବାକୁ ମିଳେ ।

ମୁସଲମାନମାନେ ଉତ୍ତର-ଭାରତରେ ସେମାନଙ୍କ ଶାସନ ଓ ଧର୍ମର ଯେଉଁ ପ୍ରଭାବ ପକାଇପାରିଥିଲେ ଦକ୍ଷିଣ-ଭାରତରେ ସେମାନଙ୍କ ଧର୍ମର ପ୍ରଭାବ ସେତେ ଅନୁଭୂତ ହୋଇନଥିଲା । ସେଥିପାଇଁ ଉତ୍ତର-ଭାରତରେ ବୈଷ୍ଣବଧର୍ମ ଆନ୍ଦୋଳନର ପ୍ରେରଣା ଦକ୍ଷିଣ-ଭାରତରୁ ହିଁ ମିଳିଥିଲା । ଦୁଇଗୋଟି ବିରୋଧ ସଂସ୍କୃତି ଓ ଧର୍ମ

ସଂଘର୍ଷ ଫଳରେ ଏକ ନବୀନ ଚେତନା ଦେଶରେ ସଞ୍ଚାରିତ ହେଲା । ଆକ୍ରମଣକାରୀ ସାମୟିକ ବିଜୟ ଲାଭ କଲେ ମଧ୍ୟ ବିଜୟୀ ହୋଇ ପାରିନଥିଲେ କି ଶାସିତ ସଂପ୍ରଦାୟ ସ୍ୱଧର୍ମ ଓ ସଂସ୍କୃତିକୁ ଭୁଲିପାରି ନ ଥିଲେ । ମହମ୍ମଦ ୭୧୨ ଖ୍ରୀଷ୍ଟାବ୍ଦରେ ପ୍ରଥମେ ଭାରତ ଆକ୍ରମଣ କରିଥିଲେ । ସୁଫି ସଂପ୍ରଦାୟର ସମ୍ୟକ୍ ପରିଚୟ ମଧ୍ୟ ଏଠାରେ ଆବଶ୍ୟକ ।

'ସୁଫି' ଶବ୍ଦ ପାର୍ଶିଶବ୍ଦ 'ସୁଫ୍'ରୁ ଆନୀତ ଏବଂ ଏହାର ଅର୍ଥ ହେଉଛି ପଶମ । ପଶମ-ପ୍ରସ୍ତୁତ ପୋଷାକଧାରୀ ସନ୍ଥ ଶ୍ରେଣୀୟ ବ୍ୟକ୍ତିଙ୍କୁ ସୁଫି କୁହାଯାଉଥିଲା । ସପ୍ତମ ଶତାବ୍ଦୀରେ ସିରିଆରେ ଏକ ରକ୍ଷଣଶୀଳ ଯୋଗୀ ସଂପ୍ରଦାୟର ଆନ୍ଦୋଳନ ହୋଇଥିଲା । ଅତ୍ୟଧିକ ଧାର୍ମିକ ନିଷ୍ଠା ଏବଂ ଭଗବଦ୍‌ବିଶ୍ୱାସ ସେହି ଆନ୍ଦୋଳନର ଲକ୍ଷ୍ୟ ଥିଲା । ଧର୍ମର ବାହ୍ୟ ଆଚରଣ ପ୍ରତି ସେମାନେ ବିଶେଷ ଆଗ୍ରହୀ ଥିଲେ । ମାତ୍ର ଇରାକର ବସରାରେ ଏକ ସଂପ୍ରଦାୟ ଧର୍ମର ଆଭ୍ୟନ୍ତରୀଣ ନିଷ୍ଠା ଏବଂ ସତ୍ୟ ଉପରେ ଗୁରୁତ୍ୱ ଦେଇଥିଲେ । କିନ୍ତୁ ଉଭୟ ପନ୍ଥାରେ ଭଗବାନଙ୍କ ଉଦ୍ଦେଶ୍ୟରେ ସମ୍ପୂର୍ଣ୍ଣ ଆତ୍ମସମର୍ପଣ ହିଁ ନିର୍ଦ୍ଦିଷ୍ଟ କରାଯାଇଥିଲା । ପରେ ଆଉ ଏକ ମତବାଦ ପ୍ରକାଶ ପାଇଥିଲା । ତାହା ହେଉଛି ଭଗବତ୍‌ଜ୍ଞାନ, ଭଗବତ-ବିଶ୍ୱାସ ଅପେକ୍ଷା ଅଧିକ ଶ୍ରେୟସ୍କର । ଆଲ୍ଲା ଏକ ସ୍ୱର୍ଗୀୟ ଶକ୍ତିରୂପେ ବିବେଚିତ ଥିଲେ ଏବଂ ତାଙ୍କୁ ଜାଣିପାରିବାରେ ହିଁ ମୁକ୍ତି ନିହିତ ଥିଲା । କ୍ରମେ କ୍ରମେ ସୁଫି ସଂପ୍ରଦାୟ ପ୍ରସାର ଲାଭକଲା । ସୁଫିମାନେ ଆତ୍ମା (ରୁହ୍), ପ୍ରାଣ (କ୍ୱାଲବ), ପ୍ରଜ୍ଞା (ଅକଲ୍) ସ୍ଥୂଳଶରୀର (ନାଫସ୍)ର ଧାରଣା ଉପରେ ଗୁରୁତ୍ୱ ଦେଇଥାନ୍ତି । ଭଗବତ୍‌ପ୍ରାପ୍ତି ନିମନ୍ତେ ଆତ୍ମାର ଶୁଦ୍ଧୀକରଣ ଆବଶ୍ୟକ । ସ୍ଥୂଳ ଶରୀରର ସମସ୍ତ କାମନା ଶାନ୍ତ କରି ଆତ୍ମାସ୍ତରକୁ ଉନ୍ନୀତ ହେବା ସୁଫିମାନଙ୍କର ଉଦ୍ଦେଶ୍ୟ । ଭଗବତ୍ ସତ୍ତା ସହିତ ମିଳିତ ହେବା ପରମସୁଖ । ସୁଫିଙ୍କ କଳ୍ପନାରେ ବ୍ରହ୍ମ କିମ୍ବା ଭଗବାନ ହେଉଛନ୍ତି ଚିରନ୍ତନ ସୌନ୍ଦର୍ଯ୍ୟ । ନାରୀ ନାୟିକା ଏବଂ ଭକ୍ତ ହେଉଛି ସେହି ସୌନ୍ଦର୍ଯ୍ୟର ପ୍ରେମିକ ଅର୍ଥାତ୍ ନାୟକ । ସୁଫି କବିମାନଙ୍କ ରଚନାରେ ଶୃଙ୍ଗାର ଏବଂ ରସର ମଧ୍ୟ ଉଲ୍ଲେଖ ଦେଖାଯାଏ । ସେମାନଙ୍କ ସାଂଗୀତିକ କବିତା ମାନବୀୟ ରସାନୁଭୂତିର ଚୂଡ଼ାନ୍ତ ବର୍ଣ୍ଣନାରେ ପରିପୂର୍ଣ୍ଣ । ସୁଫି କବିଙ୍କ କବିତା ନିର୍ଗୁଣ ଶାଖା ପରଂପରାରେ ପରିପୁଷ୍ଟ ଏବଂ ତାହାର ସାହିତ୍ୟିକମୂଲ୍ୟ ଅଧିକ । ସେହି କବିମାନେ କତିପୟ ହିନ୍ଦୁ ଗଳ୍ପର ଅବଲମ୍ବନରେ ସୁଫି ମତବାଦର ବିଶ୍ଳେଷଣ କରିଥିବାର ଜଣାଯାଏ ।

ମୁଲ୍ଲା ଦାଉଦ ଏହି ପରମ୍ପରାର ପ୍ରଥମ କବି । ସେ ଆଲ୍ଲାଉଦ୍ଦିନ ଖିଲିଜିଙ୍କ ସମୟରେ ଜୀବିତ ଥିଲେ । ସେ ନୁରକ ଏବଂ ଛନ୍ଦର ପ୍ରେମଗଳ୍ପ ରଚନା କରିଥିଲେ । ଦାଉଦଙ୍କ ସମ୍ପର୍କରେ ଆଉ ବିଶେଷ କିଛି ଜଣାଯାଏ ନାହିଁ । ଏହି ଧାରାର କାବ୍ୟ ହେଉଛି ସ୍ୱପ୍ନବତୀ, ମୁଗ୍ଧବତୀ, ମୃଗାବତୀ, ମଧୁମାଳତୀ, ପଦ୍ମାବତୀ

କୁତବନ୍‌ ମୃଗାବତୀ (ସମୟ ୧୫୦୦ ଖ୍ରୀ:) ରଚନା କରଥିଲେ । କାଞ୍ଚନପୁରର ରାଜପୁତ୍ରୀ ମୃଗାବତୀର ଅପୂର୍ବ ରୂପରେ ମୁଗ୍ଧ ହୋଇ ନାୟକ ଚନ୍ଦ୍ରଗିରର ରାଜପୁତ୍ର ଶେଷରେ ଆତ୍ମତ୍ୟାଗ କରଥିଲା । କବି ମନଜହନଙ୍କ 'ମଧୁମାଳତୀ' ମଧ୍ୟ ଏହି ଜାତୀୟ ରଚନା । କାବ୍ୟରେ ରାଜପୁତ୍ର ମନୋହର ନାୟକ, ରାଜପୁତ୍ରୀ ମଧୁମାଳତୀ ନାୟିକା । ସେମାନଙ୍କ ପ୍ରେମର ଅନ୍ତରାଳରେ ଭଗବତ୍‌ ପ୍ରେମହିଁ ବିଶେଷ ପରିକଳ୍ପିତ । କାବ୍ୟର ଉପନାୟିକା ପ୍ରେମା ଏବଂ ତାରାଚନ୍ଦଙ୍କ ଗଳ୍ପ ମଧ୍ୟ ଏଥିରେ ଅନ୍ତର୍ଭୁକ୍ତ । ପ୍ରଥମେ ବିରହ ପରେ ମିଳନ କାବ୍ୟର କଥାବସ୍ତୁରେ ପ୍ରତିଫଳିତ । ମାଲିକ ମହମ୍ମଦ ଜାୟସୀଙ୍କ କୃତ 'ପଦ୍ମାବତୀ' ଏହି ପରଂପରାର ଏକ ଉଲ୍ଲେଖଯୋଗ୍ୟ କୃତି । ପୂର୍ବୋକ୍ତ କାବ୍ୟମାନଙ୍କ ଠାରୁ ଐତିହାସିକ କଥାବସ୍ତୁ ଯୋଗୁଁ ଏହା ସ୍ୱତନ୍ତ୍ର । ଚିତୋର ଦୁର୍ଗ ଅବରୋଧ (୧୬୯୦) ଏହି କାବ୍ୟରେ ବର୍ଣ୍ଣିତ । ଚିତୋର ନରପତି ରତନ ସେନ୍‌ ନାୟକ ଏବଂ ସିଂହଳ ଦ୍ୱୀପ ରାଜପୁତ୍ରୀ ପଦ୍ମାବତୀ ନାୟିକା । 'ହିରାମନ' ଶୁକ ମୁଖରୁ ରାଜପୁତ୍ରୀଙ୍କ ସୌନ୍ଦର୍ଯ୍ୟ ବର୍ଣ୍ଣନା ଶୁଣିବା ପରେ ନାୟକ ରତନ ସେନ୍‌ଙ୍କର ସିଂହଳ ଯାତ୍ରା, ଏହି ଅବସରରେ ଧର୍ମପତ୍ନୀ ନାଗମତୀଙ୍କର ବିରହ ବେଦନା, ରତନସେନ୍‌ ପଦ୍ମାବତୀଙ୍କ ସହ ଚିତୋର ପ୍ରତ୍ୟାବର୍ତ୍ତନ, ମିଳନ, ଶେଷରେ ପଦ୍ମିନୀଙ୍କ ଅସାମାନ୍ୟ ରୂପ ଲାବଣ୍ୟରେ ଆଲ୍ଲାଉଦ୍ଦିନ ଖିଲଜି ଆକୃଷ୍ଟ ହୋଇ ଚିତୋର ଆକ୍ରମଣ କରିବା, ରତନ ସିଂହଙ୍କ ପଳାୟନ ଏବଂ ନିଧନ, ରାଣୀଦ୍ୱୟଙ୍କର ସ୍ୱାମୀଙ୍କ ଚିତାଗ୍ନିରେ ଝାସ ଦେବା ଏହି କାବ୍ୟରେ ବର୍ଣ୍ଣିତ । କାବ୍ୟରେ ହିନ୍ଦୁ ମୁସଲମାନମାନଙ୍କ ସଂସ୍କୃତିର ଗୋଟିଏ ସମନ୍ୱୟ ସାଧିତ ହେବା ଭଳି ଜଣାଯାଏ । କାବ୍ୟ ଶେଷରେ ଜୟସୀ ଏହା ଏକ ପ୍ରତୀକାତ୍ମକ ରଚନାବୋଲି ଦର୍ଶାଇଛନ୍ତି । ତାଙ୍କ ବର୍ଣ୍ଣନାରେ ଶୁକ ହେଉଛି ଗୁରୁ, ଆଲ୍ଲାଉଦ୍ଦିନ୍‌—ଛଳନା, ରତନସେନ୍‌ ଆତ୍ମା, ଚିତୋର–ସ୍ଥୂଳଶରୀର, ପଦ୍ମିନୀ—ଜ୍ଞାନ, ରାଘୋ—ସଇତାନ୍‌ । ଜୟସୀ ହେଉଛନ୍ତି ଏହି ପରଂପରାର ଜଣେ ବଳିଷ୍ଠ କବି ।

ପରବର୍ତ୍ତୀ କବି ଉସମାନଙ୍କର 'ଚନ୍ଦ୍ରାବଳୀ' (୧୬୧୩) ଆଉ ଏକ ଉଲ୍ଲେଖଯୋଗ୍ୟ କୃତି । କାଳ୍ପନିକ କଥାବସ୍ତୁ, ମାତ୍ର ଏହାର ଆବେଦନ ସଂପୂର୍ଣ୍ଣ ଆଧ୍ୟାତ୍ମିକ । ନେପାଳର ରାଜକୁମାର ସୁଜାନ୍‌ଙ୍କର ବହୁବାଧାବିଘ୍ନ ପରେ ରାଜକୁମାରୀ ଚନ୍ଦ୍ରାବଳୀ ଏବଂ କମଳବତୀଙ୍କ ସହିତ ବିବାହ କାବ୍ୟରେ ବର୍ଣ୍ଣିତ । ଚନ୍ଦ୍ରାବଳୀ ଜ୍ଞାନ ଆଉ କମଳବତୀ ଅଜ୍ଞାନତାର ପ୍ରତୀକ ରୂପେ ବର୍ଣ୍ଣିତ ।

ସୁଫି ସଂପ୍ରଦାୟର କବିମାନଙ୍କ ରଚନାରେ କେତେକ ସାଧାରଣ ଲକ୍ଷଣ ପରିଲକ୍ଷିତ ହୁଏ । ସେମାନେ ପାର୍ସିଭାଷାର 'ମସ୍‌ନଭସ୍‌' ଅନୁସରଣରେ ପାର୍ଶୀ ଲିପିରେ ମାତ୍ର ଅବଧି ଭାଷାରେ 'ପ୍ରେମାନସ' ଜାତୀୟ ରଚନା ଲେଖିଥିଲେ । କବି

ଜାୟସୀଙ୍କ ବ୍ୟବହୃତ ଅବଧିଭାଷା ପରବର୍ତ୍ତୀ କାଳରେ ସନ୍ତ ତୁଳସୀ ଦାସଙ୍କ ଦ୍ୱାରା ମାର୍ଜିତ ହୋଇଥିଲା । ସୁଫି କବିମାନେ ଗଳ୍ପ ମାଧ୍ୟମରେ ସେମାନଙ୍କର ଉପାସନା ପଦ୍ଧତି ତଥା ବିଶ୍ଳେଷଣ କରିଥାନ୍ତି ସତ, ମାତ୍ର ତାହା କାହାଣୀ କିମ୍ବା ଉପାଖ୍ୟାନ ମାଧ୍ୟମରେ ହିଁ ସମ୍ଭବ ହୋଇଥାଏ ।

ଜ୍ଞାନାଶ୍ରୟୀ ନିର୍ଗୁଣ ଭକ୍ତି ପରଂପରାର ପ୍ରଧାନ କବି ହେଉଛନ୍ତି କବୀର ଏବଂ ତାଙ୍କ ଦ୍ୱାରା ପ୍ରବର୍ତ୍ତିତ ସଂପ୍ରଦାୟ ଏବଂ ପନ୍ଥ କବୀର ପନ୍ଥ ନାମରେ ପରିଚିତ । ସେ ଥିଲେ ରାମାନନ୍ଦଙ୍କର ଶିଷ୍ୟ । ତେଣୁ ସେ ଥିଲେ ରାମଭକ୍ତ । ମାତ୍ର ତାଙ୍କର ରାମ ନିର୍ଗୁଣ ରାମ । କବୀରଙ୍କର ପରିଚୟ ଉପରି ରହସ୍ୟାଚ୍ଛନ୍ନବୋଲି ଜଣାଯାଏ । ବାରାଣସୀଠାରେ ଜଣେ ବିଧବା ବ୍ରାହ୍ମଣୀ ଗର୍ଭରେ କବୀର ଜନ୍ମଗ୍ରହଣ କରିଥିଲେ (୧୩୯୮) । ମାତ୍ର ତାଙ୍କର ମାତା ସାମାଜିକ କାରଣ ଯୋଗୁଁ ତାଙ୍କୁ ଲହର ପୁଷ୍କରିଣୀରେ ନିକ୍ଷେପକରି ଚାଲିଗଲେ । ମୁସଲମାନ ତନ୍ତୀ ନିରୁ ଏବଂ ତା'ର ସ୍ତ୍ରୀ ନିମା କବୀରଙ୍କୁ ଉଦ୍ଧାରକରି ଲାଳନପାଳନ କରିଥିଲେ । ସେହି କବୀର ଦିନେ ଆଧ୍ୟାତ୍ମିକ କ୍ଷେତ୍ରରେ ନିଜର ସମନ୍ୱୟକାରୀ ସାଧନା ଯୋଗୁଁ ଶୀର୍ଷସ୍ଥାନ ଅଧିକାର କରିଥିଲେ । ପଞ୍ଚଗଙ୍ଗା ଘାଟରେ ରାମାନନ୍ଦଙ୍କ ସହିତ ସାକ୍ଷାତ ତାଙ୍କ ଜୀବନର ଏକ ପ୍ରଧାନ ଘଟଣା । କବୀର ରାମାନନ୍ଦଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ ଓ ଭକ୍ତିରାଜ୍ୟରେ ସ୍ୱକୀୟ ସ୍ୱାତନ୍ତ୍ର୍ୟ ପ୍ରତିଷ୍ଠା କରିପାରିଥିଲେ ।

କବୀର ଧ୍ୱଂସ କରିଥିଲେ ଯେତିକି, ସୃଷ୍ଟି କରିଥିଲେ ତାଠାରୁ ଅଧିକ । କବୀର କୁଆଡ଼େ ଶିଷ୍ୟମାନଙ୍କୁ ଡାକି ଦେଉଥିଲେ । ଶିଷ୍ୟମାନେ ତାଙ୍କ ମୁଖ ନିଃସୃତ କବିତା ଲେଖିନେଇ ପ୍ରଚାର କରୁଥିଲେ । ଇତିହାସରେ ଗୁପ୍ତରାଜତ୍ୱ ବ୍ରାହ୍ମଣଧର୍ମର ପୁନରୁତ୍ଥାନ ଦ୍ୱାରା ଚିହ୍ନିତ । ହର୍ଷବର୍ଦ୍ଧନଙ୍କ ମୃତ୍ୟୁର ଏକଶତବର୍ଷ ପରେ ଶଙ୍କରାଚାର୍ଯ୍ୟ ଯେତେବେଳେ ହିନ୍ଦୁଧର୍ମ ପ୍ରଚାର ଅଭିଯାନରେ ବାହାରିଲେ, ସେତେବେଳେ ବୌଦ୍ଧ ସନ୍ନ୍ୟାସୀମାନେ ଭଗ୍ନପ୍ରାୟ ବିହାରମାନଙ୍କର ଆଶ୍ରୟ ନେଇଥିଲେ । ବିହାରମାନଙ୍କରେ କ୍ରମଶଃ ଦୁର୍ନୀତି ଏବଂ ବ୍ୟଭିଚାର ପ୍ରବେଶ କରିଥିଲା । ଚଉରାଶିଜଣ ସିଦ୍ଧଙ୍କର ନାମ ଶୁଣାଯାଏ । ସିଦ୍ଧମାନଙ୍କର ପ୍ରଚାରିତ ଧର୍ମ ବୌଦ୍ଧଧର୍ମର ଗୋଟିଏ ବିକୃତ ରୂପବୋଲି ଜଣାଯାଏ । ଶୂନ୍ୟବାଦ ହିଁ ଥିଲା ସେମାନଙ୍କର ପ୍ରଚାରିତ ଧର୍ମଗତ ପରିକଳ୍ପନା । (God in man becomes one with man in God.) ଏହି ମିଳନାବସ୍ଥା ଆଦର୍ଶରୁ ହିଁ ସୃଷ୍ଟି ହେଲା ବାମମାର୍ଗ । ସ୍ତ୍ରୀ ପୁରୁଷ ମଧ୍ୟରେ ସହବାସଜନିତ ପରମ ସୁଖ ସେହି ପରମାତ୍ମା ସହିତ ମିଳନର ଆନନ୍ଦ ସହିତ ତୁଳନା କରାଯାଇଥିଲା । ମନ୍ଦିର ଗାତ୍ର ଚିତ୍ର ଏବଂ ଅନ୍ୟାନ୍ୟ ଅଙ୍କନ ମାଧ୍ୟମରେ ଦେବଦେବୀଙ୍କର ମିଳନାବସ୍ଥା ଖୋଦିତ ହୋଇଥିଲା ଏବଂ ତାହାର ଏକମାତ୍ର କାରଣଥିଲା ମିଳନାନୁଭୂତଜନିତ ଆନନ୍ଦ ଉପଲବ୍ଧି । ମଠର

*

ଭିକ୍ଷୁମାନେ ମହାସୁଖ ଅଭିଜ୍ଞତା ଲାଭ ନିମନ୍ତେ ନିର୍ବାହ କିଶୋରୀମାନଙ୍କର ସତୀତ୍ୱ ମଧ୍ୟ ଅପହରଣ କରୁଥିଲେ । ଏହି ସମସ୍ତ ଆଚରଣର ଏକମାତ୍ର ଉଦ୍ଦେଶ୍ୟ ଥିଲା— ଅନୈତିକ କାର୍ଯ୍ୟକଳାପକୁ ନୀତିସିଦ୍ଧବୋଲି ଘୋଷଣା କରିବା । ସିଦ୍ଧମାନଙ୍କର ଏହି ଅଶ୍ଳୀଳପରିକଳ୍ପନାଠାରୁ ସ୍ୱତନ୍ତ୍ର ମାର୍ଗ ଗୋରଖନାଥ [୧୨୦୦ ଖ୍ରୀଷ୍ଟାବ୍ଦ] ପ୍ରତିଷ୍ଠା କଲେ । ପୂର୍ବ ଭାରତରେ ବଜ୍ରଯାନ ସଂପ୍ରଦାୟ ପ୍ରସାର ଲାଭକରିଥିବା ସ୍ଥଳେ ନାଥ ସଂପ୍ରଦାୟ ପଶ୍ଚିମ ଭାରତରେ ପ୍ରଚଳିତ ଥିଲା । ଗୋରଖନାଥ ଏବଂ ତାଙ୍କର ଅନୁଚରବର୍ଗ ସିଦ୍ଧମାନଙ୍କର ଅଶ୍ଳୀଳତା ବିରୋଧରେ ଆକ୍ରମଣକଲେ ମଧ୍ୟ ଅଖଣ୍ଡ ପରମାତ୍ମାଙ୍କଠାରେ ପ୍ରଗାଢ଼ ବିଶ୍ୱାସ ରଖିଥିଲେ । ମନର ଅଭିନିବେଶ ଉପରେ ସେମାନେ ଗୁରୁତ୍ୱ ଦେଇଥିଲେ । ହିନ୍ଦୁଧର୍ମର ଯାବତୀୟ ବିଶ୍ୱାସକୁ ସେମାନେ ଜଳାଞ୍ଜଳି ଦେଇଥିଲେ ଏବଂ ଯୋଗୀନୀମାନଙ୍କର ଆଦର୍ଶ ହିଁ ଜନସାଧାରଣଙ୍କ ସମ୍ମୁଖରେ ରଖାଯାଇଥିଲା । ବର୍ତ୍ତମାନ ଯୁଗରେ ମଧ୍ୟ କେତେକ ଯୋଗୀ ଦେଖାଯାନ୍ତି, ଯେଉଁମାନେ ଗୋରଖନାଥଙ୍କର ଶିଷ୍ୟବୋଲି କହି ଗର୍ବ ଅନୁଭବ କରିଥାନ୍ତି । କବୀର ଏହି ପରିସ୍ଥିତିରେ ଚତୁରତା ସହିତ କାର୍ଯ୍ୟ କରିଥିଲେ । ସେ ଯୋଗୀନୀ ଦର୍ଶନ ଅନୁସରଣ କଲେ ମଧ୍ୟ ସେଥିକରେ ସନ୍ତୁଷ୍ଟ ହୋଇନଥିଲେ । ସେ ଈଶ୍ୱରଙ୍କର ସର୍ବବ୍ୟାପକତା ସଂପର୍କରେ ପ୍ରଚାର କରିଥିଲେ ଏବଂ ଜୀବନରେ ସତ୍ୟ, ନିଷ୍ଠା, ସାଧୁତା ପ୍ରତି ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ବାଲ୍ୟଜୀବନରେ ଇସ୍‌ଲାମ୍ ମତରେ ଦୀକ୍ଷାଲାଭ ପୁନଶ୍ଚ ହିନ୍ଦୁଧର୍ମ ଓ ପରଂପରାର ପ୍ରଭାବଗତ ନାଥପନ୍ଥୀ ଆଦର୍ଶ ଗ୍ରହଣ, ରାମାନନ୍ଦଙ୍କ ଶିଷ୍ୟଭାବରେ ଭକ୍ତିତତ୍ତ୍ୱ ପ୍ରତି ଆସକ୍ତି, ଏହାର ମିଳିତ ଆଦର୍ଶରେ କବୀର ଏକ ନୂତନ ଧର୍ମ ସଂପ୍ରଦାୟ ପ୍ରତିଷ୍ଠା କଲେ ବୋଲି କୁହାଯାଇଥାଏ । ତାଙ୍କ ପ୍ରବର୍ତ୍ତିତ ତତ୍ତ୍ୱମାର୍ଗର ବୈଶିଷ୍ଟ୍ୟ ହେଉଛି ହିନ୍ଦୁ ଏବଂ ମୁସଲମାନ ଆଦର୍ଶର ସମନ୍ୱୟ ସାଧନ । ଭଗବାନ ଜଣେ । ସେ ରାମ କିମ୍ବା ରହିମ୍ ହୁଅନ୍ତୁ । କେଶବ କିମ୍ବା କରିମ୍ ହୁଅନ୍ତୁ । ଈଶ୍ୱର କିମ୍ବା ଆଲ୍ଲା ହୁଅନ୍ତୁ । କବୀରଙ୍କର ଯେତେବେଳେ ମୃତ୍ୟୁହେଲା, ତାଙ୍କର ଏତାଦୃଶ ସମନ୍ୱୟବାଦୀ ଦୃଷ୍ଟିକୋଣ ଯୋଗୁଁ ଉଭୟ ହିନ୍ଦୁ ଏବଂ ମୁସଲମାନ ସଂପ୍ରଦାୟ ତାଙ୍କ ଶବ ସଂସ୍କାର ପାଇଁ ଦାବୀ କରିଥିଲେ । ପ୍ରେମ ଏବଂ ଜ୍ଞାନ ହିଁ ପ୍ରକୃତ ଭକ୍ତର ଲକ୍ଷଣ ବୋଲି କବୀର କହୁଥିଲେ—

"ପୋଥି ପଢ଼ି ପଢ଼ି ଜଗମୁଆ ପଣ୍ଡିତ ଭୟା ନ କୋୟ
ତାଇ ଅଛଇ ପ୍ରେମ୍ କା ପଢ଼େ ସେ ପଣ୍ଡିତ ହୋୟ ।"

ପରବର୍ତ୍ତୀକାଳରେ ବଙ୍ଗଳାର କବି ରବୀନ୍ଦ୍ରନାଥ ଠାକୁର ଭକ୍ତକବି କବୀର ଦାସଙ୍କ ଭଜନରେ ଆକୃଷ୍ଟହୋଇ ତାଙ୍କର ଏକଶତପଦ ଅନୁବାଦ କରିଥିଲେ । ତାଙ୍କ ମତରେ—

"କବୀର ଆଧ୍ୟାତ୍ମିକ ଅନ୍ତର୍ଦୃଷ୍ଟିର ଉଚ୍ଚତମ ସୋପାନକୁ ଆରୋହଣ କରି ସେଠାରେ ଏକ ଅଖଣ୍ଡ ଐକ୍ୟରେ ରୂପାନ୍ତରିତ ହୋଇଥିଲେ । ଯେଉଁଠାରେ ସମ୍ପୃକ୍ତିହୀନ ଧର୍ମ କବିତା ଦର୍ଶନର ସ୍ଥାନ ନାହିଁ ।"

ଦର୍ଶନ ବ୍ୟତୀତ କବୀରଙ୍କର ହିନ୍ଦୀସାହିତ୍ୟରେ ଶ୍ରେଷ୍ଠଦାନ ହେଉଛି ତାଙ୍କର ଐକ୍ୟସ୍ୱର । ତାଙ୍କର ମାନବିକତା ପରସ୍ପର ଆଦର୍ଶ ବିରୋଧୀ ହିନ୍ଦୁ ଓ ମୁସଲମାନ ସଂପ୍ରଦାୟ ଉପରେ ଅସାଧାରଣ ପ୍ରଭାବ ପକାଇଥିଲା । ସାଧାରଣ ନିରକ୍ଷର ଜନତା ମଧ୍ୟରେ ତାଙ୍କର ପରିକଳ୍ପିତ ସରଳ ଭଗବତ୍ ବିଶ୍ୱାସ ମନ୍ତ୍ରବତ୍ କାର୍ଯ୍ୟକରିଥିଲା । କବୀର ଦାସଙ୍କର ଏତାଦୃଶ ଆଧ୍ୟାତ୍ମିକଭାବନା ପରବର୍ତ୍ତୀ ହିନ୍ଦୀବାଣୀସାଧକଙ୍କୁ କମ୍ ଅନୁପ୍ରାଣିତ କରିନଥିଲା । ଭାଷାଗତ ସରଳତା, ଭାବ ପ୍ରକାଶରେ ନିର୍ଭୀକତା ଏବଂ ଭକ୍ତିକବିତା ସମୂହର ବୈଶିଷ୍ଟ୍ୟ ବୃଦ୍ଧି କରିଥିଲା । ସେହିସବୁ ରଚନା ପ୍ରେମମୂଳକ । ମାତ୍ର ତାହାର ଉଦ୍ଦେଶ୍ୟ ଭକ୍ତଜନୋଚିତ । କବୀରଙ୍କର ରଚନା ମଧ୍ୟରେ 'ବିଜକ୍' ଉଲ୍ଲେଖଯୋଗ୍ୟ ଏବଂ ତାହା ରମୈନୀ, ଶବ୍ଦ ଏବଂ ସାକ୍ଷୀ ଏପରି ତିନିଭାଗରେ ବିଭକ୍ତ ।

କବୀରଙ୍କ ଉତ୍ତରାଧିକାରୀ କବିମାନଙ୍କ ମଧ୍ୟରେ ରୈ ଦାସ, ଧରମ ଦାସଙ୍କ ନାମ ଉଲ୍ଲେଖ କରାଯାଏ । 'ରୈ ଦାସ'ଙ୍କର ରଚନାବଳୀ 'ସନ୍ତବାଣୀ' ନାମରେ ପରିଚିତ, ଏବଂ ତାଙ୍କର ବୈଶିଷ୍ଟ୍ୟ ଭାଷା ସରଳତା ଏବଂ ଆବେଗ ପ୍ରବଣତାରେ ହିଁ ନିହିତ । ଧରମ ଦାସ କବୀରଙ୍କ ଶିଷ୍ୟତ୍ୱ ଗ୍ରହଣ କରିବା ସଙ୍ଗେ ସଙ୍ଗେ ନିଜର ସମସ୍ତ ସମ୍ପତ୍ତି ତ୍ୟାଗ କରିଥିଲେ । ତାଙ୍କର ଭକ୍ତିକବିତା ସମୂହ ଜନସାଧାରଣଙ୍କ ଦ୍ୱାରା ବିଶେଷ ଆଦୃତ । ତତ୍ତ୍ୱଦୃଷ୍ଟିରୁ ଦାଦୁ ଦୟାଲ କବୀରଙ୍କ ଶିଷ୍ୟ ଥିଲେ । ମାତ୍ର ସେ ନିଜର ଏକ ସ୍ୱତନ୍ତ୍ର ମତବାଦ ପ୍ରଚାର କରିଥିଲେ । ତାହା 'ଦାଦୁପନ୍ଥ' ନାମରେ ବିଦିତ । ଶୈଳୀ, ଆବେଗ ଏବଂ ବିଷୟବସ୍ତୁ ଦୃଷ୍ଟିରେ ଦାଦୁଙ୍କର ବଚନାବଳୀ କବୀରଙ୍କ ପଦାବଳୀର ଅନୁରୂପ । ତାଙ୍କ ଭାଷାରେ ପଶ୍ଚିମାହିନ୍ଦୀ ଏବଂ ରାଜସ୍ଥାନୀର ପ୍ରଭାବ ପଡ଼ିଥିଲା । ପ୍ରେମ ହିଁ ତାଙ୍କ ଭଜନାବଳୀର ଅନ୍ତଃସ୍ୱର । ନିର୍ଗୁଣ ପନ୍ଥାର ଅନ୍ୟଜଣେ କବିହେଉଛନ୍ତି – ସୁନ୍ଦର ଦାସ । ସେ ଦାଦୁ ଦୟାଲଙ୍କ ଆଦର୍ଶରେ ଉଦବୁଦ୍ଧ ହୋଇଥିଲେ । 'ସୁନ୍ଦର ବିଳାସ' ନାମକ ଗ୍ରନ୍ଥରେ ତାଙ୍କର କବିତାଗୁଡ଼ିକ ଅନ୍ତର୍ଭୁକ୍ତ । ସନ୍ଥକବିମାନଙ୍କ ମଧ୍ୟରେ ତାଙ୍କ କବିତା ଗୁଡ଼ିକର ସ୍ୱାତନ୍ତ୍ର୍ୟ ଉଲ୍ଲେଖ-ଯୋଗ୍ୟ । ମାଲୁକ ଦାସ ମଧ୍ୟ ଜଣେ ଉପରୋକ୍ତ ପନ୍ଥାର ସନ୍ଥକବି ଥିଲେ । 'ରତ୍ନ ଖାଁ' ଏବଂ 'ଜ୍ଞାନ ବୋଧ' ତାଙ୍କର ରଚନା । ନିର୍ଗୁଣ ମାର୍ଗର ସନ୍ଥକବିମାନେ ଉଭୟ ହିନ୍ଦୁ ଓ ମୁସଲମାନମାନଙ୍କ ପକ୍ଷେ ପ୍ରଯୁଜ୍ୟ ଏକ ଭକ୍ତିମାର୍ଗ ନିର୍ଦ୍ଦେଶ କରିଥିଲେ । ସେଥିପାଇଁ ଏହି ଧାରାର କେତେକ କବିଙ୍କ ରଚନାରେ ଉର୍ଦ୍ଦୁ ଏବଂ ପାର୍ଶୀଭାଷାର ବ୍ୟବହାର ଦେଖିବାକୁ ମିଳେ । ଅକ୍ଷର ଅନନ୍ୟ ନାମକ ଜଣେ କବି ବେଦାନ୍ତ

ଅଧ୍ୟୟନ କରିଥିଲେ ଏବଂ ଯୋଗ ଓ ବେଦାନ୍ତ ସମ୍ପର୍କରେ ତାଙ୍କର କେତେକ ପୁସ୍ତକ ଦେଖିବାକୁ ମିଳେ । 'ରାଜଯୋଗ' 'ବିଜ୍ଞାନ ଯୋଗ', 'ସିଦ୍ଧାନ୍ତ ବୋଧ', 'ବିବେକଦୀପିକା', 'ବ୍ରହ୍ମଜ୍ଞାନ' ପ୍ରଭୃତି ତାଙ୍କର ବିଶିଷ୍ଟ ରଚନା । ଦୁର୍ଗାସପ୍ତସତୀର ହିନ୍ଦୀ ଅନୁବାଦ ମଧ୍ୟ ସେ କରିଥିଲେ । ସାହିତ୍ୟିକ ଗୌରବ ବିଚାରରେ 'ନିର୍ଗୁଣ ପନ୍ଥା'ର ରଚନା ସମୂହର ପ୍ରାଧାନ୍ୟ ଅଧିକ ହୋଇ ନ ପାରେ । କାରଣ ସେ ସବୁର ତତ୍ତ୍ୱଗତ ଉଦ୍‌ବୋଧନ ସର୍ବାପେକ୍ଷା ଅଧିକ; କିନ୍ତୁ 'ସୁଫି' ପରଂପରାର ପ୍ରେମ ପ୍ରଧାନ ରଚନା ସମୂହରେ ସାହିତ୍ୟିକ ବୈଶିଷ୍ଟ୍ୟ ପରିଲକ୍ଷିତ ।

ଏହାର ଫଳରେ ହିନ୍ଦୀ ସାହିତ୍ୟରେ ଭକ୍ତି ମୂଳକ ରଚନାର ପରଂପରା ବହୁ ଶତାବ୍ଦୀ ଧରି ପ୍ରବାହିତ ହେଲା । 'ନିର୍ଗୁଣ ପନ୍ଥା' ରଚନା ପରବର୍ତ୍ତୀ ସାହିତ୍ୟରେ 'ସଗୁଣ ପନ୍ଥା' ପ୍ରବର୍ତ୍ତିତ ଅଜସ୍ର କାବ୍ୟ କବିତାର ଧାରା ପ୍ରବର୍ତ୍ତିତ ହେଲା । ଏହି 'ସଗୁଣ ପନ୍ଥା'ର ସାହିତ୍ୟ ହେଉଛି ସମୃଦ୍ଧ ବୈଷ୍ଣବ କାବ୍ୟ ସାହିତ୍ୟ ସମ୍ଭାର । ସମାଜରେ ରାମକୃଷ୍ଣ ଅବତାରବାଦର ପ୍ରତିଷ୍ଠା ସଙ୍ଗେ ସଙ୍ଗେ ରାମାନନ୍ଦଙ୍କ ପ୍ରବର୍ତ୍ତିତ ରାମଭକ୍ତି ଏବଂ ବଲ୍ଲଭାଚାର୍ଯ୍ୟ ପ୍ରଭୃତିଙ୍କ ପ୍ରବର୍ତ୍ତିତ କୃଷ୍ଣଭକ୍ତି ଲୋକ ସମାଜରେ ବିଶେଷ ସ୍ଥାନ ଅଧିକାର କଲା । ବଲ୍ଲଭାଚାର୍ଯ୍ୟ ଜଣେ ବିଶିଷ୍ଟ ଦାର୍ଶନିକ ଥିଲେ ଏବଂ ତାଙ୍କ ମତରେ ଭକ୍ତିମାର୍ଗ, ଜ୍ଞାନମାର୍ଗ ଅପେକ୍ଷା ଶ୍ରେୟସ୍କର । କୃଷ୍ଣଙ୍କର କରୁଣା ହିଁ ଭକ୍ତର ଧ୍ୟେୟ ।

ବୌଦ୍ଧ ଧର୍ମର ଅବସାନ ସଙ୍ଗେ ସଙ୍ଗେ ହିନ୍ଦୁଧର୍ମ ନୂତନ ଭାବରେ ଦେଖା ଦେଇଥିଲା । ଶଙ୍କରାଚାର୍ଯ୍ୟଙ୍କର ପରମ ବ୍ରହ୍ମ, ତାର ତିନି ଶତବର୍ଷ ପରେ ରାମାନୁଜଙ୍କର ବିଶିଷ୍ଟ ଦ୍ୱୈତ, ପୁନଶ୍ଚ ରାମାନୁଜଙ୍କ ଭକ୍ତିବାଦ, ଭାରତୀୟଧର୍ମ ପର୍ଯ୍ୟାୟରେ ଉଲ୍ଲେଖ ଯୋଗ୍ୟ ।

ଭାରତୀୟ ସଂସ୍କୃତି ଓ ଧର୍ମ ପରିପ୍ରେକ୍ଷୀରେ ରାମକଳ୍ପନା ନୂତନ ନୁହେଁ । ବାଲ୍ମୀକିଙ୍କଠାରୁ ଆରମ୍ଭ କରି ବହୁକବି ରାମଚରିତ ଗାନ କରିଥିଲେ । ଉତ୍ତର ଭାରତରେ ସ୍ୱାମୀ ରାମାନନ୍ଦ ହିଁ ପ୍ରକୃତ ରାମ ଭକ୍ତିର ପ୍ରବର୍ତ୍ତକ । ରାମାନନ୍ଦ ରାମାନୁଜଙ୍କର ଶିଷ୍ୟ ଥିଲେ । ରାମାନୁଜ ବିଷ୍ଣୁ ଉପାସନାର ଭକ୍ତ ଥିଲେ । ହିନ୍ଦୀ ସାହିତ୍ୟରେ ରାମକାବ୍ୟ ପରଂପରା ରାମାନନ୍ଦଙ୍କ ପ୍ରଦର୍ଶିତ ମାର୍ଗ ଉପରେ ହିଁ ଆଧାରିତ । ଯଦ୍ୟପି ତୁଳସୀ ଦାସ ହିନ୍ଦୀ ସାହିତ୍ୟରେ ରାମକାବ୍ୟର ପ୍ରତିଷ୍ଠାତା । ତୁଳସୀ ଦାସଙ୍କ ପୂର୍ବରୁ ହିନ୍ଦୀରେ ରାମ ସାହିତ୍ୟର ଲେଖକ ରୂପେ ମୁନିଲାଲଙ୍କ ନାମ ଶୁଣାଯାଏ ।

ଯମୁନା ନଦୀ କୂଳରେ ବାନ୍ଦା ଜିଲ୍ଲାର ରାଜପୁରଠାରେ ବ୍ରାହ୍ମଣ ବଂଶରେ ୧୫୩୨ ଖ୍ରୀଷ୍ଟାବ୍ଦରେ ତୁଳସୀ ଦାସଙ୍କର ଜନ୍ମ । ପିତା ଆତ୍ମାରାମ ଏବଂ ମାତା ତୁଳସୀ ଦେବୀ । ଶୈଶବରେ ମାତୃଶୂନ୍ୟ ହୋଇ ଗୃହର ଭୃତ୍ୟ ମୁନିୟା ଦ୍ୱାରା ଲାଳିତ ପାଳିତ ହେଲେ । ଘଟଣାଚକ୍ରରେ ରାମାନନ୍ଦ ପରଂପରାର ସାଧୁ ନରହରି ବାଳକ

ତୁଳସୀ ଦାସଙ୍କୁ ନେଇ ନିଜ ଘରରେ ରଖିଲେ । ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ତୁଳସୀ ଦାସ ବାରାଣସୀର ପଞ୍ଚଗଙ୍ଗା ଘାଟରେ ରହୁଥିବା ପଣ୍ଡିତ ଶ୍ରେଷ୍ଠ ସନାତନଙ୍କର ଶିଷ୍ୟତ୍ୱ ଗ୍ରହଣ କଲେ । ଗୁରୁଙ୍କ ମୃତ୍ୟୁପରେ ତୁଳସୀ ନିଜ ଗ୍ରାମ ରାଜପୁରକୁ ଫେରି ରାମଭକ୍ତି ପ୍ରଚାର କରିଥିଲେ । ଶୁଣାଯାଏ ସେ ସ୍ତ୍ରୀ ରୂପ ଲାବଣ୍ୟ ପାଇଁ ପାଗଳ ହୋଇ ଯାଇଥିଲେ । ତାହା ପରେ ସ୍ତ୍ରୀଙ୍କ ପ୍ରରୋଚନାରେ ସେ ରାମୋପାସନା ପ୍ରତି ଆକୃଷ୍ଟ ହେଲେ । ୧୬୨୭ରେ ତୁଳସୀ ଦାସଙ୍କର ମୃତ୍ୟୁ ହୋଇଥିଲା । ରାମ ଭକ୍ତର ଶ୍ରେଷ୍ଠ ନିଦର୍ଶନ ସ୍ୱରୂପ ସେ ତାଙ୍କର ରାମଚରିତମାନସ ଲେଖା ୧୫୭୪ ଖ୍ରୀଷ୍ଟାବ୍ଦରେ ଚୈତ୍ରମାସ ଶୁକ୍ଳପକ୍ଷରେ ଆରମ୍ଭ କରିଥିଲେ । ସମସାମୟିକ ଭକ୍ତ ସମାଜରେ ଶ୍ରେଷ୍ଠ ସାଧକ ଭାବରେ ସ୍ୱୀକୃତ ତୁଳସୀ ଦାସ ପ୍ରଥମ ଥର ପାଇଁ ହିନ୍ଦୀ ଭାଷାକୁ ସାହିତ୍ୟିକ ଗୌରବ ପ୍ରଦାନ କରିଥିଲେ । ହିନ୍ଦୀ କାବ୍ୟ କବିତାର ଇତିହାସରେ ଷୋଡ଼ଶ ଏବଂ ସପ୍ତଦଶ ଶତାବ୍ଦୀ ଯଥାର୍ଥରେ ଅଗଷ୍ଟାନ ଯୁଗ ବୋଲି ଅଭିହିତ ହୋଇଥାଏ । ତୁଳସୀ ଦାସଙ୍କର ଉଚ୍ଚକୋଟୀର ସାହିତ୍ୟିକ କୃତିର ଅଭ୍ୟୁଦୟର କାରଣ ହେଉଛି ସମସାମୟିକ ରାଜନୈତିକ ପରିସ୍ଥିତି ଏବଂ ସାମାଜିକ ଆବଶ୍ୟକତା । ତୁଳସୀ ଦାସଙ୍କର ରଚନାର ସଂଖ୍ୟା ଆଦୌ କମ୍ ନୁହେଁ । ଗୀତାବଳୀ, କୃଷ୍ଣ ଗୀତାବଳୀ, ବିନୟ ପତ୍ରିକା, ରାମଲାଲ ନହଚୁ, ହନୁମାନ ବାହୁକ, ବୈରାଗ୍ୟ ସନ୍ଦୀପନୀ, ଜାନକୀ ମଙ୍ଗଳ ପ୍ରଭୃତି ରଚନା ଉଲ୍ଲେଖଯୋଗ୍ୟ । ତୁଳସୀ ଦାସଙ୍କ ରଚନାରୁ ଜଣାଯାଏ ସେ ଗଭୀର ଭାବରେ ଦର୍ଶନ ଏବଂ ଧର୍ମତତ୍ତ୍ୱ ଆଲୋଚନା କରିଥିଲେ । ଶଙ୍କରଙ୍କ 'ମାୟାବାଦ' ତତ୍ତ୍ୱ ସେ ବିଶ୍ଳେଷଣ କରିଥିଲେ । ଅଦ୍ୱୈତବାଦ ଏବଂ ବିଶିଷ୍ଟାଦ୍ୱୈତବାଦ ପ୍ରଭୃତି ଭାରତୀୟ ଚିନ୍ତାଧାରା ତାଙ୍କୁ ଅନୁପ୍ରାଣିତ କରିଥିଲା । ସେଥିପାଇଁ ଉଭୟ ଧର୍ମତତ୍ତ୍ୱ, ସାମାଜିକ ଆଦର୍ଶ ଏବଂ ସାହିତ୍ୟିକ ମାନଦଣ୍ଡରେ ତାଙ୍କ ରଚନାବଳୀର ସଫଳତା ଅପୂର୍ବ । ଅବଧି ଭାଷାକୁ ଏକ ମାର୍ଜିତ ରୂପ ପ୍ରଦାନ କରିଥିଲେ । ପୁନଶ୍ଚ ବ୍ରଜଭାଷାରେ ମଧ୍ୟ ତାଙ୍କର କେତେକ ରଚନା ଦେଖାଯାଏ । ଗଭୀର ଅର୍ଥ, ମୂଲ୍ୟବୋଧ ଏବଂ ସାମାଜିକ ଆଦର୍ଶ ଯୋଗୁଁ ତାଙ୍କର କୃତି ଭାରତୀୟ ଜନସମାଜରେ ବିଶେଷ ଆଦୃତ ହୋଇଥିଲା । ତୁଳସୀ ମଧ୍ୟଯୁଗୀୟ ଚିନ୍ତାଧାରାରେ ଗୋଟାଏ ନୂତନ ପରିବର୍ତ୍ତନ ଆଣି ପାରିଥିଲେ ଏବଂ ତାହାର ମାଧ୍ୟମ ଥିଲା ତାଙ୍କର ଆଦର୍ଶ ଏବଂ ଭକ୍ତିଦର୍ଶନ । 'ରାମକାବ୍ୟ'ର ଚରମ ପ୍ରକାଶ ହେଉଛି କବିଙ୍କର 'ରାମ ଚରିତ ମାନସ' । ରାମକାବ୍ୟ ପରଂପରା ପ୍ରତିଷ୍ଠା କରିବାରେ ସେ ଥିଲେ ଅଗ୍ରଣୀ ।

ତୁଳସୀ ଦାସଙ୍କ 'ରାମଚରିତମାନସ'ର ବୈଶିଷ୍ଟ୍ୟ ହେଉଛି ରାମାୟଣ ବର୍ଣ୍ଣିତ ଚରିତ୍ର ସମୂହର ସାମାଜିକ ଆଦର୍ଶବାଦିତା । କବି ବାଲ୍ମୀକି ଏବଂ ଆଧ୍ୟାତ୍ମ ରାମାୟଣରୁ ତାଙ୍କର ବିଷୟବସ୍ତୁ ଗ୍ରହଣ କରି ତାହାକୁ ନୀତି ଏବଂ ଆଦର୍ଶର ରଙ୍ଗରେ

ଗଢ଼ି ପାରିଥିଲେ । କବି ନିଜ ଗ୍ରନ୍ଥରେ ହିଁ ତା'ର ବୈଶିଷ୍ଟ୍ୟ ଘୋଷଣା କରିଥିଲେ । "ଇନ୍ଦ୍ରିୟାତୁର ବକ ଏବଂ କାକଙ୍କର ଏହି ସରୋବରରେ କିଛିକାମ ନାହିଁ କି ଏମାନେ ସରୋବର ନିକଟକୁ ଆସିବାର ପ୍ରଶ୍ନ ନାହିଁ । କାରଣ ଏହି ଉତ୍ତେଜନା ସୃଷ୍ଟି କରିବା ଭଳି ଗପ-କାହାଣୀ ଆଦୌ ନାହିଁ । ସେଥିଯୋଗୁ କାମାତୁର କାକ ଏବଂ ବକ ଯେବେ ଏଠାକୁ ଆସନ୍ତି, ସେମାନେ ନୈରାଶ୍ୟ ବ୍ୟଥିତ ହୁଅନ୍ତି ।" ଏତଦ୍ ବ୍ୟତୀତ ତୁଳସୀ ଦାସଙ୍କର ପ୍ରକୃତ ବର୍ଣ୍ଣନା ଜୀବନ୍ତ ଏବଂ ମାନବିକ ଆବେଦନରେ ପୂର୍ଣ୍ଣ । କିନ୍ତୁ ଭକ୍ତିଯୁଗର କବିମାନଙ୍କ ରଚନାରେ ପ୍ରକୃତ ବର୍ଣ୍ଣନା ସାଧାରଣତଃ ବିରଳ ।

'କବିତା ବଳୀ' କବିଙ୍କର ଭକ୍ତିମୂଳ ରଚନାର ସଂକଳନ । ଗୀତାବଳୀ ସେହି ପରି 'କବିତା ବଳୀ'ର ସଂପ୍ରସାରିତ ରୂପ । ଉଭୟ ରଚନାରେ 'ରାମ ଭକ୍ତି'ର ପବିତ୍ରତା ହିଁ ପ୍ରତିଫଳିତ । 'ବିନୟ ପତ୍ରିକା' କବିଙ୍କର ଆଉ ଏକ ବିନମ୍ର ଅର୍ଘ୍ୟ । କବିଙ୍କ ଭାଷାରେ— "ମୁଁ ମୋର ଜୀବନ ଅତିବାହିତ କରିଛି ଏବଂ ମୁଁ ଯାହା କରିଛି, ତାହା ପବିତ୍ର ହେଉ ।" ବିଷ୍ଣୁ, ଶିବ, ଦୁର୍ଗା, ସୂର୍ଯ୍ୟ ଏବଂ ଗଣେଶ ଏପରି ପଞ୍ଚଦେବତାଙ୍କ ପୂଜା ହିଁ 'ବିନୟ ପତ୍ରିକା'ରେ ସ୍ୱୀକୃତ ।' ବୈରାଗ୍ୟ ସାନ୍ଦୀପନୀ'ରେ ରାମଙ୍କ ମୁଖରେ ଶବରୀଙ୍କୁ ଉପଦେଶ ଛଳରେ ନବଧା ଭକ୍ତି ବର୍ଣ୍ଣିତ ।

ତୁଳସୀ ଦାସଙ୍କ ପରେ ରାମ କାବ୍ୟ ପରଂପରାରେ ଦୀକ୍ଷିତ କବିମାନଙ୍କ ମଧ୍ୟରେ ଅଗ୍ରଦାସ; ଆଚାର୍ଯ୍ୟ କବି କେଶବ ଦାସ, ନଭା ଦାସ, ପ୍ରାଣଚନ୍ଦ୍ର ଚୌହାନ, ହୃଦୟ ରାମ, ବେଣୀ ମାଧବ ଦାସ, ରାୟମଲ୍ଲ, ପାଣ୍ଡେ, ପ୍ରିୟ ଦାସ । ହିତୋପଦେଶ, ଉପାଖ୍ୟାନ ବାଓ୍ୱାନି, ଧ୍ୟାନ ମଞ୍ଜରୀ, ରାମଧ୍ୟାନ ମଞ୍ଜରୀ—ଅଗ୍ରଦାସଙ୍କ ରଚନା । ପ୍ରଥମ ପୁସ୍ତକ କୌଣ୍ଡିଲ୍ୟ ଛନ୍ଦରେ ଲିଖିତ ଏବଂ ଏହା କବିଙ୍କର ଶ୍ରେଷ୍ଠ ରଚନା । ରାମଧ୍ୟାନ ମଞ୍ଜରୀରେ ରାମ ଓ ତାଙ୍କର ରାଜଧାନୀ ପ୍ରଭୃତିର ବର୍ଣ୍ଣନା କରାଯାଇଛି । ନଭା ଦାସଙ୍କର ଉଲ୍ଲେଖ ଯୋଗ୍ୟ କୃତି ହେଉଛି 'ଭକ୍ତମାଳା' । 'ଭକ୍ତମାଳା'ରେ ପ୍ରାୟ ଦୁଇଶତ ପୁରାତନ ଏବଂ ସମସାମୟିକ ସନ୍ଥମାନଙ୍କର ଜୀବନୀ ଅନ୍ତର୍ଭୁକ୍ତ ହୋଇଅଛି । ଏହା ପରବର୍ତ୍ତୀକାଳରେ ବଂଗଳା, ଓଡ଼ିଆ, ମରାଠୀ ସାହିତ୍ୟକୁ ପ୍ରଭାବିତ କରିଥିବାର ଜଣାଯାଏ । ନଭା ଦାସଙ୍କ ଶିଷ୍ୟ ପ୍ରିୟ ଦାସ 'ଭକ୍ତମାଳା'ର ଏକ ବିସ୍ତୃତ ଭାଷ୍ୟ ରଚନା କରିଥିଲେ । ଆଚାର୍ଯ୍ୟ କବି କେଶବ ଦାସ (୧୫୫୫--୧୬୧୭) ଏହି ସଂପ୍ରଦାୟ ଅନ୍ତର୍ଭୁକ୍ତ । 'ରାମଚରିତ'ର ଗୌରବ ଗାନ କରିବା ପାଇଁ ସେ ସ୍ୱପ୍ନରେ ବାଲ୍ମୀକିଙ୍କ ଦ୍ୱାରା ଆଦିଷ୍ଟ ହୋଇଥିଲେ । ତାଙ୍କର ବିଭିନ୍ନ କୃତି ହେଉଛି ରାମଚନ୍ଦ୍ରିକା, କବିପ୍ରିୟା, ରସିକପ୍ରିୟା (୧୫୯୧) (ରସ ଏବଂ ଅଲଙ୍କାର ବିଚାର), ବୀରସିଂହଦେବ ଚରିତ, ବିଜ୍ଞାନଗୀତା, ଜାହାଙ୍ଗୀର-ଯଶ ଚନ୍ଦ୍ରିକା । ପ୍ରକୃତ ପକ୍ଷେ କେଶବ ଦାସଙ୍କ ରଚନାରେ ରୀତିକାବ୍ୟର ଲକ୍ଷଣ ବିଶେଷ ପ୍ରକଟିତ । ପ୍ରାଣଚନ୍ଦ୍ର

ଚୌହାନଙ୍କର ରାମାୟଣ ମହାନାଟକ ଏବଂ ହୃଦୟରାମଙ୍କର ସଂସ୍କୃତ ହନୁମାନ ନାଟକର ହିନ୍ଦୀ ଅନୁବାଦ ଭାଷା ହନୁମାନ ନାଟକ ରାମକାବ୍ୟ ପରଂପରାରେ ଲିଖିତ ହୋଇଥିଲା । ରାମକାବ୍ୟ ଭକ୍ତି ପରଂପରାର ଉଜ୍ଜ୍ୱଳ ନିଦର୍ଶନ ବୋଲି ଜଣାଯାଏ ଏବଂ ଏହି ପରଂପରାର ସ୍ୱୀକୃତ ସାଧକଥିଲେ ସନ୍ଥ ତୁଲସୀଦାସ । ତୁଳସୀଦାସ ଭକ୍ତି ମାର୍ଗର ପରୀକ୍ଷା କରି ଦେଖାଇ ଦେଇଥିଲେ ଯେ ପ୍ରେମ, ବିଶ୍ୱାସ, ତ୍ୟାଗ, କର୍ତ୍ତବ୍ୟ-ପରାୟଣତା ଏହି ପରଂପରାର ପ୍ରକୃଷ୍ଟ ଲକ୍ଷଣ । ବ୍ୟକ୍ତିଗତ ଭକ୍ତି ତଥା ଆନୁଗତ୍ୟର ସମାଜୀକରଣ ହିଁ ରାମଭକ୍ତିର ପ୍ରଧାନ ଆକର୍ଷଣ । ତୁଳସୀଦାସ ଏକାଧାରରେ କବି, ପଣ୍ଡିତ ଏବଂ ସଂସ୍କାରକ ଥିଲେ । ସେ ସମଗ୍ର ମାନବ ସମାଜ ସମ୍ମୁଖରେ ରାମ ଭକ୍ତିମାର୍ଗର ପୂର୍ଣ୍ଣାଙ୍ଗ ସାଧନା ପ୍ରଦର୍ଶନ କରିଥିଲେ । ତୁଳସୀଦାସଙ୍କ ରାମଭକ୍ତି ଦାମ୍ପତ୍ୟ ପ୍ରେମକୁ ସ୍ଥାନ ଦେଇଥାଏ । ଭକ୍ତମାନେ ନିଜକୁ ସୀତାଙ୍କର ସପତ୍ନୀଭାବେ ରାମଙ୍କଠାରେ ଭକ୍ତି ଅର୍ପଣ କରିଥାନ୍ତି ।

କୃଷ୍ଣକାବ୍ୟ ମଧ୍ୟ-ଯୁଗୀୟ ଭକ୍ତି ସାହିତ୍ୟରେ ବଲ୍ଲଭାଚାର୍ଯ୍ୟଙ୍କର (୧୪୭୯-୧୫୩୦) ନାମ ପ୍ରଥମେ ଉଲ୍ଲେଖଯୋଗ୍ୟ । କୃଷ୍ଣ ଭକ୍ତି କାବ୍ୟ ବଲ୍ଲଭାଚାର୍ଯ୍ୟଙ୍କର ବିଶୁଦ୍ଧାଦ୍ୱୈତ ମତ ଉପରେ ପ୍ରତିଷ୍ଠିତ । କୃଷ୍ଣଭକ୍ତି ଏବଂ କୃଷ୍ଣ ଉପାସନାର ପରଂପରା ପ୍ରାଚୀନ-କାଳରୁ ପ୍ରଚଳିତଥିଲା । ଚତୁର୍ଦ୍ଦଶ ଶତାବ୍ଦୀରେ ଉତ୍ତରଭାରତରେ ବୈଷ୍ଣବଧର୍ମର ପୁନଃ ଅଭ୍ୟୁଦୟ ଘଟିଥିଲା । କୃଷ୍ଣକାବ୍ୟ ପରଂପରା ପ୍ରକୃତରେ ପ୍ରଥମେ ଦକ୍ଷିଣ ଭାରତରେ ଆରମ୍ଭ ହୋଇଥିଲା । ଶଙ୍କରାଚାର୍ଯ୍ୟଙ୍କ ଅଦ୍ୱୈତବାଦ ପୃଷ୍ଠଭୂମିରେ ରାମାନୁଜଙ୍କର ବିଶିଷ୍ଟାଦ୍ୱୈତ ମତବାଦ, ବିଷ୍ଣୁସ୍ୱାମୀଙ୍କର ପ୍ରତ୍ୟକ୍ଷଦେବତା ରୂପେ କୃଷ୍ଣଙ୍କର ଆରାଧନା । ପୁଣି ସେହି ଆରାଧନା ସହିତ ରାଧାଶକ୍ତିର ସଂଯୋଗ ନିମ୍ବାର୍କଙ୍କର ରାଧାକୃଷ୍ଣ ମିଳିତ ଉପାସନା, ଏଠାରେ ଉଲ୍ଲେଖଯୋଗ୍ୟ । ପୁନଶ୍ଚ ରାମାନନ୍ଦ ରାମଭକ୍ତିର ସାଧକ ଥିଲେ ମଧ୍ୟ କୃଷ୍ଣ ଏବଂ ରୁକ୍ମଣୀଙ୍କର ଉପାସନା ଲାଗି ଆଗ୍ରହ ପ୍ରକାଶ କରିଥିଲେ । ଚୈତନ୍ୟ ମାଧ୍ୱାଚାର୍ଯ୍ୟଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇଥିଲେ ଏବଂ ଭାଗବତ ପୁରାଣ ଅନୁସାରେ ରାଧାଙ୍କୁ ପ୍ରଧାନ ସ୍ଥାନ ଦେଇଥିଲେ । ରାଧାକୃଷ୍ଣଙ୍କର ମିଳନ ଯଥାର୍ଥତଃ ମନୁଷ୍ୟ ଏବଂ ଭଗବାନଙ୍କ ମିଳନର ପ୍ରତୀକ ବୋଲି ସେ ଗ୍ରହଣ କରିଥିଲେ । ବଲ୍ଲଭାଚାର୍ଯ୍ୟ (୧୪୭୯-୧୫୩୦) ଚୈତନ୍ୟଙ୍କର ସମସାମୟିକ ଥିଲେ । ସେ ବିଷ୍ଣୁସ୍ୱାମୀଙ୍କ ଆଦର୍ଶରେ ଦୀକ୍ଷିତହେଲେ ହେଁ ନିମ୍ବାର୍କଙ୍କ ପ୍ରଚାରିତ ରାଧାକୃଷ୍ଣ ଉପାସନାର ଭକ୍ତଥିଲେ । ସତ୍, ଚିତ୍, ଆନନ୍ଦର ସମନ୍ୱୟ ହିଁ ପରିପୂର୍ଣ୍ଣ ବ୍ରହ୍ମ । କୃଷ୍ଣ ହିଁ ପୁରୁଷୋତ୍ତମ ଏବଂ ତାଙ୍କଠାରେ ସତ୍‌ଚିତ୍ ଆନନ୍ଦର ସମନ୍ୱୟ ସଙ୍ଘଟିତ । କୃଷ୍ଣଙ୍କ ପ୍ରାପ୍ତିପାଇଁ ପୂର୍ଣ୍ଣପ୍ରେମହିଁ ଏକମାତ୍ର ପନ୍ଥା । ଏହି ଭଗବତ୍ କରୁଣା ପୁଷ୍ଟିଭାବରେ ପରିଚିତ । ସେଥିପାଇଁ କୃଷ୍ଣପ୍ରେମ ସାଧନା ପୁଷ୍ଟିମାର୍ଗ ବୋଲି ବିବେଚିତ । ଗୋପୀମାନେ ଏହି ପୁଷ୍ଟିମାର୍ଗର ଥିଲେ ପ୍ରତୀକ । ପ୍ରେମ ହିଁ ସେମାନଙ୍କର ଏକମାତ୍ର ବାଞ୍ଛିତ ମାର୍ଗ ।

ହିନ୍ଦୀ ସାହିତ୍ୟରେ କୃଷ୍ଣକାବ୍ୟ ପରଂପରାର ପ୍ରଥମକବି ହେଉଛନ୍ତି— ମିଥିଳାର ବିଦ୍ୟାପତି (୧୩୬୮-୧୪୭୫) । ବିଦ୍ୟାପତି ଅପଭ୍ରଂଶ ଭାଷାରେ ଲେଖିଥିଲେ ଏବଂ ତାହା ମାଗଧୀରୁ ଉତ୍ପତ୍ତି ଲାଭକରିଥିଲେ ହେଁ ହିନ୍ଦୀର ନିକଟ-ବର୍ତ୍ତୀ । ବିଦ୍ୟାପତି ରାଧାକୃଷ୍ଣଙ୍କର ବିରହ ଏବଂ ମିଳନ ଶୃଙ୍ଗାରାତ୍ମକ ଭାଷାରେ ରଚନା କରିଥିଲେ। ରାଧାକୃଷ୍ଣଙ୍କର ଶୃଙ୍ଗାରରସାତ୍ମକ ଲୀଳା ଓଡ଼ିଶାର କବି ଜୟଦେବ ପ୍ରଥମେ ସଂସ୍କୃତରେ ବର୍ଣ୍ଣନା କରିଥିବାର ଜଣାଯାଏ । ହିନ୍ଦୀରେ ଏତାଦୃଶ ରଚନାର ଆଦ୍ୟ ପ୍ରଣେତା ହେଉଛନ୍ତି ବିଦ୍ୟାପତି । ବିଦ୍ୟାପତି ଧର୍ମପ୍ରଚାରକ କିମ୍ବା ସଂସ୍କାରକ ନଥିଲେ । ସେ ଥିଲେ ରାଜା ଶିବ ସିଂହଙ୍କର ଦରବାର କବି । ରାଧାଙ୍କର ଅପୂର୍ବ ରୂପଲାବଣ୍ୟ ତଥା ଶୃଙ୍ଗାର ଲୀଳା ବର୍ଣ୍ଣନାକରି ସମ୍ଭବତଃ ସେ ଦରବାରର ରାଜାରାଣୀଙ୍କର ରୁଚିତୃଷ୍ଣା ପ୍ରତିଫଳିତ କରାଇ ପାରିଥିଲେ । ତାଙ୍କ ରଚନାର ମଧୁର ସଙ୍ଗୀତ ଏବଂ ରସଗର୍ଭକତା ଯଥାର୍ଥତଃ ତାଙ୍କୁ 'ମିଥିଳାର ନାଇଟିଙ୍ଗେଲ୍' ଉପାଧିରେ ଭୂଷିତ କରିପାରିଛି ।

'ପଦାବଳୀ' ତାଙ୍କର ଶ୍ରେଷ୍ଠକୃତି । ଏହାର ଭାଷା 'ମୈଥିଳୀ' । 'କୀର୍ତ୍ତିଲତା' ଏବଂ 'କୀର୍ତ୍ତିପତାକା' ମଧ୍ୟ ତାଙ୍କର ରଚନା । ଏହାର ଭାଷା ଅବହଟ୍ଠ ଅପଭ୍ରଂଶ ।

ବିଦ୍ୟାପତି ଜଣେ ଉଚ୍ଚକୋଟୀର ସଂସ୍କୃତ ପଣ୍ଡିତ । ସେ ଥିଲେ ଶିବ ଉପାସକ ।

କୃଷ୍ଣକାବ୍ୟ ପରଂପରାର ଅନ୍ୟତମ ଶକ୍ତିଶାଳୀ କବି ହେଉଛନ୍ତି ସୁର ଦାସ । ସମଗ୍ର ଭାରତୀୟ ଭକ୍ତି ସାହିତ୍ୟରେ ତାଙ୍କର ଆସନ ସ୍ୱୀକୃତ । ଶ୍ରୀକୃଷ୍ଣ ସମସ୍ତ ଶକ୍ତିର ପ୍ରତୀକ । ପ୍ରେମ, ମାଧୁର୍ଯ୍ୟକୁ କେନ୍ଦ୍ରକରି ସୁର ଦାସଙ୍କର ସମସ୍ତ ରଚନା ରସୋତ୍ତୀର୍ଣ୍ଣ ।

ବଲ୍ଲଭାଚାର୍ଯ୍ୟଙ୍କ ମୃତ୍ୟୁପରେ ତାଙ୍କର ପୁତ୍ର ବିଠଲନାଥ ପିତାଙ୍କର ଚାରିଜଣ ଶିଷ୍ୟ ଏବଂ ନିଜର ଚାରିଜଣ ଶିଷ୍ୟଙ୍କୁ ନେଇ 'ଅଷ୍ଟାଛାପ' ଗୋଷ୍ଠୀ ଗଠନ କରିଥିଲେ । ଯେଉଁ ଭାଷାରେ କୃଷ୍ଣକାବ୍ୟ ଲେଖା ଯାଉଥିଲା, ସେହି ବ୍ରଜ ଭାଷାରେ ସେମାନେ ପ୍ରକାଶିଥିଲେ । ବଲ୍ଲଭାଚାର୍ଯ୍ୟଙ୍କର ଶିଷ୍ୟ ସୁର ଦାସ ଏହି ଗୋଷ୍ଠୀର ପ୍ରଥମ କବି । ଅନ୍ୟମାନେ ହେଲେ କୃଷ୍ଣ ଦାସ, ଦସ୍ତାହାରୀ, ପରମାନନ୍ଦ ଦାସ, କୁମ୍ଭ ଦାସ (ବଲ୍ଲଭାଚାର୍ଯ୍ୟଙ୍କ ଶିଷ୍ୟ) ଚତୁର୍ଭୁଜ ଦାସ, ଛିତସ୍ୱାମୀ, ନନ୍ଦ ଦାସ, ଗୋବିନ୍ଦ ଦାସ (ବିଠଲନାଥଙ୍କ ଶିଷ୍ୟ) ।

ଦିଲ୍ଲୀ ନିକଟବର୍ତ୍ତୀ ସିହିଗ୍ରାମରେ ୧୪୮୩ ଖ୍ରୀଷ୍ଟାବ୍ଦରେ ସୁର ଦାସଙ୍କର ଜନ୍ମ । ମାତ୍ର ଆଠବର୍ଷ ବୟସରେ ସୁରଙ୍କର ପିତାଙ୍କ ସହ ମଥୁରା ଯାତ୍ରା ତାଙ୍କ ଜୀବନର ଦିଗ ପରିବର୍ତ୍ତନ କରି ଦେଇଥିଲା । ପିତାଙ୍କୁ ଛାଡ଼ି ସେ ମଥୁରାରେ ଅବସ୍ଥାନ କଲେ ଏବଂ ଯମୁନା ନଦୀ କୂଳରେ ଗୋଆ ଘାଟ ଠାରେ ତାଙ୍କର ବଲ୍ଲଭାଚାର୍ଯ୍ୟଙ୍କ

ସହିତ ସାକ୍ଷାତ ହୋଇଥିଲା । ଗୁରୁଙ୍କ ଦୀକ୍ଷା ଗ୍ରହଣ କରି ସୁରଦାସ ଗୋବର୍ଦ୍ଧନ ପର୍ବତର ପାଦଦେଶରେ ଅବସ୍ଥାନ କଲେ ଏବଂ ସେଠାରୁ ନାନା ତୀର୍ଥ ଭ୍ରମଣ କରିଥିଲେ ।

ସୁରସାଗର, ସାହିତ୍ୟ-ଲହରୀ, ସରାବଳୀ, ନଳଦମୟନ୍ତୀ, ନାଗଲୀଳା, ବ୍ୟାହିଲେ ପ୍ରଭୃତି ସୁରଦାସଙ୍କର ରଚନା । 'ସୁରସାଗର' ଭାଗବତ ପୁରାଣର ଅବଲମ୍ବନରେ ଲିଖିତ ଏବଂ ଶ୍ରୀକୃଷ୍ଣ-ଲୀଳା-ବର୍ଣ୍ଣନା ଏହାର ମୁଖ୍ୟ ବିଷୟ ।

'ଅଷ୍ଟାଛାପ' ଗୋଷ୍ଠୀର କବି ନନ୍ଦ ଦାସଙ୍କର 'ରାସ ପଞ୍ଚାଧ୍ୟାୟୀ', 'ଭ୍ରମର-ଗୀତ' ଉଲ୍ଲେଖଯୋଗ୍ୟ । ଏହି ଗୋଷ୍ଠୀର ଅନ୍ୟ କବିମାନେ ମଧ୍ୟ କୃଷ୍ଣ-ପରଂପରାରେ ଗ୍ରନ୍ଥ ରଚନା କରିଥିବେ । 'ରାସ ପଞ୍ଚାଧ୍ୟାୟୀ'ରେ ପାଞ୍ଚଗୋଟି ଅଧ୍ୟାୟରେ ରାଧା-କୃଷ୍ଣଙ୍କର ରାସଲୀଳା ହିଁ ବର୍ଣ୍ଣିତ । କୃଷ୍ଣଦାସଙ୍କର 'ପ୍ରେମତତ୍ତ୍ୱ ନିରୂପଣ' "ଯୁଗଲ ମାନ ଚରିତ", ପରମାନନ୍ଦ ଦାସଙ୍କର 'ପରମାନନ୍ଦ ସାଗର' କୃଷ୍ଣ-ପରଂପରାରେ ରଚିତ । କୁମ୍ଭନ ଦାସଙ୍କର ଗୀତସମୂହ ସମ୍ରାଟ ଆକବରଙ୍କୁ ଏତେ ଦୂର ଅନୁପ୍ରାଣିତ କରିଥିଲା ଯେ ସମ୍ରାଟ୍ କବିଙ୍କୁ ଦରବାରକୁ ନିମନ୍ତ୍ରଣ କରିଥିଲେ । କବି କିନ୍ତୁ ସମ୍ରାଟ୍‌ଙ୍କର ନିମନ୍ତ୍ରଣ ପ୍ରତ୍ୟାଖ୍ୟାନ କରି କହିଥିଲେ ଯେ ତାଙ୍କର ରଚନା ଭଗବତ୍ ପ୍ରେମ ପାଇଁ ଉଦ୍ଦିଷ୍ଟ । ତାଙ୍କର ପୁତ୍ର ଚତୁର୍ଭୁଜ ଦାସ ମଧ୍ୟ ଜଣେ କବି ଥିଲେ । ଛିତସ୍ୱାମୀ ବୀରବଲଙ୍କର ଗୃହ ପୁରୋହିତ ଥିଲେ । କୃଷ୍ଣଙ୍କର ପ୍ରେମରେ ବିହ୍ୱଳ ହୋଇ ସେ ମଧ୍ୟ ବହୁ ସଙ୍ଗୀତ ରଚନା କରିଥିଲେ । ଗୋବିନ୍ଦସ୍ୱାମୀ ଗୋବର୍ଦ୍ଧନ ଅରଣ୍ୟରେ ସନ୍ନ୍ୟାସୀରୂପେ ବାସ କରୁଥିଲେ । ପରେ ବିଟ୍ଠଳନାଥ ତାଙ୍କୁ ଆବିଷ୍କାର କରିଥିଲେ । ତାଙ୍କ ରଚନା ସଙ୍ଗୀତଜ୍ଞ ତାନସେନ୍‌ଙ୍କୁ ବିହ୍ୱଳ କରିଦେଉଥିଲା ।

ସୁରଦାସଙ୍କ ସମେତ ଏହି କବିମାନଙ୍କ ରଚନାରେ ସାଧାରଣତଃ ଶ୍ରୀକୃଷ୍ଣ ବାଲ୍ୟଲୀଳା, ବିଭିନ୍ନ ଋତୁର କାମ ଉଦ୍ରେକକାରୀ ବର୍ଣ୍ଣନା, ପ୍ରଣୟାତୁରତା ଏବଂ ଆଧ୍ୟାତ୍ମିକ ପ୍ରତୀକ ଧର୍ମିତା ହିଁ ବିଶେଷ ପରିଦୃଷ୍ଟ ।

ଷୋଡ଼ଶ ଶତାବ୍ଦୀର ଶେଷ ଆଡ଼କୁ (୧୫୮୫) ବୃନ୍ଦାବନଧାମରେ ରାଧାବଲ୍ଲଭୀ ନାମରେ ଏକ ସମ୍ପ୍ରଦାୟ ଗଢିଉଠିଥିଲା । ଏମାନଙ୍କ ମତରେ କୃଷ୍ଣଙ୍କ ଅପେକ୍ଷା ରାଧାଙ୍କର ଆସନ ଉଚ୍ଚରେ । ସେମାନଙ୍କ ରଚନାରେ ଶୃଙ୍ଗାରରଚନା ସବୁଠାରୁ ଅଧିକ । ବୃନ୍ଦାବନରେ ହରିଦାସୀ ନାମରେ ଆଉ ଏକ ସମ୍ପ୍ରଦାୟ ମଧ୍ୟ ଦେଖା-ଦେଇଥିଲା । ସ୍ୱାମୀ ହରିଦାସ ସମ୍ପ୍ରଦାୟର ପ୍ରତିଷ୍ଠାତା । ଏହି ସମ୍ପ୍ରଦାୟ ସାଧାରଣତଃ ଚୈତନ୍ୟଙ୍କ ଆଦର୍ଶ ଗ୍ରହଣ କରିଥିଲେ ।

କୃଷ୍ଣକାବ୍ୟ ପରଂପରାର ଆଉ ଜଣେ ପ୍ରତିଭାଶାଳିନୀ ନାରୀକବି ହେଉଛନ୍ତି— ମୀରାବାଈ । ମୀରାବାଈ ୧୪୯୮ରେ ଜନ୍ମଗ୍ରହଣ କରିଥିଲେ । ଚିତୋର ରାଜ-ବଂଶରେ ଅଷ୍ଟାଦଶବର୍ଷ ବୟସରେ ରୂପବତୀ ମୀରା ବିବାହ କରିଥିଲେ । ପଚିଶ ବର୍ଷ

*

ବୟସରେ ମୀରାବାଈ ତାଙ୍କ ସ୍ୱାମୀଙ୍କର ମୃତ୍ୟୁପରେ ନିଜକୁ କୃଷ୍ଣଙ୍କ ସେବାରେ ସଂପୂର୍ଣ୍ଣ ସମର୍ପଣ କରିଦେଲେ । ଗଭୀର ଭକ୍ତି ଏବଂ ବିଶ୍ୱାସ ହିଁ ମୀରାବାଈଙ୍କ ଜୀବନର ସମସ୍ତ ସାଧନାମୂଳରେ ନିହିତ ଥିଲା । ଗିରିଧର ଗୋପାଳ ଏବଂ ଗୋପାଙ୍ଗନା-ମାନଙ୍କର ପ୍ରେମ ଯଥାର୍ଥରେ ଭଗବତ୍ ଶକ୍ତି ମିଳିତ ହେବା ପାଇଁ ମାନବିକ ଅଭିଳାଷର ଅନୁରୂପ ବୋଲି ମୀରାବାଈ ଉପଲବ୍ଧି କରିଥିଲେ । ସେ ନିଜକୁ ରାଧା ଭାବରେ ବର୍ଣ୍ଣନା କରିଥିଲେ । ଆବେଗ, ମାଧୁର୍ଯ୍ୟ, ଭାବ[?]ବଶତା ଏବଂ ସଙ୍ଗୀତର ଲାଳିତ୍ୟ ବିଗୃହରେ ମୀରାବାଈଙ୍କର ଭଜନସମୂହ ଉଚ୍ଚକୋଟୀର । ତାଙ୍କ ପଦାବଳୀରେ ବନ୍ୟ ହରିଣୀର ସରଳତା ଏବଂ ବନ୍ୟ ଝରଣାର କଳକଳ ନାଦ ପ୍ରତିଧ୍ୱନିତ । ମୀରାବାଈଙ୍କ ପଦାବଳୀର ଲୋକପ୍ରିୟତା ସମଗ୍ର ମଧ୍ୟଯୁଗୀୟ ଭାରତୀୟ ଭକ୍ତି ସାହିତ୍ୟରେ ଅସାଧାରଣ । ଗିରିଧର ଗୋପାଳଙ୍କର ମୁରଲୀ-ମୂର୍ଚ୍ଛନା ଏବଂ ମାଧୁର୍ଯ୍ୟରସ ତାଙ୍କ ପଦାବଳୀର ଆବେଦନ ହେଲେ ହେଁ, ସେଥିରେ ମଧ୍ୟ ସାର୍ବଜନୀନତା ପ୍ରତିଫଳିତ । ନରସିଂଜୀକା ମହ୍ୟାରା, ଗୀତଗୋବିନ୍ଦକୀ ଟୀକା, ରାଗ ଗୋବିନ୍ଦ, ଗର୍ଭଗୀତ, ମୀରାପଦ ପ୍ରଭୃତି ତାଙ୍କର ପୁସ୍ତକ । ନିର୍ଦ୍ଦିଷ୍ଟ ମତାନ୍ଧତା ଅପେକ୍ଷା ହୃଦୟର କାରୁଣ୍ୟମିଶ୍ରିତ ଅଫୁରନ୍ତ ପ୍ରେମ ହିଁ ମୀରାବାଈଙ୍କ ରଚନାରେ ପ୍ରତିଫଳିତ । ମୀରାବାଈ ୧୫୬୩ରେ ପରଲୋକଗମନ କରିଥିଲେ ।

ଏହି ପରଂପରାର ଅନ୍ୟତମ କବି ଗୋସ୍ୱାମୀ ହିତାହରିବଂଶଙ୍କ ରଚନାରେ ଶ୍ରୀକୃଷ୍ଣଙ୍କ ରାଧା ହିଁ ଶ୍ରେଷ୍ଠ ଆସନ ଅଧିକାରିଣୀରୂପେ ବର୍ଣ୍ଣିତ । ଶ୍ରୀକୃଷ୍ଣ କେବଳ ଶ୍ରୀରାଧାଙ୍କର ପ୍ରେମିକରୂପେ ବର୍ଣ୍ଣିତ । ଏହା ରାଧାବଲ୍ଲଭ ସଂପ୍ରଦାୟଙ୍କର ଦର୍ଶନ । ହିତାହରିବଂଶଙ୍କର ରଚନାସମୂହ 'ହିତ ଚୌରାଶି' ନାମରେ ପରିଚିତ । ସ୍ୱାମୀ ହରିଦାସ, ହରିରାମ ବ୍ୟାସ, ନାଗରୀ ଦାସ ପ୍ରଭୃତି କବିଙ୍କୁ ଏହି ଭକ୍ତକବି-ଗୋଷ୍ଠୀରେ ଅନ୍ତର୍ଭୁକ୍ତ କରାଯାଇଥାଏ । ଧ୍ରୁବ ଦାସଜୀ ବହୁ ଦୋହା ରଚନା କରିଥିଲେ । ସେ ହିତାହରିବଂଶଙ୍କର ଶିଷ୍ୟ ଥିଲେ । 'ଭକ୍ତନାମାବଳୀ' ମଧ୍ୟ ତାଙ୍କର ରଚନା ।

ଆଲ୍‌ବେଲଆଲି, ସୟଦ୍ ଇବ୍ରାହିମ୍ ମୁସଲମାନ ଥିଲେ; ମାତ୍ର କୃଷ୍ଣଭକ୍ତ କବିମାନଙ୍କ ମଧ୍ୟରେ ସେମାନଙ୍କ ନାମ ଶୁଣାଯାଏ । ଇବ୍ରାହିମ 'ରକ୍ଷଣ' ଛଦ୍ମ ନାମରେ ବହୁ କୃଷ୍ଣପ୍ରେମମୂଳକ କବିତା ରଚନା କରିଥିଲେ । ସେ ବିଠଳନାଥଙ୍କ ଦ୍ୱାରା ବୈଷ୍ଣବଧର୍ମରେ ଦୀକ୍ଷିତ ହୋଇଥିଲେ । ପ୍ରେମବାଟିକା, ସୁଜନରକ୍ଷଣ ତାଙ୍କର ସଙ୍ଗୀତମୟ ରଚନା ।

ମଧ୍ୟଯୁଗ ହିନ୍ଦୀ ଭକ୍ତିସାହିତ୍ୟ ଯଥାର୍ଥତଃ ବ୍ୟକ୍ତିଧର୍ମୀ ଗୀତିକବିତାର ଉଚ୍ଛ୍ୱାସ-ଦ୍ୱାରା ଚିହ୍ନିତ । ଏପରିକି ବିଦ୍ୟୋତ୍ସାହୀ ମୋଗଲ ସମ୍ରାଟ୍ ଆକବରଙ୍କ ଦରବାରରେ ଅବଦୁର ରହିମ ଖାନ୍‌ଖାନା (୧୫୫୬-୧୬୧୩), ଗଙ୍ଗା (୧୫୩୮-୧୬୧୭) ପ୍ରଭୃତି

କବିମାନେ କୃଷ୍ଣଭକ୍ତିଦ୍ୱାରା ଉଦ୍‌ବୁଦ୍ଧ ହୋଇ ବହୁ ପୁସ୍ତକ ଲେଖିଥିଲେ । ବୈରାମ ଖାଁଙ୍କ ପୁତ୍ର ଏହି ଅବଦୁର ରହିମ ତୁର୍କି, ପାର୍ଶି, ଆରବୀ ଏବଂ ସଂସ୍କୃତ ଭାଷାରେ ପ୍ରବୀଣ ଥିଲେ । ତାଙ୍କର ରଚନା ମଧ୍ୟରେ ରହିମ ଦୋହାବଳୀ, ବାର୍ତ୍ତାନାୟିକାଭେଦ, ମଦନାଷ୍ଟକ, ରାସ ପଞ୍ଚାଧ୍ୟାୟ, ଶୃଙ୍ଗାର ସୋରଥ ଉଲ୍ଲେଖ-ଯୋଗ୍ୟ । କବି ଗଙ୍ଗାଙ୍କର ରଚନା ଇତସ୍ତତଃ ଭାବରେ ମିଳିଥାଏ । କବି ନରହରି ବଡ଼ଜେନା ରୁକ୍ମିଣୀ ମଙ୍ଗଳ, ଛପ୍ୟନୀତି ପ୍ରଭୃତି ପୁସ୍ତକ ଲେଖିଥିଲେ । ଟୋଡ଼ରମଲ ଭାଗବତ ପୁରାଣକୁ ପାର୍ଶି ଭାଷାରେ ଅନୁବାଦ କରିଥିଲେ ।

ହିନ୍ଦୀ ଭକ୍ତି-ସାହିତ୍ୟ ସମ୍ପର୍କରେ ଗୋଟିଏ କଥା ଶୁଣାଯାଏ । ତାହା ହେଉଛି—ହିନ୍ଦୀ-ସାହିତ୍ୟାକାଶରୁ ହିନ୍ଦୀ କବିଙ୍କୁ ଛାଡ଼ିଦେଲେ ହିନ୍ଦୀ ସାହିତ୍ୟା-କାଶରେ ସୂର୍ଯ୍ୟୋଦୟ ହେବ ନାହିଁ କି ମୁସଲମାନ କବିମାନଙ୍କୁ ବାଦ୍ ଦେଲେ ଚନ୍ଦ୍ରୋଦୟ ହେବ ନାହିଁ । ଦକ୍ଷିଣ ଭାରତରେ ଆଚାର୍ଯ୍ୟ ଏବଂ ପ୍ରବକ୍ତାମାନେ ଉତ୍ତର ଭାରତର ସନ୍ଥ କବିମାନଙ୍କର କାବ୍ୟଧାରାକୁ ପ୍ରଭାବିତ କରିଥିଲେ । ଭକ୍ତିଯୁଗ ରଚନାର ଏକ ପ୍ରଧାନ ଲକ୍ଷଣ ହେଉଛି ଯେ କବିମାନେ ସମାଜର ସ୍ତ୍ରୀ ପୁରୁଷଙ୍କର ମିଳନାକାଙ୍‌କ୍ଷାକୁ ସେମାନଙ୍କ ଅନୁସୃତ ପ୍ରେମଭକ୍ତିର ଅନ୍ତରାଳରେ ପ୍ରଚ୍ଛନ୍ନ ରଖିଥିଲେ । ସେଥିପାଇଁ ସପ୍ତଦଶ ଶତାବ୍ଦୀ ବେଳକୁ ହିନ୍ଦୀ ସାହିତ୍ୟରେ ଶୃଙ୍ଗାର ଅର୍ଥାତ୍ ରୀତିକାବ୍ୟଯୁଗ ଆରମ୍ଭ ହୋଇଥିଲା । ରୂପ ଗୋସ୍ୱାମୀଙ୍କର ମାଧୁର୍ଯ୍ୟରସ ପ୍ରଧାନ ରଚନା 'ଉଜ୍ଜ୍ୱଳ ନୀଳମଣି' ଏଠାରେ ଉଲ୍ଲେଖ କରାଯାଇପାରେ । ଶ୍ରୀକୃଷ୍ଣ ଆଉ ଗୋପୀମାନଙ୍କର ମିଳନାତ୍ମକ ରସରାଗିଣୀ ବର୍ଣ୍ଣନାରୁ ସମ୍ଭବତଃ ଶୃଙ୍ଗାର-କାବ୍ୟର ସୃଷ୍ଟି ହୋଇଥିଲା । ଏହାର ଅନ୍ୟାନ୍ୟ ଐତିହାସିକ କାରଣ ମଧ୍ୟ ଥିଲା ।

ରୀତିକାଳ—

ଭାରତବର୍ଷରେ ଭୋଗବିଳାସପୂର୍ଣ୍ଣ ଆଡ଼ମ୍ବରମୟ ମୋଗଲ ଜୀବନର କ୍ରମଃ ଅବକ୍ଷୟ ସହିତ ହିନ୍ଦୀ ସାହିତ୍ୟରେ ରୀତି ଅର୍ଥାତ୍ ଶୃଙ୍ଗାର ଯୁଗର ଆବିର୍ଭାବ ଯେପରି ଜଡ଼ିତ ହୋଇଯାଇଥିଲା । ଜାହାଙ୍ଗୀର, ସାହାଜାହାନଙ୍କର ବିଳାସ-ପ୍ରିୟତା, ଅଉରଙ୍ଗଜେବଙ୍କର ଧର୍ମାନ୍ଧତାର ପରିଣତି ସ୍ୱରୂପ ଭାରତୀୟ ସାମାଜିକ ରାଜନୈତିକ ଜୀବନରେ ଦେଖାଦେଇଥିଲା ଅସ୍ଥିରତା । ସେହି ଅସ୍ଥିରତାର ପ୍ରତିକ୍ରିୟା ସ୍ୱରୂପ ହଠାତ୍ ସୁଖ-ଭୋଗବିଳାସପୂର୍ଣ୍ଣ ଜୀବନପ୍ରତି ଗୋଟାଏ ଅଲଙ୍ଘନୀୟ ଆସକ୍ତି ଦେଖାଦେଇଥିଲା । ଦର୍ଶନ, ସାହିତ୍ୟ, ସଂସ୍କୃତି ପ୍ରତ୍ୟେକ କ୍ଷେତ୍ରରେ ଅବକ୍ଷୟର ସୂଚନା ମିଳିଥିଲା । ସେଥିପାଇଁ କାବ୍ୟ-କବିତାରେ ଭୋଗପ୍ରବଣତା ପ୍ରତିଫଳିତ ହେଲା, ଏବଂ କାବ୍ୟକବିତାର ଭାଷା, ଛନ୍ଦ, ପଦବିନ୍ୟାସରେ ଦେଖା-ଦେଇଥିଲା ଆଲଂକାରିକ ମଣ୍ଡନସ୍ପୃହା । ଏହି ପ୍ରସଙ୍ଗରେ ତୁଳସୀ ଦାସ, ସୁର ଦାସ, ବିଦ୍ୟାପତି, ମୀରାବାଈଙ୍କ ଗୀତିକବିତାର ଶୈଳୀ ମଧ୍ୟ ଉଲ୍ଲେଖଯୋଗ୍ୟ ।

ଉକ୍ତକବିଗଣ ସେମାନଙ୍କ ଅଜସ୍ର ରଚନାରେ ଭାଷାର ଚୂଡ଼ାନ୍ତ ପରୀକ୍ଷା କରି ସାରିଥିଲେ । ସେଥିପାଇଁ ଭାଷା ଏବଂ ଶୈଳୀ କ୍ଷେତ୍ରରେ ମଧ୍ୟ ପରିବର୍ତ୍ତନର ଆବଶ୍ୟକତା କବିମାନେ ଅନୁଭବ କରିଥିବାର ଜଣାଯାଏ ।

ପୂର୍ବରେ ବର୍ଣ୍ଣିତ କେଶବ ଦାସଙ୍କ ରଚନାରେ ରୀତିକାବ୍ୟର ଆଦ୍ୟ ସୂଚନା ମିଳିଥିଲା । କେଶବ ଦାସଙ୍କ ପରିବାର ସଂସ୍କୃତଚର୍ଚ୍ଚା ପାଇଁ ପ୍ରସିଦ୍ଧ ଥିଲା । କେଶବ ଦାସ ନିଜେ ମଧ୍ୟ ସଂସ୍କୃତରେ ପ୍ରବୀଣ ଥିଲେ ଏବଂ ସେ ନିଜ ରଚନା ଏବଂ ରଚନାରେ ଅଳଙ୍କାର ପ୍ରୟୋଗ ପ୍ରସଙ୍ଗରେ ଘୋଷଣା କରିଥିଲେ—"ଦେଖ, ମୁଁ ଜଣେ ପଣ୍ଡିତ । ମୁଁ ଯେକୌଣସି କଥାବସ୍ତୁକୁ ଯେକୌଣସି ଶୈଳୀରେ ରଚନା କରିପାରେ । ରାଜପୁତ୍ର ବୀରତ୍ୱ ସମ୍ପର୍କରେ ମୁଁ ଗାଥାକବିତା ଲେଖିଛି । ପୁଣି ମୁଁ ତୁଳସୀ ଦାସଙ୍କ ଅନୁସରଣରେ କାବ୍ୟ ମଧ୍ୟ ଲେଖିଛି ଏବଂ ସହୃଦୟ ପାଇଁ କାବ୍ୟ-କବିତାର ଲକ୍ଷଣ ମୁଁ ମଧ୍ୟ ନିର୍ଦ୍ଦେଶ କରିଛି ।" କେଶବ ବାସ୍ତବିକ 'କାବ୍ୟକଳା' ସମ୍ପର୍କରେ ବହୁତ କିଛି ଆଲୋଚନା କରିଥିଲେ । ସଂସ୍କୃତର 'ପ୍ରବୋଧ ଚନ୍ଦ୍ରୋଦୟ' ଅନୁକରଣରେ କେଶବ ବିଜ୍ଞାନଗୀତା ରଚନା କରିଥିଲେ । ତଥାପି କେଶବଦାସଙ୍କ ପଚିଶବର୍ଷ ପରେ ହିଁ ହିନ୍ଦୀସାହିତ୍ୟରେ ରୀତିଯୁଗର ପୂର୍ଣ୍ଣାଙ୍ଗ ଅଧ୍ୟାୟ ଆରମ୍ଭ ହୋଇଥିଲା ।

'ରୀତିକାଳ', 'ଶୃଙ୍ଗାରକାଳ' 'ଅଳଙ୍କୃତ କାଳ'—ଏତାଦୃଶ ନାମକରଣରୁ ଏହି ଯୁଗର ଯଥାର୍ଥତା ଏବଂ ଅଭିମୁଖ୍ୟ ଉପଲବ୍‌ଧ ହୁଏ । ତଥାପି କେତେକ ଗବେଷକଙ୍କ ମତରେ ହିନ୍ଦୀ ରୀତିକାଳର ଲେଖକଗଣ ସଂସ୍କୃତ କାବ୍ୟ-ପରଂପରା ପ୍ରତି ଆକୃଷ୍ଟ ଥିଲେ ଏବଂ ସେମାନେ ହିନ୍ଦୀ ରୀତିକାବ୍ୟର କୌଣସି ଅଧିକ ସ୍ୱାତନ୍ତ୍ର୍ୟ ପ୍ରତିଷ୍ଠା କରି ପାରିନଥିଲେ ।

କୃପାରାମଙ୍କର 'ହିତ ତରଙ୍ଗିଣୀ', ଚିନ୍ତାମଣି ତ୍ରିପାଠୀଙ୍କର 'କାବ୍ୟ ବିବେକ', 'କବିକୁଳ-କଳ୍ପତରୁ' ଏବଂ 'କାବ୍ୟପ୍ରକାଶ' ପ୍ରକାଶିତ ହେବା ସଙ୍ଗେ ସଙ୍ଗେ ରୀତି ରଚନାର ଅଖଣ୍ଡ ସ୍ରୋତ ପ୍ରବାହିତ ହେଲା । କେଶବ ଦାସ 'ପୂର୍ବଧ୍ୱନି ଅଳଙ୍କାର-ବାଦ' ଗ୍ରହଣ କରିଥିଲେ । ଚିନ୍ତାମଣି କିନ୍ତୁ 'ରସଧ୍ୱନିବାଦ'କୁ ଗୁରୁତ୍ୱ ଦେଇଥିଲେ । ସେଥିପାଇଁ ସାଂସ୍କୃତିକ ପୃଷ୍ଠଭୂମିରେ ହିନ୍ଦୀ ସାହିତ୍ୟର ରୀତିକାବ୍ୟ ସମୂହକୁ ତିନି ଭାଗରେ ବିଭକ୍ତ କରାଯାଇଥାଏ । ପ୍ରଥମ ଅଧ୍ୟାୟର କବିଗଣ ସ୍ୱ ସ୍ୱ ରଚନାରେ 'କାବ୍ୟପ୍ରକାଶ' ଅନୁଯାୟୀ କାବ୍ୟର ଗୁଣ ଏବଂ ଶକ୍ତି ଆଲୋଚନା କରିଥିଲେ; ଯଥା—ଚିନ୍ତାମଣିଙ୍କର 'କବିକୁଳ-କଳ୍ପତରୁ', 'କାବ୍ୟବିବେକ', ସେନାପତିଙ୍କର 'କାବ୍ୟ କଳ୍ପଦ୍ରୁମ', ମୁରତି ମିଶ୍ରଙ୍କର 'କାବ୍ୟସିଦ୍ଧାନ୍ତ', ଶ୍ରୀପତିଙ୍କର 'କାବ୍ୟ ସରୋଜ' ରସିକ ଗୋବିନ୍ଦଙ୍କର 'ରସିକ ଗୋବିନ୍ଦାନନ୍ଦ ଘନ' । ଦ୍ୱିତୀୟ ମତବାଦର କବିଗଣ କାବ୍ୟରେ ଶୃଙ୍ଗାରରସର ଆଧିକ୍ୟ ସ୍ୱୀକାର କରିଥିଲେ । ସେହି ସୂତ୍ରରେ

ସେମାନଙ୍କ କାବ୍ୟରେ ନାୟିକାଭେଦ, ନାୟିକାରୂପ, ମିଳନ, ବିରହବର୍ଣ୍ଣନା ଅଗ୍ରସ୍ଥାନ ଅଧିକାର କରିଥିଲା । କେଶବଙ୍କର 'ରସିକପ୍ରିୟା', ମତିରାମଙ୍କର 'ରସରାଜ', ଶୁକଦେବ ମିଶ୍ରଙ୍କର 'ରସରତ୍ନାକର' ଏବଂ 'ରସାର୍ଣ୍ଣବ' ପଦ୍ମାକରଙ୍କର 'ଜଗଦ୍‌ବିନୋଦ' ଏବଂ ଅନ୍ୟ କେତେକ କବିଙ୍କର ରଚନା; ଯଥା—ଭାବବିଳାସ, ରସବିଳାସ, ଭବାନୀ ବିଳାସ, ରସ ଚନ୍ଦ୍ରୋଦୟ, ରସନିର୍ଣ୍ଣୟ, ସୁଧାନିଧି, ନବରସ ତରଙ୍ଗ ଏହି ପର୍ଯ୍ୟାୟରେ ଉଲ୍ଲେଖଯୋଗ୍ୟ । ତୃତୀୟ ମତବାଦର କବିମାନଙ୍କ ରଚନାରେ ଆଳଂକାରିତା ହିଁ ପ୍ରାଧାନ୍ୟ ଲାଭ କରିଥିଲା । କବି କାର୍ଣ୍ଣେଶଙ୍କର 'ଶ୍ରୁତିଭୂଷଣ' ମଧ୍ୟ ଉଲ୍ଲେଖଯୋଗ୍ୟ । ମୁରତି ମିଶ୍ରଙ୍କର 'ଅଲଙ୍କାରମାଳା', ରସିକ ସୁମତିଙ୍କର 'ଅଲଙ୍କାର ଚନ୍ଦ୍ରୋଦୟ', ଭୂପତିଙ୍କର 'କଣ୍ଠଭୂଷଣ' ଏବଂ ଶମ୍ଭୁନାଥ ମିଶ୍ରଙ୍କର 'ଅଲଙ୍କାରଦୀପକ'— ଏହି ଗୋଷ୍ଠୀର କବିମାନଙ୍କର ଦୃଷ୍ଟିକୋଣ ପ୍ରମାଣିତ କରିଥାଏ । ଏହି ତିନ ଗୋଷ୍ଠୀର କବିମାନେ ମୁଖ୍ୟତଃ ରୀତିକାବ୍ୟର ଭିନ୍ନ ଭିନ୍ନ ଦିଗ ନିର୍ଦ୍ଦେଶ କରିଥିଲେ; କିନ୍ତୁ ଭୂଷଣ, ମତିରାମ ଏବଂ ପ୍ରତାପ ସିଂହଙ୍କ ସଦୃଶ ଆଉ ଦଳେ ରସବାଦୀ କବି ଥିଲେ । ଯେଉଁମାନେ କି କାବ୍ୟର ସଂଜ୍ଞା ଏବଂ ଲକ୍ଷଣ ପାଇଁ ବ୍ୟସ୍ତ ନ ହୋଇ କାବ୍ୟର କଥାବସ୍ତୁ ଉପରେ ଗୁରୁତ୍ୱ ଦେଇଥିଲେ । ଏହିସବୁ ଆଲୋଚନାରୁ ଜଣାଯାଏ ଯେ ଶୃଙ୍ଗାରପନ୍ଥୀ କବିମାନେ ହିଁ ଯଥାର୍ଥରେ ହିନ୍ଦୀସାହିତ୍ୟରେ ରୀତିକାଳ କାବ୍ୟର ପ୍ରକୃତ ପ୍ରତିନିଧି ଥିଲେ ।

ରୀତିକାବ୍ୟର ସଂଜ୍ଞା, ଲକ୍ଷଣ, ପ୍ରକାରଭେଦର ଆଲୋଚନା ସତ୍ତ୍ୱେ କବି ବିହାରୀ ରୀତିକାବ୍ୟର ନିୟମ ମଧ୍ୟରେ ନିଜକୁ ସୀମିତ ନ କରି କାବ୍ୟକବିତା ଲେଖି ଏହି ଯୁଗରେ ସବୁଠାରୁ ଅଧିକ ଜନପ୍ରିୟ ହୋଇପାରିଥିଲେ । ନୂତନ ମାର୍ଗ ଏବଂ ନୂତନ ରୀତି ଯୋଗୁଁ ସାହିତ୍ୟରେ ନବଯୁଗର ସୂତ୍ରପାତ ହୁଏ । ମାତ୍ର ରୀତିଯୁଗରେ ହିନ୍ଦୀସାହିତ୍ୟରେ କୌଣସି ନବଚେତନା ଏବଂ ପୃଥକ ଆଙ୍ଗିକ ପ୍ରଦର୍ଶନ କରିପାରି ନ ଥିଲେ । ରୀତିଯୁଗ କବିମାନଙ୍କର ଏକମାତ୍ର ଉଦ୍ଦେଶ୍ୟ ଥିଲା ସାହିତ୍ୟ ମାଧ୍ୟମରେ ଶୃଙ୍ଗାରଜର୍ଜ୍ଜରିତ ରଚନାର ସୃଷ୍ଟି । ସେଥିପାଇଁ ମୌଳିକ କାବ୍ୟଶକ୍ତି ଅପେକ୍ଷା ଶୃଙ୍ଗାରବର୍ଣ୍ଣନାଗତ ଦକ୍ଷତା ହିଁ ଏହି ସମୟର କବିମାନଙ୍କ କୃତିରେ ପ୍ରତିଫଳିତ । କବିମାନଙ୍କର ଦର୍ଶନ ଏବଂ ଦୃଷ୍ଟିକୋଣ ଶୃଙ୍ଗାର ବର୍ଣ୍ଣନା ଦ୍ୱାରା ପ୍ରଭାବିତ । ଏହି ସବୁ ବିଷୟରେ ଏହି ରୀତିଯୁଗର କାବ୍ୟସମୂହର ଭାଷାର ଆଳଙ୍କାରିତା ଥିଲା ଏକ ବିଶିଷ୍ଟ ଆଭିମୁଖ୍ୟ । ଭକ୍ତିକାବ୍ୟସମୂହରେ ଯେଉଁ ଶୃଙ୍ଗାର ଭାବ ପ୍ରତିଫଳିତ ହୋଇଥିଲା, ତାହା ସାଧାରଣତଃ ଗୋଟାଏ ଆଧ୍ୟାତ୍ମିକ ଭାବଦ୍ୱାରା ଆଚ୍ଛାଦିତ ହୋଇଥିଲା । ଭକ୍ତିକାବ୍ୟରେ ଯେଉଁ ବ୍ୟକ୍ତିଗତ ଆତ୍ମସମର୍ପଣ ଭାବ ଅଧିକ ପରିସ୍ଫୁଟ ହୋଇଥିଲା, ରୀତିଯୁଗ କାବ୍ୟରେ କବିର କଳ୍ପନାବିଳାସ ଯୋଗୁଁ ହିଁ ଭାଷାର ଅଳଂକରଣ ମଣ୍ଡନ ଏବଂ ଚମତ୍କାରିତା ଆବଶ୍ୟକ ହୋଇଥିଲା ।

ନାୟକ-ନାୟିକାଙ୍କର ବିରହ, ମିଳନାତ୍ମକ ଆଲେଖ୍ୟ ପ୍ରଦାନ କରିବା ପାଇଁ ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାରର ପ୍ରାଧାନ୍ୟ କବିମାନେ ଯେପରି ସ୍ୱୀକାର କରିଥିଲେ ।

କେଶବଙ୍କ ପରେ ରୀତିକାବ୍ୟ ପରମ୍ପରାରେ ତ୍ରିପାଠୀ ଚାରିଭାଇଙ୍କର ନାମ ପ୍ରଥମେ ଉଲ୍ଲେଖଯୋଗ୍ୟ; ଯଥା—ଚିନ୍ତାମଣି, ନୀଳକଣ୍ଠ, ମତିରାମ (୧୬୧୭-୧୭୧୫), ଭୂଷଣ (୧୬୧୬-୧୭୧୪) । ସେମାନଙ୍କ ପିତା କନୌଜୀ ବ୍ରାହ୍ମଣ ରତ୍ନାକର ତ୍ରିପାଠୀ ଜଣେ ଦେବୀସାଧକ ଥିଲେ । ଦେବୀ ତାଙ୍କ ସାଧନାରେ ସନ୍ତୁଷ୍ଟ ହୋଇ ଏହି ଚାରିଗୋଟି ପୁତ୍ର ପ୍ରଦାନ କରିଥିଲେ । ଚିନ୍ତାମଣି ମମ୍ମଟ ଏବଂ ବିଶ୍ୱନାଥଙ୍କ ଅନୁସରଣ କରି ରସତତ୍ତ୍ୱ ଆଲୋଚନା କରିଥିଲେ । ମତିରାମ ପ୍ରଥମେ ମହାରାଜା ଭାବସିଂହ ଏବଂ ପରେ ସୋଲଙ୍କିର ରାଜା ଶମ୍ଭୁନାଥଙ୍କ ଦରବାରରେ ଅବସ୍ଥାନ କରିଥିଲେ । ତାଙ୍କର ଲଳିତ ଲଲମ ଛନ୍ଦସମ୍ପର୍କୀୟ ଗ୍ରନ୍ଥ । ଛନ୍ଦସାର ପିଙ୍ଗଳ, ସାହିତ୍ୟସାର, ଲକ୍ଷଣ ଶୃଙ୍ଗାର, ମତିରାମ ସତ୍ସାଏ, ରସରାଜ ମଧ୍ୟ ତାଙ୍କର ରଚନା । ସେ ଭାଷାର ସରଳତା ଏବଂ କୋମଳତା ଓ ଉପମାର ଚମତ୍କାରିତା ପାଇଁ ସୁପରିଚିତ ।

ଭୂଷଣ ବାଳକ ଅବସ୍ଥାରେ ବଡ଼ ଚପଳ ଏବଂ ଚଞ୍ଚଳପ୍ରକୃତିର ଥିଲେ । ଥରେ ସେ ଖାଇବସିଥିବା ସମୟରେ ଲୁଣ ମାଗିବାରୁ ତାଙ୍କ ଭାଉଜ ପାଟିକଲେ—"ପ୍ରଥମେ ନିଜର ପେଟ ପାଇଁ ରୋଜଗାର କର, ତାପରେ ପାଟିକରିବ ।" ଏହି ଘଟଣା ହିଁ ଭୂଷଣଙ୍କ ଜୀବନରେ ପରିବର୍ତ୍ତନ ଆଣିଥିଲା । ସେ ଗଭୀର ନିଷ୍ଠା ଏବଂ ଅଧ୍ୟବସାୟ ସହକାରେ ଅଧ୍ୟୟନ କଲେ ଏବଂ ତାଙ୍କର କାବ୍ୟକବିତା ଚିତ୍ରକୂଟର ରାଜା ରୁଦ୍ରଙ୍କୁ ମୁଗ୍ଧ କରିଥିଲା । ସେ ଉତ୍ତର ଦିଗକୁ ଯାତ୍ରାକରି ଆଉରଙ୍ଗଜେବଙ୍କୁ ଏବଂ ଦକ୍ଷିଣ ଦିଗକୁ ଯାତ୍ରାକରି ଦେବାଳୟରେ ଶିବାଜୀଙ୍କୁ ଭେଟିଥିଲେ ବୋଲି କୁହାଯାଏ । ସେ ୧୬୬୭ରେ 'ଶିବରାଜ ଭୂଷଣ' ଗ୍ରନ୍ଥ ଆରମ୍ଭ କରି ସାତବର୍ଷରେ ତାହା ସମାପ୍ତ କରିଥିଲେ । ଏହା ବିବିଧ ଛନ୍ଦରେ ଲିଖିତ ଏବଂ ଛନ୍ଦପଦ ଶିବାଜୀଙ୍କ ପ୍ରଶସ୍ତିରେ ପରିପୂର୍ଣ୍ଣ । ଏହାର ନାୟକ କବି ରାଜପୁତନା-ଭ୍ରମଣରେ ଯାଇ ସେଠାରେ ମଧ୍ୟ ନିଜ କାବ୍ୟକୌଶଳର ପରିଚୟ ଦେଇଥିଲେ । ଭୂଷଣ ତାଙ୍କର ପୃଷ୍ଠପୋଷକ ଗୁଣଗ୍ରାହୀ ଶିବାଜୀଙ୍କ ଦରବାରରେ ୧୬୮୦ ପର୍ଯ୍ୟନ୍ତ ବିଶିଷ୍ଟ ଆସନ ଅଧିକାର କରିଥିଲେ । ସେ ଶିବାଜୀଙ୍କ ସହିତ କେତେକ ଯୁଦ୍ଧକ୍ଷେତ୍ରକୁ ମଧ୍ୟ ଯାଇଥିଲେ । ୧୬୮୦ରୁ ୧୭୧୦ ମସିହା ମଧ୍ୟରେ ଭୂଷଣ ସ୍ଥାନୀୟ ବିଭିନ୍ନ ରାଜ-ଦରବାର ପରିଦର୍ଶନ କରିଥିଲେ ଏବଂ 'ଭୂଷଣ ଉଲ୍ଲାସ', ଓ 'ଦୂଷଣ ଉଲ୍ଲାସ' 'ଭୂଷଣହାଜରା' ଗ୍ରନ୍ଥ ଲେଖିଥିଲେ । ଭୂଷଣ ଯଥାର୍ଥରେ ହିନ୍ଦୁସ୍ଥାନର ମହିମାଗାନ କରିବାରେ ଜଣେ ସମର୍ଥ କବି ଥିଲେ ।

ଗୋରଲାଲ ପୁରୋହିତ ଭୂଷଣଙ୍କର ସମସାମୟିକ ଥିଲେ ଏବଂ ବୁନ୍ଦେଲ ନରପତି ଛତ୍ରଶାଳଙ୍କର ଏବଂ ପିତା ରାଜା ଚମ୍ପତରାୟଙ୍କର ଗରିମା ପ୍ରଦର୍ଶନ କରି ସେ 'ଛତ୍ରପ୍ରକାଶ' କାବ୍ୟ ରଚନା କରିଥିଲେ । ଏହା ବ୍ରଜଭାଷାରେ ଲିଖିତ ।

ଦେବ ନାମରେ ସୁପରିଚିତ ଦେବଦତ୍ତ (୧୬୭୩-୧୭୪୫) ପ୍ରାୟ ସରୁଶିଖଣ୍ଡ କାବ୍ୟକବିତା ଲେଖି ଅଷ୍ଟାଦଶ ଶତାବ୍ଦୀର ହିନ୍ଦୀସାହିତ୍ୟରେ ଆଲୋଡ଼ନ ସୃଷ୍ଟି କରିଥିଲେ । ଷୋଳବର୍ଷ ବୟସରେ ସେ 'ଭାବବିଳାସ' ରଚନା କରି ଯୁବରାଜ ଆଜିମସାହଙ୍କ ସମ୍ମୁଖରେ ଆବୃତ୍ତି କରିଥିଲେ । ନିଜର ଜଣେ ମନଲାଖି ପୃଷ୍ଠ-ପୋଷକ ପାଇବା ଆଶାରେ ଦେବ ବହୁ ରାଜଦରବାରରେ ଉପସ୍ଥିତ ହୋଇଥିଲେ । ତାଙ୍କର ପାଣ୍ଡିତ୍ୟ ଏବଂ ଛନ୍ଦଜ୍ଞାନ ଅସାଧାରଣ ଥିଲା । ସମ୍ଭବତଃ ଭାଷାକ୍ଲିଷ୍ଟତା, କଥାବସ୍ତୁ ଏବଂ ନଗ୍ନ ଶୃଙ୍ଗାର ବର୍ଣ୍ଣନା ଯୋଗୁଁ ତାଙ୍କ କାବ୍ୟସମୂହ ଅନ୍ୟ କବିମାନଙ୍କର ରଚନା ସଦୃଶ ପାଠକମାନଙ୍କୁ ଆକୃଷ୍ଟ କରି ପାରିନଥିଲା । ତାଙ୍କର ପ୍ରକାଶିତ କାବ୍ୟକୃତି ମଧ୍ୟରେ ଭାବବିଳାସ, ଭବାନୀବିଳାସ, ସୁଖସାଗରତରଙ୍ଗ, ଅଷ୍ଟୟାମ, ରାଗ ରତ୍ନାକର, ପ୍ରେମଚନ୍ଦ୍ରିକା, ଦେବ ଶତକ ପ୍ରଭୃତି ଉଲ୍ଲେଖଯୋଗ୍ୟ । ଭାବବିଳାସରେ କାବ୍ୟକଳା, ଅଷ୍ଟୟାମରେ ଦିନର ବର୍ଣ୍ଣନା, ଭବାନୀବିଳାସରେ ନବରସ ବିବୃତ୍ତି, ସୁଜନ ବିନୋଦରେ ପ୍ରେମ ଏବଂ ବିଭିନ୍ନ ସ୍ତ୍ରୀଙ୍କର ବର୍ଣ୍ଣନା, ପ୍ରେମତରଙ୍ଗରେ ନାୟିକାଭେଦ ସୂଚନା, ରାଗରତ୍ନାକରରେ ବିଭିନ୍ନ ରାଗରାଗିଣୀ ଏବଂ ସଙ୍ଗୀତର ବିବୃତି, କୁଶଳ ବିଳାସରେ ନାୟିକା-ବର୍ଣ୍ଣନା । ଦେବ ଚରିତରେ କଂସବଧ ବର୍ଣ୍ଣନା, 'ପ୍ରେମଚନ୍ଦ୍ରିକା'ରେ ଆସକ୍ତି, କାମ, ଶୃଙ୍ଗାର, କାରୁଣ୍ୟର ସୂଚନା, ବିରହ ଏବଂ ମିଳନାବସ୍ଥାରେ ପ୍ରେମର ସ୍ୱରୂପ ( ଏହି କାବ୍ୟରେ ଗୋପୀ ଏବଂ କୃଷ୍ଣଙ୍କର ପ୍ରେମବର୍ଣ୍ଣନା ମଧ୍ୟ ପରିଦୃଷ୍ଟ ), 'ଜାତି ବିଳାସ'ରେ ବିଭିନ୍ନ ସଂପ୍ରଦାୟର ସ୍ତ୍ରୀଙ୍କର ବର୍ଣ୍ଣନା, 'ରସବିଳାସ'ରେ ଭାବବିଳାସ ସଦୃଶ ନାୟିକା ବର୍ଣ୍ଣନା, କାବ୍ୟରସାୟନରେ ଅଳଙ୍କାର ବିବୃତି ଦେଖିବାକୁ ମିଳେ । ଦେବମାୟା ପ୍ରପଞ୍ଚ, ବୃକ୍ଷବିଳାସ, ପାବସବିଳାସ ପ୍ରଭୃତି ରଚନାରେ ଯଥାକ୍ରମେ ପାପପୁଣ୍ୟ ବିବୃତି, ବିଭିନ୍ନ ବୃକ୍ଷପରିଚୟ, ବର୍ଷାଋତୁର ବିବରଣୀ ପ୍ରଦତ୍ତ । ଦେବ ଏହିପରି ଜଣେ ପ୍ରଭାବଶାଳୀ କବି ଥିଲେ । ତାଙ୍କ ମୃତ୍ୟୁପରେ ସେହି ଯୁଗର ହିନ୍ଦୀ କାବ୍ୟ-କବିତାରେ ସେହି କଳ୍ପନା ଏବଂ ଆବେଗ ହ୍ରାସ ହୋଇଆସିଥିଲା ।

ନାଦିରସାହ ୧୭୩୯ ଖ୍ରୀଷ୍ଟାବ୍ଦରେ ଦିଲ୍ଲୀ ଆକ୍ରମଣ କରି 'ମୟୂରସିଂହାସନ' ଅଧିକାର କରିଥିଲେ ଏବଂ ତତ୍ ସଙ୍ଗେ ସଙ୍ଗେ ଆଉ ଜଣେ ବିଶିଷ୍ଟ କବିଙ୍କୁ ସମାଧି ଦେଇଥିଲେ ଏବଂ ସେହି କବି ଜଣଙ୍କ ହେଉଛନ୍ତି—'ଘନାନନ୍ଦ' (୧୬୮୯-୧୭୩୯) । କବିତା ଏବଂ ସଙ୍ଗୀତ ତାଙ୍କ ଜୀବନର ପ୍ରଧାନ ଅବଲମ୍ବନ ଥିଲା । ସମ୍ରାଟ୍ ମହମ୍ମଦ ସାହଙ୍କର ଦରବାରର ଜଣେ ସୁନ୍ଦରୀ ନର୍ତ୍ତକୀ 'ସୁଜାନ' ସହିତ ଘନାନନ୍ଦଙ୍କର

ଘନିଷ୍ଠତା ଥିଲା । କବି ଦେବଙ୍କ ସଦୃଶ ଘନାନନ୍ଦ ଜଣେ ବିଶିଷ୍ଟ ଲେଖକ ଥିଲେ । 'ସୁଜାନ ସାଗର' ତାଙ୍କ ଶ୍ରେଷ୍ଠ ରଚନା । ବିରହଲୀଳା ମଧ୍ୟ ତାଙ୍କର ବ୍ରଜଭାଷାରେ ଏକ କୃତି । କବି ମିଳନ ଅପେକ୍ଷା ବିରହ ବର୍ଣ୍ଣନାରେ ଅଧିକ ଆନନ୍ଦ ଉପଲବ୍ଧି କରୁଥିଲେ ।

ଗୁଲାମ ନବି ଓରଫ୍ ରସଲିନ୍ ବ୍ରଜଭାଷାରେ 'ଅଙ୍ଗଦର୍ପଣ' ଏବଂ 'ରସପ୍ରବୋଧ' ପୁସ୍ତକ ଲେଖିଥିଲେ । ବିହାରୀଙ୍କ ପରେ ରସଲିନ୍ ହିଁ ଜଣେ ପ୍ରସିଦ୍ଧ ଛନ୍ଦପ୍ରିୟ କବି ଥିଲେ । ମୀରାବାଈଙ୍କ ଜନ୍ମପୀଠର ଜଣେ କବି ହେଉଛନ୍ତି ବ୍ରିନ୍ଦ୍ । ତାଙ୍କର ରଚନାରେ ଅଳଙ୍କାରପ୍ରାଧାନ୍ୟ ପରିଦୃଷ୍ଟ । କବି ଆଲମ୍ ଜାତିରେ ବ୍ରାହ୍ମଣ ଥିଲେ । ପରେ ଜଣେ ମୁସଲମାନ ବାଳିକା ପ୍ରେମରେ ପଡ଼ି ତାକୁ ବିବାହ କରିଥିଲେ । ଉଭୟେ ବହୁ କବିତା ରଚନା କରିଥିଲେ ।

ନାଗରି ଦାସ (୧୬୯୯-୧୭୬୪)ଙ୍କର ପ୍ରକୃତ ନାମ ହେଉଛି ସାବନ୍ତ ସିଂହ । ସେ ଏକାଧାରରେ ଜଣେ ରାଜା ଏବଂ ଶ୍ରେଷ୍ଠ କବି ଥିଲେ । ଗିରିଧର (୧୭୧୩ରେ ଜନ୍ମ) ହିନ୍ଦୀ ସାହିତ୍ୟରେ କୁଣ୍ଡଳିୟା ବୃତ୍ତର ପ୍ରବର୍ତ୍ତକ ଥିଲେ । ସୁଦାନ ବୀରଶୈଳୀରେ କାବ୍ୟ ରଚନା କରିଥିଲେ । ଭିକାରି ଦାସ ଛନ୍ଦ ପ୍ରକାଶ, କାବ୍ୟ ନିର୍ଣ୍ଣୟ, ଶୃଙ୍ଗାର ନିର୍ଣ୍ଣୟ ପ୍ରଭୃତି ପୁସ୍ତକ ରଚନା କରିଥିଲେ । ସେ ହିନ୍ଦୀ ଭାଷାରେ ପ୍ରଥମ ଅଭିଧାନ 'ନାମ ପ୍ରକାଶ'ର ପ୍ରଣେତା ଥିଲେ । ତାଙ୍କର 'ରସ-ସାରାଂଶ' ବିଭିନ୍ନ କବିଙ୍କର ପରିଚୟ ପଞ୍ଜିକା । ଦୁଲହା କାବ୍ୟାଳଙ୍କାର ସଂପର୍କରେ ଏକ ପ୍ରାମାଣିକ ଗ୍ରନ୍ଥ ରଚନା କରିଥିଲେ । ତାହାର ନାମ ହେଉଛି 'କବିକୁଳକଣ୍ଠାଭରଣ' ।

ବେଣୀ (୧୭୯୨-୧୮୧୭) ରାଏବେରଲି ଜିଲ୍ଲାର ବେତି ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ଲକ୍ଷ୍ନୌର ଆସଫ୍ ଉଦ୍ଦୌଲଙ୍କ ଦେବାନ ଟୀକାୟତ ରାୟଙ୍କ ଦରବାର ସହିତ ସେ ସଂପୃକ୍ତ ଥିଲେ । ତାଙ୍କର ପୁସ୍ତକ 'ରସବିଳାସ'ରେ କାବ୍ୟର ବିଭିନ୍ନ ରଚନାଶୈଳୀ ଟୀକାୟତ ରାୟ ପ୍ରକାଶରେ କାବ୍ୟତତ୍ତ୍ୱ ସଂପର୍କରେ ଆଲୋଚନା କରାଯାଇଛି । ବେଣୀଙ୍କ ସାହିତ୍ୟସୃଷ୍ଟିର ବିଶେଷତ୍ୱ ହେଉଛି ତାଙ୍କର ଏକାନ୍ତ ହାସ୍ୟରସ । ବିଶେଷତଃ ପ୍ରାଚୀନ ହିନ୍ଦୀ ସାହିତ୍ୟରେ ହାସ୍ୟରସର ଅଭାବ-ଦୃଷ୍ଟେ ତାଙ୍କର ବ୍ୟଙ୍ଗାତ୍ମକ ରଚନାର ମୂଲ୍ୟ ସ୍ୱୀକାର୍ଯ୍ୟ ।

ମଥୁରାବାସୀ କବି ଗୋଏଲ୍ (୧୮୨୨-୧୮୭୧) କବି ପଦ୍ମାକରଙ୍କର ସମସାମୟିକ ଥିଲେ । କାବ୍ୟକଳା ସମ୍ବନ୍ଧୀୟ ତାଙ୍କର କୃତି ରସିକାନନ୍ଦ, ରସରଂଗ, ସାହିତ୍ୟ ଭୂଷଣ, ସାହିତ୍ୟ ଦର୍ପଣ ଏବଂ ତାଙ୍କର କାବ୍ୟକୌଶଳ ଉଲ୍ଲେଖଯୋଗ୍ୟ । ତାଙ୍କର 'ଯମୁନା ଲହରୀ' ଏକ ସୁପାଠ୍ୟ କୃତି । ଏହା ରୀତ-

ବର୍ଣ୍ଣନାରେ ପୂର୍ଣ୍ଣ । ତାଙ୍କର ଶ୍ରେଷ୍ଠ ରଚନାର ସଙ୍କଳନ 'କବି-ହୃଦୟ-ବିନୋଦ' ନାମରେ ଏବେ ପ୍ରକାଶିତ ।

ବନ୍ଦାବାସୀ ପଦ୍ମାକର (୧୭୫୩-୧୮୩୩) କାବ୍ୟର ଆଙ୍ଗିକ ଏବଂ ଆଲଂକାରିକ ଶୈଳୀ ସମ୍ପର୍କରେ ସଚେତନ କବି-ପରଂପରାରେ ଶେଷକବି । ସେଥିପାଇଁ ତାଙ୍କ ରଚନା ଆଲଂକାରିକ ଯୁଗର ବଳିଷ୍ଠତା ଏବଂ ଦୁର୍ବଳତା ମଧ୍ୟ ପ୍ରକାଶ କରିଥିଲା । ପଦ୍ମାକର ନାଗପୁର, ଜୟପୁର, ଗୋଆଲିୟର ପ୍ରଭୃତି ରାଜଦରବାରରେ ପୁରସ୍କୃତ ହୋଇଥିଲେ । ତାଙ୍କର ପ୍ରଥମ କାବ୍ୟିକ ରଚନା ଅଯୋଧ୍ୟା ରାଜାଙ୍କ ସେନାପତି ହିମତ୍ ବାହାଦୁରଙ୍କୁ ଲକ୍ଷ୍ୟ କରି ଲିଖିତ । କବି ମତିରାମଙ୍କ 'ରସରାଜ' ସଦୃଶ ତାଙ୍କର 'ଜଗତ-ବିନୋଦ' କାବ୍ୟକଳା ସମ୍ବନ୍ଧୀୟ ରଚନା ଏବଂ ଜୟପୁର ରାଜାଙ୍କ ନାମରେ ଉତ୍ସୃଷ୍ଟ । କବି 'ପଦ୍ମାଭରନ' କାବ୍ୟରେ ଯେଉଁ ସୌନ୍ଦର୍ଯ୍ୟ ଏବଂ ଭାଷାନୈପୁଣ୍ୟ ପ୍ରଦର୍ଶନ କରିଥିଲେ, ସେଥିଯୋଗୁଁ ତାଙ୍କୁ ତୁଳସୀଦାସଙ୍କ ସହିତ ତୁଳନା କରାଯାଇପାରେ । କବି ଗୋଆଲିୟର ଦରବାରରେ ଅବସ୍ଥାନ କରିବା ସମୟରେ ସଂସ୍କୃତର ହିତୋପଦେଶ ଅନୁବାଦ କରିଥିଲେ । ଏହା ପରେ ସ୍ୱଗ୍ରାମକୁ ପ୍ରତ୍ୟାବର୍ତ୍ତନ କରି ପଦ୍ମାକର ଧର୍ମତତ୍ତ୍ୱ ଏବଂ ନୀତିବାଦ ପ୍ରସଙ୍ଗରେ ଆଲୋଚନା କରିଥିଲେ । ତାହାର ପରିଣତି ହେଉଛି ତାଙ୍କର 'ପ୍ରବୋଧ-ପଚୀଶି' । କାନପୁର ନିକଟସ୍ଥ ଗଙ୍ଗା ନଦୀକୂଳରେ ଦୀର୍ଘ ସାତବର୍ଷ ସେ ଅତିବାହିତ କରିଥିଲେ ଏବଂ ସେହି ସମୟରେ ଗଙ୍ଗା ନଦୀର ସୌନ୍ଦର୍ଯ୍ୟ ଏବଂ ମାହାତ୍ମ୍ୟ ବ୍ୟାଖ୍ୟାନ କରି ସେ କତିପୟ ପଦ୍ୟ ଲେଖିଥିଲେ । ତାହାର ନାମ—'ଗଙ୍ଗା ଲହରୀ' । ବାଲ୍ମୀକିଙ୍କର ରାମାୟଣ ଅନୁସରଣରେ ଲିଖିତ 'ରାମରସାୟନ' ତାଙ୍କର ରଚନା ବୋଲି ବିଶ୍ୱାସ କରାଯାଏ । କବି ବିହାରୀଙ୍କ ସଦୃଶ ପଦ୍ମାକର କାବ୍ୟର ଅଳଂକରଣ କ୍ଷେତ୍ରରେ ସିଦ୍ଧହସ୍ତ ଥିଲେ ।

ହିନ୍ଦୀ ସାହିତ୍ୟର ଶେଷ ମଧ୍ୟଯୁଗର ଇତିହାସରେ କେତେକ ନାରୀକବିଙ୍କର ରଚନା ପରିଲକ୍ଷିତ ହୁଏ । ସେମାନଙ୍କର ରଚନାବଳୀ ବିଶେଷମାନଙ୍କରେ ଭକ୍ତି-ପ୍ରଣୋଦିତ । ନିର୍ଗୁଣ ସମ୍ପ୍ରଦାୟର କାବ୍ୟକବିତା ମଧ୍ୟରେ ସହଜବାଇର ଏବଂ ଦୟା ବାଈଙ୍କର କବିତା ଉଲ୍ଲେଖଯୋଗ୍ୟ । 'ଧାମୀ ପନ୍ଥା'ର ପ୍ରତିଷ୍ଠାତା ପ୍ରାଣନାଥଙ୍କର ପତ୍ନୀ ଇନ୍ଦ୍ରମତୀଙ୍କର ରଚନା ମଧ୍ୟ ଏଠାରେ ସ୍ମରଣୀୟ । 'ସଗୁଣ' ପରଂପରାଧର୍ମୀ କାବ୍ୟକବିତା ପରିସରରେ ଗଙ୍ଗା ବାଈ କୃଷ୍ଣଭକ୍ତିମୂଳକ କବିତା ରଚନା କରିଥିଲେ । ସେ ବଲ୍ଲଭାଚାର୍ଯ୍ୟଙ୍କ ମତିବାଦଦ୍ୱାରା ପ୍ରଭାବିତ ହୋଇଥିଲେ । 'ନିମ୍ବାର୍କ'ଙ୍କ ଆଦର୍ଶ ସେହିପରି କେତେକ ନାରୀକବିଙ୍କୁ ଉଦ୍‌ବୁଦ୍ଧ କରିଥିଲା । ସେମାନଙ୍କ ମଧ୍ୟରେ ସୁନ୍ଦରୀ କୁନ୍ୱରୀ ବାଈ, ବିଶେଷତଃ ସାଧିକା ମୀରାବାଈଙ୍କର ନାମ ଉଲ୍ଲେଖ କରାଯାଏ । ଶୃଙ୍ଗାରଯୁଗର କାବ୍ୟରଚନା କୌଶଳ ଏବଂ ଶବ୍ଦ-

ପାଣ୍ଡିତ୍ୟ ପ୍ରତି ନାୟିକାମାନେ ଆକୃଷ୍ଟ ନ ଥିଲେ । ସନ୍ତକବି ଗୋସ୍ୱାମୀ ତୁଳସୀ ଦାସଙ୍କ ପତ୍ନୀ 'ରତ୍ନାବଳୀ' ନୀତି ସାହିତ୍ୟ ରଚନାରେ ଦକ୍ଷତା ପ୍ରଦର୍ଶନ କରିଥିଲେ ।

## ଆଧୁନିକ ଯୁଗ

ଭାରତବର୍ଷରେ ଇଂରେଜମାନଙ୍କର ରାଜନୈତିକ ଶାସନ ପ୍ରବର୍ତ୍ତନ, ସେହି ସୂତ୍ରରେ ଇଂରେଜୀ ଶିକ୍ଷା, ଭାଷା ଏବଂ ସାହିତ୍ୟର ପ୍ରସାର ଭାରତୀୟ ପ୍ରାଦେଶିକ ସାହିତ୍ୟରେ ପ୍ରାଚୀନ ପରଂପରା ପରିବର୍ତ୍ତେ ନବଯୁଗର ସୂତ୍ରପାତ କରିଥିଲା । ହିନ୍ଦୀ ସାହିତ୍ୟରେ ଏହା ଆଧୁନିକ ଯୁଗର ନବଚେତନା ପର୍ଯ୍ୟାୟ ବୋଲି ଚିହ୍ନିତ କରାଯାଇଛି । ଗଦ୍ୟ-ସାହିତ୍ୟର ବିକାଶ ହିଁ ଏହି ଆଧୁନିକତାର ଥିଲା ପ୍ରଥମ ନିଦର୍ଶନ । ପ୍ରାଚୀନ ଏବଂ ମଧ୍ୟ ଯୁଗରେ କାବ୍ୟିକବିତାର ଆଦୌ ଅଭାବ ନ ଥିଲା । ବରଂ ସରଳ, ପ୍ରାଞ୍ଜଳ, ଶୃଙ୍ଖଳିତ ଏବଂ ବୈଚିତ୍ର୍ୟପୂର୍ଣ୍ଣ ଆଧୁନିକ ଗଦ୍ୟର ଏକାନ୍ତ ଅଭାବ ଥିଲା । ତେଣୁ ଗଦ୍ୟ ରଚନାର ବିବିଧ ରୂପ ସ୍ୱରୂପ ଯେତେବେଳେ ଉପନ୍ୟାସ, ଗଳ୍ପ, ପ୍ରବନ୍ଧ, ନାଟକ ପ୍ରଭୃତିର ଲେଖା ଆରମ୍ଭ ହେଲା, ସେହି ସମୟରେ ସାହିତ୍ୟର ରୂପରଂଗ ପରିବର୍ତ୍ତିତ ହେଲା । ଆବେଗ ପରିବର୍ତ୍ତେ ଚିନ୍ତା, ଧ୍ୟାନ ହିଁ ସାହିତ୍ୟରେ ମୁଖ୍ୟସ୍ଥାନ ଅଧିକାର କଲା । ତେଣୁ ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ହିନ୍ଦୀ ସାହିତ୍ୟରେ କ୍ରମଶଃ ନୂତନ ଆଭିମୁଖ୍ୟ ପ୍ରତିଫଳିତ ହୋଇଥିଲା ।

୧୭୦୭ ଖ୍ରୀଷ୍ଟାବ୍ଦରେ ଆଉରଙ୍ଗଜେବଙ୍କ ମୃତ୍ୟୁ ପରେ ମୋଗଲ ସାମ୍ରାଜ୍ୟର ପତନ ଯୋଗୁଁ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟର ଉତ୍ପତ୍ତି ହୋଇଥିଲା । ବ୍ୟବସାୟ-ବାଣିଜ୍ୟ ଏବଂ ଶିଳ୍ପକ୍ଷେତ୍ରରେ ମଧ୍ୟ ଅବନତି ଘଟିଥିଲା । ୧୭୫୭ ମସିହାର ପଲାସିଯୁଦ୍ଧ ପରେ ବ୍ୟବସାୟୀ ଇଷ୍ଟ ଇଣ୍ଡିଆ କମ୍ପାନୀ ଯେତେବେଳେ ଭାରତର ଶାସନ କ୍ଷମତା ଅଧିକାର କଲେ, ସେତେବେଳେ ଦେଶରେ ପୁନର୍ବାର ଆଉ ଏକ ପରିବର୍ତ୍ତନର ସ୍ରୋତ ପ୍ରବାହିତ ହେଲା । ଦେଶର ଶାସନ କ୍ଷମତା ଗ୍ରହଣ କରିବାପରେ ଇଂରେଜ-ମାନେ ଭାରତବର୍ଷର ଶିକ୍ଷାର ଉନ୍ନତି ଏବଂ ସମାଜ ସଂସ୍କାର ପ୍ରତି ଦୃଷ୍ଟି ଦେଲେ । ଏହି ପରିପ୍ରେକ୍ଷୀରେ ଭାରତୀୟ ପ୍ରାଦେଶିକ ଭାଷାମାନଙ୍କର ଉନ୍ନତି ସାଧନ ସେତେବେଳେ ଏକ ପ୍ରଧାନ କାର୍ଯ୍ୟ ବୋଲି ସମସ୍ତେ ଉପଲବ୍ଧି କରିଥିଲେ ।

କଲିକତାରେ ପ୍ରତିଷ୍ଠିତ ଫୋର୍ଟ ଉଇଲିୟମ୍ କଲେଜ୍ ଏତାଦୃଶ କାର୍ଯ୍ୟରେ ସେତେବେଳେ ପ୍ରଧାନ ସହାୟକ ହୋଇଥିଲା । କଲେଜର ଅଧ୍ୟକ୍ଷ ଡକ୍ଟର ଜନ୍ ଗିଲକ୍ରାଇଷ୍ଟ ୧୮୦୩ ମସିହାରେ ଦଳେ ପଣ୍ଡିତଙ୍କୁ ସ୍ଥାନୀୟ ଭାଷାରେ ଇଂରେଜ କର୍ମଚାରୀଙ୍କ ପାଇଁ ପାଠ୍ୟପୁସ୍ତକ ଲେଖିବା ପାଇଁ ନିଯୁକ୍ତ କରିଥିଲେ । ତାଙ୍କର ତତ୍ତ୍ୱାବଧାନରେ ହିନ୍ଦୀରେ ଆଗ୍ରାର ଲଲୁଜୀ ଲାଲ (୧୭୬୩-୧୮୨୫) ଏବଂ

ସଦଲ ମିଶ୍ର ଯଥାକ୍ରମେ 'ପ୍ରେମ ସାଗର' ଏବଂ 'ନଚକେତା ଉପାଖ୍ୟାନ' ପ୍ରଣୟନ କରିଥିଲେ । ଏହି ପୁସ୍ତକର ଭାଷା 'ଖଡ଼ିବୋଲି' ।

ପ୍ରାଚୀନ ହିନ୍ଦୀ ସାହିତ୍ୟରେ ଗଦ୍ୟରଚନା ବିରଳ ବୋଲି କୁହାଯାଇପାରେ । ଗଦ୍ୟ ନାମରେ ଯେଉଁ କେତେକ ରଚନା ପ୍ରଚଳିତ, ତାହାର ସାହିତ୍ୟିକ ମୂଲ୍ୟ ଅପେକ୍ଷା ଐତିହାସିକ ମୂଲ୍ୟ ବରଂ ଅଧିକ । ସେହି ପ୍ରାଚୀନ ଗଦ୍ୟ କାବ୍ୟଧର୍ମୀ ଥିଲି ବୋଲି କୁହାଯାଇପାରେ । ଗୋରଖନାଥଙ୍କ ଶିଷ୍ୟମାନେ ଗୁରୁଙ୍କ ଆଦର୍ଶ ପ୍ରଚାର କରିବାଲାଗି ପଦ୍ୟ ରଚନାର ଆଶ୍ରୟ ନେଇଥିଲେ । ଏହା ପ୍ରାୟ ପଞ୍ଚଦଶ ଶତାବ୍ଦୀର କଥା । ବିଟ୍ଠଲନାଥ ମଧ୍ୟ ତାଙ୍କର 'ପୁଷ୍ଟି' ଆଦର୍ଶ ପ୍ରଚାର ପାଇଁ ଗଦ୍ୟ ବ୍ୟବହାର କରିଥିଲେ । ତାଙ୍କର 'ଶୃଙ୍ଗାରରସ ମଣ୍ଡନ' ସରଳ ଗଦ୍ୟରେ ରାଧାକୃଷ୍ଣଙ୍କ କାହାଣୀ ବର୍ଣ୍ଣିତ । 'ଯମୁନାଷ୍ଟକ' ଏବଂ 'ନବରତ୍ନ' ମଧ୍ୟ ତାଙ୍କର ରଚନା । ତାଙ୍କ ପୁତ୍ର ଗୋକୁଳନାଥ ଚୌରାଅଶି ଜଣ ବୈଷ୍ଣବ ସନ୍ନ୍ୟାସୀଙ୍କର ଜୀବନୀ 'ଚୌରାଶି ବୈଷ୍ଣବ କୀ ବାର୍ତ୍ତା' ନାମରେ ରଚନା କରିଥିଲେ । ତାଙ୍କର ଏହି ରଚନାରେ ବହୁ ବିଦେଶୀ ଶବ୍ଦର ବ୍ୟବହାର ଦେଖାଯାଏ । ଗୋକୁଳନାଥଙ୍କର ଶିଷ୍ୟମାନେ ଗୁରୁଙ୍କ ମୂଳରଚନା ଅବଲମ୍ବନରେ ଆଉ କେତେକ ଜୀବନୀ ପ୍ରଣୟନ କରିଥିଲେ । ଏହା ସବୁ ଥିଲି ବ୍ରଜଭାଷାର ଗଦ୍ୟ । ପ୍ରାଚୀନ ଯୁଗର ଗୋରଖନାଥ ଏବଂ ଗୋକୁଳନାଥଙ୍କର ଗଦ୍ୟରଚନା ଧାରାଠାରୁ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ଧାରରେ ଊନବିଂଶ ଶତାବ୍ଦୀରେ ହିଁ ଗଦ୍ୟରଚନା ଆରମ୍ଭ ହୋଇଥିଲି । ଏହାର ଭାଷା ଥିଲି 'ଖଡ଼ିବୋଲି' । 'ଖଡ଼ିବୋଲି' ଭାଷା ଦିଲ୍ଲୀର ଚତୁଃପାର୍ଶ୍ୱରେ ଏକଶତ ମାଇଲବ୍ୟାପୀ ଅଞ୍ଚଳରେ ତ୍ରୟୋଦଶ ଶତାବ୍ଦୀରେ କଥିତ ହେଉଥିଲି । ମୁସଲମାନମାନେ ଉତ୍ତର-ପଶ୍ଚିମ ଦିଗରୁ ଆସି ପ୍ରଥମେ ଦିଲ୍ଲୀରେ ଅବସ୍ଥାନ କରିବା ସମୟରେ ଏହି ଭାଷା ଗ୍ରହଣ କରି ନେଇଥିଲେ । କ୍ରମେ ଏହି ଭାଷାରେ ତୁର୍କୀ ପାର୍ଶୀ ଭାଷାର ବହୁ ଶବ୍ଦ ସଂଗୃହୀତ ହେଲି । ସାହାଜାହାନଙ୍କ ସୈନ୍ୟମାନେ ଏହି ଭାଷାକୁ 'ଉର୍ଦ୍ଦୁ' ବୋଲି ନାମିତ କରିଥିଲେ । ଉର୍ଦ୍ଦୁର ଅର୍ଥ ହେଉଛି ଶିବିର । ସମ୍ଭବତଃ ଶିବିରରେ ପ୍ରଚଳିତ ହୋଇଥିବାରୁ ଏହି ଭାଷା ଉର୍ଦ୍ଦୁ ନାମରେ ଚଳିତ । ମୁସଲମାନ କବିଗଣ ଏହି ଭାଷାରେ କାବ୍ୟକବିତା ରଚନା କରିଥିଲେ; କିନ୍ତୁ ହିନ୍ଦୁ କବିଗଣ 'ବ୍ରଜଭାଷା'କୁ ପସନ୍ଦ କରିଥିଲେ ।

ଯେତେ କର୍କଶ ଏବଂ କଠିନ ହେଲେ ମଧ୍ୟ 'ଖଡ଼ିବୋଲି' ସାଧାରଣ କଥିତ ଭାଷା ଥିଲି । ଇଂରେଜମାନେ ଏହି ଭାଷାରେ ପାଠ୍ୟ ପୁସ୍ତକ ଲେଖିବା ପାଇଁ ସ୍ଥାନୀୟ ପଣ୍ଡିତମାନଙ୍କୁ ଉତ୍ସାହିତ କରିଥିଲେ । ପୂର୍ବୋକ୍ତ ଗଙ୍ଗକବି ଦିଲ୍ଲୀର କଥିତ ଭାଷାରେ 'ଚନ୍ଦ ଛନ୍ଦ ବର୍ଣ୍ଣନା କୀ ମହିମା' ପୁସ୍ତକ ଲେଖିଥିଲେ ଏବଂ ଖଡ଼ିବୋଲି ଗଦ୍ୟର ଏହାହିଁ ହେଉଛି ପ୍ରଥମ ରଚନା । ତତ୍‌ପରେ ଜାଟମଲଙ୍କ କୃତ ଚଟୋରର

ରକ୍ଷାପାଇଁ ରତନସେନଙ୍କ ସେନାପତିଦ୍ୱୟଙ୍କ ବୀରତ୍ୱ କାହାଣୀସୂଚକ 'ଗୋରା-ବାଦଲ କୀ କଥା' (୧୬୨୭) ଖଡ଼ିବୋଲିରେ ଲିଖିତ ଦ୍ୱିତୀୟ ରଚନା ।

ପାଟିଆଲା ରାଜଦରବାରର ରାମପ୍ରସାଦ ୧୭୭୧ ଖ୍ରୀଷ୍ଟାବ୍ଦରେ ରାଜାଙ୍କ ଅନୁରୋଧକ୍ରମେ 'ଯୋଗବାଶିଷ୍ଠ' ଗଦ୍ୟରେ ରଚନା କରିଥିଲେ । ରାଣୀଙ୍କର ଚିତ୍ତବିନୋଦନ ଥିଲା ଏହି ନୀତିଗଳ୍ପ-ସମ୍ବଳିତ ରଚନାର ଉଦ୍ଦେଶ୍ୟ । ପଣ୍ଡିତ ଦୌଲତରାମଙ୍କ ଦ୍ୱାରା ସଂସ୍କୃତ ପଦ୍ମପୁରାଣର ଗଦ୍ୟାନୁବାଦ, ମୁନ୍‌ସି ସଦାସୁଖଲାଲଙ୍କ ଦ୍ୱାରା ବିଷ୍ଣୁପୁରାଣର କେତେକ ଉପାଖ୍ୟାନର ଗଦ୍ୟାନୁବାଦ ମଧ୍ୟ ଉଲ୍ଲେଖ କରାଯାଇଥାଏ । ଇନ୍‌ସା ଆଲ୍ଲା କବି ହେଲେ ହେଁ ହିନ୍ଦୀ ଗଦ୍ୟରଚନାରେ ମଧ୍ୟ ହାତ ଦେଇଥିଲେ । ତାଙ୍କ ପିତା ମୀରମାସା ଅଲ୍ଲାଖାଁ କାଶ୍ମୀରରୁ ଆସି ଦିଲ୍ଲୀରେ ବସବାସ କରିଥିଲେ ଏବଂ ସେ ଦିଲ୍ଲୀ ସମ୍ରାଟଙ୍କର ଚିକିତ୍ସକ ଥିଲେ । ପରେ ୧୭୪୮ରେ ମହମ୍ମଦ ସାହାଙ୍କ ମୃତ୍ୟୁପରେ ମାସା ଆଲ୍ଲା ବଙ୍ଗଳା ନବାବ ସିରାଜୌଦ୍ଦୌଲଙ୍କ ସାହାଯ୍ୟରେ ମୁର୍ଶିଦାବାଦଠାରେ ବସବାସ କରିଥିଲେ । ମୁର୍ଶିଦାବାଦଠାରେ ଇନ୍‌ସା ଆଲ୍ଲାଙ୍କର ଜନ୍ମ ହୋଇଥିଲା । ଦେଶରେ ରାଜନୈତିକ ଅବସ୍ଥାର ପରିବର୍ତ୍ତନ ସଙ୍ଗେ ଇନ୍‌ସା ଆଲ୍ଲା ମଧ୍ୟ ଦିଲ୍ଲୀ, ଲକ୍ଷ୍ନୌ ପ୍ରଭୃତି ସ୍ଥାନ ପରିଦର୍ଶନ କରିଥିଲେ । ହିନ୍ଦୀର ପ୍ରଥମ ଉପନ୍ୟାସ 'ରାନୀ କେତକୀ କୀ କାହାନୀ' (୧୮୦୦) ଇନ୍‌ସା ଆଲ୍ଲାଙ୍କର କୃତି । ସେ ସଂସ୍କୃତ, ପାର୍ଶି ଏବଂ ଅବଧି ଭାଷାରୁ ବହୁ ଶବ୍ଦ ବ୍ୟବହାର କରି ହିନ୍ଦୀ ଗଦ୍ୟର ପରିସର ବୃଦ୍ଧି କରିଥିଲେ ।

'ପ୍ରେମସାଗର' (୧୮୦୪ରେ ଆରମ୍ଭ, ୧୮୧୦ରେ ସମାପ୍ତ) ଭାଗବତ ପୁରାଣର ଦଶମ ସ୍କନ୍ଧର ଗଦ୍ୟାନୁବାଦ ଏବଂ ଏହା ପୂର୍ବର ଚତୁର୍ଭୁଜ ମିଶ୍ରଙ୍କ ବ୍ରଜଭାଷା ସଂସ୍କରଣ ଉପରେ ଆଧାରିତ । ଏତଦ୍‌ବ୍ୟତୀତ ଲଲୁଜୀଙ୍କର ଆଉ କେତେକ ଗଦ୍ୟଲେଖା ଦେଖିବାକୁ ମିଳେ; ଯଥା—ହିତୋପଦେଶ, ପଞ୍ଚତନ୍ତ୍ର ଅବଲମ୍ବନରେ ଲିଖିତ ରାଜନୀତି, ସିଂହାସନ ବତିଶି, ବୈତାଳ ପଚିଶି, ଲାଲଚନ୍ଦ୍ରିକା (କବି ବିହାରୀଙ୍କ 'ସତସାଏ'ର ଭାଷ୍ୟ), ସଭାବିଳାସ (ପଦ୍ୟ) ।

ମୋଗଲମାନଙ୍କ ଶାସନକାଳରେ ସଂସ୍କୃତ, ଆରବୀ ଏବଂ ପାର୍ଶି ଭାଷା ଉପରେ ଅଧିକ ଗୁରୁତ୍ୱ ଦିଆଯାଇଥିଲା । ଇଂରେଜମାନେ ଶାସନ କ୍ଷମତା ଗ୍ରହଣ କରିବା ପରେ ସ୍ଥାନୀୟ ମାତୃଭାଷା ସମୂହର ଉନ୍ନତି ନିମନ୍ତେ ତତ୍ପର ହୋଇଥିଲେ । ଚାର୍ଲସ ଗ୍ରାଣ୍ଟ ନାମକ ଜନୈକ ଉଚ୍ଚ କର୍ମଚାରୀ ଇଂଲଣ୍ଡର ହାଉସ ଅଫ୍ କମନ୍‌ସ୍ ଏବଂ କମ୍ପାନି ଡିରେକ୍ଟରଙ୍କୁ ପ୍ରସ୍ତାବ ଦେଇଥିଲେ ଯେ, ଭାରତର ନିରକ୍ଷରତା ଏବଂ ସମାଜର କୁସଂସ୍କାର ଦୂର କରିବା ଲାଗି ବ୍ୟାପକ ଶିକ୍ଷା ଯୋଜନା ଆବଶ୍ୟକ । ଗ୍ରାଣ୍ଟଙ୍କ ପ୍ରସ୍ତାବ ପ୍ରତି କେହି ଧ୍ୟାନ ଦେଇ ନ ଥିଲେ; ଅଥଚ ଖ୍ରୀଷ୍ଟିୟାନ୍ ମିଶନାରୀ-

ମାନେ ଭାରତବର୍ଷରେ ଶିକ୍ଷା ପ୍ରଚାର କାର୍ଯ୍ୟ ନିଷ୍ଠାର ସହିତ ଆରମ୍ଭ କରିଥିଲେ । ସେମାନଙ୍କ ମଧ୍ୟରେ ଇଂଲଣ୍ଡର ମୋଚି ବାଳକ ଉଇଲିୟମ କେରିଙ୍କ ନାମ ସର୍ବାଗ୍ରେ ଉଲ୍ଲେଖଯୋଗ୍ୟ । କେରି ୧୭୯୩ ଖ୍ରୀଷ୍ଟାବ୍ଦରେ କଲିକତାରେ ପଦାର୍ପଣ କରିଥିଲେ । ପ୍ରଥମାବସ୍ଥାରେ କଲିକତା ନିକଟବର୍ତ୍ତୀ ଶ୍ରୀରାମପୁର ହିଁ କେରି ଏବଂ ତାଙ୍କ ସହକର୍ମୀ-ମାନଙ୍କର କର୍ମକେନ୍ଦ୍ର ଥିଲା । ସେହି କେରି ସ୍ଥାନୀୟ ପଣ୍ଡିତମାନଙ୍କ ସାହାଯ୍ୟରେ ହିନ୍ଦୀ ଭାଷାରେ ସମଗ୍ର ବାଇବଲ୍ ଅନୁବାଦ ୧୮୧୮ରେ ସମ୍ପୂର୍ଣ୍ଣ କରିଥିଲେ । ୧୮୦୯ରେ ସାମାନ୍ୟ ଅନୁବାଦ ପ୍ରକାଶିତ ହୋଇଥିଲା । ଶ୍ରୀରାମପୁରରୁ ଖ୍ରୀଷ୍ଟିୟାନ ମିଶନାରୀମାନେ ଉତ୍ତର-ଭାରତର ବିଭିନ୍ନ ସହରକୁ ଯାତ୍ରା କରିଥିଲେ । ଆଗ୍ରା, ମିର୍ଜାପୁର, ମୁଙ୍ଗେର ପ୍ରଭୃତି ସ୍ଥାନରେ ବିଦ୍ୟାଳୟ ସ୍ଥାପନ, ଆଗ୍ରାଠାରେ ସ୍କୁଲ ବୁକ୍ ସୋସାଇଟି ନାମକ ସଙ୍ଗଠନ ପ୍ରତିଷ୍ଠା (୧୮୩୩) ମିଶନାରୀମାନଙ୍କ କାର୍ଯ୍ୟକଳାପର ଅନ୍ତର୍ଭୁକ୍ତ । ମାର୍ସମାନ୍ଙ୍କ ଲିଖିତ ଇଂରେଜ ଇତିହାସ ପୁସ୍ତକର ହିନ୍ଦୀ ଅନୁବାଦ 'କଥାସାର' (୧୮୩୯) ପଣ୍ଡିତ ରତନଲାଲଙ୍କ ପ୍ରଚେଷ୍ଟା । ଏହାପରେ ଓଁକାର ଭଟ୍ଟଙ୍କ କୃତ 'ଭୂଗୋଳସାର', ବଦ୍ରିଲାଲ ଶର୍ମାଙ୍କ କୃତ 'ରସାୟନ ଶାସ୍ତ୍ର' (୍୮୪୭) ଏହି ସମୟର ଗଦ୍ୟରେ ଲିଖିତ ହିନ୍ଦୀ ପାଠ୍ୟ ପୁସ୍ତକ । ମିର୍ଜାପୁରଠାରେ 'ଅରଫାନ୍-ପ୍ରେସ' ସ୍ଥାପନ ମଧ୍ୟ ଏକ ପ୍ରଧାନ ଘଟଣା । କାରଣ ଏହି ପ୍ରେସରୁ ୧୮୫୫ରୁ ୧୮୬୫ ମଧ୍ୟରେ ମିଷ୍ଟର ସେରଙ୍ଗଙ୍କ ସମ୍ପାଦନାରେ ବହୁ ଆବଶ୍ୟକୀୟ ପାଠ୍ୟପୁସ୍ତକ ପ୍ରାଥମିକ ଜ୍ଞାନବିଜ୍ଞାନ ପୁସ୍ତକ ପ୍ରକାଶିତ ହୋଇଥିଲା । ମିଶନାରୀମାନଙ୍କର ଯାବତୀୟ ସାଂସ୍କୃତିକ କାର୍ଯ୍ୟକ୍ରମ ଅନ୍ତରାଳରେ ଖ୍ରୀଷ୍ଟଧର୍ମ ପ୍ରଚାର କରିବାର ମନୋବୃତ୍ତି ଥିଲା ବୋଲି ସ୍ଥାନୀୟ ଲୋକମାନେ ଉପଲବ୍ଧି କରିଥିଲେ । ୧୮୭୫ ଖ୍ରୀଷ୍ଟାବ୍ଦରେ ସ୍ୱାମୀ ଦୟାନନ୍ଦ ସରସ୍ୱତୀ 'ଆର୍ଯ୍ୟସମାଜ' ପ୍ରତିଷ୍ଠା କରି ଦେଶରେ ବୈଦିକ ସଂସ୍କୃତି ଏବଂ ଧର୍ମପ୍ରତି ସୁଧୀ-ସମାଜର ଦୃଷ୍ଟି ଆକର୍ଷଣ କରିଥିଲେ । ନୈତିକ ଏବଂ ସାମାଜିକ ଚଳଣି ପାଇଁ ସେ ବୈଦିକ ମାର୍ଗ ନିର୍ଦ୍ଦେଶ କରିଥିଲେ । ପଣ୍ଡିତ ଶ୍ରଦ୍ଧାରାମଙ୍କର ହିନ୍ଦୁଧର୍ମ ପ୍ରଚାର କାର୍ଯ୍ୟ ଏହି ସମୟର ଏକ ପ୍ରଧାନ ଘଟଣା । ଅନ୍ୟର ପ୍ରରୋଚନାରେ କପୁରଥାଲା ମହାରାଜା ଖ୍ରୀଷ୍ଟଧର୍ମ ଗ୍ରହଣ କରିବାକୁ ଯାଉଥିଲେ । ପଣ୍ଡିତ ଶ୍ରଦ୍ଧାରାମ ନିଜର ପାଣ୍ଡିତ୍ୟ ଏବଂ ବ୍ୟାଖ୍ୟାବଳରେ ତାଙ୍କୁ ସେଥିରୁ ନିବୃତ୍ତ କରିପାରିଥିଲେ । ତାଙ୍କର 'ସତ୍ୟାମୃତ ପ୍ରବାହ' ଏବଂ 'ଆତ୍ମ-ଚିକିତ୍ସା' ଗ୍ରନ୍ଥଦ୍ୱୟ ହିନ୍ଦୀ ଭାଷାଭାଷୀମାନଙ୍କୁ ଭାରତର ବେଦ ଉପନିଷଦ୍ ଏବଂ ପୁରାଣ ଶାସ୍ତ୍ର ପ୍ରତି ଆକୃଷ୍ଟ କରିଥିଲା । ମୁଦ୍ରାଯନ୍ତ୍ରର କ୍ରମଶଃ ପ୍ରସାର ଯୋଗୁଁ ଆଧୁନିକ ହିନ୍ଦୀ ସାହିତ୍ୟର ଅଗ୍ରଗତିର ଧାରା ଫିଟିଥିଲା ।

୧୮୩୪ ମସିହାରେ ଲର୍ଡ଼ ମ୍ୟାକ୍‌ଲେ 'ପବ୍ଲିକ୍ ଇନ୍‌ଷ୍ଟ୍ରକ୍‌ସନ କମିଟି'ର ସଭାପତିଭାବେ ଭାରତବର୍ଷରେ ତୁରନ୍ତ ଇଂରେଜୀ ଶିକ୍ଷା ପ୍ରଚଳନ ପାଇଁ ପ୍ରସ୍ତାବ କଲେ । ଫଳରେ ସମସ୍ତ ସରକାରୀ ଅର୍ଥ ସାହାଯ୍ୟ କେବଳ ଇଂରେଜୀ ଶିକ୍ଷା

ବାବଦରେ ବ୍ୟୟ କରାଯିବ ବୋଲି ସ୍ଥିର କରାଗଲା । ଇଂରେଜୀ ପଢ଼ିଥିବା ଏବଂ ଜାଣିଥିବା ବ୍ୟକ୍ତିମାନେ ହିଁ ସରକାରୀ ଚାକିରିରେ ଆଗ ସ୍ଥାନ ପାଇବେ ବୋଲି ଯେତେବେଳେ ସରକାରୀ ଘୋଷଣା ପ୍ରକାଶିତ ହେଲା ସେତେବେଳେ ସ୍ଥାନୀୟ ମାତୃଭାଷା ଉପରେ କେହି ଗୁରୁତ୍ୱ ଦେଲେ ନାହିଁ । ଇଂରେଜମାନେ ପ୍ରଥମାବସ୍ଥାରେ ପାର୍ଶୀଭାଷାକୁ ସରକାରୀ ସ୍ତରରେ ସ୍ୱୀକୃତ ଦେଇଥିଲେ । ପରେ ଲୋକମାନଙ୍କର ଆପତ୍ତି ହେବାରୁ ହିନ୍ଦୀଭାଷାକୁ କଚେରି-ଭାଷାରୂପେ ସ୍ୱୀକାର କରିଥିଲେ । ବୋର୍ଡ ଅଫ୍ ରେଭିନ୍ୟୁଙ୍କର ଏହି ନିଷ୍ପତ୍ତି ବିରୋଧରେ ସମଗ୍ର ମୁସଲମାନ ସମ୍ପ୍ରଦାୟ ଉର୍ଦ୍ଦୁ ସପକ୍ଷରେ ଯୁକ୍ତି କରିଥିଲେ; ସରକାର ପୁଣି ନିଷ୍ପତ୍ତି ବଦଳାଇ ହିନ୍ଦୀ ପରିବର୍ତ୍ତେ ଉର୍ଦ୍ଦୁକୁ କଚେରି-ଭାଷାରୂପେ ପ୍ରଚଳନ କଲେ । ଏହି ଉଚ୍ଚଶ୍ରେଣୀର ଲୋକମାନେ ଇଂରାଜୀ ଶିକ୍ଷା କରୁଥିଲେ; ଅନ୍ୟମାନେ ଉର୍ଦ୍ଦୁ ଶିକ୍ଷା କରୁଥିଲେ । ହିନ୍ଦୀଭାଷା ଅବହେଳିତ ହୋଇଥିଲା; ଏତିକିବେଳେ ଭାରତବର୍ଷର ଶିକ୍ଷାପଦ୍ଧତିରେ ସାର୍ ଚ୍ୟାର୍ଲସ୍ ଉଡ୍ (Sir Charles Wood) ଙ୍କ ଚଠା ପ୍ରସ୍ତାବକ୍ରମେ କେତେକ ବୈପ୍ଳବିକ ପରିବର୍ତ୍ତନ କରାଗଲା । ତାଙ୍କ ଯୋଜନାନୁସାରେ ଶିକ୍ଷାର ମାଧ୍ୟମରୂପେ ମାତୃଭାଷାକୁ ଅଗ୍ରାଧିକାର ଦିଆଗଲା । ଏହା ୧୯ । ୭ । ୧୮୫୪ ମସିହାର ଘଟଣା । ତାଙ୍କ ପ୍ରସ୍ତାବ ଥିଲା—"It is neither our aim nor desire to substitute the English language for the vernacular dialects of the country"। ଏହି ପରିସ୍ଥିତିରେ ଉତ୍ତର-ଭାରତର ମାତୃଭାଷା କ'ଣ ହେବ ସେ ବିଷୟରେ ବାଦାନୁବାଦ ଦେଖାଦେଲା । ସରକାର ପ୍ରଥମେ ହିନ୍ଦୀ ସପକ୍ଷରେ ନିଷ୍ପତ୍ତି କଲେ, ମାତ୍ର ସାର୍ ସୟଦ୍ ଅହମ୍ମଦ୍ ପ୍ରବଳ ଯୁକ୍ତି ଆରମ୍ଭ କରିଥିଲେ । ଯାହାହେଉ, ହିନ୍ଦୀଭାଷାର ଏହି ସଙ୍କଟସନ୍ଧି ସମୟରେ ରାଜା ଶିବପ୍ରସାଦ (ଜନ୍ମ ବାରାଣସୀ ୧୮୨୩-୧୮୯୫) ବହୁ ତଥ୍ୟ ଯୋଗାଇ ପ୍ରମାଣ କରିଥିଲେ ଯେ ହିନ୍ଦୀ ହିଁ ଉତ୍ତର-ଭାରତର ଯଥାର୍ଥ ମାତୃଭାଷା । ସେ ଏହି ସମୟରେ ସ୍କୁଲସମୂହର ଇନ୍‌ସପେକ୍ଟର୍‌ରୂପେ କାର୍ଯ୍ୟଭାର ଗ୍ରହଣ କରିଥିଲେ । ସେ ପ୍ରାୟ ପନ୍ଦର ଖଣ୍ଡ ଗଦ୍ୟ ପୁସ୍ତକ ହିନ୍ଦୀରେ ଲେଖିଥିଲେ । ସେ ତାଙ୍କର 'ଇତିହାସ ତିମିର ନାଶକ' ପୁସ୍ତକର ମୁଖବନ୍ଧରେ ହିନ୍ଦୀ ସପକ୍ଷରେ ଅକାଟ୍ୟ ଯୁକ୍ତି ଉପସ୍ଥାପନ କରିଥିଲେ । ତାଙ୍କ ପ୍ରତିଷ୍ଠିତ ସମ୍ବାଦପତ୍ର ବାରାଣସୀ ଆକବର (୧୮୪୫) ମଧ୍ୟ ଭାଷା-ଆନ୍ଦୋଳନର ପ୍ରଧାନ ଅସ୍ତ୍ର ଥିଲା । ତାରମୋହନ ମିତ୍ରଙ୍କର 'ସୁଧାକର' (୧୮୫୦) ମୁନ୍‌ସି ସଦାସୁଖଲାଲଙ୍କର 'ବୁଦ୍ଧି ପ୍ରକାଶ' (୧୮୫୨, ଆଗ୍ରା) ସମ୍ବାଦପତ୍ର ମଧ୍ୟ ହିନ୍ଦୀ ଭାଷାର ପ୍ରକୃତ ସଂସ୍କାର ସାଧନ କରିଥିଲେ ।

ରାଜା ଶିବପ୍ରସାଦଙ୍କର ଜୀବନ ଘଟଣାପୂର୍ଣ୍ଣ ଥିଲା । ତାଙ୍କର ସମସାମୟିକ

ନବୀନଚନ୍ଦ୍ର ଏବଂ ରାଜା ଲକ୍ଷ୍ମଣସିଂହ ହିନ୍ଦୀଭାଷାରେ ଉନ୍ନତ ସାଧନ କଲେ । ନବୀନଚନ୍ଦ୍ର ସମାଜ ସଂସ୍କାର ଉଦ୍ଦେଶ୍ୟରେ ୧୮୬୭ରେ 'ଜ୍ଞାନପ୍ରଦାୟିନୀ' ପତ୍ରିକା ପ୍ରକାଶ କରିଥିଲେ । ସେହି ପତ୍ରିକାରେ ସମାଜ ସଂସ୍କାର ଏବଂ ବିଜ୍ଞାନ ଚର୍ଚ୍ଚାମୂଳକ ବହୁ ପ୍ରବନ୍ଧ ପ୍ରକାଶିତ ହୋଇଥିଲା । ଫଳରେ ହିନ୍ଦୁଧର୍ମ ବିରୋଧରେ ମିଶନାରୀ-ମାନଙ୍କ ପ୍ରଚାର ଫଳପ୍ରଦ ହୋଇପାରି ନ ଥିଲା । ରାଜା ଲକ୍ଷ୍ମଣ ସିଂହ ଆଗରୁ ସେହି ବର୍ଷ 'ପ୍ରଜାହିତୈଷୀ' ପତ୍ରିକା ପ୍ରକାଶ କରିଥିଲେ । ତତ୍ପରବର୍ଷ ତାଙ୍କର କାଳିଦାସଙ୍କ 'ଶକୁନ୍ତଳା'ର ହିନ୍ଦୀ ଅନୁବାଦ ସମଗ୍ର ହିନ୍ଦୀ ପାଠକସମାଜରେ ଆଲୋଡ଼ନ ସୃଷ୍ଟି କରିଥିଲା ।

ପ୍ରାଚୀନ ହିନ୍ଦୀ ସାହିତ୍ୟରେ କାବ୍ୟକବିତାର ପରିଣାମ କମ୍ ନ ଥିଲା । ଊନବିଂଶ ଶତାବ୍ଦୀର ପ୍ରାରମ୍ଭରୁ ପାଠ୍ୟପୁସ୍ତକ ବିକାଶ ଆରମ୍ଭ ହେଲା ଏବଂ ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଗଦ୍ୟର ଗୁଣାତ୍ମକ ଏବଂ ସଂଖ୍ୟାତ୍ମକ ଅଭିବୃଦ୍ଧି ଯୋଗୁଁ ହିନ୍ଦୀ ସାହିତ୍ୟର ସାମଗ୍ରିକ ବିକାଶ ସମ୍ଭବ ହୋଇଥିଲା ।

ହିନ୍ଦୀ ସାହିତ୍ୟର ଆଧୁନିକ ଯୁଗ ଭାରତେନ୍ଦୁ ହରିଶ୍ଚନ୍ଦ୍ରଙ୍କଠାରୁ ଆରମ୍ଭ ହେଲା । ଏହି ଆଧୁନିକ ଯୁଗ ସାହିତ୍ୟସୃଷ୍ଟିର ପରିମାଣ ଏବଂ ବୈଚିତ୍ର୍ୟ ଦୃଷ୍ଟିରୁ ତିନିଗୋଟି ପର୍ଯ୍ୟାୟରେ ବିଭକ୍ତ; ଯଥା—ଭାରତେନ୍ଦୁ ଯୁଗ, ଦ୍ୱିବେଦୀ ଯୁଗ ଏବଂ ଅତ୍ୟାଧୁନିକ ଯୁଗ । ଗଳ୍ପ, ଉପନ୍ୟାସ, କାବ୍ୟକବିତା, ନାଟକ, ପ୍ରବନ୍ଧ ଏପରି ବିବିଧ ସାହିତ୍ୟସୃଷ୍ଟିର ଐଶ୍ୱର୍ଯ୍ୟରେ ଆଧୁନିକ ହିନ୍ଦୀ ସାହିତ୍ୟ ପୁଷ୍ଟ ।

ଭାରତେନ୍ଦୁ ହରିଶ୍ଚନ୍ଦ୍ର (୧୮୫୦-୧୮୮୫) ହିନ୍ଦୀ ସାହିତ୍ୟରେ ଏକ ବହୁମୁଖୀ ପ୍ରତିଭା ଏବଂ ସେ ସାହିତ୍ୟର ବିଭିନ୍ନ ଶାଖାରେ ସଫଳତାର ସହିତ ଲେଖନୀ ଚାଳନା କରିଥିଲେ । ତାଙ୍କର ଜନ୍ମ ବାରାଣସୀଠାରେ ହୋଇଥିଲା ଏବଂ ତାଙ୍କ ପିତା ଗିରିଧର ଦାସ ମଧ୍ୟ ଜଣେ ପଣ୍ଡିତ ଏବଂ କବିଭାବରେ ପରିଚିତ ଥିଲେ । ତାଙ୍କର ବ୍ୟକ୍ତିଗତ ପାଠାଗାରର ମୂଲ୍ୟ ଏକଲକ୍ଷ ଟଙ୍କା ବୋଲି ଅଟକଳ କରାଯାଇଥିଲା । ଭାରତେନ୍ଦୁଙ୍କ ଉପରେ ତାଙ୍କ ପିତାଙ୍କ ପ୍ରଭାବ ନିଶ୍ଚୟ ପଡ଼ିଥିଲା । କବି, ନାଟ୍ୟକାର, ଐତିହାସିକ ଏବଂ ସମ୍ପାଦକ ଭାବରେ ଭାରତେନ୍ଦୁଙ୍କର କୃତିତ୍ୱ ସର୍ବବାଦିସମ୍ମତ । ସେ ଅଷ୍ଟାଦଶ ବର୍ଷ ବୟସରୁ କାବ୍ୟ-କବିତା ରଚନା କରି ଜୀବନରେ ପ୍ରାୟ ୧୭୫ ଖଣ୍ଡ ପୁସ୍ତକ ଲେଖିପାରିଥିଲେ । ଇଂରେଜ ଲେଖକ ଗୋଲ୍ଡସ୍ମିଥ୍‌ଙ୍କ ସଦୃଶ ଭାରତେନ୍ଦୁ ସାହିତ୍ୟର ପ୍ରତ୍ୟେକ ଆଙ୍ଗିକରେ ହାତଦେଇ ସଫଳତା ଅର୍ଜନ କରିଥିଲେ । ଭାରତେନ୍ଦୁ ଗଦ୍ୟ ଉଭୟ ଲକ୍ଷ୍ମଣସିଂହଙ୍କ ସଂସ୍କୃତ-ବହୁଳ ଏବଂ ରାଜା ଶିବପ୍ରସାଦଙ୍କ ପାର୍ସିବହୁଳ ଗଦ୍ୟର ମଧ୍ୟବର୍ତ୍ତୀ ଥିଲା । କାଶ୍ମୀର କୁସୁମ, ଚନ୍ଦ୍ରାବଳୀ ଏବଂ ବାଦସାହ ଦର୍ପଣ ପ୍ରମୁଖ ଇତିହାସ ଏବଂ ଜୀବନୀମୂଳକ ପୁସ୍ତକରେ ଭାରତେନ୍ଦୁ ନୂତନ ଗଦ୍ୟଶୈଳୀ ପ୍ରୟୋଗ କରିଥିଲେ । ତାଙ୍କଦ୍ୱାରା

ପ୍ରତିଷ୍ଠିତ 'କବିବଚନସୁଧା' (୧୮୬୮) ଏବଂ 'ହରିଶ୍ଚନ୍ଦ୍ର ଚନ୍ଦ୍ରିକା' (୧୮୭୩) ପତ୍ରିକା ଯଥାକ୍ରମେ ହିନ୍ଦୀ କାବ୍ୟକବିତା ଏବଂ ସାମ୍ବାଦିକତାର ବିକାଶସାଧନ କରିଥିଲା । ନାରୀ ଜାଗରଣ ଉଦ୍ଦେଶ୍ୟରେ ଭାରତେନ୍ଦୁ 'ବାଳବୋଧିନୀ' ପତ୍ରିକା ମଧ୍ୟ ପ୍ରତିଷ୍ଠା କରିଥିଲେ । ଭାରତେନ୍ଦୁ ତାଙ୍କ ସମୟରେ ଏକ ଉତ୍ସାହୀ ସାହିତ୍ୟିକଗୋଷ୍ଠୀ ସୃଷ୍ଟି କରିପାରିଥିଲେ । ସେମାନଙ୍କ ମଧ୍ୟରେ କେହି ପ୍ରାବନ୍ଧିକ, କେହି ସାମ୍ବାଦିକ ଏବଂ କେହି ସମାଜ-ସଂସ୍କାରକ ଥିଲେ ।

ଆଗ୍ରାରୁ ୧୮୮୪ରେ ପ୍ରକାଶିତ 'ବ୍ରାହ୍ମଣ' ପତ୍ରିକାର ସମ୍ପାଦକ ପ୍ରତାପ-ନାରାୟଣ ମିଶ୍ର (୧୮୫୬—୧୮୯୪), ୧୮୭୭ରେ ପ୍ରକାଶିତ 'ହିନ୍ଦୀପ୍ରଦୀପ'ର ସମ୍ପାଦକ ଏବଂ ଆଲ୍ଲାହାବାଦ କାୟସ୍ଥ ପାଠଶାଳା କଲେଜର ସଂସ୍କୃତ ଅଧ୍ୟାପକ ବାଲକୃଷ୍ଣ ଭଟ୍ଟ (୧୮୪୪-୧୯୧୪), ୧୮୮୩ରେ ମିର୍ଜାପୁରରୁ ପ୍ରକାଶିତ 'ଆନନ୍ଦକାଦମ୍ବିନୀ'ର ସମ୍ପାଦକ ବଦ୍ରୀନାରାୟଣ ଚୌଧୁରୀ (୧୮୫୫-୧୯୨୨—ଛଦ୍ମନାମ-ପ୍ରେମଘନ) ପ୍ରଭୃତି ଲେଖକମାନେ ସ୍ୱ ସ୍ୱ ରଚନା ମାଧ୍ୟମରେ ହିନ୍ଦୀ ଗଦ୍ୟସାହିତ୍ୟର ଆଭିମୁଖ୍ୟ ସ୍ପଷ୍ଟ କରିଦେଇଥିଲେ । 'ସ୍ୱୟଂ ସ୍ୱୟମ୍ବର' ନାଟକର ଦୀର୍ଘ ସମାଲୋଚନା ଉଭୟ ବାଲକୃଷ୍ଣ ଭଟ୍ଟ ଏବଂ ବଦ୍ରୀନାରାୟଣ ଚୌଧୁରୀ ଲେଖି ହିନ୍ଦୀ ସମାଲୋଚନା ସାହିତ୍ୟର ଗୋଟାଏ ରୂପରେଖ ଦେଇଥିଲେ । ଶ୍ରୀନିବାସ ଦାସ (୧୮୫୧-୧୮୮୭) ନାଟକ ବ୍ୟତୀତ 'ପରୀକ୍ଷା ଗୁରୁ' ନାମକ ଏକ ଉପନ୍ୟାସ ଲେଖିଥିଲେ । ମଧ୍ୟଭାରତର ବିଜୟ ରାଘବଗଡ଼ର ରାଜବଂଶର ଠାକୁର ଜଗନ୍ମୋହନ ସିଂହ (୧୮୫୭-୧୮୯୯) ସାହିତ୍ୟରେ ସାଧାରଣ ଜୀବନଚିତ୍ରର ପ୍ରାଧାନ୍ୟ ପ୍ରତି ଦୃଷ୍ଟି ଦେଇଥିଲେ । ସେ ଭାରତେନ୍ଦୁ ହରିଶ୍ଚନ୍ଦ୍ରଙ୍କ ସାନ୍ନିଧ୍ୟ ଲାଭ କରି ସାହିତ୍ୟକ୍ଷେତ୍ରରେ ଅବତୀର୍ଣ୍ଣ ହୋଇ-ଥିବାର ଜଣାଯାଏ । ତାଙ୍କର 'ଶ୍ୟାମାସ୍ୱପ୍ନ'ରେ ବିନ୍ଧ୍ୟର ପ୍ରାକୃତିକ ଦୃଶ୍ୟ ଏବଂ ଗ୍ରାମ୍ୟ ଜୀବନର ସୌନ୍ଦର୍ଯ୍ୟ ବେଶ୍ ପ୍ରତିଫଳିତ । ତୋତାରାମ (୧୮୪୭-୧୯୦୨) ହେଡ୍‌ମାଷ୍ଟର ଚାକିରିରୁ ଇସ୍ତଫା ଦେଇ ଆଲିଗଡ଼ରେ ପ୍ରେସ୍ ସ୍ଥାପନ କରିଥିଲେ ଏବଂ 'ଭାରତବନ୍ଧୁ' ପତ୍ରିକା ସମ୍ପାଦନ କରିଥିଲେ । କୀର୍ତ୍ତିକେତୁ ତାଙ୍କର ଏକ ନାଟକ । ଭାଷାର ଉନ୍ନତିସାଧନ ପାଇଁ ସେ ଏକ ସମିତି ପ୍ରତିଷ୍ଠା କରିଥିଲେ ଏବଂ ଆଡ଼ିସନ୍‌ଙ୍କ ରଚନାର ଅନୁବାଦ ଏବଂ ସ୍ତ୍ରୀ ସୁବୋଧିନୀ ପୁସ୍ତକର ପ୍ରାପ୍ତ ଅର୍ଥକୁ ଏହି ସମିତିକୁ ଦାନ କରିଥିଲେ । ଭାରତେନ୍ଦୁଙ୍କ 'ଚନ୍ଦ୍ରିକା' ପତ୍ରିକାଦ୍ୱାରା ଦେଶାତ୍ମ-ବୋଧ ଏବଂ ଜାତୀୟତାରେ ଉଦ୍‌ବୁଦ୍ଧ ହୋଇ ରାଧାଚରଣ ଗୋସ୍ୱାମୀ (୧୮୫୮-୧୯୨୫) ଭାରତେନ୍ଦୁ ପତ୍ରିକା ସମ୍ପାଦନ କରିଥିଲେ । ସେ ବ୍ରାହ୍ମସମାଜର ଆଦର୍ଶ ଗ୍ରହଣ କରି ବହୁ ପ୍ରବନ୍ଧ 'ହିନ୍ଦୁବାନ୍ଧବ'ରେ ପ୍ରକାଶ କରିଥିଲେ । ମୋହନ ଲାଲ ବିଷ୍ଣୁଲାଲ ପାଣ୍ଡିଆ ଭାରତେନ୍ଦୁଙ୍କ ସହକର୍ମୀ ଥାଇ 'ହରିଶ୍ଚନ୍ଦ୍ର ଚନ୍ଦ୍ରିକା' ସମ୍ପାଦନା କରିଥିଲେ । ତାଙ୍କର 'ରସଧର୍ମ' ସମ୍ପର୍କୀୟ ଆଲୋଚନା ସମାଲୋଚନା କ୍ଷେତ୍ରରେ

ଏକ ପ୍ରାମାଣିକ ଗ୍ରନ୍ଥ । ଭୀମସେନ ଶର୍ମା ଦୟାନନ୍ଦଙ୍କର ଆଦର୍ଶରେ ଅନୁପ୍ରାଣିତ ହୋଇଥିଲେ । ସଂସ୍କୃତ ସାହିତ୍ୟରେ ତାଙ୍କର ଗଭୀର ପ୍ରବେଶ ଥିଲା । ଆର୍ଯ୍ୟସିଦ୍ଧାନ୍ତ ପତ୍ରିକାରେ ଭାରତୀୟ ସଂସ୍କୃତ ଏବଂ ସାହିତ୍ୟ ସମ୍ପର୍କରେ ତାଙ୍କର ପ୍ରବନ୍ଧସମୂହ ପ୍ରକାଶିତ ହୋଇଥିଲା ।

କାଶୀନାଥ କ୍ଷତ୍ରୀ (୧୮୪୯-୧୮୯୧) ସରକାରଙ୍କ ଦ୍ୱାରା ସ୍ଥାନୀୟ ଭାଷାରେ ସମ୍ବାଦଦାତାରୂପେ ନିଯୁକ୍ତ ହୋଇଥିଲେ । ସେ ଇଂରେଜୀରୁ ଚାର୍ଲସ୍ ଲ୍ୟାମ୍ବଙ୍କର 'ଟେଲସ୍ ଫ୍ରମ୍ ସେକ୍ସପିଅର୍' ଏବଂ ବ୍ଲାକଙ୍କର 'ସେଲ୍ଫ କଲ୍ଚର' ଅନୁବାଦ କରିଥିଲେ । ଜାତୀୟ କଂଗ୍ରେସର କେତେକ ଇଂରେଜୀ ରଚନାକୁ ସେ ମଧ୍ୟ ହିନ୍ଦୀ-ରୂପ ପ୍ରଦାନ କରିଥିଲେ । ପୁନଶ୍ଚ କେତେକ ମୂଲ୍ୟବାନ ଜୀବନୀ ମଧ୍ୟ ସଂଗ୍ରହ କରିଥିଲେ । ଭାରତେନ୍ଦୁଙ୍କର ପୁତୁରା ରାଧାକୃଷ୍ଣ ଦାସ (୧୮୬୫-୧୯୦୭) ନାଟକ ଏବଂ 'ନିଃସହାୟ ହିନ୍ଦୁ' ନାମକ ଏକ ଉପନ୍ୟାସ ଲେଖିଥିଲେ । ଫ୍ରେଡ୍ରିକ୍ ପିନ୍କୋଟ (୧୮୩୬-୧୮୯୬) ଜାତିରେ ଇଂରେଜ ହେଲେ ହେଁ ପ୍ରଥମରୁ ଭାରତୀୟ ସଂସ୍କୃତି ସାହିତ୍ୟ ପ୍ରତି ଆକୃଷ୍ଟ ହୋଇଥିଲେ । ପରେ ଉର୍ଦ୍ଦୁ ଏବଂ ହିନ୍ଦୀ ଭାଷା ଶିକ୍ଷା କରିଥିଲେ । ତାଙ୍କ ମତରେ ହିନ୍ଦୀ ଏକ ଶକ୍ତିଶାଳୀ ଭାଷା । 'ପିନ୍କୋଟ'ଙ୍କ ହିନ୍ଦୀରଚନା ମଧ୍ୟରେ ଦୁଇ ଭାଗରେ ବିଭକ୍ତ 'ବାଲ୍ଦୀପକ' ଏବଂ ଇଂରେଜୀ ପୁସ୍ତକ କୁଇନ୍ ଭିକ୍ଟୋରିଆଙ୍କ ଅବଲମ୍ବନରେ ଲିଖିତ 'ଭିକ୍ଟୋରିଆ ଚରିତ' ଉଲ୍ଲେଖଯୋଗ୍ୟ । ସେ 'ଅଇନ ସୌଦାଗରୀ' ନାମକ ପତ୍ରିକା ମଧ୍ୟ ସଂପାଦନା କରିଥିଲେ ଏବଂ ସେହି ପତ୍ରିକା ମାଧ୍ୟମରେ ହିନ୍ଦୀ ସାହିତ୍ୟର କେତେକ ଶ୍ରେଷ୍ଠ କୃତି ସହିତ ଇଂରେଜପାଠକ-ମାନଙ୍କୁ ପରିଚିତ କରାଇଥିଲେ । ପିନ୍କୋଟ୍ ଲକ୍ଷ୍ନୌଠାରେ ୧୮୯୬ ମସିହାରେ ଫେବୃଆରୀ ୭ ତାରିଖରେ ପ୍ରାଣତ୍ୟାଗ କରିଥିଲେ । ଭାରତୀୟ ଭାଷା ଏବଂ ସାହିତ୍ୟ ପ୍ରତି ତାଙ୍କର ବିଶେଷ ଆଗ୍ରହ ଥିଲା ।

ଭାରତେନ୍ଦୁ ହରିଶ୍ଚନ୍ଦ୍ର ଏବଂ ତାଙ୍କ ସମସାମୟିକମାନଙ୍କର ବିଭିନ୍ନ ରଚନା ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଅସ୍ଥାୟୀ ପତ୍ରପତ୍ରିକାସମୂହର ଆବିର୍ଭାବ-ଦ୍ୱାରା ହିନ୍ଦୀ ସାହିତ୍ୟରେ ଗୋଟାଏ ଆଲୋଡ଼ନ ସୃଷ୍ଟି ହେଲା । ବିଶେଷତଃ ୧୮୯୩ ଖ୍ରୀଷ୍ଟାବ୍ଦରେ 'କାଶୀ ନାଗରୀ ପ୍ରଚାରିଣୀ ସଭା' ସ୍ଥାପନ, ପଣ୍ଡିତ ମଦନମୋହନ ମାଳବ୍ୟଙ୍କ ନେତୃତ୍ୱରେ ହିନ୍ଦୀ ଭାଷାର ସରକାରୀ ସ୍ୱୀକୃତି ପାଇଁ ଦାବୀ ଉପସ୍ଥାପନ ହିନ୍ଦୀ ସାହିତ୍ୟରେ ଜାଗରଣ ଆଣିଥିଲା । ୧୯୦୦ ମସିହାରେ ହିନ୍ଦୀ ଭାଷାକୁ କଚେରି-ଭାଷାରୂପେ ସରକାରୀ ସ୍ୱୀକୃତି ପ୍ରଦାନ ଏକ ଉଲ୍ଲେଖଯୋଗ୍ୟ ଏବଂ ଗୁରୁତ୍ୱପୂର୍ଣ୍ଣ ଘଟଣା ।

*

ଉପନ୍ୟାସ :

ହିନ୍ଦୀ କାବ୍ୟ-କବିତା ତୁଳନାରେ ଉପନ୍ୟାସ, ଗଳ୍ପ ସୃଷ୍ଟି ନିହାତ ଆଧୁନିକ । ୧୯୨୦ ମସିହା ପର୍ଯ୍ୟନ୍ତ ହିନ୍ଦୀରେ ଉପନ୍ୟାସ ଶିଳ୍ପସମ୍ମତ କୌଣସି କଥାଶିଳ୍ପ ଲେଖା ହୋଇ ନ ଥିଲା । 'ରାନୀ କେତକୀ କୀ କାହାନୀ', 'ରାଜା ଭୋଜ କା ସ୍ୱପନ୍' ଏବଂ 'ପରୀକ୍ଷା ଗୁରୁ' ହିନ୍ଦୀ ଉପନ୍ୟାସ ସାହିତ୍ୟର ପ୍ରାଥମିକ କୃତି ବୋଲି ପୂର୍ବେ କୁହାଯାଇଛି । ଏହା ପରେ ଇଂରେଜୀରୁ 'ଅଙ୍କଲ୍ ଟମ୍‌ସ୍ କେବିନ', 'ଲାଇଫ୍ ଅଣ୍ଡ୍ ଲଇଫ୍ ଇନ୍ ଲଣ୍ଡନ', ଉର୍ଦ୍ଦୁରୁ 'ପୁନା ମେ ହଲଚଲ', ମରାଠୀରୁ 'ଛତ୍ରଶାଳ', ବଙ୍ଗଳାରୁ ବଙ୍କିମ ଚନ୍ଦ୍ର ଏବଂ ରବୀନ୍ଦ୍ର ନାଥଙ୍କ ଉପନ୍ୟାସ ଅନୂଦିତ ହୋଇ-ଥିଲା । ଏହି ଅନୁବାଦ ପର୍ଯ୍ୟାୟରେ ଈଶ୍ୱରପ୍ରସାଦ ଶର୍ମା ଏବଂ ରୂପନାରାୟଣ ପାଣ୍ଡେଙ୍କ ନାମ ବିଶେଷ ଶୁଣାଯାଇଥାଏ ।

ଦେବକୀନନ୍ଦନ କ୍ଷତ୍ରୀ (୧୮୬୧-୧୯୧୩) ହିନ୍ଦୀ ଉପନ୍ୟାସର ଶୈଶବା-ବସ୍ଥାରେ ଯଥାର୍ଥରେ ତାହାର କଳାତ୍ମକତା ପାଇଁ ଆପ୍ରାଣ ଯତ୍ନ କରିଥିଲେ । ତାଙ୍କର 'ଚନ୍ଦ୍ରକାନ୍ତ' ଉପନ୍ୟାସମାଳା ହିନ୍ଦୀ ପାଠକସମାଜରେ ଅପୂର୍ବ ଆଗ୍ରହ ସୃଷ୍ଟି କଲା । କଥା ଶିଳ୍ପର ଲୋକପ୍ରିୟତା ଏବଂ ହିନ୍ଦୀ ଭାଷାର ଲୋକପ୍ରିୟତା ତାଙ୍କର ଲେଖନୀ ଯୋଗୁଁ ବୃଦ୍ଧି ପାଇଥିଲା । ଗଳ୍ପକଥନ କଳା ପ୍ରତି ସେ ମଧ୍ୟ ଦୃଷ୍ଟି ଦେଇଥିଲେ । ତାଙ୍କ ପରେ ଗୋପାଲ ରାମ ଗହାମାରୀ ହିନ୍ଦୀ ଉପନ୍ୟାସରେ ବାସ୍ତବତା ପରିବର୍ତ୍ତନ କଲେ ।

କିଶୋରୀଲାଲ ଗୋସ୍ୱାମୀ (୧୮୬୫-୧୯୩୨) ହିନ୍ଦୀ ଉପନ୍ୟାସ-ଜଗତରେ ଜଣେ ବିଶିଷ୍ଟ ଶିଳ୍ପୀଭାବରେ ବିରାଜିତ ପରିଚିତ । ତାଙ୍କର ଉପନ୍ୟାସର ସଂଖ୍ୟା ଷାଠିଏରୁ ଅଧିକ । ମାତ୍ର ଗୁଣାତ୍ମକ ଉତ୍କର୍ଷ ବିଚାରରେ ତାଙ୍କ ଉପନ୍ୟାସସମୂହ କୌଣସି ନିର୍ଦ୍ଦିଷ୍ଟ ଜୀବନଦର୍ଶନ, ସମାଜ-ସମାଲୋଚନା କିମ୍ବା ସମସ୍ୟାର ବିଶ୍ଳେଷଣ ପ୍ରଦର୍ଶନ-କରି ନ ଥାଏ । କିଶୋରୀଲାଲଙ୍କ ଉପନ୍ୟାସବର୍ଣ୍ଣିତ ବିଭିନ୍ନ ଚରିତ୍ର କୌଣସି ସଂସ୍କାର କିମ୍ବା ବିପ୍ଳବର ଅଭିଳାଷଦ୍ୱାରା ଯେପରି ଅନୁପ୍ରାଣିତ ନୁହନ୍ତି । ବଂଗଳା ଉପନ୍ୟାସରେ ବଙ୍କିମଚନ୍ଦ୍ର, ଶରତଚନ୍ଦ୍ର ଏବଂ ରବୀନ୍ଦ୍ରନାଥ ସାମାଜିକ ସଂସ୍କାରର ଚିତ୍ର ପ୍ରଦାନ କରିଥିଲେ । ମାତ୍ର ସ୍ୱାମୀ ଦୟାନନ୍ଦ କିମ୍ବା ଆର୍ଯ୍ୟସମାଜର କୌଣସି ପ୍ରଭାବ ତାଙ୍କ ଉପନ୍ୟାସରେ ପରିଦୃଷ୍ଟ ହୁଏ ନାହିଁ । ଉଦାହରଣସ୍ୱରୂପ, ତାଙ୍କ ଉପନ୍ୟାସରେ ବର୍ଣ୍ଣିତ ନାୟିକା 'କୁସୁମ'ଚରିତ୍ର ଏକ ଅସହାୟ ଜୀବନର ଚିତ୍ର ।

ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ହିନ୍ଦୀ ଉପନ୍ୟାସର ରୂପ ଏବଂ ଗୁଣର ଶକ୍ତିଶାଳୀ ପ୍ରବର୍ତ୍ତକଭାବରେ ମୁନ୍‌ସି ପ୍ରେମଚନ୍ଦଙ୍କ ନାମ ହିଁ ( ଜୁଲାଇ ୩୧,୧୮୮୦— ଅକ୍ଟୋବର ୮, ୧୯୩୬) ସର୍ବାଗ୍ରେ ଉଲ୍ଲେଖଯୋଗ୍ୟ । ହିନ୍ଦୀ ଉପନ୍ୟାସର କଳା-ତ୍ମକ ରୂପ 'ସମାଜବାଦୀ ବାସ୍ତବତା' ଏବଂ ଅପୂର୍ବ ଐଶ୍ୱର୍ଯ୍ୟ ପାଇଁ ମୁନ୍‌ସୀ ପ୍ରେମଚନ୍ଦ ହିଁ

ଦାୟିତ୍ୱୀ । ଏକ ନିର୍ଦ୍ଦିଷ୍ଟ ସାମାଜିକ ଉଦ୍ଦେଶ୍ୟ ସାଂପ୍ରତିକ ପରିପ୍ରେକ୍ଷୀରେ ଏକ ବୈପ୍ଳବିକ ଆଭିମୁଖ୍ୟ । ନିମ୍ନ ଶ୍ରେଣୀର ଶୋଷିତ ସର୍ବହରା ଜୀବନ ପ୍ରତି ଅକୁଣ୍ଠ ସମବେଦନା ଏବଂ ସମାଜରେ ଅତ୍ୟାଚାରିତ ବ୍ୟକ୍ତିର ଘୋର ପ୍ରତିକ୍ରିୟା ପ୍ରେମ-ଚନ୍ଦଙ୍କ କ୍ଷୁଦ୍ର ଗଳ୍ପ ଏବଂ ଉପନ୍ୟାସସମୂହରେ ଯେପରି ପ୍ରତିଫଳିତ, ତାହା ତାଙ୍କର କଥାଶିଳ୍ପର ସାର୍ଥକତା ପ୍ରମାଣିତ କରିଥାଏ । ପୁନଶ୍ଚ ଭାରତୀୟ ଗ୍ରାମ୍ୟ-ଜୀବନର ପ୍ରାଣସ୍ପର୍ଶୀ ଚିତ୍ର ପରିବେଷଣ କରିବାରେ ମଧ୍ୟ ତାଙ୍କ ଉପନ୍ୟାସର ସଫଳତା ସର୍ବଥା ସ୍ୱୀକୃତ । ତେଣୁ ହିନ୍ଦୀ ସାହିତ୍ୟର ପରମ୍ପରାଶୂନ୍ୟ କଥାଶିଳ୍ପ ପରିସରରେ ଲେଖନୀ ଚାଳନା କରି ଗାଳ୍ପିକ ଏବଂ ଔପନ୍ୟାସିକ ପ୍ରେମଚନ୍ଦ ହିନ୍ଦୀ ଉପନ୍ୟାସ ପାଇଁ ଯେଉଁ ପରମ୍ପରା ସୃଷ୍ଟି କରିଗଲେ, ତାହାହିଁ ତାଙ୍କର ପ୍ରୋଜ୍ଜ୍ୱଳ ପ୍ରତିଭାର ନିଦର୍ଶନ ।

ପ୍ରେମଚନ୍ଦ୍ଙ୍କ କର୍ମମୟ ଜୀବନର ବିବିଧ 'ଅଭିଜ୍ଞତା' ତାଙ୍କ ସାହିତ୍ୟିକ ପ୍ରତିଭା ବିକାଶରେ ସହାୟତା କରିଥିବାର ଜଣାଯାଏ । ପରିବାରର ଦାରିଦ୍ର୍ୟ, ମାସିକ ପାଞ୍ଚଟଙ୍କା ଦରମାରେ ଟିଉସନ୍ କରିବା, ସହକାରୀ ଶିକ୍ଷକତା, ମଡ଼େଲ୍ ସ୍କୁଲରେ ହେଡ୍ମାଷ୍ଟର ଚାକିରି, ଡେପୁଟି ଇନ୍ସପେକ୍ଟରରୂପେ ପଦୋନ୍ନତି, ପ୍ରଥମ ସ୍ତ୍ରୀଙ୍କୁ ଛାଡ଼ପତ୍ର ଦେଇ ଦ୍ୱିତୀୟ ପତ୍ନୀରୂପେ ବିଧବା ଶିବରାଣୀଙ୍କୁ ବିବାହ କରିବା, ଶେଷରେ ସ୍ତ୍ରୀଙ୍କ ପରାମର୍ଶରେ ୧୯୨୧ରେ ସରକାରୀ ଚାକିରିରୁ ଇସ୍ତଫା ଦେଇ ଏକାନ୍ତଭାବରେ ସାହିତ୍ୟସାଧନାରେ ନିଜକୁ ଉତ୍ସର୍ଗ କରିବା—ଏହାହିଁ ଥିଲା ଲେଖକ ପ୍ରେମଚନ୍ଦ୍ଙ୍କ ଜୀବନର ଘଟଣା ପ୍ରବାହ । ସେ ବୁନ୍ଦେଲଖଣ୍ଡ ଅଞ୍ଚଳରେ ସରକାରୀ କାର୍ଯ୍ୟରେ ନିଯୁକ୍ତ ଥିବା ସମୟରେ ସମାଜର ସାଧାରଣ ସ୍ତରର ନରନାରୀଙ୍କ ଜୀବନ-ନିର୍ବାହ ସମ୍ପର୍କରେ ପ୍ରତ୍ୟକ୍ଷ ଅନୁଭୂତି ଅର୍ଜନ କରିଥିଲେ ଏବଂ ତାହା ତାଙ୍କର ଅଜସ୍ର ଗଳ୍ପ ଏବଂ ଉପନ୍ୟାସରେ ପ୍ରତିଫଳିତ ହୋଇଥିଲା । ସେ ପ୍ରଥମେ ଉର୍ଦ୍ଦୁ ଭାଷାରେ କେତେକ ଗଳ୍ପ ଲେଖିଥିଲେ; ମାତ୍ର ପରେ ହିନ୍ଦୀ ଭାଷାରେ ତାଙ୍କ ପ୍ରତିଭାର ପୂର୍ଣ୍ଣ ବିନିଯୋଗ ହୋଇଥିଲା । ହିନ୍ଦୀ ଉପନ୍ୟାସକୁ ସେ ତାର ସଂକୀର୍ଣ୍ଣ ପରିସରରୁ ଉଦ୍ଧାର କରି ଏକ ପ୍ରଶସ୍ତ ପରିଧିରେ ଚୁଙ୍କିମନ୍ତ କରିଥିଲେ ଏବଂ ତଦ୍ୱାରା ଭାରତୀୟ ଗ୍ରାମ୍ୟ-ଜୀବନରେ ଅଭିଷେକ ସମ୍ପାଦନ କରିଥିଲେ । ଉତ୍ତରଭାରତର ଗ୍ରାମ୍ୟଜୀବନର ଶୋଷକ, ନବାବ, ତାଲୁକଦାର, ବ୍ୟବସାୟୀ, ପୁରୋହିତ, ଜମିଦାର ଏବଂ ସାଧାରଣ ଖଟିଖିଆ ଶ୍ରମିକ, ବିଭିନ୍ନ ସାମାଜିକ ସମସ୍ୟା ଏବଂ ସଙ୍ଘର୍ଷର ବର୍ଣ୍ଣନା ତଥା ବ୍ୟାଖ୍ୟାରେ ତାଙ୍କର ଗଳ୍ପ ଉପନ୍ୟାସ ସମୂହ ଅଦ୍ୱିତୀୟ ।

ଭାରତୀୟ ଜାତୀୟ ଆନ୍ଦୋଳନ ମଧ୍ୟ ତାଙ୍କୁ କମ୍ ପ୍ରଭାବିତ କରି ନ ଥିଲା । ବିଭିନ୍ନ ପତ୍ରପତ୍ରିକାର ସଂପାଦନା ଦାୟିତ୍ୱ ମଧ୍ୟ ସେ ଗ୍ରହଣ କରିଥିଲେ । ଯୌତୁକ ପ୍ରଥା ଏବଂ ବାରାଙ୍ଗନା ଜୀବନସମ୍ବଳିତ 'ସେବାସଦନ' ତାଙ୍କର ହିନ୍ଦୀ ଭାଷାରେ ଲିଖିତ ପ୍ରଥମ ଉପନ୍ୟାସ । 'ସେବାସଦନ' ପ୍ରକାଶିତ ହେବାମାତ୍ରେ ସମସ୍ତେ

ପ୍ରେମଚନ୍ଦଙ୍କ ଅସାଧାରଣ ପ୍ରତିଭାର ପରିଚୟ ପାଇଥିଲେ । ଏହାପରେ ପ୍ରେମାଶ୍ରମ, କାୟାକଳ୍ପ, ନିର୍ମଳା, ବରଦାନ, ରଂଗଭୂମି, କର୍ମଭୂମି, ଗବନ ପ୍ରଭୃତି ଉପନ୍ୟାସ ପ୍ରକାଶିତ ହୋଇଥିଲା । 'ଗୋଦାନ' ହେଉଛି ଭାରତୀୟ କୃଷକଜୀବନର ଶ୍ରେଷ୍ଠ ଗଦ୍ୟ କାବ୍ୟ । ତାଙ୍କର କେତେକ କ୍ଷୁଦ୍ରଗଳ୍ପ; ଯଥା—ଧୋକା, ଦୋଖିଗ, ବେଶ୍ଠୀକା ଦାନ, ପଞ୍ଚପରମେଶ୍ବର, ଶଙ୍ଖନାଦ—ଅପୂର୍ବ ଗଳ୍ପକଳାର ସଫଳ କୃତି । ସମଗ୍ର ମାନବସମାଜରୁ ଦୁଃଖ ଏବଂ ଦାରିଦ୍ର୍ୟର ଅବସାନ ହେଉଛି ତାଙ୍କର ସମସ୍ତ ଗଳ୍ପ ଏବଂ ଉପନ୍ୟାସର ମର୍ମବାଣୀ ।

ପ୍ରେମଚନ୍ଦ୍ଙ୍କ ପ୍ରତିଭାର ପୂର୍ଣ୍ଣ ଉନ୍ମେଷଯୋଗୁଁ ପରବର୍ତ୍ତୀ ହିନ୍ଦୀ ଉପନ୍ୟାସ-ଧାରା ସାମାଜିକ, ଐତିହାସିକ, ବାସ୍ତବବାଦୀ—ଏପରି ବିଭିନ୍ନ ପର୍ଯ୍ୟାୟରେ ପ୍ରବାହିତ ହୋଇଥିଲା । ପୁନଶ୍ଚ ସ୍ଵାଧୀନତା ପରବର୍ତ୍ତୀ ହିନ୍ଦୀ ଉପନ୍ୟାସରେ ଆହୁରି ଦୁଇଗୋଟି ନୂତନ ସ୍ଵର ଶୁଣାଗଲା । ତାହା ହେଉଛି ମନସ୍ତାତ୍ତ୍ଵିକ ଏବଂ ପ୍ରଗତିବାଦୀ ।

ବିଶ୍ଵମ୍ଭର ଶର୍ମା 'କୌଶିକ' (୧୮୯୨—୧୯୪୫) ପ୍ରେମଚନ୍ଦ୍ଙ୍କ ଅପେକ୍ଷା ଉପନ୍ୟାସରେ ଆହୁରି କେତେକ ନୂତନ ଦିଗ୍‌ଦର୍ଶନ ଦେଇଥିଲେ । ସେ ଘୋଷଣା କରିଥିଲେ ମୁଁ ମୋର ଉପନ୍ୟାସର ଚରିତ୍ରଗୁଡ଼ିକ ନିୟନ୍ତ୍ରଣ କରେ ନାହିଁ । ଏଥିରୁ ତାଙ୍କ ଦୃଷ୍ଟିକୋଣ ଅନୁମେୟ । ଆଦର୍ଶବାଦୀ କଥାଶିଳ୍ପୀ ଜୟଶଙ୍କର ପ୍ରସାଦଙ୍କ ଉପନ୍ୟାସରେ ବ୍ୟକ୍ତି ଉପରେ ସମାଜ ସୃଷ୍ଟି କରି ଶେଷରେ ତାହାର କବଳରେ 'ବନ୍ଦୀ'—ଏହାହିଁ ଚିତ୍ରିତ । ସମାଜ-ସଂସ୍କାରମୂଳକ କଙ୍କାଳ ଏବଂ 'ତିତଲି' ଉପନ୍ୟାସରେ ରୋମାଣ୍ଟିକ ଭାବଧାରା ନାରୀର ଦୁର୍ବଳତା ମାଧ୍ୟମରେ ପ୍ରତିଫଳିତ । ବାସ୍ତବତା ନାମରେ କେତେଜଣ ଲେଖକ ହିନ୍ଦୀ ଉପନ୍ୟାସରେ ନଗ୍ନ ଯୌନଚିତ୍ରକୁ ପ୍ରଶ୍ରୟ ଦେଇଥିଲେ । ଋଷଭଚରଣ ଜୈନଙ୍କର 'ଚମ୍ପାକଲି', ଚତୁରସେନ ଶାସ୍ତ୍ରୀଙ୍କର 'ଅମର ଅଭିଳାଷ', ପାଣ୍ଡେ ବେଚନ ଶର୍ମାଙ୍କର 'ଦିଲ୍ଲୀକା ଦଲାଲ' ଉଲ୍ଲେଖଯୋଗ୍ୟ । କ୍ରମେ ମନସ୍ତତ୍ତ୍ଵ ଉପନ୍ୟାସରେ ପ୍ରଧାନ ଭୂମିକା ଗ୍ରହଣ କରିଥିଲା । ଇଲାଚନ୍ଦ୍ର ଯୋଷୀଙ୍କର 'ପ୍ରେତ ଔର୍ ଛାୟା' ଉପନ୍ୟାସରେ ନାୟକ ପାରଶନାଥ କଲିକତାରୁ ପାଠପଢ଼ା ସାରି ଘରକୁ ଫେରି ଶୁଣିଥିଲା ଯେ ତା'ର ମା' ଜଣେ ଡାକ୍ତର ସହିତ ଅବୈଧ ପ୍ରଣୟ କରି ତାକୁ ଜନ୍ମ ଦେଇଥିଲା । ଏହି ଘଟଣା ତା' ମନରେ ନିଷ୍ଠୁର ଆଘାତ ଦେଇଥିଲା । ସେ ଘରୁ ପଳାଇଛି । ହୋଟେଲରେ ମଞ୍ଜୁରୀ ସହିତ ସାକ୍ଷାତ ହୋଇଛି । ମଞ୍ଜୁରୀ ହୋଟେଲରେ ନିଜ ରୂପ ବିକ୍ରୟ କରି ମାଆକୁ ପୋଷୁଥିଲା ଏବଂ ପାଠପଢ଼ା ଖର୍ଚ୍ଚ ତୁଲାଉଥିଲା । ମଞ୍ଜୁରୀ ଯେତେବେଳେ ଅନ୍ତଃସତ୍ତ୍ଵା ହେଲା, ପାରଶନାଥ ତାକୁ ଛାଡ଼ି ନନ୍ଦିନୀ ସହିତ ଲକ୍ଷ୍ନୌ ଚାଲିଗଲା । ପୁଣି ନନ୍ଦିନୀକୁ ଛାଡ଼ି ତାର ଭଉଣୀ ହୀରା ସହିତ ସେ କଲିକତା ଚାଲିଗଲା । ଶେଷରେ ନାୟକ ଉପଲବ୍ଧି କରିଥିଲା ଯେ ଅବୈଧ ସନ୍ତାନ ନାହାନ୍ତି; ମାତ୍ର ଅବୈଧ ପିତାମାତା ଥାଇପାରନ୍ତି ।

ତାଙ୍କର ଏକ ଉପନ୍ୟାସ 'ଜାହାଜ୍ କା ପଞ୍ଛୀ'ରେ ମନସ୍ତାତ୍ତ୍ୱିକ ବିଶ୍ଳେଷଣ ଅପେକ୍ଷା ସାମାଜିକ ବାସ୍ତବତା ଅଧିକ ସ୍ପଷ୍ଟ । ଏହି ଉପନ୍ୟାସରେ କଲିକତା ନଗରୀର ଆବର୍ଜ୍ଜନାମୟ ପରିବେଶ ହିଁ ପ୍ରତିଫଳିତ । ତାଙ୍କର 'ପରଦେ କୀ ରାନୀ' ଉପନ୍ୟାସରେ ମଧ୍ୟ ଯୁବକ ଆଉ ନାରୀର କାମଜ ପ୍ରେମ ସମ୍ପର୍କ ଏବଂ ସେହି ସମ୍ପର୍କର ଜଟିଳତା ହିଁ ସୂଚୀତ । ସତେ ଅବା ମଣିଷ ସ୍ତ୍ରୀ ସହିତ ବାସ କରିପାରେ ନାହିଁ ଏବଂ ତାକୁ ଛାଡ଼ି ମଧ୍ୟ ରହିପାରେ ନାହିଁ । ଏହା ତାଙ୍କ ଉପନ୍ୟାସରେ ପ୍ରମାଣିତ । ତାଙ୍କର 'ସନ୍ନ୍ୟାସୀ' ଉପନ୍ୟାସ ମଧ୍ୟ ଫ୍ରଏଡ୍‌ଙ୍କ ଯୌନତଥ୍ୟ ଉପରେ ଆଧାରିତ ।

ମନସ୍ତତ୍ତ୍ୱମୂଳକ ଉପନ୍ୟାସର ପ୍ରଭାବଶାଳୀ ଲେଖକ ଭାବରେ ଜୈନେନ୍ଦ୍ର-କୁମାରଙ୍କ (ଜନ୍ମ-୧୯୦୫) ଭୂମିକା ସର୍ବଦା ସ୍ୱୀକୃତ । ତାଙ୍କର 'କଲ୍ୟାଣୀ', 'ସୁନୀତା', 'ତ୍ୟାଗପତ୍ର,' 'ସୁଖଦା' ପ୍ରଭୃତି ଉପନ୍ୟାସ ସ୍ତ୍ରୀ-ପୁରୁଷ ସମ୍ପର୍କର ଯଥାର୍ଥ ମନସ୍ତାତ୍ତ୍ୱିକ ଅଧ୍ୟୟନ । ଉଦାହରଣ ସ୍ୱରୂପ, 'ସୁନୀତା' ଉପନ୍ୟାସରେ ନାୟକ ଶ୍ରୀକାନ୍ତର ଅନୁପସ୍ଥିତିରେ ହରିପ୍ରସନ୍ନ ତାର ସ୍ତ୍ରୀ ସୁନୀତାକୁ ବାହାରକୁ ନେଇଯାଇଛି ଏବଂ ଜ୍ୟୋତ୍ସ୍ନା ରାତିର ନିରୋଳା ମୁହୂର୍ତ୍ତିରେ ସୁନୀତା ପ୍ରତି ଆକୃଷ୍ଟ ହୋଇଛି । ସୁନୀତା ମଧ୍ୟ ଦୈହିକ ପ୍ରଲୋଭନରେ ନିଜକୁ ସମର୍ପଣ କରିଛି । ବନ୍ଧୁ ପ୍ରତି ବିଶ୍ୱାସଘାତକତା କରିଥିବା ଯୋଗୁଁ ପରେ ହରିପ୍ରସନ୍ନ ମନରେ ଗ୍ଲାନି ଦେଖାଦେଇଛି । ତାଙ୍କର ପରବର୍ତ୍ତୀ ଉପନ୍ୟାସ 'ବିବର୍ତ୍ତି' ଏବଂ 'ବ୍ୟତୀତ'ରେ ବୌଦ୍ଧିକ ବିଶ୍ଳେଷଣ ଏବଂ ମାନବିକ ସହାନୁଭୂତିର ସମନ୍ୱୟ ଦେଖାଯାଏ ନାହିଁ । ଜୈନେନ୍ଦ୍ରକୁମାର ତାଙ୍କର ଏକ ଉପନ୍ୟାସରେ ଦେଶର ପ୍ରଧାନମନ୍ତ୍ରୀଙ୍କର ଆଦର୍ଶଗତ ବିଫଳତା ଉପରେ ପ୍ରହାର କରିଛନ୍ତି ।

ଭଗବତୀଚରଣ ବର୍ମାଙ୍କ (ଜନ୍ମ-୧୯୦୩) ଉପନ୍ୟାସର ଲକ୍ଷଣ ହେଉଛି ବ୍ୟକ୍ତି-ସ୍ୱାତନ୍ତ୍ର୍ୟ । ମାତ୍ର ତାଙ୍କର ଏହି ଅହଂଭାବ ଗାନ୍ଧୀଦର୍ଶନ-ବିଶ୍ଳେଷଣ ସୂତ୍ରରେ ପ୍ରତିବିମ୍ବିତ । ତାଙ୍କର ଉପନ୍ୟାସ ମଧ୍ୟରେ 'ଟେଢ଼େମେଢ଼େ ରାସ୍ତେ', 'ତୀନ୍‌ବର୍ଷ', 'ଅଖିରୀ ଦାଁଓ', 'ଚିତ୍ରଲେଖା' ପ୍ରଧାନ । ଐତିହାସିକ ପୃଷ୍ଠଭୂମିରେ ରଚିତ ରାଜ-ନର୍ତ୍ତକୀ କାହାଣୀ 'ଚିତ୍ରଲେଖା' ଉପନ୍ୟାସରେ କୁମାର ଗିରି କିପରି ଚିତ୍ରଲେଖାଦ୍ୱାରା ଆକୃଷ୍ଟ ହୋଇ ନିଜର ପୂର୍ବ ସଂକଳ୍ପଠାରୁ ଦୂରେଇଗଲା, ତାହା ଦେଖିବାକୁ ମିଳେ । ତାଙ୍କ ଉପନ୍ୟାସରେ ଦର୍ଶନ ଏବଂ ଆଦର୍ଶର ଆଧିକ୍ୟ ହିଁ ପରିଦୃଷ୍ଟ । ବର୍ମାଜୀ ଗୃହସ୍ଥାବାଦୀ ଆନ୍ଦୋଳନ ବିରୋଧରେ ସ୍ୱର ଉତ୍ତୋଳନ କରିଥିଲେ । ତାଙ୍କର 'ଟେଢ଼େ ମେଢ଼େ ରାସ୍ତେ' ଉପନ୍ୟାସରେ ପ୍ରାଚୀନପନ୍ଥୀ ପିତା ଜଣେ ତାଲୁକଦାର । ତିନି ପୁତ୍ରଙ୍କ ମଧ୍ୟରେ ଜଣେ ଗାନ୍ଧିବାଦୀ, ଜଣେ କମ୍ୟୁନିଷ୍ଟ, ଜଣେ ସନ୍ତ୍ରାସବାଦୀ । ଲେଖକଙ୍କର ଗାନ୍ଧିବାଦୀ ଚରିତ୍ର ସାର୍ଥକ ହୋଇଛି । 'ଅଖିରୀ ଦାଁଓ' ଉପନ୍ୟାସରେ ନାରୀର ପ୍ରେମ, ଯୁବକର ବିଶ୍ୱାସଘାତକତା, ଶେଷରେ ନାରୀରୂପର ଆକର୍ଷଣ ହିଁ ବର୍ଣ୍ଣିତ ।

ହିନ୍ଦୀ ଉପନ୍ୟାସରେ ଐତିହାସିକ କଥାବସ୍ତୁର ବ୍ୟବହାର ମଧ୍ୟ ବିସ୍ତୃତ ଭାବରେ କରାଯାଇଥିଲା । ଆଧୁନିକ ଜୀବନର ଘଟଣାବଳୀ ଅନେକ ଲେଖକଙ୍କୁ ଆକୃଷ୍ଟ କରି ନଥାଏ । ସେମାନେ ଅତୀତର ଇତିହାସକୁ ଉପନ୍ୟାସରେ ବେଶି ପ୍ରୟୋଗ କରିଥାନ୍ତି । ଏହିପରି ଔପନ୍ୟାସିକମାନଙ୍କ ମଧ୍ୟରେ ଚତୁରସେନ୍ ଶାସ୍ତ୍ରୀ (ଜନ୍ମ ୧୮୮୬), ବୃନ୍ଦାବନ ଲାଲ ବର୍ମା, ରାହୁଲ ସାଂକୃତାୟନଙ୍କ ନାମ ଉଲ୍ଲେଖ-ଯୋଗ୍ୟ । ଚତୁର୍‌ସେନ ଶାସ୍ତ୍ରୀ ତାଙ୍କର 'ବୈଶାଲୀ କୀ ନଗରବଧୂ'ରେ 'ଆମ୍ରପାଲ୍ଲୀ' ଚରିତ୍ର ମାଧ୍ୟମରେ ନାରୀର ଯୌବନ ତଥା ରୂପପିପାସୁମାନଙ୍କର ଏକ ମନୋଜ୍ଞ ଗଦ୍ୟ-କାବ୍ୟ ରଚନା କରିପାରିଛନ୍ତି ।

ଶ୍ରେଷ୍ଠ ଐତିହାସିକ ଉପନ୍ୟାସ ଲେଖକ ଭାବରେ ବୃନ୍ଦାବନ ଲାଲ ବର୍ମା (୧୮୮୯) ହିନ୍ଦୀ ସାହିତ୍ୟରେ ଉଚ୍ଚ ସ୍ଥାନର ଅଧିକାରୀ । ବିଭିନ୍ନ ଶତାବ୍ଦୀର ରାଜ-ନୈତିକ ଇତିହାସ ଅନୁସରଣରେ ଲେଖକ ଦ୍ୱିବିଧ ଉପନ୍ୟାସ ରଚନା କରିଛନ୍ତି । 'ଗଡ଼କୁଣ୍ଡାର', 'ମୃଗନୟନୀ', 'ବିରାଟ୍ କୀ ପଦ୍ମିନୀ', 'ଝାନ୍‌ସୀ କୀ ରାନୀ' ପ୍ରଭୃତି ଉପନ୍ୟାସ ଗଠନଶୀଳ, ଦେଶାତ୍ମବୋଧ ଏବଂ ଜୀବନର ଗଭୀର ମୂଲ୍ୟବୋଧ ବିଗ୍ରହରେ ଏକ ଏକ ସଫଳ କୃତି । ରାହୁଲ୍ ସାଂକୃତାୟନଙ୍କର 'ସିଂଘସେନାପତି', 'ଭଲଗାସେ ଗଙ୍ଗା' ଉପନ୍ୟାସ ମଧ୍ୟ ଇତିହାସ ଉପରେ ଆଧାରିତ । ପଣ୍ଡିତ ହଜାରୀ ପ୍ରସାଦ ଦ୍ୱିବେଦୀଙ୍କର 'ବାଣଭଟ୍ଟଙ୍କ ଆତ୍ମକଥା' ଐତିହାସିକ ଉପନ୍ୟାସ ନହେଲେ ମଧ୍ୟ ଇତିହାସର ପ୍ରଚୁର ଉପାଦାନକୁ ନେଇ ଲିଖିତ । ଏହି ଔପନ୍ୟାସିକମାନେ ରାଜନୈତିକ ଘଟଣାବଳୀର ସାମାଜିକ ଚିତ୍ରଣ କରିଛନ୍ତି । ଯଶପାଲ୍ ଏବଂ ଆଗୃତ୍ୟ ଚତୁର୍‌ସେନ୍ ଶାସ୍ତ୍ରୀଙ୍କର କେତେକ ଉପନ୍ୟାସ ମଧ୍ୟ ଏହି ପର୍ଯ୍ୟାୟଭୁକ୍ତ ।

ପ୍ରେମଚନ୍ଦ୍ରଙ୍କ ପରବର୍ତ୍ତୀ ହିନ୍ଦୀ ଉପନ୍ୟାସଧାରା ପ୍ରଗତିବାଦୀ ଆନ୍ଦୋଳନ-ଦ୍ୱାରା ପ୍ରଭାବିତ ହୋଇଥିବାର ଜଣାଯାଏ । ଏହି ଧାରାର ଶକ୍ତିଶାଳୀ ଔପନ୍ୟାସିକ ହେଉଛନ୍ତି ଯଶପାଲ୍ (ଜନ୍ମ : ପଞ୍ଜାବ-ଫିରୋଜପୁର-୧୯୦୩) । ତୀବ୍ର ସାମାଜିକ ଚେତନା ଏବଂ ସାମନ୍ତବାଦର ଉଚ୍ଛେଦ ସାଧନ ତାଙ୍କ ଉପନ୍ୟାସର ଏକ ବ୍ୟଙ୍ଗ ବିଦ୍ରୂପାତ୍ମକ ପୃଷ୍ଠଭୂମିରେ ପ୍ରତିବିମ୍ବିତ । ଲେଖକ ସର୍ବହରା ସମାଜର ଚିତ୍ର ତାଙ୍କ ଉପନ୍ୟାସରେ ଅଙ୍କନ କରିବାରେ ସିଦ୍ଧହସ୍ତ । ତାଙ୍କର ପ୍ରଧାନ ଉପନ୍ୟାସ 'ଦାଦା କମ୍ରେଡ୍' (୧୯୪୧) ରେ ଭାରତର ସଂତ୍ରାସବାଦୀ ଆନ୍ଦୋଳନ, 'ଦେଶଦ୍ରୋହୀ'ରେ ୧୯୪୨ ମସିହାର ଭାରତଛାଡ଼ ସଂଗ୍ରାମ, 'ଦିବ୍ୟା'ରେ ଅଜନ୍ତାର ଜୀବନ ଏବଂ ବୌଦ୍ଧଯୁଗର ସମାଜ, ଏବଂ 'ପାର୍ଟି କମ୍ରେଡ୍'ରେ ରୟାଲ ଇଣ୍ଡିଆନ୍ ନାଭି ବିଦ୍ରୋହ କଥାବସ୍ତୁରୂପେ ପ୍ରତିଫଳିତ । ଯଶପାଲ ଜଣେ ମାର୍କସ୍‌ବାଦୀ ଲେଖକ ଏବଂ ୧୯୪୦ରେ ପ୍ରକାଶିତ ତାଙ୍କର 'ମାର୍କସ୍‌ବାଦ୍' ପୁସ୍ତକ ଆଦୃତ ହୋଇଥିଲା । ଘଟଣାର ସମାବେଶ, ଚରିତ୍ରର ଉପସ୍ଥାପନା, ପୃଷ୍ଠଭୂମିର ବିଶାଳତା

ଏବଂ ସାଧାରଣ ଜୀବନର ସ୍ୱୀକୃତ ତାଙ୍କର ଉପନ୍ୟାସ ବହନ କରିଅଛି ।

ଯଶପାଲ୍‌ଙ୍କ ମାର୍କସ୍‌ବାଦୀ ଦୃଷ୍ଟିକୋଣ ତାଙ୍କ ବ୍ୟକ୍ତିଗତ ଜୀବନର ଘଟଣା-ପ୍ରବାହର ପ୍ରତିଫଳନ ବୋଲି କୁହାଯାଇପାରେ । ଯୌବନରେ ପ୍ରସିଦ୍ଧ ବିପ୍ଳବୀ ଭଗତସିଂଙ୍କ ସହିତ ତାଙ୍କର ବନ୍ଧୁତା, ଭାରତୀୟ ଜାତୀୟ କଂଗ୍ରେସରେ ତାଙ୍କର ସକ୍ରିୟ ଭୂମିକା, କାରାବରଣ ଏବଂ କାରାଗାର ପ୍ରାଚୀର ମଧ୍ୟରେ ବିପ୍ଳବିନୀ ପ୍ରକାଶ-ବତୀଙ୍କ ସହିତ ତାଙ୍କର ବିବାହ, କାରାରୁ ମୁକ୍ତିଲାଭ କରିବା ପରେ 'ବିପ୍ଳବ' ପତ୍ରିକାର ସମ୍ପାଦନା -- ଯଶପାଲ୍‌ଙ୍କ ବିପ୍ଳବୀ-ଜୀବନର ବିଚିତ୍ରତା । ଉଗ୍ର ଜାତୀୟତାର ଉପାସକ ଭାବରେ ଔପନ୍ୟାସିକ ଏବଂ ଗାଳ୍ପିକ ଯଶପାଲ ସୁପରିଚିତ ।

ଯଶପାଲ୍‌ଙ୍କର 'ଝୁଟାସଚ୍' ଉପନ୍ୟାସ ପ୍ରେମଚନ୍ଦ୍‌ଙ୍କ 'ଗୋଦାନ' ପରେ ଶ୍ରେଷ୍ଠ କୃତିରୂପେ ବିବେଚିତ ହୋଇଥାଏ । ଭାରତ ଭାଗ ଭାଗ ହେବାର ପୂର୍ବ ଏବଂ ପରବର୍ତ୍ତୀ କାଳର ପଞ୍ଜାବ, ଦିଲ୍ଲୀ, ଜାଲନ୍ଧର ପ୍ରଭୃତି ଅଞ୍ଚଳର ନିମ୍ନ ମଧ୍ୟବିତ୍ତ-ଶ୍ରେଣୀର କରୁଣ ଏବଂ ଶୋଚନୀୟ ଦୁଃଖ-ଦୁର୍ଦ୍ଦଶା ତଥା ଜୀବନ-ସଂଗ୍ରାମ ଏହି ଉପନ୍ୟାସରେ ଶକ୍ତିଶାଳୀ ଭାଷାରେ ବର୍ଣ୍ଣିତ । ଲାହୋର ସହରର ଏକ ଗଳିରେ ଉପନ୍ୟାସର କଥାବସ୍ତୁ ଆରମ୍ଭ ହୋଇଛି ! ବିବିଧ ଚରିତ୍ର, ବିବିଧ ଅଭିଜ୍ଞତା ଏହି ଉପନ୍ୟାସର ଆଙ୍ଗିକ ଏବଂ ଶୈଳ୍ପିକ ସଫଳତା ପାଇଁ ଦାୟୀ । ଉପନ୍ୟାସର ଅନେକ ପ୍ରଧାନ ଚରିତ୍ରପୁରୁଷ ବାହାରର ଆକର୍ଷଣଦ୍ୱାରା ପ୍ରଭାବିତ । ମାତ୍ର ନାୟିକା କୌଣସି ପ୍ରଲୋଭନ ନିକଟରେ ମୁଣ୍ଡ ନୁଆଁଇ ନଥିଲି । ତାଙ୍କର ବହୁ ଉପନ୍ୟାସ ଏବଂ କ୍ଷୁଦ୍ରଗଳ୍ପରେ ନୂତନ ପୃଥିବୀର ନୂତନ ନରନାରୀଙ୍କର ବାସ୍ତବ ଚିତ୍ର ଦେଖିବାକୁ ମିଳେ ।

ଉଗ୍ର ଜାତୀୟ ଭାବାପନ୍ନ ଏବଂ ଭାବପ୍ରବଣ କବି ସଚ୍ଚିଦାନନ୍ଦ ହୀରାନନ୍ଦ ବାତ୍ସ୍ୟାୟନ (ଜନ୍ମ-୧୯୧୧) ଜଣେ ନିପୁଣ ଔପନ୍ୟାସିକ ଭାବରେ ମଧ୍ୟ ପରିଚିତ । ଶୈଶବରେ ଅନିୟମିତ ଭାବରେ ଶିକ୍ଷାଲାଭ, ପରେ ବିଜ୍ଞାନରେ କଲେଜରୁ ଉତ୍ତୀର୍ଣ୍ଣ ହେବା, ସନ୍ତ୍ରାସବାଦୀ ଆନ୍ଦୋଳନରେ ଯୋଗଦାନ, ଗିରଫ୍ ଏବଂ ଦୀର୍ଘଦିନ କାରାବରଣ, ବିବାହ ଏବଂ ପରେ ସ୍ତ୍ରୀଙ୍କ ସହିତ ମନୋମାଳିନ୍ୟ ଏବଂ ଛାଡ଼ପତ୍ର, ସୈନ୍ୟ ବିଭାଗର ପ୍ରଚାର ଅଫିସରଭାବେ କାର୍ଯ୍ୟ କରିବା, ସାହିତ୍ୟ ପତ୍ରିକା 'ପ୍ରତୀକ' ସମ୍ପାଦନା,—ବାତ୍ସ୍ୟାୟନଙ୍କ ସ୍ରଷ୍ଟା-ଜୀବନର ପ୍ରଧାନ ଘଟଣା । ଉଭୟ କ୍ଷୁଦ୍ରଗଳ୍ପ ଏବଂ ଉପନ୍ୟାସ କ୍ଷେତ୍ରରେ ତାଙ୍କ ଲେଖନୀର ସିଦ୍ଧି ସ୍ୱୀକୃତ । ୧୯୨୦-୧୯୬୦ ମସିହାର ପରିପ୍ରେକ୍ଷୀରେ ସନ୍ତ୍ରାସବାଦୀ ବିପ୍ଳବର ପୃଷ୍ଠଭୂମିରେ ଲିଖିତ ଆତ୍ମଜୀବନୀ-ମୂଳକ 'ଶେଖର—ଏକ ଜୀବନୀ' ତାଙ୍କର ଶ୍ରେଷ୍ଠ ଉପନ୍ୟାସ । ପୁନଶ୍ଚ 'ନଦୀ କା ଦ୍ୱୀପ୍' ତାଙ୍କର ଆଉ ଏକ ଉପନ୍ୟାସ । ନିର୍ମାଣଶୈଳୀ, ନୂତନ ଆଙ୍ଗିକର ପ୍ରୟୋଗ ଏବଂ ଏକ ପାଶ୍ଚାତ୍ୟ ଦୃଷ୍ଟିଭଙ୍ଗୀ ତାଙ୍କ କଥାଶିଳ୍ପର ବିଶେଷତ୍ୱ । ଅଜ୍ଞେୟଙ୍କର ଉପନ୍ୟାସ-

ବର୍ଣ୍ଣିତ ଚରିତ୍ର ସ୍ଥିତିବାଦୀ ନିଦର୍ଶନ ବୋଲି ଜଣାଯାଏ । ସାମାଜିକ ବାସ୍ତବତା ଅପେକ୍ଷା ଆଉ ଏକ ନୂତନ ଶୈଳୀ ତାଙ୍କ କୃତିରେ ପରିଦୃଷ୍ଟ । ସ୍ଥିତିବାଦର ମଧ୍ୟରେ ଜଣେ ପ୍ରବର୍ତ୍ତକ । ଅଜ୍ଞେୟଙ୍କ ଉପନ୍ୟାସର ସମସ୍ୱର ଯେପରି ଧର୍ମବୀର ଭାରତୀଙ୍କ ଉପନ୍ୟାସ 'ଗୁନାହନ୍ କା ଦେବତା'ରେ ପ୍ରତିଧ୍ୱନିତ । ଯୌନାଭିଶଯ୍ୟ ହେତୁ ଏହି ଉପନ୍ୟାସ ଯୁବକମାନଙ୍କ ଦ୍ୱାରା ଆଦୃତ । 'ସ୍ୱରାଜ୍ କା ସତାବନ ଘୋଡ଼ା' ସାଧାରଣ ଚରିତ୍ରକୁ ନେଇ ଲିଖିତ ।

ପ୍ରଗତିବାଦୀ କଥାଶିଳ୍ପୀଭାବେ ଉପେନ୍ଦ୍ରନାଥ ଅସ୍କ ଉଭୟ ହିନ୍ଦୀ ଏବଂ ଉର୍ଦ୍ଦୁ ଉପନ୍ୟାସରେ ଶ୍ରେଷ୍ଠ ଆସନର ଅଧିକାରୀ । ସୁନିର୍ବାଚିତ ଭାଷା, ସୁନିର୍ଦ୍ଦିଷ୍ଟ ଚରିତ୍ର ଏବଂ ବ୍ୟକ୍ତି ଓ ସମାଜର ଦ୍ୱନ୍ଦ୍ୱ ତାଙ୍କ ଉପନ୍ୟାସର ଆକର୍ଷଣ । 'ଗିରତୀ ଦେଓ୍ୱାରେନ୍', 'ସୀତାରନ୍ କା ଖେଲ', 'ଗରମ୍‌ରାଖ୍' ତାଙ୍କର ବିଭିନ୍ନ ଉପନ୍ୟାସ । ପ୍ରଥମ ଉପନ୍ୟାସରେ ନିମ୍ନ ମଧ୍ୟବିତ୍ତ ପଞ୍ଜାବୀ ଯୁବକର ଦ୍ୱନ୍ଦ୍ୱ-ଜର୍ଜ୍ଜରିତ ଜୀବନର କରୁଣ ଆଲେଖ୍ୟ ପ୍ରଦତ୍ତ । ସେହି ଦ୍ୱନ୍ଦ୍ୱ ହେଉଛି ଜୀବିକାର୍ଜ୍ଜନ ଏବଂ ଯୌନକ୍ଷୁଧାର ଆଲୋଡ଼ନ । ଅସ୍କଙ୍କର ଚିନ୍ତା ଯୌନ ସଂସ୍କାରବିରୋଧୀ ବୋଲି ଅନୁମାନ କରାଯାଏ । 'ଗରମ୍‌ରାଖ୍' ତାଙ୍କର ଏକ ସାର୍ଥକ କୃତି । ଅସ୍କ ନିଶ୍ଚିତ ଭାବରେ ହିନ୍ଦୀ ଉପନ୍ୟାସର ପ୍ରଗତିବାଦୀ ଧାରାର ଲେଖକ ।

ହିନ୍ଦୀ ଉପନ୍ୟାସ-ରାଜ୍ୟରେ ଆଉ ଏକ ଉଲ୍ଲେଖଯୋଗ୍ୟ ପରିବର୍ତ୍ତନ ହେଉଛି ଭାରତୀୟ ଗ୍ରାମମାନଙ୍କ ପ୍ରତି ଦୃଷ୍ଟିପାତ । ନାଗାର୍ଜ୍ଜୁନ କ୍ରମାଗତ ଭାବରେ ଗ୍ରାମ ଏବଂ ଗ୍ରାମବାସୀ କୃଷକ ସମ୍ପ୍ରଦାୟକୁ କେନ୍ଦ୍ର କରି ଏକାଧିକ ଉପନ୍ୟାସ ରଚନା କରିଛନ୍ତି । ତାଙ୍କର 'ବାଲ୍‌ଚନାମା', 'ବାବା ବଟେଶ୍ୱରନାଥ', 'ବରୁଣ କେ ବେଟୀ' ଏବଂ 'ଦୁଃଖମୋଚନ' ପ୍ରଭୃତି ବହୁପଠିତ ଉପନ୍ୟାସ । 'ବାଲ୍‌ଚନାମୀ' ଉପନ୍ୟାସରେ ଜମିଦାର ଗୃହରେ ନିର୍ଯ୍ୟାତିତ ଭୃତ୍ୟର ଚିତ୍ର । ଶେଷରେ ଭୃତ୍ୟର ସହରକୁ ପଳାୟନ ଏବଂ ଜଣେ ସଚେତନ ଶ୍ରମିକ ଭାବରେ ତାର ପରିବର୍ତ୍ତନ ଦେଖିବାକୁ ମିଳେ । ତାଙ୍କ ଉପନ୍ୟାସରେ ସାଧାରଣତଃ ଉତ୍ତର-ବିହାରର କୃଷୀମାନେ ହିଁ ସମବେଦନାର ସହିତ ଚିତ୍ରିତ ହୋଇଛନ୍ତି । ନାଗାର୍ଜ୍ଜୁନ ସାଧାରଣତଃ ବାମପନ୍ଥୀ ପ୍ରଗତିଶୀଳ ଲେଖକରୂପେ ପରିଚିତ ।

'ମୈଲା ଅଞ୍ଚଲ୍', 'ପାରିପରିକଥା' ନାମକ ଉପନ୍ୟାସଦ୍ୱୟର ସ୍ରଷ୍ଟା । 'ରେନୁ' ଆଧୁନିକ ହିନ୍ଦୀ ଉପନ୍ୟାସ ଏବଂ କ୍ଷୁଦ୍ର ଗଳ୍ପରେ ସିଦ୍ଧି ଅର୍ଜ୍ଜନ କରିପାରିଛନ୍ତି । 'ରେନୁ' ମଧ୍ୟ ତାଙ୍କ ଉପନ୍ୟାସରେ ଉତ୍ତର ବିହାରର ଜନଜୀବନ ପ୍ରତିଫଳିତ କରାଇଛନ୍ତି । ଲେଖକ ତାଙ୍କ କୃତିମାନଙ୍କରେ ଭାଷାର କାରୁକାର୍ଯ୍ୟ ପ୍ରଦର୍ଶନ କରିଛନ୍ତି । ଜବାହରଲାଲ ପରିବର୍ତ୍ତେ 'ଜମାଣ୍ଡ'ର କମ୍ପା ରାଜେନ୍ଦ୍ରବାବୁ ସ୍ଥାନରେ 'ରାଜୀମାର'ର ଲେଖକ ନିଜ ଭାଷାରେ ମିଶାଇ ନେଇଛନ୍ତି । ଜୀବନର

ପ୍ରତିଧ୍ୱନି ଏବଂ ପ୍ରକୃତିର ମୂର୍ଚ୍ଛନାକୁ ସେ ତାଙ୍କ ଗଦ୍ୟଶିଳ୍ପରେ ଚିରଚଞ୍ଚଳ ଏବଂ ରସୋତ୍ତୀର୍ଣ୍ଣ କରିପାରିଛନ୍ତି । 'ରେନୁ' ସମାଜରେ ସଂଭ୍ରାନ୍ତ ଶାସକଗୋଷ୍ଠୀର ଦୁର୍ନୀତି ଏବଂ ଅସାମାଜିକ କାର୍ଯ୍ୟକଳାପ ନିର୍ଭୀକ ଭାବରେ ସମାଲୋଚନା କରିଛନ୍ତି । ତାଙ୍କ ଶୈଳୀ ଏବଂ ଆଙ୍ଗିକର ନୂତନତା ପାଠକମାନଙ୍କୁ ଆକର୍ଷଣ କରିଥାଏ । ତାଙ୍କର ବର୍ଣ୍ଣିତ 'ଜିତନ୍' ଏକ ଭୟଙ୍କର ଉଦ୍ଭଟ ଚରିତ୍ର । ରେନୁଙ୍କର ଆଦ୍ୟ ଉପନ୍ୟାସର ଯେଉଁ ଶିଳ୍ପପାଟବ ତଥା ଗଭୀର ଆବେଦନ, କ୍ରମଶଃ ତାହା ହ୍ରାସ ପାଇଥିଲା । ତାଙ୍କର କ୍ଷୁଦ୍ରଗଳ୍ପ ସଂକଳନ 'ଠୁମରୀ'ରେ ଶୈଳ୍ପିକ ଦକ୍ଷତା ବେଶ୍ ଉଲ୍ଲେଖଯୋଗ୍ୟ ।

ଭୈରବପ୍ରସାଦ ଗୁପ୍ତଙ୍କର ଉପନ୍ୟାସସମୂହ; ଯଥା—'ଗଙ୍ଗାମାଇ', 'ଜାଞ୍ଜିରେନ୍ ଅଉର୍ ନୟା ଆଦମ୍', 'ସତୀ ମାଇଆ କା ଚଉରା' ସାଂପ୍ରତିକ ଯୁଗର ପ୍ରଗତିଶୀଳ ଚିନ୍ତା ଏବଂ ଆଦର୍ଶଦ୍ୱାରା ଚିହ୍ନିତ ।

ଅମୃତଲାଲ ନାଗର ହେଉଛନ୍ତି ଜଣେ କୃତବିଦ୍ୟ ଶିଳ୍ପୀ, ଯାହାଙ୍କ ଉପନ୍ୟାସରେ ଉଭୟ ଲକ୍ଷ୍ନୌର ବାସ୍ତବ ଜୀବନ ଏବଂ ବଙ୍ଗଳା ଦୁର୍ଭିକ୍ଷର ଲୋମ-ହର୍ଷଣକାରୀ ଦୃଶ୍ୟ ସ୍ଥାନ ପାଇପାରେ । ତାଙ୍କର ଉପନ୍ୟାସ 'ମହାକାଲ' ବଙ୍ଗଳା ଦୁର୍ଭିକ୍ଷ ଉପରେ ଆଧାରିତ ଏବଂ 'ବୁନ୍ଦ୍ ଅଉର୍ ସମୁଦ୍ର' ଲକ୍ଷ୍ନୌ ଅଞ୍ଚଳର ଜୀବନ-ପ୍ରବାହକୁ କେନ୍ଦ୍ର କରି ଲିଖିତ । ଇଲାଚନ୍ଦ୍ର ଯୋଷୀଙ୍କର 'ଜାହାଜ୍ କା ପଂଛୀ'ର ବର୍ଣ୍ଣନା ସଦୃଶ ଅମୃତଲାଲଙ୍କର ପରିକଳ୍ପିତ ତରୁଣଶିଳ୍ପୀ ଆଶ୍ରମ ଜୀବନ ପ୍ରତି ଏକାନ୍ତ ଆକୃଷ୍ଟ । ରାମଚନ୍ଦ୍ର ତିୱାରୀଙ୍କ ଉପନ୍ୟାସ 'ସାଗର ସରିତା ଔର୍ ଆକାଶ'ର କଥାବସ୍ତୁ ମଧ୍ୟ ଦୁର୍ଭିକ୍ଷ ।

ରାଙ୍ଗେୟ ରାଘବ ତାଙ୍କ ଉପନ୍ୟାସଗୁଡ଼ିକରେ ଅପରାଧୀଗୋଷ୍ଠୀର ଜୀବନ-ଚିତ୍ର ପ୍ରଦର୍ଶନ କରିଥିଲେ । ତାଙ୍କର ଏପରି ଏକ ଉପନ୍ୟାସ ହେଉଛି, 'କବ୍ ତକ୍ ପୁକାରନ୍' । ତାଙ୍କର ଉପନ୍ୟାସ 'ମର୍ଦ୍ଦନ କାଟିଲା' ଅବଲୁପ୍ତ ମହେଞ୍ଜୋଦାରୋର ଗୌରବ ବର୍ଣ୍ଣନା କରିଥିଲା ।

ଆଚାର୍ଯ୍ୟ ଚତୁରସେନ୍ ଜଣେ ଶକ୍ତିଶାଳୀ ଔପନ୍ୟାସିକ ଥିଲେ । ହିନ୍ଦୀ ଔପନ୍ୟାସିକମାନଙ୍କ ମଧ୍ୟରେ ଚତୁରସେନ୍ ସର୍ବପ୍ରଥମେ ନାରୀର ଯୌନ ଉପଭୋଗ ସମ୍ପର୍କୀୟ ହିନ୍ଦୁର ନୈତିକତା ଏବଂ ପରଂପରାର ବିରୋଧ କରିଥିଲେ । ନାରୀ ତାର ବିବାହ ପରିସର ବାହାରେ ଯୌନଜୀବନ ଭୋଗ କରିବାରେ ଯେଉଁ କଟକଣା ଅଛି ତା ବିରୋଧରେ ଚତୁରସେନ୍ଙ୍କ ଉପନ୍ୟାସରେ ବର୍ଣ୍ଣିତ ନାୟିକା ରେଖା ଓ ମାୟା ସ୍ୱର ଉତ୍ତୋଳନ କରିଥିଲେ । ତାଙ୍କର 'ପଥର ଯୁଗ କା ଦୋ ବୁତ୍' (ପଥର ଯୁଗର ଦୁଇଟି ପ୍ରତିମା) ଉପନ୍ୟାସ ଦିନଲିପି ଆକାରରେ ଲିଖିତ । ସରଳା ଏବଂ ସୁନ୍ଦରୀ ରେଖା ନିଜର ମଦ୍ୟପ ସ୍ୱାମୀର ଆଚରଣରେ ବ୍ୟଥିତ ହୋଇ ମାୟାର

*

ସ୍ୱାମୀ ପ୍ରତି ଆକୃଷ୍ଟ ହୋଇଛି । ମାୟା ସେହିପରି ନଜର ଉଣେଇଶ ବର୍ଷର ଝିଅକୁ ଛାଡ଼ି ଅନ୍ୟ ପୁରୁଷ ସହିତ ପଳାଇଯାଇଛି । ପରିଣାମରେ ରେଖାର ପ୍ରେମିକକୁ ହତ୍ୟାକରିଯାଇଛି ।

ଉଦୟଶଙ୍କରଙ୍କର ଭଟ୍ଟଙ୍କର ଉପନ୍ୟାସ; ଯଥା—'ସାଗର ଲହରେଁ ଔର୍ ମନୁଷ୍ୟ' ଏବଂ 'ଶେଷ ଅଶେଷ' ପାଠକମାନଙ୍କୁ ଖୁବ୍ ପ୍ରଭାବିତ କରିପାରିଛି । ପ୍ରଥମ ଉପନ୍ୟାସରେ ବମ୍ବେ ସମୁଦ୍ରକୂଳରେ ମତ୍ସ୍ୟଜୀବୀ କନ୍ୟାର ଜୀବନସଂଗ୍ରାମ ବର୍ଣ୍ଣିତ ହୋଇଥିବାସ୍ଥଳେ ଦ୍ୱିତୀୟ ଉପନ୍ୟାସ ପ୍ରାକ୍-ବିଂଶ ଶତାବ୍ଦୀ ସ୍ୱାଧୀନତା ସଂଗ୍ରାମ ବ୍ୟାପୃତ ଭାରତର ପୃଷ୍ଠଭୂମିରେ ଲିଖିତ । ଭାରତୀୟ ସାଧୁସନ୍ନ୍ୟାସୀମାନଙ୍କର ସ୍ୱାଧୀନତା ପାଇଁ ବିପ୍ଳବାତ୍ମକ କାର୍ଯ୍ୟ ଏବଂ ସେମାନଙ୍କ ପ୍ରତାରଣା ଏହି ଉପନ୍ୟାସରେ ପ୍ରତିଫଳିତ ।

ବହୁ ହିନ୍ଦୀ ଉପନ୍ୟାସ ନାରୀ ଏବଂ ଯୌନ ସମ୍ପର୍କୀୟ ସମସ୍ୟା ଉପରେ ମଧ୍ୟ ଲିଖିତ ହୋଇଛି । ଏହିସବୁ ଉପନ୍ୟାସରେ ଭାବପ୍ରବଣତା ବିଶେଷ ପ୍ରତିଫଳିତ । କିନ୍ତୁ ଅମୃତଲାଲ ନାଗରଙ୍କର 'ସୁହାଗ୍ କ ନୂପୁର' ଉପନ୍ୟାସ ଏକ ବ୍ୟତିକ୍ରମ । ଏହାର କଥାବସ୍ତୁ ଯେପରି ସୁସଂଯୋଜିତ, ଆଭ୍ୟନ୍ତରୀଣ ଉଦ୍ଦେଶ୍ୟ ମଧ୍ୟ ତାତ୍ପର୍ଯ୍ୟପୂର୍ଣ୍ଣ । ମାଧୁରୀ ରୂପବତୀ; କିନ୍ତୁ ସେ ବାରାଙ୍ଗନା । ତା ଜୀବନର ଏକମାତ୍ର ଅଭିଳାଷ ସେ କିପରି ବିବାହ କରି ସମାଜରେ ଚଳିପାରିବ । ଜଣେକ ଧନୀବ୍ୟକ୍ତି ତାକୁ ବିବାହ କରିଥିଲେ । ମାଧୁରୀ ମଧ୍ୟ ତାଙ୍କୁ ପୂର୍ଣ୍ଣପ୍ରାଣରେ ଭଲ ପାଇଥିଲା; କିନ୍ତୁ ମାଧୁରୀ ତା'ର ବାଞ୍ଛିତ ଗୌରବରୁ ବଞ୍ଚିତ ହୋଇଥିଲା । ତା'ର କନ୍ୟା ସମାଜରେ ଯଥାର୍ଥ ସ୍ଥାନ ପାଇ ନଥିଲା । ନିଜେ ଧନୀବ୍ୟକ୍ତି ଜଣକେ ମଧ୍ୟ ମାଧବୀର କନ୍ୟାକୁ ଉଚିତ ଆସନ ଦେଇ ନ ଥିଲେ । ମାଧବୀ ସମାଜ ବିରୋଧରେ ଅଭିଯୋଗ କଲା; କିନ୍ତୁ କିଛି ଲାଭ ହେଲା ନାହିଁ । ପୁରୁଷ ତା'ର ଯୌନଲାଲସା ପାଇଁ ଯାହା କରିପାରେ । ନାରୀ ମାତ୍ର ପ୍ରତି ପଦରେ ଶୃଙ୍ଖଳିତା । ଔପନ୍ୟାସିକ ପୁରୁଷର ନିଷ୍ଠୁର ଛଳନା, ସାମନ୍ତବାଦୀ ମନୋବୃତ୍ତି ଧରିପକେଇ ଦେଇଛନ୍ତି । ମାଧବୀ କହିଚି ଯେ ନାରୀ ପତ୍ନୀଭାବରେ କିମ୍ବା ଗଣିକା ଭାବରେ ବର୍ତ୍ତମାନ ସାମାଜିକ ପରିପ୍ରେକ୍ଷୀରେ ସୁଖୀ ହୋଇ ନ ପାରେ ।

'ଦାର୍ ସେ ବିଛୁରି' (ଝିରିପନ୍ଦି) ରେ ଊନବିଂଶ ଶତାବ୍ଦୀର ପଞ୍ଜାବର ସାମାଜିକ ଚିତ୍ର ବର୍ଣ୍ଣିତ । ଉପନ୍ୟାସରେ ପାଶୋ ନାମକ ପଞ୍ଜାବୀ ଝିଅ ପୁରୁଷର ଯୌନଲାଲସାର ଶିକାର ହୋଇ କିପରି ଶେଷରେ ଅନୁତାପ କରିଛି, ତାହାର କରୁଣ ଚିତ୍ର ପ୍ରଦର୍ଶିତ । ତାର ଯୌବନ ଅତିକ୍ରାନ୍ତ ହୋଇଛି । ତାର ସନ୍ତାନକୁ ତା'ଠାରୁ ଛଡ଼େଇ ନିଆଯାଇଛି । ଏହି ଉପନ୍ୟାସର ଲେଖିକା ହେଉଛନ୍ତି ମିସ୍ କିଷ୍ଣା ସୋବତି । ଲେଖକ ଅଗ୍ନି ପୁତ୍ରଙ୍କର ଉପନ୍ୟାସ 'ଦୂର କ ଡୋଲ୍'

(ସୁଦୂର ବାଦ୍ୟ) ଏବଂ 'ଅପନ କର୍ନି' (ଯେପରି କୃଣ୍) ଖୁବ୍ ଗ୍ରହଣୀୟ ସୃଷ୍ଟି କରିଛି । ଶେଷୋକ୍ତ ଉପନ୍ୟାସରେ ଲେଖକ ଜଣେକ ମହିଳାଙ୍କର କେତେକ ଅଦ୍ଭୁତ ଆଚରଣ ବର୍ଣ୍ଣନା କରିଛନ୍ତି । ଶ୍ରୀମତୀ ଉକଟର ଆସ୍ଥାର୍ ନିଜ ପଡ଼ୋଶୀଙ୍କର ଶିଶୁମାନଙ୍କୁ ଘରେ ପୁଙ୍ଗା ଗ୍ରହି ନ ଥିଲେ; ଅଥଚ ସେ ତାଙ୍କର କୁକୁରଗୁଡ଼ିକୁ ଶୀତତାପ-ନିୟନ୍ତ୍ରିତ କୋଠରିରେ ରଖୁଥିଲେ । ତରୁଣ କଥାଶିଳ୍ପୀ ରାଜେନ୍ଦ୍ର ଅବସ୍ଥିଙ୍କର ଉପନ୍ୟାସ 'ସୁରଜ କିରନ୍ କି ଛାଓଁ' ମଧ୍ୟ ଭାରତର ଆଦିବାସୀ-ଗଣ୍ଡମାନଙ୍କୁ କେନ୍ଦ୍ର କରି ଲିଖିତ । ସେମାନଙ୍କର ଦାରିଦ୍ର୍ୟ ଏବଂ ନିରକ୍ଷରତାର ସୁଯୋଗ ନେଇ ଖ୍ରୀଷ୍ଟିଆନ୍ ପାଦ୍ରୀମାନେ କିପରି ସେମାନଙ୍କୁ ଧର୍ମାନ୍ତରିତ କରିଥାନ୍ତି, ତାହାର ଏକ କରୁଣ ଚିତ୍ର ହେଉଛି ଗଣ୍ଡବାଳିକା 'ବନ୍‌ଜାକ୍ଷି' ।

କ୍ରମେ ହିନ୍ଦୀ ଉପନ୍ୟାସର ପରିସର ବିସ୍ତୃତ ହେଉଅଛି । ବହୁ ତରୁଣଶିଳ୍ପୀ ବିଭିନ୍ନ ସମସ୍ୟା ଉପରେ ଆଲୋକପାତ କରି ନୂତନ ଶୈଳୀରେ ଉପନ୍ୟାସ ଲେଖୁଛନ୍ତି ।

ଶିଶୁ-ଜୀବନର ଏକ ପ୍ରାଣସ୍ପର୍ଶୀ ବର୍ଣ୍ଣନା କୃଷ୍ଣ ବଳଦେବ ବୈଦ୍ୟଙ୍କ କୃତ 'ମେରାବଚପନ୍' ରେ ପଢ଼ିବାକୁ ମିଳେ । ପିତା ମଦ୍ୟପ ଏବଂ ପଶାଖେଳରେ ଲିପ୍ତ । ଏପରି କରୁଣ ଅସହାୟତା ମଧ୍ୟରେ ଜଟିଳ ସାମାଜିକ ସ୍ଥିତିରେ ମୋହନ ରାକେଶଙ୍କ ଉପନ୍ୟାସ 'ଅନ୍ଧାରେ ବନ୍ଦ୍ କମରେ' ଏକ ଗରିବ ପ୍ରତିଭାଶାଳୀ ଶିଳ୍ପୀଙ୍କୁ କେନ୍ଦ୍ର କରି ଲିଖିତ । ଜଣେ ଆଭିଜାତ୍ୟସଂପନ୍ନା ତରୁଣୀର ପ୍ରଲୋଭନ ସତ୍ତ୍ୱେ ଶିଳ୍ପୀ ବିଦେଶୀ ଦୂତାବାସରେ ଯୋଗଦେଇ ନ ଥିଲା । ପ୍ରତିଭାଶାଳୀ ଗୁଣୀ ବ୍ୟକ୍ତି-ମାନଙ୍କର ବର୍ତ୍ତମାନ ସ୍ୱାଧୀନ ଭାରତରେ ଯେଉଁ ଦୟନୀୟ ଦୁର୍ଗତି, ଏହି ଉପନ୍ୟାସ ଯେପରି ତାହାର ପ୍ରତିଛବି । ସେହିପରି ବମ୍ବେ ସହରର ସାମାଜିକ ଆବର୍ଜନା ମଧ୍ୟରେ ଗୋଟିଏ ପାହାଡ଼ୀ ବାଳିକା ରେବାର ଜୀବନଯାତ୍ରା ଯେପରି କଣ୍ଟକିତ ହୋଇଛି, ତରୁଣ ଲେଖକ ଶୈଳେଶ୍ ମାଟିୟାନିଙ୍କ ଲେଖନୀରେ ତାହା ଜୀବନ୍ତ ହୋଇଉଠିଛି । ସମ୍ଭ୍ରାନ୍ତମାନଙ୍କ ହାବୁଡ଼ରେ ପଡ଼ି ରେବା ମୁକ୍ତିପାଇଁ ଚିତ୍କାର କରିଛି । ଏତଦ୍‌ବ୍ୟତୀତ ଗଳି, ନର୍ଦ୍ଦମା, ଗଛତଳେ ଯେଉଁ ଗରିବ ଅସହାୟ ଖଟିଖିଆ ଲୋକ ବଞ୍ଚିଛନ୍ତି, ସେମାନଙ୍କର ବର୍ଣ୍ଣନା ଉପନ୍ୟାସର ବାସ୍ତବତା ବୃଦ୍ଧି କରିଛି ।

ପୁନଶ୍ଚ, ବହୁ ଲେଖକ; ଯଥା—ଅମୃତ ରାୟ, ସୁଭଦ୍ରା କୁମାରୀ ଚୌହାନ୍, ସୁମିତ୍ରାକୁମାରୀ ସିଂହ, ଅଂଚଳ ଉପନ୍ୟାସ କ୍ଷେତ୍ରରେ ମଧ୍ୟ ସୁପରିଚିତ । ବିଂଶ ଶତାବ୍ଦୀର ଆରମ୍ଭରୁ ଏ ପର୍ଯ୍ୟନ୍ତ ହିନ୍ଦୀ ଉପନ୍ୟାସରେ ମୁଖ୍ୟତଃ ଦୁଇଗୋଟି ଧାରା ପ୍ରତିଫଳିତ । ପ୍ରଥମ ଧାରାଟି ହେଉଛି ପ୍ରେମଚନ୍ଦ୍‌ଙ୍କ ପ୍ରବର୍ତ୍ତିତ ମାନବିକ ପରଂପରା । ଦ୍ୱିତୀୟ ଧାରାରେ ପାଶ୍ଚାତ୍ୟ ପ୍ରଭାବ, ମନସ୍ତତ୍ତ୍ୱ, ଯୌନସମସ୍ୟା ଏବଂ ସାମାଜିକ

ବାସ୍ତବତା ପରିଲକ୍ଷିତ । ୧୯୪୭ ମସିହାରେ ସ୍ୱାଧୀନତା ଲାଭ ବିଶେଷତଃ ୧୯୬୦ ମସିହାବେଳକୁ ହିନ୍ଦୀ ଔପନ୍ୟାସିକମାନେ ସାମାଜିକ ପାରିବାରିକ ଆଦର୍ଶ ଏବଂ ରାଜନୈତିକ ପ୍ରଭାବ ନିଜ ନିଜ ସୃଷ୍ଟିରେ ପ୍ରଦର୍ଶନ କରିଛନ୍ତି । ତେଣୁ ଆଜିର ହିନ୍ଦୀ ଉପନ୍ୟାସ ସମାଜନିଷ୍ଠ ସେତିକି ବ୍ୟକ୍ତିନିଷ୍ଠ ଏବଂ ରାଜନୈତିକ ମତବାଦରୁ ଆଦୌ ମୁକ୍ତ ନୁହେଁ । ଆଧୁନିକ ହିନ୍ଦୀ ଉପନ୍ୟାସରେ ସାମାଜିକ ବାସ୍ତବତା ଅପେକ୍ଷା ଗଣତାନ୍ତ୍ରିକ ଅଧିକାର ଏବଂ ନୈତିକ ଆଦର୍ଶର ଉଚ୍ଚାରଣ ଅଧିକ ପରିଦୃଷ୍ଟ । ତେଣୁ ଅତ୍ୟାଧୁନିକ ହିନ୍ଦୀ ଉପନ୍ୟାସର ମୁଖ୍ୟ ବିଶେଷତ୍ୱ ସାମନ୍ତବାଦୀ ସମାଜ ବିରୋଧରେ ବିଷୋଦ୍‌ଗାର, ଅନ୍ୟାୟର ବିରୋଧ ଏବଂ ସମାଜବାଦ ପାଇଁ ବ୍ୟକ୍ତିମଧ୍ୟରେ ଗଣତାନ୍ତ୍ରିକ ଚେତନା ସଞ୍ଚାର ।

ସ୍ୱାଧୀନତା ପାଇଁ ଦେଶର ଲୋକେ ଯେଉଁ ଆଶା ଅଭିଳାଷ ପୋଷଣ କରିଥିଲେ, ତାହା ପୂର୍ଣ୍ଣ ହେଲ ନାହିଁ । ସାମାଜିକ, ଆର୍ଥିକ ଓ ସାଂସ୍କୃତିକ ସମସ୍ୟା-ଗୁଡ଼ିକର ସମାଧାନ ପାଇଁ ଲୋକେ ଚାହିଁବସିଥିଲେ । ମାତ୍ର ପରିଣାମରେ ଆଶାଭଙ୍ଗ ହେଲା । ସ୍ୱାଧୀନତାପରେ ଔପନ୍ୟାସିକମାନେ ଏହି ଆଶାଭଙ୍ଗର ପ୍ରତିକ୍ରିୟାକୁ ଗମ୍ଭୀରଭାବେ ନିରୀକ୍ଷଣ କରିଛନ୍ତି ଓ ସେମାନଙ୍କ ରଚନାରେ ନିରାଶା, କୁଣ୍ଠା, ଦୁର୍ଘଟଣା, ପରାଜୟ ଓ ବିକ୍ଷୋଭର ସ୍ୱର ବାଜିଉଠିଛି । ପ୍ରେମଚନ୍ଦଙ୍କ ଉପନ୍ୟାସରେ ପରଂପରା ପ୍ରତି ଆକର୍ଷଣ ଓ ମୋହ ସହିତ ଭବିଷ୍ୟତ ପ୍ରତି ଆସ୍ଥା ଫୁଟିଉଠିଛି । ରୋମାଞ୍ଚ, ଶସ୍ତା ମନୋରଞ୍ଜନ ଓ ଇତର କଳ୍ପନା ସ୍ଥାନରେ ସାମାଜିକ ଯଥାର୍ଥ-ବୋଧର ଦୃଷ୍ଟିକୋଣ ଦେଖିବାକୁ ମିଳେ । ପ୍ରେମଚନ୍ଦଙ୍କ ପରବର୍ତ୍ତୀ ଔପନ୍ୟାସିକ-ମାନେ ବ୍ୟକ୍ତି ଆତ୍ମାର ଗଭୀର ପ୍ରଦେଶର ପର୍ଯ୍ୟବେକ୍ଷଣ ଓ ବିଶ୍ଳେଷଣ କରିଛନ୍ତି । ତେଣୁ କୁହାଯାଇପାରେ ସ୍ୱାଧୀନତାପରବର୍ତ୍ତୀ ହିନ୍ଦୀ ଉପନ୍ୟାସ ସ୍ଥୂଳତା ପରିବର୍ତ୍ତେ ବ୍ୟକ୍ତି ସତ୍ୟର ସୂକ୍ଷ୍ମତା ଦିଗରେ ଅଧିକ ଉନ୍ମୁଖ । ନୂତନ ମୂଲ୍ୟ ସନ୍ଧାନ ପାଇଁ ତୀବ୍ର ଜିଜ୍ଞାସା, ଧର୍ମ ଓ ନୀତିକ୍ଷେତ୍ରରେ ମାନବବାଦ, କରୁଣା ଆଦର୍ଶ ଇତ୍ୟାଦିର ପୁନଃ ପ୍ରତିଷ୍ଠା, ସାମାଜିକ ସଙ୍ଗଠନ କ୍ଷେତ୍ରରେ ବୁର୍ଜୁଆ ସାମାଜିକବ୍ୟବସ୍ଥାର ବର୍ଜନ, ଗୃହସ୍ଥ ଓ ପାରିବାରିକ ଜୀବନର ଦୁରବସ୍ଥା, ଯୌବନର ନୂତନ ପରିଭାଷା ଅର୍ଥରେ କାମ-ସମ୍ପର୍କକୁ ଗତିଶୀଳ ସମ୍ପୃକ୍ତ ଭାବରୂପେ ପ୍ରତିପାଦନ—ହିନ୍ଦୀ ଉପନ୍ୟାସର ଆଧୁନିକ ଦିଗଗୁଡ଼ିକୁ ଉନ୍ମୋଚନ କରେ । ଆଧୁନିକ ଉପନ୍ୟାସର ଆଧୁନିକତା ହେଲା ଜୀବନ ପ୍ରତି ଦୃଷ୍ଟିକୋଣର ନୂତନତ୍ୱ । ଚାରିତ୍ରିକ ସଙ୍ଘର୍ଷ ଓ ସେମାନଙ୍କର ମାନସିକ ସଙ୍ଘର୍ଷର ବିଶ୍ଳେଷଣ ବିଶିଷ୍ଟ ମହତ୍ତ୍ୱ ଦାବି କରେ । ବ୍ୟକ୍ତିଗତ ପ୍ରବୃତ୍ତି ଓ ସାମାଜିକ ପ୍ରବୃତ୍ତି—ପ୍ରଧାନତଃ ଏହି ଦୁଇଟି ପ୍ରବୃତ୍ତି ପ୍ରତି ସଚେତନତା ଆଧୁନିକ ଉପନ୍ୟାସରେ ଦେଖିବାକୁ ମିଳେ । ତେଣୁ ଏହି କାଳର ଉପନ୍ୟାସକୁ ମୁଖ୍ୟତଃ ଦୁଇ ଶ୍ରେଣୀରେ ବିଭକ୍ତ କରିହେବ—(୧) ମନୋବୈଜ୍ଞାନିକ ଉପନ୍ୟାସ,

(୬) ସାମାଜିକ ଉପନ୍ୟାସ । ପ୍ରଥମୋକ୍ତ ଉପନ୍ୟାସ ବ୍ୟକ୍ତିର ଗଭୀରତମ ପ୍ରଦେଶର ମାନସିକ ଅବସ୍ଥାକୁ ଅଧ୍ୟୟନ କରେ । ଏଥିରେ ବିଷୟବସ୍ତୁ ବା କାହାଣୀର ମହତ୍ତ୍ୱ ସେତେ ନଥାଏ; ବ୍ୟକ୍ତି ଚରିତ୍ରର ମାନସିକତା ଫୁଟେଇ ଦେଖାଇବାରେ ମହତ୍ତ୍ୱ ଥାଏ । ମଣିଷର ବାହ୍ୟଜୀବନ ଅପେକ୍ଷା ତାହାର ଆନ୍ତରିକ ସତ୍ୟ ଅଧିକ ମହତ୍ତ୍ୱ-ପୂର୍ଣ୍ଣ । ସମକାଳୀନ ଔପନ୍ୟାସିକମାନେ ଏହି ଆନ୍ତରିକ ଜୀବନର ବିଶ୍ଳେଷଣରେ ବ୍ରତୀ ହୋଇଛନ୍ତି । ସାମାଜିକ ଉପନ୍ୟାସରେ ସମଷ୍ଟି ଚେତନାକୁ ପ୍ରତିଷ୍ଠାପନ କରାଯାଏ । ରାଜନୈତିକ, ଐତିହାସିକ ତଥା ଆଞ୍ଚଳିକ ପ୍ରବାହରେ ସମୂହର ଭାବବୋଧ ପ୍ରବାହିତ ହୋଇପାରେ । ସାମାଜିକ ବିଷମତା ତଥା ରାଜନୈତିକ ଅରାଜକତା ପ୍ରଭୃତି ସମସ୍ୟା ଯେନି ଏହା ରଚିତ ହୁଏ । ଯଶପାଳ ଓ ଭଗବତୀ-ଚରଣ ବର୍ମା ଏହି ଧରଣର ଔପନ୍ୟାସିକ । ଅଞ୍ଚଳଙ୍କ ଉପନ୍ୟାସ ପ୍ରଗତିବାଦର ସ୍ୱର ଶୁଣାଇଲାବେଳେ ରାଙ୍ଗେୟ ରାଘବଙ୍କ ଉପନ୍ୟାସରେ ଇତିହାସ ଓ ରାଜନୈତିକ ମାର୍କସ୍‌ବାଦର ସ୍ୱର ବାଜିଉଠିଛି । ସ୍ୱାଧୀନତା ପରବର୍ତ୍ତୀ ମୋହଭଙ୍ଗର ପରିସ୍ଥିତି ମଧ୍ୟ ବହୁ ଔପନ୍ୟାସିକଙ୍କର ଉପଜୀବ୍ୟ ହୋଇଛି ।

## କ୍ଷୁଦ୍ରଗଳ୍ପ :

ଜୀବନର ବିଶିଷ୍ଟ ମୁହୂର୍ତ୍ତର ବିଶିଷ୍ଟ ଅଭିବ୍ୟକ୍ତି ହିଁ ଗଳ୍ପର ପ୍ରଧାନ ଉପଜୀବ୍ୟ । ସେଥିପାଇଁ କ୍ଷୁଦ୍ରଗଳ୍ପକୁ 'ବିନ୍ଦୁରେ ସିନ୍ଧୁ' ଚିତ୍ରକଳ୍ପ ସାହାଯ୍ୟରେ ଆଖ୍ୟାତ କରାଯାଏ, ଆଉ, ବୁଢ଼ୀମା କିମ୍ବା ଜେଜେମାଙ୍କର ଗଳ୍ପ କଥନ ହେଉ କିମ୍ବା ପ୍ରେମଚନ୍ଦଙ୍କ ବର୍ଣ୍ଣନାନୁଯାୟୀ "କାହାଣୀର ଜନ୍ମ ମନୁଷ୍ୟର ବାକ୍‌ଶକ୍ତିର ସୃଷ୍ଟି ସମୟରୁ" ହେଉ, ହିନ୍ଦୀ କ୍ଷୁଦ୍ରଗଳ୍ପର ସୃଷ୍ଟି ସାହିତ୍ୟର ଅଭିବୃଦ୍ଧି ସହିତ ଜଡ଼ିତ ବୋଲି ଜଣାଯାଏ ।

୧୮୦୦ ମସିହାରେ ଲିଖିତ ଇନ୍‌ଶା ଅଲ୍ଲା ଖାଁଙ୍କର 'ରାନୀ କେତକୀ କି କାହାନୀ' ଏବଂ ରାଜା ଶିବ ପ୍ରସାଦଙ୍କ 'ରାଜାଭୋଜ କା ସପନା', ଜାତମାଲାଙ୍କ 'ଗୋରା ବାଦଲ କଥା' ଆଦି ଆଧୁନିକ କ୍ଷୁଦ୍ରଗଳ୍ପ ଅର୍ଥରେ ପ୍ରଯୁକ୍ତ ହୋଇନପାରେ । ପ୍ରକୃତ ପକ୍ଷେ ହିନ୍ଦୀରେ ଆଧୁନିକ ଚେତନାସମ୍ବଳିତ କ୍ଷୁଦ୍ରଗଳ୍ପର ଉତ୍ପତ୍ତି ବେଶି ଦିନର ନୁହେଁ । କବି କିଶୋରୀ ଲାଲ ଗୋସ୍ୱାମୀଙ୍କର 'ଇନ୍ଦୁମତୀ' ପ୍ରଥମ ହିନ୍ଦୀଗଳ୍ପ ବୋଲି କୁହାଯାଏ । ଏହି ଗଳ୍ପଟି ପ୍ରୟାଗର 'ସରସ୍ୱତୀ' ପତ୍ରିକାରେ ପ୍ରକାଶ ପାଇଥିଲା । ଇଂରେଜୀ ନାଟକ ଟେମ୍ପେଷ୍ଟ ଛାୟାରେ ଏହି ଗଳ୍ପଟି ପରିକଳ୍ପିତ । ପ୍ରାଥମିକ ଯୁଗର ହିନ୍ଦୀ ଗଳ୍ପଗୁଡ଼ିକ ବିଶେଷ ଭାବରେ ଗତାନୁଗତିକ ଭାଷା, ଶୈଳୀ ଏବଂ ଉପଦେଶାତ୍ମକତାଦ୍ୱାରା ଚିହ୍ନିତ । 'ଇନ୍ଦୁ' ପତ୍ରିକାରେ ଜୟଶଙ୍କରଙ୍କ ପ୍ରକାଶିତ 'ଗ୍ରାମ' (୧୯୧୧) ଗଳ୍ପଠାରୁ ହିଁ ହିନ୍ଦୀରେ ବାସ୍ତବବାଦୀ ଗଳ୍ପ ଓ କାହାଣୀର ସୂତ୍ରପାତ ହେଲା । ୧୯୧୬ରେ ପ୍ରସାଦଙ୍କ 'ରସିଆବାଲମ୍', 'ଭାରତ ମିତ୍ର'ରେ

ପ୍ରକାଶିତ ଚନ୍ଦ୍ରଧର ଶର୍ମା ଗୁଲେରୀଙ୍କ କାହାଣୀ (୧୯୧୧) ପୁନଶ୍ଚ ୧୯୧୫ରେ ଚନ୍ଦ୍ରଧର ଶର୍ମାଙ୍କ 'ଉସ୍‌ନେ କହାଥା' ହିନ୍ଦୀ ଗଳ୍ପ ସାହିତ୍ୟରେ ସାମାନ୍ୟ ଆଲୋଡ଼ନ ସୃଷ୍ଟି କରିଥିଲ ।

ହିନ୍ଦୀ କଥା ସାହିତ୍ୟ ରାଜ୍ୟରେ ପ୍ରେମଚନ୍ଦ୍‌ଙ୍କ ଆବିର୍ଭାବ ଏକ ଐତିହାସିକ ଘଟଣା । ପ୍ରସାଦଙ୍କର ମାର୍ଗ ଥିଲା ଅତୀତ ଆଧାରିତ । ମାତ୍ର ପ୍ରେମଚନ୍ଦ୍‌ଙ୍କ ଶୈଳୀ ଚମତ୍କାରିତାରେ ପୂର୍ଣ୍ଣଥିଲା । ଜୀବନର ସାଧାରଣ ତୁଚ୍ଛ ଘଟଣାକୁ ସେ ପ୍ରଥମେ କ୍ଷୁଦ୍ର ଗଳ୍ପର କଥାବସ୍ତୁରୂପେ ଗ୍ରହଣ କଲେ, ପୁନଶ୍ଚ ତାଙ୍କର କଥନ ଶୈଳୀ ବୈଚିତ୍ର୍ୟ-ଭରା ଥିଲା । ସମାଜ ସଚେତନତା, ବ୍ୟଙ୍ଗ ବିଦ୍ରୂପ, ଆଦର୍ଶବାଦିତା ତାଙ୍କର ବିଭିନ୍ନ ଗଳ୍ପରେ ପରିସ୍ଫୁଟ । ପ୍ରେମଚନ୍ଦ୍ରଙ୍କ ଗଳ୍ପ ସଂଖ୍ୟା ପ୍ରାୟ ତିନିଶତ । ତାଙ୍କ ଗଳ୍ପରେ ସମାଜ, ପରିବାର, ବ୍ୟକ୍ତି—ଏକ ମାନବିକ ତଥା ସାମାଜିକ ପରଂପରା ସୂତ୍ରରେ ଗ୍ରଥିତ । ପ୍ରଥମେ ଗାନ୍ଧିବାଦ ଏବଂ ପରେ ସମାଜବାଦ ମାଧ୍ୟମରେ ପ୍ରେମଚନ୍ଦ୍ର ପ୍ରତ୍ୟେକ ସମସ୍ୟାର ସମାଧାନ ଖୋଜିଥିଲେ ।

ଜୟଶଙ୍କର ପ୍ରସାଦଙ୍କ ଗଳ୍ପରେ ତିନିଗୋଟି ଧାରା ସୁସ୍ପଷ୍ଟ; ଯଥା—ଐତିହାସିକ, ପ୍ରେମମୂଳକ ଏବଂ ବାସ୍ତବଧର୍ମିତା । ତାଙ୍କର ଗଳ୍ପ 'ଆକାଶଦୀପ', 'ମମତା', 'ପୁରସ୍କାର'ରେ ଇତିହାସର ସ୍ୱର ଶୁଣାଯାଏ । 'ଆନ୍ଧି' ପ୍ରଭୃତି ଗଳ୍ପରେ ପ୍ରେମର ଭାବୋଚ୍ଛ୍ୱାସ ଏବଂ 'ଗ୍ରାମ', 'ଗୁଣ୍ଡା', 'ବିରାମ ଚିହ୍ନ', 'ବେଡ଼ି' ପ୍ରଭୃତି ଗଳ୍ପରେ ବାସ୍ତବଧର୍ମିତା ପ୍ରକଟିତ ।

ପ୍ରେମଚନ୍ଦ ଓ ପ୍ରସାଦଙ୍କ ସମସାମୟିକ କାହାଣୀକାର ହେଉଛନ୍ତି ଚନ୍ଦ୍ରଧର ଶର୍ମା ଗୁଲେରୀ, ବିଶ୍ୱମ୍ଭର ନାଥ ଶର୍ମା କୌଶିକ, ଗୋବିନ୍ଦବଲ୍ଲଭ ପନ୍ତ, ସୁଦର୍ଶନ, ଚନ୍ଦ୍ରଗୁପ୍ତ ବିଦ୍ୟାଲଙ୍କାର, ଭଗବତୀ ପ୍ରସାଦ ବାଜ୍‌ପେୟୀ, ବିଷ୍ଣୁ ବୃନ୍ଦାବନ ଲାଲବର୍ମା ପ୍ରମୁଖ ଉଲ୍ଲେଖଯୋଗ୍ୟ । ଗିରିଜା କୁମାର ଘୋଷ ଏବଂ ରାମପ୍ରସାଦ ଘୋଷଙ୍କ କନ୍ୟା ଉତ୍ତରଭାରତର (ବଙ୍ଗ ମହିଳା) ଅନେକ ଗଳ୍ପ ହିନ୍ଦୀରେ ଅନୁବାଦ କରିଥିଲେ । ତାଙ୍କର 'ଦୁଲାଇ ବାଲୀ' ଗଳ୍ପ (୧୯୦୭) 'ସରସ୍ୱତୀ' ପତ୍ରିକାରେ ବିଶେଷ ଆଦୃତ ହୋଇଥିଲ । ପ୍ରେମଚନ୍ଦ୍‌ଙ୍କ ସମୟର ଅର୍ଥାତ୍ ପ୍ରଥମ ପର୍ଯ୍ୟାୟର ଗଳ୍ପ ସମୂହ ସାଧାରଣତଃ ଆଦର୍ଶବାଦୀ ଥିଲା । ପରିବାର, ସମାଜର ସମସ୍ୟା ଓ ଘଟଣା ଗଳ୍ପଗୁଡ଼ିକରେ ସ୍ଥାନ ପାଉଥିଲ ।

ହିନ୍ଦୀଗଳ୍ପର ପ୍ରଥମ ପର୍ଯ୍ୟାୟର ଦ୍ୱିତୀୟ ଧାରାରେ କେତେକ ରୋମାଣ୍ଟିକ୍ ଏବଂ ଐତିହାସିକ କଥାବସ୍ତୁସର୍ବସ୍ୱ ଗଳ୍ପ ଲିଖିତ ହୋଇଥିଲ । ପ୍ରାଚୀନ ଏବଂ ମଧ୍ୟ-ଯୁଗୀୟ ଭାରତର ବିବିଧ ଘଟଣା ଏତାଦୃଶ କ୍ଷୁଦ୍ର ଗଳ୍ପରେ ପରିବେଷିତ ହେଲା । ଚତୁରସେନ ଶାସ୍ତ୍ରୀ ମଧ୍ୟ ଐତିହାସିକ ଏବଂ ରୋମାଣ୍ଟିକ କଥାବସ୍ତୁକୁ ଗ୍ରହଣ କରି ଗଳ୍ପ ଲେଖିଥିଲେ । ତାଙ୍କର ଗଳ୍ପ 'ଭିକ୍ଷୁରାଜ' ଏବଂ ସୁଦର୍ଶନଙ୍କର 'ନ୍ୟାୟମନ୍ତ୍ରୀ'ର

ଐତିହାସିକ ଆବେଦନ ଯଥେଷ୍ଟ । ବୃନ୍ଦାବନ ଲାଲ୍ ବର୍ମା ତାଙ୍କର ଉପନ୍ୟାସ ସଦୃଶ କ୍ଷୁଦ୍ରଗଳ୍ପକୁ ମହାଭାରତୀୟ ପୃଷ୍ଠଭୂମିରେ ପରିକଳ୍ପିତ କରିଥିଲେ । ତେବେ ଜୟଶଙ୍କର ପ୍ରସାଦଙ୍କର ଐତିହାସିକ ଗଳ୍ପ ସମୂହ ଯଥାର୍ଥତଃ ସଫଳତାପୂର୍ଣ୍ଣ । କାରଣ କଥାବସ୍ତୁ ଉପସ୍ଥାପନା ଏବଂ ଚରିତ୍ର ଚିତ୍ରଣ ବିଗ୍ରହରେ ତାହା ଅନବଦ୍ୟ । ତାଙ୍କର ଗଳ୍ପ ମଧ୍ୟରେ ମମତା, ହିମାଳୟକା ପଥିକ, ସ୍ୱର୍ଗକ ଖଣ୍ଡାର ମେ, ପ୍ରତିଧ୍ୱନି, ଆକାଶଦୀପ ଉଲ୍ଲେଖଯୋଗ୍ୟ ।

ପ୍ରେମଚନ୍ଦ୍ରଙ୍କ ପରବର୍ତ୍ତୀ ଯୁଗର ହିନ୍ଦୀ କ୍ଷୁଦ୍ରଗଳ୍ପ ସମାଜ ସଚେତନତା, ମନୋବିଶ୍ଳେଷଣ ଏବଂ ପ୍ରୟୋଗାତ୍ମକତା ଦ୍ୱାରା ଚିହ୍ନିତ ହେଲା । ଏହି ପର୍ଯ୍ୟାୟର ଶକ୍ତିଶାଳୀ କାହାଣୀ ସ୍ରଷ୍ଟା ହେଲେ—ଯଶପାଲ, ଜୈନେନ୍ଦ୍ରକୁମାର, ସଚ୍ଚିଦାନନ୍ଦ ହୀରାନନ୍ଦ ବାତ୍ସାୟନ (ଅଜ୍ଞେୟ) । ମନୁଷ୍ୟ ମନର ବିଭିନ୍ନ ପ୍ରତିକ୍ରିୟା କ୍ଷୁଦ୍ରଗଳ୍ପ ମାଧ୍ୟମରେ ପ୍ରକାଶିତ ହେଲା । ସ୍ତ୍ରୀ ପୁରୁଷଙ୍କର ଦମିତ ଯୌନ ଲାଳସା ମଧ୍ୟ ଗଳ୍ପରେ ଶୈଳ୍ପିକ ରୂପ ପାଇଥିଲା । ପୁନଶ୍ଚ ମାର୍କସବାଦୀ ସମାଜ-ଦର୍ଶନ କ୍ଷୁଦ୍ରଗଳ୍ପର ପ୍ରଧାନ ଉପଜୀବ୍ୟ ହେଲା; ଯଥା—ଯଶପାଲଙ୍କ ବିଭିନ୍ନ ଗଳ୍ପ । ତାଙ୍କ ଗଳ୍ପରେ ଶ୍ରେଣୀସଂଘର୍ଷର ଚେତନା ହିଁ ବିଶେଷ ପରିସ୍ଫୁଟ । ଜୈନେନ୍ଦ୍ର କୁମାରଙ୍କ ଗଳ୍ପଗୁଡ଼ିକରେ ମଣିଷ ମନର ଗହନ ରାଜ୍ୟର କଥା ପ୍ରକାଶ ପାଉଛି । ଏତଦ୍‌ବ୍ୟତୀତ ଗାନ୍ଧିବାଦ, ଚେତନା ପ୍ରବାହ ଏବଂ ବୌଦ୍ଧିକତା ମଧ୍ୟ ତାଙ୍କ ଗଳ୍ପର ଆଉ ଏକ ବୈଶିଷ୍ଟ୍ୟ । ତାଙ୍କର କେତେକ ଗଳ୍ପ; ଯଥା - ପାଜେବ, ବାତାୟନ, ଏକରାତ୍ରି, ନୀଲମ ଦେଶ କି ରାଜକୁମାରୀ, ଜାହ୍ନବୀ, ପତ୍ନୀ ବେଶ୍ ଆଦୃତ । ଇଲାଚନ୍ଦ୍ର ଯୋଷୀଙ୍କ ଗଳ୍ପରେ ମଧ୍ୟ ଯୌନାତିଶଯ୍ୟ ପରିଦୃଷ୍ଟ ହୁଏ । 'ଅଜ୍ଞେୟ' (ବାତ୍ସାୟନ) ପ୍ରଭୃତିଙ୍କ ଗଳ୍ପ ସ୍ଥାନୀୟ ପରିବେଶ, ଶୈଳ୍ପିକ ମହିମା ଏବଂ କବିତ୍ୱ ଶୈଳୀ ଦ୍ୱାରା ଚିହ୍ନିତ ହେଲା । ମଧ୍ୟବିତ୍ତ ଶ୍ରେଣୀର ବିଶ୍ୱସ୍ତ ଚିତ୍ରକର ଥିଲେ—ଉପେନ୍ଦ୍ର ନାଥ ଅଶକ୍ । ସେ ତାଙ୍କ ଗଳ୍ପ କାଙ୍କଡ଼ାକା ତେଲୀ, ଜେହଲମ୍‌କେ ଅଫ୍ ଲୁ—ବେଶ୍ ବିଭିନ୍ନ ଧାରା ଏବଂ ଦୃଷ୍ଟିକୋଣର ନିଦର୍ଶନ ଦେଇଥାଏ । ଅମୃତ ରାୟ, ରାଙ୍ଗେୟ ରାଘବ, ରାଧାକୃଷ୍ଣ, ଚନ୍ଦ୍ର କିରଣ ସୌରଣିକ ପ୍ରଭୃତି ମଧ୍ୟ ଏହି ପ୍ରସଙ୍ଗରେ ସ୍ମରଣୀୟ ଗାଳ୍ପିକ ।

ସ୍ୱାଧୀନତା ପରବର୍ତ୍ତୀ କାଳରେ କଥନ ଭଙ୍ଗୀ ଏବଂ ପରିବେଷଣ ପଦ୍ଧତିରେ ଗୁଣାତ୍ମକ ପରିବର୍ତ୍ତନ ପରିଦୃଷ୍ଟ ହେଲା । ବ୍ୟାପକ ସାମାଜିକ ଦୃଷ୍ଟି, ଜୀବନର ନୂତନ ମୂଲ୍ୟବୋଧ, ପରଂପରାଗତ ପ୍ରବୃତ୍ତିର ପ୍ରତ୍ୟାହାର କଥାବସ୍ତୁଗତ ବିବିଧତା ଯୋଗୁ ହିନ୍ଦୀ ସାହିତ୍ୟରେ 'ନୟୀ କାହାନୀ'ର ଆବିର୍ଭାବ ହେଲା । ଏହି ନୟୀକାହାନୀର ସ୍ରଷ୍ଟା ଭାବରେ ମୋହନ ରାକେଶ୍, କମଲେଶ୍ୱର, ରାଜେନ୍ଦ୍ର ଯାଦବ, ସର୍ବେଶ୍ୱର ଦୟାଲ ସାକ୍‌ସେନା ପ୍ରମୁଖଙ୍କ କୃତିସମୂହ ବିଶୃଙ୍ଖ । ପୁଞ୍ଜିବାଦ ବିରୋଧୀ,

ନୂତନ ପୁରାତନର ବିରୋଧ, ଏକ ନୂତନ ଅର୍ଥନୈତିକ ବ୍ୟବସ୍ଥାର ଆହ୍ୱାନ, ଅତ୍ୟାଗ୍ରହିତ, ଶୋଷିତ ବ୍ୟକ୍ତିମାନଙ୍କର ବିଳାପ ୧୯୫୦ ପରବର୍ତ୍ତୀ ହିନ୍ଦୀ କାହାଣୀମାନଙ୍କରେ ପ୍ରତିଫଳିତ ।

ରାଜେନ୍ଦ୍ର ଯାଦବଙ୍କ 'କିନାରେ କିନାରେ ତିକ୍', ସର୍ବେଶ୍ୱର ଦୟାଲ ସାକ୍ସେନାଙ୍କ 'ଦୂରଜାଣ୍ଡି ବୈଲ ଗାଡ଼ି', କମଲେଶ୍ୱରଙ୍କ 'ଏକ ଥା ବିମଲ' ଗଳ୍ପ ଏଠାରେ ଉଲ୍ଲେଖ କରିଯାଇପାରେ । ସମସାମୟିକ ଶୋଷିତ ବ୍ୟକ୍ତିଜୀବନର ନିର୍ଯ୍ୟାତନା, ଅଭାବବୋଧ, ସମାଜର ରଂଗ ଓ ପ୍ରବୃତ୍ତି କାହାଣୀ ଲେଖକମାନଙ୍କୁ ପ୍ରଭାବିତ କରିପାରିଛି । ପୁନଶ୍ଚ, ଜୀବନର ବ୍ୟଙ୍ଗ ବିଦ୍ରୂପାତ୍ମକତା, ନିଷ୍ଠୁରତା, ଅସହାୟତା, ଘାତପ୍ରତିଘାତ ଯୁଗର ଗଳ୍ପ ଲେଖକମାନଙ୍କ କୃତିରେ ପରିସ୍ଫୁଟ । ଧର୍ମବୀର ଭାରତୀ, ବିଷ୍ଣୁ ପ୍ରଭାକର, ଗଙ୍ଗା ପ୍ରସାଦ, ରବୀନ୍ଦ୍ର କାଲିଆ, ନିର୍ମଳ ବର୍ମା, ଦୁଧନାଥ ସିଂ ପ୍ରଭୃତି ଗଳ୍ପକାରଙ୍କର ଗଳ୍ପ ସମୂହ ହିନ୍ଦୀ ସାହିତ୍ୟରେ ନୂତନତା ଏବଂ ଆଧୁନିକତାର ପରିବେଶ ସୃଷ୍ଟି କରିପାରିଛି । ଭଗବତି ପ୍ରସାଦ ବାଜପେୟୀଙ୍କର କ୍ଷୁଦ୍ର ଗଳ୍ପ ବ୍ୟକ୍ତି ଜୀବନର ଉର୍ମିରଞ୍ଜିତ ଦିଗପ୍ରତି ସର୍ବଦା ଆକୃଷ୍ଟ । ପ୍ରେମର ଆବେଗ ସୁଲଭ ବର୍ଣ୍ଣନା ସହିତ ବ୍ୟକ୍ତି ଜୀବନର ବୈରାଗ୍ୟ, ପରାଜୟ, ଗ୍ଲାନି ମଧ୍ୟ ସୂଚିତ ହୋଇଥାଏ । ବିଷ୍ଣୁ ପ୍ରଭାକରଙ୍କର ବିବିଧ କ୍ଷୁଦ୍ର ଗଳ୍ପ ହିନ୍ଦୀ କ୍ଷୁଦ୍ର ଗଳ୍ପର ପ୍ରତିଷ୍ଠା ବୃଦ୍ଧି କରିଅଛି । ସାମାଜିକ ସଚେତନତା ତଥା ନୈତିକ ଦୃଷ୍ଟିକୋଣ ତାଙ୍କ କ୍ଷୁଦ୍ର ଗଳ୍ପର ବିଶେଷତ୍ୱ ।

୧୯୫୦ ମସିହା ପରେ ହିନ୍ଦୀ କ୍ଷୁଦ୍ର ଗଳ୍ପ ଏକ ଆଶ୍ଚର୍ଯ୍ୟଜନକ ସଫଳତା ଏବଂ ସାର୍ଥକତା ହାସଲ କରିପାରିଛି । ମନସ୍ତାତ୍ତ୍ୱିକ ବିଶ୍ଳେଷଣ ଧାରା, ସମାଜ ସଚେତନତାର ବ୍ୟାପକତା, କଥା-ବସ୍ତୁର ବିବିଧତା ଏବଂ ଶୈଳୀ, ଆଙ୍ଗିକର ପରୀକ୍ଷା ନିରୀକ୍ଷା ହେଉଛି ତାର ସଫଳତାର କାରଣ । କ୍ଷୁଦ୍ର ଗଳ୍ପର ଗୁଣାତ୍ମକ ଏବଂ ସାହିତ୍ୟକ ମୂଲ୍ୟବୋଧ ହିଁ ତାର ଶ୍ରେଷ୍ଠତ୍ୱର ପରିଚାୟକ । ପ୍ରତିଷ୍ଠିତ ଗାଳ୍ପିକମାନଙ୍କ ସହିତ ତରୁଣ ଲେଖକଙ୍କର ଆବିର୍ଭାବ ଯୋଗୁ ହିନ୍ଦୀ କଥାଶିଳ୍ପ ଆଜି ବେଶ୍ ସମୃଦ୍ଧ ହୋଇପାରିଛି ।

ଗଳ୍ପ ରାଜ୍ୟରେ ପ୍ରବୃତ୍ତିର ପ୍ରବର୍ତ୍ତକ ଏବଂ ନିରୀକ୍ଷକ ଭାବରେ ଜଣେ ଜଣେ ପ୍ରଧାନ ଲେଖକଙ୍କର ନାମ ଉଲ୍ଲେଖ କରିଗଲେ ହେଁ ଅତ୍ୟାଧୁନିକ ଯୁଗରେ ସଂଖ୍ୟାଧିକ ଲେଖକ ଲେଖନୀ ଚାଳନା କରି ହିନ୍ଦୀ ଗଳ୍ପକୁ ସମୃଦ୍ଧ ଏବଂ ମର୍ଯ୍ୟାଦାପୂର୍ଣ୍ଣ କରିପାରିଛନ୍ତି । ତଥାପି ହିନ୍ଦୀରେ ଗୋଟିଏ ପ୍ରବଚନ ଅଛି—"ପୁରୁଣା ତରକାରୀର ରାନ୍ଧଣା" ସେହିପରି ଅନେକ ଗାଳ୍ପିକ କେବଳ ଚର୍ବିତ ଚର୍ବଣରେ ବ୍ୟସ୍ତ ।

**ନାଟକ :**

ଉପନ୍ୟାସ ଏବଂ କ୍ଷୁଦ୍ର ଗଳ୍ପ ସଦୃଶ ହିନ୍ଦୀ ସାହିତ୍ୟରେ ନାଟକର ଉତ୍ପତ୍ତି ମଧ୍ୟ ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ହୋଇଥିଲା । ପୁନଶ୍ଚ,

ଏହି ସମୟରେ ପ୍ରଥମେ ସଂସ୍କୃତ, ବଙ୍ଗଳା କିମ୍ବା ଇଂରେଜୀ ଭାଷାରୁ କେତେକ ନାଟ୍ୟ ରଚନା ହିନ୍ଦୀରେ ଅନୂଦିତ ହୋଇଥିଲା । କ୍ରମେ କ୍ରମେ ନାଟକର ରଚନା-ଶୈଳୀ, ଆଙ୍ଗିକ ଏବଂ ରଙ୍ଗମଞ୍ଚର ଅଗ୍ରଗତି ଘଟିବାରୁ ଏହି ଶ୍ରେଣୀୟ ସାହିତ୍ୟର ପ୍ରସାର ସମ୍ଭବ ହେଲା ।

ପ୍ରାଚୀନ ହିନ୍ଦୀ ଭାଷାରେ ନାଟକର ଯେଉଁ ପରିଚୟ ମିଳେ, ତାହା ଯଥାର୍ଥତଃ ନାଟକ ନୁହେଁ । ନାଟକ ନାମରେ ପ୍ରଚଳିତ କେତେକ ବିକ୍ଷିପ୍ତ ରଚନାର ଦିଗ୍‌ଦର୍ଶନ ମାତ୍ର । ବିଦ୍ୟାପତିଙ୍କର 'ରୁକ୍ମଣୀ ହରଣ' ଏବଂ 'ପାରିଜାତ ହରଣ' ଏଠାରେ ଉଲ୍ଲେଖଯୋଗ୍ୟ । ସଂସ୍କୃତରୁ ଅନୂଦିତ ପଦ୍ୟରେ ଲିଖିତ ହୃଦୟରାମଙ୍କର ହନୁମାନ ନାଟକ ('୬୨୩), ଯଶୋବନ୍ତ ସିଂହଙ୍କର ପ୍ରବୋଧ ଚନ୍ଦ୍ରୋଦୟ (୧୬୨୩), ମହାରାଜା, ବିଶ୍ୱନାଥ ସିଂହଙ୍କର 'ଆନନ୍ଦ ରଘୁନନ୍ଦନ' (ମୌଳିକ) (୧୭୦୦), ନିଓ୍ୱାଜଙ୍କର 'ଶକୁନ୍ତଳା' (୧୬୮୦) ପ୍ରଭୃତି କେତେକ ନାଟ୍ୟ ରଚନାର ନାମ ଶୁଣାଯାଏ; କିନ୍ତୁ ଏହିସବୁ ରଚନାରେ ନାଟକର ଯୋଗ୍ୟତା ଏବଂ ଲକ୍ଷଣ ସେତେ ପରିଦୃଷ୍ଟ ହୁଏନାହିଁ । ଭାଷା ଛନ୍ଦୋବଦ୍ଧ ଏବଂ ପଦ୍ୟାତ୍ମକ ଥିଲା । ଚରିତ୍ରଚିତ୍ରଣ, କଥାବସ୍ତୁ ଗୁମ୍ଫନ ଏବଂ ନାଟକୀୟ ଦ୍ୱନ୍ଦ୍ୱ ସେହି ନାଟକ ମାନଙ୍କରେ ସ୍ଥାନ ପାଇପାରି ନ ଥିଲା । ଲୋକସମାଜରେ ସେତେବେଳେ ପ୍ରଚଳିତ ନାଟକ, ସୁଆଙ୍ଗ ନାଟକ ଶ୍ରେଣୀରେ ଅନ୍ତର୍ଭୁକ୍ତ କରାଯାଇ ନ ପାରେ । ସନ୍ଥକବି ତୁଳସୀଦାସ ହିନ୍ଦୀରେ ପ୍ରଥମେ 'ରାମଲୀଳା' ଯୋଜନା କରିଥିବାର ଜଣାଯାଏ ।

୧୮୫୩ ମସିହାରେ ଅମାନତ୍ ଉର୍ଦ୍ଦୁରେ 'ଇନ୍ଦର୍ ସଭା' ନାମକ ଏକ ରୂପକ ରଚନା କରିଥିଲେ । ଅଯୋଧ୍ୟାର ଓ୍ୱାଜିଦ୍ ଆଲି ସାହା ସ୍ୱୟଂ 'ଇନ୍ଦ୍ର' ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ ।

ହିନ୍ଦୀରେ ପ୍ରକୃତ ପ୍ରଥମ ନାଟକ ହେଉଛି 'ନହୁଷ ନାଟକ' (୧୮୫୭) । ଭାରତେନ୍ଦୁ ହରିଶ୍ଚନ୍ଦ୍ରଙ୍କ ପିତା ଗୋପାଲ ଚନ୍ଦ୍ର ଏହାର ପ୍ରଣେତା । ଏହି ନାଟକରେ ପ୍ରଥମେ ଇନ୍ଦ୍ରଙ୍କର ସିଂହାସନ ଚ୍ୟୁତ ଏବଂ ପରେ ସିଂହାସନ ଲାଭ ପ୍ରଦର୍ଶନ କରାଯାଇଛି । ରାଜା ଲକ୍ଷ୍ମଣସିଂଙ୍କର 'ଶକୁନ୍ତଳା' (ଅନୁବାଦ-୧୮୬୨) ଏହି ସମୟର ଅନ୍ୟ ଏକ ନାଟ୍ୟ ରଚନା ।

ଆଧୁନିକ ହିନ୍ଦୀ କାବ୍ୟ କବିତାର ପ୍ରବର୍ତ୍ତକ ଭାରତେନ୍ଦୁ ହରିଶ୍ଚନ୍ଦ୍ରଙ୍କ ଠାରୁ ହିଁ ଆଧୁନିକ ହିନ୍ଦୀ ନାଟକ ରଚନା ବିଗତ ଶତକର ଉତ୍ତରାର୍ଦ୍ଧରେ ଆରମ୍ଭ ହୋଇଥିଲା । ଭାରତେନ୍ଦୁ ହିନ୍ଦୀ ନାଟକର ଉଭୟ ଗୁଣାତ୍ମକ ଏବଂ ପରିମାଣାତ୍ମକ ଅଗ୍ରଗତି ସାଧନ କରିଥିଲେ । ପୌରାଣିକ, ଐତିହାସିକ, ଯଥାର୍ଥବାଦୀ ଏବଂ ପ୍ରହସନ ଜାତୀୟ ନାଟ୍ୟ ରଚନା ତାଙ୍କର କୃତିତ୍ୱ । ନାଟକ ରଚନାପାଇଁ ପଦ୍ୟ ଅପେକ୍ଷା ଗଦ୍ୟ ଅଧିକ ଉପଯୋଗୀ—ଏହା ଭାରତେନ୍ଦୁଙ୍କ ରଚନାରୁ ପ୍ରମାଣିତ ହୋଇଥିଲା ।

*

ସେ ପାଶ୍ଚାତ୍ୟ ଶୈଳୀ କିମ୍ବା ସଂସ୍କୃତ ନାଟ୍ୟତତ୍ତ୍ୱ ସଂପୂର୍ଣ୍ଣ ଭାବରେ ଗ୍ରହଣ କରି ନଥିଲେ । ପୁନଶ୍ଚ, ତାଙ୍କର ଚରିତ୍ର ସମୂହ କେବଳ ସାମନ୍ତ ଶ୍ରେଣୀରୁ ଗୃହୀତ ହୋଇ ନଥିଲା । ଭାରତେନ୍ଦୁ ନାଟକର ଯଥାର୍ଥତା ଲାଗି ସାଧାରଣ ସ୍ତରରୁ ମଧ୍ୟ ଚରିତ୍ର ନିର୍ବାଚନ କରିଥିଲେ । ପାଞ୍ଚଗୋଟି ମୌଳିକ ନାଟକ, ଛଅଗୋଟି ଅନୂଦିତ ନାଟକ ଏବଂ କେତୋଟି ପ୍ରହସନ ତାଙ୍କ ରଚନା ତାଙ୍କର ସମଗ୍ର ନାଟ୍ୟକୃତିର ଅନ୍ତର୍ଗତ । ଭାରତେନ୍ଦୁ ହିନ୍ଦୀ ନାଟକରେ ନୂତନତା, ଆବେଦନ-ପ୍ରାଧାନ୍ୟ ସୃଷ୍ଟି କରିପାରି-ଥିଲେ । ତାଙ୍କର ମୌଳିକ ନାଟକ ମଧ୍ୟରେ ଚନ୍ଦ୍ରାବଳୀ, ଭାରତ ଦୁର୍ଦ୍ଦଶା, ନୀଳ-ଦେବୀ, ପ୍ରେମ ଯୋଗିନୀ ଏବଂ ସତୀପ୍ରତାପ; ଅନୁବାଦ ମଧ୍ୟରେ ମୁଦ୍ରାରାକ୍ଷସ, ଧନଞ୍ଜୟ ବିଜୟ, କର୍ପୂର ମଞ୍ଜରୀ, ବିଦ୍ୟାସୁନ୍ଦର, ଦୁର୍ଲ୍ଲଭବନ୍ଧୁ, ସତ୍ୟ ହରିଶ୍ଚନ୍ଦ୍ର, ଭାରତ-ଜନନୀ; ଫାର୍ସ ମଧ୍ୟରେ ଅନ୍ଧେରୀ ନଗରୀ (୧୮୮୧), ବୈଦିକ ହିଂସା ହିଂସା ନ ଭବତି (୧୮୭୩) ପ୍ରଭୃତି ପ୍ରଧାନ । 'ପ୍ରେମଯୋଗିନୀ'ରେ ପୂଜକ ଏବଂ ପୁରୋହିତ ମାନଙ୍କର ବ୍ୟଙ୍ଗ ବିଦ୍ରୂପ; 'ଚନ୍ଦ୍ରାବଳୀ' ନାଟକରେ ସତୀତ୍ୱର ମହିମା; 'ନୀଳଦେବୀ', 'ଭାରତ ଦୁର୍ଦ୍ଦଶା', 'ଭାରତ ଜନନୀ' ନାଟକରେ ଭାରତୀୟ ରାଷ୍ଟ୍ରଭାବନା ପ୍ରଦର୍ଶିତ । ଭାରତେନ୍ଦୁ ଜଣେ କୃଷ୍ଣ ଭକ୍ତ ବୈଷ୍ଣବ ଥିଲେ । ତେଣୁ 'ଚନ୍ଦ୍ରାବଳୀ' ରଚନାରେ ରାଧାକୃଷ୍ଣ ପ୍ରେମର ପୃଷ୍ଠଭୂମିରେ ନାଟ୍ୟକାର ଆଧ୍ୟାତ୍ମିକ ଅନ୍ୱେଷଣ କରିଛନ୍ତି । ତାଙ୍କର ନାଟକ ଦେଶାତ୍ମବୋଧ, ସାମାଜିକତା, ଭକ୍ତି ପ୍ରବଣତା ଦ୍ୱାରା ଚିହ୍ନିତ । ଭାରତେନ୍ଦୁ ନାଟକର ଗଦ୍ୟଭାଷା ମଝିରେ ମଝିରେ ପଦ୍ୟଦ୍ୱାରା ଅଳଂକୃତ । ସେ ପାର୍ଶୀ ଥିଏଟରର ଶସ୍ତା ନାଟକ ପ୍ରଦର୍ଶନ ଏବଂ ଇଂରେଜ ନାଟକ ଅନୁକରଣର ବିରୋଧୀ ଥିଲେ । ସେଥିପାଇଁ ତାଙ୍କ ନାଟକରେ ଗ୍ରାମ୍ୟ ନାଟକ ପରଂପରା ଏବଂ ସଂସ୍କୃତ ନାଟକ ରୀତିର ପ୍ରଭାବ ଦେଖିବାକୁ ମିଳେ ।

ମାଧବ ଶୁକ୍ଳ କଲିକତାରେ ହିନ୍ଦୀ ନାଟ୍ୟ ପରିଷଦ ପ୍ରତିଷ୍ଠାକରି ସାହିତ୍ୟିକ ନାଟ୍ୟ ରଚନା ଏବଂ ମଞ୍ଚୋପଯୋଗୀ ନାଟ୍ୟ ରଚନା ମଧ୍ୟରେ ସଂପର୍କ ସ୍ଥାପନ କରି ପାରିଥିଲେ । ଭାରତେନ୍ଦୁଙ୍କ ସଦୃଶ ସେ ପୁରାଣ ଏବଂ ମଧ୍ୟଯୁଗୀୟ ଇତିହାସ ଦ୍ୱାରା ଉଦ୍‌ବୁଦ୍ଧ ହୋଇଥିଲେ । ସେଥିପାଇଁ ମହାଭାରତର ଅଭିମନ୍ୟୁ ପ୍ରସଂଗ ଏବଂ ଭାରତୀୟ ଇତିହାସର ରାଣା ପ୍ରତାପଙ୍କ ଚରିତ୍ର ହିନ୍ଦୀ ନାଟ୍ୟକାରମାନଙ୍କୁ ବିଶେଷ ଭାବରେ ଆକ୍ଷାଦିତ କରିଥିଲା । ମଖନ ଲାଲ ଚତୁର୍ବେଦୀଙ୍କର 'କୃଷ୍ଣାର୍ଜ୍ଜୁନ ଯୁଦ୍ଧ' ପୌରାଣିକ ପରଂପରାରେ ଲିଖିତ ଏକ ବିଶିଷ୍ଟ ନାଟକ ।

ଶ୍ରୀନିବାସ ଦାସ, ଚନ୍ଦ୍ରବର୍ମା, କାର୍ତ୍ତିକ ପ୍ରସାଦ ବର୍ମା ପ୍ରମୁଖ ପୌରାଣିକ ନାଟକ ରଚନା କରିଥିଲେ । ଶ୍ରୀନିବାସଙ୍କର 'ରନ୍‌ଧୀର ପ୍ରେମମୋହିନୀ ତଥା ସ୍ୱୟମ୍ବର' ସଂଯୋଜିତ ସ୍ୱୟମ୍ବର । ରାଧାକୃଷ୍ଣ ଦାସଙ୍କର 'ଦୁର୍ଗାବାତୀ', 'ମହାରାଣା ପ୍ରତାପ' ଏହି ଯୁଗର ଐତିହାସିକ ନାଟକ । ଅମ୍ବିକା ଦତ୍ତ ବ୍ୟାସ, ଜଗତ ନାରାୟଣ

ଶର୍ମା, ପ୍ରତାପ ନାରାୟଣ ମିଶ୍ର ରାଷ୍ଟ୍ରୀୟ ଧାରାରେ ନାଟକ ରଚନା କରିଥିଲେ । ଅତୀତ ଭାରତର ଗୌରବ ପ୍ରତିଷ୍ଠା ଏତାଦୃଶ ନାଟକ ସମୂହର ପ୍ରତିପାଦିତ ଉଦ୍ଦେଶ୍ୟ । ନାଟ୍ୟକାର ନାଟ୍ୟ ରଚନାର ଆଦିକାଳରେ ପ୍ରହସନ ଲେଖିବା ପାଇଁ ଆକୃଷ୍ଟ ହୋଇଥିଲେ । 'ପ୍ରହସନ' ରଚନାରେ ସାଧାରଣତଃ ସମସାମୟିକ ସାମାଜିକ କୁସଂସ୍କାର ଓ ଦୁର୍ନୀତିକୁ ବିଦ୍ରୂପ କରାଯାଉଥିଲା ।

ଊନବିଂଶ ଶତାବ୍ଦୀର ଶେଷ ପର୍ଯ୍ୟାୟରେ ହିନ୍ଦୀ ନାଟକରେ ବିଭିନ୍ନ ଧାରା; ଯଥା—ରୋମାଣ୍ଟିକ, ପୌରାଣିକ, ଐତିହାସିକ, ଦେଶାତ୍ମବୋଧକ, ସମସ୍ୟାମୂଳକ, ଫାର୍ସମୂଳକ ଏବଂ ଆଙ୍ଗିକ ପ୍ରବର୍ତ୍ତିତ ହୋଇପାରିଥିଲା ।

ବାରାଙ୍ଗନା ରହସ୍ୟ (ବଦ୍ରୀନାରାୟଣ), ଜ୍ଞାର୍ତ୍ତିକେରୁ (ତୋତାରାମ), ସତୀ ଚନ୍ଦ୍ରାବଳୀ (ରାଧାଚରଣ ଗୋସ୍ୱାମୀ), ଚନ୍ଦ୍ରକଳା ଭାନୁକୁମାର (ରାୟଦେବୀ ପ୍ରସାଦ-ପୂର୍ଣ୍ଣ), ମୟଙ୍କ ମଞ୍ଜରୀ (କିଶୋରୀ ଲାଲ ଗୋସ୍ୱାମୀ) ପ୍ରଭୃତି ରୋମାଣ୍ଟିକ ନାଟକ; ପ୍ରୟାଗ ରାଗ ଗମନ (ବଦ୍ରୀନାରାୟଣ ଚୌଧୁରୀ), ପ୍ରହଲ୍ଲାଦ ଚରିତ (ଶ୍ରୀନିବାସ ଦାସ), ସେଓ ନନ୍ଦନ ସୁଦାମା (ରାଧା ଚରଣ ଗୋସ୍ୱାମୀ), ଜାନକୀ ମଙ୍ଗଳ (ଶୀତଳ ପ୍ରସାଦ ତିଓ୍ୱାରୀ), ସୀତା ବନବାସ (ଜ୍ୱାଳା ପ୍ରସାଦ ମିଶ୍ର), ପ୍ରଭାସ ମିଳନ, ମୀରାବାଈ (ବଳଦେବ ପ୍ରସାଦ ମିଶ୍ର) ପ୍ରଭୃତି ପୌରାଣିକ ନାଟକ ଏବଂ ଐତିହାସିକ ନାଟକ ମଧ୍ୟରେ ହାମ୍ମିହମୀର (ପ୍ରତାପ ନାରାୟଣ ମିଶ୍ର), ଅମର ସିଂ ରାଠୋର (ରାଧା ଚରଣ ଗୋସ୍ୱାମୀ), ମହାରାଣା ପ୍ରତାପ (ରାଧାକୃଷ୍ଣ ଦାସ); ଜାତୀୟବାଦୀ ନାଟକ ମଧ୍ୟରେ ଭାରତ ଦୁର୍ଦ୍ଦଶା (ପ୍ରତାପ ନାରାୟଣ ଚୌଧୁରୀ); ସମସ୍ୟାଧର୍ମୀ ନାଟକ ମଧ୍ୟରେ କଲି କୌତୁକ, କାଳୀ ପ୍ରଭାବ, ଗୋ-ସଙ୍କଟ (ପ୍ରତାପ ନାରାୟଣ ମିଶ୍ର); ବାଲ ବିବାହ, ଚନ୍ଦ୍ରସେନ୍ (ବାଲକୃଷ୍ଣ ଭଟ୍ଟ) ପ୍ରଭୃତି ଉଲ୍ଲେଖଯୋଗ୍ୟ । ବିଭିନ୍ନ ଲେଖକଙ୍କର ଜୁଆରୀ ଖୁଆରୀ, କଲିରାଜ୍‌କ ସଭା, ଲଲୁବାବୁ ପ୍ରଭୃତି ଫାର୍ସଜାତୀୟ ରଚନା ।

ଏତଦ୍‌ବ୍ୟତୀତ ବଙ୍ଗଳାରୁ ମଧୁସୂଦନ ଦତ୍ତଙ୍କର ପଦ୍ମାବତୀ, ଶର୍ମିଷ୍ଠା; ଦ୍ୱିଜେନ୍ଦ୍ରଲାଲ ରାୟଙ୍କ ସାହାଜାହାନ୍, ଦୁର୍ଗାଦାସ, ତାରାବାଈ; ରବୀନ୍ଦ୍ରନାଥଙ୍କ ଅଚଳାୟତନ, ଚିତ୍ରାଙ୍ଗଦା; ଇଂରେଜୀରୁ ସେକ୍‌ସପିୟରଙ୍କର Romeo Juliet, As you like it, Merchant of Venice (୧୮୯୩), Macbeth (ହିନ୍ଦୀରେ ସାହସେନ୍ଦ୍ର ସାହସ), Hamlet (ହିନ୍ଦୀରେ ଜୟନ୍ତ); ସଂସ୍କୃତରୁ ମେଘଦୂତ (୧୮୮୩), ନାଗାନନ୍ଦ ମୃଚ୍ଛକଟିକ, ମହାବୀର ଚରିତ, ମାଳବିକାଗ୍ନିମିତ୍ର, ଉତ୍ତରରାମଚରିତ, ମାଳତୀ ମାଧବ ପ୍ରଭୃତି ନାଟକ ଏହି ପର୍ଯ୍ୟାୟରେ ହିନ୍ଦୀରେ ଅନୂଦିତ ହୋଇଥିଲା ।

ସର୍ବପ୍ରଥମ ଅଭିନୀତ ହିନ୍ଦୀ ନାଟକ ମଧ୍ୟରେ 'ଜାନକୀ ମଙ୍ଗଳ' (ଶୀତଳ-ପ୍ରସାଦ ତିଓ୍ୱାରୀ) ନାମ ଶୁଣାଯାଏ । ଏଥିରେ ହରିଶ୍ଚନ୍ଦ୍ର ଏବଂ ପ୍ରତାପ ନାରାୟଣ

ମିଶ୍ରଙ୍କ ସଦୃଶ ନାଟ୍ୟକାର ଅଭିନୟ କରଥିଲେ । ଏହା ବାରାଣସୀଠାରେ ନରପତି ଈଶ୍ୱରୀ ପ୍ରସାଦ ନାରାୟଣ ସିଂହଙ୍କ ପୃଷ୍ଠପୋଷକତାରେ ଅଭିନୀତ ହୋଇଥିଲା । ଏହି ଖବରଟି Indian Mail ସମ୍ବାଦପତ୍ରରୁ (ମେ' ମାସ ୮ ତାରିଖ-୧୮୬୮) ଜଣାଯାଏ । ଏହାପରେ ଆଲହାବାଦ ଏବଂ କାନପୁରଠାରେ ଯଥାକ୍ରମେ 'ରନ୍‌ଧୀର ମୋହିନୀ' ଏବଂ 'ସତ୍ୟ ହରିଶ୍ଚନ୍ଦ୍ର' ନାଟକ ଅଭିନୀତ ହୋଇଥିଲା ।

ନାଟକ ଏକ ମିଶ୍ରିତ କଳା । ନାଟକର ପ୍ରସାର ଏବଂ ସଫଳତା ରଙ୍ଗମଞ୍ଚ ସଦୃଶ ଏକାଧିକ ଉପାଦାନ ଉପରେ ନିର୍ଭର କରେ । ଊନବିଂଶ ଶତାବ୍ଦୀର ଶେଷ ପାଦରେ ବମ୍ବେସ୍ଥିତ ପାର୍ଶି ସମ୍ପ୍ରଦାୟଙ୍କ ଉଦ୍ୟମରେ କେତେକ ଥିଏଟର ସଂଘ ଗଠିତ ହୋଇଥିଲା । ଏହିପରି କେତେକ କମ୍ପାନିର ନାମହେଲା —Original Theatrical Company, Victoria Thetrical Company. ଏମାନେ ପ୍ରଥମେ ଉର୍ଦ୍ଦୁରେ ଲିଖିତ ନାଟକ ଅଭିନୟ କରଥିଲେ । ଭାରତ ଭ୍ୟାକୁଲ ଏବଂ ସୂର ବିଜୟ ନାମକ ଦୁଇଟି କମ୍ପାନି ପ୍ରତିଷ୍ଠିତ ହୋଇଥିଲା । ସେମାନେ ହିନ୍ଦୀରେ ବିଶ୍ୱମ୍ଭର ସାହାଙ୍କ ଗୌତମ ବୁଦ୍ଧ ଏବଂ ରାଧେଶ୍ୟାମଙ୍କ ଉଷା ଅନିରୁଦ୍ଧ ନାଟକ ଅଭିନୟ କଲେ । ଏହାପରେ ଆଲହାବାଦ, ବାରଣସୀ ଏବଂ କାନପୁର ଠାରେ ଭିନ୍ନ ଭିନ୍ନ ନାଟ୍ୟ ସଂଘ ଗଠିତ ହେବାରୁ ହିନ୍ଦୀ ନାଟକ ସହଜରେ ଅଭିନୀତ ହେଲା ।

ବିଂଶ ଶତାବ୍ଦୀର ପ୍ରଥମ ପାଦରେ ହିନ୍ଦୀ ସାହିତ୍ୟରେ ଜୟଶଙ୍କର ପ୍ରସାଦଙ୍କ (୧୮୯୦-୧୯୩୭) ଆବିର୍ଭାବ ନାଟ୍ୟ ସାହିତ୍ୟର ଇତିହାସରେ ଏକ ଉଲ୍ଲେଖଯୋଗ୍ୟ ଘଟଣା । ଆଧୁନିକ କାବ୍ୟକବିତା ଯେପରି ଆଧୁନିକ ନାଟକର ଜଣେ ଶକ୍ତିଶାଳୀ ପ୍ରବର୍ତ୍ତକ । ଇତିହାସ ତାଙ୍କ ନାଟକର ପ୍ରଧାନ ଆଧାର ଏବଂ ରୂପକଥା ମଧ୍ୟ ତାଙ୍କ ରଚନାରୁ ବାଦ୍ ପଡ଼ିନଥିଲା । ସମ୍ଭବତଃ ସମସାମୟିକ ଯୁଗର ଜାତୀୟ ଆନ୍ଦୋଳନ ତାଙ୍କ ଦୃଷ୍ଟିକୋଣକୁ ପ୍ରଭାବିତ କରିପାରିଥିଲା । ସଜ୍ଜନ, କରୁଣାଳୟ ପ୍ରଭୃତି ତାଙ୍କର ପ୍ରାରମ୍ଭିକ ନାଟ୍ୟ ରଚନା । 'ରାଜ୍ୟ ଶ୍ରୀ', 'ଅଜାତଶତ୍ରୁ', 'ଚନ୍ଦ୍ରଗୁପ୍ତ', 'ସ୍କନ୍ଦଗୁପ୍ତ', 'ପ୍ରାୟଶ୍ଚିତ୍ତ' ଏବଂ 'କଲ୍ୟାଣୀ ପରିଣୟ' ହେଉଛି ତାଙ୍କର ଐତିହାସିକ ନାଟକ । ଜନ୍ମେଜୟ କା ନାଗ ଯଜ୍ଞ, ଧ୍ରୁବ ସ୍ୱାମିନୀ, ବିଶାଖା କାମନା ପ୍ରଭୃତି ରଚନାର ଆଧାର ପୌରାଣିକ ।

ଜୟଶଙ୍କର ପ୍ରସାଦଙ୍କ ନାଟ୍ୟ ରଚନାର ବିଭିନ୍ନ ଲକ୍ଷଣ ମଧ୍ୟରେ ଜାତୀୟତା, ସ୍ୱଦେଶଭାବାପନ୍ନ ସଙ୍ଗୀତ, ଯଥାର୍ଥବାଦ, ଆଳଙ୍କାରିକ ଭାଷା, କରୁଣ ରସ ଏବଂ ଏକ ବଳିଷ୍ଠ ଜୀବନ ଦର୍ଶନ ପରିଦୃଷ୍ଟ ହୁଏ । ଚରିତ୍ର ବିଶ୍ଳେଷଣରେ ମଧ୍ୟ ଲେଖକ କମ୍ କୃତିତ୍ୱ ପ୍ରଦର୍ଶନ କରିନଥିଲେ ।

ଚନ୍ଦ୍ରଗୁପ୍ତ ଏବଂ ସ୍କନ୍ଦଗୁପ୍ତ ନାଟକ ନାଟ୍ୟକାରଙ୍କର ଇତିହାସ ସଚେତନତାର ସାର୍ଥକ ନିଦର୍ଶନ । ଏହି ସମୟକୁ ହିନ୍ଦୀ ନାଟ୍ୟ-ସାହିତ୍ୟରେ ପ୍ରସାଦଯୁଗ ବୋଲି ଅଭିହିତ କରାଯାଏ । ତଥାପି ତାଙ୍କର ଅଧିକାଂଶ ନାଟକ ରଂଗମଂଚୋପଯୋଗୀ ହୋଇପାରିନଥିଲା । ରୋମାଣ୍ଟିକ୍ କାବ୍ୟ-ନାଟକ ଏବଂ ବାସ୍ତବବାଦୀ ସାମାଜିକ ନାଟକ ମଧ୍ୟରେ ତାଙ୍କର ନାଟକଗୁଡ଼ିକର ସ୍ଥାନ ।

ଆଧୁନିକ ହିନ୍ଦୀ ନାଟକର ଆଉ ଏକ ସ୍ୱାତନ୍ତ୍ର୍ୟ ହେଉଛି ଆଦର୍ଶବାଦିତା । ଏହି ଆଦର୍ଶବାଦୀ ନାଟକ ଧାରାରେ ଶେଠ୍ ଗୋବିନ୍ଦ ଦାସଙ୍କର ହର୍ଷ, ବିକାଶ, ଶେରସାହା, ଶଶିଗୁପ୍ତ, ପାକିସ୍ଥାନ; ହରିଶଙ୍କର ପ୍ରେମୀଙ୍କର ରକ୍ଷାବନ୍ଧନ, ସ୍ୱପ୍ନଭଙ୍ଗ ଉଲ୍ଲେଖଯୋଗ୍ୟ । ଏତାଦୃଶ ନାଟକର ପୃଷ୍ଠଭୂମି ଅତୀତରୁ ଗୃହୀତ ହେଲେ ହେଁ; ଦୃଷ୍ଟିକୋଣ ସାମ୍ପ୍ରତିକ ପରିବେଶ ଦ୍ୱାରା ପରିପୁଷ୍ଟ । ଉଦୟଶଙ୍କର ଭଟ୍ଟଙ୍କର ନାଟକ ମତ୍ସ୍ୟଗନ୍ଧା, ବିଶ୍ୱାମିତ୍ର, ରାଧା; ଭଗବତୀବାବୁଙ୍କର କର୍ଣ୍ଣ, ଦ୍ରୌପଦୀ; ପନ୍ତଙ୍କର ଶିଲ୍ପୀ, ରଜତଶିକାର ଗୀତନାଟ୍ୟ ଶ୍ରେଣୀର ଅନ୍ତର୍ଗତ । ଉଦୟଶଙ୍କର ଭଟ୍ଟଗୀତ-ନାଟ୍ୟ ଛଡ଼ା ଅନ୍ୟ ଧାରାର ନାଟକ ମଧ୍ୟ ଲେଖିଛନ୍ତି । ଉପେନ୍ଦ୍ର ନାଥ ଅଶ୍କ ଏବଂ ଜଗଦୀଶଚନ୍ଦ୍ର ମାଥୁରଙ୍କର ନାଟକର ରଙ୍ଗମଂଚୋପଯୋଗିତା ସେମାନଙ୍କ ନୈପୁଣ୍ୟର ପ୍ରତୀକ । ଜଗଦୀଶ ଚନ୍ଦ୍ରଙ୍କର 'ଭୋରକା ତାରା' ଏବଂ 'କୋଣାର୍କ' ଉଲ୍ଲେଖଯୋଗ୍ୟ କୃତି । ଅଶ୍କଙ୍କ ଏପରି ମଂଚସଫଳ ନାଟକ ମଧ୍ୟରେ 'ଛୁଟା ବେଟା, 'ସ୍ୱର୍ଗ କି ଝଲକ୍', 'ଜୟ ପରାଜୟ', 'କଇଦୀ ଔର ଉଡ଼ନ', 'ଆଦିମାର୍ଗ' ପ୍ରଧାନ ।

ସାଂପ୍ରତିକ ସଙ୍ଘର୍ଷର ପୃଷ୍ଠଭୂମିରେ ଲିଖିତ ଅଶ୍କଙ୍କର 'ତୁଫାନ୍‌ସେ ପହଲେ' ଏକ ଶ୍ରେଷ୍ଠ ହିନ୍ଦୀ ନାଟକ । ବିଷ୍ଣୁ ପ୍ରଭାକର, ବିମଳା ଲୁଥର ମଞ୍ଚଉପଯୋଗୀ ନାଟକ ରଚନା କରିଛନ୍ତି ।

୧୯୪୦ ପରବର୍ତ୍ତୀ ଯୁଗରେ ହିନ୍ଦୀ ନାଟକର ରୂପାନ୍ତର ଘଟିଥିଲା । 'ଇଣ୍ଡିଆନ୍ ନେସ୍‌ନାଲ୍ ଥିଏଟର' ନାମକ ସଂସ୍ଥାର ପ୍ରତିଷ୍ଠା ଯୋଗୁଁ ଏହା ସମ୍ଭବ ହୋଇଥିଲା । ରାଜ୍ୟରେ ଶ୍ରମିକ-କୃଷକ ଆନ୍ଦୋଳନ, ବଙ୍ଗଦୁର୍ଭିକ୍ଷ, ଜାପାନ ଆକ୍ରମଣ ନାଟ୍ୟକାରମାନଙ୍କୁ ନାଟକ ରଚନାପାଇଁ ଉପାଦାନ ଯୋଗାଇଥିଲା ।

୧୯୩୦ ପରେ ହିନ୍ଦୀ ନାଟକରେ ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ର ଯଥାର୍ଥବାଦୀ ଏବଂ ବସ୍ତୁବାଦୀଧାରା ପ୍ରବର୍ତ୍ତନ କଲେ । ହିନ୍ଦୀ ନାଟକରେ ପାଶ୍ଚାତ୍ୟ ନାଟ୍ୟକାର ଇବସେନ୍ ଏବଂ ବର୍ଣ୍ଣାର୍ଡ୍ ଶ'ଙ୍କର ପ୍ରଭାବ ମଧ୍ୟ ପ୍ରତିଫଳିତ ହେଲା । ଲକ୍ଷ୍ମୀନାରାୟଣଙ୍କର 'ମୁକ୍ତିକା ରହସ୍ୟ', 'ସନ୍ନ୍ୟାସୀ', 'ରାକ୍ଷସ କା ମନ୍ଦିର', 'ରାଜଯୋଗ', 'ସିନ୍ଦୂରକି ହୋଲି' ସମସ୍ୟାମୂଳକ ନାଟକ । ପଣ୍ଡିତ ମିଶ୍ର ହିନ୍ଦୀ ନାଟକରୁ ପୂର୍ବଯୁଗର ଅଲଂକୃତ ଭାଷାଛଟା, ସ୍ୱଗତୋକ୍ତି, କୃତ୍ରିମ ସଂଲାପବାଦ ଦେଇଥିଲେ । ଫଳରେ ବିଂଶ ଶତାବ୍ଦୀର ଚତୁର୍ଥ ଦଶକରେ ହିନ୍ଦୀ ନାଟକର ଆଙ୍ଗିକରେ କଳାତ୍ମକ

ପରିବର୍ତ୍ତନ ସାଧିତ ହେଲା । ଭୁବନେଶ୍ୱର ପ୍ରସାଦଙ୍କ 'କାରୱାଁ' ଏକାଙ୍କିକା ମଧ୍ୟ ଏହି ନୂତନ ଧାରାର ପ୍ରତୀକ ଲେଖା । ପ୍ରଚଳିତ ବିବାହ ପଦ୍ଧତି ବିରୋଧରେ ଏହା ଲିଖିତ ।

ସାଂପ୍ରତିକ ଯୁଗରେ ହିନ୍ଦୀ ସାହିତ୍ୟରେ ବହୁ ସଂଖ୍ୟାରେ ଏକାଂକିକା ରଚିତ ହୋଇଅଛି । ଜୟଶଙ୍କର ପ୍ରସାଦଙ୍କ ପରେ ହିନ୍ଦୀ ଏକାଙ୍କିକା ରଚନା ଆରମ୍ଭ ହେଲା । ଏକାଙ୍କିକା ଲେଖକମାନଙ୍କ ମଧ୍ୟରେ ଭୁବନେଶ୍ୱର ପ୍ରସାଦ, ଗଣେଶପ୍ରସାଦ ଦ୍ୱିବେଦୀ, ରାମକୁମାର ବର୍ମା, ଉପେନ୍ଦ୍ରନାଥ ଅଶ୍କଙ୍କ ନାମ ପ୍ରଧାନ । ସେମାନଙ୍କ ଲେଖା ସାଧାରଣତଃ ଇତିହାସ କିମ୍ବା ସାମ୍ପ୍ରତିକ ସମସ୍ୟା ଦ୍ୱାରା ପ୍ରଭାବିତ ହୋଇଥିଲା ।

ରାମକୁମାର ବର୍ମାଙ୍କର 'ପୃଥ୍ୱୀରାଜକୀ ଆଁଖେ', 'ରେଶମୀ ଟାଇ,' 'ସପ୍ତକିରଣ', 'ଚାରୁମିତ୍ରା', 'ରୁପରଙ୍ଗ'; ସେଠ୍ ଗୋବିନ୍ଦ ଦାସଙ୍କର 'ସପ୍ତରଶ୍ମି', 'ପଞ୍ଚଭୂତ'; ଉପେନ୍ଦ୍ରନାଥ ଅଶ୍କଙ୍କର 'ଦେବତା କି ଛାଁୟାମେ'; ବୃନ୍ଦାବନଲାଲ ବର୍ମାଙ୍କର 'ତୁଫାନୋ କେ ବିଚ୍' ଉଲ୍ଲେଖଯୋଗ୍ୟ ଏକାଙ୍କିକା । ରାମକୁମାର ଏକାଙ୍କିକାରେ ଭାରତୀୟ ଜୀବନଧାରା; ଯଥା— ତ୍ୟାଗ, ଦୟା, କରୁଣା; ଗୋବିନ୍ଦ ଦାସଙ୍କ ଏକାଙ୍କିକାରେ ଗାନ୍ଧୀ ଆଦର୍ଶ; ଉଦୟଶଙ୍କର ଭଟ୍ଟଙ୍କ ଏକାଙ୍କିକାରେ ସାମାଜିକ ସମସ୍ୟା; ଅଶ୍କଙ୍କ ରଚନାରେ ମଧ୍ୟବର୍ଗୀୟ ପାରିବାରିକ ଚିତ୍ର ପ୍ରଦର୍ଶିତ ।

ପ୍ରସାଦଙ୍କ ସମୟରେ ଐତିହାସିକ ନାଟକ 'ରକ୍ଷାବନ୍ଧନ', 'ସ୍ୱପ୍ନଭଙ୍ଗ'ର ପ୍ରଣେତା ହରିକୃଷ୍ଣପ୍ରେମୀ; 'ରାଜମୁକୁଟ' 'ବରମାଲା'ର ଲେଖକ ଗୋବିନ୍ଦ ବଲ୍ଲଭ ପନ୍ତ; 'ମହାତ୍ମା ଇସା'ର ଲେଖକ ବେଚନଶର୍ମା ଉଗ ମଧ୍ୟ ବିଶିଷ୍ଟ ନାଟ୍ୟକାର । ସୁଦର୍ଶନଙ୍କର ଜୟାନନ୍ଦ; ଚନ୍ଦ୍ରରାଜ ଭଣ୍ଡାରୀଙ୍କର ସିଦ୍ଧାର୍ଥ କୁମାର, ସମ୍ରାଟ ଅଶୋକ; ବଦ୍ରିନାଥଭଟ୍ଟଙ୍କର ଗୋସ୍ୱାମୀ ତୁଳସୀ ଦାସ, ଚନ୍ଦ୍ରଗୁପ୍ତ, ବିଷ୍ଣୁପ୍ରକାଶ ସିଂହଙ୍କର ପାନ୍ନା ଏହି ଯୁଗର ଆଦର୍ଶବାଦୀ ନାଟକ । ପନ୍ତଙ୍କର 'ବରମାଲା', ସୁଦର୍ଶନଙ୍କର 'ଅଞ୍ଜନା', ଧର୍ମରାମଙ୍କର 'ପ୍ରାଣେଶ୍ୱରୀ' ହିନ୍ଦୀନାଟକରେ ସ୍ୱଚ୍ଛନ୍ଦତାଧାରାର ନିଦର୍ଶନ । ଜୟଶଙ୍କର ପ୍ରସାଦଙ୍କ ଯୁଗରେ ଶ୍ରେଷ୍ଠ ସାମାଜିକ ନାଟକର ଅଭାବ ପୂରଣ ହୋଇ ନଥିବାର ଜଣାଯାଏ ।

ଚଳଚ୍ଚିତ୍ର ଏବଂ ବେତାରର ପ୍ରଭାବ ମଧ୍ୟ ହିନ୍ଦୀ ଏକାଙ୍କିକା ରଚନାପାଇଁ କମ୍ ଦାୟୀ ନୁହେଁ; କିନ୍ତୁ ହିନ୍ଦୀ ନାଟକର କଳାତ୍ମକତା, ଶ୍ରେଷ୍ଠତ୍ୱ ଏବଂ ପୂର୍ଣ୍ଣ ବିକାଶ ଅବଧି ସମ୍ଭବ ହୋଇନାହିଁ । ଉପଯୁକ୍ତ ରଙ୍ଗମଞ୍ଚ ସଂସ୍ଥାର ଅଭାବ ଏହାର ଏକ କାରଣ ହୋଇପାରେ । ଏବେ ମଧ୍ୟ ହିନ୍ଦୀ ନାଟକ ରାଜ୍ୟରେ ପ୍ରାଚୀନ ଗ୍ରାମ୍ୟ-ନାଟ୍ୟ ପରମ୍ପରା ପ୍ରତି ଆନୁଗତ୍ୟ ଦେଖାଯାଏ । ଶିକ୍ଷାନୁଷ୍ଠାନ, କ୍ଲବ୍‌ମାନଙ୍କରେ ନାଟକ ଏବଂ ଏକାଙ୍କିକା ମଞ୍ଚସ୍ଥ କରିବା ପାଇଁ ବରାବର ଆଗ୍ରହ ଦେଖାଯାଏ ।

ସଂକ୍ଷେପରେ କହିବାକୁ ଗଲେ ହିନ୍ଦୀ ସାହିତ୍ୟର ନାଟକ ବିଭାଗ ଭବିଷ୍ୟତରେ ଆହୁରି ପ୍ରସାରିତ ହେବ ବୋଲି ଆଶା ।

କାବ୍ୟ କବିତା :

ପୂର୍ବୋକ୍ତ ଆଲୋଚନାରୁ ଜଣାଯାଏ ଯେ ପ୍ରାୟ ତିନଶତବର୍ଷ ଧରି ହିନ୍ଦୀ କାବ୍ୟ କବିତା, ଦେବଦେବୀ, ଶାସକ କତ୍ତୃପକ୍ଷ ଏବଂ ନାୟକ ଯୌନ ବର୍ଣ୍ଣନାର ଗଣ୍ଡି ମଧ୍ୟରେ ସୀମିତ ଥିଲା । ୧୮୫୭ ମସିହାରେ ସିପାହୀ ବିଦ୍ରୋହ ପରେ ଜନ-ଜାଗରଣର ପରିପ୍ରେକ୍ଷୀରେ ହିନ୍ଦୀ ସାହିତ୍ୟ ମଧ୍ୟ ବ୍ୟାପକ ଆର୍ଥିକ ଏବଂ ଆତ୍ମିକ ପରିବର୍ତ୍ତନର ସମ୍ମୁଖୀନ ହେଲା । ଭାରତେନ୍ଦୁ ହରିଶ୍ଚନ୍ଦ୍ର (୧୮୫୦—୧୮୮୫) ଏହି ନବଯୁଗର ଆବାହନ ଶୁଣାଇଥିଲେ । ଭାରତେନ୍ଦୁ ପଶ୍ଚିମା ହିନ୍ଦୀ-କଥ୍ୟ ଭାଷାର ମାର୍ଜିତରୂପ ଖଡ଼ୀବୋଲକୁ ସାହିତ୍ୟ ସାଧନାର ପ୍ରଧାନ ବାହନରୂପେ ଗ୍ରହଣ କରିଥିଲେ । ଏହାର ପୃଷ୍ଠଭୂମିରେ ନବଯୁଗୀୟ ଆଧୁନିକ ହିନ୍ଦୀସାହିତ୍ୟ ଭାରତେନ୍ଦୁ ହରିଶ୍ଚନ୍ଦ୍ର ଯୁଗ, ମହାବୀର ପ୍ରସାଦ ଦ୍ୱିବେଦୀ ଯୁଗ, ଛାୟାବାଦ ଯୁଗ ଏବଂ ପ୍ରଗତିବାଦୀ ଯୁଗ ପର୍ଯ୍ୟାୟରେ ବିଭକ୍ତ । ଭାରତେନ୍ଦୁ ନବଯୁଗର ପ୍ରବକ୍ତା ଥିଲେହେଁ ତାଙ୍କ କବିତା 'ରୀତିକାଳ' କାବ୍ୟ କବିତାର ପ୍ରଭାବରୁ ମୁକ୍ତ ହୋଇ ନଥିଲା । 'ପ୍ରେମ ମାଧୁରୀ' ତାଙ୍କର ଏକ କବିତା ସଂଗ୍ରହ । 'ସୁନ୍ଦରୀ ତିଲକ' ଶୀର୍ଷକ ଏକ କବିତା ସଂକଳନ ସେ ପ୍ରକାଶ କରିଥିଲେ । ସେଥିରେ ପ୍ରାୟ ୬୯ଜଣ କବିଙ୍କର କବିତା ସ୍ଥାନ ପାଇଥିଲା । 'କବି ବଚନ ସୁଧା' ପତ୍ରିକାରେ ପ୍ରତାପ ନାରାୟଣ, ବଦ୍ରିନାରାୟଣ, ଜଗମୋହନ-ସିଂ, ଅମ୍ବିକାଦତ୍ତ ବ୍ୟାସ, ରାମକୃଷ୍ଣ ବର୍ମା ଏବଂ ସୀତାରାମ ପ୍ରଭୃତିଙ୍କର କବିତା ସ୍ଥାନ ପାଇଥିଲା । ଜଗମୋହନ ସିଂ ଏବଂ ସୀତାରାମ ହସ୍ତ୍ତରେ 'ମେଘଦୂତ'କୁ ହିନ୍ଦୀରେ ଭିନ୍ନ ବୃତ୍ତରେ ଅନୁବାଦ କରିଥିଲେ, ସୀତାରାମ ଘନାକ୍ଷରୀ ବୃତ୍ତରେ 'ରଘୁବଂଶ' ମଧ୍ୟ ଅନୁବାଦ କରିଥିଲେ । ଭାରତେନ୍ଦୁଙ୍କର ପରବର୍ତ୍ତୀ କବି ଜଗନ୍ନାଥ ଦାସ 'ରତ୍ନାକର' (୧୮୬୬—୧୯୩୨) ତାଙ୍କର 'ହରିଶ୍ଚନ୍ଦ୍ର', 'ଗଙ୍ଗା ଅବତାର' ଏବଂ 'ଉଦ୍ଧବ ଶତକ'ରେ ଆବେଗ ଅପେକ୍ଷା ସତ୍ୟବୋଧକୁ ଅଧିକ ସ୍ଥାନ ଦେଇଥିଲେ ।

'ନୀଲଦେବୀ ଏବଂ ଭାରତ ଦୁର୍ଦ୍ଦଶା, ଶୀର୍ଷକ କାବ୍ୟିକ ରଚନା ମାଧ୍ୟମରେ ଭାରତେନ୍ଦୁ ଦେଶର ଦୁର୍ଗତି ପ୍ରତି ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ଏହି ସମୟର ଜାତୀୟବାଦୀ କାବ୍ୟକବିତା ସମୂହ 'ସିପାହି ବିଦ୍ରୋହ'ର ଆହ୍ୱାନ ଦ୍ୱାରା ଉଦବୁଦ୍ଧ ହୋଇଥିଲା । ଅଯୋଧ୍ୟା ସିଂ ଉପାଧ୍ୟାୟଙ୍କ 'ପ୍ରିୟପ୍ରବାସ' (୧୯୧୪) ଏବଂ 'ବୈଦେହୀ ବନବାସ' ଆଧୁନିକ କାବ୍ୟ କବିତାର ପ୍ରାଥମିକ ନିଦର୍ଶନ । ରାଜନୈତିକ ଉଦବୋଧନ, ପ୍ରାଚୀନ ପରଂପରାର ଅବସାନ, ସାମାଜିକ ଅସ୍ଥିରତା ଯୋଗୁଁ ବିଂଶ ଶତାବ୍ଦୀର ପ୍ରଥମ ପାଦର ହିନ୍ଦୀ କାବ୍ୟ କବିତା ରୋମାନ୍ସଧର୍ମୀ ହୋଇଥିଲା । 'ପ୍ରିୟ

ପ୍ରବାସ'ରେ ଶ୍ରୀକୃଷ୍ଣଙ୍କ ମଥୁରାଯାତ୍ରା ବର୍ଣ୍ଣିତ । ମାତ୍ର ତାହା ମାନବିକ ଆବେଗ ଦ୍ୱାରା ରସୋତ୍ତୀର୍ଣ୍ଣ । ଭାରତେନ୍ଦୁ ଯୁଗର ସଂସ୍କାରଧର୍ମୀ କାବ୍ୟ କବିତା ଆଜିର ଆଙ୍ଗିକ ଏବଂ ଆତ୍ମିକ ପରିବର୍ତ୍ତନର ସମ୍ମୁଖୀନ ହୋଇଥିଲା । ଗତାନୁଗତିକ କାବ୍ୟ କବିତାର ଧାରା ପ୍ରତ୍ୟାଖ୍ୟାନ କରି ମହାବୀର ପ୍ରସାଦ ଦ୍ୱିବେଦୀ ଏବଂ ତାଙ୍କର ଅନୁଗାମୀ କବିଗଣ ହିନ୍ଦୀ କବିତାର ନବଯୁଗ ପ୍ରବର୍ତ୍ତନ କଲେ । ହିନ୍ଦୀ କବିତା ରାଜ୍ୟରେ ଦ୍ୱିବେଦୀଙ୍କ ଯୁଗ ରୋମାନ୍ସ ଏବଂ ଭାଷାଗତ ଶୃଙ୍ଖଳାକରଣର ଯୁଗବୋଲି ଜଣାଯାଏ । ବିଂଶ ଶତାବ୍ଦୀର ସାମାଜିକ ସଚେତନତା ଦ୍ୱିବେଦୀ ଯୁଗ କାବ୍ୟ କବିତାରେ ପୂର୍ଣ୍ଣ ଭାବରେ ପ୍ରତିଫଳିତ ।

ଦ୍ୱିବେଦୀ ଯୁଗର ଅନ୍ୟତମ ଶ୍ରେଷ୍ଠକବି ଭାବରେ ମୈଥିଳୀ ଶରଣ ଗୁପ୍ତ (ଜନ୍ମ ୧୮୮୬)ଙ୍କ ନାମ ସବାଗ୍ରେ ଉଲ୍ଲେଖଯୋଗ୍ୟ । ପରବର୍ତ୍ତୀ କାଳରେ ସେ ହିନ୍ଦୀ କାବ୍ୟ କବିତାରେ ଆନ୍ଦୋଳନର ଜଣେ ପ୍ରବର୍ତ୍ତକ ହୋଇପାରିଥିଲେ । ତାଙ୍କର ସ୍ମରଣୀୟ କାବ୍ୟ କୃତି 'ଭାରତ ଭାରତୀ' ସମଗ୍ର ଭାରତରେ ଜାତୀୟତାବୋଧ ସୃଷ୍ଟି କରିବା ଲାଗି ଯେପରି ଉଦ୍ଦିଷ୍ଟ । ପରାଧୀନ ଭାରତର ଦୁଃଖ ଏବଂ ମୁକ୍ତି ପିପାସା ଯେପରି ସେହି କାବ୍ୟର ପ୍ରେରଣା, 'ହିନ୍ଦୁ' ମଧ୍ୟ କବିଙ୍କର ଆଉ ଏକ ଜାତୀୟ ରଚନା । ଏତଦ୍‌ବ୍ୟତୀତ 'ମଙ୍ଗଳ ଘଟ', ରାମାୟଣ ଆଧାରିତ 'ସାକେତ', 'ଯଶୋଧାରା', 'ପଞ୍ଚବଟୀ', 'ଜୟଦ୍ରଥ ବଧ', 'ନହୁଷ', 'ଦ୍ୱାପର', 'ପଲାସୀର ଯୁଦ୍ଧ', 'କିଶାନ୍', 'ସିଦ୍ଧରାଜ' ପ୍ରଭୃତି ତାଙ୍କର ଶ୍ରେଷ୍ଠବଡ଼ କାବ୍ୟିକ ରଚନା । ତାଙ୍କ କାବ୍ୟ ସୃଷ୍ଟିରେ ଯେପରି ଗୌରବମୟ ଅତୀତ ପ୍ରତି ଗୋଟାଏ ମମତା ପ୍ରକାଶିତ ହୋଇଥିଲା । ଦେଶର ଜାତୀୟ, ସାଂସ୍କୃତିକ ଆନ୍ଦୋଳନ ଦ୍ୱାରା ତାଙ୍କର କାବ୍ୟମାନସ ବହୁଧା ପ୍ରଭାବିତ ହୋଇଥିଲା । ବିଶେଷତଃ ବଙ୍ଗ ସାହିତ୍ୟରେ ତାଙ୍କର ଗଭୀର ପ୍ରବେଶ ତାଙ୍କ କାବ୍ୟ ସାଧନା ପକ୍ଷରେ ସହାୟକ ହୋଇଥିବାର ଜଣାଯାଏ । ବର୍ତ୍ତମାନ ରାଷ୍ଟ୍ରକବି ରୂପେ ସମ୍ମାନିତ କବି ଗୁପ୍ତାଜୀଙ୍କର ଜୀବନଦର୍ଶନ ଯଥାର୍ଥତଃ ବାସ୍ତବ ସଂସ୍କାର ପନ୍ଥୀ । ସାଂପ୍ରତିକ ଜଟିଳ ଯୁଗରେ କବିଙ୍କ କାବ୍ୟ କବିତା ନିର୍ଦ୍ଦିଷ୍ଟ ଆଦର୍ଶ ଏବଂ ବିଶ୍ୱାସ । ସେ ଭାବପ୍ରବଣ ନୁହନ୍ତି, ତାଙ୍କ କବିତାରେ ଚମତ୍କାରିତା ପୂର୍ଣ୍ଣ । ସେ ଆବେଗ ବିହ୍ୱଳ ନୁହନ୍ତି, ତାଙ୍କ କବିତାରେ ମାତ୍ର ଆବେଗ ପ୍ରଚୁର । ହିନ୍ଦୀ କବିତାରେ ନିଶ୍ଚିତ ଭାବରେ ସେ ନୂତନ ଦୃଷ୍ଟିଭଙ୍ଗୀ ପ୍ରବର୍ତ୍ତନ କରିଥିଲେ ।

ଦ୍ୱିବେଦୀ ଯୁଗର କାବ୍ୟ କବିତା ବିରୋଧରେ ଏକ ବଳିଷ୍ଠ ସ୍ୱର ହେଉଛି ଛାୟାବାଦ ଆନ୍ଦୋଳନ । ଜୀବନର ବ୍ୟର୍ଥ ପରାଜୟ, ଗ୍ଳାନି, ଅବସାଦ ଯୋଗୁଁ କବି ସମ୍ମୁଖରେ ଏକ କଳ୍ପଲୋକ ଉଦ୍ଭାସିତ ହୋଇ ଉଠିଲା । ଏ ପର୍ଯ୍ୟନ୍ତ ହିନ୍ଦୀ କବିତା ବସ୍ତୁକୈନ୍ଦ୍ରିକ ଥିଲା । ବର୍ତ୍ତମାନ ତାହା ହେଲା ବ୍ୟକ୍ତି କୈନ୍ଦ୍ରିକ । ମଧ୍ୟଯୁଗୀୟ ସାମନ୍ତବାଦୀ ଜୀବନାଦର୍ଶ କ୍ରମଶଃ ବିଂଶଶତାବ୍ଦୀର ବ୍ୟକ୍ତିତନ୍ତ୍ର ଦ୍ୱାରା ପରି-

ପୁଷ୍ଟ ହେଲା । ଭାରତରେ ଏହି ବ୍ୟକ୍ତିଚିନ୍ତା ରାଜନୈତିକ ଏବଂ ଜାତୀୟ ଆନ୍ଦୋଳନ ଦ୍ୱାରା ପରିପୁଷ୍ଟ ହେଲା । ବିଦେଶୀ ଶାସନର ବନ୍ଧନରେ କବି ଚେଷ୍ଟା ନିଜକୁ ପ୍ରକାଶିତ କରିବା ଲାଗି ନୂତନ ଚିତ୍ରକଳ୍ପ, ନୂତନ ଭାବାଦର୍ଶ ସନ୍ଧାନ କରିଥିଲା । ଯନ୍ତ୍ର ଯୁଗର ସାମାଜିକ ଜଟିଳତା, ଏତାଦୃଶ କାବ୍ୟିକ ଉଦ୍ଭାବନର ହେତୁ ବୋଲି କୁହାଯାଇପାରେ । ହିନ୍ଦୀ କବିତା ରାଜ୍ୟରେ ଛାୟାବାଦ ଆନ୍ଦୋଳନର ଏହାହିଁ ହେଉଛି ସଂକ୍ଷିପ୍ତ ଭୂମିକା । ଏହି ଯୁଗ (୧୯୨୦—୧୯୩୫) ଆଧୁନିକ ହିନ୍ଦୀ କବିତାର ବିକାଶର ଶ୍ରେଷ୍ଠ ଯୁଗ ।

ବୈଷୟିକ ସମସ୍ୟା ଅପେକ୍ଷା ବ୍ୟକ୍ତିଗତ କଳ୍ପନାଦର୍ଶ ଏହି ଛାୟାବାଦୀ କବିତାର ଲକ୍ଷଣ । ବ୍ୟକ୍ତିଗତ ଜୀବନାଦର୍ଶ କବିତାରେ ନୂତନ ସୌନ୍ଦର୍ଯ୍ୟବୋଧ ଜାଗ୍ରତ କଲା । ଅନୁଭୂତି ଏବଂ ଅଭିଜ୍ଞତାର ସମ୍ମିଶ୍ରଣ ସେଥିପାଇଁ ଛାୟାବାଦୀ କବିତାରେ ସ୍ପଷ୍ଟ । ପୁନଶ୍ଚ ସାଂପ୍ରତିକ ଯୁଗର ଦାର୍ଶନିକ ଚିନ୍ତାନାୟକ; ଯଥା—ବିବେକାନନ୍ଦ, ଅରବିନ୍ଦ ଏବଂ ଉପନିଷଦ୍ ବେଦାନ୍ତ ଏବଂ ବୈଷ୍ଣବଧର୍ମର ପ୍ରଭାବ ମଧ୍ୟ ଏହି ଗୋଷ୍ଠୀ-କବିତାରେ ପରିଦୃଷ୍ଟ । ପ୍ରେମ ଓ ପ୍ରକୃତି ମଧ୍ୟ ଛାୟାବାଦୀ କବିତାରେ ବର୍ଣ୍ଣିତ । ଛାୟାବାଦର ଅନ୍ୟ ନାମ ହେଉଛି ରହସ୍ୟବାଦ ଏବଂ ପ୍ରତୀକବାଦ ।

ଜୟଶଙ୍କର ପ୍ରସାଦ ହେଉଛନ୍ତି ଛାୟାବାଦ କାବ୍ୟ କବିତାର ପ୍ରତିଷ୍ଠାତା । 'ଲହର', 'ଝରନା', 'ଆଂଶୁ' ଏବଂ 'କାମାୟନୀ' ପ୍ରଭୃତି ତାଙ୍କର ବିଶିଷ୍ଟ କୃତି । ବିଶେଷତଃ 'କାମାୟନୀ' ପ୍ରସାଦଙ୍କର ହିନ୍ଦୀ କାବ୍ୟ ରାଜ୍ୟରେ ଏକ ପ୍ରସିଦ୍ଧ ରଚନା ଏବଂ ଏହା ଇଟାଲୀୟ ଅମର କବି ଦାନ୍ତେଙ୍କର 'ଡିଭାଇନ୍ କମେଡି'ର ଆଦର୍ଶରେ ଲିଖିତ । ଏହା ପଞ୍ଚଦଶ ସର୍ଗରେ ବିଭକ୍ତ । କବି କାବ୍ୟରେ ମନୁଷ୍ୟ ଜୀବନର ଜଟିଳତର ସମସ୍ୟା ଉଦ୍‌ଘାଟନ କରିବାରେ ଯେପରି ଶକ୍ତିଶାଳୀ ଭାଷା ତଥା ଶୈଳୀର ଅପୂର୍ବ ଉପଯୋଗ କରିବାରେ ସେହିପରି ସମର୍ଥ । ଶାଶ୍ୱତର ମିଳନ ଲାଗି ଆତ୍ମାର ଅଭିଳାଷ କାବ୍ୟର ଉପଜୀବ୍ୟ । ସେଥିପାଇଁ 'କାମାୟନୀ' ଛାୟାବାଦ ଯୁଗର ମହାକାବ୍ୟ (ଏପିକ୍) ସଦୃଶ ।

ଏହି ଗୋଷ୍ଠୀର ଅନ୍ୟାନ୍ୟ କବି ହେଉଛନ୍ତି—ମୈଥିଳୀ ଶରଣ ଗୁପ୍ତ, ସୂର୍ଯ୍ୟକାନ୍ତ ତ୍ରିପାଠୀ (ନିରାଲା), ସୁମିତ୍ରାନନ୍ଦନ ପନ୍ତ, ଶ୍ରୀମତୀ ମହାଦେବୀ ବର୍ମା । ଛାୟାବାଦୀ ଯୁଗର ଶକ୍ତିଶାଳୀ କବି ଭାବରେ ସୂର୍ଯ୍ୟକାନ୍ତ ତ୍ରିପାଠୀ (ନିରାଲା) (୧୮୯୭-୧୯୬୧) ସୁପରିଚିତ । ଅନାମିକା (୧୯୨୩), ପରିମଲ୍ (୧୯୩୦), ଗୀତିକା (୧୯୩୬), ତୁଳସୀ ଦାସ, କୁକୁରମୁତ୍ତା, ଅର୍ଚ୍ଚନା (୧୯୫୦) ପ୍ରଭୃତି ତାଙ୍କର ବହୁ ପଠିତ କାବ୍ୟ ଗ୍ରନ୍ଥ । ନୂତନ ଆଙ୍ଗିକ ନୂତନ ଦୃଷ୍ଟିଭଙ୍ଗୀ ତଥା ମୁକ୍ତଛନ୍ଦ ବୈଚିତ୍ର୍ୟ ତାଙ୍କ କାବ୍ୟ କବିତାକୁ ଅପୂର୍ବ ମହିମାରେ ମଣ୍ଡିତ କରିପାରିଛି । କବି 'ନିରାଲା' ତାଙ୍କର ବିବିଧ କାବ୍ୟ କବିତାରେ ପରଂପରା ବିରୋଧରେ ବିପ୍ଳବ କରିଛନ୍ତି । ଏହି

*

ବୋହେମିୟାନ୍ କବି ବ୍ୟକ୍ତିଗତ ଜୀବନରେ ଯେପରି ଦୁଃଖୀପ୍ରତି ସହାନୁଭୂତିଶୀଳ ଏବଂ ଦରଦପୂର୍ଣ୍ଣ ତାହା ବଡ଼ ଆଶ୍ଚର୍ଯ୍ୟଜନକ । ସେ ଥରେ କହିଥିଲେ—"ଛନ୍ଦର ନିଗଡ଼ ବନ୍ଧନରୁ ମୁକ୍ତିହିଁ କବିର ଯଥାର୍ଥ କାମ୍ୟ" । ପ୍ରବନ୍ଧ, କ୍ଷୁଦ୍ରଗଳ୍ପ ଏବଂ ଉପନ୍ୟାସ ରଚନା କରି 'ନିରାଳା' ସଫଳତା ଅର୍ଜନ କରିଥିଲେ ।

ସୁମିତ୍ରା ନନ୍ଦନ ପନ୍ତ (୧୯୦୦) ମୁଖ୍ୟତଃ ସୌନ୍ଦର୍ଯ୍ୟବୋଧର ଶିଳ୍ପୀ । ପ୍ରକୃତିର ଲାସ୍ୟପୂର୍ଣ୍ଣ ବିଳାସ ଏବଂ ରୂପ ରଙ୍ଗର ପୃଷ୍ଠଭୂମିରେ କବିର ଗଭୀର ଅନ୍ତର୍ଦୃଷ୍ଟି ହିନ୍ଦୀ କାବ୍ୟ କବିତାରେ ଏକ ମାୟାପୁରୀ ସୃଷ୍ଟି କରିପାରିଛି । ତାଙ୍କ କବି ଜୀବନର ପ୍ରଥମ ପର୍ଯ୍ୟାୟର ରଚନା ହେଉଛି ବୀଣା (୧୯୧୮), ଗ୍ରନ୍ଥି (୧୯୨୦), ପଲ୍ଲବ (୧୯୨୬), ଗୁଞ୍ଜନ (୧୯୩୨), ଜ୍ୟୋତ୍ସ୍ନା (୧୯୩୪), ଯୁଗାନ୍ତ (୧୯୩୬) ଏବଂ ପରବର୍ତ୍ତୀ ପର୍ଯ୍ୟାୟର ସ୍ୱର୍ଣ୍ଣଧୂଳି (୧୯୫୦), ଗ୍ରାମ୍ୟ (୧୯୪୦), ସ୍ୱର୍ଣ୍ଣକିରଣ (୧୯୫୦), ଯୁଗବାଣୀ (୧୯୩୯) ପରବର୍ତ୍ତୀ ରହସ୍ୟବାଦୀ କବିମାନସର ପରିଚୟ ଦେଇଥାଏ । କବି ପଣ୍ଡିଚେରୀ ଆଶ୍ରମର ଆଦର୍ଶରେ ପ୍ରଭାବିତ ହୋଇଥିବାର ଜଣାଯାଏ । ସମାଜବାଦୀ କବି କ୍ରମେ ଦାର୍ଶନିକ ପୁରୁଷରେ ପରିଣତ ହୋଇଥିଲେ ।

ଶ୍ରୀମତୀ ମହାଦେବୀ ବର୍ମା (୧୯୦୮) ଛାୟାବାଦ ଯୁଗର ଶ୍ରେଷ୍ଠ ନାୟିକବି ରୂପେ ଯେତିକି ପରିଚିତ, ଆଧୁନିକ ହିନ୍ଦୀ କବିତାରେ ମଧ୍ୟ ସେହି ପରିମାଣରେ ପ୍ରତିଷ୍ଠିତ । ଛାୟାବାଦୀ କବିତାର ବିବିଧ ଲକ୍ଷଣ, ଯଥା—ବ୍ୟକ୍ତିକୈନ୍ଦ୍ରିକତା, ନୂତନ ଚିତ୍ରକଳ୍ପ, ନୂତନ ପ୍ରତୀକ ଏବଂ ମାନବିକ ଆବେଗର ସମନ୍ୱୟ, ରହସ୍ୟବାଦିତା ତାଙ୍କ କାବ୍ୟଶିଳ୍ପରେ ବେଶ ସ୍ୱାକ୍ଷରିତ । ଅବ୍ୟକ୍ତ ବେଦନାର କରୁଣ ମୂର୍ଚ୍ଛନା, ପ୍ରେମ-ବ୍ୟାକୁଳ ହୃଦୟର ବ୍ୟଥିତା ତାଙ୍କ କାବ୍ୟ ସୃଷ୍ଟିର ପ୍ରତିଧ୍ୱନି । ଆଶା ଅପେକ୍ଷା ନୈରାଶ୍ୟ ଯେପରି ତାଙ୍କର ଗୀତି କବିତାକୁ ରସସିକ୍ତ କରିଥାଏ । ନୀହାର (୧୯୨୯) ରଶ୍ମି (୧୯୩୨), ନୀରଜା (୧୯୩୫), ସନ୍ଧ୍ୟାଗୀତ (୧୯୩୬), ଦୀପଶିଖା (୧୯୫୨) ପ୍ରଭୃତି ତାଙ୍କର ବିଶିଷ୍ଟକୃତି । 'ଅତୀତ କେ ଚଲଚିତ୍ର' (୧୯୪୧) ପୁସ୍ତକରେ ସେ ସ୍ୱଚ୍ଛନ୍ଦ ଗଦ୍ୟରେ ସୁନ୍ଦର ସୁନ୍ଦର ସ୍କେଚ୍ ଅଙ୍କନ କରିଛନ୍ତି । ପ୍ରାଚୀନ ହିନ୍ଦୀ ଓ ସଂସ୍କୃତ ସାହିତ୍ୟର କାବ୍ୟବିଭବ ଦ୍ୱାରା କବି ବେଶ୍ ପ୍ରଭାବିତ । ବ୍ୟକ୍ତିଗତ ଜୀବନରେ କବି ହସିବା ପାଇଁ ଖୁବ୍ ଭଲପାଆନ୍ତି ।

କ୍ରମେ କ୍ରମେ ହିନ୍ଦୀ କାବ୍ୟ କବିତାର ଧାରା—ବ୍ୟକ୍ତିଗତ ଆତ୍ମମୁଖ୍ୟ ଗ୍ରହଣ କରିଥିଲେ । ବ୍ୟକ୍ତିସତ୍ତା ପ୍ରତ୍ୟେକ କବିତାରେ ରହିବାର କଥା । ତେଣୁ ଆଧୁନିକ କବିତାରେ ତାହାର ଉପସ୍ଥିତି ଏକ ବିଶେଷ ଲକ୍ଷଣ ହୋଇ ନ ପାରେ ବୋଲି କେତେକ ସମାଲୋଚକ ଯୁକ୍ତି କରନ୍ତି । ଭଗବତୀ ଚରଣ ବର୍ମା, ନରେନ୍ଦ୍ର ଶର୍ମା ବଚନ, ଅଞ୍ଚଲ, ଶ୍ରୀମତୀ ସୁଭଦ୍ରା କୁମାରୀ ଚୌହାନ, ମୋହନ ଲାଲ ମହତୋ ପ୍ରମୁଖ ଶକ୍ତିଶାଳୀ କବିମାନଙ୍କର କବିତା ବ୍ୟକ୍ତିଗତ ଜୀବନର ସୁଖାନୁଭୂତି ଏବଂ ଦୁଃଖା-

ନୂତନ ଦ୍ୱାରା ଅନୁରଞ୍ଜିତ । ଏହି ବ୍ୟକ୍ତିଗତ ଆଭିମୁଖ୍ୟହିଁ ସେମାନଙ୍କ କବିତାକୁ ସ୍ୱତନ୍ତ୍ର ମହିମାରେ ପ୍ରତିଷ୍ଠିତ କରିଅଛି । ଛାୟାବାଦ କାବ୍ୟ କବିତାରେ ଗଭୀର ସୌନ୍ଦର୍ଯ୍ୟବୋଧ ତଥା ଅପୂର୍ବ ଶିଳ୍ପକୁଶଳତା ପ୍ରକଟିତ । କିନ୍ତୁ ବ୍ୟଞ୍ଜନଷ୍ଟ କବିତା ସମୃଦ୍ଧ ସାଂପ୍ରତିକ ଜାତୀୟ ଏବଂ ସାଂସ୍କୃତିକ ଚେତନା ଦ୍ୱାରା ଚର୍ଚ୍ଚିତ । ବିଦେଶୀ ଶାସନ ବିରୋଧରେ ତୀବ୍ର ପ୍ରତିକ୍ରିୟା କ୍ରମଶଃ ହିନ୍ଦୀ କାବ୍ୟ କବିତାରେ ପ୍ରତିଫଳିତ ହୋଇ-ଥିଲି । ଜାତୀୟ ଆନ୍ଦୋଳନ ଗଭୀର ଭାବରେ ହିନ୍ଦୀ କବିତାକୁ ପ୍ରଭାବିତ କରିଥିଲି । ଏହି ଆକାଂକ୍ଷା ଓ ଆବେଗ ଯେଉଁମାନଙ୍କ କବିତାରେ ପ୍ରକଟିତ, ସେମାନେ ହେଲେ ମୈଥିଲୀ ଶରଣ ଗୁପ୍ତ, ବାଲକୃଷ୍ଣ ଶର୍ମା ନବୀନ, ସୂର୍ଯ୍ୟକାନ୍ତ ତ୍ରିପାଠୀ (ନିରାଲା), ସୁଭଦ୍ରା କୁମାରୀ ଚୌହାନ, ରାମଧାରୀ ସିଂ (ଦିନକର), ସିୟାରାମ ଶରଣ ଗୁପ୍ତା ।

ସେମାନଙ୍କର ବିବିଧ ବୈପ୍ଳବିକ କବିତା ଜାତୀୟ ଉତ୍କଣ୍ଠାର ବିସ୍ଫୋରଣ ବୋଲି କୁହାଯାଇପାରେ । ଭାରତମାତା, ହିମାଳୟ, ଗଙ୍ଗା, ଗାନ୍ଧି—ଏହି ଜାତୀୟ-ବାଦୀ କବିତାର ପ୍ରାଣସ୍ପନ୍ଦନ ଯୋଗାଇଥିଲି । ଅହିଂସା, ତ୍ୟାଗ—କବିତାର ଥିଲି ମନ୍ତ୍ର । ମୈଥିଲୀ ଶରଣଙ୍କର 'ସାକେତ', 'ଯଶୋଧାରା', ଦିନକରଙ୍କର 'କୁରୁକ୍ଷେତ୍ର', ସୁଭଦ୍ରା କୁମାରୀ ଚୌହାନଙ୍କର 'ଝାନ୍‌ସି କି ରାନି' ଭାରତୀୟ ଜାତୀୟ ଆନ୍ଦୋଳନର ପ୍ରତିଧ୍ୱନି ବୋଲି କୁହାଯାଇପାରେ । ମୈଥିଲୀ ଶରଣ ଗୁପ୍ତ ଯଥାର୍ଥତଃ ସ୍ୱଦେଶୀ ପ୍ରେମର କବି । ତାଙ୍କ କାବ୍ୟ ମାନସ ଜାତୀୟ ଆନ୍ଦୋଳନର ଭୂମିକାରେ ମାନବିକ ସଂପର୍କ ବିଶ୍ଳେଷଣ କରିବାରେ ପ୍ରଯୁକ୍ତ ।

ସ୍ୱାଧୀନତାର ପଚିଶ ବର୍ଷ—ହିନ୍ଦୀ କବିତାର ଶୈଳୀ ଏହି ସମୟ ମଧ୍ୟରେ ଏତେ ପରିବର୍ତ୍ତିତ ଓ ବିକାଶୋନ୍ମୁଖୀ ହୋଇଛି ଯେ କବିତାର ସ୍ୱରୂପ ପ୍ରବୃତ୍ତି ସମ୍ବନ୍ଧରେ ଜଣେ ସମୀକ୍ଷକ ଏକାକୀ ଏ ଯୁଗର କବିତାକୁ ସାମଗ୍ରିକ ବିଗ୍ଭର କରିପାରିବେ ନାହିଁ । ଏଥିରେ ସମୀକ୍ଷକଙ୍କୁ ଦ୍ୱନ୍ଦ୍ୱ ଓ ସଂଶୟରେ ପଡ଼ିବାକୁ ହୋଇଥାଏ । ତେଣୁ ସମାଲୋଚକମାନଙ୍କର ସାମୂହିକ ଆଲୋଚନା ଏହି ସମୟର କବିତାକୁ ବିଶ୍ଳେଷଣ କରିପାରେ ।

ବୈଜ୍ଞାନିକ ଚିନ୍ତାରାଜ୍ୟରେ ପରିବର୍ତ୍ତନ ସଙ୍ଗେ ବ୍ୟକ୍ତିବର୍ଗଙ୍କର ଚିନ୍ତାଧାରାରେ ପରିବର୍ତ୍ତନ ଦେଖା ଦେବା ସ୍ୱାଭାବିକ କଥା । ମାନବିକ ଚେତନାର ଧାରା ଗଭୀର ହୋଇ ଉଠିବା ସଙ୍ଗେ କବିତାର ସୃଷ୍ଟି ଓ ମୂଲ୍ୟାଙ୍କନ ସନ୍ଦିଗ୍ଧ ହୋଇ ଉଠୁଛି । କବି ଓ ସମାଲୋଚକ ଉଭୟେ ଭିନ୍ନମୁଖୀ ହେବା ଫଳରେ କବିତାର ସର୍ବାଙ୍ଗୀନ ବିଗ୍ଭର ଆଲୋଚନା ମଧ୍ୟ ସମ୍ଭବ ହେଉ ନାହିଁ । ଏ ଦୁହିଁଙ୍କ ମଧ୍ୟରେ ପରିଚୟ ବା ମିତ୍ରତା ତ ନାହିଁ, ବରଂ ସମୟେ ସମୟେ ପରସ୍ପର ମଧ୍ୟରେ ବାକ୍‌ଯୁଦ୍ଧର ସମ୍ଭାବନା ପ୍ରଚୁର । ଫଳସ୍ୱରୂପ କବିତା ଦୁର୍ବୋଧ ଓ ଜଟିଳ ହୋଇ ଉଠୁଛି ।

ଆଲୋଚ୍ୟ କାଳରେ କବିତାର ରୂପ ପରିବର୍ତ୍ତନ ଲକ୍ଷଣୀୟ ବିଷୟ । କେତେ ନୂତନ ଧାରର ପରୀକ୍ଷା ନିରୀକ୍ଷା କବିତା କ୍ଷେତ୍ରରେ ଚାଲିଛି ତାହାର ପ୍ରକୃତ ରୂପ ଜାଣିବା ପାଇଁ ଗଭୀର ଚିନ୍ତା ଆବଶ୍ୟକ । ପ୍ରୟୋଗଶୀଳ, ପ୍ରଗତିଶୀଳ, ଅମିତ୍ରାକ୍ଷର, ପ୍ରତୀକମୂଳକ, ପାରମ୍ପରିକ, ଗୁଚ୍ଛକବିତା, ସରଳ କବିତା, ନଗ୍ନ ଓ ଡେକୋମୟୀ କବିତା ମାଧ୍ୟମରେ ଏ ଯୁଗର କବି ନିଜକୁ ପ୍ରକାଶ କରୁଛି । ତେଣୁ ଏଗୁଡ଼ିକୁ ବିଚାର କରିବାକୁ ହେଲେ ଏକ ସହାନୁଭୂତିଶୀଳ ସହୃଦୟ ସ୍ଥାନରେ ସମୀକ୍ଷକଙ୍କୁ ଆସୀନ ହେବାକୁ ପଡ଼ିବ । ତେବେ ଏ କବିତାର ରୂପ ପରିବର୍ତ୍ତନ ପ୍ରେରଣାର ଉତ୍ସ ଆଦି ବିଚାରଣୀୟ ।

ଛାୟାବାଦୀ କବିତାର ଯେତେବେଳେ ଅବସାନ ଘଟିଲା ଓ ତା'ର ପ୍ରତିକ୍ରିୟା ସ୍ୱରୂପ ପ୍ରଗତିଶୀଳ କାବ୍ୟଧାରାର ଆରମ୍ଭ ହେଲା ତାହା ଚିରସ୍ଥାୟୀ ହେଲା ନାହିଁ । ପ୍ରଗତିଶୀଳ କାବ୍ୟର ପ୍ରତିକ୍ରିୟାରେ ସୃଷ୍ଟି ହେଲା ପ୍ରୟୋଗଶୀଳ କାବ୍ୟ । ପୁନଶ୍ଚ ପ୍ରୟୋଗଶୀଳ କବିତାକୁ ପଛରେ ପକାଇ ଦେଖା ଦେଇଛି ନୂତନ କବିତାର ପ୍ରବୃତ୍ତି । କବିତାର ଶୈଳୀରେ ଏହି ବିଲକ୍ଷଣ ପରିବର୍ତ୍ତନ ଏତେ ସ୍ୱଳ୍ପ ସମୟ ମଧ୍ୟରେ ସଂସାଧିତ ହୋଇଛି ଯେ ସମାଲୋଚକ ତା'ର ବ୍ୟବଧାନକୁ ସହଜରେ ଧରିପାରେ ନାହିଁ । ପ୍ରକୃତରେ ଦେଖିବାକୁ ଗଲେ ଛାୟାବାଦ ଏବେ ମଧ୍ୟ ଜୀବିତ । ନିରାଲା ଓ ପନ୍ତ ଏହାର ଜନ୍ମଦାତା । ଏହି ଦୁଇ କବି ପାଠକର ଦୃଷ୍ଟି ଆକର୍ଷଣ କଲେ କୃଷକ, ନଗ୍ନ, ଶୋଷିତ, କ୍ଷୁଧାର୍ତ୍ତମାନଙ୍କ ପ୍ରତି ଓ ମୃତ ମାନବତାର ଜୀବନ୍ୟାସ ଦେଲେ । ପରବର୍ତ୍ତୀ କବିତାରେ ଏହି ପ୍ରବୃତ୍ତି ବିବିଧ ଧାରାରେ ବିକଶିତ ହୋଇଅଛି ।

ସ୍ୱାଧୀନତା ପରବର୍ତ୍ତୀ ସମୟରେ ପ୍ରଗତିଶୀଳ କାବ୍ୟର ଉତ୍କର୍ଷ ସାଧିତ ହୋଇଛି । ଯୁଗୀୟ ସଙ୍କଟ, ସାମନ୍ତ ପୁଞ୍ଜିପତି, ବିଦେଶୀ ଶାସକ, ଦେଶୀୟ ନେତା, ପ୍ରାଚୀନ ରୀତି ଓ ବିକୃତ ପରମ୍ପରା ପ୍ରତି ଲୋକମାନଙ୍କ ମନରେ ବିକ୍ଷୋଭର ଭାବ ଏହି ସମୟର କବିତାର ମୁଖ୍ୟ ସ୍ୱର ।

ରାଜନୀତି ଓ ସାହିତ୍ୟ ସ୍ୱାଧୀନ ଭାରତରେ ଦୁଇ ଭିନ୍ନ ଭୂମିକାରେ ଅବତୀର୍ଣ୍ଣ ହେଲେ । ନୂତନ ରାଷ୍ଟ୍ର ଗଠନରେ ରାଜନୀତି ବ୍ୟାପୃତ ଥିଲାବେଳେ, ସାହିତ୍ୟ ନୂତନ ସମାଜ ଗଠନର ଭୂମିକା ନେଇଥିଲା । ରାଜନୀତିର ପ୍ରଶାସନିକ ସଂସ୍କୃତିରେ ଜନଜୀବନର ଆର୍ଥିକ ଅବସ୍ଥା ଶୋଚନୀୟ ହୋଇପଡ଼ିବାରୁ ପ୍ରଗତିଶୀଳ ଆନ୍ଦୋଳନର ମୁଖ୍ୟ ଲକ୍ଷ୍ୟ ସମାଜର ସାଂସ୍କୃତିକ ପୁନର୍ଗଠନ ନିଜ ଲକ୍ଷ୍ୟରେ ସ୍ଥିର ରହି ପାରିଲା ନାହିଁ । ଏହି ସମୟରେ ଦଳେ କବି ଓ ସାହିତ୍ୟିକ ରାଜନୀତିରୁ ଅଲଗା ରହି ସ୍ୱାଧୀନ ଭାବରେ ନିଜ ପ୍ରଗତିଶୀଳ ଲକ୍ଷ୍ୟରେ ଅଟଳ ରହିଲେ । ସେମାନଙ୍କର ପ୍ରାପ୍ୟ ସ୍ୱରୂପ ମିଳିଥିଲା ଉପେକ୍ଷା, ତିରସ୍କାର, ଦମନ ଓ ଚରିତ୍ର ସଂହାର । ଏହା

ଏକ ସଂକଟର ସମୟ । ଏହି ସମୟର କବିତାରେ କବି ନୂତନ ଶିଳ୍ପ ଓ ତା'ପାଇଁ ନୂଆ ଭାଷା ସୃଷ୍ଟି କଲି । ଏହି କବିତା ଆମକୁ ଶିଖାଇଲା ଯେ, ସାଂସ୍କୃତିକ, ଆର୍ଥିକ ସ୍ୱାତନ୍ତ୍ର୍ୟ ବିନା ରାଜନୈତିକ ସ୍ୱତନ୍ତ୍ରତା ଏକ ଗୃହବାଜି । କବିତାର ଭାଷାକୁ ଜନଭାଷାର ନିକଟବର୍ତ୍ତୀ କରାଇବା ଏମାନଙ୍କ ସାଧନାର ବିଶେଷ ଲକ୍ଷ୍ୟ ଥିଲା ।

ଏହି ଆନ୍ଦୋଳନରେ ଲକ୍ଷ୍ୟ କରିବାର କଥା ଯେ ପ୍ରଗତିଶୀଳତା ଏକ ଆରୋପିତ ଧର୍ମ । କବିମାନେ ଏହି ଧର୍ମରେ ସ୍ୱୟଂ ବିଶ୍ୱାସୀ ନଥିଲେ । ଏହି କବି-ମାନେ ଯେଉଁ ସମାଜରୁ ଆସିଥିଲେ ତାହା ଥିଲା ଏକ ସାମନ୍ତବାଦୀ ବ୍ୟବସ୍ଥା । ତେଣୁ ପ୍ରଗତିଶୀଳ କବିମାନେ ଏହି ସାମାଜିକ ବ୍ୟବସ୍ଥାର ଶିକାର ହେଲେ । ନିଜର ସ୍ଥିତି ଅପରିବର୍ତ୍ତିତ ରଖିଥିଲେ ହୁଏତ ଏ କାବ୍ୟଧାରାର ରୂପ ଅନ୍ୟ କିଛି ହୋଇଥାନ୍ତା; ମାତ୍ର ତାହା ହେବାର ନୁହେଁ । ଏଥିପାଇଁ ଏହି କାବ୍ୟଧାରା ଲୋପ ପାଇଗଲା । ତା' ସତ୍ତ୍ୱେ ପ୍ରୟୋଗଶୀଳ ଓ ନୂତନ କବିତା ନାମରେ ସୃଷ୍ଟି ହେଉଥିବା ଅଧିକାଂଶ କବିତାରେ ପ୍ରଗତିଶୀଳତାର ସ୍ୱର ପ୍ରଚ୍ଛନ୍ନ ରହିଛି । ଏହି ଯୁଗର ମୁଖ୍ୟ କବିମାନଙ୍କ ମଧ୍ୟରେ ନିରାଲା, ପନ୍ତ, ଦିନକର, ରାଙ୍ଗେୟ ରାଘବ, ନରେନ୍ଦ୍ର ଶର୍ମା, ଭଗବତୀ ଚରଣ ବର୍ମା, ତ୍ରିଲୋଚନ ଶାସ୍ତ୍ରୀ, ମୁକ୍ତିବୋଧ, ଗିରିଜା କୁମାର, ଭାରତଭୂଷଣଙ୍କ ନାମ ଉଲ୍ଲେଖ କରାଯାଇପାରେ ।

ଗଜାନନ ମାଧବ ମୁକ୍ତିବୋଧ ଏକାଧାରାରେ ଦାର୍ଶନିକ, କବି, ସାମ୍ବାଦିକ ଏବଂ ସାମାଜିକ ଚେତନାର ବାହକ ରୂପେ ସୁପରିଚିତ । ଜଣେ ରହସ୍ୟବାଦୀ ରୋମାନ୍ଟିକ୍ ହେଲେହେଁ ମୁକ୍ତିବୋଧ ଯେପରି ତାଙ୍କ କାବ୍ୟ କବିତାରେ ପୀଡ଼ିତ ମାନବସମାଜର କାରୁଣ୍ୟ ତଥା ଦୁର୍ଗତିର ପ୍ରତୀକ ଥିଲେ । ବୌଦ୍ଧିକତା ମଧ୍ୟ ତାଙ୍କ କବିତାର ଅନ୍ତଃସ୍ୱର । ପରମ୍ପରା, ଚଳଣୀର ସେ ଥିଲେ ସଂପୂର୍ଣ୍ଣ ବିରୋଧୀ । ଉତ୍କଟ ଦାରିଦ୍ର୍ୟ ଓ ନିର୍ଯ୍ୟାତନା ମଧ୍ୟରେ ସ୍ୱାର୍ଥପର ସମାଜରେ କବି ନିଜର ସ୍ୱାତନ୍ତ୍ର୍ୟକୁ ବଜାୟ ରଖିବା ପାଇଁ ଯେପରି ବଦ୍ଧପରିକର ଥିଲେ, ସେଥି ପାଇଁ ସେ ଥରେ ତାଙ୍କର ଜଣେ ବନ୍ଧୁଙ୍କୁ କୈଫିୟତ ଦେଇ କହିଥିଲେ, "ମୋ ଜୀବନର ସର୍ବାପେକ୍ଷା ଆନନ୍ଦଦାୟକ ମୁହୂର୍ତ୍ତ ହେଉଛି, ଯେତେବେଳେ ମୁଁ ଦିନସାରା ଖଟଣିପରେ ମୋର ସନ୍ତାନମାନଙ୍କ ଗହଣରେ ଭୂମି ଉପରେ ଶୋଇଯାଏ । ତା' ପରେ ମୁଁ ଖୁବ୍ ହସ ହସି ଥାଏ । ମୁକ୍ତିବୋଧ କେବଳ ଯୁବ ସମାଜ ସହିତ ଜୀବନ ସାରା ସଂପୃକ୍ତ ହୋଇ ନ ଥିଲେ । ସେ ତାଙ୍କର କାବ୍ୟ ସାଧନାରେ ବରାବର ତାରୁଣ୍ୟ ଏବଂ ଯୌବନକୁ ବଜାୟ ରଖିଥିଲେ । ସେ ତାଙ୍କର ସମାଲୋଚକମାନଙ୍କୁ ଲକ୍ଷ୍ୟ କରି କହିଥିଲେ, "ମୋ କବିତା ଜୀବନଠାରୁ ସ୍ୱତନ୍ତ୍ର ନୁହେଁ" । ୧୯୬୨ ମସିହାରେ ତାଙ୍କର 'ଇତିହାସ' ପୁସ୍ତକ ମଧ୍ୟପ୍ରଦେଶ ସରକାରଙ୍କ ଦ୍ୱାରା ନିଷିଦ୍ଧ କରାଯାଇଥିବା ସମ୍ବାଦ ପାଇ ମୁକ୍ତିବୋଧ ତାଙ୍କର ପ୍ରତିକ୍ରିୟା ଜଣାଇଥିଲେ—"ମୁଁ ରାଜନୀତିକ ନୁହେଁ

ଜିମ୍ମା ପ୍ରବର୍ତ୍ତକ ନୁହେଁ, ମାତ୍ର ମୁଁ ବରାବର ଅନୁଭବ କରିଛି ଯେ ସ୍ୱାର୍ଥ ହିଁ ଆମକୁ ସମାଜରେ ଆମର ଲକ୍ଷ୍ୟ ପ୍ରତି ବିମୁଖ କରିପାରିଛି । କବିତାରେ ଏବଂ ବ୍ୟକ୍ତିଗତ ଜୀବନରେ ମୁଁ ବରାବର ସତ୍ୟର ପଥ ସନ୍ଧାନ କରି ଚାଲିଛି । ମାତ୍ର ମୁଁ ଯେତେବେଳେ ସମସ୍ତଙ୍କର ଶରବ୍ୟ ହୋଇଛି, ସେତେବେଳେ ମୁଁ ମୋର ନିଜର ଶେଯରେ କଡ଼ ଲେଉଟାଇବା ପାଇଁ ମଧ୍ୟ ଅସମର୍ଥ ।"

ମୁକ୍ତିବୋଧ ବହୁ ମୌଳିକ ରଚନାର ସାର୍ଥକ ସ୍ରଷ୍ଟା । ମାତ୍ର ତାଙ୍କର ଆକସ୍ମିକ ତିରୋଧାନ ଦ୍ୱାରା ହିନ୍ଦୀ କାବ୍ୟ କବିତାର ଧାରା ବହୁ ଭାବରେ ବାଧାପ୍ରାପ୍ତ ହୋଇଛି । ତାଙ୍କ ସଦୃଶ ଜଣେ ଗଭୀର ଭାବପ୍ରବଣତାର କବି ଆଧୁନିକ ହିନ୍ଦୀ କବିତାର ଧାରା ପରିବର୍ତ୍ତିତ କରି ପାରିଛି ।

ପ୍ରୟୋଗଶୀଳ ଓ ନୂତନ କବିତା ମଧ୍ୟରେ ପ୍ରଗତିଶୀଳ ଚେତନାର ବାଣୀ ମଧ୍ୟ କେତେକ କବି ଶୁଣାଇଛନ୍ତି । ପ୍ରଗତିଶୀଳ, ପ୍ରୟୋଗଶୀଳ ଓ ନବ୍ୟ ଛାୟାବାଦୀ କାବ୍ୟ-ପ୍ରବୃତ୍ତି ଏକା ସାଙ୍ଗରେ ବିକାଶପ୍ରାପ୍ତ ହେଉଥିବାରୁ ଓ ଗୋଟିକରେ ଅନ୍ୟଟିର ପ୍ରଭାବ ଉପଲବ୍ଧ ହେଉଥିବାରୁ ପ୍ରଗତିଶୀଳ ଓ ପ୍ରୟୋଗଶୀଳ ଯୁଗ ଭାବରେ ଦୁଇ ଭିନ୍ନ ସାହିତ୍ୟିକ ଯୁଗର ଶ୍ରେଣୀ ବିଭାଗ କରିବା ଉଚିତ ନୁହେଁ । ଏହାକୁ ପ୍ରଗତି-ପ୍ରୟୋଗଶୀଳ ଯୁଗ କହିବା ଅଧିକ ସଙ୍ଗତ ହେବ ।

ପ୍ରଗତିଶୀଳ କବିତାର ପ୍ରବର୍ତ୍ତକ କିଏ ଏ ସମ୍ବନ୍ଧରେ ମତ ବିରୋଧର ସମ୍ଭାବନା ଅଛି । ଏକ ସୈଦ୍ଧାନ୍ତିକ ରୂପରେ ପ୍ରୟୋଗଶୀଳତାକୁ ଉପସ୍ଥାପନ କରିବାରେ 'ଅଜ୍ଞେୟ' ସର୍ବପ୍ରଥମ ସ୍ରଷ୍ଟା । ପୁନଶ୍ଚ ପ୍ରୟୋଗଶୀଳ ଓ ନୂତନ କବିତାର ସ୍ରଷ୍ଟାମାନଙ୍କୁ ଅଲଗା ବିଚାର କରିବା ମଧ୍ୟ ନିଷ୍ପ୍ରୟୋଜନ ।

ପ୍ରୟୋଗଶୀଳ କବିତାରେ ବୈଜ୍ଞାନିକ ଦୃଷ୍ଟିକୋଣର ନିଃସଙ୍ଗ ସଚେତନତା, ପରିବେଶ ପ୍ରତି ଗଭୀର ଜାଗରୁକତା, ଜନତନ୍ତ୍ର ସମାଜ ଓ ରଚନାର ରୂପ-ବିନ୍ୟାସ ସମ୍ବନ୍ଧରେ ବୈଶିଷ୍ଟ୍ୟ ଦୃଷ୍ଟିଗୋଚର ହୁଏ । ଶବ୍ଦର ସଙ୍ଗତ ପ୍ରୟୋଗ ଏହି କାବ୍ୟ-ଧାରାର ମୁଖ୍ୟ ଲକ୍ଷ୍ୟ ଥିଲା ।

ପ୍ରୟୋଗଶୀଳତାରୁ ନୂତନ କବିତାର ଉଦ୍ଭବ ହେଲା । ଆଧୁନିକତା, ଆଧୁନିକ ଭାବବୋଧ, ନୂଆ ମଣିଷର ମୂଲ୍ୟ, ବ୍ୟକ୍ତି ସ୍ୱାତନ୍ତ୍ର୍ୟ, ଲଘୁ ମାନବ, ସାଙ୍କେତିକ ଶିଳ୍ପ, ମୋହଭଙ୍ଗ, ସମସାମୟିକତା, ଅସ୍ତିତ୍ୱବୋଧ, ଅସ୍ମିତାର ଅନ୍ୱେଷଣ ଆଦି ନାନା ଶବ୍ଦରେ ନୂତନ କବିତା ଏକ ଦୁର୍ବୋଧ ରୂପ ପରିଗ୍ରହ କଲା । ଏ ଅବସ୍ଥାରେ ତାହାର ପରିଚୟ ନିଜଗଲି ବା ଆଦୌ ସ୍ଥିର କରିବା ସମ୍ଭବ ହେଲନାହିଁ । ବିଶ୍ୱର ସମସାମୟିକ କାବ୍ୟଧାରା ସହିତ ଏହାର ସାମ୍ୟ ପ୍ରଦର୍ଶନ ପାଇଁ ନାନା ଚେଷ୍ଟା ଚାଲିଛି ଓ ଏ ଧରଣର କବିତା ପତ୍ରପତ୍ରିକାମାନଙ୍କରେ ପ୍ରଚୁର ପ୍ରକାଶ ପାଉଛି । ଗୁଚ୍ଛ କବିତା,

ପ୍ରଗୃର ମୂଳକ କବିତା, ଅକବିତା, ସାମୟିକ କବିତା ଆଦି ନୂତନକବିତାରେ ଆସି ଶ୍ୱାସ ଦେଉଛନ୍ତି ।

ନୂତନ କବିତାର ବୈଶିଷ୍ଟ୍ୟ ସ୍ୱରୂପ ଏଠାରେ ଏତିକି କୁହାଯାଇ ପାରେ ଯେ, କଥାବସ୍ତୁର ବିବିଧତା, ସହାନୁଭୂତିର ଆଗ୍ରହ, ମାନବ ଜୀବନର ସାମଗ୍ରିକ ଚିତ୍ରଣ, କଥା ଓ ଶିଳ୍ପ ଉଭୟରେ ପ୍ରୟୋଗଶୀଳତା ଏବଂ ଉଭୟର ଅଙ୍ଗାଙ୍ଗୀଭାବ ସମ୍ପର୍କ, ଭାଷାର ଚଟୁଳତା ପ୍ରତି ବିଦ୍ରୋହ—ଏହି କାବ୍ୟ-କବିତାରେ ଦେଖିବାକୁ ମିଳେ । ଜନତାନ୍ତ୍ରିକ ଜୀବନ ରଚନାରେ ତାହାର ଆଧାରଭୂତ ସାମାଜିକ ଯାଥାର୍ଥ୍ୟ ତଥା ତହିଁରେ ବ୍ୟକ୍ତିତ୍ୱର ଭୂମିକାକୁ ଚିହ୍ନିବାରେ ନୂତନ କବିତାର ପ୍ରଚେଷ୍ଟା ଲକ୍ଷଣୀୟ ।

ନୂତନ କବିତାର କବିମାନେ ନୂଆ ଉପମା, ନୂଆ ପ୍ରତୀକ ଓ ନୂଆ ରୂପକଳ୍ପ ଅନ୍ୱେଷଣ କରିବାରେ ସମକାଳୀନ ସମାଜକୁ ଗଭୀର ଭାବରେ ବିଶ୍ଳେଷଣ ଓ ଅନୁଧ୍ୟାନ କରିଛନ୍ତି । ମାନବ ଜୀବନ, ନାଗରିକ ଜୀବନ ତଥା ପାରିବାରିକ ଜୀବନରୁ ନୂତନ କବିତା ନୂତନତାର ଅନ୍ୱେଷଣ କରିଛି । ପ୍ରାଚୀନ ସାମଗ୍ରୀକୁ ନୂତନତା ପ୍ରଦାନ କରିବାରେ ନୂତନ ଯୁଗର ଆଧୁନିକତା ପ୍ରକାଶିତ ହୁଏ ଓ ଆଧୁନିକ ଯୁଗର ବର୍ଜନୀୟ ଓ ଗୋପନୀୟ ତଥ୍ୟକୁ ମଧ୍ୟ ପ୍ରକାଶ କରିଦିଏ । ଅଚେତନ ମନ ଜଗତରୁ ବିଷୟ ବସ୍ତୁ ସଂଗ୍ରହ କରି ସମାଜ ସମ୍ମୁଖରେ ଉପସ୍ଥିତ କରାଇବା ଦ୍ୱାରା ସାମାଜିକ ପରିସ୍ଥିତିର ପ୍ରକୃତ ସ୍ୱରୂପ ଉଦ୍‌ଘାଟିତ ହୁଏ । ଅବଚେତନର ଜଗତରୁ ସଂଗୃହୀତ ତତ୍ତ୍ୱକୁ ବୋଧ କରିବା ପ୍ରାୟ କଠିଣ । ତେଣୁ ଏହି ତତ୍ତ୍ୱ ଉପରେ ରଚିତ କବିତା ଦୁରୂହ ହେବାକୁ ବାଧ୍ୟ । କବିତାର ଏହି ଅନୁଭବର ବ୍ୟାଖ୍ୟା କରାଯାଇ ପାରିଲେ ତାହା ଆଉ ଦୁର୍ବୋଧ ହେବ ନାହିଁ ।

ନୂତନ କବିତାର ଶିଳ୍ପ ଓ ବିଷୟବସ୍ତୁ ଉଭୟ ମହତ୍ତ୍ୱପୂର୍ଣ୍ଣ । ଅନେକ ନୂତନ ନାମ ଓ ନୂତନ ଆନ୍ଦୋଳନ ଆକାରରେ ଏହି କାବ୍ୟଧାରାର ବିରୁଦ୍ଧାଚରଣ ମଧ୍ୟ କରା-ଯାଉଛି । ସଂପାଦିତ କାବ୍ୟ ସଂକଳନ, ଲଘୁ ପତ୍ରିକା, ଦେଶୀ ବିଦେଶୀ କବିତା ମାନଙ୍କର ଅନୁବାଦ ମଧ୍ୟ ପ୍ରକାଶ ପାଉଛି ।

ଗତ ପଚିଶ ବର୍ଷର କବିମାନଙ୍କର ସଂପୂର୍ଣ୍ଣ ନାମ ତାଲିକା ପ୍ରସ୍ତୁତ ନକରି ପ୍ରମୁଖ କବିମାନଙ୍କର କାବ୍ୟକୃତି ସମ୍ବନ୍ଧରେ ଏଠାରେ ସୂଚନା ଦିଆଯାଉଛି । ଅଜ୍ଞେୟଙ୍କ 'ପୂର୍ବା ଔର ଅଙ୍ଗନକେ ପାର ଦ୍ୱାର', ଗଜାନନ ମାଧବଙ୍କ 'ଚନ୍ଦ୍ରା ଲେହା', ଭାରତୀଙ୍କର 'ସାତ ଗୀତ ଔର ଅନ୍ଧାଯୁଗ', ସର୍ବେଶ୍ୱର ଦୟାଳଙ୍କର 'କାଠକି ଘଣ୍ଟିଆଁ', 'ବାଆଁସ କା ଫୁଲ', ରଘୁବୀରଙ୍କର 'ସିଢ଼ିୟୋପର ଧୂପମେ', 'ଆତ୍ମହତ୍ୟାକେ ବିରୁଦ୍ଧ', ବିଜୟ ଦେବ ନାରାୟଣଙ୍କ 'ମଛଲି ଘର', ଶ୍ରୀକାନ୍ତ ବର୍ମାଙ୍କ

'ମାୟା ଦର୍ପଣ', ପ୍ରୟାଗ ଶୁକ୍ଳଙ୍କର 'କବିତା ସମ୍ଭବ' ତଥା ରାମଦରଶ ମିଶ୍ରଙ୍କ 'ପକ ଗୟି ହେ ଧୂପ' ଅବଶ୍ୟ ପଠନୀୟ । ଏମାନଙ୍କ ବ୍ୟତୀତ ଅନ୍ୟ ଅନେକ କବି ଅଛନ୍ତି ଯେଉଁମାନଙ୍କର କବିତା ସଂକଳିତ ହୋଇ ନାହିଁ, ଯଦିଓ ସେଗୁଡ଼ିକ ପତ୍ର ପତ୍ରିକାରେ ପ୍ରକାଶିତ ହୋଇଯାଇଛି ।

ଆଲୋଚ୍ୟ ସମୟରେ ହିନ୍ଦୀ ସାହିତ୍ୟରେ ପ୍ରବନ୍ଧ କାବ୍ୟ ରଚନାର ଧାରା ଅବ୍ୟାହତ ରହିଛି । ପ୍ରବନ୍ଧ କାବ୍ୟ ଯଦିଓ ଆଧୁନିକ ରୁଚିର ଅନୁକୂଳ ନୁହେଁ ତଥାପି କେତେକ ମହତ୍ତ୍ୱପୂର୍ଣ୍ଣ କାବ୍ୟ ରଚିତ ହୋଇଅଛି । ମୈଥିଲୀଶରଣ ଗୁପ୍ତଙ୍କର 'ଜୟ ଭାରତ' ଏବଂ 'ବିଷ୍ଣୁପ୍ରିୟା', ଦିନକରଙ୍କର 'ଉର୍ବଶୀ', ସୁମିତ୍ରାନନ୍ଦନ ପନ୍ତଙ୍କର 'ଲୋକାୟତନ', ଧର୍ମବୀର ଭାରତୀଙ୍କର 'କନୁପ୍ରିୟା', ଠାକୁର ପ୍ରସାଦ ସିଂଙ୍କର 'ମହାମାନବ', ନରେନ୍ଦ୍ର ଶର୍ମାଙ୍କ 'ଦ୍ରୌପଦୀ' ଏବଂ 'ଉତ୍ତରଜୟ', ରାମକୁମାର ବର୍ମାଙ୍କର 'ଉତ୍ତରାୟଣ' ଇତ୍ୟାଦି । ଏମାନଙ୍କ ମଧ୍ୟରୁ 'ଉର୍ବଶୀ' ଓ 'କନୁପ୍ରିୟା' ପାଠକମାନଙ୍କର ଦୃଷ୍ଟି ଅଧିକ ଆକର୍ଷଣ କରନ୍ତି । ଅତୀତକୁ ବର୍ତ୍ତମାନ ରୂପରେ ଚିତ୍ରିତ କରିବାରେ ଏ ସମସ୍ତ ପ୍ରବନ୍ଧ କାବ୍ୟ ସୃଷ୍ଟି ହୋଇଛି ।

**ସମାଲୋଚନା :**

ସ୍ୱାଧୀନତା ପରବର୍ତ୍ତୀ ହିନ୍ଦୀ ସମାଲୋଚନାରେ ପ୍ରଗତିବାଦର ସପକ୍ଷ ଓ ବିପକ୍ଷରେ ଗଭୀର ଆଲୋଚନାମାନ ପ୍ରକାଶ ପାଇଥିଲା । ଆଚାର୍ଯ୍ୟ ହଜାରୀପ୍ରସାଦ ଦ୍ୱିବେଦୀଙ୍କର ଆବିର୍ଭାବରେ ହିନ୍ଦୀ ସମାଲୋଚନା କ୍ଷେତ୍ରରେ ମାନବୀୟ ମୂଲ୍ୟବୋଧର ପ୍ରୟୋଗ ଦେଖାଦେଲା । ତାଙ୍କର ମୁଖ୍ୟ ଆଲୋଚନାତ୍ମକ ଗ୍ରନ୍ଥଗୁଡ଼ିକ ହେଲା—ସୁର ସାହିତ୍ୟ, କବୀର ଓ ହିନ୍ଦୀ ସାହିତ୍ୟ କୀ ଭୂମିକା । ମାତ୍ର ସାହିତ୍ୟଠାରୁ ସେ ସଂସ୍କୃତିର ସମୀକ୍ଷକ ରୂପେ ବିଶେଷ ପରିଚିତ । ରବୀନ୍ଦ୍ରନାଥଙ୍କ ସୌନ୍ଦର୍ଯ୍ୟବୋଧ ଓ ଜୀବନ-ଦର୍ଶନକୁ ପୃଷ୍ଠଭୂମିରେ ରଖି ଦ୍ୱିବେଦୀ ଇତିହାସ ଓ ମାନବ-ସଂସ୍କୃତିର ବିରାଟ ଫଳକ ଉପରେ ହିନ୍ଦୀ ସାହିତ୍ୟର ବିଚାର ଆଲୋଚନା କଲେ । ରୀତିବାଦୀ ଆଲୋଚକମାନଙ୍କଠାରୁ ସେ ଭିନ୍ନ ପ୍ରତୀତ ହୁଅନ୍ତି ।

ନନ୍ଦଦୁଲାରେ ବାଜପେୟୀ ସ୍ୱାଧୀନତା ପୂର୍ବ ଓ ପର ଆଲୋଚନା କ୍ଷେତ୍ରରେ ଜଣେ ତେଜସ୍ୱୀ ଆଲୋଚକ । ସ୍ୱାଧୀନୋତ୍ତର ନବୀନ କାବ୍ୟବୋଧର ସେ ଘୋର ବିରୋଧୀ ଥିଲେ । ତା'ର କାରଣ ସେ ଏକ ବିଶିଷ୍ଟ ସାହିତ୍ୟିକ ଅଭିରୁଚି ପୋଷଣ କରୁଥିଲେ । ନବୀନ କାବ୍ୟଧାରାର ପ୍ରମୁଖ କୃତିଗୁଡ଼ିକର ଆଲୋଚନା କରି ସେ ଏହାର ଦୋଷତ୍ରୁଟି ପ୍ରଦର୍ଶନ କଲେ । ସେ ମୁଖ୍ୟତଃ କବିତାର ଆଲୋଚକ ଥିଲେ ।

ଡକ୍ଟର ନଗେନ୍ଦ୍ରଙ୍କ ଆଲୋଚନାରେ ଗଭୀର ଶାସ୍ତ୍ରାଲୋଚନା ଓ ଚିନ୍ତନ-ମନନର ପରିଚୟ ମିଳେ । ତାଙ୍କର ଆଲୋଚନା ପଦ୍ଧତି ସୁନିୟୋଜିତ ଓ

ସୁକ୍ଳସିଦ୍ଧ । ଭାରତୀୟ ସାହିତ୍ୟ ଶାସ୍ତ୍ରର ବିଭିନ୍ନ ସିଦ୍ଧାନ୍ତର ବ୍ୟାଖ୍ୟା କରି ସେ ପାଶ୍ଚାତ୍ୟ କାବ୍ୟ-ସିଦ୍ଧାନ୍ତର ଆଲୋକରେ ସେଗୁଡ଼ିକୁ ପରୀକ୍ଷା କରିଛନ୍ତି । ରସକୁ କାବ୍ୟମୂଲ୍ୟ ରୂପରେ ସ୍ୱୀକାର କରିବାରେ ତାଙ୍କର ମହତ୍ତ୍ୱ ନିହିତ । ରୀତି, ବକ୍ରୋକ୍ତି, ଧ୍ୱନି ଆଦି ସିଦ୍ଧାନ୍ତର ଗଭୀର ଅଧ୍ୟୟନ କରି ସେ କାବ୍ୟଶାସ୍ତ୍ରର ଜିଜ୍ଞାସୁମାନଙ୍କ ପାଇଁ ପ୍ରାମାଣିକ ଗ୍ରନ୍ଥ ରଚନା କରିଛନ୍ତି । ସେ କେବଳ ସିଦ୍ଧାନ୍ତର ବ୍ୟାଖ୍ୟାନ କରି ନାହାନ୍ତି । 'କାମାୟନୀକେ ଅଧ୍ୟୟନକୀ ସମସ୍ୟାଏଁ' ଗ୍ରନ୍ଥରେ ତାଙ୍କର ସମୀକ୍ଷା-ଦୃଷ୍ଟିର ବ୍ୟାବହାରିକ ପ୍ରୟୋଗ ଦେଖିବାକୁ ମିଳେ । 'କାବ୍ୟକେ ବିମ୍ବ' ଗ୍ରନ୍ଥରେ ବିମ୍ବର ସ୍ୱରୂପ, ଏହାର ରଚନାତ୍ମକ ଉପକରଣ, ରଚନା-ପ୍ରକ୍ରିୟା, କାବ୍ୟରେ ଏହାର ମହତ୍ତ୍ୱ ଆଦିର ମୂଲ୍ୟାଙ୍କନ ଶାସ୍ତ୍ରାନୁମୋଦିତ ପ୍ରଣାଳୀରେ କରିଛନ୍ତି । ସେହିପରି ତାଙ୍କର ଅନ୍ୟ ଏକ ସଫଳ ଆଲୋଚନା ଗ୍ରନ୍ଥ ହେଉଛି—'ନୟୀ ସମୀକ୍ଷା ଔର ନୟେ ସନ୍ଦର୍ଭ ।' ଏହି ଗ୍ରନ୍ଥରେ ସେ ନୂତନ ମୂଲ୍ୟମାନ ଓ ସମୀକ୍ଷା-ପ୍ରଣାଳୀର ନିରୂପଣ ଓ ମୂଲ୍ୟାଙ୍କନ କରିଛନ୍ତି । ରସ ସିଦ୍ଧାନ୍ତକୁ ଭିତ୍ତି କରି ତାଙ୍କର ସମସ୍ତ ଆଲୋଚନା ଗତି କରିଛି । ନୂତନ ଲେଖକମାନଙ୍କ ସମ୍ବନ୍ଧରେ ଡ଼ାଃ ନଗେନ୍ଦ୍ରଙ୍କର ନୀରବତା ଲକ୍ଷ୍ୟ କରାଯାଏ । ସେ ସାଧାରଣତଃ ପ୍ରତିଷ୍ଠିତ କବି ଓ କାବ୍ୟର ଆଲୋଚନାରେ ପ୍ରବୃତ୍ତ ହୋଇଛନ୍ତି । ସ୍ଥାୟିତ୍ୱ ପ୍ରାପ୍ତ କାବ୍ୟମୂଲ୍ୟର ମାନଦଣ୍ଡରେ ସେ ଦିନକରଙ୍କ 'ଉର୍ବଶୀ'ର ବିଚାର କରିଛନ୍ତି ।

ଡାଃ ରାମବିଲାସ ଶର୍ମା ମାର୍କସ୍‌ବାଦୀ ସମୀକ୍ଷା-ପଦ୍ଧତିର ପ୍ରୟୋଗରେ ଅଧିକ ଆଗ୍ରହୀ । ପ୍ରେମଚନ୍ଦ, ଭାରତେନ୍ଦୁ, ନିରାଲା ଓ ତୁଳସୀଦାସ ପ୍ରଭୃତିଙ୍କ ସମ୍ବନ୍ଧରେ ତାଙ୍କର ଆଲୋଚନା ଗ୍ରନ୍ଥ ପ୍ରକାଶ ପାଇଛି । 'ନିରାଲା'ଙ୍କ କାବ୍ୟର ସେ ଜଣେ ମର୍ମଜ୍ଞ ସମୀକ୍ଷକ । ତାଙ୍କର ଜୀବନ, ଜୀବନ-ଦର୍ଶନ ଓ ସାହିତ୍ୟର ପରିଚୟ ଦେଉଥିବା ପତ୍ରଗୁଡ଼ିକର ସହାୟତାରେ ଉକ୍ତ ଆଲୋଚକ 'ନିରାଲା ଔର ଉନକା ସାହିତ୍ୟ'ର ପ୍ରଥମ ଖଣ୍ଡ ପ୍ରକାଶ କରିଛନ୍ତି । ଏଥିରୁ କବି ନିରାଲାଙ୍କୁ ସହଜରେ ଚିହ୍ନି ହୁଏ । ନବୀନ ଲେଖକମାନଙ୍କ ସମ୍ବନ୍ଧରେ ମଧ୍ୟ ସେ ବହୁ ପ୍ରବନ୍ଧ ଲେଖିଛନ୍ତି । ମାର୍କସ୍‌ବାଦୀ ଧାରଣାରେ ସେ ଗଭୀର ବିଶ୍ୱାସୀ ।

ଶ୍ରୀ ଶିବଦାନ ସିଂହ ଚୌହାନଙ୍କର 'ହିନ୍ଦୀ ସାହିତ୍ୟକେ ଅସ୍‌ସୀ ବର୍ଷ' ଓ 'ଆଲୋଚନାକେ ମାନ' ପ୍ରଭୃତି ପୁସ୍ତକ ସମାଲୋଚନା କ୍ଷେତ୍ରରେ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ଗ୍ରହଣ କରିଛି । ଶ୍ରୀ ନାମବର ସିଂହ କବିତା, କଥା-ସାହିତ୍ୟ ଓ ନାଟ୍ୟ-ସାହିତ୍ୟ ସମ୍ବନ୍ଧରେ ଆଲୋଚନାମାନ ପ୍ରକାଶ କରିଛନ୍ତି । ତାଙ୍କ ରଚିତ 'ଛାୟାବାଦ', 'ଇତିହାସ ଓ ଆଲୋଚନା' ତଥା 'କବିତାକେ ନୟେ ପ୍ରତିମାନ' ପ୍ରଭୃତି ଗ୍ରନ୍ଥ ସମକାଳୀନ ଲେଖକମାନଙ୍କୁ ପ୍ରଭାବିତ କରିଥିଲା । ତାଙ୍କ ସମ୍ପାଦିତ 'ଆଲୋଚନା'

ପତ୍ରିକା ଜରିଆରେ ସେ ସମକାଳୀନ ସାହିତ୍ୟ-ଚିନ୍ତନକୁ ସମୁଚିତ ସରଣୀ ପ୍ରଦାନ କରିଥିଲେ ।

ପ୍ରଗତିବାଦୀ ଆଲୋଚକ ରୂପେ ପ୍ରକାଶ ଚନ୍ଦ୍ର ଗୁପ୍ତଙ୍କର ଦାନ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ମାତ୍ର ସେ ମୁଖ୍ୟତଃ ପୁସ୍ତକ-ସମୀକ୍ଷା କାର୍ଯ୍ୟରେ ଅଧିକ କୃତିତ୍ୱ ଦେଖାଇଛନ୍ତି । 'ହିନ୍ଦୀ ସାହିତ୍ୟକୀ ଜନବାଦୀ ପରଂପରା' ଓ 'ସାହିତ୍ୟ ଧାରା' ଆଦି ତାଙ୍କର ଆଲୋଚନା ଗ୍ରନ୍ଥ ପ୍ରକାଶ ପାଇଛି । ଏହି ସମୟର ଆଉଜଣେ ପ୍ରଗତିଶୀଳ ସମାଲୋଚକ ହେଲେ ଅମୃତରାୟ । ତାଙ୍କର ପ୍ରକାଶିତ ଗ୍ରନ୍ଥ 'ନୟୀ ସମୀକ୍ଷା', 'ସହିଚିନ୍ତନ' ଓ 'ଆଧୁନିକ ଭାବ-ବୋଧକୀ ନୟୀ ସଂଜ୍ଞା' ପ୍ରଭୃତିରେ ସେ ସମାଜବାଦୀ ଦୃଷ୍ଟିକୋଣରୁ ଆଲୋଚନା କରିଛନ୍ତି ।

'ମୁକ୍ତିବୋଧ' ସାହିତ୍ୟରେ ଦର୍ଶନର ଅନୁସଂଧାନ କରିଛନ୍ତି । 'ଏକ ସାହିତ୍ୟିକକୀ ଡାୟେରୀ' ଓ 'ନୟେ ସାହିତ୍ୟକା ସୌନ୍ଦର୍ଯ୍ୟଶାସ୍ତ୍ର' ଗ୍ରନ୍ଥ ଦ୍ୱୟରୁ ତାଙ୍କର ଆଲୋଚନାଗତ ଦୃଷ୍ଟିକୋଣ ଦେଖିବାକୁ ମିଳେ ।

କଥା-ସାହିତ୍ୟ ଓ ନାଟ୍ୟ ସାହିତ୍ୟର ଆଲୋଚକଭାବେ ଶ୍ରୀ ନେମିଚନ୍ଦ୍ର ଜୈନଙ୍କର ପ୍ରକାଶିତ 'ଅଧୂରେ ସାକ୍ଷାତ୍କାର' ଓ 'ରଂଗ-ଦର୍ଶନ' ଗ୍ରନ୍ଥଦ୍ୱୟ ନିତାନ୍ତ ମହତ୍ତ୍ୱପୂର୍ଣ୍ଣ । ପ୍ରଥମୋକ୍ତ ଗ୍ରନ୍ଥ ହିନ୍ଦୀ ଉପନ୍ୟାସର ମର୍ମ ବୁଝିବାରେ ସାହାଯ୍ୟ କରେ ଓ ଶେଷୋକ୍ତ ଗ୍ରନ୍ଥ ସମକାଳୀନ ନାଟ୍ୟ-ପ୍ରୟୋଗର ନିପୁଣ ବିଶ୍ଳେଷଣ ପ୍ରଦାନ କରେ ।

ସାହିତ୍ୟିକ ହେଲେ ମଧ୍ୟ 'ଅଜ୍ଞେୟ' ଆଲୋଚନା କ୍ଷେତ୍ରରେ ମଧ୍ୟ ଅବତୀର୍ଣ୍ଣ ହୋଇଛନ୍ତି । 'ପ୍ରତୀକ' ପତ୍ରିକାର ସଂପାଦକୀୟ ଲେଖା ମାନଙ୍କରେ ତାଙ୍କର ଆଲୋଚନାମାନ ପ୍ରକାଶ ପାଇଥିଲା । ନିଜ ରଚନାର ବହୁ ସମସ୍ୟା ସମ୍ବନ୍ଧରେ ସେ କ୍ରମାଗତ ଆଲୋଚନା କରି ଚାଲିଥିଲେ । ତାଙ୍କର ସମୀକ୍ଷା ସଂକଳନ ଗୁଡ଼ିକର ନାମ ହେଲା—'ଆତ୍ମନେପଦ', 'ହିନ୍ଦୀ ସାହିତ୍ୟଃ—ଆଧୁନିକ ପରିଦୃଶ୍ୟ', 'ଭବନ୍ତୀ' ଇତ୍ୟାଦି ।

ଲକ୍ଷ୍ମୀକାନ୍ତ ବର୍ମାଙ୍କର 'ନୟୀ କବିତା କେ ପ୍ରତିମାନ' ଓ 'ନୟେ ପ୍ରତିମାନ : ପୁରାନେ ନିକଷ' ନୂତନ କବିତାର ବିଚାର କ୍ଷେତ୍ରରେ ନିଷ୍ଠାପର ପ୍ରୟାସ । ନୂତନ ସାହିତ୍ୟ ପାଇଁ ନୂତନ ସାହିତ୍ୟ ଶାସ୍ତ୍ରର ପ୍ରୟୋଜନକୁ ସେ ଦୃଢ଼ ସ୍ୱରରେ ସ୍ୱୀକାର କରନ୍ତି ।

ଡାଃ ଧର୍ମବୀର ଭାରତୀଙ୍କର ଗ୍ରନ୍ଥ 'ପ୍ରଗତିବାଦ—ଏକ ସମୀକ୍ଷା'ରେ ମାନବ-ସତ୍ୟର ମହତ୍ତ୍ୱ ଉଦ୍‌ଘୋଷିତ ହୋଇଛି ।

ସମକାଲୀନ ସାହିତ୍ୟ-ସମାଲୋଚନା କ୍ଷେତ୍ରରେ ଯେଉଁ ତରୁଣ ଆଲୋଚକ-ମାନେ ଅବତୀର୍ଣ୍ଣ ହେଲେ ସେମାନେ ହେଲେ—ଡାଃ ଶିବପ୍ରସାଦ ସିଂହ, ଅଜିତ କୁମାର, ମଧୁରେଶ, ବିଶ୍ୱନାଥ ତ୍ରିପାଠୀ, ଧନଂଜୟ ବର୍ମା, ରମେଶ କୁନ୍ତଳ ମେଘ ଆଦି । ଏମାନେ ପୂର୍ବଗାମୀ ଆଲୋଚକମାନଙ୍କ ପରି ସାହିତ୍ୟକୁ କୌଣସି ସମାଜ-ଦର୍ଶନ ଦୃଷ୍ଟିରୁ ବିଗ୍ରହ କରିବାକୁ ପ୍ରସ୍ତୁତ ନୁହନ୍ତି ।

ଆଲୋଚନା ସିଦ୍ଧାନ୍ତର ବିକାଶ ନିମନ୍ତେ ଏହି ସମୟରେ ନାନା ଚେଷ୍ଟା ଚାଲିଛି । ଐତିହାସିକ, ସମାଜଶାସ୍ତ୍ରୀୟ, ମନୋବୈଜ୍ଞାନିକ, ମୂଲ୍ୟଗତ, ପୌରାଣିକ, ଶୈଳୀ, ବିଜ୍ଞାନଗତ ନାନା ସମୀକ୍ଷା-ମାର୍ଗର ଆଶ୍ରୟ ନେଇ ରଚନାମାନଙ୍କର ସମୀକ୍ଷା କରାଯାଉଛି ।

ଗବେଷଣାର ଫଳସ୍ୱରୂପ ବହୁ ତାତ୍ତ୍ୱିକ ଓ ସାହିତ୍ୟ ନିରୂପଣ ଗ୍ରନ୍ଥ ପ୍ରକାଶ ପାଇଛି । ପରଶୁରାମ ଚତୁର୍ବେଦୀ, ଚନ୍ଦ୍ରବଲି ପାଣ୍ଡେୟ, ବାସୁଦେବ ଶରଣ ଅଗ୍ରବାଲ ଓ ବିଶ୍ୱନାଥ ପ୍ରସାଦ ମିଶ୍ର ପ୍ରଭୃତି ଗମ୍ଭୀର ଅଧ୍ୟୟନ ଓ ଚିନ୍ତା ପ୍ରସୂତ ଗବେଷଣା ଗ୍ରନ୍ଥମାନ ପ୍ରକାଶ କରିଛନ୍ତି । ଡକ୍ଟର ଅଗ୍ରବାଲ ଇତିହାସ ଓ ସଂସ୍କୃତିର ପୃଷ୍ଠଭୂମିରୁ ମଧ୍ୟକାଳୀନ ସାହିତ୍ୟକୁ ବ୍ୟାଖ୍ୟା କରିଛନ୍ତି । ଆଚାର୍ଯ୍ୟ ମିଶ୍ର ଶୁଦ୍ଧ ରସ-ସାହିତ୍ୟ ଦୃଷ୍ଟିରୁ ମୂଳରଚନାର ବିଗ୍ରହ କରିଛନ୍ତି ।

ସ୍ୱାଧୀନତା ପରେ ଆଲୋଚନା କ୍ଷେତ୍ରରେ ନୂତନ ପରୀକ୍ଷାନିରୀକ୍ଷା, ପୁନ-ର୍ମୂଲ୍ୟାଙ୍କନର ପ୍ରୟାସ ଗମ୍ଭୀରଭାବେ ଉପଲବ୍ଧ ହୁଏ । ଏଥିରୁ ଜୀବନ୍ତତା ଓ ଚିନ୍ତନର ପ୍ରଖରତା ସହିତ ନୂତନ ଦିଗଦର୍ଶନର ସୂଚନା ମିଳେ ।

ଶବ୍ଦକୋଷ ଶେଷ କାବ୍ୟ । ଜୀବକୋଷ ସଙ୍କଳନ କ୍ଷେତ୍ରରେ ଆଧୁନିକ ହିନ୍ଦୀ ସାହିତ୍ୟ ବିଶେଷ ଅଗ୍ରଗତି ଲାଭ କରିପାରିଛି । ବୈଜ୍ଞାନିକ ସାହିତ୍ୟ ମଧ୍ୟ ଆଧୁନିକ ଲେଖକମାନଙ୍କୁ ପ୍ରଭାବିତ କରି ପାରିଛି । ସଂକ୍ଷେପରେ କହିବାକୁ ଗଲେ, ହିନ୍ଦି ଭାଷା ଏବଂ ସାହିତ୍ୟ ଆଧୁନିକ ଜଟିଳ ଜୀବନ ଓ ସମାଜର ଚିନ୍ତନ ଏବଂ ଭାବନାକୁ ପ୍ରତିଫଳିତ କରିବାରେ ସମର୍ଥ ହୋଇପାରିଛି ।

---

# କାଶ୍ମୀରୀ

କାଶ୍ମୀରୀଭାଷାର ପ୍ରାଚୀନ ଏବଂ ପ୍ରଚଳିତ ନାମ ହେଉଛି କାଶୀର। ଏହା ମୁଖ୍ୟତଃ କାଶ୍ମୀର ଉପତ୍ୟକାରେ କଥିତ (ସମ୍ଭବତଃ ଦଶହଜାର ବର୍ଗମାଇଲ ପରିମିତ ଅଞ୍ଚଳ)। ଏହି ଅଞ୍ଚଳରେ ଜାମ୍ମୁ ପ୍ରଦେଶର କିଶ୍ତୱାର ଜିଲ୍ଲା ଅନ୍ତର୍ଭୁକ୍ତ। ଏହି ଜିଲ୍ଲାରେ କାଶ୍ମୀରୀ ଭାଷାରେ କିଶ୍ତୱାରୀ ନାମକ ଏକ ଉପଭାଷା ପ୍ରଚଳିତ। କାଶ୍ମୀରୀ ଭାଷାଭାଷୀ ଲୋକଙ୍କ ସଂଖ୍ୟା ପ୍ରାୟ ଦଶଲକ୍ଷ। ଭାରତବର୍ଷରେ ଇରାନୀୟ ଭାଷା ମଧ୍ୟରେ ଏହା ଉଲ୍ଲେଖଯୋଗ୍ୟ। ପ୍ରାଚୀନ କାଶ୍ମୀରୀ ଭାଷାର ନିଦର୍ଶନ ହେଉଛି ଶୈବତନ୍ତ୍ରାଗ୍ରନ୍ଥ୍ୟ ଲଲ୍ଲାଙ୍କର କଡପଦ୍ୟ କବିତା। ସେ ଥିଲେ ଚତୁର୍ଦ୍ଦଶ ଶତାବ୍ଦୀର କବି। କାଶ୍ମୀରୀ ନାମ ଉଲ୍ଲେଖଥିବା ପ୍ରଥମ ରଚନା ହେଉଛି ତ୍ରୟୋଦଶ ଶତାବ୍ଦୀର ଅମୀର ଖୁସ୍ରୁଙ୍କର ନୁସୀପୀର। ଖୁସ୍ରୁ କାଶ୍ମୀରୀ ଭାଷା ସହିତ ସିନ୍ଧି, ଲାହୋରୀ ଏବଂ ତଲିଙ୍ଗୀ ଭାଷାର ନାମୋଲ୍ଲେଖ ମଧ୍ୟ କରିଥିଲେ। ପଞ୍ଚଦଶ ଶତାବ୍ଦୀ ପର୍ଯ୍ୟନ୍ତ ଏହି ଭାଷାର ଲିପି ଥିଲା ଶାରଦା। ପରବର୍ତ୍ତୀକାଳରେ ପାର୍ଶୀଭାଷା କୋର୍ଟ କଚେରି ଭାଷାରୂପେ ପ୍ରଚଳିତ ହେବା ଫଳରେ ପାର୍ଶୀଲିପି ଶାରଦାଲିପି କାଳରେ ପାର୍ଶୀଲିପି ବ୍ୟବହୃତ ହେଲା। ଶିକ୍ଷିତଶ୍ରେଣୀ ମଧ୍ୟରେ ସଂସ୍କୃତ ଖୁବ୍ କମ୍ ପ୍ରଚଳିତ। ଦେବନାଗରୀ ମଧ୍ୟ କ୍ୱଚିତ୍ ଲୋକଙ୍କୁ ଜଣା। ସାଧାରଣ ପ୍ରଚଳିତ ଲିପି ହେଉଛି ନାସ୍ତାଲିକ୍ ଖାତ୍ ଏବଂ ଏହା ପାର୍ଶୀ ଆରବୀ ଦ୍ୱାରା ପ୍ରଭାବିତ। କାଶ୍ମୀରୀ ଭାଷାର ପ୍ରାଚୀନତମ ନିଦର୍ଶନ ତ୍ରୟୋଦଶ ଶତାବ୍ଦୀର ଶୀକଣ୍ଠଙ୍କ ଲିଖିତ 'ମହାନ୍ୟାୟ ପ୍ରକାଶ'ରେ ପରିଦୃଷ୍ଟ। ସେ ସର୍ବଜନବୋଧ 'ସର୍ବଗୋହେର ଦେଶଭାଷା'ରେ ତନ୍ତ୍ର ପୁସ୍ତକ ରଚନା କରିଥିଲେ। କାଶ୍ମୀରୀ ଏହିପରି ସର୍ବପ୍ରଥମେ ଉଦାରଚେତା ଗ୍ରାମ୍ୟ ସନ୍ନ୍ୟାସୀ ଓ ଯୋଗୀମାନଙ୍କ ଦ୍ୱାରା ରଚନାରେ ବ୍ୟବହୃତ ହୋଇଥିଲା। ଚତୁର୍ଦ୍ଦଶ ଶତାବ୍ଦୀର ନାରୀକବି ଲଲ୍ଲା ଦେବ ଉଭୟ ହିନ୍ଦୁ ଏବଂ ମୁସଲମାନ ସଂପ୍ରଦାୟଦ୍ୱାରା ଆଦୃତ ହୋଇଥିଲେ। ତାଙ୍କର ରହସ୍ୟବାଦୀ ଆଧ୍ୟାତ୍ମିକ ରଚନା 'ଲଲ ବାଖାନ' ନାମରେ ପରିଚିତ। ଏହି ଭାଷା ସହଜିଆ ସଂପ୍ରଦାୟର ବହୁ ସିଦ୍ଧଙ୍କ ଦ୍ୱାରା ଗୃହୀତ ହୋଇଥିଲା। ଗ୍ରୀୟରସନ୍ଙ୍କ ମତରେ ଏହି ଭାଷା ଉପରେ ଦାର୍ଦ୍ଦିକ ପ୍ରଭାବ ପଡ଼ିଥିଲା ଏବଂ ଏହା ଅଣଭାରତୀୟ ଭାଷା ବୋଲି ସେ ସୂଚନା ଦେଇଥିଲେ। ମାତ୍ର ତାଙ୍କର ଏହି ସୂଚନା ଆଦୌ ଅଭ୍ରାନ୍ତ ନୁହେ। ଏକାଦଶ ଶତାବ୍ଦୀର କ୍ଷେମେନ୍ଦ୍ର ଏବଂ ଦ୍ୱାଦଶ ଶତାବ୍ଦୀର ବିଲ୍ହଣ ପ୍ରସିଦ୍ଧ ସଂସ୍କୃତ ଆଳଂକାରିକ ଥିଲେ। ସେମାନଙ୍କର ମତାନୁସାରେ ଏକପ୍ରକାର ଅପଭ୍ରଂଶ ସେହି

ଅଞ୍ଚଳରେ ପ୍ରାଚୀନକାଳରେ ପ୍ରଚଳିତ ଥିଲା । ଏହିସବୁ ଭିତ୍ତିଭୂମିରେ ବିଗ୍ଭର କଲେ କାଶ୍ମୀରୀ ଭାଷା ଓ ସାହିତ୍ୟର ନିମ୍ନମତେ କାଳ ନିରୂପଣ କରାଯାଇପାରେ ।

ଆଦିକାଳ (୧୨୦୦ ଖ୍ରୀ:ଅ: ରୁ ୧୪୦୦ ଖ୍ରୀ: ଅ:)—ଏହା ସନ୍ଥ ଯୋଗୀ-କବିମାନଙ୍କ ରଚନାଦ୍ୱାରା ଚହ୍ନିତ; ଯଥା—ଶିତିକାନ୍ତ (ତ୍ରୟୋଦଶ ଶତାବ୍ଦୀ); ଲଲ ଦେ'ଦ୍ (ପ୍ରାକ୍ ଚତୁର୍ଦ୍ଦଶ ଶତାବ୍ଦୀ), ନନ୍ଦଋଷି (ପରବର୍ତ୍ତୀ ଚତୁର୍ଦ୍ଦଶ ଶତାବ୍ଦୀ) ।

ମଧ୍ୟକାଳ (୧୪୦୦ ଖ୍ରୀ: ଅ:ରୁ ୧୫୫୦ ଖ୍ରୀ:ଅ:)—ବର୍ଣ୍ଣନାତ୍ମକ ରଚନା ଦ୍ୱାରା ଚହ୍ନିତ । ସୁଲତାନ୍ ଜଏନୁଲ୍ ଆବିଦିନ୍ (୧୪୫୦ ଖ୍ରୀ: ଅ:) ସଂସ୍କୃତ ରଚନା ପାର୍ଶୀ ଭାଷାରେ ଅନୁବାଦ କରିବା ସଙ୍ଗେ ସଙ୍ଗେ କାଶ୍ମୀରୀ ଭାଷା ଓ ସାହିତ୍ୟର ପୃଷ୍ଠପୋଷକତା କରିଥିଲେ । ଏହି ଯୁଗରେ ଐତିହାସିକ, ପୌରାଣିକ ଏବଂ ବର୍ଣ୍ଣନାତ୍ମକ ପଦ୍ୟାତ୍ମକ କୃତିସମୂହ ରଚିତ ହୋଇଥିଲା । ଏହି ଯୁଗର ଦୁଇଗୋଟି ରଚନା ପରିଦୃଷ୍ଟ । ତାହା ହେଉଛି—ଭଟ୍ଟାବତାରଙ୍କ ଲିଖିତ 'ବାଣାସୁର ବଧ' ଏବଂ ଗଣକ ପ୍ରକାଶଙ୍କ ଲିଖିତ 'ସୁଖ-ଦୁଃଖ ଚରିତ' ।

୧୫୫୦ ଖ୍ରୀଷ୍ଟାବ୍ଦରୁ ୧୭୫୦ ଖ୍ରୀଷ୍ଟାବ୍ଦ ବ୍ୟାପ୍ତ ଯୁଗ କାଶ୍ମୀରୀ ସାହିତ୍ୟରେ ଗୀତିକବିତାର ପ୍ରସାର ଘଟିଥିଲା । ଏହି ଯୁଗର ଗୀତିକବିତାରେ ଜୀବନର ଆନନ୍ଦାନୁଭୂତି ସହିତ ବେଦନାବୋଧ ଲିଖିତ ଭାଷାରେ ପ୍ରକାଶିତ ହୋଇଥିଲା । କବି ନବ ଖାତୁନ୍ (୧୫୭୦ ଖ୍ରୀ: ଅ:), ଅରଣୀ ମଲ (ଖ୍ରୀ: ଅ: ୧୭୫୦) ଙ୍କ ଅଜସ୍ର ଗୀତିକବିତାରେ କାଶ୍ମୀରୀ ସାହିତ୍ୟ ପ୍ଲାବିତ ହୋଇପାରିଥିଲା । ହବିବୁଲ୍ଲା ନୌସେରୀ ସୁଫି ଚିନ୍ତାଧାରା ପରିବେଷଣ କରିଥିଲେ ଏବଂ ସାହିବ କାଉଲ (ଖ୍ରୀ: ୧୬୫୦) ତାଙ୍କର 'କୃଷ୍ଣଲୀଳା' ଗ୍ରାମୀଣ ଶୈଳୀରେ ରଚନା କରିଥିଲେ ।

୧୭୫୦ ଖ୍ରୀ: ଅ: ରୁ ୧୯୫୦ ଖ୍ରୀ: ଅ: ପର୍ଯ୍ୟନ୍ତ କାଶ୍ମୀରୀ ସାହିତ୍ୟ ବ୍ୟଞ୍ଜନାତ୍ମକ ଆଧ୍ୟାତ୍ମିକ ରଚନାଦ୍ୱାରା ସମୃଦ୍ଧ ହେଲା । ଏତାଦୃଶ୍ୟ ରଚନା ପାର୍ଶୀ ଭାଷାରୁ କାଶ୍ମୀରୀ ଭାଷାରେ ଅନୂଦିତ ହେଲା । ଏହିସବୁ କୃତି ଜନସମାଜଦ୍ୱାରା ଆଦୃତ ହେଉଥିଲା । ମେହମୁଦ୍ ଗମୀଙ୍କର ୟୁସୁଫ୍ ଜୁଲେଖା, ସୀରୀନ୍ ଖୁସ୍ରୁ, ଲଇଲା ମଜନୁନ୍, ସୈଜୁଦ୍ ଦିନ୍ଙ୍କ ଲିଖିତ ଓ୍ୟାମିଙ୍ଗ ଆଜରା, ମଗବୁଲ୍ଙ୍କ ଗୁଲଜର, ଡ୍ୟାଲ୍ଲଲ ମକ୍କୋଙ୍କ ହିମଲ୍ ହେଉଛି ଆଧ୍ୟାତ୍ମିକ କୃତି ଏବଂ ଏହିସବୁ ରଚନାରେ ମାନବ ହୃଦୟର ଆଧ୍ୟାତ୍ମିକ ଆବେଗ ହିଁ ପ୍ରତିଫଳିତ । ପୁନଶ୍ଚ ରାଧାକୃଷ୍ଣ, ଶିବପାର୍ବତୀ, ନଳଦମୟନ୍ତୀଙ୍କ କଥାବସ୍ତୁକୁ ଭିତ୍ତିକରି କବି ପରମାନନ୍ଦ କତିପୟ ଗ୍ରନ୍ଥ ରଚନା କରିଥିଲେ । ଏହି ଯୁଗରେ ଅବ୍ଦୁଲ୍ ଡ୍ୟାହାବପାରେ ଫର୍ଦୋଶୀଙ୍କ ରଚନା କାଶ୍ମୀରରେ ଅନୁବାଦ କରିଥିଲେ । ମଗ୍ବୁଲ୍ କାଶ୍ମୀରର

କୃଷକସମାଜକୁ କେନ୍ଦ୍ର କରି ଏକ ବ୍ୟଙ୍ଗାତ୍ମକ ରଚନା ପ୍ରକାଶ କରିଥିଲେ । କବି ରସୁଲମୀର୍ ପାର୍ଶୀ ଗୀତିକବିତା ଶୈଳୀରେ କାଶ୍ମୀରୀ ଗୀତିକବିତା ରଚନା କରିଥିଲେ । ଊନବିଂଶ ଶତାବ୍ଦୀର ଶେଷ ପାଦରେ ଏହି ଦୁଇଜଣ କବି କାଶ୍ମୀର ସାହିତ୍ୟରେ ଆଧୁନିକ ପର୍ବର ପୂର୍ବସୂରି ଥିଲେ । ଏହି ଯୁଗରେ ଗଦ୍ୟସାହିତ୍ୟର ବିକାଶ ଘଟି ନଥିଲା ।

**୧୯୦୦ ଖ୍ରୀ: ଅ: ପରବର୍ତ୍ତୀ ଯୁଗ—ଆଧୁନିକ ଜାଗରଣ :**

ଆଧୁନିକତାର ସ୍ରଷ୍ଟା ମଜହୁର୍ (୧୮୮୫-୧୯୫୨) ପ୍ରାଚୀନ ଭିତ୍ତି ଉପରେ ନୂତନ କାବ୍ୟକବିତା ରଚନା କରିଥିଲେ । ତାଙ୍କର ରଚନା ନବଜାଗରଣର ବାର୍ତ୍ତା ବହନ କରିଥିଲା । କବି ଆଜାଦ (୧୯୦୫-୧୯୪୮) ତାଙ୍କର ବିଦ୍ରୋହାତ୍ମକ ସ୍ୱର ଉତ୍ତୋଳନ କରି କବିତା ମାଧ୍ୟମରେ ଶ୍ରେଣୀହୀନ ସମାଜ ଗଠନ ପାଇଁ ଆହ୍ୱାନ ଦେଲେ । କାଶ୍ମୀରୀ ସାହିତ୍ୟରେ ସର୍ବପ୍ରଥମେ ସାହିତ୍ୟ ଏକାଡ଼େମୀ ପୁରସ୍କାର ଅଧିକାର କରିଥିବା କବି ହେଉଛନ୍ତି ମାଷ୍ଟର ଜିନ୍ଦେ କାଉଲ୍; ଯେ କି ଆବେଗଧର୍ମୀ ରହସ୍ୟବାଦୀ ଗୀତିକବିତାସମୂହ ରଚନା କରିଥିଲେ । ଅନ୍ୟତମ କବି ହେଉଛନ୍ତି ଦୀନନାଥ ନାଦିମ୍; ଯେ କି ପ୍ରଗତିବାଦୀ ଶିଳ୍ପୀରୂପେ ପରିଚିତ । ପାକିସ୍ଥାନ ଆକ୍ରମଣ ବିରୋଧରେ ସେ ଏକ କାବ୍ୟନାଟିକା ରଚନା କରି ସଫଳତା ଅର୍ଜନ କରିଥିଲେ । ୧୯୪୭ ମସିହାପରେ ଉଭୟ ହିନ୍ଦୁ ମୁସଲମାନ ସଂପ୍ରଦାୟର କବିଗଣ ବୈଦେଶିକ ଆକ୍ରମଣ ବିରୋଧରେ ସମସ୍ୱରରେ ପ୍ରତିବାଦ ଜଣାଇଲେ ।

ଲଲ୍ଲା ଚତୁର୍ଦ୍ଦଶ ଶତାବ୍ଦୀରେ ଜୀବିତ ଥିଲେ ଏବଂ ସେହି ଶତାବ୍ଦୀରେ କାଶ୍ମୀରରେ ମୁସଲମାନ ଶାସନ ଆରମ୍ଭ ହୋଇଥିଲା ଏବଂ ସେତେବେଳେ ପ୍ରାଚୀନ ସଂସ୍କୃତ ପରଂପରାର ଅବନତି ସହିତ ହିନ୍ଦୁ ସମାଜରେ ଅଧୋଗତି ଦେଖାଦେଇଥିଲା । ପ୍ରାଚୀନ ସାହିତ୍ୟ ପରଂପରାର ପ୍ରଭାବ ସମାଜରୁ ହ୍ରାସ ପାଇଥିଲା; ଅଥଚ ନୂତନ ପରଂପରା ପ୍ରତିଷ୍ଠିତ ହୋଇ ନ ଥିଲା । ସେତେବେଳେ କାବ୍ୟ-କବିତା ସାଧାରଣ ଜନତାର ଭାଷାରେ ଲିଖିତ ହେଲା । ତଥାପି ଲଲ୍ଲା ଦେଦ (Lal Ded) ପ୍ରାଚୀନଠାରୁ ସଂପୂର୍ଣ୍ଣ ସ୍ୱତନ୍ତ୍ର ହୋଇ ନ ଥିଲେ । ସେ ଜନସାଧାରଣଙ୍କ ଭାଷା ଓ ଶୈଳୀକୁ ଭିତ୍ତି କରି ନିଜ କାବ୍ୟକବିତାର ଶୈଳୀ ପ୍ରବର୍ତ୍ତନ କରିପାରିଥିଲେ । ସେ ଏକ ଅଭୁତ ଦର୍ଶନ, ଚିନ୍ତାଧାରା ପ୍ରବର୍ତ୍ତନ କରିପାରିଥିଲେ । ତାହା ହେଉଛି କାଶ୍ମୀରର ମୌଳିକ ଶୈବ ଉପାସନା ସମ୍ବନ୍ଧୀୟ ଦର୍ଶନଧାରା । ଲଲ୍ଲାଙ୍କୁ ସେଥିପାଇଁ ରହସ୍ୟବାଦୀ ଦାର୍ଶନିକ କବି ବୋଲି ବର୍ଣ୍ଣନା କରାଯାଇଥାଏ । ବ୍ୟକ୍ତିଗତ ଉପଲବ୍ଧି, ଆବେଗାନୁଭୂତି ଏବଂ ଭାଷାର ପ୍ରଖରତା ସର୍ବୋପରି ଗଭୀର ବିଶ୍ୱାସ ତାଙ୍କୁ କାଶ୍ମୀରୀ ସାହିତ୍ୟରେ ଏକ ଉଚ୍ଚକୋଟୀର ଶିଳ୍ପୀର ଗୌରବ ପ୍ରଦାନ କରିଥିଲା । ତାଙ୍କ କବିତାର ଭାବ-ବୈଚିତ୍ର୍ୟ ଉଲ୍ଲେଖଯୋଗ୍ୟ ।

"ପ୍ରଥମ୍ ଶିଳାରେ ନିର୍ମିତ
ମନ୍ଦିର ଶିଳାରେ ନିର୍ମିତ
ଉଭୟର ଉପାଦାନ ସମାନ ସିନା
ହେ ମୂଢ଼ ପୂଜକ, କି ପୂଜା କରୁଛ ତୁମେ,
ପ୍ରକୃତ ବିଷୟ ପରେ ତୁମ ମନପ୍ରାଣ ଯୁକ୍ତ କର ।"

ସିତିକଣ୍ଠଙ୍କର 'ମହାନ୍ୟାୟ ପ୍ରକାଶ' ତ୍ରୟୋଦଶ କିମ୍ବା ଚତୁର୍ଦ୍ଦଶ ଶତାବ୍ଦୀର ରଚନା । ସାହିତ୍ୟିକ ଏବଂ ଶୈଳିକ ମୂଲ୍ୟ ଅପେକ୍ଷା ଏହାର ଭାଷାତାତ୍ତ୍ୱିକ ମୂଲ୍ୟ ଅଧିକ । ଏହା ଦାର୍ଶନିକ ଚିନ୍ତାରେ ମଧ୍ୟ ପୂର୍ଣ୍ଣ ।

ପରବର୍ତ୍ତୀକାଳରେ ରହସ୍ୟବାଦୀ କବିତା ସମେତ ଏକ ଜାତୀୟପ୍ରେମ କବିତାର ପ୍ରବାହ କାଶ୍ମୀରୀ ସାହିତ୍ୟରେ ପ୍ରବାହିତ ହେଲା । ଏହା ପ୍ରେମ-ଭକ୍ତିକ ରଚନା; ଯେଉଁଥିରେ କି କବି ନିଜର ନିଃସଂଗ ପ୍ରେମାବେଗ ବର୍ଣ୍ଣନା କରିଥାନ୍ତି ମୁଖ୍ୟତଃ ଏହା ଦଶଧାଡ଼ିରେ ସମ୍ପନ୍ନ । ସୁଲଳିତ, ମଧୁର ମୂର୍ଚ୍ଛନା ଏବଂ ଶୃଙ୍ଗାରାତ୍ମକ ଅଭିବ୍ୟକ୍ତି ହେଉଛି ଏତାଦୃଶ ପ୍ରେମ-କବିତାର ସର୍ବସ୍ୱ । କୃଷ୍ଣ-ସାହିତ୍ୟ ପରଂପରାରେ ସାଧାରଣତଃ ନାରୀ ହିଁ ଏହି କବିତାରେ ପ୍ରେମ-ପାଗଳିନୀ ଏବଂ ପ୍ରେମ-ବିରହିଣୀ ରୂପେ ବର୍ଣ୍ଣିତା । ସେ ନିଜର ପ୍ରେମ-ବ୍ୟାଖ୍ୟା ତଥା ବର୍ଣ୍ଣନା କରିବାରେ ବ୍ୟସ୍ତ । ବସନ୍ତଋତୁ ସମାଗତ, ପ୍ରସ୍ଫୁଟିତ ପୁଷ୍ପର ତୀକ୍ଷ୍ଣ ସୌରଭ ହୃଦୟକୁ ବିଦ୍ଧ କରେ, କୋକିଳର ମୂର୍ଚ୍ଛନା କାରୁଣ୍ୟ ସୃଷ୍ଟି କରେ । ଏହିପରି ରସ-ନିବିଡ଼ ମୁହୂର୍ତ୍ତରେ ପ୍ରେମିକା ପ୍ରେମିକକୁ ଅପେକ୍ଷା କରିଥାଏ ।

"ଫୁଲ ସବୁ ଫୁଟିଅଛି, ରଙ୍ଗବର୍ଣ୍ଣରୂପରସେ ମଉଆଳ
ହେ ମୋର ପ୍ରିୟତମ, ତୁମେ କାହିଁ ଅଛ ?
ଗୋଲାପ ଆଗତ ଦେଖ । କି ମନୋଜ ଛଳଛଳ ରୂପ ତାର
ରଙ୍ଗିର ଓଢଣା ଟେକୁ । ବିହଗ-ବିହଗୀ କୂଜନରତ ।
ହେ ମୋର ପ୍ରିୟତମ, ତୁମେ କାହିଁ ଅଛ ?"

ଅଧିକାଂଶ ପ୍ରେମକବିତାର କବିମାନଙ୍କର ପରିଚୟ ମିଳେ ନାହିଁ । ଏହିସବୁ ଆବେଗସର୍ବସ୍ୱ ରଚନାରେ ପରସିଆନ୍ 'ଗଜଲ୍'ର ପ୍ରଭାବ ପରିଲକ୍ଷିତ ହୋଇଥାଏ ।

ଗ୍ରାମ୍ୟ ବାଳିକା ହବା ଖାତୁନ୍ ବହୁତ ପ୍ରେମ-କବିତା (ଷୋଡ଼ଶ ଶତାବ୍ଦୀର) ରଚନା କରିଥିଲେ । ସେ ମୁସଲିମ୍ ରାଜା ୟୁସୁଫ୍ ସାହାଙ୍କୁ ବିବାହ କରିଥିଲେ । କାଶ୍ମୀରୀ ସାହିତ୍ୟରେ ଉଭୟ ଆଧ୍ୟାତ୍ମିକ କବିତା ପ୍ରେମଗୀତର ସ୍ଥାନ ଅତି ଉଚ୍ଚରେ ।

"ହେ ମୋର ଆଶାର, ଆଶାପୂର୍ଣ୍ଣ ଶକ୍ତି
ଅନ୍ଧକାରେ ମୋତେ ତୁମେ ଆଲୋକ ଦେଖାଅ
ମୋହ ପାଇଁ ସବୁଠାରେ ବନ୍ଧୁତ୍ୱର ବୀଜ ଦିଅ ବୁଣି
ଶତ୍ରୁ ସୁଦ୍ଧା ମୋର କେହି ତୁମେ ନକର ବିନାଶ ।"

୧୮୧୯ ବେଳକୁ କାଶ୍ମୀରରେ ମହାରାଜା ଶିଖର ଆବିର୍ଭାବ କାଶ୍ମୀରୀ ରାଜନୈତିକ ଇତିହାସରେ ଶାନ୍ତି, ନିରାପତ୍ତାର ଯୁଗ ସୂତ୍ରପାତ କରିଥିଲା । ଫଳରେ ସାହିତ୍ୟ କ୍ଷେତ୍ରରେ ଅନେକ କବି ଓ ସାହିତ୍ୟିକ ନିଜକୁ ଉତ୍ସର୍ଗ କରିପାରିଥିଲେ । ରାମାୟଣ ପ୍ରଭୃତି ଦୀର୍ଘ ରଚନା ଏହି ଯୁଗରେ ଲିଖିତ ହେଲା । ପ୍ରକାଶ ରାମଙ୍କର ରାମାୟଣ, ମହମ୍ମଦ ଗାମୀଙ୍କର ରୋମାନ୍‌ସଧର୍ମୀ ରଚନା, 'ସିରନ୍ ଖୁସ୍ରୋ', ବିଶେଷତଃ କବି ପରମାନନ୍ଦଙ୍କ କୃତ 'ଶିବଲଗ୍ନ', 'ରାଧା ସ୍ୱୟମ୍ବର', 'ସୁଦାମ ଚରିତ' ଉଲ୍ଲେଖ-ଯୋଗ୍ୟ । ଶିକ୍ଷିତଗୋଷ୍ଠୀରେ ପାର୍ଶୀଭାଷା ବ୍ୟବହୃତ ହେଉଥିଲା । କାଶ୍ମୀର କବିମାନେ ସେଥିପାଇଁ ପାର୍ଶୀ ସାହିତ୍ୟର ଛନ୍ଦ ଅନୁସରଣରେ ନିଜ ନିଜ ରଚନାର ଛନ୍ଦ ଓ ଆଙ୍ଗିକ ଗ୍ରହଣ କରିଥିଲେ ।

ମହମ୍ମଦ ଗାମୀଙ୍କର (ତିରୋଧାନ ୧୮୫୫) ଶୈଳୀ ବେଶ୍ ଆଡ଼ମ୍ବରପୂର୍ଣ୍ଣ । ତାଙ୍କର କୃତ 'ଲୟଲାମଜନୁନ୍', 'ସିରନ୍‌ଖୁସ୍ରୋ'ରେ ବର୍ଣ୍ଣନା କୌଶଳ, ଶବ୍ଦସମ୍ଭାର ଉଲ୍ଲେଖଯୋଗ୍ୟ ।

ମକବୁଲ ସାହାଙ୍କର ରଚନା ସାଧାରଣତଃ ଛନ୍ଦୋବଦ୍ଧ ଏବଂ ପ୍ରେମ ଓ ପ୍ରକୃତିବର୍ଣ୍ଣନା ପ୍ରଧାନ । ଜନୈକ କାଶ୍ମୀରୀ କୃଷକର ଚପଳତାକୁ କେନ୍ଦ୍ର କରି ତାଙ୍କର 'ଗ୍ରୀସ୍ତାନାମ' ଲିଖିତ ।

ରସୁଲମୀରଙ୍କର ସଂଖ୍ୟାଧିକ ଗଜଲ ରଚନା ବର୍ଣ୍ଣନା, ଶୈଳୀ ଏବଂ ସାଙ୍ଗୀତିକ ଆବେଦନ ଦୃଷ୍ଟିରେ ପାଠକମାନଙ୍କ ଦ୍ୱାରା ଆଦୃତ । ଶୈଳୀ ଏବଂ ଆବେଗ ଦୃଷ୍ଟିରୁ ତାଙ୍କୁ 'ରାମାବତାର ଲୀଳା' ପ୍ରସିଦ୍ଧ କବି ପ୍ରକାଶ ରାମଙ୍କ ସହିତ ତୁଳନା କରାଯାଏ । ରସୁଲଙ୍କର ଗୀତିକବିତାର ପ୍ରଚଳନ ଖୁବ୍ ଅଧିକ । ତାଙ୍କର କବିତା ପ୍ରେମାନୁଭୂତିରେ ଅନୁରଞ୍ଜିତ—

"ପ୍ରିୟତମ ମୋ ଉପରେ ଅଭିମାନ କରନାହିଁ ।
ପ୍ରେମ ଉଦ୍ୟାନରେ, ମୋ ହୃଦୟର ଯେତେ ଜ୍ୱାଳା, ତାହାସବୁ ଫୁଲ ।
ମୋର ଦୀର୍ଘ ନିଃଶ୍ୱାସ, ହୋଇଛି ଏହି ବୃକ୍ଷଲତା, ମୋ ଆଖିର ଲୁହରେ,
ପ୍ରେମ ଉଦ୍ୟାନର ଝରଣା ପ୍ଲାବିତ ହୋଇବ ।"

ଅଜିଜ ଉଲ୍ଲା ହାକ୍କାନି ଏବଂ ଓ୍ୟାହାବ୍ ପାରେ ହେଉଛନ୍ତି ଦୁଇଜଣ ବିଶିଷ୍ଟ କବି । ଉଭୟଙ୍କ କବିତା ଏବଂ ସଂଗୀତରେ ଯୌବନ ଓ ପ୍ରଣୟର ରସାସ୍ୱାଦନ ହିଁ ପରିଲକ୍ଷିତ । ସେଥିଯୋଗୁଁ ସେମାନଙ୍କ କବିତାରେ ପାର୍ଶୀ ପ୍ରେମ-ସାହିତ୍ୟର ପ୍ରତିଧ୍ୱନି

ଶୁଣାଯାଏ । ଏହି ଯୁଗର ଗୀତିକବିତାସମୂହ ସରଳତା, ପ୍ରଣୟର ସାବଲୀଳତା ଏବଂ ଆବେଗର କାରୁଣ୍ୟରେ ପୂର୍ଣ୍ଣ । ପାର୍ଶୀ ସାହିତ୍ୟରୁ ପ୍ରେରଣା ଲାଭ କରିଥିଲେ ମଧ୍ୟ କାଶ୍ମୀରୀ କବିମାନେ ସ୍ଥାନୀୟ ନୈସର୍ଗିକ ସୌନ୍ଦର୍ଯ୍ୟ ତଥା କିମ୍ବଦନ୍ତୀଦ୍ୱାରା କମ୍ ପ୍ରଭାବିତ ହୋଇ ନଥିଲେ ।

ନୃତ୍ୟଗୀତିକା (Rohu Lyric) ହେଉଛି ପ୍ରାଚୀନ କାଶ୍ମୀରୀ ସାହିତ୍ୟର ଆଉ ଏକ ଜନପ୍ରିୟ ରଚନା । କ୍ରମେ ଏହି ଗ୍ରାମ୍ୟଗୀତିସମୂହ ସାହିତ୍ୟିକ ମର୍ଯ୍ୟାଦା ମଧ୍ୟ ପ୍ରାପ୍ତ ହେଲା । କ୍ଷେତ ଅମଳ ସମୟରେ କିମ୍ବା ସ୍ଥାନୀୟ କୌଣସି ସାମାଜିକ ପର୍ବପର୍ବାଣୀ ସମୟରେ ନିର୍ମଳ ଆକାଶର ଚନ୍ଦ୍ରିକାଧୌତ ପରିପ୍ରେକ୍ଷୀରେ ଗ୍ରାମ୍ୟ ବାଳକ-ବାଳିକାଗଣ ଧାଡ଼ିବାନ୍ଧି ଗୀତିଗାଇ ନୃତ୍ୟ କରନ୍ତି । ଏହିସବୁ ଗୀତିକାର ଲକ୍ଷଣ ହେଲା ସଂଳାପ ଜାତୀୟ । ଏହି ଜାତୀୟ ରଚନା ପର୍ଯ୍ୟାୟରେ ମହମ୍ମଦ ଗାମୀଙ୍କର ନାମ ବିଶେଷ ଶୁଣାଯାଏ ।

ସେହି ଯୁଗର ସାମାଜିକ ଏବଂ ଅର୍ଥନୈତିକ ଦୁର୍ଗତି, ଦୁର୍ନୀତିଗ୍ରସ୍ତ ଶାସକ-ଗୋଷ୍ଠୀର ଉଦାସୀନତା ଏବଂ ଅବହେଳା ଯୋଗୁଁ କବିମାନେ ସେମାନଙ୍କ ଦୃଷ୍ଟି-କୋଣ ବଦଳାଇ କ୍ରମେ କ୍ରମେ ତୀକ୍ଷ୍ଣ ବ୍ୟଙ୍ଗାତ୍ମକ ଆଭିମୁଖ୍ୟ ପ୍ରଦର୍ଶନ କଲେ । ତେଣୁ ଗାଁଗହଳରେ ପଟୁଆରୀର ଅତ୍ୟାଚାର, ଜନସାଧାରଣଙ୍କର ତୀବ୍ର ପ୍ରତିକ୍ରିୟା କବିମାନଙ୍କ କବିତାରେ ଆତ୍ମପ୍ରକାଶ କଲା । "ଲଲ୍ଲା ଲକ୍ଷ୍ମଣ" ଏହିପରି ଏକ ଦୀର୍ଘ ବ୍ୟଙ୍ଗାତ୍ମକ ରଚନା ।

କ୍ଷେତ ଖମାର, ଗାଁଗହଳର ଗାଈ ଜଗୁଆଳୀ, ବିବାହ, ଭୋଜି ସମ୍ବନ୍ଧୀୟ ବହୁ ଗ୍ରାମ୍ୟ ଗୀତିକବିତା ପ୍ରାଚୀନ ସାହିତ୍ୟରେ ପରିଦୃଷ୍ଟ ହୁଏ ।

ପରମାନନ୍ଦ ଏବଂ ତାଙ୍କ ସମସାମୟିକ କବିମାନଙ୍କର ଅଜସ୍ର ରଚନାର ସ୍ୱରୂପ ହେଉଛି ଲୀଳାତ୍ମକତା । ସେମାନେ 'ଲୀଳା' ରଚନାର କବିଗୋଷ୍ଠୀଭାବରେ ପରିଚିତ । ଏହି ଲୀଳା ସାଧାରଣତଃ କୌଣସି ଦେବତା ସମ୍ବନ୍ଧୀୟ ରଚନା । ମୁଖ୍ୟତଃ କୃଷ୍ଣଙ୍କୁ କେନ୍ଦ୍ରି କରି ଲୀଳା ଲିଖିତ । ଆନନ୍ଦ, ଭକ୍ତିପ୍ରବଣତା 'ଲୀଳା' ରଚନାର ପ୍ରଧାନ ଆକର୍ଷଣ । ସୃଷ୍ଟି ସ୍ରଷ୍ଟାଙ୍କର ଅମୂର୍ତ୍ତି ଆନନ୍ଦର ପ୍ରବାହ ବୋଲି 'ଲୀଳା'ରେ ବର୍ଣ୍ଣିତ ।

କବି ପରମାନନ୍ଦଙ୍କର (ମୃତ୍ୟୁ ୧୮୭୯) ଦୀର୍ଘ ରଚନା ମଧ୍ୟରେ 'ଶିବଲଗ୍ନ', 'ରାଧା ସ୍ୱୟମ୍ବର', 'ସୁଦାମ ଚରିତ' ଉଲ୍ଲେଖଯୋଗ୍ୟ କୃତି । ପରମାନନ୍ଦଙ୍କର ଶୈଳୀ ସଂସ୍କୃତଭାଷା-ପୀଡ଼ିତ । ଉପାଖ୍ୟାନର ବର୍ଣ୍ଣନା, ଚରିତ୍ରମାନଙ୍କର ପରିଚୟ ଏବଂ କଳ୍ପନାପ୍ରବୃତ୍ତି ଯୋଗୁଁ କବିଙ୍କର ରଚନା ଜନସାଧାରଣଙ୍କ ଦ୍ୱାରା ଆଦୃତ । କାଶ୍ମୀରୀ ସାହିତ୍ୟରେ 'ସୁଦାମା ଚରିତ'ର ଶିଳ୍ପରୀତି ଏବଂ ଦୃଷ୍ଟିକୋଣ ବିଚାରରେ ଏକ ସାର୍ଥକ କୃତି । ଏହି ରଚନାରେ କବି ସଂସ୍କୃତ ଭାଷା ଅପେକ୍ଷା ପ୍ରଚଳିତ

*

ଭାଷାକୁ ବିଶେଷ ସ୍ଥାନ ଦେଇଥିଲେ । 'ଅମରନାଥ ଯାତ୍ରା' କବି ପରମାନନ୍ଦଙ୍କର ଆଉ ଏକ ବର୍ଣ୍ଣନାବହୁଳ କାବ୍ୟିକ ରଚନା । ଏଥିରେ ଭକ୍ତପ୍ରାଣ ଯାତ୍ରୀମାନଙ୍କର ହିମାଳୟ କଟିରେ ଅବସ୍ଥିତ ପବିତ୍ର ଅମରନାଥ ଯାତ୍ରା ହିଁ ବର୍ଣ୍ଣିତ । ତାଙ୍କର ଅଧିକାଂଶ 'ଲୀଳା' ରଚନା କେବଳ ଆଧ୍ୟାତ୍ମିକ ବ୍ୟାଖ୍ୟାସମନ୍ୱିତ । ତଥାପି ତାହାର ଲଳିତ ମୂର୍ଚ୍ଛନା, କାବ୍ୟିକ ଆବେଗ ପାଠକମାନଙ୍କୁ ଆକୃଷ୍ଟ କରିଥାଏ ।

କାବ୍ୟ-କବିତା କ୍ଷେତ୍ରରେ ପରମାନନ୍ଦଙ୍କର ଅନୁସରଣକାରୀ କବି ହେଉଛନ୍ତି ଲକ୍ଷ୍ମଣ ଜୁ । ସେ ଥିଲେ ନାଗାମ୍‌ର ଅଧିବାସୀ । ପରମାନନ୍ଦଙ୍କ 'ରାଧା ସ୍ୱୟମ୍ବର' ରଚନାରୁ ସେ ମୋହିନୀ ଉପାଖ୍ୟାନ ଗ୍ରହଣ କରି ଏକ କାବ୍ୟ ରଚନା କରିଥିଲେ । 'ଲୀଳା' କବିଗୋଷ୍ଠୀ ମଧ୍ୟରେ କୃଷ୍ଣ ରାଜାଦାନ୍ ହେଉଛନ୍ତି ଅନ୍ୟତମ । ସେ ଓ୍ୱାନପହର ଅଧିବାସୀ । ତାଙ୍କର 'ଲୀଳା' ରଚନା ସାଧାରଣତଃ ନିବିଡ଼ ଆଧ୍ୟାତ୍ମିକତାରହିତ; ମାତ୍ର ସରଳତା ଏବଂ ଲାଳିତ୍ୟ ଯୋଗୁଁ ପାଠକମାନଙ୍କ ଦ୍ୱାରା ଆଦୃତ ହୋଇଥାଏ ।

ଗୁଲାମ ମହମ୍ମଦ ମଜୁର ତାଙ୍କ କବିତାରେ ଆଧୁନିକତାର କେତେକ ନୂତନ ଲକ୍ଷଣ ପ୍ରୟୋଗ କରିଥିଲେ । 'ଗ୍ରାମ୍ୟବାଳିକା', 'ମୋର ଯୌବନ', 'ଉଦ୍ୟାନରକ୍ଷକ', 'ମୋର ଦେଶ ଏକ ଉଦ୍ୟାନ' ଶୀର୍ଷକ ତାଙ୍କର କେତେକ କବିତା ଆଦୃତ । ଅବଦୁଲ୍ ଆହଦ୍ ଆଜାଦ୍ 'ଗଜଲ' ଶୀର୍ଷକ ରଚନାରେ ମନ ବଳାଇଥିଲେ ।

'ଜିନ୍ଦା କାଉଲ'ଙ୍କ କବିତା ନୂତନ ଆଙ୍ଗିକ, ଜୀବନରେ ମୁକ୍ତି ପ୍ରଶ୍ନଦ୍ୱାରା ଚିହ୍ନିତ ।

## ନାଟକ :

ପ୍ରାଚୀନ କାଳରେ କାଶ୍ମୀର ଅଞ୍ଚଳରେ ନାଟ୍ୟାଭିନୟ ପ୍ରଚଳିତ ଥିଲା । ଏହି ଅଭିନୟ ମୁଖ୍ୟତଃ ଗ୍ରାମ୍ୟ ଜୀବନ ତଥା ସଂସ୍କୃତିଦ୍ୱାରା ପ୍ରଭାବିତ । ଗ୍ରାମ୍ୟ ଜୀବନରେ ଆମୋଦ-ପ୍ରମୋଦର ବ୍ୟବସ୍ଥା ସ୍ୱରୂପ ନିର୍ଦ୍ଦିଷ୍ଟ ଗୋଷ୍ଠୀ ଅଭିନୟ ପ୍ରଦର୍ଶନ କରୁଥିଲେ । ଏହି ଗୋଷ୍ଠୀ 'ବାନ୍ଦା ପଥର' ନାମରେ ଚିହ୍ନିତ । ଏହି ଗୋଷ୍ଠୀ ଗ୍ରାମେ ଗ୍ରାମେ ଭ୍ରମଣ କରି ନୃତ୍ୟଗୀତ ପ୍ରଦର୍ଶନ କରୁଥିଲେ । ଅଭିନେତା ମଧ୍ୟରେ ଏକ ଦୀର୍ଘକେଶୀ ବାଳକ, ରାଜା ଏବଂ ତାଙ୍କର ପରିଚାରକ ଉଲ୍ଲେଖଯୋଗ୍ୟ । ଗ୍ରାମ୍ୟ ନାଟ୍ୟ ବ୍ୟବସ୍ଥାର ଏହାହିଁ ଥିଲା ପ୍ରକୃତ ରୂପ । ସ୍ୱାଧୀନତା ପରବର୍ତ୍ତୀ କାଳରେ କାଶ୍ମୀରୀ ସାହିତ୍ୟରେ ନାଟକ ରଚନା ଲେଖକମାନଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ପ୍ରେମନାଥ ପରଦେଶୀ, ଅକ୍ତାର ମହିୟୁଦ୍ଦିନ୍, ଉମେଶ କାଉଲ, ଅମୀନ୍ କାଉଲ୍, ସୋମନାଥ ଜୁତ୍ସି ପ୍ରଭୃତି ଲେଖକମାନେ ନୂତନ ଜୀବନର ସାମାଜିକ ସ୍ଥିତିରେ

ନାଟକ ରଚନା କଲେ । ସେମାନଙ୍କ ନାଟକରେ ଧର୍ମାନ୍ଧତା କୁସଂସ୍କାରବିରୋଧୀ ଭାବ ପ୍ରକାଶ ପାଇଥିଲା । ସାରାଦେଶରେ ନବଜୀବନର ଯେଉଁ ପ୍ରବାହ ଖେଳି-ଯାଇଥିଲା, ତାହାର ଯଥାର୍ଥ ପ୍ରତିଧ୍ୱନି କାଶ୍ମୀରୀ ନାଟକରେ ଶୁଣାଯାଇଥିଲା । 'ଜମିନ ସାଂଜ୍' (କିଏ ଜମିମାଲିକ), 'ଉଇନ୍ ଛେ ରୋନ୍' (ଆମର ସମୟ), 'ଜଙ୍ଗବାଜ୍' (ଯୁଦ୍ଧଖୋର) ଏତାଦୃଶ ନାଟକ ।

ଆଧୁନିକ ଯୁଗ ପ୍ରତିଷ୍ଠିତ କବି ନାଦିମ୍‌ଙ୍କର ଅପେରା ଲେଖା 'ବାମ୍ବୁର ୟାମ ବାରଜାଲ' (ବମ୍ବୁଲମାଛି) ।

'ନାରସିଅସ୍ ଏବଂ ହେମାଲ ନାଗରାଜ' ରଙ୍ଗମଞ୍ଚପ୍ରେମୀଙ୍କ ଦ୍ୱାରା ବିଶେଷ ଆଦୃତ ହୋଇଥିଲା ।

## କ୍ଷୁଦ୍ରଗଳ୍ପ :

ଆଧୁନିକ କାଶ୍ମୀରୀ ସାହିତ୍ୟରେ କ୍ଷୁଦ୍ରଗଳ୍ପ, ଉପନ୍ୟାସର ବିଶେଷ ପ୍ରଚାର ଘଟିନାହିଁ । ତେବେ ଆଧୁନିକ ଯୁଗର କାଶ୍ମୀରୀ ସାହିତ୍ୟରେ କେବଳ କାବ୍ୟ-କବିତାର ଅଧିକ ପ୍ରଚଳନ ପରିଦୃଷ୍ଟ । ଏହି କାବ୍ୟ-କବିତା ମଧ୍ୟ ଅଧିକାଂଶ ଭାବରେ ମଧ୍ୟଯୁଗୀୟ ଆବେଦନ ଏବଂ ଶୈଳୀଦ୍ୱାରା ଚିହ୍ନିତ । ପ୍ରାଚୀନ କାବ୍ୟ-କବିତାର ସଂସ୍କାର ଅନେକ କବିଙ୍କୁ ପ୍ରଭାବିତ କରିଥିବାର ଜଣାଯାଏ । କାଶ୍ମୀରରେ ପାଶ୍ଚାତ୍ୟ ସାହିତ୍ୟ ଓ ସଂସ୍କୃତିର ପ୍ରଭାବ ବିଲମ୍ବରେ ଅନୁଭୂତ ହୋଇଥିଲା । ଫଳରେ ଆଧୁନିକ କବିତାର ଆଙ୍ଗିକ ପରୀକ୍ଷା ନିରୀକ୍ଷା ପାଇଁ, ସାଂପ୍ରତିକ କବିର ଆବେଗାନୁଭୂତି, ଉପମା, ଚିତ୍ରକଳ୍ପ ପ୍ରୟୋଗ ପାଇଁ ଯେଉଁ ଚେତନା ଓ ପ୍ରେରଣା ଆବଶ୍ୟକ ସେଥିପାଇଁ ସାମାଜିକ ପୃଷ୍ଠଭୂମିର ଅଭାବ ଥିଲା । କାରଣ ସାଂପ୍ରତିକ ଜୀବନର ଜଟିଳତା କେତେକ ପରିମାଣରେ ଆଧୁନିକ ଯୁଗର କବିକୁ ତା'ର ଦୃଷ୍ଟିକୋଣ ତଥା ଆଭିମୁଖ୍ୟ ପରିବର୍ତ୍ତନ କରିବାରେ ବାଧ୍ୟ କରିଥାଏ । ତେବେ ଆଧୁନିକ କାଶ୍ମୀରୀ ସାହିତ୍ୟରେ ଏ ଆଉ ଏକ ଅସାଧାରଣ ଐତିହାସିକ ଘଟଣା ଅପୂର୍ବ ପ୍ରେରଣା ତଥା ପରିସ୍ଥିତି ସୃଷ୍ଟି କରିଥିଲା । ତାହା ହେଉଛି, କାଶ୍ମୀରୀ ଜନସାଧାରଣଙ୍କ ମଧ୍ୟରେ ନବଜାଗରଣ ତଥା ମୁକ୍ତିସଂଗ୍ରାମର ଆହ୍ୱାନ । ପ୍ରାଚୀନ ସାମନ୍ତବାଦ ବିରୋଧରେ ଏହି ଆହ୍ୱାନର ସ୍ୱର ଉଚ୍ଚାରିତ ହୋଇଥିଲା ଆଉ ଯେଉଁ କବିମାନଙ୍କ କବିତାରେ ଏହି ଆହ୍ୱାନର ସ୍ୱର ଶୁଣାଗଲା ସେମାନେ ସମସ୍ତେ ମୁକ୍ତିମନ୍ତ୍ରରେ ଦୀକ୍ଷିତ ହୋଇଥିଲେ ।

ଆଧୁନିକ କାଶ୍ମୀର ସାହିତ୍ୟରେ ପ୍ରଥମେ ଜାତୀୟତାବାଦୀ କବି ଏବଂ ନବକବିତାର ପ୍ରବର୍ତ୍ତକ ଥିଲେ —କବି ମଜହୁର୍ । ପୂର୍ବ ଯୁଗର ନାରୀର ଯୌବନ-

ବର୍ଣ୍ଣନା, ମଦ୍ୟପାନ ବିଳାସର ବର୍ଣ୍ଣନା, ପୀଡ଼ିତ ଗଜଲ ରଚନାର ପୃଷ୍ଠଭୂମିରେ ଯେତେବେଳେ ବିପ୍ଳବାତ୍ମକ କବିତା ରଚନା କଲେ, ସେତେବେଳେ କାଶ୍ମୀର ଜନସମାଜରେ ମଧ୍ୟ ତାହାର ପ୍ରଭାବ ଅନୁଭୂତ ହେଲା । ୧୯୩୦ ମସିହାରେ କାଶ୍ମୀରର କୃଷୀ ମଜଦୂରଙ୍କ ମଧ୍ୟରେ ଗୋଟାଏ ଅଭୂତପୂର୍ବ ଆନ୍ଦୋଳନ ଦେଖାଦେଲା । ତେଣୁ ୧୯୩୦ ପରବର୍ତ୍ତୀ କାଶ୍ମୀରୀ କବିତାରେ ନବଜାଗ୍ରତ ସଂଗ୍ରାମୀ ଜନତାର ଚେତନା ହିଁ ବିଦ୍ରୋହାତ୍ମକ ଭାଷାରେ ପ୍ରକାଶିତ ହେଲା । ଗଣଆନ୍ଦୋଳନର ପୃଷ୍ଠଭୂମିରେ ମଜଦୁର୍‌ଙ୍କ କବିତାର ସ୍ୱର କ୍ରମେ କ୍ରମେ ଉଦାତ୍ତରୁ ଉଦାତ୍ତ ହୋଇଥିଲା । ତାଙ୍କ କବିତାରେ ବିଦ୍ରୋହୀ ଜନତାର ଆକାଙ୍‌କ୍ଷା ଓ ଆବେଗ ପ୍ରତିଧ୍ୱନିତ ହେଲା । ଫଳରେ ତାଙ୍କର କେତେଜଣ ସମସାମୟିକ କବି ଯଥା 'ଆଜାଦ' ଏବଂ 'ମାଷ୍ଟରଜୀ' ମଧ୍ୟ ବିଦ୍ରୋହୀ କବିରୂପେ ଆବିର୍ଭୂତ ହେଲେ । ଆଜାଦ୍‌ଙ୍କ କବିତାରେ ରହସ୍ୟବାଦ ଏବଂ ମାଷ୍ଟରଜୀଙ୍କ କବିତାରେ ଗଣ-ମାନସର ଭାଷା ପ୍ରତିବିମ୍ବିତ ହେଲା । ଜନସମାଜରୁ ସମସ୍ତ ପ୍ରକାର ଶୋଷଣ, ନିର୍ଯାତନା ତଥା ଦୁର୍ନୀତି ଲୋପପାଇଁ ସେହି କବିମାନେ ଆହ୍ୱାନ ଦେଇଥିଲେ । ସେଥିପାଇଁ ଶ୍ରେଣୀହୀନ ସମାଜ ପରିକଳ୍ପନାର ପ୍ରବର୍ତ୍ତକରୂପେ କାଶ୍ମୀରୀ ସାହିତ୍ୟରେ ଏହି କବିମାନେ ଉଲ୍ଲେଖଯୋଗ୍ୟ ।

ମାଷ୍ଟରଜୀଙ୍କ କବିତାର ଆବେଦନ ହେଉଛି ତୀବ୍ରତର—

"ଯେଉଁଠାରେ କେହି ନୁହଁଇ ଶୋଷିତ
ଯେଉଁଠାରେ କେହି ନୁହଁଇ ବ୍ୟଥିତ
ନାହିଁ ଉନ୍ମାଦନା, ହା'-ହୁତାଶ ନାହିଁ
ଏ ମଣିଷ ଯେଉଁଠାରେ ଜଳେ ନାହିଁ କ୍ଷୁଧାର ଜ୍ୱାଳାରେ
ଯେଉଁଠାରେ ନାହିଁଟି ଦୁଶ୍ଚିନ୍ତା
ନାହିଁ ଭବିଷ୍ୟତ ପାଇଁ ଦୁର୍ଭାବନା ।"

ଉପରୋକ୍ତ କବିଦ୍ୱୟ ପୁଞ୍ଜିଭୂତ ଶୋଷଣ ଏବଂ ନିର୍ଯାତନା ବିରୋଧରେ ସ୍ୱର ଉତ୍ତୋଳନ କରି ଯୁଗଯୁଗର ସାମନ୍ତବାଦ ମୂଳରେ କୁଠାରାଘାତ କରିଥିଲେ । କବି ଆଜାଦ ତାଙ୍କର 'ନମ୍' କବିତା ମନୁଷ୍ୟ ମନୁଷ୍ୟ ମଧ୍ୟରେ ବିଭେଦ, ବ୍ୟବଧାନର ଲୋପ ପାଇଁ ବିପ୍ଳବର ମନ୍ତ୍ରରୂପେ ଗୃହୀତ । ଶ୍ରେଣୀ-ସଂଘର୍ଷ, ଶ୍ରେଣୀହୀନ ସମାଜର ସ୍ୱପ୍ନ ଏହି କବିମାନଙ୍କ କବିତାରେ ପ୍ରତିଫଳିତ ହୋଇପାରିଛି ।

କାବ୍ୟକବିତା ରାଜ୍ୟରେ ଏପରି ବୈପ୍ଳବାତ୍ମକ ଘଟଣାନ୍ତର ପରବର୍ତ୍ତୀ କବିମାନଙ୍କୁ ମଧ୍ୟ କମ୍ ପ୍ରଭାବିତ କରି ନଥିଲା । ନୂତନ କବିମାନେ ଆହୁରି ଏକ

ନୂତନ, ଉଜ୍ଜ୍ୱଳ ସମାଜର ସ୍ୱପ୍ନରେ ବିଭୋର ହୋଇଥିଲେ । ନୂତନର ଆଗମନୀ ମନ୍ତ୍ରରେ ସେମାନଙ୍କର କାବ୍ୟକବିତା ଅନୁରଣିତ ହେଲା । ଜନସାଧାରଣଙ୍କର ଦୈନିକ ବେଦନାଦଗ୍ଧ ଦାରିଦ୍ର୍ୟପୀଡ଼ିତ କରୁଣ, ବାସ୍ତବ ଜୀବନଚିତ୍ର ଆଧୁନିକ କବିତାରେ ପ୍ରତିଫଳିତ ହେଲା । ଏହି ନବାଗତ କବିମାନଙ୍କ ମଧ୍ୟରେ ଫଣି, ଆସି, ଗ୍ରମି, ରୋସନ୍‌ଙ୍କ ନାମ ଉଲ୍ଲେଖଯୋଗ୍ୟ । ଦାରିଦ୍ର୍ୟ, ଅଭାବ, ଅନଶନ ସହିତ ଶୋଷଣ କିପରି ସାଧାରଣ ଜୀବନର ସ୍ୱପ୍ନସୌଧ ଧୂଳିସାତ୍ କରିଦେଇଛି, ତା'ର ଚିତ୍ର ତରୁଣ ସ୍ରଷ୍ଟାମାନଙ୍କୁ ଅଭିଭୂତ କରିଦେଇଥିଲା । କବି ଆରିଫଙ୍କର ଗୋଟିଏ କବିତାରେ ଜଣେ ଗରିବ ଗ୍ରାମ୍ୟ ବାଳିକାର ଯେଉଁ ଦାରିଦ୍ର୍ୟଦଗ୍ଧ ଚିତ୍ର ପ୍ରଦର୍ଶିତ ତାହା ବାସ୍ତବିକ କାଶ୍ମୀରର ଦାରିଦ୍ର୍ୟ-ନିପୀଡ଼ିତ ଦଗ୍ଧ ନାରୀସମାଜର କାବ୍ୟିକ ପରିଚୟ । ଜଣେ ସୁନ୍ଦରୀ ଗ୍ରାମ୍ୟ ବାଳିକା ବିବାହର ପ୍ରଥମ ପର୍ବରେ ଦାରିଦ୍ର୍ୟ ନିପୀଡ଼ିତ ହୋଇ କାରଖାନାରେ ଶ୍ରମିକ ସାଜିଛି । ସେମାନଙ୍କ ଜୀବନର ରୋମାନ୍ସ ସତେ ଯେପରି କାରଖାନାର ଉତ୍ତାପରେ ତିଳତିଳ କରି ବିଦଗ୍ଧ ।

କ୍ରମେ କ୍ରମେ କାଶ୍ମୀରୀ କାବ୍ୟ-କବିତାରେ ନିବିଡ଼ ଭାବରେ ରାଜନୈତିକ ଆନ୍ଦୋଳନର ପ୍ରତିଧ୍ୱନି ହିଁ ନିନାଦିତ ହୋଇଥିଲା । କାରଣ କବିମାନେ ସମସାମୟିକ ରାଜନୈତିକ ଆନ୍ଦୋଳନ ତଥା ନେସନାଲ କନ୍‌ଫରେନ୍ସର ଭୂମିକା ଉପଲବ୍ଧି କରି ଜନସାଧାରଣ, କୃଷକ ଓ ମଜଦୁର, ସର୍ବହରା ଶ୍ରେଣୀ ସହିତ ନିଜକୁ ସାମିଲ କରାଇନେଇଥିଲେ । ସଂକ୍ଷେପରେ କହିବାକୁ ଗଲେ ଆଧୁନିକ କାବ୍ୟ-କବିତାର ସ୍ୱର କାଶ୍ମୀରରେ ରାଜନୈତିକ ଜାଗରଣ ଏବଂ ବୌଦ୍ଧିକ ଚେତନା ସହିତ ଜଡ଼ିତ ହୋଇଗଲା; ଅର୍ଥାତ୍ ଆଧୁନିକ କାଶ୍ମୀରୀ ସାହିତ୍ୟରେ ଆନ୍ଦୋଳନ ରାଜନୈତିକ ଜାଗରଣ ସହିତ ସମ୍ପର୍କିତ ହୋଇଥିଲା । ତରୁଣ କବିବୃନ୍ଦ ବିଭିନ୍ନ ରାଜନୈତିକ ଆଦର୍ଶ ଏବଂ ଲୋକ ଜାଗରଣମୂଳକ ଯୋଜନାକୁ ଯଥା—ଜାତୀୟ ପୁନର୍ଗଠନ, ସାମାଜିକ କୁସଂସ୍କାର ଏବଂ ରାଜନୈତିକ ଦୁର୍ନୀତି ଉଚ୍ଛେଦ ସାଧନ, କୃଷିସଂସ୍କାର, ସାଂପ୍ରଦାୟିକତାର ବିଲୋପସାଧନ ନିଜ ନିଜ ସାହିତ୍ୟ ସୃଷ୍ଟିରେ ରୂପାୟିତ କରିଥିଲେ । ସେଥିପାଇଁ ଆଧୁନିକ କାଶ୍ମୀରୀ ସାହିତ୍ୟ ଏବଂ କାଶ୍ମୀରୀ କାବ୍ୟ-କବିତା ରାଜନୈତିକ ଅଭିମୁଖ୍ୟଦ୍ୱାରା ଅନୁପ୍ରାଣିତ । ଏହାର ଅର୍ଥ ନୁହେଁ ସୌଖିନ ରାଜନୀତି, ପ୍ରତ୍ୟକ୍ଷ ଏବଂ ସାମାଜିକ ବାସ୍ତବତା ହିଁ ଏହି ଆଭିମୁଖ୍ୟର ଧାରା । କୃଷୀ ମଜଦୁରଙ୍କ ଜୀବନସଂଗ୍ରାମ, ଦରିଦ୍ର ଜନସାଧାରଣଙ୍କର ଆଶା ଆକାଂକ୍ଷା ଏବଂ ସେମାନଙ୍କ ଜୀବନର ଗ୍ଲାନି ତଥା ଅବଶୋଷ ହିଁ ଏହି ଧାରା । ସେଥିପାଇଁ ୧୯୩୦ ପରବର୍ତ୍ତୀ କାଶ୍ମୀରୀ କବିମାନେ ସ୍ୱସ୍ୱ କବିତା ମାଧ୍ୟମରେ ଜନତା ସହିତ ନିବିଡ଼ ସମ୍ପର୍କ ସ୍ଥାପନ କରିଥିବାର ଜଣାଯାଏ । କାଶ୍ମୀରର ରାଜନୈତିକ ଅବସ୍ଥା ବହିରାକ୍ରମଣ ଯୋଗୁଁ ଅସ୍ଥିର ହେବା ହେତୁ କବିମାନଙ୍କର ସ୍ୱର ମଧ୍ୟ ସଂପୂର୍ଣ୍ଣ-

ରୂପେ ପରିବର୍ତ୍ତିତ ହୋଇଥିଲା । କବିମାନେ ଏକସ୍ୱରରେ ଅଖଣ୍ଡ ଜାତୀୟତାର ଆବାହନ କରିଥିଲେ । କାଶ୍ମୀରର ରାଜନୈତିକ ଜୀବନ ଯେପରି ଅସ୍ଥିର ହେଲା, ତାହାର ଜନସାଧାରଣ ସେହି ପରିମାଣ ସ୍ୱଦେଶ-ସଚେତନ ହେଲେ । ଏପରି ପରିସନ୍ଧି ସମୟରେ ଜନଜାଗରଣର ଉଦ୍‌ଗାତା ହୋଇପାରିଥିଲେ ଏକ ଦିଗରେ ବହିଃଶତ୍ରୁ; ଅନ୍ୟ ଦିଗରେ ଆଭ୍ୟନ୍ତରୀଣ ସାଂପ୍ରଦାୟିକ ଶତ୍ରୁ ।

ଏହି ଜଟିଳ ପରିସ୍ଥିତିରେ କାଶ୍ମୀରର କବି ଉଦାତ୍ତ କଣ୍ଠରେ ମାତୃଭୂମିର ବନ୍ଦନା ରଚନା କରିଥିଲା । ଏପରି ଭାବୋଚ୍ଛ୍ୱାସପୂର୍ଣ୍ଣ କବିତାର ପ୍ରବର୍ତ୍ତକ ହେଉଛନ୍ତି ନାଦିମ୍ । ସେ ସାଂପ୍ରତିକ ପାଠକ ସମାଜରେ ସୁପ୍ରତିଷ୍ଠିତ । କାଶ୍ମୀର କବିମାନଙ୍କର ଉପଲବ୍‌ଧି ଏବଂ ଜାଗରଣର ଆଉ ଏକ ଦିଗ ହେଉଛି କୌଣସି ଦେଶର ରାଜନୈତିକ ଅଭିସନ୍ଧି ସମ୍ପର୍କରେ ସେମାନଙ୍କର ସତର୍କତା ।

କୌଣସି ସାମ୍ରାଜ୍ୟବାଦୀ ଚକ୍ରାନ୍ତକୁ ସେମାନେ ବରଦାସ୍ତ କରନ୍ତି ନାହିଁ । ସେମାନେ ଜାଣନ୍ତି ଜନସାଧାରଣଙ୍କ ରକ୍ତରେ ପ୍ଲାବିତ ସ୍ୱାଧୀନତାର ମୂଲ୍ୟ କମ୍ ନୁହେଁ । ତେଣୁ କୌଣସି ବିଦେଶୀ ସାମ୍ରାଜ୍ୟବାଦୀ ଶକ୍ତି ନିକଟରେ ମୁଣ୍ଡ ନୁଆଁଇବା ସେମାନେ ପସନ୍ଦ କରନ୍ତି ନାହିଁ । କାଶ୍ମୀରର ମୁକ୍ତି-ସଂଗ୍ରାମରେ କବିମାନଙ୍କର ଭୂମିକା ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ । ଜଣେ ଜନନୀଙ୍କୁ କେନ୍ଦ୍ର କରି ଲିଖିତ କବି ରୋଷନଙ୍କର ଗୋଟିଏ କବିତା ଜାଗ୍ରତ ଜନମତର ପ୍ରତିଧ୍ୱନି ଜଣାଏ । ଦେଶର ମୁକ୍ତି-ସଂଗ୍ରାମରେ କୌଣସି ଜନନୀ ତାର ପୁତ୍ରକୁ ଶହୀଦ ହେବା ପାଇଁ ହସି ହସି ଛାଡ଼ି ଦେଇଥିଲା । ତାର ଆଖିରୁ ସେଦିନ ଟୋପାଏ ହେଲେ ଅଶ୍ରୁ ଝରିପଡ଼ିନଥିଲା । କାରଣ ତାର ପୁତ୍ର କାଶ୍ମୀର ଜନନୀମାନଙ୍କର ଆଖିର ଅଶ୍ରୁ ପୋଛିଦେବା ପାଇଁ ଶହୀଦତ୍ୱ ବରଣ କରିନେଇଥିଲା । କିନ୍ତୁ ଶହୀଦର ସମାଧିପୀଠ ଉପରେ ଫୁଲତୋଡ଼ା ଅର୍ଘ୍ୟ ଦେବା ପାଇଁ ଯେଉଁ ଦିନ ପ୍ରତାରକ ନେତୃବୃନ୍ଦ ଧାଡ଼ି ବାନ୍ଧିଥିଲେ, ସେଦିନ ସେହି ଜନନୀ ପ୍ରତାରକମାନଙ୍କର ଅଭିସନ୍ଧି ବୁଝିପାରି ସେମାନଙ୍କୁ ଭର୍ତ୍ସନା କରିଥିଲା । ରାଜନୈତିକ ଜୀବନରେ ଶାନ୍ତି, ସ୍ଥିରତା ଆଣିବା ପାଇଁ କବି ତଥା ସାହିତ୍ୟିକମାନଙ୍କର ପ୍ରଚେଷ୍ଟା ମଧ୍ୟ କମ୍ ନୁହେଁ । ଫଳରେ ୧୯୫୦ ମସିହା ପରବର୍ତ୍ତୀ କାଶ୍ମୀର କବିତାରେ ଶାନ୍ତିମନ୍ତ୍ର ଉଚ୍ଚାରିତ । ସଂଗ୍ରାମ, ସଂଘର୍ଷ ଏବଂ ଶେଷରେ ଶାନ୍ତି ଏହିପରି ଆଧୁନିକ କାଶ୍ମୀରୀ କାବ୍ୟକବିତାର ଯଥାର୍ଥତଃ ପ୍ରାଣସ୍ପନ୍ଦନ ।

# ମୈଥିଳୀ

ମିଥିଳାର ଭାଷା ପ୍ରାଚୀନ କାଳରେ ଅବହଟ୍ଟ କିମ୍ବା ମିଥିଳା ଅପଭ୍ରଂଶ ନାମରେ ପରିଚିତ ଥିଲା । ଅପଭ୍ରଂଶ ମିଥିଳାରେ ଦେଶଭାଷା ନାମରେ ପରିଚିତ ଥିଲା । ଏହି ଦେଶଭାଷା ପ୍ରାଚୀନ ସଂସ୍କୃତ ଓ ପ୍ରାକୃତଠାରୁ ଭିନ୍ନ ଥିଲା । ମୈଥିଳୀର କେତୋଟି ଉପଭାଷା (Dialect) ହେଉଛି ଚିଖାଚିଖି, କୋଲଇ, କୋନ୍ଥା, ଗୋଆଲରି । ପ୍ରଦେଶର ବିଭିନ୍ନ ଅଞ୍ଚଳରେ ଏହାର ଏପରି ବିଭିନ୍ନ ନାମ । କୋଲବ୍ରୁକ୍ ସର୍ବପ୍ରଥମେ ଥର ପାଇଁ ୧୮୦୧ରେ ଏହି ଭାଷାକୁ 'ମୈଥିଳୀ' ବା 'ମିଥିଲି' ବୋଲି ଅଭିହିତ କରିଥିଲେ । ଏହା ପରେ ଗ୍ରୀୟର୍‌ସନ ସାହେବ ଏହି ମିଥିଳା ନାମକୁ ତାଙ୍କ ଲେଖାରେ ବ୍ୟବହାର କରିଥିଲେ । ମୈଥିଳୀ ଭାଷା ପ୍ରାଚୀନ କାଳ ଅପେକ୍ଷା ବର୍ତ୍ତମାନ ବିସ୍ତୃତ ଅଞ୍ଚଳରେ କଥିତ । ଗ୍ରୀୟର୍‌ସନ୍‌ଙ୍କ ବିବରଣୀ ଅନୁଯାୟୀ ଏହି ଭାଷା ଦର୍ଭଂଗା ଓ ଭାଗଲପୁର ଜିଲ୍ଲାର ଉତ୍ତରାଞ୍ଚଳରେ ବ୍ରାହ୍ମଣମାନଙ୍କ ଦ୍ୱାରା ଶୁଦ୍ଧଭାବରେ କଥିତ ହୋଇଥାଏ । ପଶ୍ଚିମ ପୂର୍ଣ୍ଣିଆ ଅଞ୍ଚଳରେ ବ୍ରାହ୍ମଣମାନେ ମଧ୍ୟ ଏହି ଭାଷା ବ୍ୟବହାର କରନ୍ତି । ଉତ୍ତରରେ ହିମାଳୟ ପର୍ବତମାଳା, ଦକ୍ଷିଣରେ ଗଙ୍ଗା, ପୂର୍ବ ଓ ପଶ୍ଚିମରେ ଗଣ୍ଡକୀ ଓ କୋଶୀ ନଦୀଦ୍ୱାରା ଏହି ଅଞ୍ଚଳ ଚିହ୍ନିତ । ପୂର୍ବକୁ ଏହା ବଙ୍ଗଳା ଭାଷାଦ୍ୱାରା ପ୍ରଭାବିତ । ପଶ୍ଚିମରେ ମଧ୍ୟ ସେହି ବଙ୍ଗଳା ଭାଷାଦ୍ୱାରା ପ୍ରଭାବିତ । ପୂର୍ଣ୍ଣିଆ ଅଞ୍ଚଳରେ କଥିତ ମୈଥିଳୀ ଭାଷାକୁ 'ପୂର୍ବ ମୈଥିଳୀ' ବୋଲି କୁହାଯାଏ । ମୋଜାଫୋରପୁର ଜିଲ୍ଲା ଓ ଦର୍ଭଂଗା ଜିଲ୍ଲାର ପୂର୍ବାଞ୍ଚଳରେ କଥିତ ମୈଥିଳୀ ଭାଷା ଭୋଜପୁରି ଭାଷାଦ୍ୱାରା ପ୍ରଭାବିତ । ତାହା ସେଠାରେ ପଶ୍ଚିମାଞ୍ଚଳରେ କଥିତ ମୈଥିଳୀକୁ 'ପଶ୍ଚିମା ମୈଥିଳୀ' କୁହାଯାଏ ।

ଏକଦା ଚମ୍ପାରଣ ମିଥିଳାର କେନ୍ଦ୍ର ଥିଲା । ସେଠାରେ ମୈଥିଳୀ ଭାଷା ପରିବର୍ତ୍ତେ ଭୋଜପୁରି ଭାଷା ପ୍ରଚଳିତ । ଏହି ଭାଷାକୁ ସେଠାରେ ମୈଥିଳୀର ଉପଭାଷା ବୋଲି କହନ୍ତି । ତେଣୁ ମୈଥିଳୀ ଭାଷାର ସୀମା ସରହଦ୍ ହେଉଛି ପଶ୍ଚିମରେ ଭୋଜପୁରି ଭାଷା । ପୂର୍ବରେ ବଙ୍ଗଳା ଭାଷା, ଉତ୍ତରରେ ନେପାଳୀ ଭାଷା କିମ୍ବା କୁସା ଭାଷା ଓ ଦକ୍ଷିଣରେ ଓଡ଼ିଆ, ସାନ୍ତାଳୀ ଓ ମୁଣ୍ଡା ଭାଷା । ଏହି ଭାଷାର ଲୋକସଂଖ୍ୟା ୧୯୧୧ ରେ ଯାହା ଥିଲା ତାହା ହେଉଛି ୯୩୮୯୩୭୬ । ୧୯୩୧ରେ ୨୧ ଅୟୁତ, ୧୯୪୧ରେ ୧୧ କୋଟି ଥିଲା । ମୈଥିଳୀ ଏକ ସ୍ୱତନ୍ତ୍ର ଭାଷା; କିନ୍ତୁ ଏହା ପୂର୍ବେ ହିନ୍ଦୀ କିମ୍ବା ବଙ୍ଗଳାର ଏକ ଉପଭାଷା ବୋଲି ବିବେଚିତ ହେଉଥିଲା ।

ଗ୍ରୀୟର୍‌ସନ୍ ସାହେବ ପ୍ରଥମ ଥର ପାଇଁ ଏହା ବଙ୍ଗଳା ଓ ହିନ୍ଦୀଠାରୁ ପୃଥକ ବୋଲି ଘୋଷଣା କରିଥିଲେ । ମୈଥିଳୀ ଭାଷାର କେତେକ ବୈଶିଷ୍ଟ୍ୟ ଅଛି; ଯାହାକି ହିନ୍ଦୀ, ବଙ୍ଗଳା କିମ୍ବା ଅନ୍ୟାନ୍ୟ ଭାରତୀୟ ଭାଷାରେ ଦେଖାଯାଏ ନାହିଁ । ଏହି ଭାଷାର କେତେଗୁଡ଼ିଏ ଲକ୍ଷଣ, ଯାହାକି ବ୍ୟାକରଣଗତ ଲକ୍ଷଣ, ତାହା ଗ୍ରୀୟର୍‌ସନଙ୍କୁ ଆକୃଷ୍ଟ କରିଥିଲା ।

ପ୍ରାଚୀନ ବଙ୍ଗଳା ଓ ପ୍ରାଚୀନ ମୈଥିଳୀ ମଧ୍ୟରେ ଆଦୌ ତଫାତ୍ ନଥିଲା । ସେତେବେଳେ ମୈଥିଳୀରେ ରଚିତ ଲେଖାକୁ ବଙ୍ଗଳା ଭାଷାଭାଷୀମାନେ ବୁଝିପାରୁଥିଲେ ଏବଂ ବଙ୍ଗଳା ରଚନାକୁ ମୈଥିଳୀ ଭାଷାଭାଷୀମାନେ ମଧ୍ୟ ବୁଝିପାରୁଥିଲେ । ମଧ୍ୟଯୁଗରେ ଏହି ଦୁଇ ଭାଷାଭାଷୀମାନଙ୍କ ମଧ୍ୟରେ ଭାଷାର ଆଦାନ-ପ୍ରଦାନ ଚାଲିଥିଲା । ପଞ୍ଚଦଶ ଶତାବ୍ଦୀରୁ ଅଷ୍ଟାଦଶ ଶତାବ୍ଦୀ ଯାଏ ମୈଥିଳୀ ପଣ୍ଡିତମାନେ ବଙ୍ଗାଳୀ ପଣ୍ଡିତମାନଙ୍କୁ ଶିକ୍ଷା ଦେଉଥିଲେ । ନଦୀୟା ସଂସ୍କୃତ ଆଲୋଚନାର ପ୍ରଧାନ ପୀଠ ହେବାପରେ ବଙ୍ଗଳା ପଣ୍ଡିତମାନେ ମୈଥିଳୀ ପଣ୍ଡିତମାନଙ୍କୁ ଶିକ୍ଷା ଦେଇଥିଲେ । ୧୯୧୧ ମସିହା ପର୍ଯ୍ୟନ୍ତ ମିଥିଳା ଓ ବଙ୍ଗଳା ଏକ ରାଜନୈତିକ ପ୍ରଭାବର ଅଧୀନ ଥିଲା । ସେଥିପାଇଁ ବଙ୍ଗଳା ଓ ମିଥିଳାର ପଣ୍ଡିତମାନଙ୍କ ମଧ୍ୟରେ ସାଂସ୍କୃତିକ ସହଯୋଗ ଖୁବ୍ ଅଧିକ ଥିଲା । ଆଧୁନିକ ବଙ୍ଗଳା ସାହିତ୍ୟ ଉନ୍ନତ । ସେହିପରି ମୈଥିଳୀ ସାହିତ୍ୟର ମଧ୍ୟଯୁଗ ଖୁବ୍ ଉନ୍ନତ ଥିଲା । ଭାଷାଗତ ଉଚ୍ଚାରଣ, ବ୍ୟାକରଣଗତ ଶୃଙ୍ଖଳା ଦୃଷ୍ଟିରେ ଉଭୟ ଭାଷା ମଧ୍ୟରେ କେତେକ ତଫାତ୍ ପରିଦୃଷ୍ଟ ହେଲା ।

## ମୈଥିଳୀ ଓ ଆସାମୀ :

ଆସାମର ବ୍ରହ୍ମପୁତ୍ର ଉପତ୍ୟକାରେ ଏକମାତ୍ର ଆର୍ଯ୍ୟଭାଷା ଅସମୀୟା ବା ଆସାମୀ କଥିତ । ପ୍ରାଚୀନ କାମରୂପ ଓ ମିଥିଳା ସୀମା ପୂର୍ଣ୍ଣିଆ ଜିଲ୍ଲାର କୋଶୀ ନଦୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଏହି କାମରୂପ ଓ ମିଥିଳା ମଧ୍ୟରେ ସାଂସ୍କୃତିକ ସମନ୍ୱୟ ମଧ୍ୟ ଲାଗିରହିଥିଲା । କୁଚ୍ଛବିହାରର ରାଜା ବିଶ୍ୱସିଂହଙ୍କ ରାଜତ୍ୱରେ ଅନେକ ମୈଥିଳୀ କାମରୂପ ପରିଦର୍ଶନ କରୁଥିଲେ । ରାଜା ବିଶ୍ୱସିଂହ ଜଣେ ସାର୍ବଭୌମ ମିଥିଳା ପଣ୍ଡିତଙ୍କୁ ତାଙ୍କ ପୁରୋହିତ ପଦରେ ନିଯୁକ୍ତ କରିଥିଲେ । ମିଥିଳାର ନରହରି କାୟସ୍ଥ ମଧ୍ୟ ତାଙ୍କର ମନ୍ତ୍ରୀ ହୋଇଥିଲେ । ମିଥିଳାର ଅନେକ ପଣ୍ଡିତ ଓ ସଙ୍ଗୀତଜ୍ଞ ତ୍ରିପୁରା ରାଜଦରବାରରେ ଷୋଡ଼ଶ ଶତାବ୍ଦୀରେ ସମବେତ ହୋଇଥିଲେ । ଆସାମର ଶଙ୍କରଦେବ ୧୪୪୯-୧୫୬୮ (ଆସାମରେ ବୈଷ୍ଣବଧର୍ମର ପ୍ରବର୍ତ୍ତକ) ମୈଥିଳୀ ଭାଷା ପ୍ରଚଳନ କରିଥିଲେ । ଏହିପରି କେତେକ ଘଟଣାରୁ ଜଣାଯାଏ, ଆସାମ ଓ ମିଥିଳା ମଧ୍ୟରେ ବହୁ ଯୁଗରୁ ସାଂସ୍କୃତିକ ସମ୍ପର୍କ ପ୍ରତିଷ୍ଠିତ

ହୋଇଥିଲା । ଅସମୀୟାଁ ଓ ମୈଥିଳୀ ମଧ୍ୟରେ ଭାଷାଗତ ପ୍ରଭେଦ ଅନେକ; କିନ୍ତୁ ଶବ୍ଦପ୍ରକରଣରେ ଦୁଇ ଭାଷା ମଧ୍ୟରେ ସାମ୍ୟ ଅଧିକ ।

## ମୈଥିଳୀ ଓ ଓଡ଼ିଆ :

ଆଧୁନିକ ଓଡ଼ିଆ ମାଗଧୀ ପ୍ରାକୃତରୁ ଉତ୍ପତ୍ତି ଲାଭ କରିଥିଲା । ଏହାର ଐତିହାସିକ ବିପର୍ଯ୍ୟୟ ମାଗଧୀ ଭାଷା ସହିତ ସମ୍ପର୍କ ନ ରହିବାର ମୂଳ କାରଣ । ଏହା ସତ୍ତ୍ୱେ ମୈଥିଳୀ ଓ ଓଡ଼ିଆ ଭାଷାରେ କେତେକ ସାମ୍ୟ ଦେଖାଯାଏ । ଏହାର ଉଚ୍ଚାରଣଗତ ବିଷୟରେ ଏହା ଓଡ଼ିଆ ସହିତ ବଂଗଳା ଅପେକ୍ଷା ଅଧିକ ଘନିଷ୍ଠ ଭାବେ ସମ୍ପୃକ୍ତ ।

## ମୈଥିଳୀ ସାହିତ୍ୟରେ ଯୁଗ ବିଭାଗ :

ମୈଥିଳୀ ସାହିତ୍ୟର ଇତିହାସକୁ ମୁଖ୍ୟତଃ ତିନୋଟି ପର୍ଯ୍ୟାୟରେ ବିଭକ୍ତ କରାଯାଇପାରେ; ଯଥା—(୧) ପ୍ରାକ୍-ବିଦ୍ୟାପତି ଯୁଗ, (୨) ବିଦ୍ୟାପତି ଓ ସମସାମୟିକ କବି (କ) ୧୩୦୦-୧୬୦୦ ଖ୍ରୀ: ଅ:, (ଖ) ୧୭୦୦-୧୮୬୦ ଏବଂ (୩) ଆଧୁନିକ ସାହିତ୍ୟ—୧୮୬୦ ପରବର୍ତ୍ତୀକାଳ ।

### (୧) ପ୍ରାକ୍-ବିଦ୍ୟାପତି ଯୁଗ—

ଚର୍ଯ୍ୟାଗୀତି ଓ ଦୋହାକୋଷ :—ବୌଦ୍ଧ ସନ୍ନ୍ୟାସୀମାନଙ୍କ ମଧ୍ୟରୁ କେତେକ କବି ଥିଲେ । ସେମାନେ ନିଜର ଚିନ୍ତାକୁ ଗୀତି ମାଧ୍ୟମରେ ପ୍ରକାଶ କରୁଥିଲେ । ଏହାକୁ ଚର୍ଯ୍ୟାଗୀତି ବା ଦୋହା କୁହାଯାଉଥିଲା । ପରବର୍ତ୍ତୀ କାଳରେ ଦୋହାକୋଷ ସଂକଳିତ ହେଲା । ସେହି ବୌଦ୍ଧ ସନ୍ନ୍ୟାସୀମାନଙ୍କ ମଧ୍ୟରୁ ୨୩ରୁ ଊର୍ଦ୍ଧ୍ୱ ଖ୍ରୀ: ଅ: ୭୭୦ରୁ ଖ୍ରୀ: ଅ: ୧୦୨୭ ମଧ୍ୟରେ ପରିଦୃଷ୍ଟ ହୋଇଥିଲେ । ଏମାନେ ତାନ୍ତ୍ରିକ ବୌଦ୍ଧ ଧର୍ମକୁ ଗ୍ରହଣ କରିଥିଲେ । ଏହା ବୌଦ୍ଧ ଧର୍ମର ଏକ ପରିବର୍ତ୍ତିତ ଅବସ୍ଥା । ଫଳରେ ଏହା ନିଜର ମୌଳିକତା ହରାଇବସିଥିଲା ଏବଂ ଶୈବ ଓ ଶାକ୍ତ ତନ୍ତ୍ରଦ୍ୱାରା ପ୍ରଭାବିତ ହୋଇଥିଲା । ସେମାନେ ଯେଉଁ ଚର୍ଯ୍ୟା ସଂଗୀତ ଗାନ କରୁଥିଲେ, ଏଥିରେ ତତ୍କାଳୀନ ବହୁ ଦେଶଜ ଶବ୍ଦ ସ୍ଥାନ ପାଇଛି । ଏବେ ଏଥିମଧ୍ୟରୁ ମଧ୍ୟ କେତେକ ମୈଥିଳୀ କଥିତ ଭାଷାରେ ପ୍ରଚଳିତ ।

ଏହି ଚର୍ଯ୍ୟାଗୀତର ମୁକ୍ତକରେ ସ୍ୱର ସଂଯୋଜନା କରାଯାଇ ବୋଲା-ଯାଉଥିଲା । ଏଥିରେ ଗୀତିକବିତାର ଉପାଦାନ ସନ୍ତୋଷଜନକ ଭାବରେ ସ୍ଥାନ ପାଇଥିଲା ।

'ବର୍ଣ୍ଣରତ୍ନାକର' ଏକ ପ୍ରାମାଣିକ ଗ୍ରନ୍ଥ । ଜ୍ୟୋତିରୀଶ୍ୱର ଖ୍ରୀ ଅ: ୧୨୮୦ରେ ଜନ୍ମ ହୋଇଥିଲେ ଓ ଖ୍ରୀ: ଅ: ୧୩୪୦ରେ ଏହାକୁ ପ୍ରଣୟନ କରିଥିଲେ । ଏହା

*

ପ୍ରଥମ ଗଦ୍ୟ ରଚନା । ଏହା ଜ୍ଞାନାକୋଷ ଓ ଜଥକର ରୀତିକୁ ବହନ କରିଛି । ଏହା ସାତଟି କଲ୍ଲୋଳରେ ବିଭକ୍ତ; ଯଥା—ନଗରଜୀବନ, ରାଜପ୍ରାସାଦ, ଋତୁ ପର୍ଯ୍ୟାୟ, ଶିକାର ଓ ପ୍ରମୋଦ ଭ୍ରମଣ, ନୌକାଯାତ୍ରା, ସଙ୍ଗୀତାସ୍ୱାଦନ ଇତ୍ୟାଦି । ମାତ୍ର ଏହି ଗଦ୍ୟଶୈଳୀ ବିଦ୍ୟାପତିଙ୍କ ଅବଦାନ ପର୍ଯ୍ୟନ୍ତ ସ୍ଥାୟିତ୍ୱଲାଭ କରିପାରିଲା ନାହିଁ । ତେଣୁ ସେହି ଯୁଗର ଏକ ପ୍ରତିନିଧିସ୍ଥାନୀୟ ସାହିତ୍ୟ ସୃଷ୍ଟି ବୋଲି ଏହାକୁ କୁହାଯାଇପାରେ ମାତ୍ର ।

ଡ: ଜେ. କେ. ମିଶ୍ର ଏକ ହାସ୍ୟକର ନାଟକ 'ଧୂର୍ତ୍ତ ସମାଗମ' ନାମରେ ପାଇଛନ୍ତି । ମାତ୍ର ଏହା ସଂସ୍କୃତରୁ ସୃଷ୍ଟ, ଯଦିଓ ମୈଥିଳୀର କବିମାନେ ଏହାକୁ ଗ୍ରହଣ କରିଥିଲେ ।

### (୬) ବିଦ୍ୟାପତି ଯୁଗ :

କର୍ଣ୍ଣାଟକର ପ୍ରଥମ ଶାସକ (ନାନ୍ୟଦେବ) ହିଁ ବିଦ୍ୟାପତିଙ୍କ ରଚନାରେ ସ୍ୱର-ସଂଯୋଜନା କରି 'ରାଗିଣୀ' ଦେଲେ । ଏହାକୁ ଗୀତଗୋବିନ୍ଦ ଏବଂ ରାଜଶେଖରଙ୍କର 'କାବ୍ୟ ମୀମାଂସା' ସହିତ ତୁଳନା କରାଯାଇପାରେ । ବିଦ୍ୟାପତିଙ୍କର ରଚନାର ଅର୍ଦ୍ଧାଧିକ ଗୁରୁତ୍ୱ ରହିଛି ସଂଗୀତରେ ।

ଏ ସମୟରେ ସାହିତ୍ୟର ଅନ୍ୟ ଏକ ଲକ୍ଷଣ ହେଲା—ଜାତୀୟତା । 'ଅପଭ୍ରଂଶ' ମାଧ୍ୟମରେ ବିଭିନ୍ନ ଚିନ୍ତା ରୂପ ପାଇବାକୁ ଲାଗିଲା । ରାଜଶେଖରଙ୍କର 'କାବ୍ୟ ମୀମାଂସା' ରାଜଦରବାରରେ ଅପଭ୍ରଂଶ ଉପରେ ଆଲୋକପାତ କରାଗଲା । ଏପରିକି ସିଦ୍ଧମାନେ ଯେଉଁମାନେ ଗୀତିକବିତା ଲେଖୁଥିଲେ ତାହା ପୂର୍ଣ୍ଣତଃ ବ୍ୟକ୍ତିଗତ 'ଡାକବଚନ' ସାହିତ୍ୟ ସୃଷ୍ଟି ମଧ୍ୟରେ ଗଣ୍ୟ । ଏହି ପରିବେଶରେ ବିଦ୍ୟାପତି ସଂସ୍କୃତଠାରୁ ମୈଥିଳୀ ଅପଭ୍ରଂଶରେ ଲେଖିବାକୁ ମନସ୍ଥ କଲେ ।

ପ୍ରେମ ସଂଗୀତ ଲେଖିବାର ଏହା ଏକ କାରଣ । ଏହି ଗୀତଗୁଡ଼ିକ କ୍ଷୁଦ୍ର । ଏଥିରେ ଭାବପ୍ରବଣମୂଳକ ଅନୁଭୂତମାନ ସ୍ଥାନ ପାଇଥାଏ । ତେଣୁ ଉଭୟ ସାହିତ୍ୟକ ଓ ସାଂଗୀତିକ ମୂଲ୍ୟ ଏଥିରେ ରକ୍ଷିତ ହେବାରୁ କୌଣସି ଏକ ଶ୍ରେଣୀ ମଧ୍ୟରେ ଏହା ଆବଦ୍ଧ ନ ହୋଇ ସର୍ବସାଧାରଣଙ୍କ ମଧ୍ୟରେ ଲୋକପ୍ରିୟତା ଲାଭ କରିଥିଲା ।

ମୈଥିଳୀ ସାହିତ୍ୟରେ ଭାରତୀୟ ସାହିତ୍ୟର ପରଂପରା ଅନୁଯାୟୀ ବିଭିନ୍ନ ବିଭାଗ ଦେଖାଯାଏ ; ଯଥା - ଅଡ଼ିକ ବିଳାସ, ଛନ୍ଦ ଅଳଙ୍କାର ମଞ୍ଜୁଷା, ଅଲଂକୃତ ବୋଧ, ବୃତ୍ତି ପ୍ରକାଶ । ଏତାଦୃଶ ପ୍ରାଚୀନ ପୁସ୍ତକ ମୈଥିଳୀ ଭାଷାରେ ଲେଖାଯାଇଥିଲା । ଏହି ପୁସ୍ତକ ଗଦ୍ୟରେ ଲେଖା ହୋଇଥିଲା । ପଦ୍ୟ ଓ କାବ୍ୟ ବିଭାଗରେ ମଧ୍ୟ ଯଥେଷ୍ଟ ସିଦ୍ଧି ଲାଭ ହୋଇଥିବାର ଜଣାଯାଏ । ମୈଥିଳୀ ସାହିତ୍ୟରେ ତିନ

ପ୍ରକାର ମହାକାବ୍ୟ ଦେଖାଯାଏ । ପ୍ରଥମତଃ ଅନୁବାଦ, ଦ୍ୱିତୀୟତଃ ମୌଳିକ କୃଷ୍ଣଜନ୍ମ ଶୀର୍ଷକ କାବ୍ୟ । ମୈଥିଳୀ ସାହିତ୍ୟରେ ଅଚ୍ୟୁତାନନ୍ଦ ଦତ୍ତଙ୍କର 'ମହାଭାରତ' ଓ 'ରଘୁବଂଶ'; ଦ୍ୱିତୀୟତଃ ବଦ୍ରିନାଥ ଝାଙ୍କର 'ଏକାବଳୀ ପରିଣୟ', ରଘୁନନ୍ଦନ ଦାଶଙ୍କର 'ସୁଭଦ୍ରା ହରଣ', ତନ୍ତ୍ରନାଥ ଝାଙ୍କର 'କୀଚକବଧ' । ଏହି ସବୁ କାବ୍ୟ ବ୍ୟତୀତ ଖଣ୍ଡକାବ୍ୟ ମଧ୍ୟ ମୈଥିଳୀ ସାହିତ୍ୟରେ ବିଶେଷ ଦେଖାଯାଏ । ମହାକାବ୍ୟ ଓ ଖଣ୍ଡକାବ୍ୟ ମଧ୍ୟରେ ବର୍ଣ୍ଣନା, ବିସ୍ତୃତି ଓ ବିଷୟବସ୍ତୁରେ ପ୍ରଭେଦ ଦେଖାଯାଏ । ମୈଥିଳୀରେ ଖଣ୍ଡକାବ୍ୟ ଛଅ ପ୍ରକାରର—(୧) 'ମେଘଦୂତ', 'ଋତୁସଂହାର' (ସଂସ୍କୃତ କାବ୍ୟର ଅନୁବାଦ); (୨) ଲାଲ ଦାଶଙ୍କର 'ଗଂଗାଲହରୀ', ଗଣେଶ ଖଣ୍ଡଙ୍କର ଗୁଣବନ୍ତ, ଲାଲ ଦାଶଙ୍କର 'ଗଜଗ୍ରହଧାରି', ରଘୁନନ୍ଦନ ଦାଶଙ୍କର 'ବୀର ବାଳକ'; (୩) କାବ୍ୟ ବା ଆହ୍ୱାନକାବ୍ୟ; (୪) ବିରୁଦାବଳୀ; (୫) ଖଣ୍ଡ-କାବ୍ୟ, ସାମୟିକ ଦୀର୍ଘ ବର୍ଣ୍ଣନାତ୍ମକ କବିତା; ଯଥା—କାଶୀକାନ୍ତ ମିଶ୍ରଙ୍କର 'କବିର ଗୀତା' ଓ (୬) ଖଣ୍ଡକାବ୍ୟ-ସାମୟିକ ଘଟଣାକୁ କେନ୍ଦ୍ର କରି ବର୍ଣ୍ଣନାତ୍ମକ କାବ୍ୟ; ଯାହାର ପରିଣତି ନାୟକ ଓ ନାୟିକାର ବିବାହରେ ସମାହିତ ହୁଏ । ଊନବିଂଶ ଶତାବ୍ଦୀରେ ବହୁ କବି ଏହି ଜାତୀୟ କାବ୍ୟ ରଚନା କରିଥିଲେ । ମିଥିଳାର ଲୋକସାହିତ୍ୟ ମଧ୍ୟ ଖୁବ୍ ସମୃଦ୍ଧ । ଦୀର୍ଘ ରୋମାଞ୍ଚଧର୍ମୀ କାହାଣୀ ଗଦ୍ୟରେ ରଚିତ ହୋଇଥାଏ । ଏପରି ରଚନାକୁ ଗୀତକଥା ବୋଲି ଅଭିହିତ କରିଥାନ୍ତି; ଯଥା—ବିହୁଲା ଗୀତ, ଦୀନାଭଦ୍ରିକ ଗୀତ, ସତୀ କୁମାରିକା ଗୀତ । ମୈଥିଳୀ ସାହିତ୍ୟରେ ଆଉର ଏକ ସମୃଦ୍ଧ ଶାଖା ହେଉଛି ଗୀତିକାବ୍ୟ । ଏହି ସବୁ ଗୀତିକାବ୍ୟରେ ସଂଗୀତର ପ୍ରାଧାନ୍ୟ ସ୍ୱୀକୃତ । ମିଥିଳାରେ କବିମାନେ ଗୀତିକାବ୍ୟ ରଚନା କରି ସେମାନଙ୍କର ପାରଂପରିକ କର୍ତ୍ତବ୍ୟ ସଂପନ୍ନ କରିଥାନ୍ତି ବୋଲି ବିଶ୍ୱାସ । ଯଦି କୌଣସି କବିର ରଚନା ଗାନ କରାଯାଇ ନପାରେ ତାହେଲେ ତାହାର ଉତ୍କର୍ଷ କେହି ସ୍ୱୀକାର କରିନଥାନ୍ତି । ମୈଥିଳୀ ଗୀତିକାବ୍ୟର ପ୍ରକାରଭେଦ ମଧ୍ୟ ଦେଖାଯାଏ । ଚର୍ଯ୍ୟାଗୀତିରେ ଏହିପରି ଗୀତର ପ୍ରଭାବ ସମସ୍ତେ ସ୍ୱୀକାର କରନ୍ତି । ଜୟଦେବଙ୍କର ଅମର କୃତି ଗୀତଗୋବିନ୍ଦରେ ମଧ୍ୟ ଏହି ଗୀତିକାବ୍ୟର ବୈଶିଷ୍ଟ୍ୟ ପ୍ରତିଫଳିତ । ମୈଥିଳୀ ଗୀତିସାହିତ୍ୟରେ ସମସ୍ତ ଧାରାରେ ସଫଳତାର ସହିତ ବିଦ୍ୟାପତି ପ୍ରଥମେ ଲେଖନୀ ଚାଳନା କରିଥିଲେ । ମୈଥିଳୀ ଗୀତିକବିତାର କେତେଗୁଡ଼ିଏ ଲକ୍ଷଣ; ଯଥା—ଏହାର ସଂଗୀତମୟତା, ଏହାର ପ୍ରତ୍ୟକ୍ଷ ଓ ସ୍ୱତଃ-ସ୍ଫୂର୍ତ୍ତି ପ୍ରଭାବ, ଏହାର ବିସ୍ତୃତି, ଦୈନନ୍ଦିନ ଜୀବନର ଅନୁଭୂତି ଓ ଘଟଣାର ବର୍ଣ୍ଣନା ପୃଷ୍ଠଭୂମିରେ ସଂସ୍କୃତ କାବ୍ୟର ପ୍ରଭାବ ଶେଷରେ ଭଣିତା । ଏହାହିଁ ମୈଥିଳୀ ଗୀତିସାହିତ୍ୟର ସଂକ୍ଷିପ୍ତ ଲକ୍ଷଣ ।

## ପ୍ରାଚୀନ ମୈଥିଳୀ ଗଦ୍ୟ :

ଗଦ୍ୟର ବିଭିନ୍ନ ଧାରା ମୈଥିଳୀ ସାହିତ୍ୟରେ ପରିଦୃଷ୍ଟ । ସର୍ବାପେକ୍ଷା ପ୍ରାଚୀନ ଗଦ୍ୟର ନିଦର୍ଶନ ହେଉଛି ବର୍ଣ୍ଣନା । ଏଥିରେ କେତେକ ବର୍ଣ୍ଣନାର ଏକତ୍ରୀକରଣ ହୋଇଥାଏ । ଏହାର ଶ୍ରେଷ୍ଠ ଉଦାହରଣ ହେଉଛି ଜ୍ୟୋତିରୀଶ୍ୱରଙ୍କର 'ବର୍ଣ୍ଣରତ୍ନାକର' । ଜୈନଙ୍କର ପ୍ରାକୃତ ସାହିତ୍ୟରେ ଏହି ବର୍ଣ୍ଣନାଶୀର୍ଷକ ଗଦ୍ୟ ରଚନାର ପ୍ରଥମ ସଙ୍କେତ ଦେଖିବାକୁ ମିଳେ । କୀର୍ତ୍ତନିଆ ନାଟକ ଓ ନେପାଳୀୟ ନାଟକରେ ଏହି ବର୍ଣ୍ଣନାଶୀର୍ଷକ ରଚନା ବ୍ୟବହୃତ ହୋଇଥାଏ । ମୈଥିଳୀ ସାହିତ୍ୟରେ ଏହା ବିଶେଷ ଲୋକପ୍ରିୟ । ମୈଥିଳୀ ସାହିତ୍ୟର ମଧ୍ୟଯୁଗରେ ଆଉ ଦୁଇ ପ୍ରକାର ଗଦ୍ୟରଚନା ଦେଖାଯାଇଥିଲା । ପ୍ରଥମଟି ନାଟକୀୟ ଗଦ୍ୟ ବା ନାଟକ ଉପଯୋଗୀ ଗଦ୍ୟ ଓ ଦ୍ୱିତୀୟଟି ତଥ୍ୟ ଉପଯୋଗୀ ଗଦ୍ୟ । ନାଟକରେ ବ୍ୟବହୃତ ଗଦ୍ୟର ଶୈଳୀ ସାଧାରଣତଃ ଆବେଗଧର୍ମୀ ଓ ବିବରଣୀମୂଳକ । ତଥ୍ୟ ଉପଯୋଗୀ ମଧ୍ୟଯୁଗ ସାହିତ୍ୟରେ ବିଶେଷ ଦେଖାଦେଇଥିଲା । ଆଧୁନିକ କାଳର ଗଦ୍ୟ ବ୍ୟାପକ ଓ ବିସ୍ତୃତ । ପ୍ରଥମଟି ସମ୍ବାଦଧର୍ମୀ ଗଦ୍ୟ; ଯଥା—ଆଲୋଚନା, ନିବନ୍ଧ, ଦର୍ଶନ, ଧର୍ମ, ଇତିହାସ, ଜୀବନୀ ଓ ଦ୍ୱିତୀୟ – ସାମୟିକ ଦାନ ଉଦ୍ଦେଶ୍ୟରେ ରମ୍ୟ ରଚନା—ପ୍ରବନ୍ଧ, ଉପନ୍ୟାସ ଓ ଗଳ୍ପ ।

## ଭ୍ରମଣ ସାହିତ୍ୟ :

ବିଂଶ ଶତାବ୍ଦୀ ପ୍ରାରମ୍ଭରେ ଏମ୍. ଏମ୍. ମୁରଲୀଧର ଝା, ଏମ୍. ଏମ୍. ସୁଧାକର ଦ୍ୱିବେଦୀ ଏବଂ ଚେତନାଥ ଝା ଭ୍ରମଣଯାତ୍ରା ଲେଖି ମୈଥିଳୀ ଭ୍ରମଣ-ଯାତ୍ରା ସାହିତ୍ୟକୁ ସୁଦୃଢ଼ କଲେ । ପରେ ପରେ ରମାବଲ୍ଲଭ ଶର୍ମା, ଭୁବନେଶ୍ୱର ଝା, ଆନନ୍ଦ ଝା ଏବଂ ରମାନାଥ ଝା ଆଦି ନେପାଳ, ମାନସରୋବର, ହରଦ୍ୱାର ଖୁମ୍ବ ଏବଂ କାଶୀ-ଯଜ୍ଞ ପ୍ରଭୃତି ରଚନା କରିଥିଲେ ।

ନୂତନ ଲେଖକ ମଧ୍ୟରେ ଡ: ଜୟକାନ୍ତ ମିଶ୍ର, ଜୀବକାନ୍ତ, ଭୂମି ନାରାୟଣ ଝା, ଅମରଜା, ଡ: ଜୟମନ୍ତ ମିଶ୍ର, ଡ: ଶୈଳେନ୍ଦ୍ର ମୋହନ ଝା ଏବଂ ଭାଗ୍ୟନାରାୟଣ ଝା ପ୍ରଭୃତି ଭାରତର ବିଭିନ୍ନ ସ୍ଥାନର ଭ୍ରମଣକାହାଣୀ ରଚନା କରିଛନ୍ତି ।

ବିଦେଶଯାତ୍ରା କରି କୁମାର, ଗଙ୍ଗାନନ୍ଦ ସିଂହ, ଡ: ସୁଭଦ୍ରା ଝା, ଡ: ସଚ୍ଚିନାଥ ଝା, ସରୋଜକାନ୍ତ ଝା ଏବଂ ଜଗଦୀଶଚନ୍ଦ୍ର ଝା ପ୍ରଭୃତି ଭ୍ରମଣଯାତ୍ରା ରଚନା କରିଛନ୍ତି ।

## ଜୀବନୀ :

ଦୁଇଜଣଙ୍କ ପୂର୍ଣ୍ଣାଙ୍ଗ ଜୀବନୀ ପୁସ୍ତକ ଆକାରରେ ମିଳୁଛି । ସେମାନେ ହେଲେ -- ଗୋପାଳଜୀ ଝା ଓ ଗୁରୁଗୋବିନ୍ଦ ସିଂହ । ମାତ୍ର ଅଧିକାଂଶ ଜୀବନୀ 'ମିହିର' ଏବଂ 'ବୈଦେହୀ' ପ୍ରଭୃତି ପତ୍ରିକାରେ ପ୍ରକାଶିତ ହୋଇଛି ।

## ପ୍ରବନ୍ଧ :

ଏମ୍. ଏମ୍. ମୁରଲୀଧର ଝାଙ୍କର ସଂପାଦକୀୟ ପ୍ରବନ୍ଧ ମୈଥିଲୀ ପ୍ରବନ୍ଧ ସାହିତ୍ୟରେ ଏକ ଦୃଷ୍ଟାନ୍ତଯୋଗ୍ୟ ଉଦାହରଣ । ପରେ ପରେ ଭୋଲାଲାଲ ଦାସ (ଭାରତୀ), ଭୁବନ (ବିଭୂତି), ସୁମନ (ମିଥିଳା ମିହିର)ର ସମ୍ପାଦକମାନେ ଏହାକୁ ଉଜ୍ଜୀବିତ କରି ରଖିଥିଲେ । ପ୍ରବୋଧ ନାରାୟଣ ସିଂ (ମିଥିଳା ଦର୍ଶନ), ସୁଧାଂଶୁ ଶେଖର ଚୌଧୁରୀ (ମିଥିଳା ମିହିର), କୃଷ୍ଣକାନ୍ତ ମିଶ୍ର ପ୍ରଭୃତି ପରେ ପରେ ପ୍ରବନ୍ଧ ରଚନା କଲେ ସମ୍ପାଦକୀୟ ମାଧ୍ୟମରେ ।

ଡ଼ ଉମେଶ ମିଶ୍ର, ଡ଼: ଅମରନାଥ ଝା, ଭୁବନଜୀ, ରାମଭଦ୍ର ଝା, କୁମାର ଗଙ୍ଗାନନ୍ଦ ସିଂହ, ଜୀବନାଥ ରାୟ, ଜୟାନନ୍ଦକୁମାର ପ୍ରଭୃତି ଏ. ଭ. ମୈଥିଲୀ ସାହିତ୍ୟ ପରିଷଦରେ ବକ୍ତୃତା ଦେଇଥିଲେ ଓ ପରେ ଏ ସମସ୍ତ ଲିଖିତ ଆକାରରେ ପ୍ରକାଶ ପାଇଥିଲା । କଥନଭଙ୍ଗୀ ଉପରେ ଅଧିକ ଗୁରୁତ୍ୱ ଦେଉଥିବା ପ୍ରବନ୍ଧକୁ ଏବେ ଅଧିକ ଦୃଷ୍ଟି ପ୍ରଦାନ କରାଯାଉଛି । ପଣ୍ଡିତ କ୍ଷେମାଧାରୀ ସିଂହଙ୍କର 'ନବନ୍ଧଚନ୍ଦ୍ରିକା' ଏହାର ଏକ ପ୍ରକୃଷ୍ଟ ଉଦାହରଣ ।

ପୂର୍ବରୁ ପ୍ରବନ୍ଧମାନ ମୈଥିଲୀ ମହାସଭାର ବିଭିନ୍ନ ସମସ୍ୟା ଉପରେ ସୋନେଲାଲ, ଧନୁଗାନ୍ଧାରୀ ଲାଲ ଦାସ ଏବଂ ଦୁଖ ମୋଚାନ ଝା ପ୍ରମୁଖ ଲେଖୁଥିଲେ । ମାତ୍ର ପରେ ପଣ୍ଡିତ ଦୀନବନ୍ଧୁ ଝା (ବ୍ୟାକରଣ), ଗଣପତି ସିଂହ (ଇତିହାସ), ଡ଼: ଉମେଶ ମିଶ୍ର (ସଂସ୍କୃତି), ଭୋଲା ଲାଲ ଦାସ (ଭାଷା ଓ ରାଜନୀତି), ନରେନ୍ଦ୍ରନାଥ ଦାସ (ବିଦ୍ୟାପତିଙ୍କ ଉପରେ ସାହିତ୍ୟିକ ଆଲୋଚନା, ଗୋବିନ୍ଦ ଦାସଙ୍କ ଉପରେ ଆଲୋଚନା), ରମାନାଥ ଝା (ଜୀବନୀ ଓ ପ୍ରସିଦ୍ଧ କବିମାନଙ୍କ ଉପରେ ଆଲୋଚନା), ଲକ୍ଷ୍ମୀପତି ସିଂହ (ଧର୍ମ ଓ ସାହିତ୍ୟ), ସୁମନ (ସାହିତ୍ୟ ଓ ଅଲଙ୍କାର), ବଚ୍ଚା ଠାକୁର (ଭାଷା), ଡ଼: ଜୟକାନ୍ତ ମିଶ୍ର (ଇତିହାସ ଭାଷା), ପ୍ରବୋଧ ନାରାୟଣ ସିଂ (ରାଜନୀତି), ବାବୁ ସାହେବ ଚୌଧୁରୀ (ରାଜନୀତି), ଡ଼: ଶୁଭକାନ୍ତ ମିଶ୍ର (ଭାଷା) ଏବଂ ଡ଼: ଜୟଧାରୀ ସିଂହ (ଇତିହାସ, ରାଜନୀତି, ଭାଷା ସମସ୍ୟା) ପ୍ରଭୃତି ଏ ଦିଗରେ ଲେଖନୀ ଚାଳନା କଲେ ।

କେତେକ ବିସ୍ତୃତ ବିଷୟରେ ଆଲୋଚନା; ଯଥା — ଆଧୁନିକବାଦ, ଗଣତନ୍ତ୍ର, ପଞ୍ଚବାର୍ଷିକ ଯୋଜନା, ଗାନ୍ଧିବାଦ, ସରସ୍ୱତୀପୂଜା ପ୍ରଭୃତି ବିଷୟରେ ମଧ୍ୟ

ରହିଛି । ବିଜ୍ଞାନ, ସଂସ୍କୃତ ବିଷୟରେ ବିଭିନ୍ନ ଆଲୋଚକ ଆଲୋଚନା କରୁଛନ୍ତି । ପଣ୍ଡିତ ଜୀବନାଥ ଝା ଜ୍ୟୋତିର୍ବିଜ୍ଞାନ, ଡ: ସଚ୍ଚିନାଥ ଝା ରସାୟନ ବିଜ୍ଞାନ, ଡ; ବିଦ୍ୟାପତି ସିଂହ ଶିଳ୍ପ ବିଷୟରେ ଆଲୋଚନା କରୁଛନ୍ତି ।

ବ୍ୟକ୍ତିଗତ ପ୍ରବନ୍ଧ; ଯଥା—ଆନାସିଡ଼ାନା, ଇମାରି ଠେଙ୍ଗା, ଜୀବନ, ପଥହିରାଥି ସୁଧା ପ୍ରଭୃତି ଅଗ୍ରଗଣ୍ୟ ।

ଏବେ ସବୁଠାରୁ ବଡ଼ ପଦକ୍ଷେପ ଏ ଦିଗରେ ହେଲା—ସାହିତ୍ୟିକ ଅଧ୍ୟୟନ ଓ ସମାଲୋଚନା । ଶିକ୍ଷକ; ଯଥା—ଡ: ରମାନାଥ ଝା, ଈଶାନାଥ ଝା, ରମାକର ଜା, ଜୟଧାରି ସିଂହ ଓ ଅନ୍ୟ କେତେକ ଏ ଦିଗରେ ଲେଖନୀଗୁଳନା କରିଛନ୍ତି । ଏ ଦିଗରେ ବିଭିନ୍ନ ସଂକଳନ; ଯଥା—ପଞ୍ଚାମୃତ, ରଚନାସଂଗ୍ରହ, କାବ୍ୟ ମୀମାଂସା, ପ୍ରବନ୍ଧ ସଂଗ୍ରହ, ନିବନ୍ଧମାଳା ଏବଂ ଗଦ୍ୟ ସଂଗ୍ରହ ପ୍ରଭୃତି ।

ବିଭିନ୍ନ ବିଶ୍ୱବିଦ୍ୟାଳୟରେ ପ୍ରାୟ ୧୨ଟି ଗବେଷଣାତ୍ମକ ପ୍ରବନ୍ଧ ଉପସ୍ଥାପିତ ହେଲାଣି । ଡ: ଜୟକାନ୍ତ ମିଶ୍ର (ମୈଥିଳୀ ସାହିତ୍ୟର ଇତିହାସ), ଡ: ସୁଭଦ୍ରା ଝା (ମୈଥିଳୀ ଭାଷାର ଗଠନ), ଡ: ଜୟଧାରି ସିଂହ (ବୌଦ୍ଧଗଣ ମେ ତାନ୍ତ୍ରିକ-ସିଦ୍ଧାନ୍ତ) ଏବଂ ଡ: ଲୋକନାଥ ଝା (ଲୋକଗୀତ) ଏ ସମସ୍ତ ପ୍ରକାଶିତରୂପରେ ମିଳୁଛି । ଶୈଳେନ୍ଦ୍ର ମୋହନ ଝା, ଗୀସଜା, ବିଶ୍ୱେଶ୍ୱର ମିଶ୍ର, ଅମର୍ଷ ପାଠକ ଗଦ୍ୟ, ନାଟକ; ଅମରନାଥ ଝା, ପରମେଶ୍ୱର ମିଶ୍ର ପ୍ରଭୃତି ମୈଥିଳୀ କବିତା, ଗଦ୍ୟ, ନାଟକ ଆଦି ଗୁରୁତ୍ୱପୂର୍ଣ୍ଣ ବିଷୟରେ ଲେଖୁଛନ୍ତି । କେତେକ ହିନ୍ଦୀ ସମୀକ୍ଷକଙ୍କ ଦାନ ମଧ୍ୟ ଏ ଦିଗରେ ସ୍ମରଣୀୟ । ସେମାନେ ହେଲେ ପୂର୍ଣ୍ଣାନନ୍ଦ ଦାସ ଏବଂ ଲଳିତେଶ୍ୱର ଝା ପ୍ରଭୃତି ।

**ଆଧୁନିକ ଗଦ୍ୟ :**

ଆଧୁନିକ ଗଦ୍ୟଶୈଳୀ ସୃଷ୍ଟି କରିବାରେ ପତ୍ରପତ୍ରିକାମାନଙ୍କର ଦାନ ଅପରିସୀମ । ପ୍ରଥମେ ଚନ୍ଦ ଝା ମୈଥିଳୀ ସାହିତ୍ୟରେ ଏକ ସ୍ୱାତନ୍ତ୍ର୍ୟ ଆଣିବାକୁ ଉଦ୍ୟମ କରିଥିଲେ । ମୈଥିଳୀ ମହାସଭା ଏବଂ ମୈଥିଳୀ ହିତସାଧନ (୧୯୦୫), ମୈଥିଳୀ ମୋଦା (୧୯୦୬), ମୈଥିଳୀ ମିହିର (୧୯୦୮) ଆଦି ସ୍ଥାପିତ ଓ ପ୍ରକାଶିତ ହେବାକୁ ଲାଗିଲା । 'ମୈଥିଳୀ ହିତସାଧନ' ଅଧିକ ସମୟ ଜୀବିତ ରହି ନପାରିଲେ ମଧ୍ୟ ଆଧୁନିକ ମୈଥିଳୀ ସାହିତ୍ୟରେ ଏହାର ଭୂମିକା ଗୁରୁତ୍ୱପୂର୍ଣ୍ଣ । 'ମୈଥିଳୀ ମୋଦା' ୧୪ ବର୍ଷ ପ୍ରକାଶ ପାଇଥିଲା । ୨ୟ ଥର ୧୯୩୭ରେ ପ୍ରକାଶ ପାଇଥିଲା; ମାତ୍ର ୧୯୪୧ରେ ସଂପୂର୍ଣ୍ଣ ବନ୍ଦ ହୋଇଗଲା । 'ମୈଥିଳୀ ମିହିର' (ପୂର୍ବରୁ ମାସିକ) ପାଟଣାକୁ ଆସିଲା ପରେ ସାପ୍ତାହିକ ହେଲା ।

୧୯୨୦ ପରେ ମୈଥିଳୀ ପ୍ରଭା, ମୈଥିଳୀ ପ୍ରଭାକର, ଶ୍ରୀ ମୈଥିଳୀ ମିଥିଳା ଏବଂ ମିଥିଳା ମିତ୍ର ଆଦି ପ୍ରକାଶ ପାଇଥିଲା । ମାତ୍ର ୧୯୩୨ ବେଳକୁ କେହି

ଜୀବିତ ନଥିଲେ । ୧୯୩୫-୫୦ ମଧ୍ୟରେ ୭ଟି ପତ୍ରିକା ପ୍ରକାଶ ପାଇଲା— ଆଜମୀରରେ ମୈଥିଳୀ ବନ୍ଧୁ ଏବଂ ମୈଥିଳୀ ଯୁବକ ଆଗ୍ରାରେ, ଝାନ୍ସିରେ ଜୀବନ ପ୍ରଭା, ଦରଭଙ୍ଗାରେ ଭାରତୀ ଏବଂ ମୈଥିଳୀ ସାହିତ୍ୟ-ପତ୍ର ଏବଂ ମୁଜାଫରପୁରରେ ବିଭୂତି । ଅନ୍ୟ ପତ୍ରିକାଗୁଡ଼ିକ ହେଲା - ସ୍ୱଦେଶ, ଚଉପଦୀ, ପଲ୍ଲବ, ଇଜୋତ୍ସା, ଅଭିଜ୍ଞାନ, ମୈଥିଳୀ (୧୯୫୬), ମୈଥିଳୀ ସେବକ, ଉଦୟନ, ନିର୍ମାଣ, ଧିୟାପୁତା, ମିଥିଳାଦୂତ, ମିଥିଳା ଆମର ଏବଂ କୃଷ୍ଣଭବନ ପତ୍ରିକା ।

୪ଟି ପତ୍ରିକା ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ—ବଟୁକ (ପ୍ରୟାଗ— ୧୯୪୪ ଠାରୁ), ବୈଦେହୀ, (ଦରଭଙ୍ଗା—୧୯୫୦ ଠାରୁ), ମୈଥିଳୀ ଦର୍ଶନ (୧୯୫୩), ଆଖର ଏବଂ ମୈଥିଳୀ କବିତା (କଲିକତା) 'ସୋନା କା ମାଟି'ର କେତେକ ସଂଖ୍ୟା ଏ ଦିଗରେ ସ୍ମରଣୀୟ ମଧ୍ୟ ।

ମୈଥିଳୀ ମିହିର ଓ ମୈଥିଳୀ ସାହିତ୍ୟପତ୍ରର ଏକାବଳୀ ପରିଣୟ, ଉଦୟନ କଥା, ଚନ୍ଦ କା ଲଡ଼ୁ, ଶୃଙ୍ଗାର ଭଜାନାବଳୀ (ଗୋବିନ୍ଦ ଦାସ) ଇତ୍ୟାଦିରୁ ଆଧୁନିକ ମୈଥିଳୀ ସାହିତ୍ୟର ଧାରା ସୁସ୍ପଷ୍ଟ ହୁଏ ।

କ୍ରମବିକଶିତ ସ୍ତର—ପ୍ରଥମେ ମୈଥିଳୀ ଗଦ୍ୟ ଅନୁବାଦ ଗଳ୍ପ 'ପୁରୁଷ ପରୀକ୍ଷା'ରୁ ଆରମ୍ଭ । ତାହାପରେ ଭୁଲାପତି ସିଂହ, ମୁକୁନ୍ଦ ଝା ବକ୍ସି, ପରମେଶ୍ୱର ଝା, ଡ: ଗଙ୍ଗାନାଥ ଝା, ପଣ୍ଡିତ କ୍ଷେମଧାରୀ ସିହ୍ନା, ଡ: ଉମେଶ ମିଶ୍ର, ପ୍ରଫେସର ରମାନାଥ ଝା ଏବଂ ଅନ୍ୟମାନେ ଏ ଦିଗରେ ପଦକ୍ଷେପ ନେଇଥିଲେ ।

## କଥା ସାହିତ୍ୟ :

ମୈଥିଳୀ ସାହିତ୍ୟରେ ଗଳ୍ପକଳା ପ୍ରଥମେ 'ପୁରୁଷ ପରୀକ୍ଷା' (ଚନ୍ଦ୍ର ଝା), ମିତ୍ରଲାଭ (ମୁରଲୀଧର ଝା), ଶକୁନ୍ତଳା (ପଣ୍ଡିତ କ୍ଷେମଧାରୀ ସିହ୍ନା), ନଳୋପାଖ୍ୟାନ ( ଡ. ଉମେଶ ମିଶ୍ର ), ଅଦ୍ଭୁତପର୍ବ ( ଗଣନାଥ ଝା ) ଇତ୍ୟାଦିରେ ପ୍ରକାଶ ପାଇଥିଲା ।

ପରବର୍ତ୍ତୀ ସ୍ତରରେ ଉଦୟନ କଥା, ବାରରୁଚି କଥା (ଉଭୟ ରାମନାଥ ଝାଙ୍କ ଦ୍ୱାରା ରଚିତ), ନରୋତ୍ତମ କଥା (ପଣ୍ଡିତ ଚେତନାଥ ଝା) ଇତ୍ୟାଦି ଗଦ୍ୟକାବ୍ୟ ରଚିତ ହୋଇଥିଲା ।

## ଉପନ୍ୟାସ :

ନିମ୍ନଲିଖିତ ଉପନ୍ୟାସମାନ ମୈଥିଳୀରେ ପ୍ରକାଶିତ—ନିର୍ଦ୍ଦୟୀ ଶାଶୁ (୧୯୧୪), ଶଶିକଳା (୧୯୧୫), କଳିଯୁଗୀ ସନ୍ନ୍ୟାସୀ ବା ଚକୋସଲନନ୍ଦ (୧୯୨୧), ପୁନର୍ବିବାହ (୧୯୪୭), ଦ୍ୱିରାଗମନ ରହସ୍ୟ (୧୯୪୫-୪୭) (ଏ ସମସ୍ତ ଜନସିଦାନ), ସୁମତି (୧୯୧୮) (ରାସବିହାରୀ ଲାଲଦାସ), ମନୁଷ୍ୟ କା ମୋଲ୍

(୧୯୨୦) (ଭୋଲା), ମିଥିଲା ଦର୍ପଣ (୧୯୨୫) (ପୁଣ୍ୟାନନ୍ଦ ଝା), ଚନ୍ଦ୍ରଗ୍ରହଣ (୧୯୩୨) (କାସୁନ), କନ୍ୟାଦାନ (୧୯୩୩) ଏବଂ ଦ୍ୱିରାଗମଣ (୧୯୪୫) (ଉଭୟର ରଚୟିତା ହରମୋହନ ଝା), କାମୁଦ (୧୯୩୬) ଲକ୍ଷ୍ମୀପତି ସିଂହ, ଅଶିଲଲି (୧୯୩୫) (କୁମାର ଗଙ୍ଗାନନ୍ଦ ସିଂହ), ମାଧବୀ-ମାଧବ (୧୯୩୫) (ସରୋଜା ଜୀ) ସୁଶୀଲା (ଗଙ୍ଗପତି ସିଂହ), ଭଲ ମାନୁସ (୧୯୪୪), ପଦ୍ମାସ (୧୯୬୬), (ଉଭୟର ରଚୟିତା—ଯୋଗାନନ୍ଦ ଝା), ଅସହାୟ୍ୟ ଜାୟା (୧୯୪୬) (ବ୍ରଜନନ୍ଦନ ଦାସ), ପାରୋ (୧୯୪୬) ନବତୁରିଆ (୧୯୫୪), ବାଲକନାମ (ସମସ୍ତ ଯାତ୍ରୀଙ୍କ ଦ୍ୱାରା ରଚିତ), ଜୟବାର (୧୯୪୬) (ଶ୍ରଦ୍ଧାନନ୍ଦ ଝା), କୁମାର (୧୯୪୬) (ବ୍ୟାସ), ବଣମାନୁଷ (୧୯୪୭) (ଅବଧନାରାୟଣ ଝା), କାଲ (୧୯୪୮) (ଚତୁରନନା), ଚନ୍ଦ୍ରକଳା (୧୯୫୦) (ବଦ୍ରୀନାରାୟଣ ଦାସ), ପ୍ରତିମା (୧୯୫୦), ମଧୁଶ୍ରାବଣୀ (୧୯୫୦) (ଉଭୟ ଶୈଳେନ୍ଦ୍ରମୋହନ ଝାଙ୍କ ଦ୍ୱାରା ରଚିତ), ବୀରକନ୍ୟା (୧୯୫୦) (ଅମର ଜୀ), ଅନାଲ ପଥା (୧୯୫୪) ବିଦ୍ୟାପତି (୧୯୬୦), ଅର୍ଦ୍ଧନାରୀଶ୍ୱର (୧୯୬୭-୬୮) (ସମସ୍ତ ମଣିପଦ୍ମଙ୍କ ଦ୍ୱାରା ରଚିତ), ହସନାକ ହତ୍ୟା (୧୯୫୭), ରକ୍ତହର (୧୯୫୭) (ଉଭୟ ଗଣେଶଚନ୍ଦ୍ର ଝାଙ୍କ ଦ୍ୱାରା ରଚିତ), ଆନ୍ଦୋଳନ (୧୯୫୮), (ଚନ୍ଦ୍ରଧାରୀ ଲାଲଦାସ), ଦୁରଭକ ସତା (୧୯୫୭), ଆଦିକଥା (୧୯୫୮) ଆନ୍ଦୋଳନ (୧୯୬୭-୬୮) (ଉଭୟ ରାଜକମଲଙ୍କ ଦ୍ୱାରା ରଚିତ), ଗୃନୋଡାଇ (୧୯୫୯), ବ୍ରହ୍ମଣୀଶାଚ (୧୯୬୪) (ଉଭୟ ସୋମଦେବଙ୍କ ଦ୍ୱାରା ବିରଚିତ), ବିହାଡ଼ି ପାଟ ଆ ପାଥର (୧୯୬୦), ଖୋଣ୍ଡା ଓ ଚରାଇ (୧୯୬୫), (ଉଭୟ ମାୟାନନ୍ଦ ମିଶ୍ରଙ୍କ ଦ୍ୱାରା ରଚିତ), ତଲପଟା ଉପରପଟା (୧୯୬୧) (ଶେଫାଳୀ ବର୍ମା), ଭୋରୁ କଷ (୧୯୬୫), ଧୀରେନ୍ଦ୍ର (ରୂପକାନ୍ତ ଠାକୁର), ଦୁଧ-ଫୁଲ (୧୯୬୭), (ରେଣୁ), ପାଣିପଟା (୧୯୬୭), ଦୂଲୁହେସ୍ କା ବାଟ (୧୯୬୮), (ଉଭୟ ଜୀବନକାନ୍ତ) ବାଟକ ଭେଣ୍ଟା ଜୀନଗିକ ଗେନ୍ଟା (୧୯୬୭) ବିନ୍ଧେଶ୍ୱର ମଣ୍ଡଳ), ନୟନମଣି (୧୯୬୮) (ବିନୋଦ), ସେହନତା (୧୯୬୮) କୁମାର କାନ୍ତୁ ଇତ୍ୟାଦି । କବିମାନଙ୍କ ମଧ୍ୟରୁ ସୁମନଝା, ଇଶାନାଥ ଝା ଏବଂ ଭୁବନଜୀ ମାଲା, ସେବା ଓ ଅନ୍ୟ ଉପନ୍ୟାସମାନ ରଚନା କରିଛନ୍ତି ।

ମୈଥିଲୀ ଉପନ୍ୟାସ ଉପରେ ଏକ ଡି. ଲିଟ୍. ଥେସିସ୍ ବିହାର ବିଶ୍ୱ-ବିଦ୍ୟାଳୟ ଆନୁକୂଲ୍ୟରେ ଉପସ୍ଥାପିତ ହୋଇଛି ।

## କ୍ଷୁଦ୍ର ଗଳ୍ପ—

କ୍ଷୁଦ୍ର ଗଳ୍ପର ସୃଷ୍ଟି ଓ ପ୍ରକାଶ ଦିଗରୁ ମୈଥିଲୀ ଗଳ୍ପକୁ ୩ଟି ପର୍ଯ୍ୟାୟରେ ବିଭକ୍ତ କରାଯାଇପାରେ । ଯଥା—(କ) ୧୯୩୫-୫୦, (ଖ) ୧୯୫୦-୬୦, (ଗ) ୧୯୬୦ଠାରୁ ଏ ପର୍ଯ୍ୟନ୍ତ ।

ପ୍ରଥମ ଗୋଷ୍ଠୀ ମଧ୍ୟରେ 'ରାହୁର ଗୁମ୍ଫା', 'ଶୂନ୍ୟ' (ଉଭୟ ଭୁବନଜୀଙ୍କ ରଚିତ), 'ଅଗିଲହାର' କ୍ଷୁଦ୍ର ଗଳ୍ପ (କୁମାର ଗଙ୍ଗାନନ୍ଦ ସିଂହ) ସଂକଳନ; ଯଥା— ପ୍ରଣମ୍ୟ ଦେବତା, ରଙ୍ଗଶାଳା, ତୀର୍ଥଯାତ୍ରା, ଗୃହଁାଖ, ଏକାଦଶୀ ପ୍ରଭୃତି । ଏ ସମସ୍ତ ହରିମୋହନ ଝାଙ୍କ ଦ୍ୱାରା ରଚିତ । ମାସର ସାନ, ସାଲେନା, ଜମୁନା (ଉଭୟ ନଗେନ୍ଦ୍ର କୁମାରଙ୍କ ଦ୍ୱାରା ସଂକଳିତ) । କାବୁଲ (ଲକ୍ଷ୍ମୀପତି ସିଂହ), ବିଚଲଫୁଲ (ପ୍ରବୋଧ ନାରାୟଣ ଚୌଧୁରୀ), କୋରା (ତନ୍ତ୍ରନାଥ ଝା), ଅଶ୍ରୁକଣା (ମନମୋହନ ଝାଙ୍କ ଦ୍ୱାରା ସଂକଳିତ), ଜଲଖାରି (ଯୋଗାନନ୍ଦ ଝା), ରୁସଲ ଜାମାଏ, ଦେବୁ ବିହାରୀ (ସମସ୍ତ ବ୍ୟାସଙ୍କ ଦ୍ୱାରା ରଚିତ), ରେଖାଚିତ୍ର (ଉମାନାଥ ଝାଙ୍କ ଦ୍ୱାରା ରଚିତ), ପ୍ରୟାସ (ରମାକରଜୀଙ୍କ ଦ୍ୱାରା ସଂକଳିତ) ଏବଂ ଅନ୍ୟାନ୍ୟ । କେତେକ କବି ମଧ୍ୟ ଏ ଦିଗରେ ଲେଖନୀଚାଳନା କରିଥିଲେ । ଯାତ୍ରୀ, ଶେଖର, ବିକଲ ବିଶାରଦ ଏବଂ ଭୀମନାଥ (ଗୃଣକ୍ୟ ଏକ ଗଳ୍ପାଞ୍ଜଳି) ପ୍ରଭୃତି ଏ ଦିଗରେ ଲେଖନୀ ଚଳାଇଥିଲେ ।

ଦ୍ୱିତୀୟ ଗୋଷ୍ଠୀରେ ଗୋବିନ୍ଦ ଚୌଧୁରୀ, ବ୍ରଜକିଶୋର ବର୍ମା 'ମଣିପଦ୍ମ', ଗୋବିନ୍ଦଝା, ଅମରଝା, ଶୈଳେନ୍ଦ୍ର ମୋହନ ଝା, କୃଷ୍ଣ ପ୍ରବୋଧ ନାରାୟଣ ସିଂହ, ରମାକାନ୍ତ ଝା, ଧନେଶ୍ୱର ଝା, ଭବନାଥ ଝା, ବଦେହୀ, ମାୟାନନ୍ଦ ମିଶ୍ର, ଲଳିତା, ରାଜକମଲ, ସୋମଦେବ, ହଂସରାଜ, ଇନ୍ଦ୍ରାନନ୍ଦ ସିଂହ, କୃଷ୍ଣଗୋବିନ୍ଦ ସିଂହ, ଗୋବିନ୍ଦ ମୋହନ ଝା, କଳ୍ପନା ସାରନ, ଜୟାନନ୍ଦ, ରାମଦେବ ଝା ଇତ୍ୟାଦି ପ୍ରଧାନ । ବିଭିନ୍ନ ସଂକଳନ—ପଞ୍ଚଜନ୍ୟ, ରୂପଗର୍ଭିତା ଭାଙ୍ଗକା ହୋଡା, ଅଗି ଓ ମାମା ପାଥର, ପ୍ରତିନିଧି, ଲଲକା ପାଗ ଇତ୍ୟାଦି ପ୍ରକାଶ ପାଇ ଏହି ସ୍ତରର ଧାରା ପ୍ରକାଶ କରିଥିଲା ।

ମୈଥିଲୀ ମିହିର, ବୈଦେହୀ, ମିଥିଳା ଦର୍ଶନ, ଅଭିଜ୍ଞାନଞ୍ଜନ ଏବଂ ଆଖର ଆଦି ପତ୍ରିକାରେ ତୃତୀୟ ଗୋଷ୍ଠୀର ଗାଳ୍ପିକମାନଙ୍କର କୃତିମାନ ପ୍ରକାଶିତ । ମଧୁରମଣୀ (କାଂଣ), ନରସାନା ମାମାକା ସିନେମା, ପ୍ରଣତି କା ପଥପରୀ (ହରିମୋହନ ଝା'ଙ୍କ ଦ୍ୱାରା ରଚିତ), ଲଘୁକଥା (ଗୋବିନ୍ଦ ଝା), କାନ୍ତୁ ଭାଇକା କାଣ୍ଡୋର, ଭୂଖାନା ଭାଇକା କୁଣ୍ଡୁକା (ଅମରଙ୍କ ରଚିତ) ସାଧନ କା ମୋଲ, ଫ୍ରଣ୍ଟିୟରକା ପରୀ (ମଣିପଦ୍ମ), ଧରମରାଜ କା ଦୁର୍ଗତି (ନନ୍ଦନ), ମୋଟା, ଖଇଙ୍କା (ବଦେହୀ) ଦୁବାଶା କା ପରୀ, ବିମଲା ନା ପଟା ଆଛ (ରମାକାନ୍ତ ଝା), ବିଦ୍ୟା ଜଣାଣି, ନର୍କ (ଶୈଳେନ୍ଦ୍ର ଝା), ବିନାକାମୁଲ୍ଡ (ଲଳିତା), ସ୍ୱପ୍ନ ବା ସତ୍ୟ (ଭକ୍ତନାଥ ସିଂହ ଠାକୁର), ହଂସୀକା ବଜେଟ, ନେପଥ୍ୟ କା ହାକରେସା (ମାୟାନନ୍ଦ), ମହୁରା (ରାଜକମଲ), ଗିଧା, ମାନୁଖା ବିକାୟିତା (ଧୀରେନ୍ଦ୍ର),

*

ସରକାରୀ ନୌକରୀ (ସୋମଦେବ), ପୂର୍ଣ୍ଣପାଙ୍କ୍ତେୟ ବାଟ, ଏକଅଙ୍କ, ଧନ ଦର୍ଶନ (କସୁନ), ଆପ୍ନା ଲୋକ, ଅପରାଧ (ହଂସରାଜ), ଏକ୍ଟା ରହାଏ ଉଦ୍ଧାମି (ରାମଦେବ) ପ୍ରଭୃତି ଏହି ସମୟର ପ୍ରଧାନ ପ୍ରଧାନ ସୃଷ୍ଟି । ହାସ୍ୟଗାଳ୍ପିକ ମଧ୍ୟରେ କେଦାରମଣି ଝା, ରୂପକାନ୍ତ ଠାକୁର, ରାକେଶ ମିହିର, ବିଷପାୟୀ, ଝାମଲାଲ ଏବଂ ଶୀଳାକାନ୍ତ ପ୍ରଭୃତି ଅଗ୍ରଗଣ୍ୟ ।

ଚରିତ୍ରଚିତ୍ରଣ ଓ ମନସ୍ତାତ୍ତ୍ୱିକ ବିଶ୍ଳେଷଣର ଚିହ୍ନ ରହିଛି—ରମେଶ, ରବୀନ୍ଦ୍ରନାଥ ଠାକୁର, ଚନ୍ଦ୍ରକାନ୍ତ ଝା, ଗଙ୍ଗାନାଥ ଝା, ନରସିଂହ, ମଧୁକର, ଗଙ୍ଗାଧର, ବଳରାମ, ପ୍ରଭାସ କୁମାର, ଗୈ଼ଧୁରୀ, ଗୌରୀ ମିଶ୍ର, ଗଣେଶ ଗୁଞ୍ଜା, ସାକେତାନନ୍ଦ, ରାମାନନ୍ଦ 'ରେଣୁ', ଯୋଗୀରାଜ, ଧୂମକେତୁ, ମାର୍କଣ୍ଡେୟ, ରାଜା ମୋହନ, ସୁଭଦ୍ରା କୁମାରୀ ପଥ୍ୟ, ବଡ଼ଡ଼ା କାରନା, ଜୀବକାନ୍ତ ପ୍ରଭୃତି । ଅନ୍ୟ କେତେକ ଏ ଦିଗରେ ଲେଖନୀଗୃଳନା କରୁଛନ୍ତି । ସେମାନେ ହେଲେ—ଶୈବ୍ୟ ଝା, କଣଳୟ, ସୁଶୀଳା ଝା, ସାଧନା ମିଶ୍ର, ବନ୍ଦିତା ପ୍ରଭୃତି । ଲେଫ୍ଟନାଣ୍ଟ-ଗଭର୍ଣ୍ଣର ଡ: ଏ. ଏନ୍. ଝାଙ୍କ ସ୍ତ୍ରୀ ଶ୍ରୀମତୀ ଆଦ୍ୟା ଝା ମଧ୍ୟ ଗଳ୍ପ ଲେଖିକା ଭାବେ ପ୍ରତିଷ୍ଠିତା ।

ମୈଥିଳୀ ଗଳ୍ପ ସାହିତ୍ୟ କ୍ରମଉନ୍ନତ ପାବଚ୍ଛରେ ଯାତ୍ରା କରୁଛି । ଏଥିରେ ପରୀକ୍ଷା ନିରୀକ୍ଷାମାନ ଚାଲିଛି ।

## ମୈଥିଳୀ ନାଟକ :

ମୈଥିଳୀ ନାଟକ ମୁଖ୍ୟତଃ ସଂସ୍କୃତ ନାଟକ ଆଦର୍ଶରେ ଲିଖିତ ବା ପରିଚାଳିତ । ଏପରି ନାଟକର ଭାଷା ସଂସ୍କୃତ କିମ୍ବା ପ୍ରାକୃତ । କିନ୍ତୁ ଗୀତଗୁଡ଼ିକ ମୈଥିଳୀ ଭାଷା । ୧ସ୍ଥ ଧର୍ମୀ ନାଟକ ଆମୂଳଚୂଳ ମୈଥିଳୀ ଟିକାଟିପ୍ପଣୀ ଓ ବ୍ୟାଖ୍ୟା ଆକାରରେ ସଂସ୍କୃତ ଭାଷା ବ୍ୟବହାର କରାଯାଇଥାଏ । ଏପରି ନାଟକ ହେଉଛି ଉମାପତିଙ୍କର 'ଉଷାହରଣ' ଜାଜାଗ ଜ୍ୟୋତିର୍ମିହଲଙ୍କର 'ମହାଭାରତ' ।

ଆଧୁନିକ ଯୁଗ ପୂର୍ବରୁ ମୈଥିଳୀ ନାଟକ ପ୍ରାୟ ରଚିତ ହୋଇ ନଥିଲା ବୋଲି କୁହାଯାଇପାରେ । କିନ୍ତୁ ନେପାଳର ଦାନ ଏପରି ଏକ ପର୍ଯ୍ୟାୟ ସୃଷ୍ଟି କରିବା ଦିଗରେ ସ୍ମରଣୀୟ । ଅତଏବ, ନେପାଳର ଏହି ନାଟ୍ୟରଚନାଗୁଡ଼ିକ ମୈଥିଳୀ ନାଟକର ପୃଷ୍ଠଭୂମି ବୋଲି କୁହାଯାଇଥାଏ ।

ନେପାଳର ବିଦ୍ୟା ବିଳାପ, ମୁଣ୍ଡଟିକୁ ଭାଲସ୍ୱଷ୍ଟ, ହରଗୌରୀ ବିବାହ ଏବଂ ଜଗତ ପ୍ରକାଶ ମଲ୍ଲଙ୍କ କୃତମାନଙ୍କ ମଧ୍ୟରେ ଉଷାହରଣ, ନଳୀୟନାଟକମ୍, ପରଜା ତାହାରନା, ମଳୟ ଗନ୍ଧିନୀ ଏବଂ ମଦନ ଚରିତ ପ୍ରଭୃତି ପ୍ରଧାନ । ସେହିପରି ସୁମତୀ ଜୀତା ମିତ୍ର ମଲ୍ଲ (କାଳୀୟମାଥନ ଉପାଖ୍ୟାନ, ମଦାଳସାହରଣମ୍, ଉଷା-

ହରଣ ପ୍ରଭୃତ) ଓ ଭୂପତନ୍ଦ୍, ମଲ୍ଲଙ୍କର ପ୍ରାୟ ୧୬ଟି ନାଟକ (ଯଥା—ରୁକ୍ମଣୀ ହରଣ, ମାଧବାନନ୍ଦ ପ୍ରଭୃତ) ଏ ପ୍ରସଙ୍ଗରେ ପ୍ରଣିଧାନଯୋଗ୍ୟ । ଏହ ନାଟ୍ୟକାରମାନେ ଭାଟଗାଁ ଓ ଅନ୍ୟ ସ୍ଥାନରେ ପ୍ରାୟ ୧୬ଶରୁ ୧୮ଶ ଶତାବ୍ଦୀରେ ଦେଖାଦେଇଥିଲେ । ଏହା ବ୍ୟତୀତ କାଠମାଣ୍ଡୁ ଏବଂ ବାଣୀକପୁରମ୍‌ରେ ମଧ୍ୟ କେତେକ କଳାକାର ଆବିର୍ଭାବ ହୋଇଥିଲେ । ପ୍ରକୃତରେ ଏହ କୃତଗୁଡ଼ିକ କୀର୍ତ୍ତିନଆ ଧରଣର । ଏସବୁ ଆଂଶିକ ପରମାଣରେ ନାଟକ । ଏଥିରେ କେବଳ ସଂଳାପଗୁଡ଼ିକ ମୈଥିଳୀ ଭାଷାରେ ରଚତ ।

ଆସାମରେ ଶଙ୍କରଦେବଙ୍କର କାଳୀୟଦମନ, ରାମ ବିଜୟ, ରୁକ୍ମଣୀ ହରଣ, କେଳି ଗୋପାଳ, ପତ୍ନୀ ପ୍ରସାଦ, ପାରଜାତ ହରଣ, ମାଧବଦେବଙ୍କର ଅର୍ଜୁନଭଞ୍ଜନ, ଭୋଜନ ବିହାର, ଭୂଷଣହେରୋବା, ରସଝୁମୁରା, କୋଟଉର ଖେଲେବା, ଗୋଭିଲପରା, କୋରାଧରା, ପିମ୍‌ପା ଲଗୁକୋରା, ଗୋପାଳଦେବଙ୍କର ଜନ୍ମଯାତ୍ରା, ଉଦ୍ଧବ ସମ୍ବାଦ ଏବଂ ରାମକରାନା ଠାକୁରଙ୍କର କଂସବଧ ପ୍ରଭୃତ ପ୍ରଣିଧାନଯୋଗ୍ୟ ।

## ଆଧୁନକ ମୈଥିଳୀ ନାଟକ :

ଏହା ସାଂପ୍ରତକ ଯୁଗର ଶିକ୍ଷା, ସଭ୍ୟତା ଓ ସମାଜର ସମସ୍ୟାର ଅବଲମ୍ବନରେ ଲିଖିତ । ଏଥିରେ ପ୍ରାଚୀନ ଯୁଗର ପରଂପରାକୁ ବାଦ ଦଆ-ଯାଇଥାଏ ।

ଆଧୁନକ ମୈଥିଳୀ ନାଟକ ମଧ୍ୟରେ ସୁନ୍ଦର ସଂଯୋଗ (୧୯୦୪), ନର୍ମଦା ଶତକ (୧୯୦୬ , ଶାମବନ୍ତୀ ପୁନର୍ଜନ୍ମ (ସବୁ ପଣ୍ଡିତ ଜୀବନ ଝାଙ୍କ ରଚତ), ସାବିତ୍ରୀ ସତ୍ୟବାନ (୧୯୦୮-୯) (ଲାଲଡାସା), କାଳଧମ ପ୍ରକାଶିକା (୧୯୧୧-୧୨) (ଶଶୀନାଥ ଝା), ମିଥିଳା ନାଟକ (୧୯୨୦-୨୩), ସୁଦର୍ଶନ ନାଟକ (୧୯୩୨), ବୁଢ଼ାନଗଡ଼ା ଭ୍ୟାଦ୍ୟୋଗ (୧୯୩୩) (ସମସ୍ତ ମୁନ୍‌ସି ରଘୁନନ୍ଦନ ଦାସ), ସୀତା ସ୍ୱୟମ୍ବର (୧୯୩୮) (ଆନନ୍ଦା ଝା), ସନକା ଲଡୁ (୧୯୪୨-୪୩), ଭଗନା (ବରସାନାଥ ଝା), ଗାନ୍ଧର୍ବବିବାହ (ଦାମୋଦର ଝା), ବୀର ନରେନ୍ଦ୍ର (୧୯୫୭) (ଜୀବନନାଥ ଝା) ବଷତା (୧୯୫୮) (ଗୋବନ୍ଦ ଝା), ଆଗୃର୍ଯ୍ୟ ଦ୍ରୋଣ (୧୯୬୧) (ଚନ୍ଦ୍ରକାନ୍ତ ଝା), ଆଦ୍ଯାଚ (କାଶୀନାଥ ମିଶ୍ର), ସନ୍ତ ପରୀକ୍ଷା (ଲଲତେଶ୍ୱର ଝା), କଣ୍ଠହର (ମଣିପଦ୍ମ), ଘାଟ କଇଦ (କମଳାକାନ୍ତ ଝା), ମନୋରଥ (୧୯୬୬) (ଭାଗ୍ୟନାରାୟଣ ଝା), କାଣ୍ଡରପ ଘାଟ (୧୯୬୬) (ରାଜେଶ୍ୱର ଝା), ପ୍ରିୟା ମୋର ବାଲକ (୧୯୬୭), ସାଉଗାଚ କା ବାଛଡ଼ା (୧୯୬୮) (ଧୁଇଟିଯାକ ରାମଚନ୍ଦ୍ର ଚୌଧୁରୀଙ୍କର । ବୀରଚନ୍ଦ୍ର (୧୯୬୭) (ସୁରେନ୍ଦ୍ର ପଣ୍ଡିତ ସିହ୍ନା), ଶଂଖ (ହେମ୍ପିନାରାୟଣ ଲଲ), କୁସୁମ (କାଳନାଥ ଝା), କୁହେସ

(ବାବୁ ସାହେବ ଚୌଧୁରୀ) ଏବଂ କନିଆଁ ପୁତ୍ର (ଗୁଣାନନ୍ଦ ଝା) ପ୍ରଭୃତି ପ୍ରଧାନ । ଏହା ବ୍ୟତୀତ ଅନେକ ନାଟକ ସଂସ୍କୃତରୁ ଅନୁବାଦ ହୋଇଥିବାର ଦେଖାଯାଏ ; ଯଥା—ଶକୁନ୍ତଳା, ମୃଚ୍ଛକଟିକ, ମୁଦ୍ରାରାକ୍ଷସ, ଉତ୍ତରରାମଚରିତ ଚେଭ୍ରତୀ ପରିଣୟ, ଅଭିଷେକ, ବୀର ପ୍ରତାପ, ଦୂତବାକ୍ୟ ପ୍ରଭୃତି ।

## ଏକାଙ୍କିକା :

ମୈଥିଳୀ ସାହିତ୍ୟରେ ଏକାଙ୍କିକା ଏକ ଉଚ୍ଚକୋଟୀର ସୃଷ୍ଟି । ମୁଖ୍ୟତଃ ଏହି ଏକାଙ୍କିକାମାନ ୧୯୪୫ ପରେ ରଚିତ ଏବଂ ଏସବୁର ତାଲିକା ଦେବା କଷ୍ଟକର ମଧ୍ୟ । ସେଥିମଧ୍ୟରୁ କେତୋଟି ହେଲା—କୁମାର ଗଙ୍ଗାନନ୍ଦ ସିଂହଙ୍କର ଜୀବନ ସଂଘର୍ଷ, ହରିମୋହନ ଝାଙ୍କର ମହାରାଜା ବିଜୟ, ମଦନ ମିଶ୍ର ତନ୍ତ୍ରନାଥ ଝା'ଙ୍କର ଏକାଙ୍କ ଚୟନିକା (୫ଟି ଏକାଙ୍କିକା , ଜୀବନାଥ ଝାଙ୍କର ଯାଜ୍ଞବଲ୍କ୍ୟ ଓ ଅହିଲ୍ୟୋଧାର, କିରନଜୀଙ୍କର ଜୟନ୍ତଜନ୍ମ ମହାରାଜା ଶିବ ସିଂହ, ଶୀତଳ ସେମି, ଅମରଜୀଙ୍କର ସମାଧାନ, ପ୍ରଭୁନାଥ ନାରାୟଣ ସିଂହଙ୍କର ହାତୀକାଦାନ୍ତ, ପରମେଶ୍ୱର ମିଶ୍ରଙ୍କର ତ୍ରିବେଣୀ, କଲେଜକା ଛୁଟି ପ୍ରଭୃତି । ରାଧାନାଥ ଝା, ରାଧାକୃଷ୍ଣ ଚୌଧୁରୀ, ଗୋପେଶ, ଶୈଳେନ୍ଦ୍ର ମୋହନ ଝା, କିଶଳୟ; ବିଷ୍ଣୁକାନ୍ତ ଝା, ପ୍ରଫୁଲ୍ଲ କୁମାର ସିଂହ, ଶିବଶଙ୍କର ମିଶ୍ର, ଗୋବିନ୍ଦନାରାୟଣ ଝା ଏବଂ ରାମଚନ୍ଦ୍ର ଝା ପ୍ରଭୃତି ମଧ୍ୟ ଏକାଙ୍କିକା ଲେଖିବା ଦିଗରେ ସିଦ୍ଧହସ୍ତ ।

ଏହା ବ୍ୟତୀତ କେତେକ ବେତାର-ନାଟକ ମାୟାନନ୍ଦ ମିଶ୍ରଙ୍କ ଦ୍ୱାରା ରଚିତ । ମାୟାନନ୍ଦ ମିଶ୍ର ଏଥିମଧ୍ୟରୁ ପ୍ରସିଦ୍ଧ । 'ମମତା ଗାବ ଏ ଗୀତ'—ନାମରେ ଏକ ରେକର୍ଡ଼ ଗୀତ ମଧ୍ୟ ରହିଛି ।

## କବି ବିଦ୍ୟାପତି ଠାକୁର :

ଇଂରାଜୀ ସାହିତ୍ୟରେ ନାଟ୍ୟକାର ସେକ୍ସପିୟର୍‌ଙ୍କର ଯେଉଁ ସ୍ଥାନ, ମୈଥିଳୀ ସାହିତ୍ୟରେ ବିଦ୍ୟାପତି ଠାକୁରଙ୍କ ସ୍ଥାନ ସେହିପରି ସୁରକ୍ଷିତ । ମିଥିଳା ଖଣ୍ଡରେ ମାର୍ମିକ ଗୀତିମୟ ପ୍ରକାଶ କବି ବିଦ୍ୟାପତିଙ୍କ ଲେଖନୀରେ ଯେପରି ପ୍ରକଟିତ ହୋଇଥିଲା, ତାହା ଅସାଧାରଣ ପ୍ରତିଭା ସାପେକ୍ଷ । ବିଦ୍ୟାପତି ମିଥିଳାର ସର୍ବଶ୍ରେଷ୍ଠ ଗୀତିକବି; ଯାହାଙ୍କର ରଚନା, ମୂର୍ଚ୍ଛନା ଓ ତରଙ୍ଗ କେବଳ ମିଥିଳାର ଜନସାଧାରଣ ନୁହନ୍ତି, ଭାରତର ବିଭିନ୍ନାଞ୍ଚଳ ଅଧିବାସୀମାନଙ୍କୁ ଭାବପ୍ଲାବିତ କରି ଦେଇଥିଲା । ବିଦ୍ୟାପତିଙ୍କ ରଚନାର ଆଭିମୁଖ୍ୟ ମୁଖ୍ୟତଃ ଅତି କାରୁଣ୍ୟ । ସେ ପ୍ରଥମେ ଭକ୍ତଭାବରେ ଲେଖନୀ ଧାରଣ କରି ଶେଷରେ ଶ୍ରେଷ୍ଠ ଭକ୍ତକବିର ଆଖ୍ୟା ଲାଭ କରିଥିଲେ । ମୈଥିଳୀ ଗୀତିକବିତାର ଇତିହାସ ବିଦ୍ୟାପତିଙ୍କ ଜୀବନୀ ସହିତ

ଓତପ୍ରୋତ ଭାବରେ ଜଡ଼ିତ । ତାଙ୍କର ଗୀତମାଧୁର୍ଯ୍ୟ ମୈଥିଳୀ ପଦ ଉପରେ ଆଧାରିତ ।

ବିଦ୍ୟାପତି ବ୍ରାହ୍ମଣ ପରିବାରରେ କାଶ୍ୟପଗୋତ୍ରରେ ଗର୍ଦ୍ଧ ବିଶାପିରେ ଜନ୍ମ ହୋଇଥିଲେ । ତାଙ୍କ ପିତା ଗଙ୍ଗାପତି ଠାକୁର । ତାଙ୍କ ପିତା ଜୟଦତ୍ତ ଏବଂ ତାଙ୍କ ପିତାଙ୍କ ନାମ ଧୀରେଶ୍ୱର । ଏହି ଧୀରେଶ୍ୱର ନିବନ୍ଧର ପ୍ରସିଦ୍ଧ ଲେଖକ । ଧୀରେଶ୍ୱରଙ୍କର ବଡ଼ଭାଇ ବୀରେଶ୍ୱର ଯୁଦ୍ଧ ଓ ସନ୍ଧିର ମନ୍ତ୍ରୀ ଥିଲେ । ଏହି ବୀରେଶ୍ୱରଙ୍କର ପୁଅ କାଣ୍ଡେଶ୍ୱର ଯେ କି 'ରାଜନୀତି ରତ୍ନାକର'ର ପ୍ରସିଦ୍ଧ ଲେଖକ । ଏ ସମସ୍ତ ହେଲା ତାଙ୍କ ବଂଶର ସ୍ଥୂଳ ପରିଚୟ ।

ବିଦ୍ୟାପତି ପ୍ରାୟ ଖ୍ରୀ: ଅ: ୧୩୫୦ରେ ଜନ୍ମଗ୍ରହଣ କରିଥିଲେ । ନିମ୍ନ-ଲିଖିତ କାରଣରୁ ଏହି ସମୟକୁ ସ୍ୱୀକାର କରିବାକୁ ହେବ—(କ) ଶ୍ରୀମଦ୍‌ଭାଗବତରେ ୩୦୯ ଲ. ସାମ୍. ବର୍ଷ ଲେଖିବା, (ଖ) ଲିଖନାବଳୀରେ ୨୯୯ ଲ. ସାମ୍. ବର୍ଷ ଲେଖିଥିବାର କଥା ଭାଗବତରେ ସେ ଲେଖିଥିବା (ଗ)ତାଙ୍କ ଅବହଟ୍ଟ ରଚନା ୨୯୩ ଲ. ସାମ୍.ରେ ଶେଷ ହୋଇଥିଲା; (୧୩୨୪-୧୩୨୭) (ଘ) ଗଣେଶ୍ୱରଙ୍କର ସହିତ ମିଶିବା କଥା ୨୫୨ ଲ. ସାମ୍.ରେ ଲେଖିବା (ଙ) ବିଶାପିଙ୍କର ସଲକରେ ଦାନ ୨୯୩ ଲ. ସାମ୍.ରେ ଲେଖାହେବା, (ଚ) ବିଦ୍ୟାପତି ଶିବ ସିଂହଙ୍କଠାରୁ ଦୁଇ ବର୍ଷ ବଡ଼, (ଛ) ମଲ୍ଲଦେବଙ୍କୁ ୫୦ ବର୍ଷ ବୟସ ହୋଇଥିଲା ।

ବିଦ୍ୟାପତିଙ୍କ ଜୀବନର ଇତିହାସ ପର୍ଯ୍ୟନ୍ତ ଲୋକଲୋଚନକୁ ଆସିନାହିଁ । କାରଣ ବିଭିନ୍ନ ପଣ୍ଡିତ ତାଙ୍କ ଜନ୍ମଦିବସକୁ ବିଭିନ୍ନ ଭାବରେ ଚର୍ଚ୍ଚିତ କରିଛନ୍ତି । ବିଦ୍ୟାପତିଙ୍କ ପ୍ରାଥମିକ ଶିକ୍ଷା ଜୀବନ ପାରଂପରିକ ରୀତିରେ ସମାପନ ହୋଇଥିଲା । ରାଜା ଶିବ ସିଂହଙ୍କ ସେ ସମସାମୟିକ ଥିଲେ । ପ୍ରାଥମିକ ଶିକ୍ଷା ପରେ ବିଦ୍ୟାପତି ବିଭିନ୍ନ ରାଜଦରବାର ପରିଦର୍ଶନ କରିଥିଲେ । ରାଜା ପଦ୍ମସିଂହଙ୍କ ଦରବାରରେ କିଛି ଦିନ ଅବସ୍ଥାନ କରି ସେ ଗଙ୍ଗାକାବ୍ୟାବଳୀ ନାମକ ଗ୍ରନ୍ଥ ରଚନା କରିଥିଲେ । ସେ ରାଜାଙ୍କ ରାଣୀ ବିଦ୍ୟାପତିଙ୍କ ରଚନାଚାତୁର୍ଯ୍ୟରେ ମୁଗ୍ଧ ହୋଇଥିବା ଜଣାଯାଏ । ବିଦ୍ୟାପତି ଏହି ସମୟରେ ଶିବ ଓ ଗଙ୍ଗାଙ୍କ ପ୍ରଭାବରେ ଅନେକ ଷ୍ଟୁତିଗଲ୍ପ ଓ ରାଜା ହରିସିଂହ ଦେବଙ୍କର ରାଣୀଙ୍କ ଆଦେଶରେ 'ଦାନବାକ୍ୟାବଳୀ' ଗ୍ରନ୍ଥ ରଚନା କରିଥିଲେ । ଏହାପରେ ରାଜା ନରସିଂହ ଦେବଙ୍କର ଦରବାରରେ ବିଦ୍ୟାପତି କିଛିଦିନ ଅବସ୍ଥାନ କରିଥିଲେ । ଏହି ସମୟରେ ସେ 'ଦୁର୍ଗାଭକ୍ତିତରଙ୍ଗିଣୀ' ନାମକ ଗ୍ରନ୍ଥ ରଚନା କରିଥିଲେ । ରାଜା ଭୈରବସିଂହଙ୍କ ସମୟରେ ବିଦ୍ୟାପତି ରାଜଦରବାର ସହିତ ସମ୍ପର୍କ ତୁଟାଇ ଥିଲେ ।

ତାଙ୍କର ଶେଷଜୀବନ ସେ ନିଜ ପରିବାର ମଧ୍ୟରେ ଅତିବାହିତ କରି-ଥିଲେ । ତାଙ୍କର ପ୍ରଥମ ସ୍ତ୍ରୀ ହରିବଂଶ ଶୁକ୍ଳଙ୍କର କନ୍ୟା, ତାଙ୍କର ଦ୍ୱିତୀୟ ସ୍ତ୍ରୀ

ରଘୁ ଠାକୁରଙ୍କ କନ୍ୟା । ବିଦ୍ୟାପତି ନିଜ ଜୀବନର ଭବିଷ୍ୟତ ସତେ ଯେପରି ଜାଣିପାରି ଥିଲେ । ତାଙ୍କ ମୃତ୍ୟୁ ସଂପର୍କରେ ବିଭିନ୍ନ କାହାଣୀ ମିଥିଳାରେ ପ୍ରଚଳିତ ୧୪୪୮ ଅକ୍ଟୋବର ମାସରେ ତାଙ୍କ ଜୀବନର ଶେଷ ରଶ୍ମି ଅସ୍ତମିତ ହୋଇଥିଲା । ମୃତ୍ୟୁର ଅବ୍ୟବହିତ ପୂର୍ବରୁ ବିଦ୍ୟାପତି ତାଙ୍କ କନ୍ୟାକୁ ଡାକି ତାଙ୍କୁ ଗଙ୍ଗାନଦୀ ତଟକୁ ନେଇଯିବାପାଇଁ ସଙ୍କେତ ଦେଇଥିଲେ । ଗଙ୍ଗାନଦୀ ତୀରରେ ପହଞ୍ଚିବା ପୂର୍ବରୁ ତାଙ୍କ ପ୍ରାଣବାୟୁ ଉଡ଼ିଯାଇଥିଲା । ସେ ଯେଉଁ ସ୍ଥାନରେ ମୃତ୍ୟୁର ସମ୍ମୁଖୀନ ହୋଇଥିଲେ ସେଠାରୁ ତାଙ୍କୁ ଗଙ୍ଗାର ଢେଉ ଆସି ଭସାଇ ନେଇଥିଲା ବୋଲି କିମ୍ବଦନ୍ତୀ ରହିଛି । ଏହି ସ୍ଥାନଟି ହେଉଛି ଦରଭଂଗା ଜିଲ୍ଲାର 'ବାଜିତପୁ ।'

**ବିଦ୍ୟାପତିଙ୍କ ରଚନାବଳୀ :**

ବିଦ୍ୟାପତିଙ୍କର ଖ୍ୟାତି ପ୍ରଥମେ ରାଜଦରବାରରୁ ବ୍ୟାପ୍ତ ହୋଇଥିଲା । ଦୁଇବର୍ଷ ଧରି ସେ ବିଭିନ୍ନ ରାଜଦରବାରରେ ପଣ୍ଡିତ ଓ କବି ଥିଲେ । ତିରହୁତ ରାଜା ଓ ରାଣୀମାନଙ୍କର ଅନୁରୋଧ ରକ୍ଷାକରି ସେ ବହୁତ ନିବନ୍ଧ ରଚନା କରି-ଥିଲେ । ଶିବ, ଗଙ୍ଗା ଓ ଦୁର୍ଗାଙ୍କ ସମ୍ପର୍କରେ ସେ ଭକ୍ତିମୂଳକ ରଚନା କରିଥିଲେ; ଯଥା—ଶୈବସର୍ବସ୍ୱସାର, ଗଙ୍ଗା ବାକ୍ୟାବଳୀ, ଦୁର୍ଗା ଭକ୍ତି ତରଙ୍ଗିଣୀ, ଭୂ ପରିକ୍ରମା, ଦାନ ବାକ୍ୟାବଳୀ, ଗୟାଶ୍ରାଦ୍ଧ, ବର୍ଷକୃତ୍ୟ, ଲିଖନାବଳୀ, ପୁରୁଷ ପରୀକ୍ଷା, ମଣିମଞ୍ଜରୀ, ବିଭାଗସାର । ଏହିସବୁ ଗ୍ରନ୍ଥମାନଙ୍କର ପରିଚୟ--ଭୂ ପରିକ୍ରମା Description of places of pilgrims, ବର୍ଷକୃତ୍ୟ—ଗୃହସ୍ଥମାନଙ୍କର ବାର୍ଷିକ କର୍ତ୍ତବ୍ୟମୟ ଜୀବନର ବିବରଣୀ । ପାରିବାରିକ ଜୀବନରେ ସମ୍ପତ୍ତି ବଣ୍ଟନର ଚିତ୍ର ବିଦ୍ୟାପତି ତାଙ୍କର 'ବିଭାଗ ସାର' ବହିରେ ବର୍ଣ୍ଣନା କରିଛନ୍ତି । ଏହି ସମସ୍ତ ରଚନାରେ ବିଦ୍ୟାପତି ନିଜକୁ ଜଣେ ପ୍ରବୀଣ ଓ ସୁଚତୁର ବକ୍ତା ରୂପେ ପରିଚିତ କରାଇଥିଲେ । ସେଥିରୁ ତାଙ୍କର ପାଣ୍ଡିତ୍ୟ, ଜ୍ଞାନ ଗଭୀରତା ଓ ପ୍ରତିଭା ସହଜରେ ଜଣାପଡ଼େ । ମିଥିଳାର ସମସାମୟିକ ସଂସ୍କୃତ ଲେଖକମାନଙ୍କ ମଧ୍ୟରେ ସେ ଜଣେ ଅସାଧାରଣ ବ୍ୟକ୍ତି ଥିଲେ । କିନ୍ତୁ ସଂସ୍କୃତରେ ତାଙ୍କର ସେତେ ପ୍ରବେଶ ନ ଥିଲା ବୋଲି ପରବର୍ତ୍ତୀ କାଳରେ କବି ଓ ଲେଖକମାନେ ସମାଲୋଚନା କରିଥିଲେ । ସେ ସଂସ୍କୃତରେ 'କାବ୍ୟ ପ୍ରକାଶ' ଅନୁବାଦ କରିଥିଲେ । ତତ୍କାଳୀନ ତିରହୁତ ପରିସ୍ଥିତିକୁ ଦୃଷ୍ଟିରେ ବିଦ୍ୟାପତିଙ୍କର ଏହିସବୁ ରଚନା ଜନସାଧାରଣଙ୍କ ପକ୍ଷରେ ସହାୟକ ହୋଇଥିଲା ।

ବିଦ୍ୟାପତିଙ୍କ କୃତିତ୍ୱ ଓ ବୈଶିଷ୍ଟ୍ୟ ଏଥିରେ ପର୍ଯ୍ୟବସିତ ହୋଇ ନଥିଲା । କାରଣ ସେ ଜଣେ ବର୍ଣ୍ଣନାତ୍ମକ ଗୀତି କବି ଭାବରେ ତାଙ୍କର ଆସନ ସର୍ବଦା ସ୍ୱୀକୃତ । ତାଙ୍କର ବର୍ଣ୍ଣନାତ୍ମକ ଗୀତି କାବ୍ୟ ଓ ଗୀତି କବିତା ମୈଥିଳୀ ଅବହଟ୍ଟ ଭାଷାରେ ଲିଖିତ । ତାଙ୍କର ଗୀତଗୁଚ୍ଛ ଶୁଦ୍ଧ ମୈଥିଳୀ ଭାଷାରେ ଲିଖିତ ହୋଇଥିଲା ।

ଆଧୁନିକ ମୈଥିଳୀ ଓ ମାଗଧୀ ପ୍ରାକୃତ ମଧ୍ୟରେ ଅବହଟ୍ଟ ହେଉଛି ଯୋଗସୂତ୍ର-ରକ୍ଷାକାରୀ । 'କୀର୍ତ୍ତିଲତା' ତାଙ୍କର ପ୍ରଥମ ବର୍ଣ୍ଣନାତ୍ମକ କାବ୍ୟ । ଏହା ୮୦୦ ସର୍ଗରେ ସମ୍ପୂର୍ଣ୍ଣ ।

ରାଜା କୀର୍ତ୍ତିସିଂହଙ୍କର ରାଜତ୍ୱର ବିବରଣୀ କାବ୍ୟ ଆକାରରେ ଏହି 'କୀର୍ତ୍ତି-ଲତା' କାବ୍ୟରେ ପ୍ରଦତ୍ତ । ଏହା ଚାରି ଖଣ୍ଡରେ ବିଭକ୍ତ ଏବଂ ଐତିହାସିକ ଗଳ୍ପାଂଶ ଏହାର ପ୍ରଧାନ ଉପଜୀବ୍ୟ । ଏହି କାବ୍ୟର ଆଙ୍ଗିକ ସ୍ୱାମୀ ଓ ସ୍ତ୍ରୀର କଥୋପକଥନ ମଧ୍ୟରେ ଆଧାରିତ । ମଧ୍ୟଯୁଗରେ ମିଥିଳା ସମାଜର ଚିତ୍ର ଯାହାଥିଲା ଏହି କାବ୍ୟରେ ତା'ର ସୂଚନା ମିଳେ । ଉଦ୍ୟାନ, ପୁଷ୍କରଣୀ, ଦେବମନ୍ଦିର, ନଦୀବନ୍ଧ ଓ ରାଜପ୍ରାସାଦ ଏ ସମସ୍ତର ବିବରଣୀ ଏହି କାବ୍ୟରେ ମିଳେ । କାବ୍ୟରେ ନାରୀମାନଙ୍କର ଯେଉଁ ଚିତ୍ର ଦେଖିବାକୁ ମିଳେ ତାହା ବିଦ୍ୟାପତିଙ୍କର କବି ସୁଲଭ ସହାନୁଭୂତି ଓ ଉଦାରତାର ପ୍ରତୀକ । କେହି କେହି ସମାଲୋଚକ ଏହି ରଚନାକୁ କାବ୍ୟ ଅପେକ୍ଷା ଇତିହାସର ସ୍ଥାନ ଅଧିକ ଦେଇଥାନ୍ତି । ଯୁଦ୍ଧର ବର୍ଣ୍ଣନା କାବ୍ୟରେ ମଧ୍ୟ ବିଶେଷ ଭାବରେ ପ୍ରତିଫଳିତ । ଯୁବରାଜଙ୍କ ଜୀବନର ବିଭିନ୍ନ ସ୍ମୃତି ଏହି କାବ୍ୟରେ ଯେପରି ଅଙ୍କିତ ସେଥିରୁ କବିଙ୍କର ହୃଦୟର ଦରଦ ଓ ସହାନୁଭୂତି ଜଣାପଡ଼େ । ଏହାର ଭାଷା ମଧ୍ୟ ସରଳ ଓ ସାଧାରଣ ପ୍ରଚଳିତ ଭାଷା । 'କୀର୍ତ୍ତି ପତାକା' ବିଦ୍ୟାପତିଙ୍କର ଆଉ ଏକ ଅବହଟ୍ଟ ରଚନା । ଏହାକୁ ଆବିଷ୍କାର କରିଥିଲେ ମହାମହୋପାଧ୍ୟାୟ ହର ପ୍ରସାଦ ଶାସ୍ତ୍ରୀ ମହାରାଜା । ଶିବସିଂହଙ୍କର ଅଭିଷେକକୁ ଲକ୍ଷ୍ୟକରି ବିଦ୍ୟାପତି ଆହୁରି ଏକ କାବ୍ୟ ରଚନା କରିଥିଲେ । ଏଥିରେ ମଧ୍ୟ ଇତିହାସର ପରିମାଣ ଅଧିକ ମାତ୍ରାରେ ଦେଖିବାକୁ ମିଳେ । ବିଭିନ୍ନ ରାଜଦରବାରର ଦୃଶ୍ୟ, ଐତିହାସିକ ଘଟଣାବଳୀ, ରାଜାମାନଙ୍କର ସାଧାରଣ ଜୀବନ ପ୍ରତି ଦୃଷ୍ଟିକୋଣ ଜଣା ପଡ଼ିଥାଏ । ପୂର୍ବୋକ୍ତ ବର୍ଣ୍ଣିତ କାବ୍ୟମାନଙ୍କରେ ମୁସଲମାନମାନଙ୍କ ଶତ୍ରୁ ଭାବରେ ହେଉ ବା ମିତ୍ର ଭାବରେ ହେଉ, ସେମାନଙ୍କର ବର୍ଣ୍ଣନା ଦେଖିବାକୁ ମିଳେ ।

ମୁଖ୍ୟତଃ ତାଙ୍କର ସାହିତ୍ୟକୃତି ହେଲା—(୧) ଅବହଟ୍ଟ—(କ) କୀର୍ତ୍ତିଲତା—ଏହା ତାଙ୍କର ପ୍ରଥମ ରଚନା ଖ) କୀର୍ତ୍ତି ପତାକା—ଶିବ ସିଂହ ଓ ସୁଲତାନଙ୍କ ମଧ୍ୟରେ ଯୁଦ୍ଧ ବର୍ଣ୍ଣିତ । (୨) ସଂସ୍କୃତ—ସେ ପ୍ରଥମେ 'କାବ୍ୟ ପ୍ରକାଶ' ଖ୍ରୀ: ଅ: ୧୦୦୦ରେ ଲେଖିବା ପରେ ଲେଖିଲେ—(କ) ଭୂ ପରିକ୍ରମା (ଖ) ପୁରୁଷ ପରୀକ୍ଷା (ଗ) ଲିଖନାବଳୀ (ଘ) ଶୈବ ସର୍ବସ୍ୱସାର (ଙ) ଗଙ୍ଗା ବାକ୍ୟାବଳୀ (ଚ) ବିଭାଗସାର (ଛ) ଦାନବାକ୍ୟାବଳୀ (ଜ) ଦୁର୍ଗା ଭକ୍ତି ତରଙ୍ଗିଣୀ (ଝ) ବର୍ଷକୃତ୍ୟ (ଞ) ଗୟାପାଟଳକ (ଟ) ମଣିମଞ୍ଜରୀ, (୩) ମୈଥିଳୀ—(କ) ଗୋରକ୍ଷ ବିଜୟ—ଏହା କୀର୍ତ୍ତନିୟା ଶୈଳୀରେ ରଚିତ । (ଖ) ଅମର ସଂଗୀତାବଳୀ ।

## ବିଦ୍ୟାପତି ଓ ମୈଥିଳୀ ଗୀତି ସମ୍ଭାର :

କେବଳ ମିଥିଳା କାହିଁକି, ସମଗ୍ର ଭାରତବର୍ଷରେ ଭକ୍ତକବି ବିଦ୍ୟାପତିଙ୍କର ଦାନ ହେଉଛି ତାଙ୍କର ଅଜସ୍ର ଗୀତିକବିତା । ଏହି ଗୀତିକବିତାର ପ୍ରଭାବରେ ତାଙ୍କ କବି ପ୍ରତିଭାର ଚରମ ବିକାଶ ଘଟିଥିଲା । ସେହି ଗୀତିକା ଗୁଡ଼ିକ ମୁଖ୍ୟତଃ ପ୍ରେମାଶ୍ରୟୀ । ସେଥି ମଧ୍ୟରେ ଭକ୍ତି ଅର୍ଥାତ୍ ଭଗବତ୍ ବିଶ୍ୱାସ ଓତପ୍ରୋତ ଭାବରେ ଜଡ଼ିତ ଥିଲା । ତାଙ୍କର ଗୀତିକାର ସଙ୍ଗୀତମୟତ୍ୱ ଓ ଆବେଗ ଯୁଗ ଯୁଗ ଧରି ଶ୍ରୋତା ଓ ଗାୟକମାନଙ୍କୁ ମୁଗ୍ଧ କରିଅଛି । ତାଙ୍କର ଭକ୍ତି ଗୀତିକା ଗୁଡ଼ିକ ପ୍ରଧାନତଃ ଶକ୍ତି, ଶିବ ଓ ଗଙ୍ଗାଙ୍କର ଉପାସନା ସହିତ ସଂପୃକ୍ତ । ପ୍ରେମ ଗୀତିକା ଗୁଡ଼ିକ ମୈଥିଳୀ କବିତାର ସମସ୍ତ ଶାଖା; ଯଥା—ଖିରହୁତ, ବାଟଗମନ, ମାନ ଓ ଗୋଆଲରି ସହିତ ସଂପୃକ୍ତ । ତାଙ୍କର ଇତସ୍ତତଃ ବିକ୍ଷିପ୍ତ ରଚନାଗୁଡ଼ିକ ଜୀବନର ଦୈନନ୍ଦିନ ଘଟଣା ଓ ଅଭିଜ୍ଞତାକୁ ଉଦ୍ଦେଶ୍ୟକରି ଲିଖିତ ।

ତାଙ୍କ ପ୍ରେମଗୀତିକାରେ ରାଧାକୃଷ୍ଣ ନାୟକ ନାୟିକା ଓ ସେମାନଙ୍କର ସୌନ୍ଦର୍ଯ୍ୟ ପରିଚୟ, ବିରହ, ମିଳନ ବର୍ଣ୍ଣିତ । ବିଦ୍ୟାପତିଙ୍କର ପ୍ରେମସଂଗୀତ କାବ୍ୟିକ ମହିମାରେ ଏକୀଭୂତ ହୋଇ ନପାରେ । ବରଂ ତାହା ପ୍ରତ୍ୟେକେ ଏକ ଏକ ସ୍ୱୟଂସଂପୂର୍ଣ୍ଣ ରଚନା । ଏଠାରେ ଗୀତଗୋବିନ୍ଦ ଓ ବିଦ୍ୟାପତିଙ୍କ ପଦାବଳୀର ପ୍ରଭେଦ । ସୌନ୍ଦର୍ଯ୍ୟର ଯେଉଁ ଆଲେଖ୍ୟ ତାଙ୍କ ଗୀତିକବିତାରେ ପରିଦୃଷ୍ଟ, ତାହା କେବଳ ଜଣେ ଶକ୍ତିଶାଳୀ କବି ପକ୍ଷରେ ସମ୍ଭବ । ଯୌବନ, ଭାବଉଦ୍‌ବେଳ—ତାଙ୍କର ଗୀତିକବିତା ସହିତ ଯେପରି ନାୟକ ନାୟିକାର ପ୍ରତିମୁହୂର୍ତ୍ତରେ ବାଞ୍ଛିତ ମିଳନକୁ ହିଁ ବର୍ଣ୍ଣନା କରିଅଛି । ଉପମା ଓ ଚିତ୍ରକଳ୍ପ ମଧ୍ୟ ଅତି ଉଚ୍ଚକୋଟୀର । କେହି କେହି ବିଦ୍ୟାପତିଙ୍କ ରଚନାରେ ଶୃଙ୍ଗାରାଧିକ୍ୟ ଲକ୍ଷ୍ୟ କରିଥାନ୍ତି । ଏହା ମନେରଖିବା କଥା ଉଭୟ ସମ୍ଭୋଗ ଓ ବିପ୍ରଲମ୍ଭ ଶୃଙ୍ଗାର ତାଙ୍କ ଗୀତି ସମ୍ଭାରର ସ୍ପନ୍ଦନ । ବିଦ୍ୟାପତି କୃଷ୍ଣ ଓ ରାଧାଙ୍କର ପ୍ରେମାନୁରାଗ ବର୍ଣ୍ଣନାରେ ସାର୍ବଜନୀନ ପ୍ରେମର ପ୍ରଭାବ ହିଁ ଅନୁଭବ କରିଛନ୍ତି । କିମ୍ବଦନ୍ତୀ ଅଛି ସ୍ୱୟଂ ଶିବ ବିଦ୍ୟାପତିଙ୍କର ପଦାବଳୀ ଦ୍ୱାରା ମୁଗ୍ଧ ହୋଇଥିଲେ । ବିଦ୍ୟାପତି କବିଭାବରେ ସାରା ଭାରତବର୍ଷରେ ଚମକ ସୃଷ୍ଟି କରି ପାରିଛନ୍ତି । ତାଙ୍କର ସିଦ୍ଧି ଅସାଧାରଣ । ଅତୀତର ସେହି ଅନ୍ଧକାରମୟ ଯୁଗରେ ସେ ଯେ ଜଣେ ନିପୁଣ ଶିଳ୍ପୀ, ସ୍ରଷ୍ଟା ଥିଲେ ଏଥିରେ କାହାର ଦ୍ୱିମତ ନାହିଁ । ତାଙ୍କର ଭାବପ୍ରବଣତା ପ୍ରକୃତରେ କବି ସୁଲଭ ଗୁଣର ପରିଚାୟକ । ବିଦ୍ୟାପତିଙ୍କ ଦ୍ୱାରା ବହୁ କବି ମିଥିଳାରେ ପ୍ରଭାବିତ ହୋଇଥିଲେ । ଅନ୍ୟାନ୍ୟ ପଡ଼ୋଶୀ ରାଜ୍ୟ ବଙ୍ଗଳା, ଆସାମ ଓ ଓଡ଼ିଶାରେ ବିଦ୍ୟାପତିଙ୍କ ପଦାବଳୀର ମୂର୍ଚ୍ଛନା ଶୁଣାଯାଇଥିଲା । ବିଦ୍ୟାପତି ଜଣେ ଭକ୍ତକବି; କିନ୍ତୁ ତାଙ୍କର ସେହି ଭକ୍ତି କବିତ୍ୱର ଆବେଗ ଦ୍ୱାରା ସର୍ବଦା ଉଦ୍‌ବୁଦ୍ଧ ହୋଇଥିଲା । ବିଭିନ୍ନ ଭାଷାରେ ତାଙ୍କ ସଂଗୀତର ସଂସ୍କରଣମାନ

ପ୍ରକାଶ ପାଇଛି । ଉତ୍ତର-ପୂର୍ବ ଭାରତୀୟ ସାହିତ୍ୟ ଆଲୋଚନାବେଳେ ବିଦ୍ୟାପତିଙ୍କୁ ସ୍ମରଣ ନକରି ରହିହେବ ନାହିଁ । କେବଳ ତାଙ୍କ ସମୟରେ ନୁହେଁ, ପଞ୍ଚଦଶ ଶତାବ୍ଦୀ ପର୍ଯ୍ୟନ୍ତ ମଧ୍ୟ ଅନ୍ୟ କବିମାନଙ୍କୁ ପ୍ରଭାବିତ କରିଥିଲେ ।

**ବିଦ୍ୟାପତିଙ୍କ ପ୍ରଭାବ :**

ବିଦ୍ୟାପତିଙ୍କ ପ୍ରଭାବକୁ ମଧ୍ୟଯୁଗୀୟ ସାହିତ୍ୟ ମଧ୍ୟ ସ୍ୱୀକାର କରିବାକୁ ବାଧ୍ୟ ହେଲା । ନେପାଳୀ ଅପେରାରେ ମୈଥିଳୀ ଗଦ୍ୟର ସଂଳାପ ପରିଦୃଷ୍ଟ ହୁଏ । କୀର୍ତ୍ତିନୀୟାରେ ମୈଥିଳୀର ପ୍ରଭାବ ପଡ଼ିବା ଏକ ସର୍ବଜନସ୍ୱୀକୃତ ସତ୍ୟ । ଊନବିଂଶ ଶତାବ୍ଦୀର କବିଶ୍ୱର କାଣ୍ଡାଝା 'ରାମାୟଣ'ରେ ଏହାର ପ୍ରଭାବ ପ୍ରତିଫଳିତ । 'କୃଷ୍ଣଜନ୍ମ'ରେ ମଧ୍ୟ ଏହାର ପ୍ରଭାବ ପଡ଼ିଛି । ସାମ୍ପ୍ରତିକ କାଳରେ ନିମ୍ନଲିଖିତ କବିମାନେ ଏହାଦ୍ୱାରା ପ୍ରଭାବିତ ।

ମିଥିଳାରେ—ସାଂପ୍ରତିକକାଳ (ଖ୍ରୀ: ଅ: ୧୪୦୦-୧୫୨୭)—ଅମୃତକର, କଣ୍ଠାରକଲ, ଭାନୁକବି, ଗଜସିହ୍ନା, ଦାଶବର୍ଦ୍ଧନ, ବିଷ୍ଣୁପୁରୀ, ଯଶୋଧାରୀ, କଂସନାରାୟଣ, ଗୋବିନ୍ଦ, ଭୀଷ୍ମକାଶୀ ଏବଂ ଅନ୍ୟମାନେ ।

ପରବର୍ତ୍ତୀକାଳରେ (୧) ପ୍ରକୃତ ଗୀତକାର (୧୫୨୭-୧୭୦୦ ଖ୍ରୀ: ଅ:)—ମହେଶଠାକୁର, ଲୋଚାନା, ଗୋବିନ୍ଦଦାଶ ଏବଂ (୨) କୀର୍ତ୍ତିନୀୟା କବି (୧୭୦୦-୧୮୬୦)—ଉମାପତି, ରାମଦାସ, ରାମପତି, ଲାଲକବି, ନନ୍ଦପତି, ରତ୍ନାପାଣି, ହର୍ଷନାଥ ଏବଂ ଅନ୍ୟମାନେ (୩) ଆଧୁନିକ ଗୀତକାର—(୧୮୬୦) କାଣ୍ଡା ଝା, ଜୀବନ ଝା, ବିନ୍ଧ୍ୟାନାଥ ଝା, ସତ୍ୟନାରାୟଣ ଝା, କ୍ଷେମଧାରୀ ସିଂ, ରାଧିନାଥ ଝା, ବଦ୍ରିନାଥ ଝା ଏବଂ ଅନ୍ୟମାନେ ।

ପ୍ରାଚୀନ ଗୀତ ସଂଗ୍ରହ (ପ୍ରଫେସର ରାମନାଥ ଝା) ଏବଂ ମୈଥିଳୀ ଗୀତ ରତ୍ନାବଳୀ (ବଦ୍ରୀଶନାଥ ଝା) ପୁରାତନ ସଂଗ୍ରହ; ଯଥା—ରାଗତରଙ୍ଗିଣୀ, ବିଦ୍ୟାପତି ପଦାବଳୀ ଇତ୍ୟାଦି ମଧ୍ୟ ଏହି ପ୍ରସଙ୍ଗରେ ପାଠକର ଦୃଷ୍ଟି ଆକର୍ଷଣ କରେ ।

ଓଡ଼ିଶାରେ—ସଂସ୍କୃତ କବି ଏମ୍. ଏମ୍. ଗୋବିନ୍ଦ ଠାକୁର ଓଡ଼ିଶାକୁ ଆଗମନ କରିଥିବା କଥା ଇତିହାସରୁ ଜଣାଯାଏ । ଏଣୁ ଓଡ଼ିଶାର କବିମାନେ ପ୍ରତ୍ୟକ୍ଷ ଭାବରେ ବିଦ୍ୟାପତିଙ୍କ ଗୀତଦ୍ୱାରା ପ୍ରଭାବିତ ହୋଇଥିଲେ । ବୈଷ୍ଣବ ସାହିତ୍ୟରୁ ଜଣାଯାଏ ଯେ ରାମାନନ୍ଦରାୟ ସାଧନାରେ ସାଖ୍ୟଭାବ ଅବତାରଣା କଲେ । ତାଙ୍କ ଗୀତକୁ ଲୋକପ୍ରିୟ କରିବା ପାଇଁ ବିଦ୍ୟାପତିଙ୍କର ସ୍ୱରସଂଯୋଜନାକୁ ଗ୍ରହଣ କରିଥିଲେ । ଏହା ଜଣାଯାଏ ଯେ ରାମାନନ୍ଦରାୟ ମହାପ୍ରଭୁ ଚୈତନ୍ୟଙ୍କ ଦ୍ୱାରା ପ୍ରଭାବିତ ହୋଇ କିଛି ଗୀତ ଲେଖିଥିଲେ । ଏଥିରୁ ଅନୁମିତ ହୁଏ ଯେ ଖ୍ରୀ: ୧୫୧୨ ପରେ ବଙ୍ଗଳା ସାହିତ୍ୟ ମଧ୍ୟ ଦେଇ ଓଡ଼ିଶାରେ ପ୍ରବେଶକଲା, ତାପରେ ଚୈତନ୍ୟ ଓଡ଼ିଶାକୁ ଆସିଲେ । ପ୍ରାୟ ୮ ଜଣ

*

କବି ବିଦ୍ୟାପତିଙ୍କ ଗୀତିରଚନା ଅନୁସାରେ ଗୀତ ରଚନା କରିଥିଲେ । ସେମାନେ ହେଲେ—ଚମ୍ପତିରାୟ, ପ୍ରତାପରୁଦ୍ର ଦେବ, ଦାମୋଦର ଦାସ, ଗୃନ୍ଦକବି, ଯଦୁପତି ଦାସ, ମାଧବୀ ଦାସୀ, କାଣ୍ଡଦାସ ଏବଂ ମୁରାରି – ଏ ସମସ୍ତେ ୧୬ଶ ଶତାବ୍ଦୀର କବି ।

ବଙ୍ଗଳାରେ—ଡଃ ସୁକୁମାର ସେନ୍ ବ୍ରଜବୋଲି ଭାଷା ବିଷୟରେ ଅନେକ ଉପାଦାନ ସଂଗ୍ରହ କରିଛନ୍ତି : ଯଥା:—ପଦାମୃତ, ସମୁଦ୍ର କଳ୍ପତରୁ, ସମୀରିତାନନ୍ଦ, ପଦର ସଂସାର, ପଦରତ୍ନାକର ଓ ଅନ୍ୟାନ୍ୟ । କିନ୍ତୁ ଡଃ ସୁଭଦ୍ରା ଝାଁଙ୍କ ମତରେ ଏ ସମସ୍ତ ରଚନା ବ୍ରଜବୋଲି ଗୀତ ନୁହେଁ । ତାଙ୍କ ମତରେ ଏସବୁ ବିଶୁଦ୍ଧ ମୈଥିଳୀ କିମ୍ବା ବ୍ରଜଭାଷା । ତେବେ ଯାହା ହେଉ, ବଙ୍ଗଳା ସାହିତ୍ୟରେ ବିଦ୍ୟାପତିଙ୍କ ପ୍ରଭାବ ନିମ୍ନଲିଖିତ କବିମାନଙ୍କ ଉପରେ ପଡ଼ିଲା । (୧) ସାଂପ୍ରତିକ ଏବଂ ଚୈତନ୍ୟ ଦେବଙ୍କ ପରବର୍ତ୍ତୀ ଯଶୋରଜା ଖାଁ, ନରହରି ଦାସ, ଶାମାନନ୍ଦ ସାହୁ ଇତ୍ୟାଦି । (୨) ଚୈତନ୍ୟ ଦେବଙ୍କ ପରବର୍ତ୍ତୀ— ନାସ୍ୱାନନ୍ଦ ଦାସ, ବୃନ୍ଦାବନ ଦାସ, ମାଧବ ଦାସ, ହରିଦାସ, ପୁରୁଷୋତ୍ତମ ଦାସ, ପରମାନନ୍ଦ ଦାସ, ଜ୍ଞାନାନନ୍ଦଦାସ, ବଳରାମ ଦାସ ପ୍ରଭୃତି । (୩) ଶ୍ରୀନିବାସ ଆଚାର୍ଯ୍ୟ ଏବଂ ତାଙ୍କ ସହକର୍ମୀ; ଯଥା-ନରୋତ୍ତମ ଦାସ, ଶ୍ୟାମାନନ୍ଦ ଏବଂ ଅନ୍ୟମାନେ (୪) ଗୋବିନ୍ଦଦାସ କବିରାଜ, ଚକ୍ରଭାରତୀ ଏବଂ ଆଚାର୍ଯ୍ୟ (୫) ଶ୍ରୀନିବାସ ଏବଂ ନରୋତ୍ତମ ଦାସଙ୍କ ସମୟରେ—ରାୟ ବସନ୍ତ ଦ୍ୱିଜ ଗଙ୍ଗାରାମ ଏବଂ ଅନ୍ୟମାନେ । (୬) ଷୋଡ଼ଶ ଶତାବ୍ଦୀର ଶେଷ, ସପ୍ତଦଶ ଶତାବ୍ଦୀର ପ୍ରାରମ୍ଭ—ଗୀତଗୋବିନ୍ଦ, ଘନଶ୍ୟାମ ଦାସ ଏବଂ ଅନ୍ୟମାନେ । (୭) ସପ୍ତଦଶକର ଶେଷ ଏବଂ ଅଷ୍ଟାଦଶ ଶତାବ୍ଦୀର ଆରମ୍ଭ—ମନୋହର ଦାସ, ହରିବଲ୍ଲଭ ପ୍ରେମା ଦାସ, ଘନରାମ ଦାସ, (୮) ଅଷ୍ଟାଦଶ ଶତାବ୍ଦୀର ଆରମ୍ଭ—ରାଧାମୋହନ ଠାକୁର, ନରହରି ଚକ୍ରବର୍ତ୍ତୀ ନଟାବତାର ଏବଂ ଅନ୍ୟମାନେ (୯) ଅଷ୍ଟାଦଶ ଶତାବ୍ଦୀର ଶେଷ ଚନ୍ଦ୍ରଶେଖର ଏବଂ ଅନ୍ୟମାନେ । (୧୦) ଉନବିଂଶ ଶତାବ୍ଦୀ—ଆଧୁନିକ ଯୁଗରେ ଜନ୍ମେଜୟ ମିଶ୍ର, ଚନ୍ଦ୍ର ଚଟ୍ଟୋପାଧ୍ୟାୟ ଏବଂ ରବୀନ୍ଦ୍ରନାଥ ଠାକୁର ।

ଆସାମରେ—ବର୍ତ୍ତମାନ ପର୍ଯ୍ୟନ୍ତ ଶଙ୍କର ଦେବଙ୍କର ପଦାବଳୀ ଆସାମ ସାହିତ୍ୟକୁ ପ୍ରଭାବିତ କରି ରଖିଛି । 'ଅଙ୍କିନାଟ' ମୈଥିଳୀ ଦ୍ୱାରା ପ୍ରଭାବିତ । ବରଗୀତା ବିଦ୍ୟାପତିଙ୍କର ଶୈଳୀରେ ଲିଖିତ । ଶଙ୍କରଦେବ, ମାଧବଦେବ ଏବଂ ଗୋପାଳ ଦେବ ମାନେ ହେଲେ ପ୍ରସିଦ୍ଧ ବରଗୀତାର ରଚୟିତା । ଏମାନେ ଅଧିକାଂଶ ୧୫ଶ, ୧୬ଶ ଏବଂ ୧୭ଶ ଶତାବ୍ଦୀର ।

ନେପାଳରେ—ଶିବସିଂହଙ୍କର 'ପରାଜୟ' ଏବଂ ପରେ କଂସ ନାରାୟଣଙ୍କର ଅଧୋପତନ ନେପାଳରେ ମୈଥିଳୀ ସାହିତ୍ୟ ଓ ସଂସ୍କୃତର ପ୍ରବେଶ ପାଇଁ ଅନୁକୂଳ

ବାତାବରଣ ସୃଷ୍ଟି କରିଥିଲା । ଯଦିଓ ଏହା ଏକ ଦୁଃଖାତ୍ମକ ତଥ୍ୟ, ତଥାପି ୧୮ଶ ଶତାବ୍ଦୀର ପ୍ରାରମ୍ଭରେ ସାଧାରଣତଃ ୧୬ଶ ଶତାବ୍ଦୀରୁ ବିଦ୍ୟାପତିଙ୍କ ଶୈଳୀ ନେପାଳ ସାହିତ୍ୟରେ ଦେଖାଯାଏ । ରାଜା ଏବଂ କବି; ଯଥା—ସିଂହ ଭୂପତି, ଜଗତି ଜ୍ୟୋତି ମଲ୍ଲ ଏବଂ ଜୟପ୍ରକାଶ ମଲ୍ଲ ସେମାନଙ୍କ ନାଟକମାନଙ୍କରେ ମୈଥିଳୀ ଗୀତକୁ ସ୍ଥାନ ଦେଇଥିଲେ ।

## ମୈଥିଳୀ ସାହିତ୍ୟରେ ଆଧୁନିକ ଯୁଗ :

ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧର ଘଟଣା । ଯେତେବେଳେ ସାରା ଭାରତବର୍ଷରେ ଇଂରାଜୀଭାଷା ପ୍ରଚଳନ ଓ ଶିକ୍ଷାର ଭିତ୍ତି ସ୍ଥାପିତ ହେଉଥିଲା । ସେହି ଶିକ୍ଷାର ପ୍ରଭାବରେ ଯେଉଁ ଜାତୀୟ ଚେତନା ସୃଷ୍ଟି ହେଲା, ତା'ର ପ୍ରଥମ ପ୍ରତିଫଳନ ସାହିତ୍ୟରେ ଦେଖାଦେଇଥିଲା । ମହାରାଜା ଲକ୍ଷ୍ମୀଶ୍ୱର ସିଂହ ୧୮୮୦ରେ ତାଙ୍କର ପୈତୃକ ସିଂହାସନ ଫେରି ପାଇଥିଲେ । ଏହା ପୂର୍ବରୁ ୧୮୬୦ରେ ତାଙ୍କ ପିତାଙ୍କ ସମୟରେ ରାଜ୍ୟ ଇଂରେଜ ଅଧୀନକୁ ଚାଲିଯାଇଥିଲା । ସେହି ଲକ୍ଷ୍ମୀଶ୍ୱର ସିଂହ ଇଂରାଜୀ ଶିକ୍ଷାର ପ୍ରସାର ପାଇଁ ବିଶେଷ ଉଦ୍ୟମ କରିଥିଲେ । ସେ କହିଥିଲେ, ମିଥିଳାର ବାଳକ ବାଳିକାମାନେ ପାଶ୍ଚାତ୍ୟ ଢଙ୍ଗରେ ଶିକ୍ଷାପ୍ରାପ୍ତ ହେବେ । ନୂତନ ଜାତୀୟତାର ଆହ୍ୱାନରେ ମିଥିଳାର ପଣ୍ଡିତ, ଶିକ୍ଷାବିତ୍ ଓ ସାହିତ୍ୟିକମାନେ ନିଜ ଭାଷାର ସର୍ବବିଧ ଉନ୍ନତି ପାଇଁ ବଦ୍ଧପରିକର ହେଲେ । 'ମୈଥିଳୀ ମହାସଭା' ଓ 'ସାହିତ୍ୟ ପରିଷଦ' ସ୍ଥାପିତ ହୋଇଥିଲା । 'ମୈଥିଳୀ ହିତ-ସାଧନା (୧୯୦୫), ମିଥିଳା ମିହିର (୧୯୦୮) ଶୀର୍ଷ ବହୁ ପତ୍ରପତ୍ରିକା ଆତ୍ମପ୍ରକାଶ କଲା । ଏହି ସବୁ ଘଟଣା ମୈଥିଳୀ ଭାଷା ଓ ସାହିତ୍ୟକୁ କ୍ରମେ କ୍ରମେ ପରିପୁଷ୍ଟ କଲା । କବିଶ୍ୱର ଚନ୍ଦ୍ର ଝା ପ୍ରଥମଥର ପାଇଁ ମିଥିଳା ଓ ମୈଥିଳୀର ପ୍ରାଚୀନ ଐତିହ୍ୟ ଅଧ୍ୟୟନ କରିବା ପାଇଁ ଆଗ୍ରହ ପ୍ରକାଶ କଲେ । ସମ୍ପାଦକତା ଓ ସାହିତ୍ୟିକ ଚେତନା ଯୋଗୁ ସ୍ଥାନୀୟ ପଣ୍ଡିତମାନେ ମଧ୍ୟ ମାତୃଭାଷାର ଉନ୍ନତି କଲେ ଲାଗି ପଡ଼ିଥିଲେ । ମୈଥିଳୀ ଭାଷା ଓ ସାହିତ୍ୟର ଏହି ଅପୂର୍ବ ଜାଗରଣ ମୂଳରେ ଥିଲା କେତେଜଣ ଉତ୍ସାହୀ ଯୁବକଙ୍କର ସାଧନା । ଫଳରେ ଆଧୁନିକ ଗଳ୍ପ, ଉପନ୍ୟାସ, ନାଟକ, ପ୍ରବନ୍ଧ ଓ ସମାଲୋଚନା ବିସ୍ତୃତ ଭାବରେ ମୈଥିଳୀ ସାହିତ୍ୟରେ ଲେଖାହେଲା । କାଳ୍ପନିକ ଆଦର୍ଶବାଦ ଅପେକ୍ଷା ବାସ୍ତବ ଆଦର୍ଶ ଲେଖକମାନଙ୍କର ଧ୍ୟେୟ ହୋଇଥିଲା । କବିର ଅନୁଭୂତି ଓ ଅଭିଜ୍ଞତା ପ୍ରଥମ ଥରପାଇଁ ଯେପରି ସୁନିର୍ବାଚିତ ମାର୍ଗରେ ଆତ୍ମପ୍ରକାଶକଲା, କାବ୍ୟ କବିତାର ବିଭିନ୍ନ ଆଙ୍ଗିକ (Form) ଏହି ସମୟରେ ମୈଥିଳୀ ସାହିତ୍ୟରେ ପ୍ରବେଶ କଲା ।

ଆଧୁନିକ କବି ଭାବରେ କବିଶ୍ୱର ଚନ୍ଦ୍ର ଝାଙ୍କର ନାମ ସର୍ବପ୍ରଥମେ ଉଲ୍ଲେଖ-ଯୋଗ୍ୟ । କବିଶ୍ୱର ଚନ୍ଦ୍ର ଝା ପ୍ରଥମେ କବିତା ଓ କାବ୍ୟରେ ନୂତନ ପରୀକ୍ଷା ନିରୀକ୍ଷା

ଆରମ୍ଭ କଲେ । ତେଣୁ ସଂସ୍କୃତ ଅଧ୍ୟାତ୍ମ ରାମାୟଣରୁ କଥାବସ୍ତୁ ସଂଗ୍ରହ କରିଥିଲେ ହେଁ ତାଙ୍କର ନିଜସ୍ୱ ଯେପରି ଆପେ ଆପେ ସାହିତ୍ୟରେ ଉଦ୍‌ଘାଟିତ ହେଲା । ତାଙ୍କର ପ୍ରଥମ କାବ୍ୟିକ ରଚନା ହେଉଛି—ରାମାୟଣ । ଅର୍ଥାତ୍ ବାଲ୍ମୀକି ରାମାୟଣକୁ କବିଶ୍ୱର ଝା ମୈଥିଳୀ ଭାଷାରେ ଭିନ୍ନରୂପରେ ପରିବେଷଣ କରିଥିଲେ । ସେଥିପାଇଁ ତା'ର ମୂଲ୍ୟ ଓ ମୌଳିକତା ସମସ୍ତେ ଅନୁଭବ କରିପାରିଲେ । କବିଶ୍ୱର ଚନ୍ଦ୍ର ଝା ଆଧୁନିକ ଯୁଗର ସ୍ରଷ୍ଟା । ତାଙ୍କର ଶ୍ରେଷ୍ଠ ସାହିତ୍ୟିକକୃତି ହେଉଛି ମିଥିଳା ଭାଷାରେ ରାମାୟଣ (୧୮୯୮) । ପ୍ରାଚୀନ ଯୁଗର ଆଙ୍ଗିକ ଓ ରଚନାଶୈଳୀ ସେ ଅନୁସରଣ କରିଥିଲେ ହେଁ ତାଙ୍କ ରଚନାରେ ଭାଷାର ଅପୂର୍ବ ସରଳତା ପ୍ରକାଶ ପାଇଥିଲା । ମିଥିଳାର ଜନସାଧାରଣ ଏହି ପୁସ୍ତକପ୍ରତି ଜାତି, ଧର୍ମ, ଶିକ୍ଷା ନିର୍ବିଶେଷରେ ଆକୃଷ୍ଟ ।

ତାଙ୍କର ଆଉ ଏକ ସ୍ମରଣୀୟ କୃତି ହେଉଛି 'ଚନ୍ଦ୍ର ପଦ୍ୟାବଳୀ' । 'ମହେଶ-ବାଣୀ' ଭକ୍ତିଧର୍ମୀ ଗୀତିକବିତାର ଏକ ସଂକଳନ । ଚନ୍ଦ୍ର ଝାଙ୍କ ଗୀତିକବିତା ମିଥିଳାର ଘରେ ଘରେ ଆବୃତ୍ତି କରାଯାଇଥାଏ । ବିଦ୍ୟାପତିଙ୍କ ପରେ ଆଧୁନିକ ମିଥିଳା ସାହିତ୍ୟରେ ସେ ଜଣେ ସିଦ୍ଧ ଭକ୍ତକବି । କବିଶ୍ୱର ଚନ୍ଦ୍ରଝାଙ୍କର ସମୟ (୧୮୫୦—୧୯୧୮) ।

ଆଧୁନିକ ଯୁଗର ଅନ୍ୟାନ୍ୟ କବିମାନଙ୍କ ମଧ୍ୟରେ ଜୀବନ ଝା, ମୁନ୍‌ସୀ ରଘୁନନ୍ଦନ ଦାସ, ହର୍ଷନାଥ ଝା, ସୀତାରାମ ଝା, ବିଦ୍ୟାନାଥ ଝା, ଗଣନାଥ ଝା, ଯଦୁନାଥ ଝା, ଛେଦୀ ଝା, ଗଙ୍ଗାଧର ମିଶ୍ର, ଲାଲଦାସ ପ୍ରମୁଖଙ୍କର ନାମ ଉଲ୍ଲେଖ-ଯୋଗ୍ୟ । ମୁନ୍‌ସୀ ରଘୁନନ୍ଦନ ଦାସ ଜଣେ ଶକ୍ତିଶାଳୀ କବି ଭାବରେ ସୁପରିଚିତ । ତାଙ୍କର କାବ୍ୟ 'ସୁଭଦ୍ରାହରଣ' (୧୯୩୮) ଆଧୁନିକ ମୈଥିଳୀ କାବ୍ୟମଧ୍ୟରେ ଶୀର୍ଷ-ସ୍ଥାନ ଅଧିକାର କରେ । ସେ ଆଙ୍ଗିକ ରଚନାଶୈଳୀ ବର୍ଣ୍ଣନାକୌଶଳ ପରମ୍ପରାରୁ ଗ୍ରହଣ କରିଥିଲେ । ମାତ୍ର ସମସାମୟିକ ମିଥିଳା ସମାଜପ୍ରତି ସେ ଭାବଜଗତରେ ଯେପରି ଓତପ୍ରୋତ ଭାବରେ ଜଡ଼ିତ ଥିଲେ । ତାଙ୍କର ଅନ୍ୟ ଏକ କୃତି ହେଉଛି 'ବୀରବାଳକ' । ବୀରରସ ବର୍ଣ୍ଣନାଦ୍ୱାରା ଏହି କାବ୍ୟ ରୁଦ୍ଧିମନ୍ତ ହୋଇପାରିଛି । ମହାଭାରତର ଅଭିମନ୍ୟୁ ଚରିତ୍ର ଏହି ରଚନାର ପ୍ରଧାନ ଉପଜୀବ୍ୟ ବିଷୟ । ପୌରାଣିକ ଗଳ୍ପସମୂହର ପୃଷ୍ଠଭୂମିରେ ଯେଉଁ କବି କାବ୍ୟ କବିତା ଲେଖି ସୁନାମ ଅର୍ଜନ କରିଛନ୍ତି ଆଧୁନିକ ଯୁଗରେ ଲାଲଦାସ ସେମାନଙ୍କ ମଧ୍ୟରେ ଅନ୍ୟତମ । ଏହାଙ୍କ କାବ୍ୟ କବିତାର ପ୍ରଭାବ ଅନ୍ୟମାନଙ୍କ ଉପରେ ପଡ଼ିଅଛି । ଚଣ୍ଡି ଚରିତ, ସାବିତ୍ରୀ ସତ୍ୟବାନ କଥା, ମୈଥିଳୀ ରାମାୟଣ, ସ୍ତ୍ରୀଶିକ୍ଷା, ପତିବ୍ରତାଗୁର ପ୍ରଭୃତି ଏହାଙ୍କର ବିଶିଷ୍ଟ କୃତି । ଆଧୁନିକ ମୈଥିଳୀ କାବ୍ୟକବିତା ଗଣନାଥ ଝାଙ୍କ Lyric ଦ୍ୱାରା ବିଶେଷ ସମୃଦ୍ଧ । ସେହି (Lyric) ବା ଗୀତିକବିତା ମଧ୍ୟରେ ଅତୀନ୍ଦ୍ରିୟ ପ୍ରେମ ଓ ଭଗବଦ୍‌ଭକ୍ତି ପ୍ରତିଫଳିତ । ବିଦ୍ୟାନାଥ ଝା ମଧ୍ୟ ଏତାଦୃଶ

Lyric କବି । ସଂକ୍ଷେପରେ କହିବାକୁ ଗଲେ ଆଧୁନିକ ମୈଥିଲୀ ସାହିତ୍ୟରେ କାବ୍ୟ ଅପେକ୍ଷା ଖଣ୍ଡକବିତା ଓ ଗୀତିକବିତାର ଆଦର ସର୍ବାଧିକ ।

କବିଶେଖର ବଦ୍ରିନାଥ ଝା ଏକାବଲୀ ପରିଣୟ (୧୯୪୦) ରେ ଲେଖି-ଥିଲେ, ମଧୁ ପାଞ୍ଜିଙ୍କର 'ରାଧାବିରହ' ଏକ ସ୍ମରଣୀୟ ଗ୍ରନ୍ଥ । ଏ ପ୍ରସଙ୍ଗରେ ସୀତାରାମ ଝାଙ୍କର 'ଅମ୍ବାଚରିତ', 'ରାବଣବଧ', ଜୀବନାଥ ଝାଙ୍କର 'କାନନକନ୍ୟା', ଦୀନନାଥ ପାଠକଙ୍କର 'ଗଙ୍ଗା', ଲକ୍ଷ୍ମଣ ଝାଙ୍କର କୀଚକ ବଧ (ମୁକ୍ତଛନ୍ଦ)— ଉଲ୍ଲେଖଯୋଗ୍ୟ । ଏ ପୁସ୍ତକଗୁଡ଼ିକ ସଂସ୍କୃତ ସାହିତ୍ୟଦ୍ୱାରା ଅନୁପ୍ରାଣିତ । ଏଥିରେ ନୂତନ ଚିନ୍ତା, ନୂତନ କଳ୍ପନା, ନୂତନ କୌଶଳ, ଅଭିନବ ଭାଷା ପ୍ରୟୋଗ କରାଯାଇଛି । ମୈଥିଲୀ ମହାକାବ୍ୟରେ ଦରିଦ୍ର ନୁହେଁ । ଅଧିକାଂଶ ପୁସ୍ତକ ମୁଦ୍ରିତ ଓ ଦୁଷ୍ପ୍ରାପ୍ୟ ନୁହେଁ । ଡଃ ଜୟକାନ୍ତ ମିଶ୍ର ପ୍ରାୟ ୧୬ ଖଣ୍ଡ ମହାକାବ୍ୟର ନାମ ୧୯୩୫ ରେ ସୂଚନା ଦେଇଥିଲେ । ସେଗୁଡ଼ିକ ହେଲା—ସମ୍ଭୁବିନୋଦ, ଗଣେଶ ଖଣ୍ଡ, ସୁଦର୍ଶନ ଉପାଖ୍ୟାନ, ଗଙ୍ଗା ଲହରୀ, ଗୌରୀ ପରିଣୟ, ନାରଦାମୋହା, ସତ୍ୟବ୍ରତୋପାଖ୍ୟାନ, ସୁଦାମ ଚରିତ, ଶକୁନ୍ତଳୋ ଉପାଖ୍ୟାନ, ସାବିତ୍ରୀ ସତ୍ୟବାନ ଉପାଖ୍ୟାନ । ଏ ସମସ୍ତ ଲାଲଦାସ, ଗୁଣବନ୍ତ ଲାଲ ଦାସ, ଗଙ୍ଗାଧର ମିଶ୍ର ଏବଂ ଦାମୋଦର ଲାଲ ଦାସ ରଚନା କରିଥିଲେ ।

ତାଙ୍କ ପରବର୍ତ୍ତୀ କାଳରେ କବିତା କ୍ଷେତ୍ରରେ ଅନେକ ଅନବଦ୍ୟ ସାହିତ୍ୟ ସୃଷ୍ଟି ହେଉଥିଲା । ରମ୍ଭା ଶୁକ ସମ୍ବାଦ, ଜାନକୀ ପରିଣୟ, ଭାର୍ଗବବିଜୟ, କୋଇଲି ଦୂତ, ସତୀ ବିଭୂତି, ପତିବ୍ରତାପ୍ରେମ, ବଣବାସିନୀ, ରୁକ୍ମଣୀ ପରିଣୟ, ଖାରବଲ ଲକା, ଦେବୀଗୀତା, ମିଥିଳା ମୈଥିଲୀ, ବିରହ ବେଦନା, ବାଡାହି ଦେବୀ କେତକୀ ଏବଂ ପରଦେଶୀ ।

ଏହି ସମସ୍ତ ରଚନାରେ ପୌରାଣିକ ଉପାଖ୍ୟାନମାନ ବର୍ଣ୍ଣିତ । ଗୋଟିଏ ଦୁ'ଟା ଅବଶ୍ୟ ବାଦ ଦିଆଯାଇପାରେ । ୧୯୪୭ ପରେ ମୈଥିଲୀ କବିତା ରାଜ୍ୟରେ ପରୀକ୍ଷାମୂଳକ ଲକ୍ଷଣ ପରିଦୃଷ୍ଟ ହେଲା । ଏଥିରେ ସାମାଜିକ ବିଷୟ, ଦାର୍ଶନିକ ବିଷୟ ଚିନ୍ତା ଏବଂ ପ୍ରକୃତି ରୂପନେବାକୁ ବସିଲେ । ଏ ସମସ୍ତ ନିମ୍ନଲିଖିତ ରଚନାମାନଙ୍କରେ ପରିଦୃଷ୍ଟ ହୁଏ; ଯଥା—କୃଷକ (ମଥୁରା), ସୁକନ୍ୟା (ମଧୁପାଜୀ), ଶିକମଚଲା ଏକ ଇନ୍ଦ୍ରଜାଲ (ଶିବନାଥ ଝା), ଗୌରୀ ପରିଣୟ (ଦିବ୍ୟେଶ୍ୱର ସିଂ), ଲକ୍ଷ୍ମୀ ମହାରାଣୀ ଭାରତୀ (ଉଭୟ କେଦାର ନାଥ ଲାଭ), ଶରଶଯ୍ୟା (ରାମ କରଜୀ) ପ୍ରଭୃତି । ଏଇ ସବୁ ରଚନାମାନଙ୍କରେ କବିର ବ୍ୟକ୍ତିତ୍ୱ ବହୁ ପରିମାଣରେ ପରିସ୍ଫୁଟ ।

ଏହି ସବୁ ପର୍ଯ୍ୟାୟର କବିତା ହେଲା ଟିପାର୍ଟ, ଧାଲାଟ୍ ( ଉଭୟ ହରମୋହନ ଝାଙ୍କ ଦ୍ୱାରା ରଚିତ ), ଗଜଲ ଆଥାଉନ (ମଧୁପ), ସାରଦା ବିଜୟ (ବ୍ୟାସ) ପ୍ରଭୃତି ।

**ଅନୁବାଦ :**

ମହାଭାରତ ଏବଂ ରଘୁବଂଶ ( ଉଭୟ ଅଚ୍ୟୁତାନନ୍ଦ ଦତ୍ତଙ୍କ ରଚିତ ) ରାମାୟଣ (ଜାଭାକ ମିଶ୍ର), ହରବଂଶ (ପରମାନନ୍ଦ ଦତ୍ତ), ନୈଷଧ, କୁମାର ସମ୍ଭବ (ଯଦୁନନ୍ଦନ ଦାସ) ଏବଂ କୁମୁଦ ପ୍ରଭା (ଗୀତ ଗୋବିନ୍ଦର ଅନୁବାଦ) (କ୍ଷମଦନାଥ ଝା) ଆଦି ମୈଥିଳୀ ଅନୁବାଦ କାବ୍ୟ ଜଗତରେ କେତୋଟି ମାଇଲ ଖୁଣ୍ଟି । ଏ ସମସ୍ତ ହେଲା ସଂସ୍କୃତରୁ ମୈଥିଳୀକୁ ଅନୁବାଦ । ଅନ୍ୟ ଭାଷାରୁ ମୈଥିଳୀକୁ ଅନୁବାଦ ମଧ୍ୟରେ 'ମେଘନାଦ ବଧ' (ବଙ୍ଗଳାରୁ ଗୌରୀଶଙ୍କର ଝା), ବୀରଙ୍ଗନା (ବଙ୍ଗଳାରୁ ଗୋବିନ୍ଦ ଝା), ବିରହିଣୀ ବ୍ରଜାଂଗନ (ବଙ୍ଗଳାରୁ ଭୁବନଜୀ), Paradise Lost (ଇଂରାଜୀରୁ), ଅଶୋକ ପୁଞ୍ଜ (ହିନ୍ଦୀରୁ) କେଦାରନାଥ ଲାହା ପ୍ରଭୃତି ।

**ମୁକ୍ତକ :**

ଆଧୁନିକ ମୈଥିଳୀ କବିତା କବୀଶ୍ୱର ଚନ୍ଦ ଝା ମୁକ୍ତକ ଦ୍ୱାରା ସୁସମୃଦ୍ଧ । ଯଦିଓ ତାଙ୍କ ରଚନାରେ 'ନାଚାରୀ' ଏବଂ ଅନ୍ୟ ମୈଥିଳୀ ଗୀତମସ୍ମିତାର ସ୍ୱରର ସନ୍ଧାନ ମିଳେନା, ତଥାପି ତାଙ୍କର ରଚନାବଳୀରେ ନୂତନ ଭାବନା, ନୂତନ ପ୍ରକାଶ ଭଙ୍ଗୀ ପରିଦୃଷ୍ଟ ହୁଏ । ପ୍ରାୟ ଉପନ୍ୟାସଗୁଡ଼ିକ ତାଙ୍କର ପରୀକ୍ଷା ମୂଳକ । ରଚନାଗୁଡ଼ିକରେ ତାଙ୍କ ଜୀବନରେ ବହୁ ଅନୁଭୂତି ରୂପପାଇବାକୁ ବସିଲା । ମୁଷ୍ଟିମେୟ ପୁଞ୍ଜିପତିଙ୍କ ଦ୍ୱାରା ସେ ଆତଙ୍କିତ ହୋଇ ପଡ଼ିଥିଲେ । ତାଙ୍କ ଚିନ୍ତାଧାରା ଏଇମାନଙ୍କ ବିପକ୍ଷରେ ଜାଗି ଉଠିଲା । ଏ ସମସ୍ତର ବିସ୍ଫୋରଣ ଘଟିଲା ତାଙ୍କ ସାହିତ୍ୟରେ । ତାଙ୍କ ଉଦ୍ଦେଶ୍ୟ ବହୁ ପରିମାଣରେ 'ମୈଥିଳୀ ହିତ ସାଧନ'ର ସଙ୍ଗଠକମାନଙ୍କୁ ଲେଖିଥିବା ଏକ ଚିଠିରୁ ସୂଚନା ମିଳେ । ଏହି ଚିଠିରୁ ଜଣାଯାଏ ଯେ ସେ ମୈଥିଳୀ ସାହିତ୍ୟର ଏକ ଇତିହାସ ପ୍ରଣୟନ କରିବାକୁ ଚାହାନ୍ତି । ସେ ଏକ ଷାଣ୍ମାସିକ ପତ୍ରିକା ପ୍ରକାଶ କରିବାପାଇଁ ଚାହିଁଲେ, ଯେଉଁଥିରେ କି ମୈଥିଳୀ ସାହିତ୍ୟର କେତେକ ସମସ୍ୟା ଆଲୋଚନା କରାଯାଇ ପାରିବ । ସେ ଅନେକ ଉପାଦାନ ସଂଗ୍ରହ କରିଥିଲେ ଓ ଏଗୁଡ଼ିକୁ ଡ: ଅମରନାଥ ଝା ଏବଂ ନଗେନ୍ଦ୍ର ଗୁପ୍ତା ବିନିଯୋଗ କରିଥିଲେ । ସେ ସଂସ୍କୃତର 'ପୁରୁଷ ପରୀକ୍ଷା' (ବିଦ୍ୟାପତିଙ୍କ ରଚିତକୁ) ମୈଥିଳୀରେ ଅନୁବାଦ କରିଥିଲେ । ଏସବୁ ଦୃଷ୍ଟିକୋଣରୁ ତାଙ୍କୁ ଆଧୁନିକ ମୈଥିଳୀ ସାହିତ୍ୟର ଉଦ୍‌ଗାତା ବୋଲି କୁହାଯାଇଥାଏ ।

ମୈଥିଳୀ ମୁକ୍ତକର ବିକାଶଧାରା ପ୍ରସଙ୍ଗରେ ବହୁ ଆକର୍ଷଣୀୟ ତଥ୍ୟ ପାଠକର ସମ୍ମୁଖକୁ ଆସେ । କବୀଶ୍ୱର ଝାଙ୍କ ପରବର୍ତ୍ତୀ କବିମାନେ ପତ୍ରପତ୍ରିକା ମାଧ୍ୟମରେ ସେମାନଙ୍କ ସାହିତ୍ୟିକ କୃତିମାନ ପ୍ରଦର୍ଶନ କରିଥିଲେ । ଏମାନେ ହେଲେ—ଯଦୁବର, ପଦ୍ମନାଥ ଝା, ତାରକାନାଥ ଝା, ପୁଲକିତ ଲାଲ ଝା,

ଚେଦ ଝା, ରାମଚନ୍ଦ୍ର ମିଶ୍ର, ଜନାର୍ଦ୍ଦନ ଝା, ସୀତାରାମ ଝା, ଭୋଲା ଲାଲ ଦାସ, ବଳିତ ଏବଂ ଲକ୍ଷ୍ମୀପତି ସିଂହ । ଏମାନେ ସମାଜକ ଓ ରାଜନୈତିକ ଶୀର୍ଷକରେ ମୈଥିଳୀ ମୁକ୍ତକମାନ ରଚନା କରିଥିଲେ ।

୧୯୨୫ ପରେ ବା ୧୯୩୦ ପରେ ସବୁ ବିଭାଗରେ ଆଧୁନିକତାର ସ୍ପର୍ଶ ଲାଗିଥିଲା । ନୂତନ ଧାରଣ ଓ ଚିନ୍ତାରେ ଯେଉଁ କବିମାନେ ତାଙ୍କ ରଚନାବଳୀକୁ ସୁସମୃଦ୍ଧ କରିଥିଲେ, ସେମାନେ ହେଲେ ଭୁବନ, ଜୟନାରାୟଣ ମଲ୍ଲିକ, ଆର୍ଶି, ମୋହନ, ବ୍ରଜକିଶୋର ବର୍ମା, ରାମ ତରିତ ପାଣ୍ଡେ, ଗୋବିନ୍ଦ ଝା, ବ୍ୟାସ, ଶେଖର, ଅମର, ରମାକର, ରାଘବାଚାର୍ଯ୍ୟ, ବଦେହୀ, ଗୋପେସା, ଶ୍ରୀସା, ନିରଙ୍କୁଶ, କିସୁନ, କେଦାରନାଥ ଲାଭ, ଦୀପକ, ଇନ୍ଦୁ, ମାୟାନନ୍ଦ ରେଣୁ ଏବଂ ଅନ୍ୟମାନେ । ଏମାନଙ୍କ ରଚନାରେ ନିଜ ଭାବନା ଓ ଅନୁଭୂତିର ସରଳପ୍ରକାଶ, ଜୀବନ ସହିତ ପ୍ରତ୍ୟକ୍ଷଭାବରେ ସଂଯୋଗ ଆଦି ଲକ୍ଷଣୀୟ ।

କେତେକ କବି ପ୍ରାରମ୍ଭରେ (ଯଥା—ଭୁବନଜୀ) ନିଜସ୍ୱ ପରିବେଶ ମଧ୍ୟରେ ସାଂପ୍ରତିକ ଚିନ୍ତା ଓ ଭାବନା ସାଧାରଣ ଭାବରେ ପ୍ରକାଶ ପାଇଛି । ଏଥିପାଇଁ ଅବଶ୍ୟ ସେ ସମୟରେ ଅନ୍ୟଭାଷାର ଲେଖକମାନଙ୍କୁ ଧନ୍ୟବାଦ ଦେବାର କାରଣ ଅଛି । ମାତ୍ର ଅର୍ଥନୈତିକ ଆନ୍ଦୋଳନ ସମ୍ବଳିତ ଚିନ୍ତାଧାରା ଓ ଧାରଣାକୁ ନେଇ ଯେଉଁ ପ୍ରଗତି ସାହିତ୍ୟ ସୃଷ୍ଟି ହେଲା ସେମାନଙ୍କ ମଧ୍ୟରେ 'ଯାତ୍ରୀ' ପ୍ରଭୃତି ଗଣ୍ୟ ।

ପରୀକ୍ଷା ନିରୀକ୍ଷା ସ୍ୱର୍ଗତ ରାଜକମଳଙ୍କ ଦ୍ୱାରା ଆରମ୍ଭ ହେଲା । 'ପ୍ରଗତିବାଦ' ଆଦି ପ୍ରବେଶ ଲାଭ କଲା । ଏହିପରି ଦେଖିବାକୁ ଗଲେ, ମୈଥିଳୀ ସାହିତ୍ୟ କ୍ରମ-ବିକଶିତ ରୂପନେଇ ଅନେକ ଦୂର ଅଗ୍ରସର କରିପାରିଛି । ଏହା 'ନବୀନଗୀତା'ରୁ ସୁସ୍ପଷ୍ଟ ହୁଏ ।

ଶିଶୁ ସାହିତ୍ୟ ଦିଗରେ ଶିକ୍ଷାସୁଧା, ନୀତି ପଦ୍ୟାବଳୀ, ଭାରତର ହିତ-ନିସାଦ, କାବ୍ୟ ଦର୍ପଣ ଆଦି ଅନୁପମ ଅବଦାନ ।

---

# ଓଡ଼ିଆ

ପୂର୍ବ-ଭାରତୀୟ ଭାଷାମାନଙ୍କ ମଧ୍ୟରେ ଓଡ଼ିଆ ଭାଷା ଏକ ମୁଖ୍ୟଭାଷା । ଅସମୀୟା, ବଙ୍ଗଳା, ମୈଥିଳୀ ପ୍ରଭୃତି ଭାଷାମାନଙ୍କର ଉତ୍ପତ୍ତି, ବିକାଶ ଏବଂ ପ୍ରସାରର ଇତିହାସ ସହିତ ଓଡ଼ିଆ ଭାଷାର ଉତ୍ପତ୍ତି, ବିକାଶ ଏବଂ ପ୍ରସାର ମଧ୍ୟ ଭାଷାତାତ୍ତ୍ୱିକ ଏବଂ ଐତିହାସିକ ଦୃଷ୍ଟିରେ ଜଡ଼ିତ । ଆଧ୍ୟାତ୍ମିକ ଭାବାପନ୍ନ ରହସ୍ୟ-ବାଦୀ ରଚନା, ମୌଳିକ, କାନ୍ତିଶୀଳ ରସୋତ୍ତୀର୍ଣ୍ଣ କାବ୍ୟକବିତା, ରାମାୟଣ, ମହାଭାରତ ଅବଲମ୍ବନରେ ଲିଖିତ ବହୁ କ୍ଷୁଦ୍ର ଏବଂ ବୃହତ୍ ରଚନା ପ୍ରାଚୀନ କାଳରୁ ଏହି ଭାଷାର ସୃଷ୍ଟିସମ୍ଭାରରୂପେ ଦେଖିବାକୁ ମିଳେ । ଅତୀତ ଓଡ଼ିଶାର ବିସ୍ତୃତ ଭୌଗୋଳିକ ସୀମା ମଧ୍ୟରେ ଅବସ୍ଥିତ ଜନପଦ ଏବଂ ଜନତାର ଶକ୍ତିଶାଳୀ ଭାଷାରୂପେ ଏହାର ସ୍ଥାନ ଭାଷାଗୋଷ୍ଠୀରେ ସର୍ବାଦୌ ସ୍ୱୀକୃତ । ଏହା ଭାରତୀୟ ଆର୍ଯ୍ୟଭାଷା ପରିବାରର ପୂର୍ବାଞ୍ଚଳୀୟ ଭାଷାଗୋଷ୍ଠୀର ଅନ୍ତର୍ଭୁକ୍ତ ।

ପୁରାଣମାନଙ୍କରେ 'ଉଡ୍ର' ଏବଂ 'ଉତ୍କଳ' ଏପରି ଦୁଇ ଜାତିର ଉଲ୍ଲେଖ କରାଯାଇଛି । ତାମିଲ ଭାଷାର 'ଓକ୍‌କଲ' ଶବ୍ଦର ଅର୍ଥ କୃଷୀ ଏବଂ କାନେଡ଼ୀ 'ଓଡ଼ସୁ'ର ଅର୍ଥ ମଧ୍ୟ କୃଷୀ । ପ୍ରାଚୀନ କାଳରେ ଓଡ଼ିଶାର ବିଭିନ୍ନ ପ୍ରାନ୍ତରେ 'ଓଡ଼ସୁ' ନାମକ ଏକ ଜାତି ବାସ କରୁଥିଲେ । ଦ୍ରାବିଡ଼ ଭାଷାରେ ଚଷାଜାତିକୁ 'ଓକ୍‌କଲ' ଏବଂ 'ଓଡ଼ସୁ' କହୁଥିବାରୁ ସମ୍ଭବତଃ ପୁରାଣରେ ଉତ୍କଳ ଏବଂ ଉଡ୍ର ନାମକ ଦୁଇଟି ଜାତିର ଉଲ୍ଲେଖ କରାଯାଇଛି । ଏହି 'ଓକ୍‌କଲ' ସଂସ୍କୃତ ଭାଷାରେ 'ଉତ୍କଳ'ରେ ପରିଣତ ହୋଇଛି ଏବଂ 'ଓଡ଼ସୁ'ରୁ ଓଡ଼ିଶା ସୃଚିତ ହୋଇଅଛି । ପୁନଶ୍ଚ ପ୍ରାଚୀନ କାଳରେ ଉଡ୍ର, ଉତ୍କଳ, କଳିଙ୍ଗ ଏବଂ ଦକ୍ଷିଣ କୋଶଳ ଏପରି ଅଞ୍ଚଳମାନଙ୍କର ଭୌଗୋଳିକ ସୀମା ନିର୍ଣ୍ଣିତ କରାଯାଇଥିବାର ଦେଖାଯାଏ । କାଳକ୍ରମେ ଉଡ୍ର, ଉତ୍କଳ ମିଶି ଏକ ହୋଇଗଲେ; ଉତ୍କଳ ଏବଂ କଳିଙ୍ଗ ମଧ୍ୟ ଏକ ରାଜ୍ୟରେ ପରିଣତ ହେଲେ ।

ଅଶୋକଙ୍କ ପୂର୍ବରୁ ଓଡ଼ିଶାର ଲୋକେ ଉନ୍ନତ ଥିଲେ । ଅଶୋକଙ୍କ କଳିଙ୍ଗ-ଅଭିଯାନ ପରେ ଓଡ଼ିଶାରେ ବୌଦ୍ଧଧର୍ମ ପ୍ରସାର ସହିତ ପାଲି ଭାଷାର ମଧ୍ୟ ପ୍ରଚାର ଘଟିଥିବାର ସମ୍ଭାବନା । ଏହି ଦେଶର ଦ୍ରାବିଡ଼ ଭାଷା ଏବଂ ମଗଧର ପାଲି ଭାଷା ସମ୍ମିଶ୍ରଣରେ ଓଡ୍ର ଭାଷାର ସୃଷ୍ଟି ହୋଇଥିଲି । ଖ୍ରୀଷ୍ଟାବ୍ଦ ଦ୍ୱିତୀୟ ଶତାବ୍ଦୀ ସମୟକୁ

ଏହି ଉଡ୍ର ଭାଷା 'ବିଭାଷା' ବୋଲି ପରିଚିତ ହୋଇଥିଲା । ଭରତଙ୍କ ନାଟ୍ୟଶାସ୍ତ୍ରରେ ସଂସ୍କୃତପଯୋଗୀ ଏହି ବିଭାଷାର ସୂଚନା ଦେଖିବାକୁ ମିଳେ । ଉଡ୍ର ଓ ଶବର ଜାତିର ଲୋକେ ରଙ୍ଗମଞ୍ଚରେ ଉଡ୍ର ବିଭାଷା ବ୍ୟବହାର କରୁଥିଲେ । ଏହାପରେ ଆର୍ଯ୍ୟମାନଙ୍କ ସଂସ୍କୃତ ଭାଷାର ପ୍ରଭାବ ପଡ଼ିବାରୁ ଏହି ଉଡ୍ର ପ୍ରାକୃତରେ ପରିଣତ ହେଲା । ମାତ୍ର ଉଡ୍ର ପ୍ରାକୃତ ନାମ କୌଣସି ପ୍ରାକୃତ ବ୍ୟାକରଣରେ ଦେଖାଯାଏ ନାହିଁ । ମହାରାଷ୍ଟ୍ରୀ, ସୌରସେନୀ, ମାଗଧୀ, ପୈଶାଚୀ ଏବଂ ଅର୍ଦ୍ଧ-ମାଗଧୀ ଏହି ପାଞ୍ଚଗୋଟି ପ୍ରାକୃତ ବ୍ୟତୀତ ଆଉ ସବୁ ଭାଷା ଅପଭ୍ରଂଶ ନାମରେ ପରିଚିତ । ଉଡ୍ର ବିଭାଷା ଏହି ଅପଭ୍ରଂଶ ମଧ୍ୟରୁ ଗୋଟିଏ । ବଙ୍ଗଳା, ଅସମୀୟା ଭାଷା ସଦୃଶ ଓଡ଼ିଆ ଇଣ୍ଡୋ-ଇଉରୋପୀୟ ଭାଷାପରିବାର, ଆର୍ଯ୍ୟ-ଭାରତୀୟ ଶାଖାର ପୂର୍ବ-ମାଗଧୀଗୋଷ୍ଠୀ ଅନ୍ତର୍ଭୁକ୍ତ । ଓଡ଼ିଆ ଭାଷା ପ୍ରଧାନତଃ ମାଗଧୀ ପ୍ରାକୃତ ଓ ମାଗଧୀ ଅପଭ୍ରଂଶରୁ ବିକଶିତ ହୋଇଛି ବୋଲି କୁହାଯାଏ ।

ଖ୍ରୀଷ୍ଟାବ୍ଦ ପ୍ରଥମ ଶତାବ୍ଦୀରେ ହୁଏନ୍‌ସାଂଙ୍କ ଭାରତ ଭ୍ରମଣ ସମୟରେ ଓଡ଼ିଶାରେ ମାଗଧୀ ବ୍ୟବହୃତ ହେଉଥିବାର ଜଣାଯାଏ । ସେତେବେଳେ ଓଡ଼ିଶା ମହାଯାନ ବୌଦ୍ଧଧର୍ମର କେନ୍ଦ୍ର ଥିଲା । ସପ୍ତମ ଏବଂ ଅଷ୍ଟମ ଶତାବ୍ଦୀ ଓଡ଼ିଶାର ଭାଷା, ସଂସ୍କୃତି, ଧର୍ମ କ୍ଷେତ୍ରରେ ଏକ ଗୌରବୋଜ୍ଜ୍ୱଳ ସମୟ ବୋଲି ଜଣାଯାଏ । ଅଶୋକଙ୍କର କଳିଙ୍ଗ-ସମର ଓଡ଼ିଶା ଇତିହାସରେ ଏକ ସ୍ମରଣୀୟ ଘଟଣା । କଳିଙ୍ଗରେ ତାଙ୍କର ଖୋଦିତ ଦୁଇଟି ଶିଳାଲେଖ ମଧ୍ୟ ଭାଷା, ସାହିତ୍ୟ ଦୃଷ୍ଟିରୁ ତାତ୍ପର୍ଯ୍ୟପୂର୍ଣ୍ଣ । ତାହା ହେଉଛି ଧଉଳି ଏବଂ ଜଉଗଡ଼ ଶିଳାଲେଖ । ପୁନଶ୍ଚ ମହାପରାକ୍ରମଶାଳୀ ସମ୍ରାଟ୍ ଖାରବେଳଙ୍କର ଖଣ୍ଡଗିରିସ୍ଥ ହାତୀଗୁମ୍ଫା ଅଭିଲେଖ ମଧ୍ୟ ଏଠାରେ ଉଲ୍ଲେଖଯୋଗ୍ୟ । ଓଡ଼ିଶାର ସାଂସ୍କୃତିକ ଇତିହାସ, ଭାଷା ଏବଂ ସାହିତ୍ୟର ଅନୁଶୀଳନରେ ଉପରୋକ୍ତ ଅଭିଲେଖର ଭୂମିକା ସ୍ୱୀକାର୍ଯ୍ୟ । ଏହି ଅଭିଲେଖ ସମୂହର ଭାଷା ପାଲି ଏବଂ ଲିପି ହେଉଛି ବ୍ରାହ୍ମୀ । ଅବଶ୍ୟ ଖାରବେଳଙ୍କ ହାତୀଗୁମ୍ଫା ଅଭିଲେଖର ଭାଷାରେ ଉଭୟ ପାଲି ଏବଂ ସୌରସେନୀ ପ୍ରାକୃତର ପ୍ରଭାବ ପରିଦୃଷ୍ଟ । ଏହି ଭାଷା ସହିତ ଓଡ଼ିଆ ଭାଷାର ଘନିଷ୍ଠ ସମ୍ବନ୍ଧ ଥିବାର ଜଣାଯାଏ । ଅଶୋକଙ୍କର କଳିଙ୍ଗ ଆକ୍ରମଣ ଏବଂ ବୌଦ୍ଧଧର୍ମ ପ୍ରଚାର ଯୋଗୁ ଓଡ଼ିଶାରେ ପାଲି ଭାଷାର ବହୁଳ ପ୍ରଚାର ହୋଇଥିବା ସମ୍ଭବ । ସେହିପରି ଖାରବେଳଙ୍କ ସମୟରେ ଜୈନଧର୍ମର ଲୋକପ୍ରିୟତା ଯୋଗୁ ପାଲିଭାଷା ବେଶ୍ ପ୍ରଚଳିତ ହୋଇଥିଲା । ପାଲିଭାଷା ପ୍ରାକୃତ ଭାଷା ନାମରେ ମଧ୍ୟ ପରିଚିତ । ସପ୍ତମ ଶତାବ୍ଦୀ ବେଳକୁ ଓଡ୍ର ପ୍ରାକୃତ ଭାଷା ସୃଷ୍ଟି ହେଲା । ଓଡ଼ିଆ ଭାଷାର ମୂଳ— ପ୍ରାକୃତ । ଏହି ପ୍ରାକୃତ ଭାଷାର କ୍ରମବିକାଶଧାରାରେ ଅପଭ୍ରଂଶ ଭାଷାର ସ୍ୱରୂପ ପ୍ରକଟିତ ହେଲା । ଏହି ଅପଭ୍ରଂଶ ଭାଷାରେ ସାହିତ୍ୟିକ ରଚନା ନବମ ଶତାବ୍ଦୀରେ

ଦେଖିବାକୁ ମିଳେ । ଏହା ହେଉଛି ନେପାଳରୁ ଆବିଷ୍କୃତ "ବୌଦ୍ଧଗାନ ଦୋହା" କିମ୍ବା 'ଆଶ୍ଚର୍ଯ୍ୟ ଚର୍ଯ୍ୟାଚୟ' । ଏହି ଚର୍ଯ୍ୟାଗୁଡ଼ିକ ଓଡ଼ିଆ ଭାଷାର ପ୍ରାଚୀନତମ ନିଦର୍ଶନ ବୋଲି କେହି କେହି ଗବେଷକମାନଙ୍କ ପକ୍ଷରୁ ଯୁକ୍ତି କରାଯାଏ । ସେହିପରି ଅସମୀୟା, ବଙ୍ଗଳା ପ୍ରଭୃତି ଭାଷାର ପଣ୍ଡିତମାନେ ଚର୍ଯ୍ୟାଗୀତି ଗୁଡ଼ିକ ସେମାନଙ୍କ ଭାଷାର ପ୍ରାଚୀନତମ ନିଦର୍ଶନ ବୋଲି ଅନୁରୂପ ଯୁକ୍ତି ପ୍ରଦର୍ଶନ କରନ୍ତି; ମାତ୍ର ଚର୍ଯ୍ୟାଗୀତିର ଅଧିକାଂଶ ପ୍ରଣେତା ଓଡ଼ିଶାର ଅଧିବାସୀ ବୋଲି ଉଭୟ ଐତିହାସିକ ଓ ଧାର୍ମିକ ପ୍ରମାଣ ମିଳୁଅଛି । ସାଂପ୍ରତିକ କାଳର ଭାରତୀୟ ଆର୍ଯ୍ୟଭାଷା ପ୍ରାକୃତ ଏବଂ ଅପଭ୍ରଂଶ ସ୍ତର ଦେଇ ଅତ୍ୟାଧୁନିକ ଅବସ୍ଥା ପ୍ରାପ୍ତ ହୋଇଛନ୍ତି ।

ଗଙ୍ଗବଂଶର ପ୍ରତିଷ୍ଠାତା ଅନନ୍ତବର୍ମା ଚୋଡ଼ଗଙ୍ଗ ଦେବ (ଏକାଦଶ ଶତାବ୍ଦୀ)ଙ୍କ ସମୟରୁ ଉତ୍କଳ, ଉଡ୍ର, କଳିଙ୍ଗ, ଦକ୍ଷିଣ କୋଶଳ ରାଜ୍ୟ ଏକ ଶାସନାଧୀନ ହେଲେ । ସେହି ସମୟରୁ ଓଡ଼ିଆ ଭାଷାର ପ୍ରକୃତ ବିକାଶର ଭିତ୍ତି ସ୍ଥାପିତ ହୋଇଥିଲା । ସେହି ସମୟରୁ ସମ୍ଭବତଃ ଉଡ୍ରଦେଶ ବା ଓଡ଼ଦେଶ ପରିବର୍ତ୍ତେ 'ଓଡ଼ିଶା' ନାମ ପ୍ରବର୍ତ୍ତିତ ହେଲା ଏବଂ ସୂର୍ଯ୍ୟବଂଶ ଆବିର୍ଭାବ ସମୟକୁ ଏହା ମୁଖ୍ୟତଃ ଓଡ଼ିଶା ନାମରେ ଅଭିହିତ ହେଲା । ଜଗନ୍ନାଥ ମନ୍ଦିର ପ୍ରତିଷ୍ଠା ମଧ୍ୟ ଓଡ଼ିଆ ଭାଷା ଓ ସାହିତ୍ୟ ବିକାଶରେ ବହୁ ପରିମାଣରେ ସହାୟକ ହୋଇଥିଲା ।

ବସ୍ତୁତଃ ଓଡ଼ିଆ ଭାଷାର ଉତ୍ପତ୍ତି ମୂଳରେ ଦ୍ରାବିଡ଼ ଓ ଆର୍ଯ୍ୟଭାଷାର ପ୍ରଭାବ ହିଁ ନିହିତ । ପ୍ରାକୃତ ଓ ମାଗଧୀ ଅପଭ୍ରଂଶ ଉପରେ ଅର୍ଦ୍ଧମାଗଧୀ, ସୌରସେନୀ ପ୍ରଭୃତିର ପ୍ରଭାବ ପଡ଼ି ଓଡ଼ିଆ ଭାଷା ସୃଷ୍ଟି ହୋଇଥିଲା । ଖ୍ରୀ: ପୂ: ଚତୁର୍ଥ ଏବଂ ତୃତୀୟ ଶତାବ୍ଦୀଠାରୁ ଓଡ଼ିଶାର ମୂଳ ଦ୍ରାବିଡ଼ ଭାଷା ଉପରେ ଆର୍ଯ୍ୟ ଭାଷାର ପ୍ରଭାବ ପଡ଼ିଥିବାର ଜଣାଯାଏ । କ୍ରମେ କ୍ରମେ ବିବର୍ତ୍ତନର ବିଭିନ୍ନ ପର୍ଯ୍ୟାୟ ମଧ୍ୟରେ ଗତିକରି ଚତୁର୍ଦ୍ଦଶ ଶତାବ୍ଦୀ ବେଳକୁ ଓଡ଼ିଆ ଭାଷା ଏକ ସ୍ୱୟଂସମ୍ପୂର୍ଣ୍ଣ ସୃଷ୍ଟି ସମର୍ଥ ଭାଷା ଭାବରେ ପରିବ୍ୟାପ୍ତ ହୋଇଥିଲା । କେହି କେହି କହନ୍ତି, ଓଡ଼ିଆ ଏକ ରକ୍ଷଣଶୀଳ ଭାଷା । ସେଥିରେ ବହୁ ପ୍ରାଚୀନ ସଂସ୍କୃତ ଶବ୍ଦ ଅକ୍ଷୁଣ୍ଣ ରହିଅଛି । ଓଡ଼ିଆ ପ୍ରାକୃତ ଭାଷା ବୋଲି ଷୋଡ଼ଶ ଶତାବ୍ଦୀର ଭକ୍ତକବି ଜଗନ୍ନାଥ ଦାସ ବାରମ୍ବାର ଉଲ୍ଲେଖ କରିଥିଲେ—

"ପ୍ରାକୃତ ବନ୍ଧେ ଭାଗବତ,
କହିଲ ଦାସ ଜଗନ୍ନାଥ ।
× × ×
ଭାଷା ପ୍ରବନ୍ଧେ ଭାଗବତ,
କହଇ ଦାସ ଜଗନ୍ନାଥ ।"

୧୫୬୮ ମସିହାରେ ମୁସଲମାନମାନଙ୍କର ପ୍ରଥମେ ଓଡ଼ିଶା ଅଧିକାର ଏ ଜାତିର ଇତିହାସରେ ଏକ ଦୁର୍ଭାଗ୍ୟଜନକ ଘଟଣା । ତାହା ପୂର୍ବରୁ ମୁସଲମାନମାନେ ଅବଶ୍ୟ ଓଡ଼ିଶା ଆକ୍ରମଣ କରିଥିଲେ । ତେଣୁ ଷୋଡ଼ଶ ଶତାବ୍ଦୀର ଶେଷ ଭାଗରୁ ଓଡ଼ିଆ ସାହିତ୍ୟରେ ଯାବନିକ ପ୍ରଭାବ ପଡ଼ିବା ଆରମ୍ଭ ହୋଇଥିଲା । ସେହିପରି ୧୮୦୩ରେ ଇଂରେଜମାନେ ଓଡ଼ିଶା ଅଧିକାର କରିବା ସମୟରୁ ହିଁ ଓଡ଼ିଆ ଭାଷା ଓ ସାହିତ୍ୟ କ୍ଷେତ୍ରରେ ଇଂରେଜୀ ଭାଷାର ପ୍ରଭାବ ପରିବ୍ୟାପ୍ତ ହୋଇଥିଲା । ଓଡ଼ିଆ ଭାଷାରେ ବହୁ ଦ୍ରାବିଡ଼ ଶବ୍ଦ, ଯାବନିକ ଶବ୍ଦ ଓ ଇଂରାଜୀ ଶବ୍ଦ ପ୍ରଚଳିତ ।

### ଲିପି :

ମୌର୍ଯ୍ୟଯୁଗରେ ସମଗ୍ର ଭାରତବର୍ଷରେ ଗୋଟିଏ ମାତ୍ର ଲିପି ବ୍ୟବହୃତ ହେଉଥିବାର ଜଣାଯାଏ । ଓଡ଼ିଶାରେ ବ୍ରାହ୍ମୀଲିପିର ପ୍ରଥମ ନିଦର୍ଶନ ହେଉଛି ସମ୍ରାଟ ଅଶୋକଙ୍କ ଖୋଦିତ ଧଉଳି ଏବଂ ଗଞ୍ଜାମ ଜିଲ୍ଲାର ଜଉଗଡ଼ ଶିଳାଲିପି ଏବଂ ଦ୍ୱିତୀୟ ନିଦର୍ଶନ ହେଉଛି ଖାରବେଳଙ୍କ ଖୋଦିତ ଉଦୟଗିରିର ହାତୀଗୁମ୍ଫା ଶିଳାଲିପି । ଓଡ଼ିଶାରେ ବ୍ରାହ୍ମୀଲିପିର ପ୍ରଥମ ବ୍ୟବହାରର ନିଦର୍ଶନର ସମୟ ହେଉଛି ଯଥାକ୍ରମେ ଖ୍ରୀ: ପୂ: ୨୫୭ ଏବଂ ଖ୍ରୀ: ପୂ: ପ୍ରଥମ ଶତାବ୍ଦୀ । ଓଡ଼ିଶାରେ ପ୍ରଚଳିତ ଆଦ୍ୟ ଲିପି ହେଉଛି—ବ୍ରାହ୍ମୀଲିପି । ଏହା ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀ ପର୍ଯ୍ୟନ୍ତ ପ୍ରାଚ୍ୟ-ପୂର୍ବ-ଭାରତୀୟ ଓଡ଼ିଶାରେ ପ୍ରଚଳିତ ଥିଲା । ଯାଜପୁର ନିକଟସ୍ଥ ସିଦ୍ଧେଶ୍ୱର ନାମକ ଗ୍ରାମରୁ ପ୍ରାପ୍ତ ଚତୁର୍ଥ ନରସିଂହ ଦେବଙ୍କ ଶିଳାଲେଖରେ ବ୍ରାହ୍ମୀ ଲିପି ବ୍ୟବହୃତ ହୋଇଛି । ଏତଦ୍‌ବ୍ୟତୀତ ଆହୁରି ଅନେକ ଶିଳାଲେଖରେ ମଧ୍ୟ ଏହି ଲିପି ବ୍ୟବହୃତ ହୋଇଥିବାର ଜଣାଯାଏ । ସମ୍ଭବତଃ ଷୋଡ଼ଶ ଶତାବ୍ଦୀର ଶେଷ ଆଡ଼କୁ ପ୍ରାଚୀନ ଓଡ଼ିଆ ଲିପି ଆଧୁନିକ ଓଡ଼ିଆ ଲିପିରେ ପରିଣତ ହେଲା । ତାଳପତ୍ର ଉପରେ ଲୌହ ଲେଖନୀ ସାହାଯ୍ୟରେ ଲେଖାଯାଉଥିବାରୁ ଓଡ଼ିଆ ଲିପି ବରାବର ବର୍ତ୍ତୁଳାକାର ଧାରଣ କରିଛି ।

### ଓଡ଼ିଆ ଭାଷାରେ ଆଦ୍ୟ ସାହିତ୍ୟିକ କୃତି :

ଓଡ଼ିଆ ସାହିତ୍ୟରେ ଆଦ୍ୟ ସାହିତ୍ୟିକ ଏବଂ ଶିଳ୍ପସମ୍ପନ୍ନ କୃତିର ନାମୋଲ୍ଲେଖ କରିବା ଏକ ବିବଦମାନ ବ୍ୟାପାର । ଉନ୍ମେଷର ପ୍ରଥମ ପର୍ଯ୍ୟାୟରେ ସାହିତ୍ୟ ତ୍ରିମୁଖୀ ଥିଲା—ପ୍ରଥମତଃ ମୌଖିକ ଲୋକସାହିତ୍ୟ, ଦ୍ୱିତୀୟତଃ ଅଭିଲେଖ ସାହିତ୍ୟ ଓ ତୃତୀୟତଃ ଲିଖିତ ରଚନା । ପୁନଶ୍ଚ ଲିଖିତ ରଚନା ବିଶେଷମାତ୍ରାରେ ଧର୍ମାଶ୍ରୟୀ ଏବଂ ଭକ୍ତିରସାତ୍ମକ ଥିବାର ଅନୁମାନ । ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀରୁ ଯେଉଁ ଲିଖିତ ସାହିତ୍ୟର ସୃଷ୍ଟି ହେଲା, ତାହାର ଏକ ଧାରା ହେଉଛି ବୌଦ୍ଧ ସିଦ୍ଧାଚାର୍ଯ୍ୟମାନଙ୍କ ଦ୍ୱାରା ରଚିତ ବୌଦ୍ଧଗାନ ଓ ଦୋହା । ଏହି ଯୁଗରେ ମାଗଧୀ ପ୍ରାକୃତ ଓ ମାଗଧୀ ଅପଭ୍ରଂଶରୁ ଓଡ଼ିଆ ଭାଷାର ନୂତନ ରୂପ ପ୍ରକଟିତ ହେଉଥିଲା । ଏହି ବୌଦ୍ଧଗାନ ଓ ଦୋହା ପୂର୍ବ-ଭାରତୀୟ ଭାଷାସମୂହର ପ୍ରାରମ୍ଭିକ ରୂପ ବୋଲି ବିଭିନ୍ନ ଗବେଷକ

ପ୍ରମାଣ କରିଛନ୍ତି । ସମଗ୍ର ଭାରତବର୍ଷରେ ବୌଦ୍ଧଧର୍ମର ପ୍ରଚାରପ୍ରସାରର ଭୂମିରୂପେ ପ୍ରାଚୀନ ଓଡ଼ିଶା ହିଁ ପ୍ରସିଦ୍ଧ । ଉତ୍କଳୀୟ ବଣିକଦ୍ୱୟ ତପସୁ ଓ ଭଲ୍ଲିକ ସର୍ବପ୍ରଥମେ ବୁଦ୍ଧଦେବଙ୍କ ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ଅଶୋକଙ୍କର କଳିଙ୍ଗ ଅଭିଯାନ, ନରହତ୍ୟା ଭାରତବର୍ଷ ଇତିହାସରେ ଯେତିକି ଉଲ୍ଲେଖଯୋଗ୍ୟ, କଳିଙ୍ଗ ଭୂମିରେ ଅଶୋକଙ୍କର ହୃଦୟ ପରିବର୍ତ୍ତନ ଏବଂ ବୌଦ୍ଧଧର୍ମ ଗ୍ରହଣ ସେତିକି ମଧ୍ୟ ଯୁଗାନ୍ତକାରୀ ଘଟଣା । ଆଚାର-ବ୍ୟବହାର ଦୃଷ୍ଟିରେ ବୌଦ୍ଧାଚାର୍ଯ୍ୟମାନଙ୍କୁ ଓଡ଼ିଶାର ଅଧିବାସୀ ବୋଲି ଅଭିହିତ କରିବାରେ ଅସମୀଚୀନତା କିଛି ନାହିଁ । ଓଡ଼ିଶାର ରାଜା ଇନ୍ଦ୍ରଭୂତିଙ୍କ ପ୍ରଚାରିତ ବଜ୍ରଯାନ ଏବଂ ତାଙ୍କ ଭଗିନୀଙ୍କ ପ୍ରବର୍ତ୍ତିତ 'ସହଜଯାନ' ବୌଦ୍ଧଧର୍ମ ଇତିହାସରେ ଏକ ଗୁରୁତ୍ୱପୂର୍ଣ୍ଣ ପର୍ଯ୍ୟାୟ । ଏହିପରି ତାତ୍ପର୍ଯ୍ୟପୂର୍ଣ୍ଣ ବହୁ ତଥ୍ୟର ବିଚାରରେ ବୌଦ୍ଧଗାନ ଓ ଦୋହାର ସ୍ରଷ୍ଟା ସିଦ୍ଧାଚାର୍ଯ୍ୟଗଣ ଓଡ଼ିଶାର ଲୋକ ଥିଲେ ଏବଂ ବୌଦ୍ଧଗାନ ଓ ଦୋହା ପ୍ରାଚୀନ ଓଡ଼ିଆ ଭାଷାର ଆଦ୍ୟ ପ୍ରକଟିତ ରୂପ ବୋଲି ଯୁକ୍ତି କରାଯାଇପାରେ । ଅବଶ୍ୟ ବୌଦ୍ଧଗାନ ଓ ଦୋହାକୁ ବଙ୍ଗଳା, ଆସାମୀ ଏବଂ ମୈଥିଳୀର ଆଦ୍ୟରୂପ ବୋଲି ମଧ୍ୟ ପଣ୍ଡିତମାନେ ତାଦୃଶ ଯୁକ୍ତି କରିଛନ୍ତି । ପ୍ରାଚୀନ ଓଡ଼ିଆ ଭାଷାର ସ୍ୱରୂପ ଓ କେତେକ ଲକ୍ଷଣ ଦୋହାରେ ମଧ୍ୟ ପରିଲକ୍ଷିତ । ସିଦ୍ଧାଚାର୍ଯ୍ୟମାନଙ୍କ ଆଧ୍ୟାତ୍ମବାଦୀ ଗୀତିରଚନାରେ ପ୍ରାଚୀନ ଓଡ଼ିଆ ଭାଷା ତଥା ସାହିତ୍ୟରେ ରୂପରେଖ ନିର୍ଣ୍ଣୟ କରିବା ପାଇଁ ଉପାଦାନ ପରିଦୃଷ୍ଟ ହୁଏ । ପ୍ରାଚୀନ ବୌଦ୍ଧଗାନ ଓ ଦୋହାକୁ ଛାଡ଼ିଦେଲେ, ଓଡ଼ିଆ ସାହିତ୍ୟର ବିକାଶର ପ୍ରାକ୍‌କାଳରେ ନାଥଧର୍ମ ଏବଂ ନାଥ-ସାହିତ୍ୟର ଅଭ୍ୟୁଦୟ, ସେହିପରି ସାଂସ୍କୃତିକ ରାଜ୍ୟରେ ଆଉ ଏକ ତାତ୍ପର୍ଯ୍ୟପୂର୍ଣ୍ଣ ପର୍ଯ୍ୟାୟ । ଉତ୍କଳୀୟ ଧର୍ମ, ଧ୍ୟାନ, ଧାରଣା ଏବଂ ସାଂସ୍କୃତିକ ପରିପ୍ରେକ୍ଷୀରେ ନାଥଧର୍ମ ଏବଂ ନାଥଧର୍ମୀ ସାହିତ୍ୟ ରଚନାର ମୂଲ୍ୟ ସମଗ୍ର ଓଡ଼ିଆ ସାହିତ୍ୟର ଇତିହାସ ତଥା ବିକାଶଧାରା ନିର୍ଦ୍ଦେଶିତ କରିବାରେ ସ୍ୱୀକାର୍ଯ୍ୟ । ଅଷ୍ଟମ-ଶତାବ୍ଦୀରେ ଓଡ଼ିଶାରେ ବଜ୍ରଯାନ ଓ ସହଜଯାନର ଅଭ୍ୟୁଦୟ ଘଟିଥିଲା । ଯୁଗ ପ୍ରଭାବରେ ବଜ୍ରଯାନ ଓଡ଼ିଶାରେ ଜଗନ୍ନାଥ ଉପାସନାରେ ପରିଣତ ହେଲା ଏବଂ ସହଜଯାନ ପୂର୍ବଭାରତରେ ସହଜିଆ ବୈଷ୍ଣବଧର୍ମରେ ପରିଣତ ହେଲା । ତେବେ ଏକାଦଶ ଶତାବ୍ଦୀଠାରୁ ଚତୁର୍ଦ୍ଦଶ ଶତାବ୍ଦୀ ପର୍ଯ୍ୟନ୍ତ ନାଥଧର୍ମ ଓଡ଼ିଶାର ଧର୍ମ ଓ ସଂସ୍କୃତି କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା । ନାଥଧର୍ମ ମୁଖ୍ୟତଃ ଶିବ-ଉପାସନା-ଆଧାରିତ ଏବଂ ଏହା ଶୈବଧର୍ମ ଏବଂ ଶୈବାଚାର ସହିତ ଘନିଷ୍ଠ ଭାବରେ ସଂପୃକ୍ତ । ଏହି ନାଥଧର୍ମପ୍ରଭାବିତ ରଚନାସମୂହର ଓଡ଼ିଆ ସାହିତ୍ୟକୁ ଦାନ କମ୍ ନୁହେଁ । ଗୋରଖ ନାଥଙ୍କ ରଚିତ 'ଶିଶୁ ବେଦ' (ଏକାଦଶ ଶତାବ୍ଦୀ) ଏବଂ ମତ୍ସ୍ୟେନ୍ଦ୍ର ଗୀତା, ଗୋରେଖ ଗୀତା ପ୍ରଭୃତି ରଚନା ଏହି ପ୍ରସଂଗରେ ଉଲ୍ଲେଖଯୋଗ୍ୟ ।

ଓଡ଼ିଶାର ଦଶମ ଶତାବ୍ଦୀର ପ୍ରଥମାର୍ଦ୍ଧ ପର୍ଯ୍ୟନ୍ତ, ଭୌମବଂଶ ଏବଂ ପରେ ସୋମବଂଶୀ ରାଜତ୍ୱ କରିଥିଲେ ଏବଂ ଏହା ପରେ ଅନନ୍ତବର୍ମା ଚୋଡ଼ଗଙ୍ଗ ଦେବ ଉତ୍କଳ ଅଧିକାରପୂର୍ବକ ଗଙ୍ଗବଂଶ ରାଜତ୍ୱ ପ୍ରତିଷ୍ଠା କଲେ । ଗଙ୍ଗବଂଶୀ ଚୋଡ଼ଗଙ୍ଗ ଦେବଙ୍କ ରାଜତ୍ୱର ଓଡ଼ିଶାର ଶ୍ରୀକ୍ଷେତ୍ରରେ ଜଗନ୍ନାଥ ମନ୍ଦିର ନିର୍ମାଣ ପ୍ରଧାନ ଘଟଣା । ଗଙ୍ଗବଂଶୀ ରାଜାମାନଙ୍କର ସଂସ୍କୃତ ସାହିତ୍ୟର ପୃଷ୍ଠପୋଷକତା ମଧ୍ୟ ଉଲ୍ଲେଖ-ଯୋଗ୍ୟ । ପ୍ରାକୃତ ଭାଷାପ୍ରତି ସୁଧୀବର୍ଗଙ୍କର ବିଶେଷ ଦୃଷ୍ଟି ଆକୃଷ୍ଟ ହୋଇ ନ ଥିଲା ।

ଓଡ଼ିଶାର ଧର୍ମୀୟ ଇତିହାସରେ ଶୈବଧର୍ମ ସେହିପରି ବିଶିଷ୍ଟ ସ୍ଥାନ ଅଧିକାର କରିଅଛି । ତେଣୁ ଏକାମ୍ରବନର ପ୍ରସିଦ୍ଧ ଯୋଗୀ ନାରାୟଣ ନନ୍ଦ ଅବଧୂତ ସ୍ୱାମୀଙ୍କ ଲିଖିତ 'ରୁଦ୍ରସୁଧାନିଧି' କାବ୍ୟିକ ଗଦ୍ୟ କୃତି ଓଡ଼ିଶାରେ ଶୈବ ଉପାସନା ଏବଂ ଶୈବ-ଉପାସନା-ପ୍ରଭାବିତ ସାହିତ୍ୟିକ ରଚନାର ଏକ ବଳିଷ୍ଠ ନିଦର୍ଶନ । ଏହାର ରଚନା ସମୟ ଚତୁର୍ଦ୍ଦଶ ଶତାବ୍ଦୀର ମଧ୍ୟଭାଗ ବୋଲି ବିଭିନ୍ନ ତଥ୍ୟ ସାହାଯ୍ୟରେ ପ୍ରମାଣିତ କରାଯାଇଛି । କପିଳାସରେ ହରପାର୍ବତୀ ଦିନେ ନିଜର ସିଦ୍ଧ ରୁଦ୍ରମାନଙ୍କୁ ଯେପରି ପରୀକ୍ଷା କରିଥିଲେ ଏବଂ ଅଭିନବ ଚୈତନ ଯେପରି ପାର୍ବତୀଙ୍କ ମାନସ-କନ୍ୟା ରୂପରେ ବିମୋହିତ ହେଲ, ଶିବଙ୍କ ଆଜ୍ଞାରେ ମାନବଜନ୍ମ ଗ୍ରହଣ କରି ନିଜର ପ୍ରାରବ୍ଧ କର୍ମ ଭୋଗକରି ଶେଷରେ ମୁକ୍ତି ଲାଭ କଲ, ତାହାହିଁ ବର୍ଣ୍ଣିତ ।

ଉତ୍କଳର କବି ଜୟଦେବଙ୍କର ରାଧାକୃଷ୍ଣପ୍ରେମରସାଣିତ ଅମର କାବ୍ୟ 'ଗୀତ ଗୋବିନ୍ଦ' ଏବଂ ପଣ୍ଡିତ ବିଦ୍ୟାଧରଙ୍କର ଅଲଙ୍କାର ଗ୍ରନ୍ଥ 'ଏକାବଳୀ' ଓ ବିଶ୍ୱନାଥ କବିରାଜଙ୍କର 'ସାହିତ୍ୟ ଦର୍ପଣ' ସେହି ଯୁଗରେ ସଂସ୍କୃତ ଭାଷାରେ ଅତୁଟ ପ୍ରଭାବ ନିଦର୍ଶନ । ଯାହାହେଉ, ଯୁଗର ସାଂସ୍କୃତିକ ପ୍ରତିକ୍ରିୟା ସ୍ୱରୂପ ଚତୁର୍ଦ୍ଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ପ୍ରାକୃତ ଭାଷାରେ ରୁଦ୍ରସୁଧାନିଧି ସଦୃଶ ଗଦ୍ୟ ରଚନାର ପରିକଳ୍ପନା ଓଡ଼ିଆ ସାହିତ୍ୟରେ ଏକ ଉଲ୍ଲେଖଯୋଗ୍ୟ ଘଟଣା ।

ଓଡ଼ିଆ ସାହିତ୍ୟରେ ଯୁଗ ବିଭାଗ ବିଭିନ୍ନ ଦୃଷ୍ଟିକୋଣରୁ କରାଯାଇଥାଏ । ଯଥା—ରାଜନୈତିକ ଇତିହାସ, ସାହିତ୍ୟିକ ରଚନା ଏବଂ ବିଷୟବସ୍ତୁର ସ୍ୱାତନ୍ତ୍ର୍ୟ, ପୁନଶ୍ଚ ସାହିତ୍ୟିକ ପ୍ରତିଭା ।

୧ । ସାରଳା ଯୁଗ—(ଏକାଦଶ ଶତାବ୍ଦୀର ପ୍ରଥମାର୍ଦ୍ଧଠାରୁ ଷୋଡ଼ଶ ଶତାବ୍ଦୀ ପର୍ଯ୍ୟନ୍ତ, ଗଙ୍ଗବଂଶ ପ୍ରାରମ୍ଭରୁ ସୂର୍ଯ୍ୟବଂଶ ପ୍ରସାର ପର୍ଯ୍ୟନ୍ତ—କପିଳେନ୍ଦ୍ର ଦେବଙ୍କ ରାଜତ୍ୱ ଏହି ଯୁଗରେ ଅନ୍ତର୍ଭୁକ୍ତ ।

୨ । ପଞ୍ଚସଖା ଯୁଗ—ଷୋଡ଼ଶ ଶତାବ୍ଦୀଠାରୁ ଅଷ୍ଟାଦଶ ଶତାବ୍ଦୀ ପର୍ଯ୍ୟନ୍ତ—ପ୍ରତାପରୁଦ୍ରଦେବଙ୍କ ରାଜତ୍ୱ ଏହି ଯୁଗର ଅନ୍ତର୍ଭୁକ୍ତ ।

୩ । ଉପେନ୍ଦ୍ର ଯୁଗ—ଅଷ୍ଟାଦଶ ଶତାବ୍ଦୀରୁ ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ପର୍ଯ୍ୟନ୍ତ ।

୪। ଆଧୁନିକ ଜାଗରଣ ଯୁଗ—ଊନବିଂଶ ଶତାବ୍ଦୀର (ରାଧାନାଥ, ମଧୁସୂଦନ, ଫକୀରମୋହନ) ମଧ୍ୟଭାଗରୁ ୧୯୪୭ ପର୍ଯ୍ୟନ୍ତ।

୫। ଅତ୍ୟାଧୁନିକ ଯୁଗ—ସ୍ୱାଧୀନତା ପରବର୍ତ୍ତୀକାଳ।

ପୁନଶ୍ଚ ଓଡ଼ିଆ ସାହିତ୍ୟର ଇତିହାସକୁ ପ୍ରାକ୍ ଆଦିକାଳ, ଆଦିକାଳ, ପ୍ରାକ୍ ମଧ୍ୟକାଳ, ପ୍ରାକ୍ ଅଧୁନିକ, ଆଧୁନିକ ଏବଂ ଅତ୍ୟାଧୁନିକ କାଳ କିମ୍ବା ଧର୍ମ, ପୁରାଣ, ମହାଭାରତ, ଭାଗବତ ଯୁଗ; କାଳ୍ପନିକ, ଆଲଙ୍କାରିକ କାବ୍ୟଯୁଗ; ଆଧୁନିକ କାବ୍ୟ-କବିତା, ଗଳ୍ପ, ଉପନ୍ୟାସ ଏବଂ ନାଟକ ଯୁଗ ବୋଲି ଚିହ୍ନିତ କରାଯାଇପାରେ। ପରିମାଣ ଏବଂ ଶିଳ୍ପଗତ ବିଚାରରେ ମଧ୍ୟ ଏହି ସାହିତ୍ୟର ଇତିହାସକୁ ବିଭକ୍ତ କରାଯାଇପାରେ।

ମାର୍କଣ୍ଡଦାସଙ୍କର 'କେଶବ କୋଇଲି', ବତ୍ସାଦାସଙ୍କର 'କଳସା ଚଉତିଶା' ସଦୃଶ ତତ୍ତ୍ୱପ୍ରଧାନ କ୍ଷୁଦ୍ର କ୍ଷୁଦ୍ର ପଦ୍ୟରଚନାକୁ ଛାଡ଼ିଦେଲେ ଓଡ଼ିଆ ସାହିତ୍ୟ ନିର୍ମାଣର ଆଦିକାଳରେ ଯେଉଁ ବରେଣ୍ୟ କବିଙ୍କର ବର୍ଣ୍ଣୋଜ୍ଜ୍ୱଳ କୃତି ଓଡ଼ିଆ ଭାଷା-ଭାଷୀଙ୍କର ହୃଦୟକୁ ସ୍ପନ୍ଦିତ କରିଦେଇଥିଲା, ତାହା ହେଉଛି—ଆଦିସ୍ରଷ୍ଟା ଉତ୍କଳ-ବ୍ୟାସ ସାରଳା ଦାସଙ୍କର ଦୀର୍ଘରଚନା 'ମହାଭାରତ'। ଏହା ବିଭିନ୍ନ ଖଣ୍ଡରେ ବିଭକ୍ତ। "ଯାହା ନାହିଁ ଭାରତେ, ତାହା ନାହିଁ ଭାରତେ"—ପ୍ରଶସ୍ତି ଯେଉଁ ଗ୍ରନ୍ଥ ପ୍ରତି ପ୍ରଯୁଜ୍ୟ, ତାହା ହେଉଛି ଦେଶୀ ଭାଷାରେ ଲିଖିତ କବି ସାରଳାଦାସଙ୍କର 'ମହାଭାରତ'। ମୂଳ ସଂସ୍କୃତ ଗ୍ରନ୍ଥର ଏହା ଆକ୍ଷରିକ ଅନୁବାଦ ନୁହେଁ; ବରଂ ମୌଳିକତାର ଜ୍ୟୋତିରେ ଏହି ବିରାଟ ଗ୍ରନ୍ଥର ପ୍ରତ୍ୟେକ ପୃଷ୍ଠା ଉଦ୍ଭାସିତ। ଦେଶରେ ପ୍ରତିଷ୍ଠିତ ସଂସ୍କୃତ ପରମ୍ପରା ପୃଷ୍ଠଭୂମିରେ ସାରଳାଦାସଙ୍କର ମହାଭାରତ ଏକ କାନ୍ତିକାରୀ ଅସାଧାରଣ ରଚନା। ସୂର୍ଯ୍ୟବଂଶର ପ୍ରତିଷ୍ଠାତା ପରାକ୍ରମଶାଳୀ ଦିଗ୍‌ବିଜୟୀ କପିଳେନ୍ଦ୍ର ଦେବଙ୍କ (୧୪୩୫-୧୪୬୫) ରାଜତ୍ୱ ସମୟରେ ସାରଳା ଦାସ ତାଙ୍କର 'ମହାଭାରତ' ରଚନା କରିଥିଲେ।

"ପ୍ରଣିପତ୍ୟେ ଖଟଇ କପିଳେନ୍ଦ୍ର ନାମେ ରାଜା
ତେତିଶ କୋଟି ଦେବେ ଚରଣେ ଯାର ପୂଜା।" (ଆଦିପର୍ବ)

ସାରଳା ଦାସଙ୍କ ମହାଭାରତ ଗ୍ରନ୍ଥ ଏକ ଅଭିନବ ରଚନା ଏବଂ କବି ସାରଳା ଦେବୀଙ୍କର ପ୍ରସାଦରୁ ତାହା ରଚନା କରିଥିଲେ। ତତ୍କାଳୀନ ଉତ୍କଳର ବିବିଧ ବର୍ଣ୍ଣନା, ସଂସ୍କୃତି, ଭାଷା, ଧର୍ମ ତଥା ସାମାଜିକ, ରାଜନୈତିକ ବିବରଣୀର ଶୈଳୀକ ପରିପ୍ରକାଶ ହେଉଛି ମହାଭାରତ। ଅଥଚ ସାରଳା ଦାସ ମୂର୍ଖ ଏବଂ ଅଜ୍ଞ ଥିଲେ ବୋଲି ବାରମ୍ବାର ଉଲ୍ଲେଖ କରିଛନ୍ତି। ମହାଭାରତ ଅଷ୍ଟାଦଶ ପର୍ବ-ବିଶିଷ୍ଟ। ସାରଳା ଦାସ ଆଉ ଦୁଇଖଣ୍ଡି ପୁସ୍ତକ ରଚନା କରିଥିଲେ—'ଚଣ୍ଡୀ ପୁରାଣ' ଓ 'ବିଲଙ୍କା ରାମାୟଣ'। ଓଡ଼ିଆ ଭାଷାର ସାହିତ୍ୟିକ ଉଦ୍‌ବର୍ତ୍ତନ ସମୟରେ

ଲିଖିତ ହୋଇଥିବାରୁ ସାରଳା ଦାସଙ୍କ କୃତି ସମୂହର ଭାଷା-ସୌନ୍ଦର୍ଯ୍ୟ, ପରିପାଟୀ ସର୍ବଥା ଉଲ୍ଲେଖଯୋଗ୍ୟ । ଏତଦ୍‌ବ୍ୟତୀତ ଓଡ଼ିଶାରେ ଶାକ୍ତ, ବୌଦ୍ଧ ଏବଂ ବୈଷ୍ଣବ ଉପାସନାର ସନ୍ତକଞ୍ଚିତ୍ ଆଭାସ ସାରଳା ଦାସଙ୍କ ରଚନାରେ ପରିଦୃଷ୍ଟ ହୁଏ ।

ଏହି ଯୁଗରେ ଅର୍ଜୁନ ଦାସଙ୍କର ରାମଚରିତମୂଳକ 'ରାମବିଭା', ଶିଶୁ-ଶଙ୍କର ଦାସଙ୍କର ପୁରାଣ-ଉପାଖ୍ୟାନ-ଆଧାରିତ 'ଉଷାଭିଳାଷ' ଶୀର୍ଷକଦ୍ୱୟ ଆଦିଯୁଗୀୟ ଓଡ଼ିଆ କାବ୍ୟର ପରମ୍ପରା ଏବଂ ସ୍ୱରୂପ ନିର୍ଦ୍ଦେଶିତ କରିଥାଏ । 'ଉଷାଭିଳାଷ' କାବ୍ୟଟି ବାଣାସୁରନନ୍ଦିନୀ ଉଷା ଓ ପ୍ରଦ୍ୟୁମ୍ନନନ୍ଦନ ଅନିରୁଦ୍ଧଙ୍କର ପ୍ରଣୟ କାହାଣୀ ଅବଲମ୍ବନରେ କାବ୍ୟିକ ଢଙ୍ଗରେ ଲିଖିତ ।

ସୂର୍ଯ୍ୟବଂଶର ଅନ୍ୟତମ କୃତୀ ନରପତି ପ୍ରତାପରୁଦ୍ରଙ୍କ ରାଜତ୍ୱ ସମୟରେ ଓଡ଼ିଆ ସାହିତ୍ୟର ବୈଚିତ୍ର୍ୟ ଏବଂ ସୌନ୍ଦର୍ଯ୍ୟପୂର୍ଣ୍ଣ ବିକାଶ ସାଧିତ ହୋଇଥିଲା । ସେଥିପାଇଁ ସମ୍ପୃକ୍ତ ଶାସକଙ୍କର ଧର୍ମପ୍ରାଣତା ଏବଂ ବିଦ୍ୟୋତ୍ସାହ ଯେତିକି ଦାୟୀ ହୋଇଥିଲା, ବୈଷ୍ଣବ ଧର୍ମ ଆଦର୍ଶ ଅନୁପ୍ରାଣିତ କବିମଣ୍ଡଳୀର ଐକାନ୍ତିକ ସାଧନା ଏବଂ ଶାସ୍ତ୍ରୀୟ ପ୍ରୀତି ମଧ୍ୟ ସେହି ପରିମାଣରେ ଦାୟୀ ହୋଇଥିଲା ବୋଲି କୁହା-ଯାଇପାରେ । ନିର୍ଦ୍ଦିଷ୍ଟ ଧର୍ମ, ଧ୍ୟାନ, ଧାରଣା ଏବଂ ଆଧ୍ୟାତ୍ମିକ ଦୃଷ୍ଟିକୋଣ ସେମାନଙ୍କୁ ଏକ ଶ୍ରେଣୀରେ ଅନ୍ତର୍ଭୁକ୍ତ କରିଥାଏ । ସେମାନେ ହେଉଛନ୍ତି— ବଳରାମ ଦାସ, ଜଗନ୍ନାଥ ଦାସ, ଅଚ୍ୟୁତାନନ୍ଦ ଦାସ, ଯଶୋବନ୍ତ ଦାସ ଏବଂ ଶିଶୁ ଅନନ୍ତ ଦାସ । ଏହି ପଞ୍ଚକବି ଓଡ଼ିଆ ସାହିତ୍ୟରେ 'ପଞ୍ଚସଖା' ନାମରେ ସୁପରିଚିତ । ଭକ୍ତି, ଆଧ୍ୟାତ୍ମିକ ଭାବନା, ପିଣ୍ଡ-ବ୍ରହ୍ମାଣ୍ଡସାଧନା ହେଉଛି ସେମାନଙ୍କ ସାହିତ୍ୟର ସାମଗ୍ରିକ ଆବେଦନ । ପ୍ରତାପରୁଦ୍ର ଉତ୍କଳର ରାଜନୈତିକ ସୀମା ବିଦ୍ରୋହ ପାଇଁ ଯେପରି ସଫଳ ଉଦ୍ୟମ କରିଥିଲେ, ଓଡ଼ିଆ ସାହିତ୍ୟର ଭାବରୂପକ ଦିଗ୍‌ବଳୟ ସମ୍ପ୍ରସାରିତ କରିବା ପାଇଁ ପଞ୍ଚସଖା କବିବୃନ୍ଦ ସେହିପରି ନିରବଚ୍ଛିନ୍ନ ସାଧନା କରିଥିଲେ । ସେମାନେ ନିରାକାର ବ୍ରହ୍ମଙ୍କୁ ଜଗନ୍ନାଥଙ୍କଠାରୁ ଅଭିନ୍ନ ବୋଲି ପ୍ରତିପାଦନ କରିଥିଲେ । ଜଗନ୍ନାଥ ଓ ବୁଦ୍ଧ ଅଭିନ୍ନ ବୋଲି ସେମାନେ ମତପୋଷଣ କରିଥିଲେ । ଜଗନ୍ନାଥ କୃଷ୍ଣ ବୋଲି ବର୍ଣ୍ଣିତ । ସେ ଶୂନ୍ୟପୁରୁଷ, ନିରାକାର ଏବଂ ନିରଞ୍ଜନ । ପଞ୍ଚସଖାମାନଙ୍କର ଏହି ବୈଶିଷ୍ଟ୍ୟପୂର୍ଣ୍ଣ ଧର୍ମମତବାଦ ମୂଳରେ ଅଭିନବ ଭକ୍ତିଧାରା ନିହିତ । ବସ୍ତୁତଃ ଜଗନ୍ନାଥ ଧର୍ମ ଓ ବୈଷ୍ଣବ ଧର୍ମ ସେମାନଙ୍କର ଅପୂର୍ବ ପରିକଳ୍ପନା । ନିତ୍ୟ ଜଗନ୍ନାଥ ହିଁ ନିତ୍ୟ କୃଷ୍ଣ; ନୀଳାଚଳ ହେଉଛି ନିତ୍ୟ-ଗୋଲକ ।

"ବଉଦ୍ଧରୂପେ ବିଜୟେଛନ୍ତି ଜଗନ୍ନାଥେ ।"

ପଞ୍ଚସଖା ସାହିତ୍ୟ ସେଥିଯୋଗୁ ଓଡ଼ିଆ ସାହିତ୍ୟରେ ଏକାନ୍ତଭାବରେ ଧର୍ମ, ଦର୍ଶନ ଏବଂ ଅତୀନ୍ଦ୍ରିୟବାଦଦ୍ୱାରା ପ୍ରଭାବିତ; ଅତୀବମାତ୍ରାରେ ଐଶ୍ୱରିକ

ଭାବନା ଏବଂ ଆଧ୍ୟାତ୍ମିକତାସର୍ବସ୍ୱ । ପଞ୍ଚସଖା ସାହିତ୍ୟର ଏହାହିଁ ବିଶେଷତ୍ୱ । ପୁନଶ୍ଚ ଭକ୍ତପ୍ରାଣ ପଞ୍ଚସଖା କବିମାନଙ୍କର ବିବିଧ ରଚନାବଳୀ, ପୁରାଣ, ମାହାତ୍ମ୍ୟ, ଗୀତାଧର୍ମୀ ରଚନାର ଅନୁରୂପ । ନୀଳାଚଳକ୍ଷେତ୍ର ପୁରୀ ପଞ୍ଚସଖା କବିମାନଙ୍କର ଜ୍ଞାନଚର୍ଚ୍ଚା ସାଧନାର ପ୍ରଧାନ ପୀଠ ଥିଲା ।

ପଞ୍ଚସଖା କବିଙ୍କ ମଧ୍ୟରେ ବଳରାମ ଦାସ ହେଉଛନ୍ତି ସର୍ବାପେକ୍ଷା ବୟୋଜ୍ୟେଷ୍ଠ । ସେ ଶ୍ରୀଚୈତନ୍ୟଦେବ, ଓଡ଼ିଶାର ରାଜା ଶ୍ରୀ ପ୍ରତାପରୁଦ୍ରଦେବଙ୍କର ସମସାମୟିକ । ପଞ୍ଚସଖାଗୋଷ୍ଠୀର ଅନ୍ୟତମ ଲେଖକ ଅଚ୍ୟୁତାନନ୍ଦଙ୍କ 'ଉଦୟ କାହାଣୀ' ଅନୁସାରେ ବଳରାମ ଦାସଙ୍କ ଜନ୍ମସମୟ ହେଉଛି ୧୪୮୪ ମସିହା ଏବଂ 'ଦାର୍ଢ୍ୟତା ଭକ୍ତି' ଅନୁସାରେ ତାଙ୍କର ଜନ୍ମସ୍ଥାନ ଥିଲା ପୁରୀ । ବଳରାମ ଦାସ ଶୂଦ୍ର ଥିବାରୁ ବ୍ରାହ୍ମଣମାନେ ତାଙ୍କୁ ଭିନ୍ନଚକ୍ଷୁରେ ଦେଖୁଥିଲେ ଏବଂ ବ୍ରହ୍ମବିଦ୍ୟା ଶୁଣାଇ ଦେଉନଥିଲେ । ଦାସେ କିନ୍ତୁ ବାଲ୍ୟବୟସରୁ ବେଦ, ବେଦାନ୍ତ, ପୁରାଣ, ଗୀତା ପ୍ରଭୃତି ଅଧ୍ୟୟନ କରିଥିବାର ଜଣାଯାଏ । କବିଙ୍କ ଭକ୍ତିମତ୍ତା ଏବଂ ଅଲୌକିକତା ସମ୍ପର୍କରେ ବହୁ କିମ୍ବଦନ୍ତୀ ଶୁଣାଯାଏ । ବାଲିରଥରେ ବଳରାମ ଦାସଙ୍କର ଜଗନ୍ନାଥଦର୍ଶନ ଏକ ଅଲୌକିକ ଘଟଣା । ତାଙ୍କ ରଚନା ମଧ୍ୟରେ ଗୁପ୍ତଗୀତା, ଅମରକୋଷଗୀତା, ବଟ ଅବକାଶ, ବ୍ରହ୍ମାଣ୍ଡ ଭୂଗୋଳ, ଦାଣ୍ଡି-ରାମାୟଣ ଅର୍ଥାତ୍ ଜଗନ୍ମୋହନ ରାମାୟଣ ବିଶିଷ୍ଟ କୃତି ।

ଅଷ୍ଟ ଅଧ୍ୟାୟସମ୍ପନ୍ନ 'ଗୁପ୍ତଗୀତା'ରେ ଜ୍ଞାନଯୋଗର ବିଷୟ ଶ୍ରୀକୃଷ୍ଣ ଓ ଅର୍ଜୁନଙ୍କ ସମ୍ବାଦ ଛଳରେ ବର୍ଣ୍ଣିତ । ମନୁଷ୍ୟର ଶରୀର ମଧ୍ୟରେ ବିଭିନ୍ନ ସ୍ଥାନ, ବଡ଼ଦେଉଳ, ଚତୁର୍ଦ୍ଧାମୂର୍ତ୍ତି ଅବସ୍ଥିତ । ବଙ୍କନାଳ, ଶିଶୁମ୍ନା, ଷଟ୍‌ଚକ୍ର, କାଉଁରି-ମଣ୍ଡଳ, ଗୋଲହାଟ, ତ୍ରିବେଣୀକୂଟ ସ୍ଥଳ ଇତ୍ୟାଦି ଦାର୍ଶନିକ ପ୍ରୟୋଗ । ବଳଭଦ୍ର-ସାମ, ସୁଭଦ୍ରା-ଋକ, ଶ୍ରୀଜଗନ୍ନାଥ-ଯଜୁର୍ବେଦ; ପାଦ—ଯାଜପୁର, କଟି—କଟକ, ଉଦର—ଖଣ୍ଡଗିରି, ନାଭି—ଭୁବନେଶ୍ୱର, ଡାହାଣଭୁଜ-ହଟକେଶ୍ୱର, ବାମଭୁଜ—ଚନ୍ଦ୍ରଭାଗା, ମୁଖ—ସିଂହଦ୍ୱାର, ପାଟି—ବାଇଶ ପାବଛ ଏହିପରି ଗୂଢ଼ ବର୍ଣ୍ଣନା ଏବଂ ତାହାର ବ୍ୟାଖ୍ୟା ଯୋଗୁଁ ଗ୍ରନ୍ଥର ମହତ୍ତ୍ୱ ସ୍ୱୀକୃତ । ଅମରକୋଷ ଗୀତାରେ ସୃଷ୍ଟିର ଉତ୍ପତ୍ତି ପିଣ୍ଡ ବ୍ରହ୍ମାଣ୍ଡ ବର୍ଣ୍ଣିତ । ବଟ ଅବକାଶରେ ଲଙ୍କା ଦର୍ଶନ ସହିତ ଜଗନ୍ନାଥଙ୍କର ଅବକାଶ ବର୍ଣ୍ଣନା ସୂଚୀତ । ଭଗବାନ ଜଗନ୍ନାଥ, ଶ୍ରୀକୃଷ୍ଣ ଏବଂ ଅର୍ଜୁନ କଥୋପକଥନ ଛଳରେ କବି 'ବ୍ରହ୍ମାଣ୍ଡ ଭୂଗୋଳ'ରେ ଶ୍ରୀମଦ୍ ଭଗବଦ୍‌ଗୀତାର ସାରତତ୍ତ୍ୱସମୂହ ଆଲୋଚିତ । ଜଗନ୍ନାଥ ଦାସଙ୍କ ଅମର କୃତି 'ଭାଗବତ' ରଚିତ ହେବା ପରେ ବଳରାମ ଦାସ 'ବ୍ରହ୍ମାଣ୍ଡ ଭୂଗୋଳ' ରଚନା କରି-ଥିବାର ଜଣାଯାଏ । ଭାଗବତର ଦ୍ୱାଦଶ ସ୍କନ୍ଧର ପଦ ଅର୍ଥ 'ବ୍ରହ୍ମାଣ୍ଡ ଭୂଗୋଳ'ରେ ଯେପରି କବି ବ୍ୟାଖ୍ୟା କରିଛନ୍ତି—ପ୍ରଥମ ସ୍କନ୍ଧ—ତାଳୁ, ଦ୍ୱିତୀୟ ସ୍କନ୍ଧ—ଲଲାଟ,

ତୃତୀୟ—କଣ୍ଠ, ଚତୁର୍ଥ—ଚକ୍ଷୁ, ପଞ୍ଚମ—ନାସା, ଷଷ୍ଠ—ମୁଖ, ସପ୍ତମ—କର୍ଣ୍ଣ, ଅଷ୍ଟମ—ହୃଦୟ, ନବମ—ନାଭି, ଦଶମ—ପଞ୍ଚପ୍ରାଣ, ଏକାଦଶ—ଇନ୍ଦ୍ରିୟ, ଦ୍ୱାଦଶ—ବାୟୁସୂତ୍ର। ବିଭିନ୍ନ ପୌରାଣିକ ବିଷୟକୁ କବି 'ଶରୀରଭେଦ'ରେ ମଧ୍ୟ ଗୂଢ଼ ଭାଷାରେ ବୁଝାଇଛନ୍ତି; ଯଥା—ପଞ୍ଚପାଣ୍ଡବ - ପଞ୍ଚଭୂତ, ଦୁର୍ଯ୍ୟୋଧନ—ମନ, ଜଉଘର—ଶରୀର, ଭୀମ—ପବନ, ସ୍ତ୍ରୀ ବିଷଲଡ଼ୁ—ଏହିପରି ତାତ୍ତ୍ୱିକ ଗୂଢ଼ ବ୍ୟାଖ୍ୟାରେ 'ବ୍ରହ୍ମାଣ୍ଡ ଭୂଗୋଳ' ପରିପୂର୍ଣ୍ଣ। କିନ୍ତୁ କବି ଜନସାଧାରଣଙ୍କ ସହଜ-ବୋଧ ନିମନ୍ତେ ସରଳ ଭାଷା ବ୍ୟବହାର କରିଥିଲେ। 'ବେଢ଼ା ପରିକ୍ରମା' ପୁସ୍ତିକାଟିରେ କବି ଜଗନ୍ନାଥ ମନ୍ଦିରବେଢ଼ାରେ ଥିବା ଦେବଦେବୀମାନଙ୍କର ବିଧି, ନିତ୍ୟକର୍ମ ବର୍ଣ୍ଣନା କରିଛନ୍ତି। 'ସପ୍ତାଙ୍ଗ ଯୋଗସାର ଟୀକା'ରେ କବି ଗୋରଖଙ୍କ ମୁହଁରେ ସପ୍ତାଙ୍ଗଯୋଗର ଗୂଢ଼ ବିଷୟ ବୁଝାଇ ଦେଇଛନ୍ତି। ସେହିପରି 'ଭାବସମୁଦ୍ର' କବିଙ୍କର ଭକ୍ତିହୃଦୟର ଆବେଗପୂର୍ଣ୍ଣ ପ୍ରକାଶ। ବଳରାମ ଦାସ 'ଶ୍ରୀମଦ୍‌ଭାଗବତ୍ ଗୀତା'ର ଅର୍ଥ ପଦ୍ୟାକାରରେ ମଧ୍ୟ ଲେଖିଥିଲେ। ପୁସ୍ତକର ନାମ ହେଉଛି 'ଶ୍ରୀଭଗବତ୍‌ଗୀତା'।

ବଳରାମ ଦାସଙ୍କର କବିପ୍ରତିଭା, ସାମାଜିକ ଏବଂ ରାଷ୍ଟ୍ରୀୟ ଚେତନାର ଶ୍ରେଷ୍ଠ ନିଦର୍ଶନ ହେଉଛି ତାଙ୍କର ଲିଖିତ ଏବଂ ଉତ୍କଳର ଗ୍ରାମଗହଳରେ ବହୁ ପଠିତ 'ଜଗମୋହନ ରାମାୟଣ'। ଏହା 'ଦାଣ୍ଡି ରାମାୟଣ' ନାମରେ ପରିଚିତ। ମୂଳ ସଂସ୍କୃତ ରାମାୟଣ ଅବଲମ୍ବନରେ ଲିଖିତ ହୋଇଥିଲେ ମଧ୍ୟ ଏହା ତାହାଠାରୁ ସମ୍ପୂର୍ଣ୍ଣ ଭିନ୍ନ। ରାମାୟଣର କଥାବସ୍ତୁ ବର୍ଣ୍ଣନା ବ୍ୟତୀତ, ତଦାନୀନ୍ତନ ଓଡ଼ିଶାର ସାମାଜିକ ଇତିହାସ, ଲୌକିକ ବିଧି, ଆଚରଣ, ଜନସାଧାରଣଙ୍କର ଜୀବନଯାପନ ପ୍ରଣାଳୀ ପ୍ରଦତ୍ତ। ବାଲ୍ମୀକିଙ୍କର ରାମରାଜ୍ୟ ପରିକଳ୍ପନା କବିଲେଖନୀରେ ଆହୁରି ପ୍ରତ୍ୟକ୍ଷୀଭୂତ ହୋଇପାରିଛି। ନାରୀସମାଜ, ପ୍ରକୃତ ଚରିତ୍ରର ଯେଉଁ ପରିଚୟ ଦାଣ୍ଡିରାମାୟଣରୁ ମିଳେ, ତାହା ହୃଦୟଗ୍ରାହୀ। ଓଡ଼ିଆ ସାହିତ୍ୟ ଏବଂ ପ୍ରାଚୀନ ଓଡ଼ିଆ ଭାଷାରେ ଏହା ଏକ ଶ୍ରେଷ୍ଠ କୃତି।

ପଞ୍ଚସଖା ଅର୍ଥାତ୍ ଷୋଡ଼ଶ ଶତାବ୍ଦୀର ଓଡ଼ିଶାର ସନ୍ଥକବିମାନଙ୍କ ମଧ୍ୟରେ ସର୍ବାପେକ୍ଷା ଶକ୍ତିଶାଳୀ ଲୋକପ୍ରିୟ ଏବଂ ଗ୍ରାମ୍ୟ ସଭ୍ୟତା କେନ୍ଦ୍ରିକ କବି ଭାବରେ ଜଗନ୍ନାଥ ଦାସ ହିଁ ଓଡ଼ିଆ ସାହିତ୍ୟରେ ସୁପ୍ରତିଷ୍ଠିତ। ଓଡ଼ିଆ ଭାଷାର ସୁରକ୍ଷକ, ଓଡ଼ିଆ ଗ୍ରାମ୍ୟ ଜୀବନର ସାଂସ୍କୃତିକ ପ୍ରବକ୍ତା ଏବଂ ଓଡ଼ିଶାରେ ବୈଷ୍ଣବତତ୍ତ୍ୱ ଏବଂ ଜଗନ୍ନାଥ ଉପାସନାର ଜଣେ ମୁଖ୍ୟ ପ୍ରବର୍ତ୍ତକ ଭାବରେ ଜଗନ୍ନାଥ ଦାସ ହିଁ କବି ଗୌରବର ଅଧିକାରୀ ହୋଇପାରିଛନ୍ତି। ଯୁଗଯୁଗଧରି ଓଡ଼ିଶାର ଅଗଣିତ ପାଠକ-ପାଠିକାଙ୍କ ହୃଦୟ-ରାଜ୍ୟରେ ସେ ଅତିବଡ଼ ଜଗନ୍ନାଥ ଦାସ, ଗୋସ୍ୱାମୀ ଜଗନ୍ନାଥ ଦାସ ଭାବରେ ପରିଚିତ। ପ୍ରତାପରୁଦ୍ର ଦେବ, ବଳରାମ ଦାସ ଏବଂ

ଶ୍ରୀଚୈତନ୍ୟଙ୍କ ସହ ତାଙ୍କର ସମ୍ପର୍କ ଏକ ଏକ ଉଲ୍ଲେଖଯୋଗ୍ୟ ଘଟଣା । ଶ୍ରୀଜଗନ୍ନାଥ ଦାସ ସ୍ୱୟଂ ଶ୍ରୀରାଧାଙ୍କ ହାସରୁ ଏବଂ ଶ୍ରୀଚୈତନ୍ୟ ଦେବ ଶ୍ରୀକୃଷ୍ଣଙ୍କ ହାସରୁ ଜନ୍ମଗ୍ରହଣ କରିଥିଲେ ବୋଲି ଦିବାକର ଦାସ 'ଜଗନ୍ନାଥ ଚରିତାମୃତ'ରେ ଉଲ୍ଲେଖ କରିଥିଲେ । ସଂକ୍ଷେପରେ କୁହାଯାଇପାରେ ଯେ ଭକ୍ତକବି ଜଗନ୍ନାଥଙ୍କର ଜୀବନ ଓ ସାଧନା ଅଲୌକିକତାପରିପୂର୍ଣ୍ଣ । ସେଥିପାଇଁ ତାଙ୍କର ସାହିତ୍ୟିକ ରଚନାବଳୀ ଆଧ୍ୟାତ୍ମିକ ବ୍ୟାଖ୍ୟାସମନ୍ୱିତ । ଜଗନ୍ନାଥ ଦାସ ଏବଂ ଚୈତନ୍ୟ ଦେବଙ୍କର ଯେତେବେଳେ ଭେଟ ହୋଇଥିଲା, ସେତେବେଳେ ଜଗନ୍ନାଥଙ୍କର ବୟସ ମାତ୍ର ଅଠର ବର୍ଷ । କବି ପୁରୁଷୋତ୍ତମ କ୍ଷେତ୍ର ନିକଟବର୍ତ୍ତୀ କପିଳେଶ୍ୱରପୁର ଗ୍ରାମରେ ପୁରାଣପଣ୍ଡା ପରିବାରରେ ଜାତ ହୋଇଥିଲେ । ତାଙ୍କର ଜନ୍ମ ସମୟ ସମ୍ଭବତଃ ୧୪୮୭ ମସିହା । ଜଗନ୍ନାଥ ଦାସ ଡୋର-କୌପୀନ ଗ୍ରହଣ କରିବା ପରେ ନିଜକୁ ଜଗନ୍ନାଥ ପ୍ରଭୁଙ୍କ ଦାସ ବୋଲି କହି ଉତ୍ସର୍ଗ କରିଥିଲେ ।

"ଜଗନ୍ନାଥଙ୍କ ଦାସ ଯେଣୁ,
ସେ ନାମ ଦାସ ପଦ ତେଣୁ ।"

ପୁରୁଷୋତ୍ତମ କ୍ଷେତ୍ର ହିଁ ନିତ୍ୟ-ବୈକୁଣ୍ଠ ଏବଂ ସେହି ନିତ୍ୟ-ବୈକୁଣ୍ଠରେ ପ୍ରଭୁ ଶ୍ରୀଜଗନ୍ନାଥ ରାଧାକୃଷ୍ଣଙ୍କ ଏକତ୍ରାବସ୍ଥାର ମୂର୍ତ୍ତି । ଚୈତନ୍ୟଦେବ ଦିନେ ପୁରୀ ମନ୍ଦିର ବେଢ଼ା ପରିକ୍ରମା କରିବା ସମୟରେ ବଟ ଗଣେଶ ନିକଟରେ ଜଗନ୍ନାଥ ଦାସ ଶ୍ରୀମଦ୍ଭାଗବତର କେତେକ ଅଂଶ ବ୍ୟାଖ୍ୟା କରି ଶୁଣାଉଥିଲେ । ତାଙ୍କର ବ୍ୟାଖ୍ୟାରେ ଚୈତନ୍ୟ ମୁଗ୍ଧ ହୋଇ ତାଙ୍କୁ ଆଲିଙ୍ଗନ କରିଥିଲେ ଏବଂ ଦୁହେଁ ପ୍ରେମଚିତ୍ତରେ ଅଢ଼ାଇଦିନ ପର୍ଯ୍ୟନ୍ତ ମଗ୍ନ ରହିଥିଲେ । ଚୈତନ୍ୟଦେବ ଜଗନ୍ନାଥଙ୍କର ଜ୍ଞାନ, ସାଧନା, ଭକ୍ତି ଏବଂ ପ୍ରେମରେ ଅଭିଭୂତ ହୋଇ ତାଙ୍କୁ 'ଅତିବଡ଼' ଆଖ୍ୟା ଦେଲେ । ଏଥିରେ ଚୈତନ୍ୟଙ୍କ ଶିଷ୍ୟବର୍ଗ ବଡ଼ ଅସନ୍ତୁଷ୍ଟ ହୋଇଥିଲେ ।

ଜଗନ୍ନାଥ ଦାସଙ୍କ ରଚନା ମଧ୍ୟରେ ଭାଗବତ, ଗୁପ୍ତ ଭାଗବତ, ଦାରୁବ୍ରହ୍ମଗୀତା, ଗଜସ୍ତୁତି, ଅର୍ଥ କୋଇଲି, ମୃଗୁଣୀସ୍ତୁତି, ତୁଳାଭିଣା ପ୍ରଭୃତି ବିଶେଷଭାବରେ ଉଲ୍ଲେଖଯୋଗ୍ୟ । ହିନ୍ଦୀକବି ତୁଳସୀଦାସଙ୍କ 'ରାମଚରିତମାନସ' ସଦୃଶ ଜଗନ୍ନାଥ ଦାସଙ୍କ ଭାଗବତ ଓଡ଼ିଆ ଜାତୀୟ ଜୀବନର ସାଂସ୍କୃତିକ ଏବଂ ଆଧ୍ୟାତ୍ମିକ ବାଣୀ । ଏହା ପ୍ରତି ଯୁଗରେ ଓଡ଼ିଶାର ଗ୍ରାମ୍ୟ ଜୀବନର ପ୍ରାଣସ୍ପନ୍ଦନ ବୋଲି କୁହାଯାଇଥାଏ । ଏହା ମୂଳ ସଂସ୍କୃତ ଭାଗବତର ଆକ୍ଷରିକ ଅନୁବାଦ ନୁହେଁ । ମୂଳଗ୍ରନ୍ଥର ଅବଲମ୍ବନରେ ଲିଖିତ ହେଲେ ହେଁ କବିର ମୌଳିକ କଳ୍ପନା ଏବଂ ସାମାଜିକ ଦୃଷ୍ଟିଭଙ୍ଗୀ ଯୋଗୁଁ ଏହା ଏକ ସ୍ୱୟଂସଂପୂର୍ଣ୍ଣ ଅଭିନବ କୃତି ହୋଇପାରିଛି । ଜଗନ୍ନାଥ ଦାସଙ୍କ ଭାଗବତର ଲୋକପ୍ରିୟତା ସର୍ବଥା ସ୍ୱୀକୃତ ।

ଏହାର କାରଣ କ'ଣ ? ଏହାର ଏକମାତ୍ର କାରଣ ଜଗନ୍ନାଥ ଦାସ ସଂସ୍କୃତ-ପ୍ରଭାବିତ ଯୁଗରେ ଓଡ଼ିଆଭାଷାର ଗଣତାନ୍ତ୍ରିକ ପ୍ରୟୋଗ କରି କୃତକାର୍ଯ୍ୟ ହୋଇପାରିଥିଲେ । ଅତି କଠିନ ଦାର୍ଶନିକ ତତ୍ତ୍ୱର ପ୍ରାଞ୍ଜଳ ବିଶ୍ଳେଷଣ କେବଳ କବିଙ୍କର ଅପୂର୍ବ ଭାଷାଜ୍ଞାନର ପରିଚାୟକ । ଓଡ଼ିଶାର ଗ୍ରାମ୍ୟଜୀବନ ଓ ସମାଜକୁ ଏହି ଗ୍ରନ୍ଥ ଯୁଗ-ଯୁଗ ଧରି ସଂଗଠିତ କରିପାରିଛି । ସେଥିଯୋଗୁ ଗ୍ରାମେ ଗ୍ରାମେ "ଭାଗବତ ଘର" ନାମରେ ଏକ ଜାତୀୟ ମର୍ଯ୍ୟାଦାସମ୍ପନ୍ନ ଅନୁଷ୍ଠାନ ଗଢ଼ିଉଠିଛି । ଏହି ଗ୍ରନ୍ଥ ନବାକ୍ଷରୀ ବୃତ୍ତରେ ରଚିତ ହୋଇଥିବାରୁ ଜନସାଧାରଣଙ୍କ ନିକଟରେ ଏହା ବେଶ୍ ଗ୍ରହଣୀୟ ।

ଶିବ ପାର୍ବତୀଙ୍କ ଆଗରେ ଯେଉଁ ଗୂଢ଼ଜ୍ଞାନ ବ୍ୟାଖ୍ୟା କରିଥିଲେ ତାହାର ବିବରଣୀ 'ତୁଳାଭିଣା' ପୁସ୍ତିକାର କଥାବସ୍ତୁ । ତତ୍ତ୍ୱରୂପୀ ତୁଳାକୁ ଏହି ଗ୍ରନ୍ଥରେ ଭିଣାଯାଇଛି ।

"ତୁଳାକୁ ଭିଣନ୍ତି ଯେସନ, ସେ ରୂପେ କରିବା ବଖାଣ ।
× × ×
ମହାଶୂନ୍ୟ ଯେ ଜ୍ୟୋତିରୂପ, ଜ୍ୟୋତିରୁ ଜାତ ଠୂଳରୂପ ।
ଠୂଳରୁ ଅର୍ଦ୍ଧମାତ୍ରା କଲା, ମାତ୍ରାରୁ ଓଁକାର ଜନ୍ମିଲା ।
ଓଁକାର ବ୍ରହ୍ମ ଏ ଜଗତ, ଶୁଣ ପାର୍ବତୀ ଦେଇ ଚିତ୍ତ ।

ଗଦ୍ୟଟୀକା ଏହି ପୁସ୍ତିକାର ଆଉ ଏକ ବିଶେଷତ୍ୱ ।

'ଦାରୁ ବ୍ରହ୍ମଗୀତା'ରେ ପୁରୁଷୋତ୍ତମ କ୍ଷେତ୍ର ଏବଂ ଶ୍ରୀଜଗନ୍ନାଥଙ୍କ ମାହାତ୍ମ୍ୟ ବର୍ଣ୍ଣିତ । ମାର୍କଣ୍ଡ ଦାସଙ୍କ 'କେଶବ କୋଇଲି'ର ଗୂଢ଼ାତ୍ମକ ପଦ୍ୟାତ୍ମକ ବ୍ୟାଖ୍ୟା ହେଉଛି ଜଗନ୍ନାଥ ଦାସଙ୍କର 'ଅର୍ଥ କୋଇଲି' । ଏହିପରି ଜଗନ୍ନାଥ ଦାସଙ୍କର ଅଧିକାଂଶ ରଚନା ତତ୍ତ୍ୱଧର୍ମୀ । ପୁରାଣ ଅନୁବାଦକ, ବ୍ୟାଖ୍ୟାକାର, ଗଦ୍ୟ ଲେଖକ ଏବଂ ଓଡ଼ିଶାରେ ପ୍ରେମଧର୍ମମୂଳକ ସାହିତ୍ୟସ୍ରଷ୍ଟା ତଥା ଜନସାଧାରଣଙ୍କ ଶିକ୍ଷକ ଭାବରେ ଓଡ଼ିଆ ସାହିତ୍ୟରେ ଜଗନ୍ନାଥ ଦାସ ସର୍ବାଧିକ ଗୌରବର ଅଧିକାରୀ ।

ପଞ୍ଚସଖା ମଧ୍ୟରେ ଯଶୋବନ୍ତ ଦାସ ଅନ୍ୟତମ । ସେ ଥିଲେ ଜ୍ଞାନମିଶ୍ରା ଭକ୍ତିଯୋଗର ଉପାସକ । ତାଙ୍କର ଜୀବନୀ ଏବଂ ସାହିତ୍ୟସାଧନା ମଧ୍ୟ କିମ୍ବଦନ୍ତୀର ପ୍ରଭାବରୁ ମୁକ୍ତ ନୁହେଁ । ଶୁଣାଯାଏ, ସେ ଥିଲେ ଅଲୌକିକ ଯୋଗଶକ୍ତିର ସାଧକ । ତାଙ୍କର ଜନ୍ମ ୧୪୮୭ ମସିହା ବୋଲି ଅନୁମାନ କରାଯାଏ । ତାଙ୍କ ରଚନାର ଆବେଦନ ମଧ୍ୟ ଏକାନ୍ତଭାବରେ ଆଧ୍ୟାତ୍ମିକତାପୂର୍ଣ୍ଣ । ଓଡ଼ିଶାର ଗ୍ରାମଗହଳରେ ଯୋଗୀମାନେ କେନ୍ଦରା ବଜାଇ 'ଗୋବିନ୍ଦଚନ୍ଦ୍ର ଗୀତା' ଗାନ କରି ଭିକ୍ଷା ମାଗିବାର ଦୃଶ୍ୟ ଅତି ସାଧାରଣ । ସେହି ଗୋବିନ୍ଦଚନ୍ଦ୍ର ଗୀତାର କବି ହେଉଛନ୍ତି ଯଶୋବନ୍ତ ଦାସ । ପୁସ୍ତକର ଗଳ୍ପାଂଶରେ ବଙ୍ଗଳାର ରାଜା ଗୋବିନ୍ଦଚନ୍ଦ୍ର କିପରି ରାଜକୀୟ

ବିଳାସବ୍ୟସନ ତ୍ୟାଗ କରି ମାତାଙ୍କ ଉପଦେଶମତେ ମହାଯୋଗୀ ହାଡ଼ିପାଙ୍କଠାରୁ ଦୀକ୍ଷା ଗ୍ରହଣ କରିଥିଲେ ତାହାହିଁ ବର୍ଣ୍ଣିତ ।

'ଶିବ ସ୍ୱରୋଦୟ' ପୁସ୍ତକରେ ଯୋଗସାଧନ ପ୍ରଣାଳୀ ଏବଂ ସ୍ୱରଜ୍ଞାନ ସରଳ-ଭାଷାରେ ବର୍ଣ୍ଣିତ । ପ୍ରେମଭକ୍ତି 'ବ୍ରହ୍ମଗୀତା'ରେ କବି ଜ୍ଞାନମିଶ୍ରା ଭକ୍ତିଯୋଗର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିଛନ୍ତି । ପିଣ୍ଡ ମଧ୍ୟରେ ବ୍ରହ୍ମାଣ୍ଡ ପରିକଳ୍ପନା, ଜଗନ୍ନାଥ, ବଳଭଦ୍ର ଏବଂ ସୁଭଦ୍ରା, ସୁଦର୍ଶନଙ୍କ ତତ୍ତ୍ୱ ଏଥିରେ ପ୍ରତିପାଦିତ ।

"ଅଚ୍ୟୁତ ନାମ ଯେ ଅଟଇ ମୋହର ମୋହଠାରୁ ଦୁଃଖୀ ନାହିଁ
ଚିତ୍ରୋତ୍ପଳା ନଦୀକୂଳରେ ଯେ ଗ୍ରାମ ନେମ୍ପାଳ ଯେ ଅଟଇ ସେହି ।"

ସେହି ଅଚ୍ୟୁତାନନ୍ଦ ଦାସ ନିଜ ରଚିତ 'ଉଦୟକାହାଣୀ'ରେ ନିଜର ଏବଂ ବଳରାମ ଦାସ, ଜଗନ୍ନାଥ ଦାସଙ୍କର ପରିଚୟ ପ୍ରଦାନ କରିଛନ୍ତି । ସେହି ସୂଚନା ଅନୁଯାୟୀ ଅଚ୍ୟୁତାନନ୍ଦ ଦାସଙ୍କର ଜନ୍ମ ସମୟ ୧୪୮୨ ମସିହା ବୋଲି ଅନୁମାନ କରାଯାଏ । ତାହାହେଲେ ପଞ୍ଚସଖାଙ୍କ ମଧ୍ୟରେ ସେ ଥିଲେ ବୟୋଜ୍ୟେଷ୍ଠ । ସେ ଅଳ୍ପ ବୟସରୁ ଡୋର-କୌପୀନ ପରିଧାନ କରି ସନ୍ନ୍ୟାସୀ ହୋଇଥିଲେ । ପରେ ସେ ବିବାହ କରିଥିଲେ ବୋଲି ଜଣାଯାଏ । ସେ ନିଜକୁ ଦ୍ୱାପର ଯୁଗର କୃଷ୍ଣଙ୍କ ସଖା ସୁଦାମଙ୍କ ଅବତାର ବୋଲି ଅଭିହିତ କରିଥିଲେ । ଶ୍ରୀକ୍ଷେତ୍ରରେ ଅବସ୍ଥାନ, ଶ୍ରୀଚୈତନ୍ୟଙ୍କ ସହିତ ଭେଟ, ବହୁତୀର୍ଥଭ୍ରମଣ, ତାଙ୍କ ସାଧକଜୀବନର ପ୍ରଧାନ ପ୍ରଧାନ ଘଟଣା । 'ଶବ୍ଦବ୍ରହ୍ମ ସଂହିତା', 'ଦଶପଟଳ ମାଳିକା,' 'ଗରୁଡ଼ଗୀତା' ତାଙ୍କର ରଚନା; କିନ୍ତୁ 'ଶୂନ୍ୟ ସଂହିତା' ତାଙ୍କର ଶ୍ରେଷ୍ଠ ଆଧ୍ୟାତ୍ମିକ କୃତି । ଗୁରୁଶିଷ୍ୟ ସମ୍ବାଦ ଉପରେ ଏହି ଗ୍ରନ୍ଥଟି ଲିଖିତ ଏବଂ ଏଥିରେ ବ୍ରହ୍ମତତ୍ତ୍ୱ, ଯୋଗତତ୍ତ୍ୱ ସଦୃଶ ଜଟିଳ ପ୍ରସଙ୍ଗ ବ୍ୟାଖ୍ୟା କରାଯାଇଛି ।

"ନାମକୁ ଚିହ୍ନିଲେ ଜୀବ ପରମେ ମିଶଇ
ଯୋଲ ଭେଲା ପ୍ରାୟେ ଭବସିନ୍ଧୁରେ ଭାସଇ ।
ନାମ ଗଲେ ରୂପ କେହି ନ ଚିହ୍ନିବେ ଆଉ
ନାମକୁ ନ ଚିହ୍ନି ଏଣେତେଣେ କମ୍ପା ଧାଉ ?"

ସଂସାର-ଜଞ୍ଜାଳରୁ ମୁକ୍ତି ପାଇବାକୁ ହେଲେ ଗୁରୁସେବା ଆବଶ୍ୟକ ।

ଅଚ୍ୟୁତାନନ୍ଦ ଦାସ କିଛି ଦିନ ରଣପୁର ରାଜ୍ୟରେ ଅବସ୍ଥାନ କରିଥିଲେ ଏବଂ ତତ୍କାଳୀନ ଶାସକ ପଦ୍ମନାଭ ନରେନ୍ଦ୍ରଙ୍କ ପ୍ରୋତ୍ସାହନରେ 'ହରିବଂଶ' ରଚନା କରିଥିଲେ । 'ଗୋପାଳଙ୍କ ଓଗାଳ' ଓ 'ଲଉଡ଼ୀ ଖେଳ'ରେ କବି ସଂକ୍ଷେପରେ କୃଷ୍ଣ ଏବଂ ରାଧାଙ୍କ ଉପାଖ୍ୟାନ ବର୍ଣ୍ଣନା କରିଛନ୍ତି । ଓଡ଼ିଆ ସାହିତ୍ୟ ଏବଂ ଭକ୍ତ ସମାଜ ମଧ୍ୟରେ ଅଚ୍ୟୁତାନନ୍ଦଙ୍କ ନାମ ବିଶେଷଭାବରେ ଶୁଣାଯାଇଥାଏ । ସେ ମଧ୍ୟ ଜଣେ ଭବିଷ୍ୟତ-ବକ୍ତା ଥିଲେ ।

ଶିଶୁ ଅନନ୍ତ ମଧ୍ୟ ଅଣାକାର ଶବଦ, ଭକ୍ତିମୁକ୍ତିଦାୟକ ଗୀତା ପ୍ରଭୃତି କେତେକ କ୍ଷୁଦ୍ର ପୁସ୍ତିକାର ରଚୟିତା ଅଟନ୍ତି ।

ଓଡ଼ିଆ ସାହିତ୍ୟରେ ପଞ୍ଚସଖା ଅର୍ଥାତ୍ ସମ ଆଧ୍ୟାତ୍ମିକ ଆଦର୍ଶଧର୍ମୀ ଏହି ପାଞ୍ଚଜଣ କବିଙ୍କର ବିସ୍ତାର ଏବଂ ପ୍ରଭାବ ସମଧିକ ଭାବରେ ଦେଖିବାକୁ ମିଳେ । 'ମହାଭାରତ'ର ପ୍ରଣେତା ସାରଳା ଦାସଙ୍କର ଅପୂର୍ବ ସାହିତ୍ୟିକ ସିଦ୍ଧି ପରେ ପଞ୍ଚସଖା କବିମାନଙ୍କର ରଚନାବଳୀ ଓଡ଼ିଆ ସାହିତ୍ୟର ଉଭୟ ପରିମାଣାତ୍ମକ ଏବଂ ଗୁଣାତ୍ମକ ଅଭିବୃଦ୍ଧି ସାଧନ କରିଥିଲା । ବିଶେଷତଃ ଓଡ଼ିଆ ସାହିତ୍ୟରେ ଦାର୍ଶନିକ ଏବଂ ଆଧ୍ୟାତ୍ମିକ ପରମ୍ପରା ଏବଂ ଜ୍ଞାନମିଶ୍ରା ଭକ୍ତିଧାରା ପ୍ରବର୍ତ୍ତନ କରିବାକୁ ପ୍ରତିଷ୍ଠା କରିବାରେ ଦାୟୀ ହୋଇଥିଲା । ତେଣୁ ଆଧ୍ୟାତ୍ମିକ ପୃଷ୍ଠଭୂମିରେ ଷୋଡ଼ଶ ଶତାବ୍ଦୀରେ ଓଡ଼ିଶାରେ ସାମାଜିକ ବିପ୍ଳବର ସୂତ୍ରପାତ ହୋଇଥିଲା । ପଞ୍ଚସଖା କବିଗଣ ପ୍ରାଚୀନ ବେଦ, ବେଦାନ୍ତ, ଗୀତାତତ୍ତ୍ୱ ସର୍ବସାଧାରଣ ଉଦ୍ଦେଶ୍ୟରେ ବ୍ୟାଖ୍ୟା ବିଶ୍ଳେଷଣ କରି ଦେଶରେ ସାମାଜିକ, ଆଧ୍ୟାତ୍ମିକ ଦୁର୍ବଳତା ସମ୍ପ୍ରସାରିତ କରିଥିଲେ । ବଳରାମ ଦାସଙ୍କ 'ଦାଣ୍ଡି ରାମାୟଣ' ଜଗନ୍ନାଥ ଦାସଙ୍କ 'ଅମର ଭାଗବତ,' ଅଚ୍ୟୁତାନନ୍ଦଙ୍କ 'ଶୂନ୍ୟସଂହିତା' ଲୋକମାନଙ୍କର ଆଧ୍ୟାତ୍ମିକ ଶିକ୍ଷା ପ୍ରସାରରେ ଯଥେଷ୍ଟ ସହାୟକ ହୋଇଥିଲା । ଏହି 'ପଞ୍ଚସଖା' ଭଣିତ ଅଚ୍ୟୁତାନନ୍ଦ ଦାସଙ୍କ ରଚନାରେ ଏକାଧିକ ସ୍ଥାନରେ ପରିଦୃଷ୍ଟ ହୁଏ ।

"ତୁମ୍ଭେ ମୋର ପଞ୍ଚଆତ୍ମା ଅଟ ପଞ୍ଚପ୍ରାଣ
ଅବତାରଶ୍ରେଣୀ ଯେତେ ତୁମ୍ଭ ପାଇଁ ପୁଣ ।
ଯାଅ ଅଚ୍ୟୁତ, ଅନନ୍ତ, ଯଶୋବନ୍ତ ଦାସ
ବଳରାମ, ଜଗନ୍ନାଥ କର ଯା' ପ୍ରକାଶ ।" (ଶୂନ୍ୟସଂହିତା)

ସେମାନଙ୍କ ମଧ୍ୟରେ ଆଧ୍ୟାତ୍ମିକ ଦୃଷ୍ଟିକୋଣ, ସାମାଜିକ ଭାବନା, ନୈତିକ ବିଗ୍ରହଗତ ବଳିଷ୍ଠ ସହୃଦୟତା ଥିଲା । ତତ୍କାଳୀନ ଉତ୍କଳର ନରପତି ଶ୍ରୀ ପ୍ରତାପରୁଦ୍ରଦେବ ପଞ୍ଚସଖାମାନଙ୍କୁ ବିଭିନ୍ନ ଘଟଣାରେ ପରୀକ୍ଷା କରିଥିବାର ଜଣାଯାଏ । ତ୍ରେତାଯୁଗରେ ରାମଚନ୍ଦ୍ରଙ୍କ ପଞ୍ଚସଖା କିମ୍ବା ଦ୍ୱାପର ଯୁଗରେ କୃଷ୍ଣଙ୍କର ପଞ୍ଚସଖାଙ୍କର ଆଧ୍ୟାତ୍ମିକ ସମଭାବନା ଏବଂ ସାଦୃଶ୍ୟ ଯେପରି ଅଚ୍ୟୁତାନନ୍ଦ ନିଜର ସହକର୍ମୀମାନଙ୍କଠାରେ ପର୍ଯ୍ୟବେକ୍ଷଣ କରିପାରିଥିଲେ । ପଞ୍ଚସଖା ସାହିତ୍ୟର ବାସ୍ତବ ଆବେଦନ ସେହିମାନଙ୍କ ରଚନାରେ ପରିସ୍ଫୁଟ—

"ତୁମ୍ଭେ ପାଞ୍ଚଜଣ ଆଗେ ହୁଅ ଅବତାର
ନାମ ତତ୍ତ୍ୱ ଦେଇ ଲୋକେ ପତିତଙ୍କୁ ତାର ।
ହରିନାମ ମହାମନ୍ତ୍ର ଉପଦେଶ ଦେଇ
ପବିତ୍ର କରିବ ଲୋକେ ପତିତଙ୍କୁ ତହିଁ ।"

ଓଡ଼ିଆ ସାହିତ୍ୟରେ ପଞ୍ଚସଖା ଚର୍ଚ୍ଚିତ ସାହିତ୍ୟ ତେଣୁ ପନ୍ଥମାନଙ୍କର ମୁକ୍ତିକାମୀ ଏବଂ ମଙ୍ଗଳମୂଳକ ରଚନା—ଏହା ସେହିମାନଙ୍କ ରଚନାର ଆଭିମୁଖ୍ୟ ଏବଂ ବୈଶିଷ୍ଟ୍ୟ ଦ୍ୱାରା ପ୍ରମାଣିତ ।

**ଓଡ଼ିଆ ଅଭିଲେଖ ସାହିତ୍ୟ :**

ଓଡ଼ିଆ ଭାଷାରେ ଅଭିଲେଖ ଜାତୀୟ ରଚନାର ପରିମାଣ କିଛି କମ୍ ନୁହେଁ । ଏହି ଅଭିଲେଖ ସାହିତ୍ୟ ମୁଖ୍ୟତଃ ରାଷ୍ଟ୍ରୀୟ ଏବଂ ରାଜନୈତିକ ଉଦ୍ଦେଶ୍ୟ ଦ୍ୱାରା ପରିପୁଷ୍ଟ । ସେଥିରୁ ଓଡ଼ିଆ ଭାଷାର ପ୍ରାଥମିକ ବ୍ୟାବହାରିକ ରୂପ ଏବଂ ଓଡ଼ିଆଲିପିର ସମ୍ୟକ ପରିଚୟ ମିଳିଥାଏ । ଏକାଦଶ ଶତାବ୍ଦୀରୁ ଆରମ୍ଭ କରି ପଞ୍ଚଦଶ ଶତାବ୍ଦୀ ପର୍ଯ୍ୟନ୍ତ ଏହି ସମୟ ମଧ୍ୟରେ ବିଭିନ୍ନ ଶାସକଗଣ ଓଡ଼ିଆ ଭାଷାରେ ଅଭିଲେଖ ପ୍ରବର୍ତ୍ତନ କରିଥିବାର ଜଣାଯାଏ । ସେତେବେଳେ ଓଡ଼ିଶାର ଭୌଗୋଳିକ ସୀମା ଯେପରି ରାଜ୍ୟବିସ୍ତାର ଉଦ୍ଦେଶ୍ୟରେ ପରିଚାଳିତ, ସଂଗ୍ରାମର ଜୟଧ୍ୱନିରେ ବରାବର ମୁଖରିତ ହୋଇଉଠିଥିଲା । ଉତ୍କଳର ଇତିହାସରେ ଅନଙ୍ଗଭୀମ ଦେବ, ଲାଙ୍ଗୁଲା-ନରସିଂହ ଦେବ, କପିଳେନ୍ଦ୍ର ଦେବ ଏବଂ ପୁରୁଷୋତ୍ତମ ଦେବଙ୍କ ସାମରିକ ଅଭିଯାନ ଏକ ଏକ ବିଶିଷ୍ଟ ପର୍ଯ୍ୟାୟ । ସେହି ନରପତିମାନଙ୍କ ଦ୍ୱାରା ପ୍ରଚଳିତ ଓଡ଼ିଆ ଶିଳାଲେଖରୁ ଓଡ଼ିଆ ଭାଷାର ତତ୍କାଳୀନ ସ୍ୱରୂପ ପ୍ରମାଣିତ ହୁଏ । ଓଡ଼ିଆ ଗଦ୍ୟ ସାହିତ୍ୟର ସର୍ବପ୍ରଥମ ନିଦର୍ଶନ ଭାବରେ ମଧ୍ୟ ଶିଳାଲେଖ ସମୂହର ବୈଶିଷ୍ଟ୍ୟ ସ୍ୱୀକୃତ । ଏହି ପ୍ରସଙ୍ଗରେ ଓଡ଼ିଶାର ଶ୍ରୀ ଶ୍ରୀ ଜଗନ୍ନାଥ ଦେବଙ୍କ ମନ୍ଦିରର ନୀତି ଏବଂ କାର୍ଯ୍ୟବିଧି, ରାଜାମାନଙ୍କର ରାଜତ୍ୱର ଧାରାବାହିକ ବିବରଣୀ ସମ୍ବଳିତ ମାଦଳାପାଞ୍ଜି ମଧ୍ୟ ବିଚାର ଯୋଗ୍ୟ । 'ମାଦଳାପାଞ୍ଜି' ଏକ ଧାରାବାହିକ ଐତିହାସିକ ବିବରଣୀ । ମାତ୍ର ତାହାର ରଚନାକାଳ ନିର୍ଦ୍ଦିଷ୍ଟ କରିବାରେ ଗବେଷକମାନେ ବିଭିନ୍ନ ମତପୋଷଣ କରିଛନ୍ତି । ମହାରାଜା ଚୋଡ଼ଗଙ୍ଗଦେବ ତାଙ୍କର ଅଭିଷେକ ଦିନଠାରୁ (୧୦୭୭ ଶୁକ୍ଳ ଆଶ୍ୱିନ ଦଶମୀ) ମାଦଳାପାଞ୍ଜି ଲେଖା ଆରମ୍ଭ କରାଇଥିଲେ ବୋଲି ଏକ ଶ୍ରେଣୀର ଗବେଷକ ମତପୋଷଣ କରିଲାବେଳେ ଆଉ କେହି କେହି ଗବେଷକ ଦାବୀ କରିଥାନ୍ତି ଯେ ମାଦଳାପାଞ୍ଜି ମାର୍ଜିତ ଗଦ୍ୟର ସ୍ୱରୂପ ଦୃଷ୍ଟିରୁ ଷୋଡ଼ଶ ଶତାବ୍ଦୀ ପୂର୍ବର ଲେଖା ହୋଇନପାରେ । ଯାହାହେଉ, ଓଡ଼ିଆ ଗଦ୍ୟର କ୍ରମବର୍ଦ୍ଧିଷ୍ଣୁ ରୂପ ବିଶ୍ଳେଷଣ କରିବାରେ ଏବଂ ତତ୍କାଳୀନ ଓଡ଼ିଶାର ରାଜନୈତିକ ତଥା ଧାର୍ମିକ ଇତିବୃତ୍ତ ସଂଗ୍ରହ କରିବାରେ ମାଦଳାପାଞ୍ଜିର ସୂଚନା ସର୍ବଦା ବିଚାର ଯୋଗ୍ୟ ।

ସୂର୍ଯ୍ୟବଂଶ (୧୪୩୫-୧୫୩୪)ର ପ୍ରତାପଶାଳୀ ବିଦ୍ୟୋତ୍ସାହୀ ନରପତି ପ୍ରତାପରୁଦ୍ର ଦେବଙ୍କ (୧୪୯୭-୧୫୩୫) ପରେ ଓଡ଼ିଶା ରାଜନୈତିକ ଅଶାନ୍ତି ଓ ଅସ୍ଥିରତାର ସମ୍ମୁଖୀନ ହୋଇଥିଲା । ରାଜନୈତିକ କ୍ଷମତା ଏବଂ ରାଜସିଂହାସନ

ଅଧିକାର ପାଇଁ ଯେପରି ଇଚ୍ଛୁକ ବ୍ୟକ୍ତିମାନଙ୍କ ମଧ୍ୟରେ ଚକ୍ରାନ୍ତ ଏବଂ ତିକ୍ତ ସଂଘର୍ଷ ଆରମ୍ଭ ହୋଇଗଲା । କିନ୍ତୁ ରାଜନୈତିକ ଷଡ଼ଯନ୍ତ୍ର ଏବଂ ସିଂହାସନ ଅଧିକାର ସମ୍ବନ୍ଧୀୟ ସଂଗ୍ରାମର ଅନ୍ତରାଳରେ ଉତ୍କଳର ସାଂସ୍କୃତିକ ଧାରା ବିଚ୍ଛିନ୍ନ ହୋଇ ପାରି ନ ଥିଲା । ଶ୍ରୀଜଗନ୍ନାଥଙ୍କ ପବିତ୍ର ଭୂମିରେ ପଞ୍ଚସଖା ସାହିତ୍ୟ ଆଧ୍ୟାତ୍ମିକତା ଏବଂ ଦାର୍ଶନିକତା ଧାରା ବଳିଷ୍ଠ କରିପାରିଥିବା ସ୍ଥଳେ ଓଡ଼ିଶାରେ ରାଧାକୃଷ୍ଣ ପ୍ରେମ ଆଧାରିତ ରଚନା ପ୍ରତି କବିମାନେ ବେଶ ଆକୃଷ୍ଟ ହୋଇଥିଲେ । ଗୋପୀପ୍ରେମ କିମ୍ବା ରାଧାକୃଷ୍ଣ ତତ୍ତ୍ୱର ବ୍ୟାଖ୍ୟାରୂପକ ଦିନାଇ ଦାସଙ୍କ କ୍ଷୁଦ୍ର କାବ୍ୟ 'ଗୋପୀଭାଷା' ଓଡ଼ିଆ ସାହିତ୍ୟରେ ଏକ ଅତି ଉପାଦେୟ ଲୋକପ୍ରିୟ ରଚନା । ଦୀର୍ଘ ଶତାବ୍ଦୀ ଧରି ଓଡ଼ିଶାର ଗ୍ରାମ୍ୟ ଶିକ୍ଷାୟତନମାନଙ୍କରେ ଶିଶୁକଣ୍ଠରେ ଏହି ଗୋପୀଭାଷା ହିଁ ପ୍ରତିଧ୍ୱନିତ ହୋଇ ଆସୁଛି । କୃଷ୍ଣଙ୍କର ମଥୁରା ଗମନରେ ଗୋପାଙ୍ଗନାମାନଙ୍କର ବିରହ ବର୍ଣ୍ଣନା ଏହି ଗ୍ରନ୍ଥର ମୁଖ୍ୟ କଥାବସ୍ତୁ । କିନ୍ତୁ କଥାବସ୍ତୁ ଅପେକ୍ଷା ସଙ୍ଗୀତ-ମୟତ୍ୱ, ସରଳ ଭାଷା ଏବଂ ସର୍ବଜନ ବୋଧତା ହିଁ ଗୋପୀଭାଷାର ଅତୁଟ ଲୋକପ୍ରିୟ-ତାର କାରଣ । ଗୋପୀଭାଷାରେ ଓଡ଼ିଆ ଘରର ଚିତ୍ରମଧ୍ୟ ପରୋକ୍ଷଭାବରେ ପ୍ରତି-ଫଳିତ ଷୋଡ଼ଶ ଶତାବ୍ଦୀର ଶେଷାର୍ଦ୍ଧରେ ଓଡ଼ିଆ କାବ୍ୟରେ ଭାଷାରେ ସରଳତା ଉଦ୍ଧାର ଯୋଗ୍ୟ—

"ଯା'କୁ ମିଳିବ ପଲଙ୍କ ସୁପତି
ତାର ଭୂମି ଶଯ୍ୟାରେ କାହିଁ ମତି
ଯା'କୁ ମିଳିବ ଦିବ୍ୟଶାଳି ଅନ୍ନ
ତାର ବଗଡ଼ା ଭାତେ କାହିଁ ମନ ।"

'ସାନ କନଡ଼ା ଚଉତିଶା' ନାମକ ରଚନା ମଧ୍ୟ ଦିନାଇ ଦାସଙ୍କର ଲେଖା । ଭକ୍ତ ପ୍ରାଣର ଏହା ଏକ ସାଂଗୀତିକ ନିବେଦନ ।

ପଞ୍ଚସଖାଙ୍କ ସମକାଳରେ କିମ୍ବା ଅବ୍ୟବହିତ ପରେ ଯେଉଁ ଲେଖକମାନେ ଲେଖନୀ ଧାରଣ କରିଥିଲେ ସେମାନଙ୍କ ମଧ୍ୟରୁ ଅଧିକାଂଶ ସାହିତ୍ୟ ମାଧ୍ୟମରେ ଆଧ୍ୟାତ୍ମିକ ତତ୍ତ୍ୱ ପ୍ରଖ୍ୟାପନ ପ୍ରତି ଆକୃଷ୍ଟ ହୋଇଥିଲେ । ଯୁଗୀୟ ପ୍ରଭାବରେ ସେହି ଲେଖକମାନେ ପୁରାଣ, ଗୀତା ପ୍ରଭୃତି ଧର୍ମଶାସ୍ତ୍ରର ପୃଷ୍ଠଭୂମିରେ ଗୂଢ଼ ଆଧ୍ୟାତ୍ମିକ ସାହିତ୍ୟ ହିଁ ସୃଷ୍ଟି କରିଥିଲେ । ବାଳକ ଶ୍ରୀହରି ଦାସଙ୍କ 'ମୟୂର ଚନ୍ଦ୍ରିକା;' ଦିବାକର ଦାସଙ୍କର 'ଜଗନ୍ନାଥ ଚରିତାମୃତ' ଏହି ପ୍ରସଂଗରେ ଉଲ୍ଲେଖଯୋଗ୍ୟ । ମୟୂରଚନ୍ଦ୍ରିକାରେ କବି ନିଜକୁ ଶ୍ରୀ ଚୈତନ୍ୟ ଦେବ ଏବଂ ରାୟ ରାମାନନ୍ଦଙ୍କର ଶିଷ୍ୟ ବୋଲି ସ୍ୱୀକାର କରିଛନ୍ତି ଏବଂ 'ମୟୂର ଚନ୍ଦ୍ରିକା'ରେ ରାଧାକୃଷ୍ଣ ଲୀଳା ମାଧୁରୀ ତତ୍ତ୍ୱ ବର୍ଣ୍ଣିତ । କିନ୍ତୁ 'ଜଗନ୍ନାଥ ଚରିତାମୃତ' ହେଉଛି ଅତିବଡ଼ି ଭକ୍ତକବି ଜଗନ୍ନାଥ ଦାସଙ୍କର ଜୀବନୀଗ୍ରନ୍ଥ ଏବଂ ଏହା ଗଦ୍ୟରେ ଲିଖିତ । ତଦାନୀନ୍ତନ

ଓଡ଼ିଶା ଏବଂ ଓଡ଼ିଶାର ଭକ୍ତି ଆନ୍ଦୋଳନ ସହିତ ସଂପୃକ୍ତ ଐତିହାସିକ ପୁରୁଷ-ମାନଙ୍କର ଧ୍ୟାନ ଧାରଣା, ମତବାଦ ଏବଂ ଶ୍ରୀ ଜଗନ୍ନାଥ ତତ୍ତ୍ୱର ସୁବିସ୍ତୃତ ବିବରଣୀ ପାଇଁ ଏକ ପ୍ରାମାଣିକ ଗ୍ରନ୍ଥ

"ପ୍ରଭୁ ଦିନ ସେ ଶ୍ରୀ ଚୈତନ୍ୟ, ଆସନ୍ତି କରି ଦରଶନ ।
ବସିଥିଲେ ପୂର୍ଣ୍ଣ ଶୂନ୍ୟ; ଦଣ୍ଡେ ରହନ୍ତି ପ୍ରେମେ ପୂର୍ଣ୍ଣି ।
ବୈଷ୍ଣବ ଗଣ ଯେତେ ଥିଲେ, ଦେଖି ଏମନ୍ତ ବିଚାରିଲେ ।
ଉତ୍କଳୀ ବ୍ରାହ୍ମଣ ସଙ୍ଗତେ, ଭାବ ବଢ଼ାଇଲେ ନଚତେ ।
ଏହି ରାଜ୍ୟରେ ରହିବେ, ଉତ୍କଳ କର୍ମ ଆଚରିବେ ।"

ଜଗନ୍ନାଥ ଦାସଙ୍କ ସଦୃଶ ଜଣେ ଭକ୍ତ ସାଧକ କବିର ଜୀବନୀ ଲିପିବଦ୍ଧ କରିବାରେ ଓଡ଼ିଆ ସାହିତ୍ୟରେ ଦିବାକର ଦାସଙ୍କ ଏହି ପ୍ରଚେଷ୍ଟା ସର୍ବପ୍ରଥମ ବୋଲି କୁହାଯାଇଥାଏ ।

ବଙ୍ଗଭାଷାରେ କବିରାଜ କୃଷ୍ଣଦାସଙ୍କ ଶ୍ରୀଚୈତନ୍ୟ ଚରିତାମୃତ ସହିତ ଏହି ପୁସ୍ତକ ତୁଳନୀୟ । ବୈଷ୍ଣବ କବି ଦ୍ୱାରକା ଦାସଙ୍କର 'ଛତିଶ ଗୁପ୍ତ ଗୀତା' 'ପରଚେଗୀତା', 'ଭକ୍ତି ରସାମୃତ', 'ସଂସାର ବୋଧ ଚଉତିଶା' ପ୍ରଭୃତି ବହୁ ରଚନା ପରିଦୃଷ୍ଟ ହୁଏ । କବି ସପ୍ତଦଶ ଶତାବ୍ଦୀର ଶେଷ ଭାଗରେ ଜୀବିତ ଥିଲେ । ସେ ପଞ୍ଚସଖା କବି ବଳରାମ ଦାସଙ୍କର ଅସଂପୂର୍ଣ୍ଣ 'ଛତିଶ ଗୁପ୍ତଗୀତା'କୁ ସମ୍ପୂର୍ଣ୍ଣ କରିଥିଲେ ଏବଂ ନିଜକୁ ବଳରାମ ଦାସଙ୍କର ଅବତାର ବୋଲି ବର୍ଣ୍ଣନା କରିଥିଲେ ।

ଓଡ଼ିଆ ସାହିତ୍ୟରେ ରୀତିକାବ୍ୟ ଏବଂ ଶୃଙ୍ଗାର ପ୍ରଧାନ କାବ୍ୟ ଯୁଗର ଆବିର୍ଭାବ ପୂର୍ବରୁ ବିକ୍ଷିପ୍ତ ଭାବରେ କତିପୟ କାବ୍ୟର ସୂଚନା ମିଳିଥାଏ । ସେହି ସବୁ କାବ୍ୟ ସପ୍ତଦଶ ଶତାବ୍ଦୀର ରସାଳ, କାଳ୍ପନିକ, ଆଦିରସ ପୀଡ଼ିତ କାବ୍ୟ ପରଂପରାର ପୂର୍ବବର୍ତ୍ତୀ । ପୂର୍ବେ ଅର୍ଜୁନ ଦାସଙ୍କ 'ରାମବିଭା', 'କଳ୍ପଲତା', ଶିଶୁ ଶଙ୍କରଙ୍କ 'ଉଷାଭିଳାଷ' କାବ୍ୟର ନାମୋଲ୍ଲେଖ କରାଯାଉଛି ।

ଷୋଡ଼ଶ ଶତାବ୍ଦୀର ଶେଷ ଭାଗରେ ନରସିଂହ ସେଣ ମହାପାତ୍ର 'ପରମଳା' କାବ୍ୟ ରଚନା କରିଥିଲେ । କଥାବସ୍ତୁ ଉପସ୍ଥାପନା ଏବଂ ଶୈଳୀ ବିଚାରରେ 'ପରମଳା' ଓଡ଼ିଆ କାବ୍ୟ ରାଜ୍ୟରେ ଏକ ନୂତନ ଦିଗ୍‌ଦର୍ଶନକାରୀ କାବ୍ୟ ବୋଲି ସର୍ବଥା ସ୍ୱୀକୃତ । କଥା ବସ୍ତୁରେ କଳ୍ପନା, ପୌରାଣିକତାର ସମନ୍ୱୟ ଘଟିଛି । ରାଜା ବିକ୍ରମ କେଶରୀ ଏବଂ ରାଣୀ ସୁଶୀଳାଙ୍କର ପୁତ୍ର ହେଉଛନ୍ତି ମକରକେତୁ । କାଞ୍ଚି ନଗରାଧିପତି ବୀର ଭଦ୍ରେଶ୍ୱରଙ୍କ କନ୍ୟା ହେଉଛି ପରମଳା । ଅପସରା ତିଲୋତ୍ତମା ଇନ୍ଦ୍ରଙ୍କ ଶାପରେ ମର୍ତ୍ତ୍ୟରେ ପରମଳା ରୂପରେ ଜନ୍ମଗ୍ରହଣ କରିଥିଲେ । ଘଟଣା ପ୍ରବାହରେ ଏହି ମକରକେତୁ ଆଉ ପରମଳାଙ୍କର ଶୁଭ ପରିଣୟ ସଂପାଦିତ ହୋଇ-ଥିଲା । କାବ୍ୟରେ ନାୟିକା ରଜବତୀ ହେବା, ରଜବତୀ ନାୟିକାର ରତିକ୍ରୀଡ଼ା ନାନାଦି

ସାମାଜିକ ବିଷୟ ଏବଂ ଅଲୌକିକ ଘଟଣା କଥାବସ୍ତୁ ଅନ୍ତର୍ଭୁକ୍ତ । ଋତୁବର୍ଣ୍ଣନ, ନାୟକ-ନାୟିକାଙ୍କର ମିଳନ, ବିରହାବସ୍ଥାରେ ମାନସିକ ଦ୍ୱନ୍ଦ୍ୱ, ଆଲଙ୍କାରିକ କାବ୍ୟ ଢଙ୍ଗରେ ଏଥିରେ ସୂଚୀତ ।

ରାଧାକୃଷ୍ଣ ପ୍ରେମତତ୍ତ୍ୱ ରସାଳ ଏବଂ ଆଲଙ୍କାରିକ କାବ୍ୟ ପରିପାଟୀରେ ସନ୍ନିବେଶିତ କରିବାରେ ଷୋଡ଼ଶ ଶତାବ୍ଦୀର ଶେଷ ଭାଗର କବି ଦେବଦୁର୍ଲଭ ଦାସ ଯଥେଷ୍ଟ କୃତିତ୍ୱ ପ୍ରଦର୍ଶନ କରିଥିଲେ । ତାଙ୍କର ପ୍ରଧାନ କାବ୍ୟ 'ରହସ୍ୟ ମଞ୍ଜରୀ' ତାଙ୍କ କାବ୍ୟପ୍ରତିଭାକୁ ପ୍ରମାଣିତ କରିଥାଏ । କାବ୍ୟରେ କୃଷ୍ଣ ନାୟକ, ରୁକ୍ମିଣୀ ପ୍ରଧାନ ନାୟିକା । ଗୋପୀ-ଭାବ କୃଷ୍ଣପ୍ରାପ୍ତିର ସର୍ବୋତ୍କୃଷ୍ଟ ଉପାୟ ।

"ଯେତେ ଭକ୍ତି ମଧ୍ୟେ ପ୍ରେମଭକ୍ତି ଅଟେ ସାର ।
ସେ ଭକ୍ତି ଥିଟଇ କୋଠ ଗୋପୀମାନଙ୍କର ଗୋ ।
ଗୋପୀଙ୍କୁ ଭଜିଲ ଭକ୍ତି ପ୍ରେମଭକ୍ତି କହି ।
ବିନା ପ୍ରେମଭକ୍ତିରେ ଦର୍ଶନ ମୋତେ ନାହିଁ ଗୋ ।"

'ରୁକ୍ମିଣୀବିଭା' କାର୍ତ୍ତିକ ଦାସଙ୍କର ଏକ କ୍ଷୁଦ୍ର ଜନପ୍ରିୟ କାବ୍ୟ । ପଦ୍ମ ପୁରାଣ ଅବଲମ୍ବନରେ କବି କୃଷ୍ଣଙ୍କ ଦ୍ୱାରକାଲୀଳା ଦଶ ଗୋଟି ଛାନ୍ଦରେ ବର୍ଣ୍ଣନା କରିଛନ୍ତି । କଥାବସ୍ତୁଗତ ମହତ୍ତ୍ୱ ଅପେକ୍ଷା କାବ୍ୟରେ ଶିଳ୍ପ-ପରିପାଟୀ ଯୋଜନା ସମ୍ବନ୍ଧୀୟ ସଫଳତା ବିଶେଷ ପ୍ରକଟିତ । 'ରାମ ରାବଣ ଯୁଦ୍ଧ' ନାମକ ଏକ କ୍ଷୁଦ୍ର କାବ୍ୟ ଏହି କବିଙ୍କର କୃତି ।

ଓଡ଼ିଆ ସାହିତ୍ୟର ବିକାଶର ଆଦି ପର୍ଯ୍ୟାୟରେ ପୂର୍ବବର୍ଣ୍ଣିତ ରାମବିଭା, କଳ୍ପଲତା, ଉଷାଭିଳାଷ, ରହସ୍ୟ ମଞ୍ଜରୀ, ରୁକ୍ମିଣୀ ବିଭା ପ୍ରଭୃତି କ୍ଷୁଦ୍ର କ୍ଷୁଦ୍ର କାବ୍ୟର ଶୈଳ୍ପିକ ମୂଲ୍ୟ ଆଦୌ କମ୍ ନୁହେଁ । ବିଶେଷତଃ ଓଡ଼ିଆ ଭାଷାର କାବ୍ୟିକ ପ୍ରୟୋଗ ଏବଂ ବୈଶିଷ୍ଟ୍ୟ ପାଇଁ ଏହି ସବୁ କାବ୍ୟ ପ୍ରଣିଧାନଯୋଗ୍ୟ ।

ବ୍ରହ୍ମଜ୍ଞାନୀ ବୈଷ୍ଣବ ଗ୍ରନ୍ଥ ମଧ୍ୟରେ ଦ୍ୱାରିକା ଦାସଙ୍କର ଛତିଶ ଗୁପ୍ତଗୀତା ଏବଂ ପରଚୋଗୀତା ବିଶେଷ ମହତ୍ତ୍ୱପୂର୍ଣ୍ଣ ଗ୍ରନ୍ଥ । ନିରାକାର, ଅବ୍ୟକ୍ତ, ଅଲେଖ ବ୍ରହ୍ମଙ୍କର ବର୍ଣ୍ଣନା କବିଙ୍କ ଭାଷାରେ—

"ପ୍ରଥମେ ଅଣଅକ୍ଷର ଉଦୟେ, ଠଅ ହୋଇଣ ମଣ୍ଡଳ ଗୋଟିଏ,
ଅଣାକାରରେ ଆକାର ହଶିଲ, ପ୍ରଥମେ ପ୍ରକୃତି ରୂପ ଧଇଲ ।"

କବି ସପ୍ତଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧର ପ୍ରାରମ୍ଭରେ (୧୬୫୯) ଜାତ ହୋଇଥିବାର ପ୍ରମାଣ ମିଳେ । ଛତିଶଗୁପ୍ତଗୀତାରେ ପିଣ୍ଡବ୍ରହ୍ମାଣ୍ଡ, ଯୋଗସାଧନ ପ୍ରଣାଳୀ, ସଦ୍‌ଗୁରୁ ଆବଶ୍ୟକତା, ନାମବ୍ରହ୍ମ, ପରମବ୍ରହ୍ମଙ୍କ ଉଦ୍ଦେଶ୍ୟରେ ଶରୀର ଦେବାଳୟ, ମନ ସେବକର ପରିକଳ୍ପନା, ପଞ୍ଚଭୂତ କଳ୍ପଯୁଗରେ ଏହି ଗ୍ରନ୍ଥର ଉପାଦେୟତା ଇତ୍ୟାଦି ବର୍ଣ୍ଣିତ । ଦ୍ୱାରିକା ଦାସ ନିଜକୁ ପଞ୍ଚସଖା କବି ବଳ-

*

ଶ୍ରୀମ ଦାସଙ୍କର ଅବତାର ବୋଲି ଅଭିହିତ କରିଛନ୍ତି । ଖୋର୍ଦ୍ଧାରାଜା ମୁକୁନ୍ଦ-ଦେବଙ୍କ (୧୬୫୯-୧୬୮) ରାଜତ୍ୱରେ ଛତିଶଗୁପ୍ତଗୀତା ରଚନା ଶେଷ ହୋଇ-ଥିଲା । 'ପରଚେଗୀତା' କବିଙ୍କର ଆଉ ଏକ ବ୍ରହ୍ମଜ୍ଞାନ, ତତ୍ତ୍ୱବାଣୀସମ୍ବଳିତ ଗୂଢ଼ କୃତି । ଭକ୍ତିମାର୍ଗ ଅପେକ୍ଷା ଜ୍ଞାନମାର୍ଗର ଉତ୍କର୍ଷ, ପରଚେଗୀତାରେ ପ୍ରମାଣିତ । ପାଣ୍ଡବ ଭ୍ରାତାମାନଙ୍କ ମଧ୍ୟରେ ଅର୍ଜୁନ ଏବଂ ଉଦ୍ଧବ ଏହି ମାର୍ଗର ଗୁରୁତ୍ୱ ଉପଲବ୍ଧି କରିପାରିଥିଲେ । ଏକବିଂଶ ଅଧ୍ୟାୟବିଶିଷ୍ଟ ଏହି ତାନ୍ତ୍ରିକ ଗ୍ରନ୍ଥରେ କବି ଷଟ୍-ଚକ୍ର, ଚକ୍ରମାନଙ୍କର ଦଳ, ବାୟୁର ନାମ ଏବଂ ସ୍ଥାନ, ବ୍ରହ୍ମାଣ୍ଡର ପରିଚୟ, ତ୍ରିଗୁଣ ଭେଦ, ଗୁରୁସେବା ଏବଂ ବୈଷ୍ଣବର ମହତ୍ତ୍ୱ, ଦେହର ବିଭିନ୍ନ ଅଂଶ, ପ୍ରତିମାପୂଜାର ଅସାରତା, ବୈଷ୍ଣବଲକ୍ଷଣ, ଅଷ୍ଟାଙ୍ଗ ଯୋଗସାଧନା, ଷୋଳନାମ ବତିଶ ଅକ୍ଷର, ଗୋଲହାଟ ପ୍ରସଂଗ, ଶରୀର ଦେବାଳୟ, ଶରୀର ରଥ, କ୍ଷେତ୍ର, କ୍ଷେତ୍ରଜ୍ଞ ବିଚାର ଏବଂ ପ୍ରଳୟ ଇତ୍ୟାଦି ପ୍ରସଂଗ ବିଚାର କରିଛନ୍ତି । ଗୁରୁଶିଷ୍ୟ ପରଂପରାର ଚିତ୍ର କବି ଉପସ୍ଥାପନ କରିଛନ୍ତି ।

"ସୁନାକୁ କଷଟିରେ କଷିଲେଁ, ଘୋଡ଼ାକୁ ପୁଚ୍ଛ ଦଉଡ଼େ କଷଇ,
ଗୁରୁଶିଷ୍ୟଙ୍କୁ କଷନ୍ତି ମନରେ, କଷୁ ଉତୁରିଲେ ଦ୍ୟନ୍ତି ସେଠାରେ,
ଧୋଇ ମରୁଡ଼ି ଯହିଁରେ ନ ଥାଇ, ସେ ଭୂମି ଚାହିଁ ଚଷା ବୁଣେ ନେଇ ।"
ତ୍ରିଗୁଣ ବୃକ୍ଷ ମହିମା ସଂପର୍କରେ କବି ଲେଖିଛନ୍ତି—
"ରଜ ତମରୁ ଯେଉଁ ବୃକ୍ଷଜାତ, ମୋହ ଜଳେ ବୁଡ଼ି ସେ ବୃକ୍ଷ ପାର୍ଥ ।
ଭୋଗବାଞ୍ଛାରେ ଯେ ତରୁ ବଢ଼ଇ, ଅହଙ୍କାର ସବୁ କଳିକା ହୋଇ ।
ପ୍ରକୃତି ପତ୍ର ଅଟଇ ତାହାର, ଷଡ଼ ଅରିର ପୁଷ୍ପ ଅଟେ ତାର ।"

× × ×

"ମୂଳ ଏହାର ସତ୍‌ସଂଗ କହି, ସୁଧାରୁ ପଲ୍ଲବମାନ ଅଟଇ ।"
(ସପ୍ତମ ଅଧ୍ୟାୟ)

ନିରାକାର ପରମବ୍ରହ୍ମ ଚେତନ ଅଚେତନ ସର୍ବତ୍ର ବିଦ୍ୟମାନ । ଆତ୍ମଜ୍ଞାନ-ଦ୍ୱାରା ସେହି ପରମବ୍ରହ୍ମଙ୍କର ପ୍ରକୃତ ସ୍ୱରୂପ ନିର୍ଦ୍ଧାରଣ କରି ପାରିବା ପ୍ରକୃତ ଭକ୍ତର କର୍ତ୍ତବ୍ୟ । ଆତ୍ମଜ୍ଞାନ ଲଭ କଲେ ପ୍ରତିମାପୂଜା ଅନାବଶ୍ୟକ ବୋଲି କବିଙ୍କର ମତ ।

'ଏମନ୍ତ ପ୍ରତିମା ଥାପନା କର, ପୂଜଇ ଏହି ଦଅଁ ବୋଲି କରି ।
ଏମନ୍ତ ବୋଲି ଦୁର୍ବୁଦ୍ଧି ପାମରେ, ମୋତେ ନ ଚିହ୍ନନ୍ତି ମାୟାମୋହରେ
ତାଙ୍କର ଦେହରେ ମୁଁ ରହିଥାଇ, ମୋତେ ନ ଚିହ୍ନନ୍ତି ଅଜ୍ଞାନ ହୋଇ ।"
(ଦଶମ ଅଧ୍ୟାୟ )

ପ୍ରକୃତ ବୈଷ୍ଣବ କିଏ ? ଅର୍ଜୁନଙ୍କ ପ୍ରଶ୍ନର ଉତ୍ତର ଦେଇ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ବୁଝାଉଛନ୍ତି—

"ଶ୍ରୀହରି ବୋଇଲେ ବୈଷ୍ଣବ ମୋର, ତିନି ଭୁବନରେ ଅଟନ୍ତି ସାର,
ଜ୍ଞାନ ପରଚେ ଆତ୍ମାଚିହ୍ନି ବୋଧା, ମୋହର କଥାରେ ବଡ଼ ଶରଧା ।"
( ଏକାଦଶ ଅଧ୍ୟାୟ )

ଏହିପରି 'ପରିଚେଗୀତା' ଗୂଢ ତତ୍ତ୍ୱପୂର୍ଣ୍ଣ ଏକ ଆଧ୍ୟାତ୍ମିକ ଗ୍ରନ୍ଥ । କବି 'ସପ୍ତପୋଇ' ନାମକ କ୍ଷୁଦ୍ର ରଚନାରେ ଜଗନ୍ନାଥଙ୍କର ବନ୍ଦନା କରିଛନ୍ତି । କବିଙ୍କ ନାମରେ ଭଣିତ ଆଉ କେତେକ ପୁସ୍ତକ ଥିବାର ଜଣାଯାଏ ।

କବି ନନ୍ଦ ଦାସ ଓ ଦେବାନନ୍ଦ ଦାସ ନାମକ ଦୁଇ ଜଣ କବି ଅଷ୍ଟାଦଶ ଶତାବ୍ଦୀରେ ଜୀବିତ ଥିଲେ ଏବଂ ସେମାନେ ଓଡ଼ିଶାର ନରପତି ପ୍ରତାପରୁଦ୍ରଙ୍କ ସମକାଳୀନ ଥିଲେ । ନନ୍ଦ ଦାସଙ୍କର 'ଅଣାକାର ସଂହିତା', ଦେବାନନ୍ଦ ଦାସଙ୍କର 'ବୈଚନ୍ଦ୍ର ଗୀତା' ଯଥାକ୍ରମେ ନିର୍ଗୁଣପନ୍ଥୀ ଏବଂ ବ୍ରହ୍ମତତ୍ତ୍ୱକୁ ଭିତ୍ତିକରି ଲିଖିତ । ନନ୍ଦ ଦାସ ନିଜକୁ ଦ୍ୱାରିକା ଦାସଙ୍କର ଅବତାର ବୋଲି ପରିଚିତ କରାଇଥିଲେ । ଓଡ଼ିଆ ବୈଷ୍ଣବ ସାହିତ୍ୟକମାନଙ୍କ ମଧ୍ୟରେ ବୈଷ୍ଣବଧର୍ମାବଲମ୍ବୀ ଭୂପତି ପଣ୍ଡିତ ଜଣେ ବିଶିଷ୍ଟ ସାଧକ ଥିଲେ ଏବଂ ରାଜା ଦିବ୍ୟସିଂହ ଦେବଙ୍କ ସମୟରେ ସେ ଓଡ଼ିଶାକୁ ଆସିଥିବାର ଜଣାଯାଏ । ରାଜାଙ୍କ ପ୍ରୋତ୍ସାହନ ଲାଭକରି ସେ ଓଡ଼ିଶାରେ ବସବାସ କରିଥିଲେ । ଗୋପିକା ଭକ୍ତିର ସାଧକ ଚୈତନ୍ୟ ଦାସଙ୍କୁ ଭୂପତି ଗୁରୁରୂପେ ଗ୍ରହଣ କରିଥିଲେ । 'ପ୍ରେମ ପଞ୍ଚାମୃତ' କବିଙ୍କର ଏକ ପ୍ରାମାଣିକ ବୈଷ୍ଣବ କାବ୍ୟକୃତି ଏବଂ ବୈଷ୍ଣବ ସାହିତ୍ୟ ମଧ୍ୟରେ ଏହା ବରାବର ଉଲ୍ଲେଖଯୋଗ୍ୟ । ଆନୁମାନିକ ରଚନା ସମୟ ହେଉଛି—୧୬୯୯ । ଏହା ଦଶମ ଅଧ୍ୟାୟରେ ସମ୍ପନ୍ନ ।

"ଶ୍ରୀ ଦିବ୍ୟସିଂହ ରାଜାଙ୍କର, ସପ୍ତମ ଅଷ୍ଟମ ଅଙ୍କର ।
ମକର ମାସ ଶୁକ୍ଳପକ୍ଷ, ତହିଁ ତ୍ରୟୋଦଶୀ ପ୍ରତ୍ୟକ୍ଷ ।
ଗୋଧୂଳି ସୋମବାର ଦିନ, ଏ ପୋଥି ହୋଇଲା ସଂପୂର୍ଣ୍ଣ ।"
(ପ୍ରେମ ପଞ୍ଚାମୃତ – ୧୦ମ ଅଧ୍ୟାୟ )

ଏହି ଗ୍ରନ୍ଥରେ କବି ବିଶୁଦ୍ଧ ପ୍ରେମର ଉତ୍କର୍ଷ ପ୍ରତିପାଦନ କରିଛନ୍ତି—

"ବିଶୁଦ୍ଧ ପ୍ରେମ ଯେବେ ନାହିଁ, ଅମୃତ ଛୁଇଁବି କାହିଁ
ଯେବେ ପବିତ୍ର ପ୍ରେମ ପାଉଁ; ଉଚ୍ଛିଷ୍ଟ ଅତି ସୁଖେ ଖାଉଁ ।"

ଗ୍ରନ୍ଥର ବର୍ଣ୍ଣନାନୁଯାୟୀ ଗୋପୀକନ୍ୟାମାନେ ବେଦକନ୍ୟା, ଦେବକନ୍ୟା, ମୁନିକନ୍ୟା ଏବଂ ଗୋପୀକନ୍ୟା – ଏପରି ଚାରି ଭାଗରେ ବିଭକ୍ତ । ଶ୍ରୀକୃଷ୍ଣ ଗୋଲକ ବାଞ୍ଛାବୃକ୍ଷ ମୂଳରେ ଉଭା ହୋଇ ବଂଶୀ ବାଦନ କଲେ । ବଂଶୀର ଉଚ୍ଚାଟନରୁ ବେଦକନ୍ୟା, ସ୍ତମ୍ଭନନାଦରୁ ଦେବକନ୍ୟା, ବଶୀକରଣ ନାଦରୁ

ମୁନିକନ୍ୟା ଏବଂ ମୋହନ ନାଦରୁ ବ୍ରଜକନ୍ୟା ଜାତ ହେଲେ । ଏମାନଙ୍କର ପ୍ରକାରଭେଦ ଏବଂ ଗୁଣାତ୍ମକ ବର୍ଗର ଗ୍ରନ୍ଥରେ କରାଯାଇଛି । ଭାଗବତରେ ଗୋପୀମାନେ ସାଧନସିଦ୍ଧା, ଦେବୀ ଓ ନିତ୍ୟସିଦ୍ଧା ଏପରି ତିନିଭାଗରେ ବିଭକ୍ତ । ରାଧାକୃଷ୍ଣଙ୍କର ଜୀବପରମ ସମ୍ପର୍କ, ରାଧା ଗୋପୀମାନଙ୍କର ପରକୀୟା ପ୍ରେମ ଏବଂ ଶୃଙ୍ଗାରରସପ୍ରାଧାନ୍ୟ ଗ୍ରନ୍ଥରେ ସୂଚୀତ ।

"ତୋହର ଜୀବ ଆତ୍ମା ରାଧେ
ପରମ ମିଶି ତାର ମଧେ ।
× × ×
ଏ ଯେ ଶୃଙ୍ଗାର ରସ ସାର,
ବିଗ୍ରହେ ଏ ଚାରି ପ୍ରକାର ।
ସ୍ୱକୀୟା, ସମାନ, ବିଶ୍ୱପା
ଚତୁର୍ଥେ ଶୁଦ୍ଧ ପ୍ରେମରୂପା ।"

ଶ୍ରୀକୃଷ୍ଣ ପ୍ରେମଜ୍ଞ ଏବଂ ରସଗ୍ରାହୀ ପୁରୁଷ ତାଙ୍କୁ ପାଇବାପାଇଁ ଗୋପୀମାନେ ଏକାନ୍ତ ବ୍ୟାକୁଳ । ଶ୍ରୀକୃଷ୍ଣ ଶୁଦ୍ଧପ୍ରେମର ଗ୍ରାହକ ।

"ପ୍ରେମରେ ଭୟ ମିଶେ ଯହିଁ,
ଭୟେ ଉହାଡ଼େ ମୁଁ ରହଇ ।"
× × ×
"ସେ ଶୁଦ୍ଧପ୍ରେମାଙ୍କ ଚରଣେ
ମୁହିଁ ଅଛଇ ଦାସପଣେ ।" (ପଞ୍ଚମ ଅଧ୍ୟାୟ)

ବନ ମଧ୍ୟରେ ଶ୍ରୀକୃଷ୍ଣଙ୍କର ଅନ୍ତର୍ଦ୍ଧାନ, ଗୋପୀକନ୍ୟାମାନଙ୍କର ବିଭିନ୍ନ ଦିଗକୁ ଯାତ୍ରା ଏବଂ କୃଷ୍ଣଚନ୍ଦ୍ରଙ୍କର ବ୍ୟର୍ଥ ଅନ୍ୱେଷଣ ଏବଂ ପ୍ରତ୍ୟାବର୍ତ୍ତନ, କୃଷ୍ଣଙ୍କୁ ପ୍ରାର୍ଥନା, ଷୋଳ ସହସ୍ର ଗୋପୀଙ୍କ ନିମନ୍ତେ ଶ୍ରୀକୃଷ୍ଣଚନ୍ଦ୍ରଙ୍କର ଷୋଳସହସ୍ର ରୂପ ଧାରଣ, ଶେଷ ଅଧ୍ୟାୟରେ କବିଙ୍କର ବ୍ୟକ୍ତିଗତ ବିବରଣୀ, ଗ୍ରନ୍ଥର ଐତିହାସିକ, ଧାର୍ମିକ ମୂଲ୍ୟ ପ୍ରତିଷ୍ଠା କରିପାରିଛି । ଗ୍ରନ୍ଥର କାବ୍ୟିକ ମୂଲ୍ୟ ମଧ୍ୟ ଉଲ୍ଲେଖଯୋଗ୍ୟ—

"ସେବତି, କୁନ୍ଦ, କନିଅର
ମାଳତୀ କୋଳେ ମଧୁକର ।
କାଳିନ୍ଦୀ ତରଙ୍ଗ ସୁନ୍ଦର
ଚନ୍ଦ୍ର ପ୍ରତିବିମ୍ବ କୋଳର ।
କୁମୁଦ ପାଇଁ କାନ୍ତରସ
ଆନନ୍ଦମନେ ହସ ହସ ।

ଭ୍ରମର ଅଛୁ କୋଳେ ଘେନ
ଢେଣ୍ଟି ଲଜ୍ଜିତ ପଦ୍ମିନୀ ।
ହଂସ, ଶରାଳ, ଚକ୍ରବାକ
କେକୀ, କୋକିଳ, ସାରୀ, ଶୁକ ।"

( ତୃତୀୟ ଅଧ୍ୟାୟ )

ଗୋପୀମାନଙ୍କର ବର୍ଣ୍ଣନାରେ କଳ୍ପନା ଏବଂ ଅଳଙ୍କାର ସୁଷମା ବେଶ ଘଟିଛି ।

"ବକ୍ଷସ୍ଥଳକୁ ଝାଳ ଗଲା
କାଞ୍ଚଳ ଚପୁଡ଼ିଲା ଭଲା ।
କସ୍ତୁରୀ ପତ୍ରାବଳୀ ରେଖ
ଲିଭିଲା ପୟୋଧରୁ ଦେଖ ।"

(ଦ୍ୱିତୀୟ ଅଧ୍ୟାୟ)

ବିଶୁଦ୍ଧ ଓଡ଼ିଆଭାଷାର ସ୍ୱଚ୍ଛନ୍ଦ ବ୍ୟବହାର ଭୂପତିଙ୍କର ଭାଷାଜ୍ଞାନର ପରିଚାୟକ । ରାଧାକୃଷ୍ଣ ପ୍ରେମତତ୍ତ୍ୱ ସର୍ବଶ୍ରେଷ୍ଠ ତତ୍ତ୍ୱ; ଏହାହିଁ କବିଙ୍କର ପ୍ରତିପାଦିତ ବିଷୟବସ୍ତୁ । କବି ଚଉପଦୀ ଏବଂ ଚଉତିଶା ଶୀର୍ଷକ କେତେକ କ୍ଷୁଦ୍ର ରଚନା ମଧ୍ୟ ଲେଖିଥିଲେ । ବୈଷ୍ଣବ ସାହିତ୍ୟ ପରଂପରାରେ ସପ୍ତଦଶ ଶତାବ୍ଦୀର ଲେଖିକା ବୃନ୍ଦାବତୀ ଦାସୀଙ୍କର ଗ୍ରନ୍ଥ 'ପୂର୍ଣ୍ଣତମ ଚନ୍ଦ୍ରୋଦୟ' ଏକ ବିଶିଷ୍ଟ କୃତି । ଏହାର ରଚନା ସମୟ ମଧ୍ୟ ୧୬୯୧ ଖ୍ରୀଷ୍ଟାବ୍ଦ ଏବଂ ଏହା ବାଂଶ ଅଧ୍ୟାୟସମ୍ପନ୍ନ ।

"ଏ ପୂର୍ଣ୍ଣତମ ଚନ୍ଦ୍ରୋଦୟ
ସବୁ ଅଟଇ ସୁଧାମୟ ।
କୃଷ୍ଣଚରିତ ସୁଧାସିନ୍ଧୁ
ଏ ଜାତ ହେଲେ ତହୁଁ ମଧୁ ।"

ଏଥିରୁ କବିଙ୍କର ଗ୍ରନ୍ଥ ଲେଖନର ଉଦ୍ଦେଶ୍ୟ ଏବଂ ମହତ୍ତ୍ୱ ଅନୁମେୟ । ବୈଷ୍ଣବ ଦର୍ଶନଶାସ୍ତ୍ର ଏବଂ ଅନ୍ୟାନ୍ୟ ଧର୍ମଗ୍ରନ୍ଥରେ ଏହି ଭକ୍ତପ୍ରାଣା ଲେଖିକାଙ୍କର ବିଶେଷ ପ୍ରବେଶ ଥିଲା । ତାଙ୍କର ସମସ୍ତ ପରିବାର କୃଷ୍ଣଭକ୍ତି ପରଂପରାରେ ପ୍ରଭାବିତ ହୋଇଥିଲେ । ଯେଣୁ ତାଙ୍କ ସ୍ୱାମୀ ଚନ୍ଦ୍ରଶେଖର ଦାସଙ୍କର "ଶ୍ରୀକୃଷ୍ଣ ତତ୍ତ୍ୱ ଚନ୍ଦ୍ରୋଦୟ", ତାଙ୍କ ପୁତ୍ର ରାମ ଦାସଙ୍କର 'ଭକ୍ତି ଚନ୍ଦ୍ରୋଦୟ' ଏବଂ ନାତି କୃପାସିନ୍ଧୁ ଦାସଙ୍କର 'ଉପାସନା ଚନ୍ଦ୍ରୋଦୟ' ପ୍ରଭୃତି ଗ୍ରନ୍ଥରୁ ଏହି ପରଂପରା ଓ ପ୍ରଭାବର ନିଦର୍ଶନ ମିଳେ । ଏହିସବୁ ରଚନାରେ କୃଷ୍ଣଲୀଳା ଏବଂ ଲୀଳାର ମାହାତ୍ମ୍ୟ ହିଁ ବର୍ଣ୍ଣିତ ! ଦ୍ୱାରକା, ମଥୁରା ଏବଂ ଗୋପଲୀଳାମାନଙ୍କରେ ଶ୍ରୀକୃଷ୍ଣ କିପରି ପୂର୍ଣ୍ଣ, ପୂର୍ଣ୍ଣତର ଏବଂ ପୂର୍ଣ୍ଣତମ ତାହାର ଆଧ୍ୟାତ୍ମିକ ବ୍ୟାଖ୍ୟା ପ୍ରଦତ୍ତ କରାଯାଇଛି ।

# ଓଡ଼ିଆ ସାହିତ୍ୟରେ ମଧ୍ୟଯୁଗ

## ଆଳଙ୍କାରିକ ରୀତିକାବ୍ୟ-ପ୍ରସାର—

ଦେଶର ରାଜନୈତିକ ଏବଂ ସାମାଜିକ ଇତିହାସର ଉତ୍‌ଥାନପତନ ସହିତ ସ୍ଥାନୀୟ ଭାଷା, ସାହିତ୍ୟ ଏବଂ ସଂସ୍କୃତିର ବିକାଶଧାରା, ଆଭିମୁଖ୍ୟ ଏବଂ କାବ୍ୟକାର-ମାନଙ୍କର ଦୃଷ୍ଟିକୋଣ ଜୀବନଦର୍ଶନ ଊଣା-ଅଧିକ ଭାବରେ ଜଡ଼ିତ । ଓଡ଼ିଶାର ଇତିହାସରେ ଗଙ୍ଗବଂଶ, ସୂର୍ଯ୍ୟବଂଶର ପ୍ରତିଷ୍ଠା ତଥା ପରଂପରା ପ୍ରତାପରୁଦ୍ରଙ୍କ ସମକାଳୀନ ପଞ୍ଚସଖା ସାଧନା ଚର୍ଚ୍ଚିତ ବୈଷ୍ଣବ ଧର୍ମ-ପ୍ଲୁତ ଭକ୍ତିରସାତ୍ମକ ସାହିତ୍ୟ ପ୍ରବାହର ନାଟକୀୟ ଯବନିକା ପରେ ଓଡ଼ିଆ ସାହିତ୍ୟାକାଶରେ କାବ୍ୟଜ୍ୟୋତି ବିଚ୍ଛୁରିତ ହୋଇଗଲା । ଅଷ୍ଟାଦଶ ଶତାବ୍ଦୀର ପ୍ରାରମ୍ଭରୁ ଊନବିଂଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ଏକ ଅନନ୍ୟସାଧାରଣ କାଳଜୟୀ କାବ୍ୟରସ କଳାଭୂମି ଉତ୍କଳରେ ପ୍ରବାହିତ ହେଲା; ଯାହାର ବାହ୍ୟରୂପ ଥିଲା ଶାବ୍ଦିକ ସୌନ୍ଦର୍ଯ୍ୟ, ଆଭିଧାନିକ ସଙ୍ଗଠନ ଏବଂ ଆଭ୍ୟନ୍ତରୀଣ ସତ୍ତା ଥିଲା ଶୃଙ୍ଗାର ଏବଂ ମଧୁର ରସର ପରିପ୍ଳୁତି । ଏହି ଯୁଗର ପ୍ରଧାନ ରାଜନୈତିକ ଘଟଣା ହେଉଛି—ମୋଗଲମାନଙ୍କ ନିକଟରେ ଓଡ଼ିଶାର ସ୍ୱାଧୀନତା ବିପର୍ଯ୍ୟୟ, ପ୍ରତାପରୁଦ୍ର ଦେବଙ୍କ ଦେହାବସାନ (୧୫୩୩ରୁ ୧୫୬୮ ପର୍ଯ୍ୟନ୍ତ) ଓ ଆଭ୍ୟନ୍ତରୀଣ ରାଜନୈତିକ ଅସ୍ଥିରତା । ତେଣୁ ଓଡ଼ିଶାରେ ମୁସଲମାନମାନଙ୍କର ଆବିର୍ଭାବ, ଶାସନ, ସେମାନଙ୍କ ସଂସ୍କୃତିର କ୍ରମଶଃ ପ୍ରସାର, ଅନ୍ୟ ଦିଗରେ ଦେଶର ସାହିତ୍ୟ ଏବଂ ସଂସ୍କୃତି କ୍ଷେତ୍ରରେ ସ୍ଥାନୀୟ ସାହିତ୍ୟସ୍ରଷ୍ଟାମାନଙ୍କର ସ୍ୱଭାଷା ଏବଂ ସାହିତ୍ୟକୁ ବଳିଷ୍ଠ କରି ଗଢ଼ିବାର ଏକାନ୍ତ ନିଷ୍ଠା; ପୁନଶ୍ଚ ମୁସଲମାନମାନଙ୍କର ବାରମ୍ବାର ଓଡ଼ିଶା ଆକ୍ରମଣ, ସୁଜାଉଦ୍ଦିନଙ୍କର ପୁରୀ ମନ୍ଦିର ଆକ୍ରମଣ, ରାଜା ଦିବ୍ୟସିଂହ ଦେବଙ୍କ ନେତୃତ୍ୱରେ ଆଭ୍ୟନ୍ତରୀଣ ଅସ୍ଥିରତାର ମୁକାବିଲା, ଦିବ୍ୟସିଂହ ଦେବଙ୍କର ପ୍ରୋତ୍ସାହନରେ ବହୁ କବିଙ୍କର ରସୋତ୍ତୀର୍ଣ୍ଣ କାବ୍ୟ ରଚନା ଏ ଯୁଗର ଲକ୍ଷଣ । ଏହିପରି ଏକ ପରିବେଶରୁ ଓଡ଼ିଆ ଭାଷାରେ ଶୃଙ୍ଗାରରସାଶ୍ରିତ କାବ୍ୟ ପରଂପରା ସୃଷ୍ଟି ହେଲା । ଏହି ପରଂପରା ମୁଖ୍ୟତଃ ସଂସ୍କୃତ ରୀତି ଏବଂ ଆଲଂକାରିକ ପରମ୍ପରା ଏବଂ ସଂପୃକ୍ତ କାବ୍ୟମାନଙ୍କ ପାଣ୍ଡିତ୍ୟ, ଶବ୍ଦଙ୍କନଦ୍ୱାରା ପରିପୁଷ୍ଟ । ନାୟକ ନାୟିକାଙ୍କର ମିଳନାତ୍ମକ ଅଭିବ୍ୟକ୍ତି ଏବଂ ଶୃଙ୍ଗାର ବର୍ଣ୍ଣନା ମଧ୍ୟଯୁଗୀୟ ଓଡ଼ିଆ କାବ୍ୟର ପ୍ରାଣସ୍ପନ୍ଦନ । ଓଡ଼ିଆ ସାହିତ୍ୟରେ ସାରଳା ଦାସ, ବଳରାମ ଦାସ, ଜଗନ୍ନାଥ ଦାସ, ଅଚ୍ୟୁତାନନ୍ଦ ଦାସଙ୍କ ଯୁଗ ଏବଂ ସାହିତ୍ୟସାଧନା ଯେବେ ଭକ୍ତିସର୍ବସ୍ୱ ଥିଲା, ତାହାହେଲେ ଧନଞ୍ଜୟ ଭଞ୍ଜ, ଲୋକନାଥ ବିଦ୍ୟାଧର, ଦୀନକୃଷ୍ଣ ଦାସ, ଉପେନ୍ଦ୍ର ଭଞ୍ଜ, ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା, ଅଭିମନ୍ୟୁ ସାମନ୍ତ ସିଂହାରଙ୍କ ଯୁଗ ତଥା କାବ୍ୟକୃତି ଆଦିରସପ୍ରଧାନ ଥିଲା ।

କେତେବେଳେ ଶ୍ରୀକୃଷ୍ଣ ଏବଂ ଶ୍ରୀରାଧା, ଶ୍ରୀରାମଚନ୍ଦ୍ର ଏବଂ ସୀତା ନାୟକ ନାୟିକା, ଆଉ କେତେବେଳେ ରାଜକୁମାର ରାଜକୁମାରୀ ଥିଲେ କାବ୍ୟର ନାୟକ ନାୟିକା । ଆଦିରସ କାବ୍ୟ ସାହିତ୍ୟର ହେଲା ପ୍ରଧାନ । ତେଣୁ ମଧ୍ୟଯୁଗୀୟ ଓଡ଼ିଆ କାବ୍ୟପୃଷ୍ଠା ପ୍ରେମ, ବିରହ, ମିଳନ, ନାୟକ-ନାୟିକା ଭେଦ (ଅଷ୍ଟପ୍ରକାର ନାୟକ— ଧୀରୋଦାତ୍ତ, ଧୀରୋଦ୍ଧତ, ଧୀରପ୍ରଶାନ୍ତ, ଧୀରଲଳିତ, ଅନୁକୂଳ, ଦକ୍ଷିଣ, ଶଠ, ଧୃଷ୍ଟ । ଅଷ୍ଟନାୟିକା—ଅଭିସାରିକା, ବାସକସଜ୍ଜା, ଉତ୍କଣ୍ଠିତା, ବିପ୍ରଲବ୍ଧା, ଖଣ୍ଡିତା, କଳହାନ୍ତରିତା, ସ୍ୱାଧୀନଭର୍ତ୍ତୃକା, ପ୍ରୋଷିତଭର୍ତ୍ତୃକା), ଶବ୍ଦାଳଙ୍କାର, ଅର୍ଥାଳଙ୍କାର ବର୍ଣ୍ଣନାରେ ପରିପୂର୍ଣ୍ଣ । ଏହି ଯୁଗୀୟ କାବ୍ୟ ସମୂହରେ ବିଭିନ୍ନ ଋତୁଚକ୍ରରେ ରତିରସ-ଉଦ୍ରେକକାରୀ ବର୍ଣ୍ଣନା, ରାଜପ୍ରାସାଦ ବର୍ଣ୍ଣନା, ନାୟିକାର ଯୌବନପ୍ରାପ୍ତି, ଅଙ୍ଗ ସୌନ୍ଦର୍ଯ୍ୟ ବର୍ଣ୍ଣନା, ସଖୀସହ ଜଳକ୍ରୀଡ଼ା, ସ୍ୱପ୍ନଦର୍ଶନ, କନ୍ଦର୍ପପୀଡ଼ା ଅଧିକ ମାତ୍ରାରେ ପରିଦୃଷ୍ଟ । ରାଜପୁତ୍ର ଏବଂ ରାଜଜେମାମାନଙ୍କର ପ୍ରେମବର୍ଣ୍ଣନା ହିଁ ମଧ୍ୟଯୁଗୀୟ ଓଡ଼ିଆ କାବ୍ୟରେ ମର୍ମବାଣୀ । ଏପରି ସାମନ୍ତବାଦୀ ଭୋଗବିଳାସପୂର୍ଣ୍ଣ ଜୀବନର ଆଲେଖ୍ୟଧର୍ମୀ କାବ୍ୟ ରଚନା କରିବାରେ ସୌଭାଗ୍ୟ ହେଉ କିମ୍ବା ଦୁର୍ଭାଗ୍ୟ ହେଉ, ରାଜପରିବାରସମ୍ଭୃତ କେତେକ ପ୍ରତିଭାଶାଳୀ ବ୍ୟକ୍ତି ହିଁ ଅଗ୍ରଣୀ ହୋଇଥିଲେ । ସେଥିପାଇଁ ଓଡ଼ିଆ ସାହିତ୍ୟ ଆଦିରସପ୍ରଧାନ କାଳ୍ପନିକ କାବ୍ୟକୃତି ପ୍ରବର୍ତ୍ତନ କରିବାରେ ଦକ୍ଷିଣ ଓଡ଼ିଶାର ଘୁମୁସର ରାଜବଂଶ ଧନଞ୍ଜୟଭଞ୍ଜ ଏବଂ ତାଙ୍କ ପୌତ୍ର ଉପେନ୍ଦ୍ର ଭଞ୍ଜ ବିଶେଷ ଭାବରେ ଦାୟୀ ଥିଲେ ।

କାବ୍ୟଯୁଗର ପ୍ରାକ୍‌କାଳରେ ଧନଞ୍ଜୟ ଭଞ୍ଜ (୧୬୧୧-୧୭୦୧) ଙ୍କର 'ଇଚ୍ଛାବତୀ' 'ଅନଙ୍ଗରେଖା' କାବ୍ୟ ଦୁଇଗୋଟି ବିଶିଷ୍ଟ କୃତି । ପ୍ରଥମ କାବ୍ୟରେ ନାୟିକା ଇଚ୍ଛାବତୀ ପୂର୍ବଜନ୍ମରେ ଗନ୍ଧର୍ବୀ କଳାବତୀ ଥିଲେ ଏବଂ ନାୟକ ମଧୁକର ଗନ୍ଧର୍ବ କଳାବନ୍ତ ଥିଲେ । ଇନ୍ଦ୍ରଙ୍କର ଶାପଯୋଗୁଁ ମର୍ତ୍ତ୍ୟରେ ସେମାନଙ୍କର ଜନ୍ମ ଏବଂ ପରେ ମିଳନ ହେଲା । ଏହି କାବ୍ୟରେ ସଂସ୍କୃତ ରଚନା ପଞ୍ଚାଶିକା, ଚୌର ପଞ୍ଚାଶିକାର ପ୍ରଭାବ ପରିଦୃଷ୍ଟ । ସେହିପରି ଦ୍ୱିତୀୟ କାବ୍ୟରେ ମଧ୍ୟ ଇନ୍ଦ୍ରସଭାର ନର୍ତ୍ତକୀ ମଦାଳସାଙ୍କର ଇନ୍ଦ୍ରଙ୍କର କୋପଯୋଗୁଁ ମର୍ତ୍ତ୍ୟରେ କର୍ଣ୍ଣାଟ ଦେଶର ରାଜାଙ୍କ ଔରସରେ ଜନ୍ମ ହୋଇଥିଲା । ତାହାର ନାମ ହେଉଛି—ଅନଙ୍ଗରେଖା । ତାର ଅପରାଧ ନୃତ୍ୟ ସମୟରେ ଇନ୍ଦ୍ରଙ୍କ ପୁତ୍ର ପୁଷ୍ପଦନ୍ତ ପ୍ରତି ଆକୃଷ୍ଟ ହୋଇଥିଲା । ଯାହାହେଉ ବହୁ ଘଟଣାପ୍ରବାହରେ ମର୍ତ୍ତ୍ୟରେ ମଦାଳସା ଏବଂ ପୁଷ୍ପଦନ୍ତର ମିଳନ ହୋଇଥିଲା । ଏହିସବୁ କାବ୍ୟର କଥାବସ୍ତୁରେ ଯଥେଷ୍ଟ ପୌରାଣିକତା ପରିଲକ୍ଷିତ । ନାୟକ-ନାୟିକାଙ୍କର ରୂପବର୍ଣ୍ଣନା, ମିଳନ, ବିରହୋତ୍କଣ୍ଠା, ବିବାହ, ତାହାର ମାଧ୍ୟମରେ ସାମାଜିକ ବିଷୟ ବର୍ଣ୍ଣନା ମଧ୍ୟ ଉଲ୍ଲେଖଯୋଗ୍ୟ ।

ଭକ୍ତକବି ଭାବରେ ସୁପରିଚିତ ଦୀନକୃଷ୍ଣ ଦାସ ମଧ୍ୟଯୁଗୀୟ ଓଡ଼ିଆ କାବ୍ୟ-ରାଜ୍ୟରେ ଜଣେ ବହୁ ସମ୍ମାନିତ ସ୍ରଷ୍ଟା । ତାଙ୍କର ରସାଳ ରଚନାମାନଙ୍କ ମଧ୍ୟରେ 'କ' ଅକ୍ଷରକ୍ରମରେ ଲିଖିତ 'ରସକଲ୍ଲୋଳ'ହିଁ ରୀତିଯୁଗୀୟ କାବ୍ୟାଦର୍ଶର ଶ୍ରେଷ୍ଠ ନିଦର୍ଶନ । ରାଧାକୃଷ୍ଣ ଏବଂ ଗୋପାଙ୍ଗନାମାନଙ୍କର ପ୍ରେମକ୍ରୀଡ଼ାର ପୃଷ୍ଠଭୂମିରେ କବି ଏହି କାବ୍ୟରେ ଅମରକବି ଜୟଦେବଙ୍କ କୃତ 'ଗୀତଗୋବିନ୍ଦ'ର କୋଠୀକୁ ଅନୁସରଣ କରିଛନ୍ତି । କାବ୍ୟିକ ଚାତୁର୍ଯ୍ୟ, ଅପୂର୍ବ କଳ୍ପନାବିଳାସ, ଭାଷାଶିଳ୍ପ, ଭକ୍ତି-ସର୍ବସ୍ୱ କବିର ବ୍ୟକ୍ତିତ୍ୱ । ସାମାଜିକ ଆଲେଖ୍ୟ ଏହି କାବ୍ୟର ଅପୂର୍ବ ଆକର୍ଷଣ । ଗୋପରେ କୃଷ୍ଣଲୀଳାର ମାହାତ୍ମ୍ୟ ଏଥିରେ ପରିସ୍ଫୁଟ ।

ଦୀନକୃଷ୍ଣ ଖୋର୍ଦ୍ଧା ରାଜବଂଶର ନରପତି ଦିବ୍ୟସିଂହଦେବଙ୍କର ସମସାମୟିକ ଥିଲେ ଏବଂ ତାଙ୍କର ବ୍ୟକ୍ତିଗତ ଜୀବନ ଦାରିଦ୍ର୍ୟ ଏବଂ ରୋଗଦ୍ୱାରା କଣ୍ଟକାକୀର୍ଣ୍ଣ ହୋଇଥିଲା ।

ଗୋପୀପ୍ରେମର ଉତ୍କର୍ଷ ଏବଂ ଜ୍ଞାନମିଶ୍ରା ଭକ୍ତିର ମାହାତ୍ମ୍ୟ ଦୀନକୃଷ୍ଣଙ୍କ କୃତି-ସମୂହରେ ପ୍ରତିଫଳିତ । କବିଙ୍କ ଲିଖିତ 'ନାମରତ୍ନଗୀତା' (୧୭୦୨) ତାଙ୍କ ଜୀବନ ଓ ଭକ୍ତିମତ୍ତାର ପରିଚୟ ପ୍ରଦାନ କରେ । ସେହିପରି 'ରସବିନୋଦ'ରୁ ମଧ୍ୟ ଓଡ଼ିଶାର ତାଦାନୀନ୍ତନ ରାଜନୈତିକ ଅବସ୍ଥାର ଆଭାସ ମିଳିଥାଏ । ଯଥା— ଯେଉଁ କାଳେ ସପ୍ତଦଶ ଅଙ୍କ ହେବ ଜାଣ, ଯୁଧିଷ୍ଠିର ନାମେ ଥିବା ଦିବ୍ୟସିଂହ ରାଣ ।" (ନାମରତ୍ନଗୀତା) "ସେଦିନ ମାନସିଂହ ସାହି, ଅଇଲା ପଡ଼ିଶାକୁ ବାହି" (ରସବିନୋଦ) । କବି ନିଜର ବାସସ୍ଥାନ ସୁବର୍ଣ୍ଣରେଖା ନଦୀକୂଳ ତ୍ୟାଗକରି ଶ୍ରୀଜଗନ୍ନାଥଙ୍କ ଦର୍ଶନ ଆଶାରେ ପୁରୁଷୋତ୍ତମ କ୍ଷେତ୍ରରେ ଅବସ୍ଥାନ କରିଥିଲେ ।

ରୁକ୍ମିଣୀ ଶ୍ରୀକୃଷ୍ଣ ସମ୍ବାଦ ଛଳରେ ଲିଖିତ ପୁରାଣଧର୍ମୀ 'ରସବିନୋଦ' ଗ୍ରନ୍ଥରେ ନିତ୍ୟସ୍ଥଳର ନିତ୍ୟରାସଲୀଳା ବର୍ଣ୍ଣିତ—

"କର୍ମକରିତା ଜଗନ୍ନାଥେ, ସୁଟିଛେ ଆଜ୍ଞା ହେଲେ ମୋତେ
ତେଣୁ ମୁଁ ଯୋଡ଼ିଲି ଯେ ପଦ, ପୂରାଇ ସବୁ ଭାବ ଭେଦ ।"

ଏହି ନିତ୍ୟସ୍ଥଳ ଗୋପୀପ୍ରେମର ଉତ୍କର୍ଷ ପ୍ରଖ୍ୟାପକ । 'ଜଗମୋହନ ଛାନ୍ଦ' (ଚତୁର୍ବିଂଶ ଛାନ୍ଦବିଶିଷ୍ଟ) ଜଗନ୍ନାଥଙ୍କର ଦୈନିକ ବିଧି ଏବଂ ନୀତିର ଏକ କାବ୍ୟିକ ପଞ୍ଜିକାମାତ୍ର । 'ପ୍ରସ୍ତାବସିନ୍ଧୁ' ସଂସ୍କୃତ ଚାଣକ୍ୟନୀତିର ସଠିକ ଅନୁବାଦମାତ୍ର । 'ନାଟକେଳି' ଏକ କ୍ଷୁଦ୍ର ରଚନା; ମାତ୍ର ଓଡ଼ିଶାରେ ଏହାର ଲୋକପ୍ରିୟତା ସର୍ବାଧିକ । 'ମଧୁମଙ୍ଗଳ' କ୍ଷୁଦ୍ର କାବ୍ୟରେ କଂସ ଜନ୍ମ, ଶ୍ରୀକୃଷ୍ଣ ବଳରାମଙ୍କ ଜନ୍ମ, କଂସବଧ ଇତ୍ୟାଦି ବର୍ଣ୍ଣିତ ଏବଂ କ୍ଷୁଦ୍ର 'କମଳାକାନ୍ତ ଚଉତିଶା' ମଧ୍ୟ ଗୂଢ଼ ଦାର୍ଶନିକ ତତ୍ତ୍ୱବର୍ଣ୍ଣନାରେ ପୂର୍ଣ୍ଣ ।

ସଂକ୍ଷେପରେ କହିବାକୁଗଲେ ଦୀନକୃଷ୍ଣ ଦାସ ଜଣେ ରସ ବିଦଗ୍ଧ ଶକ୍ତିଶାଳୀ କବି । ତାଙ୍କର ସାରସ୍ୱତ ସିଦ୍ଧିର ଅମ୍ଳାନ ପ୍ରତୀକ ହେଉଛି 'ରସକଲ୍ଲୋଳ' । ଶ୍ରୀ ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ତାଙ୍କ କବି ଜୀବନ ଏକ ଉତ୍ସର୍ଗୀକୃତ ପ୍ରଜ୍ୱଳିତ ଶିଖା । ଆଦିରସ, ବର୍ଣ୍ଣନା, ପ୍ରକୃତି-ଆଲେଖ୍ୟ, ଓଡ଼ିଶାର ଗ୍ରାମଗହଳର କୃଷିକାରମାନଙ୍କର ଚିତ୍ରଯୋଗୁଁ ଏହି କାବ୍ୟଟି ସୁପାଠ୍ୟ ହୋଇପାରିଛି । ସ୍ୱୟଂ ଜଗନ୍ନାଥଙ୍କ ଆଜ୍ଞାରେ ଏହି କାବ୍ୟ ଲିଖିତ ବୋଲି କବି ସ୍ୱୀକାର କରିଛନ୍ତି । କାବ୍ୟରେ ଅଲଙ୍କାର ବିନ୍ୟସ୍ତ ଭାଷାଗତ ସରଳତା ଉଲ୍ଲେଖ ଯୋଗ୍ୟ ।

ଯମୁନା ବର୍ଣ୍ଣନାରେ କବି ଲେଖିଛନ୍ତି—

"କି ଅବା ପକ୍ଷିଣୀ ବେନିତଟ ପାଣି ଦୁଇଦିନ ଏକ ସ୍ୱିତ
କି ସୁର-ସରଣୀ ଉଡ଼ୁପ ତରଣୀ ହୋଇବାରୁ ଗତାଗତ ।"

ପ୍ରେମାତୁର ଗୋପୀମାନଙ୍କର ବର୍ଣ୍ଣନା—

"କେଉଁ ଗୋପୀଦେଖି ଧଇର୍ଯ୍ୟ ନରଖି
କରେ ମଧୁର ଅଙ୍ଗଭଙ୍ଗ
କର୍ଣ୍ଣକଣ୍ଡୁ ଛଳେ କର ଟେକି ହେଲେ
ବସକରଇ ଶିଖିଗଙ୍ଗ
କେଉଁ ଯୁବତୀ କରଇ କସିବର ଗତି
କୁଚରୁ ଅଞ୍ଚଳ ଖସାଇ ଚଞ୍ଚଳ ହସଇ ଯଦୁପତି ମତି ।"

ବିଭିନ୍ନ ଋତୁ ପର୍ଯ୍ୟାୟରେ ଗୋପୀମାନଙ୍କର ବର୍ଣ୍ଣନା, ବିଶେଷତଃ ଗ୍ରୀଷ୍ମ-କାଳରେ ଜଳକ୍ରୀଡ଼ା । ସମାଜରେ କୁଳଟାର ଏବଂ କୁଳପାଳିକାର ବର୍ଣ୍ଣନା କବିଙ୍କ କଳ୍ପନା ଦକ୍ଷତାର ପରିଚାୟକ । ରସକଲ୍ଲୋଳ ଉଦାହରଣ ଯୋଗ୍ୟ ବହୁ କବିତ୍ୱୋକ୍ତିରେ ପରିପୂର୍ଣ୍ଣ ।

ପଦ୍ମାବତୀ ପରିଣୟ, ବୃନ୍ଦାବନ ବିହାର, ନୀଳାଦ୍ରି ମହୋତ୍ସବ, ରସକଳା ପ୍ରଭୃତି ଅପ୍ରକାଶିତ ଏବଂ ସର୍ବାଙ୍ଗ ସୁନ୍ଦରୀ, ଚନ୍ଦ୍ରକଳା ପ୍ରଭୃତି ପ୍ରକାଶିତ କାବ୍ୟର ସ୍ରଷ୍ଟା ଲୋକନାଥ ବିଦ୍ୟାଧର ରୀତିଯୁଗ କାବ୍ୟାଦର୍ଶର ଜଣେ ବିଶ୍ୱସ୍ତ ଅନୁସରଣକାରୀ । କବିଙ୍କ ଜନ୍ମସ୍ଥାନ ପୁରୀ ଜିଲ୍ଲାର ବାଣପୁର ଅଞ୍ଚଳ ବୋଲି ଜଣାଯାଏ ଏବଂ କବି ଉପେନ୍ଦ୍ର ଭଞ୍ଜଙ୍କର ସମସାମୟିକ । ରୀତିକାବ୍ୟର ବିବିଧ ସୌନ୍ଦର୍ଯ୍ୟ ଲୋକନାଥଙ୍କ କାବ୍ୟକୃତିରେ ପରିଲକ୍ଷିତ । ବୃନ୍ଦାବନ-ବିହାର କାବ୍ୟରେ ଶ୍ରୀକୃଷ୍ଣ ରାଧାଙ୍କର ମିଳନ (ପଞ୍ଚମ ଛାନ୍ଦ), ନୀଳାଦ୍ରି ମହୋତ୍ସବରେ (ଛବିଶ ଛାନ୍ଦ) ଜଗନ୍ନାଥ ଦେବଙ୍କର ଦ୍ୱାଦଶ ଯାତ୍ରା, ପଦ୍ମାବତୀ ପରିଣୟ (ଅଷ୍ଟାଦଶ ଛାନ୍ଦ)ରେ ଚନ୍ଦ୍ରାବତୀପୁର ରାଜ ଧର୍ମଧ୍ୱଜଙ୍କ ସୁନ୍ଦରୀ କନ୍ୟା ପଦ୍ମାବତୀଙ୍କର ଚନ୍ଦ୍ରପ୍ରଭପୁରର ରାଜା ବୀରସେନଙ୍କ ପୁତ୍ର

ମକରଧ୍ୱଜଙ୍କ ସହିତ ପରିଣୟ ବର୍ଣ୍ଣିତ । ଲୋକନାଥ ଯେ ରୀତିକାବ୍ୟର ଜଣେ ପୂର୍ବସୂରୀ ତାହା ତାଙ୍କର ସମ୍ବାଦରୁ ହିଁ ଜଣାପଡ଼େ ।

"କାବ୍ୟରେ ନାୟିକା ଯିନା ପ୍ରଧାନ
ତାହାକୁ ଘେନି ସବୁ ରସ ମାନ ।
ଏ ଘେନି ଆଗ ତାର ବର୍ଣ୍ଣନା,
ହେଲା ଏ କବି ପରଂପରା ଯିନା ।"

(ପଦ୍ମାବତୀ ପରିଣୟ-ପ୍ରଥମ ଛାନ୍ଦ)

ପ୍ରେମକାବ୍ୟ ଚନ୍ଦ୍ରକଳାରେ (ପନ୍ଦର ଛାନ୍ଦ) କବି ଦାମ୍ପତ୍ୟ ପ୍ରେମର ଅସାଧାରଣତ୍ୱ ଉପରେ ଗୁରୁତ୍ୱ ଦେଇଛନ୍ତି ।

"ଯେ ଭାଗ୍ୟବନ୍ତ ରସିକ ପ୍ରିୟା ସଙ୍ଗେ ସଫଳ କରଇ କାର୍ଯ୍ୟ
କେବେହେଁ ମନେ ଧରିବ ନାହିଁ କଳୁଷ ମାୟା ହେ ।"

(ଚନ୍ଦ୍ରକଳା)

ଏହି କବିଙ୍କର ନାୟକ-ନାୟିକା ପରଂପରା ପରିପୁଷ୍ଟ ଏବଂ ଯୌବନ, ପ୍ରେମର ଆବର୍ତ୍ତି ମଧ୍ୟରେ ସେମାନଙ୍କର ପୂର୍ଣ୍ଣ ପ୍ରକାଶ ଦେଖିବାକୁ ମିଳେ । ନବ-ଯୌବନା ରାଜକୁମାରୀର ରୂପଲାବଣ୍ୟ ଉପରେ ଋତୁରାଜ ବସନ୍ତର ପ୍ରଭାବ ପଡ଼ିବାରୁ କବି ଚମ୍ପା, ଅଶୋକ, ବକୁଳ, ସୁନାରି, ରସାଳ, ପୁନ୍ନାଗ, ନାଗେଶ୍ୱର ପ୍ରଭୃତି ପୁଷ୍ପର ଶ୍ଳେଷାର୍ଥକ ବର୍ଣ୍ଣନା କରିଛନ୍ତି । କବିଙ୍କର ଗୁରୁତ୍ୱପୂର୍ଣ୍ଣ ରଚନା ସର୍ବାଙ୍ଗସୁନ୍ଦରୀ କାବ୍ୟ (ପଞ୍ଚଦଶ ଛାନ୍ଦ ବିଶିଷ୍ଟ) ପାର୍ବତୀଙ୍କ ମାନସକନ୍ୟାସୁର ଅପାଙ୍ଗୀ ଏବଂ ମୁନିବର ଜ୍ଞାନାଙ୍କୁରଙ୍କ ମର୍ତ୍ତ୍ୟରେ ଜନ୍ମ ହୋଇ ସର୍ବାଙ୍ଗ ସୁନ୍ଦରୀ ଏବଂ ଅବନୀତିଳକ ନାମ ଧାରଣ କରିବା । ସେମାନଙ୍କର ଜନ୍ମବୃତ୍ତାନ୍ତ, ବାଲ୍ୟ, ଯୌବନ, ଆଦ୍ୟ ପରିଚୟ, ପ୍ରେମାସକ୍ତି, ସ୍ୱୟମ୍ବର ଉତ୍ସବ, ବିବାହ, କେଳିପୁର ବର୍ଣ୍ଣନାରେ ପରିପୂର୍ଣ୍ଣ । ନବ-ଯୌବନା ସର୍ବାଙ୍ଗ ସୁନ୍ଦରୀର ରୂପବର୍ଣ୍ଣନାରେ ରସାଳତା, ଆଦିରସାତ୍ମକତା ହିଁ ପରିସ୍ଫୁଟ ।

"ରତି ରସ-ପ୍ରଧାନ ଗୃରୁଣୀତ, କରୁଅଛି ପଞ୍ଚମସ୍ୱରେ ଜାତ ।
ବ୍ୟାଜ ଖେଳାରେ ବାହୁଯୁଗଳ ତୋଳି, କୁଚମୂଳକୁ ଦେଖାଉଅଛି ବାଳୀ ।"

ରସକଳା ମଧ୍ୟ ସେହିପରି ଏକ ପ୍ରେମ ପ୍ରଧାନ କାବ୍ୟ । ବିଭିନ୍ନ ଋତୁ, ନାୟକ ନାୟିକା, ବିରହ, ମିଳନ, ଜଳକେଳି, ଉପବନ ବିହାର, ସ୍ୱୟମ୍ବର, ବେଶଭୂଷା, ଅଳଙ୍କାର, ସାମାଜିକ ବିଧି ପ୍ରଭୃତି ବର୍ଣ୍ଣନାରେ କବିଙ୍କ କାବ୍ୟମାନଙ୍କ ମଧ୍ୟରେ ବହୁବିଧ ସାମ୍ୟ ପରିଲକ୍ଷିତ ।

ମଧ୍ୟଯୁଗୀୟ ଓଡ଼ିଆ କାବ୍ୟକଳାର ପ୍ରତିଭାଶାଳୀ ସ୍ରଷ୍ଟା ଏବଂ ଓଡ଼ିଆ ସାହିତ୍ୟରେ ରତିରସାତୁର ନାୟକ ନାୟିକାମାନଙ୍କର ଚମତ୍କାର ଚିତ୍ରକର, ରସିକ କବି ଭାବରେ ଘୁମୁସର ରାଜବଂଶର ଉପେନ୍ଦ୍ର ଭଞ୍ଜ (୧୬୭୮-୧୭୫୧) ଜଣେ ବରେଣ୍ୟ ଶିଳ୍ପୀ । ଆଭିଧାନିକ ପାଣ୍ଡିତ୍ୟ, ଆଲଙ୍କାରିକ ଯୋଜନା, କାବ୍ୟିକ ଦକ୍ଷତା ଅର୍ଦ୍ଧଶତାଧିକ କାବ୍ୟର ବିଦଗ୍ଧ ସ୍ରଷ୍ଟା ଉପେନ୍ଦ୍ର ଭଞ୍ଜଙ୍କୁ ଅନ୍ୟ କବିମାନଙ୍କ ଅପେକ୍ଷା ଉଚ୍ଚତର ସ୍ଥାନ ଦେଇ ପାରିଛି । ରସାଳ କାବ୍ୟ, ଚଉତିଶା, ଚଉପଦୀ, ପୋଇ, କୋଷଗ୍ରନ୍ଥ, ଛାନ୍ଦକାବ୍ୟ, ବିବିଧରଚନା ତାଙ୍କ ଭୂଙ୍ଗ କବିତ୍ୱ ପ୍ରତିଷ୍ଠା କରିଛି । "କହେ ଉପଇନ୍ଦ୍ର ଭଞ୍ଜ, ମୁଁ ଲଭିଛି ଶବଦସାଗର ପାର"—ଏହି ଆତ୍ମ ସ୍ୱୀକୃତି ହିଁ କବିଙ୍କ କାବ୍ୟିକ ସାଧନା ଏବଂ ସଫଳ ପରୀକ୍ଷାର ନିର୍ଭୀକ ପ୍ରମାଣ । ବାତ୍ସାୟନଙ୍କ କାବ୍ୟଶାସ୍ତ୍ର ସାହିତ୍ୟ ଦର୍ପଣ ସାହିତ୍ୟ ରତ୍ନାକର ପ୍ରଭୃତି ଗ୍ରନ୍ଥ କବି ଆୟତ୍ତ କରିଥିଲେ ।

"ଏତ ପରିକୃତ କାବ୍ୟ ଛାନ୍ଦ ପ୍ରାନ୍ତ ସତ
ଦୃଷ୍ଟି ଦୃଷ୍ଟାନ୍ତର ଏଥି ଅଛି ବିଶେଷତ
ଯେନ ନୈଷଧ ପରିସ୍ଥେ
ଉପଇନ୍ଦ୍ର କହେ ବୁଧ ପ୍ରମୋଦ କରିବେ ।"

(କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ, ୧୧ ଛାନ୍ଦ)

ଭଞ୍ଜଙ୍କ କାବ୍ୟର ମୁଖ୍ୟରସ—ଆଦିରସ । କଥାବସ୍ତୁରେ ନାୟକ ନାୟିକାଙ୍କର ମିଳନ ଏବଂ ଆଲଙ୍କାରିକ ପରିସର ହେଉଛି ଅପୂର୍ବ କଳ୍ପନା । ସେହି ନାୟକ ନାୟିକା ରାଜପ୍ରାସାଦର ରାଜକୁମାର ଏବଂ ରାଜକୁମାରୀ ହୋଇପାରନ୍ତି କିମ୍ବା ଆରାଧ୍ୟ ଦେବଦେବୀ ଶ୍ରୀରାମ ଏବଂ ବୈଦେହୀ ହୋଇ ପାରନ୍ତି । କବିଙ୍କର ସମଗ୍ର ସାଧନା ରାମଭକ୍ତି ଦ୍ୱାରା ଅନୁପ୍ରାଣିତ ।

"କହେ ଉପଇନ୍ଦ୍ର ମୋ ପ୍ରଭୁ ଶ୍ରୀରାମ ବୈକୁଣ୍ଠନାଥ ସାକ୍ଷାତ
ଜାତକଲେ କ୍ଷୀରାର୍ଣ୍ଣବୁ ସୁଧା ମୋର ଗୀରାର୍ଣ୍ଣବୁର ସଙ୍ଗୀତ ।"

× × × ×

"ରାମତାରକ ମନ୍ତ୍ର ପଦେ ମୋହର କବିପଣ ଉଦେ" ..

କବି ତାଙ୍କର ଛାନ୍ଦକାବ୍ୟ ବନ୍ଧୋଦୟ ଗ୍ରନ୍ଥରେ ସ୍ୱକୀୟ ପ୍ରଣୀତ ଗ୍ରନ୍ଥ ସମୂହର ନାମୋଲ୍ଲେଖ କରିଥିଲେ ।

କବିଙ୍କର ରସୋତ୍ତୀର୍ଣ୍ଣ କାବ୍ୟମାନଙ୍କ ମଧ୍ୟରେ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ, ଲାବଣ୍ୟବତୀ, ବୈଦେହୀଶ ବିଳାସ, ରସିକ ହାରାବଳୀ, ପ୍ରେମ ସୁଧାନିଧି, ରସଲେଖା, ରସ ପଞ୍ଚକ, ସୁଭଦ୍ରା ପରିଣୟ ଓଡ଼ିଆ ବିଦଗ୍ଧ ରସଗ୍ରାହୀ ପାଠକ ସମାଜରେ ସର୍ବାପେକ୍ଷା ବହୁପଠିତ, ଆଦୃତ ଏବଂ ସମାଲୋଚକମାନଙ୍କ ଦ୍ୱାରା ଉଚ୍ଛ୍ୱସିତ । ନାୟକ ପୁଷ୍ପକେତୁ, ନାୟିକା ରାଜଜେମା, କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ, ନାୟକ ଚନ୍ଦ୍ରଭାନୁ

ନାୟିକା ଲବଣ୍ୟବତୀ, ନାୟିକା ରସଲେଖା, ନାୟକ ବିଶ୍ୱଭୂତ, ନାୟିକା ସୁଭଦ୍ରା, ବୈଦେହୀ, କବିଙ୍କର ଅପୂର୍ବ ମାନସ ସୃଷ୍ଟି । ଏକନିଷ୍ଠ ଦାମ୍ପତ୍ୟ ପ୍ରେମ ଏବଂ ଶୃଙ୍ଗାର ଲାଳସାର ପୃଷ୍ଠଭୂମିରେ କବି ପ୍ରେମାର୍ତ୍ତ ନାୟକ ନାୟିକାମାନଙ୍କୁ ନେଇ ଏକ ବର୍ଣ୍ଣାଢ୍ୟ ସ୍ୱପ୍ନପୁରୀ ରଚନା କରି ପାରିଛନ୍ତି । ପ୍ରତ୍ୟେକ କାବ୍ୟର କଥାବସ୍ତୁ ପ୍ରାୟତଃ ଗତାନୁଗତିକ । ଦୃଷ୍ଟିକୋଣ ସମାନ । ମାତ୍ର କଳ୍ପନା ବିଳାସ, ଶବ୍ଦ ବିନ୍ୟାସ, ଆଳଙ୍କାରିକ ଚମତ୍କାରିତା କାବ୍ୟ ଶିଳ୍ପର ଚରମ ସାର୍ଥକତା ସାବ୍ୟସ୍ତ କରିଥାଏ । ପ୍ରଣୟ ପ୍ରାର୍ଥୀ ଯୁବକଙ୍କୁ ନାୟିକାର ଅଙ୍ଗଲତା କିପରି ବାଞ୍ଛିତ ମିଳନର ଅନୁକୂଳ କବିଙ୍କର ଉଦାତ୍ତ କଳ୍ପନାରେ ପରିସ୍ଫୁଟ ହୋଇଛି—

"ହାସ, ନୟନ ଶୁଣିଲି କ୍ଷଣି
ଗୋପୀ ଧୀବରୀ ଡାକିଲେ ଶୁଣି
ଦଧି ମତ୍ସ୍ୟ ଗୋ ଭାବନ୍ତେ ପୁଣି କଣ୍ଠ ଗମନ ଯେ ।
ପାରିବତ ସମର ହଂସ ଗ୍ରୀବା ଯେ,
ଦଶିଯାଉଁ ପୁଲକମୟ ସେ ଯୁବା ଯେ,"

କବି ଉପେନ୍ଦ୍ରଙ୍କର ସମସ୍ତ ନାୟିକାଙ୍କର ଦୈହିକ ସୌନ୍ଦର୍ଯ୍ୟ ଗୋଟିଏ ଛାଞ୍ଚରେ ଗଢ଼ା । ତାହା ହେଉଛି—

"ନଥିଲି ନାହିଁ ନୋହିବ ଏ ବାଣୀ
କୁମାରୀଠାରେ ସମ୍ଭବିବ ପୁଣି ।
ବୋଲିବ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ
ପ୍ରେମ ଅଙ୍କୁରରୁ ପ୍ରେମ ମଞ୍ଜରୀ ।
× × ×
ମଦନ ନବ ବିଧାତା ହୋଇ ନବ ଯୌବନ ସୃଷ୍ଟି ତିଆରିଲା
ରାଜନନ୍ଦନୀ ନବ ପୁଷ୍ପବତୀ ହେଲା ।"

(କୋଟିବ୍ରହ୍ମାଣ୍ଡ ସୁନ୍ଦରୀ)

କବିଙ୍କର ନାୟକମାନେ ସର୍ବଦା ସର୍ବତ୍ର ସେହି ନାରୀରୂପର ଶରବ୍ୟ ଏବଂ ନାରୀରୂପାନଳରେ ପତଙ୍ଗ ମାତ୍ର ।

"ନାଗର ବୋଇଲା ଶୁଣି ମୋର ସେହି ଦଶା
ପଦ୍ମକଢ଼ ଯୋଡ଼ିଏ ପ୍ରଦାନ କର ଯୋଷା ଯେ ।"

ଗୋଟିଏ ଗୋଟିଏ ପଦରେ ଏକ ଏକ ବର୍ଣ୍ଣର ପରିବର୍ତ୍ତନରେ କବି ଷଡ଼ଋତୁର ବର୍ଣ୍ଣନା କରିବା ପାଇଁ ସମର୍ଥ ହୋଇଛନ୍ତି । ସଙ୍ଗୀତ ଶାସ୍ତ୍ରରେ କବିଙ୍କର ବିଶେଷ ପ୍ରବେଶ ତାଙ୍କର ସଂଖ୍ୟାଧିକ ସଙ୍ଗୀତ-ସର୍ବସ୍ୱ ରଚନାରୁ ପ୍ରମାଣିତ ହୁଏ । ଭଞ୍ଜଙ୍କର କାବ୍ୟକବିତା ଯେପରି ଓଡ଼ିଶାର ଅଗଣିତ ପାଠକ ପାଠିକାମାନଙ୍କ ଦ୍ୱାରା

ଆଦ୍ଭୁତ ତାଙ୍କର ଶୃଙ୍ଗାରଚିତ୍ର ସାଙ୍ଗୀତିକ ରଚନାବଳୀ ମଧ୍ୟ ଓଡ଼ିଶାର ନୃତ୍ୟଦଳ, ଆଖଡ଼ାଦଳର ସମ୍ପଦ ।

କି ରସାଳ ଶବ୍ଦଯୋଜନା, କି ଅଳଙ୍କାର ପ୍ରୟୋଗ, କି ସଙ୍ଗୀତମୟତ୍ୱ, ଉପେନ୍ଦ୍ର ଭଞ୍ଜଙ୍କ ରଚନାବଳୀ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟରେ ଏକ ବଳିଷ୍ଠ ପରମ୍ପରାର ଅପୂର୍ବ ଦର୍ଶନ । ନାୟକ ନାୟିକାଙ୍କର କେଳିପ୍ରିୟ ଚିତ୍ରରେ ଶୃଙ୍ଗାର ରସର ଚୂଡ଼ାନ୍ତ ଶୃଙ୍ଖଳିତ ଆଭିମୁଖ୍ୟ ହିଁ ପ୍ରକଟିତ । ନାୟକ ନାୟିକା ପ୍ରେମ ସର୍ବସ୍ୱ ହେଲେହେଁ ସେମାନଙ୍କର ଦାମ୍ପତ୍ୟ ଜୀବନର ବଳିଷ୍ଠ ସାମାଜିକ ଦର୍ଶନ ଅନୁକରଣୀୟ । ଉପେନ୍ଦ୍ର କାବ୍ୟରେ ରୀତିର ଜଣେ ପଥପ୍ରଦର୍ଶକ ପୁରୋଧା । ତେଣୁ ତାଙ୍କର କାବ୍ୟାଦର୍ଶ ହେଉଛି—

"ମୂର୍ତ୍ତିମନ୍ତ କରି ମୃଦୁ ଗୀତ ବିସ୍ତାରି,
ଏଣୁକରି ଥିବ ଅଳଙ୍କାର ଯୁକ୍ତହୋଇ ।
ପଦ ସରଳ ଧ୍ୱନିରେ ମାନସ ମୋହିବ,
ଅର୍ଥୀଜନ ପ୍ରକାରକୁ ଆନନ୍ଦ କରିବ ।"

'ରସଲହରୀ' କାବ୍ୟର ପ୍ରଣେତା ରାଜକବି ରଘୁନାଥ ଭଞ୍ଜ ରୀତି କାବ୍ୟାଦର୍ଶ ଗ୍ରହଣ କରିଥିବାର ଜଣାଯାଏ । କବି ମୟୂରଭଞ୍ଜର ରାଜା ଥିଲେ ଏବଂ ତାଙ୍କର ରାଜତ୍ୱକାଳ ଖ୍ରୀଷ୍ଟାବ୍ଦ ୧୭୨୮ରୁ ୧୭୫୦ ମଧ୍ୟରେ ନିର୍ଦ୍ଦିଷ୍ଟ ହୋଇଥାଏ । ମୟୂରଭଞ୍ଜର ପ୍ରାଚୀନ ନାମଥିଲା ହରିପୁର । ଏହି ରାଜ୍ୟ ବଙ୍ଗଳା ଏବଂ ଉତ୍କଳର ପ୍ରଧାନ ପୁରୁଷୋତ୍ତମ ମଧ୍ୟରେ ଅବସ୍ଥିତ ଥିବାରୁ ବଙ୍ଗାଗତ ପୁରୁଷୋତ୍ତମ ଯାତ୍ରୀ ଏହି ରାଜ୍ୟବାଟେ ଯାତାୟାତ କରୁଥିଲେ । ବଙ୍ଗଳା ଭାଷାରେ ଲିଖିତ 'ରସିକମଙ୍ଗଳ' କାବ୍ୟରୁ ଏହି ହରିପୁର ରାଜ୍ୟ ଏବଂ ରାଜବଂଶ ତଥା ସେମାନଙ୍କ କବିତ୍ୱର ସୂଚନା ମିଳିଥାଏ । ବଙ୍ଗ ନବାବ ଆଲିବର୍ଦ୍ଦି ଖାଁ ରଘୁନାଥ ଭଞ୍ଜଙ୍କ ସମୟରେ ଆକ୍ରମଣ ଏବଂ ଶାସନାଧୀନ କରିଥିଲେ । କବିଙ୍କ ରସଲହରୀ କାବ୍ୟର କଥାବସ୍ତୁ ହେଉଛି— ନିଷଧରାଜ୍ୟର ରାଜକୁମାର ପୁଷ୍ପତିଳକ ଏବଂ କାଞ୍ଚି ଦେଶର ରାଜଜେମା ରସଲହରୀର ବିରହ, ସ୍ୱୟମ୍ବର ଏବଂ ମିଳନ । ରୀତିକାବ୍ୟର ଲକ୍ଷଣ ଯଥା—ଋତୁବର୍ଣ୍ଣନା, ଅଳଙ୍କାର ପ୍ରୟୋଗ, ନାୟକ ନାୟିକା ପ୍ରସଙ୍ଗ, ଯଥା ସେମାନଙ୍କର ଗଣ୍ଡଦେଶ, ନାସିକା, ଉର, ଦନ୍ତ, ଅଧର, କଣ୍ଠ, କୁଚ, ବାହୁ ଯୁଗଳ, ନିତମ୍ବ, କଟି, ତ୍ରିବଳୀ, କେଶକାନ୍ତିର ବର୍ଣ୍ଣନା ଆଦି ଏଥିରେ ରକ୍ଷିତ ହୋଇଛି । ପ୍ରଥମେ ପରିଚୟ, ବିରହ, ମିଳନ, ନଗର ବର୍ଣ୍ଣନା, ଉପବନ ବର୍ଣ୍ଣନା, ସଖୀମାନଙ୍କର ଭୂମିକା, ଏହି କାବ୍ୟରେ ପରିଦୃଷ୍ଟ । ଶୃଙ୍ଗାର ବର୍ଣ୍ଣନାରେ କବିଙ୍କର ପଟୁତା ପରିଲକ୍ଷିତ ।

"ଦେଖରେ ହାଟକମାଳୀ ଚମ୍ପରକ ନାନା କୁସୁମ ମାନଙ୍କର
ମଧୁକର ପାନ ବଳଲ ହୋଇଣ ଅତି ଅଶ୍ରୁଭର ଆକର ।
ହେଲେହେଁ କେତକୀ ଦଳରେ ପଡ଼ୁଛି,
କି ଅବା ତୋହର ଲପିନ ରୁଚିର ପାଇବା ପାଇଁକି ମୃଗାକ୍ଷୀ ।"

ସଂକ୍ଷେପରେ ଏହି ରାଜକବିଙ୍କ 'ରସଲହରୀ' କାବ୍ୟ ଯୌବନ ଏବଂ ଶୃଙ୍ଗାର-ରସର କାହାଣୀ । ଏହା ତ୍ରୟୋଦଶ ଛାନ୍ଦରେ ସମ୍ପୂର୍ଣ୍ଣ ।

ଆଦିରସ ପ୍ରଧାନ କାବ୍ୟ ପରମ୍ପରାରେ କଟକ ଜିଲ୍ଲା ଅନ୍ତର୍ଗତ ରାଜା ପଦ୍ମନାଭ ଶ୍ରୀ ଚନ୍ଦନଙ୍କର 'ଶଶିରେଖା' ଏକ ମନୋଜ୍ଞ ରଚନା । ୧୭୩୫ ମସିହା ଠାରୁ ୧୭୫୭ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ରାଜା ପଦ୍ମନାଭଙ୍କର ପିତାମହ ଧନଞ୍ଜୟ ଭଞ୍ଜ (୧୭୦୨-୧୭୧୭) ଖୋର୍ଦ୍ଧାରାଜାଙ୍କ ବିରୋଧରେ ଅଭିଯାନ ଚଳାଇଥିଲେ । ତାଙ୍କ ପରେ ତାଙ୍କ ରାଣୀ ଇତିହାସ ପ୍ରସିଦ୍ଧା ଶୁକଦେବୀ ଯୁଦ୍ଧ ଚଳାଇଥିଲେ । ପଦ୍ମନାଭ ନିଜେ କାବ୍ୟଶାସ୍ତ୍ରାମୋଦୀ ଥିଲେ । ଶିବ ପାର୍ବତୀଙ୍କ ଜଳକେଳିରୁ ସେମାନଙ୍କର ମାନସ ପୁରୁଷକନ୍ୟା ଯଥାକ୍ରମେ କଞ୍ଜାନନ ଏବଂ ଚନ୍ଦ୍ରକାନ୍ତଙ୍କର ମର୍ତ୍ତ୍ୟରେ ଜନ୍ମ । ସେମାନେ ପୁଷ୍କର ଦେଶର ଯୁବରାଜ ପଦ୍ମଧ୍ୱଜ ଏବଂ ଇନ୍ଦୁବ୍ରତୀ ପୁର ରାଜ୍ୟର ରାଜଜେମା ଶଶିରେଖା ପରିଚିତ ହେବା, ସେମାନଙ୍କର ଜନ୍ମ, ଯୌବନ ପ୍ରାପ୍ତି, ପ୍ରେମାଶକ୍ତି, ସ୍ୱୟମ୍ବର ବିବାହ, ମଧୁଶଯ୍ୟା, ଦାମ୍ପତ୍ୟରଙ୍ଗ—ଏହାହିଁ କାବ୍ୟର ମୁଖ୍ୟକଥା । ମଧ୍ୟଯୁଗୀୟ କାଳ୍ପନିକ ଶୃଙ୍ଗାର ରସାଶ୍ରିତ କାବ୍ୟମାନଙ୍କର ବିବିଧ ଲକ୍ଷଣ ଏହି କାବ୍ୟରେ ସୁରକ୍ଷିତ ।

ରାଜା ନିବିକ୍ରମ ଭଞ୍ଜଙ୍କ ନାମରେ 'କନକଲତା' ଶୀର୍ଷକ କାଳ୍ପନିକ କାବ୍ୟ ଏହି ଯୁଗରେ ଲିଖିତ ହୋଇଥିବାର ଜଣାଯାଏ । ଏହି କାବ୍ୟ ସଂପୂର୍ଣ୍ଣ ଭାବରେ ଆଦିରସାଶ୍ରିତ ରୀତି କାବ୍ୟର ଅନୁରୂପ । ଏହି ନିବିକ୍ରମ ଭଞ୍ଜଙ୍କୁ କେହି ଘୁମୁସର ରାଜବଂଶ ସହିତ ଆଉ କେହି ମୟୂରଭଞ୍ଜ ରାଜବଂଶ ସହିତ ଜଡ଼ିତ କରିଥାନ୍ତି । ସେହିପରି ନୟାଗଡ଼ ରାଜା ପୁରୁଷୋତ୍ତମ ମାନଧାତାଙ୍କ ନାମରେ 'ଶୋଭାବତୀ' କାଳ୍ପନିକ କାବ୍ୟ ଦେଖିବାକୁ ମିଳେ । ଲାହୋରର ରାଜା ଜୟସେନଙ୍କ ରୂପବତୀ କୁମାରୀ ଶୋଭାବତୀ ଓ କାଶ୍ମୀର ରାଜକୁମାରଙ୍କ ପ୍ରଣୟ ହିଁ କାବ୍ୟରେ ବର୍ଣ୍ଣିତ ।

ପୁରୁଷୋତ୍ତମ ଦାସ ଭକ୍ତବତ୍ସଳ ଜଗନ୍ନାଥଙ୍କ ମହିମା ସମ୍ବନ୍ଧୀୟ କିମ୍ବଦନ୍ତୀକୁ ଗ୍ରହଣ କରି କାଞ୍ଚିକାବେରୀ କାବ୍ୟ ରଚନା କରିଥିବେ । ସ୍ୱୟଂ ଜଗନ୍ନାଥ ଏବଂ ବଳଭଦ୍ର ଭକ୍ତର ମାନରକ୍ଷା କରିବା ପାଇଁ ଦେଉଳଭିତରୁ କଳାଘୋଡ଼ା ଧଳାଘୋଡ଼ା ଚଢ଼ି କାଞ୍ଚି ଅଭିଯାନରେ ବାହାରିଥିଲେ । ଏହି ଐତିହାସିକ କାବ୍ୟରେ ଏହା ହିଁ ସୂଚିତ । ଓଡ଼ିଶାର ଗଜପତି ରାଜାଙ୍କର ସାମରିକ ଗୌରବକୁ କଥାବସ୍ତୁ ରୂପେ ଗ୍ରହଣ କରି କାବ୍ୟ ଲେଖିବାରେ 'କାଞ୍ଚିକାବେରୀ' ବୈଶିଷ୍ଟ୍ୟ ସ୍ୱୀକୃତ ।

ଅଷ୍ଟାଦଶ ଶତାବ୍ଦୀର ଓଡ଼ିଆ ସାହିତ୍ୟରେ ତଥା ରାଧାକୃଷ୍ଣ ପ୍ରେମତତ୍ତ୍ୱର ବୈଷ୍ଣବଧର୍ମର ପ୍ରବକ୍ତା ଭାବରେ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା (ଜନ୍ମ-୧୭୩୮) ସୁପରିଚିତ । ତାଙ୍କର ପ୍ରକାଶିତ କାବ୍ୟ ମଧ୍ୟରେ ଯୁଗଳ ରସାମୃତ ଲହରୀ, ପ୍ରେମ ତରଙ୍ଗିଣୀ, ନାମ ଚିନ୍ତାମଣି, ଗୌର ଚିନ୍ତାମଣି, ନିଷ୍ଠା ନୀଳମଣି ପ୍ରଭୃତି ଉଲ୍ଲେଖ ଯୋଗ୍ୟ । ଯୁଗଳରସାମୃତ ଲହରୀରେ କବିଙ୍କର ପରିଚୟ ମିଳେ—

"ନୂଆଗଡ଼ ରାଜ୍ୟେ ପୂର୍ବାଶ୍ରମ ଯେ ମୋହର,
କିଛିଦିନ ମାତ୍ରକ ରହିଲି ଘୁମୁସର ।
ଦଶପଲ୍ଲା ଭଞ୍ଜ ରାଜା ସଖ୍ୟ ପ୍ରେମେ ମୋତେ,
ବହୁ ସମ୍ଭାବନାରେ ରଖିଲେ ବର୍ଷ କେତେ ।

× × ×

ନୂଆଗଡ଼େ ଶରଣକୂଳ ସ୍ଥାନରେ ଭିକାରି ପଡ଼ା ଶାସନ
ସୁବ୍ରାହ୍ମଣ ସଙ୍ଗ ସାମବେଦ ଅଧ୍ୟାପକ କୂଳେ ମୋ ଜନ୍ମ ।"
(ପ୍ରେମତରଙ୍ଗିଣୀ)

ବୈଷ୍ଣବ ଦୀକ୍ଷା ଗ୍ରହଣ ପରେ କବି 'ସାଧୁଚରଣ ଦାସ' ନାମ ଗ୍ରହଣ କରିଥିଲେ । ଭକ୍ତ ବୈଷ୍ଣବ ଭାବରେ କବିଙ୍କର ଜୀବନ ବହୁ ଘଟଣା ପୂର୍ଣ୍ଣ ଥିଲା । ନୟାଗଡ଼ରୁ ଆରମ୍ଭକରି କବି ଘୁମୁସର, ମଧୁପୁର ଜମିଦାରୀ, କଟକର ବାଲିଆ, ଗୃନ୍ଦୋଳ, ପୁନଶ୍ଚ ପୁରୀ ପର୍ଯ୍ୟନ୍ତ ବିଭିନ୍ନ ସ୍ଥାନରେ ବସବାସ କରିଥିଲେ ଏବଂ ରାଧାକୃଷ୍ଣ ପ୍ରେମରେ ଆତ୍ମହରା ହୋଇ କାବ୍ୟ ରଚନା କରିଥିଲେ । ମଠ ପ୍ରତିଷ୍ଠା, ମଠରେ ରସିକରାୟ ମୂର୍ତ୍ତି ପ୍ରତିଷ୍ଠା, ରସିକରାୟଙ୍କ ସହିତ ରାସେଶ୍ୱରୀଙ୍କର ବିବାହ ସମ୍ପାଦନ ସଦାନନ୍ଦଙ୍କ ଭକ୍ତସାଧକ ଜୀବନର ହେଉଛି କୀର୍ତ୍ତି । ସେ ଚୈତନ୍ୟପନ୍ଥୀ ଏବଂ କାନ୍ତ ଭାବରେ ଉପାସକ ଥିଲେ । ତାଙ୍କର କାବ୍ୟ କବିତା ରାଧାକୃଷ୍ଣ ପ୍ରେମାଶ୍ରିତ ହେଲେହେଁ ସମସାମୟିକ ସାମାଜିକ ରୀତିନୀତି ବିଧି ଏବଂ ରାଷ୍ଟ୍ରୀୟ ବ୍ୟାପାରର ସୂଚନା ପରିପୂର୍ଣ୍ଣ । ଯୁଦ୍ଧ, ରତିକ୍ରୀଡ଼ା, ଶିକାର, ଦାମ୍ପତ୍ୟ ଜୀବନର ଭୋଗ ବିଳାସ, ତତ୍କାଳୀନ ସମାଜରେ ପ୍ରଚଳିତ ପୋଷାକ ପରିଚ୍ଛଦ, ଅଶ୍ୱଶାସ୍ତ୍ର, ଗୋଶାସ୍ତ୍ର, ଜ୍ୟୋତିଷଶାସ୍ତ୍ର, ସଙ୍ଗୀତବିଦ୍ୟା, ବୈଦ୍ୟଶାସ୍ତ୍ର ପ୍ରଭୃତିର ବର୍ଣ୍ଣନା କାବ୍ୟମାନଙ୍କରେ ବେଶ ପରିଲକ୍ଷିତ । ଏକେ ତ କବିଙ୍କର କାବ୍ୟସମୂହ କଳ୍ପନା ପ୍ରଧାନ, କିନ୍ତୁ ନାୟକ ନାୟିକା ମିଳନରେ ଦୈବୀଶକ୍ତିର ସାହାଯ୍ୟ ବାରମ୍ବାର ନିଆଯାଇଛି । କବିଙ୍କର ନାୟକନାୟିକାଙ୍କ ରୂପ ବର୍ଣ୍ଣନା ପାଠକ ମଧ୍ୟ କାବ୍ୟ ଯୁଗାନୁସାରୀ ।

"ନୂଆ ସଙ୍ଗ ପାଇଲୁଁ କି ଗୋଷ୍ଠ ରେ
ଦେଖୁ ପର ଆମ୍ଭଙ୍କୁ ବିଶୋର ରେ ।

× × ※

ରୁଷିଅନା ନାମ ଶୁଣି ଭୟଙ୍କର ବିରହିଣୀ
ସଖୀ ସଙ୍ଗେ ଆସିମେ ନ କଲେ ଭ୍ରମଣି ।" ଏକାଳେ
(ଲଳିତ ଲୋଚନା)

କବି ନିଜର କାବ୍ୟ କବିତାକୁ ଗୂଢ଼ାର୍ଥ ଶବ୍ଦ, ସମ୍ମୋହନ ଭାବ ଏବଂ ବିଭିନ୍ନ ଅଳଙ୍କାର ମଣ୍ଡିତ କରିଥିଲେ ଏବଂ ନିଜର ସାହିତ୍ୟ-ଶୈଳୀ ସମ୍ବନ୍ଧରେ ସଚେତନ ଥିଲେ । କବି କାବ୍ୟ କବିତାର ଗ୍ରାହକତ୍ୱ ପ୍ରସଙ୍ଗରେ ପଣ୍ଡିତ, ଗୁଣୀ ଏବଂ ଅରସିକ ବ୍ୟକ୍ତିମାନଙ୍କ ମଧ୍ୟରେ ବୈଷମ୍ୟ ପରଦର୍ଶନ କରିଥିବାର ଜଣାଯାଏ ।

"ଶୁଣରେ ଗ୍ରାହକେ ଏ ବାଣିଜ୍ୟ ବୃତ୍ତି ମୋର,
ପସରାରେ ରସ ବିଷ ଯେ ଯାହାର ଆଦର ।
ସମ୍ଭୋଗ, ପୀୟୂଷବତ୍ ପରମ ମଧୁର
ବିପ୍ରଲମ୍ଭ ବିଷାମୃତ ମିଳନ ପ୍ରକାର ।"
(ମୋହନକଳ୍ପଲତା)

ଯୁଗଳ ରସାମୃତ ଲହରୀରେ ମଧ୍ୟ କବି ନିଜର କାବ୍ୟରୀତି ଏବଂ କୃଷ୍ଣାନୁଗତ୍ୟ ପ୍ରସଂଗ ସୂଚିତ କରିଥିବାର ଜଣାଯାଏ ।

"ଶୁଣ ସୁବୁଦ୍ଧି ନିୟମାବଧି, କଳ୍ପନା ଗ୍ରନ୍ଥିଲ ମନ
କ୍ଳିଷ୍ଟ ହୋଇବ ବୁଝି ନୋହିବ, ନ ଘେନିବେ ସର୍ବଜନ ।
ନାହିଁ ଯେପରି ରସ ବିସ୍ତରି ନାନା ଜାତିରେ କହିବା
ଯାର ଯେମନ୍ତ ସ୍ୱଭାବ ମତ, ସେ ରଙ୍ଗେ ମନ ହରିବା ।"

କବିଙ୍କର ଇଚ୍ଛା ଯେ ତାଙ୍କର କାବ୍ୟ ନାଗରୀ ନାରୀ ତୁଲ୍ୟ ସରସ ହେବ । ସେ ତାଙ୍କର ମତାମତ ପ୍ରସିଦ୍ଧ କାଳ୍ପନିକ କାବ୍ୟ 'ଲଳିତ ଲୋଚନା'ରେ ଏହା ଲିପିବଦ୍ଧ କରିଛନ୍ତି—

"ନାଗରୀ ନାରୀ ଏକାରେ ଏ ଗୀତ ହୋଇବ,
ଅଳଙ୍କାର ଯୁକ୍ତ ବନ୍ଧ ଉକ୍ତି ଯେଣୁ ଥିବ ।
ରସରୀତି କିମ୍ବା ଗୁଣ୍ଠି ଉପମାନହିବ,
ଆଶ୍ରୟରେ କେଉଁଠାରେ ଧ୍ୱନି ପ୍ରକାଶିବ ।
ଦର୍ଶନେ ଶ୍ରବଣେ ନେତ୍ର କର୍ଣ୍ଣ ମାନସରେ
ସାରସ ପରାଏ ବାସ କରିବ ସତ୍ୱରେ ।"

ମରହଟ୍ଟା ରାଜତ୍ୱ ଯୁଗରେ ଓଡ଼ିଶାରେ ବ୍ରଜଲୀଳା ମାହାତ୍ମ୍ୟ ପ୍ରକଟନ କରିବାରେ ଗୌଡ଼ୀୟ ସଂପ୍ରଦାୟ ସାଧକ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ଅଦ୍ୱିତୀୟ ଥିଲେ । କବିଙ୍କ ମତରେ —

"ବ୍ରଜଲୀଳାମୃତ ସମୁଦ୍ର ଏ
ଅବଗାହରେ କଳୁଷ କ୍ଷରେ ।"

ବାବାଜୀ ଶ୍ରୀ କିଶୋର ଦାସ କବିଙ୍କର ଗୁରୁ ଥିଲେ । ଗୁରୁ-ପରଂପରାରେ କବିଙ୍କର ବିଶେଷ ଭକ୍ତି ଥିଲା । କବିଙ୍କର ବିଭିନ୍ନ ଭାଷା ସଂପର୍କରେ ସୂଚନା ମଧ୍ୟ ତାତ୍ପର୍ଯ୍ୟପୂର୍ଣ୍ଣ—

"ଉତ୍କଳ ବଙ୍ଗ ଖୁରୁଠା ବିଭାଷାମାନ
ଏ ପ୍ରକାରେ କିଛି କିଛି କରିଛି ବର୍ଣ୍ଣନ ।
ଚଉପଦୀ ଚଉତିଶା ବୋଲି ଅଛି ଯେତେ
କେଉଁ ଦେଶେ କେଉଁଠାରେ ପ୍ରକାଶ ଜଗତେ ।"

ବ୍ରଜଲୀଳା ଅର୍ଥାତ୍ ରାଧାକୃଷ୍ଣ-ପ୍ରେମଲୀଳାକୁ ଭିତ୍ତି କରି ଆଳଂକାରିକ ରୀତିରେ ବହୁ କାବ୍ୟ ଅଷ୍ଟାଦଶ ଶତାବ୍ଦୀରେ ରଚିତ ହୋଇଥିଲା । ବୈଷ୍ଣବକବି ଦାଶରଥି ଦାସଙ୍କ 'ବ୍ରଜବିହାର' ହେଉଛି ଏହି ପର୍ବର ରଚନା । କବି ପୁରୀ ଜିଲ୍ଲା ଅନ୍ତର୍ଗତ ରଣପୁର ଅଞ୍ଚଳର ଅଧିବାସୀ ଥିଲେ ଏବଂ ବ୍ରଜବିହାର ରଚନା ଶେଷ ବେଳକୁ ଶ୍ରୀକ୍ଷେତ୍ରରେ ଅବସ୍ଥାନ କରୁଥିଲେ । କବି 'ବ୍ରଜବିହାର' କାବ୍ୟ ୧୭୩୧ ମସିହାରେ ଶେଷ କରିଥିଲେ ।

"କ୍ଷେତ୍ରବର ରାଜ ପୁରୁଷୋତ୍ତମ
ଜଗନ୍ନାଥ ଦରଶନେ ବିଶ୍ରାମ ।
ରଣପୁର ମଣ୍ଡଳେ ମୋର ବାସ
ନାମ ବିଜାତ ଦାଶରଥି ଦାସ ।"

'ବ୍ରଜବିହାର' କାବ୍ୟର ବିଷୟବସ୍ତୁ ମଧ୍ୟରେ କୃଷ୍ଣଙ୍କ ଜନ୍ମଠାରୁ ରାଧାକୃଷ୍ଣ ମିଳନ, କୃଷ୍ଣଙ୍କ ମଥୁରା ଓ ଦ୍ୱାରକା ଲୀଳାର ବର୍ଣ୍ଣନା ହିଁ ଅନ୍ତର୍ଭୁକ୍ତ । କବି ପ୍ରତ୍ୟେକ ଛାନ୍ଦକୁ 'ବୋଲି' ରୂପେ ନାମିତ କରିଛନ୍ତି । କାବ୍ୟରେ ନିତ୍ୟସ୍ଥଳ ବୃନ୍ଦାବନର ମାହାତ୍ମ୍ୟ କଥିତ । କଳ୍ପନାବୈଚିତ୍ର୍ୟ, ନାୟକ, ନାୟିକା, ଶିଳ୍ପୀତର ଲକ୍ଷଣ ଏହି କାବ୍ୟରେ ମଧ୍ୟଯୁଗୀୟ ରୀତି କାବ୍ୟ-ଯୋଜନା ପରିଲକ୍ଷିତ ହୋଇଥାଏ ।

କୃପାସିନ୍ଧୁ ଦାସ ନାମକ ଜନୈକ କବିଙ୍କ ନାମରେ 'ବ୍ରଜବିହାର' ଶୀର୍ଷକ ଏକ କାବ୍ୟ ମଧ୍ୟ ମିଳିଥାଏ । କବି ବୀରକିଶୋର ଦେବ (୧ମ)ଙ୍କ (ଖ୍ରୀଷ୍ଟାବ୍ଦ-୧୭୩୭-୧୭୯୧) ତେର ଅଙ୍କରେ ଏହି କାବ୍ୟ ରଚନା ଶେଷ କରିଥିଲେ ବୋଲି ଉଲ୍ଲେଖ କରିଛନ୍ତି । ଫଳେ ୧୭୪୮ ମସିହାରେ ଏହି କାବ୍ୟ ରଚନା ସଂପୂର୍ଣ୍ଣ ହୋଇଥିଲା ।

*

ଏହି କାବ୍ୟ ଏକୋଇଶଟି ଛାନ୍ଦରେ ସମାପ୍ତ । ରାଧାକୃଷ୍ଣଙ୍କ ପ୍ରେମକାହାଣୀ ହିଁ କାବ୍ୟ କଥାବସ୍ତୁ ଏବଂ ଭାଗବତୀୟ କାବ୍ୟ ସଦୃଶ ଏହା ଆଦରସାମଗ୍ରୀ । କବି ନିଜ କାବ୍ୟଶୈଳୀ ସଂପର୍କରେ ସଚେତନ ଥିଲେ ।

"ହେବ ଏ ବନିତା ନିତାନ୍ତରେ ମୋ କବିତା
ନାନାଳଙ୍କାର କରଣରେ ସୁମଣ୍ଡିତା ।
ଧ୍ୱନିବନ୍ତ ପଦ ପଦକରେ ହୋଇଥିବ
ସନ୍ତତ ଇଙ୍ଗିତ ଗୀତ ରସେ ପ୍ରମୋଦିବ ।"

ବୈଷ୍ଣବ କାବ୍ୟ-ପରଂପରାରେ କବି ଲକ୍ଷ୍ମଣଙ୍କର ଲିଖିତ ଶ୍ରୀକୃଷ୍ଣଲୀଳାମୃତ ଏକ ଉପାଦେୟ କାବ୍ୟଗ୍ରନ୍ଥ । କବି ନିଜର କାବ୍ୟଗୁଣ ପ୍ରସଂଗରେ ଲେଖିଥିଲେ—

"ଥିବ ଅକ୍ଷର ନିୟମ, ଯମକ ଗୃଢ଼ଭାଷା
ପଦ ପଦକରେ ଥିବ ରସାଭାସ ପୂର ।
ନୋହିବ ଅତି ଗୁପତ ନୋହିବ ପ୍ରକାଶ
ମହାରାଷ୍ଟ୍ର ପୁର ନାରୀ ଉରଜ ସଦୃଶ ।"

(ଶ୍ରୀକୃଷ୍ଣଲୀଳାମୃତ— ୧ମ ଛାନ୍ଦ)

ପାରଳାଖେମଣ୍ଡିର ରାଜା ନାରାୟଣ ଦେବଙ୍କର 'ବୃନ୍ଦାବନଚନ୍ଦ୍ର ବିହାର' (୧୬୬୭ର ରଚନା) ଶ୍ରୀକୃଷ୍ଣଲୀଳା ବିଷୟକ ଗ୍ରନ୍ଥ । ଏହି ରାଜକବିଙ୍କର ସଂଗୀତ-ତତ୍ତ୍ୱପୂର୍ଣ୍ଣ 'ସଂଗୀତ ନାରାୟଣ' ଏକ ଅତୀବ ଉପାଦେୟ ଗ୍ରନ୍ଥ ।

'ବିଷ୍ଣୁଗର୍ଭ ପୁରାଣ' ଓ 'ନିର୍ଗୁଣ ମାହାତ୍ମ୍ୟ'ର ପ୍ରଣେତା ମାଳାକାର ଚୈତନ୍ୟ ଦାସ ପ୍ରାଚୀନ ଓଡ଼ିଆ ସାହିତ୍ୟରେ ସୁପରିଚିତ । କବି ଖଡ଼ିଆଳ ଅଧିବାସୀ ଥିଲେ । 'ନିର୍ଗୁଣ ମାହାତ୍ମ୍ୟ' କବି ଖଡ଼ିଆଳରେ ରହି ରଚନା କରିଥିଲେ ।

"ପ୍ରତାପରୁଦ୍ର ରାଜ୍ୟ ଦେଶ, ନଗ୍ର ଖରିଆଳ ବିଶେଷ
ନିର୍ଗୁଣ ମାହାତ୍ମ୍ୟ ପୁସ୍ତକ, ସେ ରାଜ୍ୟେ ହୋଇଲା ଉଦିତ ।"

ଭଗବଦ୍‌ଗୀତାର ଜ୍ଞାନଯୋଗର ଗୂଢ଼ ତତ୍ତ୍ୱ ନିର୍ଗୁଣ ମାହାତ୍ମ୍ୟ ପୁସ୍ତକରେ ସୂଚିତ । ଜୀବନବନ୍ଧନ ହେଉଛି କର୍ମ । କର୍ମ ପ୍ରତ୍ୟାଖ୍ୟାନ ହିଁ ମୋକ୍ଷର ଏକମାତ୍ର ପନ୍ଥା । ଜ୍ଞାନାନନ୍ଦଦ୍ୱାରା କର୍ମ ଏବଂ ପାପ ଦଗ୍ଧ ହୁଏ । ଜୀବ ଆତ୍ମା ଜ୍ଞାନ ଲାଭ କରି ମୁକ୍ତିର ଅଧିକାରୀ ହୁଏ । ଆତ୍ମାରେ ବ୍ରହ୍ମ ଦର୍ଶନ କଲେ ମୁକ୍ତି ସମ୍ଭବ । ଏହି ପୁସ୍ତକ ଷୋଡ଼ଶ ଅଧ୍ୟାୟରେ ବିଭକ୍ତ ।

କବିଙ୍କର 'ବିଷ୍ଣୁଗର୍ଭ ପୁରାଣ' ତ୍ରୟୋଦଶ ଅଧ୍ୟାୟସମ୍ବଳିତ ଏକ ଉପାଦେୟ ଗ୍ରନ୍ଥ । ମୈତ୍ରେୟ ଓ ସନକାଦିଙ୍କ ପ୍ରଶ୍ନୋତ୍ତର ଛଳରେ ଅଲେଖ ମହିମା ସ୍ୱରୂପ, ଚଉରାଶି ବ୍ରହ୍ମାଣ୍ଡ ସୃଷ୍ଟି, ବିବରଣୀ, କର୍ମଫଳ ବିଚାର, ବିଷ୍ଣୁ ଭକ୍ତି ମାହାତ୍ମ୍ୟ, ବ୍ରହ୍ମ

ମାହାତ୍ମ୍ୟ, ଯୋଗ ସାଧନରେ ଆବଶ୍ୟକତା ପ୍ରଭୃତି ଗୂଢ଼ ପ୍ରସଙ୍ଗ ଏଥିରେ ବର୍ଣ୍ଣିତ । ଅଲେଖ ସମସ୍ତ ସୃଷ୍ଟିର ଉତ୍ସ ।

"ଅଲେଖ ପୁରୁଷ ବୋଲି ଏକଇ ବଡ଼ ଜନ
ତାର ତହୁଁ ଧରଇ ବିକାର କଳମାନ ।"

ସେହି ଅଲେଖ ବିଧାତା ବିଷ୍ଣୁ ବିଭିନ୍ନ ରୂପ ଧାରଣ କରନ୍ତି । ବିଷ୍ଣୁଙ୍କର ମଧ୍ୟ ମର୍ତ୍ତ୍ୟରେ ଅନେକ ରୂପ ସ୍ୱୀକୃତ ଏବଂ ଏହା ପ୍ରତିପାଦନ କରିବା 'ବିଷ୍ଣୁଗର୍ଭ ପୁରାଣ'ର ଉଦ୍ଦେଶ୍ୟ ।

"ଅନେକ ବିଷ୍ଣୁ ରୂପ ଯେ ମଞ୍ଚରେ ହୋଇନ୍ତି ଜାତ,
କହି ତୁମ୍ଭେ ଏହାଙ୍କର ଆଦି ମଧ୍ୟ ଅନ୍ତ ।"

ସୂକ୍ଷ୍ମ ସୃଷ୍ଟିତତ୍ତ୍ୱ ବ୍ୟାଖ୍ୟାନ କରିବାରେ ଚୈତନ୍ୟ ଦାସଙ୍କର ଭାବନା ବହୁ ଦିଗରୁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

ପୁରାଣ ରଚନା ପ୍ରାଚୀନ ଓଡ଼ିଆ ସାହିତ୍ୟର ଏକ ବିଶିଷ୍ଟ ପର୍ଯ୍ୟାୟ । ପୁରାଣ ସାହିତ୍ୟର ଯେପରି ଜନପ୍ରିୟ, ତାହାର ସାହିତ୍ୟିକ ମୂଲ୍ୟ ମଧ୍ୟ ସେହିପରି ସ୍ୱୀକୃତ । ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧର କବି ପୀତାମ୍ବର ଦାସଙ୍କର 'ନୃସିଂହ ପୁରାଣ' ଓଡ଼ିଆ ପାଠକ ସମାଜରେ ବିଶେଷ ଆଦୃତ । କବି, ବିଷ୍ଣୁଙ୍କ ଆଜ୍ଞାରେ ଅପ୍ରକଟ 'ନୃସିଂହ ପୁରାଣ' ପ୍ରାକୃତ ଭାଷାରେ ଲେଖିଥିଲେ । ନୃସିଂହ ପୁରାଣ କବିଙ୍କ ମତରେ ସର୍ବ ପୁରାଣ ମଧ୍ୟରେ ରାଜା ସଦୃଶ ।

"ଶ୍ରୀନୃସିଂହ ଜନ୍ମ ସତ୍ୟ ଯୁଗର ଏ ଗ୍ରନ୍ଥ
କୋଟି ଗ୍ରନ୍ଥ ବାଛିଣ ଲେଖିଲି କାହିଁତ ।
ଏଣୁ ଏ ଗ୍ରନ୍ଥର ପୁଣ୍ୟ ସଂସାରେ ମୋ ରହି
ଯେଣୁ ମୋତେ ଦୟା କଲେ କମଳାର ସାଇଁ ।"

କବିଙ୍କର ଏହି ଗ୍ରନ୍ଥ ସଂସ୍କୃତ 'ନୃସିଂହ ପୁରାଣ'ର ଅନୁବାଦ ନୁହେଁ । ଏହା ମତ୍ସ୍ୟନିହାକରରେ ବିଭକ୍ତ । କବି ଶାରଦାଙ୍କ ଆଜ୍ଞାରେ ସଂସାରରୁ ମୁକ୍ତି ପାଇବା ଉଦ୍ଦେଶ୍ୟରେ ଏହି ପୁରାଣ ରଚନା କରିଥିଲେ ବୋଲି ସ୍ୱୀକାର କରିଥିଲେ ।

"ନୃସିଂହ ପୁରାଣ ଏହି ବିଷ୍ଣୁ ଆତ୍ମା ଅଟେ
ଶ୍ରୀନୃସିଂହ ଯେଣୁ ବରିଛନ୍ତି ସର୍ବ ଘଟେ ।
× × ×
ଲେଖଇ ନୃସିଂହ ଗ୍ରନ୍ଥ କହେ ପ୍ରଭୁ ମୋତେ,
ବାଦ ବିବାଦ ମୁଁ କରି ନାହିଁ କଦାଚିତେ ।
ବୁଝିଲେ ଲୋଭ କହିଲେ ମୋର ନ ସରଇ
ଭକ୍ତିରେ ମୁଁ ବୁଡ଼ିଅଛି ପାଦପଦ୍ମ ଧ୍ୟାୟି ।"

ଓଡ଼ିଆ ପୁରାଣ ସାହିତ୍ୟ ପର୍ଯ୍ୟାୟରେ 'ହରିବଂଶ' ପୁରାଣର ନାମ ଉଲ୍ଲେଖ-ଯୋଗ୍ୟ। ନାରାୟଣ ଦାସ ଏହାର ରଚୟିତା। କବି ବିଷ୍ଣୁଙ୍କ ଅଙ୍କରେ ହରିବଂଶ ରଚନା କରିଥିବାର ଜଣାଯାଏ । ଏହା 'ଭାଗବତ' ରଚନାର ସଂକ୍ଷିପ୍ତ ରୂପ ।

"ହରିବଂଶ କରିବାକୁ ବୋଇଲେ ଶ୍ରୀଧର,
ମୋର ପ୍ରସ୍ତୁରେ କବା ହେବ ଗ୍ରନ୍ଥସାର ।
ଶ୍ରୀକୃଷ୍ଣର ଦୟା ଯେବେ ହେବ ମୋହଠାରେ,
ହରିବଂଶ ପ୍ରଗ୍ଟ ମୁଁ କରିବ ସଂସାରେ ।"

କବି ନାରାୟଣ ଦାସ ନିଜକୁ ପୀତାମ୍ବର ଦାସଙ୍କ ଚତୁର୍ଥ ଜନ୍ମ ବୋଲି ଘୋଷଣା କରିଥିଲେ । କବି ଜଗନ୍ନାଥଙ୍କୁ ବୌଦ୍ଧାବତାର ବୋଲି ବର୍ଣ୍ଣନା କରିଥିଲେ—

"ବୌଦ୍ଧ ରୂପରେ କରି ଚତୁର୍ଦ୍ଧାବତାର
ବିଜୟ କଲ ଯାଇଣ ଶ୍ରୀ ନୀଳକନ୍ଦର ।"

## ଓଡ଼ିଆ ସାହିତ୍ୟରେ ବିଭିନ୍ନ ଧର୍ମଧାରା :

ଯୁଗେ ଯୁଗେ ସାହିତ୍ୟ, ସମାଜ ଓ ବ୍ୟକ୍ତିର ଭାବାନୁଭୂତିର ପ୍ରତିଫଳିତ ମୁକୁର । ଶତାବ୍ଦୀର ଉତ୍ଥାନ ପତନ ମଧ୍ୟରେ ବ୍ୟକ୍ତି ଓ ସମାଜର ଭାବୋଚ୍ଛ୍ୱାସ, ଭାବପ୍ରବଣତା, ଦର୍ଶନ, ଚିନ୍ତା, ପ୍ରତିକ୍ରିୟା ଏବଂ ଜୀବନବାଣୀ ସାହିତ୍ୟ ସଦୃଶ ଶକ୍ତିଶାଳୀ ବୌଦ୍ଧିକ ମାଧ୍ୟମରେ ହିଁ ନିହିତ ହୋଇ ରହିଥାଏ । ଧର୍ମ ଯେବେ ବ୍ୟକ୍ତି ଓ ସମାଜର ଆଧ୍ୟାତ୍ମିକ ଆକାଂକ୍ଷା ତଥା ଐଶ୍ବରିକ ଧ୍ୟାନ-ଧାରଣା ବୋଲି କୁହାଯାଏ, ତାହାହେଲେ ସାହିତ୍ୟ ରାଜ୍ୟରେ ଧର୍ମର ପ୍ରବେଶ ବରାବର ଏକ ଗତାନୁଗତିକ ଘଟଣା ବୋଲି ଜାଣିବାକୁ ହେବ । ବିଭିନ୍ନ ଧର୍ମର ପୃଷ୍ଠଭୂମିରେ ବିଚାର କଲେ ପ୍ରାଚୀନ ଏବଂ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟ ବିଶେଷ ଭାବରେ ଧର୍ମଭାବାପନ୍ନ ଏବଂ ନିଚ୍ଛକ ମୌଳିକ କାଳ୍ପନିକ ସୃଜନାତ୍ମକ ସାହିତ୍ୟ ଅପେକ୍ଷା ଆଧ୍ୟାତ୍ମିକ ବାଣୀ ହିଁ ଲେଖକମାନଙ୍କ ରଚନାକୁ ତରଙ୍ଗିତ କରୁଥିଲା ।

କେତେବେଳେ ଗୂଢ଼ ଅଗାଧ୍ୟାତ୍ମ ରହସ୍ୟବାଦ, କେତେବେଳେ ଆବେଗ-ପ୍ରଧାନ, ଭଗବତ୍ ଜଣାଣ, ପ୍ରାର୍ଥନା, ସ୍ତୁତି, କେତେବେଳେ ଜୀବପରମର ବିଚାର, ଭଗବତ, ପୁରାଣ ପ୍ରଭାବିତ ଲେଖକମାନଙ୍କୁ ଅଭିଭୂତ କରିଥିଲା । ଏତଦ୍‌ବ୍ୟତୀତ ଯୁଗର ଅନୁବର୍ତ୍ତନ ସଙ୍ଗେ ସଙ୍ଗେ ବୌଦ୍ଧ, ବୈଷ୍ଣବ, ଶାକ୍ତ, ଗାଣପତ୍ୟ, ରାମ ଏପରି ବିଭିନ୍ନ ସଂପ୍ରଦାୟର ଧ୍ୟାନ ଧାରଣା ଜାତିସଂପ୍ରଦାୟ-ନିର୍ବିଶେଷରେ କାବ୍ୟକାରମାନଙ୍କୁ ଆକୃଷ୍ଟ କରିଥିଲା । ସର୍ବୋପରି ଉତ୍କଳର ପୁରୁଷୋତ୍ତମ ଉପାସନା ବା ଜଗନ୍ନାଥ ଉପାସନା ବହୁ କବି, ଧର୍ମାଚାର୍ଯ୍ୟ ଏବଂ ଦାର୍ଶନିକମାନଙ୍କୁ ପ୍ରଭାବିତ କରିପାରିଥିଲା । ସତ୍ୟ ହେଉଛି ପରମଧର୍ମ, ତଦ୍‌ବ୍ୟତୀତ ଅନ୍ୟ କୌଣସି

ପରମଧର୍ମ ନାହିଁ । ନିତ୍ୟ, ଅନିତ୍ୟ ଏବଂ ନୈମିତ୍ତିକ ଏପରି ତିନିଶ୍ରେଣୀରେ ଧର୍ମକୁ ବିଭକ୍ତ କରାଯାଇଛି । ମାତ୍ର ଈଶ୍ୱରବିଶ୍ୱାସ, ଆତ୍ମାରେ ବିଶ୍ୱାସ, ଆତ୍ମାର ନିତ୍ୟତାରେ ବିଶ୍ୱାସ ଏବଂ ଅନ୍ୟ ପକ୍ଷରେ ଅବିଶ୍ୱାସ ଆଧ୍ୟାତ୍ମିକ ଜଗତରେ କାବ୍ୟସ୍ରଷ୍ଟାମାନଙ୍କ ଚିତ୍ତକୁ ଆନ୍ଦୋଳିତ କରିଥାଏ । ସେଥିପାଇଁ ସଂସ୍କୃତ ପୁରାଣ, ମହାଭାରତର ଦେବଦେବୀଙ୍କ ବିସ୍ତାରିତ କଥାବସ୍ତୁ ପ୍ରାଚୀନ ଯୁଗରୁ ଆରମ୍ଭ କରି ଏପର୍ଯ୍ୟନ୍ତ କବି, ନାଟ୍ୟକାରମାନଙ୍କୁ ବିଶେଷ ପ୍ରଭାବିତ କରିଛି । ଭାରତର ବିଭିନ୍ନ ପ୍ରାନ୍ତରୁ ଶଙ୍କରାଚାର୍ଯ୍ୟ, ରାମାନୁଜ ପ୍ରମୁଖ ଧର୍ମପ୍ରଚାରକ, ଧର୍ମ-ସଂସ୍କାରକମାନଙ୍କର ଆବିର୍ଭାବ ଏବଂ ଉତ୍କଳର ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ସେମାନଙ୍କର ପଦାର୍ପଣ ଓଡ଼ିଶାର ଧର୍ମ, ସଂସ୍କୃତି ଏବଂ ସାହିତ୍ୟକୁ ପ୍ରଭାବିତ କରିଥିବା ବିଶ୍ୱାସ କରାଯାଏ । ବହୁକାଳରୁ ଉତ୍କଳ ବୌଦ୍ଧ, ଜୈନ ଏବଂ ଶୈବମାନଙ୍କର ପ୍ରଧାନ ପୀଠରୂପେ ପରିଗଣିତ ହୋଇଆସିଛି । ଜୈନଧର୍ମାବଲମ୍ବୀ ଏବଂ ବୌଦ୍ଧଧର୍ମାବଲମ୍ବୀ ସନ୍ନ୍ୟାସୀମାନେ ଉତ୍କଳରେ ସେମାନଙ୍କ ସାଧନାର ପୀଠ ସ୍ଥାପନ କରିଯାଇଥିଲେ । କାଳକ୍ରମେ ଓଡ଼ିଶାରେ ଦୁଇଟି ପ୍ରଧାନ ଯୋଗପୀଠ ଉଦ୍ଭବ ହୋଇଥିଲା, ଓଡ୍‌ଡ଼ିୟାନ ଓ ପୂର୍ଣ୍ଣଗିରି ।

ଅଶୋକଙ୍କ ପରେ ବହୁ ଶତାବ୍ଦୀ ପର୍ଯ୍ୟନ୍ତ ବୌଦ୍ଧଧର୍ମ ଓଡ଼ିଶାରେ ପରିବ୍ୟାପ୍ତ ହୋଇଥିଲା । ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀ ବେଳକୁ ଉତ୍କଳରେ ଶତାଧିକ ବୌଦ୍ଧବିହାର ଥିବାର ଜଣାଯାଏ । ନାଗାର୍ଜ୍ଜୁନ ଓ ମଞ୍ଜୁଶ୍ରୀ ପ୍ରଥମେ ଉତ୍କଳରେ ମହାଯାନ ବୌଦ୍ଧଧର୍ମ ପ୍ରଚାର କରିଥିଲେ । ପରବର୍ତ୍ତୀ କାଳରେ ରାମାନୁଜ ଧର୍ମର ପ୍ରଚାର ଫଳରେ ରାଜାନୁଗ୍ରହ-ବଞ୍ଚିତ ହୋଇ ଉତ୍କଳରେ ବୌଦ୍ଧଧର୍ମ ହୀନପ୍ରଭ ହୋଇଥିଲା । ଉତ୍କଳରେ ତଥାପି ଷୋଡ଼ଶ ଶତାବ୍ଦୀରେ ବୌଦ୍ଧଧର୍ମର ପ୍ରଭାବ ପରିବ୍ୟାପ୍ତ ଥିଲା ବୋଲି ଅଚ୍ୟୁତାନନ୍ଦଙ୍କ 'ଶୂନ୍ୟ ସଂହିତା'ରୁ ଏହି ପ୍ରମାଣ ମିଳିଥାଏ । ମହାଯାନଧର୍ମ ଓ ହିନ୍ଦୁଧର୍ମ ମଧ୍ୟରେ ବ୍ୟବଧାନ ସଂକୁଚିତ ହୋଇଯାଇଥିବାରୁ ପଞ୍ଚସଖା ସାଧକଗଣ କେତେକ ପରିମାଣରେ ବୌଦ୍ଧମତଦ୍ୱାରା ପ୍ରଭାବିତ ହୋଇଥିଲେ । ଉତ୍କଳୀୟ ବୈଷ୍ଣବମାନେ ବୁଦ୍ଧ ଓ ଜଗନ୍ନାଥଙ୍କ ମଧ୍ୟରେ ଅଭେଦତତ୍ତ୍ୱ ପ୍ରତିପାଦନ କରିଥିଲେ । ସେମାନଙ୍କ ବର୍ଣ୍ଣନାରେ କେତେବେଳେ ଜଗନ୍ନାଥ ବୁଦ୍ଧଙ୍କର ଏବଂ ବୁଦ୍ଧ ଜଗନ୍ନାଥଙ୍କର ଅବତାରରୂପେ ପ୍ରତିଭାତ । ଜଗନ୍ନାଥ ଆଦିବୁଦ୍ଧ ଏବଂ ଗୌତମ ବୁଦ୍ଧଙ୍କୁ ତାଙ୍କର ଅବତାରରୂପେ କଳ୍ପନା କରାଯାଇଛି । ପ୍ରାଚୀନ କବିମାନେ ମଧ୍ୟ ନିଜ ନିଜକୁ ବୁଦ୍ଧଙ୍କର ଅବତାରରୂପେ ପରିଚିତ କରାଇଅଛନ୍ତି ।

"ସଂସାର ଜନଙ୍କୁ ତାରିବ ନିମନ୍ତେ
ବୌଦ୍ଧ ରୂପରେ ବିଜେ ଜଗନ୍ନାଥେ ।" (ସାରଳା ମହାଭାରତ)

× × ×

"କ୍ଷେମ୍ୟ ଦିବସ ଅନ୍ତରେଣ ପାଦ ଯେ ପାଣି ହେବ କ୍ଷୀଣ ।
ବଉଦ୍ଧ ରୂପ ହୋଇ ଯିବ, ପାଦ ପାଣି ଗୁଡ଼ିଲେ ଛନ୍ଦି ।"
(ଦାରୁବ୍ରହ୍ମ ଗୀତା, ଜଗନ୍ନାଥ ଦାସ)

"ବୋଇଲେ ଅଚ୍ୟୁତ ତୁମ୍ଭେ ଶୁଣ ଆମ୍ଭ ବାଣୀ
କଳିଯୁଗେ ବୌଦ୍ଧରୂପେ ପ୍ରକାଶିବୁ ପୁଣି ।"
(ଶୂନ୍ୟ ସଂହିତା)

ସର୍ବୋପରି ୧୫୧୦ ମସିହାରେ ଚୈତନ୍ୟଙ୍କ ଆଗମନ ଏବଂ ପଞ୍ଚସଖାଙ୍କ ସାଧନା ଫଳରେ ଉତ୍କଳୀୟ ବୈଷ୍ଣବଧର୍ମର ପରିବ୍ୟାପ୍ତି ଘଟିଥିଲା । ନୀଳଚକ୍ର ଶ୍ରୀକ୍ଷେତ୍ର ଏକ ପ୍ରସିଦ୍ଧ ବିଷ୍ଣୁକ୍ଷେତ୍ରରୂପେ ପରିଚିତ ହୋଇଥିଲା । ଗଙ୍ଗବଂଶର ରାଜତ୍ୱଠାରୁ ଆରମ୍ଭ କରି ବିଶ୍ୱବିଶ୍ରୁତ ଜଗନ୍ନାଥ ମନ୍ଦିର ପ୍ରତିଷ୍ଠା ପର୍ଯ୍ୟନ୍ତ ଉତ୍କଳରେ ବୈଷ୍ଣବଧର୍ମ ବିଶେଷ ଅଗ୍ରଗତି କରିଥିଲା । ଭାରତରେ ଚତୁର୍ବିଧ କ୍ଷେତ୍ର ମଧ୍ୟରେ ପୁରୁଷୋତ୍ତମ ବିଷ୍ଣୁକ୍ଷେତ୍ର ବିଶେଷ ପ୍ରତିଷ୍ଠା ହାସଲ କରିଥିଲା । ସେଥିପାଇଁ ବିଭିନ୍ନ ଧର୍ମପ୍ରବର୍ତ୍ତକଗଣ ପୁରୁଷୋତ୍ତମ କ୍ଷେତ୍ରରେ ମିଳିତ ହୋଇ ସ୍ୱ ସ୍ୱ ଧର୍ମର ବ୍ୟାଖ୍ୟା କରୁଥିଲେ । ସୁତରାଂ ଆଧ୍ୟାତ୍ମିକ ଜଗତରେ ଭାବର ଆଦାନପ୍ରଦାନ ସାହିତ୍ୟ-କ୍ଷେତ୍ରରେ ପ୍ରତିଫଳିତ ହେଉଥିଲା । ହିନ୍ଦୁଧର୍ମର ନିର୍ଯାସ ଗ୍ରହଣ କରି ଉତ୍କଳରେ ସ୍ୱତନ୍ତ୍ର କୃଷ୍ଣଉପାସନା ଏବଂ ରାମଉପାସନା ପ୍ରଚଳିତ ହେଉଥିଲା । ଉତ୍କଳର ରାଜଦରବାର ମଧ୍ୟ ଧର୍ମାଲୋଚନାରେ ପ୍ରବୃତ୍ତ ହୋଇଥିଲେ । ମହାରାଜା କପିଳେନ୍ଦ୍ର ଦେବ, ପୁରୁଷୋତ୍ତମ ଦେବ ଏବଂ ପ୍ରତାପରୁଦ୍ର ଦେବଙ୍କ ସଭା ବିଭିନ୍ନ କବି ଓ ପଣ୍ଡିତମାନଙ୍କ ଦ୍ୱାରା ଅଳଙ୍କୃତ ହୋଇଥିଲା; ଯେଉଁମାନେ କି ବିବିଧ ଭକ୍ତିମୂଳକ କାବ୍ୟ-କବିତା ପ୍ରଣୟନ କରିଥିଲେ । ସାଧନାର ପୃଷ୍ଠପୀଠରୂପେ କଳିଙ୍ଗ ଓ ଉତ୍କଳ ସମାଜ ଓ ରାଷ୍ଟ୍ରକୁ ଯଥାଯୋଗ୍ୟ ନେତୃତ୍ୱ ଦେଇପାରିଥିଲା । ସାରଳା ଦାସଙ୍କଠାରୁ ଆରମ୍ଭ କରି କାବ୍ୟକାର ଉପେନ୍ଦ୍ର ଭଂଜଙ୍କ ପର୍ଯ୍ୟନ୍ତ କବିଗଣ ସ୍ୱକୀୟ ସାହିତ୍ୟସୃଷ୍ଟିରେ ପଞ୍ଚଦେବତାଙ୍କର ଉପାସନା କରିଥିଲେ । ଶ୍ରୀକ୍ଷେତ୍ରରେ ଚୈତନ୍ୟ ଦେବଙ୍କ ଆଗମନ (୧୫୧୦) ଓ ପଞ୍ଚସଖାଙ୍କ ସାଧନା ଯୋଗୁଁ ଓଡ଼ିଶାରେ ବୈଷ୍ଣବଧର୍ମର ନୂତନ ସଂସ୍କାର ସଙ୍ଘଟିତ ହୋଇଥିଲା । ଜଗନ୍ନାଥ ବିଷ୍ଣୁ ଓ କୃଷ୍ଣ ରୂପରେ ପରିଗଣିତ ହେଲେ । ଏକାଧାରରେ ସେ ହେଲେ ଅବତାରୀ ଓ ଅବତାର । ବହୁ ଭକ୍ତ ଓ ସାଧକ ଉତ୍କଳରେ ବୈଷ୍ଣବଧର୍ମର ଆଦର୍ଶ ସମ୍ପ୍ରସାରିତ କରିଥିଲେ; ଯଥା—ସଂସ୍କୃତ କବି ଜୟଦେବ, ଗୋଦାବରୀଶ ମିଶ୍ର, ରାୟ ରାମାନନ୍ଦ, ଦୀନକୃଷ୍ଣ, ଅଭିମନ୍ୟୁ, ଗୋପାଳକୃଷ୍ଣ; ବନମାଳୀ ।

ଉତ୍କଳୀୟ ପରମଭକ୍ତ ପଣ୍ଡିତ, ଦାର୍ଶନିକ ରାୟ ରାମାନନ୍ଦ ହିଁ ରାଧାତତ୍ତ୍ୱର ପ୍ରଖ୍ୟାପକ ଓ ପରମଜ୍ଞାନୀ ଥିଲେ । ପରେ ଚୈତନ୍ୟଦେବ ଓ ଷଡ଼ ଗୋସ୍ୱାମୀ ରାଧାଭାବର ମହତ୍ତ୍ୱ ଆଦିର ପ୍ରଖ୍ୟାପନ କରିଥିଲେ । ଜୀବ ଗୋସ୍ୱାମୀଙ୍କ କୃତ ତତ୍ତ୍ୱ ସନ୍ଦର୍ଭ, ଭଗବତ ସନ୍ଦର୍ଭ, ପରମାତ୍ମା ସନ୍ଦର୍ଭ, କୃଷ୍ଣ ସନ୍ଦର୍ଭ, ଭକ୍ତି ସନ୍ଦର୍ଭ ଓ ପ୍ରୀତି ସନ୍ଦର୍ଭ ସାହାଯ୍ୟରେ ରାଧାଭାବର ଦାର୍ଶନିକ ପ୍ରତିଷ୍ଠା କରାଗଲା ।

ସଂପ୍ରଦାୟ ଭେଦରେ ସାଧାରଣତଃ ବୈଷ୍ଣବଧର୍ମକୁ ଚାରିଶ୍ରେଣୀରେ ବିଭକ୍ତ କରାଯାଇଛି; ଯଥା --ଶ୍ରୀ, ରୁଦ୍ର, ବ୍ରହ୍ମ, ସନକ ସମ୍ପ୍ରଦାୟ କିମ୍ବା ଶ୍ରୀ, ବଲ୍ଲଭ, ମାଧ୍ୱ, ନିମ୍ବାର୍କ । ସାଧନପନ୍ଥା ବିଚାରରେ ବୈଷ୍ଣବଧର୍ମ ଶୁଦ୍ଧାଭକ୍ତିମାର୍ଗ ଓ ଜ୍ଞାନମିଶ୍ରା-ଭକ୍ତିମାର୍ଗରେ ବିଭକ୍ତ । ଜ୍ଞାନମିଶ୍ରା ପ୍ରାଚୀନ ଓ ଶୁଦ୍ଧା ଅର୍ବାଚୀନ । ଯଦ୍ୟପି ଉଭୟ ମାର୍ଗର ସାଧନରେ ସାଧ୍ୟତତ୍ତ୍ୱ ହିଁ ବ୍ରହ୍ମ, ତଥାପି ଉଭୟର ପନ୍ଥା ଓ ମାର୍ଗ ସ୍ୱତନ୍ତ୍ର । ସାଧାରଣତଃ ଯୋଗୀମାନେ ହିଁ ଜ୍ଞାନମିଶ୍ରା ଭକ୍ତିମାର୍ଗର ଅଧିକାରୀ ଏବଂ ଉପନିଷଦ, ପୁରାଣ ପ୍ରଭୃତିରେ ଏହାର ବିବରଣୀ ସୂଚିତ; କିନ୍ତୁ ଅଚଳା ଭକ୍ତି ଶୁଦ୍ଧାଭକ୍ତିମାର୍ଗ ଅଧିକାରୀମାନଙ୍କର ଲକ୍ଷଣ, ପ୍ରପତ୍ତି, ଶରଣାଗତି ଓ ଆତ୍ମସମର୍ପଣ ଭାବ ସେଥିରେ ପ୍ରକଟିତ । ଏମାନେ ସାଧାରଣତଃ ସାଯୁଜ୍ୟ, ସାଲୋକ୍ୟ, ସାରୂପ୍ୟ ଓ ସାମୂପ୍ୟ ଚତୁର୍ବିଧ ଭକ୍ତିର ଉପାସକ । ଶେଷ ନିର୍ଭକ୍ତି କିନ୍ତୁ ଏମାନଙ୍କର ବିଶେଷ କାମ୍ୟ । ଶୁଦ୍ଧାଭକ୍ତି ମାର୍ଗର ଉପାସକମାନଙ୍କୁ ଗୌଡ଼ୀୟ ମାର୍ଗ ଓ ଗୌଡ଼ୀୟ ବୈଷ୍ଣବଧର୍ମାବଲମ୍ବୀ ବୋଲି କୁହାଯାଏ । ଶ୍ରବଣ, କୀର୍ତ୍ତନ, ବିଷ୍ଣୁପାଦସେବନ, ଦାସ୍ୟ, ସଖ୍ୟ ଓ ଆତ୍ମନିବେଦନ ଆଦି ଏମାନଙ୍କର ନବଧା ଭକ୍ତିମାର୍ଗ । ଏମାନେ ଜ୍ଞାନବାଦୀ ନୁହନ୍ତି । କେବଳ ପରମଭକ୍ତି ସେମାନଙ୍କର ଅବଲମ୍ବନ । କେବଳ ଯୋଗଦ୍ୱାରା ମୁକ୍ତି ସମ୍ଭବ ବୋଲି ଜ୍ଞାନମିଶ୍ରାପନ୍ଥୀମାନଙ୍କର ଅର୍ଥାତ୍ ଉତ୍କଳୀୟ ବୈଷ୍ଣବମାନଙ୍କର ଧାରଣା । ସେଥିପାଇଁ ସେମାନଙ୍କୁ ଯୋଗାଶ୍ରୟୀ ବୈଷ୍ଣବ ବୋଲି କୁହାଯାଇଥାଏ । ଏମାନେ ଷଡ଼ଚକ୍ର ସାଧନା, ପ୍ରାଣାୟାମ ଯୋଗ, କୁଣ୍ଡଳୀ ଉପାସନା, ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱ ପ୍ରଭୃତିରେ ଧ୍ୟାନନିବିଷ୍ଟ ହୋଇଥାନ୍ତି । ଅଷ୍ଟାଙ୍ଗଯୋଗ ଏମାନଙ୍କ ସାଧନାର ବସ୍ତୁ । ଅଷ୍ଟାଙ୍ଗ ଯୋଗ ଉପାୟରେ ଜୀବ ସତ୍ତ୍ୱାକୁ ଉଦ୍ରେକ କରି ସେମାନେ ସାଧନାପଥରେ ଅଗ୍ରସର ହୁଅନ୍ତି । ଏହି ଜୀବଶକ୍ତି ସାଧାରଣତଃ ନିଦ୍ରିତାବସ୍ଥାରେ କୁଣ୍ଡଳିନୀ ନାମ ଓ ରୂପରେ ମୂଳାଧାର ଚକ୍ରରେ ଅବସ୍ଥାନ କରିଥାନ୍ତି । ଏହି ଜୀବଶକ୍ତି ଜାଗ୍ରତ ହେଲେ ଷଡ଼ଚକ୍ର ଦେଇ କ୍ରମେ କ୍ରମେ ସୁଷୁମ୍ନା ଦ୍ୱାରରେ ବ୍ରହ୍ମରନ୍ଧ୍ରରେ ପହଞ୍ଚିଥାଏ । ତାହାପରେ ସାଧକ ପ୍ରକୃତ ସୁପ୍ତାବସ୍ଥାରେ ପହଞ୍ଚିଥାଏ । ଉତ୍କଳୀୟ ବୈଷ୍ଣବମାନେ ଏହି ଜ୍ଞାନମିଶ୍ରା ଭକ୍ତିବାଦର ପୃଷ୍ଠପୋଷକ, ଉପାସକ ଏବଂ ସମର୍ଥକ । ଉଭୟ ଜ୍ଞାନମିଶ୍ରା ଏବଂ ଶୁଦ୍ଧାଭକ୍ତି ମାର୍ଗର ଉପାସକମାନଙ୍କର ଉପାସ୍ୟ ହେଉଛନ୍ତି ବିଷ୍ଣୁ । ଓଡ଼ିଆ ସାହିତ୍ୟରେ ବିଷ୍ଣୁ, କେତେବେଳେ କୃଷ୍ଣରୂପରେ, କେତେବେଳେ ରାମ-

ରୂପରେ ପୂଜିତ ହୋଇଛନ୍ତି । କାରଣ ଉତ୍କଳୀୟମାନେ ଉଭୟ କୃଷ୍ଣ ଓ ରାମଙ୍କର ଉପାସକ; ଅଥଚ ଗୌଡ଼ୀୟ ବୈଷ୍ଣବମାନେ କେବଳ କୃଷ୍ଣ-ଉପାସକ । ଉତ୍କଳୀୟ-ମାନେ ଓ ଗୌଡ଼ୀୟମାନେ ଯଥାକ୍ରମେ ଜଗନ୍ନାଥଙ୍କୁ ଓ କୃଷ୍ଣଙ୍କୁ ଅବତାରୀରୂପରେ ଗ୍ରହଣ କରିଛନ୍ତି । ଉତ୍କଳୀୟ ବୈଷ୍ଣବମାନେ ରାଧାକୃଷ୍ଣଙ୍କର ଉପାସକ; ତଥାପି ସେମାନେ ପ୍ରତିପାଦନ କରିଥାନ୍ତି ଯେ ଜଗନ୍ନାଥଙ୍କ ଭିତରେ ରାଧାକୃଷ୍ଣ ଲୀନ ହୋଇଛନ୍ତି । କେହି କେହି ଜଗନ୍ନାଥଙ୍କ ଭିତରେ ରାଧାକୃଷ୍ଣଙ୍କ ଲୀଳା ଦର୍ଶନ କରିଛନ୍ତି ।

× × ×

"ଜଗନ୍ନାଥ ଯେ ଷୋଳକଳା
ତହିଁ କଳାଏ ନନ୍ଦବଳା ।
କଳାକେ ଷୋଳ କଳା କରି
ଗୋପେ ବିହରେ ନରହରି ।"

(ଦିବାକର ଦାସ)

× × ×

"ଈଶ୍ୱର ସ୍ୱତନ୍ତ୍ର ସ୍ୱୟଂ ଭଗବାନ ରୁହି
ଇଚ୍ଛାମୟ ସର୍ବଶକ୍ତିବନ୍ତ ତତ୍ତ୍ୱ ବହି
ଈଶ ଶେଷାଦି ସେବକ ସେବ୍ୟ ଏକା ରୁହି ।

(ଅଭିମନ୍ୟୁ ସାମନ୍ତସିଂହାର)

ରସକଲ୍ଲୋଳ କାର ଦୀନକୃଷ୍ଣଙ୍କ ମତରେ—

"କରସାଧୁଜନମାନେ ମନକୁ ଏକ
କରି ଧୀରେ ଧ୍ୟାନ ନୀଳାଚଳନାୟକ ।"

× × ×

"କଳା ପର୍ବତରେ ଲୀଳା କରି ଅନେକ"

ରସକଲ୍ଲୋଳର ନାୟକ ଶ୍ରୀକୃଷ୍ଣ ଜଗନ୍ନାଥ ଅବତାରରୂପେ ବର୍ଣ୍ଣିତ । ବୈଦେହୀଶବିଳାସ କାବ୍ୟର ପ୍ରଥମ ଛାନ୍ଦରେ କବି ଜଗନ୍ନାଥଙ୍କୁ ସ୍ତୁତି କରିଛନ୍ତି । ଅଭିମନ୍ୟୁ ସାମନ୍ତସିଂହାର ମଧ୍ୟ ନିଜର କାବ୍ୟ ପ୍ରାରମ୍ଭରେ ସ୍ୱକୀୟ ଆରାଧ୍ୟ ଦେବତା ଶ୍ରୀ କୃଷ୍ଣଚନ୍ଦ୍ରଙ୍କୁ ବନ୍ଦନା କରିଛନ୍ତି—

"ଅପ୍ରାକୃତ ପ୍ରେମମୂର୍ତ୍ତି ଜୟ ରାଧା ହରି
ଅବ୍ୟକ୍ତ ଲୀଳାକୁ ବ୍ୟକ୍ତ କରି ଅବତରି ।"

ନିତ୍ୟକ୍ଷେତ୍ର ଭାବରେ ପୁରୁଷୋତ୍ତମକ୍ଷେତ୍ର ଏବଂ ବୃନ୍ଦାବନଧାମର ମହତ୍ତ୍ୱ ମଧ୍ୟ ଉଭୟ ସମ୍ପ୍ରଦାୟର କବିମାନଙ୍କ ରଚନାରେ ସ୍ୱୀକୃତ ।

"ନିତ୍ୟ ଯେ ଶ୍ରୀପୁରୁଷୋତ୍ତମ
ତହିଁକ କେଉଁ ତୀର୍ଥ ସମ ।"
(ରସବିନୋଦ)

× × ×

"ଦେଖିଲି ଶ୍ରୀପୁରୁଷୋତ୍ତମ
କ୍ଷେତ୍ରମାନଙ୍କ ଯେ ଉତ୍ତମ ।"

× × ×

ଗୌଡ଼ୀୟମାନଙ୍କ ମତରେ ବୃନ୍ଦାବନହିଁ ଶ୍ରେଷ୍ଠଧାମ—

"ବୃନ୍ଦାବନ ଦିବ୍ୟ ଆଣି
କେ କହିବ ପରମାଣି
ବିଶେଷ ବୃକ୍ଷ ଯହିଁରେ ସନ୍ତାନ ସମ,
ଯହିଁ ବିଭୁ ଚିନ୍ତାମଣି,
କାମଧେନୁ ଧେନୁଶ୍ରେଣୀ
ଗୋପାଳ ଯହିଁ ଅଖିଳ ନିଧାନ ଶ୍ୟାମ ।
ଯେଉଁ ସ୍ଥାନ ଧୂଳି ଲଭିନେ,
ଗୁଳ୍ମ ହେବାକୁ ବିଧାତା ଭାବନ୍ତ ମନେ ।"
(ଅଭିମନ୍ୟୁ ସାମନ୍ତସିଂହାର)

ପ୍ରେମଭକ୍ତିର ଉପାସକ ଗୌଡ଼ୀୟ ବୈଷ୍ଣବମାନେ ପ୍ରେମ ଓ ଭକ୍ତିର ଏକରୂପତା ପ୍ରତିପାଦନ କରିଥାନ୍ତି । ଭକ୍ତି ସ୍ଥାନରେ ପ୍ରୀତି ପ୍ରତିଷ୍ଠିତ ହୋଇଥାଏ । ସେମାନେ ନାରଦୀୟ ପଞ୍ଚରାତ୍ର ଭକ୍ତି ବିଷୟକ ଗ୍ରନ୍ଥରେ ଭକ୍ତିକୁ ପ୍ରୀତିର ସମକକ୍ଷ ବୋଲି ପ୍ରମାଣ କରିଛନ୍ତି । "ସା ଭକ୍ତି ପରମ ପ୍ରେମରୂପା" ଭକ୍ତି ଓ ପ୍ରୀତିର ସମସ୍ୱରତା ଏବଂ ସମଧର୍ମିତା ଏହିପରି ପରିଦୃଷ୍ଟ । ବିଶେଷତଃ ଚୈତନ୍ୟଙ୍କ ଯୁଗରେ ଏହି ପ୍ରେମଭକ୍ତିଧର୍ମ ସ୍ୱୀକୃତି ଲାଭ କଲା । ଉତ୍କଳୀୟ ବୈଷ୍ଣବମାନେ ମଧ୍ୟ ଏହି ପ୍ରେମଭକ୍ତିଧର୍ମକୁ ସ୍ୱୀକାର କରିଥିଲେ; କିନ୍ତୁ ସେମାନେ କହନ୍ତି ଯେ ଯୋଗଦ୍ୱାରା ହିଁ ଏହି ଭକ୍ତି ସାଧ୍ୟ । ଗୌଡ଼ୀୟମାନଙ୍କର ରାଧାକୃଷ୍ଣ ପୁରୁଷ ଓ ପ୍ରକୃତି ରୂପରେ ଆଖ୍ୟାୟିତ; ଅର୍ଥାତ୍ ଗୃହୀତ । ଉତ୍କଳୀୟମାନଙ୍କ ମତରେ ରାଧାକୃଷ୍ଣ ଜୀବାତ୍ମା ଓ ପରମାତ୍ମାରୂପେ ଗୃହୀତ । ଉତ୍କଳୀୟମାନେ ଶୂନ୍ୟ-ଉପାସକ । ସେ ଶୂନ୍ୟରେ ରାଧାକୃଷ୍ଣ ଅର୍ଥାତ୍ ଜୀବାତ୍ମା ପରମାତ୍ମାଙ୍କ ଲୀଳା ପରିଦୃଷ୍ଟ । ଉତ୍କଳୀୟମାନଙ୍କର ଏହି ଶୂନ୍ୟୋପଲବ୍ଧି ଚିନ୍ତା ସମ୍ଭବତଃ ମହାଯାନ ବୌଦ୍ଧଧର୍ମରୁ ଗୃହୀତ । ସେଥିପାଇଁ ସମାଲୋଚକମାନଙ୍କ ମତରେ ଉତ୍କଳୀୟ ବୈଷ୍ଣବମାନେ ପ୍ରଚ୍ଛନ୍ନ ବୌଦ୍ଧ । ଉତ୍କଳୀୟମାନେ ଜୀବାତ୍ମା ଓ ପରମାତ୍ମା ବ୍ରହ୍ମ ଓ ଜୀବ ମଧ୍ୟରେ ପାର୍ଥକ୍ୟ ସ୍ୱୀକାର କରୁ ନ ଥିବାରୁ ସେମାନଙ୍କୁ ଅଦ୍ୱୈତବାଦୀ କୁହାଯାଏ । ଗୌଡ଼ୀୟ ବୈଷ୍ଣବମାନେ କିନ୍ତୁ ଦ୍ୱୈତବାଦୀ । ସେମାନେ ଅଦ୍ୱୈତ ଦର୍ଶନ ଓ ଦ୍ୱୈତ ଦର୍ଶନ ବିଷୟରେ

*

ପରସ୍ପରଠାରୁ ପୃଥକ ; କିନ୍ତୁ ସେମାନଙ୍କ ଲକ୍ଷ୍ୟ ଏକ; ଯଦ୍ୟପି ସାଧନମାର୍ଗ ଓ ପନ୍ଥା ସ୍ୱତନ୍ତ୍ର । ଉତ୍କଳୀୟ ବୈଷ୍ଣବମାନଙ୍କର ଶୂନ୍ୟବାଦ ସପକ୍ଷରେ କେତେକ ଉଦ୍ଧୃତି ଏଠାରେ ପ୍ରଦତ୍ତ ହେଲା ।

"ଅଣାକାରଂ ମହାଶୂନ୍ୟଂ ଶୂନ୍ୟମଧ୍ୟେ ନିରଞ୍ଜନଃ
ନିରଞ୍ଜନମଧ୍ୟେ ଜ୍ୟୋତି ସଃ ଜ୍ୟୋତି ଭଗବାନମ୍ ।"
(ବଳରାମ ଦାସ)

× × × ×

"ଏମନ୍ତେ ମହାଶୂନ୍ୟ ହେଲା
ଶୂନ୍ୟରୁ ପ୍ରଣବ ହୋଇଲା ।
ପ୍ରଣବ ଓଁକାରକୁ କହି
ଏକା ଅକ୍ଷରଟି ସେ ଅଟଇ ।"
(ବ୍ରହ୍ମାଣ୍ଡ ଭୂଗୋଳ)

"ମହାଶୂନ୍ୟ ଯେ ଜ୍ୟୋତିରୂପ
ଜ୍ୟୋତିରୁ ଜାତ ଠୁଳରୂପ ।
ଠୁଳରୁ ଅଧମାତ୍ରା ହେଲା
ମାତ୍ରାରୁ ଓଁକାର ଜନ୍ମିଲା ।
ଓଁକାରୁ ଜନ୍ମଇ ଜଗତ
ଶୁଣ ପାର୍ବତୀ ଦେଇ ଚିତ୍ତ ।"
(ତୁଳାଭିଣା—ଜଗନ୍ନାଥ ଦାସ)

ଅଚ୍ୟୁତାନନ୍ଦ ତାଙ୍କର ଶୂନ୍ୟସଂହିତା ଗ୍ରନ୍ଥରେ ମଧ୍ୟ ଅନୁରୂପ ବର୍ଣ୍ଣନା କରିଛନ୍ତି—

"ଦେଖିଲେ ଯେ ଶୂନ୍ୟେ ବ୍ରହ୍ମ ସ୍ୱୟଂ ଜ୍ୟୋତି ହୋଇ
ଘଟେ ଘଟେ ବିଜେ ଏହି ଶୂନ୍ୟ କାୟା ଦେହୀ ।"

× × × ×

ଏହି ପ୍ରସଙ୍ଗରେ ଅରକ୍ଷିତ ଦାସ, ଚୈତନ୍ୟ ଦାସ, ମହାଦେବ ଦାସ, ଯଶୋବନ୍ତ ଦାସ ପ୍ରଭୃତି ଲେଖକଙ୍କର ଅନୁରୂପ ମତ ବିଶ୍ଳେଷଣ କରାଯାଇପାରେ । ସେହି ଯୁଗର ବୈଷ୍ଣବ ଲେଖକମାନଙ୍କ ମତରେ ଶୂନ୍ୟପୁରୁଷ ଶ୍ରୀକୃଷ୍ଣରୂପରେ ବିହାର କରୁଅଛନ୍ତି ଏବଂ ରାଧାକୃଷ୍ଣଙ୍କର ସେହି ଲୀଳା-ନିକେତନ ମହାସ୍ଥଳ ହେଉଛି ଶୂନ୍ୟ ।

"ଶୂନ୍ୟ ବନ୍ଧ ବୋଲି ସିନା ବୋଲନ୍ତି କୃଷ୍ଣଙ୍କୁ
ବାରି କହିଦେଲୁଁ ଧାମ୍ୟ ରୁ ନିରାକାରକୁ ।" (ଶୂନ୍ୟ ସଂହିତା)

ଜଗନ୍ନାଥ ଦାସଙ୍କର ବର୍ଣ୍ଣନା ଅନୁଯାୟୀ—

"ଏକାର୍ଥ ବ୍ରହ୍ମ ଏହା କହି
ରାଧିକା ସଙ୍ଗେ ଭାବଗ୍ରାହୀ ।
ଗୋଲୋକ ନିତ୍ୟ ଏହା କହି
ଶୂନ୍ୟ ଦେଉଳ ଏ ବୋଲଇ ।
କୃଷ୍ଣର କ୍ରୀଡ଼ାରସ ଏହି
ଗୁପତ ବୃନ୍ଦାବନ କହି ।
ମଥୁରାପୁର ମହାଶୂନ୍ୟ
ଗୋପନଗର ସେହି ନାମ ।"

ଏହି ଶୂନ୍ୟ କୀଟପତଙ୍ଗ ସ୍ଥାବର ଜଙ୍ଗମ ସର୍ବତ୍ର ବିଦ୍ୟମାନ । ମସ୍ତକ ପଦ-ଦେଶସ୍ଥ ଶୂନ୍ୟକାର ସ୍ଥାନ ହେଉଛି ଏହି ଶୂନ୍ୟ । ଏଠାରେ ବିସର୍ଗୀ ଶକ୍ତି ଅଛି । ସେହି ଶକ୍ତିର ନିମ୍ନରେ ସହସ୍ରଦଳ ପଦ୍ମ । ପଦ୍ମ ମଧ୍ୟରେ ନିଷ୍କଳଙ୍କ ଚନ୍ଦ୍ର, ତ୍ରିକୋଣ ଯନ୍ତ୍ର ମଧ୍ୟରେ ଆତ୍ମାର ପରମ ଉତ୍କୃଷ୍ଟ ସ୍ଥଳ ବିରାଜିତ । ତାହା ହରସ୍ଥାନ, ଶିବସ୍ଥାନ, ଶକ୍ତିସ୍ଥାନ ରୂପେ ଯଥାକ୍ରମେ ବୈଷ୍ଣବ, ଶୈବ ଏବଂ ଶାକ୍ତମାନଙ୍କ ଦ୍ୱାରା ଗୃହୀତ । ବୌଦ୍ଧଧର୍ମର କାଳଚକ୍ର ମତାନୁଯାୟୀ ଶୂନ୍ୟପୁରୁଷ ଯିଏ, ନିରଞ୍ଜନ ସେହି । ତାଙ୍କର ଅର୍ଦ୍ଧାଙ୍ଗିନୀ ଆଦ୍ୟାଶକ୍ତି ସହିତ ଯୁକ୍ତ ହେବାକୁ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଜାତ ହେଲେ । ସଂସାରର ସୃଷ୍ଟି ଏହିପରି ସମ୍ଭବ ହେଲା ।

ନାରୀଭାବରେ ଶ୍ରୀକୃଷ୍ଣଙ୍କର ନିତ୍ୟଦାସ ହେବା ଗୌଡ଼ୀୟମାନଙ୍କର କାମ୍ୟ । ଅଭିମନ୍ୟୁଙ୍କ ଭାଷାରେ—

"ଔଷଧିଶାନନ ହେ, ମାଗୁଛି ପଦ ଧରି
ଓ କରବ ଆଲେ ଦାସୀ ଡାକଲେ କଣୋରୀ ।"
× × ×
"ଏମନ୍ତ ମହିମାବନ୍ତ ପ୍ରେମଭକ୍ତିରସ
ଏକନିଷ୍ଠେ ଅଭିମନ୍ୟୁ କବି କରେ ଆଶ ।"

ଉତ୍କଳୀୟମାନଙ୍କର ସ୍ୱକୀୟ ପ୍ରୀତି, ଗୌଡ଼ୀୟମାନଙ୍କର ପରକୀୟା ପ୍ରୀତି । ସେହି ପରକୀୟା ପ୍ରୀତିର ପ୍ରତିମୂର୍ତ୍ତି ହେଉଛନ୍ତି ଶ୍ରୀରାଧା । ଏହି ଗୌଡ଼ୀୟ ପରକୀୟା ପ୍ରୀତି ଓଡ଼ିଆ ସାହିତ୍ୟରେ ପରବର୍ତ୍ତୀ କାଳରେ ପ୍ରବେଶ କରିଥିଲା ।

**ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱ**—ଶୂନ୍ୟବାଦ ସଦୃଶ ଏହି ତତ୍ତ୍ୱ ମଧ୍ୟ ଉତ୍କଳୀୟ ବୈଷ୍ଣବମାନଙ୍କର ପରିକଳ୍ପନା । ପଞ୍ଚସଖା ଏବଂ ପରବର୍ତ୍ତୀ ବୈଷ୍ଣବଗଣ ଶରୀର ମଧ୍ୟରେ ସମସ୍ତ ବ୍ରହ୍ମାଣ୍ଡର ଅବସ୍ଥିତି ନିର୍ଣ୍ଣୟ କରିଛନ୍ତି । ସେମାନେ ପିଣ୍ଡବ୍ରହ୍ମାଣ୍ଡରେ

ଶୂନ୍ୟ ବ୍ରହ୍ମଙ୍କୁ ମଧ୍ୟ ଅବଲୋକନ କରିଛନ୍ତି । ରାଧା-କୃଷ୍ଣଙ୍କର ଲୀଳାପୀଠ ମହାନିତ୍ୟ ଏହି ଶରୀର ମଧ୍ୟରେ ନିର୍ଦ୍ଦେଶିତ ହୋଇଛି ।

"ସଂସାରେ ଯେତେ ବିଧିମତି
ପିଣ୍ଡରେ ଅଛନ୍ତି ସମସ୍ତ ।
ପିଣ୍ଡବ୍ରହ୍ମାଣ୍ଡ ଏକମତି
ତୋ ଆଗେ କରିଦେଲି ତତ୍ତ୍ୱ ।"
(ବିରାଟ ଗୀତା)

କିମ୍ବା

"ତ୍ରିଭୁବନ ନବଖଣ୍ଡ, ଆବର ଚଉଦ ବ୍ରହ୍ମାଣ୍ଡ
କୀଟପତଙ୍ଗ ଆଦି ଯେତେ, ସ୍ଥାବର ଜଙ୍ଗମ ସହିତେ ।"
(ନିର୍ଗୁଣ ମାହାତ୍ମ୍ୟ)

କିମ୍ବା ଶୂନ୍ୟସଂହିତାରେ—

"ଜ୍ୟୋତି ସାନନ୍ଦ ବିଜେ ପରଂବ୍ରହ୍ମ
ପଞ୍ଚକଳା ଦିବ୍ୟଜ୍ୟୋତି, ଅନନ୍ତ ଦଳ ମଧ୍ୟେ ବିଜେ କିଶୋର
ନିତ୍ୟ ରାହାସ ଲଗିଛି
ଭୂଲତା ପରେ କାମ ବାଦ ବସାଇ ଅରୂପେ କଲମ ପର
ଯେଉଁ ସ୍ଥାନେ ନିତ୍ୟଲୀଳା ପରକାଶ ବିଜେ କରିଛନ୍ତି ହରି ।"

ଓଡ଼ିଶୀ ବୈଷ୍ଣବଧର୍ମରେ ଜ୍ଞାନ ଓ ଭକ୍ତିର ସ୍ୱରୂପ—'ପରଚେ ଗୀତା'ରେ ଦ୍ୱାରକାଦାସ ବ୍ରହ୍ମଜ୍ଞାନ ମାହାତ୍ମ୍ୟ ବର୍ଣ୍ଣନ ପ୍ରସଙ୍ଗରେ କହିଛନ୍ତି—

"ଜୀବରୁ ପରମ ନୋହେ ବାହାର, ଜୀବ ପରମ ଏକଇ ବେଭାର ।
ନାମ ଏକ ଦୁଇ ଅକ୍ଷର ହୋଇ, ହଂସ ବୋଲି କରି ଯାହାକୁ କହି ।
ହଂସ ନିଜ ନାମ ଜପୁଛି ଥାଇ, ପ୍ରାଣୀମାନେ ତା ଜାଣି ନ ପାରଇ ।
ସୋହଂ ମନ୍ତ୍ରକୁ ଜପୁଅଛି ବୀର, ଜୀବ ଜାଣଇ ଯେତେ ବେଭାର ।"

ପନ୍ଥା ସ୍ୱତନ୍ତ୍ର ହେଲେହେଁ ଜ୍ଞାନ, କର୍ମ ଓ ଭକ୍ତିର ଲକ୍ଷ୍ୟବସ୍ତୁ ଏକ; ସୁତରାଂ ଜ୍ଞାନ, କର୍ମ ଓ ଭକ୍ତି ମଧ୍ୟରେ ବିରୋଧର ପ୍ରଶ୍ନ ନାହିଁ । ପ୍ରତ୍ୟେକର ସ୍ୱାତନ୍ତ୍ର୍ୟ ସ୍ୱୀକୃତ । ଅଥଚ ଭକ୍ତି ସହିତ ଜ୍ଞାନ କଦାପି ସମାନ ନୁହେଁ ବୋଲି ଭକ୍ତକବି ଭକ୍ତଚରଣଦାସ ମଥୁରାମଙ୍ଗଳ କାବ୍ୟରେ ଜ୍ଞାନ ନୀରସ ଶୁଷ୍କ ଓ ଭକ୍ତି ରସଗର୍ଭକ ବୋଲି କହିଛନ୍ତି—

"ଉଦ୍ଧବ ବଚନ ଶୁଣି ବୋଲନ୍ତି ଗୋପରମଣୀ
ଏ ଯେଉଁ ଜ୍ଞାନକୁ ବୁଝାଇଲ,

ଖିର ସଙ୍ଗେ ଦଧି ଦେଲେ ନାଶ ଯାଇ ସେହି ଭଲେ
ଜ୍ଞାନ କଥା କପାଇଁ କହିଲ ! ହେ ହରି ଦୂତ
ଆମର ଭକତି ରଙ୍ଗାଧର
ଜ୍ଞାନନଦୀ ତହିଁ ସମ କର ।"

ଉତ୍କଳୀୟ ବୈଷ୍ଣବ କବିଗଣ ଜ୍ଞାନମିଶ୍ର ଭକ୍ତିଯୋଗର ଉପାସକ ଏବଂ ଶ୍ରୀରାଧା ଓ ଶ୍ରୀକୃଷ୍ଣ ପ୍ରେମରସ ଆସ୍ୱାଦନରେ ସେମାନଙ୍କ ଚିତ୍ତ ସର୍ବଦା ମଗ୍ନ ଥିଲା । ଜଗନ୍ନାଥ ଦାସ ସର୍ବଦା ଗୋପୀପ୍ରେମରେ ବିଭୋର ଥିଲେ । ସେଥିପାଇଁ ତାଙ୍କୁ ଶ୍ରୀରାଧାଙ୍କର ଅବତାର ବୋଲି କୁହାଯାଏ । ବଳରାମ ଦାସଙ୍କ 'ବେଦାନ୍ତସାର ଗୀତା'ର ବର୍ଣ୍ଣନା—

"ଆତ୍ମାକୁ ସ୍ତ୍ରୀ ଶିଖି ବେଶକରି
ଶ୍ରୀରାଧା ଅଙ୍ଗରେ ବିହରି ।
କୃଷ୍ଣେ ଆସ୍ୱାଦ ରସ ଦେଇ
ଏହାକୁ ପ୍ରେମଭକ୍ତି କହି ।
ତେବେ ପାଇବୁ ଭାବଗ୍ରାହୀ
ନୋହିଲେ ପଶି ନ ପାରଇ ।
ପୁରୁଷ ଅଙ୍ଗେ ନ ଲଭନ୍ତି
ଏମନ୍ତେ ବେଦତତ୍ତ୍ୱ ସ୍ଥିତି ।"

କମ୍ବା

ଯଶୋବନ୍ତ ଦାସଙ୍କର 'ପ୍ରେମଭକ୍ତି ବ୍ରହ୍ମଗୀତା'ର ବର୍ଣ୍ଣନା ଏଠାରେ ଉଲ୍ଲେଖଯୋଗ୍ୟ—

"ପ୍ରେମଭକ୍ତିରୁ ଭକ୍ତି ନାହିଁ
ପ୍ରେମ ନିକଟେ ଥାଏ ମୁହିଁ ।
ଭକ୍ତି ଯେ ନବ ପରକାର
ପ୍ରେମ ଭକତି ଅଟେ ସାର ।"

ଅଚ୍ୟୁତାନନ୍ଦ ମଧ୍ୟ 'ଶୂନ୍ୟ ସଂହିତା'ରେ ଅନୁରୂପ ମତ ପ୍ରକାଶ କରିଥିଲେ ।

**ଉତ୍କଳୀୟ ବୈଷ୍ଣବଧର୍ମ ଓ ଜଗନ୍ନାଥ ଉପାସନା:—**

ପ୍ରାଚୀନ ଓଡ଼ିଆ ସାହିତ୍ୟ ଜଗନ୍ନାଥଙ୍କ ମାହାତ୍ମ୍ୟ ପ୍ରଖ୍ୟାପନରେ ପରିପୂର୍ଣ୍ଣ । ଉତ୍କଳ ଜଗନ୍ନାଥଙ୍କ ଦେଶ ଏବଂ ବିଷ୍ଣୁ ସେହି ଉତ୍କଳରେ ଜଗନ୍ନାଥ, ରାମ ଏବଂ କୃଷ୍ଣ ରୂପରେ ପୂଜିତ । ବହୁ ପ୍ରାଚୀନ କବି, ନାଟ୍ୟକାର ଉକ୍ତ ଜଗନ୍ନାଥଦେବଙ୍କର

ପୂଜା ଆରାଧନା, ଯାତ୍ରା, ପର୍ବ, ଅବଲମ୍ବନରେ କାବ୍ୟକବିତା ରଚନା କରିଥିଲେହେଁ କେତେକଙ୍କ ମତରେ ତାହା ଏକ ଶକ୍ତିଶାଳୀ ଧର୍ମର ଆସ୍ଥାନ ଲାଭ କରି ନଥିଲା । ମାତ୍ର ଏହି ମତ ଗ୍ରହଣୀୟ ହୋଇ ନ ପାରେ । ବହୁ ପ୍ରାଚୀନ ପୁରାଣାଦି ରଚନାରେ ଜଗନ୍ନାଥଦେବଙ୍କର ମାହାତ୍ମ୍ୟ ସୂଚିତ ହୋଇଥିଲା । ଉତ୍କଳୀୟ ବୈଷ୍ଣବଧର୍ମ ଜଗନ୍ନାଥଦେବଙ୍କୁ କେନ୍ଦ୍ର କରି ଗଢ଼ିଉଠିଥିଲା । ପୁରୁଷୋତ୍ତମ କ୍ଷେତ୍ର ହିଁ ମହା-ନିତ୍ୟ, ନୀଳାଚଳ ହିଁ ଗୋଲକ । ନିତ୍ୟସ୍ଥଳୀ ପୁରୁଷୋତ୍ତମ କ୍ଷେତ୍ର ମଧ୍ୟରେ ହିଁ ଅଯୋଧ୍ୟା, ଦ୍ୱାରିକା, ମଥୁରା, ବୃନ୍ଦାବନଧାମ ପରିକଳ୍ପିତ । ସକଳ ତୀର୍ଥର ଆଧାରଭୂତରୂପେ ପୁରୁଷୋତ୍ତମ କ୍ଷେତ୍ର ବିବେଚିତ । ଏହି ଏତାଦୃଶ ଗୂଢ଼ ଆଧ୍ୟାତ୍ମିକ ତଥ୍ୟ ଏବଂ ତତ୍ତ୍ୱ କବି ବଳରାମ ଦାସ, ଜଗନ୍ନାଥ ଦାସ, ଅଚ୍ୟୁତାନନ୍ଦ ଦାସ, ଦିବାକର ଦାସ ଯଥାକ୍ରମେ ବେଦାନ୍ତସାର ଗୁପ୍ତ ଗୀତା, ଷୋଳ ଚଉପଦୀ, ଗୁରୁଭକ୍ତି ଗୀତା ଏବଂ ଜଗନ୍ନାଥ ଚରିତାମୃତରେ ଦାର୍ଶନିକ ଢଙ୍ଗରେ ବର୍ଣ୍ଣିତ । ପୁନଶ୍ଚ ଯଶୋବନ୍ତ ଦାସଙ୍କର ପ୍ରେମଭକ୍ତି ବ୍ରହ୍ମଗୀତା, ଦୀନକୃଷ୍ଣ ଦାସଙ୍କର ନାମରତ୍ନ ଗୀତା, ରସବିନୋଦ, ଭୂପତି ପଣ୍ଡିତଙ୍କର ପ୍ରେମପଞ୍ଚାମୃତରେ ଏହି ସବୁ ତତ୍ତ୍ୱ-ବର୍ଣ୍ଣନାର ଅଭାବ ନାହିଁ ।

"ସର୍ବଦା ନୀଳାଦ୍ରିରେ ସ୍ଥିତି
ଏଥୁ ସକଳ ଜାତ ହୋନ୍ତି ।
ସମସ୍ତ ଅବତାରମାନ
ଜାତ ହୋଇଣ ପଶେ ପୁଣ ।
ଏ ନୀଳ ନିତ୍ୟ ଗିରି ସମ
ଚୈତନ୍ୟ ଶ୍ରୀକୃଷ୍ଣ ନିତ୍ୟଧାମ ।"

× × ×

ସେହି ରୂପରେ ନିରାକାର
ଶ୍ରୀନୀଳଗିରିରେ ବିହାର ।"

(ବେଦାନ୍ତସାର ଗୁପ୍ତଗୀତା)

କିମ୍ବା

"ଯେଉଁ ଗୋଲକ ନିତ୍ୟସ୍ଥଳ
ସେହିଟି ଗିରି ନୀଳାଚଳ ।

(ଜଗନ୍ନାଥ ଚରିତାମୃତ)

× × ×

"ଅବତାର ଦଶ ଏହି ଦାରୁରୂପ ଏହି ଦାରୁରେ ସେ ଲୀନ
ଈଶ୍ୱର ସାକ୍ଷାତେ ଲୀଳାର ନିମନ୍ତେ ବଜେ ରତ୍ନସିଂହାସନ ।"

(ଶୂନ୍ୟ ସଂହିତା)

× × ×

"କମଳ-ନେତ୍ରୀ କମଳା-ପ୍ରାଣନାୟକ
କଳା ପର୍ବତରେ ଲୀଳା କର ଅନେକ ।
କଲେ ଇଚ୍ଛା ମନେ ହେବ। କଂସ ଅନ୍ତକ
କରବା ଉଶ୍ୱାସ ମହାଭାର ଯେତେକ ।"

(ରସକଲ୍ଲୋଳ)

ପ୍ରେମିକ କବି ଉପେନ୍ଦ୍ର ଭଞ୍ଜ ମଧ୍ୟ ଅନୁରୂପ ଭାବରେ ପୁରୁଷୋତ୍ତମ କ୍ଷେତ୍ରର ମାହାତ୍ମ୍ୟ କୀର୍ତ୍ତନ କରିବାରେ ଭୁଲି ନଥିଲେ ।

"ସେ କମ୍ବୁ କଣ୍ଠକ ରାଜା ନାମ ଜଗନ୍ନାଥ
ଗୃହ ହସ୍ତେ ଚତୁର୍ବର୍ଗ ଦେବାକୁ ସମର୍ଥ ।
ଭକ୍ତି ଦେବା ଗୁପ୍ତ ହୋଇଅଛି ସୂକ୍ତାକ୍ଷରେ
ବୈଷ୍ଣବ ବିହୀନେ କେବା ଜାଣିବ ସଂସାରେ ।"

(କୋଟିବ୍ରହ୍ମାଣ୍ଡସୁନ୍ଦରୀ)

ଆଦିକବି ସାରଳା ଦାସ ଜଗନ୍ନାଥଙ୍କ ସାର୍ବଜନୀନତା ସମ୍ପର୍କରେ ତାଙ୍କ ମହାଭାରତରେ ଉଲ୍ଲେଖ କରିଥିଲେ ।

ଉତ୍କଳୀୟ ବୈଷ୍ଣବବୃନ୍ଦ ଜଗନ୍ନାଥଙ୍କର ପୂର୍ଣ୍ଣବ୍ରହ୍ମତ୍ୱ ଏବଂ ନୀଳାଚଳର ନିତ୍ୟତ୍ୱ ସମ୍ପର୍କରେ ଏକମତ । ଶାକ୍ତମାନଙ୍କ ମତରେ ଜଗନ୍ନାଥ ଭୈରବ । ବୈଷ୍ଣବମାନଙ୍କ ଦୃଷ୍ଟିରେ ଜଗନ୍ନାଥ ନନ୍ଦନନ୍ଦନ ଶ୍ରୀକୃଷ୍ଣ । ବୌଦ୍ଧମାନଙ୍କ ଦୃଷ୍ଟିରେ ଜଗନ୍ନାଥ ବୁଦ୍ଧ । ଜଗନ୍ନାଥ-ଉପାସକ ଉତ୍କଳୀୟ ବୈଷ୍ଣବମାନଙ୍କ ଉକ୍ତିରେ ବୈଷ୍ଣବବିରୋଧ ଭାବର ସତ୍ତା ସୁଦ୍ଧା ନାହିଁ । ଚୈତନ୍ୟ ଦାସଙ୍କ ନିର୍ଗୁଣ ମହାତ୍ମ୍ୟ ଏବଂ ବିଷ୍ଣୁଗର୍ଭ ପୁରାଣରେ ଏବଂବିଧ ତତ୍ତ୍ୱ ପ୍ରାଞ୍ଜଳଭାବରେ ବ୍ୟାଖ୍ୟା କରାଯାଇଛି । ପୂର୍ବେ ଶଙ୍କରାଚାର୍ଯ୍ୟଙ୍କ ପ୍ରଚାର ଫଳରେ ଶୈବ ମତର ପ୍ରଭାବ ଜଗନ୍ନାଥ ତତ୍ତ୍ୱରେ ପ୍ରତିଫଳିତ ହୋଇଥିଲା । ଜଗନ୍ନାଥଙ୍କ ମନ୍ଦିରବେଢ଼ା ମଧ୍ୟରେ ଶିବ ମନ୍ଦିର ଆଦୃତ ହୋଇଥିଲା । ଉତ୍କଳୀୟ ବୈଷ୍ଣବ କବି ଦ୍ୱାରକାଦାସଙ୍କ ଶିବପୁରାଣ ଏହି ପ୍ରସଙ୍ଗରେ ଉଲ୍ଲେଖଯୋଗ୍ୟ । 'ଶିବ ସ୍ୱରୋଦୟ' ପୁସ୍ତକ ଏକ ପ୍ରାମାଣିକ ଗ୍ରନ୍ଥ । ଶିବ ପାର୍ବତୀଙ୍କ ପ୍ରଶ୍ନୋତ୍ତର ଛଳରେ ଜଗନ୍ନାଥ ଦାସ ଏବଂ ବଳରାମ ଦାସ ଆଧ୍ୟାତ୍ମିକ ବ୍ୟାଖ୍ୟା କରିଥିଲେ ।

ସଂକ୍ଷେପରେ ଏତିକି କୁହାଯାଇପାରେ ଯେ ଉତ୍କଳୀୟ ବୈଷ୍ଣବମାନଙ୍କ ମତରେ ଜଗନ୍ନାଥ ହିଁ ରାଧାକୃଷ୍ଣ; ସେ ହେଉଛନ୍ତି ମହାନତ୍ୟର ରାଧାକୃଷ୍ଣ । ଜଗନ୍ନାଥ ପରମ ବ୍ୟୋମବିହାରୀ ବିଷ୍ଣୁ । ଉତ୍କଳୀୟ ବୈଷ୍ଣବଧର୍ମକୁ ଜଗନ୍ନାଥଧର୍ମ ନାମରେ ଚିହ୍ନିତ କରିବାରେ କୌଣସି ଅଯଥାର୍ଥତା ନାହିଁ । ଓଡ଼ିଆ ସାହିତ୍ୟ ଅତୀତ ଯୁଗରେ ଏହିପରି ବିଭିନ୍ନ ଧର୍ମ, ପୂଜା, ଉପାସନା ଆଦର୍ଶପନ୍ଥୀ କବିମାନଙ୍କ ଲେଖନୀ ସାଧନାରେ ପରିପୁଷ୍ଟ ହୋଇପାରିଛି । ପୁରୁଷୋତ୍ତମ କ୍ଷେତ୍ରରେ ସର୍ବଧର୍ମ ସମନ୍ୱୟ ସଙ୍ଘଟିତ ହୋଇପାରିଛି ।

## ପୁରାଣ ସାହିତ୍ୟର ଲକ୍ଷ୍ୟ—

ଉତ୍କଳର ଗ୍ରାମ୍ୟ ଜୀବନରେ ଏବଂ ପ୍ରାଚୀନ ସମାଜରେ ଲିଖିତ ସାହିତ୍ୟର ଅତୁଟ ପ୍ରଭାବ ମଧ୍ୟରେ ପୁରାଣଧର୍ମୀ ରଚନାସମୂହର ପ୍ରଚଳନ, ବିସ୍ତୃତି ଏବଂ ଆଦର ଅପେକ୍ଷା ଅଧିକ । ଜଗନ୍ନାଥ ଦାସଙ୍କ 'ଶ୍ରୀମଦ୍ ଭାଗବତ'ଠାରୁ ଆରମ୍ଭ କରି ମହାଦେବ ଦାସଙ୍କ 'କାର୍ତ୍ତିକ ମହାତ୍ମ୍ୟ' ପର୍ଯ୍ୟନ୍ତ ବହୁ ରଚନା ଉତ୍କଳୀୟ ଗ୍ରାମ୍ୟ ସଂସ୍କୃତି ଏବଂ ଆଧ୍ୟାତ୍ମିକ ଜୀବନର ପ୍ରାଣକେନ୍ଦ୍ର ଏବଂ ଗ୍ରାମେ ଗ୍ରାମେ ସଂହତି ପ୍ରତିଷ୍ଠା କରିବାରେ ସହାୟକ ହୋଇପାରିଛି । ପୁରାଣ ସାହିତ୍ୟର ଏକମାତ୍ର ଉଦ୍ଦେଶ୍ୟ ହେଉଛି ଜନସମାଜରେ ସରଳବୋଧ ଗ୍ରାମ୍ୟଭାଷାରେ ଦେବଦେବୀମାନଙ୍କର ଉପାଖ୍ୟାନ ପରିବେଷଣ କରି ଆଧ୍ୟାତ୍ମିକ ଶୃଙ୍ଖଳା ଏବଂ ଆଦର୍ଶ ସୃଷ୍ଟି କରିବା । ଏହିସବୁ ରଚନାର ମୂଳପିଣ୍ଡ ସଂସ୍କୃତ ଗ୍ରନ୍ଥ ହେଲେହେଁ ଲେଖକମାନେ ମୌଳିକ ଗ୍ରନ୍ଥ ସ୍ୱରୂପ ସେହିସବୁ ରଚନା ପ୍ରଣୟନ କରିଛନ୍ତି ।

ରାମଦାସଙ୍କର 'ଦାର୍ଢ୍ୟତାଭକ୍ତି' କିମ୍ବା 'ଦାର୍ଢ୍ୟତା ଭକ୍ତିରସାମୃତ' ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ରଚିତ ହୋଇଥିଲା । ପ୍ରାୟ ଅର୍ଦ୍ଧଶତ ଭକ୍ତ ଏବଂ ଐତିହାସିକ ବୀରପୁରୁଷଙ୍କ ଜୀବନୀ ଏହି ଗ୍ରନ୍ଥରେ ସ୍ଥାନ ପାଇଛି । କିମ୍ବଦନ୍ତୀ, ଇତିହାସ ଏବଂ ପୁରାଣର ସମନ୍ୱୟରେ ଏହି ପୁରାଣଧର୍ମୀ ରଚନା ଉତ୍କଳର ପାଠକ-ପାଠିକାଙ୍କ ଦ୍ୱାରା ଆଦୃତ ।

ମହାଦେବ ଦାସଙ୍କ କାର୍ତ୍ତିକ ପୁରାଣ, ମାର୍କଣ୍ଡେୟ ପୁରାଣ, ବିଷ୍ଣୁକେଶରୀ ପୁରାଣ ମଧ୍ୟ ଓଡ଼ିଆ ପାଠକସମାଜରେ ବେଶ୍ ସୁପରିଚିତ । ବିଷ୍ଣୁକେଶରୀ ପୁରାଣରେ ବିଷ୍ଣୁଙ୍କ ସିଂହ ଅବତାର ବର୍ଣ୍ଣନାକ୍ରମରେ କବି ଏକାଧିକ ପୌରାଣିକ ଉପାଖ୍ୟାନର ଆଶ୍ରୟ ନେଇଛନ୍ତି । ପଞ୍ଚମ ସର୍ଗରେ ବିଭକ୍ତ ଏହି ଗ୍ରନ୍ଥରେ ସୃଷ୍ଟି ସର୍ଜ୍ଜନା, ବ୍ରହ୍ମା ଶିବଙ୍କର ଆବିର୍ଭାବ, ହିରଣ୍ୟକଶିପୁ, ହିରଣାକ୍ଷଙ୍କ ଜନ୍ମ, ବୃତାସୁର ସ୍ୱର୍ଗପୁରକୁ ଯୁଦ୍ଧଯାତ୍ରା, ଦେବାସୁର ଯୁଦ୍ଧ, ପ୍ରହ୍ଲାଦ ଜନ୍ମ, ହିରଣ୍ୟର ନିଧନ, ସମୁଦ୍ର ମଂଥନ, ଲକ୍ଷ୍ମୀ, ଅମୃତର ଉଦ୍ଧାର, ବିଷ୍ଣୁଙ୍କ ଅମୃତହରଣ, ବଳିବାମନ ପ୍ରଭୃତି ପ୍ରସଙ୍ଗ ସ୍ଥାନ

ପାଇଛି । ପୀତାମ୍ବର ଦାସ ମତ୍ସ୍ୟ, ବରାହ, ବାମନ, ନୃସିଂହ ଅବତାର ବର୍ଣ୍ଣନା କରିଥିଲେ । ମହାଦେବ ଦାସ ବିଷ୍ଣୁଙ୍କ ବାମନ ଓ ନୃସିଂହ ଅବତାର ବର୍ଣ୍ଣନା କରିଥିଲେ । ପୀତାମ୍ବର ଦାସ ନିଜକୁ ମହାଦେବ ଦାସଙ୍କ ପୂର୍ବବର୍ତ୍ତୀ କବି ବୋଲି ସୂଚୀତ କରିଥିଲେ । ମହାଦେବଙ୍କ 'କାର୍ତ୍ତିକ ମହାତ୍ମ୍ୟ' ଏକ ସର୍ବଜନାଦୃତ ଆଧ୍ୟାତ୍ମିକ କୃତି । ପବିତ୍ର କାର୍ତ୍ତିକ ମାସ ସାରା ଉତ୍କଳରେ ଧର୍ମମାସରୂପେ ପାଳିତ ହୋଇଥାଏ । ବିଷ୍ଣୁଚରିତର ମାହାତ୍ମ୍ୟ ଏହି କୃତିର ଉଦ୍ଦେଶ୍ୟ । ଗ୍ରାମେ ଗ୍ରାମେ ଘରେ ଘରେ କାର୍ତ୍ତିକ ମାସରେ ଏହି ମାହାତ୍ମ୍ୟ ପାରାୟଣ ହୁଏ । ଭାଷାର ସରଳତା ଏହି ମାହାତ୍ମ୍ୟର ଜନପ୍ରିୟତାର ପ୍ରଧାନ କାରଣ । 'ମାର୍କଣ୍ଡେୟ ପୁରାଣ' ଏବଂ 'ନୀଳାଦ୍ରି ମହୋଦୟ' ଏହି କବିଙ୍କର ଆଉ ଦୁଇଟି ରଚନା । ମହାଦେବ ଦାସଙ୍କ ରଚନାରେ ପଞ୍ଚସଖା ଯୁଗର କବି ଅତିବଡ଼ି ଜଗନ୍ନାଥ ଦାସଙ୍କର ଭାଷା, ଶୈଳୀ ଏବଂ ପରିବେଷଣରୀତି ବିଶେଷ ସାମ୍ୟ ପରିଦୃଷ୍ଟ । ପୁରାଣଲେଖକମାନଙ୍କ ମଧ୍ୟରେ ବିପ୍ର ନୀଳାମ୍ବର ଦାସଙ୍କ ନାମ ମଧ୍ୟ ଉଲ୍ଲେଖଯୋଗ୍ୟ । ତାଙ୍କର ଦେଉଳତୋଳା, ଜୈମିନି ଭାରତ, ପଦ୍ମ ପୁରାଣ ପ୍ରଭୃତି ଆଦୃତ ରଚନା । 'ଦେଉଳତୋଳା'ରେ କବି ପୁରୁଷୋତ୍ତମ କ୍ଷେତ୍ରରେ ଜଗନ୍ନାଥଙ୍କ ପ୍ରତିଷ୍ଠା ଏବଂ ମନ୍ଦିର ନିର୍ମାଣ ପ୍ରସଙ୍ଗ ବର୍ଣ୍ଣନା କରିଛନ୍ତି ।

ରାମାୟଣ ଏବଂ ମହାଭାରତର ଅମୃତ କଥାବସ୍ତୁ ଏବଂ ତାର ନୈତିକ ଉପାଦେୟତା, ସାମାଜିକ ଉପଯୋଗିତା ଗମ୍ଭୀରଭାବରେ ଭାରତୀୟମାନଙ୍କର ଜୀବନକୁ ପ୍ରଭାବିତ କରିପାରିଛି । ମୂଳ ସଂସ୍କୃତ ରଚନାର ଅବଲମ୍ବନରେ ବିଭିନ୍ନ ପ୍ରାଦେଶିକ ଭାଷାରେ ପଞ୍ଚଦଶ ଶତାବ୍ଦୀରୁ ରାମାୟଣ ମହାଭାରତର ବହୁ ବୈଚିତ୍ର୍ୟ-ପୂର୍ଣ୍ଣ ରୂପାନ୍ତର ଦେଖିବାକୁ ମିଳେ । ଷୋଡ଼ଶ ଶତାବ୍ଦୀରେ ଓଡ଼ିଆ ସାହିତ୍ୟରେ ବଳରାମ ଦାସଙ୍କ 'ଜଗମୋହନ ରାମାୟଣ' ଏବଂ ତତ୍ପୂର୍ବରୁ ସାରଳାଦାସଙ୍କର ମହାଭାରତ ରଚନା ଏଠାରେ ସ୍ମରଣୀୟ । ବଙ୍ଗଳା ଭାଷାରେ କୃତିବାସ ରାମାୟଣ, ଅସମିୟା ସାହିତ୍ୟରେ ମାଧବ କନ୍ଦଲୀଙ୍କ ରାମାୟଣ, ହିନ୍ଦୀରେ ତୁଳସୀ ଦାସଙ୍କ (ରାମଚରିତମାନସ) ରାମାୟଣ ଏବଂ ତାମିଲ ସାହିତ୍ୟରେ କମ୍ବନ ରାମାୟଣ ପ୍ରସଙ୍ଗ-କ୍ରମେ ଉଲ୍ଲେଖ କରାଯାଇପାରେ । ପ୍ରାଦେଶିକ ଜନଜୀବନ ଉପରେ ଏହିସବୁ ରଚନାର ପ୍ରଭାବ ଅତ୍ୟଧିକ । ମଧ୍ୟଯୁଗରେ ଅଧିକାଂଶ ସାରସ୍ୱତ ରଚନା ଏବଂ ଚିନ୍ତା ସୃଷ୍ଟି ତଥା କାବ୍ୟକାରମାନଙ୍କ ଚିନ୍ତାଧାରା ମହାଭାରତ ଏବଂ ରାମାୟଣର ବିଭିନ୍ନ ଉପାଖ୍ୟାନକୁ କେନ୍ଦ୍ର କରି ସମ୍ଭବ ହୋଇଥିଲା । ସେଥିପାଇଁ ମହାଭାରତ ଏବଂ ରାମାୟଣ କହିଲେ ଓଡ଼ିଶାର ଗ୍ରାମଗହଳରେ ନିର୍ଦ୍ଦିଷ୍ଟ ସମ୍ମାନିତ କବିମାନଙ୍କର କୃତିସମୂହ ଉଲ୍ଲେଖ କରାଯାଏ । ସେଥିମଧ୍ୟରେ ବିଶ୍ୱନାଥ ଖୁଣ୍ଟିଆଙ୍କର 'ବିଚିତ୍ର-ରାମାୟଣ', ହଳଧର ପଟ୍ଟନାୟକଙ୍କର ଅଧ୍ୟାତ୍ମରାମାୟଣ, ତେଲଙ୍ଗା ଗୋପାଳଙ୍କର ରାମାୟଣ, ମୂଳ ରାମାୟଣ ଶୀର୍ଷକ ସାର୍ଥକ ସୃଷ୍ଟି । ଏହି ରଚନା ମଧ୍ୟରେ କାହାର

*

କାହାର କାବ୍ୟରୂପ ପାଠକ ନିକଟରେ ବିଶେଷ ଆଦୃତ । ଏହିସବୁ ରଚନା ସାମାଜିକ ଜୀବନଗଠନର ଉପାଦାନ ଏବଂ ପ୍ରେରଣାରେ ପରିପୂର୍ଣ୍ଣ । ପୁଣ୍ୟଶ୍ଳୋକ ରାମଚରିତ ରାମାୟଣ-ଆଦର୍ଶ ରାମରାଜ୍ୟ, ଆଦର୍ଶ ଚରିତ୍ରର ଅନୁସରଣରେ ଜନ-ସାଧାରଣ ଜୀବନକୁ ଅନୁପ୍ରାଣିତ କରିବାରେ ଏହିସବୁ ରଚନାର ସଫଳତା ଅବଶ୍ୟ ସ୍ୱୀକାର୍ଯ୍ୟ । ଓଡ଼ିଶାର ଗ୍ରାମେ ଗ୍ରାମେ ଖୁଣ୍ଟିଆଙ୍କର ବିଚିତ୍ର ରାମାୟଣର 'ଶିଂଶପା ବୃକ୍ଷର ଡାଳେ, ହନୁ ବସି ମନେ ଭାଳେ'ର ଛାନ୍ଦ ନିଦାଘ ଏବଂ ବର୍ଷାର ମଧ୍ୟାହ୍ନକୁ ଯେପରି ଝଂକୃତ କରିଥାଏ—ଏହା ଶୁଣିଲେ ଜନଜୀବନରେ ରାମଚରିତର ପ୍ରଭାବ କିପରି ବ୍ୟାପକ ଏବଂ ସୁଦୂରପ୍ରସାରୀ ତାହା ସହଜରେ ଜଣାଯାଏ ।

ସେହିପରି ଅଷ୍ଟାଦଶ ଶତାବ୍ଦୀରେ ଗଞ୍ଜାମ ଜିଲ୍ଲା ଅନ୍ତର୍ଗତ ଧରାକୋଟର ରାଜା କୃଷ୍ଣଚନ୍ଦ୍ର ସିଂହଙ୍କର (୧୭୩୯-୧୭୮୮) ମହାଭାରତ ଏକ ବିଶିଷ୍ଟ କୃତି । ପଞ୍ଚଦଶ ଶତାବ୍ଦୀର ସାରଳା ଦାସଙ୍କ ମହାଭାରତ ଆଦୌ ଅନୁବାଦ ନୁହେଁ; ମାତ୍ର କୃଷ୍ଣସିଂହଙ୍କ ମହାଭାରତ ମୂଳ ସଂସ୍କୃତ ମହାଭାରତର ଅନୁବାଦ ବୋଲି ଜଣାଯାଏ । ସେଥିପାଇଁ ପାଠକମାନେ ମୂଳ ସଂସ୍କୃତ ରଚନାର ସମ୍ପୂର୍ଣ୍ଣ ବିବରଣୀ ତଥ୍ୟ ତଥା ରସାସ୍ୱାଦନ ପାଇଁ କୃଷ୍ଣସିଂହ ମହାଭାରତକୁ ଅନେକ ସମୟରେ ପସନ୍ଦ କରିଥାନ୍ତି । ରାମଭକ୍ତିଧର୍ମୀ ରଚନାସମୂହ ଓଡ଼ିଆ ସାହିତ୍ୟରେ ଏକ ବିଶିଷ୍ଟ ସ୍ଥାନ ଅଧିକାର କରିଅଛି । ଓଡ଼ିଶାର ଗ୍ରାମଗହଳରେ ରାମକାବ୍ୟପଠନଠାରୁ ରାମଲୀଳା ଅଭିନୟ ମାଧ୍ୟମରେ ରାମଚରିତ ପ୍ରଦର୍ଶନ ଏକ ବିଧିବଦ୍ଧ ସାମାଜିକ ବ୍ୟାପାର ବୋଲି କୁହାଯାଇପାରେ ।

କବି ଈଶ୍ୱର ଦାସ ଜଣେ ଭକ୍ତ ବୈଷ୍ଣବ ଥିଲେ । ସେ 'ଶ୍ରୀଚୈତନ୍ୟ ଭାଗବତ' ଗ୍ରନ୍ଥ ରଚନା କରିଥିଲେ । ଏହା ମୁଖ୍ୟତଃ ଏକ ଜୀବନୀଗ୍ରନ୍ଥ । ଏହା ନବାକ୍ଷରୀ ବୃତ୍ତରେ ଲିଖିତ । ବଙ୍ଗଭାଷାରେ ବୃନ୍ଦାବନ ଦାସଙ୍କ ରଚିତ ଶ୍ରୀଚୈତନ୍ୟ ଭାଗବତ ସଦୃଶ ଏହି ପୁସ୍ତକ ତଥ୍ୟପୂର୍ଣ୍ଣ । ଓଡ଼ିଆ ସାହିତ୍ୟରେ ଆଉ ଜଣେ ଈଶ୍ୱର ଦାସ ଥିଲେ । ସେ ଶିଶୁଶଙ୍କର ଦାସ ନାମରେ ପରିଚିତ । ତାଙ୍କର ରଚିତ 'ନଳଚରିତ' ଏକ କ୍ଷୁଦ୍ର କାବ୍ୟ । ନବାକ୍ଷରୀ ବୃତ୍ତରେ ଏହା ଲିଖିତ ।

ସପ୍ତଦଶ ଶତାବ୍ଦୀର ଓଡ଼ିଆ ସାହିତ୍ୟ କାଳ୍ପନିକ ଆଲଙ୍କାରିକ କାବ୍ୟ, ଶୃଙ୍ଗାରବର୍ଣ୍ଣନା ଏବଂ ପୌରାଣିକ ବ୍ୟାଖ୍ୟା ଅନୁଶୀଳନଦ୍ୱାରା ଚିହ୍ନିତ । ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧର ଓଡ଼ିଆ ସାହିତ୍ୟ ପୂର୍ବବର୍ତ୍ତୀ ସାହିତ୍ୟିକ କୃତିସମୂହର ପ୍ରଭାବ ଧାରଣ କରିଥିଲେ ହେଁ ପରିବର୍ତ୍ତିତ ଯୁଗଚେତନା ଯୋଗୁଁ ସେଥିରେ କେତେକ ପରିବର୍ତ୍ତନ ସଙ୍ଗଠିତ ହେଲା । ଏହି ଯୁଗ ସାଧାରଣତଃ ଓଡ଼ିଶାରେ ମରହଟ୍ଟା ରାଜତ୍ୱ ସହିତ ଚିହ୍ନିତ ହୋଇଥାଏ । ଏହି ଯୁଗରେ ବ୍ରଜନାଥ ବଡ଼ଜେନା, ଅଭିମନ୍ୟୁ ସାମନ୍ତସିଂହାର ଏବଂ ଏହି ଶତାବ୍ଦୀର ଅବସାନ ପରେ ଭଞ୍ଜବଂଶ

ଶତାବ୍ଦୀର ପ୍ରଥମାର୍ଦ୍ଧରେ କବି ଯଦୁମଣି ମହାପାତ୍ର, ଭକ୍ତଚରଣ ଦାସ ଏବଂ କବିସୂର୍ଯ୍ୟ ବଳଦେବ ରଥଙ୍କର ସାଧନା ଓ ସିଦ୍ଧି ଉଲ୍ଲେଖଯୋଗ୍ୟ । ପଦସରଳତା, ଅଳଙ୍କାର ପ୍ରୟୋଗରେ ସରଳତା, କଥାବସ୍ତୁରେ ସାମାନ୍ୟ ଭିନ୍ନତା ଏହି ଯୁଗର ପ୍ରଦତ୍ତ କାବ୍ୟର ଲକ୍ଷଣ ।

କବି ବ୍ରଜନାଥ ବଡ଼ଜେନା (୧୭୩୦-୧୭୯୫) ତାଙ୍କର ପରିଚୟ ସ୍ୱରୂପ ଲେଖିଥିଲେ—

"ମୋର ଘର ଢେଙ୍କାନାଳ ନଗରେ
ମୁକୁନ୍ଦଦେବଙ୍କ ଶାସନ ଆଗରେ ।
ପିତାଙ୍କ ନାମ ବାଲୁଙ୍କେଶ୍ୱର
ପଟ୍ଟନାୟକ କଲେ ନରେଶ୍ୱର ।"

(ଗୋପୀବିଳାପ)

ଢେଙ୍କାନାଳର ନରପତି ତ୍ରିଲୋଚନ ମହୀନ୍ଦ୍ର ବାହାଦୂର (୧୭୬୪-୧୭୯୮) ଏବଂ ମରହଟ୍ଟା ସୁବାଦାରଙ୍କ ମଧ୍ୟରେ ଯେଉଁ ସଂଘର୍ଷ ଘଟିଥିଲା, ସେଥିରେ ଢେଙ୍କାନାଳ ରାଜାଙ୍କର ବୀରତ୍ୱକୁ କେନ୍ଦ୍ର କରି କବି ଐତିହାସିକ 'ସମରତରଙ୍ଗ' କାବ୍ୟ (୧୭୮୧) ରଚନା କରିଥିଲେ । ଢେଙ୍କାନାଳ ରାଜା ମରହଟ୍ଟା ସୁବାଦାରଙ୍କୁ ରାଜସ୍ୱ ନ ଦେବାରୁ ଏହି ସଂଘର୍ଷ ଘଟିଥିଲା । 'ସମରତରଙ୍ଗ' କାବ୍ୟରେ ଉଭୟ ପକ୍ଷର ଯୁଦ୍ଧ-ସାଜସଜ୍ଜା, ସୈନିକମାନଙ୍କ ପରିଚୟ ବଡ଼ ଜୀବନ୍ତ ହୋଇପାରିଛି । କାବ୍ୟରେ ବହୁ ଯାବନିକ ଶବ୍ଦର ପ୍ରୟୋଗ କବିଙ୍କର ଭାଷାଜ୍ଞାନର ପରିଚାୟକ । ପୁରୁଷୋତ୍ତମ ଦାସଙ୍କ 'କାଞ୍ଚିକାବେରୀ'କୁ ଛାଡ଼ିଦେଲେ 'ସମରତରଙ୍ଗ' ସଦୃଶ ଐତିହାସିକ କାବ୍ୟ ତଦାନୀନ୍ତନ ଓଡ଼ିଆ ସାହିତ୍ୟରେ ବିରଳ । କଥାଶିଳ୍ପୀଭାବରେ ବ୍ରଜନାଥଙ୍କର ଅପୂର୍ବ କୃତିତ୍ୱ ତାଙ୍କ ଲିଖିତ କାହାଣୀ ପୁସ୍ତକ 'ଚତୁରବିନୋଦ'ରେ ସମାଲୋଚକମାନଙ୍କ ଦ୍ୱାରା ସ୍ୱୀକୃତ । ମଧ୍ୟଯୁଗୀୟ ଓଡ଼ିଆ ଗଦ୍ୟ ସାହିତ୍ୟର ସାର୍ଥକ ପ୍ରତିନିଧି ଭାବରେ ଚତୁର ବିନୋଦର ବୈଶିଷ୍ଟ୍ୟ ପ୍ରତିଷ୍ଠିତ । ଏହି କାହାଣୀରେ ବହୁ ଗଳ୍ପ, ଉପଗଳ୍ପ ଅନ୍ତର୍ଭୁକ୍ତ ।

ଶ୍ୟାମରାସୋତ୍ସବ, ଗୋପୀବିଳାପ, ଗୁଣ୍ଡିଚାବିଜେ, କେଳିକଳାନିଧି ପ୍ରଭୃତି କବିଙ୍କର ଅନ୍ୟାନ୍ୟ କୃତି । 'ଶ୍ୟାମରାସୋତ୍ସବ'ରେ ବୃନ୍ଦାବନରେ ଶ୍ରୀକୃଷ୍ଣ ଏବଂ ଗୋପୀମାନଙ୍କର ଶରତ୍‌କାଳୀନ ରାସ ହିଁ ବର୍ଣ୍ଣିତ । 'ଶ' ବର୍ଣ୍ଣ ନିୟମରେ ଏହି ପ୍ରେମଭକ୍ତିମୂଳକ କାବ୍ୟ ଲିଖିତ । ଏହି କେତେକ କାବ୍ୟରେ ଭଞ୍ଜୀୟ କାବ୍ୟଧର୍ମର ପ୍ରତିଫଳନ; ମାତ୍ର ରୀତିକାବ୍ୟର ଆଙ୍ଗିକ ଏତେବେଳକୁ ବହୁ ପରିମାଣରେ ସରଳୀକୃତ ହୋଇଯାଇଥିଲା ।

ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ କଟକ ଜିଲ୍ଲାର ଯାଜପୁର ଅଞ୍ଚଳରେ ଅଭିମନ୍ୟୁ ସାମନ୍ତସିଂହାର (୧୭୫୭-୧୮୦୭) ନାମକ ଜଣେ ପ୍ରତିଭାଶାଳୀ କବିଙ୍କର ଆବିର୍ଭାବ ଘଟିଥିଲା । ମଧ୍ୟଯୁଗୀୟ କାବ୍ୟର ଆଲଙ୍କାରିକ ମଣ୍ଡନ, ଶବ୍ଦପାଣ୍ଡିତ୍ୟ, ରାଧାକୃଷ୍ଣ-ପ୍ରେମଲୀଳାର ପରମ୍ପରାରେ ଅଭିମନ୍ୟୁଙ୍କ କାବ୍ୟକୃତି ପରିପୁଷ୍ଟ ବୋଲି କୁହାଯାଇପାରେ । ତାଙ୍କର ରଚନା ମଧ୍ୟରେ 'ବିଦଗ୍ଧ ଚିନ୍ତାମଣି' ହେଉଛି ରାଧାକୃଷ୍ଣ ପ୍ରେମଲୀଳାତ୍ମକ ଶ୍ରେଷ୍ଠ କାବ୍ୟ । କାବ୍ୟିକ କଳ୍ପନା, ଶୃଙ୍ଗାରବର୍ଣ୍ଣନା, କାବ୍ୟଶାସ୍ତ୍ର ନିର୍ଦ୍ଦେଶ ପାଣ୍ଡିତ୍ୟଦୃଷ୍ଟିରୁ ଗୌଡ଼ୀୟ ବୈଷ୍ଣବ ଧ୍ୟାନ-ଧାରଣାର କବି ଅଭିମନ୍ୟୁ ତାଙ୍କର ଗୁରୁ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାଙ୍କ ଦ୍ୱାରା ବିଶେଷ ଅନୁପ୍ରାଣିତ ହୋଇଥିଲେ । ଶୁଣାଯାଏ, ତାଙ୍କର ପରମାସତୀ ପତିବ୍ରତା ସ୍ତ୍ରୀଙ୍କ ଆତ୍ମକୃତ ବିୟୋଗରେ ହିଁ କବି ରାଧାଭାବରେ ବିହ୍ୱଳ ହୋଇ 'ବିଦଗ୍ଧଚିନ୍ତାମଣି' ରଚନାରେ ମନୋନିବେଶ କରିଥିଲେ ।

କବିଭାଷାରେ ସେଥିପାଇଁ ପ୍ରକଟିତ ହୋଇଛି—

"ହୀନ ଅଭିମନ୍ୟୁ ଜୀବ
ରାଧାଭାବ ଭାବି ବାହାରିଯିବ ଗୋ
ସତେ କି ଏ ଭାଗ୍ୟ ଦେଖାଯିବ ।"

ରାଧାକୃଷ୍ଣଙ୍କର ବୃନ୍ଦାବନଲୀଳା ଏହି କାବ୍ୟର ଉପଜୀବ୍ୟ । ରସଶୃଙ୍ଗାର, କୃଷ୍ଣ-ମାଧୁର୍ଯ୍ୟମୟ, ରାଧା-ମାଧୁର୍ଯ୍ୟମୟୀ କାବ୍ୟ ୯୬ ଗୋଟି ଛାନ୍ଦରେ ବିଭକ୍ତ; ମାତ୍ର ଅସମ୍ପୂର୍ଣ୍ଣ ଜଣାପଡ଼େ । କାବ୍ୟର ପ୍ରଥମ ଛାନ୍ଦ କାବ୍ୟର ଗୀତ, କବିର ଧର୍ମ ଦର୍ଶନ ଦୃଷ୍ଟିରେ ସୂଚନାପୂର୍ଣ୍ଣ । ମଧ୍ୟଯୁଗୀୟ କାବ୍ୟୋଚିତ କଥାବସ୍ତୁ ଅପ୍ରାକୃତ ପ୍ରେମମୂର୍ତ୍ତି ରାଧା-ହରି ନାୟକନାୟିକାଙ୍କ ପୂର୍ବରାଗ, ମିଳନ, ବିରହବର୍ଣ୍ଣନାରେ ପୂର୍ଣ୍ଣ । ପ୍ରକୃତିଚିତ୍ରଣ, ଗୃହରୀତିର ବ୍ୟାଖ୍ୟା ମଧ୍ୟ ତଦନୁରୂପ । ମହାଭାବରତିରୂପା ରାଧା ଶୃଙ୍ଗାରମୂର୍ତ୍ତି କୃଷ୍ଣଙ୍କ ସହିତ ପ୍ରେମସାଗରରେ ସର୍ବଦା ନିମଜ୍ଜିତ । କବିଙ୍କର କଳ୍ପନା କିପରି ଉଚ୍ଚକୋଟୀକୁ ସ୍ପର୍ଶ କରିପାରିଥିଲା ତାହାର ଗୋଟିଏ ଉଦାହରଣ ହେଉଛି—

"ବିଶ୍ବରଚିତ ପଦ୍ମଯୋନି ସୁଧା ଅନୁରାଗ ଘେନି
ବିଶ୍ବ ତୁଳନାରେ ତୁଳି ତୁଳନା କରେ,
ଉଚ୍ଛ୍ୱାସ ଭାର ଉଠିଲା, ଗରୁଆ ତଳକୁ ଗଲା
ନିଇମିତ ମିଚଉଛି ଜଣା ବିଧିରେ ।
ସୁଧା ଅନୁରାଗ ସଙ୍ଗତେ
ସରି କରିପାରିବ ବୋଲି କେ କେମନ୍ତେ ।"

ଏହି କାବ୍ୟରୁ ରାଧାକୃଷ୍ଣଙ୍କ ପ୍ରୀତି-ପୃଷ୍ଠଭୂମିରେ ତତ୍କାଳୀନ ଓଡ଼ିଆ ସମାଜର ସମ୍ୟକ୍ ସୂଚନା ମଧ୍ୟ ମିଳିଥାଏ ।

କବିଙ୍କର ଅନ୍ୟାନ୍ୟ କାବ୍ୟ ହେଉଛି ସୁଲକ୍ଷଣା, ପ୍ରେମକଳା, ରସବତୀ, ପ୍ରେମଚନ୍ଦ୍ରାମୃତ, ବାଘଗୀତ, ଚଢ଼େଇଗୀତ ଶୀର୍ଷକ କ୍ଷୁଦ୍ର କ୍ଷୁଦ୍ର କବିତା ମଧ୍ୟ ସେ ରଚନା କରିଥିଲେ । କବି ନଅବର୍ଷ ବୟସରେ ଯେଉଁ କବିତା ରଚନା କରିଥିଲେ, ସେଥିରୁ ତାଙ୍କର କବିତ୍ୱ ଅନୁମେୟ—

"କର୍ମିଙ୍ଗା ଗଛର ଗୁଇ ଗୋ
ମୋର ହିଁ ଗୋ
କରମ ଯାହାର ସୁଫଳ ହୋଇବ କୃଷ୍ଣଙ୍କୁ ଲଭିବ ସେହି ଗୋ
ମୋର ହିଁ ଗୋ ।"

ଅଭିମନ୍ୟୁଙ୍କର ସମୟ ହେଉଛି ଦେଶରେ ମରହଟ୍ଟା ରାଜତ୍ୱକାଳ; ଅର୍ଥାତ୍ ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ । ଏହି ଯୁଗରେ ସମାଜର ଗତିବିଧି ଚଳଣି ଯେପରି ଥିଲା, ଅଭିମନ୍ୟୁଙ୍କ କାବ୍ୟରେ ତାହାର ସୂଚନାର ଅଭାବ ନାହିଁ । ସଂକ୍ଷେପରେ କୃଷ୍ଣପ୍ରେମରସ-ରସିକ କବି ଅଭିମନ୍ୟୁ ସାହିତ୍ୟସାଧନରେ ଯେପରି ରାଧାକୃଷ୍ଣଙ୍କ ଆରାଧନାରେ ନିଜକୁ ଉତ୍ସର୍ଗ କରିଥିଲେ ।

"ସାମନ୍ତସିଂହାର ଧ୍ୟାନ କରିଛି କାମନା
କୃଷ୍ଣପ୍ରେମରସ ବିନା ନୋହିବ ଭାବନା
କଳାମାଣିକ ରେ ।"

ବିଷ୍ଣୁଦାସଙ୍କ ଲିଖିତ 'ପ୍ରେମଲୋଚନା' ଏକ କାଳ୍ପନିକ କାବ୍ୟ । ଏଥିରେ କାବ୍ୟ-ନିର୍ଦ୍ଦିଷ୍ଟ ନାୟକନାୟିକାଙ୍କର ଯୌବନବର୍ଣ୍ଣନା, ବିଭିନ୍ନ ଋତୁପ୍ରସଙ୍ଗ, ଜଳକ୍ରୀଡ଼ା, ସ୍ୱୟମ୍ବର, ମିଳନ ଇତ୍ୟାଦି ବର୍ଣ୍ଣନା ଚିତ୍ରିତ । ଏହି ଯୁଗର ଆଉ ଏକ ଉଲ୍ଲେଖଯୋଗ୍ୟ କାଳ୍ପନିକ କାବ୍ୟ ହେଉଛି 'ଲୀଳାବତୀ' । ଏହାର ଲେଖକ ବାଣପୁର ରାଜା ରଘୁନାଥ ହରିଚନ୍ଦନ । କାବ୍ୟରେ ରାଜକୁମାରୀ ଏବଂ ରାଜକୁମାରଙ୍କ ପ୍ରେମାଶ୍ରିତ ଚିତ୍ରଣ ଦେଖିବାକୁ ମିଳେ । ଗ୍ରନ୍ଥଟି ସମାପ୍ତ ହୋଇ ନ ଥିବାର ଜଣାଯାଏ ।

କୃଷ୍ଣ-କାବ୍ୟପର୍ଯ୍ୟାୟରେ ଊନବିଂଶ ଶତାବ୍ଦୀର ବୈଷ୍ଣବ-କବି ଭକ୍ତଚରଣ ଦାସଙ୍କର (୧୭୮୦-୧୮୫୫) 'ମଥୁରାମଙ୍ଗଳ' କାବ୍ୟ ଓଡ଼ିଆ ସାହିତ୍ୟରେ ଏକ ବହୁପଠିତ ଜନାଦୃତ କୃତି । କଥାବସ୍ତୁ ଗତାନୁଗତିକ ହେଲେହେଁ ପ୍ରକାଶଭଙ୍ଗୀର କୌଶଳ, ଭାଷାର ଚମତ୍କାରିତା ଏବଂ କଳ୍ପନାନୈପୁଣ୍ୟ ଯୋଗୁଁ 'ମଥୁରାମଙ୍ଗଳ' ପୂର୍ବଲିଖିତ ରଚନାମାନଙ୍କଠାରୁ ସ୍ୱତନ୍ତ୍ର ସଫଳତାର ଅଧିକାରୀ । ଓଡ଼ିଶାର

ପୂର୍ବପଲ୍ଲୀର ପାଠଶାଳାମାନଙ୍କରେ ଛାତ୍ରଛାତ୍ରୀମାନଙ୍କର ଏକମାତ୍ର ପାଠ୍ୟରୂପେ ବ୍ୟବହୃତ ହେଉଥିଲା । ମଥୁରାଯାତ୍ରା ଯୋଗୁଁ ଗୋପୀମାନଙ୍କର ବିରହ, କଂସବଧ, କୁବ୍ଜା ଉଦ୍ଧାର, ଗୋପୀଭକ୍ତିର ଉତ୍କର୍ଷ କାବ୍ୟରେ ସ୍ଥାନ ପାଇଛି ।

କବିଙ୍କର ଭକ୍ତିପ୍ରାଣତା ବେଶ୍ ପ୍ରକଟିତ—

"କୃଷ୍ଣଚରିତ ଅମୃତ ବାରିଧି
କଳି-କଳୁଷ-ରୋଗକୁ ଔଷଧି ।"

କୃଷ୍ଣଭକ୍ତି ଗୋପୀପ୍ରେମର ଉତ୍କର୍ଷ ଅପେକ୍ଷା 'ମଥୁରାମଙ୍ଗଳ' କାବ୍ୟର ଲୋକପ୍ରିୟତାର କାରଣ ଭିନ୍ନ ଉପାଦାନରେ ନିହିତ । ତାହା ହେଉଛି କାବ୍ୟ-ରଚନାଶୈଳୀର କମନୀୟ ସରଳତା ଏବଂ ବ୍ୟବହୃତ ପଦାବଳୀର ଚମତ୍କାରିତା । ମାତା ଯଶୋଦାଙ୍କର କ୍ରନ୍ଦନ ଯେ କୌଣସି ଓଡ଼ିଆ ଜନନୀର କ୍ରନ୍ଦନ ଅନୁରୂପ ।

ସମଗ୍ର ଓଡ଼ିଆ ସାହିତ୍ୟରେ ଭଙ୍ଗୁର ମାନବଜୀବନର ବାସ୍ତବକରଣ ସୂଚିତ ଏବଂ ଅସାରତା-ପ୍ରଖ୍ୟାପକ କବିତା ମଧ୍ୟରେ ଭକ୍ତଚରଣଙ୍କ 'ମନବୋଧ ଚଉତିଶା' କବିତା ସ୍ୱୀୟ ଭାବଗାମ୍ଭୀର୍ଯ୍ୟ ଏବଂ ଭାବପ୍ରବଣତାଯୋଗୁଁ ଆସନର ଅଧିକାରୀ । ଚଉତିଶା ଅକ୍ଷର ନିୟମରେ ଲିଖିତ ଏହି କବିତା ଓଡ଼ିଶାରେ ଆବାଳବୃଦ୍ଧବନିତାଙ୍କ କଣ୍ଠରେ ଝଂକୃତ ହୋଇଥାଏ । ସେହିପରି ତାଙ୍କର ଆଉ ଏକ ଜନପ୍ରିୟ ଚଉତିଶା 'କଳାକଳେବର ଚଉତିଶା' ।

କବି ପୁରୀ ଜିଲ୍ଲାର ରଣପୁର ଅଞ୍ଚଳର ଅଧିବାସୀ ଥିଲେ ଏବଂ ରଣପୁରର ସୁନାଖଳା ଗ୍ରାମରେ ତାଙ୍କର ପ୍ରତିଷ୍ଠିତ ମଠ ବର୍ତ୍ତମାନ ବିଦ୍ୟମାନ । କବି ଜଗନ୍ନାଥଙ୍କର ଜଣେ ବିଶ୍ୱସ୍ତ ଭକ୍ତ ଥିଲେ ।

ଭୀମା ଧୀବର 'କପଟପାଶା' ନାମକ ଏକ କ୍ଷୁଦ୍ର ରଚନାର ଲେଖକ । ମହାଭାରତର ଏକ ଗଳ୍ପକୁ ଆଶ୍ରୟ କରି କାବ୍ୟଟି ରଚିତ ।

ଦନାଇ ଦାସଙ୍କ 'ଗୋପୀଭାଷା', ଭକ୍ତଚରଣ ଦାସଙ୍କ 'ମଥୁରାମଙ୍ଗଳ' ଏବଂ ଭୀମା ଧୀବରଙ୍କ 'କପଟପାଶା' ରଚନାତ୍ରୟ ଓଡ଼ିଆ ପାଠକମାନଙ୍କ ମଧ୍ୟରେ ଖୁବ୍ ଲୋକପ୍ରିୟ ହୋଇପାରିଛି । କଥାବସ୍ତୁର ଆବେଦନ ଅପେକ୍ଷା ଏହି କୃତିସମୂହର ଆଙ୍ଗିକ ଶିଳ୍ପଶୈଳୀ ତଥା ଭାଷାଗତ ସରଳତା ଏତାଦୃଶ ଲୋକପ୍ରିୟତାର ପ୍ରଧାନ କାରଣ ବୋଲି କୁହାଯାଇପାରେ ।

ପ୍ରାଚୀନଓଡ଼ିଆ ସାହିତ୍ୟରେ ଶ୍ରୀଜଗନ୍ନାଥଙ୍କ ମହିମା ଓ ମାହାତ୍ମ୍ୟ ବର୍ଣ୍ଣନା-କ୍ରମରେ ବହୁଲେଖକଙ୍କର ସଂଖ୍ୟାଧିକ କାବ୍ୟ-କବିତା, ଭଜନ, ଜଣାଣ, ଚଉତିଶା ପରିଲକ୍ଷିତ ହୋଇଥାଏ । ସେଥିମଧ୍ୟରେ ବହୁ ରଚନାର ଲୋକପ୍ରିୟତା ପ୍ରମାଣିତ ହୋଇସାରିଛି । ସବୁଠାରୁ ବିଚିତ୍ର ବିଷୟ ଯେ ଅଣଓଡ଼ିଆ ବିଧର୍ମୀ ଯବନକବି

ସାଲବେଗ ମଧ୍ୟ ଜଗନ୍ନାଥ ଧର୍ମ ଓ ଶ୍ରୀଜଗନ୍ନାଥଙ୍କ ମହିମା ଓ ଭକ୍ତିଦ୍ୱାରା ଅନୁପ୍ରାଣିତ ହୋଇ କେତେକ ସଙ୍ଗୀତ ରଚନା କରିଥିଲେ । ସେଥିମଧ୍ୟରେ ତାଙ୍କର ଲିଖିତ—

"ଆହେ ନୀଳଶଇଳ, ପ୍ରବଳ ମତ୍ତ ବାରଣ
ମୋ ଆରତ-ନଳିନୀ-ବନକୁ କର ଦଳନ ।"

ଏବଂ "ଆହେ ନୀଳଗିରି,
ତୁମ ଶ୍ରୀଭୁଜେ ଦୟା ଣା କେରି କେରି ।"

ଓଡ଼ିଶାର ପୁରପଲ୍ଲୀରେ ଏପର୍ଯ୍ୟନ୍ତ ଝଂକୃତ ହୋଇଆସୁଛି । ସେହିପରି ଆଉ ଜଣେ ଭକ୍ତକବି ଭୀମା ଭୋଇଙ୍କର ଅଲେଖ ମହିମା ସମ୍ବନ୍ଧୀୟ ଅଜସ୍ର କବିତା ଓଡ଼ିଆ ଭକ୍ତି-ସାହିତ୍ୟରେ ଅମୂଲ୍ୟ ସମ୍ପଦ ହୋଇ ରହିଛି ।

ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଓଡ଼ିଆ ସାହିତ୍ୟରେ ପାଶ୍ଚାତ୍ୟ ଶିକ୍ଷା-ସଂସ୍କୃତିର କ୍ରମଶଃ ପ୍ରଭାବ ଅନୁଭୂତ ହେବା ଯୁଗରେ ଯେଉଁ କେତେଜଣ ମୁଷ୍ଟିମେୟ କବି ପୂର୍ବଯୁଗ କାବ୍ୟପଦ୍ଧତି ଆଦର୍ଶରେ କାବ୍ୟ ରଚନା କରିଥିଲେ, ସେମାନଙ୍କ ମଧ୍ୟରେ ଆଳଙ୍କାରିକ କବି ଯଦୁମଣି ମହାପାତ୍ର (୧୭୮୧-୧୮୬୬) ଏବଂ ଗଞ୍ଜାମର କବିସୂର୍ଯ୍ୟ ବଳଦେବ ରଥ (୧୭୮୯-୧୮୪୫) ସଙ୍ଗୀତଜ୍ଞ ଏବଂ ରାଧାକୃଷ୍ଣ-ପ୍ରେମପାଗଳ ଗୋପାଳକୃଷ୍ଣ ପଟ୍ଟନାୟକ (୧୭୮୫-୧୮୬୨) ଏବଂ ବନମାଳୀ ପ୍ରମୁଖଙ୍କ ନାମ ସ୍ମରଣୀୟ । ଯଦୁମଣି ତାଙ୍କର କାବ୍ୟ 'ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର' ଏବଂ 'ରାଘବବିଳାସ'ରେ ରୀତିଯୁଗ କାବ୍ୟ-ପ୍ରଣାଳୀ ଅନୁସରଣ କରିଥିଲେ । ତାଙ୍କ କାବ୍ୟରେ ଶବ୍ଦ-ପାଣ୍ଡିତ୍ୟ, କଳ୍ପନାବିଳାସ, ମଧ୍ୟଯୁଗୀୟ କାବ୍ୟକାରଙ୍କ ଶବ୍ଦପାଣ୍ଡିତ୍ୟ ଏବଂ କଳ୍ପନା-ବିଳାସ ଅପେକ୍ଷା ଅଧିକ କ୍ଲିଷ୍ଟ ଏବଂ ଗାମ୍ଭୀର୍ଯ୍ୟପୂର୍ଣ୍ଣ । ବ୍ୟକ୍ତିଗତ ଜୀବନରେ କବି କବିତାମାଧ୍ୟମରେ ତୀକ୍ଷ୍ଣ ବୁଦ୍ଧିର ପରିଚୟ ଦେଇଥିଲେ ।

ରସିକକବି ସଙ୍ଗୀତଜ୍ଞ କବିସୂର୍ଯ୍ୟ ବଳଦେବଙ୍କର (୧୭୮୯-୧୮୪୫) କାବ୍ୟକୃତ 'ଚନ୍ଦ୍ରକଳା' ପ୍ରଭୃତି ମଧ୍ୟ ମଧ୍ୟଯୁଗୀୟ ନାୟକ-ନାୟିକା ପ୍ରେମବର୍ଣ୍ଣନାରେ ବିଶେଷ ରସୋତ୍ତୀର୍ଣ୍ଣ ହୋଇପାରିଛି । ଓଡ଼ିଆ ସାହିତ୍ୟରେ ରାଧାକୃଷ୍ଣ-ଶୃଙ୍ଗାରଶ୍ରିତ 'ଚମ୍ପୂ' ରଚନା ବଳଦେବଙ୍କର ଏକ ସ୍ୱତନ୍ତ୍ର ସଫଳତା । 'କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ'ର ଅଲଙ୍ଘ୍ୟ ଆକର୍ଷଣ ହେଉଛି ତା'ର ସାଙ୍ଗୀତିକ ସଂଯୋଜନା । କବିସୂର୍ଯ୍ୟଙ୍କର 'ସର୍ପ ଜଣାଣ'ରେ ଭକ୍ତି ଏବଂ ରସର ସମନ୍ୱୟ ଘଟିଛି । ରାଧାକୃଷ୍ଣ-ପ୍ରେମଲୀଳାର ପୃଷ୍ଠଭୂମିରେ କବି ନାୟକ-ନାୟିକାଙ୍କ ଶୃଙ୍ଗାରରସାଶ୍ରିତ ଜୀବନକୁ ପ୍ରତିଫଳିତ କରିପାରିଛନ୍ତି ।

ଏହି ଯୁଗର ଗୋପାଳକୃଷ୍ଣ ଓ ବନମାଳୀଙ୍କର ଅଜସ୍ର ସାଙ୍ଗୀତିକ ରଚନା ଓଡ଼ିଆ ସାହିତ୍ୟକୁ ପରିପୁଷ୍ଟ କରିଥିଲା । ରାଧାକୃଷ୍ଣଙ୍କର ମାନ-ଅଭିମାନ, ପ୍ରେମ-

ବିରହ, ମିଳନର ପୃଷ୍ଠଭୂମିରେ ଗୋପାଳକୃଷ୍ଣଙ୍କର ସଙ୍ଗୀତଗୁଡ଼ିକ ଓଡ଼ିଆର ପ୍ରାଣତନ୍ତ୍ରୀକୁ ଯୁଗ-ଯୁଗ ପାଇଁ ଝଂକୃତ କରିପାରିଛି । କୀର୍ତ୍ତନ, ପ୍ରାର୍ଥନା, କୋଇଲି ପ୍ରଭୃତି ଅଜସ୍ର ଗୀତିକବିତା, ବାତ୍ସଲ୍ୟ, ନବାନୁରାଗ ଏବଂ ରାଧାକୃଷ୍ଣପ୍ରେମର ମାନବିକ ଆବେଗଦ୍ୱାରା ଚର୍ଚ୍ଚିତ । ସତେ ଅବା ସମାଜସ୍ଥ ବ୍ୟକ୍ତିର ଇନ୍ଦ୍ରିୟଗ୍ରାହ୍ୟ ପ୍ରଣୟାନୁଭୂତି ଭକ୍ତକବି ସଙ୍ଗୀତଜ୍ଞ ଗୋପାଳକୃଷ୍ଣଙ୍କ ପଦାବଳୀ ମାଧ୍ୟମରେ ମୂର୍ତ୍ତିମନ୍ତ ହୋଇପାରିଛି ।

ଅଭିମନ୍ୟୁ, କବିସୂର୍ଯ୍ୟ, ଭକ୍ତଚରଣ, ଗୋପାଳକୃଷ୍ଣ, ବନମାଳୀ ବିଗତ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଶବ୍ଦାଡ଼ମ୍ବର, ଅର୍ଥାଡ଼ମ୍ବର ପରିପୁଷ୍ଟ ଓଡ଼ିଆ କାବ୍ୟ ସଙ୍ଗୀତ ପରମ୍ପରାକୁ ବଜାୟ ରଖିଥିଲେ । ଛନ୍ଦ ଏବଂ ସଙ୍ଗୀତାଶ୍ରିତ ମଧ୍ୟଯୁଗୀୟ କାବ୍ୟସ୍ରୋତର ପ୍ରବାହ ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧୀୟ ଓଡ଼ିଆ ସାହିତ୍ୟର ଯଥାର୍ଥ ପ୍ରାଣସ୍ପନ୍ଦନ ଥିଲା, ଯାହାର ବୈପ୍ଳବିକ ରୂପଗତ ଏବଂ ଭାବଗତ ପରିବର୍ତ୍ତନ ଇଂରେଜ ଶାସନରେ ଘଟିଥିଲା । ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଓଡ଼ିଆ ସାହିତ୍ୟର ଆଉ ଜଣେ ଭକ୍ତକବିଙ୍କର ଆବିର୍ଭାବ ଘଟିଥିଲା । ସେ ହେଉଛନ୍ତି ଭୀମ ଭୋଇ (୧୮୫୫-୧୮୯୫) । ସେ ତାଙ୍କର ଅଲେଖଧର୍ମ ପ୍ରଚାର ଏବଂ ଅଜସ୍ର ଭକ୍ତିଧର୍ମୀ ଗୀତିକବିତା ରଚନା ଯୋଗୁଁ ଓଡ଼ିଆ ସାହିତ୍ୟରେ ବରାବର ଆଲୋଚ୍ୟ । ଭକ୍ତପ୍ରାଣର ଆବେଗ, ଗୂଢ଼ ଦାର୍ଶନିକ ଚିନ୍ତା ଏକତ୍ର ସମନ୍ୱିତ ହୋଇ ସାହିତ୍ୟ-ରାଜ୍ୟରେ ଏକ ଅପୂର୍ବ ପ୍ରଭାବ ସୃଷ୍ଟି କରିପାରିଛି । ଓଡ଼ିଶାର ଜନସାଧାରଣଙ୍କ ଉପରେ ତାଙ୍କ ଭକ୍ତକବିତାର ଏବଂ ଧର୍ମ-ପ୍ରବର୍ତ୍ତକ ଜୀବନର ପ୍ରଭାବ ଏବେ ମଧ୍ୟ ଅତୁଟ ରହିଛି । ସୋନପୁର ଅନ୍ତର୍ଗତ ଖଲିଆପାଲିଠାରେ ତାଙ୍କର ପୂଜା ମନ୍ଦିର ଅବସ୍ଥିତ ଏବଂ ପ୍ରତିବର୍ଷ ମାଘପୂର୍ଣ୍ଣିମୀ ତିଥିରେ ସେଠାରେ ଅଲେଖମାନଙ୍କର ସମାବେଶ ଉଭୟ ଧର୍ମ ଓ ସାହିତ୍ୟଚର୍ଚ୍ଚାର ପରିବେଶ ସୃଷ୍ଟି କରିଥାଏ । 'ସ୍ତୁତି ଚିନ୍ତାମଣି' ତାଙ୍କର ଏକ ମୂଲ୍ୟବାନ ଭକ୍ତିରସାତ୍ମକ ଏବଂ ଜୀବନାନୁଭୂତିମୂଳକ ରଚନା ।

## ଓଡ଼ିଆ ସାହିତ୍ୟରେ ଆଧୁନିକତାର ଉନ୍ମେଷ

ଓଡ଼ିଶାର ରାଜନୈତିକ ଇତିହାସରେ ଇଂରେଜମାନଙ୍କର ୧୮୦୩ରେ ଓଡ଼ିଶା ଅଭିଯାନ ଯେପରି ଏକ ଘଟଣାବହୁଳ ଅଧ୍ୟାୟ, ଓଡ଼ିଶାର ସାହିତ୍ୟ ଏବଂ ସଂସ୍କୃତି କ୍ଷେତ୍ରରେ ଊନବିଂଶ ଶତାବ୍ଦୀ ସେହିପରି ଗୁରୁତ୍ୱପୂର୍ଣ୍ଣ । ଏହି ଶତାବ୍ଦୀରେ ଓଡ଼ିଶାର ସାଂସ୍କୃତିକ ଜୀବନରେ ଏକ ବିପୁଳ ପରିବର୍ତ୍ତନ ପ୍ରତ୍ୟକ୍ଷୀଭୂତ ହୋଇଥିଲା । ଶତାବ୍ଦୀର ପ୍ରଥମାର୍ଦ୍ଧରେ ଖ୍ରୀଷ୍ଟିୟାନ ମିଶନାରୀମାନଙ୍କର ଓଡ଼ିଶାରେ ପଦାର୍ପଣ, ଖ୍ରୀଷ୍ଟଧର୍ମ-ବାଣୀ ପ୍ରଚାରିତ କରିବା ଉଦ୍ଦେଶ୍ୟରେ ସେମାନଙ୍କ ଦ୍ୱାରା ବାଇବେଲ୍‌ର ଓଡ଼ିଆ ଅନୁବାଦ, ବିଭିନ୍ନ ସ୍ଥାନରେ ବିଦ୍ୟାଳୟ ପ୍ରତିଷ୍ଠା, ନୂତନ ପ୍ରଣାଳୀରେ

ପାଠ୍ୟପୁସ୍ତକ ପ୍ରଣୟନ ଇତ୍ୟାଦି ଘଟଣା ପ୍ରଥମ ପର୍ଯ୍ୟାୟରେ ଓଡ଼ିଶାରେ ପାଶ୍ଚାତ୍ୟ-ଶିକ୍ଷା, ରୁଚି ଏବଂ ପ୍ରଭାବର ଗୋଟାଏ ଭିତ୍ତିଭୂମି ସ୍ଥାପନ କରିଥିଲା । ୧୮୦୦ ମସିହାରେ କଲିକତାରେ ଫୋର୍ଟ ଉଇଲିୟମ୍ କଲେଜ ପ୍ରତିଷ୍ଠିତ ହୋଇଥିଲା ଏବଂ କର୍ତ୍ତୃପକ୍ଷ ଉଇଲିୟମ କେରିଙ୍କ ସହାୟତାରେ ଖ୍ରୀଷ୍ଟିୟାନ୍ ପାଦ୍ରୀମାନଙ୍କର ଭାରତୀୟ ଭାଷା ସାହିତ୍ୟ କ୍ଷେତ୍ରରେ କାର୍ଯ୍ୟ କରିଥିଲେ । ସେଥିମଧ୍ୟରେ ଓଡ଼ିଆ ଭାଷାରେ ବାଇବେଲ୍‌ର ଗଦ୍ୟାନୁବାଦ, ଓଡ଼ିଶାରେ ନବୀନଢଙ୍ଗରେ ବିଦ୍ୟାଳୟ ପ୍ରତିଷ୍ଠା, ନବାଗତ ଛାତ୍ରଛାତ୍ରୀମାନଙ୍କର ପ୍ରୟୋଜନୀୟ ପାଠ୍ୟ ପୁସ୍ତକ ରଚନାର କାର୍ଯ୍ୟକ୍ରମ ହିଁ ଉଲ୍ଲେଖଯୋଗ୍ୟ । ଉଇଲିୟମ କେରି (୧୭୬୧-୧୮୩୪) ପ୍ରଥମେ ମୃତ୍ୟୁଞ୍ଜୟ ବିଦ୍ୟାଳଙ୍କାର ପ୍ରମୁଖ ଓଡ଼ିଆ ପଣ୍ଡିତମାନଙ୍କ ସାହାଯ୍ୟରେ ବାଇବେଲର ଓଡ଼ିଆରେ ଅନୁବାଦ (୧୮୦୯) କରିଥିଲେ । ମୋହନ ଦାସ ଠାକୁରଙ୍କର ଲିଖିତ ଓଡ଼ିଆଭାଷା ଅଭିଧାନ ସେହି ସମୟର ଏକ ଉଲ୍ଲେଖଯୋଗ୍ୟ ଉଦ୍ୟମ । ବିଜ୍ଞାନ, ଇତିହାସ, ଭୂଗୋଳ ଏବଂ ଓଡ଼ିଆ ଭାଷାର ବ୍ୟାକରଣ ପ୍ରଭୃତି ଉପଯୋଗୀ ପାଠ୍ୟ-ପୁସ୍ତକ ଲେଖିବାରେ ଖ୍ରୀଷ୍ଟିୟାନ୍ ମିସ୍‌ନାରୀ ଆମସ୍‌ସଟନ୍, ଏଡ୍‌ଓ୍ବାର୍ଡ ମାର୍ସମାନ, ମିଷ୍ଟର ଡବଲ୍ୟୁ. ସି. ଲେସି, ରେଭେରେଣ୍ଡ୍ ଜେ. ଫିଲିପ୍‌ସ ପ୍ରଭୃତି, ପୁନଶ୍ଚ ପଣ୍ଡିତ ବିଶ୍ୱମ୍ଭର ବିଦ୍ୟାଭୂଷଣ, ପଣ୍ଡିତ ଭୁବନାନନ୍ଦ ନ୍ୟାୟାଳଙ୍କାର ଆଦି ନୂତନ ଭାବରେ ଶିକ୍ଷାପ୍ରାପ୍ତ ସ୍ଥାନୀୟ ପଣ୍ଡିତଗଣ ଏହି ଯୁଗର ସ୍ମରଣୀୟ ବ୍ୟକ୍ତି ।

ମିସନାରୀମାନଙ୍କ ଦ୍ୱାରା ସର୍ବପ୍ରଥମେ କଟକଠାରେ ଇଂଲିଶ୍ ଚ୍ୟାରିଟି ସ୍କୁଲ ୧୮୨୨ରେ ସ୍ଥାପିତ ହୋଇଥିଲା । ଏହାପରେ ପୁରୀ, କଟକ, ବାଲେଶ୍ୱର ଏବଂ ସମ୍ବଲପୁର ଅଞ୍ଚଳରେ ବିଦ୍ୟାଳୟସମୂହ ବିଭିନ୍ନ ସମୟରେ ସ୍ଥାପିତ ହେବାର ଜଣାଯାଏ ।

ଊନବିଂଶ ଶତାବ୍ଦୀର (୧୮୩୦-୧୮୫୦ ମଧ୍ୟରେ) ଖ୍ରୀଷ୍ଟିୟାନ ମିସନାରୀ-ମାନଙ୍କ ମଧ୍ୟରୁ କେତେକ ଓଡ଼ିଆଭାଷାରେ ପାଠ୍ୟପୁସ୍ତକ ଲେଖି ଜ୍ଞାନବିଜ୍ଞାନ ପ୍ରସାର ତଥା ନୂତନ ରୁଚିବୋଧସୃଷ୍ଟି କରିବାରେ ବିଶେଷ ସହାୟକ ହୋଇଥିଲେ । ନଜିରେ ମିଷ୍ଟର ଆମସ୍‌ସଟନ୍‌ଙ୍କର ଇଂରାଜୀ ଓ ଓଡ଼ିଆ ବ୍ୟାକରଣ (୧୮୩୧), ପଦାର୍ଥ ବିଦ୍ୟାସାର (୧୮୩୨), ନୀତିକଥା, ଇଜି ରିଡ଼ିଂ ଲେସନ, ଇଣ୍ଟ୍ରୋଡ଼କ୍‌ଟରୀ ଲେସନ୍ (୧୮୪୩), ଅଭିଧାନ (୧୮୪୪), ଇଂରାଜୀରେ ପ୍ରଥମ ଶିକ୍ଷା ପୁସ୍ତକ (୧୮୪୪), ଭର୍ଣ୍ଣାକ୍ୟୁଲାର କ୍ଲାସ ବୁକ୍ ରିଡ଼ର (୧୮୪୬), ଓଡ଼ିଆ ଇନ୍‌ଷ୍ଟ୍ରକ୍‌ଟର (୧୮୪୬), ଓଡ଼ିଶାର ଇତିହାସ (୧୮୪୬), ଓଡ଼ିଆ ପ୍ରାଇମର (୧୮୫୦), ନୀତିକଥା (୧୮୫୨) ପ୍ରଭୃତି ବହୁ ଛୋଟବଡ଼ ପୁସ୍ତକ ରଚନା କରିଥିଲେ । ମିଷ୍ଟର ଡବଲ୍ୟୁ. ସି. ଲେସି ମଧ୍ୟ ଓଡ଼ିଆ ବ୍ୟାକରଣ (୧୮୫୫), ନୀତିକଥା (୧୮୫୫), ହିତୋପଦେଶ (୧୮୫୫) ଏବଂ ରେଭେରେଣ୍ଡ

✻

ଜେ. ଫିଲପ୍‌ସ ଓଡ଼ିଆ ଭୂଗୋଳ ପୁସ୍ତକ ରଚନା କରିଥିଲେ । ଏତଦ୍‌ବ୍ୟତୀତ ସଟନ୍ ସାହେବ ବତିଶ ସିଂହାସନ (୧୮୫୦), ଗୀତ ଗୋବିନ୍ଦ (୧୮୪୦), ଉତ୍କଳ ଭାଷାର୍ଥଭିଧାନ, ଅମର କୋଷ ପ୍ରଭୃତି ପୁସ୍ତକ ସମ୍ପାଦନା କରିଥିଲେ । ସ୍ୱର୍ଗୀୟ ଯାତ୍ରାଶୀର୍ଷକ ଏକ ପୁସ୍ତକ ମଧ୍ୟ ପାଦ୍ରୀମାନଙ୍କ ଦ୍ୱାରା ଅନୂଦିତ ହୋଇଥିଲା ।

ଉଇଲ୍‌ୟମ୍ କେରୀଙ୍କ ଉଦ୍ୟମରେ ପ୍ରଥମ ଥର ପାଇଁ ଓଡ଼ିଆ ଅକ୍ଷର ଖୋଦିତ ହୋଇଥିଲା । ମନୋହର ମିସ୍ତ୍ରୀ ସେତେବେଳେ ବିଭିନ୍ନ ଭାରତୀୟ ଭାଷାରେ ଅକ୍ଷର ଖୋଦନ କରିଥିଲେ । କ୍ରମେ ଓଡ଼ିଶାରେ ଗୋଟିଏ ମୁଦ୍ରାଯନ୍ତ୍ର ପ୍ରତିଷ୍ଠା କରିବାର ଆବଶ୍ୟକତା ମିସନାରୀମାନେ ଅନୁଭବ କରିଥିଲେ । ବହୁବର୍ଷ ଯୋଜନାର ପରିଣତି ସ୍ୱରୂପ ୧୮୩୭ ମସିହାରେ କଟକ ମିସନ୍ ପ୍ରେସ୍ ସ୍ଥାପିତ ହୋଇଥିଲା । ଏହାହିଁ ଓଡ଼ିଶାର ପ୍ରଥମ ମୁଦ୍ରାଯନ୍ତ୍ର । ଏହାପରେ ୧୮୬୬ ମସିହାରେ କଟକ ପ୍ରିଣ୍ଟିଂ ପ୍ରେସ୍; ୧୮୬୮ ମସିହାରେ ଉତ୍କଳ ପ୍ରିଣ୍ଟିଂ କମ୍ପାନୀ ସ୍ଥାପିତ ହୋଇଥିଲା ।

ଏହି ପ୍ରସଙ୍ଗରେ ୧୮୭୦ ମସିହା ପରେ ଓଡ଼ିଶାର ପ୍ରଶାସନିକ କ୍ଷେତ୍ରରେ ଉଚ୍ଚ ପଦାଧିକାରୀ ଇଂରେଜ କର୍ମଚାରୀ ଜନ୍ ବିମସ୍‌ଙ୍କର ଓଡ଼ିଆ ଭାଷା ଓ ସାହିତ୍ୟକୁ ପ୍ରଭୂତ ଦାନ ସ୍ମରଣୀୟ । ଜନ୍‌ବିମସ୍ ପ୍ରଥମେ ବାଲେଶ୍ୱର ଏବଂ କଟକରେ କଲେକ୍ଟର ଥିଲେ ଏବଂ ଟି. ଇ. ରେଭେନ୍‌ସା ସାହେବଙ୍କ ବିଦାୟ ପରେ ଓଡ଼ିଶାର କମିଶନର୍ ପଦରେ ନିଯୁକ୍ତ ହୋଇଥିଲେ । କେବଳ ପ୍ରଶାସନିକ ଭାବରେ ନୁହେଁ, ଜଣେ ଉଚ୍ଚକୋଟୀର ପଣ୍ଡିତ ଏବଂ ଗବେଷକ ଭାବରେ ମଧ୍ୟ ବିମ୍ ସାହେବ ଏ ଦେଶରେ ନିଜକୁ ପ୍ରତିଷ୍ଠିତ କରିପାରିଥିଲେ । 'ଓଡ଼ିଆ ଭାଷାର ବିଲୋପ ସାଧନ' ଶୀର୍ଷକ ଘଡ଼ସନ୍ଧି ସମୟରେ ଓଡ଼ିଆ ଭାଷାର ବୈଶିଷ୍ଟ୍ୟ, ମର୍ଯ୍ୟାଦା ଏବଂ ସ୍ୱାତନ୍ତ୍ର୍ୟ ପ୍ରତିଷ୍ଠା କରିବାକୁ ଯାଇ ସେ ଓଡ଼ିଆ ଭାଷା ସମ୍ପର୍କରେ ପ୍ରବନ୍ଧ ଲେଖିଥିଲେ । ପ୍ରାଚୀନ ଓଡ଼ିଆ କାବ୍ୟମାନଙ୍କ ମଧ୍ୟରୁ ଦୀନକୃଷ୍ଣ ଦାସଙ୍କ ପ୍ରସିଦ୍ଧ 'ରସକଲ୍ଲୋଳ' ଆଦି ସମୀକ୍ଷା ପ୍ରବନ୍ଧ ହେଉଛି ତାଙ୍କର କୃତି । ଓଡ଼ିଶାର ଲୋକଗୀତ ସମ୍ପର୍କରେ ଲିଖିତ ତାଙ୍କର ପ୍ରବନ୍ଧ Asiatic Society Journalରେ ପ୍ରକାଶିତ ହୋଇଥିଲା । ଓଡ଼ିଆ ସାହିତ୍ୟ ପ୍ରତି ସେ ନିବିଡ଼ଭାବରେ ଆକୃଷ୍ଟ ହୋଇଥିଲେ । ଓଡ଼ିଆ ଔପନ୍ୟାସିକ ଫକୀରମୋହନଙ୍କ ସହିତ ତାଙ୍କର ବିଶେଷ ବନ୍ଧୁତ୍ୱ ଥିଲା । Comparative Grammer of Indo-aryan Language ହେଉଛି ତାଙ୍କର ବହୁବର୍ଷର ଗବେଷଣାପ୍ରସୂତ ଏକ ପ୍ରାମାଣିକ ଭାଷାବିଜ୍ଞାନ ପୁସ୍ତକ ।

ନୂତନ ମୂଲ୍ୟବୋଧ, ସୌନ୍ଦର୍ଯ୍ୟପିପାସା, ନୂତନ ରୁଚି ସାହିତ୍ୟ ଏବଂ ସଂସ୍କୃତି କ୍ଷେତ୍ରରେ ଜାଗରଣର ହେତୁ । ଇଂରେଜଶାସନର ପରିଣତି ସ୍ୱରୂପ ଦେଶରେ ଇଂରେଜୀ ଶିକ୍ଷା ପ୍ରସାର ଏବଂ ପାଶ୍ଚାତ୍ୟ ସାହିତ୍ୟ ସଂସ୍କୃତିର ପ୍ରଭାବ ଓଡ଼ିଆ ସାହିତ୍ୟରେ ନବଜାଗରଣର ପ୍ରଧାନ କାରଣ । ଏହି ଯୁଗ ଅର୍ଥାତ୍ ୧୮୫୦-୧୯୦୦

ମସିହା ମଧ୍ୟବର୍ତ୍ତୀ ସମୟ ଓଡ଼ିଶାର ଜାତୀୟ ଜୀବନରେ ବହୁ ଗୁରୁତ୍ୱପୂର୍ଣ୍ଣ ଅଧ୍ୟାୟ । ପୂର୍ବ ଯୁଗରେ ଖଣ୍ଡ-ବିଖଣ୍ଡିତ ଓଡ଼ିଶାର ସମ୍ପୂର୍ଣ୍ଣ ସଙ୍ଗଠନ ଏବଂ ଏକତ୍ରୀକରଣ ପାଇଁ ଏହି ଯୁଗରେ ବିଷୟ କାର୍ଯ୍ୟକ୍ରମର ଭିତ୍ତି ସ୍ଥାପିତ ହେଲା । ୧୮୬୬ ମସିହାର ଓଡ଼ିଶାର ନ'ଙ୍କ ଦୁର୍ଭିକ୍ଷ ଓଡ଼ିଆର ଜାତୀୟ ଜୀବନକୁ ଧ୍ୱସ୍ତ-ବିଧ୍ୱସ୍ତ କରିଦେଇଥିଲା । ଏତାଦୃଶ ଜାତୀୟ ଦୁର୍ଯୋଗ ଏବଂ ଦୁର୍ଗତିର ଧ୍ୱଂସାବଶେଷ ମଧ୍ୟରୁ ଓଡ଼ିଶାର ସର୍ବଶ୍ରେଷ୍ଠ ଉଚ୍ଚ ଶିକ୍ଷାନୁଷ୍ଠାନ ରେଭେନ୍‌ସା କଲେଜ କ୍ରମଶଃ ମୁଣ୍ଡଟେକି ଉଠିଥିଲା ଏବଂ ୧୮୭୧ ମସିହାରେ କେତେକ ସ୍ୱାର୍ଥାନ୍ୱେଷୀ ବ୍ୟକ୍ତିଙ୍କର 'ଓଡ଼ିଆ ଏକ ସ୍ୱତନ୍ତ୍ର ଭାଷାନୁହେଁ' ଚକ୍ରାନ୍ତ ବ୍ୟର୍ଥତାରେ ପରିଣତ ହେଲା । ସେହି ଘଡ଼ିସନ୍ଧି ସମୟରେ ଯେଉଁମାନେ ଓଡ଼ିଶାର ଜାତୀୟ ସାଂସ୍କୃତିକ ଏକତ୍ୱ ଏବଂ ମର୍ଯ୍ୟାଦାର ପତାକା ଊର୍ଦ୍ଧ୍ୱରେ ଉତ୍ତୋଳିତ କରିଥିଲେ ସେମାନେ ସମସ୍ତେ ଥିଲେ ମୁଖ୍ୟତଃ ଜାତିପ୍ରାଣ, ଉଦାରମନା ବଳିଷ୍ଠ ସାହିତ୍ୟିକ ଏବଂ ବୁଦ୍ଧିଜୀବୀଗୋଷ୍ଠୀ । ସେମାନେ ସାଧାରଣତଃ କବି ସାହିତ୍ୟସାଧକ, ସମ୍ପାଦକ, ସମାଜସେବକ, ସଂସ୍କାରକ ଏବଂ ପାଠ୍ୟପୁସ୍ତକ ଲେଖକ ଥିଲେ । ଓଡ଼ିଶା ଇତିହାସର ଏହି ନବଜାଗରଣ ପର୍ଯ୍ୟାୟରେ ନବପ୍ରତିଷ୍ଠିତ ପତ୍ରପତ୍ରିକାସମୂହର ଭୂମିକା ମଧ୍ୟ କମ୍ ନ ଥିଲା । ଓଡ଼ିଶାରେ ଊନବିଂଶ ଶତାବ୍ଦୀର ଶେଷ ଦଶନ୍ଧିରେ ରେଲଲାଇନ୍ ନିର୍ମାଣ ରାଜ୍ୟରେ ଅର୍ଥନୈତିକ ବ୍ୟବସ୍ଥାରେ ପ୍ରୋତ୍ସାହନ ସୃଷ୍ଟି କରିବା ବ୍ୟତୀତ ରାଜ୍ୟରେ ସାଂସ୍କୃତିକ ଏବଂ ବୌଦ୍ଧିକ ପରିବେଶ ତ୍ୱରାନ୍ୱିତ କରିପାରିଥିଲା । ଏହି ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ସ୍ଥାନୀୟ ଓଡ଼ିଆ ପାଠ୍ୟପୁସ୍ତକ ଲେଖକମାନେ ସାଧାରଣତଃ ପ୍ରଥମେ ବଙ୍ଗଳା ପାଠ୍ୟପୁସ୍ତକ ଓଡ଼ିଆରେ ଅନୁବାଦ କରିଥିଲେ । ମାତ୍ର ପରେ ସେହି ଲେଖକମାନେ ମୌଳିକ ପାଠ୍ୟପୁସ୍ତକ ରଚନା ପ୍ରତି ଧ୍ୟାନ ଦେଇଥିଲେ । ସରକାର ପାଠ୍ୟପୁସ୍ତକ ଅଭାବ ପୂରଣ ପାଇଁ ଇଚ୍ଛୁକ ଲେଖକମାନଙ୍କୁ ସେମାନଙ୍କ ବିବିଧ ପୁସ୍ତକ ପାଇଁ ପୁରସ୍କାର ପ୍ରଦାନ କରିଥିଲେ । ପାଠ୍ୟପୁସ୍ତକ ଲେଖକମାନଙ୍କ ମଧ୍ୟରେ ପଣ୍ଡିତ ବିଶ୍ୱମ୍ଭର ବିଦ୍ୟାଭୂଷଣ (ଓଡ଼ିଆ ବ୍ୟାକରଣ), ସମ୍ବଲପୁର ଡେପୁଟି ଇନ୍‌ସ୍‌ପେକ୍ଟର ବିଚ୍ଛନ୍ଦ ପଟ୍ଟନାୟକ (ବୋଧୋଦୟ, ଗୁରୁପାଠ, କାଦମ୍ବରୀ, ରଘୁବଂଶ, ସୀତା ବନବାସ-୧୮୬୨), ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ, (ବ୍ୟାକରଣ କୌମୁଦୀ ଉପକ୍ରମଣିକା), ଗୌରୀଶଙ୍କର ରାୟ (ଭୂଗୋଳ ତତ୍ତ୍ୱ), ପ୍ରଭାକର ଚୂଡ଼ାମଣି (ପଦ୍ୟମାଳା), ପ୍ରଭାକର ବିଦ୍ୟାରତ୍ନ (ପଦ୍ୟସଂଗ୍ରହ), କପିଳେଶ୍ୱର ବିଦ୍ୟାଭୂଷଣ (ସୂତ୍ରଧାର ବ୍ୟାକରଣ, ରାମବିଳାସ-୧୮୭୫) ପ୍ରମୁଖ ଉଲ୍ଲେଖଯୋଗ୍ୟ । ନବଯୁଗର ପ୍ରବର୍ତ୍ତକ କବି ରାଧାନାଥ, ଗୀତିକାର ମଧୁସୂଦନ ରାଓ, ଔପନ୍ୟାସିକ ଫକୀରମୋହନ ସେନାପତି ସେମାନଙ୍କର ସାହିତ୍ୟସାଧନାର ପ୍ରାକ୍‌କାଳରେ ମଧ୍ୟ ବିଭିନ୍ନ ପାଠ୍ୟ-ପୁସ୍ତକ ରଚନା କରିଥିବାର ଜଣାଯାଏ । ଫକୀରମୋହନଙ୍କର ଅଙ୍କମାଳା (୧୮୭୦)

ଭାରତବର୍ଷର ଇତିହାସ (୧୮୬୯), ମଧୁସୂଦନଙ୍କର ପ୍ରବନ୍ଧମାଳା (୧୮୮୦) ରାଧାନାଥ ରାୟଙ୍କର 'ଆଦର୍ଶ ପ୍ରଶ୍ନାବଳୀ' ପ୍ରଭୃତି ପାଠ୍ୟପୁସ୍ତକ ପର୍ଯ୍ୟାୟଭୁକ୍ତ ଏବଂ ସାଂପ୍ରତିକ ପାଠ୍ୟପୁସ୍ତକ ଆନ୍ଦୋଳନର ପରିଣତି ।

ଅଙ୍କଶିକ୍ଷା, ଚିତ୍ରମାଳା, ନୀତିପାଠ, ଶୁକବିଳାସ, ବୋଧାଙ୍କୁର, ରାମବିଳାସ ପ୍ରଭୃତିର ଲେଖକ କପିଳେଶ୍ୱର ବିଦ୍ୟାଭୂଷଣ, ମନୋରଞ୍ଜନ, ବର୍ଣ୍ଣବୋଧକ, ପଦ୍ୟମଞ୍ଜରୀ, କଲିକତାବର୍ଣ୍ଣନା ପୁସ୍ତକର ଲେଖକ ଗୋବିନ୍ଦ ରଥ ଅନୂଦିତ ପୁସ୍ତକ ଭାରତବର୍ଷର ଇତିହାସ, ଗୁରୁପାଠ, କାଦମ୍ବରୀ, ସୀତାବନବାସ-୧୮୬୯, ରଘୁବଂଶ ପ୍ରଭୃତି ପାଠ୍ୟପୁସ୍ତକର ଲେଖକ ବିଚ୍ଛନ୍ଦ ପଟ୍ଟନାୟକ, ଭାରତବର୍ଷର ପୁରାବୃତ୍ତ, କ୍ଷେତ୍ରତତ୍ତ୍ୱ ଅଙ୍କସୂତ୍ରର ଲେଖକ ଶିବନାରାୟଣ ନାୟକ, ଧାତୁ ବିବେକର ଲେଖକ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ, ସରଳ ବର୍ଣ୍ଣ ପରିଚୟର ଲେଖକ ବୈକୁଣ୍ଠନାଥ ଦେ ପ୍ରମୁଖ ସମୟୋପଯୋଗୀ ପାଠ୍ୟପୁସ୍ତକ ଲେଖି ଭାଷା ଏବଂ ସାହିତ୍ୟ ରାଜ୍ୟରେ କ୍ରମଶଃ ନବୀନ ମୂଲ୍ୟବୋଧ ପ୍ରତିଫଳିତ କରାଇଥିଲେ ।

ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧରେ ଓଡ଼ିଆ ଭାଷା ଏବଂ ସାହିତ୍ୟ କ୍ଷେତ୍ରରେ ନବଯୁଗ ଅଭ୍ୟୁଦୟର ବାର୍ତ୍ତାବହସ୍ୱରୂପ ବହୁ ପତ୍ରପତ୍ରିକା ଆତ୍ମପ୍ରକାଶ କରିଥିଲା । ଖ୍ରୀଷ୍ଟିୟାନ ପାଦ୍ରୀମାନେ ଓଡ଼ିଆ ଭାଷାରେ ପତ୍ରିକା ପ୍ରକାଶନ ପାଇଁ ଚେଷ୍ଟା କରିଥିଲେ; ଯଥା – ୧୮୪୯ ମସିହାର ଜ୍ଞାନାରୁଣ, ୧୮୬୧ ମସିହାର ଅରୁଣୋଦୟ, ପ୍ରବୋଧ ଚନ୍ଦ୍ରିକା (୧୮୫୬) ।

'ଜ୍ଞାନାରୁଣ'ର ସମ୍ପାଦକ ଥିଲେ ରେଭରେଣ୍ଡ ଲେସି । ମିସନାରୀମାନଙ୍କ ଦ୍ୱାରା ଆଉ ଏକ ପତ୍ରିକାର ନାମ ହେଉଛି 'ତାରକା' (୧୮୮୪) ସ୍ଥାନୀୟ ବୁଦ୍ଧିଜୀବୀ ତଥା ସାହିତ୍ୟିକମାନଙ୍କ ମଧ୍ୟରେ କଟକରୁ ସର୍ବପ୍ରଥମେ 'ଉତ୍କଳଦୀପିକା' ସାପ୍ତାହିକ ସମ୍ବାଦପତ୍ର (୧୮୬୬,ଅଗଷ୍ଟ ମାସ) ଆତ୍ମପ୍ରକାଶ କରିଥିଲା । ଏହାର ପ୍ରତିଷ୍ଠାତା ଥିଲେ ଗୌରୀଶଙ୍କର ରାୟ । ବାଲେଶ୍ୱରରୁ ଫକୀରମୋହନ ସେନାପତିଙ୍କ ସଂପାଦନାରେ 'ବୋଧଦାୟିନୀ' ଏବଂ 'ବାଲେଶ୍ୱର ସମ୍ବାଦବାହିକା' (୧୮୬୮ ଜୁଲାଇ) ପ୍ରକାଶିତ ହେଲା । ଏହି ପତ୍ରପତ୍ରିକା ଓଡ଼ିଆ ଭାଷା, ସାହିତ୍ୟ ତଥା ରାଜନୈତିକ ଜୀବନର ଶକ୍ତିଶାଳୀ ମୁଖପତ୍ରରୂପେ ପ୍ରତିଭାତ ହେଲା । ଏହାପରେ ଏକାନ୍ତଭାବରେ ସମ୍ବାଦ-ପ୍ରଧାନ ଏବଂ ମୌଳିକ ସାହିତ୍ୟପ୍ରଧାନ ପତ୍ରପତ୍ରିକା ନିୟମିତ କ୍ରମରେ ପ୍ରକାଶିତ ହୋଇ ଓଡ଼ିଶାର ସାଂସ୍କୃତିକ ଏବଂ ଜାତୀୟ ଜୀବନକୁ ଯୁଗାନ୍ତକାରୀ ବିପ୍ଲବମନ୍ତ୍ରରେ ଦୀକ୍ଷିତ କରିପାରିଥିଲା । ସାହିତ୍ୟିକ ପତ୍ରପତ୍ରିକା ଏବଂ ବିବିଧ ସମ୍ବାଦପତ୍ର ଯେକୌଣସି ସାହିତ୍ୟରେ ନବଯୁଗୋଚିତ ଅଭିଷେକବାଣୀ ବହନ କରିଥାଏ । 'ଉତ୍କଳଦର୍ପଣ'(୧୮୭୩ ଜାନୁଆରୀ—୧୮୮୪ ବାଲେଶ୍ୱର, ମ୍ୟାନେଜର ବୈକୁଣ୍ଠନାଥ ଦେ), 'ଉତ୍କଳପୁତ୍ର' (୧୮୭୩ ଏପ୍ରିଲ, କଟକ, ସଂପାଦକ ପ୍ୟାରୀମୋହନ ଆଚାର୍ଯ୍ୟ),

'ଉତ୍କଳ ମଧୁପ' (୧୮୭୮, କଟକ, ସମ୍ପାଦକ ଶ୍ରୀ କୃଷ୍ଣଚନ୍ଦ୍ର ପଟ୍ଟନାୟକ), 'ସେବକ ସଂସ୍କାରକ' (କଟକ, ୧୮୮୩, ସମ୍ପାଦକ ଚତୁର୍ଭୁଜ ପଟ୍ଟନାୟକ), 'ସମ୍ବଲପୁର ହିତୈଷିଣୀ' (ବାମଣ୍ଡା, ଜଗନ୍ନାଥ ପ୍ରେସ, ୧୮୮୯ ମେ ମାସ ୩୦ ତାରିଖ ଗୁରୁବାର ୧୯୨୩, ଆଦ୍ୟ ସମ୍ପାଦକ—ନୀଳମଣି ବିଦ୍ୟାରତ୍ନ),'ଉତ୍କଳପ୍ରଭା' (୧୮୯୧, ମୟୂରଭଞ୍ଜ) 'ଇନ୍ଦ୍ରଧନୁ' (୧୮୯୩, ଅଗଷ୍ଟ, କଟକ), 'ବିଜୁଳି' (୧୮୯୩, ସେପ୍ଟେମ୍ବର, ବାମଣ୍ଡା) 'ବ୍ରାହ୍ମ' (୧୮୯୪), 'ଆଶା' (୧୮୮୮), 'ଉତ୍କଳବନ୍ଧୁ' (ତାଳଚେର, ୧୮୯୬), 'ଉତ୍କଳସାହିତ୍ୟ' (୧୮୯୭, ଜାନୁଆରି, କଟକ, ସମ୍ପାଦକ—ବିଶ୍ୱନାଥ କର), 'ଗଞ୍ଜାମ ଓଡ଼ିଆ ହିତବାଦିନୀ' (୧୮୯୯), 'ଆଲୋଚନା' (୧୯୦୦—ଜଳନ୍ଧର ଦେବ) ପ୍ରଭୃତି ଊନବିଂଶ ଶତାବ୍ଦୀର ବିଶିଷ୍ଟ ସାହିତ୍ୟ ପତ୍ରିକା । ଏହି ପତ୍ରିକାସମୂହ ଓଡ଼ିଆ ସାହିତ୍ୟରେ ବିଂଶ ଶତାବ୍ଦୀର ପ୍ରାକ୍‌କାଳରେ ଆବିର୍ଭୂତ ନବଯୁଗର ବାର୍ତ୍ତାବହ ଥିଲା । କୃଷି, ଶିକ୍ଷା, ରାଜନୀତି, ଶିଳ୍ପ, ବାଣିଜ୍ୟ ଏବଂ ବିଜ୍ଞାନକ୍ଷେତ୍ରରେ ଏହି ପତ୍ରିକା ସଂସ୍କାର ଆନୟନ କରିଥିଲେ । ପୁନଶ୍ଚ ଏହି ସଂସ୍କାରସମୂହର ସାମୂହିକ ପ୍ରଭାବ ସାହିତ୍ୟ, ସଂସ୍କୃତି କ୍ଷେତ୍ରରେ ପରିଦୃଷ୍ଟ ହୋଇଥିଲା ।

'ଉତ୍କଳଦର୍ପଣ'ରେ କବିବର ରାଧାନାଥ ରାୟଙ୍କର ମେଘଦୂତ, ପବନ, ଇଟାଲୀୟ ଯୁବା, ବିବେକୀ, କାଳିଦାସ, ମଧୁସୂଦନ ରାଓ ଏବଂ କେତେକ ରଚନା ପ୍ରକାଶ ପାଇଥିଲା । 'ଉତ୍କଳପୁତ୍ର'ର ବିଶିଷ୍ଟ ଲେଖକ ଥିଲେ ପଣ୍ଡିତ ଗୋବିନ୍ଦ ରଥ । ସେହିପରି 'ଉତ୍କଳ ମଧୁପ' ପତ୍ରିକାର ପୃଷ୍ଠପୋଷକ ଥିଲେ ରାମଶଙ୍କର ରାୟ ଏବଂ ସେହି ପତ୍ରିକାରେ ତାଙ୍କର 'ସୌଦାମିନୀ' ଉପନ୍ୟାସ ପ୍ରକାଶିତ ହୋଇଥିଲା ।

ପ୍ରାଚୀନ ଓଡ଼ିଆ କାବ୍ୟର ସମୀକ୍ଷା ପ୍ରକାଶ କରି ସମାଲୋଚନା ସାହିତ୍ୟ ପ୍ରତି ପାଠକଙ୍କର ଦୃଷ୍ଟି ଆକର୍ଷଣ କରିଥିଲା 'ସମ୍ବଲପୁର ହିତୈଷିଣୀ' । ରାଧାନାଥ ରାୟ, ଗଙ୍ଗାଧର ମେହେର ପ୍ରଭୃତିଙ୍କର ରଚନାବଳୀ ପ୍ରକାଶ କରି ଓଡ଼ିଆ ସାହିତ୍ୟରେ ନବଯୁଗ ପ୍ରବର୍ତ୍ତିତ କାବ୍ୟର ସମ୍ଭାବନା ସୃଷ୍ଟି କରିବାରେ ଦାୟୀ ହୋଇଥିଲା ।

ଓଡ଼ିଆ ସାହିତ୍ୟରେ ଇନ୍ଦ୍ରଧନୁ-ବିଜୁଳି ପତ୍ରିକାର ଆଦର୍ଶଗତ ସଙ୍ଘର୍ଷ ଯଥାକ୍ରମେ ପ୍ରାଚୀନ ଓ ନବୀନ ସାହିତ୍ୟାଦର୍ଶର ପରସ୍ପର ବିରୋଧଗତ ପ୍ରତିଫଳନ ମାତ୍ର । ପ୍ରାଚୀନ ପୃଷ୍ଠଭୂମି ଓ ପରଂପରା ସହିତ ନବ୍ୟବାଦୀ ଆଗନ୍ତୁକ ସ୍ରଷ୍ଟାମାନଙ୍କର ଯେଉଁ ଶୈଳିକ ବିରୋଧ, ତାହାହିଁ ଥିଲା ଯଥାର୍ଥରେ ସାହିତ୍ୟରେ ନବଯୁଗ ଚେତନାର ତୀବ୍ର ସ୍ୱର । ଏକ ଦିଗରେ ପ୍ରାଚୀନ ଶୃଙ୍ଗାର-କାବ୍ୟକାର ଉପେନ୍ଦ୍ର ଭଞ୍ଜ, ଅନ୍ୟ ଦିଗରେ ନବକାବ୍ୟାଦର୍ଶ-ଅନୁପ୍ରାଣିତ କବି ରାଧାନାଥ ଯଥାକ୍ରମେ ବାଦୀ-ପ୍ରତିବାଦୀମାନଙ୍କ ପକ୍ଷରେ ପ୍ରାଚୀନ ଓ ନବୀନ କାବ୍ୟାଦର୍ଶର କେନ୍ଦ୍ରବିନ୍ଦୁ ଥିଲେ ।

'ଉତ୍କଳପ୍ରଭା' ପତ୍ରିକା ରାମଶଙ୍କରଙ୍କର ବିବାସିନୀ, ରାଧାନାଥଙ୍କ ଚିଲିକା, ମହାଯାତ୍ରା ଏବଂ ମଧୁସୂଦନ ରାଓଙ୍କର 'ଋଷିପ୍ରାଣେ ଦେବାବତରଣ' ସଦୃଶ

ନବୀନ କାବ୍ୟକୃତିକୁ ପ୍ରକାଶିତ କରି ସାହିତ୍ୟ ମାଧ୍ୟମରେ ନୂତନ ମୂଲ୍ୟବୋଧ ତଥା ସୌନ୍ଦର୍ଯ୍ୟବୋଧ ପ୍ରତି ବିଦଗ୍ଧ ସମାଜର ଦୃଷ୍ଟି ଆକର୍ଷଣ କରିଥିଲା ।

ଊନବିଂଶ ଶତାବ୍ଦୀର ଶେଷ ସଂଧ୍ୟା ଏବଂ ବିଂଶ ଶତାବ୍ଦୀର ଆଦ୍ୟ ଉଷାରେ 'ଉତ୍କଳ ସାହିତ୍ୟ' ଦେଶବାସୀଙ୍କୁ ଯଥାର୍ଥତଃ ସାଂସ୍କୃତିକ ମଙ୍ଗଳାଚରଣ ଶୁଣାଇଥିଲା । ଏହି ପତ୍ରିକାର ପ୍ରଥମ ବର୍ଷ ପ୍ରଥମ ସଂଖ୍ୟାରେ ସମ୍ପାଦକ ଦେଶରେ ପୁରାତନ ଏବଂ ନୂତନ ସାହିତ୍ୟର ସୀମାରେଖା ନିର୍ଦ୍ଦେଶ କରି ନୂତନ ସାହିତ୍ୟ ସୃଷ୍ଟି ପାଇଁ ଲେଖକମାନଙ୍କୁ ଆହ୍ୱାନ ଜଣାଇଥିଲେ ।

ସାହିତ୍ୟର ବିଭିନ୍ନ ଶାଖା ଯଥା—ପ୍ରବନ୍ଧ, କ୍ଷୁଦ୍ର ଗଳ୍ପ, ଉପନ୍ୟାସ, ନୂତନ ଶୈଳୀସମ୍ପନ୍ନ କାବ୍ୟକବିତା, ଜୀବନୀ ଏହି ପତ୍ରିକା ପୃଷ୍ଠାରେ ପ୍ରସାରିତ ହୋଇଥିଲା । ଓଡ଼ିଆ ଉପନ୍ୟାସ ଏବଂ କଥାଶିଳ୍ପର ଶ୍ରେଷ୍ଠ ଶିଳ୍ପୀ ଏବଂ ଓଡ଼ିଆ ଗଦ୍ୟ-ସାହିତ୍ୟର ନିର୍ମାତା ଫକୀରମୋହନଙ୍କର ବହୁ ପ୍ରଶଂସିତ କ୍ଲାସିକ୍ ଉପନ୍ୟାସ 'ଛ'ମାଣ ଆଠଗୁଣ୍ଠ' ତଥା ବହୁ ସାର୍ଥକ କ୍ଷୁଦ୍ରଗଳ୍ପ ଏହି ପତ୍ରିକାପୃଷ୍ଠାରେ ଉତ୍କୀର୍ଣ୍ଣ ହୋଇଥିଲା । ସେହିପରି ୧୯୨୦ ମସିହା ମଧ୍ୟରେ ପ୍ରକାଶିତ ଆଉ ଦୁଇଗୋଟି ପ୍ରସିଦ୍ଧ ପତ୍ରିକା ହେଉଛି ମୁକୁର (୧୯୦୦) ଏବଂ ସତ୍ୟବାଦୀ (୧୯୧୪) । ବ୍ରଜସୁନ୍ଦର ଦାସ 'ମୁକୁର' ପତ୍ରିକାର ପ୍ରତିଷ୍ଠାତା ଥିଲେ ଏବଂ 'ସତ୍ୟବାଦୀ' ପତ୍ରିକାର ସମ୍ପାଦକ ଥିଲେ ଗୋପବନ୍ଧୁ ଦାସ । ଓଡ଼ିଶାରେ ଅନୁକୂଳ ସାହିତ୍ୟିକ ପରିବେଶ, ସାଂସ୍କୃତିକ ଜିଜ୍ଞାସା, ସାହିତ୍ୟିକମାନଙ୍କ ମଧ୍ୟରେ ଗୋଷ୍ଠୀଗତ ସଂହତି, ମୈତ୍ରୀ, ସାହଚର୍ଯ୍ୟ ସୃଷ୍ଟି କରିବାରେ ବୌଦ୍ଧିକ ଅଭ୍ୟୁଦୟର ପ୍ରଥମ ପର୍ଯ୍ୟାୟରେ 'ଉତ୍କଳସାହିତ୍ୟ', 'ମୁକୁର' ଏବଂ 'ସତ୍ୟବାଦୀ' ପତ୍ରିକା ହିଁ ଦାୟୀ ଥିଲା । ସେ ଯାହା ହେଉ, ସାହିତ୍ୟସଙ୍ଗଠନ, ଜନମତ ସୃଷ୍ଟି କରିବାରେ ସମ୍ପାଦକ ଗୌରୀଶଙ୍କର ରାୟ, ଫକୀରମୋହନ ସେନାପତି, ବୈକୁଣ୍ଠନାଥ ଦେ, ପ୍ୟାରୀମୋହନ ଆଚାର୍ଯ୍ୟ, ପଣ୍ଡିତ ଗୋବିନ୍ଦ ରଥ, ନୀଳମଣି ବିଦ୍ୟାରତ୍ନ, ବିଶ୍ୱନାଥ କର, ବ୍ରଜସୁନ୍ଦର ଦାସ ଏବଂ ଗୋପବନ୍ଧୁ ଦାସଙ୍କ ସଦୃଶ ସଂସ୍କୃତିପ୍ରେମୀ, ଦାୟିତ୍ୱ-ସମ୍ପନ୍ନ ସମ୍ପାଦକମାନଙ୍କର ଆଦର୍ଶ ସ୍ମରଣୀୟ ।

ସାଂପ୍ରତିକ ଯୁଗରେ ଓଡ଼ିଶାରେ ସାଂସ୍କୃତିକ ଜାଗରଣର ଆଉ ଏକ ଦୃଢ଼ ଏବଂ ଶକ୍ତିଶାଳୀ ମାଧ୍ୟମ ଥିଲା ସଂଖ୍ୟାଧିକ ସାଂସ୍କୃତିକ ରାଜନୈତିକ ସମିତି, ପରିଷଦ ଏବଂ ଗୋଷ୍ଠୀ । ନବଶିକ୍ଷିତ ଯୁବ ସଂପ୍ରଦାୟ ଯୁଗୋପଯୋଗୀ ଆବଶ୍ୟକତା ଉପଲବ୍ଧି କରି ବିଭିନ୍ନ ସମୟରେ ବିଭିନ୍ନ ସ୍ଥାନରେ ସଭାସମିତ ଗଠନ କରିଥିଲେ । ଏତାଦୃଶ ଆୟୋଜନ, ଅନୁଷ୍ଠାନ ଏବଂ ସଙ୍ଗଠନ ସେହି ସମୟରେ ଭାଷା ଓ ସାହିତ୍ୟର ସାମୂହିକ କର୍ଣ୍ଣଧାର ଥିଲେ ବୋଲି କୁହାଯାଇପାରେ । ସଭାସମିତିସମୂହର ଉଦ୍‌ବୋଧନ, ସମ୍ବୋଧନ ଏବଂ ଆବେଦନରେ ସମଗ୍ର ଓଡ଼ିଶା ଯେପରି ପ୍ଲାବିତ ଏବଂ

ମୁଖର ହୋଇଉଠିଥିଲା; ଯୁବଚିତ୍ତର ବେଳାଭୂମିରେ ସେପରି ଚେତନାର ସହସ୍ର ତରଙ୍ଗ ଉଦ୍‌ବେଳିତ ହୋଇଉଠିଥିଲା । ୧୮୬୬ ନ'ଅଙ୍କ ଦୁର୍ଭିକ୍ଷର ଅବସରରେ ଗଠିତ ଗୃଉଲ ବନ୍ଧି କମ୍ପାନୀ, କଟକ ପ୍ରିଣ୍ଟିଂ କମ୍ପାନୀଠାରୁ ଆରମ୍ଭ କରି ଉତ୍କଳ ଭାଷୋଦ୍ଦୀପନୀ ସଭା, ଉତ୍କଳ ଭାଷା ଉନ୍ନତିବିଧାୟିନୀ ସଭା, ଉତ୍କଳୋଲ୍ଲାସିନୀ, କଟକ ୟଙ୍ଗ୍‌ମେନ୍‌ସ ଆସୋସିଏସନ୍, ଭଦ୍ରଖ ଦେଶହିତୈଷିଣୀ ସଭା, ଓଡ଼ିଶା ତାଳପତ୍ର ସାହିତ୍ୟ ଉଦ୍ଧାରଣ କମ୍ପାନୀ, ଉତ୍କଳ ସଭା (୧୮୭୭), ଶିକ୍ଷା ବିଧାୟିକ ସଭା (୧୮୮୧), ଢେଙ୍କାନାଳ ହିତୈଷିଣୀ ସଭା (୧୮୮୯), କଟକ କଲେଜ ଷ୍ଟୁଡେଣ୍ଟ୍‌ସ ଆସୋସିଏସନ୍ (୧୮୮୨), ଓଡ଼ିଶା ପ୍ୟୁପିଲ୍‌ସ୍ ଆସୋସିଏସନ (୧୮୮୩), ଉତ୍କଳ ସମ୍ମିଳନୀ (୧୮୮୬), ବାରିପଦା ରିଡ଼ିଂ କ୍ଲବ (୧୮୮୯), ବାମଣ୍ଡାର ସନାତନ ଧର୍ମରକ୍ଷିଣୀ ସଭା, ପୁରୀର ଜଗନ୍ନାଥ ସଂସ୍କୃତ ସମିତି (୧୮୯୩), ତାଳଚେର କିଶୋରଚନ୍ଦ୍ର ସାହିତ୍ୟ ସମାଲୋଚନା ସଭା (୧୮୯୫), ଅନୁଗୋଳର ଶିକ୍ଷାବିବର୍ଦ୍ଧିନୀ ସଭା (୧୮୯୭), ବାଣପୁର ଭଗବତୀ ସମିତି (୧୮୯୮) ପର୍ଯ୍ୟନ୍ତ ବହୁ ପ୍ରତିଷ୍ଠିତ ସାଧାରଣ ସମିତି ଏବଂ ଅନୁଷ୍ଠାନମାନ ଓଡ଼ିଶା ରାଜ୍ୟରେ ନବଉନ୍ମେଷିତ ବୌଦ୍ଧିକ ଶକ୍ତି ତଥା ଉତ୍ସାହର ପ୍ରତୀକ । ସମାଜସଂସ୍କାର, ନାରୀଶିକ୍ଷା, ଯୁବଜାଗରଣ, ଶିକ୍ଷା ସଂପ୍ରସାରଣ, ଭାଷା ଏବଂ ସାହିତ୍ୟର ବିକାଶସାଧନ, ବିଚ୍ଛିନ୍ନାଞ୍ଚଳ ଏକତ୍ରୀକରଣ ସେହିସବୁ ସାଂସ୍କୃତିକ ଅନୁଷ୍ଠାନର ପ୍ରଧାନ ଉଦ୍ଦେଶ୍ୟ ଥିଲା । ୧୮୬୮ରେ ଓଡ଼ିଆ ଭାଷାର ବିଲୋପସାଧନ ଶୀର୍ଷକ ହୀନ ଚକ୍ରାନ୍ତ ବିରୋଧରେ ସଫଳ ଆନ୍ଦୋଳନ ଗଞ୍ଜାମରେ ଭାଷା ଆନ୍ଦୋଳନ, ସମ୍ବଲପୁର ଭାଷା ଆନ୍ଦୋଳନ (୧୮୯୫) କଳା ସଂସ୍କୃତିପ୍ରେମୀ ଜାତିର ସାଂସ୍କୃତିକ ଅଭିଳାଷର ପ୍ରତୀକ । ୧୮୬୨ ମସିହାରେ ସମ୍ବଲପୁର ଅଞ୍ଚଳକୁ ମଧ୍ୟପ୍ରଦେଶ ସହିତ ସାମିଲ କରି ଦିଆଯାଇଥିଲା । ୧୮୯୫ ମସିହାରେ (ଜାନୁଆରୀ ୧୯ ତାରିଖ) ସେଠାରେ ଓଡ଼ିଆ ଭାଷା ପରିବର୍ତ୍ତେ ହିନ୍ଦୀ ଭାଷା ପ୍ରଚଳନ ପାଇଁ ମଧ୍ୟପ୍ରଦେଶ କମିସନର ଆଦେଶନାମା ଜାରି କଲେ । ସେହି ଦିନଠାରୁ ୧୯୦୩ ମସିହାରେ ସମ୍ବଲପୁର ଅଞ୍ଚଳରେ ଓଡ଼ିଆ ଭାଷା ପୁନଃ ପ୍ରତିଷ୍ଠିତ ଏବଂ ପ୍ରଚଳିତ ହେବାର ସରକାରୀ ଆଦେଶ ଘୋଷିତ ହେବା ପର୍ଯ୍ୟନ୍ତ ସମ୍ବଲପୁର ଅଧିବାସୀଗଣ ଅବ୍ୟାହତ ଭାବରେ ଭାଷା ଆନ୍ଦୋଳନ ଜୀବିତ ରଖିଥିଲେ । ଯେଉଁମାନେ ଏହି ଆନ୍ଦୋଳନର ନେତୃତ୍ୱ ନେଇଥିଲେ, ସେମାନେ ହେଲେ—ଧରଣୀଧର ମିଶ୍ର, ବ୍ରଜମୋହନ ପଟ୍ଟନାୟକ, ବଳଭଦ୍ର ସୁଆର, ମଦନମୋହନ ମିଶ୍ର, ମହନ୍ତ ମହାରାଜ ବିହାରୀ ଦାସ ଓ ଶ୍ରୀପତି ମିଶ୍ର । ମାତୃଭାଷାର ସମ୍ମାନ ଏବଂ ମର୍ଯ୍ୟାଦାରକ୍ଷାର୍ଥେ ଶ୍ରୀପତି ମିଶ୍ର ପ୍ରଭୃତି ସେହି ସମୟରେ ଶିମିଳା ଯାତ୍ରା କରିଥିଲେ ଏବଂ ବଡ଼ଲାଟଙ୍କୁ ଭେଟି ସମ୍ବଲପୁର ପ୍ରତି କରାଯାଇଥିବା ସରକାରୀ ଆଦେଶର ପ୍ରତିବାଦ ଜଣାଇ ତୁରନ୍ତ ପ୍ରତିକାର ଲୋଡ଼ିଥିଲେ । 'ସମ୍ବଲପୁର ହିତୈଷିଣୀ' ପତ୍ରିକା ମାଧ୍ୟମରେ ସମ୍ପାଦକ

ନୀଳମଣି ବିଦ୍ୟାରତ୍ନ ମଧ୍ୟ ଆନ୍ଦୋଳନକୁ ସଂଗଠିତ କରିଥିଲେ । କଟକର ଉତ୍କଳ ସଭା ପ୍ରଭୃତି ସାଧାରଣ ଅନୁଷ୍ଠାନ ମଧ୍ୟ ଅନୁରୂପ କାର୍ଯ୍ୟପନ୍ଥା ଗ୍ରହଣ କରିଥିଲେ । ଓଡ଼ିଶାର ତଦାନୀନ୍ତନ ମଧୁସୂଦନ ଦାସ ପ୍ରମୁଖ ନେତୃବର୍ଗ ମଧ୍ୟ ଆନ୍ଦୋଳନରେ ଅଂଶ ଗ୍ରହଣ କରିଥିଲେ । କବି ଗଙ୍ଗାଧର ମେହେର ସେତେବେଳେ ଓଡ଼ିଆ ଭାଷା ଏବଂ ଓଡ଼ିଶା ଜନମାନଙ୍କ ଦୁଃଖ-ଦୁର୍ଯୋଗକୁ ଲକ୍ଷ୍ୟ କରି କେତେକ କବିତା ମଧ୍ୟ ଲେଖିଥିଲେ । ଇତିହାସର ନିର୍ଦ୍ଦେଶ ଅନୁସାରେ ସମ୍ବଲପୁର ତା'ର ସ୍ୱୀୟ ଓଡ଼ିଶା ରାଜ୍ୟ ସହିତ (୧୯୦୫, ଅକ୍ଟୋବର ୧୬ ତାରିଖ) ଅନ୍ତର୍ଭୁକ୍ତ ହେଲା । ସମ୍ବଲପୁର ଭାଷା ଆନ୍ଦୋଳନର ଆଉ ଜଣେ ପୃଷ୍ଠପୋଷକ ମଧ୍ୟପ୍ରଦେଶର ତଦାନୀନ୍ତନ କମିସନର ଏଣ୍ଡ୍ରୁ ଫ୍ରେଜର ମଧ୍ୟ ସ୍ମରଣୀୟ । ବିଂଶ ଶତାବ୍ଦୀର ପ୍ରାକ୍‌କାଳରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ ଆନ୍ଦୋଳନ ସହିତ ଓଡ଼ିଆ ସାହିତ୍ୟର ନବଜାଗରଣ ତଥା ସଂପ୍ରସାରଣ ମଧ୍ୟ ନିବିଡ଼ ଭାବରେ ଜଡ଼ିତ ହୋଇଥିଲା ।

ଭାଷା ଏବଂ ସାହିତ୍ୟର ସଂସ୍କାର ଏବଂ ଉନ୍ନତି ଯୋଜନା ଉପରି ଦେଶ-ମିଶ୍ରଣ ଆନ୍ଦୋଳନରେ ପ୍ରତିଫଳିତ ହୋଇଥିଲା, ତାହା ୧୯୦୩ ମସିହା ଏପ୍ରିଲ୍ ମାସରେ ଗଞ୍ଜାମରେ ଆହୂତ ଜାତୀୟ ମହାସମିତିର ବିଭିନ୍ନ ପ୍ରସ୍ତାବରୁ ଜଣାଯାଏ । ଓଡ଼ିଆ ଭାଷା ଏବଂ ସାହିତ୍ୟର ଉନ୍ନତି ତଥା ପ୍ରାଚୀନ ଓଡ଼ିଆ ପୋଥି ପ୍ରକାଶ ଉପରେ ଗୁରୁତ୍ୱ ଦିଆଯାଇଥିଲା । ପୁନଶ୍ଚ ସେହି ବର୍ଷ ଡିସେମ୍ବର ୩୦, ୩୧ ତାରିଖରେ କଟକଠାରେ ଉତ୍କଳ ସମ୍ମିଳନୀର ପ୍ରଥମ ଐତିହାସିକ ଅଧିବେଶନ ଆହୂତ ହୋଇଥିଲା । ସେହି ସମ୍ମିଳନୀରେ ମଧ୍ୟ ଓଡ଼ିଆ ଭାଷା ଏବଂ ସାହିତ୍ୟର ଉନ୍ନତି ପ୍ରଶ୍ନ ଆଲୋଚିତ ହୋଇଥିଲା । ଓଡ଼ିଆ ସାହିତ୍ୟରେ କ୍ରମଶଃ ନବଯୁଗବାର୍ତ୍ତା ପ୍ରତିଧ୍ୱନିତ ହେବା ସଙ୍ଗେ ସଙ୍ଗେ ବିଂଶ ଶତାବ୍ଦୀର ନୂତନ ଜାତୀୟତା ଆତ୍ମପ୍ରକାଶ କରିବାକୁ ଲାଗିଲା ।

୧୮୭୭ ମସିହାରେ ପାରଳାଖେମଣ୍ଡିର କବିଚନ୍ଦ୍ର ରଘୁନାଥ ପରିଚ୍ଛା ଓଡ଼ିଆରେ ଗୋପୀନାଥ ବଲ୍ଲଭ ନାଟକ ପ୍ରଣୟନ କରିଥିଲେ । ଏହା ନାଟକ ବୋଲି କୁହାଯାଇଥିଲେ ମଧ୍ୟ ଏହା ନାଟ୍ୟଶିଳ୍ପର ସାର୍ଥକତା ବିବର୍ଜିତ; ବରଂ ସମାଲୋଚକମାନେ ଏହାକୁ ପରିମାର୍ଜିତ, ପରିବର୍ତ୍ତିତ ଯାତ୍ରା ଲୀଳା ବୋଲି ଅଭିହିତ କରିଥିଲେ । ଉତ୍କଳଦୀପିକାର ସମ୍ପାଦକ ଏହି ପୁସ୍ତକର ଏକ ଭୂମିକା ଲେଖିଥିଲେ । ରାଧାକୃଷ୍ଣ ରାସଲୀଳା ଏଥିରେ ବର୍ଣ୍ଣିତ । ସଂପୃକ୍ତ ଲେଖକଙ୍କର ଲିଖିତ ଶ୍ଳୋକ ମଧ୍ୟରେ ଲକ୍ଷଣ ଚନ୍ଦ୍ରୋଦୟ ଏବଂ ରାଧାମାଧବ ବିଳାସ କାବ୍ୟ ମଧ୍ୟ ସୂଚିତ ।

ଜଗନ୍ମୋହନ ଲାଲ 'ବାବାଜୀ' ନାଟକ ଲେଖି ପ୍ରକାଶ କରିଥିଲେ । ଆପେକ୍ଷିକ ଭାବରେ ଓଡ଼ିଆ ସାହିତ୍ୟର ନବୀକରଣ ପର୍ଯ୍ୟାୟରେ 'ବାବାଜୀ' ଯଥାର୍ଥତଃ ଏକ ପ୍ରଶଂସନୀୟ ଉଦ୍ୟମ । ଏଥିରେ ବାବାଜୀମାନଙ୍କର ପ୍ରତାରଣା,

ଶଠତା ବର୍ଣ୍ଣିତ । ଏହି ନାଟକର ଗଠନକଳା ପରାମର୍ଶଦ୍ୱାରା ପୀଡ଼ିତ । ତଥାପି ଚରିତ୍ର ଉପସ୍ଥାପନା, ସଂଳାପ, ଭାଷା ବ୍ୟବହାରରେ ଏହା ସେହି ଯୁଗରେ ନୂତନ ସାହିତ୍ୟିକ ଆଙ୍ଗିକ ପ୍ରବର୍ତ୍ତନ କରିବାର ଏକ ପ୍ରାଥମିକ ନିଦର୍ଶନ । ଚାରିଗୋଟି ଅଙ୍କବିଶିଷ୍ଟ 'ବାବାଜୀ' ନାଟକ ସମ୍ପର୍କରେ ସମାଲୋଚକମାନେ ଭିନ୍ନ ଭିନ୍ନ ମତ ପ୍ରଦାନ କରିଥିଲେ । କେହି କେହି ଏହାକୁ ସାମାଜିକ ପ୍ରହସନ ବୋଲି ଅଭିହିତ କରିଥିଲେ ।

ଓଡ଼ିଶା ବିଜୟ (୧୮୭୭), କାବ୍ୟ ଭ୍ରମଭଞ୍ଜନ (୧୮୭୮), ସତୀ ନାଟକ (୧୮୮୭) ମଧ୍ୟ ତାଙ୍କର ରଚନା । ସତୀ ନାଟକରେ ନାଟ୍ୟକାର ଗଡ଼ଜାତ ରାଜା-ମାନଙ୍କର ଅତ୍ୟାଚାର ଏବଂ ନାରୀ ପ୍ରତି ଲୋଲୁପତା ପ୍ରସଙ୍ଗରେ ନିର୍ମମ ସମାଲୋଚନା କରିଥିଲେ । ଶିଳ୍ପବୈଚିତ୍ର୍ୟ ଦୃଷ୍ଟିରେ ମଧ୍ୟ ସତୀ ନାଟକ ବାବାଜୀ ନାଟକଠାରୁ ଉନ୍ନତ ।

ସେତେବେଳେ ଓଡ଼ିଶାରେ ସୁସଜ୍ଜିତ ନାଟ୍ୟଶାଳା ନଥିଲା କି ଓଡ଼ିଆ ଭାଷାରେ ଉତ୍କୃଷ୍ଟ କଳାତ୍ମକ ନାଟକ ପୁସ୍ତକ ନଥିଲା । ଲୋକସମାଜରେ ଯାତ୍ରା, ଲୀଳା, ସୁଆଙ୍ଗର ସ୍ରୋତ ପ୍ରବାହିତ ହେଉଥିଲା । କେତେବେଳେ କେମିତି ପ୍ରତିବେଶୀ ରାଜ୍ୟରୁ ନାଟ୍ୟଦଳ ଆସି ବିଭିନ୍ନ ସ୍ଥାନରେ ଅଭିନୟ ପ୍ରଦର୍ଶନ କରୁଥିଲେ ।

ରାମଶଙ୍କର ରାୟଙ୍କ ଲିଖିତ କାଞ୍ଚିକାବେରୀ ନାଟକ ଓଡ଼ିଶାର ଗୌରବୋଜ୍ଜ୍ୱଳ ଇତିହାସ ଏବଂ କିମ୍ବଦନ୍ତୀ ଉପରେ ଆଧାରିତ । ଏହି ନାଟକରେ ଓଡ଼ିଶାର ପ୍ରସିଦ୍ଧ ଗଜପତି ରାଜା ପୁରୁଷୋତ୍ତମ ଦେବଙ୍କର କାଞ୍ଚି-ଅଭିଯାନ ଏବଂ ପଦ୍ମାବତୀ ପରିଣୟ ପ୍ରସଙ୍ଗ ବର୍ଣ୍ଣିତ । ୧୮୮୧ ସାଲ ଫେବୃଆରୀ ମାସ ୭ ତାରିଖ ଦିନ କଟକରେ କାଞ୍ଚିକାବେରୀ ଅଭିନୀତ ହୋଇଥିଲା । ଅଭିନୟ ସନ୍ତୋଷଜନକ ହୋଇ ନଥିଲା; ତେଣୁ ଅଳ୍ପଦିନ ପରେ କାଞ୍ଚିକାବେରୀ ପୁନର୍ବାର ଅଭିନୀତ ହୋଇଥିଲା ।

ରାମଶଙ୍କର ଜଣେ ନିଷ୍ଠାପର ସାହିତ୍ୟସେବୀ ନାଟ୍ୟକାର ଥିଲେ । ସେ ଏକାଧିକ ଐତିହାସିକ, ସାମାଜିକ, ପୌରାଣିକ ନାଟକମାନ ଲେଖି ଓଡ଼ିଆ ଭାଷାରେ ଏହି ନୂତନ ସାହିତ୍ୟିକ ଆଙ୍ଗିକର ସମ୍ଭାବନା ପ୍ରଶସ୍ତ କରିପାରିଥିଲେ । ତାଙ୍କ ନାଟକଗୁଡ଼ିକର ନାମ ହେଉଛି—ବନବାଳା (୧୮୮୨), ରାମ ବନବାସ (୧୮୯୧), କଂସବଧ (୧୮୯୬), ଚୈତନ୍ୟ ଲୀଳା (୧୯୦୬), ରାମାଭିଷେକ (୧୯୦୦), ଯୁଗଧର୍ମ (୧୯୦୨), କାଞ୍ଚନମାଳୀ (୧୯୦୨), ଲୀଳାବତୀ (୧୯୧୨), କଳିକାଳ, ବୁଢ଼ାବର ପ୍ରହସନ । ରାମଶଙ୍କରଙ୍କ ନାଟକରେ ସାମାଜିକ କୁସଂସ୍କାର, ଆଧ୍ୟାତ୍ମିକ ଏବଂ ନୈତିକ ସମସ୍ୟା ପ୍ରଭୃତି ପ୍ରତିଫଳିତ । ସେଥିପାଇଁ ତାଙ୍କର ସାହିତ୍ୟସୃଷ୍ଟି ନବଯୁଗର ଦୃଷ୍ଟି

*

ଏବଂ ଦର୍ଶନ ଦ୍ୱାରା କ୍ରମଶଃ ଚିହ୍ନିତ ହୋଇଥିଲା । ରାମଶଙ୍କର କେବଳ ନାଟ୍ୟକାର ନଥିଲେ ସେ ମଧ୍ୟ ଉପନ୍ୟାସ ରଚନାରେ ବ୍ରତୀ ଥିଲେ । 'ବିବାସିନୀ' ତାଙ୍କର ଏକ ଦୀର୍ଘକାୟ ଐତିହାସିକ ଉପନ୍ୟାସ । ଓଡ଼ିଶାରେ ମରହଟ୍ଟା ରାଜତ୍ୱକାଳୀନ ଦୁଃଖ-ଦୁର୍ଦ୍ଦଶା, ଦୁର୍ଭିକ୍ଷ, ରାଜନୈତିକ ଅସ୍ଥିରତା କଟକ ଜିଲ୍ଲାର ପାରାଦ୍ୱୀପ, କୁଜଙ୍ଗ ବିସ୍ତୃତ ଜଳବେଣୀ ମହାନଦୀର ପୃଷ୍ଠଭୂମିରେ ବର୍ଣ୍ଣିତ । କୁଜଙ୍ଗ ଷଣ୍ଢରାଜାଙ୍କ ଶାସନ ମରହଟ୍ଟା ସୁବାଦାରମାନଙ୍କ ଶାସନପ୍ରଣାଳୀ, ଆଚାର-ବ୍ୟବହାର, ଲୋକମାନଙ୍କର ସାମାଜିକ ଚଳଣି ଏଥିରେ ସୂଚିତ । ରାମଶଙ୍କରଙ୍କ ବିବିଧ ନାଟ୍ୟରଚନା ସେତେବେଳେ ଦୁଇଗୋଟି ଉଦ୍ଦେଶ୍ୟ ସାଧନ କରିଥିଲା । ପ୍ରଥମତଃ ନାଟ୍ୟରଚନା ଏବଂ ଅଭିନୟ ପ୍ରତି ଜନସାଧାରଣଙ୍କ ଆଗ୍ରହ ବୃଦ୍ଧି, ଦ୍ୱିତୀୟତଃ ଓଡ଼ିଶାରେ ସ୍ଥାୟୀ ନାଟ୍ୟଶାଳା ନିର୍ମାଣ ପରିକଳ୍ପନା । ଏହାର ପରିଣାମ ସ୍ୱରୂପ କୋଠପଦା ମହାନ୍ତଙ୍କ ସ୍ଥାପିତ ନାଟ୍ୟମଣ୍ଡପ, କୁଆଁପାଳ ଜମିଦାରଙ୍କ 'ରାଧାବଲ୍ଲଭ ଥିଏଟର' । କଟକର ଜନୈକ ଭଦ୍ରବ୍ୟକ୍ତିଙ୍କ ଜଗନ୍ନାଥ ଥିଏଟର, ନୟାଗଡ଼ ରାଜାଙ୍କ ଆଗ୍ରହ ଯୋଗୁଁ ନୟାଗଡ଼ଠାରେ ନାଟ୍ୟଶାଳା ନିର୍ମାଣ (୧୮୯୫) ଓଡ଼ିଶାରେ ନାଟ୍ୟଶାଳା ସଂପ୍ରସାରଣର ନିଦର୍ଶନ ।

ଉମେଶଚନ୍ଦ୍ର ସରକାର,'ପଦ୍ମମାଳୀ' ନାମକ ଏକ ରୋମାନ୍ସଧର୍ମୀ ସାମାଜିକ ଓ ଐତିହାସିକ ଉପନ୍ୟାସ ଲେଖିଥିଲେ । ଓଡ଼ିଆ ଉପନ୍ୟାସ ପର୍ଯ୍ୟାୟରେ 'ପଦ୍ମମାଳୀ' ଆଦ୍ୟକୃତି ବୋଲି ଆଲୋଚକମାନଙ୍କର ଦୃଷ୍ଟି ଆକର୍ଷଣ କରିଥାଏ । ଉପନ୍ୟାସର କଥାବସ୍ତୁ ତଦାନୀନ୍ତନ ଗଡ଼ଜାତ ଅଞ୍ଚଳର ପୃଷ୍ଠଭୂମିରେ ଲିଖିତ । ମାଣ୍ଡୀର ପ୍ରସିଦ୍ଧ ଜାଗରଯାତ୍ରା ଦର୍ଶନ ଉଦ୍ଦେଶ୍ୟରେ ସମାଗତ ପାଞ୍ଚଗଡ଼ ପାଟୁଆରି ଜଗବନ୍ଧୁ ପଟ୍ଟନାୟକଙ୍କ ପରିବାର ସେଠାରେ ତାଙ୍କର ଅସାଧାରଣ ସୁନ୍ଦରୀ କନ୍ୟା ପଦ୍ମମାଳୀ ଲମ୍ପଟ ଦୁର୍ଯ୍ୟୋଧନଦ୍ୱାରା ଅପହୃତା ହୋଇଥିଲା । କନ୍ତିପଦାର ରାଜା ପରୀକ୍ଷିତ ସିଂହଙ୍କ ଦ୍ୱାରା ପଦ୍ମମାଳୀର ଉଦ୍ଧାର, ମହନ୍ତ ହରିହର ରାମାନୁଜଙ୍କ ମଠରେ ତା'ର ଆଶ୍ରୟ ଗ୍ରହଣ, ପଦ୍ମମାଳୀ ଏବଂ ପରୀକ୍ଷିତଙ୍କ ମଧ୍ୟରେ ପ୍ରଣୟାଙ୍କୁର ଅଙ୍କୁରିତ ହୁଏ । ନୀଳଗିରି ରାଜ୍ୟର ଶାସନଭାର ନାବାଳକ ରାଜା କୃଷ୍ଣଚନ୍ଦ୍ରଙ୍କ ପକ୍ଷରୁ ରାଣୀଙ୍କ ଉପରେ ନ୍ୟସ୍ତ ହୋଇଥିଲା । ମାତ୍ର ପ୍ରକୃତ ଶାସନକଳ ରାଣୀଙ୍କ ଭାଇ ଶିବ ପଟ୍ଟନାୟକ ଏବଂ ତାଙ୍କର ଜାରଜଭ୍ରାତା ଦୁର୍ଯ୍ୟୋଧନ ପଟ୍ଟନାୟକଙ୍କ ଦ୍ୱାରା ନିୟନ୍ତ୍ରିତ ହେଉଥିଲା । ଅରାଜକତାର ସୁଯୋଗ ନେଇ ହରିବାବୁ ରାଜସିଂହାସନ ପ୍ରାପ୍ତି ପାଇଁ ଚେଷ୍ଟିତ ଥିଲେ । ଜଗବନ୍ଧୁ ପଟ୍ଟନାୟକଙ୍କ ଦ୍ୱାରା ଦୁର୍ଯ୍ୟୋଧନ ପଦ୍ମମାଳୀ ବିବାହ ପ୍ରସ୍ତାବ ପ୍ରତ୍ୟାଖ୍ୟାତ ହୁଅନ୍ତେ, ଦୁର୍ଯ୍ୟୋଧନ ପ୍ରତିଶୋଧ ପାଇଁ ପ୍ରତୀକ୍ଷା କରୁଥିଲେ । ଏତିକିବେଳେ ଘଣ୍ଟଶିଳାର ଦଳବେହେରାଙ୍କ କନ୍ୟା ଜୟନ୍ତୀର ରୂପଲାବଣ୍ୟ ପ୍ରଶଂସ

ଶ୍ରୁଣି ଲମ୍ପଟୀ ଦୁର୍ଯ୍ୟୋଧନ କାମାଗ୍ନିରେ ପ୍ରଜ୍ଜ୍ୱଳିତ ହେଲେ । ସେ କ୍ରମେ ଜଗବନ୍ଧୁ ପଟ୍ଟନାୟକ ଏବଂ ଦଳବେହେରାଙ୍କ ବିରୋଧରେ ଖଜଣା ଅନାଦାୟ ଅଭିଯୋଗରେ ରାଣୀଙ୍କ ଅନୁମତିକ୍ରମେ ବନ୍ଦୀ କରିବାପାଇଁ ଷଡ଼ଯନ୍ତ୍ର ଆରମ୍ଭ କଲେ । ସେମାନେ ବନ୍ଦୀ ହେଲେ । ଏହି ଅବସରରେ ଦୁର୍ଯ୍ୟୋଧନ ପଦ୍ମମାଳୀ ଏବଂ ଜୟନ୍ତୀଙ୍କୁ ବିବାହ କରିବାକୁ ଫେରାଇ ଆଣିଥିଲେ । ଦେଶରେ ବିଦ୍ରୋହାଗ୍ନି ପ୍ରଜ୍ଜ୍ୱଳିତ ହୋଇଥିଲା । ବିଦ୍ରୋହରେ ପଦ୍ମମାଳୀ ଓ ଜୟନ୍ତୀ ଉଦ୍ଧାର ପାଇଥିଲେ । ନୀଳଗିରି ରାଣୀ ନାବାଳକ ପୁତ୍ର ସହିତ ବାଲେଶ୍ୱର ଜିଲ୍ଲାର ମାଜିଷ୍ଟ୍ରେଟଙ୍କ ଆଶ୍ରୟ ନେଇଥିଲେ । ମାଜିଷ୍ଟ୍ରେଟଙ୍କ ହସ୍ତକ୍ଷେପ ଫଳରେ ବିଦ୍ରୋହୀମାନେ ପୃଷ୍ଠଭଙ୍ଗ ଦେଲେ; ପରୀକ୍ଷିତ ସିଂହ ବନ୍ଦୀ ହେଲେ । ମହାନ୍ତଙ୍କ ପ୍ରଚେଷ୍ଟାରେ ପରୀକ୍ଷିତ ମୁକ୍ତିଲାଭ କରନ୍ତି । ଏହାପରେ ପରୀକ୍ଷିତଙ୍କ ସହିତ ପଦ୍ମମାଳୀ ଏବଂ ଦଳବେହେରାଙ୍କ ସହିତ ଜୟନ୍ତୀଙ୍କର ବିବାହ ସମ୍ପାଦିତ ହୋଇଥିଲା । ଓଡ଼ିଆ ସାହିତ୍ୟରେ ଆଧୁନିକତାର ଆଦି ଉନ୍ମେଷ ଯୁଗରେ ଏହାହିଁ ହେଉଛି ପ୍ରଥମ ଉପନ୍ୟାସ କୃତିର ସ୍ୱରୂପ । ଭାଷା ପାଣ୍ଡିତ୍ୟପୂର୍ଣ୍ଣ ଶୈଳୀରେ ସଂଯୋଜିତ । ସଂସ୍କୃତର ବାଣଭଟ୍ଟଙ୍କ ରୋମାନ୍‌ସଧର୍ମୀ ଗଦ୍ୟଲେଖା 'କାଦମ୍ବରୀ' ସହିତ ଏହାର ଭାଷା, ପରିବେଷଣ, ଚରିତ୍ର ମନୋନୟନର ସାମ୍ୟ ପରିଲକ୍ଷିତ ।

ଏହିପରି ଊନବିଂଶ ଶତାବ୍ଦୀର ଶେଷ ଦଶନ୍ଧିରେ ପାଶ୍ଚାତ୍ୟଶିକ୍ଷା, ସାହିତ୍ୟ ପ୍ରଭାବିତ ବହୁ ତରୁଣ ଲେଖକ ଓଡ଼ିଆ ସାହିତ୍ୟରେ ଉପନ୍ୟାସ, ନାଟକ, ପ୍ରବନ୍ଧ ପ୍ରଭୃତି ବିବିଧ ସାହିତ୍ୟିକ ଆଙ୍ଗିକରେ ଲେଖନୀ ଚାଳନା କରିଥିଲେ । ସାହିତ୍ୟର ବିଭିନ୍ନ ଆଙ୍ଗିକର ଉତ୍ପତ୍ତି ବିକାଶ ପର୍ଯ୍ୟାୟରେ ତାହାର ଆଲୋଚନା କରାଯିବ ।

ଖ୍ରୀଷ୍ଟିଆନ୍ ମିସନାରୀ ଏବଂ ଇଂରେଜ ସରକାରଙ୍କ ଉଦ୍ୟମରେ ଓଡ଼ିଶାର ଶିକ୍ଷା, ସାହିତ୍ୟ, ସଂସ୍କୃତି କ୍ଷେତ୍ରରେ ଯେଉଁ ନବଚେତନାର ଉନ୍ମେଷ ସମ୍ଭବ ହୋଇଥିଲା, ତାହାର ପ୍ରତ୍ୟକ୍ଷ ପରିଣତି ଏବଂ ପ୍ରଭାବ ସଦୃଶ ଓଡ଼ିଶାର ସାମାଜିକ, ସାହିତ୍ୟିକ ଏବଂ ସାଂସ୍କୃତିକ କ୍ଷେତ୍ରରେ ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ବହୁ ପ୍ରତିଭାଶାଳୀ ସାଧକଙ୍କର ଆବିର୍ଭାବ ଘଟିଥିଲା । ସେମାନଙ୍କର ଅକ୍ଳାନ୍ତ ଲେଖନୀଚାଳନା ଯୋଗୁଁ ଓଡ଼ିଆ ସାହିତ୍ୟରେ ଆଙ୍ଗିକ ଏବଂ ଆତ୍ମିକ ରୂପାନ୍ତର ସାଧିତ ହେଲା ।

ଓଡ଼ିଆ ସାହିତ୍ୟରେ ନବଯୁଗର ଅଭିଷେକ ଯଥାର୍ଥତଃ ସାଂସ୍କୃତିକ ଜିଜ୍ଞାସା ଏବଂ ମୂଲ୍ୟବୋଧର ରୂପାନ୍ତର । ଐତିହାସିକ ଭିତ୍ତିଭୂମି, ସାଂପ୍ରତିକ ଯୁଗର

ଇଙ୍ଗିତ ଏବଂ ସଙ୍କେତ ତଥା ପ୍ରଙ୍କ ପ୍ରକ୍ଷିପ୍ତ ବୌଦ୍ଧିକ ଅଭିମୁଖ୍ୟ ସାହିତ୍ୟରେ ଯୁଗର ଉନ୍ମେଷ ସାଧନ କରିଥିଲା । ପ୍ରାଚୀନ ସାହିତ୍ୟଠାରୁ ଆଧୁନିକ ସାହିତ୍ୟର ସ୍ୱାତନ୍ତ୍ର୍ୟ ହେଉଛି ଗଭୀର ଜୀବନଦର୍ଶନ, ଗୂଢ଼ ସୌନ୍ଦର୍ଯ୍ୟତତ୍ତ୍ୱ, ସାମାଜିକ ତଥା ଜାତୀୟ ପରିକଳ୍ପନା । ପୂର୍ବ ଯୁଗର ସାହିତ୍ୟ ତଥା ସମାଜ ନିର୍ଦ୍ଦିଷ୍ଟ ସୀମା ସରହଦରେ ସୀମିତ ଥିଲା । ସାହିତ୍ୟ ଥିଲା ଶୃଙ୍ଗାରରସାତ୍ମକ, ତାହାର ଜୀବନାଦର୍ଶ ସଙ୍କୁଚିତ ଏବଂ ଅସ୍ପଷ୍ଟ ଥିଲା । ସାହିତ୍ୟ ଶୃଙ୍ଗାରାଶ୍ରିତ ହୋଇଥିବାରୁ ସେଥିରେ ଆଳଙ୍କାରିକ ପ୍ରାଚୁର୍ଯ୍ୟ ତଥା ଛନ୍ଦ ରାଗରାଗିଣୀର ନିର୍ଦ୍ଦେଶ ହିଁ ଥିଲା ଏକାନ୍ତ ଭାବର କାବ୍ୟ-ସାମଗ୍ରୀ । ଦ୍ୱିତୀୟ ସାହିତ୍ୟ କେବଳ ରାଜଦରବାର ପାଇଁ ଉଦ୍ଦିଷ୍ଟ ଥିଲା ବୋଲି ଅଭିଯୋଗ କରାଯାଇଥାଏ । କାମଶାସ୍ତ୍ର, ବିଭିନ୍ନ ଅଳଙ୍କାରଶାସ୍ତ୍ର ପ୍ରାଚୀନ କବି-ମାନଙ୍କର ଥିଲା ପ୍ରଭୂତ ଆଦର୍ଶ । କାବ୍ୟରେ ବଳିଷ୍ଠ ସାମାଜିକ ଦୃଷ୍ଟିଭଙ୍ଗୀ ପ୍ରବର୍ତ୍ତିତ ହୋଇପାରି ନଥିଲା । ପୂର୍ବ ମଧ୍ୟ ଯୁଗରେ ସାହିତ୍ୟର କର୍ମ ଥିଲା ଧର୍ମ । ମଧ୍ୟଯୁଗରେ ସାହିତ୍ୟରେ ଧର୍ମ ସ୍ଥାନରେ ପ୍ରବର୍ତ୍ତିତ ହୋଇଥିଲା 'ଶୃଙ୍ଗାରରସପ୍ଲାବିତ ପ୍ରେମ' । ତେଣୁ ଊନବିଂଶ ଶତାବ୍ଦୀର ଶେଷ ଦଶନ୍ଧିରେ ଓଡ଼ିଆ ସାହିତ୍ୟରେ ଯେଉଁ ନବଯୁଗ ପ୍ରବର୍ତ୍ତିତ ହେଲା, ତାହା ପ୍ରାଚୀନ ପରମ୍ପରା ଏବଂ ପୃଷ୍ଠଭୂମିର ବିଗ୍ରହରେ ପ୍ରଥମେ କାବ୍ୟରାଜ୍ୟରେ ପ୍ରତିବିମ୍ବିତ ହେଲା । ସେହି ଯୁଗରେ କବିଧର୍ମ ସ୍ୱତନ୍ତ୍ର ଥିଲା । ପ୍ରାଚୀନ କାଳରେ ସାହିତ୍ୟ କହିଲେ କାବ୍ୟ-କବିତାକୁ ହିଁ ବୁଝାଉଥିଲା । ତେଣୁ ନବଯୁଗ ପ୍ରଭାବରେ ରାଧାନାଥ ଯେତେବେଳେ ବିବିଧ କାବ୍ୟ-କବିତା ଲେଖିଥିଲେ, ଆଙ୍ଗିକ ଏବଂ ଆତ୍ମିକ ବିଭବ ଯୋଗୁଁ ତାହାହିଁ ନବଯୁଗର ନବସୃଷ୍ଟି ବୋଲି ଗୃହୀତ ହୋଇଥିଲା ।

ଓଡ଼ିଆ ସାହିତ୍ୟରେ ଆଧୁନିକତାର ପ୍ରଥମ ଜାଗରଣ ପର୍ବରେ ଜାତୀୟତାବାଦୀ ନେତା କୁଳବୃଦ୍ଧ ମଧୁସୂଦନ ଦାସ (୧) (୧୮୪୮-୧୯୩୪), ସମ୍ପାଦକ ଗୌରୀଶଙ୍କର ରାୟ (୨) ବିଭିନ୍ନ ଗ୍ରନ୍ଥସଙ୍କଳକ ପଣ୍ଡିତ ଗୋବିନ୍ଦ ରଥ (୩) (୧୮୪ -୧୯୧୮), ପ୍ରାବନ୍ଧିକ ପଣ୍ଡିତ ମୃତ୍ୟୁଞ୍ଜୟ ରଥ (୪) (୧୮୮୨-୧୯୨୪), ସମ୍ପାଦକ ନୀଳମଣି

---

(୧) ଜାତୀୟ ଉଦ୍‌ବୋଧନ ସଙ୍ଗୀତସମୂହ ।

(୨) ଉତ୍କଳଦୀପିକା (ସାପ୍ତାହିକ) ସମ୍ବାଦପତ୍ର ।

(୩) ସତ୍ୟେଶ୍ୱର (୧୮୭୫), କବିତାକଳାପ, ପଦ୍ୟମଞ୍ଜୁଷା, କଟକ ନଗରୀ, ଫ୍ୟୁଚରସାହେବ, ମହାମେଳା ଦର୍ଶନ, ବର୍ଣ୍ଣବୋଧକ ।

(୪) ପ୍ରବନ୍ଧପାଠ, ନାରୀଦର୍ପଣ, ଊନବିଂଶ ଶତାବ୍ଦୀର ଓଡ଼ିଆ ପତ୍ରିକା, ସାରଳାଚରିତ ।

ବିଦ୍ୟାରତ୍ନ (୫), ସମ୍ପାଦକ ବିଶ୍ୱନାଥ କର (୬), ପ୍ରାବନ୍ଧିକ ଓ ସମାଲୋଚକ ଶ୍ୟାମସୁନ୍ଦର ରାଜଗୁରୁ (୭), ତାରଣୀଚରଣ ରଥ (୮), ଭାଷାତତ୍ତ୍ୱବିତ୍ ପଣ୍ଡିତ ଗୋପୀନାଥ ନନ୍ଦ (୯) (୧୮୧୮-୧୯୨୭), ଚନ୍ଦ୍ରମୋହନ ମହାରଣା (୧୦) ପ୍ରମୁଖଙ୍କ ପ୍ରବନ୍ଧ । ସମାଲୋଚନା ଏବଂ ବହୁତୋମୁଖୀ ଗଦ୍ୟରଚନା ସାହିତ୍ୟିକମାନଙ୍କ ମଧ୍ୟରେ ଆଲୋକବର୍ତ୍ତିକା ସଦୃଶ କାର୍ଯ୍ୟ କରିଥିଲା ।

ସାହିତ୍ୟରେ ଏହି ନବଜାଗରଣ ପର୍ଯ୍ୟାୟରେ ଓଡ଼ିଶାର ବିଭିନ୍ନ ରାଜଦରବାର ଯେଉଁ ସକ୍ରିୟ ବୌଦ୍ଧିକ ଭୂମିକା ଗ୍ରହଣ କରିଥିଲେ, ତାହା ମଧ୍ୟ ଅନୁଧ୍ୟାନଯୋଗ୍ୟ । ବାମଣ୍ଡା ରାଜା ସାର ବାସୁଦେବ ସୁଢ଼ଳ ଦେବ (୧୮୪୮-୧୯୦୩) (୧୧) ତଦୀୟ ପୁତ୍ର ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ (୧୮୭୩—୧୯୧୬) (୧୨) ଙ୍କର ସାହିତ୍ୟସାଧନା ପ୍ରଶଂସନୀୟ । ସେମାନଙ୍କର ସାହିତ୍ୟସୃଷ୍ଟି, ପାଣ୍ଡିତ୍ୟ ଓଡ଼ିଶାର ବହୁ କବି, ପ୍ରାବନ୍ଧିକମାନଙ୍କୁ ପ୍ରୋତ୍ସାହିତ କରିଥିଲା । ସୋନପୁର ରାଜା ସାର ବୀରମିତ୍ରୋଦୟ ସିଂହ ଦେବଙ୍କ 'ଭଗ୍ନକଙ୍କଣ' ଉପନ୍ୟାସ । ଋତୁସଂହାର, (ଅନୁବାଦ), ନୈଷଧୀୟ ଚରିତ (ଅନୁବାଦ) ମଧ୍ୟ ସେହି ସମୟରେ ପାଠକ ସମାଜରେ ଆଦୃତ ହୋଇଥିଲା । ଜୟପୁର ରାଜା ବିକ୍ରମ ଦେବ ବର୍ମା, (୧୮୬୯-୧୯୪୭) ଜଣେ ସାହିତ୍ୟାନୁରାଗୀ ଏବଂ ସାହିତ୍ୟସ୍ରଷ୍ଟା ଭାବରେ ଓଡ଼ିଆ ସାହିତ୍ୟର ବିକାଶ ପାଇଁ ଧ୍ୟାନ ଦେଇଥିଲେ । ବିଂଶ ଶତାବ୍ଦୀର 'ପ୍ରଥମାର୍ଦ୍ଧରେ' ମୁକୁର ପତ୍ରିକାର ସଂପାଦକ ବ୍ରଜସୁନ୍ଦର ଦାସ, 'ଆଶା' ପତ୍ରିକାର ସଂପାଦକ ଶଶିଭୂଷଣ ରଥ ପ୍ରମୁଖଙ୍କର ସାଧନା ସ୍ମରଣୀୟ । ଏହିପରି ଚଳିତ ଶତାବ୍ଦୀର ପ୍ରାକ୍ କାଳରେ ଓଡ଼ିଆ ସାହିତ୍ୟର ରୂପ ଓ ଭାବକୁ ବୈପ୍ଳବିକ ଆଭିମୁଖ୍ୟ ଦେବାରେ ବହୁ ଲେଖକ ଦାୟୀ ହୋଇଥିଲେ ।

---

(୫) ପ୍ରଜାବନ୍ଧୁ ପତ୍ରିକା, ସମ୍ବଲପୁର ହିତୈଷିଣୀ ପତ୍ରିକା ।

(୬) ବିବିଧ ପ୍ରବନ୍ଧ, ଉତ୍କଳ ସାହିତ୍ୟ ପତ୍ରିକା ।

(୭) ପ୍ରବନ୍ଧାବଳୀ ।

(୮) ଅନ୍ନପୂର୍ଣ୍ଣା, ଓଡ଼ିଆ ସାହିତ୍ୟର ଇତିହାସ ।

(୯) ଓଡ଼ିଆ ଭାଷାତତ୍ତ୍ୱ, ଓଡ଼ିଆ ଶବ୍ଦତତ୍ତ୍ୱବୋଧ ଅଭିଧାନ ଶ୍ରୀ ଭାରତ ଦର୍ପଣ ।

(୧୦) କଥାବଳୀ (ପାଠ୍ୟ ପୁସ୍ତକ) ।

(୧୧) ବୀରବାମା, ଛନ୍ଦୋମାଳା, ଅଳଙ୍କାର ବୋଧୋଦୟ ।

(୧୨) କାଦମ୍ବରୀ (ପଦ୍ୟାନୁବାଦ), ବୈଦିକ ପ୍ରକୃତି ।

## ରାଧାନାଥ ; (୧୮୪୮-୧୯୦୮)

ଓଡ଼ିଆ ସାହିତ୍ୟର ନବ ଜାଗରଣ ପର୍ବର ପ୍ରଧାନ ପ୍ରବର୍ତ୍ତକ ଭାବରେ କାବ୍ୟକାର ରାଧାନାଥ ରାୟ (୧୮୪୮—୧୯୦୮), କଥାଶିଳ୍ପୀ ଫକୀର ମୋହନ ସେନାପତି (୧୮୪୩—୧୯୧୮) ଭକ୍ତକବି ମଧୁସୂଦନ ରାଓ (୧୮୫୩—୧୯୧୨) ଙ୍କର ନାମ ହିଁ ସ୍ମରଣୀୟ । ବିଶେଷତଃ ପ୍ରାଚୀନ ସାହିତ୍ୟ କାବ୍ୟ-ସର୍ବସ୍ୱ ଥିଲା । ତେଣୁ ସେହି କାବ୍ୟର ଆଙ୍ଗିକ ଏବଂ ଆତ୍ମିକ ପରିବର୍ତ୍ତନ ହିଁ ସଂଘଟିତ କରିବାର ପ୍ରଲୋଭନ ନବଶିକ୍ଷିତ ନବରୁଚି ଉଦ୍‌ବୁଦ୍ଧ ପାଠକମାନଙ୍କୁ ସର୍ବପ୍ରଥମେ ଆକୃଷ୍ଟ କରିପାରିଥିଲା । କାବ୍ୟଧାରାର ପରିବର୍ତ୍ତନ ଏବଂ ରୂପାନ୍ତର ସହିତ ଓଡ଼ିଆ ସାହିତ୍ୟର ନବଜାଗରଣ ଘଟଣାକୁ ଜଡ଼ିତ କରାଯାଇଥାଏ । ସେଥିପାଇଁ କାବ୍ୟ-ଶିଳ୍ପୀ ରାଧାନାଥଙ୍କୁ ପାଠକ ଏବଂ ସମାଲୋଚକମାନେ ଓଡ଼ିଆ ସାହିତ୍ୟରେ ନବ-ଯୁଗର ପ୍ରବର୍ତ୍ତକ ବୋଲି ସହଜରେ ଗ୍ରହଣ କରି ନେଇଥିଲେ । ରାଧାନାଥ ମୁଖ୍ୟତଃ ପ୍ରାକୃତିକ ସୌନ୍ଦର୍ଯ୍ୟବିଳାସୀ, ସ୍ୱଦେଶପ୍ରେମୀ, ମାନବବାଦୀ କାବ୍ୟସ୍ରଷ୍ଟା ଥିଲେ । ଉତ୍କଳ ପ୍ରକୃତିର ବିବିଧ ସୁଷମା ଯଥା ପଲ୍ଲୀପ୍ରାନ୍ତର, ନଦନଦୀ, ସରୋବର, ମହୋଦଧି, ନଭଶ୍ଚୁମ୍ବୀ ପର୍ବତମାଳା, ସବୁଜ ବନାନୀ, ତାଳତମାଳ ବନବୀଥିରେ ପରିପୂର୍ଣ୍ଣ । ସେହିପରି ଉତ୍କଳର ଜାତୀୟ ଇତିହାସ ଏବଂ କିମ୍ବଦନ୍ତୀ ବୀରତ୍ୱ, ଦେଶ ପ୍ରେମ, ତ୍ୟାଗ, ସାଧନା ଭିତରେ ସମନ୍ୱିତ । କିନ୍ତୁ ସାହିତ୍ୟରେ ସୌନ୍ଦର୍ଯ୍ୟଶାଳିନୀ ଏବଂ ଇତିହାସ କିମ୍ବଦନ୍ତୀପୂତ ଉତ୍କଳଭୂମି ଏକରକମ ଅବହେଳିତ ହୋଇଥିଲା । ରାଧାନାଥଙ୍କ ଲେଖନୀରେ ଉତ୍କଳୀୟ ପ୍ରକୃତି ଏବଂ ଗୌରବୋଜ୍ଜ୍ୱଳ ଇତିହାସ ଉଦ୍‌ଭାସିତ ହୋଇଉଠିଲା । ପ୍ରକୃତିର ମୁକ୍ତ ସୌନ୍ଦର୍ଯ୍ୟର ଅନନ୍ତଲୀଳା ମଧ୍ୟରେ ରାଧାନାଥ କାବ୍ୟମନ୍ତ୍ର ଉଚ୍ଚାରଣ କରିଥିଲେ । ସେଥିପାଇଁ ତାଙ୍କର ପ୍ରତ୍ୟେକ କାବ୍ୟରେ ପ୍ରକୃତିପ୍ରେମ, ରୂପପ୍ରାଣତା ଏବଂ ସୌନ୍ଦର୍ଯ୍ୟଚର୍ଚ୍ଚା ହିଁ ପରିସ୍ଫୁଟ । ତାଙ୍କର ଗଭୀର ପ୍ରକୃତିପ୍ରେମ ଯଥାର୍ଥତଃ ତାଙ୍କର ଜୀବନାସକ୍ତିର ପ୍ରତୀକ । ପୁନଶ୍ଚ, ତାଙ୍କର କବିମନ୍ତ୍ର ଏକାନ୍ତ ଭାବରେ ଥିଲା ପ୍ରେମ, ରୋମାନ୍‌ସ ପ୍ରଭାବିତ । ତାଙ୍କର ପ୍ରାୟତଃ ବିଭିନ୍ନ କାବ୍ୟରେ କଥାବସ୍ତୁ, ନାୟକନାୟିକାଙ୍କ ପ୍ରେମ, ଯୌବନ ଏବଂ ରୂପାକାଂକ୍ଷାକୁ ଆଶ୍ରୟ କରିଛି । ଉତ୍କଳୀୟ ଏବଂ ଭାରତୀୟ ପ୍ରକୃତିର ବିଚିତ୍ର ଦୃଶ୍ୟ ମାଧ୍ୟମରେ କାବ୍ୟର ନାୟକ ନାୟିକା ସତେ ଯେପରି ସେମାନଙ୍କର ରୂପତୃଷା ଚରିତାର୍ଥ କରିପାରିଛନ୍ତି । କବିଙ୍କର ଘୋଷଣା—

> "କିନ୍ତୁ ରୂପ ଥିଲେ ପ୍ରଚ୍ଛନ୍ନେ କେବେ ରହିକ ଗୁଡ଼େ
> ପୁଷ୍ପେ ଥିଲେ ମଧୁ ଯତନେ ଖୋଜି ମଧୁପ କାଢ଼େ ।"

ଯଥାର୍ଥତଃ କବିଙ୍କ ଅନ୍ତରର ଶିଳ୍ପୀ ପୁରୁଷର ଯଥାର୍ଥ ଅଭିବ୍ୟକ୍ତି । କାବ୍ୟର କଥାବସ୍ତୁ ପାଇଁ କବି ଅତୀତର ଇତିହାସ, ପୁରାଣ, କିମ୍ବଦନ୍ତୀ ଏବଂ ପାଶ୍ଚାତ୍ୟ ଗଳ୍ପ ଉପରେ ନିର୍ଭର କରିଥିଲେ । କବିଙ୍କର କାବ୍ୟକୃତି ବର୍ଣ୍ଣନାତ୍ମକ, ପ୍ରେମ ଆଖ୍ୟାନମୂଳକ, ସାଂପ୍ରତିକ ରାଜନୈତିକ ଏବଂ ସମସ୍ୟାମୂଳକ—ଏପରି ବିଭିନ୍ନ ପର୍ଯ୍ୟାୟରେ ବିଭକ୍ତ କରାଯାଇପାରେ । ଏହି କ୍ରମରେ ତାଙ୍କର ବର୍ଣ୍ଣନାତ୍ମକ କାବ୍ୟ 'ଚିଲିକା' । ଇତିହାସ-କିମ୍ବଦନ୍ତୀ-ସମ୍ବଳିତ ପ୍ରେମକାବ୍ୟ କେଦାରଗୌରୀ, ଚନ୍ଦ୍ରଭାଗା, ନନ୍ଦିକେଶରୀ, ଉଷା, ଯଯାତିକେଶରୀ ଏବଂ ବ୍ୟଙ୍ଗ-ବିଦ୍ରୂପାତ୍ମକ ରାଜନୈତିକ କାବ୍ୟ ଦରବାର ଏବଂ ମହାଯାତ୍ରା ଉଲ୍ଲେଖଯୋଗ୍ୟ ।

ରାଧାନାଥଙ୍କର ପ୍ରଥମ କାବ୍ୟ କେଦାରଗୌରୀର କଥାବସ୍ତୁ ରୋମାନ କବି ଓଭିଡ୍‌ଙ୍କର ପିରାମସ୍‌ଥିସ୍‌ବି ଏବଂ ସ୍ଥାନୀୟ କିମ୍ବଦନ୍ତୀର ସମ୍ମିଶ୍ରଣରେ ଗଠିତ । ସେହିପରି ତାଙ୍କର ପ୍ରେମପ୍ରଧାନ ଚନ୍ଦ୍ରଭାଗା କାବ୍ୟ ଗ୍ରୀସ୍ ଦେଶୀୟ ଆପୋଲ ଓ ଡାଏନାଙ୍କ ପ୍ରଣୟ କାହାଣୀ ଏବଂ ଓଡ଼ିଶାର ପ୍ରସିଦ୍ଧ ଐତିହାସିକ କୋଣାର୍କ ମନ୍ଦିରର ଅଧିଷ୍ଠାତା ଦେବ ସୂର୍ଯ୍ୟ ତଥା ସିନ୍ଧୁଜାତ ସୁନ୍ଦରୀ ଚନ୍ଦ୍ରଭାଗାର ପ୍ରଣୟ କାହାଣୀର ସମନ୍ୱୟ । ପ୍ରସିଦ୍ଧ ପୁରୁଷୋତ୍ତମ କ୍ଷେତ୍ର କାବ୍ୟର ପୀଠିକା । ଯୌବନଚଞ୍ଚଳ ଲୀଳାମୟୀ ଚନ୍ଦ୍ରଭାଗାର ରୂପରେ ସୂର୍ଯ୍ୟ ମୋହଗ୍ରସ୍ତ ହେବା, ସୂର୍ଯ୍ୟଙ୍କ ସହିତ କନ୍ଦର୍ପଙ୍କର କଳହ ଯୋଗୁଁ ଶରନିକ୍ଷେପ, ସୂର୍ଯ୍ୟଙ୍କ ପ୍ରତି ଚନ୍ଦ୍ରଭାଗାର ବିମୁଖତା, ଚନ୍ଦ୍ରଭାଗାର ସମୁଦ୍ରରେ ନିମଜ୍ଜନ ଏବଂ ଚନ୍ଦ୍ରଭାଗାର ପିତା ସୁମନ୍ୟୁଙ୍କର ଅଭିଶାପରେ କୋଣାର୍କ ମନ୍ଦିର ଧ୍ୱଂସ—ଏହାହିଁ କାବ୍ୟବର୍ଣ୍ଣିତ କଥାବସ୍ତୁ ।

ଉତ୍କଳ ଇତିହାସର ପଟ୍ଟଭୂମିରେ ରଚିତ ନନ୍ଦିକେଶରୀ କାବ୍ୟରେ ଚୋଡ଼ଗଙ୍ଗଙ୍କର ଉତ୍କଳାଭିଯାନ, ଉତ୍କଳ ନରପତିଙ୍କ ଆଦରଣୀୟା କନ୍ୟା ନନ୍ଦିକାର ପିତାଙ୍କ ଅଜ୍ଞାତରେ ଚୋଡ଼ଗଙ୍ଗ ନିକଟରେ ବ୍ୟର୍ଥ ପ୍ରଣୟଭିକ୍ଷା ହିଁ ସ୍ଥାନ ପାଇଛି । କାବ୍ୟରେ ବର୍ଣ୍ଣିତ ଐତିହାସିକ ଘଟଣାର ସତ୍ୟତା କେତେଦୂର ଅଭ୍ରାନ୍ତ, ତାହା ଗବେଷଣାସାପେକ୍ଷ ।

ନୁରୁପୁରର ରାଜା ବୀରସିଂହଙ୍କ କନ୍ୟା ଉଷା ଏବଂ ହେମପୁରର ରାଜା ବାହନପତିଙ୍କ ପୁତ୍ର ଜୟନ୍ତ ଯଥାକ୍ରମେ ସ୍ୱର୍ଗଭ୍ରଷ୍ଟା ଅପ୍‌ସରା ତିଲୋତ୍ତମା ଏବଂ ଗନ୍ଧର୍ବ ଚିତ୍ରରଥ ଏବଂ ମର୍ତ୍ତ୍ୟରେ ସେମାନଙ୍କର ସାକ୍ଷାତ ପ୍ରଣୟ ଏବଂ ଠିକ୍ ବିବାହବେଦୀରେ ଉଭୟଙ୍କର ମର୍ତ୍ତ୍ୟରୁ ବିଦାୟ ହେଉଛି ଉଷା'କାବ୍ୟର କଥାବସ୍ତୁ । ଉଇଲିୟମ୍ ମରିସ୍‌ଙ୍କର କାବ୍ୟ 'ଆଟ୍‌ଲାଣ୍ଟସ ରେସ୍'ର କଥାବସ୍ତୁ ସହିତ 'ଉଷା'କାବ୍ୟର ସାମଞ୍ଜସ୍ୟ ଯଥେଷ୍ଟ ।

'ଯଯାତିକେଶରୀ' କାବ୍ୟ ଓଡ଼ିଶା ଇତିହାସର ପୃଷ୍ଠଭୂମିରେ ରଚିତ । କବିଙ୍କର 'ପାର୍ବତୀ' କାବ୍ୟରେ ବର୍ଣ୍ଣିତ କନ୍ୟା ଉପରେ ପିତାର ପାଶବିକ

ଅତ୍ୟାଗ୍ରୁର ଘଟଣା ଐତିହାସିକ ଏବଂ ସାହିତ୍ୟ-ସମାଲୋଚକମାନଙ୍କ ଦ୍ୱାରା ଭର୍ତ୍ସିତ, ସମାଲୋଚିତ ହୋଇଛି । ରାଧାନାଥଙ୍କ ଉପରୋକ୍ତ କାବ୍ୟସମୂହ ପ୍ରେମପ୍ରଧାନ, କରୁଣ ରସାଶ୍ରିତ ଏବଂ କ୍ରୂର ନିୟତିର ତାଡ଼ନାରେ କାବ୍ୟ ନାୟକ-ନାୟିକା ଜର୍ଜରିତ ଏବଂ ସେମାନେ ନିୟତି ହସ୍ତରେ ଯେପରି ଅସହାୟ କନ୍ଦୁକ । ଏହି ତିନି କାବ୍ୟରେ ପ୍ରେମ, ପରିଣୟଜନିତ କରୁଣ ପରିସମାପ୍ତି ହିଁ ପାଠକ ପ୍ରାଣରେ ନାୟକ-ନାୟିକାଙ୍କ ପ୍ରତି ସମବେଦନା ସୃଷ୍ଟି କରିଥାଏ; ବିଶେଷତଃ 'ପାର୍ବତୀ' କାବ୍ୟର କଥାଟି ନିହାତି ଜଘନ୍ୟ ।

ଓଡ଼ିଆ ସାହିତ୍ୟରେ ପ୍ରକୃତିର କୌଣସି ସୌନ୍ଦର୍ଯ୍ୟ ବସ୍ତୁକୁ କଥାବସ୍ତୁ ତଥା ନାୟିକାରୂପେ ବ୍ୟବହାର କରି କାବ୍ୟ ଲେଖିବାରେ ରାଧାନାଥ ହିଁ ପ୍ରଥମ କବି । ଏହି ପର୍ଯ୍ୟାୟରେ କବିଙ୍କର ବର୍ଣ୍ଣନାତ୍ମକ କାବ୍ୟ 'ଚିଲିକା' (୧୮୯୨) ଓଡ଼ିଆ ସାହିତ୍ୟରେ ଏକ ମନୋଜ୍ଞ ସୃଷ୍ଟିଶିଳ୍ପ ଏବଂ କବି ରାଧାନାଥଙ୍କର ଗଭୀର ରୂପ-ପ୍ରାଣତାର, ସୌନ୍ଦର୍ଯ୍ୟ ପିପାସା ଏବଂ ଅଫୁରନ୍ତ ଉତ୍କଳର ସୌନ୍ଦର୍ଯ୍ୟ ପ୍ରୀତିର ଅମ୍ଳାନ ପ୍ରତୀକ । ଚିଲିକା ପୁରୀ ଜିଲ୍ଲାର ଦକ୍ଷିଣ ସୀମାନ୍ତରେ ବଙ୍ଗୋପସାଗର ସୀମାବର୍ତ୍ତୀ ଏକ ପ୍ରାକୃତିକ ହ୍ରଦ । ଦିଗନ୍ତ ବିସ୍ତୃତ ଅନନ୍ତ ନୀଳ ଜଳବେଣୀ, ତଟବର୍ତ୍ତୀ ବିବିଧ ଶ୍ୟାମାୟମାନ ପର୍ବତମାଳା, ଅରଣ୍ୟସମୂହ, ଐତିହାସିକ ମନ୍ଦିର-ମାଳା, ପକ୍ଷୀବିହାରୀ ମରାଳ ପନ୍ତି ଚିଲିକାର ଅନୁପମ ରୂପ ବିଭବ । ଚିଲିକା କବିର କାବ୍ୟରେ ରୂପସୀ ନାୟିକାରୂପେ ବର୍ଣ୍ଣିତ । କବିର ପ୍ରକୃତି ରୂପ ପିପାସା ସୌନ୍ଦର୍ଯ୍ୟ-ମୟୀ ବୀଚିମାଳିନୀ ଚିଲିକା ଦର୍ଶନରେ ଯେପରି ମୂର୍ତ୍ତିମନ୍ତ ହୋଇଥିଲା । କବି ନିଜର ନିଃସଙ୍ଗ ଜୀବନର ସଖୀରୂପରେ ଗ୍ରହଣ କରିଥିଲେ ।

"ସଖି ପ୍ରାୟ ତୋତେ ସ୍ମରୁଥିଲି ନିତି,
ଗୁରୁ ପ୍ରାୟ ତାଙ୍କୁ ଦୂରୁଁ କରି ଭୀତି ।

× × ×

ଏ ଶୋକପାଶୋରା ଅପ୍ସରା ଭୁବନ,
ଦେଖି ପାସୋରିବ କିହି କେଉଁ ଜନ ।"

ଚିଲିକା କାବ୍ୟର ଉପସଂହାର କବିର ବ୍ୟକ୍ତିଗତ ଦୁଃଖ ପରାଜୟ ବୋଧ ପୀଡ଼ିତ ଜୀବନଦର୍ଶନ ବିଶ୍ଳେଷଣରେ ଭାବଗମ୍ଭୀର ହୋଇପାରିଛି । ପୁନଶ୍ଚ ଜନ୍ମ-ଭୂମି ଉତ୍କଳର ଦୁର୍ଦ୍ଦଶାରେ କବିର ଲେଖନୀରେ ଉଭୟ ନୈରାଶ୍ୟ ଏବଂ ଆଶାର ବାଣୀ ପ୍ରତିଧ୍ୱନିତ । ଏହି କାବ୍ୟ ପ୍ରଥମେ ମୟୂରଭଞ୍ଜର ତଦାନୀନ୍ତନ 'ଉତ୍କଳପ୍ରଭା' ପତ୍ରିକାରେ ଧାରାବାହିକ ଭାବରେ ପ୍ରକାଶିତ ହୋଇଥିଲା ।

ବ୍ରିଟିଶ ଶାସନରେ ଭାରତବର୍ଷରେ ତୋଷାମଦକାରୀ ନରପତିମାନେ ଉପର ସାମ୍ରାଜ୍ୟବାଦୀ ଶାସକ ଗୋଷ୍ଠୀର ପ୍ରଦତ୍ତ ଉପାଧିରେ ନିଜନିଜକୁ ଭୂଷିତ କରି କୃତକୃତ୍ୟ ଅନୁଭବ କରନ୍ତି; ଉପାଧି, ପଦ, ପଦକ ପାଇଁ ଦେଶୀୟ ଶାସକମାନଙ୍କର କି ବ୍ୟାକୁଳତା ସତେ; 'ଦରବାର' ଏହିପରି ଏକ ରଚନା । ପ୍ରାଦେଶିକ ଶାସକଗୋଷ୍ଠୀଙ୍କ ଦ୍ୱାରା ଅନୁଷ୍ଠିତ ଦରବାର କବିଙ୍କ 'ଦରବାର' କାବ୍ୟର ବିଷୟବସ୍ତୁ । ଉତ୍କଳର ଦେଶୀୟ ରାଜ୍ୟ ଖଣ୍ଡପଡ଼ାର ଅଧିବାସୀ ଭାରତର ପ୍ରସିଦ୍ଧ ଜ୍ୟୋତିର୍ବିଦ ଚନ୍ଦ୍ରଶେଖର ସାମନ୍ତଙ୍କ ଅପୂର୍ବ ଜ୍ୟୋତିଷସାଧନା କାବ୍ୟର କେନ୍ଦ୍ର ଆବେଦନ । ତାଙ୍କୁ ଇଂରେଜ ସରକାରଙ୍କ ଦରବାରରେ ଉପାଧି ପ୍ରଦାନ କରାଯିବା ଘଟଣା ରାଧାନାଥଙ୍କୁ ସରକାରଙ୍କ ଉପାଧି ପ୍ରଦାନ ପ୍ରହସନ ବିରୋଧରେ ଉତ୍କ୍ଷିପ୍ତ କରିଥିଲା ।

'ମହାଯାତ୍ରା' (୧୮୯୬) ରାଧାନାଥଙ୍କର ଏକ ମୁଖ୍ୟ କାବ୍ୟ । ପୁରାଣ, କିମ୍ବଦନ୍ତୀ ଏବଂ ଭାରତର ରାଜନୈତିକ ଇତିହାସ କାବ୍ୟରେ କଥାବସ୍ତୁରୂପେ ଗୃହୀତ । କବି ସମ୍ଭବତଃ ତାଙ୍କର ଏହି ସପ୍ତସର୍ଗବିଶିଷ୍ଟ କାବ୍ୟକୁ ମହାକାବ୍ୟର ଆକୃତି ପ୍ରକୃତି ଦେବାପାଇଁ ଇଚ୍ଛୁକ ଥିଲେ; ମାତ୍ର କାବ୍ୟଟି ଅସଂପୂର୍ଣ୍ଣ ଜଣାପଡ଼େ । ଏହି କାବ୍ୟରେ ରାଧାନାଥଙ୍କର ଏକମାତ୍ର ବୈଶିଷ୍ଟ୍ୟ ହେଉଛି ତାଙ୍କର ଅନୁସୃତ ଅମିତ୍ରାକ୍ଷର ଛନ୍ଦ । ବଙ୍ଗକବି ମାଇକେଲ ମଧୁସୂଦନ ଦତ୍ତଙ୍କ 'ମେଘନାଦବଧ' ସଦୃଶ ମହାଯାତ୍ରା କାବ୍ୟର ଶୈଳୀ ଏବଂ ସଫଳତା ବିଚାର୍ଯ୍ୟ । କବି କାବ୍ୟରେ ପ୍ରାଚୀନ କାବ୍ୟ ଯୁଗର ନମସ୍କ୍ରିୟା ବସ୍ତୁ ନିର୍ଦ୍ଦେଶ ସୂଚିତ କରିଛନ୍ତି । ଯୁଧିଷ୍ଠିରଙ୍କ ସ୍ୱର୍ଗାରୋହଣ, ଆର୍ଯ୍ୟ-ଯବନ ସଂଘର୍ଷ, ବୌଦ୍ଧଧର୍ମର ଉତ୍ଥାନ ପତନ, ପ୍ରାକୃତିକ ସୌନ୍ଦର୍ଯ୍ୟ ପରିପୂର୍ଣ୍ଣ ଉତ୍କଳର ନଦନଦୀ, ସାଗର, ପର୍ବତ, ଅରଣ୍ୟ ପ୍ରଭୃତି ମନୋମୁଗ୍ଧକର ଦୃଶ୍ୟ ଉତ୍କଳର ସାଂସ୍କୃତିକ ପରିବେଶ କାବ୍ୟରେ ସ୍ଥାନ ପାଇଛି । ଉତ୍କଳୀୟ ପ୍ରକୃତିବର୍ଣ୍ଣନାର ଚୂଡ଼ାନ୍ତ ପରାକାଷ୍ଠା ଏହି କାବ୍ୟରେ ରାଧାନାଥ କରିପାରିଛନ୍ତି ବୋଲି କୁହାଯାଇପାରେ । ସମସାମୟିକ କବି ମଧୁସୂଦନ ରାଓଙ୍କ ମତରେ 'ମହାଯାତ୍ରା' ଆଧୁନିକ ଉତ୍କଳ ସାହିତ୍ୟର ପ୍ରଥମ ମହାକାବ୍ୟ ।

### ମଧୁସୂଦନ ରାଓ (୧୮୫୩-୧୯୧୨) :

ଭକ୍ତକବି ନାମରେ ପରିଚିତ ମଧୁସୂଦନ ରାଓ ଊନବିଂଶ ଶତାବ୍ଦୀ ଏବଂ ବିଂଶ ଶତାବ୍ଦୀର ଯୁଗସନ୍ଧି ସମୟର ଓଡ଼ିଆ ସାହିତ୍ୟର ନବୀକରଣ ଆନ୍ଦୋଳନର ଜଣେ ସକ୍ରିୟ ସାଧକ କବି ତଥା ଗଦ୍ୟ ସାହିତ୍ୟରେ ପ୍ରବନ୍ଧର ପ୍ରବର୍ତ୍ତକ ଥିଲେ । ଛାତ୍ରାବସ୍ଥାରେ ପୁରୀ ଜିଲ୍ଲା ସ୍କୁଲରେ ରାଧାନାଥ

*

ଗ୍ରନ୍ଥଙ୍କର ଏକଦା ଘନିଷ୍ଠ ଏବଂ ପରବର୍ତ୍ତୀ କାଳରେ ଶିକ୍ଷା ତଥା ସାହିତ୍ୟ କ୍ଷେତ୍ରରେ ରାଧାନାଥଙ୍କ ସହିତ ମଧୁସୂଦନ ନିବିଡ଼ ଭାବରେ ସଂପୃକ୍ତ ଥିଲେ। ମଧୁସୂଦନଙ୍କ ସମଗ୍ର ସାହିତ୍ୟ-ସୃଷ୍ଟିର ଅନ୍ତଃସ୍ୱର ହେଉଛି ଗଭୀର ଦାର୍ଶନିକତା, ଆଧ୍ୟାତ୍ମିକତା, ସମାଜ ଶୁଦ୍ଧିକରଣ ଏବଂ ବ୍ୟକ୍ତିଚରିତ୍ରର ମହନୀୟତା ପ୍ରତିଷ୍ଠା ପାଇଁ ଉଦ୍ୟମ। ଶତାଧିକ ଗୀତିକବିତାର ସ୍ରଷ୍ଟାଭାବରେ ମଧୁସୂଦନଙ୍କ ପ୍ରତିଭାରଶ୍ମି, ଶିଶୁ, ତରୁଣ ଏବଂ ବୃଦ୍ଧମାନଙ୍କୁ ସ୍ପର୍ଶ କରିପାରିଛି।

ବ୍ୟକ୍ତିଗତ ଜୀବନରେ ମଧୁସୂଦନ ବ୍ରାହ୍ମଧର୍ମର ଉପାସକ ଥିଲେ। ତେଣୁ ତାଙ୍କର କାବ୍ୟ-କବିତାରେ ପ୍ରାଚୀନ ଭାରତର ଉପନିଷଦ୍ ଏବଂ ବ୍ରାହ୍ମଧର୍ମର ମର୍ମବାଣୀ ହିଁ ଦର୍ଶନସୁଲଭ ଭାଷାରେ ପ୍ରତିଫଳିତ ହୋଇଥିଲା। ସତ୍ୟ, ଧର୍ମ ଏବଂ ପୁଣ୍ୟର ଅନୁସନ୍ଧାନ ପାଇଁ ମଧୁସୂଦନ କବିତ୍ୱଶକ୍ତି ଆୟୁଧରୂପେ ବ୍ୟବହାର କରିଥିଲେ। ସମାଜର ଶିଶୁ, କିଶୋର ଏବଂ ତରୁଣମାନଙ୍କୁ ଉତ୍ତମ ଶିକ୍ଷା ଏବଂ ଆଦର୍ଶରେ ଅନୁପ୍ରାଣିତ କରିବା ପାଇଁ ମଧ୍ୟ ସେମାନଙ୍କ ଉଦ୍ଦେଶ୍ୟରେ ବହୁ କବିତା ରଚନା କରିଥିଲେ। ସେଥିପାଇଁ କବି ମଧୁସୂଦନ ଯଥାର୍ଥରେ କାବ୍ୟକବିତା ମାଧ୍ୟମରେ ସମାଜର ଶିକ୍ଷକ ସଂସ୍କାରକ ଏବଂ ପ୍ରାଚୀନ ଯୁଗର ଋଷି ସାଜିଥିଲେ। ସତ୍ୟ ସଚେତନ କବି ସମସ୍ତଙ୍କୁ ଲକ୍ଷ୍ୟ କରି ଲେଖିଥିଲେ—

"କ୍ଷୁଦ୍ର କୀଟ ହୋଇ ଅଳ୍ପ ଅଳ୍ପ କରି
ସଂଚଇ ବଲ୍ମୀକଘର
ମୁହିଁ ସେହିପରି ଯତନେ ସଞ୍ଚିବି
ପୁଣ୍ୟଧନ ନିରନ୍ତର।"

ମଧୁସୂଦନଙ୍କ ସାହିତ୍ୟସୃଷ୍ଟି ଆଙ୍ଗିକ ଏବଂ କଥାବସ୍ତୁ ବିଚାରରେ ଯଥାକ୍ରମେ ଗୀତି, ସନେଟ, କାବ୍ୟ, ପ୍ରବନ୍ଧ, ଅନୁବାଦ ଏବଂ ଶିଶୁକବିତା, ଦେଶାତ୍ମବୋଧ କବିତା ପ୍ରକୃତି ବର୍ଣ୍ଣନାତ୍ମକ କବିତା ପର୍ଯ୍ୟାୟରେ ବିଭକ୍ତ। ଦେଶ ଏବଂ ଜାତିର ଶ୍ରେଷ୍ଠ ବନ୍ଦନା ମଧୁସୂଦନଙ୍କ କବିତାରେ ଉଚ୍ଛ୍ୱସିତ। ଦେଶ ଅଗଣିତ ଶିଶୁ ଏବଂ ତରୁଣମାନଙ୍କୁ ନିଜର ମାତୃଭୂମିକୁ ଭଲପାଇବା ପାଇଁ ମଧୁସୂଦନ ଯେଉଁ କବିତା ଲେଖିଥିଲେ ତାହାର ସଂଗୀତ, ଭାବାବେଶ, ଆବେଗ ଏବଂ ପ୍ରଭାବ ଅତୁଳନୀୟ। କବିତା ମଧ୍ୟରେ ପୃଥିବୀପ୍ରତି, ଜନ୍ମଭୂମି, ଭାରତ ଭାବନା, ମୋ ଜନନୀ ଅନ୍ତର୍ଗତ।

"ଜୟ ମା ଜନମଭୂମି          ପବିତ୍ର ଭାରତ ଭୂମି
ତୋହର ସନ୍ତାନ ଆମେ ଅଟୁଁ ସରବେ,
ତୋର ଶ୍ରୀଚରଣେ ସେବା          ପାଇଁ ମନପ୍ରାଣ ଦେବା
ଗାଇବା ତୋହର ନାମ ଆନନ୍ଦ ରବେ।"

କବିଙ୍କର ସମଗ୍ର ସାହିତ୍ୟସୃଷ୍ଟି, ମୌଳିକ କାବ୍ୟ-କବିତା ଇଂରେଜୀ ଏବଂ ସଂସ୍କୃତରୁ ଅନୂଦିତ କାବ୍ୟ-କବିତା, ବିଭିନ୍ନ ପାଠ୍ୟପୁସ୍ତକ ଏବଂ ଗଦ୍ୟ ରଚନା ଏପରି ବିଭିନ୍ନ ପର୍ଯ୍ୟାୟରେ ବିଭକ୍ତ କରାଯାଇପାରେ । ତାହା ଯଥାକ୍ରମେ 'କବିତାବଳୀ' ପ୍ରଥମ ଭାଗ (୧୮୭୬), ଦ୍ୱିତୀୟ ଭାଗ (୧୮୭୭), ଗୁଚ୍ଛମାଳା (୧୮୮୪), ବାଳରାମାୟଣ (୧୯୦୧), ବସନ୍ତଗାଥା (୧୯୦୧), କୁସୁମାଞ୍ଜଳି (୧୯୦୩), ଉତ୍କଳଗାଥା (୧୯୦୮), ଉତ୍ତର ରାମଚରିତ (୧୯୦୮) ଏବଂ ଗଦ୍ୟ ପ୍ରବନ୍ଧ କୃତି 'ପ୍ରବନ୍ଧମାଳା' (୧୮୮୦), ପ୍ରଣୟର ଅଦ୍ଭୁତ ପରିଣାମ (ଗଳ୍ପ : ୧୮୭୩), ହେମମାଳା (ଗଳ୍ପ : ୧୮୯୭), ସାହିତ୍ୟ କୁସୁମ, ସାହିତ୍ୟ ତରଙ୍ଗ ଉଲ୍ଲେଖଯୋଗ୍ୟ । କବିଙ୍କର ଭକ୍ତିପୂତ ଶୁଦ୍ଧ ଜୀବନର ଅନ୍ୱେଷଣ ଏବଂ ଜୀବନ-ଦର୍ଶନର ସଙ୍କେତ ସ୍ୱରୂପ ଲିଖିତ କତିପୟ ସ୍ୱତନ୍ତ୍ର କବିତା; ଯଥା—ଜୀବନଚରିତ୍ର (୧୮୭୮), ଋଷିପ୍ରାଣେ ଦେବାବତରଣ (୧୮୯୧), ଆତ୍ମସମର୍ପଣ (୧୮୯୭), ନବଯୁଗର ଅଭିଷେକ, ଏ ସୃଷ୍ଟି ଅମୃତମୟ ହେ (୧୯୦୧), ହିମାଚଳେ ଉଦୟଉତ୍ସବ (୧୯୧୧) ବହୁ ପଠିତ ପ୍ରଭାବଶାଳୀ ସୃଷ୍ଟି । କବିଙ୍କର ସତ୍ୟାଶ୍ରୟୀ ଦୃଷ୍ଟିକୋଣ 'ଜୀବନଚରିତ୍ର' କବିତାରେ ବେଶ୍ ପ୍ରତିଫଳିତ । ଯୌବନ, ଭୋଗବିଳାସ, ଆଡ଼ମ୍ବରପୂର୍ଣ୍ଣ ଜୀବନର ଅସାରତା ବିରୋଧରେ ଏହି କବିତା କବିଙ୍କର ନୀରବ ପ୍ରତିବାଦ ମାତ୍ର । ସେହିପରି 'ଋଷିପ୍ରାଣେ ଦେବାବତରଣ' ଏବଂ 'ହିମାଚଳେ ଉଦୟ ଉତ୍ସବ' କବିତାରେ ପ୍ରାଚୀନ ବୈଦିକ ଭାରତର ପ୍ରତିମୂର୍ତ୍ତି ପରିଲକ୍ଷିତ । ଗାମ୍ଭୀର୍ଯ୍ୟପୂର୍ଣ୍ଣ ଭାଷାରେ ନୈତିକତାର ଉଦ୍‌ବୋଧନ କରି କବି ସାର୍ବଜନୀନ ଆଧ୍ୟାତ୍ମିକତା ପ୍ରତି ସମାଜର ଦୃଷ୍ଟି ଆକର୍ଷଣ କରିଛନ୍ତି । ଓଡ଼ିଆ କବିତାର ସମ୍ପୂର୍ଣ୍ଣ ରୂପାନ୍ତର ସମୟରେ ମଧୁସୂଦନ ନବରୁଚି, ନବଭାବ-ସମ୍ପନ୍ନ କବିତା ଯେପରି ନିଜକୁ ପ୍ରବର୍ତ୍ତକ ଭାବରେ ପ୍ରତିଷ୍ଠିତ କରିପାରିଥିଲେ । ମଧୁସୂଦନଙ୍କ କାବ୍ୟକବିତାରେ ରୂପ-ରସ-ଗନ୍ଧ-ଛନ୍ଦଭରା ପ୍ରକୃତି ଯେପରି ସତ୍ତ୍ୱା ରୂପ ସନ୍ନ୍ୟାସିନୀ ଏବଂ ସମାଜର ଧାତ୍ରୀରୂପେ ପ୍ରତିଭାତ । ସମସ୍ତ କୁସଂସ୍କାର, ଅନ୍ଧ ବିଶ୍ୱାସ, ଦୁର୍ନୀତି ମଧ୍ୟରେ କବି ଆଶାବାଦୀ ଥିଲେ । ସେଥିପାଇଁ 'ନବବସନ୍ତ ଭାବନା' କବିତାରେ କବି ଅନନ୍ତ ଜୀବନ ଏବଂ ଆଶାର ସନ୍ଧାନ ଦେଇଛନ୍ତି—

"ଅନାଇଣ ବାରେ ଦେଖ ରେ ଜୀବ ! ନିଜ ଅନ୍ତର
ଅନନ୍ତ-ଜୀବନ-ଆଧାର ସତ୍ୟ ଶିବ ସୁନ୍ଦର ।"

× × ×

ଆଶା ପାରିଜାତ ଫୁଟିବ ହୃଦନନ୍ଦନ ବନେ
ଜ୍ଞାନ, ଭକ୍ତି, କର୍ମ, ସୌରଭ ବ୍ୟାପିଯିବ ଭୁବନେ ।"

ଏହିପରି ମଧୁସୂଦନଙ୍କ ସମଗ୍ର କବିତା ଜୀବାତ୍ମା ପରମାତ୍ମାଙ୍କ ସମ୍ପର୍କ ଆବିଷ୍କାର କରିବାରେ ଉଦ୍ଦିଷ୍ଟ । ଓଡ଼ିଆ ସାହିତ୍ୟରେ ଶୁଦ୍ଧ ଗଦ୍ୟରୀତି ପ୍ରବର୍ତ୍ତନ କରିବାରେ ମଧୁସୂଦନଙ୍କ ଲେଖନୀ ସହାୟକ ହୋଇପାରିଛି । ଚିନ୍ତାତ୍ମକ, ବର୍ଣ୍ଣନା-ମୂଳକ, ଜୀବନୀମୂଳକ ପ୍ରବନ୍ଧ ଲେଖି ଓଡ଼ିଆ ସାହିତ୍ୟରେ ବିଦ୍ୟାଳୟ ପାଠ୍ୟପୁସ୍ତକର ଅଭାବ ଦୂର କରିଥିଲେ । ପୁନଶ୍ଚ, ପ୍ରାଥମିକ ସ୍ତରରେ ବର୍ଣ୍ଣ ପରିଚୟ କ୍ରମରେ କବି ଯେଉଁ 'ବର୍ଣ୍ଣବୋଧ' ପୁସ୍ତକ ଲେଖିଥିଲେ, ତାହା ସମ୍ଭବତଃ ପରବର୍ତ୍ତୀ ସାହିତ୍ୟିକ ଏବଂ ଶିକ୍ଷିତ ଗୋଷ୍ଠୀର ଶିକ୍ଷାଗତ ଭିତ୍ତି ସ୍ଥାପନ କରିଥିଲା ।

ଫକୀରମୋହନ (୧୮୪୩—୧୯୧୮)

ଓଡ଼ିଆ ସାହିତ୍ୟରେ ନବଜାଗରଣ ପର୍ଯ୍ୟାୟରେ ଯେଉଁ ସାହିତ୍ୟିକ ଏବଂ ଶିଳ୍ପସ୍ରଷ୍ଟାଙ୍କର ନବୀନ ଆଙ୍ଗିକ, ନବ ପ୍ରବୃତ୍ତି, ଧ୍ୟାନ ଧାରଣା ସମନ୍ୱିତ ଦାନ ସର୍ବାପେକ୍ଷା ଅଧିକ, ସେ ହେଉଛନ୍ତି ଯଥାର୍ଥତଃ ଓଡ଼ିଆ ସାହିତ୍ୟର ଅଭ୍ୟୁଦୟର ଶ୍ରେଷ୍ଠ କଥାଶିଳ୍ପୀ ଫକୀରମୋହନ ସେନାପତି । ଜନସାଧାରଣରେ ସେ ବ୍ୟାସକବି ନାମରେ ମଧ୍ୟ ପରିଚିତ । ଓଡ଼ିଆ ଭାଷା, ସଂସ୍କୃତି ଏବଂ ଜାତୀୟତା ସଚେତନ ଏହି ଜୀବନବାଦୀ ଗାଳ୍ପିକ ଏବଂ ଔପନ୍ୟାସିକ ସେହି ଯୁଗରେ ପ୍ରତିଭାର ବିସ୍ଫୋରଣ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଓଡ଼ିଆ ଭାଷାରେ ପାଶ୍ଚାତ୍ୟରୀତିଧର୍ମୀ ଉପନ୍ୟାସ କ୍ଷୁଦ୍ରଗଳ୍ପର ସେ ଥିଲେ ଆଦ୍ୟସ୍ରଷ୍ଟା । କତିପୟ ବିଦ୍ୱେଷୀମାନଙ୍କ ଚକ୍ରାନ୍ତ ବିରୋଧରେ ଓଡ଼ିଆ ଭାଷାର ସ୍ୱୀକୃତି ହାସଲ କରିବାରେ ଏବଂ ଓଡ଼ିଶାର ସାମାଜିକ ତଥା ରାଜନୈତିକ ପରିବର୍ତ୍ତନ ଦୃଢ଼ କରିବାରେ ସେ ଥିଲେ ବରେଣ୍ୟ ସାଧକ । ସେଥିପାଇଁ ଯୌବନରେ ତାଙ୍କୁ 'ବେଟା ରଙ୍ଗ୍‌ଲିଡ଼ର' ଉପାଧି ଲାଭ କରିବାକୁ ପଡ଼ିଥିଲା ।

ଫକୀରମୋହନଙ୍କ କର୍ମମୟ ଜୀବନ ଯଥାର୍ଥତଃ ଘଟଣାବହୁଳ ଏବଂ ସ୍ମୃତି-ପୂର୍ଣ୍ଣ ଥିଲା । ସତେ ଯେପରି ଜୋତା ସିଲେଇଠାରୁ ଚଣ୍ଡୀପାଠ ପର୍ଯ୍ୟନ୍ତ ସବୁକାର୍ଯ୍ୟ ତାଙ୍କୁ ଜଣାଥିଲା; ଯଥା—ଜାହାଜର ଖୋଲସିଲେଇ, ବିଭିନ୍ନ ଗଡ଼ଜାତରେ ଶାସକ ରୂପରେ, ବାଲେଶ୍ୱର ଛାପାଖାନା ପ୍ରତିଷ୍ଠା, ଓଡ଼ିଆ ଭାଷା ଆନ୍ଦୋଳନ, ଯୌବନ ଅବସ୍ଥାରେ ଓଡ଼ିଆ ଭାଷାରୁ ପାଠ୍ୟପୁସ୍ତକ ଅଭାବ ଦୂର କରିବା ପାଇଁ ସେ ଅଙ୍କ, ଇତିହାସ ପୁସ୍ତକ ମଧ୍ୟ ରଚନା କରିଥିଲେ । ବାଲେଶ୍ୱରର ତତ୍କାଳୀନ କଲେକ୍ଟରର ଏବଂ ଓଡ଼ିଶାର ରେଭିନ୍ୟୁ କମିଶନର ଜନ୍ ବିମସ୍‌ଙ୍କ ସହିତ ତାଙ୍କର ସଂପର୍କ ଓଡ଼ିଆ ଭାଷା ଏବଂ ସାହିତ୍ୟ କ୍ଷେତ୍ରରେ ମଧ୍ୟ ସହାୟକ ହୋଇଥିଲା । ନୂତନ ଶିଳ୍ପ ଆଙ୍ଗିକ ବିସ୍ତାରରେ ଫକୀରମୋହନଙ୍କ ବିଭିନ୍ନ କ୍ଷୁଦ୍ରଗଳ୍ପ ଏବଂ ଉପନ୍ୟାସ ଆଧୁନିକ

ଓଡ଼ିଆ ସାହିତ୍ୟରେ ନବଯୁଗର ଯଥାର୍ଥରେ ଗୋଟିଏ ଗୋଟିଏ ବଳିଷ୍ଠ ସଂକେତ; କ୍ଷୟିଷ୍ଣୁ ସମାଜର ଏକ ଏକ ସଂବେଦନଶୀଳ ଚିତ୍ର ।

୧୮୬୮ ମସିହାରେ ଫକୀରମୋହନଙ୍କ ପ୍ରଗାଢ଼ ଉଦ୍ୟମରେ ବାଲେଶ୍ୱରରୁ ପ୍ରକାଶିତ 'ବାଲେଶ୍ୱର ସମ୍ବାଦବାହିକା' ଓ 'ବୋଧଦାୟିନୀ' ପତ୍ରିକା ତାଙ୍କର ତୀବ୍ର ସାଂସ୍କୃତିକ ଜିଜ୍ଞାସାର ପ୍ରଥମ ନିଦର୍ଶନ । ଏ ଭାଗରେ ଗୀତିକାର, ସଂସ୍କାରକ, ଅନୁବାଦକ ଏବଂ ମୌଳିକ ଉପନ୍ୟାସ ତଥା କ୍ଷୁଦ୍ରଗଳ୍ପ ସ୍ରଷ୍ଟାଭାବରେ ତାଙ୍କର ସାହିତ୍ୟ ପ୍ରତିଭାର ଅଗ୍ନିକଣା ପ୍ରଜ୍ୱଳିତ ହୋଇଥିଲା । ଓଡ଼ିଆ ଜାତୀୟତା ଏବଂ ମାନବିକତା ଥିଲା ତାଙ୍କ ସୃଷ୍ଟ ସାହିତ୍ୟର ମୁଖ୍ୟ ଆବେଦନ । ଅନ୍ୟାୟ, ଶୋଷଣ, ଅତ୍ୟାଚାର ବିରୁଦ୍ଧରେ ସେ ଯେପରି ସାହିତ୍ୟ-ଆୟୁଧ ଧାରଣ କରିଥିଲେ ।

ଫକୀରମୋହନଙ୍କ କବିତା ପର୍ଯ୍ୟାୟରେ ଉପହାର (୧୮୯୫), ଅବସର-ବାସରେ (୧୯୦୮), ପୂଜାଫୁଲ (୧୯୧୨), ଧୂଳି (୧୯୧୨), ଉତ୍କଳ ଭ୍ରମଣ (୧୮୯୨) ବୌଦ୍ଧାବତାର କାବ୍ୟ ଏବଂ ଗଦ୍ୟଶିଳ୍ପ ମଧ୍ୟରେ 'ଗଳ୍ପସ୍ୱଳ୍ପ' (ପ୍ରଥମ ଭାଗ ଓ ଦ୍ୱିତୀୟ ଭାଗ) (୧୯୦୭), ଉପନ୍ୟାସ ମଧ୍ୟରେ 'ଛମାଣ ଆଠଗୁଣ୍ଠ' (୧୮୯୭-୧୮୯୮), ଲଛମା (୧୯୦୧), ମାମୁଁ (୧୯୧୩), ପ୍ରାୟଶ୍ଚିତ୍ତ (୧୯୧୫) ଆତ୍ମ ଜୀବନୀଚରିତ ଅନ୍ତର୍ଗତ ।

ଓଡ଼ିଆ ସାହିତ୍ୟକୁ ଫକୀରମୋହନଙ୍କ ଶ୍ରେଷ୍ଠ ଏବଂ ଅପ୍ରତିଦ୍ୱନ୍ଦ୍ୱୀ ଦାନ ହେଉଛି ତାଙ୍କର ମର୍ମସ୍ପର୍ଶୀ ସମାଜଚିତ୍ର-ସମ୍ବଳିତ କ୍ଷୁଦ୍ର ଗଳ୍ପ ଏବଂ ଉପନ୍ୟାସମାଳା । ସେଥିପାଇଁ କବି ଅପେକ୍ଷା ଶକ୍ତିଧର ଔପନ୍ୟାସିକ ଏବଂ ଗାଳ୍ପିକ ଭାବରେ ହିଁ ଫକୀରମୋହନ ଆଧୁନିକ ଓଡ଼ିଆ ସାହିତ୍ୟରେ ବିଶିଷ୍ଟ କର୍ଣ୍ଣଧାର ଏବଂ ବିଶେଷ ଗୌରବର ଅଧିକାରୀ ।

ଫକୀରମୋହନଙ୍କ କ୍ଷୁଦ୍ର ଗଳ୍ପ ଏବଂ ଉପନ୍ୟାସର କଥାବସ୍ତୁ ଓଡ଼ିଆ ଜୀବନ ଏବଂ ଇତିହାସରୁ ହିଁ ଗୃହୀତ ଏବଂ ଦୁଇଶତ ବର୍ଷର ସମାଜ ତଥା ସାଂପ୍ରତିକ ସାମାଜିକ ପରିବେଷ୍ଟନୀରେ ତାହା ଏକ ଯୋଜନାବଦ୍ଧ ପ୍ରଣାଳୀରେ ନିପୁଣ ଭାଷାଶୈଳୀରେ ସୁପରିକଳ୍ପିତ । ଗ୍ରାମ୍ୟ ଓଡ଼ିଶାର ଅବହେଳିତ ଦୀନ ଦରିଦ୍ର ଚରିତ୍ରମାନଙ୍କ ସହିତ ସମ୍ପନ୍ନବାଦୀ ଚରିତ୍ରମାନଙ୍କର ସ୍ୱାର୍ଥବିରୋଧୀ ସଂଘର୍ଷ, ଏକ ଦିଗରେ ଜମିଦାରୀ ଶୋଷଣ, ଅନ୍ୟାୟ ପନ୍ଥାରେ ପରସ୍ୱ ଅପହରଣ, ଅନ୍ୟ ଦିଗରେ ନିରୀହ ନିଃସ୍ୱ ଚରିତ୍ର ସମୂହର ସର୍ବନାଶ, ପାପବିରୋଧରେ ପୁଣ୍ୟର ଅନ୍ତିମ ବିଜୟ— ଫକୀରମୋହନଙ୍କ ଉପନ୍ୟାସ ଏବଂ କ୍ଷୁଦ୍ର ଗଳ୍ପର ପ୍ରତିପାଦିତ କଥାବସ୍ତୁ । ଏତାଦୃଶ କଥାବସ୍ତୁ ପ୍ରଖ୍ୟାପନ ଉଦ୍ଦେଶ୍ୟରେ ଫକୀରମୋହନ ଯେଉଁ ଭାଷା ଏବଂ ଶୈଳୀର ଆଶ୍ରୟ ନେଇଛନ୍ତି, ତାହାହିଁ ତାଙ୍କ ଶିଳ୍ପ-ସୃଷ୍ଟିଗତ ସାର୍ଥକତାର ଅମୋଘ ଅସ୍ତ୍ର । ତାଙ୍କର ଗଦ୍ୟଶୈଳୀ ସମ୍ପୂର୍ଣ୍ଣ ବ୍ୟଙ୍ଗାତ୍ମକ, ଭାଷା ଆମୂଳଚଳ ବ୍ୟଞ୍ଜନାତ୍ମକ, ପ୍ରବାଦ ପ୍ରବଚନଧର୍ମୀ ଏବଂ

ଗ୍ରାମ୍ୟ ଅଭିବ୍ୟକ୍ତିପୂର୍ଣ୍ଣ । ସେଥିପାଇଁ ତାହା ସ୍ୱୟଂସମ୍ପୂର୍ଣ୍ଣ ଏବଂ ଅଭିନବ ବୋଲି ଜଣାଯାଏ ।

ଫକୀରମୋହନ ବହୁ କ୍ଷୁଦ୍ରଗଳ୍ପ ରଚନା କରିଥିଲେ । ସେଥିମଧ୍ୟରେ ରେବତୀ, ପେଟେଣ୍ଟ ମେଡ଼ିସିନ, ସଣ୍ଢୀପୁଅ ଅନନ୍ତା, ସଭ୍ୟ ଜମିଦାର, ଅଧର୍ମ ବିତ୍ତ, ସୁନାବୋହୂ, ଡାକ ମୁନ୍‌ସି, ଗାରୁଡ଼ି ମନ୍ତ୍ର, ଧୂଳିଆବାବା, ଖିରେଇ ବିଶାଳ ପ୍ରଭୃତି ଉଲ୍ଲେଖଯୋଗ୍ୟ । ଏହିସବୁ ଗଳ୍ପର କଥାବସ୍ତୁ ଓଡ଼ିଶାର ଗ୍ରାମ୍ୟସମାଜରୁ ଗୃହୀତ । ତାଙ୍କର ଚରିତ୍ରଗୁଡ଼ିକ କେତେବେଳେ ମୂର୍ଖ, ଅଶିକ୍ଷିତ, କୁସଂସ୍କାରଗ୍ରସ୍ତ; କେତେ-ବେଳେ ଇଂରେଜୀପଢ଼ୁଆ ନବ୍ୟଶିକ୍ଷିତ, କେତେବେଳେ ଚରିତ୍ରଗୁଡ଼ିକ ଗ୍ରାମ୍ୟ ପରିବାର ମଧ୍ୟରେ ଲାଳିତପାଳିତ, ଆଉ କେତେବେଳେ ସେମାନେ ସହରର ଚାକଚକ୍ୟ ଆଡ଼ମ୍ବର ମଧ୍ୟରେ ଆତ୍ମବିସ୍ମୃତ । ସୁତରାଂ ଫକୀରମୋହନଙ୍କ ଗଳ୍ପରେ କିମ୍ବା ଉପନ୍ୟାସରେ ବର୍ଣ୍ଣିତ ସମସ୍ୟା ହେଉଛି ନାରୀଶିକ୍ଷା, ନିଶାନିବାରଣ, ଆଦର୍ଶ ଦାମ୍ପତ୍ୟ ଜୀବନ, ଅନ୍ୟାୟ ଅର୍ଜିତ ପ୍ରଭୂତ ଧନସଂଗ୍ରହ, ଗତାନୁଗତିକ ଅନ୍ଧବିଶ୍ୱାସ, କୁସଂସ୍କାର । ତାଙ୍କର 'ରେବତୀ' ଗଳ୍ପରେ ଗ୍ରାମ୍ୟ ବାଳିକାର ପାଠପଢ଼ା ପ୍ରତି ଆଗ୍ରହ, ତା' ବିରୋଧରେ ବୁଢ଼ୀମାଆର ପ୍ରତିକ୍ରିୟା, ପେଟେଣ୍ଟ ମେଡ଼ିସିନ୍‌ରେ ମଦ୍ୟପୀ ସ୍ୱାମୀ ବିରୋଧରେ ସୁଲୋଚନା ଦେବୀଙ୍କର ଅଭିଯାନ, 'ସଭ୍ୟ ଜମିଦାର'ରେ ପାଶ୍ଚାତ୍ୟ ସଭ୍ୟତା ଅନୁସରଣରେ ପଥଭ୍ରଷ୍ଟ ଯୁବକ, କିମ୍ବା 'ଡାକମୁନସି'ରେ ବୃଦ୍ଧ ପିତାପ୍ରତି ନବ୍ୟଶିକ୍ଷିତ ପୁତ୍ରର ଅମାନୁଷିକ ବ୍ୟବହାର, ସାଂପ୍ରତିକ କ୍ଷୟିଷ୍ଣୁ ଏବଂ ଅନ୍ୟ ଦିଗରେ ପାଶ୍ଚାତ୍ୟ ସଭ୍ୟତା ଉଦ୍‌ବୁଦ୍ଧ ସଂସ୍କୃତି ଏବଂ ସମାଜର ଚିତ୍ର ପ୍ରଦାନ କରିଥାଏ । ଗଳ୍ପରେ ଘଟଣାପ୍ରବାହ ସହିତ କେତେକସ୍ଥଳରେ ବାସ୍ତବତାର ସଂପର୍କ ଥିବାର ଜଣାଯାଏ ନାହିଁ । ସମ୍ଭବତଃ ଫକୀରମୋହନଙ୍କ ଦୃଷ୍ଟିକୋଣ ସଂସ୍କାର ପ୍ରୟାସଦ୍ୱାରା ପ୍ରଭାବିତ । ସେଥିପାଇଁ ଗଳ୍ପର କଥାବସ୍ତୁରେ ସ୍ଥାନେ ସ୍ଥାନେ ଅତିରଞ୍ଜନ ଏବଂ ନାଟକୀୟତା ପରିଲକ୍ଷିତ । ଏସବୁ ସତ୍ତ୍ୱେ ଫକୀରମୋହନଙ୍କ ରେବତୀ, ସଣ୍ଢୀପୁଅ ଅନନ୍ତା, ମକରୁ, ଡାକମୁନ୍‌ସିର ପୁଅ ଗୋପାଳ ସଦୃଶ ଚରିତ୍ର ଓଡ଼ିଶା ପଲ୍ଲୀଭୂମିର ଯେପରି ଅବ୍ୟର୍ଥ ପ୍ରତିନିଧିତ୍ୱ କରିଥାନ୍ତି ।

ଫକୀରମୋହନଙ୍କ 'ରେବତୀ' ଗଳ୍ପଟି ଯେତେବେଳେ ତଦାନୀନ୍ତନ 'ଉତ୍କଳସାହିତ୍ୟ' ପତ୍ରିକାରେ ପ୍ରକାଶିତ ହୁଏ, ସେତେବେଳେ ଓଡ଼ିଶାର ପାଠକଙ୍କ ମନରେ ଗୋଟାଏ ଚାଞ୍ଚଲ୍ୟ ଖେଳିଯାଇଥିଲା । ଏଥିରୁ ଫକୀରମୋହନଙ୍କ ଗଳ୍ପଲିଖନ କୌଶଳ, ଦକ୍ଷତା ଏବଂ ପାଠକ ଉପରେ ତାହାର ପ୍ରଭାବ ଅନୁମେୟ ।

ଫକୀରମୋହନଙ୍କ ଚାରିଗୋଟି ଉପନ୍ୟାସ ଯଥାର୍ଥରେ ଗ୍ରାମବହୁଳ ଓଡ଼ିଶାର ଐତିହାସିକ ଓ ସାମାଜିକ ଜୀବନର ଦର୍ପଣ ସଦୃଶ । ଉପନ୍ୟାସର କଳାତ୍ମକତା, ଶୈଳୀସଙ୍ଗତତା ଏବଂ ବର୍ଣ୍ଣିତ ଘଟଣାବଳୀ ସହିତ ବିଶ୍ୱସ୍ତତା ସବୁଠାରୁ ଉଲ୍ଲେଖ-

ଯୋଗ୍ୟ । ତାଙ୍କ ଉପନ୍ୟାସର ପୃଷ୍ଠଭୂମି ସାମାଜିକ ଏବଂ ତାହା ପୁଣି ପଲ୍ଲୀସମାଜ ମଧ୍ୟରେ ପରିବ୍ୟାପ୍ତ । କୁସଂସ୍କାର ଏବଂ ସଂସ୍କାର, ଶୋଷଣ ଓ ପ୍ରାୟଶ୍ଚିତ୍ତ ଏକାଧାରରେ ତାଙ୍କ ଉପନ୍ୟାସସମୂହରେ ବର୍ଣ୍ଣିତ ।

ଲେଖକଙ୍କର ସର୍ବପ୍ରଥମ ଉପନ୍ୟାସ 'ଛମାଣ ଆଠଗୁଣ୍ଠ' ପ୍ରାଚୀନ ରକ୍ଷଣଶୀଳ ଧନ-କୃପଣ ସମାଜର ସର୍ବାପେକ୍ଷା ଅଧିକ ସାର୍ଥକ ଶିଳ୍ପକୃତି । ଛ'ମାଣ ଆଠଗୁଣ୍ଠ ପରିମିତ ଜମି ହସ୍ତଗତ କରିବା ପାଇଁ ସ୍ୱାର୍ଥାନ୍ଧ ଦୁଃଶ୍ଚରିତ୍ର ସମ୍ବୃତାନ ରାମଚନ୍ଦ୍ର ମଙ୍ଗରାଜ ଦୁଃଶ୍ଚରିତ୍ରା ନିଷ୍ଠୁର ଚମ୍ପା ଚରିତ୍ର ସାହାଯ୍ୟରେ ବାଘସିଂହବଂଶ ବିଲୋପ, ପୁନଶ୍ଚ ଶାରିଆ, ଭଗିଆ ସଦୃଶ ନିରୀହ ଦୁଃଖୀ ଜୀବନକୁ ଧ୍ୱସ୍ତ-ବିଧ୍ୱସ୍ତ କରି ଶେଷରେ ପାପର ପ୍ରାୟଶ୍ଚିତ୍ତ ସଦୃଶ ବିଧିନିର୍ଦ୍ଦିଷ୍ଟ କରୁଣ ପରିଣତିର ସମ୍ମୁଖୀନ ହୋଇଥିଲେ । ଶଠତା, ପ୍ରତାରଣା ସହିତ ଏକ ସରଳତା ଏବଂ ଉଦାରତାର ସଂଘର୍ଷ ଏହି ଉପନ୍ୟାସରେ ଯେପରି ଶକ୍ତିଶାଳୀ ବ୍ୟଙ୍ଗାତ୍ମକ ଗଦ୍ୟଶୈଳୀରେ ବର୍ଣ୍ଣିତ । ସେଥିରେ ଛ'ମାଣ ଆଠଗୁଣ୍ଠ ଏପିକ୍‌ର ଗୌରବଲାଭ କରିପାରିଛି । ଉପନ୍ୟାସରେ ଉପସ୍ଥାପିତ ଚମ୍ପା, ମରୁଆ, ଗୋବରା ଜେନା ଚରିତ୍ର କମ୍ବା ବର୍ଣ୍ଣିତ ଗ୍ରାମ ପୁଷ୍କରିଣୀ ଅସୁର ଦୀଘି ଫକୀରମୋହନଙ୍କ ମାନବଚରିତ୍ର ତଥା ପ୍ରକୃତି ଅବଗାହନ ଦକ୍ଷତାର ନିଦର୍ଶନ । ଶୋଷଣସର୍ବସ୍ୱ ଏବଂ ଶୋଷଣବିରୋଧୀ ପରିବେଶ ସମଗ୍ର ଉପନ୍ୟାସରେ ବ୍ୟାପକ ବ୍ୟଙ୍ଗାତ୍ମକ ଚିତ୍ର ସୃଷ୍ଟି କରିପାରିଛି ।

'ଲଛମା' ଓଡ଼ିଶାରେ ବର୍ଗିମାନଙ୍କର ଅତ୍ୟାଚାର, ମରହଟ୍ଟା ରାଜତ୍ୱକାଳୀନ କୁଶାସନ, ଅରାଜକତା, ଅଶାନ୍ତି ତଥା ରାଜନୈତିକ ଘଟଣାବଳୀ ଉପରେ ଆଧାରିତ ସଂପୂର୍ଣ୍ଣ ଐତିହାସିକ ଉପନ୍ୟାସ । ଇତିହାସର କଥାବସ୍ତୁ ସହିତ କଳ୍ପନାର ମିଶ୍ରଣରେ ଏହି ଉପନ୍ୟାସ ପରିକଳ୍ପିତ । ଆଲିବର୍ଦ୍ଦି ଖାଁଙ୍କ ସହିତ ପଣ୍ଡିତ ଭାସ୍କର ରାମଙ୍କର ସଂଘର୍ଷ, ଲଛମା ବାଦଲସିଂହଙ୍କର ବୀରତ୍ୱ ଏବଂ ଇତିହାସର ଚକ୍ରଘୂର୍ଣ୍ଣନରେ ଓଡ଼ିଶାର ଭାଗ୍ୟ ବିପର୍ଯ୍ୟସ୍ତ । ରାଇବଣିଆ ଦୁର୍ଗର ପତନ ଉପନ୍ୟାସ ଐତିହାସିକ ଗୁରୁତ୍ୱ ବୃଦ୍ଧି କରି ପାରିଛି । ଶିଳ୍ପରୂପରେ ମଧ୍ୟ ଫକୀରମୋହନଙ୍କ ବ୍ୟଙ୍ଗାତ୍ମକ ସ୍ରଷ୍ଟାମାନସର ଅନୁରୂପ ହୋଇପାରିଛି ।

ଏକ ସଂପୂର୍ଣ୍ଣ ସାମାଜିକ ଉପନ୍ୟାସ 'ମାମୁଁ' ରେ ମଧ୍ୟ ପାରିବାରିକ ବେଷ୍ଟନୀରେ ମାମୁଁଦ୍ୱାରା ଭଣଜାର ସମ୍ପତ୍ତି ଅପହରଣ ଅଭିଳାଷ କିପରି ଶେଷରେ ପାରିବାରିକ ଏବଂ ନୈତିକ ଦୁର୍ଗତିର ସମ୍ମୁଖୀନ ହୋଇଥିଲା, ତାହାର ସମ୍ବେଦନଶୀଳ ଚିତ୍ର ଦେଖିବାକୁ ମିଳେ । 'ମାମୁଁ'ରେ ନାଜର ନଟବର, ଚମ୍ପକଲା ଏବଂ ପ୍ରଭୁଦୟାଳ, ରାଘବ ମହାନ୍ତି—ସମ୍ବୃତାନ ଚରିତ୍ର । ଭଉଣୀ ବୃନ୍ଦମଣିଙ୍କଠାରୁ ସମସ୍ତ ବିଷୟ ଗୋପନ ରଖି ନଟବର ଦାସ ନିଜର ସରକାରୀ ବୃଦ୍ଧିକରିବଳରେ ଯେଉଁ

ସମ୍ପତ୍ତି ଅପହରଣ ନାଟକ ଅଭିନୟ କରିଥିଲେ, ତାହା ବ୍ୟର୍ଥତାରେ ପରିଣତ ହେଲା । ଭୂସମ୍ପତ୍ତି ଏବଂ ପରସ୍ୱ ଅପହରଣ କରି ଧନପତି ହେବାର ଦୁର୍ବାର ଲାଳସା ତଥା ଶୋଷଣ ପ୍ରବୃତ୍ତି ଉଭୟ 'ଛମାଣ ଆଠଗୁଣ୍ଠ' ଏବଂ 'ମାମୁ' ଉପନ୍ୟାସର ଆଭ୍ୟନ୍ତରୀଣ ସ୍ପନ୍ଦନ । ସାମନ୍ତବାଦୀ ସମ୍ବିଧାନ ଚରିତ୍ରଚିତ୍ରଣ କରିବାରେ ଫକୀର-ମୋହନ ଜଣେ ଅପ୍ରତିଦ୍ୱନ୍ଦ୍ୱୀ କଳାକାର ଥିଲେ ।

'ପ୍ରାୟଶ୍ଚିତ୍ତ' ଉପନ୍ୟାସରେ ଦୁଇଗୋଟି ଆଭିଜାତ୍ୟପୂର୍ଣ୍ଣ ପରିବାରର ପୃଷ୍ଠଭୂମିରେ ଆଧୁନିକ କଲେଜ-ଶିକ୍ଷିତ ଯୁବକ ଗୋବିନ୍ଦଚନ୍ଦ୍ରଙ୍କ ଇନ୍ଦୁପ୍ରଭାଙ୍କୁ ପ୍ରେମାତ୍ମକ ସମ୍ପର୍କରେ ଉପସ୍ଥାପିତ କରି ହଠାତ୍ ଏକ ଅପ୍ରତ୍ୟାଶିତ ଦୁର୍ଘଟଣାରେ ପ୍ରେମିକ ପ୍ରେମିକାଙ୍କୁ ପରସ୍ପରଠାରୁ ବିଚ୍ଛିନ୍ନ କରିପାରିଛନ୍ତି । ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଓଡ଼ିଶାରେ ପ୍ରସାରିତ ହେଉଥିବା କଲେଜଶିକ୍ଷା-ପ୍ରଭାବଗତ ପୃଷ୍ଠଭୂମି ତଥା ଭାବପ୍ରବଣତା ଯୁବଶକ୍ତି ହିଁ ଉପନ୍ୟାସର ବୈଶିଷ୍ଟ୍ୟ । ଗୋବିନ୍ଦଚନ୍ଦ୍ର, ସଦାନନ୍ଦ, ରାଜୀବଲୋଚନ, କମଲଲୋଚନ ସେହି ଭାବପ୍ରବଳ ଯୁବଶକ୍ତିର ପ୍ରତିନିଧି । ପୁନଶ୍ଚ ପୂର୍ଣ୍ଣକଥାବସ୍ତୁର ଅନ୍ତରାଳରେ ବୈଷ୍ଣବ ପଟ୍ଟନାୟକ ଏବଂ ଧନ-ମୋହଗ୍ରସ୍ତ ଅହଂକାରୀ, ଅଭିମାନୀ, କୁଟିଳ ଚରିତ୍ର ଶଙ୍କର୍ଷଣ ମହାନ୍ତିଙ୍କର ଜାତ୍ୟାଭିମାନ-ବିରୋଧୀ ଆଦର୍ଶ ହିଁ ମୂଳରୁ କଥାବସ୍ତୁର ଅଗ୍ରଗତିରେ ସାହାଯ୍ୟ କରିଛି । ମୋହାନ୍ଧ ଅଭିଭାବକଙ୍କର ଆଚରଣ ଯୋଗୁଁ ହେଉ କିମ୍ବା ଯୁବସୁଲଭ ଭାବପ୍ରବଣତା ଯୋଗୁଁ ହେଉ, ନାୟକ ଗୋବିନ୍ଦଚନ୍ଦ୍ର ଜୀବନରେ ପ୍ରାୟଶ୍ଚିତ୍ତ ପାଇଁ ପ୍ରସ୍ତୁତ ହୋଇଛନ୍ତି । ଏହା ଅବଶ୍ୟ ନୈତିକ ପ୍ରାୟଶ୍ଚିତ୍ତ । ତୀବ୍ର ସମାଜସଚେତନତାରୁ ହିଁ ଫକୀରମୋହନଙ୍କ ଉପନ୍ୟାସ ଏବଂ କ୍ଷୁଦ୍ର ଗଳ୍ପସମୂହର ସୃଷ୍ଟି । ତୀବ୍ର ବ୍ୟଙ୍ଗବିଦ୍ରୂପ ଏବଂ ବଳିଷ୍ଠ ସଂଳାପ ସେହି ସାହିତ୍ୟ ସୃଷ୍ଟିର ଅସାଧାରଣ ସୌନ୍ଦର୍ଯ୍ୟ । ସେଥିପାଇଁ ଫକୀର-ମୋହନଙ୍କ ଉପନ୍ୟାସ ଏବଂ ଗଳ୍ପର କଥାବସ୍ତୁ ବୈଚିତ୍ର୍ୟପୂର୍ଣ୍ଣ ତଥା ନିଖୁଣ ଚରିତ୍ରଚିତ୍ରଣ ଅପେକ୍ଷା ଏକ ବଳିଷ୍ଠ ଅନନୁକରଣୀୟ ଗଦ୍ୟଶୈଳୀ ହିଁ ତା'ର ସାର୍ଥକତା । ଫକୀରମୋହନଙ୍କ କଥାଶୈଳୀ ଓଡ଼ିଆ ସାହିତ୍ୟରେ ଏପର୍ଯ୍ୟନ୍ତ ଅନତିକ୍ରାନ୍ତ ହୋଇ ରହିଛି ।

ଆଲୋଚନାରୁ ଯାହା ଜଣାଯାଏ ଓଡ଼ିଆ ସାହିତ୍ୟ କାବ୍ୟକାର ରାଧାନାଥ, ଗୀତିକବି ମଧୁସୂଦନ ଏବଂ କଥାଶିଳ୍ପୀ ଫକୀରମୋହନଙ୍କର ଆବିର୍ଭାବର ଏକ ଐତିହାସିକ ଆବଶ୍ୟକତା ଥିଲା । ସେହିମାନଙ୍କ ଅବ୍ୟାହତ ସାଧନା ଏବଂ ନୂତନ ମୂଲ୍ୟବୋଧ ଚେତନା ଯୋଗୁଁ ଓଡ଼ିଆ ସାହିତ୍ୟରେ ନବ ଜାଗରଣ ଅଧ୍ୟାୟ ସଫଳତାର ସହିତ ପ୍ରତିଷ୍ଠିତ ହୋଇଥିଲା । ସେହିମାନଙ୍କଠାରୁ ହିଁ ଓଡ଼ିଆ ସାହିତ୍ୟରେ ନୂତନ ଆଙ୍ଗିକ ଏବଂ ନୂତନ ପରଂପରା କ୍ରମଶଃ ଗଢ଼ି ଉଠିଥିଲା ।

ରାଧାନାଥ, ମଧୁସୂଦନ ଏବଂ ଫକୀରମୋହନଙ୍କ ସମସାମୟିକ ଏବଂ ନୂତନ ସାହିତ୍ୟାଦର୍ଶରେ ଅନୁପ୍ରାଣିତ କବିମାନଙ୍କ ମଧ୍ୟରେ ଗଙ୍ଗାଧର ମେହେର (୧୮୬୨ -- ୧୯୨୪) ଏବଂ ନନ୍ଦକିଶୋର ବଳ (୧୮୭୭ -- ୧୯୨୮) ହେଉଛନ୍ତି ଅଗ୍ରଗଣ୍ୟ ସ୍ରଷ୍ଟା । ଗଙ୍ଗାଧର 'ସ୍ୱଭାବକବି' ଏବଂ ନନ୍ଦକିଶୋର 'ପଲ୍ଲୀକବି' ନାମରେ ପରିଚିତ ।

**ଗଙ୍ଗାଧର : (୧୮୬୨ – ୧୯୨୪)**

ଗଙ୍ଗାଧର ମେହେର ସମ୍ବଲପୁର ଜିଲ୍ଲାର ବରପାଲି ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ବାଲ୍ୟଶିକ୍ଷା ଏବଂ ସଂସ୍କୃତ ଅଧ୍ୟୟନ ପରଂପରା ଦ୍ୱାରା ପ୍ରଭାବିତ ହୋଇଥିଲା । ଗଙ୍ଗାଧରଙ୍କ କବିମାନସ ମୁଖ୍ୟତଃ କାବ୍ୟଧର୍ମୀଥିଲା ଏବଂ ସେ ପରଂପରା-ବାଦୀ ଥିବାରୁ ତାଙ୍କ କାବ୍ୟ-କବିତାରେ ପ୍ରାଚୀନ ପୁରାଣ ଏବଂ ପୌରାଣିକ କଥାବସ୍ତୁ ପ୍ରତି ବିଶେଷ ଗୁରୁତ୍ୱ ପରିଲକ୍ଷିତ ହୁଏ । ପୁନଶ୍ଚ ଗଙ୍ଗାଧର ପ୍ରାଚୀନ ପରଂପରା ଏବଂ କାବ୍ୟାଦର୍ଶ ସହିତ ନୂତନ କାବ୍ୟାଦର୍ଶର ସମନ୍ୱୟ ତାଙ୍କ କାବ୍ୟ କବିତାରେ ସାଧନ କରିପାରିଥିଲେ । ଉଭୟ କାବ୍ୟ ଏବଂ ଗୀତିକବିତା କ୍ଷେତ୍ରରେ ନିଜର ମୌଳିକତା ପ୍ରମାଣିତ କରିପାରିଥିଲେ । ମେହେରଙ୍କ କାବ୍ୟପ୍ରତିଭା ସ୍ୱତଃସ୍ଫୂର୍ତ୍ତି । ସେଥିପାଇଁ ଲୋକେ ତାଙ୍କୁ 'ସ୍ୱଭାବକବି' କହିଥାନ୍ତି ।

ଗଙ୍ଗାଧରଙ୍କ କାବ୍ୟ ଦୁଇ ଶ୍ରେଣୀରେ ବିଭକ୍ତ—ପୌରାଣିକ ଚରିତ୍ର ଅବଲମ୍ବନରେ ଲିଖିତ କାବ୍ୟ ଏବଂ ନିଛକ ପ୍ରକୃତିବର୍ଣ୍ଣନାସମ୍ବଳିତ କାବ୍ୟ । ପ୍ରଥମ ଶ୍ରେଣୀର ରଚନା ମଧ୍ୟରେ ଅହଲ୍ୟାସ୍ତବ (୧୮୯୨), ଇନ୍ଦୁମତୀ (୧୮୯୩), କୀଚକବଧ (୧୯୦୩ – ୧୯୦୪), ତପସ୍ୱିନୀ (୧୯୧୪), ପ୍ରଣୟବଲ୍ଲରୀ (୧୯୧୫) ଏବଂ ଦ୍ୱିତୀୟ ପର୍ଯ୍ୟାୟର କାବ୍ୟ ମଧ୍ୟରେ ଉତ୍କଳଲକ୍ଷ୍ମୀ (୧୮୯୪) ପାଠକର ଦୃଷ୍ଟି ଆକର୍ଷଣ କରିଥାଏ । ଏତଦ୍‌ବ୍ୟତୀତ କ୍ଷୁଦ୍ର ଏବଂ ଦୀର୍ଘ କବିତା ସଂଚୟନ ମଧ୍ୟରେ କବିତା-କଲ୍ଲୋଳ (୧୯୧୨), ଅର୍ଘ୍ୟଥାଳୀ ପ୍ରଭୃତି ଅନ୍ତର୍ଗତ ।

ଶ୍ରୀରାମଚନ୍ଦ୍ରଙ୍କ ପଦସ୍ପର୍ଶରେ ଅଭିଶପ୍ତା ଅହଲ୍ୟାଙ୍କର ମୁକ୍ତିଲାଭ, ଅଜ ଓ ଇନ୍ଦୁମତୀଙ୍କର ବିବାହ, ପାଣ୍ଡବମାନଙ୍କର ବନବାସ ସମୟରେ ଛଦ୍ମବେଶରେ ବିରାଟ ନଗରରେ ସେମାନଙ୍କର ଅବସ୍ଥାନ, ସୈରିନ୍ଧ୍ରୀଙ୍କ ରୂପ-ଉନ୍ମତ୍ତ କୀଚକର କାମଜନିତ ଉତ୍ତେଜନା ଏବଂ ତା'ର ବିଷମୟ ପରିଣତି, ରାମାୟଣର ପୁଣ୍ୟ ସତୀଙ୍କର ନିର୍ବାସିତ, ସୀତାଙ୍କର ବାଲ୍ମିକୀ ଆଶ୍ରମରେ ଜୀବନଯାପନ, ଦୁଷ୍ମନ୍ତ ଏବଂ ଶକୁନ୍ତଳାଙ୍କର ପ୍ରଣୟ ପ୍ରସଙ୍ଗ ଯଥାକ୍ରମେ କବିଙ୍କର ଅହଲ୍ୟାସ୍ତବ, ଇନ୍ଦୁମତୀ, କୀଚକବଧ, ତପସ୍ୱିନୀ ଏବଂ ପ୍ରଣୟବଲ୍ଲରୀ କାବ୍ୟର କଥାବସ୍ତୁ । ରଘୁବଂଶ ଅବଲମ୍ବନରେ 'ଇନ୍ଦୁମତୀ', 'ଉତ୍ତରରାମଚରିତ' ଅବଲମ୍ବନରେ 'ତପସ୍ୱିନୀ' ଏବଂ ସଂସ୍କୃତର ପ୍ରସିଦ୍ଧ କବି କାଳି-

*

ଦାସଙ୍କ ଅମରକୃତି 'ଅଭିଜ୍ଞାନ ଶକୁନ୍ତଳା' ଅବଲମ୍ବନରେ ତପସ୍ୱିନୀ ଏବଂ ପ୍ରଣୟି-ବଲ୍ଲରୀ କାବ୍ୟ ଆମୂଳଚୂଳ ପରିକଳ୍ପିତ । ଗଙ୍ଗାଧରଙ୍କ କବି ମାନସ ପୁରାଣ ଏବଂ ପରଂପରା ପ୍ରଭାବିତ ଏବଂ କବି ବିସ୍ମୃତ ଭାବରେ କାଳିଦାସ ପ୍ରଭୃତି ସଂସ୍କୃତ କବିଙ୍କ କାବ୍ୟ ସଂଗଠନ ଉପମା-ଗନ୍ଧାଘରରୁ ସ୍ୱକୀୟ ସଂଗଠନ ଏବଂ ସଂଯୋଜନାର ସାମଗ୍ରୀ ଆହରଣ କରିପାରିଛନ୍ତି । ଆହରଣ ମଧ୍ୟରେ କବିଙ୍କର ମୌଳିକତା ମଧ୍ୟ ସ୍ପଷ୍ଟ । ପୁନଶ୍ଚ ଅହଲ୍ୟା, ସୈରନ୍ଧ୍ରୀ, ବିଶେଷତଃ ସୀତା, ଶକୁନ୍ତଳା ପ୍ରଭୃତି ପୌରାଣିକ ନାରୀଚରିତ୍ରଙ୍କୁ କବି ସାଂପ୍ରତିକ ନାରୀସମାଜର ପୃଷ୍ଠଭୂମି କରି ସାମାଜିକ ଉପ-ଯୋଗିତା ବେଶ୍ ଉପଲବ୍ଧ ହୋଇଥାଏ । କାବ୍ୟର କଳେବର ସଂଗଠନରେ କବି ପ୍ରାଚୀନ ଯୁଗର ଛନ୍ଦ, ରାଗରାଗିଣୀକୁ ଗ୍ରହଣ କରିଥିଲେ । ଆଦିରସ ଏବଂ କରୁଣରସ କବିଙ୍କ କାବ୍ୟକୃତିରେ ବିଶେଷ ପ୍ରତିଫଳିତ ।

ପ୍ରାକୃତିକ ସୌନ୍ଦର୍ଯ୍ୟପୂର୍ଣ୍ଣ ଓଡ଼ିଶାର କାବ୍ୟିକ ରୂପ ହେଉଛି ତାଙ୍କର 'ଉତ୍କଳଲକ୍ଷ୍ମୀ' କାବ୍ୟ । କବିଙ୍କର ବିଭିନ୍ନ ଗୀତିକବିତାଗୁଡ଼ିକ ଭକ୍ତି, ଦେଶାତ୍ମ-ବୋଧ, ପ୍ରକୃତିବର୍ଣ୍ଣନା-ସର୍ବସ୍ୱତା ଏବଂ କୃଷି ସମ୍ବନ୍ଧୀୟ ଅଭିଜ୍ଞତାଦ୍ୱାରା ଚିହ୍ନିତ । ତାଙ୍କର 'ଭକ୍ତି' ଗୀତିକବିତାଟି ଭକ୍ତର ଆବେଦନ ଏବଂ ସ୍ରଷ୍ଟାଙ୍କ ଆତ୍ମୋତ୍ସର୍ଗଦ୍ୱାରା ସମୁଜ୍ଜ୍ୱଳ ।

**ନନ୍ଦକିଶୋର (୧୮୭୫–୧୯୨୮) :**

ଓଡ଼ିଆ ସାହିତ୍ୟର ନବୀକରଣ ଯୁଗରେ ଗ୍ରାମବହୁଳ ଓଡ଼ିଶାର ସ୍ୱାଭାବିକ, ସରଳ, ଗ୍ରାମ୍ୟଜୀବନଧାରା ଏବଂ ଚଳଣିକୁ କ୍ଷୁଦ୍ର କ୍ଷୁଦ୍ର କାବ୍ୟ କବିତାରେ ପ୍ରତିଫଳିତ କରି ନନ୍ଦକିଶୋର ଅବହେଳିତ ଗ୍ରାମ୍ୟ ପରିସରରେ ନୂତନ ସୌନ୍ଦର୍ଯ୍ୟବୋଧର ସଙ୍କେତ ଦେଇପାରିଥିଲେ । ତେଣୁ ଗ୍ରାମ୍ୟ ଜୀବନର ତେଲ-ଲୁଣ ସଂସାର, ଗ୍ରାମଂଟଳା, ଗ୍ରାମହାଟ, ଗ୍ରାମ ଗୃଷ୍ଟଶାଳୀ, ଗ୍ରାମ ଅବଧାନ ଏବଂ ଗ୍ରାମର ନୈସର୍ଗ ପ୍ରକୃତି ନନ୍ଦକିଶୋରଙ୍କ ଲେଖନୀରେ ବେଶ୍ ସରଳ ସହଜ ଭାଷାରେ ଝଙ୍କୃତ ହୋଇଥିଲା । ତାଙ୍କର ଏତାଦୃଶ କବିତାକୃତି ମଧ୍ୟରେ ପଲ୍ଲୀଚିତ୍ର (୧୯୦୦), ନିର୍ଝରିଣୀ (୧୯୦୦) ବସନ୍ତକୋକିଳ (୧୯୦୧), କୃଷ୍ଣକେଳି ପ୍ରଭୃତି ଉଲ୍ଲେଖଯୋଗ୍ୟ । 'ଶର୍ମିଷ୍ଠା' (୧୯୧୭) ପୌରାଣିକ କଥାବସ୍ତୁ ଉପରେ ଆଧାରିତ । ଶର୍ମିଷ୍ଠା ଏବଂ ଦେବଯାନୀ ସଦୃଶ ପରସ୍ପର ଅଦର୍ଶବିରୋଧୀ ଚରିତ୍ର ମାଧ୍ୟମରେ କବି ଏକ ଦିଗରେ ସ୍ୱାର୍ଥାନ୍ଧ ପ୍ରେମ ଏବଂ ଅନାବିଳ ପ୍ରେମର ଚିତ୍ର ଉପସ୍ଥାପନ କରିଛନ୍ତି । ରାଧାନାଥଙ୍କ କାବ୍ୟଂସିଙ୍କି ସାହିତ୍ୟସୃଷ୍ଟିର ପୃଷ୍ଠଭୂମିରେ ବିରଚିତ । ସେହିପରି 'ସୀତାବନବାସ' କବିଙ୍କର ଆଉ ଏକ କାବ୍ୟ। ପଲ୍ଲୀଚିତ୍ରଅଙ୍କନଦକ୍ଷ କବିର କାବ୍ୟମାନସରେ କ୍ରୀଡ଼ା-ପ୍ରିୟ ମାନବଶିଶୁର ଚିରନ୍ତନ ରୂପ ନିପୁଣ ଭାଷାରେ ପ୍ରକଟିତ । କବିଙ୍କର 'ନାନା-

ବାସ୍ୟାଗୀତ' (୧ମ, ୨ୟ ଭାଗ ୧୯୧୫)ର ଧେରେ ବାସ୍ୟା ଧୋ, ନନ୍ଦମାଉସୀ, ବାସ୍ୟାଚଢ଼େଇ, ବଲେଇନାନୀ, ପୋଷା କୁକୁର, ବେଙ୍ଗୁଲି ରାଣୀ, କଳଚୁଆ, ଚନ୍ଦ୍ରତାରା, କୁଜକାଉ, ନାନାବାସ୍ୟାଗୀତ, ଡାମରାକାଉ, ନାଚଗୀତ, ସକାଳ ଆଦି କବିତା ଶିଶୁର ମନସ୍ତତ୍ତ୍ୱ ଅବିକଳ ବହନ କରିପାରିଛି । ବର୍ଷାସିକ୍ତ ଅପରାହ୍ଣରେ ଗ୍ରାମଦାଣ୍ଡରେ ଶିଶୁମାନଙ୍କର ଖେଳକୌତୁକ ଆଦାନ-ପ୍ରଦାନ କବିଙ୍କ କବିତାରେ ହିଁ ସଜୀବନ ପାଇଁ ଉଦ୍ଭାସିତ ହୋଇପାରିଛି । ଗ୍ରାମପ୍ରବଣ, ପଲ୍ଲୀ-ସ୍ୱପ୍ନବିଭୋର କବିଙ୍କର ଏକମାତ୍ର ଗଦ୍ୟକୃତି 'କନକଲତା' ଉପନ୍ୟାସ ମଧ୍ୟ ଗ୍ରାମ୍ୟସମାଜଭିତ୍ତିକ । ଗ୍ରାମ୍ୟବାଳିକା କନକଲତାର ବୈବାହିକ ଜୀବନ ସହିତ ତା'ର ଭାଇ କଲେଜ ଶିକ୍ଷା-ପ୍ରାପ୍ତ ଆଜୀବନ ସନ୍ନ୍ୟାସୀ ଯୁବକ ରାଜେନ୍ଦ୍ରଙ୍କର ସଂସ୍କାର ଉଦ୍ୟମ ସମ୍ବନ୍ଧୀୟ ବ୍ୟର୍ଥତା ଉପନ୍ୟାସଟିରେ ବର୍ଣ୍ଣିତ । ଗ୍ରାମ୍ୟଜୀବନର ଅନୁଭୂତି, ଅଭିଜ୍ଞତାର ସ୍ତରରୁ କବି ଜଣେ ଦାର୍ଶନିକ ସ୍ତରକୁ ନିଜକୁ ଉନ୍ନୀତ କରିପାରିଥିଲେ । ତାଙ୍କର 'ସଂଧ୍ୟା ସଙ୍ଗୀତ' ଏବଂ 'ପ୍ରଭାତ ସଙ୍ଗୀତ' ପୁସ୍ତକରେ ବହୁ ଭକ୍ତିକବିତା ଅଙ୍ଗୀଭୂତ । 'ନିର୍ଝରିଣୀ' ଅନ୍ତର୍ଗତ 'ଡାମରାକାଉ' କବିତାଟି କ୍ଷଣଭଙ୍ଗୁର ମନୁଷ୍ୟଜୀବନର ଦାର୍ଶନିକ ବ୍ୟାଖ୍ୟା ଏବଂ ବିଶ୍ଳେଷଣରେ ପରିପୂର୍ଣ୍ଣ । ସଂକ୍ଷେପରେ କବି ନନ୍ଦକିଶୋରଙ୍କର ସଂପୂର୍ଣ୍ଣ ସହାନୁଭୂତି ପଲ୍ଲୀଜୀବନ ଏବଂ ଶିଶୁସମାଜ ସହିତ । ରାଧାନାଥଙ୍କ ପ୍ରବର୍ତ୍ତିତ କାବ୍ୟ-ପରମ୍ପରାରେ ସଂପୂର୍ଣ୍ଣ ବିଶ୍ୱାସୀ କବିଶେଖର ଚନ୍ଦ୍ରମଣି ମହାନ୍ତି (ଭଦ୍ରକ, ୧୮୬୭-୧୯୪୩) ବହୁ ବର୍ଣ୍ଣନାତ୍ମକ, ଐତିହାସିକ ଓ ପୌରାଣିକ କାବ୍ୟ, ଅଜସ୍ର ଗୀତି-କବିତା ଏବଂ ଉପନ୍ୟାସ ଗଳ୍ପ ରଚନା କରି ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଛନ୍ତି । ରାଧାନାଥ କାବ୍ୟ-ପରମ୍ପରାର ସେ ଅନୁଗତ ଉପାସକ ଏବଂ ତାଙ୍କ କାବ୍ୟକୃତିରେ ଓଡ଼ିଶାର କିମ୍ବଦନ୍ତୀ, ଜନପଦ, ଅରଣ୍ୟ-ପ୍ରକୃତି ଐଶ୍ୱର୍ଯ୍ୟମୟ ଭାଷାରେ ବର୍ଣ୍ଣିତ । ପରିମାଣାତ୍ମକ ଏବଂ ଗୁଣାତ୍ମକ ବିଚାରରେ ତାଙ୍କ କୃତିସମୂହର ପ୍ରଭାବ ମଧ୍ୟ ସ୍ୱୀକୃତ । ଉତ୍କଳର ପ୍ରାକୃତିକ ସୌନ୍ଦର୍ଯ୍ୟ ପ୍ରତି କବିଙ୍କର ପ୍ରଗାଢ଼ ମମତା ଓ ଆକର୍ଷଣ ତାଙ୍କ କାବ୍ୟଗୁଡ଼ିକରେ ପ୍ରଦର୍ଶିତ ।

**କାବ୍ୟ** : ବର୍ଣ୍ଣନାତ୍ମକ କାବ୍ୟ—ଘୁମୁସର କାବ୍ୟ, ମହୋଦଧି, ମହେନ୍ଦ୍ର, ସିଂହରାଜ, ଉତ୍କଳ କମଳା, ମେଘାସନ, ସାଳନ୍ଦୀ ।

ପୌରାଣିକ ଓ ଐତିହାସିକ କାବ୍ୟ—ବିନ୍ଦୁମାଦିତ୍ୟ, ଶ୍ରୀ ମୁକୁନ୍ଦଦେବ, ସୁଭଦ୍ରା, ଶିଶୁପାଳବଧ, ସପ୍ତରଥୀ, ଭାରତ ଲଳନା, ଆର୍ଯ୍ୟବାଳା ।

**ଖଣ୍ଡକବିତା**—ପଦ୍ମପୁଷ୍ପ, ସାନ୍ଧ୍ୟତାରା, କଳ୍ପନାକୁଞ୍ଜ, ଫୁଲଡାଲି, ଶତଦଳ, ପୁଷ୍ପବାଟିକା, ବଣମାଳତୀ, ତୀର୍ଥବାରି, ଜନନୀ, ଶତଦଳ, ତୁଳସୀମାଳା, ଦଳ୍ପରେଣୁ, ବିବିଧ କବିତା ।

**ଉପନ୍ୟାସ**—ରୂପାଚୁଡ଼ି, ଟଙ୍କାଗଛ, ଯୁଗଳମଠ, ଶନିସପ୍ତା, ତ୍ରିବେଣୀ, ତୁଳ୍ପଫକୀର, ଜୟପୁର ଭ୍ରମଣ ।

# ଓଡ଼ିଆ ସାହିତ୍ୟରେ ସତ୍ୟବାଦୀ ଗୋଷ୍ଠୀ

## ଆଧୁନିକ ଓଡ଼ିଆ ସାହିତ୍ୟରେ ସତ୍ୟବାଦୀଗୋଷ୍ଠୀ —

ଊନବିଂଶ ଶତାବ୍ଦୀର ଶେଷପାଦରେ ଓଡ଼ିଆ ସାହିତ୍ୟରେ ପ୍ରବର୍ତ୍ତକ-ମାନଙ୍କର ନୂତନ ଆଙ୍ଗିକ ଏବଂ ନୂତନ ଦୃଷ୍ଟିଭଙ୍ଗୀସମ୍ବଳିତ ସାହିତ୍ୟ ସୃଷ୍ଟି-ଯୋଗୁଁ ପରବର୍ତ୍ତୀ ସମୟର ଓଡ଼ିଆ ସାହିତ୍ୟ ଆହୁରି ଗୁଣାତ୍ମକ ପରିବର୍ତ୍ତନର ସମ୍ମୁଖୀନ ହେଲା । ସାମୂହିକ ଭାବରେ ନୂତନ ସାହିତ୍ୟ ସୃଷ୍ଟି କରିବା ମୂଳରେ ଆଉ ଏକ ଉପାଦାନ ଭାବରେ କାର୍ଯ୍ୟକାରୀ ହୋଇଥିଲା । ତାହା ହେଉଛି ଦେଶର ରାଜ-ନୈତିକ ଜୀବନରେ ସ୍ୱାଧୀନତା ସଂଗ୍ରାମର ଉଦାତ୍ତ ସ୍ୱର ଏବଂ ଜାତୀୟ କଂଗ୍ରେସର ପ୍ରତିଷ୍ଠା ଓ ପ୍ରଭାବ । ତୀବ୍ର ଜାତୀୟତାବୋଧ ଯୋଗୁଁ ଦେଶର ଶିକ୍ଷା, ସାହିତ୍ୟ-କ୍ଷେତ୍ରରେ ମଧ୍ୟ ବିପ୍ଳବର ଧ୍ୱନି ଶୁଣାଗଲା । ଜାତୀୟତା ଏବଂ ଦେଶାତ୍ମବୋଧ ନିଶ୍ଚିତ ଭାବରେ ଏକ ଉନ୍ନତ ରାଜନୈତିକ ଏବଂ ମାନବିକ ଜିଜ୍ଞାସାର ପରିଣତି । 'ଜାତୀୟତା'ର ଆବେଦନକୁ ସାଫଲ୍ୟମଣ୍ଡିତ କରିବାଲାଗି ଦେଶର ଶିକ୍ଷାକୁ ନିର୍ଦ୍ଦିଷ୍ଟ ଆଦର୍ଶ ସ୍ୱଦେଶାଭିମୁଖୀ କରାଯିବା ଉଚିତ ବୋଲି ଜନନାୟକଗଣ ଉପଲବ୍ଧି କରିଥିଲେ । ଜାତୀୟ ଆହ୍ୱାନର ପ୍ରଭାବରେ ଓଡ଼ିଶାରେ ଜାତୀୟବାଦୀ ଆଦର୍ଶ ଶିକ୍ଷା ପ୍ରତିଷ୍ଠା ପାଇଁ ସେହି ଯୁଗରେ ଗୋପବନ୍ଧୁ ଦାସ ପ୍ରଭୃତି ଉଚ୍ଚଶିକ୍ଷିତ ଯୁବକଗଣ ଯୁଗୋପଯୋଗୀ କାର୍ଯ୍ୟପନ୍ଥା ଗ୍ରହଣ କରିଥିଲେ । ସେମାନଙ୍କର ଏପରି ଚିନ୍ତା, ସ୍ୱପ୍ନ ଏବଂ କର୍ମଧାରା ଗଭୀର ଦେଶାତ୍ମବୋଧଦ୍ୱାରା ଅନୁପ୍ରାଣିତ । ଗୋପବନ୍ଧୁ ମହାତ୍ମା ଗାନ୍ଧୀଙ୍କ ପରିକଳ୍ପିତ କଂଗ୍ରେସର ଅହିଂସା, ସତ୍ୟାଗ୍ରହ ନୀତି ଅନୁସରଣ କରିଥିଲେ । ଓଡ଼ିଶାରେ କଂଗ୍ରେସର ବାର୍ତ୍ତା ପ୍ରସାରିତ ହେବାଦିଗରେ ଦେଶ ଏବଂ ଜାତି ସ୍ୱପ୍ନରେ ଉଦ୍‌ବୁଦ୍ଧ ତରୁଣମାନଙ୍କର ଜୀବନୋତ୍ସର୍ଗ ସ୍ମରଣୀୟ ।

ଏହି ପୃଷ୍ଠଭୂମିରେ ପୁରୀ ଜିଲ୍ଲାର ଇତିହାସପ୍ରସିଦ୍ଧ ସତ୍ୟବାଦୀଠାରେ ସତ୍ୟବାଦୀ ଜାତୀୟ ବନବିଦ୍ୟାଳୟ (୧୯୦୯) ପ୍ରତିଷ୍ଠା ଓଡ଼ିଶାର ତଦାନୀନ୍ତନ ଜାତୀୟ ଏବଂ ସାଂସ୍କୃତିକ ଜୀବନରେ ଏକ ଐତିହାସିକ ଘଟଣା ବୋଲି କହିବାକୁ ହେବ । ସେହି ଜାତୀୟ ବିଦ୍ୟାଳୟର ବିବିଧ ଆଦର୍ଶ ତଥା ନୀତି ତଦାନୀନ୍ତନ ତରୁଣ ଲେଖକମାନଙ୍କ ଲେଖନୀରେ ପ୍ରତିଫଳିତ ହୋଇଥିଲା । ଫଳରେ ସତ୍ୟବାଦୀ ଜାତୀୟ ବିଦ୍ୟାଳୟ ସହିତ ନିବିଡ଼ ଭାବରେ ଜଡ଼ିତ ଶିକ୍ଷକଗୋଷ୍ଠୀ ଏବଂ ସାହିତ୍ୟିକମାନଙ୍କର କାବ୍ୟକବିତା ପ୍ରାଚୀନ ଓଡ଼ିଶାର କିମ୍ବଦନ୍ତୀ, ଗୌରବୋଜ୍ଜ୍ୱଳ ଇତିହାସ, ଗାଥାକାହାଣୀ ସମସାମୟିକ ସ୍ଥିତିରେ ନୂତନ ଆଙ୍ଗିକ ମାଧ୍ୟମରେ ପ୍ଲାବିତ ହୋଇଥିଲା । ସେଥିପାଇଁ ୧୯୦୯ ମସିହାରେ ଜାତୀୟ ବିଦ୍ୟାଳୟ

ପ୍ରତିଷ୍ଠାଠାରୁ ଦୁଇ ଦଶନ୍ଧିବ୍ୟାପୀ ଓଡ଼ିଆ ସାହିତ୍ୟରେ କାବ୍ୟକବିତାରେ ଦେଶାତ୍ମବୋଧ ତଥା ଭାବପ୍ରବଣତାର ପବିତ୍ର ଗଙ୍ଗା ନଦୀ ପ୍ରବାହିତ ହୋଇଥିଲା । ସତ୍ୟବାଦୀ ଜାତୀୟ ବିଦ୍ୟାଳୟ ଶିକ୍ଷକଗୋଷ୍ଠୀଙ୍କ ଏତାଦୃଶ ଦେଶାତ୍ମବୋଧଧର୍ମୀ ସାରସ୍ୱତ ସୃଷ୍ଟିର ମୂଳ ପ୍ରେରଣା ହେଉଛି ପ୍ରଥମତଃ ଗୌରବୋଜ୍ଜ୍ୱଳ ପ୍ରାଚୀନ ଉତ୍କଳର ଇତିହାସ, ଆଖ୍ୟାନ, କିମ୍ବଦନ୍ତୀ ଏବଂ ଦ୍ୱିତୀୟତଃ ସମସାମୟିକ ଭାରତର ସ୍ୱାଧୀନତା ତଥା ଅସହଯୋଗ ଆନ୍ଦୋଳନର ରାଜନୈତିକ ଉଦ୍‌ବୋଧନ । ଏହି ପୃଷ୍ଠଭୂମିରେ ଦେଶମିଶ୍ରଣ ମଧ୍ୟ ଥିଲା ସେମାନଙ୍କର ଲକ୍ଷ୍ୟ । ସାହିତ୍ୟରେ ଏହି ଦେଶାତ୍ମବୋଧ ପର୍ବର ପୁରୋଧାରୂପେ ଉତ୍କଳମଣି ଗୋପବନ୍ଧୁ ଦାସ (୧୮୭୭-୧୯୨୮)ଙ୍କ ନାମ ପ୍ରଥମେ ଉଲ୍ଲେଖଯୋଗ୍ୟ । ସେହି ଦେଶାତ୍ମବୋଧର ସ୍ପଷ୍ଟ ସ୍ୱାକ୍ଷର ମିଳେ ତାଙ୍କର ବିଭିନ୍ନ କ୍ରିୟାକଳାପରେ । ଦେଶର ଖାଦ୍ୟ-ପରିସ୍ଥିତି, ସ୍ୱାସ୍ଥ୍ୟ ଏବଂ ସେଥିରେ ଉତ୍କଳୀୟ ଯୁବଗୋଷ୍ଠୀର ଭୂମିକା ସମ୍ପର୍କରେ ୧୯୧୯ରେ ଉତ୍କଳ ସମ୍ମିଳନୀର ୧୪ଶ ଅଧିବେଶନରେ (କଟକଠାରେ) ସଭାପତିରୂପେ ସେ ଯେଉଁ ଅଭିଭାଷଣ ପ୍ରଦାନ କରିଥିଲେ, ତାହା ଏଠାରେ ସ୍ମରଣ କରାଯାଇପାରେ—

"ଭାଇମାନେ, ଆମ୍ଭେମାନେ ଏହି ସମ୍ମିଳନୀ ମଣ୍ଡପରେ ନାନାବିଧ ଜାତୀୟ ସମସ୍ୟାର ଆଲୋଚନା କରିବା ସମୟରେ ଓଡ଼ିଶାର ଚାରିଆଡ଼େ ଯେ ବର୍ତ୍ତମାନ ଦାରୁଣ ଅନ୍ନକଷ୍ଟ ଘଟିଅଛି, ତାହା ସ୍ୱତଃ ପ୍ରାଣକୁ ଆଲୋଡ଼ିତ କରେ । ଏ ଅନ୍ନକଷ୍ଟ ପୃଥିବୀର ଚାରିଆଡ଼େ ଅଳ୍ପାଧିକ ପରିମାଣରେ ବ୍ୟାପିଛି । ଭାରତର ପ୍ରାୟ ପ୍ରତ୍ୟେକ ପ୍ରଦେଶରେ ଅବସ୍ଥା ପ୍ରାୟ ଶୋଚନୀୟ । ଓଡ଼ିଶା ଏକେ ଦରିଦ୍ର; ସେଥିରେ ପ୍ରତିବର୍ଷ କୌଣସି ନା କୌଣସି ଅଞ୍ଚଳରେ ଶସ୍ୟହାନି ଘଟୁଅଛି । ଏ ବର୍ଷ ଓଡ଼ିଶା ରାଜ୍ୟର ଚତୁର୍ଦ୍ଦିଗରେ ଶସ୍ୟହାନି । ଗଞ୍ଜାମ, ଅନୁଗୁଳ ଏବଂ ଗଡ଼ଜାତର କେତେକ ରାଜ୍ୟରେ ବର୍ତ୍ତମାନ ଦାରୁଣ ଦୁର୍ଭିକ୍ଷ । ଅନ୍ୟାନ୍ୟ ସ୍ଥାନରେ ସେତେ ଉତ୍କଟ ନ ହେଲେହେଁ ଖାଦ୍ୟ ଜିନିଷର ଲଭ ଯେପରି ବଢ଼ିଅଛି, ସାଧାରଣ ଶ୍ରମଜୀବୀ ପକ୍ଷରେ ଚଳିବା ଦୁଃସାଧ୍ୟ । ପ୍ରତ୍ୟେକ ଜିଲ୍ଲାରୁ, ଏହି ଗଡ଼ଜାତର ପ୍ରତ୍ୟେକ ରାଜ୍ୟରୁ କେହି ବା ସ୍ତ୍ରୀ ପୁତ୍ର-କନ୍ୟା ଧରି, କେହି ବା ପରିବାର ଘରଦ୍ୱାର ଛାଡ଼ି ଆସାମ ଓ ଅନ୍ୟାନ୍ୟ ଦୂରବର୍ତ୍ତୀ ସ୍ଥାନମାନଙ୍କୁ ପେଟବିକଳରେ ଚାଲିଯାଉଅଛନ୍ତି । ଏଣେ ଦେଶରେ ଯେପରି ଶିଳ୍ପ-ବାଣିଜ୍ୟର ବ୍ୟବସ୍ଥା ନାହିଁ; ଯହିଁରେ ସେମାନେ ନିଯୁକ୍ତ ହୋଇପାରିବେ । ଗ୍ରାମମାନଙ୍କରେ ଏହି ଦିନୁ ଜଳକଷ୍ଟ ପଡ଼ିଲାଣି, କୌଣସି କୌଣସି ଅଞ୍ଚଳରେ ଲୋକେ ସମୟେ ସମୟେ ଧାନ ଚାଉଳ କିଣିବାକୁ ପାଉ ନାହାନ୍ତି । ବସ୍ତ୍ରକଷ୍ଟ ଯୁଦ୍ଧ ଆଦ୍ୟରୁ ତ ବରାବର ଲାଗିଅଛି । ଆଜିକାଲି ପଲ୍ଲୀର ଲୋକେ ଯେପରି ଭାବରେ କାଳ କଟାଉ ଅଛନ୍ତି ତା ଦେଖିଲେ ହୃଦୟ ଫାଟିଯାଏ । ଜ୍ୱର, ବିସୂଚିକା, ବସନ୍ତ ଗ୍ରାମମାନଙ୍କୁ ଛାରଖାର

କରିସାରିଲାଣି । ମୃତ୍ୟୁ ରେଜେଷ୍ଟ୍ରିଗୁଡ଼ିରେ ମୃତ୍ୟୁକାରଣ ଯାହା ଲେଖା ହେଉ ନା କାହିଁକି ଅଧିକାଂଶ ମୃତ୍ୟୁର ମୂଳ ନିଦାନ ଯେ ଅନ୍ନକଷ୍ଟ, ଏଥିରେ କୌଣସି ସନ୍ଦେହ ନାହିଁ । ଆଉ ଦୁଇ ମାସ ମଧ୍ୟରେ ଅବସ୍ଥା ବଡ଼ ଭୟଙ୍କର ହୋଇପଡ଼ିବ । ଅବଶ୍ୟ ଏ ଚତୁର୍ଦ୍ଦିଗବ୍ୟାପୀ ଅନ୍ନକଷ୍ଟ ନିମନ୍ତେ ବିଶେଷ କିଛି କରିପାରିବା ଭଳି କ୍ଷମତା ସମ୍ମିଳନୀର ନାହିଁ । ବିଶେଷଭାବରେ ବାଧିଥିବା କୌଣସି କୌଣସି ସ୍ଥାନ ନିମନ୍ତେ ସମ୍ମିଳନୀ କିଛି କରିପାରିଲେ ବଡ଼ ଭଲ ହୁଅନ୍ତା । ଲୋକମାନଙ୍କର ଇଚ୍ଛା ଯେ କେନ୍ଦ୍ର ସ୍ଥାନମାନଙ୍କରେ ସରକାରଙ୍କ ତରଫରୁ ଚାଉଳ ବା ଧାନ ଗୋଦାମ ବସି ଏକ ନିର୍ଦ୍ଦିଷ୍ଟ ଦରରେ ବିକି ହେଉ; ଯେପରିକି ସ୍ଥାନୀୟ ମହାଜନମାନେ ମନ-ଇଚ୍ଛାରେ ଅତ୍ୟଧିକ ଲାଭବାନ ହୋଇପାରିବେ ନାହିଁ । ସରକାରଙ୍କ ତରଫରୁ ଏପରି ଗୋଦାମ ବସିଲେ ସମ୍ମିଳନୀ ଅବଶ୍ୟ ସେଥିରେ ସହଯୋଗିତା ପ୍ରକାଶ କରିବେ, ସନ୍ଦେହ ନାହିଁ । ଏହାଛଡ଼ା ସମ୍ମିଳନୀ ପକ୍ଷରୁ ସ୍ୱେଚ୍ଛାସେବକମାନଙ୍କ ଦ୍ୱାରା କିମ୍ବା ଅନ୍ୟ ଉପାୟରେ ସ୍ଥାନୀୟ ମହାଜନମାନଙ୍କୁ ଅନୁରୋଧ କରାଯାଉ ଯେ ସେମାନେ ବେପାରୀମାନଙ୍କୁ ଧାନ ଚାଉଳ ନ ଦେଇ ଶ୍ରମଜୀବୀ କିଣିଖିଆ ନିକଟବର୍ତ୍ତୀ ଲୋକଙ୍କୁ ଠିକଏ କୋହଳ ଦରରେ ବିକନ୍ତୁ ।

ଏ ପ୍ରସଙ୍ଗରେ ଦେଶର ସ୍ୱାସ୍ଥ୍ୟ ଦିନକୁ ଦିନ ଯେ କିପରି ନଷ୍ଟ ହେଉଅଛି, ତାହା ବିଚାର କରିବା ଆବଶ୍ୟକ । ଅନ୍ନରୁ ରୋଗ, ଆକାଶରୁ ମହର୍ଗ । ପଲ୍ଲୀର ଲୋକ-ସାଧାରଣଙ୍କ ମଧ୍ୟରେ ଅଧିକାଂଶ ସ୍ଥଳେ ଖାଦ୍ୟାଭାବ, ସ୍ୱାସ୍ଥ୍ୟଭଙ୍ଗ ଏବଂ ଦୁର୍ବଳତାର କାରଣ, ଏହାଛଡ଼ା ଅନ୍ୟାନ୍ୟ କାରଣ ମଧ୍ୟ ଅଛି । ଗ୍ରାମମାନଙ୍କରେ ପାଣିର ଅଭାବ; ଏପରିକି କୌଣସି କୌଣସି ଗ୍ରାମରେ ଗାଧୋଇବାକୁ ମଧ୍ୟ ବର୍ଷର କେତେକ ମାସ ପାଣି ମିଳେ ନାହିଁ । ସ୍ୱାସ୍ଥ୍ୟରକ୍ଷାର ନିୟମ ନଜାଣି ଲୋକେ ଘର ଏବଂ ଗ୍ରାମର ଅବସ୍ଥା ଏପରି କରିଥାନ୍ତି ଯେ ଗ୍ରାମର ଚତୁର୍ଦ୍ଦିଗରେ ରୋଗର ବୀଜ ବୁଣାହୋଇଥାଏ । ସର୍ବାପେକ୍ଷା ଅଧିକ ପରିତାପର ବିଷୟ ଯେ, ଚିକିତ୍ସାର କୌଣସି ପ୍ରକାର ବ୍ୟବସ୍ଥା ନାହିଁ । ଭାଗ୍ୟ ଆଦର ଲୋକେ ରୋଗର ଯନ୍ତ୍ରଣା ଭୋଗନ୍ତି । ପରମାୟୁ ଥିଲେ କେବଳ ବଞ୍ଚନ୍ତି । ସରକାର ବା ଜିଲ୍ଲାବୋର୍ଡ଼ ଡାକ୍ତରୀ ଚିକିତ୍ସାକୁ ସାହାଯ୍ୟ କରିଥାନ୍ତି; ମାତ୍ର ଲୋକସଂଖ୍ୟା ଦୃଷ୍ଟିରେ କେତେ ଜଣ ଡାକ୍ତର, କେତୋଟି ବା ଡାକ୍ତରଖାନା ? ପୁଣି ଡାକ୍ତରୀ ଚିକିତ୍ସା ଯେପରି ବ୍ୟୟସାଧ୍ୟ ଏବଂ ଡାକ୍ତର ଏ ଦେଶରେ ଯେପରି ଦୁର୍ଲ୍ଲଭ, ଦରିଦ୍ର ପଲ୍ଲୀବାସୀ ଓଡ଼ିଆଙ୍କ ନିମନ୍ତେ ସେ ଚିକିତ୍ସା କେବେହେଲେ ଉପଯୁକ୍ତ ହେବ ନାହିଁ । ପଲ୍ଲୀରେ ଶୀଘ୍ର ଚିକିତ୍ସାର କିଛି ବନ୍ଦୋବସ୍ତ ନ ହେଲେ କେତେକ ବର୍ଷ ମଧ୍ୟରେ ଅନେକ ଗ୍ରାମ ଜନଶୂନ୍ୟ ହୋଇଯିବା ବିଚିତ୍ର ନୁହେଁ । ଦେଶୀୟ କବିରାଜୀ ଚିକିତ୍ସାର ପୁନରୁଦ୍ଧାର ଅତୀବ ପ୍ରୟୋଜନ । ପୁରୀ ନୂତନ ସଂସ୍କୃତ କଲେଜରେ କବିରାଜୀ ଶିକ୍ଷାର ବ୍ୟବସ୍ଥା ହୋଇଅଛି । ଏହି କଟକ ସହରରେ

ଏ ସମ୍ବନ୍ଧେ କେତେକ ସହୃଦୟ ବ୍ୟକ୍ତି ଉଦ୍ୟମ କରୁଅଛନ୍ତି । ତାହା ପ୍ରଶଂସନୀୟ । ଅନ୍ୟାନ୍ୟ କୌଣସି କୌଣସି ସ୍ଥାନରେ ମଧ୍ୟ ଆୟୁର୍ବେଦ ବିଦ୍ୟାଳୟ ଅଛି; ମାତ୍ର ଏ ସବୁର ସଂଖ୍ୟା ପ୍ରୟୋଜନ ଅନୁରୂପ ନୁହେଁ । ଶିକ୍ଷା ମଧ୍ୟ ସେପରି ଉତ୍କୃଷ୍ଟ ପ୍ରଣାଳୀରେ ଦିଆଯାଏନାହିଁ । ପୁସ୍ତକ ଶିକ୍ଷା ସଙ୍ଗେ ସଙ୍ଗେ ଔଷଧାଦିର ପ୍ରୟୋଗରେ ଅଭ୍ୟାସ ଲାଭ କରିବା ଲାଗି ବ୍ୟବସ୍ଥା ନାହିଁ । କବିରାଜୀ ଚିକିତ୍ସାର ପ୍ରୟୋଜନୀୟତା ଦୃଷ୍ଟିରୁ ସରକାର ଏହାର ବିସ୍ତାର ନିମନ୍ତେ ସାହାଯ୍ୟ କରିବା ଉଚିତ । ଅନ୍ତତଃ ପକ୍ଷେ ଜିଲାବୋର୍ଡ଼ ଏବଂ ମ୍ୟୁନିସିପାଲିଟି ନିମନ୍ତେ ନିଜ ନିଜ ଇଲାକା ମଧ୍ୟରେ ଏ ପ୍ରକାର ଚିକିତ୍ସା ଲାଗି ବାର୍ଷିକ କିଛି ବ୍ୟୟ ନିରୂପଣ କରିବା ଅତ୍ୟନ୍ତ ଆବଶ୍ୟକ । ଏହାଛଡ଼ା ଯେଉଁ ସ୍ଥାନମାନଙ୍କରେ ଟୋଲ ଅଛି, ସେଠାରେ କବିରାଜୀ ଶିକ୍ଷାର ବ୍ୟବସ୍ଥା ରହିଲେ କ୍ରମେ କବିରାଜ ସଂଖ୍ୟା ବଢ଼ନ୍ତେ । ମୋ ମତରେ ସାଧାରଣ କେତେକ ରୋଗ ନିମନ୍ତେ ଆୟୁର୍ବେଦୀୟ ଚିକିତ୍ସାର ବ୍ୟବସ୍ଥା ଖଣ୍ଡେ ଖଣ୍ଡେ କାଗଜରେ ଛପା ହୋଇ ପ୍ରତ୍ୟେକ ଗ୍ରାମକୁ ଗଲେ କିଛି ଉପକାର ମଧ୍ୟ ହୋଇ-ପାରନ୍ତା । ମୋର ପୂର୍ବକଥିତ ଭାଗବତ ଘର ପ୍ରସ୍ତାବ କାର୍ଯ୍ୟରେ ପରିଣତ ହେଲେ ସେହିଠାକୁ ଏ କାଗଜମାନ ପଠାଯାଇପାରନ୍ତା । ରୋଗ, ବ୍ୟାଧି, ଅନାହାର ପ୍ରଭୃତି ନାନା ଦୁଃଖ-ଦୁର୍ଗତି ଲୋକେ ଭୋଗୁଛନ୍ତି, ମାତ୍ର ସେମାନଙ୍କୁ କୌଣସି ପ୍ରକାର ଯେତେ ସାମାନ୍ୟ ହେଉ ପଛକେ ସାହାଯ୍ୟ କରିବା ଲାଗି ସେପରି କିଛି ବ୍ୟବସ୍ଥା ନାହିଁ । ଅନ୍ୟାନ୍ୟ ପ୍ରଦେଶରେ ସେବା ସମିତି ପ୍ରଭୃତି ସ୍ଥାପିତ ହୋଇ ନାନା ଭାବରେ ଜନସାଧାରଣଙ୍କର ହିତବିଧାନ କରୁଅଛି । ୧୯୦୭ ମସିହାରେ କେନ୍ଦ୍ରାପଡ଼ା, ଯାଜପୁରରେ ଦୁର୍ଭିକ୍ଷ ସାହାଯ୍ୟ କରିବା ଲାଗି ଓଡ଼ିଶା ଛାତ୍ରସମାଜ ଯେ ଦଳଗତ ଉଦ୍ୟମ କରିଥିଲେ, ତାହା ଭାବିଲେ ଏବେ ସୁଦ୍ଧା ମନରେ କମ୍ ଆହ୍ଲାଦ ଜାତ ହୁଏ ନାହିଁ । ଉତ୍କଳ ଯୁବକ ସମିତିର ସେହି ଉତ୍ସାହୀ ଯୁବକମାନଙ୍କ ଉଦ୍ୟମ ଆଜିଯାଏ ଅକ୍ଷୁଣ୍ଣ ରହିଥିଲେ ଦେଶରେ ଏକ ସ୍ଥାୟୀ ଶକ୍ତି ହୋଇଥାନ୍ତା । ଯାହାହେଉ, ଆବଶ୍ୟକ ହେଲେ ବ୍ୟକ୍ତିଗତ ଭାବରେ ଦଳବଦ୍ଧ ହୋଇ କୌଣସି କୌଣସି ସ୍ଥାନରେ କେତେକ ଯୁବକ ସମୟବିଶେଷରେ ସ୍ୱେଚ୍ଛାସେବକ ହୋଇ କାର୍ଯ୍ୟ କରିବାର ଦେଖାଯାଉଅଛି । ପୁରୀ, ଗଞ୍ଜାମ ଉଭୟ ଜିଲ୍ଲାର କୌଣସି କୌଣସି ପଲ୍ଲୀରେ ଏପରି ସ୍ୱେଚ୍ଛାସେବକଦଳ ଥିବାର ମୁଁ ଜାଣେ । ସୁଖର କଥା, ଏହି କଟକରେ କେତେକ ଯୁବକ ଅଳ୍ପଦିନ ହେଲା ଗୋଟିଏ ସେବା ସମିତି ଆରମ୍ଭ କରିଛନ୍ତି; ଅନ୍ୟାନ୍ୟ ସ୍ଥାନରେ ମଧ୍ୟ ସମୟ ସମୟରେ ଏପରି ସମିତି ଗଠିତ ହୋଇ ଥାଏ । କିନ୍ତୁ ଧୈର୍ଯ୍ୟ, ନୈଷ୍ଠିକତା ଏବଂ ଶୃଙ୍ଖଳାବଦ୍ଧ ସୁପରିଚାଳକ ଅଭାବରୁ ଏହା ସବୁ ଅଧିକ ଦିନ ସ୍ଥାୟୀ ହୁଏ ନାହିଁ । ସମଗ୍ର ଓଡ଼ିଶା ପ୍ରଦେଶରେ ଗୋଟିଏ ବିରାଟ ସେବା ସଙ୍ଘ ଗଠିତ ହେଲେ ଏସବୁ ସ୍ଥାନୀୟ ଉଦ୍ୟମମାନ ତହିଁର ଅନ୍ତର୍ଭୁକ୍ତ

ଚିନ୍ତା । ମହାତ୍ମା ଗାନ୍ଧୀଙ୍କ ସମ୍ପର୍କରେ ଯେଉଁ ନିଖିଳ ଭାରତ ସେବା ସଂଘ ବା Social Service League ଗଠିତ ହୋଇଅଛି, ଉତ୍କଳ ସେବା ସଂଘ ତହିଁର ଅନ୍ତର୍ଭୁକ୍ତ ହେବା ଉଚିତ । ଭାରତର ଅନ୍ୟାନ୍ୟ ପ୍ରଦେଶରେ ଏପରି ସଂଘ ଗଠିତ ହୋଇଅଛି, ଏ ସମ୍ବନ୍ଧେ ଆମ୍ଭମାନଙ୍କର ନିଖିଳ ଭାରତୀୟ ଆନ୍ଦୋଳନରୁ ଅଲଗା ହୋଇ ରହିବା ଅଶୋଭନୀୟ ଏବଂ ହାନିଜନକ । ଏ ଶ୍ରେଣୀର ସେବା ସମିତିମାନ କାର୍ଯ୍ୟ ଶୃଙ୍ଖଳା ନିମନ୍ତେ ନିର୍ଦ୍ଦିଷ୍ଟ ସ୍ଥାନବିଶେଷରେ ସ୍ଥାପିତ ହେଲେ ସୁଦ୍ଧା ମାନବ-ପ୍ରୀତି ଏସବୁ ଅନୁଷ୍ଠାନର ମୂଳମନ୍ତ୍ର । ମନୁଷ୍ୟକୁ କେବଳ ମନୁଷ୍ୟ ବୋଲି ଭାବି ମାନବସେବା ହିଁ ଭଗବତସେବା, ଏହି ବିଶ୍ୱାସରେ ସେବା ସମିତିର ସଭ୍ୟମାନଙ୍କୁ କାର୍ଯ୍ୟ କରିବାକୁ ହେବ । ଏଠାରେ ପ୍ରାଦେଶିକତା ବା ସାଂପ୍ରଦାୟିକତା ନାହିଁ । ଦେଶର ହୀନ ଦରିଦ୍ର ଜନସାଧାରଣ ଜାତିର ବା ସମାଜର ଶକ୍ତି; ମାତ୍ର ସେମାନଙ୍କ ମଧ୍ୟରେ ଏହି ସହରବାସୀ ପଦସ୍ଥ ଲୋକଙ୍କ ମଧ୍ୟରେ ଭାବର ଡେଡେ ଘନିଷ୍ଠତା ଏବଂ ହୃଦୟର ସେତେ ଅଭିନ୍ନ ମିଳନ ଅଛି କି ? ସେମାନଙ୍କ ମଧ୍ୟରେ ରହି ସେମାନଙ୍କ ଲାଗି କାର୍ଯ୍ୟ ନ କଲେ, ସେମାନଙ୍କ ଦୁଃଖ-ଦୁର୍ଗତିରେ ସହାୟ ନ ହେଲେ ଆମ୍ଭମାନଙ୍କର ଜାତୀୟ ଜୀବନଗଠନର ପ୍ରୟାସ ପ୍ରତାରଣା ମାତ୍ର ।''

ଗୋପବନ୍ଧୁ ଦାସଙ୍କର ଏହି ଜାତୀୟତାବୋଧର ସ୍ୱର ଏବଂ ତାହାଙ୍କ କୀର୍ତ୍ତି ଗୋଦାବରୀଶ ମିଶ୍ରଙ୍କର ରଚନାରେ ସ୍ମରଣୀୟ—

''ସେହି ସତ୍ୟବାଦୀ ଗୁପ୍ତ-ବୃନ୍ଦାବନ
ବଉଳ ତମାଳ ତଳେ,
କଳି ଯୁଗେ ଆଜ ଦ୍ୱାପର ବିଧି ଲୋ
ଦିଶୁଛି ଆବର ଥରେ ।
ଦାସ ଗୋପବନ୍ଧୁ ଗୋପ ବାଳଲୀଳା
କରୁଛି ଭିଆଣ ପୁଣି,
କହ ଜମ୍ବୁଦ୍ୱୀପେ କେ ନାହିଁ ନାଆଁ ଲୋ
ସେ ଦାସପୁଅର ଶୁଣି ।''

( ସାକ୍ଷୀଗୋପାଳ/ଆଲେଖିକା )

ଉତ୍କଳର ଚିରସ୍ମରଣୀୟ ସେହି ପଣ୍ଡିତ ଗୋପବନ୍ଧୁ ଦାସ ଓଡ଼ିଶାରେ ଜାତୀୟ କଂଗ୍ରେସ ଏବଂ ମହାତ୍ମା ଗାନ୍ଧୀଙ୍କ ବାର୍ତ୍ତା ପ୍ରଚାର କରିବାରେ ଅଗ୍ରଣୀ ଥିଲେ । ସେଥିପାଇଁ ତାଙ୍କର ଚିନ୍ତା, ସାଧନା ଏବଂ ସାହିତ୍ୟସୃଷ୍ଟି ଦେଶ ଏବଂ ସମାଜର ବୃହତ୍ତର କଲ୍ୟାଣରେ ଏପରି ଉତ୍ସର୍ଗ କରିଥିଲେ । ଫଳରେ ଗୋପବନ୍ଧୁଙ୍କ ସହକର୍ମୀଗଣ ମଧ୍ୟ ଜାତୀୟ ପ୍ରେରଣା ଏବଂ ଜାଗରଣରୂପ ଗଙ୍ଗାସ୍ରୋତର ପ୍ଲାବନରୁ ବାଦ୍ ପଡ଼ିନଥିଲେ । ପଣ୍ଡିତ ନୀଳକଣ୍ଠ ଦାସ (୧୮୮୪-୧୯୬୭), ପଣ୍ଡିତ

ଗୋଦାବରୀଶ ମିଶ୍ର (୧୮୮୦-୧୯୫୬), ପଣ୍ଡିତ କୃପାସିନ୍ଧୁ ମିଶ୍ର, ଆଚାର୍ଯ୍ୟ ହରିହର ଦାସ, ପଣ୍ଡିତ ବାସୁଦେବ ମହାପାତ୍ର ପ୍ରମୁଖଙ୍କ କର୍ମମୟ ଜୀବନ ସତ୍ୟବାଦୀ ବନ-ବିଦ୍ୟାଳୟରେ ଶିକ୍ଷକତାରୁ ଆରମ୍ଭ ହୋଇଥିଲା ଏବଂ ସେମାନଙ୍କର ବିବିଧ ସାହିତ୍ୟ-ସୃଷ୍ଟିରେ ସ୍ୱଦେଶ ଏବଂ ସମାଜର ଚିନ୍ତା ହିଁ ଆବେଗପୂର୍ଣ୍ଣ ଭାଷାରେ ପ୍ରତିଫଳିତ ହୋଇଥିଲା । ସେମାନଙ୍କ ସାହିତ୍ୟିକ ଜୀବନ ଏବଂ ରାଜନୈତିକ ଜୀବନ ପରସ୍ପରଠାରୁ ବିଚ୍ଛିନ୍ନ ନ ଥିଲା । ଗୋପବନ୍ଧୁ ଦାସ ଏବଂ ତାଙ୍କର ସହକର୍ମୀଗଣ ରାଜନୈତିକ ଜୀବନରେ କାରାବରଣ କରିଥିଲେ । ଗୀତିକବିତା, କାବ୍ୟ, ଗାଥାକବିତା, ନାଟକ, ପ୍ରବନ୍ଧ, ଇତିହାସ ସୃଷ୍ଟି ଦ୍ୱାରା ସତ୍ୟବାଦୀ ସାହିତ୍ୟସାଧନା ଚିହ୍ନିତ ।

ଗୋପବନ୍ଧୁଙ୍କ ସମଗ୍ର ସାହିତ୍ୟସୃଷ୍ଟିର ମର୍ମସ୍ପର୍ଶୀ ଆଭିମୁଖ୍ୟ ହେଉଛି ସ୍ୱଦେଶ ପାଇଁ ପ୍ରାଣୋତ୍ସର୍ଗ ଏବଂ ପ୍ରାଚୀନ ଇତିହାସ ଏବଂ କିମ୍ବଦନ୍ତୀର ସମସାମୟିକ ରାଜନୈତିକ ପରିପ୍ରେକ୍ଷୀରେ ପୁନଃ ପ୍ରତିଷ୍ଠା । ଏହାର ପ୍ରକୃଷ୍ଟ ନିଦର୍ଶନ ହେଉଛି ଗୋପବନ୍ଧୁଙ୍କର ଆବେଗମୟ କବିତାପଂକ୍ତି—

"ଏହି ଯେ ସମ୍ମୁଖେ ବାରବାଟୀ ପଡ଼ା
ଭାଙ୍ଗି ଅଛି ଯହିଁ ଲକ୍ଷ୍ୟ ଲକ୍ଷ୍ୟ ଗଡ଼ା ।

ଥିଲା ସେହୁ ବୀର ବିହାର ପ୍ରାଙ୍ଗଣ,
ଭ୍ରମେ ତହିଁ ଆଜ ଶ୍ୱାନ ଶିବାଗଣ ।

× × ×

ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲିଯାଆନ୍ତୁ ପିଠିରେ ।

ଦେଶର ସ୍ୱରାଜ୍ୟ-ପଥେ ଯେତେ ଗାଡ଼
ପୂରୁ ତହିଁ ପଡ଼ି ମୋର ମାଂସ ହାଡ଼;

ସ୍ୱାଧୀନତା ପଥେ ଚଳେହେଲେ ନର,
ମୋ ଜୀବନ ଦାନେ ହେଉ ଅଗ୍ରସର ।"

(ବନ୍ଦୀର ଆତ୍ମକଥା)

ଗୋପବନ୍ଧୁଙ୍କ କେତୋଟି କବିତା; ଯଥା—ଗ୍ରୀଷ୍ମେ ଝୁଣ୍ଟାଗଛ, ବ୍ୟଥିତ ପ୍ରାଣର ଅନ୍ତିମ ଅଶ୍ରୁ, ପିତୃପକ୍ଷ ତର୍ପଣ, ବନ୍ଦୀର ସ୍ୱଦେଶ ଚିନ୍ତା ପ୍ରଭୃତି ସମ୍ବେଦନଶୀଳତା, ଭାବପ୍ରବଣତାର ପ୍ରତୀକ ।

ଗୋପବନ୍ଧୁଙ୍କ ରଚନା ମଧ୍ୟରେ ଅବକାଶ ଚିନ୍ତା, ବନ୍ଦୀର ଆତ୍ମକଥା, କାରା କବିତା, ଧର୍ମପଦ, ନଚିକେତା ଉପାଖ୍ୟାନ, ଗୋ ମାହାତ୍ମ୍ୟ ପ୍ରଧାନ ଏବଂ ସତ୍ୟବାଦୀ ସାହିତ୍ୟ ପତ୍ରିକା (୧୯୧୫-ମାର୍ଚ୍ଚ ମାସ)ର ସଂପାଦକ ଭାବରେ ଓଡ଼ିଆ ଗଦ୍ୟ-ସାହିତ୍ୟକୁ ନିର୍ଦ୍ଦିଷ୍ଟ ରୂପରେଖ ଦେବାରେ ମଧ୍ୟ ଅଗ୍ରଣୀ ଥିଲେ । କବି

*

ହଜାରିବାଗ ଜେଲ୍‌ରେ ରାଜନୈତିକ ବନ୍ଦୀଜୀବନ ଯାପନ କରୁଥିବା ସମୟରେ ଏବଂ ତତ୍‌କାଳୀନ ପୃଷ୍ଠଭୂମିରେ 'ବନ୍ଦୀର ଆତ୍ମକଥା', 'କାରା କବିତା' ପ୍ରଭୃତି ରଚନା କରିଥିଲେ । ଓଡ଼ିଶାରେ କଂଗ୍ରେସ ଅସହଯୋଗ ଆନ୍ଦୋଳନର ଧାରାବାହିକ କାବ୍ୟିକ ପରିପ୍ରକାଶ ହେଉଛି ଗୋପବନ୍ଧୁଙ୍କ 'ବନ୍ଦୀର ଆତ୍ମକଥା' ଏବଂ ତାଙ୍କର କ୍ଷୁଦ୍ରକାବ୍ୟ 'ଧର୍ମପଦ'ରେ ଓଡ଼ିଶାର ପାରମ୍ପରିକ ମନ୍ଦିରଶିଳ୍ପର ଗୌରବ ବାଳକ 'ଧରମା'ର ଆତ୍ମୋତ୍ସର୍ଗ ହିଁ ବର୍ଣ୍ଣିତ ।

'ଅବକାଶ ଚିନ୍ତା', 'କାରା କବିତା' ବ୍ୟକ୍ତିନଷ୍ଟ, ଅଭିଜ୍ଞତା-ବିଦଗ୍ଧ ଗୀତିକବିତାର ସଂକଳନ । ଯଥାର୍ଥରେ ସତ୍ୟବାଦୀ ବନବିଦ୍ୟାଳୟର କର୍ଣ୍ଣଧାର ଗୋପବନ୍ଧୁ ସାହିତ୍ୟକୁ ପରାଧୀନତାପୀଡ଼ିତ, ସ୍ୱାଭିମାନଭ୍ରଷ୍ଟ, ସ୍ୱଦେଶ ଏବଂ ସମାଜର ପରିବର୍ତ୍ତନ ପାଇଁ ଏକ ଶକ୍ତିଶାଳୀ ଆୟୁଧରୂପେ ବ୍ୟବହାର କରିଥିଲେ ।

ପଣ୍ଡିତ ନୀଳକଣ୍ଠ ଦାସଙ୍କ ସାହିତ୍ୟରେ ତାଦୃଶ ଦୃଷ୍ଟିକୋଣ ମଧ୍ୟ ପ୍ରତିଫଳିତ । କୋଣାର୍କେ, ଖାରବେଳ, ପ୍ରଣୟିନୀ, ଦାସ ନାଏକ, ଭକ୍ତିଗାଥା ପ୍ରଭୃତି ତାଙ୍କର କାବ୍ୟକବିତା ଗ୍ରନ୍ଥ ଏବଂ 'କୋଣାର୍କେ' କାବ୍ୟର 'ରାମଚଣ୍ଡୀରେ ସନ୍ଧ୍ୟା' ତଥା 'ମାୟାଦେବୀ' କାବ୍ୟାଂଶରେ କବି ପୁଣ୍ୟଶ୍ଳୋକ ଉତ୍କଳ ଭୂମିର ଭାସ୍କର୍ଯ୍ୟ, ସ୍ଥାପତ୍ୟ ଏବଂ ଶିଳ୍ପ-ପରାକାଷ୍ଠା ସହିତ ତା'ର ପ୍ରଜାବତ୍ସଳ ବୀର ନରପତିମାନଙ୍କର ପ୍ରାଣସ୍ପର୍ଶୀ ଉଦ୍‌ବୋଧନ କରିଛନ୍ତି । ଇଂରେଜ କବି ଟେନିସନ୍‌ଙ୍କର କାବ୍ୟ Princes ଏବଂ Enacarden ଅବଲମ୍ବନରେ ତାଙ୍କର 'ପ୍ରଣୟିନୀ' ଏବଂ 'ଦାସନାୟକ' କାବ୍ୟ ଲିଖିତ । ପ୍ରାଚୀନ କଳିଙ୍ଗର ବୀର ମେଘବାହନ ପରାକ୍ରମଶାଳୀ ଦିଗ୍‌ବିଜୟୀ ନରପତି ଖାରବେଳଙ୍କୁ କେନ୍ଦ୍ର କରି ତାଙ୍କର ସୁପାଠ୍ୟ 'ଖାରବେଳ' କାବ୍ୟ ରଚିତ । ନୀଳକଣ୍ଠ ଦାସଙ୍କର 'କୋଣାର୍କେ' କାବ୍ୟ ତାରୁଣ୍ୟ ଭାବୋଚ୍ଛ୍ୱାସର ପ୍ରଭାବରେ ଅନୁପ୍ରାଣିତ ଅନବଦ୍ୟ କୃତି । 'ରାମଚଣ୍ଡୀରେ ସନ୍ଧ୍ୟା' ଏବଂ 'ମାୟାଦେବୀ' ଏପରି ଦୁଇ ଭାଗରେ କାବ୍ୟଟି ବିଭକ୍ତ । କୁମାର ପୂର୍ଣ୍ଣିମୀ ସଂଧ୍ୟା, ସମୁଦ୍ରବେଳା, ବନଯାତ୍ରୀ ତରୁଣ ବିଦ୍ୟାର୍ଥୀଙ୍କ ଚିତ୍ତରେ କିପରି ଅପ୍ରତ୍ୟାଶିତ ଝଡ଼ ପ୍ରାବୃଟର ବିଷାଦ ସ୍ମୃତି ଜାଗରୂକ କରିପାରିଛି, ତାହା ହିଁ 'ରାମଚଣ୍ଡୀରେ ସଂଧ୍ୟା'ରେ ବାତ୍ସଲ୍ୟ ଆବେଗରେ ବର୍ଣ୍ଣିତ । 'ମାୟାଦେବୀ' କାବ୍ୟରେ ମଧ୍ୟ ଓଡ଼ିଶାର ବୀର ଯୁବରାଜ ନରସିଂହ ଦେବଙ୍କର ମିଶ୍ରିତ ପ୍ରଣୟ ବ୍ୟାପାର ବର୍ଣ୍ଣିତ ।

ଦାସକବିର ଅନ୍ତରାଳରେ ଧୂସୀଙ୍କ ହୃଦୟରେ ଖାରବେଳଙ୍କ ପାଇଁ ଯେଉଁ ପବିତ୍ର ପ୍ରେମୋଚ୍ଛ୍ୱାସ କିମ୍ବା ବୀର ନରସିଂହ ଦେବଙ୍କ ଜୀବନରେ ପ୍ରଥମ ପତ୍ନୀ ମାୟାଦେବୀ ଏବଂ ଜମ୍ବୁଦେଶ ଜେମାଙ୍କର ଯେଉଁ ବିମଳ ପ୍ରେମ କବିତା, ତାହା ସତ୍ୟବାଦୀ ଆଦର୍ଶ-ଉଦ୍‌ବୁଦ୍ଧ କବିଙ୍କର ନାରୀଚରିତ୍ର ଅଙ୍କନ କରିବାର ଅପୂର୍ବ କୌଶଳ ।

ନୀଳକଣ୍ଠଙ୍କ ସୃଷ୍ଟି କେବଳ କାବ୍ୟକବିତା ମଧ୍ୟରେ ସୀମାବଦ୍ଧ ନଥିଲା । ତାଙ୍କର ସଂଖ୍ୟାଧିକ ଦାର୍ଶନିକ ପ୍ରବନ୍ଧରେ ଇତିହାସ, ବ୍ୟକ୍ତି, ସଂସ୍କୃତି, ପରିବାରର ପାଣ୍ଡିତ୍ୟପୂର୍ଣ୍ଣ ବିଶ୍ଳେଷଣ ପ୍ରତିଫଳିତ ଏବଂ ଓଡ଼ିଆ ଗଦ୍ୟ-ସାହିତ୍ୟରେ ନିର୍ଦ୍ଦିଷ୍ଟ ଦାର୍ଶନିକ ଆଭିମୁଖ୍ୟ ସୃଷ୍ଟି କରିବାରେ ସେ ଦାୟୀ । ତାଙ୍କର 'ଆର୍ଯ୍ୟ ଜୀବନ' ଉଚ୍ଚାଙ୍ଗ ଗଦ୍ୟଶୈଳୀର ନିଦର୍ଶନ । ଓଡ଼ିଆ ସାହିତ୍ୟର କ୍ରମ ପରିଣାମ, ସଂସ୍କୃତି ଓ ସଂସ୍କୃତି, ଓଡ଼ିଆ ଭାଷା ଓ ସାହିତ୍ୟ ପୁସ୍ତକରେ ଲେଖକଙ୍କ ଲେଖନୀରୁ ଉଚ୍ଚକୋଟିର ସମାଲୋଚନା, ଗବେଷଣାତ୍ମକ ସ୍ୱରୂପ ପରିଲକ୍ଷିତ । ପୁନଶ୍ଚ ତାଙ୍କ ସଂପାଦିତ 'ନବ ଭାରତ' (୧୯୩୪-୧୯୪୭) ମାସିକ ସାହିତ୍ୟ ପତ୍ରିକାର ଦାନ ଓଡ଼ିଆ ସାହିତ୍ୟରେ ଉଲ୍ଲେଖଯୋଗ୍ୟ । ସତ୍ୟବାଦୀଗୋଷ୍ଠୀ ସାହିତ୍ୟିକମାନେ ଯେଉଁ ନୂତନ ଗଦ୍ୟଶୈଳୀ ପ୍ରବର୍ତ୍ତନ କରିଥିଲେ ସେଥିରେ ନୀଳକଣ୍ଠ ଦାସଙ୍କ ସ୍ୱାକ୍ଷର ସୁସ୍ପଷ୍ଟ । ତାଙ୍କର 'ଭକ୍ତ-ଗାଥା' କତିପୟ ଭକ୍ତିଧର୍ମୀ ଗୀତିକବିତାର ସଂକଳନ । ତାଙ୍କର 'ଆତ୍ମଜୀବନୀ' ଓଡ଼ିଶାର ଅର୍ଦ୍ଧଶତାବ୍ଦୀର ସାଂସ୍କୃତିକ ଏବଂ ରାଜନୈତିକ ଘଟଣାବଳୀର ସ୍ମୃତିସଜଳ ଅଧ୍ୟାୟ । ତାଙ୍କର ଅଜସ୍ର ଉଚ୍ଚକୋଟିର ପ୍ରବନ୍ଧ ମଧ୍ୟରେ 'ମୋ କଣ' (୧୯୧୧), 'ପ୍ରତିଭା ପୂଜା ଓ ପ୍ରତିମା ପୂଜା' (୧୯୧୦), 'ନାସ୍ତିର ସତ୍ତାତ୍ତ୍ୱ' ଶୀର୍ଷକ ଆଲୋଚନା ସମାଲୋଚକ ଏବଂ ସଂସ୍କାରକ ନୀଳକଣ୍ଠଙ୍କୁ ଚିହ୍ନିତ କରିଥାଏ । ଓଡ଼ିଶାର ଐତିହ୍ୟ ଏବଂ ଜାତୀୟତା ସମ୍ବନ୍ଧରେ ପଣ୍ଡିତ ନୀଳକଣ୍ଠ ବିଶେଷ ସଚେତନ ଥିଲେ । ସେଥିପାଇଁ କବିବର ରାଧାନାଥଙ୍କ କାବ୍ୟବର୍ଣ୍ଣିତ କେତେକ ତଥ୍ୟ ଏବଂ ବିଷୟ-ବସ୍ତୁର ଭ୍ରମାତ୍ମକ ଐତିହାସିକ ଭିତ୍ତିକୁ ଆକ୍ଷେପ କରିଥିଲେ; ଯଥା—

"ଘର ଗୁଡ଼ି କପିଁ । ଯିବେ ସେ ବୀରବାଳା ନନ୍ଦିକା
ସନ୍ଧିବାର ଦ୍ରୁମ ଗହଳେ ଭେଦି କ୍ଷୀଣ ଚନ୍ଦ୍ରିକା ।"
କିମ୍ବା "କଉଶଲ୍ୟା ଗଙ୍ଗା ଧଉଳି ଏହି ନୟନେ ନାଚେ
କବିଙ୍କି ସୁମରି ବିରାଗେ ମୁଖ ଫେରାଏ ପଛେ ।"

ଗୋଦାବରୀଶ ମିଶ୍ରଙ୍କର ସାହିତ୍ୟସୃଷ୍ଟି ଗୀତିକବିତା, ଗାଥାକବିତା, ଗଳ୍ପ, ଉପନ୍ୟାସ, ନାଟକଦ୍ୱାରା ଚିହ୍ନିତ । ନୀଳକଣ୍ଠଙ୍କ ସଦୃଶ କବି ଓଡ଼ିଶାର ବୀର ଗଜପତି ନରପତି ପୁରୁଷୋତ୍ତମ ମୁକୁନ୍ଦଦେବଙ୍କୁ ନାଟକ ମାଧ୍ୟମରେ ଜାତୀୟ ଆବେଦନର ପ୍ରଭାବରେ ଉପସ୍ଥାପିତ କରିଛନ୍ତି । ଏହି ପର୍ଯ୍ୟାୟରେ ତାଙ୍କର ନାଟକ ପୁରୁଷୋତ୍ତମ ଦେବ ଓ ମୁକୁନ୍ଦଦେବ ଉଲ୍ଲେଖଯୋଗ୍ୟ ।

ଅନ୍ୟ ଦିଗରେ ଏପର୍ଯ୍ୟନ୍ତ ଉପେକ୍ଷିତ ଓଡ଼ିଶାର ଗ୍ରାମ, ଗ୍ରାମ୍ୟସ୍ମୃତି, ନଦୀପର୍ବତ, ଶୈଶବ, ତାରୁଣ୍ୟ, ଗ୍ରାମପଥର ଅନାଥ ବାଳକ, ତାଙ୍କର ଅଜସ୍ର ଗୀତି-କବିତାରେ ଯେପରି ପ୍ରଥମ ଥର ପାଇଁ ରୂପାୟିତ ହେଲେ । କବିର ନିଜର ଜନ୍ମମାଟି ପ୍ରତି କି ପ୍ରକାର ଆକର୍ଷଣ, ତାହା କେବଳ ତାଙ୍କ କବିତାର ପ୍ରତି ପଂକ୍ତିରେ ଝଙ୍କୃତ ।

କବିର ଶୈଶବ ଦାରିଦ୍ର୍ୟ ମଧ୍ୟରେ ଅତିବାହିତ ହୋଇଥିଲା । କବି ସେ ସବୁର ଚିକିନିଖିଆ ସ୍ମୃତି କବିତାଗୁଡ଼ିକରେ ଲିପିବଦ୍ଧ କରିପାରିଥିଲେ । କିଶଳୟ (୧୯୨୭), କଳିକା (୧୯୨୧), ଚୟନ ତାଙ୍କର ଗୀତିକବିତା ସୃଷ୍ଟି ।

ସରଳ ନିରାଡ଼ମ୍ବର ପଲ୍ଲୀ ପରିବେଶରେ ତାଙ୍କର ସରସୀତୀରେ, ପ୍ରୀତିତ୍ୟାଗ, ମାଗୁଣି, ପିକ, ସଂଯୋଗଗୀତରେ ସକାଳେ, ଅନାଥ ଶିଶୁ, ନିମିଷକ ଦେଖା, ନିଦାଘ ସରସୀ ପ୍ରଭୃତି କ୍ଷୁଦ୍ର କବିତାଗୁଡ଼ିକ ଅତ୍ୟନ୍ତ ପ୍ରାଣସ୍ପର୍ଶୀ ।

"କେତେ କେଉଁଠାବେ ନଈ ପୋଖରିର
ଚର ପରିଚିତ ନୀରେ,
ଥୁରୁ ଥୁରୁ ହୋଇ ଅଙ୍ଗ ପଖାଳି, ସେ
ଫେରି ଆସୁଥିବେ ଘରେ ।
ଘରେ ଗଲେ ବୋଉ କୋଳେ ଘେନି, ନୀର
ନୟନୁ ଦେବେଟି ଢାଳି—
'କେତେଦିନ ଅନ୍ତେ ଦୂର ପରବାସ,
ଫେରିଛୁ ମୋ ଧନମାଳି ।'
ଭାଇ ଭଉଣୀଙ୍କ ସଙ୍ଗତେ ନିରତେ
ଖେଳି ବୁଲୁଥିବେ ତହିଁ,
ଦୂର ପରବାସେ ଦିନ-ଦିନକର
ସୁଖ ଦୁଃଖମାନ କହି ।
ଏ ଯେ ଚୂତଅନା ବକୁଳ ନିକୁଞ୍ଜ
ଏ ସଖା-ସୋଦରଗଣ,
ଏଠାବେ ଯେତେ ବା ସରସୀ ପ୍ରାନ୍ତର,
ନଦୀ ବଲ ଉପବନ;
ଏ ଯେତେକ କଥା ସେ ସୁଖ ମେଳାପେ
ହରଷେ ସକଳ କହି,
ଏ ସୁଖ ସମ୍ପଦ ଭଲ ହେଉଥିବେ,
ଦୂର ଦେଶେ ରହି ତହିଁ ।"

( ସରସୀତୀରେ କଳିକା )

ଓଡ଼ିଶାର କିମ୍ବଦନ୍ତୀ, ଇତିହାସ, ଗ୍ରାମ୍ୟ କାହାଣୀ କବିଙ୍କ ଲେଖନୀରେ ଗାଥାରୂପରେ ଆତ୍ମପ୍ରକାଶ କରିପାରିଛି । 'ଆଲେଖିକା' କବିଙ୍କର ଗାଥା ସଂକଳନ । ଗାଥାକବିତାଗୁଡ଼ିକ ହେଉଛି—ପୁରୁଷୋତ୍ତମ, ଅଭିରାମ ସିଂହ, ବିକ୍ରମ ସିଂହ, ନୀଳମାଧବ, ସାକ୍ଷୀଗୋପାଳ, କଳାପାହାଡ଼, ଦୁଃଖିଧନ, ଅର୍ଜୁନ ସିଂହ, କାଳିଜାଇ ।

ଓଡ଼ିଶାର କିମ୍ବଦନ୍ତୀ, ଗ୍ରାମ୍ୟଦର୍ଶନ ନିରାଭରଣ, ସରଳ ପ୍ରାକୃତିକ ଦୃଶ୍ୟ ପର୍ଯ୍ୟାପ୍ତ ଭାବରେ ଚିତ୍ରିତ, ବାତ୍ସଲ୍ୟ ପୃଷ୍ଠଭୂମିରେ ବର୍ଣ୍ଣିତ । ସେହି ଗାଥାକବିତାଗୁଡ଼ିକ ପାଠକଲେ ପାଠକର ପ୍ରାଣ ଗୋଟାଏ ଅବ୍ୟକ୍ତ କରୁଣରସରେ ସିକ୍ତ ହୋଇଉଠେ । ଓଡ଼ିଆ ଗାଉଁଲି ଝିଅ 'ଜାଇ' ଶାଶୁଘରକୁ ଯିବାବସ୍ଥାରେ ତରଙ୍ଗାକୁଳ ଚିଲିକା ଗର୍ଭରେ ସଲିଳ ସମାଧି ଲାଭ କରିଥିଲା । ତାହାର ଅବ୍ୟକ୍ତ ବେଦନା, କରୁଣ କ୍ରନ୍ଦନ ଯେପରି କବିର ଲେଖନୀରେ ମୂର୍ତ୍ତିମନ୍ତ ହୋଇପାରିଛି । ସେହିସବୁ ଗାଥା-କବିତାର ଆବେଦନ, ଆକର୍ଷଣର ଅନ୍ୟତମ କାରଣ ହେଉଛି ମାର୍ମିକ ଭାଷା-ପ୍ରୟୋଗ ।

ତାଙ୍କ ଗୀତିକବିତାଗୁଡ଼ିକରେ ଗ୍ରାମ୍ୟ ଜୀବନର ସରଳତା ଓ କାରୁଣ୍ୟ, ବିଷାଦ, ନୈରାଶ୍ୟ, ମାନବିକତା ଏକତ୍ର ସଂଜୀବିତ । ଇଂରେଜ କବି ଉଇଲିୟମ ଓ୍ୱାର୍ଡ଼ସ ଓ୍ୱାର୍ଥ ପ୍ରକୃତିଭିତ୍ତିକ ଗୀତିକବିତାର ପ୍ରେରଣା ଏବଂ ସ୍ପନ୍ଦନ ଗୋଦାବରୀଶଙ୍କ କବିତାରେ ଯେପରି ଅନୁରଣିତ । ପ୍ରକୃତିର ଗୋଟିଏ ବୃକ୍ଷ ନିକଟରେ କବି ନିଜର ଭାବାବେଗ କିପରି ବ୍ୟକ୍ତ କରିପାରିଛନ୍ତି, ତାହା ଉଦ୍ଧୃତ ପଦ୍ୟରୁ ଜଣାଯାଏ—

"କିପାଇଁ ତାଳୁଛୁ ଏଭଳିରେ ତରୁ
ପଦେ କହୁନାହୁଁ କଥା,
ଯେତେ ମୁଁ ପଚାରେ ଶୁଣୁନାହୁଁ କିଛି
ନାଡ଼ି ବିରକ୍ତିରେ ମଥା ।"

ଇଂରେଜ କବି ଗ୍ରେ, କଲରିଜ୍, ବାଇରନ୍, ବାଉନିଂ, ସେଲି, କିଟ୍ସଙ୍କ କବିତାର ଧାରା ମଧ୍ୟ-ସ୍ତ୍ରଗୀୟ କବିତାକୁ ପ୍ରଭାବିତ କରିଥିବାର ଜଣାଯାଏ; ଅଥଚ ନିଚ୍ଛକ ପ୍ରେମଧର୍ମୀ ନାରୀରୂପପିପାସୁ ଭାବବିହ୍ୱଳ ରୋମାଣ୍ଟିକ କବି ଅପେକ୍ଷା ବିଶେଷ ଭାବରେ ଗ୍ରାମ୍ୟ ପୃଷ୍ଠଭୂମିରେ ପ୍ରକୃତିର ନବ ନବ ସୌନ୍ଦର୍ଯ୍ୟ ପର୍ଯ୍ୟବେକ୍ଷକ ସ୍ରଷ୍ଟା ସତ୍ୟବାଦୀ ଚିନ୍ତାଧାରାରେ ଏତାଦୃଶ ପ୍ରକୃତିପ୍ରାଣତା ହିଁ ଆବେଗ ରସାଣିତ କ୍ଷୁଦ୍ର କ୍ଷୁଦ୍ର ଚିତ୍ରକଳ୍ପ, ପାରିବାରିକ ଏବଂ ସାମାଜିକ ସଂପର୍କ ସାହାଯ୍ୟରେ ସୂଚୀତ । ଯେପରି ତାଙ୍କର ସମଗ୍ର କବିତାର ପ୍ରାଣକେନ୍ଦ୍ର ହେଉଛି ସେହି ଦରଦଭରା, ସଜଳ ସ୍ମୃତି; ଆଉ ସେହି ସ୍ମୃତି ହେଉଛି ଉପେକ୍ଷିତ ପଲ୍ଲୀଜୀବନର, ଅତିକ୍ରାନ୍ତ କୈଶୋରର ଏବଂ ବିଧୁର ଯୌବନର ।

"ସୋଦର ସୋହାଗ ସ୍ମୃତିଟି ତ ସଦା
ଖେଳଇ ପରାଣେ ଏବେ,
ସୋଦର ବିଚ୍ଛେଦେ ଜୀବନ ତାଙ୍କର
ଗଡ଼ାଟି ହୋଇଛି ଭବେ ।"

× × × (ସ୍ମୃତି/କିଶଳୟ)

"ଡାକୁଅଛନ୍ତି କପଁ। ପିଲନ୍ତି, ନେଇ ଦୁର୍ଲ୍ଲଭ ବାର
ଏ ଶୂନ୍ୟ ଭୂତଳ ଧୂଳିକା ଉତ୍ତ ତନୁ ପଖାଳି ।"

ସତ୍ୟବାଦୀ ଚିନ୍ତାଧାରାର ପ୍ରବର୍ତ୍ତକ ଗୋପବନ୍ଧୁ ଏବଂ ଗୋଦାବରୀଶଙ୍କୁ ଓ୍ୱର୍ଡ଼ସ୍‌ଓ୍ୱାର୍ଥଙ୍କ କାବ୍ୟସ୍ପନ୍ଦନ ବିମୋହିତ କରିପାରିଛି : "A presence that disturbs me with the joy of elevated thoughts a sense sublime." ଓ୍ୱାର୍ଡ଼ସ୍ ଓ୍ୱାର୍ଥଙ୍କ ଇଙ୍ଗିତ ଅନୁଯାୟୀ କବିତାର ସଜ୍ଜା "Poetry is spontaneous ulterance" ସତ୍ୟବାଦୀ ଚିନ୍ତାଧାରାର ମନୀଷୀ କବିତାସମୂହରେ ବେଶ୍ ପରିଦୃଷ୍ଟ ।

ସତ୍ୟବାଦୀଗୋଷ୍ଠୀର କବିମାନେ ସେମାନଙ୍କର ଜନ୍ମଭୂମି ଉତ୍କଳର ନଦନଦୀ, ଗ୍ରାମପଥ, ଉଦ୍ୟାନ, କାନନ, ପର୍ବତ, ପୁଷ୍କରିଣୀପୂର୍ଣ୍ଣ ପ୍ରକୃତିକୁ ଭାବବିହ୍ୱଳ ଚିତ୍ରକର ଦୃଷ୍ଟିରେ ଚିତ୍ରଣ କରିଛନ୍ତି । ସେମାନଙ୍କ ଚିତ୍ରଣ କ୍ଳିଷ୍ଟତାଶୂନ୍ୟ ଏବଂ ଗଭୀର ଆବେଦନପୂର୍ଣ୍ଣ । କବି କୀଟ୍‌ସ୍‌ଙ୍କ କବିତାର ସମୀକ୍ଷକ ତାଙ୍କ ସମ୍ପର୍କରେ ଯାହା ଲେଖିଥିଲେ--"His was a sensuous love of natural beauty just for its own sake—the beauty of field and forest, of flower, and sky and sea and in the interpretation of their beauty in the simple and direct passion for nature – no English Poet takes a higher place than Keats." ଏହା ସତ୍ୟବାଦୀଗୋଷ୍ଠୀର କବିଙ୍କ ପକ୍ଷେ ମଧ୍ୟ ପ୍ରଯୁଜ୍ୟ ।

ମାନବଜୀବନ ଏବଂ ପ୍ରକୃତି ମଧ୍ୟରେ ଶୈଶବର ମାଧୁର୍ଯ୍ୟ ଏବଂ ଚପଳତା ସଂଯୋଗ ସେତୁ ସଦୃଶ କାର୍ଯ୍ୟ କରିଅଛି—

"ସେ ଶିଶୁ ସକଳ        ଏ ବକୁଳ ବନେ
ନଥିଲେ ପୁଲକଭରେ,
ଏ ଶୋଭା ସମ୍ପଦ        ସୁଖ-ଶିଖା ଯେତେ
ରହି କି ପାରନ୍ତା ତଳେ ?"        (ସରସୀତୀରେ)

କେତେକ କବିତାରେ ବିଗତ ଦିନର ବହୁ ସ୍ମୃତି ଯେପରି ଅନୁରଣିତ; କେତେକ କବିତାରେ ଜୀବନବେଦନା ଉଦ୍‌ବେଳିତ । କେତେକ କବିତାରେ ଦେଶାତ୍ମବୋଧ ମୂର୍ଚ୍ଛିତ ।

"ଏ ସବୁ ସମ୍ପଦେ ଦେବି ପଷାଣ ଢାଳି
ନଶି ଶୀତେ ହୃଦ ଥରଇ, ଦିବା ତପନେ ଜାଳି ।"

( ସଂଯୋଇତୀରେ ସକାଳେ/କଳିକା )

ପ୍ରାଚୀନ ଓଡ଼ିଆ ସାହିତ୍ୟରେ କତିପୟ 'ଗାଥାକବିତା' ( Ballad ) ପରିଲକ୍ଷିତ ହୁଏ । ସେସବୁର ସଂଖ୍ୟା ସ୍ୱଳ୍ପ ହେଲେ ହେଁ, ତାହାର ଭାବଗତ ଏବଂ ଆଙ୍ଗିକ ଆବେଦନ ଜଣାଧିକେ ଅନୁଭୂତ ହୋଇଥାଏ । ବଉଳାଗାଈ ଗୀତ, ଟୀକାଗୋବିନ୍ଦଚନ୍ଦ୍ରର ମୂର୍ଚ୍ଛନା ଗ୍ରାମ୍ୟ ଜୀବନରେ ଅପୂର୍ବ ଭାବାବେଶ ସୃଷ୍ଟି କରିଥାଏ । ଇଂରେଜୀ 'Ballad' ଶବ୍ଦ ଫରାସୀ 'Baller' ଶବ୍ଦରୁ ସୃଷ୍ଟ ଏବଂ ଏତାଦୃଶ ରଚନା ଉଭୟ ନୃତ୍ୟ ଏବଂ ଗାନକୁ ସ୍ୱୀକାର କରିଥାଏ । ପୁନଶ୍ଚ ଗ୍ରାମ୍ୟ ଜୀବନାଭିମୁଖୀ ତାହାର ଆଉ ଏକ ଆକର୍ଷଣ । ଗୋଦାବରୀଶଙ୍କ ପ୍ରତ୍ୟେକ ଗାଥା-କବିତା ଜନ୍ମଭୂମିର ଅତିକାନ୍ତ ଅତୀତ ବିଭବ କିମ୍ବା ଗ୍ରାମ୍ୟ, ସାମାଜିକ ଜୀବନର ଘଟଣାବଳୀଦ୍ୱାରା ଚର୍ଚ୍ଚିତ । ସେହି ଗାଥାକବିତାଗୁଡ଼ିକର ରଚନାକାଳ ପ୍ରାୟତଃ ଭାରତର ଜାତୀୟ ଆନ୍ଦୋଳନର ସମୟ । ଗୀତିକବିତା ସଦୃଶ ଗାଥାକବିତାଗୁଡ଼ିକ ବ୍ୟକ୍ତିଚେତନା ଓ ସମାଜଚେତନାରେ ପରିପୁଷ୍ଟ । ତେଣୁ 'ଉତ୍କଳ ସାହିତ୍ୟ' ଓ 'ମୁକୁର' ମାସିକ ପତ୍ରିକାରେ 'କାଳିଜାଈ' ଏବଂ 'ପଦ୍ମାବତୀ' ସଦୃଶ ଇତିହାସ ଓ କିମ୍ବଦନ୍ତୀ-ଆଧାରିତ ଗାଥାକବିତା ଯେତେବେଳେ ପ୍ରକାଶିତ ହେଲା, ସେତେ-ବେଳେ ପାଠକମାନଙ୍କ ଦ୍ୱାରା ତାହା ବିଶେଷ ଆଦୃତ ହୋଇଥିଲା । ପ୍ରାଚୀନ ଓଡ଼ିଶାର ପାଇକପୁଅ ଯେପରି ତରବାରି ଧରି ଛନ୍ଦଗଡ଼ ଘାଟୀ ନିକଟରେ ଫିରିଙ୍ଗି ସୈନ୍ୟମାନଙ୍କୁ ବିରୋଧ କରିଛି, କେତେବେଳେ ଦେବତା ମଣିଷର ସାକ୍ଷୀ ହୋଇ ଉତ୍କଳରେ ବିଜେ କରିଛନ୍ତି, ଆଉ କେତେବେଳେ ଗାଁ ଝିଅ ନଈପାରି ଜାଇ ଶାଶୁଘର ଯିବା ସମୟରେ ଆଖିରୁ ଅଶ୍ରୁ ନିଗାଡ଼ିଛି—

"ମହୀମଣ୍ଡଳେ ତ ନଥିବ କେ କାହିଁ
ମୋ ଭଳି ନିରେଖ ଜନ,
ଏ ମହା ସମୁଦ୍ର ମଝିରେ ବାପା ହେ
କେମନ୍ତେ ବଞ୍ଚିବ ଦିନ ।

ଗୋଦାବରୀଶଙ୍କ ଗାଥାକବିତାଗୁଡ଼ିକ କିପରି କୋମଳ ପଦାବଳୀବିଶିଷ୍ଟ ତାହା ନିମ୍ନୋକ୍ତ ପଦଟିରୁ ଦ୍ରଷ୍ଟବ୍ୟ—

"ଧୀର କର ନାଆ ବୁହାରେ ନାଉରି
ଝିଅକୁ ମାଡ଼ୁଛି ଡର,
ଗଡ଼େ ଗଡ଼ଲୋକେ ଗୃହିଁ ବସିଥିବେ
ଝିଅ ଯିବ ଶାଶୁଘର ।"

ଗୋଦାବରୀଶ ଦୁଇଗୋଟି ପ୍ରସିଦ୍ଧ ଇଂରେଜ ଉପନ୍ୟାସ ଅବଲମ୍ବନରେ 'ଘଟାନ୍ତର' ଏବଂ 'ଅର୍ଦ୍ଧାଙ୍ଗିନୀ' ଉପନ୍ୟାସ ରଚନା କରିଥିଲେ । ତାଙ୍କର 'ଅଠରଶ ସତର' (୧୮୧୭) ଉପନ୍ୟାସରେ ଓଡ଼ିଆ ଜାତିର କରୁଣ ଦୁର୍ଦ୍ଦିନ ଏବଂ ବିପର୍ଯ୍ୟୟ

ବର୍ଣ୍ଣିତ । ପାଣ୍ଡୁ ମିଶ୍ରେ, ପାଷାଣର ଭାଷା ସଦୃଶ ତାଙ୍କର କେତେକ କ୍ଷୁଦ୍ର ଗଳ୍ପ ଓଡ଼ିଆ ଜନ-ଜୀବନ ଓ ସଂସ୍କୃତିର ନିଚ୍ଛକ ପ୍ରତିଚ୍ଛବି ବୋଲି କୁହାଯାଇପାରେ । ଉଭୟ ପଣ୍ଡିତ ନୀଳକଣ୍ଠ ଦାସ ଏବଂ ଗୋଦାବରୀଶ ମିଶ୍ର ବହୁଦିନ ଧରି ଜୀବିତ ଥିଲେ ଏବଂ ନିରବଚ୍ଛିନ୍ନ ସାହିତ୍ୟସାଧନା କରିଥିଲେ । ଶିଶୁ ଉପଯୋଗୀ ପାଠ୍ୟ-ପୁସ୍ତକ ଲେଖିବାରେ ମଧ୍ୟ ସେମାନେ ସଫଳତା ହାସଲ କରିଥିଲେ । ପଣ୍ଡିତ ନୀଳକଣ୍ଠଙ୍କର ପିଲାଙ୍କ ରାମାୟଣ, ପିଲାଙ୍କ ମହାଭାରତ ଏବଂ ଗୋଦାବରୀଶଙ୍କ ବହୁ ଗଳ୍ପ କବିତା ଉଲ୍ଲେଖଯୋଗ୍ୟ ।

ଉତ୍କଳର ଇତିହାସ ଏବଂ ସଂସ୍କୃତିର ଗବେଷଣାତ୍ମକ ରୂପ ଉଦ୍‌ଘାଟିତ କରିବାରେ କୃପାସିନ୍ଧୁ ମିଶ୍ରଙ୍କର (୧୮୮୭-୧୯୨୭) ଲେଖନୀ ଅପୂର୍ବ ସଫଳତା ଅର୍ଜ୍ଜନ କରିଥିଲା । ଗବେଷଣା ଏବଂ ବହୁ ପରିଶ୍ରମପ୍ରସୂତ ବାରବାଟୀ (୧୯୧୮), ଉତ୍କଳ ଇତିହାସ (୧୯୨୭), କୋଣାର୍କ (୧୯୨୭) ପ୍ରଭୃତି ପୁସ୍ତକ ବିଗତ ଶତାବ୍ଦୀର 'ପୁରାଣ ଜୀର୍ଣ୍ଣକଙ୍କାଳସାର' ଓଡ଼ିଶାର ରହସ୍ୟ ଉଦ୍‌ଘାଟନ କରିବାରେ ଆମୂଳଚୂଳ ତଥ୍ୟପୂର୍ଣ୍ଣ । ଏହି ପୁସ୍ତକସମୂହର ଆବେଦନ ଐତିହାସିକ ହେଲେହେଁ ତାହାଦ୍ୱାରା ଓଡ଼ିଆ ଗଦ୍ୟସାହିତ୍ୟର ବହୁଳ ପ୍ରଚାର ଓ ପ୍ରୟୋଗ ସମ୍ଭବ ହୋଇଥିଲା । ସତ୍ୟବାଦୀ ଶିକ୍ଷାୟତନଦ୍ୱାରା ଅନୁପ୍ରାଣିତ ଗଦ୍ୟ ଲେଖକମାନଙ୍କ ମଧ୍ୟରେ ପଣ୍ଡିତ ବାସୁଦେବ ମହାପାତ୍ର ଅନ୍ୟତମ । ତାଙ୍କର ପ୍ରବନ୍ଧ ପୁସ୍ତକ 'ଶାନ୍ତିଧାରା' ଏବଂ ସ୍ୱଦେଶ ଗୌରବ 'ବୀର ଭରତ' ପୁସ୍ତକ ମଧ୍ୟ ଗଦ୍ୟ ରଚନା ମଧ୍ୟରେ ଉଲ୍ଲେଖଯୋଗ୍ୟ ।

ସର୍ବୋପରି, ସତ୍ୟବାଦୀ ଜାତୀୟ ବିଦ୍ୟାଳୟ ସହିତ ସଂପୃକ୍ତ ଶିକ୍ଷକମାନଙ୍କର ରାଜନୈତିକ, ସାମାଜିକ ଆଦର୍ଶ ସାହିତ୍ୟରେ ପ୍ରତିଫଳିତ ହୋଇଥିଲା । ସେମାନଙ୍କ ଶିକ୍ଷାଦାନ ଏବଂ ସାହିତ୍ୟସାଧନା ବହୁ ତରୁଣ ଛାତ୍ରଙ୍କୁ ଅନୁପ୍ରାଣିତ କରିଥିଲା; ଯେଉଁମାନେ ପରବର୍ତ୍ତୀ ଯୁଗରେ ସମଗ୍ର ଓଡ଼ିଶାରେ ସ୍ୱାଧୀନତା ବିପ୍ଳବ ଏବଂ ବୌଦ୍ଧିକତାର ଅଲିଭା ସଳିତା ଶିଖାରୂପେ ପ୍ରତିଭାତ ହୋଇଥିଲେ ।

# ଓଡ଼ିଆ ସାହିତ୍ୟରେ ସବୁଜ ଚିନ୍ତା

'ଉତ୍କଳ ସାହିତ୍ୟ' (ଆଷାଢ଼ ୧୩୩୨ ସାଲ) ପତ୍ରିକାରେ 'ସବୁଜ ବନ୍ଧୁ ପ୍ରତି' ଶୀର୍ଷକ ଏକ କବିତା ପ୍ରକାଶିତ ହୋଇଥିଲା :

"ଜୀବନଟା ତ ସଂଗ୍ରାମ ରେ ଭାଇ
କାହିଁକି ଦୁଃଖେ ହତାଶ ହେଉ ଗୃହିଁ ?
ନବୀନ ତୁହି, ତରୁଣ ତୁହି,
ଆଲୋକ ତୋର ସାଥୀ,
ଦୁର୍ଦ୍ଦିନେ ଥରେ ବିଜୟୋଲ୍ଲାସେ
ଉଠିବୁ କି ରେ ମାତି !
ସକଳ ଜୀର୍ଣ୍ଣ ସକଳ ଜରା
କାହିଁକି ଗୃହୁଁ ପଛେ
ଅର୍ଦ୍ଧମୃତ କେବେ କି ନାହିଁ
ସବୁଜ ସୃଷ୍ଟି ରଚେ ।
(ଶ୍ରୀ ବୈକୁଣ୍ଠନାଥ ପଟ୍ଟନାୟକ)

ଓଡ଼ିଆ ସାହିତ୍ୟରେ ସବୁଜ ଚିନ୍ତା, ସବୁଜ ଲେଖକଗୋଷ୍ଠୀର ପରିକଳ୍ପନା କୁଆଡ଼େ ଉପରେ ଉଦ୍ଧୃତ "ସବୁଜ ବନ୍ଧୁ ପ୍ରତି" କବିତାରୁ ଆରମ୍ଭ ହୋଇଥିଲା ବୋଲି ଅନୁମାନ କରାଯାଏ । ୧୯୨୦ ଠାରୁ ୧୯୩୦ ମସିହା ସମଗ୍ର ଭାରତବର୍ଷରେ ସାହିତ୍ୟ, ସଂସ୍କୃତି, ରାଜନୀତି, ଶିକ୍ଷା କ୍ଷେତ୍ରରେ ଅବଶ୍ୟମ୍ଭାବୀ ପରିବର୍ତ୍ତନର ପ୍ଲାବନ ସର୍ବଦା ପ୍ରବାହିତ ହେଉଥିଲା । ଇଂରେଜୀ ଶିକ୍ଷା ପୃଷ୍ଠଭୂମିରେ ଏ ଦେଶର ଶିକ୍ଷିତ ଯୁବସଂପ୍ରଦାୟ ପ୍ରଥମ ବିଶ୍ୱଯୁଦ୍ଧ (୧୯୧୪-୧୮) ପରବର୍ତ୍ତୀ ଐତିହାସିକ ଯୁଗୋଚିତ ଆହ୍ୱାନର ସମ୍ମୁଖୀନ ହେଉଥିଲେ । ସେମାନେ ଓଡ଼ିଶାର ସତ୍ୟବାଦୀଗୋଷ୍ଠୀ ଲେଖକମାନଙ୍କ ଅପେକ୍ଷା ବୟସରେ ତରୁଣ ଏବଂ ଭାବପ୍ରବଣ ଥିଲେ । ସେତେବେଳେ ଏକମାତ୍ର ଉଚ୍ଚଶିକ୍ଷାନୁଷ୍ଠାନ ରେଭେନ୍ସା କଲେଜ ଥିଲା ଯୁବଚେତନାର, ଯୁବସ୍ପନ୍ଦନର ଏକମାତ୍ର ତୀର୍ଥଭୂମି । ତେଣୁ ରେଭେନ୍ସା କଲେଜରେ ଅଧ୍ୟୟନରତ ଏବଂ ଉତ୍ତୀର୍ଣ୍ଣ ତରୁଣ ଛାତ୍ରଗଣ ରାଜ୍ୟରେ ଚିନ୍ତାଚେତନାର ଅଗ୍ରଦୂତରୂପେ ପ୍ରତିଭାତ ହେଉଥିଲେ । କଟକ ରାଣୀହାଟର ପୁରୁଣା ପଶୁଡାକ୍ତରଖାନାରେ ରେଭେନସା କଲେଜର ସହାଧ୍ୟାୟୀ ବନ୍ଧୁ କାଳିନ୍ଦୀଚରଣ ପାଣିଗ୍ରାହୀ (୧୯୦୧), ବୈକୁଣ୍ଠନାଥ ପଟ୍ଟନାୟକ (୧୯୦୪), ଶରତଚନ୍ଦ୍ର ମୁଖାର୍ଜୀ (୧୯୦୨), ଅନ୍ନଦାଶଙ୍କର ରାୟ (୧୯୦୪,, ହରିହର ମହାପାତ୍ର ମିଳିତ ହୋଇ ସାହିତ୍ୟରେ 'ସବୁଜ' କଥାଟି କଳ୍ପନା କରିଥିଲେ ।

*

ସେମାନେ ସେମାନଙ୍କର ସେହି ସମୟରେ ପ୍ରଚଳିତ ପାଠ୍ୟପୁସ୍ତକରୁ ନନ୍‌ସେନସ୍ କ୍ଲବ (Nonsense Club) ନାମଟି ପସନ୍ଦ କରି ସେହି ନାମାନୁଯାୟୀ ଏକ କ୍ଲବ ଗଠନ କରିଥିଲେ । କ୍ଲବର ମୁଖ୍ୟପତ୍ର 'Nonsense Club Magazine' ପରେ 'ଅବକାଶ' ନାମରେ ଅଳ୍ପଦିନ ପାଇଁ ପ୍ରକାଶିତ ହୋଇଥିଲା । 'ଅବକାଶ' ପୁଣି 'ଶକ୍ତି ସାଧନା' ନାମ ଗ୍ରହଣ କରିଥିଲା ଏବଂ ସେହିପରି ନାମକରଣରେ ସେମାନେ ବଙ୍ଗଳାର କବି ରବୀନ୍ଦ୍ରନାଥଙ୍କ ପ୍ରକାଶିତ 'ସାଧନା' ପତ୍ରିକାଦ୍ୱାରା ଅନୁପ୍ରାଣିତ ହୋଇଥିଲେ । ସେସବୁ ଥିଲା ହାତଲେଖା ପତ୍ରିକା । ସେମାନଙ୍କର ପରିକଳ୍ପନାରେ 'ସବୁଜ' ଶବ୍ଦ ଥିଲା ଜୀବନର ସଙ୍କେତ । ବଳିଷ୍ଠ ଏବଂ ଯୁଗୋପଯୋଗୀ ସାହିତ୍ୟ ରଚନା କରିବା ପାଇଁ ସେହି ତରୁଣ ବନ୍ଧୁଗଣ ଶେଷରେ 'ସବୁଜ ସାହିତ୍ୟ ସମିତି' ଗଠନ କରିଥିଲେ । ସାହିତ୍ୟ-କ୍ଷେତ୍ରରେ ବଳିଷ୍ଠ ଏବଂ ଯୁଗୋପଯୋଗୀ ସାହିତ୍ୟର ସଂଜ୍ଞାର ଅର୍ଥ ହେଉଛି ପ୍ରଥମତଃ ପରଂପରା ପ୍ରତି ବିମୁଖତା, ଦ୍ୱିତୀୟତଃ ସାହିତ୍ୟର ଭାବଗତ ଏବଂ ରୂପଗତ ବୈପ୍ଳବିକ ସଂସ୍କାରଲିପ୍‌ସା । କାବ୍ୟ-କବିତାର ପରିଚିତ ଆଙ୍ଗିକ ସେମାନଙ୍କ ଦ୍ୱାରା ଉପେକ୍ଷିତ ହେଲା; ଫଳରେ ସେମାନଙ୍କ ସାମଗ୍ରିକ ଗୀତିକବିତା ସୃଷ୍ଟି ଆଙ୍ଗିକ ଚମତ୍କାରିତା, ସ୍ୱାଦ୍ୟର ସୌନ୍ଦର୍ଯ୍ୟଚେତନା, ବ୍ୟକ୍ତିସ୍ୱାତନ୍ତ୍ର୍ୟ ଏବଂ ସ୍ୱକୀୟ ଅଭିଜ୍ଞତାଦ୍ୱାରା ବିଶେଷ ରହାଣିତ । ସବୁଜଗୋଷ୍ଠୀ କବିଙ୍କ କବିତାସମୂହର ଆବେଦନ ଶକ୍ତି ମନର ଗହନ ପ୍ରଦେଶରେ । ତାହା ଯେପରି ଭାବପ୍ରବଣ, ପ୍ରଗଲ୍‌ଭ ଯୌବନର ଛଳଛଳ ପ୍ରବାହ । ସୁନିର୍ବାଚିତ ଶବ୍ଦ, ଶବ୍ଦର ସାଙ୍କେତିକ ପ୍ରୟୋଗ, ରହସ୍ୟବାଦିତା, ଛନ୍ଦର ନୂତନତା ସବୁଜ-କବିତାର ପ୍ରଧାନ ଆବେଦନ । ଓଡ଼ିଆ ସାହିତ୍ୟର ବିକାଶ ପାଇଁ ଯୁବଶକ୍ତିର ସମ୍ମିଳିତ ଉଦ୍ୟମ ହିଁ ସବୁଜ ସମିତି । ସବୁଜ ସଂସ୍କାର ଦର୍ଶନ, ଆଦର୍ଶ ଅନୁରୂପ 'ସବୁଜ ପକ୍ଷୀ' କବିତା ଏଠାରେ ଉଦ୍ଧାରଯୋଗ୍ୟ ।

"ସବୁଜ ପକ୍ଷୀ ଆସ,
ପତ୍ର ରନ୍ଧ୍ରେ କାନ ଡେରି, ଊର୍ଦ୍ଧ୍ୱେ ଗୃହେଁ ଘାସ ।
ଶୀତ ଗଲା ବନେ ବନେ ପଲ୍ଲବ ଝରାଇ
ଝଡ଼ର ପବନେ ତା'ର ଉତ୍ତରୀ ଉଡ଼ାଇ,
ଦିଗେ ଦିଗେ ସଞ୍ଚରିଲା ଶୁଷ୍କ ତା'ର ଶ୍ୱାସ ।
ସବୁଜ ପକ୍ଷୀ ଆସ,
ଯୌବନର ମନ୍ତ୍ରେ ସଖୀ ଜୀର୍ଣ୍ଣଜରା ନାଶ ।
ସବୁଜ ପକ୍ଷୀ ଆସ,
ପଲ୍ଲବାଇ ତରୁବୀଥି ସଞ୍ଚରାଇ ଘାସ ।"

'ସବୁଜ ସାହିତ୍ୟ ସମିତି'ର ପ୍ରଥମ ମିଳିତ ସଂକଳନ 'ସବୁଜ କବିତା' (୧୯୩୧) ତଦାନୀନ୍ତନ ଓଡ଼ିଆ କବିତା-ରାଜ୍ୟରେ ସ୍ୱାଦ୍ୟ ଏବଂ ସାର୍ଥକ କାବ୍ୟକୃତି-ରୂପେ ସମ୍ବର୍ଦ୍ଧିତ ହୋଇଥିଲା । ଆଙ୍ଗିକ ରୂପଚ୍ଛଟା ଏବଂ ଭାବଗତ ଆବେଦନଦ୍ୱାରା ସଂକଳନର ପ୍ରତ୍ୟେକ କବିତା ଚିହ୍ନିତ ହୋଇଥିଲା । ସେଥିରେ ଅନ୍ନଦାଶଙ୍କରଙ୍କର ପ୍ରଳୟ, ପ୍ରେରଣା, ସୃଜନ ସ୍ୱପ୍ନ, ମାନସୀ ଓ ମୁଁ, ଯଉବନ ଥରେ ଗଲେ, ପଶ୍ଚିମହଲ, ପ୍ରଣୟୀ, କମଳବିଳାସୀର ବିଦାୟ; ହରିହରଙ୍କ ସାଥି ଯାତ୍ରୀ, ଭଗ୍ନବୀଣା, ଆଜି ଗୋ, ମୁଁ, ପାଇଛି, ଫୁଲସଖୀ, ଭରାନଈକୂଳେ; ବୈକୁଣ୍ଠନାଥଙ୍କର ଆରମ୍ଭ ଗୀତି, ଯୌବନପୂଜା, ପ୍ରଭାତ ସ୍ୱପ୍ନ, ନବବର୍ଷା ସଂଗୀତ, ରୂପକଥା, ସମାଧି, ସ୍ମୃତି, ବିରହିଣୀ, ଶେଷଗୀତ; ଶରତ୍‌ଚନ୍ଦ୍ରଙ୍କର ସେ ମଣି ବିନା ଜୀବନ ସିନା ବିଫଳ, ଅଭିସାରିକା, କବିବନ୍ଧୁ ପ୍ରତି, ଉଚ୍ଚାକାଂକ୍ଷା, ଶିବେଇସାନ୍ତର ସଂଗୀତ (୩), ବଳକା; କାଳିନ୍ଦୀଚରଣଙ୍କର ଲୋହିତ ବ୍ୟଥା, ପୁଷ୍ପ ମନ୍ଦିର, ମଧୁ ବିବାହ, ଫଗୁଣ ବଂଶୀ, ପ୍ରଭାତ ଗୀତିର ଗୌରବ, ସନ୍ଧ୍ୟାଲୋକେ, ସାଧନା ଶୀର୍ଷକ କବିତାଚୟ, ଓଡ଼ିଆ କବିତା-ରାଜ୍ୟରେ ନୂତନ ଜୀବନ ଜିଜ୍ଞାସା, ନୂତନ ଇଙ୍ଗିତ ବହନ କରି ପାଠକମାନଙ୍କୁ ଆମୋଦିତ କରିଦେଇଥିଲା । ଯୌବନ, କିଶୋରୀ, ଭ୍ରମର, ଫୁଲ, ସଖୀ, ସୌରଭ, ମଦିରା ପ୍ରଭୃତିର ଅର୍ଥ ଏମାନଙ୍କ କବିତାରେ ନୂତନ ଆକର୍ଷଣ, ରସାସ୍ୱାଦନ ଏବଂ ଚମକ ସୃଷ୍ଟି କଲା । ପୂର୍ବ ପରଂପରାପ୍ରତି ବିମୁଖତା ଏବଂ ନୂତନ ପରଂପରା ଧାରା ସୃଷ୍ଟି କରିବାର ଅଦମ୍ୟ ଅଭିଳାଷ ହିଁ କବିତାରେ ସବୁଜ-କଳ୍ପନାର ଏକମାତ୍ର ହେତୁ । ରାଧାନାଥଙ୍କ ପ୍ରବର୍ତ୍ତିତ କାବ୍ୟଧାରା କିମ୍ବା ସତ୍ୟବାଦୀଗୋଷ୍ଠୀ ଆଚରିତ କାବ୍ୟରୀତି ତରୁଣ କବିପ୍ରତିଭାକୁ ଅଧିକ ଦିନ ବାନ୍ଧି ରଖିପାରି ନ ଥିଲା । ସେଥିପାଇଁ ଯୌବନ-ମନ୍ତ୍ରରେ ମନ୍ତ୍ରିତ ହୋଇ କବିତା-ବିହଗ ଯେପରି ତୁଙ୍ଗ ନୀଳାକାଶରେ ପକ୍ଷ ତୋଳି ଉଡ଼ିବୁଲିଥିଲା । ଯୌବନର ଦୀପ୍ତି, ସ୍ୱପ୍ନର ଉଦ୍ଦାମ ଗୀତି, ସୁନେଲି ସ୍ୱପ୍ନର ଉଦ୍‌ଘାଟନ ଏବଂ ଆକାଶ ଓ ଧରିତ୍ରୀର ମିଳନ ବିଳାସ ସବୁଜ-କବିତାକୁ ପୂର୍ବବର୍ତ୍ତୀ କବିତାସମୂହରୁ ପୃଥକ୍ କରି ତୋଳିଧରିଥିଲା । କବିତାର ରୂପରଙ୍ଗ ବୈଚିତ୍ର୍ୟ ଏବଂ ଭାବସାନ୍ଦ୍ରତା ସବୁଜକବିର କବିତା-ଶିଳ୍ପରେ ଉଲ୍ଲେଖ-ଯୋଗ୍ୟ ଭାବରେ ବିଦ୍ୟମାନ—

"ଏ ଜୀବନ-ବ୍ୟାପୀ ମୁଁ ଗୋ ଗାଇଯିବି
ବେଦନାର ବିକଳ ଅନ୍ଧାରେ,
ଦିବସର ଦୁଃଖରାଶି କହିଯିବି
ବକୁଳର ବ୍ୟଥିତ ସନ୍ଧ୍ୟାରେ ।
ନିଖିଳ ପ୍ରବାହେ ଆଜି ସଂସାରର
ଶତସଂଖ୍ୟ କରମର ସ୍ରୋତେ,

(ଯେବେ) ବ୍ୟର୍ଥତାର ମର୍ମପୀଡ଼ା ଚିରଦିନ
ଶତଧାରେ ଚିରଯାଏ ମୋତେ ।"
(ନୀରବ ଅହ୍ୱାନ—କାଳନ୍ଦୀଚରଣ)

"ଦେଇଛି ପ୍ରିୟା ପ୍ରାଣେ ଅମର ପ୍ରୀତି ଭରି
ମୋ ଶିଶୁ କନ୍ଦନେ ଅମର ମୋର ଆଶା
ପ୍ରଭାତ ସନ୍ଧ୍ୟାରେ ଖେଳାଇ ରୂପ ଢେଉ
ବିକଳ କଣ୍ଠେ ମୋ ଫୁଟାଇଛି ତ ଭାଷା ।
ଗାଇବି ବନ୍ଦି ମୁଁ ଚରଣବନ୍ଦନା
ସେ ଲାଗି ଏ ବୀଣାରେ ଦେଇଛି ମୂର୍ଚ୍ଛନା
ସେ ସୁଖ କରି ହେଳା, ଲଗାଇଲି ମୁଁ ଖେଳା
ମିଳନ ମଧୁଗୀତ, ପାହିଲି ଗୃହୁଁ ଗୃହୁଁ ।
ମିଥ୍ୟା ବିପଣୀରେ ବଣିଜ ମରଣ ଯେ
ନ ଚେତି ତଳେ ଯାହା କଲି ମୋ ମଣି ଭାଉ ।"
(ବୈକୁଣ୍ଠନାଥ ପଟ୍ଟନାୟକ)

"ଗୋପନ କରି କି ହେବ ପ୍ରିୟା
ନୁହେଁ ମୁଁ ଝଡ଼, ନୁହେଁ ମୁଁ ନିଆଁ
ନୁହେଁ ମୁଁ ଶମଶାନ ଗୋ,
ଅନଳ ଆଣେ ଅଦମ ତୃଷା
ସେ ସିନା ମୋର ଛଦମ ଭୂଷା
ମୋ ତୃଷା ଭୂଷା ଆନ ଗୋ ।"
(ଅନ୍ନଦାଶଙ୍କର ରାୟ)

ଉପରୋକ୍ତ ଉଦାହରଣରୁ ସ୍ପଷ୍ଟ ପ୍ରତୀତ ହୁଏ ଯେ, ୧୯୩୦ ମସିହାର ସବୁଜ କବିତା ତାରୁଣ୍ୟର ଉନ୍ମାଦନା, ନିଃସଙ୍ଗ ଅସହାୟତା ସୁଦୂର ଦିଗନ୍ତର ମୋହ, ସାମାଜିକ ପୃଷ୍ଠଭୂମିରେ ବ୍ୟକ୍ତିକୈନ୍ଦ୍ରିକ ବିଷାଦବାଦ ଏବଂ ଆଳଙ୍ଗ୍ୟକୁ ଅତିକ୍ରମ କରିବାର ଏକ ଦୁର୍ଦ୍ଦମ ପ୍ରବୃତ୍ତି, ବିଫଳତାଜନିତ ଅସନ୍ତୋଷଦ୍ୱାରା ଚର୍ଚ୍ଚିତ । କେହି କେହି ସବୁଜ କବିତାସମୂହକୁ ପଳାୟନବାଦୀ ମନୋବୃତ୍ତିର ନିଦର୍ଶନ ବୋଲି ଅଭିଯୋଗ କରିଥାନ୍ତି । ମାତ୍ର ଜୀର୍ଣ୍ଣ-ଶୀର୍ଣ୍ଣ ଧରଣୀରେ କବି ପଳାୟନପନ୍ଥୀ ହେବାକୁ ଯେପରି ବାଧ୍ୟ ହୋଇଛି । ପୁନଶ୍ଚ, ତାର ପଳାୟନ ପ୍ରବୃତ୍ତି ଜଣେ ଦୁର୍ଦ୍ଦମ ରୋମାଣ୍ଟିକ୍ ସ୍ରଷ୍ଟାର ଆଭିମୁଖ୍ୟ ବୋଲି ଯୁକ୍ତି କରାଯାଇଥାଏ । ସବୁଜଗୋଷ୍ଠୀର ତରୁଣ ସ୍ରଷ୍ଟା କବିତାରେ ଯେଉଁ ନୂତନ ଆଙ୍ଗିକ ପ୍ରୟୋଗ କଲେ, ତାହା ମଧ୍ୟ ପରବର୍ତ୍ତୀ ଓଡ଼ିଆ କବିତାକୁ ଗୁଣାତ୍ମକ ଦୃଷ୍ଟିରେ ପ୍ରଭାବିତ କରିଥିଲା ।

'ସବୁଜ କବିତା'ର ସ୍ରଷ୍ଟାଗଣ ପ୍ରାଚୀନ ଓଡ଼ିଆ ସାହିତ୍ୟ ସହିତ ସମସ୍ତ ସଂପର୍କ ଛିନ୍ନ କରିଥିଲେ ଏବଂ ସେମାନଙ୍କ କବିତାରେ ବ୍ୟବହୃତ ମାତ୍ରାବୃତ୍ତ ଛନ୍ଦ ଏବଂ ପ୍ରକାଶଭଙ୍ଗୀ ତାହାକୁ ବଙ୍ଗଳା କବିତାର ନିକଟବର୍ତ୍ତୀ କରି ପାରିଥିଲା । ରୋମାଣ୍ଟିସିଜ୍‌ମ୍‌ 'ସବୁଜ ସମିତି' କର୍ତ୍ତୃକ ପ୍ରକାଶିତ ବିବିଧ ସାହିତ୍ୟ-ଶିଳ୍ପର ଆଭ୍ୟନ୍ତରୀଣ ସ୍ୱର । କବିତା ବ୍ୟତୀତ ଗଳ୍ପ, ଉପନ୍ୟାସ ଏବଂ ମୌଳିକ ଗଦ୍ୟରଚନା କ୍ଷେତ୍ରରେ ମଧ୍ୟ ଏହି ଲେଖକଗୋଷ୍ଠୀର ସ୍ୱାକ୍ଷର ସ୍ପଷ୍ଟ । ସେମାନଙ୍କ ମଧ୍ୟରୁ କାଳିନ୍ଦୀଚରଣ, ବୈକୁଣ୍ଠନାଥ ସେମାନଙ୍କ ଲେଖନୀଚାଳନା ଅବ୍ୟାହତ କରି ରଖିଛନ୍ତି । ଏହି ସାହିତ୍ୟିକବୃନ୍ଦଙ୍କର ମିଳିତ ସାହିତ୍ୟସାଧନାର ନିଦର୍ଶନ ସ୍ୱରୂପ ସବୁଜ ସାହିତ୍ୟ ସମିତିର ପ୍ରତିଷ୍ଠା ହୁଏ ଏବଂ ସମିତିପକ୍ଷରୁ ମୁଖପତ୍ର 'ଯୁଗବୀଣା' ପ୍ରକାଶିତ ହୁଏ । ମୁଖପତ୍ର ଯୁଗବୀଣାର ପ୍ରଥମ ସଂପାଦକୀୟ ଉଦ୍‌ବୋଧନ ତାତ୍ପର୍ଯ୍ୟପୂର୍ଣ୍ଣ ।

ସମିତିର ବିଶିଷ୍ଟ ସାହିତ୍ୟିକ କାଳିନ୍ଦୀଚରଣଙ୍କର ସୃଷ୍ଟି ବିବିଧତା, ବିଚିତ୍ରତା, ଗୁଣାତ୍ମକ ତଥା ପରିମାଣାତ୍ମକ ବୈଶିଷ୍ଟ୍ୟର ଅଧିକାରୀ ହୋଇପାରିଛି । କବିତାଠାରୁ ଆରମ୍ଭ କରି କ୍ଷୁଦ୍ର ଗଳ୍ପ, ଉପନ୍ୟାସ, ନାଟକ, ପ୍ରବନ୍ଧ, ସମାଲୋଚନା ସାହିତ୍ୟର ପ୍ରତ୍ୟେକ ବିଭାଗରେ ତାଙ୍କ ଲେଖନୀର ଅପୂର୍ବ, ଅସାଧାରଣ ସଫଳତା ପ୍ରତିଫଳିତ । (*)

ଗୀତିକବିତାର ନୂତନ ଆଙ୍ଗିକ ଓ ଭାବବିଭବର ଏକନିଷ୍ଠ ସାଧକଭାବରେ କବି କାଳିନ୍ଦୀଚରଣ ଓଡ଼ିଆ ସାହିତ୍ୟର ସମ୍ମାନିତ ଆସନର ଅଧିକାରୀ । ରୂପ-ରସ-ଗନ୍ଧ ଚେତନାରେ ସଂଜୀବିତ ତାଙ୍କର ଶତାଧିକ କବିତା କବିର ଶୈଳୀ, ସ୍ୱକୀୟତା

---

* (୧) ମାଟିର ମଣିଷ—୧୯୩୧ ଉପନ୍ୟାସ । (୨) ମୁକ୍ତାଗଡ଼ର କ୍ଷୁଧା—୧୯୩୨ ଉପନ୍ୟାସ । (୩) ଅମର ଚିତା—୧୯୩୩ ଉପନ୍ୟାସ । (୪) ଲୁହାର ମଣିଷ—୧୯୪୭ ଉପନ୍ୟାସ । (୫) ଆଜିର ମଣିଷ—ଉପନ୍ୟାସ । (୬) ସାଗରିକା—କ୍ଷୁଦ୍ର ଗଳ୍ପ ୧୯୫୪ । (୭) ଦ୍ୱାଦଶୀ—କ୍ଷୁଦ୍ର ଗଳ୍ପ । (୮) ରାଶିଫଳ—କ୍ଷୁଦ୍ରଗଳ୍ପ । (୯) ଶେଷ ରଶ୍ମି—କ୍ଷୁଦ୍ରଗଳ୍ପ । (୧୦) ମୋ କଥାଟି ସରିନାହିଁ—କ୍ଷୁଦ୍ରଗଳ୍ପ । (୧୧) ପ୍ରିୟଦର୍ଶୀ—୧୯୩୩ ନାଟକ । (୧୨) ସୌମ୍ୟା—ଏକାଙ୍କିକା ୧୯୩୨ । (୧୩) ପଦ୍ମିନୀ—ଏକାଙ୍କିକା ୧୯୩୩ । (୧୪) ସୁଦୂର ସଙ୍କେତ—ଅନୁବାଦ । (୧୫) ମନେନାହିଁ—୧୯୪୭ । (୧୬) ମହାଦୀପ—୧୯୪୮ । (୧୭) ଛୁଆଟିଏ ଲୋଡ଼ା—୧୯୫୦ । (୧୮) କ୍ଷଣିକ ସତ୍ୟ—୧୯୪୯ । (୧୯) ମୋ କବିତା । (୨୦) ସାହିତ୍ୟ ସମାଚାର—୧୯୩୭ । (୨୧) ନେତୃତ୍ୱ ଓ ନେତୃତ୍ୱ—୧୯୪୯ । (୨୨) ସାହିତ୍ୟିକା—୧୯୩୩ । (୨୩) ଅଙ୍ଗେ ଯାହା ଲଭିଇଛି—୧୯୭୩ । (୨୪) ସାମୟିକ ସାହିତ୍ୟ ସମୀକ୍ଷା ।

ଓ ଗଭୀର ଦୃଷ୍ଟିକୋଣ ଧାରଣ କରିପାରିଛି । ସେଥିପାଇଁ ତାଙ୍କର ଅଜସ୍ର ଗୀତି-କବିତାର ଅପୂର୍ବ ଐଶ୍ୱର୍ଯ୍ୟ ମୂଳରେ ଅଛି ରୂପରମ୍ୟତା, ନନ୍ଦନଧର୍ମିତା ଓ ରସରମ୍ୟତା । କବିର ପ୍ରାଣୋଚ୍ଛଳ ରୋମାଣ୍ଟିକ୍ କାବ୍ୟ ଜୀବନର ପ୍ରତ୍ୟକ୍ଷାନୁଭୂତି ସହିତ ଧୂଳିଧୂସରିତ ଦୁଃଖଦାରିଦ୍ର୍ୟ-ପ୍ରପୀଡ଼ିତ ବାସ୍ତବ ସର୍ବହରା ଦୁନିଆଁର ବିପର୍ଯ୍ୟୟ କାରୁଣ୍ୟ । ଆତ୍ମାର ଅନୁସନ୍ଧାନ, ରୂପର ଗୌରବ, ସୌନ୍ଦର୍ଯ୍ୟ-ଚେତନା, କାହିଁ କେଉଁ ଦିଗଦିଗନ୍ତର ପଲ୍ଲୀକୋଳର ଶିମୁଳିପାଳ ସଦୃଶ ସ୍ଫୁଟିତ ବହୁ ବର୍ଣ୍ଣ ବହୁ ରୂପରେ ନବଜୀବନ ପ୍ରାପ୍ତ ହୋଇଅଛି ! ପୁନଶ୍ଚ ବିଶ୍ୱଜୀବନର ଆହ୍ୱାନ, ଏକ ଅନାଗତ ଭବିଷ୍ୟତ ଇଙ୍ଗିତ ତାଙ୍କର କବିତାକୁ କେତେବେଳେ ମରୁଯାତ୍ରାର ନୈରାଶ୍ୟରେ ଏବଂ କେତେବେଳେ ସଫଳତାର ଅଭିମାନରେ ରସୋତ୍ତୀର୍ଣ୍ଣ ବେଦନାତୁର କରି-ପାରିଛି । ସଂକ୍ଷେପରେ କହିବାକୁ ଗଲେ ତାଙ୍କର କବିତା ବ୍ୟକ୍ତି ଓ ସମାଜ ଜୀବନର ଏକ ସ୍ୱଚ୍ଛ ଦର୍ପଣ । ସବୁଜ ଜୀବନର ସୁନେଲି ସ୍ୱପ୍ନରେ ଯେଉଁ କବି ଆତ୍ମହରା, ସେହି କବି ପୁଣି ଆଗାମୀ ଦୁନିଆର ଚିତ୍ର ଅଙ୍କନ କରିବାରେ ବ୍ୟସ୍ତ । ଏହି ପ୍ରସଙ୍ଗରେ ତାଙ୍କର କେତୋଟି ମନୋଜ୍ଞ କବିତାଂଶର ଉଦ୍ଧୃତି ଦିଆଯାଇପାରେ—

"ଜୀବନେ ଯେତେ କରିଛି ଜାଣି ପାପ,
ତା' ପାଇଁ ନାହିଁ ବେଦନା ଅନୁତାପ ।
ପୀରତିଠାରୁ ଅଧିକ ପ୍ରିୟ
ଲାଜରୁ ବଳି ସେ ଗୋପନୀୟ
ଦୁଃଖରୁ ବେଶି କୋମଳତର
ସ୍ମୃତିରୁ ଲୋଭନୀୟ,
ପୀରତିଠାରୁ ଅଧିକ ସେ ଯେ ପ୍ରିୟ ।"

(ପାପ)

"ଖୁସି ହୁଏ ଦେଖି ଏ ଜଗତ
ଆକାଶ ସାଗର ଗିରି ଭୂଇଁ,
ସକଳର କେନ୍ଦ୍ର ରୂପେ କିନ୍ତୁ,
ଏ ଦେହକୁ ଭଲପାଏ ମୁହିଁ ।
ଏ ଦେହକୁ ଭଲପାଏ ମୁହିଁ
ଭଲ ତାର ପ୍ରତି ଅବୟବ
ସବୁ ମାୟା ଅଚିର ଭିତରେ
ସତ୍ୟ ସେ ଯେ କେବଳ ସମ୍ଭବ ।"

(ଏ ଦେହକୁ ଭଲପାଏ ମୁହିଁ)

ପୁନଶ୍ଚ ସର୍ବହରା ସମାଜର କରୁଣ ଆର୍ତ୍ତନାଦ ଆଗାମୀ ସମାଜର ସଗ୍ରାମୀ ସ୍ୱର ତାଙ୍କ କବିତାରେ ପ୍ରତିଧ୍ୱନିତ; ଯଥା –

"କବିତା ଗଢ଼େ ଏକ ବର୍ଗହୀନ ସମାଜର,
ସବୁରି ପାଇଁ ଯହିଁ ବିଶ୍ୱରେ ହେଲେ ଘର ।
ସକଳେ ଲଭିବାକୁ ମୁଠାଏ ଦୁଧଭାତ,
ଯୋଗ୍ୟ ଯେତେ ଯହିଁ ବାଳକ ବାଳିକା ତ
ଦୁଇଟା ଲୁଗା ଜାମା ସବୁରି ପାଇଁ ମିଳେ
ପଢ଼ିବା ପାଇଁ ବାଧା କାହାରି ନାହିଁ ତଳେ ।
ବେକାର ରହିବାକୁ ନାହିଁ କି ଅଧିକାର
ସବୁରି ପାଇଁ କାମ ଯୋଗାଏ ସରକାର ।
କହିବା ପାଇଁ କଥା ସବୁରି ଦାବି ଅଛି
ମୁଁ ସେହି ସମାଜର କବିତା ବସେଁ ରଚି ।

× ×

ଗରିବ ଯେ ସମାଜେ ଜାଣଇ ନାହିଁ ଖ୍ୟାତ
ଧନିକ ନ କରଇ ଧନରେ ଡକାଯିତି ।
ଧନର ବନିମୟେ ନ ହୁଏ କିଣା ସବୁ,
କେବଳ ପଶୁ ଯହିଁ ବୋଲାଏ ନାହିଁ ପ୍ରଭୁ ।
କେବଳ ମୂର୍ଖର ଶକତ ନାହିଁ ଭୁଜେ,
ଆଗାମୀ ସମାଜର କବିତା ରଚେଁ ମୁଁ ଯେ ।" (ଆଗାମୀ)

ସବୁଜଗୋଷ୍ଠୀର କେବଳ ଦୁଇଜଣଙ୍କ ଲେଖନୀରେ ସାମ୍ୟବାଦ ତଥା ସଗ୍ରାମୀ ଜୀବନର ନିଚ୍ଛକ ଚିତ୍ର ପ୍ରାଣସ୍ପର୍ଶୀଭାବରେ ପରବର୍ତ୍ତୀ କାଳରେ ପ୍ରକାଶ ପାଇଛି । ସେମାନେ ଯଥାକ୍ରମେ ହେଲେ ଶ୍ରୀଯୁକ୍ତ ପାଣିଗ୍ରାହୀ ଓ ଶ୍ରୀଯୁକ୍ତ ବୈକୁଣ୍ଠନାଥ । ଶ୍ରୀଯୁକ୍ତ ପାଣିଗ୍ରାହୀଙ୍କର ଲେଖନୀ-ଗତିର ଏହି ଯେଉଁ ଉତ୍ତରଣ, ତାହା ତାଙ୍କର କବିପ୍ରତିଭାକୁ ଅଧିକ ମହିମାନ୍ୱିତ କରି ତୋଳିଛି । ସାମାଜିକ ପୃଷ୍ଠଭୂମିରେ ସମାଜ-ସଚେତନାକୁ ଯଦି ସାହିତ୍ୟର ପ୍ରାଣ-ସ୍ପନ୍ଦନ ବୋଲି କୁହାଯାଏ, ତେବେ ଶ୍ରୀଯୁକ୍ତ ପାଣିଗ୍ରାହୀ ତାଙ୍କ ଲେଖନୀ ମାଧ୍ୟମରେ ଏବର ଜୀବନକୁ ମୂର୍ତ୍ତିମନ୍ତ କରି ତାଙ୍କର କୃତିକୁ ମହିମାମଣ୍ଡିତ କରାଇଛନ୍ତି ବୋଲି କହିବାକୁ ହେବ । ତାଙ୍କ ଲେଖନୀର ଏହି ବୈଚିତ୍ର୍ୟପୂର୍ଣ୍ଣ ଗତି, ତାଙ୍କ କବି-ପ୍ରତିଭାର ବହୁମୁଖୀନତାକୁ ସୁସ୍ପଷ୍ଟ କରିଦେଇଛି । ଜୀବନର ବିଭିନ୍ନ ସ୍ତରରେ ଅନୁଭୂତ ଓ ଅଭିଜ୍ଞତାକୁ ଉପଜୀବ୍ୟ କରି ସେ ଯେଉଁ ସାହିତ୍ୟ ସୃଷ୍ଟି କରିଯାଇଛନ୍ତି, ତାହା ତାଙ୍କର ବହୁମୁଖୀ ପ୍ରତିଭାର ଜ୍ୱଳନ୍ତ ପ୍ରମାଣ ପ୍ରଦାନ କରେ ।

କବି ବୈକୁଣ୍ଠନାଥଙ୍କ ✳ ସୃଷ୍ଟି-ସମ୍ପଦ ନିର୍ଦ୍ଦିଷ୍ଟ ଜୀବନଦର୍ଶନ ଯୋଗୁଁ ବେଶ୍ ପରିଚିତ । ସବୁଜ କବିତାର ରୋମାଣ୍ଟିକ୍ ଭାବ ସହିତ ତାଙ୍କ ଗୀତିକବିତାର ଆଉ ଏକ ବିଶିଷ୍ଟ ଗୁଣ ପରିଲକ୍ଷିତ ହୋଇଥାଏ । ତାହା ହେଉଛି ଅତୀନ୍ଦ୍ରିୟ ଚେତନା ଏବଂ ରହସ୍ୟାନୁଭୂତି । ଜୀବନର ଦୁଃଖ, ଦୈନ୍ୟ, ଦାରିଦ୍ର୍ୟ ଏବଂ ସାମାଜିକ ଅନ୍ୟାୟ ଅତ୍ୟାଚାରରେ କବି ଯେତିକି ବ୍ୟଥିତ ହୋଇଛନ୍ତି, ସେହି ପରିମାଣରେ ଆଧ୍ୟାତ୍ମିକ ଜଗତର ଦୁର୍ବୋଧ ଦର୍ଶନରେ ସେ ବିହ୍ୱଳ ହୋଇ-ପଡ଼ିଛନ୍ତି—

"ବସନ୍ତର ଚଂପାସମ
ତରୁଣୀ ଯେବେ ଫୁଟିଲି
ସୌରଭର ସୁଧା ତାହାର
ଦିଗ ବିଦିଗ ଛୁଟିଲି"ର ବିଦଗ୍ଧ କବି ହୋଇପାରିଛନ୍ତି

ଅତୀନ୍ଦ୍ରିୟ ରାଜ୍ୟର ବିଚରଣକାରୀ ରହସ୍ୟବାଦୀ ଦାର୍ଶନିକ କବି । ଅତୀନ୍ଦ୍ରିୟ ଅନୁଭବରୁ ହିଁ ରହସ୍ୟବାଦର ସୃଷ୍ଟି । ଦାର୍ଶନିକ କବିମାନେ ଇନ୍ଦ୍ରିୟାତୀତ ବଚନାତୀତ ବିଶ୍ୱସ୍ରଷ୍ଟାଙ୍କ ଶୂନ୍ୟ ସତ୍ତା ଉଦ୍ଦେଶ୍ୟରେ ମସ୍ତକ ଅବନତ କରି ଭକ୍ତିପୂତ ଅସହାୟତାରେ ଗାଇଉଠନ୍ତି—

"Oh, world invisible, /view thee
Oh, world intangible, /clutch thee"
(F. Thompson)

ସେଥିପାଇଁ ବୈକୁଣ୍ଠନାଥଙ୍କର ଅଧିକାଂଶ କବିତା ମାନସହଂସ ପକ୍ଷ-ସଂଚରଣରେ ଝଙ୍କୃତ, କିମ୍ବା ପରମପୁରୁଷଙ୍କର ଭକ୍ତିପୂତ ଆବାହନରେ କବି ଭାବବିହ୍ୱଳ ହୋଇପଡ଼ିଛନ୍ତି । ଯେଉଁ କାବ୍ୟପୁରୁଷ ମାର୍କସ୍‌ବାଦର ବିଶ୍ଳେଷଣଦ୍ୱାରା ଆକୃଷ୍ଟ ହୋଇଥିଲି, ସେହି ପୁରୁଷ ପୁଣି ଆତ୍ମସମର୍ପଣ କରି ଲେଖିଲି—

"ଜୀବନପାତ୍ର ମୋ, ଭରିଛ କେତେମତେ
ନଦେଲ ବୋଲି କିଛି କହିବି କି ହେ ଆଉ
ତରଣୀ ମୋର ତବ ସାଙ୍ଗରେ ବହିଯାଉ ।"

ବୈକୁ ନାଥଙ୍କର ୧୯୪୦ ପରବର୍ତ୍ତୀ ଅଧିକାଂଶ କବିତା ଏହି ଅତୀନ୍ଦ୍ରିୟତା, ଅଲୌକିକତା ପରିକଳ୍ପିତ ବୃନ୍ଦାବନ ଚନ୍ଦ୍ରାଦ୍ୱାରା ଏକରକମ ଭାବସମୃଦ୍ଧ । ତାଙ୍କର 'ଯାତ୍ରା-ସଙ୍ଗୀତ', 'ମୃତ୍ତିକା ଦର୍ଶନେ' ପ୍ରଭୃତି ଦୀର୍ଘ କବିତା ଜୀବନ ଓ ମୃତ୍ୟୁର ରହସ୍ୟ ଉଦ୍‌ଘାଟନ କରିବାରେ ନିୟୋଜିତ ଏବଂ ତାଙ୍କର

✳ (୧) ମୁକ୍ତିପଥେ—ନାଟକ, ୧୯୩୩ । (୨) କାବ୍ୟ ସଂଚୟନ । (୩) ଉତ୍ତରାୟଣ —୧୯୫୪ ।

ସୃଷ୍ଟି ସଂପଦ ଗୀତିକବିତାରେ ମଧ୍ୟଯୁଗୀୟ ଓଡ଼ିଆ କାବ୍ୟ-କବିତାର ଭକ୍ତିପ୍ରାଣତା, ଆଧ୍ୟାତ୍ମିକତା, ଚେତନା ପୁନଃ ପ୍ରତିଷ୍ଠିତ ହୋଇପାରିଛି । କବିତାର ଆଙ୍ଗିକ ବିଗ୍ରହରେ ଶବ୍ଦଶିଳ୍ପ, ଛନ୍ଦପାଟବ ତାଙ୍କ କବିତାର ଧର୍ମ । ମାନବାତ୍ମା ଉଦ୍ୟମରେ ମାନସ-ସରୋବରବିହାରୀ ମରାଳ କବିଙ୍କ ଦୃଷ୍ଟିରେ ଧରଣୀରେ ପଥଭ୍ରଷ୍ଟ ତଥା ଯୋଗସୂତ୍ରଚ୍ଛିନ୍ନକାରୀ କରୁଣ ସତ୍ତାରୂପେ ବିକଳ ଏବଂ ବିଧୃତ । ଏହାହିଁ କବି ତାଙ୍କର କାବ୍ୟବାଣୀରେ ଲିପିବଦ୍ଧ କରିପାରିଛନ୍ତି ।

୧୯୩୦ ପରବର୍ତ୍ତୀ ଯୁଗର ଓଡ଼ିଆ ସାହିତ୍ୟର ବିଭିନ୍ନ ଧାରା ଆଲୋଚନା-କ୍ରମରେ ସବୁଜ ସାହିତ୍ୟ ସମିତି ପ୍ରଯୋଜିତ ସୃଷ୍ଟି-ସଂପଦ ହିଁ ଅନୁଶୀଳନ ଅନ୍ତର୍ଭୁକ୍ତ ହୋଇଥାଏ ।

ସମସାମୟିକ କାଳରେ ଯେଉଁ କେତେ ଜଣ ସ୍ରଷ୍ଟା ଓଡ଼ିଆ କାବ୍ୟ-କବିତା ବିଭାଗକୁ ପରିପୁଷ୍ଟ ଏବଂ ପରିବର୍ଦ୍ଧିତ କରିଥିଲେ ଏବଂ ତା'ର ଆଧୁନିକ ଗୁଣ ପ୍ରବର୍ତ୍ତିତ ହେବାରେ ସାହାଯ୍ୟ କରିଥିଲେ, ସେମାନଙ୍କ ମଧ୍ୟରେ ପଦ୍ମଚରଣ ପଟ୍ଟନାୟକ (୧୮୮୭-୧୯୫୩), କୁନ୍ତଳାକୁମାରୀ ସାବତ (୧୯୦୦-୧୯୩୯), ମାୟାଧର ମାନସିଂହ (୧୯୦୬-୧୯୭୩), ଗୋଦାବରୀଶ ମହାପାତ୍ର (୧୮୯୮-୧୯୬୫), ରାଧାମୋହନ ଗଡ଼ନାୟକ (୧୯୧୧), କୃଷ୍ଣଚନ୍ଦ୍ର ପାଢ଼ୀ, ଡକ୍ଟର କୁଞ୍ଜବିହାରୀ ଦାସ ପ୍ରମୁଖଙ୍କ ଦାନ ଉଲ୍ଲେଖଯୋଗ୍ୟ । ଏମାନଙ୍କ ମଧ୍ୟରୁ ଗୋଦାବରୀଶ, ମାନସିଂହ ଏବଂ ଅନ୍ୟମାନଙ୍କ କାବ୍ୟ-କବିତା ୧୯୩୦ ମସିହାରୁ ଆରମ୍ଭ ହୋଇ ୧୯୬୦ ମଧ୍ୟ-ପରବର୍ତ୍ତୀ କାଳକୁ ସଂପ୍ରସାରିତ ହୋଇପାରିଛି ।

ପଦ୍ମଚରଣ ତାଙ୍କର ଗୀତିକବିତାରେ ରାଧାନାଥୀ କାବ୍ୟଶିଳ୍ପ, ଐତିହାସିକ ଆବେଦନ ଏବଂ ଗଭୀର ମନୁଷ୍ୟତା ରକ୍ଷା କରିପାରିଥିଲେ । ସତ୍ୟବାଦୀ ଲେଖକ-ଗୋଷ୍ଠୀର ଐତିହାସିକ ସଂପ୍ରୀତି ଯେପରି ପଦ୍ମଚରଣଙ୍କ ଧଉଳିପାହାଡ଼, ପୃଥ୍ୱୀରାଜଙ୍କ ପତ୍ର, ଖୋର୍ଦ୍ଧାପାଇକ ସଦୃଶ ଜାତୀୟ ଆବେଦନପୂର୍ଣ୍ଣ କବିତାରେ ପୁନଃ ସଙ୍ଗୃହୀତ ହୋଇପାରିଥିଲା । ପଦ୍ମପାଖୁଡ଼ା, ଆଶା ମଞ୍ଜରୀ, ସୂର୍ଯ୍ୟମୁଖୀ, ସ୍ୱର୍ଣ୍ଣରେଣୁ ପ୍ରଭୃତି ତାଙ୍କର ଉଜ୍ଜ୍ୱଳ ସୃଷ୍ଟି । ଗୀତିକବିତାର ସଫଳତା ବ୍ୟତୀତ ପ୍ରବନ୍ଧ ଓ ଜୀବନୀ ଲେଖକ ଭାବରେ ମଧ୍ୟ ତାଙ୍କର କୃତିତ୍ୱ କମ୍ ନୁହେଁ ।

କୁନ୍ତଳାକୁମାରୀ ସାବତ (୧୯୦୦-୧୯୩୮) ଶତାବ୍ଦୀର ପ୍ରଥମ ଭାଗର ଜଣେ ସିଦ୍ଧହସ୍ତା ନାରୀକବି ଭାବରେ ନିଜକୁ ପ୍ରତିଷ୍ଠିତ କରିପାରିଥିଲେ । ଭାବ ଏବଂ ରୂପଗତ ବୈଚିତ୍ର୍ୟ ତାଙ୍କର ସଂଖ୍ୟାଧିକ ଗୀତିକବିତାର ମୁଖ୍ୟ ଆବେଦନ । ସ୍ୱଦେଶ-ପ୍ରେମ, ଆଧ୍ୟାତ୍ମିକତା ଏବଂ ମାନବିକତାର ସ୍ୱର ତାଙ୍କର ସୃଷ୍ଟି-ସଂପଦକୁ ସୌନ୍ଦର୍ଯ୍ୟ-ଚେତନା ଏବଂ ରସପିପାସାରେ ସମନ୍ୱିତ କରିପାରିଛି । ଅଞ୍ଜଳି (୧୯ ୮), ଅର୍ଚ୍ଚନା (୧୯୨୭), ଉଚ୍ଛ୍ୱାସ, ଆହ୍ୱାନ, ସ୍ଫୁଲିଙ୍ଗ ପ୍ରଭୃତି ଗୀତିକବିତାର ସଙ୍କଳନ ପ୍ରେମ,

ଭକ୍ତିପୂତ ଜୀବନର ମହିମା ସାର୍ଥକତା, ସରସତା ଏବଂ ମାନବିକ କର୍ତ୍ତବ୍ୟ ନିର୍ଦ୍ଦେଶିତ କରିପାରନ୍ତି । ଆବେଗପ୍ରବଣତା, ଭାବପ୍ରବଣତା ତଥା ପ୍ରକୃତିପ୍ରାଣତା, ସର୍ବୋପରି ବ୍ୟକ୍ତି-ଜୀବନର ଆଧ୍ୟାତ୍ମିକ ଭିତ୍ତିଭୂମି ହିଁ ତାଙ୍କ ଗୀତିକବିତାର ଆଭିମୁଖ୍ୟ । କବି ମଣିଷକୁ ଅମୃତ ସନ୍ତାନ ମଧ୍ୟରେ ପ୍ରଦର୍ଶିତ କରିପାରିଛନ୍ତି । ସେଥିପାଇଁ ତାଙ୍କ ଲେଖନୀରୁ ନିସୃତ ହୋଇଥିଲା —

"ଅମୃତ ସନ୍ତାନ ମୁହିଁ ସୁଧା ଅଭିଳାଷୀ,
ଅନନ୍ତ ତିମିର ତଳେ ଦୀପ୍ତ ଦୀପଧାରୀ ।"

ପ୍ରେମଚିନ୍ତାମଣି (୧୯୩୦) କାବ୍ୟରେ ରାଧାକୃଷ୍ଣଙ୍କର ରାଗାନୁରାଗ ଭିତ୍ତି-ଭୂମିରେ ମାନବିକ ପ୍ରେମ ଓ ପ୍ରଣୟର ରସାପ୍ଲୁତ ଆଲେଖ୍ୟ ଦେଖିବାକୁ ମିଳେ । କବିତା ବ୍ୟତୀତ କଥାଶିଳ୍ପ କ୍ଷେତ୍ରରେ କୁନ୍ତଳାକୁମାରୀଙ୍କର ସିଦ୍ଧି ମଧ୍ୟ ପରିଦୃଷ୍ଟ । ରଘୁଅରକ୍ଷିତ, କାଳିବୋହୂ, ଭ୍ରାନ୍ତି ପ୍ରଭୃତି ତାଙ୍କର ଉପନ୍ୟାସ ଓଡ଼ିଆ ସମାଜର ପାରିବାରିକ ଚିତ୍ର ଏବଂ ପ୍ରବାସୀ ଓଡ଼ିଆର ଚିତ୍ର ପ୍ରଦର୍ଶିତ ।

ଆଧୁନିକ ଓଡ଼ିଆ କାବ୍ୟକବିତା କ୍ଷେତ୍ରରେ ମାୟାଧର ମାନସିଂହ (୧୯୦୫-୧୯୭୩) ଏକ ଉଜ୍ଜ୍ୱଳ ପ୍ରତିଭା । ପ୍ରଥମ ଯୌବନରେ କବି 'ପ୍ରେମ ଓ ପ୍ରଣୟ'ର ସମ୍ବର୍ଦ୍ଧନା କରି ଯେଉଁ କାବ୍ୟଶିଖା ପ୍ରଜ୍ଜ୍ୱଳିତ କରିଥିଲେ, ତାହାର 'ଧୂପ' ହିଁ ପ୍ରାଚୀନ କାବ୍ୟ-ଅଭ୍ୟସ୍ତ ଓଡ଼ିଆ ପାଠକମାନଙ୍କୁ ନୂତନ ଆବେଗ ଓ ସୌନ୍ଦର୍ଯ୍ୟରେ ଆମୋଦିତ କରିଦେଇଥିଲା । ଫଳରେ 'ତରୁଣ କବିର ଆଶା'ରେ ଝଙ୍କୃତ ହୋଇଛି—

"ଅମର ଚନ୍ଦ୍ରିମା ଯାମିନୀ ତଳେ
ସେ ରାଧା କୋମଳ ଜଘନ ପରେ
ଜୀବନମରଣ ଯାଆନ୍ତି ଭୁଲି
ସପନ ପରି ।"

× × ×

କିମ୍ବା—"ପାଶରେ ଥାଆନ୍ତା ରସ କବିତା,
ଚିର ଯଉବନ ପ୍ରଣୟ ଗୀତା
ପ୍ରେୟସୀ ଗାଆନ୍ତା ସୁମନ୍ଦ ମୁଖେ
ପୂରନ୍ତା ବୁକ ।"

କିନ୍ତୁ "ଏହି ସହକାର ତଳେ, ସେ ଦିନ ପ୍ରିୟାର କରକଙ୍କଣ ଭିଡ଼ିଥିଲା ମୋର ଗଳେ" କବିତାର କବି ପରବର୍ତ୍ତୀ କାଳରେ ଶିକ୍ଷା, ସଂସ୍କୃତି ଓ ଓଡ଼ିଆ ଜାତୀୟତା କ୍ଷେତ୍ରରେ କାବ୍ୟକବିତା, ନାଟକ ମାଧ୍ୟମରେ ବୌଦ୍ଧିକ ସଂଗ୍ରାମୀ ଭାବରେ ପ୍ରତିଭାତ ହୋଇଥିଲେ । ଧୂପ, ହେମପୁଷ୍ପ, ହେମଶସ୍ୟ, ମାଟିବାଣୀ,

ଅକ୍ଷତ, କ୍ରୁଶ, ସ୍ୱରାଜ୍ୟ ଆଶ୍ରମ, ସେ ଦିନର କବିତା (୧୯୭୦) ସଂକଳନ ଓଡ଼ିଆ ମନ୍ମୟ ଗୀତିକବିତାର ରୂପସ୍ୱାତନ୍ତ୍ର୍ୟ ବ୍ୟାପ୍ତି ଓ ସୌନ୍ଦର୍ଯ୍ୟ ପ୍ରତିଷ୍ଠା କରିଥିଲା । ତାଙ୍କର କାବ୍ୟ କମଳାୟନ, ଜେମା, ସାଧବଝିଅ ଓ ଶୁଭଦୃଷ୍ଟିରେ ଓଡ଼ିଆ ପାରଂପରିକ ଗ୍ରାମ୍ୟ ଜୀବନର ଚିତ୍ର ପ୍ରଦର୍ଶିତ । ଜଣେ ଜାତୀୟତାବାଦୀ କବି କରୁଣା, ଅନୁକଂପା ଆଦର୍ଶରେ ବୌଦ୍ଧଧର୍ମବାଣୀ ପ୍ରତି ଆକୃଷ୍ଟ ହୋଇଥିଲେ । ବୁଦ୍ଧ, ନଷ୍ଟନୀଡ଼, ବାରବାଟୀ, ଦୁର୍ଭିକ୍ଷ ଓ ପୁଷ୍ପିତା, ପୂଜାରିଣୀ ଯଥାକ୍ରମେ ନାଟକ ଓ କାବ୍ୟ-ନାଟିକାରେ କବି ଜୀବନ, ପ୍ରକୃତି ଏବଂ ମାନବିକତାର ସ୍ୱପ୍ନ ଦେଖିଛନ୍ତି । ଉଚ୍ଛୃଙ୍ଖଳ ଯୌବନ ଆଉ ପ୍ରେମ ଓ ପ୍ରଣୟର ସାଧକ ଏବଂ ଉପାସକରୂପେ ଯେଉଁ କବିଙ୍କର ଆବିର୍ଭାବ ହୋଇଥିଲା, ମାନବାତ୍ମାର ଅଶ୍ରୁବର୍ଷଣ ଦୃଶ୍ୟରେ ସେ ଯେପରି ତ୍ରସ୍ତ ଏବଂ କାତର ହୋଇଯାଇଥିଲେ । ତେଣୁ ସେ ବୌଦ୍ଧଧର୍ମର ମହାନ୍ ବାଣୀ 'ଅନୁକଂପା' ଆଦର୍ଶ ସାହିତ୍ୟକର ଧ୍ୟେୟ ହେବା ଉଚିତ୍ ବୋଲି ବିଶ୍ୱାସ କରିଥିଲେ । ଆକାଙ୍‌କ୍ଷା ସଂଧାନ ଏବଂ ରୂପପିପାସା ହିଁ ତାଙ୍କ ସାହିତ୍ୟରେ ବଳିଷ୍ଠ ରୂପ ଧାରଣ କରିଛି ।

ସାହିତ୍ୟ-ସମାଲୋଚକ ଭାବରେ ମାନସିଂହ ବ୍ୟକ୍ତିଗତ ରୁଚିର ଅଧୀନ । ତଥାପି 'ଓଡ଼ିଆ ସମାଜ ଓ କବିତା', 'କବି ଓ କବିତା' ଜୀବନପଥରେ ତାଙ୍କର ସ୍ୱଚ୍ଛଳ ଗଦ୍ୟଶୈଳୀ ଅନୁସୃତ । ତାଙ୍କର 'ଶିକ୍ଷାବିଦ୍‌ର ଗାଥା', 'ସରସ୍ୱତୀ ଫକୀରମୋହନ' ମଧ୍ୟ ଏହି ପ୍ରସଙ୍ଗରେ ସ୍ମୃତିପଥକୁ ଆସେ । ଜୀବନ ଓ ମନୁଷ୍ୟସମାଜ ପ୍ରତି ତାଙ୍କ ସାହିତ୍ୟର ବାଣୀ ହେଉଛି ଅଭିଶପ୍ତ ମନୁଷ୍ୟ ପ୍ରତି ଅନୁକଂପା ପ୍ରଦର୍ଶନ ।

୧୯୪୦ ମସିହା ପରବର୍ତ୍ତୀ ଓଡ଼ିଆ କାବ୍ୟକବିତା କ୍ଷେତ୍ରରେ ଅର୍ଦ୍ଧଶତାବ୍ଦୀ ଧରି ଏକ ତୀକ୍ଷ୍ଣ ସାମାଜିକ ଚେତନା ତଥା ବ୍ୟଙ୍ଗ-ବିଦ୍ରୂପାତ୍ମକ ଜୀବନଧର୍ମୀ ସ୍ୱର ତୋଳିବାରେ କରୁଣ ବାସ୍ତବ ଅଭାବ ଦାରିଦ୍ର୍ୟପୀଡ଼ିତ ବ୍ୟକ୍ତିକ ଜୀବନର ପୃଷ୍ଠଭୂମିରେ ତୀର୍ଯ୍ୟକ୍ ଦୃଷ୍ଟି ସଂପନ୍ନ କବିତା ଲେଖିବାରେ ଗୋଦାବରୀଶ ମହାପାତ୍ର (୧୮୯୮-୧୯୬୫) ଜଣେ ସୁପରିଚିତ ସ୍ରଷ୍ଟା (୧) । ଯେଉଁ କବିଙ୍କର ସତ୍ୟବାଦୀ ଜାତୀୟ ଚିନ୍ତାଦ୍ୱାରା ପରିପୁଷ୍ଟ ଲେଖନୀ ଦିନେ ନିଜ ଛବିଳ ଜନ୍ମମାଟିର ବନ୍ଦନା କରି 'ବାଣପୁର' (୧୯୧୪), ବର୍ଣ୍ଣନାତ୍ମକ କାବ୍ୟ 'ପ୍ରଭାତ କୁସୁମ' (୧୯୧୮) ଲେଖି ଥିଲା, ତାହାର ପରିଣତି ହୋଇଥିଲା ସମସାମୟିକ ରାଜନୈତିକ, କୁସଂସ୍କାର,

---

(୧) (କ) ବାଣପୁର—୧୯୧୪, (ଖ) ପ୍ରଭାତ କୁସୁମ—୧୯୧୮, (ଗ) ରେଙ୍ଗୁନ ଚିଠି, (ଘ) କଣ୍ଟା ଓ ଫୁଲ, (ଙ) ହେ ମୋର କଲମ, (ଚ) ହାଣ୍ଡିଶାଳରେ ବିପ୍ଳବ, (ଛ) ରକ୍ତପାତ, (ଜ) ବିଦ୍ରୋହ, (ଝ) ବନ୍ଦୀର ମାୟା, (ଞ) ବୀର ସ୍ତବକ, (ଟ) କୀର୍ତ୍ତିମାଳା, (ଠ) ବଙ୍କା ଓ ସିଧା ।

ଦୁର୍ନୀତି, ଅବିଚାର, ଅତ୍ୟାଚାରପୀଡ଼ିତ ସମାଜ ଓ ବ୍ୟକ୍ତିର ଯଥାର୍ଥ ପ୍ରତିନିଧିତ୍ୱ କରିବାରେ । ସେ ଥିଲେ ଉଗ୍ର ଜାତୀୟତାବାଦୀ । 'ଆଶା', 'ଉତ୍କଳ ହିତୈଷିଣୀ' ପତ୍ରିକା ଏବଂ 'ଉତ୍କଳ ସମ୍ମିଳନୀ' ପ୍ରଭୃତି ସଂସ୍ଥା ସହିତ ନିବିଡ଼ ଭାବରେ ସେ ଜଡ଼ିତ ଥିଲେ । ଶେଷରେ ସେ ବ୍ୟଙ୍ଗାତ୍ମକ ପତ୍ରିକା 'ନିଆଁଖୁଣ୍ଟା' (୧୯୩୮) ସଂପାଦନା କରି ଅବସାଦଗ୍ରସ୍ତ ଓଡ଼ିଶାର ବିଭିନ୍ନ ସମସ୍ୟାକୁ ନିର୍ଭୀକତାର ସହିତ ପ୍ରତିଫଳିତ କରି ପାରିଥିଲେ । କି କବିତା, କି କ୍ଷୁଦ୍ରଗଳ୍ପ, ଉପନ୍ୟାସ, ଅନୁବାଦ, ଜୀବନୀ ଓ ଶିଶୁ-ସାହିତ୍ୟରେ ସାହିତ୍ୟର ବିଭାଗରେ ତାଙ୍କର ପ୍ରତିଭାର ସ୍ୱାକ୍ଷର ଅଙ୍କିତ ହୋଇପାରିଥିଲା ।

ତାଙ୍କର ଅଧିକାଂଶ କବିତା ଜାତୀୟ ଆବେଦନ ସହିତ ବ୍ୟକ୍ତିଗତ, ରାଜନୈତିକ ଜୀବନର ବ୍ୟଙ୍ଗାତ୍ମକ ସମାଲୋଚନାରେ ତୀକ୍ଷ୍ଣ ଓ ଶାଣିତ ହୋଇଥିଲା ଏବଂ ଗଳ୍ପଗୁଡ଼ିକ ଓଡ଼ିଶାର ନିସର୍ଗ ପଲ୍ଲୀ-ଜୀବନର ଦୁଃଖ, ଦାରିଦ୍ର୍ୟକୁ ନିପୁଣତାର ସହିତ ପ୍ରତିଫଳିତ କରିପାରିଥିଲା । ଦକ୍ଷତାର ସହିତ ସେ ପାଶ୍ଚାତ୍ୟ ସାହିତ୍ୟରୁ କେତେକ ଉପନ୍ୟାସ ଓ କ୍ଷୁଦ୍ରଗଳ୍ପ ମଧ୍ୟ ଅନୁବାଦ କରିପାରିଥିଲେ । ଗ୍ରାମ୍ୟ ଜୀବନର ମାଧୁରୀ, ଗ୍ରାମ୍ୟ ପ୍ରକୃତିର ନିସର୍ଗ ପରିବେଶ ସହିତ ସାମାଜିକ ସଂସ୍କାର-ଲିପ୍ସା ଏବଂ ସହାନୁଭୂତି ତାଙ୍କ କବିତା ଓ କ୍ଷୁଦ୍ରଗଳ୍ପର ମୁଖ୍ୟ ଆକର୍ଷଣ । ଶେଷରେ କବି ଓଡ଼ିଆ ଜାତିର ଐତିହାସିକ, ବୀରତ୍ୱ, ଗୌରବ, କଳାପ୍ରେମ ଜାଗରିତ କରିବା ପାଇଁ ଯେଉଁ ଉଦ୍‌ବୋଧନବାଣୀ ଶୁଣାଇଥିଲେ ତାହାହିଁ ତାଙ୍କ ଜୀବନର ବାଣୀ—

"ଦୁର୍ଗମ ଗିରି ଦୁର୍ଗ ପ୍ରାଚୀର ଜୀର୍ଣ୍ଣଦୁଆରେ ବସି,
ଡାକେ ତାନ୍ତ୍ରିକ ମନ୍ତ୍ରସାଧନେ ଜାଗ୍ରତ ପୁରବାସୀ ।
ପୃଥ୍ୱୀ ବିଦାରି ବାରବାଟୀ ମଡ଼ା ଉଠ ଉଠ ଚଞ୍ଚଳ,
ଖୋରଧାର ଶତ ସରଦାର ଶିର କର ଉନ୍ନତ କର ।
ଉଠ କଙ୍କାଳ ଛିଡ଼୍ ଶୃଙ୍ଖଳ, ଜାଗ ଦୁର୍ବଳ ଆଜ
ଉଠ ଗତ ଗୌରବ, ହୃତ ଗୌରବ, ମୃତ ଗୌରବରାଜ ।"

ଚଳିତ ଯୁଗରେ ଓଡ଼ିଆ କାବ୍ୟକବିତାରେ ଅନ୍ୟତମ ବିଶିଷ୍ଟ କବି ତଥା ଗୀତିକବିତାର ଶବ୍ଦ ଓ ପଦ ଯୋଜନାର ବିଦଗ୍ଧ ଶିଳ୍ପୀଭାବରେ ରାଧାମୋହନ ଗଡ଼ନାୟକ (୧୯୧୧) ସୁପରିଚିତ (*) । କବିତା ଏବଂ କବିତାର ନିପୁଣ ମାତ୍ରା

(*) (କ) କାଳିଦାସ, (ଖ) ବିପ୍ଳବୀ ରାଧାନାଥ, (ଗ) ଉତ୍କଳିକା, (ଘ) କାବ୍ୟନାୟିକା, (ଙ) ଶାମୁକାର ସ୍ୱପ୍ନ, (ଚ) କୈଶୋରିକା, (ଛ) ପଶୁପକ୍ଷୀର କାବ୍ୟ, (ଜ) ସ୍ମରଣିକା, (ଝ) ଧୂସର ଭୂମିକା, (ଞ) ସୂର୍ଯ୍ୟ ଓ ଅନ୍ଧକାର ।

ଛନ୍ଦ ଯୋଜନା ଯେ କଳାଜ୍ଞାନସାପେକ୍ଷ, ଏହାହିଁ କବିତାର ଅଜସ୍ର ଗୀତିକବିତା ଏବଂ କାବ୍ୟ ନାଟିକାସମୂହରେ ପ୍ରମାଣିତ । ଏହି ମାତ୍ରା-ଛନ୍ଦର ବ୍ୟବହାର ହିଁ ତାଙ୍କ କାବ୍ୟସୃଷ୍ଟିକୁ ଅଧିକ ମନୋଜ୍ଞ ଏବଂ ରସୋତ୍ତୀର୍ଣ୍ଣ କରିଥାଏ । ପୁନଶ୍ଚ, ତାଙ୍କ କବିତାଗୁଡ଼ିକର ଗଳ୍ପାଂଶରେ ଓଡ଼ିଶାର ବୀରଗାଥା, ପ୍ରଚଳିତ କିମ୍ବଦନ୍ତୀ ସ୍ୱାଚ୍ଛନ୍ଦ୍ୟ ସହିତ ଗୃହୀତ । କାଳିଦାସ, ବିପ୍ଳବୀ ରାଧାନାଥ, ଉତ୍କଳିକା, କାବ୍ୟନାୟିକା, ଶାମୁକାର ସ୍ୱପ୍ନ ପ୍ରଭୃତି ସଂଖ୍ୟାଧିକ କାବ୍ୟ-ନାଟିକା ଏବଂ ଗୀତିକବିତା ସଂକଳନରେ ଏହାହିଁ ପ୍ରମାଣିତ । ଶତଶିଳ୍ପୀ ଭାବରେ ଓଡ଼ିଆ ସାହିତ୍ୟକୁ କବି ଗଡ଼ନାୟକଙ୍କର ଦାନ ଉଲ୍ଲେଖଯୋଗ୍ୟ ।

## କାବ୍ୟ-କବିତା

ମଧ୍ୟଯୁଗୀୟ କାବ୍ୟ ପରଂପରାଠାରୁ ସ୍ୱତନ୍ତ୍ର କାବ୍ୟକୃତିର ପ୍ରବର୍ତ୍ତକ କବି ରାଧାନାଥ ରାୟ (୧୮୪୩-୧୯୦୮)ଙ୍କ ପରେ ଓଡ଼ିଆ କାବ୍ୟଧାରାରେ ଗୀତିଧର୍ମିତା ହିଁ ବିଶେଷ ପ୍ରତିଫଳିତ ହୋଇଥିଲା ଏବଂ ସତ୍ୟବାଦୀ ଆଉ ସବୁଜଗୋଷ୍ଠୀ ହିଁ ଏହି ଗୀତିଧର୍ମିତାକୁ ପ୍ରବର୍ତ୍ତନ ତଥା ବିଶେଷ ଅନୁସରଣ କରିଥିଲେ । ତେଣୁ ୧୯୩୫ ମସିହା ବେଳକୁ ଓଡ଼ିଆ ସାହିତ୍ୟରେ ଖଣ୍ଡକବିତା, ମନ୍ମୟ ଗୀତିକବିତା, ବିବିଧ ଭାବ ଏବଂ କଥାବସ୍ତୁ ସମନ୍ୱିତ କ୍ଷୁଦ୍ର କ୍ଷୁଦ୍ର କବିତା ରଚନା ସାହିତ୍ୟ-ରାଜ୍ୟରେ ଏକ ନିର୍ଦ୍ଦିଷ୍ଟ ତଥା ନିୟମିତ ଅଭ୍ୟାସରେ ପରିଣତ ହୋଇସାରିଥିଲା । ୧୯୩୬ ମସିହା ଏପ୍ରିଲ ମାସ ପହିଲା ତାରିଖ ଓଡ଼ିଶାର ରାଜନୈତିକ ଇତିହାସରେ ଏକ ସ୍ମରଣୀୟ ଦିବସ; କାରଣ ସେ ଦିନ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଘୋଷିତ ହୋଇଥିଲା । ଏହି ରାଜନୈତିକ ଘଟଣା ସହିତ ସମନ୍ୱୟ ରଖି ସେହି ବର୍ଷ ଓଡ଼ିଶାର ଯୁବ ସମାଜ ଓଡ଼ିଆ ଭାଷା, ସାହିତ୍ୟ, ସଂସ୍କୃତି କ୍ଷେତ୍ରରେ ନବଯୁଗ, ନବ ଜାଗରଣ ପାଇଁ ସଂଗଠିତ ଭାବରେ ଆହ୍ୱାନ ଦେଇଥିଲେ । ଏହି ପ୍ରସଂଗରେ ନବଯୁଗ ସାହିତ୍ୟ ସଂସଦ ଆଧୁନିକ ପରିଷଦ ସଦୃଶ କେତେକ ବିଶିଷ୍ଟ ଯୁବ ସଂଗଠନର ସାଂସ୍କୃତିକ କାର୍ଯ୍ୟାବଳୀ ବକ୍ତବ୍ୟ ପୁନର୍ବାର ବହୁ ପରୀକ୍ଷା ନିରୀକ୍ଷା ଏବଂ ରୂପାନ୍ତରର ସମ୍ମୁଖୀନ ହୋଇଥିଲା । ବିଶେଷତଃ କବିତାର ଗଭୀର ସୌନ୍ଦର୍ଯ୍ୟବୋଧ, ଅକୁଣ୍ଠ ପ୍ରକୃତି-ପ୍ରୀତି ସହିତ ଏକ ଅବଶ୍ୟମ୍ଭାବୀ ବିବିଧ ସାମାଜିକ ପ୍ରବୃତ୍ତି ତଥା ପରିବର୍ତ୍ତିତ ରାଜନୈତିକ ଚେତନା ଜଡ଼ିତ ହୋଇଥିଲା । ଏତାଦୃଶ ବିଭିନ୍ନ ପ୍ରବୃତ୍ତି, ଅଭିମୁଖ୍ୟ କବିମାନସରେ ଏକ ନୂତନ ଦୃଷ୍ଟିକୋଣ ପ୍ରବର୍ତ୍ତନ କରିଥିଲା । ୧୯୩୬ ମସିହାରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ, ୧୯୪୦ ମସିହାର ଦ୍ୱିତୀୟ ବିଶ୍ୱଯୁଦ୍ଧ, ଭାରତ ତଥା ଓଡ଼ିଶାରେ ଜାତୀୟ ଆନ୍ଦୋଳନର ତୀବ୍ରତା, ଓଡ଼ିଶା ଗଡ଼ଜାତ ଆନ୍ଦୋଳନ, ସତ୍ୟାଗ୍ରହ, ୧୯୪୨ ମସିହାର ଭାରତଛାଡ଼ ଆହ୍ୱାନ, ସତ୍ୟାଗ୍ରହ, ୧୯୪୩ ମସିହାରେ

ଭୀଷଣ ଦୁର୍ଭିକ୍ଷ ସଦୃଶ ଘଟଣାବହୁଳ ପର୍ଯ୍ୟାୟ ଶେଷରେ ୧୯୪୭ ମସିହାରେ ଭାରତର ସ୍ୱାଧୀନତାପ୍ରାପ୍ତି; ତତ୍ ସଂଗେ ମାର୍କସ୍ ଏବଂ ଗାନ୍ଧୀ ଚିନ୍ତାଧାରାର ପ୍ରସାର ଓଡ଼ିଆ କାବ୍ୟକବିତାର ନବତ ରୂପାନ୍ତର ପାଇଁ ଯେପରି ଏକ ପ୍ରତ୍ୟାଶିତ ପରିବେଶ ସୃଷ୍ଟି କରିପାରିଥିଲା । ସ୍ୱାଧୀନତା ପରବର୍ତ୍ତୀ ବୈପ୍ଳବିକ ଓଡ଼ିଆ କବିତା (ବିଶେଷତଃ ଷଷ୍ଠ ଓ ସପ୍ତ ଦଶକର କବିତା) ଆଙ୍ଗିକ ଏବଂ ଆତ୍ମିକ ବିଗ୍ରହରେ ପରମ୍ପରଠାରୁ ସ୍ୱତନ୍ତ୍ରରୂପେ ପ୍ରତିଭାତ ହୋଇଥାନ୍ତି । ଦେଶରେ ସ୍ୱାଧୀନତାର କାର୍ଯ୍ୟକାଳ ଯେଉଁ ପରିମାଣ ବୃଦ୍ଧି ପାଇଛି, ସେହି ପରିମାଣରେ ଶିଳ୍ପ-ବିଜ୍ଞାନର ପ୍ରସାର ସହିତ ଅଶାନ୍ତି, ଅର୍ଥନୈତିକ ସଂଗଠନ ସହିତ ଦାରିଦ୍ର୍ୟ ଅନଟନ, ଉତ୍କଟ ବେକାର ସମସ୍ୟା, ସାମାଜିକ ନ୍ୟାୟ ପ୍ରତିଷ୍ଠାର ଉଦ୍ୟମ ସହିତ ଆଉ ଏକ ନୂତନ ପ୍ରକାର ଶୋଷଣ ବୃଦ୍ଧି ପାଇଛି । ଫଳରେ ବ୍ୟକ୍ତି ଓ ସମାଜ ବ୍ୟର୍ଥତା, ଘୋର ଅସଂଗତି ଏବଂ ଅସ୍ଥିରତାଦ୍ୱାରା ଆହତ ହୋଇଛି । କ୍ରମଶଃ ମାର୍କସୀୟ ଦର୍ଶନ ଏବଂ ସାମ୍ୟବାଦୀ ଚିନ୍ତା ହିଁ କବିତାକୁ ପୂର୍ବଯୁଗ କବିତାଠାରୁ ସ୍ୱତନ୍ତ୍ର କରିପାରିଛି । ତତ୍ ସହିତ ଛନ୍ଦସ୍ୱାଧୀନତା ଅର୍ଥାତ୍ ମୁକ୍ତଛନ୍ଦର ଯୋଗ୍ୟତା ହିଁ ସଂଶ୍ଳିଷ୍ଟ । ତଥାପି ସୂକ୍ଷ୍ମ ଆଙ୍ଗିକ ଏବଂ ଆତ୍ମିକ ବ୍ୟବଧାନ ମଧ୍ୟରେ ଏକ ସୂକ୍ଷ୍ମ ମୌଳିକ ସାମ୍ୟ ପରିଲକ୍ଷିତ । ଏହାର କାରଣ କେତେକ ପ୍ରତିଭାଶାଳୀ କବିଙ୍କର ନିରବଚ୍ଛିନ୍ନ କବିତା ରଚନା । ନୂତନ ବିଷୟବସ୍ତୁ, ଚିନ୍ତକଳ୍ପ, ଛନ୍ଦଯୋଜନା ଏବଂ ଗଭୀର ସାମାଜିକ ଚେତନା ତଥା ଜାତୀୟତାଦ୍ୱାରା ଅନୁପ୍ରାଣିତ ହୋଇ ସଚ୍ଚିଦାନନ୍ଦ ରାଉତରାୟ (୧୯୧୬) ଓଡ଼ିଆରେ ନୂତନ କବିତାର ଆବାହନ କରିଥିଲେ । ସଚ୍ଚିଦାନନ୍ଦ ରାଉତରାୟ ଯଥାର୍ଥତଃ କଲେଜ ଜୀବନରୁ ନୂତନ ସାମାଜିକ ଏବଂ ରାଜନୈତିକ ଆଦର୍ଶରେ ଉଦ୍‌ବୁଦ୍ଧ ଜଣେ ଭାବପ୍ରବଣ ଶିଳ୍ପୀ ସଦୃଶ ତାଙ୍କର କବି-ଜୀବନ ଆରମ୍ଭ କରିଥିଲେ ଏବଂ ଏଯାବତ୍ କବିତା ରଚନା କରୁଛନ୍ତି । ତାଙ୍କର କାବ୍ୟ-ମାନସ ବିଭିନ୍ନ ପର୍ଯ୍ୟାୟରେ ଆଙ୍ଗିକ, ଆତ୍ମିକ ମୂଲ୍ୟବୋଧ ଦୃଷ୍ଟିରୁ ବିଭକ୍ତ (*) ।

'ଗ୍ରେଟ ମୋର ଗାଆଁଟି' (ପଲ୍ଲୀଶ୍ରୀ-୧୯୪୨)ରେ ପଲ୍ଲୀର ନିସର୍ଗ ସୌନ୍ଦର୍ଯ୍ୟ-ପ୍ରଲୁବ୍ଧ କବି ଯେଉଁ ଆବେଗପ୍ରବଣତା, ଭାବପ୍ରବଣତା ଏବଂ ନିର୍ମଳ ପ୍ରେମ ସାମାଜିକ ନିଷ୍ଠା ପ୍ରଦର୍ଶନ କରିଥିଲେ ଏବଂ 'ଛନ୍ଦ'ର ମାଧ୍ୟମରେ ଭାବପ୍ରବାହର ମୂର୍ଚ୍ଛନା ସଂଗ୍ରହ କରିଥିଲେ, ସେହି କବି ପୁଣି ଯୁଗଚେତନାରେ ପ୍ରଭାବିତ ହୋଇ କବିତାରେ ଗଦ୍ୟଛନ୍ଦ ମୁକ୍ତଛନ୍ଦର ଚରମ ପରୀକ୍ଷା ଚଳାଇଥିଲେ । ପ୍ରଗତିବାଦୀ ଚିନ୍ତା, କାନ୍ତିକାରୀ ସୃଜନାତ୍ମକତା ସଂପୂର୍ଣ୍ଣ ଅଭିନବ ବାକ୍‌ରୀତି ଏବଂ ତୀକ୍ଷ୍ଣ

(*) ପଲ୍ଲୀଶ୍ରୀ, ଅଭିଜ୍ଞାନ, ପାଣ୍ଡୁଲିପି(୧୯୪୭), ବାଜି ରାଉତ, ହସନ୍ତ, ପାଥେୟ (୧୯୩୪), କବିତା-୧୯୬୨, କବିତା-୧୯୬୯, କବିତା-୧୯୭୨ ।

ବୌଦ୍ଧିକତା କ୍ରମବର୍ଦ୍ଧିଷ୍ଣୁ କାବ୍ୟରୀତି ହିଁ କବିଙ୍କୁ ଆଧୁନିକ ଏବଂ ଅତ୍ୟାଧୁନିକ କବିତା ରାଜ୍ୟ ପ୍ରବର୍ତ୍ତକ ଭାବରେ ପ୍ରତିଶ୍ରୁତ କରିପାରିଛି । ତାଙ୍କ କବିତାର ବ୍ୟାପ୍ତି, ପରିଧି ଏବଂ ପ୍ରଭାବ ସମଧିକ । 'ପଲ୍ଲୀ ଶ୍ରୀ'; 'ପାଥେୟ' 'ଅଭିଜ୍ଞାନ' 'ଭାନୁମତୀର ଦେଶ' (୧୯୪୮)ରେ ନିଚ୍ଛକ କଳ୍ପନାବିଳାସୀ ରୋମାଣ୍ଟିକ୍, ବାଜିରାଉତ (୧୯୪୧), ଅଭିଯାନ, ପାଣ୍ଡୁଲିପି (୧୯୪୭)ରେ ବିପ୍ଳବୀ ଜାତୀୟତାବାଦୀ ଏବଂ କବିତା-୧୯୬୨, କବିତା-୧୯୬୯ ମସିହାରେ କବି ସମ୍ପୂର୍ଣ୍ଣ ପରୀକ୍ଷାବାଦୀରୂପେ ପରିଚିତ । ତାଙ୍କର ଗୋଟିଏ ଗୋଟିଏ କବିତା; ଯଥା—ଅସମାପିକା, ହେ ମୋର ନିରପରାଧ ଦେଶ (୧୯୪୩), ପଦ୍ମଭୂକ୍ (୧୯୪୩), ପ୍ରତିମା ନାୟକ (୧୯୪୫), ଜ୍ୟାମିତି (୧୯୪୫), ମାଟିଆ ବୁରୁଜର ଜନ୍ମ (୧୯୪୭)ର ଉଷ୍ଣତା, ଭାବତୀକ୍ଷ୍ଣତା, ଭାବ-ଗାମ୍ଭୀର୍ଯ୍ୟ ଏବଂ ପ୍ରକାଶନ ସମ୍ବନ୍ଧୀୟ ଅଭିନବତ୍ୱ ବହୁ ତରୁଣ କବିମାନଙ୍କୁ ପ୍ରଭାବିତ କରିପାରିଛି । ଚେତନାର ସମନ୍ୱୟ ତାଙ୍କ କାବ୍ୟସୃଷ୍ଟିରେ ପ୍ରତିଫଳିତ । ଢେଙ୍କାନାଳ ଗଡ଼ଜାତ ମୂଲକର ନାଉରିଆ ବାଳକ ବାଜିରାଉତ ଅତ୍ୟାଚାରୀ ଶାସକ ବିରୋଧରେ ଯେପରି ପ୍ରତିବାଦ କରିଥିଲା, ତାହାର ପୃଷ୍ଠଭୂମିରେ ତାଙ୍କର ବହୁ କବିତା ରଚିତ । 'ବାଜିରାଉତ' କବିତା ଯେପରି ଏକଚ୍ଛତ୍ରବାଦୀ ଶାସନର ସବୁ ଯୁଗ ପାଇଁ ପ୍ରଚଣ୍ଡ ପ୍ରତିବାଦ । କବିଙ୍କ କବିତାର ମର୍ମବେଦନାଦଗ୍ଧ ବାଣୀରେ ସମଗ୍ର ଉତ୍କଳ, ଉତ୍କଳବାସୀ ମାନବସମାଜ ଓ ରାଷ୍ଟ୍ରର କେତେକ ମୌଳିକ ସମସ୍ୟା ପ୍ରତିଧ୍ୱନିତ—

ହେ ମୋର ନିରପରାଧ ଦେଶ !
ତୋର ଛିନ୍ନ ଅସ୍ତିତ୍ୱର ପରିତ୍ୟକ୍ତ ଭୁକ୍ତ ଅବଶେଷ
ନୟନୁ ମୋ କାଢ଼ି ଅଛି ନୀର ।
ମୌସୁମୀର ହିମସ୍ପର୍ଶେ ସିକ୍ତ ଯଥା ଶୁଷ୍କ ନଦୀତୀର ।
ହେ ଉତ୍କଳ, ହେ ମୋର ଉତ୍କଳ !
ମନେପଡ଼େ ଆଜି ଦୂରେ ରୋମାଂଚିତ ଶ୍ରୀହର୍ଷ ଶ୍ୟାମଳ ।
ଅନାବୃତ ତୋର ଜୀର୍ଣ୍ଣ ବେଶ,
ଶତ କ୍ଷୁଧା, ଶତ ଦୁଃଖ ରଚେ ଯହିଁ ତା ଉପନିବେଶ ।

( ପାଣ୍ଡୁଲିପି )

ଆଭ୍ୟନ୍ତରୀଣ ସଂଘର୍ଷ ଓ ବିରୋଧାଭାଷ ମଧ୍ୟରେ କବିଙ୍କର କାବ୍ୟକବିତା-ଧାରା ନବ ନବ ଚିନ୍ତକଳ୍ପ ମାଧ୍ୟମରେ ସମାଜର ଆହ୍ୱାନ ଅନୁଯାୟୀ ଗତିଶୀଳ ଏବଂ ଅଗ୍ରଗାମୀ ହୋଇପାରିଛି ।

ସମଗ୍ର ଆନ୍ତର୍ଜାତିକ ପୃଷ୍ଠଭୂମିରୁ ସଂଗୃହୀତ ଉପାଦାନ କବି ରାଉତରାୟଙ୍କ କବିତାକୁ ଏକାନ୍ତଭାବରେ ଅତ୍ୟାଧୁନିକ କରିପାରିଛି ।

କଲେଜଜୀବନର ଉଗ୍ର ରାଜନୈତିକ ଚେତନାର ଅଧିକାରୀ ଶ୍ରୀଯୁକ୍ତ ମନମୋହନ ମିଶ୍ର (୧) ଆଧୁନିକ କବିତାର ରାଜନୈତିକ ଏବଂ ଜାତୀୟବାଦୀ ପ୍ରବୃତ୍ତି ପ୍ରବର୍ତ୍ତନ କରିପାରିଥିଲେ । ସମସାମୟିକ ରାଜନୈତିକ ସଭା-ସମିତି, ଆନ୍ଦୋଳନ ଏବଂ ଶୋଭାଯାତ୍ରାର ତରୁଣ ଯାତ୍ରୀମାନଙ୍କ କଣ୍ଠରେ କବି ମନମୋହନଙ୍କ ଜ୍ୱାଳାମୟୀ ଆବେଗପୂର୍ଣ୍ଣ ଉଦାତ୍ତ ଜାତୀୟବାଦୀ କବିତା ମନ୍ତ୍ରବତ୍ ପ୍ରତିଧ୍ୱନିତ ହୋଇଥିଲା ।

ତେବେପର ଅନନ୍ତ ପଟ୍ଟନାୟକଙ୍କ (୧୯୧୩) ତୀବ୍ର ରାଜନୈତିକ ଚେତନା-ସମ୍ବଳିତ କବିତାଗୁଡ଼ିକ (୨) ପ୍ରଭାବ ସୃଷ୍ଟି କରିପାରିଛି । ଜାତୀୟ କବି ବୀରକିଶୋର ଦାସ ଏବଂ ବାଞ୍ଛାନିଧି ମହାନ୍ତିଙ୍କ ଜାତୀୟତାଭିତ୍ତିକ କବିତାସମୂହ ସମସାମୟିକ ରାଜନୈତିକ ଅଭିମୁଖ୍ୟ ପ୍ରତିଫଳିତ କରିଥାଏ । ଏତାଦୃଶ କବିତାର ଶିଳ୍ପଗତ ଅପେକ୍ଷା ପ୍ରଚାରଧର୍ମିତା ହିଁ ଉଲ୍ଲେଖଯୋଗ୍ୟ । କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର ମଧ୍ୟ ଜଣେ ବିଦଗ୍ଧ ଗୀତିକାର (୩) । ବାଞ୍ଛାନିଧି ଦାସ ସାଂପ୍ରତିକ ଯୁଗରେ ବହୁ ଜାତୀୟବାଦୀ ଅବୃତିଯୋଗ୍ୟ କବିତା ରଚନା କରିଛନ୍ତି ।

୧୯୪୦-୧୯୫୦ ମସିହାର ଦଶନ୍ଧିର କବିମାନଙ୍କ କବିତାରେ ଶୋଷଣ ଓ ଅନ୍ୟାୟ ବିରୋଧରେ ଅହ୍ୱାନ ପ୍ରତିଫଳିତ ହେଲା । ଶ୍ରୀ ଅନନ୍ତ ପଟ୍ଟନାୟକଙ୍କ କବିତାର ଗୀତିମୟତା, ପଦଯୋଜନାର ଚମତ୍କାରିତା, ପ୍ରକୃତିବର୍ଣ୍ଣନାଗତ ନୂତନ ଦୃଷ୍ଟିକୋଣ ବିଶେଷ ଉଲ୍ଲେଖଯୋଗ୍ୟ । ଓଡ଼ିଶାର ଗ୍ରାମ୍ୟ ଜୀବନ ପୃଷ୍ଠଭୂମିରେ ବିଶେଷ ରହି ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ତ୍ରିପାଠୀ (୪) ବହୁ କବିତା ରଚନା କରିଛନ୍ତି । ଏହା ଓଡ଼ିଶାର ମୃତପ୍ରାୟ ପାରଂପରିକ ବୀର ପାଇକ ବାହିନୀପ୍ରତି ଉଦବୋଧନ ଏବଂ ପଲ୍ଲୀ ସୌନ୍ଦର୍ଯ୍ୟର ଆକର୍ଷଣରେ ପରିପୂର୍ଣ୍ଣ । କୋମଳ କବିତ୍ୱ, ଆବେଗମୟତ୍ୱ, ଶୈଳୀର ଅନାଡ଼ମ୍ବରତ୍ୱ ତାଙ୍କର ବୈଶିଷ୍ଟ୍ୟ ।

"ଯହିଁ ନୀଳ ଧାନକ୍ଷେତ ନବ ନୀଳ ନେତ ଉଡ଼ାଏ,
ଯହିଁ ଆଷାଢ଼ ବରଷା ବିଲବାଡ଼ି ତଳେ ବୁଡ଼ାଏ,

(୧) କୋଟିକଣ୍ଠେ, ଜନତାର ଜୟଗାନ, ଆବାଜ୍ ।

(୨) ଯୁଗର ଛନ୍ଦ, କଁଷିତ୍ର, ଅଲେଡ଼ା ଲେଡ଼ା, ରକ୍ତଶିଖା (୧୯୩୦), ଦର୍ପଣରେ ଅଙ୍କ (୧୯୪୮), ଶାନ୍ତିଶିଖା (୧୯୫୨), ମଦନ କୌମୁଦୀ ।

(୩) ଜୀବନ ସଂଗୀତ ।

(୪) ଅଦ୍ଭୁତ, ଅଗ୍ନିଶଙ୍ଖ, ମାଟିଦୀପ, ଭାଇ, ରୂପାୟନ, ସାଧକର ସ୍ୱପ୍ନ, ବେଳା ଓ ବୀଚ, ଆମ୍ବଲିପି ।

ଯହିଁ ଚଷାପୁଅ ଗୀତ ଛନ୍ଦେ ପବନେ ଭାସଇ,
ଯହିଁ କୁସୁମ ଗନ୍ଧ ସମୀରଣେ ଥରି ଆସଇ ।
(ନେଇଯାଅ ସେଇ ରାଇଜେ—ବେଲା ଓ ବୀଚ)

ସ୍ୱାଧୀନତା ପରବର୍ତ୍ତୀ କାଳରେ ଓଡ଼ିଆ କାବ୍ୟକବିତାରେ ଶ୍ରୀଯୁକ୍ତ ଜ୍ଞାନୀନ୍ଦ୍ର ବର୍ମାଙ୍କର (୧୯୧୮) (୧) ସୃଷ୍ଟି ପାଠକମାନଙ୍କର ଦୃଷ୍ଟି ଆକର୍ଷଣ କରିପାରିଛି । ତାଙ୍କ କବିତାରେ ପ୍ରାଚୀନ ଆଖ୍ୟାୟିକାର ସ୍ୱର ଆବେଦନପୂର୍ଣ୍ଣ ଭାଷାରେ ଉଦ୍‌ବେଳିତ; ଯଥା—'ବୋଲେ ହୁଁ ଟି', 'କଳରେଇ ଫୁଲ୍', 'ରେନେସାଁ ଓ ଡେକାଡେନ୍‌ସର ଏପିକ୍'ରେ କବିତାର ନୂତନ ଆଙ୍ଗିକ ଏବଂ ଆତ୍ମିକ-ରୂପତତ୍ତ୍ୱ ପ୍ରତିଫଳିତ । ସେ ଏକାଧାରରେ ସାମ୍ବାଦିକ, କବି ଏବଂ ଦରଦୀ କଥାଶିଳ୍ପୀ ମଧ୍ୟ । ଏକଦା 'ଆରତି', 'ଶଙ୍ଖ' ଏବଂ ବର୍ତ୍ତମାନ ନୂତନ ପ୍ରସ୍ଥ 'ଉତ୍କଳ ସାହିତ୍ୟ' ପତ୍ରିକା ସଂପାଦନା ସହିତ ସମ୍ପୃକ୍ତ ଏବଂ ଓଡ଼ିଆ କାବ୍ୟକବିତାର ନୂତନ ରୂପ ପ୍ରକଟିତ ହେବାରେ ତାଙ୍କର ବିବିଧ ଦୃଷ୍ଟି ବିଗୃର୍ଦ୍ଧି । 'ଜ୍ୟୋସ୍ନା', 'ରଜପର୍ବ' ପ୍ରଭୃତି କବିତା ସଂକଳନର ସ୍ରଷ୍ଟା ପ୍ରାଣକୃଷ୍ଣ ସାମଲ (୧୯୧୬-୧୯୫୯) ଜଣେ ଦରଦୀ କବି ଥିଲେ । ଏହି ଆଲୋଚ୍ୟ ଯୁଗରେ ଶ୍ରୀ କୁଞ୍ଜବିହାରୀ ଦାଶଙ୍କ (୧୯୧୪) ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ବହୁ କାବ୍ୟକବିତା (୨) ଓଡ଼ିଆ କାବ୍ୟକବିତାର ନୂତନ ଆଭିମୁଖ୍ୟ ଗଢ଼ିଉଠିବାରେ ସହାୟତା କରିପାରିଛି । ରୋମାଣ୍ଟିକ୍ ଚେତନା, ଦେଶାତ୍ମବୋଧ ଏବଂ ପ୍ରକୃତି-ସୌନ୍ଦର୍ଯ୍ୟ-ଗ୍ରାହକତା ତାଙ୍କ କବିତାର ଲକ୍ଷଣ । ୧୯୪୫ ମସିହାରୁ ୧୯୬୦ ମସିହା ମଧ୍ୟରେ କଲେଜ ଉଚ୍ଚଶିକ୍ଷାପ୍ରାପ୍ତ ବହୁ ତରୁଣ ଓଡ଼ିଆ ନୂତନ ଢଙ୍ଗରେ କାବ୍ୟକବିତା ଲେଖିବାରେ ଅଗ୍ରସର ହୋଇଛନ୍ତି । ସେମାନଙ୍କ ସୃଷ୍ଟିର ବିପୁଳତା, ଗୁଣାତ୍ମକ ପ୍ରବୃତ୍ତି ହିଁ ଆଧୁନିକ କବିତାର ନବକଳେବର ପ୍ରକଟିତ ହେବା ପାଇଁ ଦାୟୀ ।

ଯୁଗରୁଚି ଏବଂ ସାମାଜିକ ପଛ ପରିବର୍ତ୍ତନ ପରିପ୍ରେକ୍ଷୀରେ ସେମାନଙ୍କ କବିତା ଭାବଗର୍ଭିକ ଏବଂ ପାଠକ ପକ୍ଷରେ ପ୍ରଭାବଶାଳୀ ହୋଇଥାଏ । ବାସ୍ତବ ବ୍ୟକ୍ତି

---

(୧) ବୋଲେ ହୁଁ ଟି (୧୯୪୦), କଳରେଇ ଫୁଲ୍ (୧୯୬୦), ସ୍ୱର୍ଣ୍ଣଯୁଗର ସନ୍ଧ୍ୟା (୧୯୫୭), ରେନେସାଁ ଓ ଡେକାଡେନ୍‌ସର ଏପିକ୍ (୧୯୬୪), ଜୟଦେବେର ନୂତନ କବିତା (୧୯୬୬), ବୃହନ୍ନଳା ଓ ଚନ୍ଦ୍ରର ଫସିଲ (୧୯୭୧), ଉତ୍ତରକାନ୍ତ (୧୯୭୫), ପ୍ରମିଳାର ସ୍ମୃତି (୧୯୬୪), ଏକ ରାତ୍ରି (୧୯୪୯), ଗୁଙ୍ଗାକ୍‌ର ଚର୍ଯ୍ୟାପଦ (୧୯୭୧), ସାନନ୍ଦନର କବିତା (୧୯୭୧) ।

(୨) ପ୍ରଭାତୀ, ପାଷାଣ ଚରଣେ ରକ୍ତ, ଡୁଡୁମା, ବାଗା, ବାରଣୀ, ମାଟି ଓ ଲଟି, ସେ ଏକ ଲୋମଶ ନୀଳହାତ ।



ଜୀବନର ବାସ୍ତବ ଅଭିଜ୍ଞତାର କାବ୍ୟିକ ଚେତନାର ଧାରକରୂପେ ଶ୍ରୀଯୁକ୍ତ ଯଦୁନାଥ ଦାଶ ମହାପାତ୍ରଙ୍କର କତିପୟ କବିତା 'ହାତ', 'ମାଛ', 'ରାଜହଂସୀ', 'ଚନ୍ଦ୍ରାବତୀର ଗଳ୍ପ', 'କ୍ଷମତାରୁ ଗଳାପରେ', 'ବରଗଛ', 'ଏକ ବର୍ଷାରାତି' ନୂତନ ପ୍ରୟୋଗ, ନୂତନ ବାକ୍‌ରୀତି ଯୋଗୁଁ ସ୍ୱାତନ୍ତ୍ର୍ୟମଣ୍ଡିତ । କବି କବିତାର ସ୍ୱରୂପ ବର୍ଣ୍ଣନା କରି ଯାହା କହିଛନ୍ତି ତାହା ଆଧୁନିକ କବିତାର ଆତ୍ମିକ ପରିଚୟ । (୧)

"କବିତା କେବେ ସମାପ୍ତ ହୁଏନା
କବିତାଟି ପ୍ରତିଟି ଅଙ୍ଗର ବିସ୍ତୃତି
ମୁଁ ଅନୁଭବ କରେ ।
ଏବଂ
ତାର ଉପସ୍ଥିତି ମଧ୍ୟ ହୃଦୟରେ
ତାର ସ୍ପର୍ଶ ଜହ୍ନ ପରି
ତାର ପ୍ରେମ ସୂର୍ଯ୍ୟ-ସ୍ପର୍ଶୀ
ତାର ଗନ୍ଧ ସୀମାତୀତ ।" (ଅସମାପ୍ତ କବିତା)

ଶ୍ରୀ ଗୁରୁପ୍ରସାଦ ମହାନ୍ତି (୧୯୨୪) ଙ୍କ କବିତା (୨) ରୋମାଣ୍ଟିକ୍ ଭାବ-ପ୍ରବଣଦ୍ୱାରା ଚିହ୍ନିତ । 'ନୂତନ କବିତା' ଏବଂ 'ସମୁଦ୍ର ସ୍ନାନ', 'ଚମ୍ପାଫୁଲ୍', 'ଗୋବରଗଣେଶ', 'କାଳପୁରୁଷ', 'ଅଳକା ସାନ୍ୟାଲ' ସଦୃଶ ତାଙ୍କର ସ୍ୱଳ୍ପ ସୃଷ୍ଟି ଆଧୁନିକ ଓଡ଼ିଆ କବିତାର ମାନସକୁ ସ୍ପର୍ଶ କରିଥାଏ । ଗତାନୁଗତିକ ପ୍ରେମରେ ସଂଳାପ ମଧ୍ୟରେ କବି ନୂତନ ରସବୋଧର ଆବାହନ କରିପାରିଛନ୍ତି । ପୂର୍ବ ଏବଂ ଉତ୍ତର ପଗୃଣର କବି ଭାବରେ ଗୋପାଳଚନ୍ଦ୍ର ମିଶ୍ରଙ୍କ (୧୯୨୫) (୩) କବିଆତ୍ମା ଗଡ଼ଜାତ ଆନ୍ଦୋଳନର ବହ୍ନିଶିଖା ମଧ୍ୟରେ ଯେପରି ତପସ୍ୟା କରିପାରିଛି । ତାଙ୍କର 'ବିଦ୍ରୋହୀ ଦିବାକର' (୧୯୪୭)ର ଜ୍ୱାଳାମୟ ଅଗ୍ନିବାଣୀ, 'ପାଟଣାଣୀ' (୧୯୫୨) କାବ୍ୟର ସ୍ୱାଧୀନତାପ୍ରେମୀ ଐତିହାସିକ ପାଇକ ଯୁବକର ସଂବୋଧନ ସହିତ ରୋମାଣ୍ଟିକ ଚେତନାସମ୍ବଳିତ 'ସେପାରେ ପ୍ରିୟାର ଗାଆଁ', 'ଝିରୁ ଯୂଥିକା' ସଂକଳନର କବିତାସମୂହର ମାର୍ମିକ ଆବେଦନ ଏବଂ ପରବର୍ତ୍ତୀ କାଳରେ

---

(୧) ସାର୍ଥକ କବିତା (୧୯୭୧), ଯନ୍ତ୍ରଣାର ଅନ୍ୟ ନାମ (୧୯୭୪)

(୨) ନୂତନ କବିତା, ସମୁଦ୍ର ସ୍ନାନ ।

(୩) ବିଦ୍ରୋହୀ ଦିବାକର (୧୯୪୭), ସେପାରେ ପ୍ରିୟାର ଗାଆଁ, ବିପ୍ଳବୀ ବନ୍ଧୁ, ଝିରୁ ଯୂଥିକା, ପୂର୍ବରାଗ, କପୋଳ ତେଣାର ଗୁଇ, ରଶ୍ମି, ପାଟଣାଣୀ ।

'କପୋତ ଡେଣାର ଗୀତ' (୧୯୬୭) କବିତା ଗ୍ରନ୍ଥର କବିତାଗୁଡ଼ିକର ପରିବର୍ତ୍ତିତ ସାମାଜିକ ମୂଲ୍ୟବୋଧ ଉଲ୍ଲେଖଯୋଗ୍ୟ । ଓଡ଼ିଶାର ଗ୍ରାମ୍ୟ ଜୀବନର ନଈନାଳ, ପର୍ବତ, ବନାନୀଭରା ସବୁଜ ଆଲେଖ୍ୟ ତାଙ୍କ କବିତାରେ ସ୍ୱପ୍ନ, ଆଶା-ନୈରାଶ୍ୟ ମଧ୍ୟରେ ବାସ୍ତବ ରୂପ ପ୍ରାପ୍ତ ହୋଇଛି ।

ଉତ୍କଳ ସମ୍ମିଳନୀ ଆଦର୍ଶ ଉଦ୍‌ବୁଦ୍ଧ ଏବଂ ଦାର୍ଶନିକ କବି ନବକିଶୋର ଦାସଙ୍କର (୧୯୧୨) କବିତା (୧) ଏକଦା ଓଡ଼ିଆ ପାଠକ ସମାଜକୁ କାବ୍ୟର ନାନ୍ଦନିକ ମନ୍ତ୍ରରେ ବିମୋହିତ କରିପାରିଥିଲା । ଡକ୍ଟର ହରେକୃଷ୍ଣ ମହତାବଙ୍କ 'ପଲ୍ଲସି ଅବସାନେ', 'ଗୃହଚକ୍ଷୁ' ଐତିହାସିକ ଉପାଦାନ ନିହିତ; ମାତ୍ର ସୂକ୍ଷ୍ମ କାବ୍ୟିକ ପ୍ରେରଣାରେ ପରିପୂର୍ଣ୍ଣ । ଶ୍ରୀ ବିନୋଦଚନ୍ଦ୍ର ନାୟକ (୧୯୧୯) (୨) ମୁଖ୍ୟତଃ ରୋମାଣ୍ଟିକ୍ ଭାବଧାରାର ସ୍ରଷ୍ଟା । ତାଙ୍କର ପ୍ରତ୍ୟେକ କବିତା ଦ୍ରାକ୍ଷା ମଦିରା । ବିମୁଗ୍ଧ ନାୟକ ନାୟିକାଙ୍କର ପ୍ରେମାବେଗ ଦ୍ୱାରା ଚିହ୍ନିତ । ରସମୟ ଶବ୍ଦ ଯୋଜନା, କଥନ ଭଙ୍ଗୀର ମନୋହାରିତା ଏବଂ ପ୍ରେମର ଅଶ୍ରୁତ ରାଗିଣୀ ହିଁ ତାଙ୍କ କବିତାରେ ନୂତନତ୍ୱ ପ୍ରତିଷ୍ଠା କରିପାରିଛି ।

ଜାତୀୟ ଭାବଧାରା, ପଞ୍ଚମ ଏବଂ ଷଷ୍ଠ ଶତକର ଯୁଗଧର୍ମ, ପରିବେଶାତ୍ମକ ପ୍ରବୃତ୍ତି ବହୁ ତରୁଣ କବିଙ୍କ କବିତାରେ ନିଶ୍ଚିତ ରୂପ ଧାରଣ କରିଥିଲା । ମର୍ମାନ୍ତିକ ସାମାଜିକ ଯନ୍ତ୍ରଣାବୋଧ, ବୈଷମ୍ୟ, ଦାରିଦ୍ର୍ୟ, ବେକାରି, ଅଭାବ ଅନଟନ, ସାମାଜିକ ଓ ଅର୍ଥନୈତିକ ଯୋଗାଣ ଏହି ସମସ୍ୟାର କାବ୍ୟ ସ୍ରଷ୍ଟାମାନଙ୍କ ଲେଖନୀରେ ପ୍ରତିଫଳିତ ହେଲା । ଯୁଗୀୟ ଅଶାନ୍ତି, ଜୀବନ-ଜିଜ୍ଞାସା, ପ୍ରତିଷ୍ଠିତ ପରମ୍ପରା ପ୍ରତି ବିମୁଖତା, ମନସ୍ତାତ୍ତ୍ୱିକ ଦ୍ୱନ୍ଦ୍ୱ କ୍ରମେ ଓଡ଼ିଆ ଗୀତି କବିତାକୁ ସମସ୍ୟାସର୍ବସ୍ୱ କରିଦେଇଛି । କିଏ କତିପୟ କବିତା ଲେଖିଛନ୍ତି, କିଏ ହୁଏତ ଅଜସ୍ର କବିତା ରଚନା କରିଛନ୍ତି; କିନ୍ତୁ ଓଡ଼ିଆ କବିତାର ସାମଗ୍ରିକ ରୂପ ଦୃଷ୍ଟିରୁ ପ୍ରତ୍ୟେକ ସୃଷ୍ଟିର ଉପାଦେୟତା ସ୍ୱୀକୃତ । ଏହି ସ୍ରଷ୍ଟାମାନଙ୍କ ମଧ୍ୟରେ କୃଷ୍ଣଚନ୍ଦ୍ର କର, ନିତ୍ୟାନନ୍ଦ ମହାପାତ୍ର, ବୈକୁଣ୍ଠନାଥ ଦାସ, କ୍ଷିତୀଶଚନ୍ଦ୍ର ଦେ, ଜାନକୀବଲ୍ଲଭ ମହାନ୍ତି (କ), ଜାନକୀ ବଲ୍ଲଭ ମହାନ୍ତି (ଖ), (ଟ୍ରଫିକ୍, ବିଚିତ୍ରବର୍ଣ୍ଣା), ଚିନ୍ତାମଣି ବେହେରା (ହେ ବୈଦେହୀ, ଭୁଲିଯାଅ, ନୂତନ ସ୍ୱାକ୍ଷର), ଦୁର୍ଗାଚରଣ ପରିଡ଼ା, ଉମାଶଙ୍କର ପଣ୍ଡା, ବେଣୁଧର ରାଉତ, ସୁଧାଂଶୁଶେଖର ରାୟ (ଲୁହର ଫସଲ), କୃଷ୍ଣଚରଣ ବେହେରା (ଖଜୁବାଇ ଲେନ୍), ଦୁର୍ଗାମାଧବ ମିଶ୍ରଙ୍କ ସାଧନା ଓ ସିଦ୍ଧ ଓଡ଼ିଆ କବିତାକୁ ପୁଷ୍କଳ

---

(୧) 'ମୁକୁଳ', 'ମଞ୍ଜରୀ' ।

(୨) ହେମନ୍ତୀ (୧୯୩୭), ଚନ୍ଦ୍ର ଓ ତାରା (୧୯୫୧), ନୀଳଚନ୍ଦ୍ରର ଉପତ୍ୟକା (୧୯୫୨), ନନ୍ଦାଦେବୀ (୧୯୬୨), ସରୀସୃପ (୧୯୬୧)

ଏବଂ ଋଦ୍ଧି ମନ୍ତ୍ର କରିପାରିଛି । ବ୍ରଜମୋହନ ପଣ୍ଡା (୧୮୯୦-୧୯୬୮)ଙ୍କ 'ଯୌବନ-ଗାଥା'ର ଗୀତିକବିତାଗୁଡ଼ିକ ଭାବବୈଚିତ୍ର୍ୟ ଏବଂ ବ୍ୟକ୍ତିଗତ ଅନୁଭୂତି ବର୍ଣ୍ଣନାରେ ପୂର୍ଣ୍ଣ ।

ଏହି ସମୟରେ ନିର୍ମଳା ଦେବୀ, ହରପ୍ରିୟା ଦେବୀ, ଦେବଦୂତୀ ଦେବୀ, ବିଦ୍ୟୁତ୍‌ପ୍ରଭା ପ୍ରଭୃତି ନାୟିକବିଙ୍କର ବହୁ କବିତା ପ୍ରକାଶିତ ହୋଇଛି । କବିତାରେ ନୂତନ ଦୃଷ୍ଟିକୋଣ, ନୂତନ ଶୈଳୀ, ନୂତନ ସଂଜ୍ଞାପାଇଁ ବ୍ୟାକୁଳ ଅନୁସନ୍ଧାନ ଏବଂ ପ୍ରତିଯୋଗିତା ଚାଲିଥିବା ସମୟରେ ପ୍ରାଚୀନ କାବ୍ୟ ପରମ୍ପରାର ଅନୁସରଣରେ ମଧ୍ୟ କାବ୍ୟ କବିତା ଲେଖାଯାଇଛି । ବିଚ୍ଛନ୍ଦ ଚରଣ ପଟ୍ଟନାୟକ (୧), ଜୟକୃଷ୍ଣ ମିଶ୍ର (୨), ଗୋଲୋକଚନ୍ଦ୍ର ପ୍ରଧାନ (୩), ମାଧବଚନ୍ଦ୍ର ଦାସ, ଭ୍ରମରବର ରାୟ ପ୍ରମୁଖଙ୍କ ପାରମ୍ପରିକ ଭାବରେ କାବ୍ୟ କବିତା ରଚନା ସ୍ମରଣୀୟ ।

ଷଷ୍ଠ ଦଶକର ସମାପ୍ତି ପୂର୍ବରୁ, ବିଶେଷତଃ ସପ୍ତଦଶକର ପ୍ରାରମ୍ଭରେ, ଓଡ଼ିଆ କାବ୍ୟ କବିତାର ସମ୍ପୂର୍ଣ୍ଣ ନବକଳେବର ପର୍ବ ଆରମ୍ଭ ହୋଇଥିଲା । ଏହି ସମୟର ନବାଗତ ତରୁଣମାନେ କବିଜୀବନର ମୂଲ୍ୟବୋଧ ବିପର୍ଯ୍ୟୟ, ସାମାଜିକ ଅସ୍ଥିରତା, ସ୍ୱାଧୀନତା ନାମରେ ଦେଶରେ ମୁଣ୍ଡ ଟେକି ଉଠୁଥିବା ନ୍ୟସ୍ତସ୍ୱାର୍ଥର ଚରମ ପ୍ରତାରଣା ଓ ଅର୍ଥନୈତିକ ଶୋଷଣ ବିରୋଧରେ ଖଡ଼୍‌ଗହସ୍ତ ହୋଇଉଠିଲେ । ଏହା ସହିତ ପାକିସ୍ତାନ-ଭାରତ, ଚୀନା-ଭାରତ ଯୁଦ୍ଧ ଦେଶରେ ଅଭୂତପୂର୍ବ ଜନ-ଜାଗରଣ ସୃଷ୍ଟି କରିଥିଲା । ଏତାଦୃଶ ବିବିଧ ରାଜନୈତିକ, ସାମାଜିକ ଘଟଣା ଏବଂ ଗଣତାନ୍ତ୍ରିକ ସମାଜବାଦ ପ୍ରତିଷ୍ଠାର ଆହ୍ୱାନ, ବାମପନ୍ଥୀ ରାଜନୀତିଜ୍ଞମାନଙ୍କର ଉଗ୍ର ବୈପ୍ଳବିକ ଆଭିମୁଖ୍ୟ ଆଲୋଚ୍ୟ ଦଶକର ଓଡ଼ିଆ କବିତାକୁ ମୁକାବିଲାର ଅସ୍ତ୍ରରୂପେ ଗଢ଼ି ପାରିଛି ।

୧୯୬୦ ମସିହା ପରବର୍ତ୍ତୀ ଓଡ଼ିଆ କବିତାର ଗୁଣାତ୍ମକ ପରିବର୍ତ୍ତନ ଏବଂ ବିବିଧତାର ଏକ ପ୍ରଧାନ ହେତୁ ହେଉଛି ଆଲୋଚ୍ୟ ସମୟରେ ପ୍ରକାଶିତ ଅସଂଖ୍ୟ ପତ୍ରପତ୍ରିକା । ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ଉତ୍ସାହୀ ଯୁବଲେଖକମାନଙ୍କ ଉଦ୍ୟମରେ ବିଭିନ୍ନ ସମୟରେ ବହୁ ପରିମାଣରେ ପତ୍ର ପତ୍ରିକା ଆତ୍ମପ୍ରକାଶ କରିପାରିଛି । ଫଳରେ ପ୍ରତ୍ୟେକ ପତ୍ରିକାରେ ଭିନ୍ନ ରଙ୍ଗ, ଭିନ୍ନ ସ୍ୱର, ଭିନ୍ନ ଆବେଦନର କ୍ଷୁଦ୍ର କବିତା ପ୍ରକାଶିତ ଏବଂ ପ୍ରସାରିତ ହୋଇପାରିଛି । କବିତାର ରୂପାତ୍ମକ ବିଭିନ୍ନତାର ଏକ ପ୍ରଧାନ ଆଭିମୁଖ୍ୟ ହେଉଛି ମୁକ୍ତଛନ୍ଦ କିମ୍ବା ଗଦ୍ୟଛନ୍ଦ କିମ୍ବା ଛନ୍ଦହୀନତା । ପୂର୍ବ ଯୁଗର ଛନ୍ଦୋବଦ୍ଧ କବିତାର ସ୍ୱରୂପ ଏବଂ ସଂଜ୍ଞା ଉଦ୍‌ବୃଦ୍ଧ

---

(୧) କବିତା-କୁମୁଦ (୨) ମଣିମଞ୍ଜୁଳା, ମାଲ୍ୟଗିରି, ଅଂଶୁପା, (୩) ଇନ୍ଦୁ ମତୀ ।

ତରୁଣ କବିମାନଙ୍କ ଲେଖନୀରେ ସଂପୂର୍ଣ୍ଣ ଭାବରେ ପରିବର୍ତ୍ତିତ ହୋଇଯାଇଛି । ସମକାଳୀନ ସମାଜର ଅନ୍ତଃଶୂନ୍ୟ ବିଦ୍ରୋହ, ଶୋଷଣ, ଅନ୍ୟାୟ ବିରୋଧୀ ଆହ୍ୱାନ, କେତେପୟ ଉଗ୍ରପନ୍ଥୀ, ତରୁଣ ପନ୍ଥୀ କବିମାନଙ୍କ କବିତାରେ ଏକ ନୂତନ ପର୍ଯ୍ୟାୟରେ ମୂର୍ଚ୍ଛିତ ହେବାକୁ ଲାଗିଲା । ପାରମ୍ପରିକ ପ୍ରେମ ଓ ପ୍ରଣୟକୁ ରୂପାୟିତ କରିବାକୁ ଯାଇ ମଧ୍ୟ ଆଧୁନିକ କବି ନୂତନ ଚିତ୍ରକଳ୍ପ, ନୂତନ ଶବ୍ଦ ଯୋଜନା ଏବଂ ସଂପୂର୍ଣ୍ଣ ନୂତନ ମୁକ୍ତଛନ୍ଦ ଶୈଳୀର ଆଶ୍ରୟ ନେଇଛନ୍ତି । ପୁରାତନ ସହିତ ସାଂପ୍ରତିକ କବିତା ପ୍ରବାହର କୌଣସି ସଂପର୍କ ଦେଖାଯାଏ ନାହିଁ । ବିଷୟ, ଅଭିପ୍ରାୟ, ଆଙ୍ଗିକ ସମସ୍ତ ବିପର୍ଯ୍ୟସ୍ତ ଓ ପରିବର୍ତ୍ତିତ ହୋଇଯାଇଛି । ଅନୁଭୂତିର ତୀବ୍ରତା, ବୌଦ୍ଧିକ ପ୍ରଖରତାକୁ ରୂପ ଦେବାକୁ ଯାଇ ଆଧୁନିକ ଯୁବକବି ସମ୍ଭବତଃ ଅନିଚ୍ଛାକୃତ ଭାବରେ ଦୁର୍ବୋଧ ଏବଂ ଅବୋଧ ହୋଇଯାଇଛି ବୋଲି ପାଠକର ପ୍ରବଳ ଅଭିଯୋଗ । ବ୍ୟକ୍ତିର ସ୍ଥିତି ଓ ତାଁର ଅହଂ, ବିବିଧ ପ୍ରବୃତ୍ତି, ସମାଜର ବିଭିନ୍ନ ପ୍ରତିକ୍ରିୟା ଆଧୁନିକ କବିତାକୁ ପୀଡ଼ିତ ଜନତାର ଖଣ୍ଡିତ ପ୍ରାଣର ପ୍ରତିନିଧି ରୂପକ ପ୍ରତିଫଳନ ହେବାକୁ ବାଧ କରିଛି ବୋଲି କବିମାନଙ୍କର ଦାବି । ମନସ୍ତାତ୍ତ୍ୱିକ ଦ୍ୱନ୍ଦ୍ୱ, ସାମାଜିକ ଅସ୍ଥିରତା କବିକୁ ପରୀକ୍ଷାବାଦୀ (Experimentalist), ବିଶେଷତଃ ଆଙ୍ଗିକ କ୍ଷେତ୍ରରେ ଅନୁକରଣପ୍ରିୟ କରିପାରିଛି । କବିର ବ୍ୟକ୍ତିମାନସ ଏବଂ ତାହାର ଜଟିଳ ପରିବେଶରେ ଥିବା ଗଣମାନସ ଗୋଟାଏ ବିନ୍ଦୁରେ ଯେପରି ମିଳିତ ହୋଇଥାନ୍ତି ଏବଂ ପର ମୁହୂର୍ତ୍ତରେ ପରସ୍ପରଠାରୁ କରୁଣଭାବରେ ବିଚ୍ଛିନ୍ନ ହୋଇଥାନ୍ତି । ଆଧୁନିକ କବି ବୌଦ୍ଧିକ କ୍ଷେତ୍ରରେ ଜନସମାଜର ପ୍ରତିନିଧିତ୍ୱ କରିଛି ବୋଲି ତାହାର ପ୍ରଚଣ୍ଡ ଦାବି । ମାତ୍ର ସେ ଏତେ ପରିମାଣରେ ଆଙ୍ଗିକ ସଚେତନ ଯେ ସେ ତାହାର କଳା-ଶିଳ୍ପ ମଧ୍ୟରେ ନିଜକୁ ହଜାଇଦିଏ ଏବଂ ତଦ୍ଦ୍ୱାରା ସାଧାରଣ ପାଠକର ପରିଧିର କକ୍ଷଚ୍ୟୁତ ହୋଇପଡ଼େ । ସାଂପ୍ରତିକ ଜଟିଳ ଚିନ୍ତା ଏବଂ ଚେତନାର ପରିପ୍ରକାଶ ସରଳ, ବୋଧଗମ୍ୟ ନ ହୋଇ ଜଟିଳ ଏବଂ ଦୁର୍ବୋଧ ବୋଲି ପାଠକଙ୍କର ଧାରଣା । ପାରମ୍ପରିକ ଆଙ୍ଗିକର ଏକାନ୍ତ ବିରୋଧ ହିଁ ସମ୍ଭବତଃ କବିତା କ୍ଷେତ୍ରରେ ସମସ୍ତ ସଂଘର୍ଷ ଏବଂ ଅନ୍ତରାୟର ହେତୁ । ମାତ୍ରାଧିକ ବୌଦ୍ଧିକ ପାଣ୍ଡିତ୍ୟ ଏବଂ ବିଗ୍ରହ ଯେପରି କବିର କବିତା-ଶିଳ୍ପ ଏବଂ ପାଠକର ଅବଗାହନ କ୍ଷମତା ମଧ୍ୟରେ ଅସହିଷ୍ଣୁତାର ପ୍ରାଚୀର ଠିଆକରିଇପାରିଛି । ଗତିଶୀଳ କବିଚେତନା ସହିତ ସ୍ଥିତିଶୀଳ ଗଣ-ମାନସର ବିରୋଧ ଏବଂ ଦ୍ୱନ୍ଦ୍ୱ ଶବ୍ଦଶିଳ୍ପ କ୍ଷେତ୍ରରେ କଦାପି କାମ୍ୟ ନୁହେଁ । ଆଧୁନିକ କବି ରହସ୍ୟମୟ ଏବଂ ଦୁର୍ବୋଧ ।

ଶ୍ରୀ ରମାକାନ୍ତ ରଥ (୧୯୩୪) ଏହି ଦଶକରେ ଜଣେ ଅନୁପ୍ରାଣିତ କବି । ଛାତ୍ରଜୀବନରୁ କାବ୍ୟକବିତା ରଚନା ପ୍ରତି ସେ ଆକୃଷ୍ଟ ହୋଇଥିଲେ ଏବଂ ପଞ୍ଚ-

ପତ୍ରିକାମାନଙ୍କରେ ଲେଖିଥିଲେ । ତାଙ୍କ କବିତାର ମୁଖ୍ୟ ଆବେଦନ ପ୍ରେମ ଏବଂ ପ୍ରେମର ପୃଷ୍ଠଭୂମିରେ ପରିବର୍ତ୍ତିତ ସାମାଜିକ ମୂଲ୍ୟବୋଧ । ଏ ପର୍ଯ୍ୟନ୍ତ ପ୍ରକାଶିତ କବିତାଗୁଚ୍ଛ (୧)ର କବିତା ଗୁଡ଼ିକରେ ତାଙ୍କର ବୈଶିଷ୍ଟ୍ୟ ସୁସ୍ପଷ୍ଟ । ସମାଜ ବିରୋଧରେ ବିଦ୍ରୋହ, ବ୍ୟକ୍ତିର ଅସହାୟ ଜୀବନର ଯନ୍ତ୍ରଣାବୋଧ ଏବଂ ସମସ୍ତ ଜଞ୍ଜାଳ, କବିତା ମଧ୍ୟରେ ଅନିବାର୍ଯ୍ୟ ନୀରବତା ତାଙ୍କର 'ଗରୁଡ଼', 'ଲଣ୍ଠନ', 'ଚିଲ', 'ଘଣ୍ଟା' ଓ 'ଅରୁନ୍ଧତୀ' କବିତାରେ ପରିଲକ୍ଷିତ । ତାଙ୍କ କବିତାର ଆଙ୍ଗିକ ସଚେତନତା ଏବଂ ଶବ୍ଦ-ଶିଳ୍ପ ଯୋଜନା ପରିସ୍ଥିତି ଓ ପରିବେଶ ଯୋଗୁଁ ସମ୍ଭବ ହୋଇଥାଏ ।

ବ୍ୟକ୍ତିଗତ ଜୀବନଚର୍ଯ୍ୟାର ପରବର୍ତ୍ତୀ ସ୍ତରରେ ଅନେକ ଶିକ୍ଷିତ ବ୍ୟକ୍ତି ଓଡ଼ିଆ କାବ୍ୟ କବିତା ପ୍ରତି ଆକୃଷ୍ଟ ହୋଇଥିବାର ଦେଖାଯାଏ । ଶ୍ରୀ ଦୀପକ ମିଶ୍ର (୨) ସାଂପ୍ରତିକ ସାମାଜିକ ସ୍ଥିତି ମଧ୍ୟରେ ଯେପରି ଅଣନିଃଶ୍ୱାସୀ ହୋଇ ପଡ଼ିଛନ୍ତି । ସେଥିପାଇଁ ତାଙ୍କର ଅଧିକାଂଶ କବିତା ବୌଦ୍ଧିକ ଦାର୍ଶନିକତା ଦ୍ୱାରା ଚିହ୍ନିତ । ମୃତ୍ୟୁ-ଚେତନା ଓ ଜୀବନକୁ ଏକ ମୋହିତ ଦୃଷ୍ଟିରେ ପୁନଃ ପୁନଃ ଦର୍ଶନ ତାଙ୍କ କବିତାର ଅନ୍ୟ ଏକ ଦିଗ । ପୌରାଣିକ ପ୍ରତୀକ ମାଧ୍ୟମରେ ପାଠକଙ୍କର ଧ୍ୟାନ ପୁରାଣ ପ୍ରତି ଆକୃଷ୍ଟ କରିବା ତାଙ୍କର ଲକ୍ଷ୍ୟ । କେତୋଟି କବିତା, ଯଥା— 'ଜୀବନ ଯନ୍ତ୍ରଣା', 'ଶରୀର ମୋହ', 'ନିଷିଦ୍ଧ ହୃଦର ଜ୍ୱଳନ', 'ନିର୍ଜନ ନକ୍ଷେତ୍ର', 'ଶୁକ ପରୀକ୍ଷିତ' ସମ୍ବାଦ ଆଦି କବିଙ୍କର ତୀବ୍ର କାବ୍ୟ-ମାନସର ପରିଚାୟକ । ଶ୍ରୀ ସୀତାକାନ୍ତ ମହାପାତ୍ରଙ୍କର କବିତାଗ୍ରନ୍ଥ (୩) 'ଦୀପ୍ତି ଓ ଦ୍ୟୁତି', 'ଅଷ୍ଟପଦୀ', 'ଶବ୍ଦର ଆକାଶ' ପ୍ରକାଶିତ ହୋଇଛି । ଜୀବନର ଅନୁଭୂତିକୁ ନିଜସ୍ୱ ଭଙ୍ଗୀରେ ଏବଂ ପୌରାଣିକ ପୃଷ୍ଠଭୂମିରେ ପ୍ରକାଶ କରିବାରେ ତାଙ୍କର ଦକ୍ଷତା ସ୍ପଷ୍ଟ । ଜୀବନ ଓ ସମାଜର ଯନ୍ତ୍ରଣା, ଦର୍ଶନ ଓ ପ୍ରାଚୀନତାର ତର୍ଜମାରେ ତାଙ୍କର କବିତାଗୁଡ଼ିକ ଅର୍ଥପୂର୍ଣ୍ଣ । ଶ୍ରୀ ବନମାଳୀ ସେନାପତିଙ୍କର ବହୁ ସ୍ୱଳ୍ପାୟୁ କବିତା (୪)ରେ ଆଙ୍ଗିକଗତ ନୂତନତ୍ୱ ତଥା ସାମାଜିକ ନିଃସଙ୍ଗତା ପ୍ରତିଫଳିତ ।

---

(୧) କେତେଦିନର (୧୯୬୨), ଅନେକ କୋଠରି (୧୯୬୭), ସଂଦିଗ୍ଧ ମୃଗୟା (୧୯୭୧) ।

(୨) ଦୀପକ ମିଶ୍ରଙ୍କ କେତୋଟି କବିତା ।

(୩) ଦୀପ୍ତି ଓ ଦ୍ୟୁତି, ଅଷ୍ଟପଦୀ, ଶବ୍ଦର-ଆକାଶ ।

(୪) ସଂକଳନ—ମେଘଚକ୍ର—(୧୯୬୦), ନିଷିଦ୍ଧ କବିତା (୧୯୬୮), ଯନ୍ତ୍ରଣାର କାବ୍ୟ (୧୯୭୩)

ଶ୍ରୀ ରବୀନ୍ଦ୍ରନାଥ ସିଂହଙ୍କ କବିତା ସମାଜରେ ଅର୍ଥନୈତିକ ଶୋଷଣ ଏବଂ ସାମାଜିକ ଅନ୍ୟାୟ ବିରୋଧରେ ଯେପରି ଆହ୍ୱାନ ଜଣାଇଥାଏ । ଶ୍ରୀ ଦୁର୍ଗାଚରଣ ପରିଡ଼ାଙ୍କ କ୍ଷୁଦ୍ର କ୍ଷୁଦ୍ର କବିତାରେ ଗ୍ରାମ୍ୟ ପରିବେଶର ମନୋହାରିତା ସ୍ପଷ୍ଟ ।

ଓଡ଼ିଆ କାବ୍ୟ କବିତା କ୍ଷେତ୍ରରେ ସପ୍ତମଦଶକ ଏକ ବିରାଟ ବିସ୍ଫୋରଣର ସମୟ । ଉଭୟ ପୂର୍ବ ଏବଂ ଉତ୍ତର ସତୁରୀରେ ଓଡ଼ିଆ କାବ୍ୟ-କବିତାର ସ୍ୱର ଏକ ସଂପୂର୍ଣ୍ଣ ଭିନ୍ନ ଜଗତର ସ୍ୱର ବୋଲି ଜଣାଯାଏ । ଅତ୍ୟଧିକ ପାଶ୍ଚାତ୍ୟ ପ୍ରଭାବ ଓ ପରୀକ୍ଷା ନିରୀକ୍ଷାର ପ୍ରଲୋଭନ କବିତାକୁ ଏକାନ୍ତଭାବରେ ବୌଦ୍ଧିକ କସରତର ଗଦ୍ୟଧର୍ମୀ କରିପାରିଛି । ଭାଷା, ରୂପକ ଓ ଉପମା ପ୍ରୟୋଗରେ ଯୁବକମାନେ ବେପରୁଆ ଭାବରେ ସ୍ୱକୀୟତା ପ୍ରଦର୍ଶନ କରିବାକୁ ପକ୍ଷପାତୀ । ପାରମ୍ପରିକ ସ୍ୱର, ଗତାନୁଗତିକ ଶବ୍ଦଯୋଜନା, ଶୈଳୀଜ ଅନୁକୃତି ଆଦି କବିତାରେ ପରିତ୍ୟକ୍ତ । ଏକ ସମ୍ପୂର୍ଣ୍ଣ ନୂତନ ସାମାଜିକ ଦର୍ଶନ ଏବଂ ଦାର୍ଶନିକ ଜଟିଳତା ଏହି ସମୟର କବିମାନଙ୍କ ଚିନ୍ତାଧାରାକୁ ପ୍ରଭାବିତ କରିପାରିଛି । ନିଜ ଗୋଷ୍ଠୀର ଦର୍ଶନ ଓ ଆଦର୍ଶର ଅନୁରୋଧରେ ତରୁଣ କବି ସ୍ୱତନ୍ତ୍ର ଧାରାର କବିତା ଲେଖିଛନ୍ତି । ଫଳରେ କବିତା ଗୋଷ୍ଠୀଚେତନାଦ୍ୱାରା ଚିହ୍ନିତ ହୋଇପାରିଛି । 'ଅନାମ ଗୋଷ୍ଠୀ', 'ନକ୍ଷତ୍ର ଗୋଷ୍ଠୀ', 'ଉଦୟ ଗୋଷ୍ଠୀ', 'ଅବାଧ ଗୋଷ୍ଠୀ', 'ଅବଧୂତ ଗୋଷ୍ଠୀ' ଫଳେଇତରେ କବିତା ଭାସ୍ୱର । ନିର୍ଦ୍ଦିଷ୍ଟ ବାମପନ୍ଥୀ ଚେତନା, ସାମାଜିକ ଭାବତତ୍ତ୍ୱ ପ୍ରୟୋଗବାଦିତା, ବ୍ୟକ୍ତିଧର୍ମୀ ଆତ୍ମକୈନ୍ଦ୍ରିକତା ସାଂପ୍ରତିକ କବିତାକୁ ପରୀକ୍ଷା ନିରୀକ୍ଷାର ଏକ ଜଟିଳ ବିନ୍ଦୁରେ ଉପନୀତ କରିପାରିଛି । ବ୍ୟକ୍ତି, ସମାଜ, ଶିଳ୍ପ, ରାଜନୀତି ଯେପରି ସଂକଟର ସମ୍ମୁଖୀନ, ଆଧୁନିକ କବିତା ବ୍ୟକ୍ତିର ନୈରାଶ୍ୟବୋଧ, ବେଦନାବୋଧ ଏବଂ ନିଃସଙ୍ଗତାର ଅନ୍ଧମୁହାଣୀ ମଧ୍ୟରେ ଯେପରି ଗୃହାଶୂନ୍ୟ । କବି-ମାନସ କ'ଣ ତେବେ ଯୁଗୀୟ ସଂଶୟ ? ଦ୍ୱନ୍ଦ୍ୱ ମଧ୍ୟରେ ଭାରାକ୍ରାନ୍ତ ? ଯୁଗର ଜ୍ୱାଳା ବ୍ୟକ୍ତ କରିବାକୁ ଯାଇ କବି କଅଣ ତେବେ ନିଜ ଯନ୍ତ୍ରଣାରେ ଅସ୍ଥିର ଏବଂ ବିଚଳିତ ?

କ୍ରମେ କ୍ରମେ ଓଡ଼ିଆ କାବ୍ୟ କବିତାର ମଣ୍ଡପ ବହୁ ରଙ୍ଗ, ବହୁ ବର୍ଣ୍ଣ ଓ ବହୁ ନିର୍ମାଣକଳାରେ ଉଦ୍‌ଭାସିତ । ବ୍ୟକ୍ତି ଓ ସମାଜ, ସମାଜ ଓ ବୃହତ୍ତର ବିଶ୍ୱ ମଧ୍ୟରେ ମାନସିକ ସ୍ତରରେ ଯୋଗାଯୋଗ ସ୍ଥାପନ ପାଇଁ ଆଧୁନିକ କବି ଆଗ୍ରହୀ; ମାତ୍ର ତା'ର କବିତା-ଶିଳ୍ପର ସେହି ପରିମାଣରେ ବୋଧିତା ଅଛି କି ?

ସର୍ବଶ୍ରୀ ହରିପ୍ରସାଦ ଦାସ, ଜଗନ୍ନାଥପ୍ରସାଦ ଦାସ, ହରିହର ମିଶ୍ର, ମୁରାରିମୋହନ ଜେନା, ବଂଶୀଧର ଷଡ଼ଙ୍ଗୀ, ଚଣ୍ଡୀଚରଣ କର, ସୌଭାଗ୍ୟ ମିଶ୍ର (୧)

(୧) ଆତ୍ମନେପଦୀ, ମଧ୍ୟପଦଲୋପୀ, ନଈ ପହଁରା ।

ଫଣୀ ମହାନ୍ତି (୧), ରଘୁନାଥ ସେନାପତି, ରାଜେନ୍ଦ୍ର କିଶୋର ପଣ୍ଡା, ପ୍ରଫୁଲ୍ଲ ତ୍ରିପାଠୀ, ମହେଶ୍ୱର ପଣ୍ଡା, ନୃସିଂହ କୁମାର ରଥ, ବିବେକ ଜେନା (୨) ପ୍ରସନ୍ନ ପାଟଶାଣୀ ପ୍ରଭୃତିଙ୍କ କବିତା ସମାଜରେ ମୂଲ୍ୟବୋଧର କରୁଣ ବିପର୍ଯ୍ୟୟ ପ୍ରତି ଅଂଗୁଳି ନିର୍ଦ୍ଦେଶ କରିଥାଏ । ପ୍ରହରାଜ ସତ୍ୟନାରାୟଣ ନନ୍ଦଙ୍କର କବିତା ସଂଗ୍ରହ (୩) ଏବଂ କମଳାକାନ୍ତ ଲେଙ୍କାଙ୍କର କବିତାମାନ (୪) ତୀବ୍ର ଜୀବନ ଜିଜ୍ଞାସାନୁପ୍ରେରିତ । ଏହି ଶିଳ୍ପୀମାନଙ୍କ କବିତାରେ ଉଭୟ ଆଙ୍ଗିକ ଏବଂ ଭାବଗତ ସମାନତା ବିଦ୍ୟମାନ । ମନୋଜ ଦାସ କ୍ଷୁଦ୍ର ଗଳ୍ପର ସ୍ରଷ୍ଟା । ତଥାପି ତାଙ୍କର ଲେଖନୀ କବିତା ସୃଷ୍ଟି କରି-ପାରିଛି । (୫)

ଶ୍ରୀ ନିତ୍ୟାନନ୍ଦ ପତି, ଶ୍ରୀ ଗୋପାଳ କୃଷ୍ଣ ରଥ ଏବଂ ଶ୍ରୀ ସୌରୀନ୍ଦ୍ର-ବାରିକଙ୍କର କବିତା-ଶିଳ୍ପ ପ୍ରଜ୍ଞାନୁପ୍ରେରିତ । ଶ୍ରୀ ରାଜେନ୍ଦ୍ର ପଣ୍ଡାଙ୍କ କବିତା ଜୀବନର ଗହନ ରହସ୍ୟ ଉଦ୍‌ଘାଟନ କରିବାରେ ଇଂଗିତପୂର୍ଣ୍ଣ । ଏହି କବିମାନେ ରୂପକ ପ୍ରୟୋଗ, ପରଂପରା ବିରୋଧୀ ଭାଷା ପ୍ରତି ଅଧିକ ସଚେତନ । ୧୯୭୦ର କବିର କବିତାରେ ପ୍ରକାଶଭଂଗୀର ଜଟିଳତା, କାବ୍ୟ ଚେତନାର ନିଚ୍ଛକ ବୌଦ୍ଧିକତା ଓ ଶିଳ୍ପ-କୌଶଳର ଗାମ୍ଭୀର୍ଯ୍ୟ ହିଁ ବିଶେଷଭାବରେ ଉଲ୍ଲେଖଯୋଗ୍ୟ । ଶ୍ରୀ ପ୍ରମୋଦ କୁମାର ମହାନ୍ତିଙ୍କ କବିତା (କ୍ରମଶଃ ୧୯୬୭) ନୂତନ କାବ୍ୟ ସ୍ୱରକୁ ବେଶ୍ ପ୍ରତିଫଳିତ କରାଇପାରିଛି । ଲକ୍ଷ୍ମୀଧର ନାୟକ (ଖୋଲଝର୍କା, ୧୯୬୮), ବିଭୂଦତ୍ତ ମିଶ୍ର (ଶହେଟି ସନେଟ, ୧୯୭୩), ମୋହନ ଗୃନ୍ଦ ପାଢ଼ୀ (ସୂର୍ଯ୍ୟ ସେପାରି ନଈ ୧୯୬୫), ରଘୁନାଥ ଧଳ ସାମନ୍ତ (ନିଃସଙ୍ଗ, ୧୯୬୪), ଲକ୍ଷ୍ମୀନାରାୟଣ ମହାପାତ୍ର (ସ୍ଥିତ ଗୋଟିଏ ଆତ୍ମାର, ୧୯୭୨), ଗୋବିନ୍ଦ ଦାସ (ଜାତକ, ୧୯୬୫), ବ୍ରଜମୋହନ ମହାନ୍ତି (କୁଆଁ ତାରାର କାବ୍ୟ, ୧୯୬୫), ବୈଷ୍ଣବ ଚରଣ ସାମଲ (ସମୟର ଲିପି), ବ୍ରହ୍ମାନନ୍ଦ ଦାସ (ଧରଣୀ ଓ ଝରଣା, ୧୯୬୫), ମୁକୁନ୍ଦ ପ୍ରସାଦ ମହାନ୍ତି (ଅଶ୍ରୁର ଦୀର୍ଘ ଶ୍ୱାସ ୧୯୬୭)—ତରୁଣ କବିଙ୍କର କବିତା ଯୁଗର ଆହ୍ୱାନ ଦ୍ୱାରା ପ୍ରଭାବିତ । ବିଶେଷତଃ କବିତାର ପରିବର୍ତ୍ତିତ ଆଙ୍ଗିକ ପ୍ରତିଫଳିତ କରିବା ଲାଗି ସମସ୍ତେ ଚେଷ୍ଟିତ । ବ୍ରହ୍ମୋତ୍ରୀ ମହାନ୍ତି, ମନୋରମା ମହାପାତ୍ର, ପ୍ରତିଭା ଦେବୀ, ଗିରିବାଳା ମହାନ୍ତିଙ୍କର ବିଭିନ୍ନ ସମୟରେ ଲିଖିତ କବିତାରେ ସମସାମୟିକ ସମାଜର ପ୍ରତିକ୍ରିୟା ପ୍ରତିଫଳିତ । ତୁଳସୀ ଦାସ ସାଧନା ବଳରେ ନିଜ କବିତାରେ ଏକ ସ୍ୱତନ୍ତ୍ର ଧାରା

---

(୧) ମାନଚିତ୍ର । (୨) ପବନର ଘର ।

(୩) ନୀଳ ହଂସର ଜ୍ୱାଳା, ଅନ୍ତଃପତନର ଛନ୍ଦ ।

(୪) ସୁନା ଫସଲ, ପ୍ରୀତି ଓ ପ୍ରତୀତି, ଉତ୍ତରଣ, ସ୍ମରଣ ବିସ୍ମରଣ ।

(୫) ଉପନିବେଶ (୧୯୬୭) ।

ସୃଷ୍ଟି କରିପାରିଛନ୍ତି । ଗତ ପାଂଚ ସାତ ବର୍ଷ ମଧ୍ୟରେ ଉଚ୍ଚଶିକ୍ଷାର୍ଥୀ ବହୁ ଯୁବକ ଓଡ଼ିଆ କାବ୍ୟ କବିତା କ୍ଷେତ୍ରରେ ଲେଖନୀ ଚାଳନା କରୁଛନ୍ତି ଏବଂ ପତ୍ରପତ୍ରିକାରେ ପ୍ରକାଶିତ ଅଜସ୍ର କବିତା ମଧ୍ୟରେ ଅନେକ ପ୍ରତିଶ୍ରୁତିପୂର୍ଣ୍ଣ ସୃଷ୍ଟି ପରିଲକ୍ଷିତ ହୁଏ ।

ଓଡ଼ିଆ ପତ୍ରପତ୍ରିକାର ପ୍ରସାର ଯୋଗୁଁ ଅତ୍ୟାଧୁନିକ ବୁଦ୍ଧିବାଦୀ କବିତ୍ୱକ ଆବେଗ-ପ୍ରଧାନ କବିତାର ପ୍ରସାର ସମ୍ଭବ ହୋଇଛି । ୧୯୫୦ ମସିହା ପୂର୍ବରୁ ଯେଉଁ କବିମାନେ ଲେଖୁଥିଲେ ସେମାନେ ଏବେ ମଧ୍ୟ କବିତା ଲେଖୁଛନ୍ତି । କିଏ ପ୍ରାଚୀନ, କିଏ ନବୀନ, କିଏ ରକ୍ଷଣଶୀଳ, କିଏ ପ୍ରଗତିବାଦୀ କହିବା ସମ୍ଭବ ନୁହେଁ । କାରଣ ୧୯୬୦ ମସିହାର ପ୍ରାକ୍‌କାଳରେ ଯେଉଁ କବିତା ପ୍ରଗତିବାଦୀ ବୋଲି ବିବେଚିତ ହେଉଥିଲା, ଠିକ୍ ପାଞ୍ଚବର୍ଷ ପରେ ସେହି କବିତା ଅନଗ୍ରସର ବୋଲି ପରିଚିତ ହେଲା । ଏହି ପ୍ରସଂଗରେ କବିତାର ଆଧୁନିକତା ଏବଂ ପ୍ରଗତିଶୀଳତାର ସଂଜ୍ଞା ଓ ସ୍ୱରୂପ କଅଣ ତାହା ସଂକ୍ଷେପରେ ବିଚାର କରାଯାଇପାରେ ।

ଉତ୍କୃଷ୍ଟ ଏବଂ ପ୍ରଗତିଶୀଳ କବିତାର ଲକ୍ଷଣ ହେଉଛି ତା'ର ଅନ୍ତର ନିହିତ ସାର୍ବଜନୀନ ସମ୍ବେଦନଶୀଳତା, ସଂଗଠନ ଶିଳ୍ପ ଏବଂ ବ୍ୟକ୍ତି ଓ ସମାଜକୁ ଊର୍ଦ୍ଧ୍ୱ-ମାନସ ପ୍ରଦେଶକୁ ଉତ୍ତରିତ କରିବାର କ୍ଷମତା । ଏହି ମାନଦଣ୍ଡରେ ବିଚାର କଲେ ପାଂଚଶତ ବର୍ଷ ପୂର୍ବେ ରଚିତ ହୋଇଥିବା କାବ୍ୟ କବିତା ପ୍ରାଚୀନ ରକ୍ଷଣଶୀଳ ନୁହେଁ କି ଅତ୍ୟାଧୁନିକ ଯୁଗରେ ରଚିତ ହୋଇଥିବା କାବ୍ୟ କବିତା ପ୍ରଗତିଶୀଳ ନୁହେଁ । ପ୍ରଚାରଦ୍ୱାରା କୌଣସି କବିତାର ଗୁଣ, ବୈଶିଷ୍ଟ୍ୟ ସାବ୍ୟସ୍ତ କରାଯାଇ ନପାରେ । ପେଶାଦାରୀ ରାଜନୀତିରେ ସ୍ଲୋଗାନ ପାଇଁ ସ୍ଥାନ ଥାଇପାରେ । ମାତ୍ର ସାମାଜିକ ପୃଷ୍ଠଭୂମିରେ ପରିକଳ୍ପିତ କବିତା କଳା ଓ ସ୍ଲୋଗାନ୍ ନୁହେଁ, ଏହା ଚିରନ୍ତନ ସତ୍ୟବାଣୀର ଅନୁରୂପ । ଆଧୁନିକ ପାଶ୍ଚାତ୍ୟ କାବ୍ୟକବିତା କ୍ଷେତ୍ରରେ ସୁପରିଚିତ ଟମାସ୍ ଇଲିୟଟ୍ ମଧ୍ୟ ସୃଜନାତ୍ମକ କାବ୍ୟ-କବିତା କ୍ଷେତ୍ରରେ ପରଂପରାର ଭୂମିକାକୁ ମଧ୍ୟ ସ୍ୱୀକାର କରିଥିଲେ—"No poet, no artist of any art has his complete meaning alone. His significance, his appreciation is the appreciation of his relation to the dead poets and artists.

ଯୁଗଧର୍ମ, ଯୁଗ ପରିବେଶ ଓ ସ୍ଥିତିରୁ ଆଧୁନିକ କବିତାର ଜନ୍ମ ! ପ୍ରତ୍ୟେକ ଯୁଗରେ ପ୍ରତ୍ୟେକ କାବ୍ୟ ସ୍ରଷ୍ଟା ପ୍ରକାଶ ଭଂଗୀର ନୂତନତ୍ୱ ଉପରେ ଗୁରୁତ୍ୱ ଦେଇଥାନ୍ତି । କବିତାର ସ୍ୱର ବଦଳି ଯାଇଛି । ସାହିତ୍ୟରେ କ୍ଲାସିସିଜିମ୍, ରୋମାଣ୍ଟି-ସିଜିମ, ନେଚରାଲିଜିମ୍, ରିଅଲିଜିମ୍ ପ୍ରଭୃତି ପ୍ରବୃତ୍ତିର ଉଦ୍ଵର୍ତ୍ତନ ସଂଗେ ସଂଗେ ଆଧୁନିକ କବିତାର ରୂପରଂଗ ମଧ୍ୟ ପରିବର୍ତ୍ତନସାପେକ୍ଷ ।



ତଥାପି ଆଧୁନିକ ପାଠକମାନଙ୍କର ଅଭିଯୋଗ ଯେ ଆଧୁନିକ କବିତା ଅତି ମାତ୍ରାରେ ଦୁର୍ବୋଧ । ଏହି ଅଭିଯୋଗ କେତେଦୂର ସତ୍ୟ ତାହା ସମୟ ହିଁ ପ୍ରମାଣ କରିବ । ତେବେ, କବିତାର ଭବିଷ୍ୟତ ଯେ କବିତା ନୁହେଁ, ଏହାର ସୂଚନା ସେହି କବିମାନଙ୍କର କବିତାରୁ ହିଁ ମିଳିପାରିବ । କବିତାର ଦୁର୍ବୋଧତା ବିବିଧ ପ୍ରକାର ହୋଇପାରେ—ଶାବ୍ଦିକ କ୍ଲିଷ୍ଟତା, ଆଙ୍ଗିକ କ୍ଲିଷ୍ଟତା, ଆଲଂକାରିକ କ୍ଲିଷ୍ଟତା କିମ୍ବା ଉପମା ରୂପକ ପ୍ରୟୋଗ ଜଟିଳତା ଏବଂ ସାମଗ୍ରିକ ଅର୍ଥ ଗ୍ରହଣରେ କବିତାର ଅସ୍ପଷ୍ଟତା । ତରୁଣ କବିଙ୍କ କବିତାରେ ଯୌନାଧିକ୍ୟ ବର୍ଣ୍ଣନା ଦୋଷାବହ ନୁହେଁ । କେବଳ ମାର୍କସୀୟ ଦୃଷ୍ଟିକୋଣ ମଧ୍ୟ କବିକୁ ଅଗ୍ରାମୀ କରି ନ ପାରେ । କବି ସାମାଜିକ ବିପ୍ଳବରେ ବିଶ୍ୱାସ କରେ କି ନାହିଁ କୌଣସି ପାଠକ କବିଠାରୁ ଏହି କୈଫିୟତ୍ ଦାବି କରେନାହିଁ ।

ଆଧୁନିକ କବିର ସ୍ରଷ୍ଟା-ମାନସ ବହୁ ପ୍ରତିକ୍ରିୟାର, ବହୁ ଘଟଣାର ସମ୍ମୁଖୀନ ହୋଇଥାଏ । ସେ ତେଣୁ 'ଯୌନ' ବର୍ଣ୍ଣନାର ପ୍ରତୀକ ଭାବରେ କୁକୁଡ଼ାକୁ ଗ୍ରହଣ କରିପାରେ, କିମ୍ବା ପୌଷର ପାଣ୍ଡୁର ଜ୍ୟୋତ୍ସ୍ନାକୁ ଚକ୍‌ଖଡ଼ି ରୂପେ ଗ୍ରହଣ କରିପାରେ । ବିଭିନ୍ନ ଜାଗତିକ ପଦାର୍ଥରେ ଉପମାତ୍ୱ ଆରୋପ କରିଗଲେ କବିର କଳ୍ପନା ଖୁବ୍ ଅଗ୍ରଗାମୀ । ସେଥିପାଇଁ ଆଧୁନିକ କବିର ଅନୁସନ୍ଧିତ୍ସୁ ମନ ଆବେଗ ଅପେକ୍ଷା ପ୍ରଜ୍ଞାଦ୍ୱାରା ବିଶେଷ ପ୍ରଭାବିତ । ଆଧୁନିକ କବିତା ଯେଉଁମାନେ ବୁଝିପାରୁ-ନାହାନ୍ତି, ସେମାନେ ଅଗ୍ରଗାମୀ ଚିନ୍ତାଧାରା ସହିତ ପରିଚିତ ନୁହନ୍ତି, ନା ଯେଉଁମାନେ ଲେଖୁଛନ୍ତି, ସେମାନେ ପାଠକମାନଙ୍କର ସ୍ତର (standard) ସହିତ ପରିଚିତ ନୁହନ୍ତି ? ଆଜିର କବିତା ସ୍ମୃତିର ସପ୍ତସମୁଦ୍ର ମନ୍ଥନ କରି ଜୀବନର ବେଦନାବୋଧ ଏବଂ ଶୂନ୍ୟତାବୋଧକୁ ପ୍ରକାଶ କରୁଛି ବୋଲି କହିବାରେ ଯଥାର୍ଥତା କେଉଁଠି ? ତେବେ, ଚିନ୍ତା ଓ ଚେତନାର ଅତ୍ୟଧିକ ପ୍ରୟୋଗଦ୍ୱାରା କବିତା ଅଯଥା ଭାରାକ୍ରାନ୍ତ ନହେଉ ।

ଆଗାମୀ ଯୁଗରେ କେଉଁ କବିତା ଗତିଶୀଳ, ଗ୍ରହଣୀୟ ଏବଂ କାଳଜୟୀ ହେବ, ତାହାର ଭବିଷ୍ୟତବାଣୀ କହିବା କଣ ସହଜ ?

## ନାଟକ—

ପ୍ରଥମେ ଓଡ଼ିଆ ନାଟକ ସଂସ୍କୃତ ପରଂପରାରେ ରଚିତ ହେଲା । ଦୁଇ ହଜାର ବର୍ଷ ପୂର୍ବେ ହିନ୍ଦୁମାନେ 'ନାଟ୍ୟତତ୍ତ୍ୱ' ପ୍ରବର୍ତ୍ତନ କରିଥିଲେ । ଭରତ ତାଙ୍କର ନାଟ୍ୟଶାସ୍ତ୍ରରେ ଉଲ୍ଲେଖ କରିଥିଲେ ଯେ ବ୍ରହ୍ମା ଋକ୍ ବେଦରୁ ଶବ୍ଦ, ଯଜୁର୍ବେଦରୁ ଇଙ୍ଗିତ, ସାମବେଦରୁ ଗାନ, ଅଥର୍ବ ବେଦରୁ ରସ ଗ୍ରହଣ କରି ନାଟ୍ୟ

ରୂପ ପ୍ରବର୍ତ୍ତିନ କଲେ ଏବଂ ନାଟକ ପଞ୍ଚମ ବେଦ ନାମରେ ଅଭିହିତ ହୋଇଥିଲା । ନାଟ୍ୟକଳା ଧର୍ମ, ଅର୍ଥ, କାମ, ମୋକ୍ଷ ଚତୁଃବର୍ଗ ପ୍ରାପ୍ତି ନିମନ୍ତେ ସହାୟକ ବୋଲି ବିବେଚିତ ହୋଇଥିଲା । ଜୀବନର ନାଟକ ଥିଲା ସାମଗ୍ରିକ ସତ୍ତାର ପ୍ରତିଫଳନ ।

ସଂସ୍କୃତ ସାହିତ୍ୟରେ ଦୃଶ୍ୟକାବ୍ୟ ନାଟକ କିମ୍ବା ରୂପକ ନାମରେ ଅଭିହିତ । ଅଙ୍କ, ଦୃଶ୍ୟ, ନାନ୍ଦୀ, ସୂତ୍ରଧର, ବିଷ୍କମ୍ଭକ, ପ୍ରସ୍ତାବନା ପ୍ରଭୃତି ସଂସ୍କୃତ ନାଟକ ସଂଗଠନର ଲକ୍ଷଣ । ଗଣଜୀବନର ପ୍ରତ୍ୟକ୍ଷ ସାଂସ୍କୃତିକ ଏବଂ କଳାତ୍ମକ ପ୍ରକାଶ ପ୍ରତିଫଳନ ଭାବରେ ପ୍ରତ୍ୟେକ ଯୁଗରେ ନାଟକର ଉପାଦେୟତା, ଉପଯୋଗିତା ଏବଂ ଗୁରୁତ୍ୱପୂର୍ଣ୍ଣ ଭୂମିକା ସ୍ୱୀକୃତ । ଲୋକଜୀବନର ସୁଖ-ଦୁଃଖାନୁଭୂତି କିମ୍ବା ସର୍ବସାଧାରଣ ଜୀବନର ଅସ୍ଫୁରନ୍ତ ପ୍ରବାହ ଲୋକ-ସାହିତ୍ୟରେ ଶିକ୍ଷା, ସଭ୍ୟତାର ଅନ୍ତରାଳରେ ବାରିବାର ରୂପାୟିତ ହେଉଥାଏ । ସେଥିମଧ୍ୟରେ ନାଟ୍ୟ ନିକଟବର୍ତ୍ତୀ ବିଭିନ୍ନ ରଚନା ତାର ସର୍ବାପେକ୍ଷା ଅଧିକ ବିକାଶ ସମ୍ଭବ ହୋଇଥାଏ ବୋଲି ସାହିତ୍ୟ ସମୀକ୍ଷକମାନଙ୍କର ଧାରଣା—"Drama is a copy of life, mirror of custom and reflection of truth. (Nicoll). ନୃତ୍ୟ, ସଂଗୀତ, ଅଭିନୟ, ଯାତ୍ରା, ସୁଆଙ୍ଗ, ଲୀଳା ଏହିପରି ଏହି କଳାର ବିବିଧ ଅଭିମୁଖ୍ୟ । ସାଂପ୍ରତିକ ଯୁଗର ଯାନ୍ତ୍ରିକ ବିସ୍ତୃତି, ଶିଳ୍ପବିଜ୍ଞାନର କୋଲାହଳ ମଧ୍ୟରେ ଗଣଜୀବନର ଏହି କଳାତ୍ମକ ନାଟ୍ୟଧର୍ମୀ ପରିପ୍ରକାଶର ରୂପାନ୍ତର ତଥା ଭାବାନ୍ତର ଘଟିଅଛି । ତଥାପି ପ୍ରାଚୀନକାଳର ଯାତ୍ରା ହିଁ ଓଡ଼ିଆ ନାଟକର ମୂଳଭିତ୍ତି । ସେହି ଯାତ୍ରା, ସୁଆଙ୍ଗ, ଲୀଳାଆଦି କଳାମିଶ୍ରିତ ଏବଂ ଶୋଭନଯୁକ୍ତ ହୋଇ ଆଧୁନିକ ସୁସଜ୍ଜିତ ରଙ୍ଗମଞ୍ଚରେ ମାର୍ଜିତ ପରିବର୍ତ୍ତିତ ନାଟ୍ୟରୂପ ଧାରଣ କରିଛି । ପ୍ରାଚୀନ ଓଡ଼ିଶାର ରାମଲୀଳା, କୃଷ୍ଣଲୀଳା କିମ୍ବା ଲକ୍ଷ୍ମୀପୁରାଣ ସୁଆଙ୍ଗର ଆଧୁନିକ ପରିଣତି ହୋଇଛି ସାଂପ୍ରତିକ ନାଟକ । ଘଟଣାର ସମାବେଶ, ଗଳ୍ପର କ୍ରମପ୍ରସାର, ଚରିତ୍ର ଚିତ୍ରଣରେ ମାନବିକ ଅନୁଭୂତିର ନୂତନ ଅନୁଶୀଳନ, ଭାଷାର କଳାତ୍ମକତା, ସଂଳାପର ଗୁରୁତ୍ୱ, ସର୍ବୋପରି ଜୀବନତତ୍ତ୍ୱ, ସୂକ୍ଷ୍ମ ବ୍ୟାଖ୍ୟା, ପୁନଶ୍ଚ ରଙ୍ଗମଞ୍ଚର ସାଜସଜ୍ଜାରେ ହିଁ ଆଧୁନିକ ନାଟକର ନୂତନତ୍ୱ ପ୍ରତିଷ୍ଠିତ । ଆତ୍ମବିଶ୍ଳେଷଣର ସ୍ୱର ହିଁ ନାଟକର ମୁଖ୍ୟବାଣୀ । ଜାତି ଓ ରାଷ୍ଟ୍ରର ମନ୍ତ୍ରୋଚ୍ଚାରଣ ହିଁ ନାଟ୍ୟକାରର ଲକ୍ଷ୍ୟ ଏବଂ ଚରିତ୍ର ଉପସ୍ଥାପନା ତଥା ଅଧ୍ୟୟନ ହିଁ ନାଟ୍ୟସୃଷ୍ଟିର ଚେତାବନୀ । ବୈଦିକ ଯୁଗରୁ ହିଁ ଭାରତୀୟ ନାଟକ ପରମ୍ପରାର ସୃଷ୍ଟି । ଭାରତୀୟ ନାଟ୍ୟସାହିତ୍ୟର ପ୍ରାଚୀନ, ମଧ୍ୟ ଏବଂ ପରବର୍ତ୍ତୀ ମଧ୍ୟଯୁଗ ସଂସ୍କୃତ ନାଟକାଦର୍ଶ ଦ୍ୱାରା ନିୟନ୍ତ୍ରିତ ଏବଂ ଆଧୁନିକ ଭାରତୀୟ ନାଟକ କଳା ପାଶ୍ଚାତ୍ୟ ନାଟ୍ୟକଳା ଦ୍ୱାରା ବିଶେଷ ପ୍ରଭାବିତ । ପ୍ରାଚୀନ ଭାରତୀୟ ନାଟକର ଆବେଦନ ଥିଲା ରୋମାନ୍ସଧର୍ମୀ । କାଳିଦାସଙ୍କ ଅଭିଜ୍ଞାନ ଶକୁନ୍ତଳମ୍ ବିଶ୍ୱସାହିତ୍ୟରେ ପ୍ରତ୍ୟୟଧର୍ମୀ ନାଟକରାଜ୍ୟରେ ଶ୍ରେଷ୍ଠ

ଆସନ ଅଧିକାର କରିଥାଏ । ଭାସ, କାଳିଦାସ, ହର୍ଷ, ଭବଭୂତି, ବିଶାଖାଦତ୍ତ ପ୍ରଭୃତି ସଂସ୍କୃତରେ ଉତ୍କୃଷ୍ଟ ନାଟ୍ୟକଳାର ସ୍ରଷ୍ଟା ଏବଂ ସେମାନଙ୍କ ଲେଖନୀ ମାଧ୍ୟମରେ ସଂସ୍କୃତ ନାଟକ ଏକ ମାର୍ଜିତ, ରୁଚିବନ୍ତ ଶ୍ରେଣୀର ଜୀବନଧାରା ସହିତ ଜଡ଼ିତ ହୋଇପାରିଥିଲା ।

ଏହି ଦେଶରେ ସଂସ୍କୃତ ନାଟକର ପ୍ରଚାର ଥିଲା ଏବଂ ସେହି ପରମ୍ପରାରେ ପ୍ରାଚୀନ ଓଡ଼ିଆ ନାଟକ ଲାଳିତପାଳିତ ହୋଇଥିବାର ଅନୁମାନ । ଆଲଙ୍କାରିକ ବିଶ୍ୱନାଥ କବିରାଜ 'ସାହିତ୍ୟଦର୍ପଣ'ରେ ଭାରତୀୟ ନାଟ୍ୟତତ୍ତ୍ୱ ଆଲୋଚନା କରିଥିଲେ ।

ଓଡ଼ିଶାରେ ନାଟକ ଅଭିନୟ ବହୁ ପ୍ରାଚୀନ । ସେହି ଅଭିନୟ କଳାର ଚରମ ଅଭିବ୍ୟକ୍ତି ଶ୍ରୀଜଗନ୍ନାଥ ମନ୍ଦିର, କୋଣାର୍କ ମନ୍ଦିର ଏବଂ ଅନ୍ୟାନ୍ୟ ମନ୍ଦିର-ଗାତ୍ରରେ ପ୍ରତିଫଳିତ ହୋଇଥିଲା । ମନ୍ଦିରଗାତ୍ରର ଖୋଦିତ ନୃତ୍ୟ ସମ୍ବନ୍ଧୀୟ ବିଭିନ୍ନମୁଦ୍ରା ଏହାର ନିଦର୍ଶନ । ସଂସ୍କୃତ ନାଟକ ଅଭିନୟ ପରମ୍ପରାରେ ଜୟଦେବଙ୍କ 'ପୀୟୂଷଲହରୀ' ନାଟକ ଶ୍ରୀଜଗନ୍ନାଥ ମନ୍ଦିର ପରିସରରେ ଅଭିନୀତ ହେବାର ଜଣାଯାଏ । ପୁରୀମନ୍ଦିରର ଜଗମୋହନ ମଣ୍ଡପ ସେହି ଯୁଗରେ ରଙ୍ଗମଞ୍ଚ ରୂପେ ବ୍ୟବହୃତ ହେଉଥିଲା । ରାୟ ରାମାନନ୍ଦଙ୍କ 'ଜଗନ୍ନାଥବଲ୍ଲଭ' ନାଟକ, ରୂପ-ଗୋସ୍ୱାମୀଙ୍କ ଲିଖିତ ଲଳିତମାଧବ ଓ ବିଦଗ୍ଧମାଧବ ମଧ୍ୟ ଅଭିନୀତ ହେବାର ଜଣାଯାଏ । ପୁରୁଷୋତ୍ତମଦେବ (ପଞ୍ଚଦଶ ଶତାବ୍ଦୀ)ଙ୍କ 'ପରଶୁରାମ ବିଜୟ' ମଧ୍ୟ ଏହି ଶ୍ରେଣୀର ଅନ୍ତର୍ଗତ ।

ଦ୍ୱାଦଶ ଶତାବ୍ଦୀରେ ଶାସ୍ତ୍ରୀୟପ୍ରଭାବ ପରିପୁଷ୍ଟ ସଂସ୍କୃତଧର୍ମୀ ଦୃଶ୍ୟକାବ୍ୟର ସୂଚନା ମିଳିଥାଏ, ଯାହାର ରୂପ ପରବର୍ତ୍ତୀ ଶତାବ୍ଦୀରେ ବିକଶିତ ହୋଇଥିଲା । ପୁନଶ୍ଚ ଧର୍ମାନୁଷ୍ଠାନମାନଙ୍କୁ କେନ୍ଦ୍ରକରି ଏହି ନାଟକର ସୃଷ୍ଟି ଏବଂ ନାଟ୍ୟରଚନା ପୁରାଣାଶ୍ରୟୀ ହେଉଥିଲା । ପୀତାମ୍ବର ରାଜେନ୍ଦ୍ରଙ୍କ ରାମଲୀଳା (ଅଷ୍ଟାଦଶ ଶତାବ୍ଦୀର ଶେଷ ପର୍ଯ୍ୟାୟ), ଚକଡିର ଅଧୀଶ୍ୱର ବିଶ୍ୱମ୍ଭର ରାଜେନ୍ଦ୍ରଙ୍କ କୃଷ୍ଣଲୀଳା ଓ ରାଧାପ୍ରେମ ଲୀଳା ଆଧୁନିକ ଓଡ଼ିଆ ନାଟକର ସଂପୂର୍ଣ୍ଣ ଅବିକଶିତ ଆଦ୍ୟରୂପ ।

ମଧ୍ୟଯୁଗ ଓଡ଼ିଶାରେ ଦଣ୍ଡନାଟ, ଛଉନାଟ, କେଳା କେଳୁଣୀ ନାଟ, ଗୋଟିପୁଅ ନାଟ, ସଖୀନାଚ, ଘୋଡ଼ାନାଟ, ଦାସକାଠିଆ ଅନୁଷ୍ଠାନ ଗ୍ରାମ୍ୟଜୀବନରେ ଉଭୟ ନାଟ୍ୟ ଓ ରଙ୍ଗମଞ୍ଚର କାର୍ଯ୍ୟ ସାଧନ କରୁଥିଲା । ଧର୍ମ ଏବଂ ପୁରାଣହିଁ ସେହିସବୁ ପ୍ରାଚୀନ ଆଦ୍ୟ ନାଟ୍ୟରଚନାର ଥିଲା ଏକମାତ୍ର ଆବେଦନ । ଏହିସବୁ ଗ୍ରାମୀଣ ଅଭିନୟ ଲାଗି ମୁକ୍ତାକାଶ ପ୍ରାକୃତିକ ରଙ୍ଗମଞ୍ଚ ହିଁ ପ୍ରକୃଷ୍ଟ ଥିଲା—ଯଦ୍ୟପି ପରବର୍ତ୍ତୀ ଯୁଗରେ କୃତ୍ରିମ ରଙ୍ଗମଞ୍ଚର ଆବଶ୍ୟକତା ବିଶେଷ ବୃଦ୍ଧି ପାଇଥିଲା । ମଧ୍ୟଯୁଗ ଓଡ଼ିଶାର ରାଜନୈତିକ ଇତିହାସ, ମୁସଲମାନ, ମୋଗଲ ଓ ମରହଟ୍ଟାମାନଙ୍କ

ଆକ୍ରମଣ, ଅଧିକାର ଏବଂ ଶାସନଗତ ଦୁର୍ବଳତା ତଥା ଅସ୍ଥିରତାଦ୍ୱାରା ପୀଡ଼ିତ ହୋଇଥିଲା । ଶାସନ କ୍ଷେତ୍ରରେ ଅସ୍ଥିରତା, ବିଶୃଙ୍ଖଳା ଜର୍ଜ୍ଜରିତ ଯୁଗରେ ଗ୍ରାମ୍ୟ ଜୀବନର ସାଂସ୍କୃତିକ ପ୍ରବାହ ଧୀର ମନ୍ଥର ହେବା ସ୍ୱାଭାବିକ । ତଥାପି ଗ୍ରାମ୍ୟସ୍ତରରେ ସଂଗୀତାଭିନୟ, ପାଲା, ଦାସକାଠିଆ, ଗୋଟିପୁଅ ପ୍ରଭୃତି ବିଭିନ୍ନ ଅନୁଷ୍ଠାନ ଅବ୍ୟାହତ ରହିଥିଲା । ଏଥିମଧ୍ୟରୁ ଭିନ୍ନ ଭିନ୍ନ ଅନୁଷ୍ଠାନ ଭିନ୍ନ ସଂପ୍ରଦାୟ ଗୋଷ୍ଠୀଦ୍ୱାରା ମଧ୍ୟ ଆଦୃତ ହେଉଥିବାର ଜଣାଯାଏ । ଅପେକ୍ଷାକୃତ ଅଧିକ ଶିକ୍ଷିତମଣ୍ଡଳୀରେ ସଂସ୍କୃତାଭିନୟ ଆଦୃତ ହେବା ସ୍ଥଳେ ରାମଲୀଳା ଓ କୃଷ୍ଣଲୀଳା ସାଧାରଣ ଦର୍ଶକଙ୍କ ଦ୍ୱାରା ଆଦୃତ ହେଉଥିଲା ।

ପାରଳାଖେମୁଣ୍ଡି ନିବାସୀ କବିଚନ୍ଦ୍ର ରଘୁନାଥ ପରିଚ୍ଛା ୧୮୬୮ରେ ଯେଉଁ ଗୋପୀନାଥ ବଲ୍ଲଭ ନାଟକ ପ୍ରଣୟନ କରିଥିଲେ ତାହା ସଂସ୍କୃତ ନାଟକ ପ୍ରଚଳିତ ସ୍ଥାନୀୟ ଯାତ୍ରା, ରାମଲୀଳା ସମ୍ମିଶ୍ରଣ ବୋଲି କୁହାଯାଇଥାଏ ।

ବସ୍ତୁତଃ ଇଂରେଜମାନଙ୍କର ଓଡ଼ିଶା ଅଧିକାର (୧୮୦୩)ର ପ୍ରାୟତଃ ଷାଠିଏ ସତୁରି ବର୍ଷ ପରେ ହିଁ ଓଡ଼ିଶାରେ ପାଶ୍ଚାତ୍ୟ ନାଟକ ଢଙ୍ଗରେ ନାଟକ ରଚନା ଏବଂ ସୁସଜ୍ଜିତ ରଙ୍ଗମଞ୍ଚରେ ଅଭିନୟ ଆରମ୍ଭ ହୋଇଥିଲା । ଏହାର ପ୍ରତ୍ୟକ୍ଷ କାରଣ ହେଉଛି ଇଂରେଜୀ ଶିକ୍ଷା ଓ ସାହିତ୍ୟର ସମ୍ପ୍ରସାରଣ ଏବଂ ଦେଶରେ ଇଂରେଜୀ ଶିକ୍ଷିତ ଯୁବକମାନଙ୍କର ଆବିର୍ଭାବ ତଥା ମାତୃଭାଷା ଓ ସାହିତ୍ୟକୁ ପ୍ରାଚୀନ ପରଂପରାରୁ ଉପରକୁ ଗୁଣାତ୍ମକ ଦୃଷ୍ଟିରେ ଉତ୍ଥିତ କରିବାର ଏକ ଅଦମ୍ୟ ଅଭିଳାଷ । ସ୍ଥାନୀୟ ସାହିତ୍ୟକୁ ନୂତନ ରୁଚି, ନୂତନ ଆଦର୍ଶ ଏବଂ ସମାଜ ଦର୍ଶନ ଅଭିମୁଖୀ କରାଇବା ଥିଲା ଇଂରେଜୀ ଶିକ୍ଷିତ ସାହିତ୍ୟିକମାନଙ୍କର ଲକ୍ଷ୍ୟ । ପ୍ରତିବେଶୀ ବଂଗ ପ୍ରଦେଶରେ ଇଂରେଜୀ ଭାଷା ଓ ସାହିତ୍ୟର ପ୍ରତ୍ୟକ୍ଷ ପ୍ରଭାବବଶତଃ ସେଠାର ସାହିତ୍ୟରେ ପ୍ରତ୍ୟେକ ବିଭାଗରେ ଅଭୂତପୂର୍ବ ଜାଗରଣ ଆରମ୍ଭ ହୋଇସାରିଥିଲା । ତେଣୁ ଏହିପରି ଏକ ଐତିହାସିକ ପ୍ରଭାବ, ପ୍ରେରଣା ତଥା ପ୍ରୟୋଜନକୁ ଆଧୁନିକ ଢଙ୍ଗରେ ଓଡ଼ିଆ ନାଟକ ରଚନା ଓ ଅଭିନୟ ଆବଶ୍ୟକ ହେଲା । ଦେଶରେ କେଉଁଠି କେମିତି ସେକ୍ସପିୟରଙ୍କ ନାଟକ ପଠିତ ଏବଂ ଅଭିନୀତ ହେବାର ପ୍ରଭାବ ମଧ୍ୟ ଅନୁଭୂତ ହେଲା । ଦୋଳ, ପୂଜା ପ୍ରଭୃତି ସାମାଜିକ ପର୍ବ ପର୍ବାଣୀରେ ସ୍ଥାନୀୟ ଯାତ୍ରା ଅଭିନୟ ଦର୍ଶକମାନଙ୍କର ଆମୋଦ ପ୍ରମୋଦ ବିଧାନ କରୁଥିଲା । ମଝିରେ ମଝିରେ ପଶ୍ଚିମା ନାଟକ ଦଳ କିମ୍ବା ବଙ୍ଗଳା ଯାତ୍ରା ପାର୍ଟି ମଧ୍ୟ ଓଡ଼ିଶାରେ ଅଭିନୟ ପ୍ରଦର୍ଶନ କରୁଥିଲେ । ସେମାନଙ୍କ ମଧ୍ୟରେ କଳାତ୍ମକ ପରିବେଷଣ ପାଇଁ ପ୍ରତିଦ୍ୱନ୍ଦିତା ଚାଲୁଥିଲା ।

ଜଗମୋହନ ଲାଲ (୧୮୩୯-୧୯୧୩) ଆଧୁନିକ ଓଡ଼ିଆ ନାଟକ ରଚନାରେ ସର୍ବପ୍ରଥମେ ବ୍ରତୀ ହୋଇଥିଲେ ଏବଂ 'ବାବାଜୀ' (୧୮୭୭) ହେଉଛି ଆଦ୍ୟ ନାଟକ ।

ନାଟକର ବିଜ୍ଞାପନରୁ ନାଟକଟିର ପରିଚୟ ମିଳିଥାଏ । ଏ ପୁସ୍ତକରେ ଜଣେ ଯଥାର୍ଥ ସାଧୁର ସୁଚରିତ୍ର ଓ ଉପଦେଶ, ବାବାଜୀର ମହିମା, ମଠାଧୀଶଙ୍କ ଆଚରଣ, ହିନ୍ଦୁ ବାବୁର ସୁରାପାନ, ନବ୍ୟବାବୁ ଓ ଦେଶୀୟ ଖ୍ରୀଷ୍ଟିଆନ୍ କୁସଂସ୍କାର, ଡାହାଣୀ, ଭୂତ, ଗାରୁଡ଼ି ବିଦ୍ୟା ଏବଂ ରହସ୍ୟ ଓ ହିତକର କଥାମାନ ଅଛି ।

୧୮୭୫ ମସିହାଠାରୁ ଆରମ୍ଭ କରି ୧୮୮୦ ମସିହା ପର୍ଯ୍ୟନ୍ତ ବାଲେଶ୍ୱର, ଭଦ୍ରକ, କଟକ, ପୁରୀ ପ୍ରଭୃତି ସହରରେ କମ୍ପା ଜମିଦାରମାନଙ୍କ ବୈଠକଖାନାରେ ଯେଉଁ ଯାତ୍ରା, ନାଚ ତାମସା ବିଭିନ୍ନ ପର୍ବ ପର୍ବାଣୀ ଅବସରରେ ପ୍ରଦର୍ଶିତ ହୋଇଥିଲା ସେଥିମଧ୍ୟରେ ଓଡ଼ିଆ ନାଟକର ନବଜନ୍ମ ପାଇଁ ପ୍ରଚ୍ଛନ୍ନ ଭାବରେ ଏକ ଇଙ୍ଗିତ ନିହିତ ଥିଲା । ଏହି ପ୍ରସଙ୍ଗରେ ତଦାନୀନ୍ତନ ସମ୍ବାଦପତ୍ର 'ଉତ୍କଳ ଦର୍ପଣ'ଙ୍କ ଧାରାବାହିକ ଆଲୋଚନା ଏବଂ ଆଗ୍ରହ ପ୍ରକାଶ ତାତ୍ପର୍ଯ୍ୟପୂର୍ଣ୍ଣ । ସେହି ସମସ୍ତ ଆଲୋଚନାର କେତେକାଂଶ ଏଠାରେ ଉଦ୍ଧାର କରାଯାଉଛି ।

"୧୮୭୭ ସାଲର ଶାରଦୀୟ ଦୁର୍ଗା ପୂଜାକୁ ବଙ୍ଗଳାରୁ କେତେକ ଯାତ୍ରାଦଳ ଆସିଥିଲେ । କିନ୍ତୁ ସେମାନେ ବାଲେଶ୍ୱରୀ, ବଙ୍ଗଳା ଓ ଓଡ଼ିଆ ଯାତ୍ରାବାଲାଙ୍କଠାରୁ ଉତ୍କୃଷ୍ଟ କରି ନ ଥିଲେ । ସେହି ବର୍ଷ ବାଲେଶ୍ୱରରୁ ତିନିଦଳ ଯାତ୍ରାଦଳ ବାହାରିଥିଲେ । ଏ ସମ୍ପର୍କରେ କୁହାଯାଉଛି, ଗତବର୍ଷରେ ମାଣିକଖିଆ ସାଇରୁ ଯେଉଁ ବଙ୍ଗଳା ଯାତ୍ରାଦଳ ବାହାରିଥିଲା ଏ ବର୍ଷ ସେଇ ଦଳ ଦୁଇଭାଗରେ ବିଭକ୍ତ ହୋଇଅଛି—ପ୍ରଥମ ମାଣିକଖିଆ, ଦ୍ୱିତୀୟ ମାକଳପୁରିଆ । ବାରବାଟୀ ସାଇରୁ ତୃତୀୟ ଦଳ ବାହାରିଛନ୍ତି । ଏମାନେ ଓଡ଼ିୟା ଯାତ୍ରାଦଳ ।"

ମୋଗଲ ତାମସା ମଧ୍ୟ ସ୍ଥାନେ ସ୍ଥାନେ ଅଭିନୀତ ହେଉଥିଲା । କିନ୍ତୁ କ୍ରମେ କ୍ରମେ ଏହିସବୁ ପ୍ରାଚୀନ ଯାତ୍ରାଭିନୟ ସଂଶୋଧନ ପରିବର୍ତ୍ତନର ସମ୍ମୁଖୀନ ହେଲା । ଯାତ୍ରାର ପୃଷ୍ଠଭୂମିରେ କଟକ ସଦୃଶ ସହରରେ ଇଂରାଜୀ ଏବଂ ବଙ୍ଗଳା ନାଟକ ଅଭିନୀତ ହୋଇଥିଲା । ୧୮୭୨ ସାଲ ଜୁଲାଇ ୨୬ ଏବଂ ୨୭ ତାରିଖ ଦିନ କଟକରେ ପାଦ୍ରି ସାହେବଙ୍କ ଯତ୍ନରେ କାଥଲିକ୍ ଗୀର୍ଜା ଅନ୍ତର୍ଗତ ବିଦ୍ୟାଳୟରେ ଇଂରାଜୀ ନାଟକ ଅଭିନୟ ଏବଂ କଟକରେ ବଙ୍ଗଳା ରାମାଭିଷେକ ନାଟକ ଅଭିନୟ (୧୮୭୮ ମସିହା), ଫେବୃୟାରୀ ୭ ତାରିଖ, ଜମିଦାର ଗୋପାଳ ଚନ୍ଦ୍ର ଘୋଷଙ୍କ (ବୈଠକଖାନା) ଓଡ଼ିଆ ନାଟକ ରଚନା ପର୍ଯ୍ୟାୟରେ ସ୍ମରଣୀୟ ଘଟଣା । ଏହି ଐତିହାସିକ ଅଭିନୟ ପ୍ରସଙ୍ଗରେ 'ଦୀପିକା'ଙ୍କର (ତା ୯।୨।୭୮) ମନ୍ତବ୍ୟ ମଧ୍ୟ ଏଠାରେ ଉଦ୍ଧାରଯୋଗ୍ୟ ।

"ଏହି ବସନ୍ତ ପଞ୍ଚମୀ ରାତିରେ ଓଡ଼ିଶାରେ ନାଟକର ଅଭିନୟ ପ୍ରଥମଥର ହେଲା । ଏ ସକାଶେ ଏ ଦିନଟି ସ୍ମରଣୀୟ ହୋଇ ଉଠିଲା । ·ନୂଆ ତାମସା ହେବ ବୋଲି ନଗରଯାକ ଚହଲ ପଡ଼ିଗଲା ଓ ଟିକଟ ସଂଗ୍ରହ କରିବା ପାଇଁ

ସମସ୍ତେ ବ୍ୟସ୍ତ ହେଲେ । ରାତ୍ର ୯ ଘଣ୍ଟା ବେଳକୁ ମଜଲିସରେ ଟିକିଏ ଖାଲି ସ୍ଥାନ ନଥିଲା ଓ ଭିଡ଼ରେ ବାଟ ଚାଲିବା କଠିନ ହେଲା ।"

ଏହି ଘଟଣାର ମାତ୍ର ଦଶଦିନ ପରେ ସେହି ରାମାଭିଷେକ ନାଟକ ଅଭିନୀତ ହେଲା ଏବଂ ମାର୍ଚ୍ଚ ମାସରେ କଟକ ଦରବାରରେ ଗ୍ରେଟ ଲାଟଙ୍କ ସମ୍ବର୍ଦ୍ଧନାର୍ଥେ ମଧ୍ୟ ଅଭିନୀତ ହେଲା । ଏହିସବୁ ଅଭିନୟର ଏକମାତ୍ର ପରିଣତି ହେଲା ଓଡ଼ିଆ ଭାଷାରେ ଦର୍ଶକମାନଙ୍କର ଆମୋଦ ପ୍ରମୋଦ ପାଇଁ ନାଟକ ରଚନା ।

ଅଙ୍କ, ଦୃଶ୍ୟ, ଭାଷା, ସଂଳାପ, ସଂଗୀତ, ଚରିତ୍ରଚିତ୍ରଣ ଦୃଷ୍ଟିରେ ଚାରିଗୋଟି ଅଙ୍କବିଶିଷ୍ଟ 'ବାବାଜୀ' ନାଟକ ନାଟକର ଆଧୁନିକ ରୂପର ସୀମା ସ୍ପର୍ଶ କରିଛି କି ନାହିଁ ସେବିଷୟରେ ସମାଲୋଚକମାନେ ପତ୍ରପତ୍ରିକା ମାଧ୍ୟମରେ ଭିନ୍ନ ଭିନ୍ନ ମତ ପ୍ରକାଶ କରିଥିଲେ । କେହି କେହି ମଧ୍ୟ 'ବାବାଜୀ' ନାଟକରେ ନା ମିଠା ଅଛି ନା ଖଟା ଅଛି ବୋଲି ବ୍ୟଙ୍ଗ ମଧ୍ୟ କରିଥିଲେ । 'ବାବାଜୀ' ଏକ ମାର୍ଜିତ ଯାତ୍ରା ବୋଲି ମତ ପ୍ରକାଶ ପାଇଥିଲା । ତତ୍କାଳୀନ ଗଡ଼ଜାତ ଶାସକମାନଙ୍କର ଭ୍ରଷ୍ଟାଚାର, ଅପଶାସନ ନାଟ୍ୟକାରଙ୍କ 'ସତୀ' ନାଟକ (୧୮୮୬)ରେ ଅଙ୍କିତ । 'ବାବାଜୀ'ର ପୃଷ୍ଠଭୂମି ସାମାଜିକ, ମାତ୍ର ଗଠନ ପରିପାଟୀ ବୈଚିତ୍ର୍ୟହୀନ । ସତୀ ନାଟକରେ ନାଟ୍ୟକଳାର କିଞ୍ଚିତ୍ ସୂଚନା ମିଳେ ।

ରାମଶଙ୍କର ରାୟଙ୍କ (୧୮୫୭-୧୯୩୧) 'କାଞ୍ଚିକାବେରୀ' ଐତିହାସିକ ନାଟକ ଯେଉଁଦିନ (ରଚନା ୧୮୮୦, ମାତ୍ର ଅଭିନୟ ୧୮୮୧ ସାଲ ଫେବୃୟାରୀ—୭ ତାରିଖ, କଟକ) ଅଭିନୀତ ହେଲା, ସେଦିନ ଦର୍ଶକମାନେ ଲୀଳା, ଯାତ୍ରା, ସୁଆଙ୍ଗ ଏବଂ ନୟମିତ ନାଟକ ପରିବେଷଣ ମଧ୍ୟରେ କଳାତ୍ମକ ପ୍ରଭେଦ ଉପଲବ୍ଧି କରିପାରିଥିଲେ । ଏହା ପରେ ଭିନ୍ନ ଭିନ୍ନ ଥିଏଟର ପାର୍ଟି ଭିନ୍ନ ଭିନ୍ନ ନାଟକ ଅଭିନୟ କରିଥିଲେ । ରାମଶଙ୍କର ମଧ୍ୟ ୧୮୮୧ ମସିହାରୁ ୧୯୧୭ ମଧ୍ୟରେ ସଂଖ୍ୟାଧିକ ନାଟକ, ପ୍ରହସନ, ଗୀତିନାଟ୍ୟ ଓ ଯାତ୍ରା ରଚନା କରିଥିଲେ । (୧) ତାଙ୍କର ନାଟକର କଥାବସ୍ତୁ ଐତିହାସିକ, ସାମାଜିକ, କାଳ୍ପନିକ, ଧାର୍ମିକ ପୃଷ୍ଠଭୂମିରେ ମଧ୍ୟ ପରୀକ୍ଷାଠାରୁ ଭିନ୍ନ । ନାଟ୍ୟକାରଙ୍କର ବିଶିଷ୍ଟ କୃତି 'କାଞ୍ଚି-କାବେରୀ' ଅତୀତ ଗୌରବୋଜ୍ଜ୍ୱଳ ଓଡ଼ିଶାର ନରପତି ପୁରୁଷୋତ୍ତମ ଦେବ ଏବଂ କାଞ୍ଚି ରାଜକୁମାରୀଙ୍କ ଧର୍ମ, ପ୍ରେମ, ଜାତୀୟତାର ପୃଷ୍ଠଭୂମିରେ ପ୍ରଦର୍ଶିତ

(୧) କାଞ୍ଚିକାବେରୀ (୧୮୮୦), ବନବାଳା (୧୮୮୨), ରାମବନବାସ (୧୮୯୧) କଂସବଧ (୧୮୯୭), ଚୈତନ୍ୟଲୀଳା (୧୯୦୭), ରାମାଭିଷେକ (୧୯୧୭), ବିଷମୋଦକ (୧୯୦୦), ଧର୍ମଯୁଗ (୧୯୦୨), କାଞ୍ଚନମାଳା (୧୯୦୪), ଲୀଳାବତୀ (୧୯୧୨), କଳିକାଳ, ବୁଢ଼ାବର, ବଡ଼ଲୋକ ଆଦି ।

କରିପାରିଛି । 'କାଞ୍ଚିକାବେରୀ'ର ଭାଷା, ସଂଳାପ, ଚରିତ୍ର ନିର୍ବାଚନ, ଅଙ୍କ, ଦୃଶ୍ୟ, ସାଜସଜ୍ଜା ପ୍ରାଚୀନ ସଂସ୍କୃତ ନାଟକଧାରାରୁ ମୁକ୍ତ ନୁହେଁ—ଅଧ୍ୟାପକ ଗିରିଜାଶଙ୍କର ରାୟଙ୍କ ମତାମତ ଏଠାରେ ଉଦ୍ଧାରଯୋଗ୍ୟ ।

ନାଟ୍ୟକାରଙ୍କ ଐତିହାସିକ ଦୃଷ୍ଟିକୋଣର ପରିବର୍ତ୍ତନ ତାଙ୍କ ପ୍ରଣୀତ 'ବନବାଳା' ସାମାଜିକ ନାଟକରେ ଦେଖିବାକୁ ମିଳେ । ସ୍ଥାନୀୟ ରୀତିନୀତି, ବ୍ୟବହାର, ଆଚରଣ ଯୁକ୍ତ କରି ନାଟ୍ୟକାର ସେକ୍‌ସପିୟରଙ୍କ ଟେମ୍ପେଷ୍ଟ୍ ନାଟକର 'ମିରାଣ୍ଡା'କୁ "ବନବାଳା"ରେ ପରିଣତ କରିଥିବାର ଅନୁମାନ । ଏହାହିଁ ସେହି ଯୁଗର ପାଶ୍ଚାତ୍ୟ ସାହିତ୍ୟ ଓ ପାଶ୍ଚାତ୍ୟ ଧାରା ଅଧ୍ୟୟନର ଫଳାଫଳ । ରାମଶଙ୍କର ନାଟ୍ୟକାର ଭାବରେ ନିଜକୁ ପ୍ରତିଷ୍ଠିତ କରିବା ବ୍ୟତୀତ ଓଡ଼ିଶାରେ ନାଟକ ରଚନା ତଥା ରଙ୍ଗମଞ୍ଚ ପ୍ରତିଷ୍ଠାର ଭିତ୍ତି ସ୍ଥାପନ କଲେ । ରାମଶଙ୍କରଙ୍କ ନାଟ୍ୟରଚନାର କଥାବସ୍ତୁ ଭାରତୀୟ ଇତିହାସ ଏବଂ ପୁରାଣ ଦ୍ୱାରା ଅନୁପ୍ରାଣିତ । ତାଙ୍କର ପ୍ରତ୍ୟେକ ନାଟ୍ୟକୃତି କୌଣସି ନା କୌଣସି ମୌଳିକ ଉଦ୍ଦେଶ୍ୟ ଦ୍ୱାରା ନିୟନ୍ତ୍ରିତ । ନାଟ୍ୟ ରଚନାରେ ଅମିତ୍ରାକ୍ଷର ଛନ୍ଦ ବ୍ୟବହାର ରାମଶଙ୍କରଙ୍କ ଉଲ୍ଲେଖଯୋଗ୍ୟ ଉଦ୍ୟମ । ଐତିହାସିକ ସମସ୍ୟାଠାରୁ ଆରମ୍ଭକରି ଜାତୀୟତା, ଦେଶୋଦ୍ଧାର, ନିଶା ନିବାରଣ, ବିବାହ, ଯୌତୁକ ପ୍ରଭୃତି ବିବିଧ ସାମାଜିକ ସମସ୍ୟା ତାଙ୍କ ନାଟକ ସମୂହର କଳେବର ଏବଂ ନାଟ୍ୟକାରଙ୍କ ଦୃଷ୍ଟିକୋଣକୁ ପରିପୁଷ୍ଟ କରିପାରିଛି । ଉଭୟ ରଚନାର ପରିମାଣ ଏବଂ ଆଙ୍ଗିକ ସୌଷ୍ଠବ ବିଚାରରେ ରାମଶଙ୍କର ରାୟଙ୍କୁ ଆଧୁନିକ ଓଡ଼ିଆ ନାଟକର ପ୍ରଥମ ପ୍ରବର୍ତ୍ତକ ବୋଲି ଅଭିହିତ କରାଯାଇଥାଏ । କାରଣ ରାମଶଙ୍କରଙ୍କର ନାଟକ ରଚନାର ଯେଉଁ ଭିତ୍ତି ସ୍ଥାପନ କଲେ ତାହାର ଉପରେ ପରବର୍ତ୍ତୀ ଯୁଗରେ ଓଡ଼ିଆ ନାଟ୍ୟ ସୌଧ ନିର୍ମିତ ହୋଇଥିଲା ।

ଓଡ଼ିଆ ନାଟକର ଏହି ପ୍ରାକ୍ ଅଭ୍ୟୁଦୟ ଯୁଗରେ ନାଟ୍ୟକାରମାନଙ୍କ ମଧ୍ୟରେ କାମପାଲ ମିଶ୍ର (୧), ଭିକାରି ଚରଣ ପଟ୍ଟନାୟକ (୨), ପଣ୍ଡିତ ହରିହର ରଥ, ଖଡ଼ିଆଲ ରାଜକୁମାର ବୀର ବିକ୍ରମଦେବ, ପାରଳାଖେମଣ୍ଡି ରାଜା ପଦ୍ମନାଭ ଦେବ, ଚକଟୀର ଯୁବରାଜ ରାଜକବି ଶ୍ରୀଯୁକ୍ତ ରାଧାମୋହନ ରାଜେନ୍ଦ୍ର

(୧) ସୀତାବିବାହ (୧୮୯୯), ହରିଶ୍ଚନ୍ଦ୍ର, ଦୁର୍ଗା ଶବରୀ, ବସନ୍ତ ଲତିକା (୧୯୩୭),
(୨) କଟକ ବିଜୟ, ନନ୍ଦକେଶ୍ୱରୀ (୧୯୧୫), ରତ୍ନମାଳୀ (୧୯୧୫), ସଂସାର ଚିତ୍ର (୧୯୧୫), ସୁଶୀଳା (୧୯୧୬), ଯୌତୁକ ପ୍ରହସନ (୧୯୨୪), ନିରୂପମା (୧୯୫୨), ରାଜା ପୁରୁଷୋତ୍ତମ ଦେବ (୧୯୨୫), ଅଭିନ୍ନ ଆଦର୍ଶ (୧୯୦୯) ।

ଦେବ ପ୍ରମୁଖ ନାଟକ ରଚନା ଏବଂ ମଞ୍ଚସ୍ଥ କରି ଓଡ଼ିଶାର ଜନଜୀବନରେ ତୀବ୍ର ନାଟ୍ୟଚେତନା ତଥା ରଙ୍ଗମଞ୍ଚ ଆଭିମୁଖ୍ୟ ସୃଷ୍ଟି କରିପାରିଥିଲେ । ଏହା ସାଧାରଣତଃ ୧୯୦୦ରୁ ୧୯୩୦ ମଧ୍ୟରେ ପରିବ୍ୟାପ୍ତ । ଏହି ଯୁଗର ନାଟ୍ୟ ରଚନାର ବୈଶିଷ୍ଟ୍ୟ ହେଉଛି ଏକନିଷ୍ଠ ପୌରାଣିକ ଆନୁଗତ୍ୟ ଏବଂ ଓଡ଼ିଶାର ଅତୀତ ଇତିହାସର ଅନୁସନ୍ଧାନ । କାମପାଲ ମିଶ୍ରଙ୍କ ପାଞ୍ଚଅଙ୍କବିଶିଷ୍ଟ 'ସୀତାବିବାହ' ନାଟକ ସର୍ବଜନ-ପଠିତ ରାମାୟଣ ଅବଲମ୍ବନରେ ଲିଖିତ ଏବଂ ସେହି ଯୁଗରେ ଅଭିନୟ ଦର୍ଶନା-ଭିଳାଷୀମାନଙ୍କର ସନ୍ତୋଷବିଧାନ କରିପାରିଥିଲା । ଭିକାରିଚରଣ ପଟ୍ଟନାୟକଙ୍କ ନାଟକର କଳାତ୍ମକ ନୈପୁଣ୍ୟ ଅପେକ୍ଷା ବିଷୟବସ୍ତୁ ସମ୍ବନ୍ଧୀୟ ବିବିଧତା ହିଁ ପରିଦୃଷ୍ଟ । ଇଂରେଜମାନଙ୍କ କଟକ ଅଧିକାର ସମ୍ବନ୍ଧୀୟ 'କଟକ ବିଜୟ' ନାଟକ ଏବଂ 'ପୁରୁଷୋତ୍ତମଦେବ' ନାଟକରେ ଯେପରି ଐତିହାସିକ ସ୍ୱର ଉତ୍ତୋଳିତ, 'ସଂସାର ଚକ୍ର' ଓ 'ଯୌତୁକ' ନାଟକରେ ସେହିପରି ସାମାଜିକ ଘଟଣା ପ୍ରବାହ ଗୃହୀତ । ତଥାପି ତାଙ୍କ ନାଟକରେ ନାଟ୍ୟରଚନା ରୀତି ଓ ରଙ୍ଗମଂଚ ପରିକଳ୍ପନାରେ ପରିବର୍ତ୍ତନର କୌଣସି ସଙ୍କେତ ଦେଖିବାକୁ ମିଳେନାହିଁ; କେବଳ ଯୁଗ-ପ୍ରବୃତ୍ତିର ନାଟକୀୟ ପରିବେଷଣ ହିଁ ତାଙ୍କ ରଚନାର ବୈଶିଷ୍ଟ୍ୟ । ସେହିପରି ସଂଖ୍ୟାଧିକ ନାଟକର ପ୍ରଣେତା ପଣ୍ଡିତ ଶ୍ରୀ ହରିହର ରଥଙ୍କ ନାଟକ ଶିଳ୍ପ ସୌନ୍ଦର୍ଯ୍ୟର ଅଭାବରେ ପୀଡ଼ିତ । ଏହାର କାରଣ ନାଟ୍ୟକାର ନାଟ୍ୟକଳାର ଉତ୍କର୍ଷ ଅପେକ୍ଷା ସମାଜରେ ପୌରାଣିକ ଆଧ୍ୟାତ୍ମିକତା ପ୍ରଚାରର ଉଦ୍ଦେଶ୍ୟରେ ନାଟକ ରଚନା କରିଥିଲେ । ରାମାୟଣର ପବିତ୍ର ଗାଥାର ପରିସ୍ଫୁଟନରେ ତାଙ୍କ ନାଟ୍ୟ-ପ୍ରତିଭା ହିଁ ନିୟୋଜିତ ହୋଇଥିଲା । ଏହାର ନିଦର୍ଶନ ହେଉଛି ତାଙ୍କର ବିଭିନ୍ନ କୃତି; ଯଥା—ରାମଜନ୍ମ ନାଟକ, ରାମାୟଣ ନାଟକ, ପର୍ଶୁରାମ ବିଜୟ, ରାମ ନିର୍ବାସନ, ରାବଣ ବଧ, ରାମାଭିଷେକ । ପୁନଶ୍ଚ ସେ ସଂସ୍କୃତରୁ ଶକୁନ୍ତଳା, ବେଣୀସଂହାର, ଉତ୍ତର ରାମଚରିତ ସଦୃଶ ନାଟକ ଓଡ଼ିଆରେ ଅନୁବାଦ କରିଥିଲେ । ପଣ୍ଡିତ ରଥ କଟକ ଟ୍ରେନିଂ ସ୍କୁଲର ଶିକ୍ଷକ ଥିଲେ ।

ଓଡ଼ିଶାର ବିଭିନ୍ନ ରାଜଦରବାର ଦେଶର ସାହିତ୍ୟ, କଳା ଓ ସଙ୍ଗୀତର ପ୍ରଭୂତ ପୃଷ୍ଠପୋଷକତା କରୁଥିଲେ ଏବଂ କେହି କେହି ଗୁଣଗ୍ରାହୀ ସାହିତ୍ୟ-ପ୍ରେମୀ ନରପତି ସ୍ୱୟଂ ନାଟକ, କାବ୍ୟକବିତା ରଚନା କରି ସାହିତ୍ୟ ଓ ସଂସ୍କୃତିର ପ୍ରତ୍ୟକ୍ଷ ଉତ୍କର୍ଷ ସାଧନ କରିଥିଲେ । ଓଡ଼ିଶାରେ ସ୍ଥାୟୀ ନାଟ୍ୟଶାଳା ତଥା ରଙ୍ଗମଂଚ ପ୍ରତିଷ୍ଠା ସେହି ସଂସ୍କୃତିସମ୍ପନ୍ନ ସାହିତ୍ୟପ୍ରେମୀ ଜମିଦାର ଏବଂ ନରପତି-ମାନଙ୍କର କୃତିତ୍ୱ ବୋଲି ସେମାନଙ୍କୁ ଗୌରବ ଦିଆଯାଏ ।

ଖଡ଼ିଆଳର ଯୁବରାଜ ବୀର ବିକ୍ରମ ଦେବଙ୍କର ନାଟକ ଅମ୍ବିକାଦେବୀ, କୁସୁମସୁନ୍ଦରୀ, ହରିଶ୍ଚନ୍ଦ୍ର, ଶୈଳବାଳା, ବୃଦ୍ଧବିବାହ, ଉତ୍କଳ ଦୁର୍ଦ୍ଦଶା, ଭ୍ରାତୃସ୍ନେହ

ସେହିଯୁଗରେ ଓଡ଼ିଆ ନାଟକର ଆଭିମୁଖ୍ୟ ଓ ପ୍ରବୃତ୍ତି ସୂଚିତ କରିଥାଏ । ବିକ୍ରମ-ଥିଏଟର ରଙ୍ଗାଳୟ ତାଙ୍କର ପରିକଳ୍ପନା । କେବଳ ସେତିକି ନୁହେଁ, ନାଟ୍ୟତତ୍ତ୍ୱ ସମୀକ୍ଷା କରି ସେ ନାଟକ ରଚନା ପ୍ରଣାଳୀ ଶୀର୍ଷକ ପୁସ୍ତକ ରଚନା କରିଥିଲେ । ବୀର ବିକ୍ରମ ଦେବ ଓଡ଼ିଆ ଭାଷା ଓ ସଂସ୍କୃତିର ଜଣେ ପୃଷ୍ଠପୋଷକ ଥିଲେ ଏବଂ ତାଙ୍କର ନାଟକ ସମୂହରେ, ବିଶେଷତଃ ଉତ୍କଳ ଦୁର୍ଦ୍ଦଶା ନାଟକରେ, ନାଟ୍ୟକାରଙ୍କ ଉତ୍କଳ-ଜନନୀଙ୍କ ଆରାଧନାର ମନ୍ତ୍ର ହିଁ ଉଚ୍ଚାରିତ ।

ପାରଳାଖେମୁଣ୍ଡି ରାଜପରିବାରଙ୍କର ଓଡ଼ିଆ ସାହିତ୍ୟ ଓ ସଙ୍ଗୀତ ପ୍ରତି ଦାନ ସର୍ବାଦୌ ଉଲ୍ଲେଖଯୋଗ୍ୟ । ଗଜପତି ନାରାୟଣ ଦେବଙ୍କର ପୁରାଣଭିତ୍ତିକ 'ଧ୍ରୁବ ନାଟକ' ଦର୍ଶକମାନଙ୍କ ଦ୍ୱାରା ପ୍ରଶଂସିତ ହୋଇଥିଲା । ସେହିପରି ତାଙ୍କ କନିଷ୍ଠ ଭ୍ରାତା ପଦ୍ମନାଭ ନାରାୟଣ ଦେବଙ୍କ 'ସଂଗୀତ ପ୍ରହଲଦ ନାଟକ' (୧୯୦୧), 'ବାଣ ଦର୍ପ ଦଳନ ନାଟକ' (୧୯୦୧), 'ଅହଲ୍ୟା ଶାପ ମୋଚନ' (୧୯୦୨), 'ତାରକ ସଂହାର', 'ଦାନ ପରୀକ୍ଷା' ଭକ୍ତିରସାତ୍ମକ ରଚନା ଏବଂ 'ଚନ୍ଦ୍ରାବତୀ ସ୍ୱୟମ୍ବର' ପ୍ରଭୃତି କଳ୍ପନା ଓ ଆଦି ରସାତ୍ମକ । ପଦ୍ମନାଭ ନାରାୟଣ ଦେବ ସ୍ୱୟଂ ଜଣେ ଉଚ୍ଚକୋଟୀର ସଙ୍ଗୀତଜ୍ଞ ଥିଲେ ଏବଂ ତାଙ୍କର ସଙ୍ଗୀତ ଶାସ୍ତ୍ରରେ ଗଭୀର ପ୍ରବେଶର ନିଦର୍ଶନ ହେଉଛି ତାଙ୍କ ରଚିତ 'ତାନ ସର୍ବସାର ସଂଗ୍ରହ' ପୁସ୍ତକ (୧୮୯୮) ।

ସେହିପରି ଓଡ଼ିଶାରେ ନାଟକରଚନା କ୍ଷେତ୍ରରେ ବିଶେଷତଃ ରଙ୍ଗାଳୟ ପ୍ରତିଷ୍ଠା କ୍ଷେତ୍ରରେ ଗଞ୍ଜାମ ଅନ୍ତର୍ଗତ ରାଜକବି ରାଧାମୋହନ ରାଜେନ୍ଦ୍ର ଦେବଙ୍କର ଦାନ ସର୍ବମୁଖରେ ପ୍ରଶଂସିତ । ତାଙ୍କ ନାଟକ ପାଇଁ କଥାବସ୍ତୁର ଚୟନ କ୍ଷେତ୍ର ହେଉଛି ପୁରାଣ । ତାଙ୍କ ରଚନା ହେଉଛି – ଶୃଙ୍ଗାରାଶ୍ରିତ 'ପ୍ରେମତରଙ୍ଗ ନାଟକ', ବୀରରସାଶ୍ରିତ 'ପରିମଳା ସହଗମନ', 'ପାଞ୍ଚାଳୀ ପଟ୍ଟାପହରଣ' (୧୯୧୬), 'ପାଣ୍ଡବ ବନବାସ' (୧୯୨୧), 'ଶ୍ରୀ ପ୍ରତାପ ନାଟକ' (୧୯୧୫), 'ପ୍ରକୃତିରହସ୍ୟ' (୧୯୧୪), 'ପ୍ରକୃତି ଦର୍ପଣ' (୧୯୧୫) । ତେଣୁ ଜଣାଯାଏ ଯେ ପୌରାଣିକ ଚରିତ୍ରମାନଙ୍କ ମାହାତ୍ମ୍ୟ, ଆଦର୍ଶ ଓ ପୌରାଣିକ ଘଟଣାର ସାମାଜିକ ଉପଯୋଗିତା ଜନ-ସାଧାରଣଙ୍କ ସମ୍ମୁଖରେ ପ୍ରତିପାଦନ କରିବା ନାଟ୍ୟକାରଙ୍କର ଏକମାତ୍ର ଲକ୍ଷ୍ୟ । କେବଳ ଯାହା 'ଶ୍ରୀ ପ୍ରତାପ ନାଟକ'ରେ କବି ଐତିହାସିକ ବୀର ପୁରୁଷ ରାଣା ପ୍ରତାପଙ୍କର ସ୍ମୃତି ଦେଶବାସୀଙ୍କ ମନରେ ପୁନଃ ଜାଗ୍ରତ କରାଇଛନ୍ତି । ତଥାପି ରାଜେନ୍ଦ୍ର ଦେବ ପାରଂପରିକ ସଂସ୍କୃତ ନାଟକାଦର୍ଶର ସୀମା ଅତିକ୍ରମ କରି ପାରିନଥିଲେ । କାରଣ ନାଟ୍ୟକାର ପାତ୍ର-ପାତ୍ରୀଙ୍କ ସଂଳାପରେ ପାଣ୍ଡିତ୍ୟପୂର୍ଣ୍ଣ ଭାଷା ସଂଯୁକ୍ତ କରିବାଠାରୁ ସଂସ୍କୃତ ନାଟକର ଗଠନ କୌଶଳ ନିଜ ନାଟକ-ସମୂହରେ ଅନୁସରଣ କରିଥିଲେ । ଅଭିନୟକଳାର ବିକାଶ ପ୍ରତି ସେ ସମଧିକ ଧ୍ୟାନ ଦେଇଥିଲେ ଏବଂ ରଙ୍ଗାଳୟର ଉତ୍ତରୋତ୍ତର ଉନ୍ନତି ଥିଲା ତାଙ୍କର ଲକ୍ଷ୍ୟ ।

ନାଟ୍ୟକାର ଭାବରେ ତାଙ୍କର କୃତିତ୍ୱର ହେତୁ ହେଉଛି ସେ ଏକ ଧାରାରେ କବି, ସଙ୍ଗୀତଜ୍ଞ, ବେଶ ପରିପାଟୀରେ ନିପୁଣ ଏବଂ ରଙ୍ଗମଞ୍ଚ ପରିକଳ୍ପନାରେ ଅଗ୍ରଣୀ ।

ଭାରତବର୍ଷରେ ରାଜନୈତିକ ଜାତୀୟତାର ଅଭ୍ୟୁଦୟ ଏବଂ ଓଡ଼ିଶାରେ ଉତ୍କଳ ସମ୍ମିଳନୀ ସଦୃଶ ଅନୁଷ୍ଠାନ ମାଧ୍ୟମରେ ଜାତୀୟତାର ଉନ୍ମେଷ ଶିକ୍ଷା, ସଂସ୍କୃତି, ସାହିତ୍ୟ କ୍ଷେତ୍ରରେ ଆମୂଳ ପରିବର୍ତ୍ତନର କାରଣ ହୋଇଥିଲା । ଉତ୍କଳ ସମ୍ମିଳନୀର ଆଦର୍ଶରେ ଅନୁପ୍ରାଣିତ ଏବଂ ସ୍ୱାଧୀନତା ଆନ୍ଦୋଳନର ଆହ୍ୱାନରେ ଉଦ୍‌ବୁଦ୍ଧ ଏହି ସମୟର ଶିକ୍ଷିତ ଯୁବକ ସମାଜ ବିଶେଷତଃ ସତ୍ୟବାଦୀ ଜାତୀୟ ବିଦ୍ୟାଳୟର କର୍ମୀ ଓ ଶିକ୍ଷକମାନେ ଓଡ଼ିଶାର ଅତୀତ ଇତିହାସକୁ ଜନସାଧାରଣଙ୍କ ମାନସ-ପଟରେ କାବ୍ୟ କବିତା ତଥା ନାଟକ ମାଧ୍ୟମରେ ପ୍ରତିଫଳିତ କରାଇଥିଲେ । ସେହି ଗୋଷ୍ଠୀର ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ନାଟକ ପୁରୁଷୋତ୍ତମ ଦେବ (୧୯୧୭), ମୁକୁନ୍ଦଦେବ (୧୯୨୦) ପୁରାପୁରି ଐତିହାସିକ ନାଟକ । ଓଡ଼ିଶା ଇତିହାସରେ ପ୍ରଥିତଯଶା ବୀର ରାଜପୁରୁଷ ପୁରୁଷୋତ୍ତମଦେବ ଓ ମୁକୁନ୍ଦଦେବଙ୍କୁ ନାଟକରେ ସମ୍ବର୍ଦ୍ଧିତ କରାଯାଇଛି । ମାତ୍ର ଅଭିନୟକଳାଦୃଷ୍ଟିରେ ଏହି ଦୁଇଟି ନାଟକ ତ୍ରୁଟିପୂର୍ଣ୍ଣ । କାରଣ ସେଥିରେ ପାତ୍ର-ପାତ୍ରୀଙ୍କ କୃତ୍ରିମ ଭାଷା, ସଂଳାପର ଦୀର୍ଘତା ଏବଂ ନାଟକୀୟ ଐକ୍ୟର ଓ ନାଟକୀୟ ସଂଶୟର ଅଭାବ ହିଁ ପରିଲକ୍ଷିତ ହୁଏ ।

ଏହି ନାଟକଦ୍ୱୟରେ କାବ୍ୟସୁଲଭ ବର୍ଣ୍ଣନା ଏବଂ ନାଟ୍ୟକାର ଅପେକ୍ଷା କବିର ଭାବାତିଶଯ୍ୟ ହିଁ ବିଶେଷ ପ୍ରତିଫଳିତ । ସେଥିପାଇଁ ଇତିହାସର ରାଜନୈତିକ ପ୍ରୟୋଗ ହିଁ ନାଟ୍ୟକଳା ବିକାଶରେ ବାଧା ସୃଷ୍ଟି କରିଛି । ଲେଖକର ମୂଳ ଉଦ୍ଦେଶ୍ୟ ହେଉଛି ଓଡ଼ିଶା ଇତିହାସରୁ କେତୋଟି ଆଦର୍ଶ ଚରିତ୍ର ଉପସ୍ଥାପନ କରିବା । ଓଡ଼ିଆ ନାଟକ ଓ ରଙ୍ଗମଞ୍ଚ ବିକାଶର ଏହି ପ୍ରଥମ ପର୍ଯ୍ୟାୟରେ ବହୁ ଗୌଣ ଲେଖକ ମଧ୍ୟ ନାଟକ ରଚନାଦ୍ୱାରା କିମ୍ବା ସ୍ଥାନୀୟ ଅଭିନୟ ସଂସ୍ଥା ପ୍ରତିଷ୍ଠାଦ୍ୱାରା ଦେଶରେ ଗୋଟାଏ ନାଟ୍ୟଚେତନା ସୃଷ୍ଟି କରିଥିଲେ ।

ଏହି ପ୍ରସଙ୍ଗରେ ଚନ୍ଦ୍ରଶେଖର ପାଣିଙ୍କର ବାଲୁକାପିଣ୍ଡ ନାଟକ (୧୯୦୯), ଇନ୍ଦିରା ପରିଣୟ (୧୯୧୧); ନାରାୟଣ ମିଶ୍ରଙ୍କର ପାରିଜାତ ହରଣ (୧୮୮୮); ଘନଶ୍ୟାମ ମିଶ୍ରଙ୍କର ଭାରତ ସାବିତ୍ରୀ ନାଟକ (୧୯୧୦) ଉଲ୍ଲେଖଯୋଗ୍ୟ ।

ନାଟ୍ୟକଳାର ଆଦି ଉନ୍ମେଷ ଯୁଗରେ 'ଫାର୍ସ' ରଚନା କେତେକ ଲେଖକଙ୍କୁ ଆକୃଷ୍ଟ କରିଥିଲା; ଯଥା 'ମହାଜନ ଫାର୍ସ' (୧୮୮୯)—ଗୌରୀ ବଲ୍ଲଭ ପଟ୍ଟନାୟକ) । ଫାର୍ସଗୁଡ଼ିକର ନାଟକୀୟ ତାତ୍ତ୍ୱିକ ମୂଲ୍ୟ ଅପେକ୍ଷା ସାମାଜିକ ଆମୋଦ-ପ୍ରମୋଦ ହିଁ ପ୍ରକୃତ ଲକ୍ଷ୍ୟ ।

ଗୀତିନାଟ୍ୟ ଏହି ଯୁଗର ନାଟ୍ୟରଚନାର ଆଉ ଏକ ବୈଚିତ୍ର୍ୟପୂର୍ଣ୍ଣ ଆକର୍ଷଣ ଏବଂ ଏହି କ୍ଷେତ୍ରରେ ଗୋବିନ୍ଦଶୂର ଦେଓଙ୍କର (୧) କୃତିତ୍ୱ ହିଁ ସର୍ବାଗ୍ରେ ପରିଲକ୍ଷିତ ହୁଏ । ତାଙ୍କ ଲେଖନୀରୁ ସଂଖ୍ୟାଧିକ ଗୀତିନାଟ୍ୟର ସୃଷ୍ଟି ହୋଇଥିଲା । ଓଡ଼ିଶାରେ ଗୀତିନାଟ୍ୟ, ଅପେରା, ଯାତ୍ରା ପ୍ରଭୃତିକୁ ଦର୍ଶକପ୍ରିୟ କରାଇବାରେ ଶୂରଦେଓ ହିଁ ଅଗ୍ରଣୀ ଥିଲେ ।

ଓଡ଼ିଆ ଯାତ୍ରାର ମାର୍ଜିତ ସଂସ୍କୃତରୂପ ଉଦ୍‌ଘାଟନ କରି ଗୀତିନାଟ୍ୟକାର ଶ୍ରୀଯୁକ୍ତ ବୈଷ୍ଣବପାଣି (୧୮୬୮-୧୯୬୩) ଓଡ଼ିଶାର ଜନସାଧାରଣଙ୍କୁ ବହୁବର୍ଷଧରି ଆମୋଦିତ ଏବଂ ଆପ୍ୟାୟିତ କରିପାରିଥିଲେ । ଗୀତିନାଟ୍ୟକୁ ଓଡ଼ିଶାର ଗ୍ରାମ-ଗହଳରେ ଲୋକପ୍ରିୟ କରିବାରେ ତାଙ୍କର ଦାନ ସର୍ବାପେକ୍ଷା ଅଧିକ । ତାଙ୍କ ଗୀତି-ନାଟ୍ୟର ବ୍ୟାପ୍ତି ଓ ପରିଧି ହେଉଛି ପୁରାପୂରି ପୌରାଣିକ କମ୍ବା କିମ୍ବଦନ୍ତୀଭିତ୍ତିକ । ପ୍ରଥମେ ଜୋଠପଦାର ମହାନ୍ତିଙ୍କ ସାହାଯ୍ୟରେ ସେ ଯାତ୍ରାଦଳ ଗଠନ କରିଥିଲେ । ପରେ ଅପେରା ପାର୍ଟି ସ୍ଥାପନ କରି ଗୋଟିକ ପରେ ଗୋଟିଏ ବହୁ ଗୀତିନାଟ୍ୟ ମୁକ୍ତାକାଶତଳେ ଅଭିନୟ କରାଇଥିଲେ । ତାଙ୍କର ଗୀତିନାଟ୍ୟ ସହିତ ଉଚ୍ଚ ସଙ୍ଗୀତ ଚେତନା ଏବଂ ପୌରାଣିକ ଚରିତ୍ରଗଠନ କୌଶଳ ହିଁ ପ୍ରତିଫଳିତ । ଓଡ଼ିଶାର ଗ୍ରାମ୍ୟ ସମାଜକୁ ଯାତ୍ରାଭିନୟସମୂହ ଯେତେବେଳେ ସୌନ୍ଦର୍ଯ୍ୟତତ୍ତ୍ୱ ଏବଂ ଚମତ୍କାରିତାରେ ପ୍ରଭାବିତ କରିପାରିଥାଏ, ତାହାହେଲେ ବୈଷ୍ଣବପାଣିଙ୍କ ଗୀତିନାଟ୍ୟ ସୃଷ୍ଟି ହେଉଛି ତାହାର ନିଦର୍ଶନ ।

ଅଭ୍ୟୁଦୟ ଯୁଗର ଓଡ଼ିଆ ନାଟକ ଓ ନାଟ୍ୟ ରଚନା କ୍ଷେତ୍ରରେ ପ୍ରଥମ ଥର ପାଇଁ ଶୈଳିକ ଏବଂ ଆଙ୍ଗିକ ପରିବର୍ତ୍ତନ ସାଧନ କରିଥିଲେ ନାଟ୍ୟକାର ଅଶ୍ୱିନୀ କୁମାର ଘୋଷ (୨) । ବିଶେଷତଃ, ଓଡ଼ିଆ ରଙ୍ଗମଞ୍ଚର ପ୍ରଭୂତ ବ୍ୟବହାର,

୧ । (କ) ନରମେଧଯଜ୍ଞ, ରାସଲୀଳା ନାଟକ, ସୁବଳମିଳନ ନାଟକ, ମାନଭଞ୍ଜନ ନାଟକ, ଧ୍ରୁବଚରିତ ନାଟକ, ମାୟା ଶବରୀ ନାଟକ, ଶ୍ରୀକୃଷ୍ଣ ମହିମା ନାଟକ, ଇନ୍ଦ୍ରସଭା ନାଟକ, ମିବାରସୂର୍ଯ୍ୟ ନାଟକ, ନାରକାସୁର ବଧ ନାଟକ, ସାକ୍ଷୀଗୋପାଳ ନାଟକ ।

(ଖ) କୁଳରକ୍ଷା ଫାର୍ଶ, ପେଟେଣ୍ଟ ମେଡ଼ିସିନ୍ ଫାର୍ଶ, ମହାନ୍ତ ଫାର୍ଶ, ପାଠୋଇ ବୋହୂ ଫାର୍ଶ ।

୨ । ଭୀଷ୍ମ (୧୯୧୫), ସାବିତ୍ରୀ (୧୯୧୭), ସାଲବେଗ (୧୯୩୦), ଦାସିଆ ବାଉରି (୧୯୩୦), ରଘୁ ଅରକ୍ଷିତ, ରାମ ଦାସ (୧୯୩୦), ବନ୍ଧୁ ମହାନ୍ତି, ଶ୍ରୀମନ୍ଦିର, ଚଣ୍ଡାଳୁଣୀ, ସାକ୍ଷୀଗୋପାଳ, ଶ୍ରୀସତ୍ୟନାରାୟଣ (୧୯୫୫), ଜାନକୀ, ସେଓଜ (୧୯୬୦), କଳାପାହାଡ଼ (୧୯୬୨), ଗୋବିନ୍ଦ ବିଦ୍ୟାଧର (୧୯୬୨), ଉତ୍କଳ ଗୌରବ (୧୯୩୨), କେଶରୀ ଗଙ୍ଗ,

ଉପାଦେୟତା ଏବଂ ଲୋକପ୍ରିୟତା ହାସଲ କରିବାରେ ଅଶ୍ୱିନୀକୁମାର ଘୋଷଙ୍କର କ୍ରମବର୍ଦ୍ଧିତ ସଂଖ୍ୟାଧିକ ଭକ୍ତିରସାତ୍ମକ, ପୌରାଣିକ, ଐତିହାସିକ ଏବଂ ସାମାଜିକ ନାଟକ ରଚନା ହିଁ ଦାୟୀ ହୋଇପାରିଥିଲା । ଓଡ଼ିଆ ନାଟକରେ ନାଟକୀୟ ଉତ୍କଣ୍ଠା, ଆଙ୍ଗିକ ରୂପସଂପଦ ଏବଂ ଆତ୍ମିକ ସଚେତନତା ଉଦ୍‌ଘାଟନ କରିବାରେ ଅଶ୍ୱିନୀକୁମାର ଘୋଷ ହିଁ ଅଗ୍ରଣୀ ଥିଲେ । ଭାରତୀୟ ପୁରାଣ ଏବଂ ଇତିହାସରୁ କଥାବସ୍ତୁ ଚୟନ କରି ଜନଜୀବନର ପରିପ୍ରେକ୍ଷୀରେ ନାଟକ ରଚନା କରିଥିଲେ । ତାଙ୍କର 'ଶ୍ରୀମନ୍ଦିର', 'ସାକ୍ଷୀଗୋପାଳ', 'ଚଣ୍ଡୀରୁକ୍ମିଣୀ', 'ବନ୍ଧୁ ମହାନ୍ତି', 'ସାଲବେଗ' ପ୍ରଭୃତି ନାଟକରେ ଯେତେବେଳେ ପୌରାଣିକ ମର୍ଯ୍ୟାଦା ଏବଂ ଧାର୍ମିକ ମହାତ୍ମ୍ୟତା ଉଦ୍ଭାସିତ, ସେତେବେଳେ 'କପିଳେନ୍ଦ୍ର ଦେବ', ପାଇକ ପୁଅ', 'ଭଞ୍ଜଭୁଜଂଗ', 'ଗୋବିନ୍ଦ ବିଦ୍ୟାଧର', 'କଳାପାହାଡ଼', 'ତାଜମହଲ', 'ହିନ୍ଦୁରାଣୀ' ପ୍ରଭୃତି ଐତିହାସିକ ନାଟକରେ ଭାରତ ଏବଂ ଉତ୍କଳର ଇତିହାସକୁ ପୁନର୍ଗଠନ କରାଯାଇଛନ୍ତି । ନାଟ୍ୟତତ୍ତ୍ୱ ଦୃଷ୍ଟିରୁ ତାଙ୍କର ନାଟକ ରଙ୍ଗମଞ୍ଚ ସଫଳତାର ଅଧିକାରୀ । ତାଙ୍କର ସାମାଜିକ ନାଟକସମୂହରେ ମଧ୍ୟ ଉତ୍କଳୀୟ ଗ୍ରାମ୍ୟ ସମାଜର ଚିତ୍ର ପ୍ରଦର୍ଶିତ । ଉତ୍କଳର ଶିଳ୍ପ, କଳା, ସ୍ଥାପତ୍ୟ, ଭକ୍ତିମତ୍ତାର ଶ୍ରେଷ୍ଠ ନିଦର୍ଶନ କୋଣାର୍କ ମନ୍ଦିରକୁ କେନ୍ଦ୍ର କରି ଅଶ୍ୱିନୀକୁମାର ପୁରାଣ, ଇତିହାସ ଏବଂ ପରିକଳ୍ପନାରେ 'କୋଣାର୍କ' ନାଟକ ରଚନା କରିଥିଲେ । ନାଟ୍ୟକାରଙ୍କ କଳ୍ପନା ଏବଂ ବାସ୍ତବଜ୍ଞାନ ଯୋଗୁ ଐତିହାସିକ କୋଣାର୍କ ସାମାଜିକ ପ୍ରତ୍ୟୟର ପ୍ରତୀକରୂପେ ଦଣ୍ଡାୟମାନ ।

ସଂକ୍ଷେପରେ ଓଡ଼ିଆ ନାଟକର କଳାତ୍ମକ ବୈଶିଷ୍ଟ୍ୟ ତଥା ରଙ୍ଗମଞ୍ଚ ମୂଲ୍ୟବୋଧ ପ୍ରବର୍ତ୍ତନ କରିବାରେ ନାଟ୍ୟକାର ଘୋଷ ହିଁ ଦାୟୀ । ବଙ୍ଗଳା ସାହିତ୍ୟର ନାଟ୍ୟକାର ଗିରିଶଚନ୍ଦ୍ର ଘୋଷ (୧୮୪୪—୧୯୧୧)ଙ୍କର ସଂଖ୍ୟାଧିକ ଐତିହାସିକ ଏବଂ ପୌରାଣିକ ନାଟ୍ୟ ରଚନା ଏବଂ ନାଟ୍ୟକାର ଅଶ୍ୱିନୀକୁମାରଙ୍କ ବିଭିନ୍ନ ନାଟ୍ୟରଚନାର ତୁଳନାତ୍ମକ ଅଧ୍ୟୟନ କରାଯାଇପାରେ । ଅଶ୍ୱିନୀକୁମାରଙ୍କ ପ୍ରବର୍ତ୍ତିତ ନାଟ୍ୟ-ପରମ୍ପରାରେ ତାଙ୍କର ଅନୁଜ କାର୍ତ୍ତିକକୁମାର ଘୋଷ (୧) ବହୁ ନାଟକ ରଚନା ଏବଂ ରଂଗମଂଚସ୍ଥ କରି ସଫଳତା ହାସଲ କରିପାରିଛନ୍ତି ।

---

କୋଣାର୍କ, ଓଡ଼ିଆ ଝିଅ, ସମଲେଶ୍ୱରୀ, କପିଳେନ୍ଦ୍ର ଦେବ (୧୯୫୩), ପାଇକପୁଅ (୧୯୩୩), ତାଜମହଲ, ଭଞ୍ଜ-ଭୁଜଙ୍ଗ (୧୩୪୨ ସାଲ), ଭୁବନେଶ୍ୱର (୧୯୬୨) ।

(୧) ମିରକାଶିମ (୧୯୬୬-୨ୟ ସଂସ୍କରଣ), ଦୁଃଖ କରିବାର କିଛି ନାହିଁ (୧୯୬୮), ବସୁର, ଲକ୍ଷ୍ୟହୀରା ।

ବାଲକୃଷ୍ଣ କରଙ୍କର ଐତିହାସିକ କଥାବସ୍ତୁସମ୍ବଳିତ 'ଚନ୍ଦ୍ରଗୁପ୍ତ' ଓ 'ଶିବଦାସ', ରାମରଂଜନ ମହାନ୍ତିଙ୍କ 'ଗୌଡ଼ବିଜେତା' ନାଟକ ଉଲ୍ଲେଖଯୋଗ୍ୟ ।

ଅଧ୍ୟାପକ ପଣ୍ଡିତ ରାମଚନ୍ଦ୍ର ମହାପାତ୍ର ତାଙ୍କ ଲିଖିତ ସୁଦାମା, ରଘୁ-ଅରକ୍ଷିତ, ବିଲ୍ୱମଙ୍ଗଳ ନାଟକରେ ଆଧ୍ୟାତ୍ମିକ ଜୀବନର ମହତ୍ତ୍ୱ ପ୍ରଦର୍ଶନ କରି ପାରିଛନ୍ତି । 'ମୁକ୍ତିପଥେ' ନାଟକରେ ବୈକୁଣ୍ଠନାଥ ପଟ୍ଟନାୟକ ନୂତନ ସାମାଜିକ ସମସ୍ୟା ଉତ୍ଥାପନ କରିଛନ୍ତି ।

ଅଶ୍ୱିନୀକୁମାର ଓଡ଼ିଆ ନାଟକର ଯେଉଁ ଆଙ୍ଗିକ ଏବଂ ଆତ୍ମିକ ଆଦର୍ଶ ପ୍ରତିଷ୍ଠା କଲେ ତାହାର ଚୂଡ଼ାନ୍ତ ବିକାଶସାଧନ କରି ସମଗ୍ର ଓଡ଼ିଶା ନାଟ୍ୟ ସାହିତ୍ୟରେ ଯୁଗାନ୍ତର ଆନୟନ କରିଥିଲେ ଶ୍ରୀଯୁକ୍ତ କାଳୀଚରଣ ପଟ୍ଟନାୟକ (୧୯୦୦) (୧) । ତାଙ୍କର ନାଟ୍ୟକୃତିସମୂହ ଏକାଧାରରେ ସଂଗୀତ, ନୃତ୍ୟ, ଅଭିନୟ, ରଙ୍ଗମଂଚ, ଅଂକଦୃଶ୍ୟର ବିଭାଗୀକରଣ, ଉପଯୋଗିତା, ଶୃଙ୍ଖଳିକ ବିଚକ୍ଷଣତା, ନାଟକୀୟ ଉତ୍କଣ୍ଠା, ସଂଶୟ ଏବଂ ହର୍ଷୋପରି ସୌନ୍ଦର୍ଯ୍ୟଚେତନାର ଅଧିକାରୀ ହୋଇପାରିଛି । କବିତ୍ୱ ଏବଂ ନାଟ୍ୟକାରର ସୂକ୍ଷ୍ମ ପର୍ଯ୍ୟବେକ୍ଷଣ ଶକ୍ତି ତାଙ୍କ ନାଟକସମୂହରେ ସମ୍ମିଳିତ ହୋଇପାରିଛି । ଯୌବନରେ ସେ ଗ୍ରାମ୍ୟ ପରି-ବେଷ୍ଟନୀରେ ସଂଜୀବିତ ଓଡ଼ିଶାର ପାରଂପରିକ ସଂଗୀତ, ଅଭିନୟ ଏବଂ ଯାତ୍ରାଭିନୟ କଳାପ୍ରତି ତାଙ୍କର ସ୍ୱଭାବସୁଲଭ ପ୍ରେରଣାରେ ଆକୃଷ୍ଟ ହୋଇଥିଲେ । ତେଣୁ ଯୌବନରେ ବିଭିନ୍ନ ସଂଗୀତ ଆସର, ଗୋଟିପୁଅ, ଆଖଡ଼ାଦଳ ପ୍ରଭୃତି ଅନୁଷ୍ଠାନରେ ଭୂମିକା ଗ୍ରହଣଠାରୁ ଓଡ଼ିଆଭାଷାରେ ନିଖୁଣ, କଳାତ୍ମକ ନାଟକ ରଚନା କରି ସ୍ୱପ୍ରତିଷ୍ଠିତ ରଂଗମଂଚରେ ସଫଳତାର ସହିତ ଅଭିନୀତ କରାଇ-ପାରିଥିଲେ । କାଳୀଚରଣଙ୍କ ନାଟ୍ୟ ପ୍ରତିଭାର ବହୁମୁଖିତା, ବିବିଧତା, ବର୍ଣ୍ଣ-ବୈଚିତ୍ର୍ୟ, ସମାଲୋଚନାର ଦର୍ପଣରେ ଏପରି ଉଦ୍ଭାସିତ ହୋଇଥାଏ ଯେ, ସେଥିରୁ ଜୀବନର ଗୋଟାଏ ବୃହତ୍ତର ଆଭିମୁଖ୍ୟ ସ୍ୱତଃ ସ୍ପଷ୍ଟ ହୋଇଉଠେ । ପୁରାଣ, କିମ୍ବଦନ୍ତୀ, ଇତିହାସ, କଳ୍ପନା ଏବଂ ସାଂପ୍ରତିକ ସାମାଜିକ ଅନୁଚିନ୍ତା—ଏପରି ବିଭିନ୍ନ ବିଭାଗ କାଳୀଚରଣଙ୍କ ନାଟ୍ୟ ପରିକଳ୍ପନା ତଥା ଗଳ୍ପ ଭାଗକୁ ଯେପରି ପରିପୁଷ୍ଟ କରିଛି ସେହିପରି ନାଟ୍ୟକାରଙ୍କ ବଳିଷ୍ଠ ଲେଖନୀ ସ୍ପର୍ଶରେ ତାହାସବୁ ନୂତନ ପରିପ୍ରେକ୍ଷୀରେ ପୁନର୍ଗଠିତ ହୋଇପାରିଛି । ଓଡ଼ିଶାର ନାଟକାମୋଦୀ ସଂଗୀତ ରଂଗମଂଚ ପ୍ରସାର ପକ୍ଷପାତୀ ଦର୍ଶକମାନଙ୍କୁ ଉଭୟ ଅଶ୍ୱିନୀକୁମାର ଏବଂ କାଳୀ-ଚରଣ ନାଟ୍ୟକୃତି ବର୍ଷ-ବର୍ଷଧରି ଅନୁପ୍ରାଣିତ, ଆକୃଷ୍ଟ ଏବଂ ବିମୋହିତ କରିପାରିଛି ।

(୧) ପ୍ରତିଶୋଧ, ଗାର୍ଲସ୍କୁଲ, ଚମ୍ପକ, ଭାତ, ବେକାର, ଫଟା ଭୂଇଁ, ରକ୍ତମାଟି, ହରଣଗୃହ, ଅଭିଯାନ, ରକ୍ତମନ୍ଦାର, ଚକ୍ରୀ, ଦଶଭୁଜା, ସ୍ୱର୍ଗଖଣ୍ଡ, ଜୟଦେବ, ଅତିବଡ଼ି ଜଗନ୍ନାଥ ଦାସ, ସାରଳା ଦାସ ।

ବିଶେଷତଃ ସ୍ୱାଧୀନତାପ୍ରାପ୍ତିର ପ୍ରାକ୍ କାଳରେ କାଳୀଚରଣ ପଟ୍ଟନାୟକଙ୍କ ନାଟ୍ୟକୃତି ଓଡ଼ିଶାର ସୀମିତ ରଂଗମଂଚରେ ଏକମାତ୍ର ପ୍ରଦର୍ଶିତ ସାମଗ୍ରୀ ଥିଲା ।

କାଳୀଚରଣଙ୍କ ନାଟ୍ୟକାର ଜୀବନ ଏବଂ ନାଟ୍ୟରଚନାକୁ ତିନିଗୋଟି ପର୍ଯ୍ୟାୟରେ ବିଭକ୍ତ କରାଯାଏ; ଯଥା—

(କ) ବିଭିନ୍ନ ଗୁଣାତ୍ମକ ନାଟକ ରଚନା,

(ଖ) ଓଡ଼ିଶା ଥିଏଟର୍ସ ପ୍ରତିଷ୍ଠିତ ରଙ୍ଗମଞ୍ଚ ଆନ୍ଦୋଳନ,

(ଗ) ଓଡ଼ିଶୀ ସଙ୍ଗୀତ ଏବଂ ଓଡ଼ିଶୀ ନୃତ୍ୟ ଆନ୍ଦୋଳନ ।

ତାଙ୍କର ପ୍ରଥମ ପର୍ଯ୍ୟାୟ ସାମାଜିକ ନାଟକ—'ପ୍ରତିଶୋଧ', 'ଗାର୍ଲସ୍କୁଲ୍', 'ଚମ୍ପୂନ'ଠାରୁ ଆରମ୍ଭ କରି ଭାତ, ବେକାର, ଫଟାଭୂଇଁ, ରକ୍ତମାଟି ପର୍ଯ୍ୟନ୍ତ ପ୍ରତ୍ୟେକ ସାମାଜିକ ନାଟକ ଯାପ୍ରତିକ ଜନଜୀବନର ଏବଂ ଜନସମସ୍ୟାର ବିଶିଷ୍ଟ ପ୍ରତିପାଦନ । 'ପ୍ରତିଶୋଧ'ରେ ଧନାନ୍ଧତା, ବହୁବିବାହ; ତଦାନିନ୍ତନ ଚହଲ ସୃଷ୍ଟି କରିଥିବା 'ଗାର୍ଲସ୍କୁଲ୍'ରେ ଆଧୁନିକ ଶିକ୍ଷାପ୍ରାପ୍ତ ଯୁବକ-ଯୁବତୀଙ୍କର ପ୍ରଣୟ ଉନ୍ମାଦନା, ଭାବବିହ୍ୱଳତା, ଏବଂ 'ଆହୂତି' ନାଟକରେ ଯୁବକ-ଯୁବତୀଙ୍କର ପ୍ରେମ ଉପାଖ୍ୟାନ କଥାବସ୍ତୁରୂପେ ଗୃହୀତ । ଏହିସବୁ ନାଟକରୁ ନାଟ୍ୟକାରଙ୍କ ସାମାଜିକ ଆଦର୍ଶର ପରିଚୟ ମିଳିଥାଏ; ଯଥା—"ଇଂରାଜୀ ପାଠ ପଢ଼ିଲେ ବୋଲି କଅଣ ଲୋକେ ଖରାପ ହୋଇଯିବେ—ନା, ବାଳିକା ସ୍କୁଲରେ ପଢ଼ିଲାକୁ ଲୋକେ ମହତ୍ତ୍ୱ ମର୍ଯ୍ୟାଦା ବୁଡ଼ାଇବେ ? ପାଠ କି ଇସ୍କୁଲର କିଛି ଦୋଷ ନୁହେଁ । ଆମେ ଜଣ ଜଣକର ବୁଦ୍ଧି ସେମିତି ଖରାପ । ତାଙ୍କୁ କହିଲେ ନାହିଁ ଜନ୍ମରୁ ସେ ବିଛୁଆତି ।" (ଗାର୍ଲସ୍କୁଲ) "ବଡ଼ ବଡ଼ ପକ୍କା କୋଠାରି ଯେ ବିଦ୍ୟାମନ୍ଦିର କଲ, ସେଥିରୁ ବହୁତ ଅଭଙ୍ଗା କଣ୍ଢେଇ ତିଆରି ହେଉଛନ୍ତି । ତାଙ୍କର ପେଶା ହେଲା ଗୃହକାର୍ଯ୍ୟ ।" (ଆହୂତି) ।

ନାରୀପ୍ରଗତିର ଅର୍ଥ କ'ଣ ଉଲଙ୍ଗତା ନା ସ୍ୱେଚ୍ଛାଚାରିତା ? ଏହି ପ୍ରଶ୍ନ ନାଟ୍ୟକାର ଉତ୍ଥାପନ କରିଛନ୍ତି । ସାମାଜିକ କଥାବସ୍ତୁକୁ କେନ୍ଦ୍ର କରି 'ପରିବର୍ତ୍ତନ', 'ଭାତ', 'ବେକାର', 'ରକ୍ତମାଟି', 'ହରିଜନ', 'ଫଟାଭୂଇଁ' ପ୍ରଭୃତି ନାଟକ ଲିଖିତ । ସ୍ୱାଧୀନୋତ୍ତର ଓଡ଼ିଶାରେ ବିବିଧ ସାମାଜିକ ସମସ୍ୟା ସହିତ ଉତ୍କଟ ମଙ୍ଗୁଡ଼ି, ବନ୍ୟା, ଦୁର୍ଭିକ୍ଷ ଜନସାଧାରଣଙ୍କ ଜୀବନରେ ନୈରାଶ୍ୟ, ବିଷାଦଭାବ ସୃଷ୍ଟି କରିଛି । ଓଡ଼ିଶାର ସେହିସବୁ ସାମୟିକ ସମସ୍ୟା ରାଜନୈତିକ, ସାମାଜିକ, ଅର୍ଥନୈତିକ ପରିପ୍ରେକ୍ଷୀରେ ତାଙ୍କ ନାଟକସମୂହରେ ପ୍ରଦର୍ଶିତ । ସେଥିପାଇଁ କାଳୀଚରଣଙ୍କ ସାମାଜିକ ନାଟକର ଆବେଦନ ସମଧିକ । 'ଭାତ'ରେ ଓଡ଼ିଶାର ନିୟମିତ ଖାଦ୍ୟାଭାବ, 'ବେକାର'ରେ ବେକାରୀ ଓ ଦାରିଦ୍ର୍ୟ ଏବଂ 'ରକ୍ତମାଟି'ରେ ସାମ୍ୟବାଦ, ଗାନ୍ଧିବାଦ ପୃଷ୍ଠଭୂମିରେ ଶ୍ରମିକ ଅଶାନ୍ତି ଓ ବିକ୍ଷୋଭ କାଳୀଚରଣଙ୍କ

ଶକ୍ତିଶାଳୀ ଲେଖନୀମୁନରେ ଜୀବନ୍ତ ତଥା କରୁଣ ଏବଂ ରସୋତ୍ତୀର୍ଣ୍ଣ ହୋଇପାରିଛି । ଏହିସବୁ ନାଟକରେ କଥାବସ୍ତୁର ବିଶ୍ଳେଷଣ ଏବଂ ଓଡ଼ିଆଙ୍କ ଦୁଃଖଦୁର୍ଦ୍ଦଶା ବର୍ଣ୍ଣନା ପଛରେ ଲେଖକଙ୍କର ନିବିଡ଼ ଜାତୀୟତାବୋଧ ନିହିତ । ରାଜନୈତିକ ସ୍ୱାଧୀନତା ପରେ ଦେଶରେ ସାମାଜିକ ଏବଂ ଅର୍ଥନୈତିକ ସ୍ୱାଧୀନତାର ଆବଶ୍ୟକତା ସର୍ବତ୍ର ଅନୁଭୂତ ହୋଇଛି ବୋଲି ଲେଖକଙ୍କ ନାଟକରୁ ସୂଚନା ମିଳେ । "ଆମେ ଜୀଇଁବାକୁ ଚାହୁଁ, ଆଉ ଜୀବନର ପ୍ରତି ମୁହୂର୍ତ୍ତିରେ ଅନୁଭବ କରିବାକୁ ଚାହୁଁ, ଆମ ଭିତରେ ଜୀଇଚି ମାନବ—ସେ ନରକର କୀଟ ନୁହେଁ, ସେ ମୁଖା ପିନ୍ଧି ଦେଖାହୁଏ ନାହିଁ, ସେ ରଙ୍ଗ ବଦଳିକରି ଶିଖିନାହିଁ × × ଆଉ ଜୀବନଟା ତା'ର ହକ୍, କାହାର ଅନୁଗ୍ରହ ବା ଦୟାର ଆଶା କରି ନୁହେଁ । ଲକ୍ଷ୍ୟ ତା'ର ଭିକ୍ଷା ନୁହେଁ—ଦାବି ।" ଏହାହିଁ ହୋଇଛି ସମାଜର ଆହ୍ୱାନ ।

ନିଛକ ସାମାଜିକ ଛନ୍ଦ 'ଚୁମ୍ବନ' ନାଟକରେ କବି 'ହସ୍ତାର'ର ସୂଚନା ଦେଇଛନ୍ତି । ଇତିହାସର ଘଟଣାବଳୀକୁ ପ୍ରଦର୍ଶିତ କରି ଦେଶରେ ଜାତୀୟତା-ବୋଧ ଜାଗ୍ରତ କରିବା ସାଂପ୍ରତିକ ଯୁଗର ନାଟ୍ୟକାରମାନଙ୍କର ଲକ୍ଷ୍ୟ । ଏହାର ଶ୍ରେଷ୍ଠ ନିଦର୍ଶନ କାଳୀଚରଣ ପଟ୍ଟନାୟକଙ୍କ ରଚିତ 'ଅଭିଯାନ' ନାଟକ । ଓଡ଼ିଶାର ରାଜା ଗଜପତି ପୁରୁଷୋତ୍ତମ ଦେବଙ୍କର କାଞ୍ଚି ଅଭିଯାନ ଏବଂ କାଞ୍ଚି ରାଜଜେମା ପଦ୍ମାବତୀଙ୍କ ସହିତ ତାଙ୍କର ପରିଣୟ ଓଡ଼ିଶା ଇତିହାସ ଓ କିମ୍ବଦନ୍ତୀର ସାମଗ୍ରୀ । ଉଭୟ ବୀରରସ ଏବଂ ଆଦିରସ ଏହାର ଆବେଦନ । ଏହି ପ୍ରାଚୀନ କଥାବସ୍ତୁକୁ କେନ୍ଦ୍ର କରି ରାମଶଙ୍କରଙ୍କ 'କାଞ୍ଚିକାବେରୀ' (୧୮୮୦), ଭିକାରୀଚରଣଙ୍କ 'ରାଜା ପୁରୁଷୋତ୍ତମ ନାଟକ', ଗୋଦାବରୀଶ ମିଶ୍ରଙ୍କ 'ପୁରୁଷୋତ୍ତମଦେବ' ବିଭିନ୍ନ ସମୟରେ ରଚିତ । 'ଅଭିଯାନ'ରେ ଏହି କଥାବସ୍ତୁ ଗୃହୀତ । କଥାବସ୍ତୁ ସମାନ ହେଲେ ହେଁ ଏହି ନାଟକଗୁଡ଼ିକ ଓଡ଼ିଆ ନାଟକ ଓ ରଙ୍ଗମଞ୍ଚର କ୍ରମବିବର୍ତ୍ତନରେ କ୍ରମବର୍ଦ୍ଧିଷ୍ଣୁ ଧାରାର ପ୍ରତୀକ ଏବଂ 'ଅଭିଯାନ' ଉଭୟ ନାଟ୍ୟରୀତି ତଥା ମଞ୍ଚକୌଶଳ ବିଚାରରେ ସର୍ବଶ୍ରେଷ୍ଠ ରଚନା । ସେହି ଦୃଷ୍ଟିରେ ୧୯୪୦ ମସିହାପରେ ଓଡ଼ିଆ ନାଟକର ଆଧୁନିକ ଯୁଗର ସୂତ୍ରପାତ ହୋଇଥିଲା । ନାଟ୍ୟକାରଙ୍କ 'ଜୟଦେବ', 'ଅତିବଡ଼ି ଜଗନ୍ନାଥ ଦାସ', 'ସାରଳାଦାସ', ଜୀବନଚରିତମୂଳକ ତିନିଗୋଟି ନାଟକ । 'ଜୟଦେବ' ନାଟକରେ କବି 'ଗୀତଗୋବିନ୍ଦ'ର ସ୍ରଷ୍ଟା ଜୟଦେବଙ୍କୁ ତାଙ୍କର ଜନ୍ମଭୂମି ଉତ୍କଳର ପୃଷ୍ଠଭୂମିରେ ପ୍ରଦର୍ଶିତ କରିଛନ୍ତି । ବାଙ୍କୀ ରାଣୀ ଶୁକଦେଇଙ୍କ ଗୌରବୋଜ୍ଜ୍ୱଳ ଇତିହାସ ଓ କିମ୍ବଦନ୍ତୀକୁ ଭିତ୍ତି କରି 'ରକ୍ତମନ୍ଦାର' ଏବଂ ପଶ୍ଚିମ-ଓଡ଼ିଶାର ଗୌରବ ବର୍ଣ୍ଣନା କରି 'ସ୍ୱାଧୀନଖଣ୍ଡ' ଏବଂ ସମଗ୍ର ଜାତୀୟ ଅଧୋଗତିକୁ ଲକ୍ଷ୍ୟ କରି 'ଫଟାଭୂଇଁ' ରଚିତ । 'ଚଣ୍ଡୀ', 'ଦଶଭୁଜା'ରେ ପୌରାଣିକ ଆଭିମୁଖ୍ୟ ପ୍ରତିଫଳିତ ।

ସଂଳାପର ବାସ୍ତବତା, ଚରିତ୍ରଚିତ୍ରଣର ପାରଦର୍ଶିତା, ସାମାଜିକ ଦାୟିତ୍ୱବୋଧ କାଳୀଚରଣଙ୍କ ନାଟକର ପ୍ରତିଫଳିତ ତତ୍ତ୍ୱ । ଓଡ଼ିଆ ନାଟକର ଗୁଣ ମୂଳକ ଅଭିବୃଦ୍ଧି ଏବଂ ରଙ୍ଗମଞ୍ଚର ବିକାଶପାଇଁ ଲେଖକଙ୍କର ସାଧନା ଉଲ୍ଲେଖଯୋଗ୍ୟ । ଏକାଙ୍କିକା (୧), ଗଳ୍ପ, ଗୀତିନାଟ୍ୟ ମଧ୍ୟ ନାଟ୍ୟକାରଙ୍କର ସୃଷ୍ଟି ସମ୍ଭାରର ଅନ୍ତର୍ଭୁକ୍ତ । ବିଶେଷତଃ, ତାଙ୍କ ନାଟକର ସଂଳାପଗୁଡ଼ିକରେ ଗ୍ରାମ୍ୟ ଚଳିତ ଭାଷାର ଅବାଧ ପ୍ରୟୋଗ ଯୋଗୁ କାଳୀଚରଣଙ୍କ ନାଟକର ସୌନ୍ଦର୍ଯ୍ୟ ପ୍ରଭାବ ଅବ୍ୟାହତ ରହିଥାଏ । ଏହା ହିଁ ତାଙ୍କ ନାଟକର ଲୋକପ୍ରିୟତା ସମର୍ଥକ ।

ଅଶ୍ୱିନୀକୁମାର, କାଳୀଚରଣ ଓଡ଼ିଆ ନାଟକର ଯେଉଁ ଅପୂର୍ବ ଜୀବନ୍ୟାସ କଲେ, ସେହି ନାଟ୍ୟଧାରା ୧୯୫୦ ମସିହା ପରେ ବହୁ ଅନୁପ୍ରାଣିତ ନାଟ୍ୟକାରମାନଙ୍କ ରଚନା ଏବଂ ଅଭିନୟ, କଳା-ନିପୁଣ ଅଭିନେତା ଅଭିନେତ୍ରୀଙ୍କ ସାଧନାଯୋଗୁ ଆହୁରି ଉଜ୍ଜ୍ୱଳ, ଗୌରବୋଜ୍ଜ୍ୱଳ ଏବଂ ଜନଜୀବନର ସାର୍ଥକ ପ୍ରତିବିମ୍ବ ହୋଇପାରିଥିଲା ।

୧୮୮୦ ମସିହାଠାରୁ ୧୯୪୦ ମସିହା ପର୍ଯ୍ୟନ୍ତ ଦୀର୍ଘ ଅର୍ଦ୍ଧଶତାବ୍ଦୀ ମଧ୍ୟରେ ଓଡ଼ିଆ ନାଟକରେ ଯାହା ସମ୍ଭବ ହୋଇପାରିନଥିଲା, ୧୯୫୦ ମସିହାଠାରୁ ୧୯୭୦ ମସିହା ପର୍ଯ୍ୟନ୍ତ, ମାତ୍ର କେତୋଟି ବର୍ଷ ମଧ୍ୟରେ ଓଡ଼ିଆ ନାଟକ ଓ ରଙ୍ଗମଞ୍ଚର ଚେହେରା ସମ୍ପୂର୍ଣ୍ଣ ବଦଳିଯାଇଥିଲା । 'ଓଡ଼ିଶା ଥିଏଟର୍ସ', 'ଅନ୍ନପୂର୍ଣ୍ଣା' 'ଏ' ଓ 'ବି' ଗ୍ରୁପ୍, 'ଜନତା' ପ୍ରଭୃତି ରଙ୍ଗମଞ୍ଚ ଏହି ପରିବର୍ତ୍ତନ-ପର୍ବର ଥିଲା କାର୍ଯ୍ୟକାରୀ ମାଧ୍ୟମ । ବିଭିନ୍ନ ରଙ୍ଗମଞ୍ଚ ଧାରାବାହିକ ନାଟକ ପରିବେଷଣ କରି ଓଡ଼ିଶାରେ ନାଟ୍ୟ ଆନ୍ଦୋଳନକୁ ତ୍ୱରାନ୍ୱିତ କରିଦେଇଥିଲେ । ଏହି ପ୍ରସ୍ଥର ନାଟ୍ୟକାରମାନଙ୍କ ମଧ୍ୟରେ ଗୋପାଳ ଛୋଟରାୟ (୨), ରାମଚନ୍ଦ୍ର ମିଶ୍ର, ମନୋରଞ୍ଜନ ଦାସ, ଭୁବନେଶ୍ୱର ମହାପାତ୍ର, ବ୍ୟୋମକେଶ ତ୍ରିପାଠୀ, ବିଜୟକୁମାର ମିଶ୍ର, ବସନ୍ତକୁମାର ମହାପାତ୍ରଙ୍କ ନାମ ଉଲ୍ଲେଖଯୋଗ୍ୟ ।

'ଫେରିଆ' ଛୋଟରାୟଙ୍କର ପ୍ରଥମ କୃତି । ଜନୈକ ଦରିଦ୍ର ଶିଳ୍ପୀ ମୋହନର ଆଦର୍ଶ ଭାବ, ଭାବପ୍ରବଣତା ତଥା କଳାପ୍ରେମକୁ କେନ୍ଦ୍ର କରି ତାଙ୍କର 'ଭରସା' ନାଟକ ରଚିତ । ସ୍ୱାଧୀନତା ଲାଭର ପୃଷ୍ଠଭୂମିରେ ଦେଶରେ ରାଜନୈତିକ ଦୁର୍ନୀତି, ଅସାଧୁତା, ଠାଉଟରମାନଙ୍କର ପ୍ରତାରଣାକୁ କେନ୍ଦ୍ର କରି

(୧) ଯୁଗଯୋଗୀ, ପଞ୍ଚରଙ୍ଗ (ମନ୍ଦିର ପ୍ରବେଶ, ଦଳବେହେରା, ଦେବତାର ତଳେ, ଛିନ୍ନପତ୍ର), ଷଡ଼ରସ (ଭଙ୍ଗାଗଡ଼ା, ନୂଆ ଦୁନିଆଁ, ପ୍ରତିନିଧି, ପୋଷ୍ୟପୁତ୍ର, କଳଙ୍କ କ୍ଷମା ) ।

(୨) ଫେରିଆ (୧୯୪୭), ଭରସା (୧୯୫୨), ପରକଲମ (୧୯୫୪), ଶଙ୍ଖାସିନ୍ଦୂର, ପଥିକବନ୍ଧୁ, ନଷ୍ଟ ଉର୍ବଶୀ, ନୂଆବୋହୂ, ଅର୍ଦ୍ଧାଙ୍ଗିନୀ (୧୯୫୫), ଶ୍ରୀହରିଙ୍କ ସଂହାର, ଅଭିନେତ୍ରୀ ଇତ୍ୟାଦି ।

*

'ପରକଲମ' ନାଟକ ଲିଖିତ । ଏହି ନାଟକ ଦେଶର ତଥାକଥିତ ଦେଶସେବକ ନେତାମାନଙ୍କର ମୁଖା ଖୋଲିଦେଇଛି । 'ଶଙ୍ଖାସିନ୍ଦୂର' ନାଟକରେ ପାରିବାରିକ ଦାମ୍ପତ୍ୟ ଜୀବନର ବିରୋଧ ସଂଘର୍ଷ ଶରତ୍, ଶରତ୍‌ର ସ୍ତ୍ରୀ ବାଣୀ, ମାଧବୀ, ଲଳିତା-ଦେବୀଙ୍କ ଚରିତ୍ରର ଆଚରଣ ମଧ୍ୟରେ ପ୍ରଦର୍ଶିତ । ରାହାସବିହାରୀ ନିଜ କନ୍ୟା ବାଣୀକୁ ତା'ର ସ୍ୱାମୀ ବିରୋଧରେ ବରାବର ଉତ୍ତ୍ୟକ୍ତ କରିଥିଲେ । ତେଣୁ ପତିବ୍ରତା ସ୍ତ୍ରୀର ଅଯଥା ଆଶଙ୍କା, ଲଳିତାର ପାଶବିକ ପ୍ରାଣସ୍ପୃହତା, ଶ୍ୱଶୁର ରାହାସବିହାରୀଙ୍କ ଚକ୍ରାନ୍ତ, ବେଶ୍ୟାକନ୍ୟା ମାଧବୀର ସମାଜବିରୋଧରେ ମାନସିକ ସଙ୍ଘର୍ଷ, ଦ୍ୱନ୍ଦ୍ୱ ମଧ୍ୟରେ ନାଟକର ଯବନିକାପାତ ହୋଇଅଛି । 'ପଥିକବନ୍ଧୁ'ରେ ଅତ୍ୟାଚାରିତ, ଶୋଷିତ ଓ ଅବହେଳିତ ଶ୍ରମିକମାନଙ୍କର କରୁଣ ଚିତ୍ର, ପୃଷ୍ଠଭୂମିରେ ସାହେବଙ୍କ ପାଶବିକ ଭୋଗଲାଳସା ପ୍ରବୃତ୍ତି ବର୍ଣ୍ଣିତ । ଓଡ଼ିଆ ଶ୍ରମିକମାନଙ୍କର ଦୁଃଖ-ଦୁର୍ଦ୍ଦଶା ନାଟକରେ ପାରିବାରିକ ପରିବେଷ୍ଟନୀରେ ରୂପାୟିତ ହୋଇପାରିଛି । କାଞ୍ଚନ, ବେଙ୍ଗମା, ରାଇଚରଣ, ଜୀବନ, ହେମ ଏବଂ ନାୟିକା ଲତା, ନାୟକ ସୁନ୍ଦର ନାଟକକୁ ପୂର୍ଣ୍ଣାଙ୍ଗ କରିପାରିଛନ୍ତି । ପଲ୍ଲୀଜୀବନର ସରଳ ରମଣୀୟତା ସହିତ ସହର ଜୀବନର ଜଟିଳ ବିଷାକ୍ତ ପରିବେଶ ନାଟ୍ୟକାରଙ୍କ 'ଉର୍ବଶୀ'ରେ ବେଶ୍ ପରିସ୍ଫୁଟ । ଶ୍ୟାମ ଚୌଧୁରୀଙ୍କ କନ୍ୟା ଉର୍ବଶୀ । ତା ଉପରେ ପାଶବିକ ଅତ୍ୟାଚାର କରିଛି ସହରର ସଭ୍ୟ ଯୁବକ ମଦନ । ପ୍ରତାରିତ ଉର୍ବଶୀ ନର୍ସ ତାଲିମ ନେଇଛି । ସେହି ଅବସ୍ଥାରେ କଟକ ହସ୍ପିଟାଲରେ ଡାକ୍ତରୀଛାତ୍ର ଜ୍ଞାନୀନ୍ଦ୍ର ସହିତ ତା'ର ସଖ୍ୟ ସ୍ଥାପନ ଏବଂ ଦୁହେଁ ପ୍ରେମବନ୍ଧନରେ ଆବଦ୍ଧ—ଦୁହିଁଙ୍କର ବିବାହ ମଧ୍ୟ ସମ୍ପାଦିତ ହେଲା ସତ୍ୟ, ମାତ୍ର ପ୍ରକୃତ ସରଳହୃଦୟା ଉର୍ବଶୀ ତା'ର ମିଳନଶଯ୍ୟାରେ ସ୍ୱାମୀ ଜ୍ଞାନୀନ୍ଦ୍ର ସମ୍ମୁଖରେ ତା'ର ପୂର୍ବ-ପ୍ରେମ ଘଟଣା ବର୍ଣ୍ଣନା କରିଥିଲା । ଜ୍ଞାନୀନ୍ଦ୍ର ଏହାପରେ ଉର୍ବଶୀକୁ ପରିତ୍ୟାଗ କରି ପଳାତକ ସାଜିଛି । ଘଟଣାପ୍ରବାହରେ ଜ୍ଞାନୀନ୍ଦ୍ର ପ୍ରକୃତ ଘଟଣାର ସତ୍ୟାସତ୍ୟ ଉପଲବ୍ଧି କରିଛି । ପୁଣି ଉର୍ବଶୀ ଉପରେ ମଦନର ଲାଳସା-ଦୃଷ୍ଟି ପଡ଼ିଛି । ମଦନର ବିନାଶ ଏବଂ ଜ୍ଞାନୀନ୍ଦ୍ର ଉର୍ବଶୀର ପୁନଃ ମିଳନରେ ନାଟକର ପରିସମାପ୍ତି ଘଟିଛି । 'ଉର୍ବଶୀ'ର ସରଳ ନିଷ୍କପଟ ପ୍ରେମ ହିଁ ତାକୁ ତା'ର ବାଞ୍ଛିତ ଅଧିକାର ପ୍ରଦାନ କରିପାରିଛି । 'ଅର୍ଦ୍ଧାଙ୍ଗିନୀ' ନାଟକରେ ମଧ୍ୟ ଲେଖକ ପାରଂପରିକ ଦାମ୍ପତ୍ୟଜୀବନରେ ଉତ୍ଥାନ-ପତନ ପ୍ରଦର୍ଶନ କରିଛନ୍ତି । ମାୟା ତା'ର ପ୍ରଥମ ସନ୍ତାନ ଜନ୍ମ ପରେ ଅପରେସନ୍ ହୋଇଥିଲା ଏବଂ ପୁତ୍ରପ୍ରତି ସମସ୍ତ ମମତା ଅଜାଡ଼ିଦେଇ ସେ ସ୍ୱାମୀ ବିକାଶ ପ୍ରତି କର୍ତ୍ତବ୍ୟରେ ହେଳା କରିଛି । ଏହାପରେ ଏକମାତ୍ର ପୁତ୍ରର ଟନସିଲ୍ ନେଇ ସ୍ୱାମୀ ଓ ସ୍ତ୍ରୀଙ୍କ ମଧ୍ୟରେ ମତଦ୍ୱୈଧ ଦେଖାଦିଏ । ଅପରେସନ୍ ପରେ ଅଶୋକ ସୁସ୍ଥ ହୋଇ ଘରକୁ ଫେରେ । ସେତିକିବେଳେ ପତିପତ୍ନୀଙ୍କ ମଧ୍ୟରେ ଥିବା

ମନ୍ତାନ୍ତର ଦୂର ହୁଏ । ଅବୁଝାମଣାର ମେଘ ଅପସାରିତ ହେବା ସଙ୍ଗେ ସଙ୍ଗେ ଦାମ୍ପତ୍ୟ ଜୀବନ ପୁଣି ହସିଉଠିଛି । ଅବିବାହିତା କନ୍ୟା, ଝିଅ ଘିଅ—ଏହାହିଁ ପିତା ପକ୍ଷରେ ଦୁଃଖ ଓ ଚିନ୍ତାର କାରଣ । 'ଅଭିଗମୀର ସ୍ୱର୍ଗ' ନାଟକରେ ଏହାହିଁ ପ୍ରଦର୍ଶିତ । ଦରିଦ୍ର ଶ୍ୟାମ ଚୌଧୁରୀଙ୍କ ଯୁବତୀ ଝିଅ ଗୀତାର ଅବିବାହିତ ଜୀବନର କାରୁଣ୍ୟ ଏବଂ ଶେଷରେ ଘଟଣାପ୍ରବାହରେ ମନୋଜ ସହିତ ତା'ର ବିବାହ ନାଟକକୁ ପୁରିପୂରି ସାମାଜିକ ମୂଲ୍ୟ ପ୍ରଦାନ କରିପାରିଛି । ନାଟକରେ ରାଜେନ୍ଦ୍ରଙ୍କ ସ୍ତ୍ରୀ ଶାନ୍ତି-ଦେବୀଙ୍କର ମାନସିକ ଦ୍ୱନ୍ଦ୍ୱର ବରାବର ସମ୍ମୁଖୀନ ହୋଇଛନ୍ତି । ଟେକ୍‌ନିକ ଦୃଷ୍ଟିରୁ ଶ୍ରେଷ୍ଠରାୟଙ୍କ ସାମାଜିକ ଓ ପାରିବାରିକ ସମସ୍ୟାଧର୍ମୀ ନାଟକଗୁଡ଼ିକ ରଙ୍ଗମଞ୍ଚରେ ଚହଲ ପକାଇଥିଲା । ସାଂପ୍ରତିକ କାଳରେ ଭାରତବିରୋଧୀ ଚୀନ ଆକ୍ରମଣକୁ କେନ୍ଦ୍ର କରି ତାଙ୍କର 'ସାଧନା' ନାଟକ ଲିଖିତ । କେତେକ ହାସ୍ୟରସାତ୍ମକ ବେତାର ନାଟକ ରଚନା ତାଙ୍କ ନାଟ୍ୟ-ସୃଷ୍ଟିର ଅନ୍ତର୍ଗତ; ଯଥା—'ଘଟକ', 'ଶ୍ରୀହରିଙ୍କ ସଂସାର', 'ପୁରିପୂରି ପାରିବାରିକ' । ସାଧାରଣତଃ ଦୈନନ୍ଦିନ ଜୀବନର କୁସଂସ୍କାର, ଦୁଃଖ, ବିଷାଦ, ଗ୍ଲାନି ଏବଂ ସମସ୍ୟାର ହାସ୍ୟରସ ପୂର୍ଣ୍ଣ ପୃଷ୍ଠଭୂମିରେ ବର୍ଣ୍ଣିତ ।

୧୯୫୫ ମସିହାଠାରୁ ମୂଳ ଅନ୍ନପୂର୍ଣ୍ଣା ଥିଏଟର ଗ୍ରୁପ୍-'ଏ' ଏବଂ ଗ୍ରୁପ୍-'ବି'ରେ ବିଭକ୍ତ ହୋଇଯାଇଥିଲା । 'ବି' ଗ୍ରୁପ୍ କଟକରେ ଏବଂ 'ଏ' ଗ୍ରୁପ୍ ପୁରୀରେ ଧାରାବାହିକ ଭାବରେ ସ୍ଥାୟୀ ରଙ୍ଗମଞ୍ଚରେ ନୂଆ ନୂଆ ନାଟକ ପ୍ରଦର୍ଶନ କରିଥିଲେ । ସେମାନଙ୍କ ନାଟକ ପରିବେଷଣ ଆଭିମୁଖ୍ୟ ଥିଲା ନୂତନ ସାମାଜିକ ନାଟକ ଏବଂ ନୂତନ ଟେକ୍‌ନିକ୍‌ରେ ପ୍ରଦର୍ଶିତ ହେବାର ଯୋଗ୍ୟତାସଂପନ୍ନ ନାଟକ ।

ଶ୍ରୀ ରାମଚନ୍ଦ୍ର ମିଶ୍ରଙ୍କ (୧) 'ମୂଳିଆ' ନାଟକ 'ବି' ଗ୍ରୁପରେ ଅଭିନୀତ ହେବା ପରେ ଏହି ନାଟ୍ୟକାର ରଙ୍ଗମଞ୍ଚ ଏବଂ ନାଟ୍ୟାମୋଦୀ ବ୍ୟକ୍ତିମାନଙ୍କର ଦୃଷ୍ଟି ଆକର୍ଷଣ କରିପାରିଥିଲେ । ବୃଦ୍ଧ ସନାତନର ବଡ଼ପୁଅ ନନ୍ଦ ହାଡ଼ଭଙ୍ଗା ପରିଶ୍ରମ କରି ଯାହା ଉପାର୍ଜ୍ଜନ କରିପାରିଛି, ସେ ତାହା ସାନଭାଇ ରାଜକିଶୋରର ଉଚ୍ଚଶିକ୍ଷା ଉଦ୍ଦେଶ୍ୟରେ ବ୍ୟୟ କରିପାରିଛି । ଫଳରେ ଉଚ୍ଚଶିକ୍ଷିତ ରାଜକିଶୋର ଟାଉନର ଧନୀ ମହାପାତ୍ରଙ୍କ କୁଶିକ୍ଷାରେ ସହରର ଓକିଲ ବାବୁଙ୍କ କନ୍ୟା କଳ୍ପନା ପ୍ରତି ଆକୃଷ୍ଟ ହେଲା ଏବଂ ପରିଣାମରେ ପିତାଙ୍କ ବିବାହ ପ୍ରସଙ୍ଗକୁ ଉପେକ୍ଷା କରି ଭାଇ-ଭାଉଜଙ୍କ ଯୋଗଦାନକୁ ଅସ୍ୱୀକାର କଲା; କିନ୍ତୁ ରାଜକିଶୋର କଳ୍ପନାକୁ ବିବାହ କରି ନପାରି ଅନୁଶୋଚନାରେ ନିଜ ପରିବାରକୁ ଫେରିଛି ଏବଂ

(୧) ମୂଳିଆ (୧୯୪୬), କବିସୂର୍ଯ୍ୟ (୧୯୪୭), ଘରସଂସାର (୧୯୫୦), ସାଇପଡ଼ିଶା (୧୯୫୩), ଭାଇଭାଉଜ (୧୯୫୪), ସେବିକା (୧୯୫୫), ମମତା (୧୯୫୫), ପୁଆଣୀଘର (୧୯୬୨), ନରୋତ୍ତମଦାସ କହେ (୧୯୬୯) ।

ଶେଷରେ ସେହି ଗ୍ରାମ୍ୟ ବାଳିକା ସରକୁ ବିବାହ କରିଛି । ଲେଖକ ଦ୍ୱନ୍ଦ୍ୱ ଏବଂ ସଂଘର୍ଷ ସୃଷ୍ଟି କରିବା ଲାଗି ଟାଉଟର ଧଡ଼ି ମହାମାନ୍ତି ପ୍ରଭୃତି ଚରିତ୍ର ସୃଷ୍ଟି କରିପାରିଛନ୍ତି । ଏହି ନାଟକର ସାମାଜିକ ଅର୍ଥନୈତିକ ପୃଷ୍ଠଭୂମି ଦେଉଛି—ଦ୍ୱିତୀୟ ମହାଯୁଦ୍ଧ ପରବର୍ତ୍ତୀ ଓଡ଼ିଶା । କାଳୀଚରଣଙ୍କ 'ଜୟଦେବ' ନାଟକଦ୍ୱାରା ଶ୍ରୀଯୁକ୍ତ ମିଶ୍ର ଅନୁପ୍ରାଣିତ ହୋଇ 'କବିସୂର୍ଯ୍ୟ' ନାଟକ ଲେଖିଥିବାର ଅନୁମାନ କରାଯାଏ । ଉଭୟ 'ଘରସଂସାର' ଏବଂ 'ଭାଇଭାଉଜ' ନାଟକ ସମସାମୟିକ ଓଡ଼ିଆ ସମାଜ ଓ ପରିବାରର ଚିତ୍ର । ମାତ୍ର ତା'ର ପରିଧି ହୋଇଛି ଆଧୁନିକ ସ୍ୱାର୍ଥସର୍ବସ୍ୱ, ପ୍ରତାରଣାପୂର୍ଣ୍ଣ ପାଶ୍ଚାତ୍ୟ ଶିକ୍ଷାପ୍ରାପ୍ତ ଯୁବସମାଜ ଏବଂ ଅନ୍ୟ ଉପରେ ଗ୍ରାମ୍ୟ ଟାଉଟରଗୋଷ୍ଠୀ । 'ଘର ସଂସାର'ରେ ରଘୁନାଥପୁର ଓ ଚଣ୍ଡିପୁର ଗ୍ରାମର ପୃଷ୍ଠଭୂମିରେ ପ୍ରାଚୀନପନ୍ଥୀ ନବୀନପନ୍ଥୀ ପୁରୁଷ ଓ ନାରୀ ଚରିତ୍ର ମାଧ୍ୟମରେ ପାରିବାରିକ ସଂଘର୍ଷ, ବିବାହ, ବିରୋଧ ହିଁ ନାଟକର ଗଳ୍ପାଂଶ । ଆଧୁନିକ ଅନିମା, ରକ୍ଷଣଶୀଳା ଶାରଦା, ମାମଲତି-କାର ଅନାଦି, ମିଷ୍ଟର ବର୍ମା, ଆଦର୍ଶବାଦୀ ଗୋପ ଚୌଧୁରି ଗଳ୍ପାଂଶରେ ପ୍ରତି-ଫଳିତ । ସେହିପରି ପ୍ରାଚୀନ ପରଂପରା-ପରିପୁଷ୍ଟ ଅବସରପ୍ରାପ୍ତ ପୋଲିସ୍, ଆଧୁନିକ ସଭ୍ୟ ଅଫିସର ଶଙ୍କର ଏବଂ ବିଦ୍ୟାଳୟ ଶିକ୍ଷକ ନିମାଇଁଙ୍କ ପରିବାରକୁ କେନ୍ଦ୍ର କରି 'ସାଇପଡ଼ିଶା' ନାଟକଟି ରଚିତ । ଭାଇ ଭାଉଜଙ୍କ ଧୂର୍ତ୍ତ ଆଚରଣ, ଉଭୟ ପରିବାର ମଧ୍ୟରେ ସଂଘର୍ଷର ସୂତ୍ରପାତ କରିପାରିଛି । ଶେଷରେ ନିମାଇଁ ବାବୁଙ୍କ ପୁଅ ସହିତ ଅହଂସର୍ବସ୍ୱ ଶଙ୍କର ବାବୁ ଏବଂ ତାଙ୍କ ପତ୍ନୀ ନିରୂପମା ନିମାଇଁ ବାବୁଙ୍କ କନ୍ୟା ଶୈଳଜାକୁ ବୋହୂ ରୂପରେ ଗ୍ରହଣ କରିଛନ୍ତି । ଗ୍ରାମ୍ୟ ଜମିଦାର ଯୋଗୀ ସାହୁର ଅତ୍ୟାଚାରଜର୍ଜରିତ କୃଷକ ମଙ୍ଗୀ ପ୍ରଧାନ ପରିବାରରେ ଯେଉଁ ଦୁଃଖ, ଝଡ଼ ସୂଚନା ଦ୍ୱାରା ଜମିଦାରଙ୍କ ପୁତ୍ର ନିଧିର ହୃଦୟ ପରିବର୍ତ୍ତନ ନାଟକରେ ପ୍ରଦର୍ଶିତ । ସେହିପରି ପାରିବାରିକ ଚିତ୍ର ହେଉଛି 'ମମତା' ନାଟକର ଉପଜୀବ୍ୟ । ଯାଦବ ବାବୁଙ୍କ ସାନପୁଅ ମାଧବ ଏବଂ ସାନବୋହୂ ବାସନ୍ତୀ ଚରିତ୍ର ୧୯୪୨ ଆନ୍ଦୋଳନ ଭୂମିକାରେ ପରିକଳ୍ପିତ । ଓଡ଼ିଶାର ବନ୍ୟା ସମସ୍ୟା ନାଟକରେ ସେବାଧର୍ମ ସୂଚୀତ । 'ସେବିକା' ନାଟକର ନାମକରଣର ସଫଳତା ଏବଂ ନାରୀର ଆଦର୍ଶ ଧର୍ମ ଯେପରି ବିକାଶ ବୈଧୁରୀ ଏବଂ ବିବାହିତା ଜୟନ୍ତୀର ଦ୍ୱନ୍ଦ୍ୱ ମଧ୍ୟରେ ପ୍ରତିଫଳିତ । 'ପୁଅାଣୀ ଘର' ନାଟକରେ ନନ୍ଦ ଚରିତ୍ର ନବଘନ ଏବଂ ତାଙ୍କ ହୃଦୟ ପରିବର୍ତ୍ତନ ହିଁ ପରିଲକ୍ଷିତ । ସୁନା, ବାଣୀ, ପଲ୍ଲୀବାଳିକା ଚନ୍ଦ୍ରା, ଡାକ୍ତର ଶଶୀ ଚରିତ୍ର ମାଧ୍ୟମରେ ଏବଂ କଲିକତା ସହରର ପୃଷ୍ଠଭୂମିରେ ଏହା ସମ୍ଭବ ହୋଇପାରିଛି । ଅବସର-ପ୍ରାପ୍ତ ଶିକ୍ଷକ ଭଣୋଇ ନରୋତ୍ତମ ଦାସ ଚରିତ୍ର ସାହାଯ୍ୟରେ ଲେଖକ ଆଧୁନିକ ଭାରତର ଦୁର୍ନୀତିଗ୍ରସ୍ତ ଆୟକର ଅଫିସର ମିଃ ଦାସ, ଲକ୍ଷ୍ମୀ ଟ୍ରେଡ଼ର୍ସ ପ୍ରତିଷ୍ଠାନର ମାଲିକ ଯାଦବବାବୁ ଏବଂ ଏମ୍. ଏଲ୍. ଏ. ସାନଶଳା ମାଧବଙ୍କ ଚରିତ୍ରଙ୍କ ବ୍ୟବଧାନ

ଏବଂ ସେମାନଙ୍କ ରାଜନୈତିକ ଗୁଳବାଜି, ଅର୍ଥନୈତିକ ଶୋଷଣଗ୍ରସ୍ତ ସମ୍ଭୋଗ-ବିଳାସୀ ହାକିମ ଜୀବନର ମୁଖା ଖୋଲିଦେଇଛନ୍ତି । ଦେଶରେ ରାଜନୈତିକ କ୍ଷମତାର ଯେଉଁ ହଟଚମଟ ଗୁଳିଛି, ତାହାର ଉଦାହରଣ ହୀନମନା ଏବଂ ନୀଚମନା ମାଧବ ଏବଂ କ୍ଷମତାଲୋଭୀ ମାଧବର ଶିକାର ହୋଇଛି ଗ୍ରାମ୍ୟ-କନ୍ୟା ଭାରତୀ । 'ନୋଟ୍‌ବଦଳରେ ଭୋଟ୍ ମିଳେ' ଏହାହିଁ ହୋଇଛି ଦେଶର ରାଜନୈତିକ ସ୍ୱାଧୀନତା ପର୍ବର ପରିଣତି । ନରୋତ୍ତମ ଦାସ ଏହିସବୁ ଶୋଷଣ, ଅତ୍ୟାଚାର ଅର୍ଥନୈତିକତାର ବିରୋଧୀ ଚରିତ୍ରରୂପେ ଦଣ୍ଡାୟମାନ ।

ଏହି ଯୁଗରେ ଭଞ୍ଜକିଶୋର ପଟ୍ଟନାୟକ (୧୯୧୨) ସାମାଜିକ ନାଟକ-ଲେଖକ ଭାବରେ ସୁପରିଚିତ (୧) । କଥାବସ୍ତୁର ମୌଳିକତା, ପାରିବାରିକ ଚେତନା, ରଙ୍ଗମଞ୍ଚ ଅଭିନୟ ଉପଯୋଗିତା ଦୃଷ୍ଟିରେ ତାଙ୍କ ନାଟକଗୁଡ଼ିକର ମୂଲ୍ୟ ସର୍ବଥା ସ୍ୱୀକୃତ । ତାଙ୍କ ନାଟକଗୁଡ଼ିକରେ ନାୟକ ନାୟିକା ସମାଜର ଧନୀକ ଏବଂ ଗରିବ ଶ୍ରେଣୀରୁ ମନୋନୀତ । 'ବେନାମୀ' ନାଟକରେ ନାୟକ ଜେଲ୍‌ଫେରନ୍ତା ଆସାମୀର ପୁଅ ଏବଂ ସହରରେ ପାଠ ପଢ଼ିବା ଅବସରରେ ଶିକ୍ଷିତା ନାୟିକା ସହିତ ତା'ର ପରିଚୟ ଘଟେ ଏବଂ ସେମାନଙ୍କ ପରିଚୟ ଶେଷରେ ପ୍ରେମରେ ପରିଣତ ହୁଏ । ଭାରତୀୟ ସମାଜର ଏକାନ୍ନବର୍ତ୍ତୀ ପରିବାର ସଙ୍ଗଠନ ଏକ ବିଶିଷ୍ଟ ଅଙ୍ଗ ଏବଂ ଏହାର ସୌନ୍ଦର୍ଯ୍ୟ, ମର୍ଯ୍ୟାଦା, ସିଦ୍ଧାର୍ଥ, ପାର୍ଥ ଓ ରବୀନ୍ଦ୍ର ନାମକ ତିନିଗୋଟି ଭାଇଙ୍କ ଜୀବନ ମାଧ୍ୟମରେ 'ମାଣିକଯୋଡ଼ି' ନାଟକରେ ପ୍ରଦର୍ଶିତ । ଦୁଃଖଦାରିଦ୍ର୍ୟ, ଅଭାବ ମଧ୍ୟରେ ଜଣେ ଲେଖକର ସ୍ୱପ୍ନ କିପରି ପ୍ରତିହତ ହୁଏ, ତାହାହିଁ 'ଜୟମାଲ୍ୟ' ନାଟକରେ ଉପସ୍ଥାପିତ । 'ତୋଫାନ୍'ରେ ସେହିପରି ସମାଜ ସଚେତନତା ଏବଂ କଥାବସ୍ତୁର ବାସ୍ତବତା ପ୍ରତି ଧ୍ୟାନ ଦିଆଯାଇଛି ।

ଶ୍ରୀ ମନୋରଞ୍ଜନ ଦାସ (୧୯୨୩) କାଳୀଚରଣଙ୍କ ଯୁଗର ଜଣେ ପରିଚିତ ନାଟ୍ୟକାର (୨) । ତାଙ୍କ ନାଟକର ଗଳ୍ପାଂଶର ପରିଧି ଓଡ଼ିଶାର ଇତିହାସରୁ ଆରମ୍ଭ କରି ସାଂପ୍ରତିକ ସାମାଜିକ ଓ ପାରିବାରିକ ପରିସର ମଧ୍ୟରେ ବ୍ୟାପ୍ତ । ସେ ତାଙ୍କର ଐତିହାସିକ ନାଟକ 'ବକ୍‌ସି ଜଗବନ୍ଧୁ' ଏବଂ ଚରିତମୂଳକ ନାଟକ

(୧) ବେନାମୀ (୧୯୪୬), ଜହର (୧୯୪୮), ତୋଫାନ (୧୯୫୦), ଗରିବ (୧୯୫୪), ଅତିଥି (୧୯୫୪), ଅଶୋକସ୍ତମ୍ଭ, ଆଲୋକ (୧୯୫୫), ଜୟମାଲ୍ୟ ଆଦି ।

(୨) ଯୌବନ (୧୯୪୫), ବକ୍‌ସି ଜଗବନ୍ଧୁ (୧୯୪୯), କବିସମ୍ରାଟ ଉପେନ୍ଦ୍ର-ଭଞ୍ଜ (୧୯୪୭), ଅଗଷ୍ଟ ନ', ଆଗାମୀ (୧୯୫୦), ଅବରୋଧ (୧୯୫୩) ନାସ୍ତି (ଏକାଙ୍କିକା), ସାଗର ମନ୍ଥନ (୧୯୬୪), ବନହଂସୀ (୧୯୬୮), ଅରଣ୍ୟ ଫସଲ (୧୯୬୧), ଅମୃତସ୍ୟ ପୁତ୍ରାଃ (୧୯୬୧), କାଠଘୋଡ଼ା (୧୯୬୩) ।

'ଉପେନ୍ଦ୍ର ଭଞ୍ଜ' ରେ ନାଟ୍ୟକାର ଅଶ୍ୱିନୀକୁମାର ଏବଂ କାଳୀଚରଣଙ୍କ ଦ୍ୱାରା ପ୍ରଭାବିତ। 'ଆଗାମୀ'ରେ ଫ୍ରଏଡ୍-ମାର୍କସ ଏବଂ ଗାନ୍ଧିଚିନ୍ତାର ସମ୍ମିଳିତ ପରିପ୍ରକାଶ ଘଟିଛି। 'ଅବରୋଧ'ରେ ଶ୍ରମିକ ସମସ୍ୟା ଏବଂ ଶ୍ରମିକ ଅଶାନ୍ତି ବର୍ଣ୍ଣିତ। ରାଜନୈତିକ ବ୍ୟଙ୍ଗ ଚେତନାରେ ଏହି ନାଟକଟି ପୂର୍ଣ୍ଣ। ସଂକ୍ଷେପରେ କହିଲେ 'ଆଗାମୀ' ଓ 'ଅବରୋଧ' ନାଟକରେ ଜନସାଧାରଣଙ୍କ ସଂଗ୍ରାମୀ ଶକ୍ତିକୁ ସ୍ୱୀକାର କରାଯାଇଛି। ବକ୍ତବ୍ୟ ଓ ଆଙ୍ଗିକ ଦୃଷ୍ଟିରୁ 'ବନହଂସୀ' ଏକ ଉଲ୍ଲେଖଯୋଗ୍ୟ ନାଟ୍ୟକୃତି। ଗ୍ରନ୍ଥକୀଟ ଅଧ୍ୟାପକ ସୁବ୍ରତ, କ୍ଷୀଣାଙ୍ଗୀ ଦେବୀ ଏବଂ ଫରେଷ୍ଟ କଣ୍ଟ୍ରାକ୍ଟର, ଆଉ କାମାତୁରା ଲଲିଦେବୀ ଏହିମାନଙ୍କର ଯୌନଜୀବନକୁ ଆକ୍ଷେପ କରି 'ଅରଣ୍ୟଫସଲ' ନାଟକଟି ରଚିତ। ପାରଂପରିକ ବୈବାହିକ ଜୀବନପ୍ରଥା ଏହି ନାଟକରେ ଟଳେ ଟଳେ ହେଲେ ସମ୍ମାନ, ଶ୍ରଦ୍ଧା ଦେଖିବାକୁ ମିଳେନାହିଁ। ସ୍ୱାମୀ ଯେପରି ପରନାରୀ-ଲୋଲୁପ, କାମାତୁରା ସ୍ତ୍ରୀ ତାହାଠାରୁ ବଳି ଅଧିକ କାମାତୁରା। ଏମାନଙ୍କରେ ସ୍ୱାମୀ-ସ୍ତ୍ରୀ ଅବସ୍ଥାପନ କରନ୍ତି; ମାତ୍ର ସେମାନଙ୍କ ମଧ୍ୟରେ ପ୍ରେମ ନଥାଏ। 'ଅମୃତସ୍ୟ ପୁତ୍ରାଃ' ନାଟକର ଚରିତ୍ର ମଧ୍ୟ ପ୍ରାଚୀନ ମୂଲ୍ୟବୋଧ ଓ ନୂତନ ମୂଲ୍ୟବୋଧର ସଂଘର୍ଷରେ ଅସ୍ଥିର, ମ୍ରିୟମାଣ, ଆଧୁନିକ ଜୀବନ ବିଶେଷତଃ ଯୌନଜୀବନ ପ୍ରତାରଣାପୂର୍ଣ୍ଣ, ଯନ୍ତ୍ରଣାପୂର୍ଣ୍ଣ। 'କାଠଘୋଡ଼ା' ନାଟକରେ ଏହା ପ୍ରତିପାଦିତ। ଏହି କାଠଘୋଡ଼ା ନିଃସଙ୍ଗ ଅସହାୟ ଜୀବନର ପ୍ରତୀକ। 'ସାଗରମନ୍ଥନ'ରେ ସେହି ଦୁର୍ନୀତି, ପ୍ରତାରଣାର ସ୍ୱର ଶୁଣାଯାଏ। ନାଟ୍ୟକାର ତାଙ୍କ ନାଟକର ଗଳ୍ପାଂଶ, ସଂଳାପ ଏବଂ ରଙ୍ଗମଞ୍ଚ ପରିକଳ୍ପନାରେ ପାଶ୍ଚାତ୍ୟ ନାଟ୍ୟ ଆନ୍ଦୋଳନଦ୍ୱାରା ପ୍ରଭାବିତ।

ଶ୍ରୀ ରମାରଞ୍ଜନ ମହାନ୍ତିଙ୍କର 'ଗୌଡ଼ବିଜେତା', ଲାଲ ନଗେନ୍ଦ୍ର, କୁମାର ରାୟଙ୍କର (୧୯୨୮) କଳଙ୍କ ବିଜୟ, ଶେଷ ସ୍ୱାଧୀନତା, ରଘୁଅରକ୍ଷିତ ନାଟକ-ରୂପେ ପରିଚିତ। 'ଗୌଡ଼ବିଜେତା'ରେ ଅଭିନୟ ଉପଯୋଗିତାର ଅଭାବ ଦେଖାଯାଏ। ଶ୍ରୀ ଲକ୍ଷ୍ମୀଧର ନାୟକଙ୍କର (୧୯୧୪) ନାଟକ 'ଭାଲଗୃବୁକ', 'ଧର୍ମପତ୍ନୀ', 'ଜମିଦାର' ରଙ୍ଗମଞ୍ଚରେ ଅଭିନୀତ ହୋଇ ଲୋକପ୍ରିୟତା ଅର୍ଜନ କରିଛି। ଶ୍ରୀ ମାୟାଧର ମାନସିଂହଙ୍କର 'ନଷ୍ଟନୀଡ଼', 'ବୃକ୍ଷ', 'ବାଟବାର୍ତ୍ତା' ନାଟକରେ ଆଧୁନିକ ନାଟକର ପ୍ରକାଶଭଙ୍ଗୀ ପରିଦୃଷ୍ଟ। 'ପୁତ୍ତିକା' 'ପୂଜାରିଣୀ' କାବ୍ୟନାଟିକା ବେଶ୍ ଆଦୃତ। ସେହିପରି ଶ୍ରୀ ରଜତକୁମାର କରଙ୍କର 'ସୁରେନ୍ଦ୍ର ସାଏ', 'କବି ସମ୍ରାଟ', 'ବପ୍ଲବୀ ହଜୁରୀ' ଐତିହାସିକ ପ୍ରେରଣାସମ୍ମିଳିତ ଏବଂ 'ସଭ୍ୟତା' ସାମାଜିକ ତଥ୍ୟସମ୍ବଳିତ।

ଶ୍ରୀ ଅଦ୍ୱୈତଚରଣ ମହାନ୍ତି ପ୍ରାଚୀନ ଉତ୍କଳର ନୌବାଣିଜ୍ୟ ପରଂପରା ଏବଂ ମର୍ଯ୍ୟାଦାର ସ୍ମୃତିରେ 'ସାଧବଝିଅ' ନାଟକ ରଚନା କରିଛନ୍ତି। ତଥପୋଇ

ଏହି ନାଟକର କେନ୍ଦ୍ରବିନ୍ଦୁ । ତାଙ୍କର 'ନରଦେବତା' ପୌରାଣିକ ନାଟକ ଏବଂ 'ପରିଚୟ'ରେ ସାମାଜିକ କଥାବସ୍ତୁ ଗୃହୀତ ।

ଶ୍ରୀ ଭୁବନେଶ୍ୱର ମହାପାତ୍ର ଆଧୁନିକ ଓଡ଼ିଆ ନାଟକ ରଚନାକ୍ଷେତ୍ରରେ ଜଣେ ପ୍ରତିଭାଶାଳୀ ସ୍ରଷ୍ଟା । ପରିମାଣ ଦିଗରୁ ମଧ୍ୟ ତାଙ୍କର ନାଟ୍ୟକୃତିଗୁଡ଼ିକ ଉଲ୍ଲେଖଯୋଗ୍ୟ । ତାଙ୍କର ନାଟ୍ୟକୃତି ମଧ୍ୟରେ 'ତୋଫାନ', 'ଘରଘରଣୀ', 'ବାଧାବନ୍ଧନ', 'ରାଜମୁକୁଟ', 'କିଏ କାହାର', 'ବାଡ଼ୁଅ ଝିଅ', 'ବାଟବରଣ', 'କାଚକାଞ୍ଚନ', 'ବିଦ୍ରୋହୀ', 'ଗୋଲକଧନ୍ଦା', 'ମୋତିମହଲ' ପ୍ରଭୃତି ପ୍ରଧାନ । ତୀବ୍ର ସମାଜଚେତନା ଏବଂ ପାରିବାରିକ ଜୀବନର ସଙ୍ଘର୍ଷ, ସୁଖ-ଦୁଃଖ ତାଙ୍କ ନାଟକର ଗଳ୍ପାଂଶରେ ପ୍ରତିଫଳିତ ହୋଇଥାଏ ।

ଦେଶର ଜାତୀୟ ସଂହତି, ପାରସ୍ପରିକ ବୁଝାମଣା, ସହାନୁଭୂତିକୁ କେନ୍ଦ୍ରକରି ଲିଖିତ ଶ୍ରୀ ଯଦୁନାଥ ଦାଶ ମହାପାତ୍ରଙ୍କ (୧୯୨୯) ନାଟକ (୧) 'ଭୁଲ ହୁଏନା' (୧୯୬୫) ବିଭିନ୍ନ ରଙ୍ଗମଞ୍ଚରେ ବହୁବାର ଅଭିନୀତ ହୋଇ ଦର୍ଶକମାନଙ୍କର ପ୍ରଶଂସା ଅର୍ଜନ କରିପାରିଛି । 'ସମସେର' ଚରିତ୍ର ମାଧ୍ୟମରେ ନାଟ୍ୟକାର ହୃଦୟ-ପରିବର୍ତ୍ତନ, ମାନବିକତାର ପ୍ରଶ୍ନ ଉତ୍‌ଥାପନ କରିପାରିଛନ୍ତି । ଲେଖକଙ୍କର 'ସୂର୍ଯ୍ୟମନ୍ଦିର' ନାଟକରେ ଦେଶାତ୍ମବୋଧ, ଜାତୀୟତାର ଉଦ୍‌ବୋଧନ କରାଯାଇଛି । 'ଅଥବା ଅନ୍ଧାର' ନାଟକରେ ଲେଖକଙ୍କ ଆଙ୍ଗିକ ଓ ବକ୍ତବ୍ୟର ସମ୍ପୂର୍ଣ୍ଣ ରୂପ ପରିବର୍ତ୍ତିତ ହୋଇଯାଇଛି । ଏହା ଏକ ପରୀକ୍ଷାମୂଳକ ନାଟକ । ଗଳ୍ପାଂଶର ନୂତନତା, ତୀକ୍ଷ୍ଣ ସଂଳାପ ତାଙ୍କ ନାଟକସମୂହରେ କ୍ରମଶଃ ପରିବର୍ଦ୍ଧିତ ହୋଇପାରିଛି । 'ଅଶାନ୍ତଗ୍ରହ', 'ଶବବାହକମାନେ', 'ଜନନୀ', 'ତିମିରତୀର୍ଥ', 'ପାଷାଣର ପ୍ରତୀକ୍ଷା', 'ଏକାଙ୍କୀ', 'ଦୁଇଟି ସୂର୍ଯ୍ୟଦଗ୍ଧ ଫୁଲ', 'ଯାଯାବର' ପ୍ରଭୃତି ନାଟକର ନାଟ୍ୟକାର ଶ୍ରୀ ବିଜୟକୁମାର ମିଶ୍ର ସାମାଜିକ ମୂଲ୍ୟବୋଧର ପରିବର୍ତ୍ତିତ ପରିପ୍ରେକ୍ଷୀରେ ନୂତନ ଦର୍ଶନ ପ୍ରମାଣିତ କରି ପାରିଛନ୍ତି ।

ଶ୍ରୀ ପ୍ରାଣବନ୍ଧୁ କରଙ୍କ 'ଅଶାନ୍ତ' ଓ 'ଶ୍ୱେତପଦ୍ମା' ନାଟକାଭିନୟରେ ସାଜସଜ୍ଜାଗତ ରଙ୍ଗମଞ୍ଚ ପରିବର୍ତ୍ତନ ପରିଲକ୍ଷିତ ହୁଏ । ସେହିପରି ଶ୍ରୀ କମଳଲୋଚନ ମହାନ୍ତିଙ୍କ ଗଳ୍ପାଂଶରେ ଗ୍ରାମ୍ୟ ସର୍ବସ୍ୱତା (୨), ଶ୍ରୀ ବ୍ୟୋମକେଶ

---

(୧) ସଂଗ୍ରାମ, ସୂର୍ଯ୍ୟମନ୍ଦିର, ଭୁଲ୍ ହୁଏନା, ପରଶମଣି, ସେତୁବନ୍ଧ, କ୍ଷମା କରିବେ କି ?, ରାଜିଗୋ ତୁମେ କଥା କୁହ, ନୂଆ କିଛି ନୁହେଁ, ଅଥବା ଅନ୍ଧାର ।

(୨) ସ୍ୱାମୀ-ସ୍ତ୍ରୀ, କରଣି, ସମାଧାନ, ଗାଁ ମାଟି, ମଣିଷ, ସନ୍ତାନ, ଭାଇଭଉଣୀ, ଡାକବଙ୍ଗଳା ।

ତ୍ରିପାଠୀଙ୍କର ନାଟକରେ ବାସ୍ତବ ଧର୍ମିତା (୧), ଶ୍ରୀ ବଳରାମ ମିଶ୍ରଙ୍କ (୨) ନାଟକରେ ସାମାଜିକ ଜିଜ୍ଞାସା ଆଧୁନିକ ଓଡ଼ିଆ ନାଟକର ଦୃଷ୍ଟି ଦିଗନ୍ତ-ପ୍ରସାରିତ କରିପାରିଛି । ବହୁ ତରୁଣ ନାଟ୍ୟକାର ବର୍ତ୍ତମାନ ଲେଖନୀ ଚାଳନା କରୁଛନ୍ତି ଏବଂ ତୀବ୍ର ସମାଜ ସଚେତନତା ଆଙ୍ଗିକ ଏବଂ ବକ୍ତବ୍ୟରେ ନୂତନତା ପ୍ରତିଫଳିତ କରାଇବା ପ୍ରୟାସ ସେମାନଙ୍କର ନାଟକର ଲକ୍ଷଣ । ପ୍ରଫୁଲ୍ଲକୁମାର ରଥଙ୍କର 'ସ୍ୱର୍ଗକୁ ଯାଅ ହେ ପାପୀମାନେ' ନୂତନ ଚିନ୍ତା-ଚେତନାଦ୍ୱାରା ଚିହ୍ନିତ । କାର୍ତ୍ତିକକୁମାର ରଥ ବର୍ତ୍ତମାନ ନାଟକ ଲେଖି ସଫଳତାର ସହିତ ମଞ୍ଚସ୍ଥ କରାଇ ପାରିଛନ୍ତି । ଜନପ୍ରିୟ ଉପନ୍ୟାସ ସାଂପ୍ରତିକ ନାଟ୍ୟକାରମାନଙ୍କର ଦୃଷ୍ଟିରୁ ବାଦ୍ ପଡ଼ିନାହିଁ । ଉପାଦେୟ ଗଳ୍ପାଂଶ ଅଭାବରେ ଅନେକ ନାଟ୍ୟକାର ଜନପ୍ରିୟ ଉପନ୍ୟାସକୁ (୩) ନାଟ୍ୟରୂପ ପ୍ରଦାନ କରିଛନ୍ତି । ଫକୀରମୋହନଙ୍କ ଉପନ୍ୟାସ 'ଛମାଣ ଆଠଗୁଣ୍ଠ', 'ମାମୁଁ' ଠାରୁ ଆରମ୍ଭ କରି ନନ୍ଦକିଶୋରଙ୍କ 'କନକଲତା', କାଳିନ୍ଦୀଚରଣଙ୍କ 'ମାଟିର ମଣିଷ', କାହ୍ନୁଚରଣଙ୍କ 'ଝଞ୍ଜା', 'ଶାନ୍ତି', 'ଭୁଣ୍ଡି-ବାଇଦ', ହରେକୃଷ୍ଣ ମହତାବ୍‌ଙ୍କ 'ପ୍ରତିଭା' ପ୍ରଭୃତି ଉପନ୍ୟାସ ଏହି ପର୍ଯ୍ୟାୟର ଅନ୍ତର୍ଗତ । ଏତାଦୃଶ ସାଧନା ମୂଳରେ ଚଳଚ୍ଚିତ୍ର-ଜଗତର ପ୍ରେରଣା ଯେ ନାହିଁ, ତାହା ନୁହେଁ ।

ବିଗତ ଶତାବ୍ଦୀର ଶେଷ ପର୍ଯ୍ୟାୟରେ କେତେକ ସଂସ୍କୃତ ନାଟକ ଓଡ଼ିଆରେ ଅନୂଦିତ ହୋଇଥିଲା । ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କର ଅନୂଦିତ କୃତି ଉଲ୍ଲେଖଯୋଗ୍ୟ । ପରବର୍ତ୍ତୀକାଳରେ ବୈଦେଶିକ ନାଟକ ମଧ୍ୟ ଓଡ଼ିଆ-ଭାଷାରେ ଅନୂଦିତ ହୋଇଛି (୪) । ୧୯୩୪ ମସିହାରେ ବିଶ୍ୱ ନାଟ୍ୟକାର ସେକ୍ସ-ପିୟରଙ୍କ ପ୍ରସିଦ୍ଧ 'ହାମଲେଟ୍' ନାଟକ ଓଡ଼ିଆରେ ଅନୂଦିତ ହୋଇଥିଲା । ଏତାଦୃଶ ଅନୁବାଦ ଓଡ଼ିଆ ନାଟକର ଅଗ୍ରଗତିରେ ଅବଶ୍ୟ ସହାୟକ ହୋଇଛି ଏବଂ ନାଟ୍ୟତତ୍ତ୍ୱ କ୍ଷେତ୍ରରେ ନାଟ୍ୟକାରଙ୍କ ଦୃଷ୍ଟି ସଂପ୍ରସାରିତ କରିପାରିଛି ।

---

(୧) ସିଂହଦ୍ୱାର, ହେମନ୍ତହରିଣୀ, ଏକ-ଦୁଇ-ତିନ୍, କଂସାକବାଟ ।

(୨) 'ବନ୍ଧିତା' ।

(୩) ମାମୁଁ—ଶ୍ରୀ ରାମଚନ୍ଦ୍ର ମହାପାତ୍ର, 'ଛମାଣ ଆଠଗୁଣ୍ଠ'ର ନାଟ୍ୟରୂପ (ଚମ୍ପା) —ଶ୍ରୀ ବସନ୍ତକୁମାର ଶତପଥୀ, ମାଟିର ମଣିଷ—ଶ୍ରୀ ପ୍ରାଣବନ୍ଧୁ କର, ପ୍ରତିଭା—ଶ୍ରୀ ଗୋପାଳ ଛୋଟରାୟ ।

(୪) ଅଥେଲୋ—ଡ: ମାୟାଧର ମାନସିଂ, The Wild Duck (ବନ୍ୟ ମରାଳୀ)—ଡ: ଗୋପାଳଚନ୍ଦ୍ର ମିଶ୍ର, ସୁଦୂର ସଙ୍କେତ—ଶ୍ରୀ କାଳିନ୍ଦୀଚରଣ ପାଣିଗ୍ରାହୀ ।

'ଏକାଙ୍କିକା' ନାଟ୍ୟସାହିତ୍ୟର ସର୍ବାଧୁନିକ ପରିବର୍ତ୍ତିତ ସଂକ୍ଷିପ୍ତ କଳାତ୍ମକ ରୂପ । ୧୯୩୦ ମସିହା ବେଳକୁ ଓଡ଼ିଆ ଭାଷାରେ ଲିଖିତ 'ଆବୃତ୍ତିଦର୍ପଣ'ରେ ଏକାଙ୍କିକାର ଯାହା ସ୍ୱରୂପ ଥିଲା, ତାହା ପରବର୍ତ୍ତୀ ଶିକ୍ଷାନୁଷ୍ଠାନ ପ୍ରସାରିତ ଯୁଗରେ ବିଶେଷତଃ, ବେତାର-ଯୁଗରେ, ସମ୍ପୂର୍ଣ୍ଣ ପରିବର୍ତ୍ତିତ ହୋଇଯାଇଛି । ଅଧିକାଂଶ ନାଟ୍ୟକାର ବର୍ତ୍ତମାନ ଏକାଙ୍କିକା ରଚନାରେ ଧ୍ୟାନ ଦେଉଛନ୍ତି । ବିଶେଷତଃ ଡଃ ହରେକୃଷ୍ଣ ମହତାବ, କାଳନ୍ଦୀଚରଣ ପାଣିଗ୍ରାହୀ, ପ୍ରାଣବନ୍ଧୁ କର, ଗୋପାଳ ଛୋଟରାୟ, ମନୋରଞ୍ଜନ ଦାସ, ଶ୍ରଦ୍ଧାକର ସୂପକାର, କାଳିପ୍ରସନ୍ନ କବି, ଲିଙ୍ଗରାଜ ଦାସ, ଅଦ୍ୱୈତଚନ୍ଦ୍ର ମହାନ୍ତି, ବସନ୍ତକୁମାର ମହାପାତ୍ର, ବିଜୟକୁମାର ମିଶ୍ର, ଭଞ୍ଜକିଶୋର ପଟ୍ଟନାୟକ, ପ୍ରଫୁଲ୍ଲକୁମାର ରଥ, କୁଳମଣି ମହାପାତ୍ର, ଦାଶରଥି ପ୍ରସାଦ ଦାସ, ସୁରେନ୍ ମହାନ୍ତି, କାର୍ତ୍ତିକଚନ୍ଦ୍ର ରଥ, ରମେଶ ପ୍ରସାଦ ପାଣିଗ୍ରାହୀ, ଗୋପାଳଚନ୍ଦ୍ର ମିଶ୍ର ପ୍ରମୁଖଙ୍କ ଲିଖିତ ଏକାଙ୍କିକାସମୂହରେ ଏହି ନିର୍ଦ୍ଦିଷ୍ଟ ନାଟ୍ୟରଚନାର ପରିସରରେ ସାଂପ୍ରତିକ ସାମାଜିକ, ରାଜନୈତିକ ସମସ୍ୟା, ଜିଜ୍ଞାସା-ବିଚଳିତ ବ୍ୟକ୍ତିର ଚିନ୍ତନ ପ୍ରତିଫଳିତ । ବହୁ ଯୁବଲେଖକ ବର୍ତ୍ତମାନ ଯୁଗ-ସମସ୍ୟାକୁ କେନ୍ଦ୍ରକରି ଗଭୀର ମନସ୍ତତ୍ତ୍ୱଧର୍ମୀ ଏକାଙ୍କିକା ଲେଖି ଯୁବସମାଜରେ ପ୍ରଭାବ ସୃଷ୍ଟି କରିପାରିଛନ୍ତି ।

ବ୍ୟବସାୟ-ସୂତ୍ରରେ ଓଡ଼ିଶାରେ ଗଢ଼ିଉଠିଥିବା ରଙ୍ଗମଞ୍ଚ ଯେ ସାଂପ୍ରତିକ ଯୁଗର ନାଟ୍ୟକାରମାନଙ୍କୁ ବହୁଭାବରେ ଉତ୍ସାହିତ କରିଅଛି, ଏହା ନିଃସନ୍ଦେହ । ପୁନଶ୍ଚ, ଓଡ଼ିଶାର ବିଭିନ୍ନ ସ୍ଥାନରେ ପ୍ରତିଷ୍ଠିତ ମହାବିଦ୍ୟାଳୟଗୁଡ଼ିକର ନାଟ୍ୟସଂସ୍ଥା ଓ ଆକାଶବାଣୀ ତରୁଣ ନାଟ୍ୟକାରମାନଙ୍କର ଏହି ସମୟରେ ବହୁ ପରିମାଣରେ ପୃଷ୍ଠପୋଷକତା କରିଛି । ଆଧୁନିକ ନାଟ୍ୟକାରମାନେ ପାଶ୍ଚାତ୍ୟ ଦେଶସମୂହର ନାଟ୍ୟ ଆନ୍ଦୋଳନଦ୍ୱାରା ପ୍ରଭାବିତ ହୋଇ ନାଟକ ମାଧ୍ୟମରେ ଦେଶରେ ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ସଂସ୍କାର ଆନୟନ କରିବାକୁ ଚାହିଁଛନ୍ତି । ଫଳରେ ଏବକାଳରେ ଯୁବକ ନାଟ୍ୟକାରମାନଙ୍କ ନାଟକ ହୋଇଛି ସମକାଳୀନ ସମସ୍ୟା ଓ ବୈଜ୍ଞାନିକ ଚିନ୍ତାଧାରାର ବାହକ । ଚଳିତ ଦଶନ୍ଧିରେ କେବଳ ଓଡ଼ିଆ ନାଟକ ନୁହେଁ, ଓଡ଼ିଆ ରଙ୍ଗମଞ୍ଚ ମଧ୍ୟ ଗତାନୁଗତିକତାରୁ ମୁକ୍ତ ହୋଇ ଏକ ଆଧୁନିକ ଆଦର୍ଶ ପଥରେ ଧାବମାନ ହୋଇଛି; ଫଳରେ ଆଧୁନିକ ଯୁଗରେ ପୌରାଣିକ ଓ ଐତିହାସିକ ଗଳ୍ପାଂଶକୁ ମଧ୍ୟ ସାମାଜିକ ଢାଞ୍ଚାରେ ଉପସ୍ଥାପିତ କରାଯାଇପାରୁଛି ।

ଓଡ଼ିଆ ନାଟକର ଆଙ୍ଗିକ ଓ ବକ୍ତବ୍ୟ ପରିବର୍ତ୍ତିତ ହୋଇଯାଇଛି । ଉଚ୍ଚ ସାମାଜିକ ଆଦର୍ଶ ଓ ପରମ୍ପରା ସୃଷ୍ଟି କରିବା ପାଇଁ ଆଜିର ନାଟ୍ୟକାର ନିଜେ ଯେପରି ଏକ ମନସ୍ତାତ୍ତ୍ୱିକ ଦ୍ୱନ୍ଦ୍ୱର ଶିକାର ହୋଇଛି, ନୂତନତା ଓ ପରୀକ୍ଷା-ନିରୀକ୍ଷା ନାମରେ ଆଜିର ନାଟ୍ୟକାର ବହୁ ଉଦ୍ଭଟ କଳ୍ପନା କରିପାରିଛି ।

*

ନାଟକରେ ଗଳ୍ପାଂଶର ଗୁରୁତ୍ୱ ଆଜି ନାହିଁ କି କ୍ଲାସିକ ଆଦର୍ଶ ଓ ଶୃଙ୍ଖଳା ପ୍ରଦର୍ଶନ କରିବା ପାଇଁ ନାଟ୍ୟକାର ବାଧ୍ୟ ନୁହେଁ—ଯେହେତୁ ଆଧୁନିକ ନାଟକର ଲକ୍ଷ୍ୟ ହେଉଛି ଆଧୁନିକ ବ୍ୟକ୍ତି । ସାମାଜିକ ଭୂମିକା ବୋଲି ଏବର ନାଟକରେ କୌଣସି ବସ୍ତୁ ନାହିଁ । ଯୁଗବ୍ୟକ୍ତିର ଜୀବନଜ୍ୱାଳା ଏବଂ ଯନ୍ତ୍ରଣାରେ ଅତ୍ୟାଧୁନିକ ନାଟକ ନିଜର ପୂର୍ବତତ୍ତ୍ୱ ହରାଇବସିଛି । ତେଣୁ ନାଟକ ଯେ ସାଧାରଣ ଦର୍ଶକର ମନୋରଞ୍ଜନ ପାଇଁ ଉଦ୍ଦିଷ୍ଟ, ଏହି ମୌଳିକ ତତ୍ତ୍ୱ ଯେପରି ନାଟ୍ୟକାର ବିସ୍ମୃତ । ତେଣୁ ତଥାକଥିତ ମନନଶୀଳ ନାଟକର ଆଡ଼ମ୍ବର ଶୁଣାଯାଏ । ତାହା ସଙ୍ଗେ ସଙ୍ଗେ ସେଦିନର ମଞ୍ଚଶୈଳୀ ମଧ୍ୟ ଆଜି ବଦଳିଯାଉଛି । ଏବେ ଆବ୍‌ସର୍ଡ (ଉଦ୍ଭଟ ନାଟକ)ର ନାମ ଶୁଣାଯାଏ, ଯାହାର ସତ୍ତା ନାଟକର ନିଛକ ତତ୍ତ୍ୱମୂଳରେ କୁଠାରାଘାତ କରିଥାଏ ବୋଲି ଆଶଙ୍କା । ଆଜି ପ୍ରତ୍ୟେକ ନାଟ୍ୟକାର ସମାଜର ପ୍ରତିଷ୍ଠିତ ପରଂପରା ବିରୋଧରେ ନାଟକ ଓ ରଙ୍ଗମଞ୍ଚକୁ ଯେପରି ଅସ୍ତ୍ର ରୂପେ ପ୍ରୟୋଗ କରୁଛନ୍ତି ! ବିଭିନ୍ନ ପତ୍ରପତ୍ରିକାରେ ଓଡ଼ିଆ ନାଟକ, ଯାତ୍ରା ସମ୍ବନ୍ଧୀୟ ଆଲୋଚନା ବ୍ୟତୀତ ନାଟ୍ୟତତ୍ତ୍ୱ, ନାଟ୍ୟରଚନା ସମ୍ବନ୍ଧରେ କେତେକ ଆଲୋଚନା ପୁସ୍ତକ ଲିଖିତ ହୋଇଛି । (୧)

## କ୍ଷୁଦ୍ରଗଳ୍ପ—

ଆଧୁନିକ ଓଡ଼ିଆ ସାହିତ୍ୟରେ ନବଜାଗରଣର ପର୍ଯ୍ୟାୟରେ କ୍ଷୁଦ୍ରଗଳ୍ପ ଏକ ଶକ୍ତିଶାଳୀ ମାଧ୍ୟମରୂପେ ସ୍ୱୀକୃତ ଏବଂ ବିଗତ ଶତାବ୍ଦୀର ଶେଷ ପାଦରେ ପ୍ରଥିତଯଶା ଫକୀରମୋହନ ସେନାପତିଙ୍କ ଲେଖନୀରେ ଏହାର ନବ-ଜନ୍ମ, ସଂସ୍କାର, ଲାଳନପାଳନ ଏବଂ ବିକାଶ ଏକାଧାରରେ ସମ୍ଭବ ହୋଇଥିଲା । ପୂର୍ବକାଳରେ ଓଡ଼ିଆ ସମାଜ କାହାଣୀ-ବିବର୍ଜିତ ନଥିଲା ଏବଂ ଏହାର ପ୍ରମାଣ ସ୍ୱରୂପ ଗ୍ରାମ୍ୟ ସମାଜରେ କଥିତ, ପ୍ରଚଳିତ ଏବଂ ଆଦୃତ ରଜାପୁଅ, ମନ୍ତ୍ରୀପୁଅ କଥା, ସାଧବବୋହୂ କଥା, ଚକୁଳିଆପଣ୍ଡା କଥା, ପକ୍ଷୀକଥାର ନଜିର ଦିଆଯାଇ-ପାରେ । କଥାବସ୍ତୁ, ଘଟଣା, ଚରିତ୍ରଚିତ୍ରଣ, ବାକ୍‌ଭଙ୍ଗୀ, ପରିବେଷଣ ସବୁକିଛି ପ୍ରାଚୀନ କାହାଣୀରେ ସମ୍ଭବ ହୋଇଥିଲା । ଅଷ୍ଟାଦଶ ଶତାବ୍ଦୀରେ ବ୍ରଜନାଥ ବଡ଼ଜେନାଙ୍କ ରଚିତ 'ଚତୁର ବିନୋଦ' ଓଡ଼ିଆ କ୍ଷୁଦ୍ରଗଳ୍ପ ଓ କାହାଣୀର ଇତିହାସରେ ଏକ ଦୃଢ଼ ସେତୁସ୍ୱରୂପ । ମାତ୍ର ପାଶ୍ଚାତ୍ୟ ସାହିତ୍ୟର ପ୍ରଭାବ ଫଳରେ

(୧) ଓଡ଼ିଆ ନାଟ୍ୟକଳା—ଗିରିଜାଶଙ୍କର ରାୟ ।
ନାଟକ ବିଚାର—ସର୍ବେଶ୍ୱର ଦାସ ।
ଯୁଗେ ଯୁଗେ ଓଡ଼ିଆ ନାଟ୍ୟ ସାହିତ୍ୟ—ବୀରକିଶୋର ଦାସ ।
ଓଡ଼ିଆ ନାଟକ ଓ ନାଟ୍ୟକାର—ନାରାୟଣ ଶତପଥୀ ।

ଊନବିଂଶ ଶତାବ୍ଦୀର ଶେଷପାଦରେ ଓଡ଼ିଆ ଭାଷାରେ ଯେଉଁ ନୂତନ କ୍ଷୁଦ୍ରଗଳ୍ପ ରଚିତ ହେଲା, ତା'ର ଯଥାର୍ଥ ପିତୃତ୍ୱ ଏବଂ ସ୍ରଷ୍ଟୃତ୍ୱ ଫକୀରମୋହନଙ୍କଠାରେ ଅନାୟାସରେ ଆରୋପିତ ହୋଇଥାଏ । ତାଙ୍କର ପ୍ରଥମ ମୌଳିକ ଗଳ୍ପ 'ରେବତୀ' (ଉତ୍କଳ ସାହିତ୍ୟ, ୧୮୯୮) ନବ ଜାଗରଣ ଯୁଗରେ ଓଡ଼ିଆ ଗଳ୍ପର ନୂତନ ସ୍ୱରୂପ, ସଂଜ୍ଞା, ବ୍ୟାପ୍ତି ଏବଂ ସମ୍ଭାବନାର ସୂଚନା ଦେଇଥାଏ । କବିବର ରାଧାନାଥ ରାୟ (ଇତାଲୀୟ ଯୁବା, ୧୮୭୪) ଏବଂ ମଧୁସୂଦନ ରାଓଙ୍କର (ପ୍ରଣୟର ଅଦ୍ଭୁତ ପରିଣାମ) ରଚନା ନାମତଃ କ୍ଷୁଦ୍ରଗଳ୍ପ । ଯଥାର୍ଥତଃ ଫକୀରମୋହନ ହିଁ ଓଡ଼ିଆ କ୍ଷୁଦ୍ରଗଳ୍ପର ଆଦିସ୍ରଷ୍ଟା ଏବଂ ତାଙ୍କ ପ୍ରବର୍ତ୍ତିତ ଗଳ୍ପଶୈଳୀ ଏପର୍ଯ୍ୟନ୍ତ ଅନତିକ୍ରାନ୍ତ ରହିଛି ବୋଲି କୁହାଯାଇପାରେ । ଫକୀରମୋହନଙ୍କ ଗଳ୍ପର ସମାଜ-ସଚେତନତା ଏବଂ ବ୍ୟଙ୍ଗ-ବିଦ୍ରୂପାତ୍ମକତା ହିଁ ବିଶେଷ ଉଲ୍ଲେଖଯୋଗ୍ୟ । ପୁରାଣ (Mythology), କିଂବଦନ୍ତୀ (Legends), ଆଖ୍ୟାୟିକା (Parable) ସ୍ତରର ଖୁବ୍ ଉର୍ଦ୍ଧ୍ୱକୁ ଫକୀରମୋହନ ଅତିକ୍ରମ କରିସାରିଥିଲେ ।

ଫକୀରମୋହନଙ୍କ ସମୟକୁ ଓଡ଼ିଆ କ୍ଷୁଦ୍ର ଗଳ୍ପର ରୂପରେଖ ନିର୍ଣ୍ଣିତ ହୋଇସାରିଥିଲା ଏବଂ ଏହି କ୍ଷୁଦ୍ରଗଳ୍ପର ଆଙ୍ଗିକ ମୂଳରେ ପାଶ୍ଚାତ୍ୟ ଚେତନା ହିଁ ନିହିତ ଥିଲା । କ୍ଷୁଦ୍ରଗଳ୍ପର ଅନ୍ୟତମ ପ୍ରବର୍ତ୍ତକ ଏଡ଼୍‌ଗାର ଏଲେନ୍ ପୋଙ୍କ ଦୃଷ୍ଟିରେ ଆଧୁନିକ କ୍ଷୁଦ୍ରଗଳ୍ପକଳାର ବ୍ୟାପ୍ତି ଓ ପରିଧି ସ୍ପଷ୍ଟ—"A short story is a prose narrative short enough to be read in a single sitting, written to make an impression on the reader, excluding all that does not forward that impression complete and final in itself ।" ପୁନଶ୍ଚ, ଆଧୁନିକ ଗଳ୍ପକଳାର ପାଶ୍ଚାତ୍ୟ ପ୍ରବକ୍ତାମାନଙ୍କର ସୂକ୍ଷ୍ମ ସମୀକ୍ଷାରେ—"A short story deals with a single character, a single event, a single emotion called forth by a single situation." ଏକକ ଚରିତ୍ର, ଏକକ ଘଟଣା, ଏକକ ଅବିଚ୍ଛିନ୍ନ ଏକାନ୍ତ ଆବେଗ ଓ ପରିସ୍ଥିତି ହିଁ କ୍ଷୁଦ୍ରଗଳ୍ପକଳାର ପ୍ରାଣବିନ୍ୟାସ । ଫକୀରମୋହନ ଗଳ୍ପକଳାର ଏହି ତତ୍ତ୍ୱକୁ ମିଳାଇ କରି ଗଳ୍ପ ଲେଖିଥିଲେ କି ନା ସନ୍ଦେହ; ମାତ୍ର ତାଙ୍କ ଗଳ୍ପସମୂହରେ ଯେ ଏକ ଅପୂର୍ବ କଳା-ସଫଳତା ଓ ଆକର୍ଷଣ ପ୍ରତିଫଳିତ, ଏହା ନିଃସନ୍ଦେହ । ଫକୀରମୋହନଙ୍କ ସମ-ସାମୟିକ ଯୁଗରେ କିମ୍ବା ପରେ ପରେ ଯେଉଁମାନେ ଓଡ଼ିଆ କ୍ଷୁଦ୍ରଗଳ୍ପ କ୍ଷେତ୍ରରେ ଆବିର୍ଭୂତ ହୋଇଥିଲେ, ସେମାନେ ହେଲେ—ଚନ୍ଦ୍ରମଣି ମହାନ୍ତି, ଦୟାନିଧି ମିଶ୍ର (କଥାକଦମ୍ବ), ଉପେନ୍ଦ୍ର ପ୍ରସାଦ ମହାନ୍ତି, ଦିବ୍ୟସିଂହ ପାଣିଗ୍ରାହୀ (ଅମୃତ କଙ୍କଣ), ଲକ୍ଷ୍ମୀକାନ୍ତ ମହାପାତ୍ର, ଗୋଦାବରୀଶ ମିଶ୍ର, ଉପେନ୍ଦ୍ର ପ୍ରସାଦ ଦାସ, ଚନ୍ଦ୍ରଶେଖର

ନନ୍ଦ, ବାଙ୍କନିଧି ପଟ୍ଟନାୟକ (ଧୂପଗ୍ରୁୟା), ସୁପ୍ରଭା କର, ପ୍ରତିଭା କର । ଏମାନଙ୍କ ଗଳ୍ପସୃଷ୍ଟିରେ ଆଙ୍ଗିକ ସ୍ୱାତନ୍ତ୍ର୍ୟ କିମ୍ବା ଶୈଳୀ ସ୍ୱାତନ୍ତ୍ର୍ୟ ବିଶେଷ ପରିମାଣରେ ସାଧିତ ହୋଇ ପାରିନାହିଁ । କେବଳ ଓଡ଼ିଆ କ୍ଷୁଦ୍ର ଗଳ୍ପଧାରା ଅବ୍ୟାହତ ରଖିବାରେ ଏହି ଗଳ୍ପକାର ଦାୟୀ ବୋଲି କୁହାଯାଇପାରେ । ଏହି ପର୍ଯ୍ୟାୟର ଗଳ୍ପସମୂହର ଗଠନ-ପରିପାଟୀ, ଘଟଣାବିନ୍ୟାସ କ୍ଷୁଦ୍ରଗଳ୍ପର ଉଦ୍ଦେଶ୍ୟ ଏବଂ କଳାତ୍ମକ ଐକ୍ୟ ପ୍ରାଚୀନ କାହାଣୀଧର୍ମୀ ରଚନାଠାରୁ ଯେ ସ୍ୱତନ୍ତ୍ର ନୁହେଁ, ତାହା କୁହାଯାଇନପାରେ । ଜୀବନାନୁଭୂତିର ନୈତିକ ଉପସ୍ଥାପନା, ଘଟଣାନିବିଡ଼ ମୁହୂର୍ତ୍ତର ସଂହତ ପ୍ରକାଶ, ଯୁଗ-ଚେତନା ୧୯୩୦ ମସିହା ପର୍ଯ୍ୟନ୍ତ ଲିଖିତ ଓଡ଼ିଆ କ୍ଷୁଦ୍ର ଗଳ୍ପରେ ସଂପୂର୍ଣ୍ଣରୂପେ ବିଦ୍ୟମାନ । ପ୍ରାଚୀନ କାହାଣୀ ପରଂପରା ଏବଂ ପାଶ୍ଚାତ୍ୟ ଗଳ୍ପଗଠନ ଉପରେ ଫକୀରମୋହନ ଯେଉଁ ଆଧୁନିକ କ୍ଷୁଦ୍ର ଗଳ୍ପର ସୌଧ ଠିଆ କରାଇଲେ ତାହାକୁ ଏହି ଲେଖକଗଣ ସୁଦୃଢ଼ କରିଥିଲେ ।

ଓଡ଼ିଆ କ୍ଷୁଦ୍ର ଗଳ୍ପର ବିକାଶ ତିନଗୋଟି ପର୍ଯ୍ୟାୟରେ ବିଭକ୍ତ—୧୮୯୮-୧୯୩୦, ୧୯୩୧-୧୯୪୭, ୧୯୪୮-୧୯୬୦ । ବିଂଶ ଶତାବ୍ଦୀର ଚତୁର୍ଥ ଦଶନ୍ଧିରେ ଓଡ଼ିଆ ଗଳ୍ପକଳାରେ ଆହୁରି ନିବିଡ଼ ପରିବର୍ତ୍ତନ ସାଧିତ ହୋଇଥିଲା । ଏକ ପରିସ୍ଥିତି, ବ୍ୟକ୍ତି-ଜୀବନର ମୁହୂର୍ତ୍ତର ଭାବାବେଗ, ଏକ ଚରିତ୍ର କିମ୍ବା କୌଣସି ଏକ ଘଟଣାକୁ କେନ୍ଦ୍ର କରି ଗଳ୍ପ ଲେଖାଯାଇପାରେ ଏବଂ କଳାତ୍ମକ ସୌନ୍ଦର୍ଯ୍ୟ ପରିପାଟୀରେ ସେହି ଗଳ୍ପ ଯଥାର୍ଥଭାବରେ କାର୍ଯ୍ୟକାରୀ ଏବଂ ପ୍ରଭାବଶାଳୀ ହୋଇପାରେ—ଏହି ସତ୍ୟ ହିଁ ୧୯୩୦ ପରବର୍ତ୍ତୀ ଓଡ଼ିଆ କ୍ଷୁଦ୍ର ଗଳ୍ପକୁ ମର୍ଯ୍ୟାଦା ପ୍ରଦାନ କରିଥିଲା ।

କୌଣସି ଏକ ଅନୁପ୍ରାଣିତ ମୁହୂର୍ତ୍ତର ନିବିଡ଼ ଅନୁଭୂତିରେ ଜର୍ଜରିତ ବ୍ୟକ୍ତିମାନସର ସଂବେଦନଶୀଳ ପ୍ରକାଶ ହିଁ କ୍ଷୁଦ୍ର ଗଳ୍ପର ଧର୍ମ ବୋଲି ଇଚ୍ଛୁକ ଗଳ୍ପଲେଖକମାନେ ସ୍ୱୀକାର କରିଥିଲେ । ସ୍ୱଳ୍ପାୟତନ ମଧ୍ୟରେ ଜୀବନର ସୌନ୍ଦର୍ଯ୍ୟ, ବେଦନା, କାରୁଣ୍ୟ ଆବିଷ୍କାର କରିବାରେ ୧୯୩୦ ମସିହା ପରବର୍ତ୍ତୀ ଗଳ୍ପଲେଖକମାନଙ୍କର ପ୍ରୟାସ ଉଲ୍ଲେଖଯୋଗ୍ୟ । ତରୁଣ ଗଳ୍ପକାରମାନେ ଯେମିତି ପ୍ରଖ୍ୟାତ ଗାଳ୍ପିକ ସମରସେଟ୍ ମମ୍‌ଙ୍କ ଆଦର୍ଶ ଅନୁଯାୟୀ ଉଦ୍‌ବୁଦ୍ଧ ହେଲେ—"The short story must have definite aim which includes a point of deparature, a climax and a point of taste, in other words it must have a plot, it exhibits life to us as it were under a microscope and enables us to view it more clearly than we can do in the raw."

ଭଗବତୀଚରଣ ପାଣିଗ୍ରାହୀଙ୍କ (୧୯୦୭-୧୯୪୩) ଲିଖିତ 'ଶିକାର' ଗଳ୍ପ (୧୯୩୬) ଭାବସଂହତ, ସାମାଜିକ ସଚେତନତା ଏବଂ ମାନସିକ ଦ୍ୱନ୍ଦ୍ୱଦ୍ୱାରା ଚିହ୍ନିତ । ଆଙ୍ଗିକ, କଥାବସ୍ତୁ ଅପେକ୍ଷା ଲେଖକଙ୍କର ଏହି ଏକମାତ୍ର ଗଳ୍ପରେ ଦୁର୍ବାର ରାଜନୈତିକ ଚେତନା ହିଁ ପରିସ୍ଫୁଟ । ସେହି ସମୟରେ ପ୍ରତିଷ୍ଠିତ ଆଧୁନିକ ପତ୍ରିକା ଓଡ଼ିଶାରେ ରାଜନୈତିକ ମତବାଦ ପ୍ରଣୟନର ମାଧ୍ୟମ ଥିଲା ।

ଫକୀରମୋହନଙ୍କ ପରେ ବିଶେଷତଃ ୧୯୪୦ ବେଳକୁ ଆଧୁନିକ ଯୁଗର ଶ୍ରେଷ୍ଠ କଥାଶିଳ୍ପୀଭାବରେ ଶ୍ରୀଯୁକ୍ତ କାଳିନ୍ଦୀଚରଣ ପାଣିଗ୍ରାହୀଙ୍କ ସୃଷ୍ଟିର ପ୍ରାଚୁର୍ଯ୍ୟ, ପରିମାଣ ତଥା ଶୈଳ୍ପିକ ସୌନ୍ଦର୍ଯ୍ୟବୋଧ ପାଠକମାନଙ୍କୁ ବିଶେଷ ପ୍ରଭାବିତ କରିପାରିଛି । କଥାବସ୍ତୁ, କଥନଭଙ୍ଗୀ, ଜୀବନଦର୍ଶନ ଏବଂ ସୃଷ୍ଟି କାରୁକାର୍ଯ୍ୟ, ଗୁରୁତ୍ୱିକ ଅଧ୍ୟୟନ ଏପରି ପ୍ରତ୍ୟେକ ଦିଗରୁ ଶ୍ରୀଯୁକ୍ତ ପାଣିଗ୍ରାହୀଙ୍କ ଗଳ୍ପସମୂହ ଓଡ଼ିଆ ଗଳ୍ପର ଶକ୍ତି ପ୍ରତିଷ୍ଠା କରିପାରିଛି । ଓଡ଼ିଶାର ଗ୍ରାମ୍ୟ ଜୀବନର ନିଖୁଣ ଆଲେଖ୍ୟ ସହିତ ବ୍ୟକ୍ତିପ୍ରାଣର ଅସରନ୍ତି ଅନୁଭୂତି, ଅଭିଜ୍ଞତାରେ ଗଭୀର ଅବଗାହନ ହିଁ ଏହି ଗାଳ୍ପିକଙ୍କର କୃତିତ୍ୱ । ଲେଖକଙ୍କର ପ୍ରଥମ ଗଳ୍ପ 'ଅପରାଧିନୀ'ର (ଉତ୍କଳ ସାହିତ୍ୟ—୧୯୨୦) ପ୍ରକାଶନ କାଳ ଏବଂ ଅନ୍ୟ ଦିଗରେ ତାଙ୍କର ବହୁ ଗଳ୍ପର ସମୟ ଓ ପରିଧି ସପ୍ତ ଦଶନ୍ଧି । ତେଣୁ ଏକ ପ୍ରସାରିତ ଭୂମି ଉପରେ ହିଁ କଥାଶିଳ୍ପୀଙ୍କର ସୃଷ୍ଟି-ସଂପଦ ବିନ୍ୟସ୍ତ ହୋଇପାରିଛି । ତାଙ୍କର ଆଦ୍ୟ ପର୍ଯ୍ୟାୟର ଗଳ୍ପ ସଂକଳନ 'ସାଗରିକା', 'ଦ୍ୱାଦଶୀ'ର ପ୍ରତ୍ୟେକ ଗଳ୍ପ ସାମାଜିକ ବାସ୍ତବତାର ଐଶ୍ୱର୍ଯ୍ୟ ଏବଂ ବିଷୟବସ୍ତୁର ସ୍ୱାତନ୍ତ୍ର୍ୟଦ୍ୱାରା ଚିହ୍ନିତ । ଗଳ୍ପକଳାର ସାମାଜିକ ପ୍ରୟୋଜନ ପ୍ରତି କଥାଶିଳ୍ପୀ ବରାବର ସଚେତନ ଥିବାର ଜଣାଯାଏ ।

ଦ୍ୱିତୀୟ ମହାଯୁଦ୍ଧକାଳ ଓଡ଼ିଆ ଗଳ୍ପ-ସାହିତ୍ୟରେ ପ୍ରାକ୍ ଦ୍ୱିତୀୟ ପର୍ଯ୍ୟାୟ ଯୁଗ ବୋଲି କୁହାଯାଇଥାଏ । ପୂର୍ବରୁ ଉତ୍କଳସାହିତ୍ୟ, ମୁକୁର, ସତ୍ୟବାଦୀ, ବାରୁଣୀ, ଚସେଚକ; ପରେ ସହକାର, ନବଭାରତ, ଆଧୁନିକ, ଆରତି, ଡଗର ପ୍ରଭୃତି ମାସିକ ସାହିତ୍ୟ ପତ୍ରିକା କ୍ଷୁଦ୍ରଗଳ୍ପର ବହୁଳ ପ୍ରଚାର ପାଇଁ ଭୂମିକା ଯୋଗାଇ ଦେଇଥିଲା । ଏହି ଯୁଗରେ ଯେଉଁମାନେ ନୂତନ କ୍ଷୁଦ୍ରଗଳ୍ପ ରଚନା କଲେ, ସେମାନେ ସମସ୍ତେ ୧୯୫୦ ମସିହା ବେଳକୁ ଓଡ଼ିଆ ସାହିତ୍ୟରେ ପ୍ରବୀଣ କଥାଶିଳ୍ପୀ ଭାବରେ ନିଜକୁ ପ୍ରତିଷ୍ଠିତ କରିପାରିଥିଲେ । ଏହି କଥାଶିଳ୍ପୀମାନଙ୍କୁ ମଧ୍ୟ ଗଳ୍ପର ଆଙ୍ଗିକ, ଭାଷାଶିଳ୍ପ, ଗଠନକଳା ଏବଂ କଳାତ୍ମକ ବିଚାରରେ ବିଭିନ୍ନ ପର୍ଯ୍ୟାୟଭୁକ୍ତ କରାଯାଇପାରେ; ଯଥା—

(କ) ଶ୍ରୀଯୁକ୍ତ କାଳିନ୍ଦୀଚରଣ ପାଣିଗ୍ରାହୀ (୧୯୦୧), ଗୋଦାବରୀଶ ମହାପାତ୍ର (୧୮୯୮—୧୯୬୫), ଅନନ୍ତ ପ୍ରସାଦ ପଣ୍ଡା (୧୯୦୬) ।

(ଖ) ସଚ୍ଚିଦାନନ୍ଦ ରାଉତରାୟ (୧୯୧୬), ମନମୋହନ ମିଶ୍ର, ହରିଶ୍ଚନ୍ଦ୍ର ବଡ଼ାଲ ।

(ଗ) ରାଜକିଶୋର ପଟ୍ଟନାୟକ (୧୯୧୨), ଗୋପୀନାଥ ମହାନ୍ତି (୧୯୧୪), କାହ୍ନୁଚରଣ ମହାନ୍ତି (୧୯୦୬), ରାଜକିଶୋର ରାୟ (୧୯୧୪), ନିତ୍ୟାନନ୍ଦ ମହାପାତ୍ର (୧୯୧୨), କାଳିପ୍ରସନ୍ନ କର, କମଳାକାନ୍ତ ଦାସ (୧୯୦୬), ବୈକୁଣ୍ଠ ନାଥ ଦାସ, ପ୍ରାଣବନ୍ଧୁ କର (୧୯୧୪) ।

ଏହି ଲେଖକମାନଙ୍କ ବିଭିନ୍ନ ଆଙ୍ଗିକ, ବିଭିନ୍ନ ଶୈଳୀର ନିୟମିତ ଗଳ୍ପ ରଚନା କରି ଓଡ଼ିଆ କ୍ଷୁଦ୍ରଗଳ୍ପକୁ ସର୍ବାଧୁନିକ ରୂପପ୍ରାପ୍ତ ହେବାରେ ସାହାଯ୍ୟ କରିପାରିଛନ୍ତି । ଅର୍ଥନୈତିକ ଶୋଷଣ ଓ ବୈଷମ୍ୟ, ସାମାଜିକ ଅନ୍ୟାୟ ଓ କୁସଂସ୍କାର, ଦୁର୍ଗତ ନରନାରୀଙ୍କ ନିପୀଡ଼ନ ବିରୋଧରେ ପ୍ରତିବାଦର ସ୍ୱର ହିଁ ଏହି ବିଶିଷ୍ଟ କଥାକାରମାନଙ୍କ ଗଳ୍ପରେ ଅନୁରଣିତ । କଳା ପାଇଁ କଳା, ଗଳ୍ପ ପାଇଁ ଗଳ୍ପ, ଏହି ସ୍ଥିତାବସ୍ଥା ପ୍ରତି ଅଧିକାଂଶ ଗଳ୍ପକାର ଆସ୍ଥାବାନ୍ ହୋଇନାହାନ୍ତି । ସାମ୍ୟବାଦୀ ଚିନ୍ତାଧାରା, ମାର୍କସୀୟ ଜୀବନଦର୍ଶନ, ସମାଜରେ ପରାସ୍ତ ବ୍ୟକ୍ତିର ନିର୍ମମ ଅସହାୟତା ଏବଂ ଶୋଷଣନ୍ୟସ୍ତ ପୁଞ୍ଜିପତିଗୋଷ୍ଠୀ ପ୍ରତି ଆହ୍ୱାନ କ୍ଷୁଦ୍ରଗଳ୍ପର ହେଲା କେନ୍ଦ୍ରବସ୍ତୁ ।

ଯଶସ୍ୱୀ କଥାଶିଳ୍ପୀ କାଳିନ୍ଦୀଚରଣ ପାଣିଗ୍ରାହୀଙ୍କର (୧) କତିପୟ ସୃଷ୍ଟି ଗଳ୍ପକଥନକଳାର ଅପୂର୍ବ ସଫଳତାରେ ଯେତିକି ମଣ୍ଡିତ, ସାମାଜିକ ସମସ୍ୟା ଉପସ୍ଥାପନ କରି ତା'ର ସମାଧାନ ପାଇଁ ପ୍ରତ୍ୟକ୍ଷ ନିର୍ଦ୍ଦେଶ ଦେବାରେ ସେହିପରି-ମାଣରେ ପ୍ରଯୁକ୍ତ । ଯୁଗରୁଚି, ଯୁଗଚେତନା ଏବଂ ମନସ୍ତାତ୍ତ୍ୱିକ ସଂଘର୍ଷ ହିଁ ତାଙ୍କର ପ୍ରତ୍ୟେକ ଗଳ୍ପରେ ଅନୁସନ୍ଧେୟ; ଯଥା—'ମାଂସର ବିଳାପ', 'ଉପହାର', 'ବିଜୟ ଉତ୍ସବ', 'ପଙ୍ଗୁ', 'ଘାଟି' । 'ମାଂସର ବିଳାପ'ରେ ଲେଖକ ମଣିଷର ପଶୁତ୍ୱ ଏବଂ ପଶୁର ମଣିଷତ୍ୱ ହିଁ ଆବିଷ୍କାର କରିପାରିଛନ୍ତି । ସଂକ୍ଷେପରେ କହିବାକୁ ଗଲେ ଜଣେ ପ୍ରଭାବଶାଳୀ, ଜୀବନବାଦୀ କଥାଶିଳ୍ପୀ ଭାବରେ ଶ୍ରୀଯୁକ୍ତ ପାଣିଗ୍ରାହୀଙ୍କ ଗଳ୍ପସୃଷ୍ଟି ସାମାଜିକ ଜୀବନରୁ ସମ୍ଭୂତ ବୋଲି କୁହାଯାଇଥାଏ ।

ଶ୍ରୀ ଗୋଦାବରୀଶ ମହାପାତ୍ର (୧୮୯୮) (୨) ଆଲୋଚ୍ୟ ପର୍ଯ୍ୟାୟ (୧୯୪୦-୧୯୬୦) ମଧ୍ୟରେ ବହୁ କ୍ଷୁଦ୍ରଗଳ୍ପର ନିପୁଣ ସ୍ରଷ୍ଟାଭାବରେ ପରିଚିତ । ତାଙ୍କର ଗଳ୍ପଗୁଡ଼ିକର ବୈଶିଷ୍ଟ୍ୟ ହେଉଛି—ଗ୍ରାମ୍ୟ ପୃଷ୍ଠଭୂମି, ଘଟଣା ଓ କଥାବସ୍ତୁର ସଂଯୋଜିତ ଏକକତା । ପୁନଶ୍ଚ, କାବ୍ୟସୁଲଭ ଆବେଗପ୍ରଧାନ ପ୍ରକାଶଭଙ୍ଗୀ ଏବଂ ଭାଷାର ସାବଲୀଳତା, ସ୍ୱଳ୍ପାୟତନ, ବ୍ୟଙ୍ଗାତ୍ମକ ଅପେରା ତାଙ୍କ ଗଳ୍ପକୁ

(୧) ଦ୍ୱାଦଶୀ, ସାଗରିକା, ଗିରିଫଳ, ଶେଷରଶ୍ମି, ମୋ କଥାଟି ସରିନାହିଁ ।
(୨) ପଲ୍ଲୀଛାୟା, ଏବେ ମଧ୍ୟ ବଞ୍ଚିଛି, ମୁଁ ଦିନେ ମନ୍ତ୍ରୀ ଥିଲି, ନୀଳମସ୍ତାଣୀ ।

ଅଧିକ ପ୍ରଭାବଶାଳୀ କରିଥାଏ । ଓଡ଼ିଶାର ଗ୍ରାମଗହଳର ସାଧାରଣ ଉପେକ୍ଷିତ ଚରିତ୍ର ମାଧ୍ୟମରେ ଲେଖକ ଅଭିଶପ୍ତ ସମାଜର କାରୁଣ୍ୟ ପ୍ରଦର୍ଶନ କରିଛନ୍ତି । ପଚ୍ଛନାଏକ ପଇସାଟିଏ, ମାଗୁଣିର ଶଗଡ଼, ଏବେ ମଧ୍ୟ ବଞ୍ଚିଛି, ଦେବତାର ବଧାତା, ମାଳ ମାଷ୍ଟ୍ରାଣୀ, ଏ ମଣିଷକୁ ପଥର କଲା କିଏ, ମୁଁ ଦିନେ ମନ୍ତ୍ରୀ ଥିଲି, ବିଖ୍ୟାତ କଣ୍ଟକରୁ ଅଖ୍ୟାତ ପଲ୍ଲୀ ପ୍ରଭୃତି କୃତିରେ ଲେଖକଙ୍କର ଗଳ୍ପକଥନଶୈଳୀ ଓ ଶିଳ୍ପନୈପୁଣ୍ୟ ପ୍ରକଟିତ । ସେ ତାଙ୍କର ଗଳ୍ପଶୈଳୀ ଏବଂ କଥାବସ୍ତୁରେ ପାଶ୍ଚାତ୍ୟ ଗଳ୍ପକାର ବିଶେଷତଃ ରୁଷୀୟ କଥାଶିଳ୍ପୀ କାଉଣ୍ଟଲ ଓ ଟଲଷ୍ଟୟଙ୍କ ଦ୍ୱାରା ପ୍ରଭାବିତ । ତାଙ୍କର ପ୍ରଥମ ଗଳ୍ପ ହେଉଛି 'ମେଲଡ଼ିହ' (ମୁକୁର) ।

ଆବେଦନଶୀଳ ସୁଖପାଠ୍ୟ ପଲ୍ଲୀଭିତ୍ତିକ କ୍ଷୁଦ୍ର ଗଳ୍ପ ଲେଖିବାରେ ଶ୍ରୀଯୁକ୍ତ ଅନନ୍ତପ୍ରସାଦ ପଣ୍ଡା (୧୯୦୬)ଙ୍କର ସିଦ୍ଧି ଉଲ୍ଲେଖଯୋଗ୍ୟ (୧) । ଗୋଟିଏ ଗୋଟିଏ କ୍ଷୁଦ୍ର ଗଳ୍ପରେ ଲେଖକ ଓଡ଼ିଶାର ଧୂଳିଧୂସରିତ ଗ୍ରାମମାଟିର ଚରିତ୍ରମାନଙ୍କୁ ନେଇ ସାର୍ଥକ ଗଳ୍ପ ମାଧ୍ୟମରେ ସମାଜ ଓ ଜୀବନର ବିଭିନ୍ନ ସମସ୍ୟା ଆଲୋଡ଼ନ କରି-ପାରିଛନ୍ତି । ରାଜଭୋଗ, ଯୋଗୀ ସାହୁର ଦୋକାନ, ଶଗଡ଼, ଟାଇପ୍ ଫୋର୍, ଧାନକୁଟୁଣୀ ପ୍ରଭୃତି ଗଳ୍ପ ଜଟିଳ ପରିପ୍ରେକ୍ଷୀରେ ବ୍ୟକ୍ତି ଓ ସମାଜର କାରୁଣ୍ୟ, ଦୁଃଖ-ଦୈନ୍ୟ ପ୍ରତିଫଳିତ ।

ମରମୀ ଶିଳ୍ପୀ ରାଜକିଶୋର ପଟ୍ଟନାୟକ (୧୯୧୪) (୨) ଓଡ଼ିଆ କଥା-ଶିଳ୍ପରେ ସମ୍ବେଦନଶୀଳ ସ୍ରଷ୍ଟାଭାବରେ ସୁପରିଚିତ । ଏକାଧିକ ଗଳ୍ପସଙ୍କଳନ ତାଙ୍କର ଏକକ ଗଳ୍ପଶୈଳୀ ଏବଂ ତୀବ୍ର ସମାଜଚେତନା ଏବଂ ରୋମାଣ୍ଟିକ ଆଭିମୁଖ୍ୟ ପ୍ରମାଣିତ କରିଥାଏ । ଅନାଡ଼ମ୍ବର ତାଙ୍କର ଗଳ୍ପର ଲକ୍ଷଣ । ଜୀବନର ଯନ୍ତ୍ରଣା, ମନସ୍ତାତ୍ତ୍ୱିକ ଦ୍ୱନ୍ଦ୍ୱ ତାଙ୍କ ଗଳ୍ପର ବୈଶିଷ୍ଟ୍ୟ । ନିତ୍ୟାନନ୍ଦ ମହାପାତ୍ର (୧୯୧୨) (୩) ଜଣେ ବିଦଗ୍ଧ ଭାବପ୍ରବଣ, ଯୁଗ-ସମସ୍ୟାର ଗଳ୍ପକାରଭାବେ ସୁପରିଚିତ । ତାଙ୍କ ଗଳ୍ପର ଗଭୀରତା ରୋମାଣ୍ଟିକ ଦୃଷ୍ଟିଭଙ୍ଗୀରେ ହିଁ ନିହିତ । ମିଳନାତ୍ମକ ପ୍ରେମ ଅପେକ୍ଷା ବିଦ୍ରୋହାତ୍ମକ ଆନୁଗତ୍ୟ ପ୍ରତିପାଦନରେ ହିଁ ଏହି ଦରଦୀ କଥାଶିଳ୍ପୀଙ୍କର ଲେଖନୀ ସାର୍ଥକତା ଲାଭ କରିପାରିଛି । ଦୋକାନଦାର, ଶୁଆଶାରୀ, ବର୍ବର ମୁକ୍ତି ପ୍ରଭୃତି ତାଙ୍କର ସୁପ୍ରସିଦ୍ଧ ଗଳ୍ପ ।

---

(୧) ତୃଣଗୁଚ୍ଛ, ସଭ୍ୟତାର ତଳେ, ମନର ଭୂତ, ବାରମଜା, ନୈଶ-ସୁନ୍ଦରୀ, ଯୁଗରହସ୍ୟ ।

(୨) ରୂପପଥର, ନିଶାଣଖୁଣ୍ଟ, ପଥୁକ୍ତି, ହୃଦୟର ବନ୍ଧନ, ଶାଳଗ୍ରାମ, ପଞ୍ଜୁରୀ ପକ୍ଷୀ ।

(୩) ଏଗାରଟା, କ୍ଷଣିକା ।

ଓଡ଼ିଆ କଥାଶିଳ୍ପକ୍ଷେତ୍ରରେ ସୁପ୍ରତିଷ୍ଠିତ କାହ୍ନୁଚରଣ ମହାନ୍ତି (୧୯୦୬) (୧) ମଧ୍ୟ ଜଣେ ବିଶିଷ୍ଟ ଗଳ୍ପଲେଖକ । ଲେଖକ ତାଙ୍କର ଦୀର୍ଘ ତ୍ରିଶ ବର୍ଷର ସାହିତ୍ୟସାଧନା ମଧ୍ୟରେ କ୍ଷୁଦ୍ରଗଳ୍ପ ଲେଖିଛନ୍ତି; ଯାହାର ଶିଳ୍ପ-ସୌନ୍ଦର୍ଯ୍ୟ ଅପେକ୍ଷା ସାମାଜିକ କଥାବସ୍ତୁ, ଉପସ୍ଥାପନା, ସାମାଜିକ ଜୀବନରେ ବିରୋଧ ଦ୍ୱନ୍ଦ୍ୱର ଚିତ୍ର ପାଠକଙ୍କୁ ପ୍ରଭାବିତ କରିଥାଏ । ଅସହାୟ ବ୍ୟର୍ଥତାପୀଡ଼ିତ ଜୀବନ ପ୍ରତି ସମବେଦନା ପ୍ରକାଶ ଗାଳ୍ପିକଙ୍କର ଦୃଷ୍ଟିକୋଣର ନିଦର୍ଶନ । ଏହି ବିଷୟରେ ତାଙ୍କର 'ଭୁଲ' ଗଳ୍ପ ଉଲ୍ଲେଖଯୋଗ୍ୟ । ପ୍ରସିଦ୍ଧ ଔପନ୍ୟାସିକ ଗୋପୀନାଥ ମହାନ୍ତି (୧୯୧୪) (୨) ମଧ୍ୟ କଥାକାରରୂପେ ସୁପରିଚିତ । ତାଙ୍କର ଗଳ୍ପଗୁଡ଼ିକ ପ୍ରାୟତଃ ଦୀର୍ଘକଳେବରବିଶିଷ୍ଟ ଏବଂ ବିସ୍ତୃତ, ପୁଙ୍ଖାନୁପୁଙ୍ଖ ବର୍ଣ୍ଣନା ଚିହ୍ନିତ । ବ୍ୟକ୍ତି ଓ ସମାଜ ଆଦର୍ଶର ଯେଉଁ ବିନ୍ଦୁରେ ପରସ୍ପର ସଂଘର୍ଷ ସମ୍ମୁଖୀନ, ତାହାର ସ୍ଥୂଳ ବ୍ୟଙ୍ଗାତ୍ମକ ଉପସ୍ଥାପନା ଏବଂ ସେଥିପାଇଁ ବଳିଷ୍ଠ ଲୌକିକ ଭାଷା ପ୍ରୟୋଗ ତାଙ୍କ ଗଳ୍ପଗୁଡ଼ିକର ଲକ୍ଷଣ । ଇତିହାସ, ଘିଉଡ଼ାମାର ପାଟି, ଘର, ପୋଲ୍ଟ୍ରିହକଣ୍ଠା, ମହାପୁରୁଷ ପ୍ରଭୃତି ଗଳ୍ପରେ ଏହି ଲକ୍ଷଣ ପ୍ରତିଫଳିତ ।

ଶ୍ରଦ୍ଧାକର ସୁପକାରଙ୍କ (୧୯୧୪) ଗଳ୍ପ ଚରିତ୍ରଧର୍ମୀ ଏବଂ ବାସ୍ତବତା ଉପରେ ଆଧାରିତ । ତାଙ୍କର ଗଳ୍ପକୃତିଗୁଡ଼ିକ ହେଲା—ଗଳ୍ପାଞ୍ଜଳି, ବିଷକନ୍ୟା ଓ ଜୁଆରଭଟ୍ଟା ।

ଷଢେଇକଲା-ପ୍ରବାସୀ କାଳୀପ୍ରସନ୍ନ କବିଙ୍କର ଗଳ୍ପ ପ୍ରବାସୀ-ଜୀବନର କାରୁଣ୍ୟ ଏବଂ ସମବେଦନାରେ ରସୋତ୍ତୀର୍ଣ୍ଣ । ଉମେଶଚନ୍ଦ୍ର ପାଣିଗ୍ରାହୀଙ୍କ ଗଳ୍ପ (ପ୍ରାଚୀ ଓ ପ୍ରତୀଚୀ-୧୯୫୨) ମଧ୍ୟ ପର୍ଯ୍ୟଟକ ଅନୁଭୂତିରେ ଗ୍ରନ୍ଥୀତ ।

କମଳାକାନ୍ତ ଦାସ କ୍ଷୁଦ୍ରଗଳ୍ପ-ଲେଖକରୂପେ ବେଶ୍ ଖ୍ୟାତି ଅର୍ଜନ କରିପାରିଛନ୍ତି । ତାଙ୍କ ଗଳ୍ପଗୁଡ଼ିକରେ ସାଧାରଣତଃ ପଲ୍ଲୀର ସାମାଜିକ ପରିବେଶର ପ୍ରାକୃତିକ ବର୍ଣ୍ଣନା ସହିତ ସ୍ଥାନ ପାଇଥାଏ । ବୈକୁଣ୍ଠନାଥ ଦାସ ତାଙ୍କର ସ୍ୱଳ୍ପ ସଂଖ୍ୟକ ଗଳ୍ପ ମାଧ୍ୟମରେ (ସିଂହଦ୍ୱାର) ଯୁଗ-ଜୀବନଧାରା ପ୍ରତିଫଳିତ କରାଇ ପାରିଛନ୍ତି ।

ବହୁ କ୍ଷୁଦ୍ରଗଳ୍ପର ସ୍ରଷ୍ଟା ରାଜକିଶୋର ରାୟ (୧୯୧୪) (୩) ଜଣେ ଅନୁପ୍ରାଣିତ ରୋମାଣ୍ଟିକ୍ ଶିଳ୍ପୀ ଏବଂ ତାଙ୍କର ଅଧିକାଂଶ ଗଳ୍ପର ଉପଜୀବ୍ୟ ଚରିତ୍ର-

(୧) ଅସମାପିକା, ନାଆଁଟି ତାର ଚମ୍ପା, ସ୍ୱୈରୀ ଗୃହିଣୀ ।

(୨) ଘାସ ଫୁଲ, ଛାଇ ଆଲୁଅ ।

(୩) ନୀଳଲୋହିତ, ମନର ମୃଣାଳ, ଏହି କି ଦେବାୟତନ, ବିକଚ ଶତଦଳ, ଅଶୋକ ଚକ୍ର, ବନ ଜ୍ୟୋତ୍ସ୍ନା, ଜୟ ଶଙ୍ଖ, ଜୟଶ୍ରୀ, ଶୋଣିତ କାବ୍ୟ, ପଙ୍କ-ଚନ୍ଦନ ।

ଗୁଡ଼ିକ ହେଉଛନ୍ତି ପ୍ରେମ-ପ୍ରଣୟାତୁର ତରୁଣ-ତରୁଣୀ ଏବଂ ସେମାନଙ୍କ ପ୍ରେମ-ଜୀବନର ବ୍ୟର୍ଥତାବୋଧ, ଟ୍ରାଜେଡ଼ିବୋଧ ହିଁ କାବ୍ୟିକ କଳ୍ପନା ପ୍ରଭୃତି ପରିସମାପ୍ତିରେ ନ୍ୟସ୍ତ ହୋଇଥାଏ । ଉପଭୋଗ୍ୟ ରୋମାଣ୍ଟିକ ସ୍ପର୍ଶ, ଶବ୍ଦାଡ଼ମ୍ବର ଓ ସମ୍ଭ୍ରାନ୍ତ ଭାଷା ଯୋଗୁଁ ତାଙ୍କ ଗଳ୍ପର ରସାସ୍ୱାଦନ ଯେପରି ପାଠକ ପକ୍ଷରେ ଅନିବାର୍ଯ୍ୟ । କଳଙ୍କ ଶିଳ୍ପୀ, ଦଶହରା ଭେଟି, ବଉଳୀ, ଗୋରୀକବର, ମନର ମୃଣାଳ, ବିକାଶ, ମାସୀମା ପ୍ରଭୃତି ଗଳ୍ପରେ ସାମାଜିକ ଦୋଷଦୁର୍ବଳତା, ପାରିବାରିକ ବିରୋଧ, ଅବିଚାର, ଅନ୍ୟାୟ ପ୍ରତିଫଳିତ । କବିତାଶୈଳୀ ହିଁ ତାଙ୍କ କ୍ଷୁଦ୍ର ଗଳ୍ପର ଲକ୍ଷଣ ।

ଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ (୧୯୧୬) ମୁଖ୍ୟତଃ କବି ହେଲେହେଁ ତାଙ୍କର ସୃଜନାତ୍ମକ ପ୍ରତିଭା କ୍ଷୁଦ୍ର ଗଳ୍ପରେ ମଧ୍ୟ ଉଦ୍ଦୀପିତ ହୋଇପାରିଛି (୧) । ତାଙ୍କର ଯାଦୁକରୀ ଲେଖନୀ-ସ୍ପର୍ଶରେ ଅନ୍ୟାୟ-କବଳିତ ଆତ୍ମାର ଆର୍ତ୍ତନାଦ ରୂପାୟିତ ହୋଇପାରିଛି । ସେଥିପାଇଁ ତାଙ୍କର ଗଳ୍ପସମୂହର ଧାରା ହେଉଛି ମନସ୍ତାତ୍ତ୍ୱିକ, ସମସ୍ୟାମୂଳକ ଏବଂ ପ୍ରଖର ସାମାଜିକ ରାଜନୈତିକ ଚେତନାରେ ପରିପୂର୍ଣ୍ଣ । ମଶାଣିର ଫୁଲ, ମଲି କଇଁ, ରଜାପୁଅ, ଅନ୍ଧାରୁଆ, ଆଙ୍ଗଠି ପ୍ରଭୃତି କେତେକ ଗଳ୍ପ କବିଙ୍କର ଓଡ଼ିଶାର ଗ୍ରାମ୍ୟ ସୌନ୍ଦର୍ଯ୍ୟ-ପ୍ରୀତି ତଥା ସୂକ୍ଷ୍ମ ଅଧ୍ୟୟନଦ୍ୱାରା ଚିହ୍ନିତ ।

ଶ୍ରୀ ପ୍ରାଣବନ୍ଧୁ କରଙ୍କର (୧୯୧୪) ଗଳ୍ପଗୁଡ଼ିକ ଶିଳ୍ପୀ-ଜୀବନର ଭାବ-ପ୍ରବଣତାର ବାହକ । ହରିଶ୍ଚନ୍ଦ୍ର ବଡ଼ାଲଙ୍କ ଗଳ୍ପ ସଂଖ୍ୟା ବେଶୀ ନୁହେଁ; ମାତ୍ର 'ଅନାବନା'ର ଗଳ୍ପଗୁଡ଼ିକରେ ଯୁଗସମସ୍ୟା ଉତ୍କୀର୍ଣ୍ଣ ହୋଇପାରିଛି । ଫ୍ରଏଡୀୟ ଚିନ୍ତାଧାରା ଏବଂ ସଂଚନାରେ ତାଙ୍କର ଗଳ୍ପଗୁଡ଼ିକ ପରିକଳ୍ପିତ । ସୁଅମୁହଁରେ ପଥର, ନିଶୀଥର ପ୍ରେତାତ୍ମା, ଗୀତ ମାଷ୍ଟର, ମରୁ ମୌସୁମୀ, ସନ୍ଧ୍ୟା ଆସରର ଭୂତ ପ୍ରଭୃତି ଗଳ୍ପରେ କାରୁଣ୍ୟ ମଣ୍ଡିତ ସମବେଦନା ପ୍ରତିଫଳିତ ।

ଉପର୍ଯ୍ୟୁକ୍ତ କଥାଶିଳ୍ପୀମାନଙ୍କର ଗଳ୍ପସୃଷ୍ଟି ଭାବପ୍ରାଚୁର୍ଯ୍ୟ, ଜୀବନଜ୍ୱାଳା ଏବଂ ସାମ୍ପ୍ରତିକ ଯୁଗଧର୍ମର ଚର୍ଚ୍ଚାଦ୍ୱାରା ଅବଶ୍ୟ ଚିହ୍ନିତ । ନବଭାରତ, ସହକାର, ଡଗର, ହୃଦୟ, ଝଙ୍କାର, ଶଙ୍ଖ, ଆଦିତ ସଦୃଶ କେତେକ ମାସିକ ପତ୍ରର ଅବଦାନ ଓଡ଼ିଆ କ୍ଷୁଦ୍ର ଗଳ୍ପର ପ୍ରସାରରେ ଏବଂ ଫକୀରମୋହନଙ୍କ ପରେ ଗଳ୍ପର ନୂତନ ଆଙ୍ଗିକ ପ୍ରବର୍ତ୍ତିତ ହେବାରେ ସ୍ୱୀକାର୍ଯ୍ୟ ।

ଫକୀରମୋହନଙ୍କ ପରେ ଓଡ଼ିଆ କ୍ଷୁଦ୍ର ଗଳ୍ପର ପରଂପରା, ପ୍ରକାଶଭଙ୍ଗୀ, ବୈଚିତ୍ର୍ୟ, କଥାବସ୍ତୁଗତ ବିବିଧତାଦ୍ୱାରା ହିଁ ପ୍ରତିଷ୍ଠିତ ହେଲା । କ୍ରମଶଃ ପରିବର୍ତ୍ତିତ ମୂଲ୍ୟବୋଧ ସାମାଜିକ ବିପର୍ଯ୍ୟୟ ବିରୋଧରେ ନିବିଡ଼ ଜୀବନାନୁଭୂତ ଏହି ପର୍ଯ୍ୟାୟ-

(୧) ମଶାଣିର ଫୁଲ, ମାଟିର ତାଜ, ଛୁଇ ।

*

ଭୂକ୍ତ ଗଳ୍ପାକୃତିର ଆବେଦନ । ଶିଳ୍ପବିଜ୍ଞାନ-ସମୃଦ୍ଧ ସଭ୍ୟତାରେ ସାଧାରଣ ମଣିଷର ଅସହାୟତା ଅଧିକାଂଶ ଗଳ୍ପକୁ ବେଦନାଜର୍ଜରିତ କରିପାରିଛି ।

କ୍ଷୁଦ୍ରଗଳ୍ପର ସଂପ୍ରସାରଣ, ଆଙ୍ଗିକ ସଂସ୍କାର ଯୁଗରେ, ଅର୍ଥାତ୍ ୧୯୫୦ରୁ ୧୯୭୦ ମସିହା ମଧ୍ୟରେ, ଓଡ଼ିଆ କ୍ଷୁଦ୍ରଗଳ୍ପ ବିଭାଗରେ ବହୁ ପ୍ରତିଭାଶାଳୀ ତରୁଣ କଥାଶିଳ୍ପୀଙ୍କର ଆବିର୍ଭାବ ଘଟେ । ସେମାନଙ୍କର ସାଧନା ଓ ସିଦ୍ଧି ଓଡ଼ିଆ କ୍ଷୁଦ୍ରଗଳ୍ପକୁ ଅନ୍ତର ରୁଚିବନ୍ତ, ମର୍ଯ୍ୟାଦାବନ୍ତ ଏବଂ ପ୍ରଗତିଶୀଳ କରିପାରିଛି । ଉଭୟ ଗୁଣାତ୍ମକ ଏବଂ ପରିମାଣାତ୍ମକ ବିଚାରରେ ସେମାନଙ୍କ କ୍ଷୁଦ୍ରଗଳ୍ପ ବହୁ ସମ୍ଭାବନା ଓ ପ୍ରତିଶ୍ରୁତିର ଦିଗ୍‌ବଳୟ ଉଦ୍‌ଘାଟିତ କରିପାରିଛି ।

ଆଲୋଚ୍ୟ ସମୟରେ ପ୍ରତିଭାଶାଳୀ କଥାଶିଳ୍ପୀ ଭାବରେ ଶ୍ରୀ ସୁରେନ୍ଦ୍ର ମହାନ୍ତି (୧୯୨୦) ହିଁ ଓଡ଼ିଆ ସାହିତ୍ୟରେ ଏକ ସ୍ୱତନ୍ତ୍ର ଆସନର ଅଧିକାରୀ (୧) । ଜଟିଳ ପୃଷ୍ଠଭୂମିରେ ବ୍ୟକ୍ତିର ଏକ ସମ୍ବେଦନଶୀଳ ଚିତ୍ର ହିଁ ତାଙ୍କ ଗଳ୍ପକଳାର ପ୍ରତିପାଦିତ ସତ୍ୟ । ଉତ୍କଳ ସାହିତ୍ୟ, ଆରତି, ପ୍ରଗତି ପ୍ରଭୃତି ପତ୍ରିକାରେ ତାଙ୍କର ପ୍ରଥମ ସ୍ତରର କ୍ଷୁଦ୍ରଗଳ୍ପ ପ୍ରକାଶିତ ହୁଏ ଏବଂ ସେହି ଗଳ୍ପଗୁଡ଼ିକର ବିକାଶ-ସ୍ତରରେ ଶ୍ରୀଯୁକ୍ତ ମହାନ୍ତିଙ୍କ ଶୈଳୀସମୃଦ୍ଧ ଗଳ୍ପଗୁଡ଼ିକ ସଫଳତାର କ୍ରମିକ ନିଦର୍ଶନ ଭାବରେ ଗୃହୀତ । ଶ୍ରୀଯୁକ୍ତ ମହାନ୍ତିଙ୍କର ଗଳ୍ପସୃଷ୍ଟି ପ୍ରତିଭା ଓଡ଼ିଶା ଓ ଓଡ଼ିଆ ସମାଜର ଦୁଃଖ, ଦୈନ୍ୟ, ଦୟନୀୟ ଜାତୀୟ ଅଧୋଗତି, ଶେଷରେ ମଣିଷର ଆତ୍ମାର ବିକଳ କ୍ରନ୍ଦନକୁ ଭାଷାର କାରୁକାର୍ଯ୍ୟ ମଧ୍ୟରେ ରୂପାୟିତ କରିବାରେ ବରାବର ଉଦ୍‌ଦୀପ୍ତ । ତାଙ୍କର ପ୍ରଥମ ଗଳ୍ପ 'ମଣିଷ ଓ ଅର୍ଥନୀତି' ୧୯୪୬ରେ 'ଆରତି'ରେ ପ୍ରକାଶିତ । ଭାଷାଶିଳ୍ପର କୋଣାର୍କ ବିଗ୍ରହରେ ତାଙ୍କର ପ୍ରତ୍ୟେକ ଗଳ୍ପମୂର୍ତ୍ତି ଯେପରି ସଫଳତାର ସହିତ ଉତ୍କୀର୍ଣ୍ଣ । ସେ ସବୁର ମର୍ମବାଣୀ ମଧ୍ୟ ଜୀବନର ବିସ୍ତୃତ ପରିଧିକୁ ସ୍ପର୍ଶ କରିପାରିଥାଏ । ଓଡ଼ିଶାର ନଦନଦୀ, ପ୍ରାକୃତିକ ସୌନ୍ଦର୍ଯ୍ୟପୂର୍ଣ୍ଣ ଗ୍ରାମ୍ୟ ଆଲେଖ୍ୟ ସହିତ ଆଧୁନିକ ସଭ୍ୟ ସମାଜରେ ନରନାରୀଙ୍କର ଦୈନିକ ପ୍ରତାରଣା, ଛଳନାପୂର୍ଣ୍ଣ, କପଟପୂର୍ଣ୍ଣ ଅଶାନ୍ତ ଅସ୍ଥିର ଜୀବନ-ଚିତ୍ର ତାଙ୍କ ଗଳ୍ପରେ ଦେଖିବାକୁ ମିଳେ । ତାଙ୍କ ଗଳ୍ପର କଥାବସ୍ତୁରେ ବୌଦ୍ଧଗଳ୍ପ, ପୁରାଣ, କିଂବଦନ୍ତୀ, ଓଡ଼ିଶାର ଇତିହାସ, ବନ୍ୟା, ମରୁଡ଼ି ଏବଂ ରାଷ୍ଟ୍ରୀୟ ଜୀବନରେ ବିଫଳତା, ଶାଣିତ ଯୁଗ-ଚେତନା ହିଁ ପ୍ରତିବିମ୍ବିତ । ଏ ଯୁଗର ଅହଂକାରସର୍ବସ୍ୱ ବ୍ୟକ୍ତିମନ ଆଧୁନିକତାର ଦୋହାଇ ଦେଇ ଯେପରି ଉଚ୍ଛୃଙ୍ଖଳ, ନଗ୍ନ ଯୌନାକର୍ଷଣରେ ପ୍ରଲୁବ୍ଧ । ମହାନ୍ତିଙ୍କ କେତେକ

(୧) ମହାନଗରୀର ରାତ୍ରି (୧୯୫୦), କୃଷ୍ଣଚୂଡ଼ା (୧୯୫୧), ରୁଟି ଓ ଚନ୍ଦ୍ର (୧୯୫୪), ଶେଷ କବିତା (୧୯୫୫), ସବୁଜ ପତ୍ର ଓ ଧୂସର ଗୋଲାପ (୧୯୫୮), ମରାଳର ମୃତ୍ୟୁ (୧୯୬୨), ମହାନିର୍ବାଣ (୧୯୬୫), ଦୁଇ ସୀମାନ୍ତ (୧୯୭୧), ଓଃ ! କାଲ୍‌କାଟା !! (୧୯୭୩) ।

ଗଳ୍ପରେ ସେ ସବୁର ଅସାରତା ବ୍ୟଙ୍ଗାତ୍ମକ ଭାଷାରେ ବର୍ଣ୍ଣିତ । ତାଙ୍କର ପିତାପୁତ୍ର, ସାକ୍ଷିପୁତ୍ର, ଅମ୍ବାପଲ୍ଲୀ, ମଧୁମତୀର ରାତ୍ରି, ଭାରତ ଆବିଷ୍କାର, ପତାକା ଉତ୍ତୋଳନ ଗଳ୍ପ କିଂବଦନ୍ତୀ, ଇତିହାସର ଅନ୍ତଃସ୍ୱର ବହନ କରିଥିବା ସ୍ଥଳେ କୃଷ୍ଣଚୂଡ଼ା, ମହାନଗରୀର ରାତ୍ରି, ସବୁଜ ପତ୍ର ଓ ଧୂସର ଗୋଲାପ ଆଧୁନିକ ଦ୍ୱନ୍ଦ୍ୱ, ବିକ୍ଷୁବ୍ଧ ବ୍ୟକ୍ତିମନର ବିଦ୍ରୋହରେ ଅସ୍ଥିର ଏବଂ 'ବାସୀମଡ଼ା' 'ମେଣ୍ଢାଖାଇ' ସଦୃଶ ଗଳ୍ପ ଓଡ଼ିଶାର ବନ୍ୟା, କୁସଂସ୍କାରପୀଡ଼ିତ ପଲ୍ଲୀର ପୃଷ୍ଠଭୂମିରେ ବାସ୍ତବଧର୍ମୀ ଚିତ୍ର । ଓଡ଼ିଆ କ୍ଷୁଦ୍ର ଗଳ୍ପର ରୂପଗତ ଏବଂ ଭାବଗତ ସଂସ୍କାର ପାଇଁ ଶ୍ରୀଯୁକ୍ତ ମହାନ୍ତିଙ୍କର କଥାଶିଳ୍ପର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

କ୍ଷୁଦ୍ର ଗଳ୍ପର ସଂପ୍ରସାରଣ, ଗଳ୍ପରୀତି ସଂସ୍କାର, ପରୀକ୍ଷା-ନିରୀକ୍ଷା ଯୁଗରେ ଶ୍ରୀ ମନୋଜ ଦାସ (୧୯୩୪) ଏକ ଉଜ୍ଜ୍ୱଳତମ ପ୍ରତିଭା (୧) । କଥାଶିଳ୍ପୀଭାବରେ ତାଙ୍କର ବୈଶିଷ୍ଟ୍ୟ ହେଉଛି ସ୍ୱକୀୟ ବ୍ୟଙ୍ଗାତ୍ମକ ଦୃଷ୍ଟିକୋଣ, ସାମାଜିକ ବ୍ୟର୍ଥତାବୋଧର ସୂକ୍ଷ୍ମ ଅନୁଶୀଳନ, ଆଦର୍ଶଗତ ସଂଘର୍ଷ ସମ୍ମୁଖୀନ ଚରିତ୍ରମାନଙ୍କର ଫଟୋଗ୍ରାଫିକ୍ ଚିତ୍ର । ବିଶେଷତଃ ଆଲଂକାରିକ, କାବ୍ୟସୁଲଭ ଭାଷାର ଅନୁରଣନରେ ତାଙ୍କର କଥନଶୈଳୀ ଅଦ୍ୱିତୀୟ । ସାଂପ୍ରତିକ ଯୁଗରେ ଦୈନ୍ୟ ବେକାରିକ୍ଲିଷ୍ଟ ଏବଂ ପରଂପରାବିଚ୍ୟୁତ, ଅନୁକରଣସର୍ବସ୍ୱ ବ୍ୟକ୍ତିର ମାନସିକ ଗ୍ଲାନି ପ୍ରତି ଲେଖକଙ୍କର ସମବେଦନା ଶାଣିତ ବ୍ୟଙ୍ଗ ସ୍ପର୍ଶରେ ଅନେକ କ୍ଷେତ୍ରରେ କାରୁଣ୍ୟ ସୃଷ୍ଟି କରିଥାଏ । ଗଳ୍ପର କଥାବସ୍ତୁ ଆହରଣରେ ଲେଖକ ସହରୀ ସଭ୍ୟତା ଏବଂ ଗ୍ରାମ୍ୟ ଜୀବନଧାରା ଉପରେ ନିର୍ଭର କରିଛନ୍ତି । ତାଙ୍କର ଗଳ୍ପ କେତେବେଳେ ଦୈହିକ କ୍ଷୁଧାତୁର ଚରିତ୍ରଚିତ୍ରଣରେ ପ୍ରଯୁକ୍ତ, ପୁଣି କେତେବେଳେ ତାହା ବିଦେଶାତ୍ମକ ପରିବେଶରେ କୁସଂସ୍କାରଗ୍ରସ୍ତ ଯାନ୍ତ୍ରିକ ସଭ୍ୟତାବିକଳ ସାମନ୍ତବାଦୀ ମନର ବିଶ୍ଲେଷଣରେ ଉଦ୍ଦିଷ୍ଟ । ଚାରିତ୍ରିକ ବିଶ୍ଲେଷଣ ଏବଂ କଥାବସ୍ତୁ ଅବତାରଣାରେ ବରାବର ବ୍ୟଙ୍ଗାତ୍ମକ ନାଟକୀୟତା ତାଙ୍କ ଶୈଳୀର ପରିପୋଷକ । ସେଥିପାଇଁ ଗଳ୍ପ ରଚନା କରି ମାତ୍ର ଅଳ୍ପ ସମୟ ମଧ୍ୟରେ ଗାଳ୍ପିକଭାବରେ ବିଶେଷ ସଫଳତା ଲାଭ କରିଛନ୍ତି । ତାଙ୍କର 'ଆରଣ୍ୟକ' ଏବଂ 'ସମୁଦ୍ରର କ୍ଷୁଧା' ଗଳ୍ପରେ ରୋମାଣ୍ଟିକ୍ ଭାବପ୍ରବଣତା ପରିସ୍ଫୁଟ । ବିଲେଇ, କୂଅ, ବାବା ଚନ୍ଦ୍ରଧାରୀ ବୃତ୍ତାନ୍ତ ଗଳ୍ପଗୁଡ଼ିକ ଲେଖକଙ୍କର ସମାଜଚେତନାର ପରିଚାୟକ । ଏହି ଲେଖକ ଭ୍ରଷ୍ଟାଚାର ଓ ନୀତିହୀନତା ବିରୋଧରେ ସମାଜର ପ୍ରତିକ୍ରିୟା ଆବେଗ ଓ ସଂଶୟପୂର୍ଣ୍ଣ ଭାଷାରେ ପ୍ରକାଶ କରିଥାନ୍ତି ।

---

(୧) ଆରଣ୍ୟକ, ସମୁଦ୍ରର କ୍ଷୁଧା, ବିଷକନ୍ୟାର କାହାଣୀ, ଶେଷ ବସନ୍ତର ଚିଠି, [illegible] ।

ଏକନିଷ୍ଠ ସାଧକଭାବରେ ଶ୍ରୀ ବାମାଚରଣ ମିତ୍ରଙ୍କର (୧୯୧୫-୧୯୭୫) ଗଳ୍ପଗୁଡ଼ିକ ସାମାଜିକ ଓ ପାରିବାରିକ ଜୀବନର ବିବିଧ ଚିତ୍ର ପ୍ରଦାନ, ଶୈଳୀ ଏବଂ ଉପସ୍ଥାପନା ଦୃଷ୍ଟିରେ ସୁଖପାଠ୍ୟ ହୋଇପାରିଛି । ତାଙ୍କ ଶୈଳୀବର୍ଣ୍ଣନାର ସାବଲୀଳତା ସ୍ୱପରପ୍ରକାଶଦ୍ୱାରା ଚିହ୍ନିତ ।

ସହରୀ ସଭ୍ୟତାରେ ବର୍ଦ୍ଧିତ ଆଧୁନିକ ନରନାରୀଙ୍କର ବ୍ୟକ୍ତିଗତ ଅଭିଜ୍ଞତା, ଯୌନବିଶୃଙ୍ଖଳା, ସ୍ୱେଚ୍ଛାଚାରିତା, ରାଜନୈତିକ ନ୍ୟସ୍ତସ୍ୱାର୍ଥ, ଚଳଣି ଏବଂ ଜଟିଳ ଭାବନାକୁ ଶକ୍ତିଶାଳୀ ଭାଷାରେ ବ୍ୟକ୍ତ କରିବାରେ ଶ୍ରୀ ବ୍ରହ୍ମାନନ୍ଦ ପଣ୍ଡାଙ୍କର (୧୯୨୨) (୧) ଆତ୍ମସଧର୍ମୀ ଗଳ୍ପଗୁଡ଼ିକ ଉଦ୍ଦିଷ୍ଟ । ତେଣୁ ତାଙ୍କ ଗଳ୍ପସୃଷ୍ଟିର ପ୍ରବୃତ୍ତି ସମାଜ-ଧର୍ମୀ ଏବଂ ବସ୍ତୁନିଷ୍ଠ । ପୁନଶ୍ଚ, ତାଙ୍କ ଗଳ୍ପରେ ବର୍ଣ୍ଣିତ ଚରିତ୍ରଗୁଡ଼ିକ ସମୟରେ ଅକ୍ଳେଶରେ ରୋମାଣ୍ଟିକ ଭାବୋଚ୍ଛ୍ୱାସର ଶରବ୍ୟ ହୋଇଥାନ୍ତି । ଫଳରେ ତାଙ୍କର ଉପସ୍ଥାପିତ ଚରିତ୍ରଗୁଡ଼ିକ କେତେବେଳେ ରୋମାଣ୍ଟିକ ଏବଂ କେତେବେଳେ ବୌଦ୍ଧିକ ଏବଂ ମନସ୍ତାତ୍ତ୍ୱିକ ସ୍ଥାନରେ ବିଚଳିତ ଏବଂ ତାଙ୍କର ଶୈଳୀ ମନନଶୀଳ ଏବଂ ପ୍ରତୀକତାରେ ପୂର୍ଣ୍ଣ ।

ଶ୍ରୀମତୀ ନନ୍ଦିନୀ ଶତପଥୀ (୧୯୩୦) (୨) ସାଂପ୍ରତିକ ଯୁଗର ପରିବାର ଓ ସମାଜର ବିବିଧ ଦୁଃଖ, ଦୈନ୍ୟ, ଅଭାବ, ସମସ୍ୟା ତଥା ଜଟିଳ ଜୀବନ-ଜିଜ୍ଞାସାର ପରିଧିରେ ଜଣେ ସମ୍ବେଦନଶୀଳା ଗଳ୍ପଲେଖିକାରୂପେ ସୁପରିଚିତା । ୧୯୪୬ରୁ ୧୯୬୭ ସାଲ ମଧ୍ୟରେ ଲିଖିତ ବିଭିନ୍ନ ଗଳ୍ପ ମଧ୍ୟରୁ ବାଇଶଗୋଟି ଗଳ୍ପକୁ ନେଇ ତାଙ୍କର 'କେତୋଟି କଥା' ପ୍ରକାଶିତ ଏବଂ ଗଳ୍ପଗୁଡ଼ିକର କଥାବସ୍ତୁ, ନୂତନ ଦୃଷ୍ଟିଭଙ୍ଗୀ ଏବଂ ପରିବେଷଣଗତ ସାବଲୀଳତା ଯୋଗୁଁ ଆଦୃତ । ତାଙ୍କର ଲିଖିତ 'ବାତୁଲ' ଗଳ୍ପଟି ଶିଶୁମନସ୍ତତ୍ତ୍ୱ ପ୍ରତିପାଦନରେ ଏକାନ୍ତ ଭାବରେ ରସୋତ୍ତୀର୍ଣ୍ଣ ହୋଇଥିବା ସ୍ଥଳେ 'ଉଦ୍ଭିଦନ୍' ଗଳ୍ପଟି ସାମାଜିକ ସ୍ତରରେ କେତେକ ଅଦ୍ଭୁତ ଚରିତ୍ରର ବିଶ୍ଳେଷଣ ଯୋଗୁଁ ବାସ୍ତବଧର୍ମୀ ଏବଂ ବ୍ୟଙ୍ଗଧର୍ମୀ ହୋଇପାରିଛି ।

ଶ୍ରୀମତୀ ବସନ୍ତକୁମାରୀ ପଟ୍ଟନାୟକଙ୍କ (୧୯୨୭) କ୍ଷୁଦ୍ର ଗଳ୍ପଗୁଡ଼ିକ (୩) ମୁଖ୍ୟତଃ ବ୍ୟକ୍ତିର ମନସ୍ତତ୍ତ୍ୱ-ଚିତ୍ରଣ-ଭିତ୍ତିକ । ପାରିବାରିକ ଜୀବନର ସୁଖଦୁଃଖ ଏବଂ ସଂଘର୍ଷ ଅଙ୍କନରେ ସେ ଜଣେ ଯେପରି ଭାବପ୍ରବଣା ଲେଖିକା ।

ଜୀବନର ଯନ୍ତ୍ରଣା ଓ ଜ୍ୱାଳା କମ୍ ନୁହେଁ । ଯୁଗର ଯନ୍ତ୍ରଣା, ଦହନ ଜ୍ୱଳନକୁ ଶ୍ରୀ ଯଦୁନାଥ ଦାଶ ମହାପାତ୍ର (୧୯୨୯) (୪) ର ବିଭିନ୍ନ ସମୟରେ

(୧) ସାଧାରଣ ସତ୍ୟ, ମହକ, ଖେଳକକା, କଳା ଓ କଳ୍ପନା, ଆତ୍ମ-ପରିଚୟ ।
(୨) କେତୋଟି କଥା ।
(୩) ପାଳଟା ଡେଉ, ସଭ୍ୟତାର ସାଜ, ଜୀବନ ଚାହେଁ, ଜୁଆରଭଟ୍ଟା ।
(୪) ମୋର ଗଳ୍ପ, ଦୁଇଟି ବୃନ୍ତରେ ଆଠୋଟି ଫୁଲ ।

ଲିଖିତ ତାଙ୍କର କ୍ଷୁଦ୍ର ଗଳ୍ପଗୁଡ଼ିକରେ ନିଖୁଣ ଭାବରେ ଏବଂ ଯାଦୁକରୀ ଭାଷାରେ ପ୍ରତିଫଳିତ କରିପାରିଛନ୍ତି । ଗଳ୍ପର କଥାବସ୍ତୁ ପାଇଁ ଲେଖକ କେତେବେଳେ ବୃନ୍ଦାବନଙ୍କ ନଦୀଧାର, ଗ୍ରାମ୍ୟ ପରିବେଶ, କେତେବେଳେ ସଂଘର୍ଷବହୁଳ ବ୍ୟକ୍ତି-ଜୀବନର ଘଟଣାବଳୀ ଉପରେ ନିର୍ଭର କରିଛନ୍ତି । 'ସାଲୁପଡ଼ା' ଗଳ୍ପରେ ବନ୍ୟା-ବିଧୌତ ଓଡ଼ିଶାର ଗ୍ରାମ୍ୟଚିତ୍ର, 'ଶତ୍ରୁ ଶିବିର' ଗଳ୍ପରେ ଚୀନା ଆକ୍ରମଣକାଳୀନ ଭାରତୀୟ ଯୁବଶକ୍ତିର ଆତ୍ମତ୍ୟାଗ କିମ୍ବା 'ଅନ୍ଧାରଘର' 'ଦୁଇଟି ଚିତ୍ର' ଗଳ୍ପରେ ବ୍ୟକ୍ତିଜୀବନର ପ୍ରେମ ଓ ବାତ୍ସଲ୍ୟ ବର୍ଣ୍ଣନାରେ ଲେଖକଙ୍କର ଶୈଳ୍ପିକ ପାରଦର୍ଶିତା ଉଲ୍ଲେଖଯୋଗ୍ୟ । ଜ୍ୱାଳାର ଦହନ ନଥିଲେ ଜୀବନରେ ପୂର୍ଣ୍ଣଚ୍ଛେଦ ପଡ଼ିଥାନ୍ତା—ଏହାହିଁ ତାଙ୍କ ଗଳ୍ପରେ ପ୍ରମାଣିତ ।

୧୯୫୦ ମସିହାଠାରୁ ୧୯୬୦ ମସିହା ମଧ୍ୟରେ ଓଡ଼ିଆ କ୍ଷୁଦ୍ରଗଳ୍ପର ପରିମାଣ, ପ୍ରଭାବ, ବିସ୍ତୃତି ବିଗ୍ରହ କଲେ ଶ୍ରୀ ବିଭୂତି ପଟ୍ଟନାୟକ (୧୯୩୯) (୧) ପାଠକଙ୍କର ଦୃଷ୍ଟି ଆକର୍ଷଣ କରିଥାନ୍ତି । ଅଫୁରନ୍ତ ଯୌବନର ଉଚ୍ଛ୍ୱାସ, ତରୁଣ-ତରୁଣୀଙ୍କର ପରସ୍ପର ଆକର୍ଷଣ, ପ୍ରେମାନୁଭୂତି ଏବଂ ସହରୀ ପରିବେଶରେ ବ୍ୟକ୍ତିର ବ୍ୟର୍ଥତାବୋଧ ହିଁ ତାଙ୍କ ଗଳ୍ପଗୁଡ଼ିକୁ ଜୀବନଧର୍ମୀ ଏବଂ ସମାଜର ବିଶ୍ୱସ୍ତ ଚିତ୍ର କରିଥାଏ ।

ଶ୍ରୀ ଅଖିଳମୋହନ ପଟ୍ଟନାୟକଙ୍କ (୧୯୨୭) ଗଳ୍ପ ବିଶେଷଭାବରେ ସମାଜର ନଗ୍ନ ଚିତ୍ର ପ୍ରଦାନରେ ରୋମାଣ୍ଟିକ୍ ପ୍ରବୃତ୍ତିଦ୍ୱାରା ଚିହ୍ନିତ । ସେ ତାଙ୍କର ପ୍ରତ୍ୟେକ ଗଳ୍ପରେ ଶୈଳୀ-ସଚେତନ ଏବଂ ଏହି ଶୈଳୀ ଭାଷା, ଜୀବନ ଦୃଷ୍ଟି-କୋଣ, ମନନଶୀଳତାଦ୍ୱାରା ପରିପୁଷ୍ଟ । ଏହି ଶୈଳୀ ତାଙ୍କର 'ଝିଅର ଇଗଲ ଓ ଧରଣୀର କୃଷ୍ଣସାର', 'ଡମ୍ବରୁ ଫୁଲ', 'ସିନ୍ଧାନ୍ତର ଉପକଥା'ରେ ବୌଦ୍ଧିକତା, ଅବଚେତନ ମନର ସୂକ୍ଷ୍ମ ବିଶ୍ଳେଷଣ, ମନୁଷ୍ୟଜୀବନର ରହସ୍ୟ କାବ୍ୟିକ ଭାଷାରେ ପରିପୁଷ୍ଟ ହୋଇଥିବାର ଜଣାଯାଏ ।

ଆଧୁନିକ ସହରର ଶିକ୍ଷିତ ଶ୍ରେଣୀର ଚଳଣି, ରୁଚି ସହିତ ବିରୋଧାଭାସକୁ କେନ୍ଦ୍ର କରି ଗୋପାଳଚନ୍ଦ୍ର ମିଶ୍ର (୧୯୨୫) କତିପୟ କ୍ଷୁଦ୍ରଗଳ୍ପ ଲେଖିଛନ୍ତି । ତାଙ୍କ ଗଳ୍ପରେ ବର୍ଣ୍ଣିତ ଚରିତ୍ରଗୁଡ଼ିକ ସାଧାରଣତଃ ସାଧାରଣ ଜୀବନର ପରିଧିରୁ ଗୃହୀତ । ପାରିବାରିକ ଜଞ୍ଜାଳ, ଜିଜ୍ଞାସା, ଗ୍ଳାନି, ପରାଜୟ, ଅତୀତ ଜୀବନର ସ୍ମୃତି, ପଶୁପକ୍ଷୀ-ଜଗତର ଦୃଶ୍ୟ ତାଙ୍କ ଗଳ୍ପଗୁଡ଼ିକୁ ମନସ୍ପର୍ଶୀ କରିଥାଏ ।

ଶ୍ରୀ ସାତକଡ଼ି ହୋତାଙ୍କ ଗଳ୍ପଗୁଡ଼ିକରେ ମାନବିକ ସମ୍ବେଦନା ସହିତ ଆଧୁନିକ ଜୀବନର ନିଛକ ଚିତ୍ର ଆନ୍ତରିକତାର ସହିତ ସ୍ଥାନ ପାଇଛି ।

---

(୧) କେତେ ଯେ ବସନ୍ତ ସତେ, ଉପନଗରୀର ରୂପକଥା, ନିମ୍ନଗାମୀ ମନ, ଲଳିତଲବଙ୍ଗଲତା, ରାଜକନ୍ୟା ଓ କୃଷ୍ଣସର୍ପ କଥା ।

ଫକୀରମୋହନ ଏବଂ ଲକ୍ଷ୍ମୀକାନ୍ତଙ୍କ ପରେ ଏକାନ୍ତଭାବରେ ବ୍ୟଙ୍ଗଧର୍ମୀ କ୍ଷୁଦ୍ରଗଳ୍ପ ଲେଖିବାରେ ଫତୁରାନନ୍ଦ (୧୯୧୫) ସୁପରିଚିତ । ସାମାଜିକ ଓ ଆନୁଷ୍ଠାନିକ ଭ୍ରଷ୍ଟାଚାର ଲେଖକଙ୍କର ଶାଣିତ ବ୍ୟଙ୍ଗ-ବିଦ୍ରୂପର ଶରବ୍ୟ ହୋଇଥାଏ । ହେରେସା, ସାହିତ୍ୟଗୃଷ, ମଙ୍ଗଳବାରିଆ ସାହିତ୍ୟ ସଂସଦ, ବିଦୂଷକ, ସାହିତ୍ୟ ବେଉଷଣ, ହସକୁରା ପ୍ରଭୃତି ଗଳ୍ପସଂକଳନରେ ଗାଳ୍ପିକଙ୍କ ଦକ୍ଷତା ପ୍ରତିଫଳିତ ।

ଶ୍ରୀ ସୁଶୀଲ୍ ମୋହନ ମିଶ୍ର (୧୯୨୬) ଜଣେ ଉଚ୍ଚକୋଟୀର ବ୍ୟଙ୍ଗବିଦ୍ରୂପାତ୍ମକ ଗଳ୍ପଲେଖକ । ତାଙ୍କର 'ଖଡଡ଼ମୁଣି' ଏକ ସ୍ମରଣୀୟ କୃତି । ତାଙ୍କ ଗଳ୍ପର ଉପାଦାନ ମୁଖ୍ୟତଃ ସାମାଜିକ ଏବଂ ରାଜନୈତିକ । ଆବେଗ ଅପେକ୍ଷା ତୀକ୍ଷ୍ଣ ବିଦ୍ରୂପ ହିଁ ତାଙ୍କ ଭାଷା ଓ ଶୈଳୀର ପରିପୋଷକ ।

ମହାପାତ୍ର ନୀଳମଣି ସାହୁ (୧୯୨୬) ମଧ୍ୟ ବ୍ୟଙ୍ଗ-ବିଦ୍ରୂପ ସାହାଯ୍ୟରେ ତାଙ୍କ ଲିଖିତ ଗଳ୍ପଗୁଡ଼ିକରେ (ମିଛବାଘ, ପ୍ରେମ ଓ ଦ୍ୱିଭୁଜ, ସୁମିତ୍ରାର ହସ, ଗଞ୍ଜେଇ ଗବେଷଣା, କପୋତପକ୍ଷୀ ଗୁ ରୁ ମୋର, ଅନ୍ୟରୂପ ରୂପାନ୍ତର, ରାନୁ ଅପାଠାରୁ ପୁଷି ପର୍ଯ୍ୟନ୍ତ) ପ୍ରତିପାଦିତ ସାମାଜିକ ଓ ବ୍ୟକ୍ତିକ ପ୍ରତିକ୍ରିୟାକୁ ରୂପାୟିତ କରିଥାନ୍ତି । ବ୍ୟଙ୍ଗ-ବିଦ୍ରୂପର ବଳିଷ୍ଠ ସ୍ପର୍ଶ ଚୌଧୁରୀ ହେମକାନ୍ତ ମିଶ୍ରଙ୍କ ଗଳ୍ପଗୁଡ଼ିକୁ ଜୀବନ୍ତ ଏବଂ ବାସ୍ତବଧର୍ମୀ କରିପାରିଛି । ତାଙ୍କର କେତୋଟି କୃତି ହେଲା 'ନିଷିଦ୍ଧ-ପୁସ୍ତକ' ଓ 'ଅଘଟଣ ସଂକଳନ' ।

ଏକଦା 'କୁଙ୍କୁମ' ପତ୍ରିକାର ସଂପାଦକ ଶ୍ରୀ ଦେବ ମହାପାତ୍ର (୧୯୨୬) ମଧ୍ୟ ତୀକ୍ଷଣ ବ୍ୟଙ୍ଗ-ବିଦ୍ରୂପାତ୍ମକ ଗଳ୍ପର ସ୍ରଷ୍ଟା ।

୧୯୬୦ ମସିହା ପରେ ଓଡ଼ିଆ ଗଳ୍ପଧାରା କ୍ରମଶଃ ଆହୁରି ପରିବର୍ତ୍ତିତ ହେବାର ଦେଖାଯାଏ । ଏହି ଦଶନ୍ଧିରେ ବହୁ ତରୁଣ କଥାକାର ଗଳ୍ପ ରଚନା କରିଛନ୍ତି । ଏକ ନୂତନ ଦୃଷ୍ଟିଭଙ୍ଗୀ, କଥାବସ୍ତୁର ରକ୍ଷଣଶୀଳତା ପରିବର୍ତ୍ତେ ସଂସ୍କାର-ଲିପ୍ସା ଏବଂ ସମାଜଚେତନା ଶ୍ରୀ କୃଷ୍ଣପ୍ରସାଦ ମିଶ୍ରଙ୍କ (୧୯୩୩) (୧) କଥାଗଳ୍ପକୁ ସ୍ୱାତନ୍ତ୍ର୍ୟ ପ୍ରଦାନ କରିଥାଏ । ସାଧାରଣତଃ ବ୍ୟକ୍ତିଗତ ଜୀବନର ସମସ୍ୟା, ପ୍ରବୃତ୍ତି, ଆଦର୍ଶଗତ ଦ୍ୱନ୍ଦ୍ୱ, ମନସ୍ତାତ୍ତ୍ୱିକ ଫ୍ରଏଡ଼ୀୟ ପୃଷ୍ଠଭୂମିରେ ହିଁ ତାଙ୍କ ଗଳ୍ପଗୁଡ଼ିକରେ ଆଧାରରୂପେ ଗୃହୀତ । କିନ୍ତୁ ପରିବେଷଣରେ ନାଟକୀୟତା ହିଁ ତାଙ୍କ ଅନୁସୃତ ଶୈଳୀର ବୈଶିଷ୍ଟ୍ୟ ।

ଆଧୁନିକ ଶିଳ୍ପ-ସଭ୍ୟତା ଓ ଜଟିଳ ସାମାଜିକ ପରିସ୍ଥିତିରେ ଜଣେ ସମ୍ବେଦନଶୀଳ କଥାକାରଭାବେ ଶ୍ରୀ ଶାନ୍ତନୁକୁମାର ଆଚାର୍ଯ୍ୟ (୧୯୩୩) (୨)

---

(୧) ମୌନାବତୀ ରାତ୍ରି, କ୍ରୀତଦାସୀର କାବ୍ୟ, ନାଏଗ୍ରା ଓ ଦେବଯାନୀ, ଅରଣ୍ୟ ଓ ଉପବନ, ଭୃଗୁ ସଂହିତା ।

(୨) ମନମର୍ମର (୧୯୫୯), ଦୁଆର (୧୯୬୫), ଅରଣ୍ୟର ଚୂଳ (୧୯୬୫) ।

ପରିଚିତ । ଚେତନ୍ୟୁଣ-ସଂସାରର ସଂଘର୍ଷରେ ବିକ୍ଷିପ୍ତ ବ୍ୟକ୍ତି ସୂକ୍ଷ୍ମ ଚେତନା ଓ ପ୍ରତିକ୍ରିୟାକୁ ରୂପାୟିତ କରିବାରେ ତାଙ୍କର ସ୍ୱାତନ୍ତ୍ର୍ୟଦ୍ୱାର ଚିହ୍ନିତ ।

ଶ୍ରୀ ନିଖିଳାନନ୍ଦ ପାଣିଗ୍ରାହିଙ୍କ କତିପୟ ଗଳ୍ପ (କାର୍ଟୁନ୍-୧୯୬୩) ଜୀବନର ଛୋଟ ଛୋଟ ଘଟଣାକୁ ନେଇ ଲିଖିତ । ମାତ୍ର ତା'ର ଅନ୍ତଃସ୍ୱର ଓ ଆବେଦନ ହେଉଛି ଏକାନ୍ତ ହାସ୍ୟ । ଲେଖକ ଗଳ୍ପର କଥାବସ୍ତୁକୁ ବ୍ୟଙ୍ଗର ସ୍ପର୍ଶ ଦେଇ-ପାରିଛନ୍ତି ।

ଶ୍ରୀମତୀ ତ୍ରିବେଣୀ ଦେବୀ (ଅବଗୁଣ୍ଠନ ତଳେ), ହେମଲତା ମାନସିଂ (ମରମତଳର ଢେଉ), କୁନ୍ତଳା ଆଗୃର୍ଯ୍ୟ (ହିସାବ ଖାତା), ଉଷାରାଣୀ ପଣ୍ଡା (କୃଷ୍ଣଶିଳା), ବୀଣାପାଣି ମହାନ୍ତି ପ୍ରଭୃତି ଏହି ସମୟରେ ବହୁ କ୍ଷୁଦ୍ରଗଳ୍ପ ରଚନା କରିପାରିଛନ୍ତି । ଶ୍ରୀମତୀ କଳ୍ପନା ଦେବୀ ବହୁ କ୍ଷୁଦ୍ରଗଳ୍ପ ଲେଖି ସଫଳତା ଲାଭ କରିପାରିଛନ୍ତି । ତାଙ୍କ ଗଳ୍ପଗୁଡ଼ିକ ସାଧାରଣତଃ ବ୍ୟକ୍ତିର ଅବଚେତନ ମନର ଆଢ଼ୁଆଳରେ ଯେଉଁ ଦ୍ୱନ୍ଦ୍ୱ ତାହାର ଉପରେ ପ୍ରତିଷ୍ଠିତ । ପ୍ରବାସୀ ଜୀବନର କାରୁଣ୍ୟ, ବେଦନା ଅଙ୍କନ କରିବାରେ ତାଙ୍କ ଗଳ୍ପଗୁଡ଼ିକ ଜୀବନବାଦୀ ହୋଇଛି ।

ଶ୍ରୀମତୀ ଯଶୋଧାରା ମିଶ୍ରଙ୍କ ଲିଖିତ କ୍ଷୁଦ୍ରଗଳ୍ପଗୁଡ଼ିକରେ ରଚନାକଳାର ସାବଲୀଳତା, ବୌଦ୍ଧିକ ତୀକ୍ଷ୍ଣତା ଏବଂ ବଣ୍ଟିତ ଗତାନୁଗତିକ ଚରିତ୍ରମାନଙ୍କର ପ୍ରତାରଣା, ସ୍ୱାଭିମାନ ପ୍ରତି ପ୍ରଚ୍ଛନ୍ନ ବ୍ୟଙ୍ଗ ଲକ୍ଷଣୀୟ ।

ମଣିଷ ମନର ସୂକ୍ଷ୍ମାତିସୂକ୍ଷ୍ମ ଅନୁଶୀଳନ ଏବଂ ଦ୍ୱନ୍ଦ୍ୱ-ସଂଘର୍ଷ-ପୀଡ଼ିତ ପରିବାରର ଚିତ୍ରଣ, ସାମ୍ପ୍ରତିକ ନିଷ୍ଠୁର ପରିବେଶରେ ବ୍ୟକ୍ତିର ଅସହାୟତା ଶ୍ରୀ କିଶୋରୀଚରଣ ଦାସଙ୍କ (୧୯୨୪) ଗଳ୍ପଗୁଡ଼ିକରେ ପ୍ରତିଫଳିତ । ଭଙ୍ଗା-ଖେଳନା, ଲକ୍ଷ ବିହଙ୍ଗ, ଘରବାହୁଡ଼ା, ମଣିହରା ଆଦି ତାଙ୍କର ଗଳ୍ପଗୁଚ୍ଛ । ସର୍ବଶ୍ରୀ ଭଗୀରଥି ନେପାକ, ଦୁର୍ଗାମାଧବ ମିଶ୍ର, ଦଶରଥ ସାମଲ, ବଂଶୀଧର ଭୂୟାଁ ଏହି ସମୟରେ କ୍ଷୁଦ୍ରଗଳ୍ପ କ୍ଷେତ୍ରରେ ସଫଳତାର ସହିତ ଲେଖନୀ ଚାଳନା କରିଛନ୍ତି ।

ଫକୀରମୋହନଙ୍କ ପରେ ଗ୍ରାମ୍ୟଭାଷାଭିତ୍ତିକ ଯାଦୁକରୀ ଗଳ୍ପଶୈଳୀର ପ୍ରବର୍ତ୍ତକ ଭାବରେ ଶ୍ରୀ ଅଚ୍ୟୁତାନନ୍ଦ ପତିଙ୍କର ସିଦ୍ଧି ସର୍ବାଦୌ ସ୍ୱୀକୃତ । ତାଙ୍କ ଗଳ୍ପର କଥାବସ୍ତୁ ଓଡ଼ିଶା ପଲ୍ଲୀର ସାଧାରଣ ଜୀବନରୁ ଯେପରି ଗୃହୀତ, ସେହିପରି ସେହିମାନଙ୍କ ମୌଳିକ, ନିଛକ ଭାଷା ଗାଳ୍ପିକଙ୍କ ଶୈଳୀକୁ ଆବେଦନଶୀଳ କରି ପାରିଛି । ଅବହେଳିତ ଗ୍ରାମ୍ୟ ଚରିତ୍ରର ନିଖୁଣ ବିଶ୍ଳେଷଣ ଲେଖକଙ୍କର ଗଳ୍ପକଥନ ପ୍ରତିଭାର ସହାୟକ । ଶ୍ରୀଯୁକ୍ତ କୃଷ୍ଣଚରଣ ବେହେରା ଯେଉଁ କେତୋଟି ଗଳ୍ପ ଲେଖିଛନ୍ତି, ସେଥିରେ ବ୍ୟକ୍ତିର ଦମିତ କାମନା କଥାବସ୍ତୁର ଭୂମିକାରୂପେ ଚିତ୍ରିତ । ବସନ୍ତକୁମାର ଶତପଥୀଙ୍କ କ୍ଷୁଦ୍ରଗଳ୍ପରେ ଏକ ବଳିଷ୍ଠ ଆଭିମୁଖ୍ୟ ନିହିତ; ତାହା ହେଉଛି ବାସ୍ତବତାର ଉପହାସ ।

୧୯୬୦ରୁ ୧୯୭୦ ମସିହା, ବିଶେଷତଃ ଗତ ପାଞ୍ଚ ଛଅବର୍ଷ ମଧ୍ୟରେ ବହୁ ତରୁଣ କଥାଶିଳ୍ପୀ ଓଡ଼ିଆ ସାହିତ୍ୟରେ ଦେଖାଦେଇଛନ୍ତି । ପତ୍ର-ପତ୍ରିକାରେ ନିୟମିତରୂପେ ପ୍ରକାଶିତ ସେମାନଙ୍କ ଗଳ୍ପ-ସୃଷ୍ଟିରୁ ସମ୍ଭାବନାପୂର୍ଣ୍ଣ ପ୍ରତିଶ୍ରୁତି ମିଳିଥାଏ । ରତ୍ନାକର ଚଇନି, ରବି ପଟ୍ଟନାୟକ, କୈଳାଶ ଲେଙ୍କା, ଶଶି ପଟ୍ଟନାୟକ, ବ୍ରଜକିଶୋର ଭୁଜବଳ, ପ୍ରସନ୍ନକୁମାର ପାଟଶାଣୀ, ଜେନାମଣି ନରେନ୍ଦ୍ର କୁମାର, ଦିଲ୍ଲୀପ ଦାସ, ହରପ୍ରସନ୍ନ ଦାସ, ସତ୍ୟ ମିଶ୍ର ପ୍ରମୁଖ ଯୁବଶିଳ୍ପୀ କ୍ଷୁଦ୍ରଗଳ୍ପର ନୂତନ ଦିଗନ୍ତ ଅନ୍ୱେଷଣରେ ବ୍ୟସ୍ତ । ପାରଂପରିକ ଗଳ୍ପଶୈଳୀ, କଥାବସ୍ତୁ ଆଜି ତରୁଣ କଥାଶିଳ୍ପୀମାନଙ୍କ ଲେଖନୀରେ ବ୍ୟାପକ ଆଘାତର ସମ୍ମୁଖୀନ ହୋଇଛି । ଫଳରେ 'ନବଗଳ୍ପ' ପର୍ଯ୍ୟାୟ ଆଜି ଆଭାସ-ଚିତ୍ର, ସଙ୍କେତ-ଗଳ୍ପ, ପ୍ରତୀକ ଗଳ୍ପ, ପ୍ରବାହ ଗଳ୍ପ, ଯୌଥ ଗଳ୍ପ ଏବଂ ଅଗଳ୍ପ (Anti Story), ମିନି ଗଳ୍ପ ନାମରେ ପରିଚିତ । ଆଭାସ ଗଳ୍ପ ନିର୍ଦ୍ଦିଷ୍ଟ ମୁହୂର୍ତ୍ତର ନିର୍ଦ୍ଦିଷ୍ଟ ଭାବଚେତନା ଏବଂ ରୂପଚେତନାକୁ ନେଇ ପରିକଳ୍ପିତ । ବିଶୃଙ୍ଖଳ କିମ୍ବା ଆବେଗପ୍ରବଣ ବ୍ୟକ୍ତି-ମାନସର ନିର୍ଦ୍ଦିଷ୍ଟ ଚିତ୍ରବିନ୍ଦୁ ଯେପରି ଏହି କ୍ଷୁଦ୍ର ମିନିଗଳ୍ପର ସ୍ୱରୂପ ଆଉ ସତ୍ତା । ଗଳ୍ପକଳାର ସାମଗ୍ରିକତା ଏହି ପ୍ରୟାସରେ ପ୍ରତିଫଳିତ କି ନା ତାହା ଭବିଷ୍ୟତ ବିଚାର କରିବ । କର୍ମକ୍ଳାନ୍ତ ବ୍ୟକ୍ତି-ଜୀବନରେ ସରସତା ସୃଷ୍ଟି କରିବାରେ ଅତ୍ୟାଧୁନିକ ଗଳ୍ପ କେତେଦୂର ସମର୍ଥ, ତାହାର ବିଚାର ସମୟସାପେକ୍ଷ ।

ଗତ ପଚିଶ ବର୍ଷ ମଧ୍ୟରେ ବହୁ ପରିମାଣରେ ପାଶ୍ଚାତ୍ୟ ଏବଂ ଭାରତୀୟ ପ୍ରାଦେଶିକ ସାହିତ୍ୟରୁ ପ୍ରାମାଣିକ ଉତ୍କୃଷ୍ଟ ଗଳ୍ପ ଅନୂଦିତ ହେବାଯୋଗୁଁ ଓଡ଼ିଆ କ୍ଷୁଦ୍ର ଗଳ୍ପର ଆଙ୍ଗିକ, ରୂପଚେତନା ଏବଂ ପରିସର ପରିବ୍ୟାପ୍ତ ହୋଇପାରିଛି । ଆଭାସିତ ମିନିଗଳ୍ପର ଆରମ୍ଭ, ମଧ୍ୟଭାଗ, ପରିଣତି ପ୍ରାୟତଃ ଗୋଟାଏ ଆବେଗ, ଗୋଟାଏ ଚିନ୍ତା ମୁହୂର୍ତ୍ତର ବିସ୍ଫୋରଣଦ୍ୱାରା ଅନୁପ୍ରାଣିତ । ଉଚ୍ଛୃଙ୍ଖଳ, ଅସ୍ଥିର, ଉଦ୍‌ଭ୍ରାନ୍ତ, ମାନସିକ ଦ୍ୱନ୍ଦ୍ୱ-ପୀଡ଼ିତ ଯୁବମାନସର ଉଦ୍‌ବେଳନ ହିଁ ଆଭାସଗଳ୍ପର ଉପଜୀବ୍ୟ । ସେଥିପାଇଁ ଭାଷାର ପ୍ରବୃତ୍ତି ଭାବାନୁଗାମୀ ହେବାକୁ ବାଧ ।

ବିଶ୍ୱବିଖ୍ୟାତ କଥାଶିଳ୍ପୀ ଟଲଷ୍ଟୟ, ଚେକଭ, ଗର୍କି, ଏଚ୍. ଜି. ଓଏଲସ୍, ହେନେରି, ସମରସେଟ୍ ମମ୍, ଡି. ଏଚ୍. ଲରେନ୍ସ, ଓସ୍କାର ଓ୍ୱାଇଲ୍ଡଙ୍କଠାରୁ ଭାରତର ପ୍ରେମଚନ୍ଦ (ପ୍ରେମଚନ୍ଦଙ୍କ ଗଳ୍ପମାଳା—ନ୍ୟାସନାଲ୍ ବୁକ୍‌ଟ୍ରଷ୍ଟ—୧୯୭୩); ଶରତଚନ୍ଦ୍ର, ରବୀନ୍ଦ୍ରନାଥ ଠାକୁର, ବନଫୁଲ, ମୁଲ୍‌କରାଜ ଆନନ୍ଦ, କିଷନ୍‌ଚନ୍ଦର ପ୍ରଭୃତି ବହୁ ଶକ୍ତିଶାଳୀ ଯଶସ୍ୱୀ କଥାଶିଳ୍ପୀ ଓ ସ୍ରଷ୍ଟା ଏହି ଅନୁବାଦ ମଧ୍ୟରେ ଅନ୍ତର୍ଗତ । ଏପରି ଅନୁବାଦକମାନଙ୍କ ମଧ୍ୟରେ ପ୍ରଭାସଚନ୍ଦ୍ର ଶତପଥୀ, ଲକ୍ଷ୍ମୀନାରାୟଣ ମହାନ୍ତି, ଗୋପାଳଚନ୍ଦ୍ର ମିଶ୍ର, ଗୋବିନ୍ଦ ମିଶ୍ର, ରମେଶଚନ୍ଦ୍ର ଧଳ, ଶ୍ରୀଧର ଦାସ, ବଂଶୀଧର ଦାସ ପ୍ରମୁଖଙ୍କ ନାମ ଉଲ୍ଲେଖଯୋଗ୍ୟ । ଏତଦ୍‌ବ୍ୟତୀତ

ବିଭିନ୍ନ ଭାଷାର ଗଳ୍ପଗୁଡ଼ିକ ନ୍ୟାସ୍‌ନାଲ୍ ବୁକ୍ ଟ୍ରଷ୍ଟ୍ ଅଫ୍ ଇଣ୍ଡିଆ ଆନୁକୂଲ୍ୟରେ ପ୍ରକାଶିତ ହୋଇଛି; ଯଥା—ତାମିଲ୍ ଗଳ୍ପମାଳା (୧୯୭୦), ପଞ୍ଜାବୀ ଗଳ୍ପମାଳା, ତେଲୁଗୁ ଗଳ୍ପମାଳା, ହିନ୍ଦୀ ଗଳ୍ପମାଳା । ବିଭିନ୍ନ ଗଳ୍ପ ସଂକଳନ ମଧ୍ୟରେ 'ଏ ଯୁଗ ଓ ସେ ଯୁଗର ଗଳ୍ପ' (ଡ: ଗୋପାଳଚନ୍ଦ୍ର ମିଶ୍ର). ସେମାନଙ୍କ ହାତଲେଖା କାହାଣୀ ଡ. ଜାନକୀବଲ୍ଲଭ ମହାନ୍ତି, ବନ୍ୟା ( ଗୋପାଳଚନ୍ଦ୍ର ମିଶ୍ର, ଚକ୍ରଧର ସାମଲ), କଥା ସଂଗ୍ରହ (ଶ୍ରୀ ଜାନକୀ ମହାନ୍ତି—୧୯୬୧), ଗଳ୍ପଶ୍ରୀ (ଶ୍ରୀ ସତ୍ୟସୁନ୍ଦର ମିଶ୍ର, ରବି-ନାରାୟଣ ମହାପାତ୍ର—୧୯୬୧), ଗଳ୍ପ ସଂଚୟନ ( ଶ୍ରୀ କୃଷ୍ଣପ୍ରସାଦ ମିଶ୍ର—୧୯୬୧), ଗଳ୍ପବିଚିତ୍ରା (ମହାପାତ୍ର ନୀଳମଣି ସାହୁ—୧୯୬୮), କାହାଣୀ ଓ ଗଳ୍ପ ଚୟନ—୧୯୬୨, ଆମ କଥାସାହିତ୍ୟ (ଦ୍ୱିଧାରା—୧୯୬୪), ଗଳ୍ପ ଭାରତୀ (ଅସିତ କବି—୧୯୫୯), କେତୋଟି ଆଧୁନିକ କ୍ଷୁଦ୍ରଗଳ୍ପ (କଲ୍ୟାଣ ଚନ୍ଦ୍ର—୧୯୬୭), କଥା ସରିତ (କାଳନ୍ଦୀ ଚରଣ ପାଣିଗ୍ରାହୀ—୧୯୬୭), କଥା ସାଗର (ଡ: କୃଷ୍ଣପ୍ରସାଦ ମିଶ୍ର—୧୯୬୯), କହିବାର କିଛି ସରିନାହିଁ (କାହ୍ନୁଚରଣ ମିଶ୍ର, ଜାନକୀ ମହାନ୍ତି—୧୯୭୨), ଗଳ୍ପ ସମାରୋହ (ଜଗନ୍ନାଥ ରଥ—୧୯୬୭), କଥା ଏକ ନଦୀ (ସଂ: କୃଷ୍ଣପ୍ରସାଦ ମିଶ୍ର), ସାମୟିକ ଗଳ୍ପ ସଂକଳନ (ସଂ—ଶିଶିର ମହାପାତ୍ର, ଆଦି ଉଲ୍ଲେଖଯୋଗ୍ୟ ।

କ୍ଷୁଦ୍ରଗଳ୍ପର ପ୍ରସାର, ପ୍ରଚାର ଏବଂ ଲୋକପ୍ରିୟତାର ନିଦର୍ଶନର ହେତୁ ସ୍ୱରୂପ ଗଳ୍ପ ପତ୍ରିକାର ସଂପାଦନା ଆଲୋଚ୍ୟ ଯୁଗର ଉଲ୍ଲେଖଯୋଗ୍ୟ କୃତି । 'ଗଳ୍ପ' (ସଂପାଦକ : ଶ୍ରୀ ବିଭୂତି ପଟ୍ଟନାୟକ), 'କଥାକାର' (ସଂପାଦକ: ଶ୍ରୀ ଚନ୍ଦ୍ରଶେଖର ବର୍ମା) ଆଦି କେତୋଟି ମାସିକ ଗଳ୍ପ ପତ୍ରିକା ଏହି ପ୍ରସଂଗରେ ସ୍ମରଣ କରାଯାଇ-ପାରେ । ଏତଦ୍‌ବ୍ୟତୀତ ବିଭିନ୍ନ ସାହିତ୍ୟାନୁଷ୍ଠାନ ଆନୁକୂଲ୍ୟରେ କେତୋଟି ଗଳ୍ପ ସଂକଳନ ମଧ୍ୟ ପ୍ରକାଶ ଲାଭ କରିଅଛି; ଯଥା—'ଶ୍ରେୟାନ୍' ।

ଆଧୁନିକ କ୍ଷୁଦ୍ରଗଳ୍ପ ଓ ଗଳ୍ପ-ଲେଖକମାନଙ୍କ ସଂପର୍କରେ କ୍ଷୁଦ୍ର ହେଉ କି ବିସ୍ତୃତ ହେଉ, ଅନେକ ଆଲୋଚନା ମାସିକ ପତ୍ର-ପତ୍ରିକାସମୂହରେ ବରାବର ଦେଖିବାକୁ ମିଳେ । ଏତଦ୍‌ବ୍ୟତୀତ ଲେଖକମାନଙ୍କର ଗଳ୍ପ ସଂପର୍କୀୟ ବ୍ୟାପକ ଆଲୋଚନାର ମଧ୍ୟ ଅଭାବ ନାହିଁ । ମାତ୍ର ଏସବୁ ଆଲୋଚନା ଅନେକ ସମୟରେ ତାତ୍ତ୍ୱିକ ଓ ବସ୍ତୁନିଷ୍ଠ ନ ହୋଇ ବ୍ୟକ୍ତିଗତ ଆନୁଗତ୍ୟ, ରୁଚି, ମୂଲ୍ୟବୋଧଦ୍ୱାରା ପରିଚାଳିତ ।

## ଉପନ୍ୟାସ—

ଭାରତୀୟ ପ୍ରାଚୀନ ସଂସ୍କୃତ ସାହିତ୍ୟରେ 'କାଦମ୍ବରୀ' ସଦୃଶ ଗଦ୍ୟ ରୋମାନ୍‌ସର ସ୍ଥିତି ଯେପରି ପରିଦୃଷ୍ଟ ହୁଏ, ପ୍ରାଚୀନ ଓଡ଼ିଆ ସାହିତ୍ୟରେ ମଧ୍ୟ

ସେହିପରି ରୋମାନ୍ସଧର୍ମୀ ଗଦ୍ୟରଚନାର ଅଭାବ ନାହିଁ । ତେବେ, ପାଶ୍ଚାତ୍ୟ ଚିନ୍ତାଧାରା ପ୍ରସାର ଫଳରେ ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଭାରତୀୟ ପ୍ରାଦେଶିକ ସାହିତ୍ୟଗୁଡ଼ିକରେ ନୂତନ ରୂପଚେତନା ଓ ଭାବଚେତନାଗତ ଯେଉଁ ନବଜାଗରଣ ସଂଘଟିତ ହୋଇଥିଲା, ସେହି ସାଂସ୍କୃତିକ ପ୍ରବାହରେ ପ୍ରାଦେଶିକ ସାହିତ୍ୟମାନଙ୍କର ଗତାନୁଗତିକ, ରକ୍ଷଣଶୀଳ ଆଙ୍ଗିକ ପରିବର୍ତ୍ତେ, ନୂତନ 'ଫର୍ମ', ନୂତନ ଶୈଳୀ ଲେଖକମାନଙ୍କୁ ବିଶେଷ ଆକୃଷ୍ଟ କରିଥିଲା । କ୍ଷୁଦ୍ରଗଳ୍ପ ଏବଂ ଉପନ୍ୟାସ ସେହି ଶିକ୍ଷାଦୀକ୍ଷା ଏବଂ ନବରୁଚିର ପ୍ରତିଫଳିତ ସାହିତ୍ୟିକ ରୂପମାତ୍ର । ଉପନ୍ୟାସ ବ୍ୟକ୍ତି ଓ ସମାଜର କଳାତ୍ମକ ପ୍ରତିବିମ୍ବ : "The novel is not merely fictional prose, it is the prose of man's life, the first art to attempt to take the whole man and give him expression." (୧)

ପ୍ରତିବେଶୀ ବଙ୍ଗଳା ଏବଂ ଅସମୀୟା ସାହିତ୍ୟରେ ଊନବିଂଶ ଶତାବ୍ଦୀରେ ହିଁ ଉପନ୍ୟାସ ରଚନା ଆରମ୍ଭ ହୋଇଥିଲା । ବିସ୍ମୟର କଥା ଯେ, ବଙ୍ଗଳାର ପ୍ରାକ୍-ଉପନ୍ୟାସ ଉତ୍ପତ୍ତିକାଳୀନ ଉପନ୍ୟାସର ଧାରା ବହୁ ପରିମାଣରେ ସମାଜ-ଭିତ୍ତିକ ଥିଲା; ଯଥା—'ନବବାବୁ ବିଳାସ' (୧୮୨୬-ପ୍ରମଥନାଥ ଶର୍ମା ଓରଫ୍ ଭବାନୀ ଚରଣ ମୁଖୋପାଧ୍ୟାୟ), 'ଆଲଲେର୍ ଘରେର୍ ଦୁଲାଲ୍' (୧୮୫୭-ପ୍ୟାରୀଚାନ୍ଦ ମିତ୍ର ବନାମ୍ ଟେକଚାନ୍ଦ ଠାକୁର), 'ହୁତୋମ ପ୍ୟାଚାର ନକ୍ସା' (୧୮୬୨-କାଳୀପ୍ରସନ୍ନ ସିଂହ) । ଏହି ଉପନ୍ୟାସମାଳାର ଆଧାର ସାମାଜିକ ଏବଂ ସେହି ବ୍ୟକ୍ତି ଓ ସମାଜ ହେଉଛି ଊନବିଂଶ ଶତାବ୍ଦୀର ଦେଶରେ ପ୍ରଚ୍ଛୃତ ଇଂରେଜୀ-ଶିକ୍ଷାପ୍ରାପ୍ତ ଚରିତ୍ରମାନଙ୍କର ପ୍ରତିଫଳିତ ରୂପ । ଏହି ଗୌଣ ଔପନ୍ୟାସିକମାନଙ୍କ ବଙ୍ଗଳା ଉପନ୍ୟାସ-ସାହିତ୍ୟର ଚକ୍ରବାଳରେ ବଙ୍କିମଚନ୍ଦ୍ର ଚଟ୍ଟୋପାଧ୍ୟାୟଙ୍କ ସଦୃଶ ଯେଉଁ କେତେ ଜଣ ଉଜ୍ଜ୍ୱଳ ପ୍ରତିଭା ଉଦ୍‌ଭାସିତ ହୋଇଥିଲେ, ସେମାନଙ୍କର ସାଧନା, ଦୃଷ୍ଟିକୋଣ ମୁଖ୍ୟତଃ ଐତିହାସିକ ବିଚାରଦ୍ୱାରା ପ୍ରଭାବିତ ହୋଇଥିଲା । ବଙ୍କିମ ଚନ୍ଦ୍ରଙ୍କ ବହୁ ପଠିତ ଉପନ୍ୟାସସମୂହ 'ଦୁର୍ଗେଶନନ୍ଦିନୀ' (୧୮୬୫), 'କପାଳ କୁଣ୍ଡଳା' (୧୮୬୬), ବିଷବୃକ୍ଷ (୧୮୭୩), କୃଷ୍ଣକାନ୍ତେର ଉଇଲ୍ (୧୮୭୮), ଆନନ୍ଦମଠ (୧୮୮୨) ମଧ୍ୟରୁ ଅଧିକାଂଶ ଐତିହାସିକ ଚେତନାଦ୍ୱାରା ଉଦ୍‌ବୁଦ୍ଧ । ବଙ୍କିମ ଚନ୍ଦ୍ରଙ୍କ 'ଆନନ୍ଦମଠ' ବିସ୍ମୃତ ଜାତୀୟ ଭାବାପନ୍ନ ଭାରତବର୍ଷର ପୃଷ୍ଠଭୂମିରେ ପରିକଳ୍ପିତ ।

ଅସମୀୟା ସାହିତ୍ୟରେ ୧୮୯୩ ବେଳକୁ ଉପନ୍ୟାସ ରଚନା ପରିଲକ୍ଷିତ ହୁଏ । ଏହି ପ୍ରସଙ୍ଗରେ ପଦ୍ମନାଥ ଗୋହେନଙ୍କର ଉପନ୍ୟାସ 'ଭାନୁମତୀ' (୧୮୯୩)

(୧) Ralph Fox

ଏବଂ ରଜନୀକାନ୍ତ ବର୍ଦ୍ଦୋଲଇଙ୍କର 'ମିରଜୀଆରି' (୧୮୯୦) ଉଲ୍ଲେଖଯୋଗ୍ୟ । ଉଭୟ ଉପନ୍ୟାସର ପଛଭୂମି ଐତିହାସିକ ।

ମାଲୟାଲମ୍ ସାହିତ୍ୟରେ ୧୮୮୭ରେ ପ୍ରକାଶିତ 'କୁନ୍ଦଲତା' ଏବଂ ୧୮୮୯ରେ ପ୍ରକାଶିତ 'ଇନ୍ଦୁଲେଖା' ସାଂପ୍ରତିକ ସମାଜିକ ପଛଭୂମିରେ ଲିଖିତ ।

କନ୍ନଡ଼ ସାହିତ୍ୟରେ ପ୍ରଥମ ଅନୂଦିତ ଉପନ୍ୟାସ ହେଉଛି 'କାଦମ୍ବରୀ' ଏବଂ ଗାଲଗାନାଥଙ୍କ ରଚନା 'ମାଧବ କରୁଣା ବିଳାସ' ବିଜୟନଗର ସାମ୍ରାଜ୍ୟର ଐତିହାସିକ ଭୂମିକା ଉପରେ ଆଧାରିତ ।

ତେଲଗୁ ସାହିତ୍ୟରେ ପ୍ରକାଶିତ ପ୍ରଥମ ଉପନ୍ୟାସ 'ରାଜଶେଖର ଚରିତମ୍' ଇଂରେଜ ଲେଖକ ଭିକାର ଅଫ୍ ଓଏକଫିଲ୍ଡଙ୍କ ଅବଲମ୍ବନରେ ଲିଖିତ । ଏହା ବ୍ୟତୀତ 'ରାମଚନ୍ଦ୍ର ବିଜୟମ୍' (୧୮୯୪), 'ହେମଲତା' (୧୮୯୪) 'ଅହଲ୍ୟା ବାଈ' (୧୮୯୭-୯୮) ଉପନ୍ୟାସର ଅଭ୍ୟୁଦୟ ଯୁଗର ଐତିହାସିକ ଉପନ୍ୟାସ । ତାମିଲ୍ ସାହିତ୍ୟରେ ବେଦନାୟକମ୍ ପିଲ୍ଲଇଙ୍କ ଲିଖିତ 'ପ୍ରତାପ ମୁଦାଲିୟର ଚରିତ୍ରମ' (୧୮୭୬) 'ସୁଗୁଣ ସୁନ୍ଦରୀ' (୧୮୭୭) ସମାଜଧର୍ମୀ ରଚନା; ମାତ୍ର ରାଜମାୟାରଙ୍କ ଲିଖିତ 'କମଲାମ୍ବଲ ଚରିତ୍ରମ' (୧୮୯୩) ହେଉଛି ଆଧୁନିକ ତାମିଲ ଉପନ୍ୟାସର ଆଦ୍ୟ ନିଦର୍ଶନ । ମରାଠୀ ଭାଷାର ବାବା ପଦ୍ମାଜିଙ୍କର 'ଯମୁନା ପର୍ଯ୍ୟଟନ' (୧୮୫୭) ହେଉଛି ପ୍ରଥମ ଉପନ୍ୟାସ ଏବଂ ଏହା ସମାଜରେ ପ୍ରଚଳିତ ବିଧବାସମସ୍ୟାକୁ କେନ୍ଦ୍ର କରି ଲିଖିତ ହୋଇଥିଲା ।

ଆଧୁନିକ ଓଡ଼ିଆ ଉପନ୍ୟାସର ବିକାଶଧାରା ଚାରିଗୋଟି ପର୍ଯ୍ୟାୟରେ ବିଭକ୍ତ—ଉପନ୍ୟାସ ସୃଷ୍ଟିର ଆଦିଯୁଗ ବା ପ୍ରାକ୍ ଫକୀରମୋହନ ଯୁଗ । ଓଡ଼ିଆ ଉପନ୍ୟାସର ପ୍ରବର୍ତ୍ତକ ଫକୀରମୋହନ ଯୁଗ ଏବଂ ଫକୀରମୋହନ ପରବର୍ତ୍ତୀ ଯୁଗ; ଯଥା—ମୁକୁର ଓ ଆନନ୍ଦଲହରୀ ଉପନ୍ୟାସମାଳା (୧୯୩୦-୧୯୪୭) ଏବଂ ସ୍ୱାଧୀନତା ପରବର୍ତ୍ତୀ ଯୁଗୀୟ ଓଡ଼ିଆ ଉପନ୍ୟାସ ।

ଊନବିଂଶ-ଶତାବ୍ଦୀର ଶେଷପାଦ ହିଁ ଓଡ଼ିଆ ଭାଷାରେ ଆଧୁନିକ ଅର୍ଥରେ ଉପନ୍ୟାସ ସୃଷ୍ଟିର ପ୍ରକୃଷ୍ଟ ସମୟ ଏବଂ ବଙ୍କିମ୍ପ୍ରଭାବରେ ପ୍ରକାଶିତ ରୋମାନ୍ସଧର୍ମୀ ଗଳ୍ପ ହେଉଛି ତାହାର ହେତୁ । 'ଉତ୍କଳ ମଧୁପ' (୧୮୭୭-୭୮) ପତ୍ରିକାରେ ରାମଶଙ୍କର ପ୍ରଥମେ 'ସୌଦାମିନୀ' ନାମକ ଏକ ଉପନ୍ୟାସ ଧାରାବାହିକ ଭାବରେ ପ୍ରକାଶ କରିଥିଲେ । ମାତ୍ର ପ୍ରୋତ୍ସାହନ ଅଭାବରେ ଏହି ଉପନ୍ୟାସଟି କୁଆଡ଼େ ଅପୂର୍ଣ୍ଣାଙ୍ଗ ଅବସ୍ଥାରେ ରହିଗଲା । ଏହାପରେ ଛଦ୍ମନାମରେ ଜଣେ କେହି 'ପ୍ରଦୀପ' ପତ୍ରିକାରେ (୧୮୮୫) ସେତେବେଳେ ଉପନ୍ୟାସ ରଚନା କରି ପ୍ରକାଶ କରିଥିଲେ; ମାତ୍ର ତାହା ପୂର୍ଣ୍ଣାଙ୍ଗ ରଚନା ନୁହେଁ । ଓଡ଼ିଆ ଭାଷାରେ ଉପନ୍ୟାସ ରଚନା

ଦିଗରେ ପ୍ରଥମ ସଚେତନ ଉଦ୍ୟମ ହେଉଛି—ଉମେଶଚନ୍ଦ୍ର ସରକାରଙ୍କ ଲିଖିତ 'ପଦ୍ମମାଳୀ' ଉପନ୍ୟାସ (ଢେଙ୍କାନାଳ, ପ୍ରକାଶନ କାଳ—ତା ୧୯।୧୦।୧୮୮୮)। ଏହା ଆମୂଳଚୂଳ କାହାଣୀଧର୍ମୀ ଐତିହାସିକ ଉପନ୍ୟାସ; ବରଂ ଏହାକୁ 'ଗଦ୍ୟ ରୋମାନ୍‌ସ' ବୋଲି ଅଭିହିତ କରାଯାଇପାରେ। ଏହାର ଗଳ୍ପାଂଶ, ଉପସ୍ଥାପନା ଶୈଳୀ, ଚରିତ୍ରିକ ଅନୁଶୀଳନ, ଭାଷାଯୋଜନା ବହୁ ଅଂଶରେ କାବ୍ୟଧର୍ମୀ। ଲେଖକଙ୍କ ଦୃଷ୍ଟିଭଙ୍ଗୀ ମଧ୍ୟ ଗତାନୁଗତିକତାଦ୍ୱାରା ପ୍ରଭାବିତ। ନୀଳଗିରି ଗଡ଼ଜାତରେ ୧୮୩୫ ମସିହାରେ ସଂଘଟିତ ଏକ ଘଟଣା ଅବଲମ୍ବନରେ 'ପଦ୍ମମାଳୀ' ଲିଖିତ। ଏହାର ଆଧାର ଐତିହାସିକ ଏବଂ ଉପସ୍ଥାପନା ରୋମାନ୍‌ସଧର୍ମୀ। ନୀଳଗିରି ପାଞ୍ଚଗଡ଼ର ମେଳି, ବିଦ୍ରୋହ, ନାରୀ ଅପହରଣ ପ୍ରଭୃତି ପ୍ରସଙ୍ଗ ଉପନ୍ୟାସରେ ବର୍ଣ୍ଣିତ ହୋଇଥିବା କଥା ପୂର୍ବେ ସୂଚୀତ ହୋଇଛି।

ବାରିପଦାରୁ ପ୍ରକାଶିତ 'ଉତ୍କଳପ୍ରଭା' ପତ୍ରିକାର (୧୮୯୨-୯୩) ପ୍ରଥମ ସଂଖ୍ୟାରୁ ନାଟ୍ୟକାର ରାମଶଙ୍କର ରାୟ (୧୮୫୭-୧୯୩୧) 'ବିବାସିନୀ' ନାମକ ଏକ ଐତିହାସିକ ଉପନ୍ୟାସ ଧାରାବାହିକ ଭାବରେ ପ୍ରକାଶ କରିଥିଲେ। ଏହା ଦ୍ୱିତୀୟ ଓଡ଼ିଆ ଉପନ୍ୟାସ ବୋଲି ସେ ସମୟର ସମ୍ବାଦପତ୍ର ଆଲୋଚନା କରିଥିଲେ (ଓଡ଼ିଆ ଓ ନବସମ୍ବାଦ--ତା ୧୫-୧-୧୮୯୭)। ନାୟିକାର ନାମାନୁସାରେ ଉପନ୍ୟାସର ନାମକରଣ ହୋଇଛି। ଓଡ଼ିଶାରେ ମରହଟ୍ଟା ରାଜତ୍ୱ-କାଳୀନ ଅରାଜକତା, ବିଶୃଙ୍ଖଳା, ଅବ୍ୟବସ୍ଥା ଏବଂ ଦୁର୍ଭିକ୍ଷଜନିତ କରୁଣ ଦୁର୍ଗତି ହିଁ ଏକ ପ୍ରଣୟ ଉପାଖ୍ୟାନ ପୃଷ୍ଠଭୂମିରେ ଏହି ଉପନ୍ୟାସରେ ବର୍ଣ୍ଣିତ। ରାଧାଗୋବିନ୍ଦ ଚୌଧୁରୀଙ୍କ ପାଳିତା କନ୍ୟା ହେଉଛି—କଳାବତୀ। ସେ ବାଳବିଧବା ଅବସ୍ଥାରେ ଅପହୃତା ହୋଇ ଦଳପତି ରଘୁନାଥଙ୍କ ଗୃହରେ ସ୍ଥାନ ପାଇଛି। ରଘୁନାଥଙ୍କର ପ୍ରଣୟ ପ୍ରସ୍ତାବକୁ କଳାବତୀ ପ୍ରତ୍ୟାଖ୍ୟାନ କରିଛି ଏବଂ ନିଜର ସହଚରୀ ଚିତ୍ରକଳା ସହିତ ରଘୁନାଥଙ୍କର ବିବାହ ପ୍ରସ୍ତାବ କରି ନିଜେ ଆତ୍ମହତ୍ୟା କରିଛି। ତେଣୁ, କେତେକ ବିକ୍ଷିପ୍ତ ଐତିହାସିକ ତଥ୍ୟକୁ ସାମାଜିକ ରୂପ ଦେଇ ଲେଖକ ଏହି ଉପନ୍ୟାସଟିର କଳ୍ପନା କରିଛନ୍ତି। ଶୈଳୀ, ଉପନ୍ୟାସକଳା, ବିଷୟବସ୍ତୁର ଉପସ୍ଥାପନାରେ ଉପନ୍ୟାସ ତ୍ରୁଟିରହିତ ନୁହେଁ। କାବ୍ୟଧର୍ମୀ ଆଳଂକାରିକ ଭାଷା, ପରିଚ୍ଛେଦର ବିପୁଳାୟତନ ହେତୁ ଉପନ୍ୟାସର ଆଭ୍ୟନ୍ତରୀଣ କଳା ବ୍ୟାହତ ହୋଇଅଛି। ତଥାପି, ଫକୀରମୋହନ ରାମଶଙ୍କରଙ୍କୁ ଲକ୍ଷ୍ୟ କରି ଯାହା ଲେଖିଥିଲେ ତାହା ବଡ଼ ତାତ୍ପର୍ଯ୍ୟପୂର୍ଣ୍ଣ :

"ହେ ରାମଶଙ୍କର ମୋର ମାନୁଛି ମନକୁ
ହୋଇପାର ଭାଇ ତୁମେ ଗଦ୍ୟ-ପଦ୍ୟକୁ।

ପ୍ରଥମ ନାଟକ ଆଉ ନଭେଲର ଲେଖା,
ପ୍ରଥମରେ ତୁମଠାରେ ଗଲା ସିନା ଦେଖା ।"
(ଉତ୍କଳ ଭ୍ରମଣ—୧୮୯୨)

ଷୋଳବର୍ଷ ପରେ ଏହି ପ୍ରଣାଳୀ ଓ ରୁଚି ଅନୁଯାୟୀ ରଚିତ ଗୋପାଳବଲ୍ଲଭ ଦାସଙ୍କ ଉପନ୍ୟାସ 'ଭୀମାଭୂୟାଁ' (୧୯୦୮) ମଧ୍ୟ ଐତିହାସିକ ପରିଧିରେ ପରିକଳ୍ପିତ । କେବଳ ଓଡ଼ିଶାର ଘୋର ଅରଣ୍ୟ ଅଞ୍ଚଳର ଆଦିବାସୀଙ୍କ ସାମାଜିକ ଚଳଣିକୁ ଏଥିରେ ରୂପ ପ୍ରଦାନ କରିଥିବା ହେତୁ ଏହାର ଉପଯୋଗିତା ସ୍ୱୀକୃତ । ଭୂୟାଁ ସମାଜର କନ୍ୟା ଚୀନାମାଲୀ । ଭୂୟାଁ ଯୁବକ ଭୀମା ଏବଂ ତା'ର ବଡ଼ଭାଇ ବାଣା ଉଭୟେ ଚିନାମାଲୀକୁ ଭଲପାଆନ୍ତି । ବାଣା ସହିତ ଚୀନାମାଲୀର ବିବାହ ଅନୁଷ୍ଠିତ ହୋଇଯାଏ । ଏହା ପରେ ମନଦୁଃଖରେ ଭୀମା ନିକଟବର୍ତ୍ତୀ ରାଜ୍ୟର ରାଜା ହରିଚନ୍ଦନଙ୍କ ନିକଟରେ ଆଶ୍ରୟ ନିଏ । ଘଟଣାସୂତ୍ରରେ ଜଗଦେବ ଏବଂ ହରିଚନ୍ଦନଙ୍କ ମଧ୍ୟରେ ଯୁଦ୍ଧ ଆରମ୍ଭ ହୁଏ ଏବଂ ହରିଚନ୍ଦନଙ୍କ ସୈନ୍ୟମାନଙ୍କ ଦ୍ୱାରା ଧୃତ ଜଗଦେବଙ୍କ ସୈନ୍ୟଙ୍କ ମଧ୍ୟରେ ଭୀମାର ପିତା ଓ ଭ୍ରାତା ଭୀମାର ଯତ୍ନରେ ମୁକ୍ତିଲାଭ କରନ୍ତି । ପୁନଶ୍ଚ କଠିନ ରୋଗରେ ଆକ୍ରାନ୍ତ ରାଜାଙ୍କୁ ଭୀମା ଓ ବାଣା ଆରୋଗ୍ୟ କରିଦିଅନ୍ତି । ରାଜଜେମା ଏବଂ ଭୀମା ମଧ୍ୟରେ ପାରସ୍ପରିକ ଆକର୍ଷଣ ଜାତହୁଏ । ଏହାହିଁ ଉପନ୍ୟାସର ପରିଣତି । କାବ୍ୟିକ ଭାଷା, ଭାଷାରେ କୃତ୍ରିମତା, ଚରିତ୍ରଚିତ୍ରଣରେ ଭାରସାମ୍ୟର ଅଭାବ ଏବଂ ଉପମାଧିକ୍ୟ ଉପନ୍ୟାସକଳାକୁ ବ୍ୟାହତ କରିଛି । ଉପନ୍ୟାସ ସୃଷ୍ଟିର ଅଭ୍ୟୁଦୟ ଯୁଗର ଏହି ଉପନ୍ୟାସଦ୍ୱୟ ଉପନ୍ୟାସକଳାକୁ ସମ୍ପୂର୍ଣ୍ଣ ଭାବରେ ପ୍ରତିଫଳିତ କରି ନଥିଲେ ମଧ୍ୟ ଓଡ଼ିଆ ଉପନ୍ୟାସର ଐତିହାସିକ ବିକାଶଧାରାରେ ଏସବୁର ଅବଦାନ ଉପେକ୍ଷା କରାଯାଇନପାରେ । ଯଥାର୍ଥତଃ ଫକୀରମୋହନ ହିଁ ଆଧୁନିକ ଓଡ଼ିଆ ଉପନ୍ୟାସକଳାର ପ୍ରବର୍ତ୍ତକ ଏବଂ ତାଙ୍କ ଲେଖନୀନିଃସୃତ ଉପନ୍ୟାସ, ଯଥା—ଛମାଣ ଆଠଗୁଣ୍ଠ (୧୮୯୭—ଉତ୍କଳ ସାହିତ୍ୟରେ ପ୍ରକାଶିତ), ମାମୁଁ (୧୯୧୩), ଲଛମା (୧୯୦୩) ପ୍ରାୟଶ୍ଚିତ୍ତ (୧୯୧୫) ଓଡ଼ିଶାର ସାମାଜିକ, ପାରିବାରିକ ଏବଂ ଐତିହାସିକ ଜୀବନର କଳାତ୍ମକ ପ୍ରଭାବଶାଳୀ ପ୍ରତିଫଳନ । ଉପନ୍ୟାସ କଳା ଏବଂ ଏହି କଳାଗତ ସୌନ୍ଦର୍ଯ୍ୟର ନିଖୁଣ ପ୍ରକାଶ ଯେ ଜଣେ ଉତ୍କୃଷ୍ଟତମ ଶକ୍ତିଧର ଔପନ୍ୟାସିକଙ୍କର ଦକ୍ଷତାସାପେକ୍ଷ, ଏହାହିଁ ଫକୀରମୋହନ ପ୍ରମାଣିତ କରିସାରିଥିଲେ । ଉପନ୍ୟାସ ଏକ ଗଣତନ୍ତ୍ରଧର୍ମୀ କଳା । ଓଡ଼ିଆ ଉପନ୍ୟାସରେ ଏହି ଆଦର୍ଶ ତଥା ପରଂପରାର ଶକ୍ତିଶାଳୀ ପ୍ରବର୍ତ୍ତକ ହେଉଛନ୍ତି ଯଥାର୍ଥରେ କଥାଶିଳ୍ପୀ ଫକୀରମୋହନ । ତାଙ୍କ ଲେଖନୀରେ ଉଭୟ ସାମନ୍ତବାଦୀ ଗୋଷ୍ଠୀ, ଜମିଦାରଶ୍ରେଣୀ ଓ ମଧ୍ୟବିତ୍ତ ଦରିଦ୍ରଶ୍ରେଣୀର ପାରିବାରିକ ସ୍ତରରେ ଅତ୍ୟାଚାରୀ ଶୋଷକ ଚରିତ୍ରମାନଙ୍କର ପ୍ରଥମ ଥର

ପାଇଁ ମୁକାବିଲା କରାଯାଇପାରିଥିଲା । ହେନେରୀ ଜେମ୍‌ସ୍‌ଙ୍କ Art of Fictionର ଉପନ୍ୟାସ ସମ୍ବନ୍ଧୀୟ ସୂଚନା ଓ ନିର୍ଦ୍ଦେଶର ସ୍ୱର ଯେପରି ଫକୀରମୋହନଙ୍କ ଉପନ୍ୟାସରେ ପ୍ରତିଫଳିତ ହେଲା—"As people feel life, so they will feel art that is most closely related to it. This closeness of relation is what we should never forget in talking of the effort of the novel." ଓଡ଼ିଆ ଉପନ୍ୟାସରେ ବ୍ୟକ୍ତି ଓ ସମାଜ ସହିତ ବାସ୍ତବତା ପ୍ରତିଷ୍ଠିତ ହେବାରେ ଫକୀରମୋହନ ଥିଲେ ଅଗ୍ରଣୀ ଏବଂ ଆଦ୍ୟ ଉଦ୍‌ଗାତା । ବିଖ୍ୟାତ ଇଂରେଜ ଔପନ୍ୟାସିକ ଚାର୍ଲସ୍ ଡିକେନ୍‌ସ୍‌ଙ୍କ ଉପନ୍ୟାସର କଳାକୌଶଳ ଏବଂ ଶିଳ୍ପଦକ୍ଷତା ସମ୍ପର୍କରେ କୁହାଯାଇଥାଏ ଯେ ଡିକେନ୍‌ସ ବାସ୍ତବତାର ଉପାସକ ନଥିଲେ; ବରଂ ବାସ୍ତବତା ହିଁ ଡିକେନ୍‌ସଙ୍କର ଶିଳ୍ପପ୍ରତିଭାର ଅନୁସରଣ କରିଥିଲା । ଫକୀରମୋହନଙ୍କ ସମୟରୁ ଓଡ଼ିଆ ଉପନ୍ୟାସରେ ନିରବଚ୍ଛିନ୍ନ ଏକାନ୍ତ ଏବଂ ଅବିଭାଜ୍ୟ ବାସ୍ତବତା ହିଁ ପ୍ରତିଫଳିତ ହୋଇଥିଲା । ଚରିତ୍ରମୂଳକ କହି କିମ୍ବା ଘଟଣାମୂଳକ ଉପନ୍ୟାସ କହି, ପ୍ରତ୍ୟେକ ବିଭାଗରେ ଫକୀରମୋହନ ଥିଲେ ଅପ୍ରତିଦ୍ୱନ୍ଦ୍ୱୀ ସ୍ରଷ୍ଟା ।

ଓଡ଼ିଆ ଉପନ୍ୟାସ-ସୃଷ୍ଟିର ଆଦିକାଳ ଐତିହାସିକ ପ୍ରବୃତ୍ତିଦ୍ୱାରା ନିୟନ୍ତ୍ରିତ ହୋଇଥିଲା; ଅର୍ଥାତ୍ ଆଦ୍ୟ ଲେଖକମାନେ ଇତିହାସ ଉପରେ ସେମାନଙ୍କ ଉପନ୍ୟାସର ଉପାଦାନ ପାଇଁ ନିର୍ଭର କରିଥିଲେ । ଏହି ଆଭିମୁଖ୍ୟ ଯେ କେବଳ ଓଡ଼ିଶାରେ ଦେଖାଦେଇଥିଲା ତାହା ନୁହେଁ; ଭାରତର ବିଭିନ୍ନ ପ୍ରାଦେଶିକ ସାହିତ୍ୟର ଉପନ୍ୟାସରେ ମଧ୍ୟ ଏହି ଧାରା ପ୍ରବାହିତ ହୋଇଥିଲା । ଏହାର ସୂଚନା ପୂର୍ବରୁ ଦିଆଯାଇଛି ।

ଫକୀରମୋହନଙ୍କ ଅବ୍ୟବହିତ ପରେ କତିପୟ ଉପନ୍ୟାସ ଲିଖିତ ହୋଇଥିଲା । ମାତ୍ର ସେସବୁ ଉପନ୍ୟାସରେ କଳାତ୍ମକତା କିମ୍ବା ଶିଳ୍ପଗତ କୌଣସି ପରୀକ୍ଷା-ନିରୀକ୍ଷାର ସୂଚନା ମିଳେ ନାହିଁ; ବରଂ ଫକୀରମୋହନ କୃତିସମୂହରେ କଥାଶିଳ୍ପର ଯେଉଁ ଉଦ୍ଦୀପ୍ତ ଶିଖା ପ୍ରଜ୍ୱଳିତ କରିଥିଲେ, ତାହାର ଆଲୋକ-ଝାପ୍‌ସାରେ ଯେପରି ସେହିସବୁ ଗୌଣ ଉପନ୍ୟାସର କ୍ଷୀଣାଲୋକ ସ୍ପଷ୍ଟ ହୋଇ ପାରି ନଥିଲା ।

କବିଶେଖର ଚିନ୍ତାମଣି ମହାନ୍ତିଙ୍କର 'ସୁଗଳମଠ' (୧୯୨୦), 'ରୁପାଚୁଡ଼ି', 'ଟଙ୍କାଗଛ', 'କୁଳଫକୀର', 'ଶଳଣଗ୍ରା' ଉପନ୍ୟାସଗୁଡ଼ିକ ମୁଖ୍ୟତଃ ଘଟଣାପ୍ରଧାନ, ବର୍ଣ୍ଣନାଧର୍ମୀ ଏବଂ କଳାତ୍ମକ ବୈଶିଷ୍ଟ୍ୟ-ବିବର୍ଜିତ । ଭାରତର ଧର୍ମୀୟ ଅନୁଷ୍ଠାନ, ମଠ ପ୍ରଭୃତିରେ ନୀତି ଆଦର୍ଶ ଅନ୍ତରାଳରେ ମଠାଧୀଶମାନଙ୍କର ଯେଉଁ ଅସଂଯତ ଉଚ୍ଛୃଙ୍ଖଳ ତଥା ବିଳାସବ୍ୟସନପୂର୍ଣ୍ଣ ଜୀବନ, ତାହା ହିଁ 'ସୁଗଳ ମଠ'ରେ ପ୍ରଦର୍ଶିତ ।

ମହନ୍ତଙ୍କର ବିଳାସବ୍ୟସନ ବ୍ୟୟାଧିକ୍ୟ ଯୋଗୁଁ ଠାକୁର ରଘୁନାଥଙ୍କର ସୁନା ଗହଣା ମଧ୍ୟ ଚୋରି ହୋଇ ବିକି ହୋଇଗଲା । ଧର୍ମ ନାମରେ ବ୍ୟଭିଚାର ଏବଂ ତା'ର ପରିଣାମ ହିଁ ଉପନ୍ୟାସରେ ପ୍ରଦର୍ଶିତ । ଜଣେ ଧନାନ୍ଧ ପରସ୍ୱ ଅପହରଣନାଗି କପଟୀ ସ୍ୱାର୍ଥାନ୍ଧ ବ୍ୟକ୍ତି ନିଜର ଧନବୃଦ୍ଧି ଉଦ୍ଦେଶ୍ୟରେ ହୀନ ଚକ୍ରାନ୍ତ କରିପାରେ; ତାହାର ଚିତ୍ର 'ରୁପାଚୂଡ଼ି'ରେ ବର୍ଣ୍ଣିତ । ଧୂର୍ତ୍ତ କାପାଳିକ ଓ ଆଡ଼କାଠିମାନଙ୍କର ଠକାମି, ପ୍ରତାରଣା 'ଝଙ୍କାଗଛ'ର କଥାବସ୍ତୁ । 'ଶନିଗ୍ରହ', 'ଝଙ୍କାଗଛ' ଏବଂ 'ରୁପାଚୂଡ଼ି' ଉପନ୍ୟାସ ଯଥାର୍ଥରେ ଲେଖକଙ୍କର ବିଶିଷ୍ଟ କୃତିରୂପେ ପରିଚିତ । ସାମାଜିକ ଜୀବନର ଅବ୍ୟବସ୍ଥା, ପ୍ରତାରଣା, ଅନ୍ୟାୟ ପ୍ରଦର୍ଶନ ହିଁ ଲେଖକଙ୍କର ଉଦ୍ଦେଶ୍ୟ । ଏହି ଧାରାରେ ପ୍ରାବନ୍ଧିକ ଏବଂ ପାଠ୍ୟପୁସ୍ତକ ଲେଖକ ପଣ୍ଡିତ ମୃତ୍ୟୁଞ୍ଜୟ ରଥ ମଧ୍ୟ ସେତେବେଳେ ଉପନ୍ୟାସ ଲେଖାରେ ହାତ ଦେଇଥିଲେ; ମାତ୍ର ତାହାର ସଫଳତା ବିଚାରଯୋଗ୍ୟ । ତାଙ୍କର ଉପନ୍ୟାସ 'ଅଭୁତ ପରିଣାମ' । ଓଡ଼ିଶାରେ ଖ୍ରୀଷ୍ଟିୟାନ୍ ପାଦ୍ରିମାନଙ୍କର ଧର୍ମପ୍ରଚାର ଫଳରେ କେତେକ ଇଂରେଜୀ-ଶିକ୍ଷିତ ଯୁବକଙ୍କ ହୃଦୟରେ ଆଲୋଡ଼ନ ଦେଖାଦେଇଥିଲା । ତାହାହିଁ ହେଉଛି ଏହି ଦୀର୍ଘ ଗଳ୍ପର କଥାବସ୍ତୁ । ହରି ସାଇଁଙ୍କ ପୁଅ ମୋହନ ଇଂରେଜୀ ପାଠ ପଢ଼ି ଖ୍ରୀଷ୍ଟିୟାନ୍ ପାଦ୍ରୀଙ୍କ ଆଶ୍ରୟପ୍ରାର୍ଥୀ ଲୀଳାବତୀ ସହିତ ବିବାହ, ବିଚ୍ଛେଦ, ମନାନ୍ତର ଶେଷରେ ଆତତାୟୀ ମୋହନର ଯାବଜ୍ଜୀବନ କାରାଦଣ୍ଡ—ଏହାହିଁ ଉପନ୍ୟାସର ବର୍ଣ୍ଣିତ କଥାବସ୍ତୁ । ଉପନ୍ୟାସଟି ଆମୂଳଚୂଳ ଐତିହାସିକ ତଥ୍ୟ-ସମ୍ବଳିତ; କିନ୍ତୁ ଶିଳ୍ପଗତ ସେତେ କଳାତ୍ମକ ନୁହେଁ ।

ଫକୀରମୋହନଙ୍କ ପରେ କବି ନନ୍ଦକିଶୋର ବଳଙ୍କର ସାମାଜିକ ଉପନ୍ୟାସ 'କନକଲତା' (୧୯୨୫) ନିଶ୍ଚିତ ଭାବରେ ଓଡ଼ିଆ ଉପନ୍ୟାସ-ଇତିହାସରେ ଏକ ସ୍ୱାଗତଯୋଗ୍ୟ ସୃଷ୍ଟି । ପଲ୍ଲୀବହୁଳ ଓଡ଼ିଶାର ଦୁଇଟି ପଲ୍ଲୀର ସମ୍ଭ୍ରାନ୍ତ ହରିଚନ୍ଦନବଂଶ ଏବଂ ପାଇକରାବଂଶର ଚିତ୍ର ହିଁ ବୈବାହିକ ଏବଂ ସାମାଜିକ ପରିପ୍ରେକ୍ଷୀରେ ପ୍ରତିଫଳିତ । ହରିଚନ୍ଦନ ପରିବାରର କନ୍ୟା କନକଲତା ଏବଂ ଧନଞ୍ଜୟଙ୍କ ସୁଖମୟ ଦାମ୍ପତ୍ୟ ଜୀବନ ଏବଂ ଶିକ୍ଷିତ ଯୁବକ ରାଜେନ୍ଦ୍ରଙ୍କ ଉଚ୍ଚ ଆଦର୍ଶ, ସନ୍ନ୍ୟାସ-ଜୀବନ ପଲ୍ଲୀ ପରିବେଶରେ ଏହି ଉପନ୍ୟାସରେ ବେଶ୍ ପ୍ରଭାବ ସୃଷ୍ଟି କରିପାରିଛି । କୁସଂସ୍କାରପୂର୍ଣ୍ଣ ସମାଜରୁ ଯୌତୁକ ସଦୃଶ କୁସଂସ୍କାର ମୂଳପୋଛ କରିବା ଯେପରି କବି ଔପନ୍ୟାସିକଙ୍କର ଉଦ୍ଦେଶ୍ୟ । 'କନକଲତାର' ଶୈଳୀ, ଚରିତ୍ରିକ ଅଧ୍ୟୟନ ଲେଖକଙ୍କର କଥାଶିଳ୍ପଦକ୍ଷତାର ପରିଚାୟକ ।

ବୈଷ୍ଣବଚରଣ ଦାସଙ୍କର 'ମନେମନେ' (୧୯୨୬) ଉପନ୍ୟାସ ମଧ୍ୟ ପିତୃ-ମାତୃଶୂନ୍ୟ ଶିକ୍ଷିତ ଯୁବକ ମିଲୁ ଏବଂ ନିରାହା ସରଳହୃଦୟା ରଙ୍ଗୀର ପରସ୍ପର

ପ୍ରେମାକର୍ଷଣ ଏବଂ ଚରିତ୍ରଗତ ମନସ୍ତାତ୍ତ୍ୱିକ ବିଶ୍ଳେଷଣଦ୍ୱାରା ଚିତ୍ରିତ । ଉପନ୍ୟାସର ପ୍ରଥମ ପର୍ଯ୍ୟାୟରେ 'ରଙ୍ଗୀ'ର ବୈବାହିକ ଜୀବନ ବର୍ଣ୍ଣିତ । ଉପନ୍ୟାସଟି ଯେ ଏକ କ୍ଷୁଦ୍ରଗଳ୍ପର ପରିବର୍ଦ୍ଧିତ ଏବଂ ସ୍ଫୀତକୃତ ରୂପ, ଏହା ଲେଖକଙ୍କ ନିବେଦନରୁ ଅନୁମେୟ ।

ଓଡ଼ିଆ ଭାଷାରେ ସାର୍ଥକ ଉପନ୍ୟାସର ଅଭାବ ଲକ୍ଷ୍ୟ କରି ସେ ଯୁଗର ବିଶିଷ୍ଟ ମାସିକ ସାହିତ୍ୟ ପତ୍ରିକା 'ମୁକୁର' ଆନୁକୂଲ୍ୟରେ 'ମୁକୁର ଉପନ୍ୟାସମାଳା' ପରିକଳ୍ପିତ ହେଲା । ଚନ୍ଦ୍ରମଣି ମହାନ୍ତି, ଚନ୍ଦ୍ରମଣି ଆଚାର୍ଯ୍ୟ, ଦୟାନିଧି ମିଶ୍ର ଏବଂ କୁନ୍ତଳାକୁମାରୀ ସାବତଙ୍କର ଉପନ୍ୟାସ ଏହି ପରିକଳ୍ପନାରେ ପ୍ରକାଶିତ ହୋଇ-ଥିବାର ଜଣାଯାଏ । ଏହା ୧୯୨୫ ମସିହା ପୂର୍ବର ଘଟଣା । ଦୟାନିଧି ମିଶ୍ରଙ୍କର ଗଳ୍ପ ଓ ଉପନ୍ୟାସ ଐତିହାସିକ କଥାବସ୍ତୁକୁ ଆଶ୍ରୟ କରିଥିଲା । ତାଙ୍କର 'ରାଣା ପ୍ରତାପ ସିଂହ' ଐତିହାସିକ ଉପନ୍ୟାସ ଧାରାବାହିକଭାବରେ ମୁକୁରରେ ପ୍ରକାଶିତ ହୋଇଥିଲା । ଏହି ସମୟରେ କେତେକ ଗୌଣ ଲେଖକ 'ମୁକୁର' ଏବଂ 'ଉତ୍କଳ ସାହିତ୍ୟ' ପତ୍ରିକାରେ କ୍ଷୁଦ୍ର କ୍ଷୁଦ୍ର ଉପନ୍ୟାସଧର୍ମୀ ଲେଖା ପ୍ରକାଶ କରିଥିଲେ । ସନାତନ ମହାନ୍ତିଙ୍କ 'ନୈବେଦ୍ୟ' ଉପନ୍ୟାସ ଏହି ଯୁଗର ରଚନା । 'ସହକାର' ମାସିକ ପତ୍ର ଏହି ଯୁଗରେ ଓଡ଼ିଆରେ ଉଚ୍ଚକୋଟୀର ଉପନ୍ୟାସର ଅଭାବ ଦୂର କରିବାଲାଗି ଏକ ନିବେଦନ ମଧ୍ୟ ପ୍ରକାଶ କରିଥିଲେ (ଦଶମ ଭାଗ, ଦ୍ୱାଦଶ ସଂଖ୍ୟା), ସେଥିରେ ବର୍ଷକୁ ଅନ୍ତତଃ ଛଅଖଣ୍ଡି ଉପନ୍ୟାସ ପ୍ରକାଶିତ ହେବ ବୋଲି ଘୋଷଣା କରାଯାଇଥିଲା । ଏହି ଘୋଷଣା ହିଁ 'ଆନନ୍ଦଲହରୀ' ଉପନ୍ୟାସର ମୂଳ ଯୋଜନା । 'ଆନନ୍ଦଲହରୀ' ଉପନ୍ୟାସମାଳା ମଧ୍ୟରେ ଗୋବିନ୍ଦ ତ୍ରିପାଠୀଙ୍କର 'ପତିତାର ଆତ୍ମକଥା', କାଳିନ୍ଦୀଚରଣ ପାଣିଗ୍ରାହୀଙ୍କ 'ମାଟିର ମଣିଷ', ଚନ୍ଦ୍ରମଣି ମିଶ୍ରଙ୍କ 'ଜଗୁଆମା', 'ବିବାହ ରହସ୍ୟ', କାହ୍ନୁଚରଣ ମହାନ୍ତିଙ୍କ 'ନିଷ୍ପତ୍ତି', ଗୋଦାବରୀଶ ମହାପାତ୍ରଙ୍କ 'ପ୍ରେମପଥେ', ହରେକୃଷ୍ଣ ମହତାବଙ୍କ 'ନୂତନ ଧର୍ମ', ହରିଶ୍ଚନ୍ଦ୍ର ବଡ଼ାଲଙ୍କ 'ଛଟିର ଜବାବ' ପ୍ରଭୃତି ଉପନ୍ୟାସ ଅନ୍ତର୍ଗତ । ଏତଦ୍‌ବ୍ୟତୀତ ଲେଖକ ଯୌବନଯାତ୍ରୀଙ୍କ 'ବୀର ଯୁବକ', 'ବନ୍ଦୀର ମାୟା' ମଧ୍ୟ ଉଲ୍ଲେଖଯୋଗ୍ୟ ।

୧୯୨୫ ମସିହା ଓଡ଼ିଆ ଉପନ୍ୟାସର ବିକାଶଧାରାରେ ଏକ ସନ୍ଧିକାଳ; କାରଣ ୧୯୨୫ ମସିହା ପରେ ଓଡ଼ିଆ ଉପନ୍ୟାସର ଆଙ୍ଗିକ ଓ ଶୈଳୀରେ କ୍ରମେ ସଂସ୍କାର ସାଧିତ ହେଲା । ଆଧୁନିକ ଜନଜୀବନର ସାର୍ଥକ କଳାତ୍ମକ ପ୍ରତିଚ୍ଛବିରୂପେ ଉପନ୍ୟାସ ପରିକଳ୍ପିତ ଏବଂ ସଂଗଠିତ ହୋଇଥିଲା । ଏହି ସମୟରେ 'ଉତ୍କଳ ସାହିତ୍ୟ' ପତ୍ରିକାରେ ପ୍ରକାଶିତ ଘୋଷଣା ବଡ଼ ତାତ୍ପର୍ଯ୍ୟପୂର୍ଣ୍ଣ ଥିଲା :

"ଉତ୍କଳର କେତେଜଣ ତରୁଣ ଲେଖକ ମିଳିମିଶି ଖଣ୍ଡିଏ ଉପନ୍ୟାସ ଲେଖିବାକୁ ସ୍ଥିର କରିଅଛନ୍ତି । ବଙ୍ଗଳାର 'ବାରୋୟାରି' ଉପନ୍ୟାସଟି ଯେପରି

ବାରଜଣ ସାହିତ୍ୟିକଙ୍କ ଦ୍ୱାରା ରଚିତ, ଏ ଉପନ୍ୟାସଟି ସେହିପରି ଉତ୍କଳର କେତେ ଜଣ ପୁରାତନ ଓ ନୂତନ ସାହିତ୍ୟିକଙ୍କ ଦ୍ୱାରା ରଚିତ ହୋଇ ପ୍ରକାଶିତ ହେବ । × × × × ଶ୍ରୀଯୁକ୍ତ ନନ୍ଦକିଶୋର ବଳ ମହାଶୟ ଏକସମୟରେ 'କନକଲତା' ନାମରେ ଗୋଟିଏ ଉପନ୍ୟାସ ଲେଖିଥିଲେ । ସମାପ୍ତ ହୋଇଥିଲେ ଏ ଖଣ୍ଡିକ ଓଡ଼ିଶାର ଶ୍ରେଷ୍ଠ ଉପନ୍ୟାସମାନଙ୍କ ମଧ୍ୟରେ ସ୍ଥାନ ପାଇଥାନ୍ତା ବୋଲି କେହି କେହି ବିଶ୍ୱାସ କରନ୍ତି । ଶ୍ରୀଯୁକ୍ତ ବାଙ୍କନିଧି ପଟ୍ଟନାୟକ ଓ ଶ୍ରୀଯୁକ୍ତ ଦିବ୍ୟସିଂହ ପାଣିଗ୍ରାହୀଙ୍କର କ୍ଷୁଦ୍ରଗଳ୍ପ ଲେଖିବାର ଶକ୍ତି ଓ ସୁଖ୍ୟାତି ଅଛି । ଶ୍ରୀମତୀ କୁନ୍ତଳାକୁମାରୀ ସାବତଙ୍କ 'ଭ୍ରାନ୍ତି' ଉତ୍କୃଷ୍ଟ ଗଳ୍ପ । ଶ୍ରୀମତୀ ସୁପ୍ରଭା କର ଗୋଟିଏ ଚମତ୍କାର ଗଳ୍ପ ଲେଖିଥିଲେ । ଶ୍ରୀମତୀ କୋକିଳ ଦେଈଙ୍କର କେତେଗୋଟି ସୁନ୍ଦର ଗଳ୍ପ 'ଉତ୍କଳ ସାହିତ୍ୟ'ରେ ପ୍ରକାଶିତ ହୋଇଥିଲା । ଶ୍ରୀମତୀ ସରଳା ଦେଈଙ୍କର ଲେଖିବାର ହାତ ଅଛି; ଯଦିଚ ଏ ପର୍ଯ୍ୟନ୍ତ ତାଙ୍କର କୌଣସି ଗଳ୍ପ ଦେଖାଯାଇନାହିଁ । ଶ୍ରୀଯୁକ୍ତ ଦୟାନିଧି ମିଶ୍ର ଏକସମୟରେ ଐତିହାସିକ ଗଳ୍ପ ଲେଖୁଥିଲେ । ଶ୍ରୀଯୁକ୍ତ ଉପେନ୍ଦ୍ର ପ୍ରସାଦ ମହାନ୍ତିଙ୍କର ସାମାଜିକ ଚିତ୍ରଗୁଡ଼ିକ ଉପାଦେୟ ହୋଇଥାଏ । ଏହା ବ୍ୟତୀତ କେତେକ 'ନୀରବ ସାଧକ' ମଧ୍ୟ ଉତ୍କଳରେ ଅଛନ୍ତି । ଏମାନେ ଇଚ୍ଛା କଲେ ଓଡ଼ିଶାର କଥା-ସାହିତ୍ୟକୁ ସମୃଦ୍ଧ କରିପାରନ୍ତେ ।

କିଏ କିଏ ଏହି ଉପନ୍ୟାସଟି ଲେଖିବାକୁ ଇଚ୍ଛୁକ ଅଛନ୍ତି ତାହା ଶୀଘ୍ର ଜାଣିପାରିଲେ ଅନୁଷ୍ଠାତାମାନେ ବିଶେଷ ଉପକୃତ ହେବେ ।"

ତେଣୁ ଓଡ଼ିଆ ଉପନ୍ୟାସ ସାହିତ୍ୟ କ୍ଷେତ୍ରରେ 'ବାସନ୍ତୀ' (୧୯୩୧) ସର୍ବପ୍ରଥମ ମିଳିତ ଉଦ୍ୟମ । ଏହା ଉତ୍କଳ ସାହିତ୍ୟ ପତ୍ରିକାରେ ଧାରାବାହିକ ଭାବରେ ପ୍ରକାଶିତ ହୋଇଥିଲା (୨୮ଶ ଭାଗ, ୨ୟ ସଂଖ୍ୟା, ଜ୍ୟୈଷ୍ଠ ୧୩୩୧ରୁ, ୧୯୨୪ ମେ' ମାସରୁ ୩୦ ଭାଗ ୮ମ ସଂଖ୍ୟା—୧୯୨୭ ସାଲ ନଭେମ୍ବର ମାସ ପର୍ଯ୍ୟନ୍ତ) । 'ସବୁଜ ସାହିତ୍ୟ ସମିତି' ପକ୍ଷରୁ ୧୯୩୧ ମସିହାରେ ଏହା ପୁସ୍ତକାରରେ ପ୍ରକାଶିତ ହୁଏ । ଉତ୍କଳ ସାହିତ୍ୟରେ ୧୨ ଜଣ ଲେଖକ-ଲେଖିକାଙ୍କର ନାମ ପ୍ରକାଶିତ ହୋଇଥିବା ସ୍ଥଳେ ଖୋଦ ଉପନ୍ୟାସରେ ମାତ୍ର ନଅଜଣ ଲେଖକ ଲେଖିକାଙ୍କର ନାମ ଦେଖିବାକୁ ମିଳେ । ସେମାନେ ହେଉଛନ୍ତି ଅନ୍ନଦାଶଙ୍କର, କାଳିନ୍ଦୀଚରଣ ପାଣିଗ୍ରାହୀ, ସରଳା ଦେବୀ, ଶରତ୍ ଚନ୍ଦ୍ର ମୁଖାର୍ଜୀ, ହରିହର ମହାପାତ୍ର ପ୍ରମୁଖ ।

ସମ୍ଭବତଃ, କେହି କେହି ଲେଖକ ଛଦ୍ମନାମଧାରଣପୂର୍ବକ ଆତ୍ମଗୋପନ କରିଥିଲେ । 'ବାସନ୍ତୀ' ଉପନ୍ୟାସର କଥାବସ୍ତୁ, ପରିବେଷଣ ଏବଂ କଳାତ୍ମକ ପରିଣତି ବହୁଭାବରେ ଯୁଗଧର୍ମଦ୍ୱାରା ପ୍ରଭାବିତ । ସାମାଜିକ କୁସଂସ୍କାରବିରୋଧୀ ଆନ୍ଦୋଳନ ଯୁଗରେ 'ବାସନ୍ତୀ'ର ସୃଷ୍ଟି । ତାହାର ସ୍ରଷ୍ଟାମାନେ ସମସ୍ତେ ପାଶ୍ଚାତ୍ୟ

*

ଶିକ୍ଷା ଅନୁପ୍ରାଣିତ ତଥା କଂଗ୍ରେସର ଜାତୀୟତାବାଦୀ ଆଦର୍ଶରେ ଉଦ୍‌ବୁଦ୍ଧ । ତେଣୁ ସାଂପ୍ରତିକ ଯୁଗର ସ୍ୱାଧୀନତା ଆନ୍ଦୋଳନ, ସଂସ୍କାରଲିପ୍‌ସା, ସାମାଜିକ ଜୀବନ ଜିଜ୍ଞାସା ତଥା ସାଂସ୍କୃତିକ ପ୍ରତିକ୍ରିୟା ହିଁ ଏହି ଉପନ୍ୟାସ-କଳ୍ପନାର କେନ୍ଦ୍ରବିନ୍ଦୁ । ପ୍ରାଚୀନତା ଓ ଆଧୁନିକତାର ସଂଘର୍ଷ ଉପନ୍ୟାସରେ ବର୍ଣ୍ଣିତ ପ୍ରଧାନ ନାୟକ ନାୟିକା, ଗୌଣ ଚରିତ୍ର, ଗଳ୍ପାଂଶ ଓ ଘଟଣା ମାଧ୍ୟମରେ ପ୍ରଦର୍ଶିତ । ଫଳରେ 'ବାସନ୍ତୀ' ଉପନ୍ୟାସର ନାୟକ ଦେବବ୍ରତ ହୋଇଛି ୧୯୨୦ ମସିହା ପାଖାପାଖି ଇଂରେଜୀଶିକ୍ଷିତ ଆଦର୍ଶବାଦୀ ଯୁବକ ଏବଂ ନାୟିକା 'ବାସନ୍ତୀ' ସେହି ଯୁଗରେ ପ୍ରଗତିଅଭିଳାଷିଣୀ ତରୁଣୀ ।

ଡେପୋଟି ବଳରାମ ବାବୁଙ୍କ ଅନ୍ତେ ତାଙ୍କର ବିଧବା ପତ୍ନୀ ନିର୍ମଳା ଦେବୀ ଏକମାତ୍ର କନ୍ୟା ବାସନ୍ତୀର ଦାୟିତ୍ୱ ଆଦର୍ଶବାଦୀ ଉଚ୍ଚାଭିଳାଷୀ ଦେବବ୍ରତଙ୍କ ଉପରେ ଅର୍ପଣ କରି ବିଦାୟ ନିଅନ୍ତି । ରକ୍ଷଣଶୀଳତା ଓ ସାମାଜିକ କୁସଂସ୍କାରକୁ ଉପେକ୍ଷା କରି ଦେବବ୍ରତ ନିଜ ମାତାଙ୍କ ଅନିଚ୍ଛାସତ୍ତ୍ୱେ ବାସନ୍ତୀକୁ ବିବାହ କରିଛି; ମାତ୍ର ପରେ ବାସନ୍ତୀର ପୂର୍ଣ୍ଣ ସ୍ୱାଧୀନତା ଦେବବ୍ରତର ଧାରଣା ବଦଳାଇ ଦେଇଛି । ଦେବବ୍ରତ କେତେକ ସାମାନ୍ୟ ଘଟଣାକୁ କେନ୍ଦ୍ର କରି ବାସନ୍ତୀକୁ ଘରୁ ବାହାର କରିଦେଇଛି । ମାତ୍ର ଆଦର୍ଶପ୍ରିୟ ଯୁବକ ଓ ଯୁବତୀଙ୍କର ଏହି ମନୋମାଳିନ୍ୟର ଅବସାନ ଜନୈକ ସଂପର୍କୀୟଙ୍କ ମଧ୍ୟସ୍ଥତାରେ ଭ୍ରାନ୍ତି, ମାନସିକ ସଂଘର୍ଷ ଏବଂ ଦ୍ୱନ୍ଦ୍ୱ, ଏହା ଉପନ୍ୟାସର ସାମାଜିକ ପୃଷ୍ଠଭୂମିରେ ପ୍ରଭାବଶାଳୀ ଉପାଦାନ ରୂପେ ସୂଚିତ । କଲେଜଶିକ୍ଷିତ ଯୁବଲେଖକମାନଙ୍କର ସାଂପ୍ରତିକ ଭିତ୍ତିଭୂମିରେ କଳାତ୍ମକତା ଅପେକ୍ଷା ସଂସ୍କାର-ଲିପ୍‌ସା ହିଁ ଉପନ୍ୟାସର କେନ୍ଦ୍ର ବିଷୟବସ୍ତୁ ।

ଫକୀରମୋହନୋତ୍ତର କାଳରେ ପ୍ରକାଶିତ ଉପନ୍ୟାସ ମଧ୍ୟରେ ଉପେନ୍ଦ୍ର କିଶୋର ଦାସଙ୍କ 'ମଲାଜହ୍ନ' ଏକ ସାମାଜିକ ସୃଷ୍ଟି । ପ୍ରାଚୀନ ସମାଜର ପରି-ପ୍ରେକ୍ଷୀରେ ସତୀ, ସତ୍ୟଭାମାର ବୈବାହିକ ଜୀବନର କରୁଣ ବିଫଳତା, ଗ୍ଲାନି ଏହି ଉପନ୍ୟାସରେ ବର୍ଣ୍ଣିତ । ସମସ୍ୟା-କୈନ୍ଦ୍ରିକ ମନସ୍ତତ୍ତ୍ୱଧର୍ମୀ ସାମାଜିକ ଉପନ୍ୟାସ ଭାବରେ ଏହା ଗୃହୀତ । ସତୀର ପିଲାଦିନର ଖେଳସାଙ୍ଗ ହେଉଛି ସେହି ଗାଁ ର ଲୋକନାଥ । ଦୁହିଁଙ୍କ ଅଜାଣତରେ ଭଲପାଇବାର ମୋହ ଉଭୟଙ୍କୁ ପରସ୍ପର ପ୍ରତି ଆକୃଷ୍ଟ କରିଛି; ମାତ୍ର ସତୀର ବିବାହ ହୋଇଛି ଲମ୍ପଟ ବୃଦ୍ଧ ଜମିଦାର ନରହରିଙ୍କ ସହିତ । ତେଣୁ ଯୌବନର ଲାବଣ୍ୟପ୍ରତିମା ସତୀ ବିବାହ ସୂତ୍ରରେ ପାଇଛି ଲମ୍ପଟ ବୃଦ୍ଧ ସ୍ୱାମୀ, ଆଉ ତାଙ୍କର ପୂର୍ବସ୍ତ୍ରୀଙ୍କ ଆଡ଼ୁ ଥିବା ପୁଅ ନଟ ଏବଂ ପୋଇଲି ସଉରଭୀ । ଏହି ସଉରଭୀ ସହିତ ନରହରିର ମଧ୍ୟ ପ୍ରେମ-ଲିପ୍ତ ଥିଲେ । ସେଥିପାଇଁ ମନସ୍ତାପ, ଅପମାନ, ଦ୍ୱନ୍ଦ୍ୱ, ଦୁଃଖ ଏବଂ ଅରଣ୍ୟରୋଦନ ହୋଇଛି

ସତ୍ତାର ଦୈନିକ ତିକ୍ତ ଅନୁଭୂତି । ସ୍ୱାମୀଗୃହ ସତ୍ତା ପକ୍ଷରେ ହୋଇଛି ଦୁର୍ବିସହ କାରାଗାର । ଦିନେ ସତ୍ତା ସମନ୍ତଙ୍କ ସହିତ କପିଳେଶ୍ୱର ଯାଇ ସମନ୍ତଙ୍କଠାରୁ କେମିତି ବିଚ୍ଛିନ୍ନ ହୋଇଥିବା ଅବସରରେ ତା'ର ପୂର୍ବର ଆଦରର ନାଥନନା ସହିତ ସାକ୍ଷାତ ହୁଏ । ପରେ ସ୍ୱାମୀ ସତ୍ତାକୁ ବିଭିନ୍ନ ଆଳ ଦେଖାଇ ଗ୍ରହଣ କରିନଥିଲେ । ଏହାପରେ କଟକ, କଟକରୁ ଗ୍ରାମ—ସର୍ବତ୍ର ସତ୍ତା ସେହି ଦୁଃଖ ଅନ୍ତର୍ଦ୍ୱନ୍ଦ୍ୱର ଶରବ୍ୟ ହୋଇ ଦିନେ ରାତିରେ ନାଥନନାଙ୍କୁ ଖଣ୍ଡିଏ ଚିଠି ଦେଇ ଅଜ୍ଞାତ ପଥରେ ଯାତ୍ରା କରିଛି । ସମ୍ମୁଖରେ ତା'ର ନଈ । ସଂକ୍ଷେପରେ କହିବାକୁ ଗଲେ ପାରମ୍ପରିକ ରୀତିରେ ପିତା-ମାତାଙ୍କର ପାତ୍ର ନିର୍ବାଚନ, ଲମ୍ପଟ ଜମିଦାର ପରିବାରର ବିଳାସବ୍ୟସନ, ଯୌନାଚରଣ ଏହି ଉପନ୍ୟାସର ଆଲୋଚ୍ୟ ସମସ୍ୟା । ଶୈଳୀଗତ ବୈଶିଷ୍ଟ୍ୟ ଦୃଷ୍ଟିରୁ ଉପନ୍ୟାସ ଯୁଗର ସୀମା ମଧ୍ୟରେ ଯେପରି ସୀମିତ ହୋଇଯାଇଛି ।

ଏହି ଯୁଗର ଉପନ୍ୟାସ ପରଂପରାରେ ଲିଖିତ କୁନ୍ତଳାକୁମାରୀ ସାବତଙ୍କର କତିପୟ ଉପନ୍ୟାସ ପାଠକର ଦୃଷ୍ଟି ଆକର୍ଷଣ କରିଥାଏ । ମୁଖ୍ୟତଃ, କବି-ଶକ୍ତିର ଅଧିକାରିଣୀ ହେଲେହେଁ କୁନ୍ତଳାକୁମାରୀ ଉପନ୍ୟାସ ରଚନା ପ୍ରତି ଆକୃଷ୍ଟ ହୋଇଥିଲେ । ତାଙ୍କର ଏତାଦୃଶ ଆଗ୍ରହ ମୂଳରେ ଉପନ୍ୟାସକଳାର ଉତ୍କର୍ଷ ସାଧନ କରିବା ଅପେକ୍ଷା ଗଦ୍ୟରେ ଓଡ଼ିଆ ସମାଜର ଚିତ୍ର ଲିପିବଦ୍ଧ କରିବାର ପ୍ରୟାସ ହିଁ ଅଧିକ ଥିଲା । ତାଙ୍କର ଉପନ୍ୟାସଗୁଡ଼ିକ ଉଦ୍ଦେଶ୍ୟମୂଳକ; କାରଣ ବ୍ୟକ୍ତି ଓ ସମାଜର ଅବସ୍ଥା ସୁଧାରିବା ପାଇଁ ତାଙ୍କର ଉପନ୍ୟାସ କୃତିଗୁଡ଼ିକ ଯେପରି ଆମୂଳଚୂଳ ସାମାଜିକ ସତର୍କବାଣୀରେ ପୂର୍ଣ୍ଣ । ଫକୀରମୋହନଙ୍କ ଉପନ୍ୟାସରେ ଓଡ଼ିଆ ଗ୍ରାମ, ପରିବାର ଓ ସମାଜର ଯେଉଁ ଅବିଚ୍ଛିନ୍ନ ସହାନୁଭୂତିମୂଳକ ପରିଚୟ ମିଳିଥାଏ, କୁନ୍ତଳାକୁମାରୀଙ୍କ ଉପନ୍ୟାସରେ ତାହା ହିଁ ପ୍ରତିଧ୍ୱନିତ ହୋଇଛି । ମାତ୍ର ଉପନ୍ୟାସକଳା-ବିଚାରରେ ସେସବୁ ମଧ୍ୟରେ ମୌଳିକ ବ୍ୟବଧାନ ପରିଲକ୍ଷିତ । ତାଙ୍କର ଉପନ୍ୟାସ ମଧ୍ୟରେ ଭ୍ରାନ୍ତି (୧୯୨୩), ନଅରୁଣ୍ଡୀ (୧୯୨୫), କାଳିବୋହୂ, ପରଶମଣି, ରଘୁ ଅରକ୍ଷିତ (୧୯୨୮) ଉଲ୍ଲେଖଯୋଗ୍ୟ । 'ରଘୁଅରକ୍ଷିତ'ରେ ନାୟକ ରଘୁ ଭାଗ୍ୟହସ୍ତରେ ଏକ କ୍ରୀଡ଼ନକ । ଭାଗ୍ୟବଳରେ ସେ ଯେପରି ବଡ଼ଲୋକ ହୋଇପାରିଛି; ସେପରି ମଧ୍ୟ ପାରିବାରିକ ବିଚ୍ଛେଦ ଭୋଗ କରିଛି । ବିଧବା ସୀତାକୁ ସେ ବିବାହ କରିନାହିଁ କି ଶ୍ୟାଳିକା ସହିତ ବିବାହ ପ୍ରସ୍ତାବରେ ରାଜି ହୋଇନାହିଁ । ଦେଶସେବା ହୋଇଛି ତାହାର ଲକ୍ଷ୍ୟ । କୁନ୍ତଳାଙ୍କ ଉପନ୍ୟାସଗୁଡ଼ିକ ମୁଖ୍ୟତଃ ସମାଜର ମଧ୍ୟବିତ୍ତ ଏବଂ ନବ୍ୟ ଶିକ୍ଷିତ ଚରିତ୍ରମାନଙ୍କୁ କେନ୍ଦ୍ର କରି ଗଢ଼ି ଉଠିଛି । ଆଖ୍ୟାନ ବସ୍ତୁ ଓ କାହାଣୀରେ ଦ୍ୱନ୍ଦ୍ୱ, ସଂଘର୍ଷର ଉପସ୍ଥାପନା ପାଇଁ ଅଶିକ୍ଷିତ, ଗ୍ରାମ୍ୟ ସରଳ ଚରିତ୍ରମାନଙ୍କୁ ମନୋନୟନ କରିଛନ୍ତି । ଏହି ସୂତ୍ରରେ

ନିପଟ ମଫସଲର ଓଡ଼ିଆ-ଝିଅବୋହୂଆଣୀ ସାମାଜିକ କୁସଂସ୍କାର ବନ୍ଧନ ଏବଂ ରକ୍ଷଣଶୀଳ ଆଚରଣ ମଧ୍ୟରେ ପ୍ରତିଭାତ ହୋଇଥାନ୍ତି । ଅଳ୍ପପାଠୁଆ ଜମିଦାର ଏବଂ ଗୁମାସ୍ତାଙ୍କ ସହିତ ଗ୍ରାମ୍ୟଜୀବନର ସରଳ ଚରିତ୍ରଗୁଡ଼ିକ ସଂଯୋଜିତ କରିବାରେ ଲେଖିକାଙ୍କର କୌଶଳ ବିଦ୍ୟମାନ । ଜାତିଭେଦ, ନାରୀ-ନିର୍ଯାତନା, କୁସଂସ୍କାର, ଅନ୍ଧବିଶ୍ୱାସ ବିରୋଧରେ ଲେଖିକାଙ୍କର ଉପସ୍ଥାପିତ ଚରିତ୍ରଗୁଡ଼ିକ ପ୍ରତିବାଦ କରିବାରେ ତତ୍ପର । ତାଙ୍କର 'ନିଅଁଶୁଣ୍ଢୀ', 'କାଳିବୋହୂ' ଉପନ୍ୟାସରେ ନାରୀସମାଜର କିପରି ଉନ୍ନତି ହେବ, ସେହି ବାଣୀ ହିଁ ପ୍ରତିଧ୍ୱନିତ । ଝିଅମାନେ ପାଠ ପଢ଼ିବା ଉଚିତ । ମଫସଲରେ ଗ୍ରାମ୍ୟ ଝିଅମାନେ ସ୍ୱଭାବସୁଲଭ କଳିହରେ ପ୍ରବୃତ୍ତ ହେବା ଅନୁଚିତ । ବିବାହରେ ଯୌତୁକ ପ୍ରଥାର ବିରୋଧ କରିବା ଉଚିତ । ପୁନଶ୍ଚ ଘରେ ଘରେ କେତେକ ଝିଅ ବୋହୂ ଯେଉଁ ଅଶାନ୍ତି ଉପଦ୍ରବ ସୃଷ୍ଟି କରିଥାନ୍ତି, ସେପରି ପାରିବାରିକ ଓ ସାମାଜିକ ଅଶାନ୍ତିର ମୂଳୋତ୍ପାଟନ; ପୁରୁଷ ଯେପରି ସ୍ୱେଚ୍ଛାଚାରୀ ହେବ ନାହିଁ, ସ୍ତ୍ରୀ ମଧ୍ୟ ସେପରି ଚଣ୍ଡୀ, ଦୁର୍ଦ୍ଦାନ୍ତ, ରାକ୍ଷସୀ, ସ୍ୱେଚ୍ଛାଚାରିଣୀ ହେବା ଉଚିତ ନୁହେଁ; ଏହା ହିଁ ତାଙ୍କ ଉପନ୍ୟାସରେ ପ୍ରଦର୍ଶିତ । କୁନ୍ତଳାକୁମାରୀ ନିଜେ ନାରୀ; ସେଥିପାଇଁ ନାରୀର ଆଚରଣ ସମ୍ବନ୍ଧରେ ତାଙ୍କର ମତାମତ ସୁଚିନ୍ତିତ ହେବା କଥା । ନାରୀର ଶତ୍ରୁ ପୁରୁଷ ନୁହେଁ, ନାରୀର ଶତ୍ରୁ ନିଜେ ନାରୀ । ନାରୀ-ଅଧୋଗତିର କାରଣ ନିଜେ ନାରୀ—ଏହା 'ଭ୍ରାନ୍ତି', 'ପରଶମଣି' ଉପନ୍ୟାସରେ ପ୍ରତିପାଦିତ । ବିଧବା ବିବାହ ପ୍ରଥା ବିରୋଧରେ ଲେଖିକାଙ୍କର 'କାଳିବୋହୂ' ଉପସ୍ଥାପିତ । କାଳିବୋହୂ ଲକ୍ଷ୍ମୀ ବାଲ୍ୟବିଧବା; ମାତ୍ର ଦଶବର୍ଷ ବୟସରେ ସେ ନାରୀତ୍ୱ ଓ ମାତୃତ୍ୱରୁ ବଞ୍ଚିତ । ସମାଜରେ ତା ପାଇଁ ସାଧାରଣ ବିବାହିତ ଜୀବନର ସୁଖସୁବିଧା ଯେପରି ନିଷେଧ । ଲକ୍ଷ୍ମୀର ମାଆ କଜ୍ଜ୍ୱଳ, ସିନ୍ଦୂର, ଅଳତା ବେଶ ହେବା ସ୍ଥଳେ, ଲକ୍ଷ୍ମୀ କି ପାପ କରିଛି ଯେ ସେ ସାରା ଜୀବନ ଦହନ ଜ୍ୱଳନ ମଧ୍ୟରେ ନିଜକୁ ପଳ ପଳ କରି ହତ୍ୟା କରୁଥିବ ? ଏପରି ଦୁଃଖିନୀମାନଙ୍କର ଲୁହରେ କୁଆଡ଼େ ମହାନଦୀର ଗର୍ଭ ମଧ୍ୟ ପୂରିଉଠିବ ବୋଲି ଲେଖିକା ବ୍ୟଙ୍ଗୋକ୍ତି କରିଛନ୍ତି । 'ରଘୁ-ଅରକ୍ଷିତ'ରେ ସରସ୍ୱତୀ, ରସକଳା, ତାରାମଣି, ପୀତେଇ ନାମ, 'କାଳିବୋହୂ'ର ଶାନ୍ତିଲତା, 'ଭ୍ରାନ୍ତି'ର ଇନ୍ଦୁମୁଖୀ କୁନ୍ତଳାଙ୍କ ବର୍ଣ୍ଣିତ ନାରୀସମାଜର ବିଭିନ୍ନ ଗୁଣର ପ୍ରତିମୂର୍ତ୍ତି । ଠିକ୍ ସେହିପରି ରମାସୁନ୍ଦରୀ, ଗେହ୍ଲୀ, ଯୂଥିକା ଓ ମାଳତୀଙ୍କ ଚରିତ୍ର ସ୍ୱାର୍ଥ ସିଦ୍ଧିର ପରିବେଶରେ ପ୍ରତିମୂର୍ତ୍ତି ହୋଇଉଠିଛି । ତାଙ୍କର ପୁରୁଷ ଚରିତ୍ରଗୁଡ଼ିକ ମଧ୍ୟବିତ୍ତ ଶ୍ରେଣୀରୁ ଗୃହୀତ । 'କାଳିବୋହୂ'ର ସମାଜପତି ମିଶ୍ରେ ଲମ୍ପଟ ସାଜିଛନ୍ତି । ରଘୁ ଅରକ୍ଷିତ'ର ଭାଗ୍ୟର କ୍ରୀଡ଼ନକ । ରଘୁ ଶେଷରେ ଜାତୀୟ ଆନ୍ଦୋଳନ ପ୍ରତି ଆକୃଷ୍ଟ ହୋଇଛି । ଡାକ୍ତର ନାରୀର ସତୀତ୍ୱ ଅପହରଣ ପାଇଁ ବ୍ୟଗ୍ର । କୁନ୍ତଳାକୁମାରୀଙ୍କ ପୁରୁଷ ଚରିତ୍ରଗୁଡ଼ାକ କିପରି ବହୁକ୍ଷେତ୍ରରେ ଦୁର୍ବଳତା ଏବଂ ଅସାମର୍ଥ୍ୟ ପୀଡ଼ିତ ।

ସଂକ୍ଷେପରେ କହିବାକୁଗଲେ କୁନ୍ତଳାକୁମାରୀଙ୍କ ଉପନ୍ୟାସ ଗୁଡ଼ିକ ଓଡ଼ିଶା ଓ ଯୁଗଧର୍ମର ପ୍ରତିଛବି । ଲେଖିକାଙ୍କ ହୃଦୟରେ ଓଡ଼ିଶା ପାଇଁ ଯେପରି ଗୋଟାଏ ଅବର୍ଣ୍ଣନୀୟ ସହାନୁଭୂତି ଥିଲା ।

ସାମାଜିକ ଆଭିମୁଖ୍ୟ ସଦୃଶ ଐତିହାସିକ ଆବେଦନ ମଧ୍ୟ ଏହି ପର୍ଯ୍ୟାୟରେ ଓଡ଼ିଆ ଉପନ୍ୟାସ ଗଳ୍ପାଂଶରୁ ବାଦ୍ ପଡ଼ି ନଥିଲା; ବରଂ ସେତେବେଳେ ଏହି ଐତିହାସିକ ଧାରା ଓଡ଼ିଆ ଉପନ୍ୟାସରେ ଏକ ଅପରିହାର୍ଯ୍ୟ ସ୍ଥିତି ଥିଲା । ଘଟଣା, ଚରିତ୍ରଭେଦରେ ଐତିହାସିକ ଉପନ୍ୟାସର କୃତିତ୍ୱ ବର୍ଣ୍ଣନୀ । 'ପଦ୍ମମାଳି', 'ବିବାସିନୀ' ଏବଂ 'ଲଛମା' ପରେ ତାରଣୀଚରଣ ରଥଙ୍କର 'ଅନ୍ନପୂର୍ଣ୍ଣା' (୧୯୩୪) ଏକ ଉଲ୍ଲେଖଯୋଗ୍ୟ ଐତିହାସିକ କୃତି । 'ଅନ୍ନପୂର୍ଣ୍ଣା' ବର୍ଣ୍ଣନାତ୍ମକ ଘଟଣାପ୍ରଧାନ ଐତିହାସିକ ଉପନ୍ୟାସ । ବିଜୟନଗରର ନରପତି କୃଷ୍ଣଦେବ ରାୟଙ୍କର ଓଡ଼ିଶା ଆକ୍ରମଣ ଏବଂ ଗଜପତି ପ୍ରତାପରୁଦ୍ରଙ୍କ କନ୍ୟା ଅନ୍ନପୂର୍ଣ୍ଣାଙ୍କ ସହିତ ତାଙ୍କର ବିବାହ ଉପନ୍ୟାସର ପ୍ରଧାନ ଉପଜୀବ୍ୟ କଥାବସ୍ତୁ । ସେଥିରେ ଷୋଡ଼ଶ ଶତାବ୍ଦୀର ଓଡ଼ିଶା ପୃଷ୍ଠଭୂମିରୂପେ କଳ୍ପିତ । ସଂକ୍ଷେପରେ କହିବାକୁ ଗଲେ ପ୍ରାଚୀନ ଓଡ଼ିଶାର ଇତିହାସ ଯେପରି ଏହି ଉପନ୍ୟାସର ପ୍ରାଣକେନ୍ଦ୍ର ।

ଓଡ଼ିଶାର ବୈଚିତ୍ର୍ୟପୂର୍ଣ୍ଣ ଇତିହାସରୁ ଉପନ୍ୟାସ ଗଢ଼ିବାରେ ଶ୍ରୀଯୁକ୍ତ ରାମଚନ୍ଦ୍ର ଆଚାର୍ଯ୍ୟ (୧୯୪୬) ଜଣେ ପ୍ରତିଭାଶାଳୀ ଲେଖକ । ମୋଗଲ ରାଜତ୍ୱ ବିଶେଷତଃ ନାଏବ୍ ନାଜିମଙ୍କ ଅବୈଧ ପୁତ୍ର ତକି ଖାଁଙ୍କ ଶାସିତ ଓଡ଼ିଶା ହିଁ 'ବୀର ଓଡ଼ିଆ' ଉପନ୍ୟାସରେ ପ୍ରତିଫଳିତ । କଳାପାହାଡ଼ ଆକ୍ରମଣ (୧୫୬୮) ପରେ ଓଡ଼ିଶାର ଜାତୀୟ ଜୀବନରେ ଯେଉଁ ଦାରୁଣ ବିପର୍ଯ୍ୟୟ ଦେଖାଦେଇଥିଲା, ସେହି ପରିବେଶ, ସେହି ଘଟଣାବଳୀ, ସେହି ଜାତୀୟ ମହାପ୍ରବାହ ଆଚାର୍ଯ୍ୟଙ୍କ ଉପନ୍ୟାସରେ ନିପୁଣ ଭାଷାରେ ବର୍ଣ୍ଣିତ । ତକି ଖାଁଙ୍କ ଦ୍ୱାରା ଅତ୍ୟାଚାରିତା ଚପଳା ହିଁ ହୋଇଛୁ ବିଦ୍ରୋହୀ ଓଡ଼ିଶାର ପ୍ରତିମୂର୍ତ୍ତି । ରାଜା କୃଷ୍ଣଚନ୍ଦ୍ର ମଧ୍ୟ ଓଡ଼ିଆ ଜାତୀୟତାର ରକ୍ଷକରୂପେ ବର୍ଣ୍ଣିତ ।

ସେହିପରି ଲେଖକଙ୍କର 'କମଳକୁମାରୀ' ଉପନ୍ୟାସ ଜୟସିଂହ ଏବଂ ଆଉରଙ୍ଗଜେବଙ୍କ ସଙ୍ଘର୍ଷର କଥାବସ୍ତୁ ଉପରେ ଆଧାରିତ । ରୂପନଗରର ରାଜା ବିକ୍ରମସିଂହ ଶୋଲଙ୍କିଙ୍କର ଏକମାତ୍ର ଗୁଣବତୀ ରୂପସୀ କନ୍ୟା କମଳକୁମାରୀ । ତାଙ୍କୁ କେନ୍ଦ୍ର କରି ମୋଗଲ ଶିବିରରେ ସମସ୍ତ ଷଡ଼ଯନ୍ତ୍ର । ଶେଷରେ ରାଜସିଂହଙ୍କ ସହିତ କମଳକୁମାରୀଙ୍କର ଏବଂ ଶୋଲଙ୍କିଙ୍କର ତାଙ୍କ ପୁତ୍ର ସହିତ ମିଳନ ସଙ୍ଘଟିତ ହୋଇଥିଲା । 'ପୀୟୂଷ ପ୍ରବାହ' ଉପନ୍ୟାସ ପ୍ରସିଦ୍ଧ ଫରାସୀ ଲେଖକ ଭିକ୍ଟର ହ୍ୟୁଗୋଙ୍କ 'ଲ-ମିଜରେବଲ୍' ଉପନ୍ୟାସ ଅବଲମ୍ବନରେ ଲିଖିତ ଏବଂ ଫରାସୀ-

ବିପ୍ଳବର ପୃଷ୍ଠଭୂମିରେ ନେପୋଲିୟନଙ୍କ ବୀରତ୍ୱ ଏବଂ ଫରାସୀ ଅଧିବାସୀଙ୍କ ସାମାଜିକ, ରାଜନୈତିକ, ଧର୍ମନୈତିକ ଜୀବନାଲେଖ୍ୟ ଏହି ଉପନ୍ୟାସ ମର୍ଯ୍ୟାଦାପୂର୍ଣ୍ଣ ଭାବରେ ବର୍ଣ୍ଣିତ । ମେରି ପିତୃଭକ୍ତି, ସ୍ୱାମୀଭକ୍ତି, ସ୍ୱଦେଶବତ୍ସଳତା ପ୍ରଭୃତି ଅସାଧାରଣ ଗୁଣର ପରିଚୟ ଦେଇଥିଲେ; ମାତ୍ର ନିଜର ଏକମାତ୍ର କନ୍ୟାର ଭରଣପୋଷଣଲାଗି ତାଙ୍କୁ ନିଜର ଅନିନ୍ଦ୍ୟ କେଶଗୁଚ୍ଛ ଏବଂ ସୁନ୍ଦର ଦନ୍ତପନ୍ତି ବିକି କରିବାକୁ ପଡ଼ିଥିଲା । ଏହିପରି ବହୁ ମାନବିକ କରୁଣ ଘଟଣା ବର୍ଣ୍ଣନାରେ ଉପନ୍ୟାସଟି ଆମୂଳଚୂଳ ଆବେଗପୂର୍ଣ୍ଣ ।

ବୀରରମଣୀ ଅହଲ୍ୟା ବାଈଙ୍କର ଗୃହିଣିକ ସୌନ୍ଦର୍ଯ୍ୟ ଓ ମହାନୀୟତାର ନିଦର୍ଶନ ହେଉଛି 'ବୀରାଙ୍ଗନା' ଉପନ୍ୟାସ (୧୯୩୬) । ଭାରତବର୍ଷରେ ମରହଟ୍ଟା ରାଜତ୍ୱ ଏକଦିଗରେ ବୀରତ୍ୱ, ହିନ୍ଦୁପ୍ରାଣତା, ଦେଶବତ୍ସଳତାର ପ୍ରତୀକ; ଅନ୍ୟ ଦିଗରେ ଜଘନ୍ୟ ଷଡ଼ଯନ୍ତ୍ର, ନୀଚପରତା, ହୀନ ଷଡ଼ଯନ୍ତ୍ରଦ୍ୱାରା ମଧ୍ୟ ଆକ୍ରାନ୍ତ । ପ୍ରଶାସନିକ ବିଶୃଙ୍ଖଳାମୟ କାହାଣୀରେ ଇତିହାସର ସେହି ପୃଷ୍ଠାଟି ଯେପରି ମଳିନ । ମରହଟ୍ଟା ଗୌରବ-ରକ୍ଷୟିତ୍ରୀ ଅହଲ୍ୟା ବାଈଙ୍କୁ ଉପସ୍ଥାପିତ କରି ଲେଖକ 'ବୀରାଙ୍ଗନା' ଲେଖିଥିଲେ ।

"ପ୍ରଣୟ ପ୍ରବାହ" ଉପନ୍ୟାସ ଲେଖକଙ୍କର ଐତିହାସିକ ଉପନ୍ୟାସ ମଧ୍ୟରେ ଏକ ବ୍ୟତିକ୍ରମ । ସଂସ୍କୃତ ସାହିତ୍ୟର ଅପ୍ରତିଦ୍ୱନ୍ଦ୍ୱୀ କଥାଶିଳ୍ପୀ ବାଣଭଟ୍ଟଙ୍କ ବହୁ-ପ୍ରଶଂସିତ ଅଦ୍ୱିତୀୟ 'କାଦମ୍ବରୀ' ଗଦ୍ୟରଚନାର ସଂକ୍ଷିପ୍ତ ଅନୁବାଦ ହେଉଛି 'ପ୍ରଣୟ-ପ୍ରବାହ' । ତଥାପି ମୂଳଗ୍ରନ୍ଥର ବର୍ଣ୍ଣିତ ବହୁ ଘଟଣାର ସଂଲୀକରଣ ଏବଂ ପ୍ରାଞ୍ଜଳ ବର୍ଣ୍ଣନା ହେଉଛି ଲେଖକଙ୍କର କୃତିତ୍ୱ । ସପ୍ତୋଦଶ ତରଙ୍ଗରେ ବିଭକ୍ତ ଏହି ଉପନ୍ୟାସ ବହୁ କଥା-ଉପକଥାରେ ପରିପୂର୍ଣ୍ଣ । ଅରଣ୍ୟ, ସରୋବର, ରାଜପ୍ରାସାଦ, ମୃଗୟା, ବର୍ଷା, ଗ୍ରୀଷ୍ମ, ଶରତ୍ ଋତୁର ପ୍ରାଞ୍ଜଳ ବର୍ଣ୍ଣନା ଏହି ଗଦ୍ୟ-ରଚନାକୁ କାବ୍ୟିକ ମର୍ଯ୍ୟାଦା ପ୍ରଦାନ କରିଅଛି । ଏହାର ମୁଖ୍ୟରସ ହେଉଛି ଶୃଙ୍ଗାର । ସମ୍ରାଟ୍ ଶୂଦ୍ରକଙ୍କ ରାଜଦରବାରରେ ଚଣ୍ଡାଳକନ୍ୟା ଗୋଟିଏ ଅଦ୍ଭୁତ ଶୁକପକ୍ଷୀ ଉପହାର ଦେଲା । ଶୁକପକ୍ଷୀ ମନୁଷ୍ୟସ୍ୱରରେ ତାର ଜୀବନୀ ବର୍ଣ୍ଣନା କରିଥିଲା । ଏହାହିଁ ଦୀର୍ଘ 'କାଦମ୍ବରୀ' କଥାବସ୍ତୁର ଆରମ୍ଭ । ଉଜ୍ଜୟିନୀର ରାଜା ଆଉ ମନ୍ତ୍ରୀ ହେଉଛନ୍ତି ଯଥାକ୍ରମେ ତାରାପୀଡ଼ ଆଉ ଶୁକନାସା । ରାଜପୁତ୍ର ଚନ୍ଦ୍ରାପୀଡ଼ ଏବଂ ମନ୍ତ୍ରୀପୁତ୍ର ବୈଶମ୍ପାୟନ ପରସ୍ପର ବନ୍ଧୁତାପାଶରେ ଆବଦ୍ଧ । ରାଜ୍ୟାଭିଷେକ-ପରେ ଚନ୍ଦ୍ରାପୀଡ଼ ଏକଦା ଅରଣ୍ୟରେ ମୃଗୟାରତ ଥିବା ଅବସରରେ ଶିବ-ମନ୍ଦିରରେ ଉପାସନାନିରତା ପରମସୁନ୍ଦରୀ ମହାଶ୍ୱେତାଙ୍କୁ ଭେଟିଥିଲେ । ପୁଣ୍ଡରୀକ ମହାଶ୍ୱେତାଙ୍କ ପ୍ରଣୟପାଶରେ ଆବଦ୍ଧ ହେଲେ; ମାତ୍ର ବିଚ୍ଛେଦ-ବେଦନା ସହ୍ୟ କରି ନପାରି ସେ ମୃତ୍ୟୁ ବରଣ କରିଥିଲେ । ଏହାପରେ ଦାରୁଣ ବିଚ୍ଛେଦରେ ମୂର୍ଚ୍ଛିତା

ମହାଶ୍ୱେତା ବ୍ରହ୍ମଚର୍ଯ୍ୟ ଅବଲମ୍ବନ କରି ଶିବସେବାରେ ନିଜକୁ ଉତ୍ସର୍ଗ କରିଥିଲେ । ଏହି ଅବସ୍ଥାରେ ଚନ୍ଦ୍ରାପୀଡ଼ ମହାଶ୍ୱେତାଙ୍କୁ ଭେଟିଥିଲେ । ମହାଶ୍ୱେତାଙ୍କଠାରୁ ଚନ୍ଦ୍ରାପୀଡ଼ ଗନ୍ଧର୍ବରାଜ ଚିତ୍ରରଥଙ୍କ କନ୍ୟା କାଦମ୍ବରୀଙ୍କ ପରିଚୟ ପାଇଥିଲେ । ଘଟଣାଚକ୍ରରେ ଚନ୍ଦ୍ରାପୀଡ଼ଙ୍କ ମୃତ୍ୟୁ ଘଟିବାରୁ କାଦମ୍ବରୀ ମଧ୍ୟ ଅରଣ୍ୟଚାରିଣୀ ହେଲେ । ବହୁ ଗଳ୍ପ, ଉପଗଳ୍ପ ସାହାଯ୍ୟରେ ଶେଷରେ କାଦମ୍ବରୀ ଓ ଚନ୍ଦ୍ରାପୀଡ଼, ମହାଶ୍ୱେତା ଓ ପୁଣ୍ଡରୀକଙ୍କର ମହାମିଳନ ସଂଘଟିତ ହୋଇଥିଲା । ଏହାହିଁ 'ପ୍ରଣୟ-ପ୍ରବାହ' ଉପନ୍ୟାସର ଉପଜୀବ୍ୟ ପ୍ରସଙ୍ଗ । ସଂକ୍ଷେପରେ କହିବାକୁ ଗଲେ ରାମଚନ୍ଦ୍ର ଆଚାର୍ଯ୍ୟଙ୍କ ଉପନ୍ୟାସଗୁଡ଼ିକ ଐତିହାସିକ ତାତ୍ପର୍ଯ୍ୟରେ ପୂର୍ଣ୍ଣ ।

ଗୋଦାବରୀଶ ମିଶ୍ର ଏବଂ ଗୋଦାବରୀଶ ମହାପାତ୍ର କବି ହେଲେହେଁ କଥାଶିଳ୍ପରେ ସେମାନଙ୍କ ପ୍ରତିଭାର ସ୍ୱାକ୍ଷର ସୁସ୍ପଷ୍ଟ । ଉଭୟଙ୍କ ସାହିତ୍ୟସାଧନାର ପରିସର ସ୍ୱାଧୀନତା ପରବର୍ତ୍ତୀ ଯୁଗକୁ ପରିବ୍ୟାପ୍ତ ହୋଇଥିଲା । ଉଭୟେ ଓଡ଼ିଶାର ଇତିହାସରୁ ଉପାଦାନ ସଂଗ୍ରହ କରି ସେ ସବୁକୁ ପ୍ରସିଦ୍ଧ ଇଂରେଜୀ ଉପନ୍ୟାସ ଢାଞ୍ଚାରେ ସଂଯୋଜିତ କରିପାରିଥିଲେ । ଗୋଦାବରୀଶ ମିଶ୍ରଙ୍କର 'ଅଭାଗିନୀ' ଉପନ୍ୟାସ ଏକଦା ସାରଙ୍ଗଗଡ଼ ନାମରେ ପରିଚିତ ଅଞ୍ଚଳର ପରିବେଶରେ ଦୁର୍ଦ୍ଧର୍ଷ ଡକାୟତ ପାଣ୍ଡୁ ନାୟକର ଦ୍ୱନ୍ଦ୍ୱ-ସଂଘର୍ଷ-ବହୁଳ ଜୀବନାଲେଖ୍ୟ ମଧ୍ୟରେ ଲିଖିତ ହୋଇଥିଲେହେଁ ପ୍ରସିଦ୍ଧ ଫରାସୀ ଔପନାସିକ ଭିକ୍ଟର ହ୍ୟୁଗୋଙ୍କ 'ଲା ମିଜ୍‌ରେବଲ' ଉପନ୍ୟାସର ପ୍ରଭାବ ଏଥିରେ ସୂଚୀତ । ଓଡ଼ିଶାରେ ନବ ପ୍ରତିଷ୍ଠିତ ଇଂରେଜ ଶାସନ, ବାଙ୍କିଯୁଦ୍ଧ ଏବଂ କଟକ ସଂଘର୍ଷର ଚିତ୍ର ପ୍ରଦତ୍ତ ହୋଇଅଛି । ଇଂରେଜ ଅଧିକୃତ ସାରଙ୍ଗଗଡ଼ରେ ଧନଞ୍ଜୟ ରାୟଙ୍କ ଦେଓ୍ୱାନ୍‌ଗିରି, କାରଖାନା ପ୍ରତିଷ୍ଠା, ଜଜାରସିଂହଟି, କଟକର ମାତାମଠ, ବୈଷ୍ଣବମଠର ବର୍ଣ୍ଣନା, ଇଂରେଜଙ୍କ ବିରୋଧରେ ବନମାଳୀ ଓ ପାଣ୍ଡୁ ନାୟକଙ୍କର ରକ୍ତାକ୍ତ ବିଦ୍ରୋହ, ବନମାଳୀ ଏବଂ ରମାଙ୍କର ପରସ୍ପର ପ୍ରତି ଆକର୍ଷଣ ପ୍ରଭୃତି ବହୁ ବାସ୍ତବ ବର୍ଣ୍ଣନା ଉପନ୍ୟାସଟିକୁ ଗୌରବମଣ୍ଡିତ କରିଅଛି । ସଂକ୍ଷେପରେ କହିଲେ, ୧୮୪୦ ମସିହାଠାରୁ ୧୮୬୦ ମସିହା ମଧ୍ୟରେ ଇଂରେଜବିରୋଧୀ ଓଡ଼ିଶାର କେତେକ ବିବରଣୀ ହିଁ 'ଅଭାଗିନୀ'ର କଥାବସ୍ତୁ ।

'ଘଟାନ୍ତର' ଉପନ୍ୟାସ ମଧ୍ୟ ଜନୈକ ଡାକ୍ତର ତାରିକାନ୍ତ ନାୟକ ଓ ସଦେଇ ଜେନାର ଜୀବନକାହାଣୀକୁ କେନ୍ଦ୍ର କରି ଲିଖିତ । ଏହା ମଧ୍ୟ ଇଂରେଜୀ-ରଚନା 'ଡକ୍‌ଟର ଜେକିଲ ଏଣ୍ଡ୍ ମିଷ୍ଟର୍ ହାଇଡ଼'ର ଛାଞ୍ଚରେ ପରିକଳ୍ପିତ । ସ୍ଥାନୀୟ ପରିବେଶ ମଧ୍ୟରେ କଟକ ସହରର ଗଳିକନ୍ଦି, ତେଲେଙ୍ଗାବଜାର, ତୁଳସୀପୁରର ବର୍ଣ୍ଣନା ଉପନ୍ୟାସର ମୌଳିକତା ପ୍ରତିଷ୍ଠା କରିଥାଏ ।

'୧୮୧୭' ତାଙ୍କର ଏକ ଶକ୍ତିଶାଳୀ ଐତିହାସିକ ଉପନ୍ୟାସ ଏବଂ ସମଗ୍ର ଉପନ୍ୟାସଟି ଇଂରେଜ ଅଧିକୃତ ଓଡ଼ିଶାରେ ପ୍ରବର୍ତ୍ତିତ ଚିରସ୍ଥାୟୀ ବନ୍ଦୋବସ୍ତର

କୁଫଳ ତଥା ଖୋର୍ଦ୍ଧାର ବୀର ସେନାଧ୍ୟକ୍ଷ ବକ୍ସି ଜଗବନ୍ଧୁ ବିଦ୍ୟାଧରଙ୍କ ଦୁର୍ଦ୍ଧର୍ଷ ନେତୃତ୍ୱରେ ପାଇକମାନଙ୍କ ବିଦ୍ରୋହର ପରିବେଶରେ ପରିକଳ୍ପିତ । ଇଂରେଜ ଔପନ୍ୟାସିକ ଚାର୍ଲସ୍ ଡିକେନ୍ସଙ୍କର 'ଏ ଟେଲ୍ ଅଫ୍ ଟୁ ସିଟିଜ୍'ର ପ୍ରଭାବ ଏହି ଉପନ୍ୟାସରେ ପ୍ରତିଫଳିତ । ଉପନ୍ୟାସରେ ଖୋର୍ଦ୍ଧାର ପ୍ରଚଣ୍ଡ ପାଇକବିଦ୍ରୋହ ହିଁ ବିଭିନ୍ନ ଗଳ୍ପର ଗୁମ୍ଫନ ସାହାଯ୍ୟରେ ପ୍ରତିଭାତ ହୋଇପାରିଛି । ଯଥା—ମାଣତ୍ରୀଗଡ଼ର ଶାସକମାନଙ୍କ ଅତ୍ୟାଚାର, ବ୍ରାହ୍ମଣ ସେବକର କନ୍ୟା ଚମ୍ପାର ଅପହରଣ, ତା'ର ସ୍ୱାମୀ ଏବଂ ଭ୍ରାତାଙ୍କର ହତ୍ୟା, ପରୋପକାରୀ ସଦାଶିବ କବିରାଜ, ଅତ୍ୟାଚାରୀ ଶାସକଙ୍କ ବିରୋଧରେ ମାଣତ୍ରୀ-ରାଣୀଙ୍କ ଗୁପ୍ତ ମନ୍ତ୍ରଣା, ସଦାଶିବଙ୍କ ଜେଲଦଣ୍ଡ, ତାଙ୍କ ଆଦର୍ଶରେ ଅନୁପ୍ରାଣିତ ଦୀନବନ୍ଧୁ, ସନାତନ, ଚମ୍ପା, ଗଣପତିଙ୍କ ସଦ୍‌ଗୁଣ ସ୍ୱଦେଶ-ପ୍ରେମୀ ଚରିତ୍ର, ଜେଲରୁ ମୁକ୍ତି ପରେ ସଦାଶିବଙ୍କର ତାଙ୍କ କନ୍ୟା ସହିତ ସାକ୍ଷାତ, କମଳା ଆଉ ଗଣପତିଙ୍କ ବିବାହ ସଂପାଦନ, ବାଣପୁର, ବାଲେଶ୍ୱର, କୁଜଙ୍ଗ, ପୁରୀଠାରେ ଯଥାକ୍ରମେ ବକ୍ସି, ଉତ୍ତରକବାଟ, ପରମଗୁରୁ, ମୁକୁନ୍ଦଦେବଙ୍କ ବିପ୍ଳବ ଏବଂ ଇଂରେଜମାନଙ୍କର ପରାଜୟ, ଏହା ପରେ ଇଂରେଜ ପକ୍ଷରୁ ପ୍ରବଳ ଦମନ-ଲୀଳା ଆରମ୍ଭ ହେବା, ଯଥା—ଯାବଜ୍ଜୀବନ କାରାଦଣ୍ଡ, ଦ୍ୱୀପାନ୍ତର, ମୃତ୍ୟୁଦଣ୍ଡ, ଅର୍ଥଦଣ୍ଡ ରୂପକ କଠୋର ଶାସ୍ତିରେ ବିପ୍ଳବୀମାନଙ୍କୁ ଦମନ କରିବା, ଓଡ଼ିଶାର ସ୍ୱାଧୀନତାର ଶେଷ ଦୀପଶିଖା ଯେପରି ଖୋର୍ଦ୍ଧାଦୁର୍ଗର ପତନରେ ନିର୍ବାପିତ ହେବା ଏବଂ ଅଜେୟ ବୀର ବକ୍ସିଙ୍କର ଶେଷ ବାଣୀ "ମାତୃଭୂମିର ମୁକ୍ତି ମଶାଲ ପ୍ରଜ୍ୱଳିତ ହେଉ" ସମଗ୍ର ଉତ୍କଳକୁ ଅଭିଭୂତ କରିବା—ଏହା ହିଁ 'ଅଠରଶହସତର' ଉପ-ନ୍ୟାସର ଉପଜୀବ୍ୟ ଓଡ଼ିଶାର ଲଢ଼ୁଆ ସଂଗ୍ରାମୀ ପାଇକମାନଙ୍କର ଜୀବନାଲେଖ୍ୟ ।

"ନିର୍ବାପିତ" ଉପନ୍ୟାସର ଗଳ୍ପାଂଶ ବହୁ ଘଟଣାର ଉତ୍‌ଥାନ ପତନ ମଧ୍ୟରେ ସଂଯୋଜିତ ହେଲେହେଁ ପରାଧୀନତାର ଶୃଙ୍ଖଳରୁ ଦେଶକୁ ରକ୍ଷାକରିବାର ସଂକଳ୍ପ ହିଁ ଏହାର ପ୍ରଧାନ ଆବେଦନ । ବିଦେଶୀମାନଙ୍କ ଦ୍ୱାରା ଦେଶର ସ୍ୱାଧୀନତା ଅପହରଣ, ମୁକ୍ତିର ପ୍ରତୀକ ସ୍ଥାନୀୟ ନରପତିଙ୍କର ନିର୍ବାସନ ବିରୋଧରେ ମୁଷ୍ଟିମେୟ ଦେଶପ୍ରାଣ କର୍ମୀମାନଙ୍କର ସଂଗ୍ରାମ ହିଁ ଶକ୍ତିଶାଳୀ ଭାଷାରେ ବର୍ଣ୍ଣିତ । ଧନପତି ସଦାନନ୍ଦ ତାଙ୍କର ସହଧର୍ମିଣୀ, ଇଞ୍ଜିନିୟର ବାରିଷ୍ଟର ରାଜକୁମାର ଗଙ୍ଗାଧର, ରାଜକୁମାରୀ ବିମଳା ପ୍ରଭୃତି ଚରିତ୍ର ଏହି ସଂଗ୍ରାମରେ ସ୍ୱଦେଶବତ୍ସଳତାର ପ୍ରଜ୍ୱଳିତ ଦୀପଶିଖା ।

କବି ଓ ଗାଳ୍ପିକରୂପେ ସୁପରିଚିତ ଗୋଦାବରୀଶ ମହାପାତ୍ର ତାଙ୍କର ଉପନ୍ୟାସ ରଚନାରେ ମଧ୍ୟ ସଫଳତା ପ୍ରଦର୍ଶନ କରିଥିଲେ । ରାଜଦ୍ରୋହୀ (୧୯୨୫), ରକ୍ତପାତ (୧୯୩୦), ବନ୍ଦୀର ମାୟା (୧୯୩୪), ବୀର ସ୍ତବକ (୧୯୩୬), ବିଦ୍ରୋହ (୧୯୩୮), ପ୍ରେମପଥେ (୧୯୩୨) ହେଉଛି ତାଙ୍କର ଐତିହାସିକ କୃତି । ଓଡ଼ିଶାର

ବିସ୍ତୃତ ଉପକୂଳ ଅଞ୍ଚଳରେ ବିଦେଶୀ ବେପାରୀମାନଙ୍କର ଲୁଣ୍ଠନ, ଦାସବ୍ୟବସାୟ, ଅତ୍ୟାଚାରୀ ମୋଗଲ ଶାସକଙ୍କ ସହିତ ଗୁପ୍ତ ମନ୍ତ୍ରଣା କରିଥିବା ଯୋଗୁଁ କୁହୁଡ଼ି-ଗଡ଼ ରାଜ୍ୟ ଖୋର୍ଦ୍ଧା ରାଜାଙ୍କ ଦ୍ୱାରା ଦଣ୍ଡିତ ଏବଂ ନିର୍ବାସିତ । ଏହି ଅବସରରେ ଫିରିଙ୍ଗି ଜଳଦସ୍ୟୁଙ୍କ ଦ୍ୱାରା ରାଜକୁମାର ଅପହୃତ ହେବା, ପରେ ଚିଲିକାକୂଳରେ ନିକ୍ଷିପ୍ତ ହେବା, ସାଧୁ ଭଗବାନ ଦାସଙ୍କ ଆଶ୍ରମରେ ତା'ର ଅବସ୍ଥାନ, ବୁଲାରାମ ଆଉ ମଲ୍ଲୀଙ୍କ ନାଟଦଳ ଗଠନ ଏବଂ ଶେଷରେ ବୁଲାରାମର କୁହୁଡ଼ିଗଡ଼ର ସିଂହାସନ ପ୍ରାପ୍ତି—ଏହାହିଁ 'ରାଜଦ୍ରୋହୀ' ଉପନ୍ୟାସର ଗଳ୍ପାଂଶ ଏବଂ ଗଳ୍ପାଂଶରେ ନିଛକ ଇତିହାସ ଅପେକ୍ଷା କଳ୍ପନା ଅଧିକ ସହାୟକ ହୋଇଛି ।

ମରହଟ୍ଟା ରାଜତ୍ୱ କାଳୀନ ଓଡ଼ିଶା ହିଁ 'ବନ୍ଦୀର ମାୟା' ଉପନ୍ୟାସର ପୀଠିକା । ପାଇକବୀର ସୁଜନ ଶତ୍ରୁଶାଳ, ତା'ର ବୀରପୁତ୍ର ଅଭିମନ୍ୟୁ, କନ୍ୟା ଫୁଲ, ଅନ୍ୟପକ୍ଷରେ ବନ୍ଦୀ ମରହଟ୍ଟା ସୈନ୍ୟଙ୍କ ମଧ୍ୟରୁ ଦେବନାଥ ପ୍ରମୁଖ ଚରିତ୍ର ଏବଂ ତଦାନୀନ୍ତନ ସଂଘଟିତ ସଂଘର୍ଷ ସାହାଯ୍ୟରେ ଲେଖକ ଉପନ୍ୟାସର ପରିଣତି ପ୍ରଦର୍ଶନ କରିଛନ୍ତି ଏବଂ ସେହି ପରିଣତି ହେଉଛି ମରହଟ୍ଟା-ବନ୍ଦୀ ଯୁବକ ଦେବନାଥ ଏବଂ ଓଡ଼ିଆ ପାଇକଝିଅ ଫୁଲର ପ୍ରେମାକର୍ଷଣ ଏବଂ ଶେଷରେ ମହାନଦୀର ଗଭୀର ବକ୍ଷରେ ଉଭୟଙ୍କର ସଲିଳସମାଧି । ନିବିଡ଼ ଜାତୀୟତା ହିଁ ଉପନ୍ୟାସରେ ପ୍ରତିପାଦିତ ଆଦର୍ଶ ।

ଓଡ଼ିଶାରେ ମରହଟ୍ଟା ବର୍ଗୀମାନଙ୍କର ଅତ୍ୟାଚାର, ଲୁଣ୍ଠନ, କଳହ, ଗଡ଼ଜାତ ସାମନ୍ତ ରାଜାମାନଙ୍କର ସଂଘର୍ଷ, ଓଡ଼ିଆ ପାଇକମାନଙ୍କର ବୀରତ୍ୱକୁ କେନ୍ଦ୍ର କରି ଚନ୍ଦ୍ରଧର ମହାପାତ୍ରଙ୍କ 'ବଳାଙ୍ଗୀ' (୧୯୩୪) ଉପନ୍ୟାସ ଲିଖିତ । ଉପନ୍ୟାସର ପ୍ରଥମ ଭାଗରେ ମରହଟ୍ଟାମାନଙ୍କର ଅତ୍ୟାଚାର, ଦ୍ୱିତୀୟ ଭାଗରେ ନରସିଂହପୁର ରାଜା ମନ୍ଦରଧର ସେନାପତି, ଭାନୁ ମଙ୍ଗରାଜ, ତାଙ୍କ ପୁତ୍ର ମୁକୁନ୍ଦ ଓ ପୁତ୍ରବଧୂ ମାଳତୀ, ଅନୁଗୁଳ ଆଉ ଦଶପଲ୍ଲା ରାଜାଙ୍କର ନରସିଂହପୁର ରାଜ୍ୟ ଅଧିକାର ପାଇଁ ବିବାଦ ଓ ସଂଘର୍ଷ, କଣେଇ ବଳାଙ୍ଗୀର ବୀରତ୍ୱ ଉପନ୍ୟାସରେ ଉଦ୍ଦୀପକ ଭାଷାରେ ବର୍ଣ୍ଣିତ । ଉପନ୍ୟାସରେ ପୂର୍ଣ୍ଣଚନ୍ଦ୍ର, ଚନ୍ଦ୍ରମାଳୀ ସଦୃଶ ରାଜାରାଣୀ, ଭାନୁ ମଙ୍ଗରାଜଙ୍କ ସଦୃଶ ସେନାପତି, ବଳାଙ୍ଗୀ ସଦୃଶ କନ୍ୟାର ଚରିତ୍ରଚିତ୍ରଣ ଉଚ୍ଚ-କୋଟୀର ହୋଇଅଛି । ୧୮୧୭ ମସିହାର ଓଡ଼ିଶାର ପ୍ରସିଦ୍ଧ ପାଇକ-ବିଦ୍ରୋହର ବିପ୍ଳବୀ ସାରଥୀ ବକ୍ସି ଜଗବନ୍ଧୁଙ୍କ ଶେଷ ଜୀବନର କେତେକ ଘଟଣାକୁ କେନ୍ଦ୍ର କରି ଲେଖକ 'ରୋଡ଼ଙ୍ଗ ବକ୍ସି' (୧୯୪୮) ଉପନ୍ୟାସ ରଚନା କରିଛନ୍ତି ।

ଐତିହାସିକ ଉପନ୍ୟାସ ପର୍ଯ୍ୟାୟରେ ଶ୍ରୀଧର ମହାପାତ୍ରଙ୍କ 'ରକ୍ତଗୋଲାପର ରକ୍ତସ୍ରୋତ' ଓଡ଼ିଶାର ଘୁମୁସର ରାଜବଂଶର ଇତିହାସ ପ୍ରକଟନ କରିବାରେ ଏକ ସାର୍ଥକ କୃତିରୂପେ ଗୃହୀତ ହୋଇଥାଏ । ଘୁମୁସର ରାଜବଂଶର ଘଟଣାବଳୀ

ଉପରେ ଲେଖକ ଉପନ୍ୟାସର ଗଳ୍ପାଂଶ ପାଇଁ ନର୍ଭର କରିଥିଲେହେଁ ଏହାର ପୃଷ୍ଠଭୂମିରେ 'Prisoner of Zenda' ଓ 'Rupert of Hentzau' ଇଂରେଜୀ ଉପନ୍ୟାସର ପ୍ରେରଣା ନାହିଁ ।

ପ୍ରାଚୀନ ଓଡ଼ିଶାର ଚମତ୍କାରିକ ଇତିହାସ ଯେପରି କେତେକ ଔପନ୍ୟାସିକଙ୍କୁ ଆକୃଷ୍ଟ କରିଛି, ଦେଶର ସାଂପ୍ରତିକ ରାଜନୈତିକ ଜାତୀୟ ଘଟଣାବଳୀ ମଧ୍ୟ ସେହିପରି କେତେକ କଥାଶିଳ୍ପୀଙ୍କୁ ଉଦ୍‌ବୁଦ୍ଧ କରିପାରିଛି । ଭାରତରେ ଜାତୀୟ କଂଗ୍ରେସର ନେତୃତ୍ୱରେ ପରିଚାଳିତ ସ୍ୱାଧୀନତା ଆନ୍ଦୋଳନର ଇତିବୃତ୍ତିକୁ କେନ୍ଦ୍ର କରି ଡକ୍ଟର ହରେକୃଷ୍ଣ ମହତାବ 'ପ୍ରତିଭା' ଉପନ୍ୟାସ ରଚନା କରିଛନ୍ତି । ଜମିଦାର ରାମହରିବାବୁଙ୍କ ପୁଅ ନବୀନ, ସବ୍‌ଡେପୁଟି ମାଜିଷ୍ଟ୍ରେଟ୍ ଜନାର୍ଦ୍ଦନବାବୁଙ୍କ ପୁଅ ମହେନ୍ଦ୍ର ଉଭୟେ କଲେଜ ଛାତ୍ର ଏବଂ ସହପାଠୀମାନଙ୍କ ସହ 'ବୀରସମାଜ' ଗଠନ କରିଥିଲେ । ଏହି ଅନୁଷ୍ଠାନର ଲକ୍ଷ୍ୟ ଥିଲା—ଜାତିପ୍ରଥା, ପର୍ଦ୍ଦାପ୍ରଥା, ନିରକ୍ଷରତା ଦୂରୀକରଣ, ସରକାରୀ ଚାକିରି ପ୍ରତ୍ୟାଖ୍ୟାନ, ଚିରକୌମାର୍ଯ୍ୟବ୍ରତ ପାଳନ । କଂଗ୍ରେସର ସତ୍ୟ ଓ ଅହିଂସା ନୀତିରେ ବିଶ୍ୱାସୀ ପ୍ରକାଶବାବୁ ଥିଲେ ସେମାନଙ୍କର ପରାମର୍ଶଦାତା । ଅଶିକ୍ଷିତା ଗ୍ରାମ୍ୟବାଳିକା 'ପ୍ରତିଭା' (ଅପୁଚ୍ଛି)କୁ ନବୀନ ପରିସ୍ଥିତିରେ ପଡ଼ି ବିବାହ କରିବା, ମହେନ୍ଦ୍ର ଡେପୁଟି ମାଜିଷ୍ଟ୍ରେଟ୍ ଚାକିରି ଗ୍ରହଣ କରିବା, ନବୀନର ଗୃହତ୍ୟାଗ, ତା'ପରେ ପ୍ରତିଭାର ସ୍ୱାମୀଙ୍କ ପଦାଙ୍କ ଅନୁସରଣ, ଦେଶରେ ସ୍ୱାଧୀନତା ଏବଂ ସ୍ୱରାଜ୍ୟ ଆଦର୍ଶର ପ୍ରଚାର, ବିପ୍ଳବର ସଫଳତା, ନବୀନ ଏବଂ ପ୍ରତିଭା ଚରିତ୍ରର ବୈପ୍ଳବିକ ବିକାଶ ଏହି ଉପନ୍ୟାସରେ ପ୍ରତିପାଦିତ । ଓଡ଼ିଶାର ବିଭିନ୍ନ ଗଡ଼ଜାତରେ ଅତ୍ୟାଚାରୀ ରାଜାମାନଙ୍କର କୁଶାସନ ବିରୋଧରେ ପ୍ରଜାଆନ୍ଦୋଳନ, କଲିକତାରେ ଓଡ଼ିଆଙ୍କ ଦୁଃଖ-ଦୁର୍ଦ୍ଦଶା, ନାରୀଶିକ୍ଷା, ଯୁବତୀ ବିବାହ, ଛୁଆଁଛୁଆଁ ପ୍ରଭୃତି ସମସ୍ୟାକୁ କେନ୍ଦ୍ର କରି ତାଙ୍କର 'ଅବ୍ୟାପାର' ଉପନ୍ୟାସ ଲିଖିତ । କର୍ମୀ ଲଳମୋହନ ତାଙ୍କର ଅଶିକ୍ଷିତା ପତ୍ନୀ, ଜ୍ୟୋତିଷକଙ୍କ କନ୍ୟା କୁମୁଦିନୀ, ତାଙ୍କର ବୈଧବ୍ୟପ୍ରାପ୍ତି, ତା'ପରେ ତାଙ୍କର କଲିକତାଯାତ୍ରା, ଶିକ୍ଷାଲାଭ, ଲଳମୋହନ ଏବଂ କୁମୁଦିନୀଙ୍କ ମଧ୍ୟରେ ପ୍ରେମାକର୍ଷଣ, ବିଭିନ୍ନ ଗଡ଼ଜାତରେ ଲଳମୋହନଙ୍କର ଫେରାରୀ ଭୂମିକା ଗ୍ରହଣ, ଶେଷରେ ରଣପୁର ଗଣ୍ଡଗୋଳରେ ତାଙ୍କର ଅପରାଧ ସାବ୍ୟସ୍ତ ହେବା ଏବଂ ତାଙ୍କର ଫାଶୀଦଣ୍ଡ—ଏହାହିଁ ଉପନ୍ୟାସଟିର ଗଳ୍ପାଂଶ । ସାମୟିକ ରାଜନୈତିକ ଘଟଣାପ୍ରବାହଦ୍ୱାରା 'ଅବ୍ୟାପାର' ପ୍ରଭାବିତ ।

ରାମପ୍ରସାଦ ସିଂହଙ୍କ ଲିଖିତ 'ପୂଜାର ବଳି' ଉପନ୍ୟାସରେ ଭାରତରେ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ପରିଚାଳିତ ଲବଣ ସତ୍ୟାଗ୍ରହ ହିଁ ପ୍ରତିଫଳିତ ।

ଉପରୋକ୍ତ ଆଲୋଚନାରୁ ପ୍ରମାଣିତ ହୁଏ ଯେ ସପ୍ତଦଶ, ଅଷ୍ଟାଦଶ ଏବଂ ଊନବିଂଶ ଶତାବ୍ଦୀରେ ଏବଂ ବିଂଶ ଶତାବ୍ଦୀର ପ୍ରଥମ ପାଦରେ ଓଡ଼ିଶାରେ

ସଂଘଟିତ ରାଜନୈତିକ ବିଦ୍ରୋହ, ବିପ୍ଳବ ଏବଂ ଜାତୀୟ ଆନ୍ଦୋଳନ ହିଁ ଆଧୁନିକ ଓଡ଼ିଆ ଐତିହାସିକ ଉପନ୍ୟାସର ଆଧେୟରୂପେ ଗୃହୀତ ।

୧୯୩୦ ମସିହା ପରେ ଓଡ଼ିଆ ଉପନ୍ୟାସର ବିକାଶଧାରା ବହୁମୁଖୀ ହୋଇଥିଲା । ଅଭ୍ୟୁଦୟଯୁଗ ଉପନ୍ୟାସର ଐତିହାସିକ ଆଭିମୁଖ୍ୟ କ୍ରମଶଃ ପରିବର୍ତ୍ତିତ ହୋଇଥିଲା । ଐତିହାସିକ ପ୍ରବୃତ୍ତି ପରିବର୍ତ୍ତେ ଗଭୀର ସାମାଜିକ ଦୃଷ୍ଟିକୋଣ, ବିଶେଷତଃ ବାସ୍ତବଧର୍ମିତା ଉପନ୍ୟାସରେ ଆଦୃତ ହେଲା । ତା'ର ଗତିଧାରାରେ ନୂତନତ୍ୱ, ଆକସ୍ମିକତା ଏବଂ ମୌଳିକତା ଆହୁରି ପରିବ୍ୟାପ୍ତ ହେଲା । ଆଙ୍ଗିକ ଏବଂ ଶୈଳୀକ ପରୀକ୍ଷା-ନିରୀକ୍ଷା ଉପନ୍ୟାସରେ ଆଲୋଡ଼ନ ସୃଷ୍ଟି କଲା । ଗଳ୍ପାଂଶ ନିର୍ବାଚନ, ଚରିତ୍ର ମନୋନୟନ, ଅନୁଶୀଳନ ଏବଂ ସାମାଜିକ ଆଦର୍ଶର ଆନୁଗତ୍ୟ ଔପନ୍ୟାସିକମାନଙ୍କୁ ଆକୃଷ୍ଟ କରିଥିଲା । ୧୯୩୦ ମସିହାରୁ ୧୯୪୭ ମସିହା ପର୍ଯ୍ୟନ୍ତ ଓଡ଼ିଆ ଉପନ୍ୟାସର ଯେଉଁ ଆଙ୍ଗିକ, ପ୍ରବୃତ୍ତି ଏବଂ ଧାରା ସମାହିତ ହୋଇଥିଲା, ୧୯୪୭ ମସିହା ପରେ, ବିଶେଷତଃ ୧୯୬୦ ମସିହା ପରବର୍ତ୍ତୀ କାଳରେ, ଉପନ୍ୟାସର ସେହି ଆଙ୍ଗିକ, ସେହି ପ୍ରବୃତ୍ତି ଓ ଧାରା ଆହୁରି ସଂସ୍କାରର ସମ୍ମୁଖୀନ ହେଲା । ସାମାଜିକ ପରିବେଶର ପରିବର୍ତ୍ତନ ସଙ୍ଗେ ସଙ୍ଗେ ବ୍ୟକ୍ତିମାନସର ବୈପ୍ଳବିକ ରୂପାନ୍ତର ଏବଂ କଳା ଓ ସାହିତ୍ୟ ନୂତନ ଜିଜ୍ଞାସା ଓ ଚେତନାର ଶରବ୍ୟ ହୋଇଥିଲା । ପ୍ରାଚୀନ ବିଶ୍ୱାସ ଓ ଧାରଣାକୁ ବାଦ୍ ଦେଇ ଜାତୀୟ ମହାଯୁଦ୍ଧର ପରବର୍ତ୍ତୀ ବୈଜ୍ଞାନିକ ବିଶ୍ଳେଷଣ; ବିଶେଷତଃ ସ୍ୱାଧୀନ ଭାରତବର୍ଷର ଉଦ୍‌ବେଳିତ ଶିଳ୍ପମାନସ ନୂତନ ଭୂମିକାରେ ଅବତୀର୍ଣ୍ଣ ହେଲା । ଏହି ଯୁଗରେ ବହୁ ଶକ୍ତିଶାଳୀ ଔପନ୍ୟାସିକଙ୍କର ଆବିର୍ଭାବ ଘଟିଛି । ପ୍ରଥମ ପର୍ଯ୍ୟାୟରେ କାଳନ୍ଦୀଚରଣ ପାଣିଗ୍ରାହୀ, କାହ୍ନୁଚରଣ ମହାନ୍ତି, ଗୋପୀନାଥ ମହାନ୍ତି, ରାଜକିଶୋର ପଟ୍ଟନାୟକ, କମଳାକାନ୍ତ ଦାସ, ନିତ୍ୟାନନ୍ଦ ମହାପାତ୍ର, ଚନ୍ଦ୍ରମଣି ଦାସ, ରାମ ପ୍ରସାଦ ସିଂହ, ଅନନ୍ତପ୍ରସାଦ ପଣ୍ଡା, କୃଷ୍ଣପ୍ରସାଦ ବସୁ, ସତ୍ୟାନନ୍ଦ ବେହୁରା, ବଟକୃଷ୍ଣ ପ୍ରହରାଜ, ପରଶୁରାମ ମୁଣ୍ଡ, ପ୍ରାଣକୃଷ୍ଣ ସାମଲ, ଲକ୍ଷ୍ମୀଧର ନାୟକ ପ୍ରଭୃତଙ୍କ ନାମ ଉଲ୍ଲେଖଯୋଗ୍ୟ । ଦ୍ୱିତୀୟ ପର୍ଯ୍ୟାୟରେ ଜ୍ଞାନୀନ୍ଦ୍ର ବର୍ମା, ସୁରେନ୍ଦ୍ର ମହାନ୍ତି, ବିଭୂତି ପଟ୍ଟନାୟକ, ସଚ୍ଚିରାନନ୍ଦ; ତୃତୀୟ ପର୍ଯ୍ୟାୟରେ ବଂଶୀଧର ଭୂୟାଁ, ଦଶରଥ ସାମଲ, ଗୋବିନ୍ଦ ଦାସ, ଶାନ୍ତନୁକୁମାର ଆଚାର୍ଯ୍ୟ, କୃଷ୍ଣପ୍ରସାଦ ମିଶ୍ର, ନୀଳମଣି ସାହୁଙ୍କ ନାମ ଉଲ୍ଲେଖଯୋଗ୍ୟ ।

ଦିବ୍ୟସିଂହ ପାଣିଗ୍ରାହୀଙ୍କର 'ତୁ ମୋ ମା' ଉପନ୍ୟାସ ମଧ୍ୟ ସାମାଜିକ ଜୀବନରେ ଧର୍ମ ଓ ସଂସ୍କାର ନାମରେ ଚାଲିଥିବା ବ୍ୟଭିଚାରକୁ କେନ୍ଦ୍ର କରି ଲିଖିତ । ଏକ ଦିଗରେ ବିଶ୍ୱନାଥ ଦଳବେହେରାଙ୍କ ସଦୃଶ ସାମନ୍ତବାଦୀ ଚରିତ୍ର, ଅନ୍ୟ ଦିଗରେ ବିଳାସବ୍ୟସନ ପ୍ରାଚୁର୍ଯ୍ୟ ମଧ୍ୟରେ ପଥଭ୍ରଷ୍ଟ ସାଧାରଣ ମଣିଷ ମୂଳନାଥ;

ରକ୍ଷଣଶୀଳ ବ୍ରାହ୍ମଣ ପରିବାରର ବାଳିକା ରମା ପ୍ରତି ତାଙ୍କର ପ୍ରେମାକର୍ଷଣ, ଅନ୍ୟ ଦିଗରେ ସନ୍ନ୍ୟାସିନୀରୂପେ ରମା ଚରିତ୍ରର ପରିବର୍ତ୍ତନ; ପୁନଶ୍ଚ ଚିଦାନନ୍ଦ ସଦୃଶ ମହନୀୟ ଚରିତ୍ରର ପ୍ରଭାବରେ ଦଳବେହେରା ଏବଂ ମୂଳନାଥ ପ୍ରଭୃତିଙ୍କର ଚାରିତ୍ରିକ ପରିବର୍ତ୍ତନ, ରମାର ସନ୍ନ୍ୟାସବ୍ରତ ସାଧନା ନିକଟରେ ସ୍ୱୟଂ ଚିଦାନନ୍ଦ ମଧ୍ୟ ମୁଣ୍ଡ ନୁଆଁଇ ଶେଷରେ ତାକୁ ଆଖ୍ୟା ଦେଇଥିଲେ—"ତୁ ମୋ ମା"। ଏହି ଉପନ୍ୟାସ ସମ୍ପର୍କରେ ତତ୍କାଳୀନ ସୁକବି ମଦନମୋହନ ପଟ୍ଟନାୟକଙ୍କର ମନ୍ତବ୍ୟ ଏଠାରେ ଉଦ୍ଧାର କରାଗଲା :

"ବିଖ୍ୟାତ ଔପନ୍ୟାସିକ ଭିକ୍ଟର ହ୍ୟୁଗୋ (Victor Hugo) ତାଙ୍କର ପ୍ରସିଦ୍ଧ ପୁସ୍ତକ 'Les Miserables'ରେ ମାନବଜୀବନର ଉତ୍‌ଥାନ-ପତନର ଯେଉଁ ମନୋହର ଚିତ୍ର ଦେଇଅଛନ୍ତି, ଦିବ୍ୟସିଂହ ବାବୁ ସେହିପରି ଗୋଟିଏ ଗଳ୍ପର ଅବତାରଣା କଲପରି ବୋଧହୁଏ । ସରଳ ଓ ପ୍ରାଞ୍ଜଳ ଭାଷାରେ ଗଳ୍ପ ଲେଖିବାର ତାଙ୍କର ଯେଉଁ ଦକ୍ଷତା ଅଛି, ତାହାର ଯଥେଷ୍ଟ ପରିଚୟ ଆମ୍ଭେମାନେ ଏହି ଉପନ୍ୟାସରେ ପାଇଅଛୁଁ । ତେବେ ଚରିତ୍ରଚିତ୍ରଣ ବିଷୟରେ ସେ କେତେଦୂର କୃତକାର୍ଯ୍ୟ ହୋଇଅଛନ୍ତି ତାହା ବିଚାର କରିବାର କଥା । ସଂସାରରେ ନିର୍ଖୁଣ ପଦାର୍ଥ କ୍ୱଚିତ୍ ଦେଖାଯାଏ, ବିଶେଷତଃ ମନୁଷ୍ୟର କଳ୍ପନା-ପ୍ରସୂତ କାର୍ଯ୍ୟାବଳୀରେ । ମହାନଦୀ ତାହାର ରୁଦ୍ର-ସୁନ୍ଦର ବିଭବରେ ଉତ୍କଳକୁ ମଣ୍ଡିଅଛି ଓ ତାହାର ଶୋଭା-ସୌରଭ ଉପଭୋଗ କରିବାର ସୁବିଧା ଯେ ପାଇଅଛି, ତାହା ଆଗରେ ଶାଖା ଚିତ୍ରୋତ୍ପଳାର ସୌନ୍ଦର୍ଯ୍ୟ ଅତି ତୁଚ୍ଛ ମନେହେବ । ଏହି ଉପନ୍ୟାସରେ ଚିଦାନନ୍ଦ ସ୍ୱାମୀ ମେରୁଦଣ୍ଡ ପରି କାର୍ଯ୍ୟ କରିଅଛନ୍ତି ଓ ତାହା ତୁଳନାରେ ଦଳବେହେରାଙ୍କ କାହାଣୀର ବିଶେଷ ସ୍ଥାନ କିଛି ନାହିଁ । ଆମ୍ଭମାନଙ୍କ ଧାରଣା, ଦିବ୍ୟସିଂହବାବୁ ମହାନଦୀ ଓ ଚିତ୍ରୋତ୍ପଳାକୁ ଏକ ନିକିତିରେ ତୁଳିବାକୁ ଚେଷ୍ଟା କରିଅଛନ୍ତି । ଦଳବେହେରାଙ୍କ ପରିବାରର ଜୀବନ କାହାଣୀ ଆଉ ସଂକ୍ଷେପରେ ବର୍ଣ୍ଣନା କରାଯାଇଥିଲେ, ବହିର କିଛି ବୋଧହୁଏ ଅଙ୍ଗହାନି ହୋଇ ନଥାନ୍ତା । ଚିଦାନନ୍ଦଙ୍କର ମାହାତ୍ମ୍ୟ ବର୍ଣ୍ଣନା କରିବାକୁ ଦଳବେହେରାଙ୍କ ଗଳ୍ପର ସୃଷ୍ଟି ଓ ତାହା ଏ ବହିକି ଟିକିଏ ଭାରାକ୍ରାନ୍ତ କଲପରି ମଧ୍ୟେ ମଧ୍ୟେ ମନେହୁଏ । ନିତାମା' ଭଣ୍ଡାରୁଣୀର କାର୍ଯ୍ୟକଳାପରେ କ୍ଷିପ୍ରତା ଓ ଗୁରୁତ୍ୱ ଦେଖିବାକୁ ପାଉଁ; ମାତ୍ର ସ୍ଥଳବିଶେଷରେ ତାହାର ଆଚରଣ ଟିକିଏ ଅପ୍ରାକୃତ ବୋଧହୁଏ । ବିଶ୍ୱନାଥ ଦଳବେହେରା ତାକୁ ସଙ୍ଗରେ ନେଇ ହଠାତ୍ ଗୋବିନ୍ଦ ସେନାପତିଙ୍କ ଘରେ ପହଞ୍ଚିଲେ ଓ ସେ କାଳବିଳମ୍ବ ନକରି ସେନାପତିର ଅନ୍ଦର ମହଲରେ ଯେପରି ପାର୍ବତୀର ପ୍ରଶଂସା ଗାନ କରିବାକୁ ଓ ତା ଗୋଡ଼ରେ ଅଳତା ଦେବାକୁ ଆରମ୍ଭ କଲା, ତାହା କଅଣ ସାଧାରଣ ଜୀବନରେ ସମ୍ଭବ ? ନିତାମା' ସେଠାରେ

ସଂପୂର୍ଣ୍ଣ ଅପରିଚିତା । ତାହାଠାରୁ କଅଣ ଆମ୍ଭେମାନେ ଏହିପରି କାର୍ଯ୍ୟ ଆଶା କରିପାରୁଁ ?" (୧)

ଏହି ଆଲୋଚନାରୁ ପ୍ରମାଣିତ ହୁଏ ଯେ ଫକୀରମୋହନଙ୍କ ପରବର୍ତ୍ତୀ ଓଡ଼ିଆ ଉପନ୍ୟାସ ମୁଖ୍ୟତଃ ରକ୍ଷଣଶୀଳତା, ଅର୍ଦ୍ଧଶିକ୍ଷିତ ଗ୍ରାମ ତଥା ସହରବାସୀଙ୍କ ସାମାଜିକ ଆଚରଣ ଏବଂ ବିଭିନ୍ନ ସାମାଜିକ ସମସ୍ୟାକୁ ଆଶ୍ରୟ କରି ଗଢ଼ି ଉଠିଥିଲା ।

୧୯୩୦ ମସିହା ପରବର୍ତ୍ତୀ ଯୁଗରେ ଓଡ଼ିଆ ଉପନ୍ୟାସର ଉଭୟ ପ୍ରବୃତ୍ତି, ଆଭିମୁଖ୍ୟ ଏବଂ ଶୈଳୀରେ ବିଶେଷ ପରିବର୍ତ୍ତନ ପରିଲକ୍ଷିତ ହୋଇଥିଲା । 'ମାଟିର ମଣିଷ' (୧୯୩୧) ଓଡ଼ିଆ ଉପନ୍ୟାସର ନବଯୁଗର ପ୍ରଥମ ସଙ୍କେତ ବୋଲି କୁହାଯାଇପାରେ । ଭାରତବର୍ଷରେ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ପ୍ରସାରିତ ହୋଇଥିବା ଅସହଯୋଗ ଆନ୍ଦୋଳନର ପୃଷ୍ଠଭୂମିରେ ନବଜାଗ୍ରତ ଓଡ଼ିଶାର ପୁରିପଲ୍ଲୀର ସାମାଜିକ ଓ ପାରିବାରିକ ଆଲେଖ୍ୟ ପ୍ରଦାନରେ 'ମାଟିର ମଣିଷ' ଏକ ସାର୍ଥକ କୃତି । ଶ୍ୟାମ ପଧାନ ତା'ର ଭିଟାମାଟି ପୂର୍ବପୁରୁଷର ବାସଗୃହ ମଧ୍ୟରେ ପାଚେରି ଉଠେଇବାର ଘୋର ବିରୋଧୀ । ତା'ର ଦୁଇପୁଅ ବରଜୁ ଓ ଛକଡ଼ି ଏହି ନାଟକୀୟ ଗଳ୍ପାଂଶର ମୁଖ୍ୟ ଦୁଇଟି ଚରିତ୍ର । ଅସହଯୋଗ ଆନ୍ଦୋଳନର ଧାରାରେ ଏବଂ ପିତୃଦେବଙ୍କ ଆଦର୍ଶରେ ଅନୁପ୍ରାଣିତ ବଡ଼ପୁଅ ବରଜୁ ତାହାର ଆଦର୍ଶରେ ଅଟଳ ରହିଅଛି । ତାହାର ସ୍ତ୍ରୀ ହରିବୋଉ ମଧ୍ୟ ପରିସ୍ଥିତିର ଗୃପରେ ସ୍ୱାମୀ-ଆଦର୍ଶକୁ ଅନୁସରଣ କରିଅଛି । ପରିବାରର ଭାଇଭାଗ, ଆଉ ସମସ୍ତ ଈର୍ଷା, ହିଂସା ଓ ବିଦ୍ୱେଷ ପ୍ରଣୋଦିତ ନାଟକର ଗୋବର୍ଦ୍ଧନ ହେଉଛନ୍ତି—ଗାଁ ଟାଉଟର ହରି ମିଶ୍ର ଆଉ ଖୋଦ ପଧାନଘରର ସାନବୋହୂ ନେତ୍ରମଣି । ପରିବାରର ସାନପୁଅ ଛକଡ଼ି ତାହାର ସ୍ତ୍ରୀ ଚନ୍ଦ୍ରଣୀ ନେତ୍ରମଣିର ଚକ୍ରାନ୍ତ ନିକଟରେ ଯେପରି ପରାଜିତ । ପଲ୍ଲୀଜୀବନର ବିଭିନ୍ନ ସମସ୍ୟାର ପରିଧି ମଧ୍ୟରେ ଏହି ଗ୍ରାମ୍ୟ ଚରିତ୍ରଗୁଡ଼ିକ; ଯଥା—ବରଜୁ, ଛକଡ଼ି, ହରିବୋଉ, ନେତ୍ରମଣି, ହରି ମିଶ୍ର, ଚନ୍ଦରି ଆଦି ଖୁବ୍ ଆନ୍ତରିକତାର ସହିତ ଉପସ୍ଥାପିତ । ସ୍ୱାର୍ଥପର, କଳିହୁଡ଼ୀ, ଈର୍ଷାପରାୟଣା, ଘରଭଙ୍ଗେଇ ଏବଂ ଅହଂକାରିଣୀ ନେତ୍ରମଣି ଚରିତ୍ରଟିର ଓଡ଼ିଶାର ଗ୍ରାମେ ଗ୍ରାମେ, ଘରେ ଘରେ ଅଭାବ ନାହିଁ ।

ଆଦର୍ଶବାଦୀ ବରଜୁ ଘରଦ୍ୱାର ଛାଡ଼ି ଚାଲିଯାଇଛି । ତାହା ପରେ ପରେ ଭାଇଭାଉଜ-ସୁହାଗୀ ଛକଡ଼ି ମଧ୍ୟ ଧାଇଁଛି ସେମାନଙ୍କୁ ଘରକୁ ଫେରାଇଆଣିବାକୁ । ମାତ୍ର କାହିଁକି ? ବରଜୁ ଯଦ୍ୟପି ସ୍ୱ-ଆଦର୍ଶରେ ଅବିଚଳିତ; ତାହାର ଆଦର୍ଶ ଅନ୍ୟ କାହାକୁ ପ୍ରଭାବିତ କରି ନ ପାରିବା ହେଉଛି ଏହି ଜୀବନ ଓ ସମାଜର

(୧) ଯୁଗବାଣୀ—୧୯୩୩-ମଇ ସଂଖ୍ୟା ପୃ: ୧୦୮-୧୦୯.

ଦୈନନ୍ଦିନ ଘଟଣା । ବରଜୁ ନିଜ ଘରକୁ ସଜାଡ଼ି ପାରିନାହିଁ । ରଣଚଣ୍ଡୀ ନେନ୍ଦ୍ର-ମଣିର ହୃଦୟ ପରିବର୍ତ୍ତନ ହୋଇନାହିଁ । ତାହାହେଲେ, ଉପନ୍ୟାସର ଶେଷ ସୂଚନା କଅଣ ହୋଇପାରେ, ପାଠକମାନଙ୍କ ବିଚାର ଉପରେ ତାହା ନ୍ୟସ୍ତ କରାଯାଇଅଛି । ଅବଶ୍ୟ 'ମାଟିର ମଣିଷ'ର ବରଜୁ 'ଲୁହାର ମଣିଷ'ରେ ଦେଶସେବାରେ ନିଜକୁ ଉତ୍ସର୍ଗ କରି ଲୁହାଶିକୁଳି ପିନ୍ଧିଛି । ଦ୍ରୁତ-ସାମାଜିକ ପରିବର୍ତ୍ତନସ୍ରୋତରେ ଗାନ୍ଧୀ-ଆଦର୍ଶବାଦୀ ବରଜୁର ଗୃହନିକ ରୂପାନ୍ତର ଓ ସାଧନା କପରି ସାର୍ଥକ ହୋଇ-ପାଇଛି, ତାହା ବର୍ଣ୍ଣିତ । 'ଆଜିର ମଣିଷ'ରେ ସାମାଜିକ ପରିପ୍ରେକ୍ଷୀରେ ସାଂପ୍ରଦାୟିକ ଉପଦ୍ରବ ଏବଂ ସାଧାରଣ ବ୍ୟକ୍ତିଜୀବନର ନୀତିଶୂନ୍ୟତା ହିଁ ବର୍ଣ୍ଣିତ । ରୁହିନ, ଗୌରୀ, ସାବିତ୍ରୀ, ଉଷା, ହରାକର ପ୍ରଭୃତି ଚରିତ୍ରମାନଙ୍କ ଉପସ୍ଥାପନାରେ ତଥା ଘଟଣାପ୍ରବାହରେ ଔପନ୍ୟାସିକ ସାବିତ୍ରୀ ଏବଂ ଗୌରୀଙ୍କୁ ଗ୍ରାମଗହଳରେ ପ୍ରୌଢ଼-ଶିକ୍ଷା ପ୍ରସାର କାର୍ଯ୍ୟରେ ପ୍ରକ୍ଷିପ୍ତ କରାଇଅଛନ୍ତି । ରଚନା ଏବଂ ପ୍ରକାଶନ କାଳ ବିଚାରରେ ଔପନ୍ୟାସିକ କାଳନ୍ଦୀଚରଣଙ୍କ କଥାଶିଳ୍ପ-ପ୍ରତିଭାର ସମୀକ୍ଷା କରାଗଲେ ଉତ୍ତରକାଳ କୃତିରେ ତାଙ୍କ ଶୈଳୀ ଓ ଟେକ୍‌ନିକ୍‌ର କୌଣସି ପରିବର୍ତ୍ତନ ପରିଲକ୍ଷିତ ହୁଏ ନାହିଁ ।

ତାଙ୍କର 'ମୁକ୍ତାଗଡ଼ର କ୍ଷୁଧା', 'ଅମରଚିତା' ଓଡ଼ିଶାର ଐତିହାସିକ କ୍ଷୟିଷ୍ଣୁ ସାମନ୍ତବାଦୀଗୋଷ୍ଠୀର ଚରିତ୍ରକୁ ଦୁର୍ଭିକ୍ଷ, ରାଜନୈତିକ ଭୂମିକାରେ ପ୍ରତିଫଳିତ କରାଇପାରିଅଛି । 'ମୁକ୍ତାଗଡ଼ର କ୍ଷୁଧା'ର ଶୁଭକାନ୍ତ ଏକ ଅପୂର୍ବ ସୃଷ୍ଟି । ବିଳାସ-ବ୍ୟସନ ଓ ପ୍ରାଚୁର୍ଯ୍ୟ ମଧ୍ୟରେ ପ୍ରତିପାଳିତ ରାଜା ଚନ୍ଦ୍ରକାନ୍ତ ତାଙ୍କ ରାଣୀ, ପୁଣି ମାତା ଗୌରୀ ଏବଂ କୃଷକରମଣୀ ସୁନାର ସ୍ନେହରେ ବର୍ଦ୍ଧିତ । 'ମୁକ୍ତାଗଡ଼'ର ଶୁଭକାନ୍ତ 'ଅମରଚିତା'ରେ ବିପ୍ଳବୀ ଏବଂ ବୈରାଗ୍ୟପନ୍ଥୀ ଚରିତ୍ରରେ ପରିଣତ ହୋଇଅଛନ୍ତି । ପ୍ରଥମ ପର୍ଯ୍ୟାୟରେ ଶୁଭକାନ୍ତ ଆଉ ତାଙ୍କର ବିଳାସବ୍ୟସନପରିପୂର୍ଣ୍ଣ ସ୍ତ୍ରୀଙ୍କର ଲଗାମହୀନ ବ୍ୟୟ, ପୁଣି ଅର୍ଥ-ସଂଗ୍ରାହକ ବଳରାମର ଅତ୍ୟାଚାର ଦେଶକୁ ଡାକିଆଣିଥିଲା ଦୁର୍ଭିକ୍ଷ, ଅନଟନ ଆଉ ଦୁର୍ବିପାକ । ଯେଉଁ ରାଣୀଙ୍କର ବିଳାସବ୍ୟସନ, ଜୈବିକ ଉପଭୋଗ ପାଇଁ ସେ ଦିନେ ଅକୁଣ୍ଠିତ ଭାବରେ ସହଯୋଗ କରୁଥିଲେ, ସେହି ନାରୀର ବିଶ୍ୱାସଘାତକତା ହିଁ ହେଲା ବୈରାଗ୍ୟର କାରଣ । ଉପନ୍ୟାସରେ ସନାତନ ହେଉଛି ବିପ୍ଳବୀ, ସ୍ପଷ୍ଟବାଦୀ, ତ୍ୟାଗବୀର ଚରିତ୍ର । ଘଟଣାକ୍ରମରେ ବିଳାସୀ ଶୁଭକାନ୍ତ ସନାତନ ଅପେକ୍ଷା ଅଧିକ ତ୍ୟାଗୀରୂପେ ପ୍ରତିଭାତ । ଆଉ ଏକ ଚରିତ୍ର ହେଉଛି ଅଭିରାମ—ସେ ମଧ୍ୟ ଦୁନିଆର ରଙ୍ଗମଞ୍ଚରେ ଜଣେ ବେପରୁଆ ଅଭିନେତା । ସଂକ୍ଷେପରେ କହିବାକୁ ଗଲେ କାଳନ୍ଦୀଚରଣଙ୍କ ଉପନ୍ୟାସ ଭାଷାର ଆବେଗ, ଗୃହନିକ ବର୍ଣ୍ଣନାଦକ୍ଷତା ଏବଂ ସାଧାରଣ ଜୀବନକୁ ଚିତ୍ରିତ କରିବାର ଅଭିଳାଷ-ଦ୍ୱାରା ନିୟନ୍ତ୍ରିତ ।

ଆଧୁନିକ ଓଡ଼ିଆ ଉପନ୍ୟାସକୁ ସମାଜଭିତ୍ତିକ ବାସ୍ତବଧର୍ମୀ ଏବଂ ଲୋକପ୍ରିୟ କରିବାରେ ସୁପରିଚିତ ଔପନ୍ୟାସିକ କାହ୍ନୁଚରଣଙ୍କର (୧) ସାଧନା ଓ ସିଦ୍ଧି ସର୍ବଜନସ୍ୱୀକୃତ । ଓଡ଼ିଶାର ଗାଁଗହଳର ଉପେକ୍ଷିତ ସରଳ, ନିରାଡ଼ମ୍ବର ଜୀବନର ପୃଷ୍ଠଭୂମିରେ ଶିଳ୍ପ-ଶିକ୍ଷା-ସଂସ୍କୃତି-ପରିପୁଷ୍ଟ ସହରରେ ବର୍ଦ୍ଧିତ ଚରିତ୍ରମାନଙ୍କ ସମନ୍ୱୟରେ ଏହି ପ୍ରଥିତଯଶା କଥାଶିଳ୍ପୀ 'ପଳାତକ'ରୁ 'କ୍ଷଣ କ୍ଷଣକେ ଆନ' ଅର୍ଦ୍ଧ-ଶତାଧିକ ବର୍ଷ ପର୍ଯ୍ୟନ୍ତ ଉପନ୍ୟାସ ରଚନା କରି ଓଡ଼ିଆ ସାହିତ୍ୟରେ ଉଚ୍ଚ ଆସନର ଅଧିକାରୀ ହୋଇପାରିଛନ୍ତି । କଥାବସ୍ତୁ, ଚରିତ୍ର ମନୋନୟନ, ପରିବେଶ, ଜୀବନ-ଦର୍ଶନ ତଥା ଶୈଳୀନୈପୁଣ୍ୟ ଦିଗରେ କାହ୍ନୁଚରଣ ଓଡ଼ିଆ ଉପନ୍ୟାସରେ ଏକ ଯୁଗ ସୃଷ୍ଟି କରିଅଛନ୍ତି । ତାଙ୍କର ଗୋଟିଏ ଗୋଟିଏ ଉପନ୍ୟାସ ସମାଜ ଓ ବ୍ୟକ୍ତିର ରସୋତ୍ତୀର୍ଣ୍ଣ ଚିତ୍ର । ଔପନ୍ୟାସିକ ଭାବରେ ସେ କେତେବେଳେ ରୋମାଣ୍ଟିକ୍, କେତେବେଳେ ବାସ୍ତବବାଦୀ, ପୁଣି କେତେବେଳେ ସମାଜର ଆଦର୍ଶବାଦୀ ସ୍ରଷ୍ଟା । ଓଡ଼ିଶାର ପୁରପଲ୍ଲୀରୁ ସେ ଅସଂଖ୍ୟ ତରୁଣ, ତରୁଣୀ, କୃଷକ, ଜମିଦାର, ଶିକ୍ଷକ, ଗୃହିଣୀ, ଗୃହକର୍ତ୍ରୀଙ୍କୁ ଆବିଷ୍କାର କରି ତାଙ୍କର ଲେଖନୀର ସ୍ପର୍ଶରେ ସେମାନଙ୍କୁ ମୃତ୍ୟୁଞ୍ଜୟ କରିପାରିଛନ୍ତି । ଉପନ୍ୟାସର କଥାବସ୍ତୁ ପାଇଁ ସେ କେବଳ ଓଡ଼ିଶାର ଗ୍ରାମ ଓ ସହରମାନଙ୍କୁ ଧାଇଁଯାଇନାହାନ୍ତି, ମଧ୍ୟବିତ୍ତଶ୍ରେଣୀର ଜନୈକ ସମ୍ବେଦନଶୀଳ ସ୍ରଷ୍ଟାଭାବରେ ଓଡ଼ିଶା ଇତିହାସର ପୃଷ୍ଠା ମଧ୍ୟ ସେ ଲେଉଟାଇଛନ୍ତି । ରୋମାଣ୍ଟିକ୍ ଶିଳ୍ପୀଭାବରେ ଯୌବନର ନିଆଁ ତାଙ୍କ ଉପନ୍ୟାସର ବହୁ ତରୁଣ-ତରୁଣୀଙ୍କୁ ଜାଳିପୋଡ଼ି ମାରିଛି । ପୁଣି ସମାଜ-ସଚେତନତା ଆହୁରି ସେମାନଙ୍କୁ ବିଦଗ୍ଧ କରିଛି । ସହର କିମ୍ବା ପଲ୍ଲୀଜୀବନର ତରୁଣ-ତରୁଣୀଙ୍କର ପ୍ରେମବର୍ଣ୍ଣନା ସତ୍ତ୍ୱେ ତାଙ୍କ ପ୍ରତିପାଦିତ ଚରିତ୍ରସମୂହ ସମାଜ ନିକଟରେ ଯେପରି ନିଯୁତ-ନିର୍ଦ୍ଦିଷ୍ଟ ହୋଇ ଜୀବନକୁ ଜାବୁଡ଼ି ଧରିଛନ୍ତି । କେହି ଅବା ପରିସ୍ଥିତିର ଊର୍ଦ୍ଧ୍ୱକୁ ଉଠିପାରିଛନ୍ତି । କାହ୍ନୁଚରଣ ଯଥାର୍ଥରେ ବାସ୍ତବତାର ଉପାସକ । ଔପନ୍ୟାସିକର ତୀକ୍ଷ୍ଣ ପର୍ଯ୍ୟବେକ୍ଷଣ ଶକ୍ତି ତାଙ୍କ ରଚନାସମୂହକୁ ସ୍ୱାତନ୍ତ୍ର୍ୟ ଦେଇଥାଏ ।

'ବାଲିରାଜା' ଉପନ୍ୟାସରେ ପ୍ରାଚୀନ କଳିଙ୍ଗର ନୌବାଣିଜ୍ୟର ଆଭାସ ମିଳେ ଏବଂ ଉପନ୍ୟାସର କେନ୍ଦ୍ରିକ ଅଭିମୁଖ୍ୟ ଆଲେକ୍‌ଜାଣ୍ଡାର୍ ଡୁମାଙ୍କ 'Count

(୧) ପଳାତକ, ବାଲିରାଜା, ନଷ୍ଟଭିତ୍ତି, ଦୁନିଆଁର ଦାଉ, ହା-ଅନ୍ନ, ଶୁଣ୍ଡି-ବାଇଦ, ବଜ୍ରବାହୁ, ମାନସୀ, ଅଦେଖା ହାତ, ଝଞ୍ଜା, ପ୍ରତୀକ୍ଷା, ଅଭିନେତ୍ରୀ, ତେଉଟେଉକା, ମିଳନର ଛନ୍ଦ, ବନଗହନତଳେ, ବଗବଗୁଲି, ଭଲପାଇବାର ଶେଷକଥା, ଶାସ୍ତି, ଓଲଟପାଲଟ, ପରୀ, ସ୍ୱପ୍ନ ନା ସତ୍ୟ, କା, ତମସାତୀରେ ।

Le Montecristo' ଦ୍ୱାରା ପ୍ରଭାବିତ । ଓଡ଼ିଶାର ୧୮୬୬ ମସିହାର ନ'ଅଙ୍କ ଦୁର୍ଭିକ୍ଷର କରାଳ ଚିତ୍ର 'ହା-ଅନ୍ନ' ଉପନ୍ୟାସର କଥାବସ୍ତୁ । ମାତୃହରା ଉମା ଦୁର୍ଭିକ୍ଷର ଗ୍ରାସରେ ଭୋକ-ଉପାସରେ ନିର୍ଯାତିତା । ତା' ପ୍ରାଣର ଜଗୁ ଭାଇର ସଂଗ୍ରାମ, ଶେଷରେ ଉମା ଆଉ ଜଗୁର ମିଳନ ଉପନ୍ୟାସଟିକୁ ରସୋତ୍ତୀର୍ଣ୍ଣ କରି ପାରିଛି । 'ଭୁଲିହୁଏନା' ଉପନ୍ୟାସରେ ଏକଦା ନିଜର ପ୍ରେମିକା ରଞ୍ଜନା ନିକଟରେ ଅଶୋକଙ୍କର ଛଳନା ସମାଜକୁ ଫାଙ୍କି ଦେଇ ପାରିନାହିଁ । ତାଙ୍କ ଔରସରେ ଜାତ ହୋଇଥିବା ଶିଶୁ ଅରକ୍ଷିତ ଯେପରି ତାଙ୍କ ସମ୍ମୁଖରେ ଏକ ବିରାଟ ପ୍ରଶ୍ନବାଚୀ । ସଭ୍ୟତା ଓ ବିବର୍ତ୍ତନବାଦର ଇତିହାସ ସନାତନ ବାବାଙ୍କର ପ୍ରେତ ମୁହଁରୁ ଆଦିମ ମଣିଷର ଇତିହାସ ଶୁଣିବାରେ 'ଶଙ୍ଖ' ଉପନ୍ୟାସଟି ପରିକଳ୍ପିତ । 'ବଗବଗୁଲି'·ହେଉଛି ଅସିତ ଏବଂ ଅତସୀର ପ୍ରେମ ଜରିଆରେ ସମାଜର ତରୁଣ-ତରୁଣୀଙ୍କର ଚେତନ ଓ ଅବଚେତନ ମନର କାହାଣୀ । ବାଲ୍ୟ-ବିବାହ ଏବଂ ବିଧବା-ବିବାହ ସମସ୍ୟାର ଏକ ଅଶ୍ରୁଳ ସ୍ମାରକୀ ସଦୃଶ ବିଧବା ହୀରାମଣିର ନିର୍ଯାତିତ ଜୀବନର ଅବସାନ ଘଟିଛି ବ୍ରଜ ସହିତ ତା'ର ବିବାହରେ । 'ପଳାତକ'ରେ ବିପ୍ରଚରଣ, ସାଧୁଚରଣ, କୁନ୍ତଳତା, ଶୈଳବାଳା ଏବଂ କୋକିଳଙ୍କ ସଦୃଶ ଚରିତ୍ରମାଧ୍ୟମରେ ପାରିବାରିକ ଏବଂ ସାମାଜିକ ପରିପ୍ରେକ୍ଷୀରେ ଈର୍ଷା, ବିଦ୍ୱେଷ ଏବଂ ପ୍ରତାରଣାର ଚିତ୍ର ହିଁ ପରିସ୍ଫୁଟ ହୋଇଛି । ବାଉଁଶଘର ଝିଅ ଫୁଲି ଆଉ ଗୁଣ ସାଆନ୍ତେ—ଉଭୟଙ୍କର ମନର ମିଳନ ଘଟିଯାଇଛି; ମାତ୍ର ଦେହର ମିଳନ ବିନା ମିଳନ କ'ଣ ପୂର୍ଣ୍ଣ ହୁଏ ? ଗୁଣ ସାଆନ୍ତେ ତାଙ୍କର ବାଲ୍ୟ ବିବାହିତା ସ୍ତ୍ରୀ ବୀଣା ଏବଂ ତାଙ୍କ ମନର ମୂର୍ତ୍ତି ଫୁଲି, ଏହି ଦ୍ୱନ୍ଦ୍ୱ ହିଁ 'ଭଲ ପାଇବାର ଶେଷ କଥା' । 'ଏପାରି ସେପାରି'ରେ ସମୁଦ୍ରକୂଳିଆ କୁଜଙ୍ଗଗଡ଼ ମାଟିର ସଦେଇ ସାଉ, ତା'ର ସ୍ତ୍ରୀ ଚେମି, ସେମାନଙ୍କର ପୁଅ ଝିଅ ପେଚ ଓ ଚଇଁଆ । ପେଚର ମାଣିଆ ସହିତ ବିବାହ, ପେଚର ଗୋଡ଼ ଭାଙ୍ଗିଯିବା ପରେ ମାଣିଆ ଚମ୍ପାକୁ ପୁଣି ବାହା ହେବା, ପେଚ ତା'ର ଭାଇ ଚଇଁଆକୁ ଗୁହାଁ ପଢ଼ିବା, ସୁନାକୁ ଚଇଁଆ ବାହା ହେବା ପରେ ସେ ବଦଳିଯାଇଛି, ପେଚ ଆଦରର ଭାଇ ଚଇଁଆର ପ୍ରହାର ସହ୍ୟ କରିଛି । ଶେଷରେ ଘଟଣାକ୍ରମେ ପେଚ ମଣିଆ ଆଉ ଚମ୍ପାର ସନ୍ତାନମାନଙ୍କର ଜନନୀ-ରୂପେ ଦାୟିତ୍ୱ ନେଇଛି । ଅନ୍ଧାର ମୂଳକ ସୁରଙ୍ଗ ରାଜ୍ୟରେ ରାଜଶକ୍ତିର ପାଶବିକ ଲାଳସା, ଅତ୍ୟାଚାର ବିରୋଧରେ ଜନତାର ସଫଳ ବିଦ୍ରୋହ ହିଁ 'ସ୍ୱପ୍ନ ନା ସତ୍ୟ' ଉପନ୍ୟାସର ଉପଜୀବ୍ୟ । ବାବାଜୀ ଆତ୍ମାରାମ ଉପନ୍ୟାସର ନାୟକ ଚରିତ୍ର । ସାମାଜିକ ଉପନ୍ୟାସ 'ଅଦେଖା ହାତ'ରେ ଗାଁ ଟାଉଟରମାନଙ୍କ କୁଟିଳ ଅତ୍ୟାଚାରରେ ସରଳା ନିରୀହା ଝିଅମାନଙ୍କର ଦୁଃଖ, ଦୁର୍ଗତି, ନିର୍ଯାତନା, ଅବିବାହିତା ଗୀତା ଏବଂ ବିବାହିତ ଦାମ ଚରିତ୍ର ମାଧ୍ୟମରେ ପ୍ରତିଫଳିତ । ଗୀତାର

କରୁଣ ଜୀବନରେ 'ଅଦେଖା ହାତ'ର ପ୍ରଭାବ ଉପନ୍ୟାସରେ ବର୍ଣ୍ଣିତ । ଗ୍ରାମ-ପରିସରରେ ବର୍ଦ୍ଧିତ ଅଲଅଲି ଝିଅ 'ପରୀ'ର କାହାଣୀ ବଡ଼ ମର୍ମନ୍ତୁଦ ଭାବରେ ରଚିତ । ଖୁଡ଼ୀଙ୍କର ଅତ୍ୟାଚାର, ପରେ ପରୀର ଜୀବନରେ ପରିବର୍ତ୍ତନ, 'ପରୀ' ଉପନ୍ୟାସର ଗଳ୍ପାଂଶ । 'ଦୁଣ୍ଡିବାଇଦ'ରେ ପରିବାରର ବୋହୂ ତୁଳସୀ ଉପରେ ସ୍ୱାମୀଙ୍କ ମୃତ୍ୟୁ ପରେ ନାନା ସାମାଜିକ ପ୍ରତିବନ୍ଧକ, ଲୋଭ, ମୋହର ଶରବ୍ୟ ହୋଇଛି ଏବଂ ସୁର ଦିଅରକୁ ବାହା କରିନାହିଁ; ବରଂ ଶେଷରେ ସେ ତାକୁ ଛବି ସହିତ ବାହା କରାଇଦେଇଛି—'ଦୁଣ୍ଡି ବାଇଦ'ର ଶତ ଅପବାଦର ସୀମାରୁ ସେ ବହୁ ଦୂରରେ ନିଜର ପବିତ୍ରତା ପ୍ରମାଣିତ କରିପାରିଛି । ଶିକ୍ଷିତ ତୁଷାରର ଅଭିଶପ୍ତ ଦରିଦ୍ର ଜୀବନ, ଅନ୍ୟ ପକ୍ଷରେ ଆଦର୍ଶବାଦୀ ଦୁଷ୍ମନ୍ତ ଚରିତ୍ର । କ୍ଷଣପ୍ରଭା ସଦୃଶ ପତିବ୍ରତା, ସେବାପରାୟଣା ସ୍ତ୍ରୀର ଆତ୍ମୋତ୍ସର୍ଗ, ଈର୍ଷାପରାୟଣା ହେମାଙ୍ଗିନୀ, କ୍ଷିଣପ୍ରଭାର ପବିତ୍ରତାର ବାରମ୍ବାର ପରୀକ୍ଷା—'ଝଞ୍ଜା' ଉପନ୍ୟାସରେ ଏହାହିଁ ବର୍ଣ୍ଣିତ ଚରିତ୍ରିକ ଉପସଂହାର । ମେଧାବିନୀ ଛାତ୍ରୀ ରଶ୍ମି ଅଧ୍ୟାପିକା ହୋଇଛି; ମାତ୍ର ତା' ଦେହର ରକ୍ତମାଂସର ନିଆଁର ତାତିରେ ସେ ଜଳିଉଠିଛି; ତେଣୁ ଗୃହୀଜୀବନର କଠୋର ପ୍ରତିଜ୍ଞା ପାଣିପରି ମିଳେଇଯାଇଛି । ବୀରେନ୍ଦ୍ରଙ୍କ ସହିତ ରଶ୍ମିର ବିବାହ ହୋଇଛି । ଜୀବନଟା ଖାଲି ପରାଜୟ ଏବଂ ଦୁର୍ବଳତାର ପ୍ରତୀକ ବୋଲି ରଶ୍ମି ସ୍ୱୀକାର କରିନେଇଛି । 'ଶାନ୍ତି' ଉପନ୍ୟାସରେ ସମସ୍ତ ସାମାଜିକ ଅତ୍ୟାଚାର, ନିର୍ଯ୍ୟାତନାର ଶରବ୍ୟ ହୋଇ ସନେଇ ପରିଡ଼ା ଯେପରି ନୂତନ ସମାଜ ଗଢ଼ିବା ପାଇଁ ଦୁର୍ଭିକ୍ଷର ସର୍ବଗ୍ରାସୀ କବଳରୁ ବଞ୍ଚିଯାଇଛି । ମାତ୍ର ସମାଜ ଦୃଷ୍ଟିରେ ସେ ଅପବିତ୍ର; ସେ ପତିତ । ସମାଜର ପ୍ରତିକ୍ରିୟାଶୀଳ ଶକ୍ତି ତନ୍ତ୍ରେଇ ଯୋଉଁ । ଧୋବା ସମାଜ ଭୟରେ ସନେଇକୁ ବାହା ହୋଇପାରିନାହିଁ । ତା ଜୀବନରେ ଆସିଛି ଭ୍ରଷ୍ଟଚରିତ୍ରା—କଇଁ । 'ସମାଜ'ର ଯାବତୀୟ ବ୍ୟଭିଚାର ପ୍ରତି ସମସ୍ତେ ଅଙ୍ଗୁଳି ନିର୍ଦ୍ଦେଶ କରିଛନ୍ତି । ସ୍ୱାମୀ-ସୋହାଗିନୀ ନନ୍ଦିକା ତା'ର ସଉତୁଣୀ ଲଳିତା ଆଉ ସ୍ୱାମୀ ସୁନନ୍ଦଙ୍କ ଜୀବନର ଘଟଣାବଳୀ 'କା' ଉପନ୍ୟାସର ଆଧାର । ପ୍ରଥମେ ନନ୍ଦିକା ନିଃସନ୍ତାନ ଥିଲେ; ମାତ୍ର ସ୍ୱାମୀର ପୁନଃ ବିବାହ ପରେ ସେ ହୋଇଛି ସନ୍ତାନର ଜନନୀ । ଦୁଇଟି ନାରୀର ସ୍ୱାମୀପ୍ରତି ଯେଉଁ କ୍ରିୟା ପ୍ରତିକ୍ରିୟା, ତାହାହିଁ ଉପନ୍ୟାସରେ ଦକ୍ଷତାର ସହିତ ପ୍ରତିଫଳିତ । କେବଳ ରାଜନୈତିକ ସ୍ୱାଧୀନତା କାମ୍ୟ ନୁହେଁ, କି ସ୍ୱାଧୀନତା ତଦ୍ଦ୍ୱାରା ପୂର୍ଣ୍ଣାଙ୍ଗ ନୁହେଁ । ତେଣୁ ଦେଶରେ ଅର୍ଥନୈତିକ ଓ ସାମାଜିକ ସ୍ୱାଚ୍ଛନ୍ଦ୍ୟ ଓ ଆତ୍ମନିର୍ଭରଶୀଳତା ପ୍ରଥମେ ଆବଶ୍ୟକ; ଯାହା ଫଳରେ ଶାନ୍ତିପୂର୍ଣ୍ଣ ନୂତନ ବିପ୍ଳବ ମାଧ୍ୟମରେ ନୂତନ ଭାରତ, ନୂତନ ସମାଜ ପ୍ରତିଷ୍ଠିତ ହେବ । ସାମନ୍ତବାଦୀ ପରିବାରର ସୁବ୍ରତ ଖଦଡ଼ ଲୁଗା ପିନ୍ଧି, ଝୁଲିମୁଣି ଧରି ବାହାରିଛି ନବଭାରତ ଗଠନ ପାଇଁ । ରଣସିଂହ ଆଉ ରାଜମାତା ରାଜପ୍ରାସାଦରୁ ଖସି-

ଆସିଛନ୍ତି ଗ୍ରାମଦାଣ୍ଡକୁ । ଆହତ ବଜ୍ରବାହୁଙ୍କୁ ବାହା ହୋଇଛି; କିନ୍ତୁ ସମସ୍ତଙ୍କର ଲକ୍ଷ୍ୟ ହୋଇଛି—ଦେଶଗଠନ ଏବଂ ରାମରାଜ୍ୟ ପ୍ରତିଷ୍ଠା । 'ଉଦଣ୍ଡୀ', 'ଡେଉଡେଉକା', 'ପରକୀୟା', 'ପ୍ରତୀକ୍ଷା', 'ଝଡ଼ର ଶେଷ', 'ଦୁନିଆଁର ଦାଉ', 'ଓଲଟପାଲଟ' ହେଉଛି ଲେଖକଙ୍କର ସାମାଜିକ ବିଶ୍ଳେଷଣ ଧାରାରେ ଲିଖିତ ଉପନ୍ୟାସ । 'ଇତିହି' ୧୯୪୬ ମସିହାର ଓଡ଼ିଶାର ପାଂଶକୁଦ ପାଲୁର ଅଞ୍ଚଳର ଝଡ଼ବାତ୍ୟାକୁ କେନ୍ଦ୍ର କରି ଲିଖିତ । ତାଙ୍କର 'ତମସାତୀରେ' ଏବଂ ଏପିକ୍‌ଧର୍ମୀ ଉପନ୍ୟାସ । ପୂର୍ବ-ବଙ୍ଗର ବାସଚ୍ୟୁତ ଶରଣାର୍ଥୀମାନଙ୍କର କରୁଣ କାହାଣୀ ମାଧ୍ୟମରେ ଲେଖକ ଯେପରି ଏକ ସାର୍ବଜନୀନ ମାନବିକ ପ୍ରଶ୍ନର ଉତ୍ଥାପନ କରି-ପାରିଛନ୍ତି । ଜାତିଧର୍ମର ବିଦ୍ୱେଷ, ସାଂପ୍ରଦାୟିକ ମତାନ୍ଧତା ସର୍ବାଦୌ ନିନ୍ଦନୀୟ, ଘୃଣ୍ୟ ଏବଂ ମାନବିକ ମୈତ୍ରୀ ହିଁ ହେଉଛି ସାର୍ବଜନୀନ ସତ୍ୟ । ତପସ୍ୱିନୀ-ଜୀବନର ପ୍ରତିମୂର୍ତ୍ତି ଅନିମା ହିଁ 'ତମସାତୀରେ'ର ଆବିଷ୍କୃତ ଚରିତ୍ର । ଦାରିଦ୍ର୍ୟ, ବୈଧବ୍ୟ, ପାରିବାରିକ ମନୋମାଳିନ୍ୟ, ସାଂପ୍ରଦାୟିକ ଅଶାନ୍ତି, ମଦ୍ୟପାନ, ବ୍ୟଭିଚାର ପ୍ରଭୃତି ସମସ୍ୟାର ଗୁମ୍ଫନରେ ଏହି ଉପନ୍ୟାସଟି ଏକ ସାର୍ଥକ କୃତିଭାବରେ ସ୍ୱୀକୃତ ।

ସଂକ୍ଷେପରେ କହିବାକୁ ଗଲେ ଔପନ୍ୟାସିକ କାହ୍ନୁଚରଣଙ୍କର ବିବିଧ ସୃଷ୍ଟିର ଗଳ୍ପାଂଶ, ସମସ୍ୟା, ଚିନ୍ତା-ପରିସର ବ୍ୟାପକ ଏବଂ ତାଙ୍କ ଉପନ୍ୟାସ ସମୂହର ଚେତନା ନିଶ୍ଚିତଭାବରେ ସମାଜ ଅଭିମୁଖୀ ଏବଂ ତାଙ୍କ ପ୍ରଚାରିତ ଆଦର୍ଶ ହେଉଛି ଯୁଗଧର୍ମର ଆଦର୍ଶ ।

ଆଲୋଚ୍ୟ ଯୁଗର ଅନ୍ୟତମ ଶ୍ରେଷ୍ଠ କଥାଶିଳ୍ପୀ ଭାବେ ଶ୍ରୀଯୁକ୍ତ ଗୋପୀନାଥ ମହାନ୍ତି ସମ୍ମାନିତ ଆସନର ଅଧିକାରୀ । (୧) ଓଡ଼ିଆ ଉପନ୍ୟାସର ରୂପବିଭବ, ଗୁଣାତ୍ମକ ମର୍ଯ୍ୟାଦା ଏବଂ ଆଙ୍ଗିକ ସୌନ୍ଦର୍ଯ୍ୟସାଧନ କରିବାରେ ଶ୍ରୀଯୁକ୍ତ ମହାନ୍ତି ହେଉଛନ୍ତି ଓଡ଼ିଆ ସାହିତ୍ୟର ଶକ୍ତିଶାଳୀ ସାଧକ । ପୁନଶ୍ଚ, ବନପର୍ବତସଙ୍କୁଳ ଓଡ଼ିଶାର କୋରାପୁଟ ଜିଲାର ଆଦିବାସୀ ସଂପ୍ରଦାୟକୁ ଓଡ଼ିଆ ସାହିତ୍ୟରେ ରୂପାୟିତ କରିବାରେ ସେ ହେଉଛନ୍ତି ଅଗ୍ରଣୀ । ବିଶେଷତଃ ଜୀବନ ଓ ସମାଜ ପ୍ରତି ତାଙ୍କର ପ୍ରଖର ବୌଦ୍ଧିକ ଦୃଷ୍ଟିକୋଣ ଉଲ୍ଲେଖଯୋଗ୍ୟ । ବ୍ୟକ୍ତି, ପରିବାର ଓ ସମାଜର ଅନୁଭୂତି, ଅଭିଜ୍ଞତା, ସାମାଜିକ ସଂଘର୍ଷ, ଦ୍ୱନ୍ଦ୍ୱ, ଅର୍ଥନୈତିକ ବୈଷମ୍ୟ, ଦାରିଦ୍ର୍ୟ

---

(୧) ସପନମାଟି (୧୯୪୮), ପରଜା (୧୯୪୬), ଦାଦିବୁଢ଼ା (୧୯୩୮), ଅମୃତର ସନ୍ତାନ (୧୯୪୯), ହରିଜନ (୧୯୪୮), ଦାନାପାଣି (୧୯୫୫), ଶିବଭାଇ (୧୯୫୫), ଅପହଂଚ (୧୯୫୫), ଦୁଇପହର (୧୯୫୫), ମନଗହିରର ଚାଷ, ଲୟ-ବିଲୟ (୧୯୬୧), ରାହୁର ଛାୟା, ମାଟିମଟାଳ (୧୯୬୪), ଛନ୍ତୀକାର (୧୯୬୩), ଶରତ୍‌ବାବୁଙ୍କ ଗଳି (୧୯୪୯),

ତାଙ୍କ ଉପନ୍ୟାସସମୂହରେ ପ୍ରତିଫଳିତ । ତାଙ୍କ ଉପନ୍ୟାସ ରଚନାର ସମୟ ୧୯୩୮ ମସିହାଠାରୁ ୧୯୭୦ ମସିହା ମଧ୍ୟରେ ପରିବ୍ୟାପ୍ତ । ଶିଳ୍ପଦକ୍ଷତା, ଶବ୍ଦ-ଯୋଜନା, ପ୍ରକାଶଭଙ୍ଗୀ ତାଙ୍କର ସୃଷ୍ଟିକୁ ସ୍ୱାତନ୍ତ୍ର୍ୟମଣ୍ଡିତ କରିଛି । 'ପରଜା', 'ଅମୃତର ସନ୍ତାନ', 'ଦାନାପାଣି' ସଦୃଶ ତାଙ୍କର କେତେକ ଉପନ୍ୟାସ ଓଡ଼ିଆ ଜୀବନ ଓ ସମାଜର ଶିଳ୍ପମଣ୍ଡିତ ଗଦ୍ୟକାବ୍ୟର ସମ୍ମାନ ଲାଭକରିଅଛି । ଆଦିବାସୀ ଅଞ୍ଚଳ ସର୍ଗୁପଦର ଗ୍ରାମର ସୁକ୍ରୁ ଜାନି, ତା'ର ଜିଲି, ବିଲି ଦୁଇ ଝିଅ ଏବଂ ମାଣ୍ଡିଆ, ଟିକ୍ରା ଦୁଇପୁଅ । ଜିଲିର ଯୌବନ ଉପରେ ଫରେଷ୍ଟ ଗାର୍ଡ଼ର ଲୋଲୁପଦୃଷ୍ଟି, ସୁକ୍ରୁ ଜାନି ପରିବାର ଉପରେ ଅତ୍ୟାଚାର, ଦାନାକନାର ଅଭାବ, ସାମନ୍ତବାଦୀ ରାମଚନ୍ଦ୍ର, ସାହୁକାରର ଅତ୍ୟାଚାର, ସୁକ୍ରୁ ଜାନିର ସର୍ବସ୍ୱ ଅପହରଣ ପାଇଁ ସାହୁ-କାରର ଚକ୍ରାନ୍ତ, ଜିଲି ଆଉ ବିଲିର ପଦସ୍ଖଳନ, ଶେଷରେ ବଣଜଙ୍ଗଲ ମୁଲକର ଅବହେଳିତ ସରଳ ଆଦିବାସୀ ସୁକ୍ରୁ ଜାନିର ପ୍ରତିଶୋଧଲିପ୍ସା, ଗୋତିପଣ, ପରାଧୀନତା, ଦୁନିଆଁର ଜଟିଳତାକୁ ଲେଖକ ନଗ୍ନଭାବରେ ବର୍ଣ୍ଣନା କରି-ଥିଲେଛନ୍ତି । ତେବେ ଉପନ୍ୟାସରେ 'ଜିଲି'ର ଜୀବନରେ ଯେଉଁ ପଦସ୍ଖଳନ, ଇଚ୍ଛାକୃତ ଦେହ ଅର୍ପଣ, ତାହା ବିତୃଷ୍ଣ । ନାକଧରିପୁର ମେହେନ୍ତର ବସ୍ତିର ଜମିଦାର ଅବିନାଶବାବୁଙ୍କ ଦ୍ୱିତଳ ପ୍ରାସାଦ ହିଁ 'ହରିଜନ' ଉପନ୍ୟାସର ମାନଚିତ୍ର । ଅବିନାଶବାବୁ ତାଙ୍କର ପତ୍ନୀ ରମା, ରକ୍ଷିତା ଗୃହକର୍ତ୍ତ୍ରୀ ଯଶୋଦା, ତାଙ୍କର ପୁତ୍ର ଅଘୋର, କନ୍ୟା ମାନମୟୀ । ଜେମା ମେହେନ୍ତରାଣୀର ଝିଅ ପୁନି ( ଅବିନାଶ ବାବୁଙ୍କ ଔରସରେ), ରଙ୍ଗ, ଠେଙ୍ଗି, କଙ୍କଲମଣି, ସନେଇ, ଦୋକାନୀ, ଧନୀବୁଢ଼ା ଚରିତ୍ରମାନଙ୍କୁ, ବିଶେଷତଃ ହରିଜନପଡ଼ାର ସୁଖଦୁଃଖକୁ ନେଇ ଉପନ୍ୟାସଟି ଲିଖିତ । ଅଶ୍ରୁ, ବିକ୍ଷୋଭ ଏବଂ ବିପର୍ଯ୍ୟୟର କାହାଣୀ, ଓଡ଼ିଶାର ବଣ-ଜଙ୍ଗଲର ସବୁଜ ପରିବେଶରେ ସଭ୍ୟତାର ଅନ୍ତରାଳରେ ଯେଉଁ ସରଳ, ସୌନ୍ଦର୍ଯ୍ୟମୟ ଜୀବନର ଆତଯାତ, ସେହି ଜୀବନର କାବ୍ୟିକ ପରିପ୍ରକାଶ ହେଉଛି 'ଅମୃତର ସନ୍ତାନ' । କନ୍ଧବୁଢ଼ା ସରବୁ, ତା'ର ଭାଇ ଲେଞ୍ଜୁ କନ୍ଧ, ପୁଅ ଦିଉଡ଼ୁ, ଝିଅ ପୁବୁଲି, ବୋହୂ ପୁୟୁ ପ୍ରଭୃତିଙ୍କର ଅବତାରଣାରୁ ଉପନ୍ୟାସର ଆରମ୍ଭ । ଦିଉଡ଼ୁ ଆଉ ପୁୟୁ ଉଭୟେ ସ୍ତ୍ରୀ ପୁରୁଷ । ସେମାନଙ୍କର ନବଜାତକ ହାକିନା; କିନ୍ତୁ ସେମାନଙ୍କର ଦାମ୍ପତ୍ୟ ଜୀବନ ବିପର୍ଯ୍ୟସ୍ତ ହୁଏ ଯେତେବେଳେ ଦିଉଡ଼ୁ ଯାଇ 'ବଲକା' ଗାଆଁର ପିଓଟିକୁ ସେ ଉଦୁଲିଆ ବିବାହ କରେ । ପୁୟୁ ଆଖିରୁ ଅଶ୍ରୁ ପ୍ରସ୍ରବଣ ପ୍ରବାହିତ ହୁଏ । ସୁନାପାଇଁ ଲେଞ୍ଜୁ କନ୍ଧର ବ୍ୟର୍ଥ ଲାଳସା, ପୁୟୁର ମାତୃହୃଦୟର ବିଳାପ ଉପନ୍ୟାସର ଆବେଗ ବୃଦ୍ଧି କରିପାରିଛି । ଆଦିବାସୀ ସମାଜର ବିଭିନ୍ନ ସମସ୍ୟାର କରୁଣା ପ୍ରତୀକରୂପେ 'ପୁୟୁ' ଚରିତ୍ର ପ୍ରତିଭାତ । 'ଅପହଂଚ' ସଦୃଶ କ୍ଷୁଦ୍ର ଉପନ୍ୟାସର କଥା-ବସ୍ତୁ ହେଉଛି ଗାନ୍ଧୀବାଦ, ଗ୍ରାମଦାନ ଏବଂ ସମବାୟ ସଂଗଠନର ଆହ୍ୱାନ । କନ୍ଧ

ଅଞ୍ଚଳରୁ ହିମା ଶିକ୍ଷିତ ହୋଇ ଦେଖାଦିଏ ଏବଂ କନ୍ଧ ସଂପ୍ରଦାୟର ସମସ୍ୟା ସମାଧାନରେ ଲାଗିପଡ଼େ । 'ଶିବଭାଇ'ରେ କର୍ମୀମାନେ ବିନୋବାଙ୍କର ସର୍ବୋଦୟ, ସମନ୍ୱୟ ବାର୍ତ୍ତା ପ୍ରଚାର କରିବାଲାଗି ଆଗେଇଯାଇଛନ୍ତି । ନନ୍ଦ କନ୍ଧର ଜ୍ୱାଇଁ ଶିବ, ପୁଣି ଜଗନ୍ନାଥ ଭାଇ, ଡୁମ୍ବୁଗୁଡ଼ା ପ୍ରାଥମିକ ବିଦ୍ୟାଳୟର ଶିକ୍ଷୟିତ୍ରୀ ଜୁନ ଅପା, ପାର୍ବତୀ, ମୁକ୍ତା ପ୍ରଭୃତି ଚରିତ୍ରଙ୍କୁ ନେଇ ଉପନ୍ୟାସଟି ଗଢ଼ିକରି ଶେଷରେ ଏକ ନିର୍ଦ୍ଦିଷ୍ଟ ଆଦର୍ଶ ପ୍ରଖ୍ୟାପନଧର୍ମୀ ପରିଣତିରେ ଉପନୀତ ହୋଇପାରିଛି । ଉପନ୍ୟାସ 'ରାହୁର ଛାୟା' ନାରୀ ମନସ୍ତତ୍ତ୍ୱ, ଯୌନକାମନା ତଥା ଉପଭୋଗ-ଲାଲସାର କେନ୍ଦ୍ର-ବିନ୍ଦୁରୂପେ ପରିକଳ୍ପିତ । ଜୀବନଜିଜ୍ଞାସା ତଥା ଯୌନକ୍ଷୁଧାକୁ କେନ୍ଦ୍ର କରି ପୋଲିସ ଅଫିସରଙ୍କ ଉଚ୍ଚଶିକ୍ଷିତା କନ୍ୟା ସତୀ, ସତୀର ବିକ୍ଷୁବ୍ଧ କାମଜର୍ଜରିତ ଶିକ୍ଷୟିତ୍ରୀ ଜୀବନ, ଡନମା, ଦୀପାଳୀ, କୁଙ୍କୁମ, ସନ୍ଧ୍ୟାତାରା, ବିଦ୍ୟାସୁନ୍ଦରୀ, ଗଙ୍ଗାମା, ପ୍ରେମିକ ସମୀର, ଇନ୍ସୁରେନ୍ସ ଏଜେଣ୍ଟ ନବେନ୍ଦୁ, କଲେଜଛାତ୍ର ସ୍ତବକ ବିଭୂତି, ପୁନଷ୍ଟ ଇଂରାଜୀ ସାହେବ ମିଷ୍ଟର ଡେ' ସମସ୍ତେ ଯେପରି ଘୂରିବୁଲିଛନ୍ତି । ଶେଷରେ ରାହୁଗ୍ରସ୍ତା ଉଆଁସୀ କନ୍ୟା ସତୀ ମିଷ୍ଟର ଡେ'ଙ୍କୁ ବିବାହ କରିଛି । ନାରୀ ଏହି ଉପନ୍ୟାସରେ କାମନାର ଜ୍ୱଳନ୍ତ ଅଗ୍ନିଶିଖାରୂପେ ପ୍ରତିଭାତ । ନିୟମ ଶୃଙ୍ଖଳା ପରମ୍ପରାବଦ୍ଧ ସମାଜର ବୁଢ଼ିଆଣୀଜାଲ ମଧ୍ୟରେ ଆଧୁନିକା ଶିକ୍ଷିତା ନାରୀମନ ବର୍ବର ବିଳାପ କରିଉଠିଛି । ଦେହର ସ୍ଥାପତ୍ୟର ବନ୍ଦାପନା ଯେପରି ଫ୍ରୟେଡ୍‌ଙ୍କର ଦର୍ଶନ 'ରାହୁର ଛାୟା'ରେ ଉଚ୍ଚାରିତ ମନ୍ତ୍ର ।

ବାସ୍ତବଧର୍ମୀ ଉପନ୍ୟାସ 'ଦାନାପାଣି' ଆଧୁନିକ ଚାକିରିସର୍ବସ୍ୱ, ଅର୍ଥ-ଲୋଲୁପ ସ୍ୱାର୍ଥପ୍ରଣୋଦିତ ଜୀବନର ସାର୍ଥକ ପ୍ରତିଛବି ତଥା କିରାଣୀଜୀବନର କରୁଣ ସନେଟ୍ । ଜୀବନସଂଗ୍ରାମରେ ପୂର୍ବପୁରୁଷର ପରଂପରା, ସଭ୍ୟତା, ରୁଚିସ୍ୱାଦ, ମାନବିକତା ସବୁକିଛି ସ୍ରୋତମୁହଁରେ କୁଟାକାଠି ପରି ଉଭେଇଯାଇଛି । ବଳଦେବ ଦାସ ନିଜର ଚାକିରିରେ ପଦୋନ୍ନତି ବଜାୟ ରଖିବା ପାଇଁ ଘୁଷୁରି ଘୁଅ ସାଉଁଟିଛି । ତା'ର ସ୍ତ୍ରୀ ସରୋଜିନୀ, ମିଷ୍ଟର ଶର୍ମା ଓ ରଞ୍ଜିତ ସିଂହର ଯୌନକ୍ଷୁଧାର ଶିକାର ହୋଇଛି ଜାଣି ଜାଣି । ସମସ୍ତ ମାନବିକ, ସାଂସ୍କୃତିକ ଏବଂ ନୀତିବୋଧ ଉପରେ ଦାନାପାଣି ଓ ପଦୋନ୍ନତିର ଯୋଗାଡ଼ ଯେପରି ପଦାଘାତ କରିଛି । ବଳଦେବର ଏପରି କଳୁଷିତ ସ୍ୱାର୍ଥ-ବିଳସିତ ପଶୁଚରିତ୍ର ସହିତ ଆଦର୍ଶବାଦୀ ବନୁ ଚରିତ୍ର ବେଶ୍ ତୁଳନୀୟ । ସରୋଜିନୀ ଅନ୍ତଃସତ୍ତ୍ୱା ହୋଇଛି । ମୋଟର ଗାଡ଼ିରେ ବସିଛି, ଦାନାପାଣିର ସଂଘର୍ଷରେ ବୈଷୟିକ ସଫଳତାର ଅଧିକାରିଣୀ ହୋଇପାରିଛି । କ୍ଲବ, ପାର୍ଟି, ଡାକବଙ୍ଗଳା, ଉଚ୍ଛୃଙ୍ଖଳ ଯୌନାଚାର—ଏସବୁ ମଧ୍ୟରେ ମଣିଷ ବଳଦେବ ପାଲଟିଛି ପଶୁ ଆଉ ହେନ୍‌ପେକ୍ । 'ସପନ ମାଟି'ରେ ପୁଞ୍ଜିବାଦବିରୋଧୀ ଛାତ୍ର ସମାଜର ସଂଗ୍ରାମର ସମୀଚୀନତା ଉପଜୀବ୍ୟ । ଇଂରେଜୀ ଏମ୍. ଏ. ଶ୍ରେଣୀ ଛାତ୍ର ମାଧବ ପ୍ରଧାନ ଜଣେ ଆଦର୍ଶବାଦୀ, ସୁବକ୍ତା, କବି, ଛାତ୍ରନେତା ଏବଂ କୁଆଁତାରା

ମେସ୍ ହେଉଛି ରହିବାର ସ୍ଥାନ, ଅନ୍ୟ ପକ୍ଷରେ ତା'ର ସହାଧ୍ୟାୟୀଗଣ । କିନ୍ତୁ କଲମ୍ବାଲିକ କେ. ସି. ଦାସଙ୍କ ଝିଅ ସୁପ୍ରଭା ସହ ଯାଦବର ସଂପର୍କ ସ୍ଥାପନ, ପୁଣି କଲେଜ ଧର୍ମଘଟ ପର୍ଯ୍ୟାୟରେ ଯାଦବ ଓ ସୁପ୍ରଭା ପକ୍ଷରେ ମୀତିଗତ ସଂଘର୍ଷର କାରଣ ହୋଇଛି । ସନ୍ତ୍ରାସବାଦୀ ୪୨ ନମ୍ବର ଦଳ ଶୁଭ୍ରା, ଛନ୍ଦାଙ୍କ ନେତୃତ୍ୱରେ ବିପ୍ଳବ ପାଇଁ ଆହ୍ୱାନ ଦିଏ । ତେଣେ ଯାଦବ ଆଉ ସୁପ୍ରଭା ନିର୍ଜନ ନଦୀକୂଳରେ ଜ୍ୟୋତ୍ସ୍ନାବିହାର କରନ୍ତି । ପରେ ଅବଶ୍ୟ ଯାଦବ ବିପ୍ଳବୀଦଳରେ ଯୋଗଦେଇଛି । ସଂକ୍ଷେପରେ କହିବାକୁ ଗଲେ ଗାନ୍ଧୀବାଦର ପ୍ରଭାବରେ ପ୍ରଭାବିତ କଲେଜ ଛାତ୍ରଛାତ୍ରୀମାନେ 'ସପନ ମାଟି'ରେ ବର୍ଣ୍ଣିତ । ଅହିଂସା ମାଧ୍ୟମରେ ହିଂସ୍ରସମାଜରେ ସପନର ସୁନାମାଟି ପ୍ରତିଷ୍ଠାନ ସମ୍ଭବ ହେବ—ସମ୍ଭବତଃ ଏହାହିଁ ଔପନ୍ୟାସିକଙ୍କର ସୂଚନା ।

କଲିକତାର ତରୁଣ ଶ୍ରେୟ, ପତ୍ନୀ କାନ୍ତିମୟୀ ଏବଂ ସେମାନଙ୍କ କନ୍ୟା ଛଳନା ଏହିପରି ତିନୋଟି ତୀର୍ଥଯାତ୍ରୀଙ୍କର ପୁରୀରେ ତିନଦିନିଆ ରହଣିର ପରିସର ମଧ୍ୟରେ 'ଲୟବିଲୟ' ଉପନ୍ୟାସ ପରିକଳ୍ପିତ । ପୁରୀଠାରେ ମହୋଦଧି ହିଁ ଉପନ୍ୟାସ ବର୍ଣ୍ଣିତ ଚରିତ୍ରସମୂହର ସମସ୍ତ ଉତ୍କଣ୍ଠା, ଆବେଗ, କଳ୍ପନା, ଭାବନାର ହୋଇଛି କେନ୍ଦ୍ରବିନ୍ଦୁ । ଶ୍ରୀକ୍ଷେତ୍ର ଏବଂ ମହୋଦଧିର ବର୍ଣ୍ଣନାତୀତ ରହସ୍ୟମୟ ପରିବେଶର ସ୍ପର୍ଶରେ ଉପନ୍ୟାସର ପ୍ରତ୍ୟେକ ପୃଷ୍ଠା ଯେପରି ଉଜ୍ଜ୍ୱଳ ହୋଇ ପାରିଛି । ଏକଦିଗରେ ଉତ୍ତାଳ ତରଙ୍ଗ ଫେନାକୁଳ ସମୁଦ୍ର, ଅନ୍ୟ ଦିଗରେ ମାନବିକ ଚେତନା, ଜୀବନର କ୍ଷଣଭଙ୍ଗୁରତା, ବ୍ୟକ୍ତିର ଜିଜ୍ଞାସା, ଦ୍ୱନ୍ଦ୍ୱ ଉପନ୍ୟାସଟିକୁ ମନସ୍ତାତ୍ତ୍ୱିକ ତଥା ଦାର୍ଶନିକ ବିଶ୍ଳେଷଣସର୍ବସ୍ୱ କରିଦେଇଛି । 'ଲୟବିଲୟ' ଉପନ୍ୟାସରେ ଚେତନାପ୍ରବାହ ପରିଲକ୍ଷିତ ହୋଇଥାଏ । ପର୍ଯ୍ୟଟନ ଶେଷରେ ବିଭିନ୍ନ ଚରିତ୍ର ଉପରେ ମହୋଦଧି ଏବଂ ପୁରୁଷୋତ୍ତମ କ୍ଷେତ୍ରର ସାମଗ୍ରିକ ପ୍ରଭାବ ବେଶ୍ ଅନୁମେୟ । ସମୁଦ୍ର ଯେପରି ସମସ୍ତଙ୍କୁ ତା'ର ଲୁଣିଆ ଚପଳ ଢେଉରେ ଏବଂ ଅଳସେଇ ପବନରେ ଧୋଇ ଦେଇ ମୁକ୍ତ, ନିର୍ମଳ, ପବିତ୍ର ଏବଂ ବେପରୁଆ ତଥା ଅନ୍ତର୍ମୁଖୀ କରିପାରିଛି ।

'ଦାଦିବୁଢ଼ା' ବସ୍ତୁତଃ ଔପନ୍ୟାସିକଙ୍କର ଆଦିବାସୀ ସମାଜ ଓ ସଂସ୍କୃତି ଅଧ୍ୟୟନର ପ୍ରଥମ ଅଧ୍ୟାୟ । ଗ୍ରାମ ନାଏକର ପୁଅ ଠେଙ୍ଗା ଜାନି ଆଉ ଅଲେଇ ବିଶୋଇର ଡମୁଣୀ ଝିଅ ସନ୍ତୋଷ କୁମାରୀର ଅସବର୍ଣ୍ଣ ଉଦୁଲିଆ ବିବାହ ଉପନ୍ୟାସର ଉପଜୀବ୍ୟ । 'ଦାଦିବୁଢ଼ା' ହେଉଛି ଅଭିଷିକ୍ତ ଖଜୁରି ଗଛ; ଯାହାର ଗୃହପାଖେ ବ୍ରଜର ଗୋପାଙ୍ଗନାମାନଙ୍କ ସଦୃଶ ଆଦିବାସୀ ଝିଅମାନେ ଉପାସନା କରି ଘୂରିବୁଲନ୍ତି ।

ପଲ୍ଲୀଜୀବନଭିତ୍ତିକ 'ଜନ୍ତ୍ରୀକାର' ଉପନ୍ୟାସ ସମସାମୟିକ ଦେଶରେ ଜାତୀୟ ସଂକଟକୁ କେନ୍ଦ୍ର କରି ଲିଖିତ ଏବଂ ଏହାର ଆଭିମୁଖ୍ୟ ହେଉଛି ଶତ୍ରୁର

ବଳିଷ୍ଠ ପ୍ରତିରୋଧ, ଜନଜାଗରଣ ଏବଂ ନାରୀଜାଗରଣ । କେଉଁ ଦିନର ଅପନ୍ତରା ଧୂମନ୍ତ ଡାମରା ଗାଁ; ସେହି ଗାଁର ବ୍ୟାପକ ଜାଗରଣ ପାଇଁ ଲେଖକ ଉପନ୍ୟାସରେ ଗ୍ରାମବାସୀଙ୍କୁ ଆହ୍ୱାନ ଶୁଣାଇଛନ୍ତି । ପୃଷ୍ଠଭୂମି ହେଉଛି—ଗାଆଁର ମଦନ ଓଝାର ଶାଳଘର । କୃଷ୍ଣ ମିଶ୍ରେ, ସ୍ତ୍ରୀ ନିର୍ମଳା ଦେବୀଙ୍କୁ କେନ୍ଦ୍ର କରି ରସା, ବୁଧିଆ, ନଟ, ଦଧି ପ୍ରତ୍ୟେକ ଚରିତ୍ର ଯେପରି ଉଜ୍ଜୀବିତ ।

'ମାଟିମଟାଳ' ହେଉଛି ଲେଖକଙ୍କର ସର୍ବାପେକ୍ଷା ଦୀର୍ଘକାୟ କୃତି । ଆଦର୍ଶ ଏବଂ ଜୀବନ୍ତ ମଣିଷସମାଜ ଗଠନ ଏହାର ଲକ୍ଷ୍ୟ । ବନ୍ଧମୂଳ ଗାଆଁର ବଟ ମହାନ୍ତିଙ୍କ ପୁଅ ରବି ବି. ଏ. ପାଶ୍ କରିଛି । ସହରକୁ ଚାକିରି କରିବାକୁ ଯାଇ ଚାକିରି ନ କରି ଗାଆଁକୁ ଫେରିଆସିଛି । ବାଟରେ ପାଟେଲୀ ଗାଆଁର ସିନ୍ଧୁ ଚୌଧୁରୀଙ୍କ ଝିଅ ଛବି ସହିତ ତା'ର ସାକ୍ଷାତ ହୁଏ । ରବି ସହିତ ଛବିର ବିବାହ ପ୍ରସ୍ତାବରେ ବଟ ମହାନ୍ତି ବିଲ୍‌କୁଲ ନାରାଜ । ଗାଆଁର ଉନ୍ନୟନ କାର୍ଯ୍ୟରେ ରବି ବ୍ୟସ୍ତ; ମାତ୍ର ତାଙ୍କର ପିତା ପ୍ରଜାମାନଙ୍କୁ ଶୋଷଣ କରିବାରେ ବ୍ୟସ୍ତ । ମୋତି କାଳୁଣୀ ପୁଅ ମୂଳି ଦଳେଇର ପାଞ୍ଚମାଣ ଜମିକୁ ସେ କରଗତ କରିପାରିଛି । ପିତାଙ୍କ ପ୍ରଜାସ୍ୱାର୍ଥବିରୋଧୀ କାର୍ଯ୍ୟ ପସନ୍ଦ କରିନପାରି ରବି ଫୁଲଶରୀ ଗାଆଁକୁ ଚାଲିଯାଇଛି । ସୁଭଦ୍ରାପୁର ମେଳଣରେ ସଂସ୍କାରକ ରବି ଆହତ ହୋଇଛି, ଏହି ବାର୍ତ୍ତା ଛବି ଘରେ ପହଞ୍ଚିଛି ଅନ୍ତର୍ମୁଖୀ ନାରୀ । ଛବି ଏହାପରେ ରବିର ଆଦର୍ଶରେ ଯେପରି ଅନୁପ୍ରାଣିତ ହୋଇ ଗ୍ରାମସେବାରେ ନିଜକୁ ଉତ୍ସର୍ଗ କରି ଦେଇଛି । ଦୁର୍ଦ୍ଦିନରେ ରବି ଏବଂ ଛବି ଉଭୟେ ନିଜ ନିଜ ଶକ୍ତି-ସାମର୍ଥ୍ୟ ଦେଇ ଦୁର୍ଗତଙ୍କ ସେବା ପାଇଁ ଆଗେଇଯାଇଛନ୍ତି । ଘଟଣାପ୍ରବାହରେ ନୀରବ ସାଧିକା ଛବି ଆଉ ସାଧକ ରବିର ସାକ୍ଷାତ ହୁଏ ବିଜେଶ୍ୱର ମନ୍ଦିର ପଠାରେ । କିନ୍ତୁ ଛବିଠାରେ ଦେହର ଉତ୍ତେଜନାର ପ୍ରଶ୍ନ ନଥିଲା । କାରଣ ଆର୍ତ୍ତ ସମାଜର ସେବା ପାଇଁ ସେ ନିଜକୁ ଉତ୍ସର୍ଗ କରିଦେଇଥିଲା । ଫୁଲଶରୀ ପାଟେଲି ଗାଁ—ଏକ ନୂତନ ସମାଜ ଗଠନ ଦିଗରେ ଆଗେଇଚାଲେ । ଗାଁର ରାସ୍ତା ନିର୍ମାଣ ପାଇଁ ଛବି ନିଜ ମୁଣ୍ଡରେ ମାଟି ବୋହୁଛି; ଗାଁକୁ ଗାଁ ବୁଲୁଛି; ମହିଳା ସମିତି ଗଢ଼ିଛି; ମୈତ୍ରୀର ବାର୍ତ୍ତା ପ୍ରଚାର କରୁଛି; ଆଉ ମନେ ମନେ ରବିକୁ ତା'ର ହୃଦୟରେ ଗ୍ରହଣ କରିସାରିଛି । ତା'ର ଚହଲା କୁଆଁରୀ ଜୀବନର ସମସ୍ତ ସ୍ୱପ୍ନ ସେହି ଫୁଲଶରୀ ଗାଁ ଦିଗରେ ଧାଇଁଛି । ଏହି ଉପନ୍ୟାସଟି ଗ୍ରାମ୍ୟ ସଂସ୍କୃତି, ଜଳବାୟୁ ଓ ପାଣି-ପାଗରେ ନିଖୁଣଭାବରେ ପରିକଳ୍ପିତ । ଗାଁର ଅସଂଖ୍ୟ ଚରିତ୍ର ଉପନ୍ୟାସରେ ଉଦ୍‌ଘାଟିତ; ଯଥା—ଧୋବେଇ ମିଶ୍ର, ଚଇଁ ମଲିକ, ଦରି ଗଉଡ଼, ଧୂଷା, ବଣିଆ, ନଖିଆ, ଲୁରୁପା, କଣ୍ଡେଇ ଓଝା ପ୍ରଭୃତି । ବିଶେଷତଃ ନିର୍ଜ୍ଜନ ଗ୍ରାମ୍ୟ ପ୍ରକୃତିର ରସାତୁର ରୂପବର୍ଣ୍ଣନାରେ ଏହି ଉପନ୍ୟାସ କାବ୍ୟିକ ମର୍ଯ୍ୟାଦାରେ ଅଧିଷ୍ଠିତ ହୋଇପାରିଛି ।

ଉପରୋକ୍ତ ଆଲୋଚନାରୁ ଜଣାଯାଏ ଯେ ଗୋପୀ ବାବୁ ଜଣେ ସମ୍ବେଦନଶୀଳ ଜୀବନବାଦୀ କଥାଶିଳ୍ପୀ । ସମାଜ ଓ ସଭ୍ୟତା ସହିତ ତାଳଦେଇ ବିଭିନ୍ନ ପରିବେଶରୁ ଚରିତ୍ରମାନଙ୍କୁ ଗୋଟେଇ ଆଣି ସଂଯୋଜିତ ଗଳ୍ପାଂଶ ମଧ୍ୟରେ ପୂର୍ଣ୍ଣ ପ୍ରକଟିତ କରିବା ତାଙ୍କର ବାହାଦୁରି । କାବ୍ୟିକ ବର୍ଣ୍ଣନା ଏବଂ ମାପଚୁପ୍ ଭାଷା ତାଙ୍କ ଶୈଳୀର ଲକ୍ଷଣ ।

ରାଜକିଶୋର ପଟ୍ଟନାୟକ ଏହି ଯୁଗର ଜଣେ ପ୍ରତିଭାଶାଳୀ ଔପନ୍ୟାସିକ । (୧) ଉଭୟ ଗୁଣାତ୍ମକ ଏବଂ ସଂଖ୍ୟାତ୍ମକ ବିଗ୍ଭରରେ ତାଙ୍କର ଉପନ୍ୟାସସମୂହ ସ୍ୱକୀୟତାମଣ୍ଡିତ । ତାଙ୍କର ଅଧିକାଂଶ ଉପନ୍ୟାସ ବର୍ଣ୍ଣନାତ୍ମକ । ତାଙ୍କ ସୃଷ୍ଟିର ସ୍ୱର ରୋମାଣ୍ଟିକ ହେଲେହେଁ ଜୀବନର ବିଶାଳ ଭିତ୍ତିଭୂମି ଉପରେ ଠିଆହୋଇ ଲେଖକ ସମାଜ ପ୍ରତି ସମବେଦନାର ଦୃଷ୍ଟି ଢାଳିଛନ୍ତି । ବିଶେଷତଃ, ସଭ୍ୟ ଶିକ୍ଷିତ ସହର ପରିବେଶରେ ନବାନୁରାଗଜର୍ଜ୍ଜରିତ ତରୁଣ ପ୍ରେମିକ ଏବଂ ତରୁଣୀ ପ୍ରେମିକାଙ୍କର ପରସ୍ପର ପ୍ରତିକ୍ରିୟା ଅଙ୍କନରେ ଶ୍ରୀଯୁକ୍ତ ପଟ୍ଟନାୟକ ଯେପରି ସିଦ୍ଧହସ୍ତ । ପ୍ରେମରାଜ୍ୟରେ ମନର ମଣିଷ ଖୋଜିବାରେ ତାଙ୍କର ଅଧିକାଂଶ ଉପନ୍ୟାସ ଯେପରି ଉତ୍ସୃଷ୍ଟ ! ପ୍ରେମର ଅସରନ୍ତି କଥା, ବିରହିଣୀର ଏକାନ୍ତ ଅଭିସାର, ପ୍ରେମିକର ଆତ୍ମକଥା, ସନ୍ତ୍ରବତିର ଜ୍ୱାଳାରେ ପ୍ରେମର ଜ୍ୱଳନ, ପ୍ରେମ ଆଉ ପରକୀୟା ଚର୍ଚ୍ଚିତ ବାଟରେ ଚାଲିବାର ଆନନ୍ଦ, ପ୍ରେମ-ଛଳଛଳ ତରୁଣୀର କୁହୁଡ଼ି ପହଁରା, ପ୍ରେମିକ-ପ୍ରେମିକାଙ୍କର ବିରହାଶ୍ରୁରେ ଭସାମେଘର ପ୍ଳାବନ; ପୁନଶ୍ଚ, ସବୁ ମାନମୟୀ ନବଯୌବନା ନାୟିକାମାନଙ୍କର ଲୁକ୍କାୟିତ ଆବେଗର ସ୍ଫୁରଣ ମଧ୍ୟରେ କପାଳର ସିନ୍ଦୂରଗାର ଏବଂ ଅଶ୍ରୁଧୌତ କଜ୍ଜଳଗାର ଏହି ବିଦଗ୍ଧ କଥାଶିଳ୍ପୀଙ୍କର କାହାଣୀର ବ୍ୟାପକ ପରିଧିରେ ବରାବର ଉଦ୍ଭାସିତ ହୋଇଥାଏ । ପ୍ରେମର ସଂଜ୍ଞା କଣ ? ପ୍ରେମର ନିବିଡ଼ ଅରଣ୍ୟ ମଧ୍ୟରେ ମନମଣିଷର ସ୍ଥିତି କେଉଁଠି ? ଜୀବନରେ ବାଟ ଚାଲିବାରେ ନାୟିକା ସ୍ୱାତୀ ଏବଂ ପ୍ରେମିକ ଅମରେନ୍ଦ୍ରଙ୍କର ଲକ୍ଷ୍ୟ କେଉଁଠି ? ସେମାନେ ସତେ ଅବା ମିଳିତ କଣ୍ଠରେ ଉଚ୍ଚାରଣ କରିଛନ୍ତି—"ଲୋକେ ଯାହା କରନ୍ତୁ ବା କହନ୍ତୁ ପ୍ରେମ ଗୋଟାଏ ରୋଗ । ବୟସରେ ବାଲ ପାଚିଲା ପରି ପ୍ରେମ ମନ ଉପରେ ତା'ର ରଙ୍ଗ ଲଗାଇ ଛାଡ଼ିଦିଏ, ଫଗୁଖେଳର ରଙ୍ଗ ପରି ସେ ମଣିଷକୁ ରଙ୍ଗେଇଦିଏ" (ବିରହିଣୀ) । ଲେଖକଙ୍କ ସିଦ୍ଧାନ୍ତ ହେଲା- "ଭଲପାଇବାର ବାଟ ଏକ ଅମୁହାଁ ଗଳି" (ଚଲାବାଟ) । ମଣିଷର ଯୌନକାମନା ଅସରନ୍ତି । ନାରୀ ଓ ପୁରୁଷର ସମସ୍ତ ସମ୍ବନ୍ଧ ମୂଳରେ

(୧) ଅରସନ୍ତି, ସ୍ମୃତିର ମଶାଣି, ବିରହିଣୀ, ପ୍ରେମିକର ଡାଏରୀ, ସନ୍ତ୍ରବତି, ଚଲାବାଟ, ସ୍ୱପନ କୁହୁଡ଼ି, ଭସାମେଘ, ସିନ୍ଦୂରଗାର, କଜ୍ଜଳଗାର ।

ପ୍ରଥମତଃ ଏହି ଯୌନକାମନା ନହିଁ । ଲେଖକଙ୍କର ପ୍ରତ୍ୟେକ ଉପନ୍ୟାସରେ ତରୁଣ ଆଉ ତରୁଣୀ ଏକ ମାନସୀ ପ୍ରତିମାକୁ ନେଇ ଘାଣ୍ଟି ହୋଇଛନ୍ତି । ଅଚଖା ପ୍ରେମର ରୋମାଞ୍ଚକର ସ୍ପର୍ଶରେ ସେମାନେ ଅଧୀର; ଫଳରେ ସେମାନେ ଏକ ଗ୍ଲାନିରେ ଗଢ଼ା । ତାଙ୍କର ପ୍ରତ୍ୟେକ ନାୟକ ଓ ନାୟିକା ବିବାହ ପୂର୍ବରୁ ପ୍ରେମର ଶରବ୍ୟ ହୋଇଛନ୍ତି । ସେଥିପାଇଁ ଧରାବନ୍ଧା ବିବାହ ପରେ ସେମାନେ ଅଭୁଲା ସ୍ମୃତିରେ ଘାରିହୋଇଛନ୍ତି । ସମାଜରେ ବୈବାହିକ ଶୃଙ୍ଖଳାରକ୍ଷାରେ ସେମାନେ କେତେଦୂର ସମର୍ଥ, ତାହା ବିଚାର୍ଯ୍ୟ । ନାରୀ ମନର ଅକୁହା କାହାଣୀ ନିକଟରେ ମନର ମଣିଷ ହିଁ ସର୍ବଦା ସ୍ପଷ୍ଟ ପ୍ରତିଭାତ ହୋଇପାରିଛି ।

ନିତ୍ୟାନନ୍ଦ ମହାପାତ୍ର (୧୯୧୨) ଜଣେ ବିଦଗ୍ଧ ଔପନ୍ୟାସିକ । ନାୟକ-ନାୟିକାଙ୍କର ପ୍ରେମରେ ହିଁ ତାଙ୍କ ଉପନ୍ୟାସର ଆରମ୍ଭ, ଗତି ଏବଂ ପରିଣତି । 'ପ୍ରେମରୁ ବିବାହ କି ବିବାହରୁ ପ୍ରେମ' ଏହା ଯେପରି ତାଙ୍କର ଉପନ୍ୟାସବର୍ଣ୍ଣିତ ନାୟକ-ନାୟିକାଙ୍କ ସମ୍ମୁଖରେ ଏକ ଅସମାହିତ ପ୍ରଶ୍ନବାଚୀ । ତାଙ୍କର ଉପନ୍ୟାସ ଗୁଡ଼ିକ (୧) ତରୁଣ-ତରୁଣୀଙ୍କ ଆବେଗବିହ୍ୱଳ ପ୍ରେମ, ଆସକ୍ତି, ଆକର୍ଷଣକୈନ୍ଦ୍ରିକ ହେଲେହେଁ ଆଖ୍ୟାନ ବସ୍ତୁରେ କେତେକ ସ୍ୱତନ୍ତ୍ରତା ପରିଲକ୍ଷିତ । ଲେଖକ ଭାରତର ସ୍ୱାଧୀନତା-ସଂଗ୍ରାମର ସତ୍ୟ, ଅହିଂସା, ଅସହଯୋଗ ଆଦର୍ଶରେ ବିଶେଷଭାବରେ ଅନୁପ୍ରାଣିତ ହୋଇଥିବାରୁ ତାଙ୍କ ଉପନ୍ୟାସରେ ତାଙ୍କର ସେହି ସଂଗ୍ରାମୀ-ଜୀବନର ସୂଚନା ପ୍ରତିଫଳିତ ହୋଇପାରିଛି । ବୁଦ୍ଧିଜୀବୀ, ସ୍ୱାଧୀନତାସଂଗ୍ରାମୀ ଅଥଚ ବୟସର ପ୍ରେମଦାବରେ ବିହ୍ୱଳିତ, ଏତାଦୃଶ ବ୍ୟକ୍ତିତ୍ୱ ହିଁ ତାଙ୍କ ଉପନ୍ୟାସବର୍ଣ୍ଣିତ ନାୟକ-ମାନଙ୍କଠାରେ ପ୍ରତିଫଳିତ । ତାଙ୍କ ଉପନ୍ୟାସଗୁଡ଼ିକ ଆଦର୍ଶପ୍ରଧାନ ଏବଂ ସ୍ଥିତି-ପ୍ରଧାନ । 'ହିଡ଼ମାଟି'ରେ ରତନୀ ଆଉ ଶୁକ୍ରୁର ଦାରିଦ୍ର୍ୟପିଷ୍ଟ ଜୀବନର କରୁଣ ହାହାକାର, ସମାଜର ଅସହାୟତା ତଥା ଜାତିଗତ ଅର୍ଥନୈତିକ ବୈଷମ୍ୟ ପ୍ରଦର୍ଶିତ । 'ଜୀଅନ୍ତା ମଣିଷ'ରେ ବିଧବା ଚପଲା ଏବଂ ଆଶ୍ରିତ ଯୁବକ ଭିକାରିର ପରସ୍ପର ପ୍ରତି ଆକର୍ଷଣ, ତା ପରେ ଭିକାରିକୁ ତ୍ୟାଗକରି ଚପଲା ନିଜ ଦିଅର ପ୍ରତି ଆକୃଷ୍ଟ ହେବା, ପ୍ରଥମେ ନିଜର ସ୍ୱାମୀ, ତା'ପରେ ଯୁବକ ଭିକାରି, ତା'ପରେ ନିଜ ଦିଅର—ଏପରି ତିନିଜଣ ପୁରୁଷଙ୍କୁ କେନ୍ଦ୍ରକରି ଚପଲାର ନାରୀମନ ଘୂରିବୁଲିଛି । ଔପନ୍ୟାସିକ ସ୍ୱାଧୀନତା ଆନ୍ଦୋଳନ ସମୟରେ କାରାବରଣ କରିଥିଲେ । ବନ୍ଦୀଜୀବନରେ ଭାବପ୍ରବଣ ତରୁଣ ପ୍ରେମିକ ମନର ଗୁଞ୍ଜନ ଯେପରି ତାଙ୍କ

(୧) ଭୁଲ (୧୯୪୫), ହିଡ଼ମାଟି, ଭଙ୍ଗାହାଡ଼ (୧୯୪୮), ଜୀବନର ଲକ୍ଷ୍ୟ (୧୯୪୫), ପୀତେଇପଥ ଖସଡ଼ା, ଜୀଅନ୍ତା ମଣିଷ, ସୁଖର ସନ୍ଧାନେ (୧୯୫୮)

ଉପନ୍ୟାସରେ ଅନୁରଞ୍ଜିତ ହୋଇପାରିଛି । 'ଜୀବନର ଲକ୍ଷ୍ୟ' ଓ 'ସୁଖର ସନ୍ଧାନେ' ଉପନ୍ୟାସରେ ଲେଖକ କହିଛନ୍ତି ଯେ ଜୀବନର ଲକ୍ଷ୍ୟ କେବଳ ଜୀବନ ନୁହେଁ । ପ୍ରକୃତ ସୁଖ ପାଇଁ କାମନା ପରିତ୍ୟାଗ କରିବା ଆବଶ୍ୟକ । ଲେଖକଙ୍କ ଉପନ୍ୟାସରେ ଗ୍ରାମ୍ୟ ପରିବେଶ, ସାମାଜିକ ଚଳଣିର ବର୍ଣ୍ଣନା ନିଖୁଣ ହୋଇପାରିଛି । ଆଦର୍ଶ ପ୍ରେମିକର ବ୍ୟାଖ୍ୟା 'ପୀରତି ପଥ ଖସଡ଼ା'ରେ ସୂଚିତ । ପ୍ରେମ ମଣିଷକୁ ଦେବତା କରିଥାଏ, ମାତ୍ର କାମନା, ଯୌନଲାଳସା ଆଉ ପ୍ରେମ ଏକ କଥା ନୁହେଁ । ଔପନ୍ୟାସିକ ଏହି ପ୍ରସଙ୍ଗରେ ସଚେତନ ।

ସାଂପ୍ରତିକ ଯୁଗରେ ଚନ୍ଦ୍ରମଣି ଦାସ (୧୯୧୬-୭୩) ଜଣେ ଲୋକପ୍ରିୟ ବାସ୍ତବବାଦୀ ଔପନ୍ୟାସିକ (୧) ଏବଂ ପଲ୍ଲୀଜୀବନରେ ତରୁଣ-ତରୁଣୀଙ୍କର ପ୍ରେମ-ପ୍ରଣୟ ହିଁ ତାଙ୍କ କଥାଶିଳ୍ପର ଆଖ୍ୟାନବସ୍ତୁ ରୂପେ ଗୃହୀତ ଏବଂ ସେଥିମଧ୍ୟରେ ରକ୍ଷଣଶୀଳତା, ଜାତିଭେଦ, ସାମନ୍ତବାଦୀ ଆଭିଜାତ୍ୟ, ଦରିଦ୍ର ନିଷ୍ପେଷିତ ଜୀବନର ବୈଷମ୍ୟ ହିଁ ସୂଚିତ । ପୁନଶ୍ଚ ରକ୍ଷଣଶୀଳ ବିବାହପଦ୍ଧତି ଏବଂ ଭଲପାଇ ବିବାହ କରିବା ପ୍ରଥା, ଏହି ଦୁଇ ସାମାଜିକ ଆଦର୍ଶର ଦ୍ୱନ୍ଦ୍ୱ ଏବଂ ସଙ୍ଘର୍ଷରେ ତାଙ୍କ ଉପନ୍ୟାସର ଅଧିକାଂଶ ଚରିତ୍ର ଜର୍ଜରିତ । ଯୌନକାମନା, ଯୌନଲାଳସା, ବୟସର ଦାବିକୁ ଲେଖକ ତରୁଣ ତରୁଣୀଙ୍କର ସ୍ୱାଭାବିକ ପ୍ରବୃତ୍ତିର ଆଖ୍ୟା ଦେଇ ବାଲ୍ୟବିଧବା ପ୍ରଥା ବିରୋଧରେ ବିଦ୍ରୋହ କରିଛନ୍ତି । ଜନରବ, ଗ୍ରାମରେ ଭୁଆସୁଣୀ ଝିଅମାନଙ୍କର ଅଶେଷ ନିର୍ଯାତନା ଏବଂ ଦୁଃଖର କାରଣ—ଏହା ମଧ୍ୟ ତାଙ୍କ ଉପନ୍ୟାସରେ ପ୍ରତିପାଦିତ । 'ପଲ୍ଲୀରେଣୁ'ରେ ନରୁ ଓ ଶରତ୍ ମଧ୍ୟରେ ଥିବା ଅନାବିଳ ପ୍ରେମ ସମାଜର ବଡ଼-ପଣ୍ଡାଙ୍କ ଦୃଷ୍ଟିରେ ସମାଲୋଚିତ; ଅଥଚ ପଚିଶ ବର୍ଷ ବୟସରେ ବୃଦ୍ଧ ପ୍ରାଣଧନ ବାବୁ ଷୋଡ଼ଶୀ ତରୁଣୀକୁ ବିବାହ କରିପାରନ୍ତି ଏବଂ ନିଜ କନ୍ୟାର ପୁନଃ ବିବାହବେଳକୁ ପୋଥିପୁରାଣର ଅନୁଶାସନ ଖୁବ୍ ମାନି ଚଳିପାରନ୍ତି । ସମାଜ ତଳେ ନବଯୌବନା ତରୁଣୀ କଠୋର ବୈଧବ୍ୟ ନିୟମର ବଶବର୍ତ୍ତୀ । ଲକ୍ଷ୍ମୀ ଡାକ୍ତରଙ୍କୁ ମନେ ମନେ ଚାହିଁବା କିମ୍ବା ଜଗୁ ପ୍ରତି ଆସକ୍ତ ହେବାରେ ଭଲପାଇବାର ସ୍ୱାଭାବିକତା ହିଁ ପରିଲକ୍ଷିତ । ଲେଖକ କହିବାକୁ ଚାହାନ୍ତି, ଯେ ଯାହାକୁ ଭଲପାଏ, ସେ ତାକୁ ଜୀବନ ଦେଇ ଭଲପାଏ । ସମାଜ ହିଁ ସ୍ତ୍ରୀ ପୁରୁଷଙ୍କୁ ଅନେକ ସମୟରେ ଅସାମାଜିକ କାର୍ଯ୍ୟ କରିବାକୁ ବାଧ୍ୟ କରାଏ । ଲକ୍ଷ୍ମୀ ସେଥିପାଇଁ ବିଦ୍ରୋହ କରିଛି

---

(୧) ଜୁଆରଭଟ୍ଟା, ଧରାସ୍ୱର୍ଗ, ଅନାଥାଶ୍ରମ, ପ୍ରେତପୁରୀର ଚନ୍ଦ୍ରାଧର, ମଳକଟିଆ ଗୌରୀ, ହରିଦାହି, ଜନ୍ମଜନ୍ମାନ୍ତର, ପଲ୍ଲୀରେଣୁ, ମଣିଷ ଶିକାର, ପୂର୍ଣ୍ଣଚ୍ଛେଦ, ନରବଳି, ଭୁଲ କାହାର, ସେ ଓ ମୁଁ, ମୋ ରାଣି, ବିଷବଲ୍ଲରୀ, ପୁରୀ ଏକ୍ସପ୍ରେସ୍, ମାୟାପୁରୀ, ଆରମ୍ଭ ଓ ଶେଷ, ରଜନୀଗନ୍ଧା ।

*

ଏବଂ ତା'ପରେ ନିର୍ଯ୍ୟାତିତା ବାଳିକାଙ୍କୁ ରକ୍ଷା କରିପାରିଛି । "ନରବଳି"ରେ ଶୋଷକ ଶାସକ ଏବଂ ଜମିଦାରଗୋଷ୍ଠୀର ଦୁଃସ୍ୱାର୍ଥ, ଯଥା—ପ୍ରଜାଶୋଷଣ, ଅତ୍ୟାଚାର, ବିଳାସବ୍ୟସନ, ପାଶ୍ଚାତ୍ୟ ସଭ୍ୟତାଭ୍ରଷ୍ଟ ଶିକ୍ଷିତଶ୍ରେଣୀର ମଦ୍ୟପାନ ଏବଂ ଚରିତ୍ରହୀନତା ପ୍ରତି ବ୍ୟଙ୍ଗ କରାଯାଇଛି । 'ଧରି ସ୍ୱର୍ଗ'ରେ ଶ୍ରୀକାନ୍ତ, ରେଣୁକା, 'ଜୁଆର ଭଟ୍ଟା'ରେ ସୁରେଶ, ମାଧୁରୀ, 'ଅନାଥାଶ୍ରମ'ରେ ସୁରେନ୍ଦ୍ର ପ୍ରଭୃତି ଚରିତ୍ରର ହୀନ ଆଚରଣ ତଥା ପ୍ରତାରଣାରେ ସମାଜ କଳୁଷିତ; ଅଥଚ 'ପୂର୍ଣ୍ଣିମା' ହିନ୍ଦୁ ସଭ୍ୟତା ଓ ସଂସ୍କୃତିର ପ୍ରତିମୂର୍ତ୍ତିରୂପେ ଚିତ୍ରିତ । ଔପନ୍ୟାସିକ ଜାତୀୟତା ଓ ସ୍ୱଦେଶ ସଂସ୍କୃତି ପ୍ରତି ସଚେତନ ଥିଲେ । ତାଙ୍କର ଏକାଧିକ ଉପନ୍ୟାସରେ ବିଭିନ୍ନ ଚରିତ୍ର; ଯଥା—ଜନସେବକ ଜମିଦାର ନରେନ୍ଦ୍ର ବାବୁ, ପ୍ରଜାହିତକାମୀ ଘନଶ୍ୟାମ ବାବୁଙ୍କ ବିରୋଧରେ ତୋଷାମୋଦକାରୀ ନରହରି ସାମନ୍ତରାୟ, ଅତ୍ୟାଚାରୀ ଜମିଦାର ଗୋପୀନାଥ ରାୟବାହାଦୁର, ହରି ମିଶ୍ର, ବିଶ୍ୱରପନ୍ଥ ଜୟଗୋପାଳ ବାବୁଙ୍କ ସଦ୍ଗୁଣ ଚରିତ୍ରର ସମାବେଶ ଆଦର୍ଶଗତ ସଙ୍ଘର୍ଷର ପରିଚୟ ଦିଏ । 'ଜୁଆରଭଟ୍ଟା'ରେ ବିଜୟ, ପୂର୍ଣ୍ଣିମା, 'ରଜନୀଗନ୍ଧା'ରେ ନଷ୍ଟ ଓ ସେବ, 'ପୂର୍ଣ୍ଣଚ୍ଛେଦ'ରେ ଦେବେନ୍ଦ୍ର ଓ ଶକୁନ୍ତଳାର ପ୍ରେମ କିମ୍ବା ସଂସ୍କାରକ ରବିର ମଲ୍ଲିକ ଝିଅ ପ୍ରତି ଆସକ୍ତି, 'ସାତପରି'ରେ ଗୋପୀ ବିରୀଲର ଝିଅ ସହିତ ବଂଶୀର ସାମୟିକ ସମ୍ବନ୍ଧ ପରେ ଦୁଲି ସହିତ ମିଳନ, 'ଭୁଲ କାହାର'ରେ ଗଭୀର ଗ୍ରନ୍ଥିରେ ରାଜକିଶୋର ଏବଂ ସୁରମାର ବାରମ୍ବାର ମିଳନ ସମାଜରେ ପ୍ରଥମେ ପରକୀୟା ପ୍ରେମର ରସାସ୍ୱାଦନର ନିଦର୍ଶନରୂପେ ପ୍ରତିଭାତ । ଔପନ୍ୟାସିକଙ୍କ ଉପନ୍ୟାସରେ ନିର୍ଦ୍ଦିଷ୍ଟ ଜୀବନଦର୍ଶନ ପ୍ରତିଫଳିତ । ତାହା ହେଉଛି—ଈଶ୍ୱରଙ୍କ ରାଜ୍ୟରେ ବ୍ୟକ୍ତି ପବିତ୍ର, ସରଳ ଜୀବନଯାପନ କରିବା ଉଚିତ ।

ଆଲୋଚ୍ୟ ଯୁଗରେ ଜ୍ଞାନେନ୍ଦ୍ର ବର୍ମା (୧୯୧୮) ଜଣେ ବିଦଗ୍ଧ ସମାଜ-ସଚେତନ କଥାକାରଭାବେ ପ୍ରତିଷ୍ଠା ଦାବି କରିଥାନ୍ତି । ଦୃଷ୍ଟିକୋଣ, ଆଙ୍ଗିକ ଏବଂ ଆତ୍ମିକ ବିଚାରରେ ତାଙ୍କର କୃତିସମୂହ ବିଶେଷ ସଫଳତାର ଅଧିକାରୀ । ମଧ୍ୟବିତ୍ତଶ୍ରେଣୀର ଜୀବନଚିତ୍ର, ଦାରିଦ୍ର୍ୟ, ଶିକ୍ଷା, ଅନାହାର, ପ୍ରେମ, ସାମାଜିକ କୁସଂସ୍କାର, ସାମନ୍ତବାଦୀ ସଂସ୍ଥା ଲେଖକଙ୍କର ଲେଖନୀରୁ ବାଦ୍ ପଡ଼ିନାହିଁ । ଦେଶର ରାଜନୈତିକ ସ୍ୱାଧୀନତା ହାସଲ ପରେ ଅତୀତର ସାମନ୍ତବାଦ ଏବଂ ନବଜାଗ୍ରତ ତାରୁଣ୍ୟ ମଧ୍ୟରେ ଯେପରି ବରାବର ସଙ୍ଘର୍ଷ ଲାଗିରହିଛି । ଜମିଦାର ରାଜରାଜୁଡ଼ା ସମୟ-ସ୍ରୋତରେ ବିଦାୟ ନେଲେ—ତା'ପରେ ଗ୍ରାମ୍ୟ ଓ ସହର ସ୍ତରରେ ନ୍ୟସ୍ତ-ସ୍ୱାର୍ଥଗୋଷ୍ଠୀର ଅତ୍ୟାଚାର, ଶୋଷଣ ମୁଣ୍ଡଟେକି ଉଠିଲା । ସ୍ୱାଧୀନତା ଯେପରି ସ୍ୱେଚ୍ଛାଚାରିତାର ରୂପ ଗ୍ରହଣ କଲା । କଲିକତା ନଗରରେ ବର୍ଦ୍ଧିତା ଓଡ଼ିଆଝିଅ ସିପ୍ରା ଘଟଣାପ୍ରବାହରେ ନୃତ୍ୟଗୁରୁ ମର୍କତ ସହିତ ପଳାୟନ କରିବା, ମର୍କତ ତାକୁ

ଉପଭୋଗ କରି ତାର ସମସ୍ତ ଅର୍ଥ ଆତ୍ମସାତ୍ କରି ତାକୁ ତ୍ୟାଗ କରିବା; ସିପ୍ରା ନିଜର ସନ୍ତାନକୁ ଜଣେ଼କ ଧନୀ ବ୍ୟବସାୟୀଙ୍କୁ ବିକ୍ରୟ କରି ବମ୍ବେ ପଳାୟନ କରିବା, ସେଠାରେ ବର୍ଷାଭିଜା ପ୍ରହରରେ ମହେଶ ତା ଘରେ ଆଶ୍ରୟ ନେବା, ବନ୍ଧୁ ବିପିନର ନିଷେଧ ସତ୍ତ୍ୱେ ଉଦାରହୃଦୟ ମହେଶ ସିପ୍ରାକୁ ପତ୍ନୀରୂପେ ଗ୍ରହଣ କରିବା ପ୍ରସ୍ତାବ, ସିପ୍ରାର ନର୍ତ୍ତକୀଜୀବନ, ସିପ୍ରା ମାତୃତ୍ୱ ଲାଭ କରି ମଧ୍ୟ ସମାଜରେ ସ୍ୱୀକୃତି ନପାଇବା 'ଶତାବ୍ଦୀର ସ୍ୱପ୍ନଭଙ୍ଗ'ରେ ବର୍ଣ୍ଣିତ । ନାରୀ କ'ଣ କେବଳ ଉପଭୋଗ୍ୟା ? —ଏହାହିଁ ଏହି ଉପନ୍ୟାସର ବିରାଟ ପ୍ରଶ୍ନବାଚୀ । ସେହିପରି 'ଲାଲ୍ ଘୋଡ଼ା'ରେ ଉଦାରହୃଦୟ, ନାରୀ-ଆଦର୍ଶ-ସଚେତନ ବଲଆରସିଂହ ଆଉ ତାଙ୍କର ଆଦର୍ଶ ଅନୁଗାମିନୀ ବିପ୍ଳବିନୀ କନ୍ୟା ନିଦ୍ରାର ପ୍ରସ୍ତାବିତ ବିବାହକୁ କେନ୍ଦ୍ର କରି ପ୍ରାଚୀନ ରକ୍ଷଣଶୀଳ ସମାଜ ବିରୋଧରେ ଆହ୍ୱାନ ଶୁଣାଯାଇଛି । ଉଚ୍ଚଶିକ୍ଷିତ ଯୁବକ ମୁରଲୀ କନ୍ୟାଦେଖା ସମୟରେ ପ୍ରସ୍ତାବିତ ବିବାହ ଉଦ୍ଦେଶ୍ୟରେ ଯୌତୁକ ଦାବି କରି ରକ୍ଷଣଶୀଳତା, ପ୍ରାଚୀନ କୁସଂସ୍କାରର ନିର୍ଲଜ୍ଜ ପରିଚୟ ଦେଇଛି । ତାର ବିରୋଧ କରି ବଲଆରସିଂହଙ୍କ ଘର ନାରୀ-ମୁକ୍ତି ଶିବିରରେ ପରିଣତ ହୋଇଛି । ମୁରଲୀର ବନ୍ଧୁ ପ୍ରଫୁଲ୍ଲ ମଧ୍ୟ ବଲଆରସିଂହଙ୍କ ଆଦର୍ଶରେ ପ୍ରଭାବିତ ହୋଇଛି । ଔପନ୍ୟାସିକଙ୍କର ବକ୍ତବ୍ୟ ହେଲା—ଜୀବନର ମୂଲ୍ୟବୋଧର ସମୀକ୍ଷା ରକ୍ଷଣଶୀଳ ସମାଜର ମାନଦଣ୍ଡରେ କଦାପି ସମ୍ଭବ ନୁହେଁ । 'ଭୂମିକା' ହେଉଛି ଶ୍ରୀଯୁକ୍ତ ବର୍ମାଙ୍କର ଶ୍ରେଷ୍ଠ କୃତି । ବିରୂପା ନଦୀକୂଳ ଆନ୍‌କା ଗାଁର କୃଷୀ ଯୁବକ ମହନ୍, ତାର ଅବିବାହିତା ଭଉଣୀ ଶ୍ରୀମତୀ, ତାର ବିଧବା ମା', ବନ୍ଧୁ ଜାଫର୍ ଏବଂ ପିଆଦା ଆକୁଲି ଉପନ୍ୟାସର ଗଳ୍ପାଂଶରେ ସମସ୍ତ ଚରିତ୍ରନୈତିକ ସୌନ୍ଦର୍ଯ୍ୟ ସହିତ ପ୍ରତିଭାତ ହୋଇପାରିଛନ୍ତି । ସେମାନଙ୍କର ସାଧନା ଯୋଗୁଁ ଆନ୍‌କା ଗାଁ 'ମୈତ୍ରୀ' ତୀର୍ଥରେ ପରିଣତ ହୋଇଛି । ଏହି ଅନାବିଳ ଗ୍ରାମ୍ୟ ଚରିତ୍ରମାନଙ୍କ ବିରୋଧରେ ସ୍ୱାର୍ଥପର, ଈର୍ଷାପର ଜମିଦାର ଭାସ୍କର ନାୟକ ଏବଂ ଆନ୍‌କା ଇଲାକାର ବଡ଼ ଜମିଦାର ଭିକାରି ମହାନ୍ତିଙ୍କୁ ଉପସ୍ଥାପିତ କରାଯାଇଛି । ମହନ୍ ଏବଂ ଜାଫର୍‌ର ବନ୍ଧୁତ୍ୱ ସାର୍ବଜନୀନ ମାନବିକତାର ପ୍ରତୀକ । ଜମିଦାରମାନଙ୍କ ଅତ୍ୟାଚାର, ଚକ୍ରାନ୍ତ ମଧ୍ୟରେ ପଲ୍ଲୀବାସୀ ଜୀବନରେ ଯୁଗୋଚିତ ଚେତନାର ସୂର୍ଯ୍ୟ ଉଦିତ ହୋଇଛି । ସଂକ୍ଷେପରେ କହିବାକୁ ଗଲେ ଶ୍ରୀଯୁକ୍ତ ବର୍ମାଙ୍କ ଉପନ୍ୟାସ ସମୂହ (୧) ଜନଜୀବନର ସମସ୍ୟା, ବିଶେଷତଃ ସାମନ୍ତବାଦୀ ଗୋଷ୍ଠୀର ଶୋଷଣ, ଅତ୍ୟାଚାର (ଶେଷ ଅଭିସାର) ଏବଂ ରାଜରାଜୁଡ଼ାଙ୍କ ବିଳାସ, ଲମ୍ପଟ ବ୍ୟଭିଚାର

---

(୧) ଲାଲ୍ ଘୋଡ଼ା, ଶତାବ୍ଦୀର ସ୍ୱପ୍ନଭଙ୍ଗ, ଜୀବନର ଛନ୍ଦ, ଭୂମିକା, ତନୁ ଓ ଅତନୁ, ଦନୋଟି ହୃଦୟର କାହାଣୀ, ଶେଷ ଅଭିସାର, ଅପରାହ୍ନର ଆକାଶ ।

(ଅପରାହ୍ନର ଆକାଶ) ଦଳିତ ଅତ୍ୟାଚାରିତର ମୁକ୍ତି ଆକାଂକ୍ଷାକୁ ବଳିଷ୍ଠ ଭାଷାରେ ପ୍ରକାଶ କରିପାରିଛି ।

ଶ୍ରୀଯୁକ୍ତ ଅନନ୍ତପ୍ରସାଦ ପଣ୍ଡାଙ୍କର (୧୯୦୭) କଥାଶିଳ୍ପରେ ଓଡ଼ିଆ ପଲ୍ଲୀ-ସମାଜ ଓ ଜୀବନ ସମ୍ବେଦନଶୀଳ, ଆବେଗପୂର୍ଣ୍ଣ ଭାଷାରେ ରୂପାୟିତ ହୋଇପାରିଛି । ତାଙ୍କ ଉପନ୍ୟାସର (୧) ଗଠନସୌନ୍ଦର୍ଯ୍ୟ, ଗୃରିହିକ ବୈଶିଷ୍ଟ୍ୟ ପାଠକର ଦୃଷ୍ଟି ଆକର୍ଷଣ କରିଥାଏ । 'ଭାଗ୍ୟଚକ୍ର'ରେ ଦରିଦ୍ର ବ୍ରାହ୍ମଣ ଯୁବକ ଦାମୋଦର ସହିତ ପ୍ରତିପତ୍ତିଶାଳୀ ଜମିଦାର ଜନାର୍ଦ୍ଦନ ଚୌଧୁରୀଙ୍କ ରୂପବତୀ କନ୍ୟା ଯମୁନାର ବିବାହ ପ୍ରସ୍ତାବ । ଜନୈକ ଦରିଦ୍ର ବ୍ରାହ୍ମଣ ତାର କନ୍ୟା ବିମଳାକୁ ଟଙ୍କା ଲୋଭରେ ଅଶୀ ବର୍ଷର ବୁଢ଼ା ଜମିଦାର ଗୋବର୍ଦ୍ଧନ ସାମନ୍ତ ସହିତ ବିବାହ ଦେବାର ପ୍ରସ୍ତାବ; ମାତ୍ର ଘଟଣାଚକ୍ରରେ ଦାମୋଦର ବିମଳାକୁ ବିବାହ କରିବା ଏବଂ ଜମିଜମା ଲୋଭରେ ଯମୁନା ଗୋବର୍ଦ୍ଧନଙ୍କ ପ୍ରତି ଆକୃଷ୍ଟ ହୋଇ ତାଙ୍କୁ ବିବାହ କରିବା । ଏହାପରେ କିନ୍ତୁ ଯମୁନା ବିଧବା ହେବା—କଲିକତା ପଳାୟନ କରିବା, ପଥଭ୍ରଷ୍ଟ ହେବା, ଅପମାନିତ ଜନାର୍ଦ୍ଦନ ଚୌଧୁରୀ ପ୍ରତିଶୋଧ ନେବା ଉଦ୍ଦେଶ୍ୟରେ ଦାମୋଦର ବିରୋଧରେ ମୋକଦ୍ଦମା କରି ହାରିଛନ୍ତି । ନାମକରଣ ଅନୁଯାୟୀ ଉପନ୍ୟାସ ତାର ଗଳ୍ପାଂଶରେ ଯଥାର୍ଥତା ରକ୍ଷା କରିଛି । ଦେଶର ସମସ୍ୟା-ସଚେତନ ହେମାଙ୍ଗିନୀ, ନବକୁମାରଙ୍କର ଜାତୀୟ ଆଦର୍ଶରେ ଉଦ୍‌ବୁଦ୍ଧ ହେବା, ଦେଶପାଇଁ ନିଜ ନିଜକୁ ଉତ୍ସର୍ଗ କରିବା, ବିବାହ କରି ନୂଆ ଦୁନିଆଁ ପତ୍ରିକା ପ୍ରକାଶନ କରିବା "ନୂଆ ଦୁନିଆଁ" ଉପନ୍ୟାସରେ ପ୍ରଦର୍ଶିତ । ଗ୍ରାମ୍ୟ ବାଳିକା 'ସୁଶୀଳା'ର ଉତ୍ଥାନ ପତନ ବନ୍ଧୁର ଜୀବନର ଚିତ୍ର । ସୁଶୀଳା ତାର ସ୍ୱାମୀ, ସମାଜ, ସାଂସାରିକ ବନ୍ଧନ ପ୍ରତ୍ୟାଖ୍ୟାନ କରି କଲିକତା ଚାଲିଯିବା ଏବଂ ଘାତପ୍ରତିଘାତ ମଧ୍ୟରେ ଶେଷରେ କଲିକତା ଚିତ୍ତରଞ୍ଜନ ସେବା ସଦନରେ ନର୍ସ ଜୀବନ ଅତିବାହିତ କରିବା—ଏହାହିଁ 'ମୁକ୍ତ ଆକାଶର ବିହଙ୍ଗ'ରେ ପ୍ରଦର୍ଶିତ । ଯୁଦ୍ଧକାଳୀନ ହରିପୁର ଗାଁମୁଣ୍ଡରେ ଉଡ଼ାଜାହାଜ ପଡ଼ିଆରେ କାମ କରୁଥିବା ଶ୍ରମିକମାନଙ୍କର ଚିତ୍ର ମଧ୍ୟରେ ବାଉରୁଣୀ ଝିଅ ରୂପବତୀ ପଦ୍ମୀ ଇଞ୍ଜିନିୟରଙ୍କ ଯୌନଲାଳସାର କେନ୍ଦ୍ରବିନ୍ଦୁ ରୂପେ ପ୍ରଥମେ ବର୍ଣ୍ଣିତ । ମାତ୍ର ପଦ୍ମୀ ବିଦ୍ରୋହ କରିଛି । କୁଲିମାନେ ଧର୍ମଘଟ କରିଛନ୍ତି । ଶେଷରେ ସେ ହୋଇଛି ପଦ୍ମିନୀ ଦେବୀ ଏବଂ ଶ୍ରମିକ ସମବାୟ ଅନୁଷ୍ଠାନର ଶିକ୍ଷିତ ସମ୍ପାଦକ ରଘୁନାଥଙ୍କୁ ବିବାହ କରିଛି ।

ସମାଜ, ଦେଶ ଏବଂ ନବଉଜ୍ଜାଗ୍ରତ ଜାତୀୟ ଜୀବନର ପୃଷ୍ଠଭୂମିରେ ଶ୍ରୀଯୁକ୍ତ ରାମପ୍ରସାଦ ସିଂହଙ୍କର ଉପନ୍ୟାସଗୁଡ଼ିକ (୨) ସଂଯୋଜିତ । ଆବେଗ-

(୧) ଭାଗ୍ୟଚକ୍ର, ନୂଆଦୁନିଆ, କୁଲି, ମୁକ୍ତ ଆକାଶର ବିହଙ୍ଗ ।

(୨) ହୋମଶିଖା, ଅଗ୍ନିପଥେ, ପ୍ରତିହିଂସା, ରୂପର ବଳି, ସମାପ୍ତି, ମରୁର ସାଥୀ, ମରୀଚିକା ।

ପ୍ରବଣତା, ମୁକ୍ତ ସ୍ୱଚ୍ଛନ୍ଦ ଶୈଳୀ, ଜାତୀୟତାବାଦୀ ଗଳ୍ପାଂଶ ଏବଂ ସାମାଜିକ ଆଭିମୁଖ୍ୟ ହିଁ ତାଙ୍କ ଉପନ୍ୟାସର ବୈଶିଷ୍ଟ୍ୟ । ଅତ୍ୟାଚାରୀ ଧନିକ, କାମୁକ ଗୋଷ୍ଠୀଙ୍କ ବିରୋଧରେ ନିର୍ଯାତିତ ଭିଖାରୀ ଧରଣୀର ପ୍ରତିବାଦ ବିଦ୍ରୋହ 'ହୋମଶିଖା'ର ପ୍ରତିଧ୍ୱନି । ସ୍ତ୍ରୈଣ ଶିବେଶ୍ୱରବାବୁ ସ୍ୱାର୍ଥପର, ଅତ୍ୟାଚାରୀଗୋଷ୍ଠୀର ପ୍ରତିନିଧିରୂପେ ବର୍ଣ୍ଣିତ । 'ଧରଣୀ'ର ଜୀବନ ନାଟକୀୟ ବୈଚିତ୍ର୍ୟପୂର୍ଣ୍ଣ । ଜମିଦାରଙ୍କୁ ହତ୍ୟା କରି ସେ ଫାଶିଦଣ୍ଡ ପାଇଛି । ମାତ୍ର ତାର ସେହି ଶାସ୍ତି ମଧ୍ୟରେ ଯେପରି ସ୍ୱାର୍ଥପର ଗୋଷ୍ଠୀ ବିରୋଧରେ ଦୁଃଖୀ ସମାଜର ପ୍ରତିବାଦ ସବୁଦିନ ପାଇଁ ଶୁଣାଯାଇଛି । ୧୯୪୨-୧୯୪୩ ମସିହାରେ ଓଡ଼ିଶାରେ ଦେଖାଦେଇଥିବା ଭୟଙ୍କର ଦୁର୍ଭିକ୍ଷର କବଳ ଗ୍ରାସରେ ପଧାନ ପଲ୍ଲୀ ଗାଁର ଦୀନବନ୍ଧୁ ସ୍ୱାଇଁ, ସ୍ତ୍ରୀ ଶାଗଆ ଏବଂ ପୁଅର କରୁଣ ଅବସ୍ଥା ଦେଶର ଭିକାରିପଲଙ୍କୁ ନ୍ୟସ୍ତସ୍ୱାର୍ଥଗୋଷ୍ଠୀ ନିନ୍ଦିତ କରିବା, ଶେଷରେ ଦେଶପ୍ରାଣ ଯୁବକଙ୍କ ଉଦ୍ୟମରେ ଗାନ୍ଧିଜୀଙ୍କ ଆଦର୍ଶରେ ଆଶ୍ରମ ସ୍ଥାପନ 'ସମାପ୍ତି' ଉପନ୍ୟାସରେ ବର୍ଣ୍ଣିତ । ଚାକର ଓ ପରାଧୀନତା ବ୍ୟକ୍ତିର ମାନବିକତାକୁ ଧ୍ୱଂସ କରିଦିଏ, ଏହା ହିଁ ଲେଖକ ପ୍ରମାଣ କରିଛନ୍ତି । ଆଉ ଦୁର୍ଭିକ୍ଷ ଦେବତାର ସୃଷ୍ଟି ନୁହେଁ; ବରଂ ନ୍ୟସ୍ତସ୍ୱାର୍ଥ ଚାକରିଆ ଗୋଷ୍ଠୀଙ୍କର କାରସାଦି । 'ମଣିଚକା'ରେ ଜଣେକ ଶିକ୍ଷିତ ଧନିକ ଯୁବକ କିପରି ନିଜକୁ ଦେଶର ସ୍ୱାଧୀନତା ପାଇଁ ଉତ୍ସର୍ଗ କରିଥିଲା, ତାହାର ଚିତ୍ର ପ୍ରଦତ୍ତ ।

୧୯୩୦ ମସିହାରେ ସମଗ୍ର ଦେଶରେ ମହାତ୍ମା ଗାନ୍ଧୀଙ୍କ ପ୍ରବର୍ତ୍ତିତ ଲବଣ-ସତ୍ୟାଗ୍ରହରେ ଓଡ଼ିଆ ଯୁବକ ଅନନ୍ତର ସକ୍ରିୟ ଯୋଗଦାନ, ବାଲେଶ୍ୱର ଇଂଚୁଡ଼ି ଗ୍ରାମରେ ପ୍ରଜ୍ୱଳିତ ବିଦ୍ରୋହାଗ୍ନିର ପୃଷ୍ଠଭୂମିରେ କେତେକ ଚାକରିଆଙ୍କ ଚକ୍ରାନ୍ତ 'ପୂଜାର ବଳି' ଉପନ୍ୟାସରେ ଉପଜୀବ୍ୟ । 'ପ୍ରତିହିଂସା' ଏବଂ 'ମରୁର ସାଥୀ' ଉପନ୍ୟାସରେ ପ୍ରେମ, ବିବାହ, ଯୁବକ-ଯୁବତୀଙ୍କର ସମ୍ପର୍କ, ଆକର୍ଷଣ ବର୍ଣ୍ଣିତ ହୋଇଛି । ଶ୍ରୀଯୁକ୍ତ ରାମପ୍ରସାଦ ସିଂହଙ୍କ ଉପନ୍ୟାସ ପାଠକମାନଙ୍କ ଦ୍ୱାରା ବେଶ୍ ଆଦୃତ ।

'ବୋଉ' ଉପନ୍ୟାସର ସୁପରିଚିତ ଔପନ୍ୟାସିକ କମଳାକାନ୍ତ ଦାସଙ୍କ (୧୯୦୬) ବିଭିନ୍ନ ଉପନ୍ୟାସରେ (୧) ଓଡ଼ିଶାର ପୁରପଲ୍ଲୀର ନିଖୁଣ ସାମାଜିକ ଚିତ୍ର ପରିଦୃଷ୍ଟ ହୁଏ । ବ୍ୟକ୍ତି ଓ ପରିବାର ସମ୍ପର୍କର ଜଟିଳତା ଆଉ ପ୍ରଜାପୀଡ଼କ ଜମିଦାର-ଗୋଷ୍ଠୀର ସଂଘର୍ଷ ତାଙ୍କ ଉପନ୍ୟାସଗୁଡ଼ିକୁ ତଥ୍ୟବହୁଳ କରିଥାଏ । ନାରଣ ସାମନ୍ତରାଙ୍କ ପୁଅ ବ୍ରଜ ଶୈଶବରେ ମାତୃହରା ହୋଇଛି ଏବଂ ବିମାତା ଉଷାଙ୍କ ଅତ୍ୟାଚାରରେ ସେ ଲୁହଲହୁ କାନ୍ଦୁଛି । ସଂସାରରେ ମା'ର ସ୍ପର୍ଶ, ମା'ର ଉପସ୍ଥିତି

(୧) ବୋଉ, ଭାଉଜବୋହୂ, ଜୀବନ-ସଉଦା, ମନଚୋର, ଶରଦୀ ନାନୀ, ମନର ଦାଉ, ମଦଭଟି, ସଦର ମଫସଲ, ମିଳନସନ୍ଧ୍ୟା, ବନାମାର ନିଦ୍ରାଭଙ୍ଗ, ଦୀପଶିଖା ।

ସମସ୍ତଙ୍କ ଜୀବନରେ ସର୍ବାପେକ୍ଷା ଅଧିକ କାମ୍ୟ । ଏହା ହିଁ 'ବୋଉ' ଉପନ୍ୟାସରେ ବିଭିନ୍ନ ଘଟଣାମାଧ୍ୟମରେ ପ୍ରତିପାଦିତ । ପୁନଶ୍ଚ ସ୍ୱରାଜ୍ୟ ଆନ୍ଦୋଳନ ଆଦର୍ଶରେ ତାଙ୍କ ଉପନ୍ୟାସର ଚରିତ୍ର ରାମଦାସ ଜେଲ ବରଣ କରିବା, ସୂତା କାଟିବା, ପରିବାରରେ ଭାଇଭାଉଜ ଦାଅରଙ୍କ ଆଦର୍ଶ ସମ୍ପର୍କ, କିମ୍ବା 'ମନଗହିରା'ରେ ବ୍ରାହ୍ମଣ ଯୁବକ ରଙ୍ଗନାଥ ଆଉ କରଣ ଝିଅ ଲତାର ସହୃଦୟତା, 'ଜୀବନ ସଉଦା'ରେ ପାରିବାରିକ ଝଡ଼ ସଂଘର୍ଷ ମଧ୍ୟରେ ବଣିଆ ଆଉ ଗଉଡ଼ଘର ବିବାହ । 'ଶରଧା ନାନୀ'ରେ ଷୋଳ ବରଷର ଝିଅ ଶରଧା ତାର ନିଜ ବାପଘର ଆଉ ସ୍ୱାମୀଘର ପରିବେଶରେ ବରାବର ଅସ୍ଥିରତା ମଧ୍ୟରେ ଗତି କରିଛି, ବହୁ ସାମାଜିକ କୁସଂସ୍କାର ଏବଂ ଜମିଦାରଙ୍କ ଅତ୍ୟାଚାରର ଶିକାର ହୋଇଛି । 'ମଦଭାଟି'ରେ ପୁନିଆଁ, ସୁରୁବାଲି, ଧୀରା, ବିନୋଦର କାହାଣୀ ସ୍ଥାନ ପାଇଛି । ଠିକାଦାରର ଲୋଲୁପ ଆଖି ସୁରୁବାଲି ଉପରେ ପଡ଼ିଛି । 'ସଦର ମଫସଲ'ରେ ନାୟକ ବିଷ୍ଣୁ ମୁହଁରେ ଲେଖକ 'ଧର୍ମ'ର ସ୍ଥିତିକୁ ପ୍ରଶ୍ନ କରିଛନ୍ତି । ଖ୍ରୀଷ୍ଟିୟାନ ଝିଅ 'ଡଲି'ର ସହିଷ୍ଣୁତାରେ ସାମାଜିକ ବିରୋଧ ପ୍ରତିଫଳିତ ହୋଇଛି । 'ବନାନୀର ନିଦ୍ରାଭଙ୍ଗ'ରେ ଲେଖକ ପୁଣି ଆଦିବାସୀ ସମାଜକୁ ଫେରିଯାଇଛନ୍ତି । ସଂକ୍ଷେପରେ କହିବାକୁଗଲେ ଔପନ୍ୟାସିକ କମଳାକାନ୍ତ ଓଡ଼ିଶାର ପୁରପଲ୍ଲୀର ସୁଖ-ଦୁଃଖର ଜଣେ ଦରଦୀ ଚିତ୍ରକର । ଗ୍ରାମର ମହାଜନ, ଦୁଷ୍ଟ ଖଳ ବା ଟାଉଟର ଚରିତ୍ର ତାଙ୍କ ଉପନ୍ୟାସରେ ନିର୍ମମଭାବରେ ସମାଲୋଚିତ ହୋଇଛନ୍ତି । ଲକ୍ଷ୍ମୀକାନ୍ତ ମହାପାତ୍ର (୨), ଫତୁରାନନ୍ଦ (୩), ସତ୍ୟାନନ୍ଦ ବେହୁରା (୪), ପ୍ରାଣକୃଷ୍ଣ ସାମଲ (୫), ବଟକୃଷ୍ଣ ପ୍ରହରାଜ (୬), ଜଗଦବନ୍ଧୁ ମହାପାତ୍ର (୭), ଲକ୍ଷ୍ମୀନାରାୟଣ ମହାନ୍ତି (୮), ପ୍ରଭୃତି ପ୍ରବୀଣ ଔପନ୍ୟାସିକମାନେ ଏହି ଯୁଗରେ ଓଡ଼ିଆ ସମାଜ, ଚଳଣି ଓ ଜୀବନଧାରାକୁ କଥାବସ୍ତୁରୂପେ ଗ୍ରହଣ କରି ବିଭିନ୍ନ ଉପନ୍ୟାସ ଲେଖିଛନ୍ତି ।

ସୁରେନ୍ଦ୍ର ମହାନ୍ତି (୧୯୨୦) ଗଳ୍ପଲେଖକଭାବରେ ସୁପ୍ରତିଷ୍ଠିତ; ମାତ୍ର ତାଙ୍କର ଲେଖନୀ ଓଡ଼ିଆ ଉପନ୍ୟାସର ଐତିହାସିକ ଆଭିମୁଖ୍ୟ ପ୍ରବର୍ତ୍ତନ କରିବାରେ

---

(୨) କଣାମାମୁଁ ।

(୩) ନାକଟା ଚିତ୍ରକର ।

(୪) ସାବତ ମା' ।

(୫) ନୀଳକମଳ (୧୯୩୯), ସହଯାତ୍ରିଣୀ (୧୯୪୫), ହାତୀକା ଦାନ୍ତ (୧୯୪୭), ପଲ୍ଲୀଜୀବନ (୧୯୪୮) ।

(୬) ମାଟିମଠ (୧୯୪୬), ପୂର୍ଣ୍ଣାହୁତି (୧୯୪୭), ଘନାବର୍ତ୍ତ (୧୯୫୦), ନମସ୍କାର (୧୯୪୬), ଅଶ୍ରୁବିନ୍ଦୁ (୧୯୫୦) ।

(୭) ବିସର୍ଜନ, ଭଙ୍ଗାସଂସାର, ମଣିକାଞ୍ଚନ, ଧଡ଼ିଆ ବାବାଜି ।

(୮) ହାତକଡ଼ି, ମାୟାପୁରୀ, ପ୍ରଥମ ପ୍ରେମ, ହରଣଗୃହ ।

ମଧ୍ୟ ନିୟୋଜିତ ହୋଇପାରିଛି । ତାଙ୍କର 'ଅନ୍ଧଦିଗନ୍ତ', 'ନୀଳଶୈଳ' ଏବଂ ଚରିତୋପନ୍ୟାସ 'ଶତାବ୍ଦୀର ସୂର୍ଯ୍ୟ' ଓଡ଼ିଆ ଉପନ୍ୟାସ କ୍ଷେତ୍ରରେ ଚହଳ ସୃଷ୍ଟି କରିପାରିଛି । ତାଙ୍କର ଉପନ୍ୟାସରେ ଓଡ଼ିଶାର ସଂସ୍କୃତି, ଧର୍ମ ଏବଂ ଜାତୀୟ-ବାଦୀତା ହିଁ ଉପଜୀବ୍ୟ । ୧୯୨୧ ମସିହାରୁ ୧୯୪୭ ମସିହା ପର୍ଯ୍ୟନ୍ତ ଭାରତର ଜାତୀୟ ଆନ୍ଦୋଳନର ପୃଷ୍ଠଭୂମିରେ ତାଙ୍କର 'ଅନ୍ଧଦିଗନ୍ତ' (୧୯୬୪) ଉପନ୍ୟାସ ଲିଖିତ । 'ନୀଳଶୈଳ'ରେ ଓଡ଼ିଶାର ପ୍ରସିଦ୍ଧ ଦେବତା ଶ୍ରୀ ଜଗନ୍ନାଥ ଏବଂ ଓଡ଼ିଶାର ଇତିହାସ କଥାବସ୍ତୁରୂପେ ଗୃହୀତ । 'ଶତାବ୍ଦୀର ସୂର୍ଯ୍ୟ' ଦେଶପ୍ରାଣ ମଧୁସୂଦନ ଦାସଙ୍କ ଜୀବନୀକୁ କେନ୍ଦ୍ର କରି ଲିଖିତ । ନିଚ୍ଛକ ଐତିହାସିକ ଦୃଷ୍ଟିକୋଣ, ଅସାଧାରଣ ଗଦ୍ୟଶୈଳୀ ଏବଂ ଚରିତ୍ରର ନିଖୁଣ ବିଶ୍ଳେଷଣ ତାଙ୍କ ଉପନ୍ୟାସର ସ୍ୱାତନ୍ତ୍ର୍ୟ ।

୧୯୫୫ ମସିହା ପରେ ଓଡ଼ିଆ ଉପନ୍ୟାସ-ରାଜ୍ୟରେ ପ୍ରକୃତ ପରିବର୍ତ୍ତନ ସଂଘଟନ କରିବାରେ ଶ୍ରୀଯୁକ୍ତ ବିଭୂତି ପଟ୍ଟନାୟକଙ୍କର (୧୯୩୭) ସଂଖ୍ୟାଧିକ କୃତି ହିଁ (୧) ବିସ୍ମୟ । ତାଙ୍କର କଥାବସ୍ତୁ ପ୍ରଥମେ ପଲ୍ଲୀଜୀବନରୁ ଆରମ୍ଭ କରି ଦ୍ୱିତୀୟ ମହାଯୁଦ୍ଧ ପରବର୍ତ୍ତୀ ଏବଂ ସ୍ୱାଧୀନୋତ୍ତର ଦେଶରେ ସହରି ସଭ୍ୟତାର ଜଞ୍ଜାଳପୂର୍ଣ୍ଣ ଜୀବନପରିଧି ଉପରେ ପରିବ୍ୟାପ୍ତ । ତାଙ୍କ ଉପନ୍ୟାସର ରୋମାଣ୍ଟିକ୍ ଆବେଦନ ସର୍ବପ୍ରଥମେ ଉଲ୍ଲେଖଯୋଗ୍ୟ । ଯୌବନର ମଧୁର ଅନୁଭୂତି, ବୟସର ଆବେଗପୂର୍ଣ୍ଣ ମାଦକତା ବର୍ଣ୍ଣନାରେ ତାଙ୍କର କତିପୟ କୃତି ପାଠକମାନଙ୍କୁ ଆକୃଷ୍ଟ କରିଥାଏ । 'ନାୟିକାର ନାମ ଶ୍ରାବଣୀ'ର ଡାକ୍ତର ଚୌଧୁରୀ, ପ୍ରଫେସର ଦାସ ଏବଂ 'ଏଇ ମନ ବୃନ୍ଦାବନ'ର ନାୟକ ସୀତାକାନ୍ତ ଶିଳ୍ପସମୃଦ୍ଧ ନଗର-ଜୀବନର ଅସହାୟତା ମଧ୍ୟରେ ଫ୍ରୟେଡ଼ଙ୍କ ଯୌନ-ଦର୍ଶନ ଏବଂ ଅସାମାଜିକ କାର୍ଯ୍ୟ ଲକ୍ଷ୍ୟ କରିପାରିଛନ୍ତି । 'କେଶବତୀ କନ୍ୟା'ରେ ଶିଳ୍ପ-ସଭ୍ୟତାର କୃତ୍ରିମ ରୂପ ଆଡ଼ଭୋକେଟ ନିରଂଜନ, ସ୍ତ୍ରୀ ସୁଷମା ଏବଂ ବନ୍ଧୁ ସୁଧାଂଶୁଙ୍କ ଚରିତ୍ରମାଧ୍ୟମରେ ପ୍ରକଟିତ । 'ଚପଳ ଛନ୍ଦା'ରେ ଗଡ଼ଜାତି ଶାସନର ସ୍ୱେଚ୍ଛାଚାରିତା, ନ୍ୟସ୍ତସ୍ୱାର୍ଥଗୋଷ୍ଠୀର ଲମ୍ପଟ, ଅସାମାଜିକ ଆଚରଣ ଏବଂ ତା' ବିରୋଧରେ ପ୍ରଜାଆନ୍ଦୋଳ ହିଁ ବର୍ଣ୍ଣିତ । 'ରାଜତନ୍ତ୍ର'ର ପ୍ରତିମୂର୍ତ୍ତିରୂପେ ରାଜା ବୈରିଗଞ୍ଜନ ଉପସ୍ଥାପିତ । ବସନ୍ତକୁମାରୀ ପଟ୍ଟନାୟକ (୧୯୨୭) ତାଙ୍କର ସ୍ୱଳ୍ପରଚନା ମଧ୍ୟରେ ଉପନ୍ୟାସ କଳାର ବୈଶିଷ୍ଟ୍ୟ ପ୍ରଦର୍ଶନ କରିପାରିଛନ୍ତି । 'ଅମଡ଼ାବାଟ' ତାଙ୍କର ଏକ ଉତ୍କୃଷ୍ଟ ଉପନ୍ୟାସ । ନାରୀଚରିତ୍ର କାବେରୀ ଓ ମାୟା ଯଥାକ୍ରମେ ବିପରୀତ ପାରିବାରିକ ଆଦର୍ଶର ପ୍ରତୀକରୂପେ ଉପସ୍ଥାପିତ । ଜଣେ

---

(୧) ଏଇ ମନ ବୃନ୍ଦାବନ, ଚହଲା ପାଣିର ଢେଉ, କେଶବତୀ କନ୍ୟା, ନାୟିକାର ନାମ ଶ୍ରାବଣୀ, ଚପଳଛନ୍ଦା, ଗାରେ କଜ୍ଜଳ ଧାରେ ଲୁହ, ବଧୂ ନିରୂପମା, ଏଇ ଗାଁ ଏଇ ମାଟି, ଏକାନ୍ତ ଆଦିମ ।

ନିଜର ସ୍ୱାମୀ, ନିଜର ସୁଖଭୋଗ ପାଇଁ ବ୍ୟାକୁଳ; ଆଉ ଜଣେ ନିଜର ବୃଦ୍ଧା ଶାଶୁଙ୍କର ସେବାରେ ନିଜକୁ ଉତ୍ସର୍ଗ କରି ନିଜର ଜର୍ଜ୍ଜରିତ ପିତାମାତାଙ୍କୁ ଭୁଲି ଯାଇଛି । ଏହାହିଁ 'ଅମଡ଼ାବାଟ'ର ଦ୍ୱନ୍ଦ୍ୱସଂଘର୍ଷବହୁଳ ପାରିବାରିକ ଚିତ୍ର । ଔପନ୍ୟାସିକ ଲବଙ୍ଗଲତା ଦେବୀ, ସୀତାଦେବୀ ଖାଡ଼ଙ୍ଗା, କଳ୍ପନାକୁମାରୀ ଦେବୀଙ୍କର ବିଭିନ୍ନ ଉପନ୍ୟାସ ଉଲ୍ଲେଖଯୋଗ୍ୟ । କଳ୍ପନାକୁମାରୀ ତାଙ୍କର 'ଢେଉ' ଉପନ୍ୟାସରେ 'ପ୍ରେମ' ଅପେକ୍ଷା 'ଶିଖା' ଚରିତ୍ରକୁ ବିପ୍ଳବୀ ନାରୀଚରିତ୍ରରୂପେ ବର୍ଣ୍ଣନା କରିଛନ୍ତି ।

ଆଲୋଚ୍ୟ ଯୁଗରେ ଲକ୍ଷ୍ମୀଧର ନାୟକ ଜଣେ ସମ୍ବେଦନଶୀଳ ଔପନ୍ୟାସିକ । ତାଙ୍କ ଉପନ୍ୟାସର ପଟ୍ଟଭୂମି ହୋଇଛି ଦେଶର ସ୍ୱରାଜ୍ୟ ଆନ୍ଦୋଳନ । 'ସେ ମରିନାହିଁ' ଉପନ୍ୟାସରେ ସ୍ୱଦେଶପ୍ରେମୀ ପ୍ରଶାନ୍ତର କାରାବରଣ, ସ୍ୱାଧୀନତା ଲଭ ପରେ ଦେଶର ଅବସ୍ଥା ନେଇ ତା ମନରେ ନୈରାଶ୍ୟ । 'ଉଦ୍‌ଭ୍ରାନ୍ତ'ରେ ଆରତି, ଅଳକା, ମିସ୍ ବେଲା ମଜୁମଦାର, ସୁରେଶ, ଅସିତ ପ୍ରଭୃତି ପ୍ରେମର ଶିକାର ହେବା ଓ ସେମାନଙ୍କର ତଜ୍ଜନିତ ବ୍ୟର୍ଥତା ବର୍ଣ୍ଣିତ । ଗ୍ରାମ୍ୟ ପରିବେଶ ତଥା ସହର-ସଭ୍ୟତାର ଆଡ଼ମ୍ବରରେ ପରିବର୍ଦ୍ଧିତ ଚରିତ୍ରମାନଙ୍କୁ କେନ୍ଦ୍ର କରି ସୁଖପାଠ୍ୟ ଉପନ୍ୟାସ ରଚନା କରିବାରେ ଶ୍ରୀଯୁକ୍ତ ଯଦୁନାଥ ଦାଶ ମହାପାତ୍ର ଜଣେ ସୁଦକ୍ଷ କଥାକାର । 'ଗ୍ରାମ୍ୟ ନଦୀର ତୀରେ' ଉପନ୍ୟାସ ଆଧୁନିକ ସମାଜର ଯଥାର୍ଥ ପ୍ରତିଛବି ।

ଅଧ୍ୟାପକ କୃଷ୍ଣପ୍ରସାଦ ମିଶ୍ର (୧୯୩୩) ଉପନ୍ୟାସ ରଚନାରେ ସାଧନାର ପ୍ରମାଣ ଦେଇପାରିଛନ୍ତି । ଆଦର୍ଶବାଦ ସହିତ ବାସ୍ତବବାଦର ସଂଘର୍ଷରେ ତାଙ୍କ ବର୍ଣ୍ଣିତ ଚରିତ୍ରଗୁଡ଼ିକ ବ୍ୟଥା-ଜର୍ଜରିତ । 'ସଂହକଣ୍ଠୀ'ର ଶିବନାଥ, ସୁକେଶୀ, 'ମୃଗତୃଷ୍ଣା'ର ସୁଶାନ୍ତ, ଜ୍ୟୋତ୍ସ୍ନା, ମୋତି, କମ୍ବା 'ନେପଥ୍ୟେ'ର ପ୍ରେମପୀଡ଼ିତ ନାୟକ ଶୀତିକଣ୍ଠ ପ୍ରତ୍ୟେକେ ସମାନ ପୃଷ୍ଠଭୂମି ଓ ପରମ୍ପରା ବିରୋଧରେ ନ୍ୟସ୍ତ । ଅଧ୍ୟାପକ ଶାନ୍ତନୁକୁମାର ଆଚାର୍ଯ୍ୟଙ୍କ (୧୯୩୩) ଉପନ୍ୟାସରେ ଆଧୁନିକ ଜୀବନର କୃତ୍ରିମତା, ଜଟିଳତା, ଦ୍ୱନ୍ଦ୍ୱ, ସଂଘର୍ଷ ଆବେଗପୂର୍ଣ୍ଣ ଭାଷାରେ ବର୍ଣ୍ଣିତ । 'ନର-କନ୍ନର' ଏବଂ 'ଶତାବ୍ଦୀର ନଚିକେତା' ତାଙ୍କର ଦୁଇଗୋଟି ସାର୍ଥକ କୃତି । ଗୋବିନ୍ଦ ଦାସଙ୍କର ଉପନ୍ୟାସରେ ସାଂପ୍ରତିକ ସଭ୍ୟତା ଏବଂ ସାମାଜିକ ଚଳଣି ବିରୋଧରେ ବ୍ୟଙ୍ଗାତ୍ମକ ଆକ୍ଷେପ ପ୍ରତିଫଳିତ । ତାଙ୍କର 'ଅମାବାସ୍ୟାର ଚନ୍ଦ୍ର' ଏକ ସାର୍ଥକ କୃତି । ୧୯୫୦ ପରବର୍ତ୍ତୀ ଓଡ଼ିଆ ଉପନ୍ୟାସ-ଜଗତରେ ଶ୍ରୀଯୁକ୍ତ ନରସିଂହ ସାହୁ ଜଣେ ଦରଦୀ କଥାଶିଳ୍ପୀ । ବ୍ୟକ୍ତି ଓ ସମାଜର କେତେକ ମୌଳିକ ସମସ୍ୟା ଯଥା ବ୍ୟକ୍ତିସ୍ୱାଧୀନତା, ସାମାଜିକ ନ୍ୟାୟ, ନାରୀ-ଜାଗରଣ, ତାଙ୍କ ଉପନ୍ୟାସରେ ଉପଜୀବ୍ୟ । ଏହି ପରମ୍ପରାରେ ତାଙ୍କର 'ସେବାସଦନ'

(୧୯୫୦), ଛଲମାଲ ଡାକେ (୧୯୫୦), ଦୁଃଖ-ନଦୀର କୂଳେ କୂଳେ (୧୯୬୧), ଅନ୍ଧାର ଘର (୧୯୬୩) ଉପନ୍ୟାସ ଉଲ୍ଲେଖଯୋଗ୍ୟ । ଦଶରଥ ସାମଲ ମଧ୍ୟ ସମସାମୟିକ ସାମାଜିକ ପରିପ୍ରେକ୍ଷୀରେ ତାଙ୍କର ଉପନ୍ୟାସସମୂହର ଗଳ୍ପାଂଶ ସଂଯୋଜିତ କରିଛନ୍ତି । 'ନୀଳସିନ୍ଧୁରୁ ଉପକଣ୍ଠେ' ଉପନ୍ୟାସରେ ନାୟିକା ରାଧିକା ପାଶ୍ଚାତ୍ୟ ସଭ୍ୟତାର ପ୍ରଭାବର ବଶବର୍ତ୍ତୀ ହୋଇ ନାୟକ ଶ୍ରୀମନ୍ତ ନିକଟରୁ ପଳାଇ ଯାଇଛି; ମାତ୍ର ପରେ ସେ ତାର ଭ୍ରମ ବୁଝିପାରିଛି । ଚନ୍ଦ୍ରଶେଖର ରଥଙ୍କର 'ଯନ୍ତ୍ରାରୂଢ଼' 'ଅସୂର୍ଯ୍ୟ ଉପନିବେଶ' ନୂତନ ଢଙ୍ଗରେ ଲିଖିତ ଉପନ୍ୟାସ । ସଂକ୍ଷେପରେ କହିବାକୁ ଗଲେ ଗତ କେତେ ବର୍ଷ ମଧ୍ୟରେ ଓଡ଼ିଆ ଉପନ୍ୟାସ ବହୁ ଦିଗରୁ ସମୃଦ୍ଧ ଏବଂ ଜନଜୀବନର ଆଶା, ଆକାଂକ୍ଷା, ନୈରାଶ୍ୟ ତଥା ଦ୍ୱନ୍ଦ୍ୱ ଓ ସଂଘର୍ଷ ପ୍ରତିଫଳିତ କରିବାରେ ଶକ୍ତିଶାଳୀ ମାଧ୍ୟମ ହୋଇପାରିଛି । ସାଂପ୍ରତିକ ଉପନ୍ୟାସର ପ୍ରକାଶ-ଭଙ୍ଗୀ, ଅଭିନବ ପରିପାଟୀ, ବର୍ଣ୍ଣନାନୈପୁଣ୍ୟ ପାଶ୍ଚାତ୍ୟ ଉପନ୍ୟାସଧାରାଦ୍ୱାରା ପ୍ରଭାବିତ । ବିଶେଷତଃ ଔପନ୍ୟାସିକର ନୂତନ ଭାବଚେତନା ଏବଂ ସୂକ୍ଷ୍ମ ଦୃଷ୍ଟିକୋଣ ସର୍ବଥା ଅନୁସନ୍ଧେୟ । ବିଦେଶୀୟ ଭାଷାରୁ ଏବଂ ଭାରତର ବିଭିନ୍ନ ଆଞ୍ଚଳିକ ଭାଷାରୁ ଅନେକ ପ୍ରସିଦ୍ଧ ଉପନ୍ୟାସ ଓଡ଼ିଆରେ ଅନୂଦିତ ହୋଇପାରିଛି ।

## ଆଧୁନିକତାର ଉନ୍ମେଷ, ଗଦ୍ୟରଚନା ବୈଚିତ୍ର୍ୟ, ବିବିଧତା

ଆଧୁନିକ ଭାରତୀୟ ସାହିତ୍ୟର ପାଶ୍ଚାତ୍ୟ ନବୀକରଣ ପର୍ଯ୍ୟାୟରେ ଗଦ୍ୟ-ରଚନାର ପ୍ରାଚୁର୍ଯ୍ୟ ଏବଂ ବୈଶିଷ୍ଟ୍ୟ ପ୍ରତି ବିଶେଷ ଗୁରୁତ୍ୱ ଦିଆଯାଇଥିଲା । 'ଉତ୍କଳ ଦର୍ପଣ' ପତ୍ରିକାରେ ପ୍ରକାଶିତ ରାଧାନାଥଙ୍କ ସୃଜନାତ୍ମକ ବ୍ୟକ୍ତିଧର୍ମୀ 'ବିବେକୀ' (୧୮୬୩) ଏବଂ 'ଇତାଲୀୟ ଯୁବା' (୧୮୭୪) ଏବଂ ଅନ୍ୟାନ୍ୟ ଗଦ୍ୟରଚନା, ୧୮୮୦ ମସିହାରେ ପ୍ରକାଶିତ ମଧୁସୂଦନଙ୍କର 'ପ୍ରବନ୍ଧମାଳା', ବିଗତ ଶତାବ୍ଦୀର ଶେଷପାଦରେ ପାଠ୍ୟପୁସ୍ତକଧର୍ମୀ ପ୍ରବନ୍ଧ ଲେଖକଭାବେ ବିଚ୍ଛନ୍ଦଚରଣ ପଟ୍ଟନାୟକ, ଶିବନାରାୟଣ ନାୟକ, ଗୋବିନ୍ଦ ଚନ୍ଦ୍ର ରଥ, ଗୋବିନ୍ଦ ଚନ୍ଦ୍ର ମହାପାତ୍ରଙ୍କ ରଚନାବଳୀ, କପିଳେଶ୍ୱର ବିଦ୍ୟାଭୂଷଣଙ୍କ 'ରାମବିଳାସ' (୧୮୭୫)ରୁ ଆରମ୍ଭ କରି ୧୮୮୮, ୧୮୯୧ ଏବଂ ୧୮୯୭ ମସିହାରେ ଯଥାକ୍ରମେ ପ୍ରକାଶିତ 'ପଦ୍ମମାଳୀ', 'ବିବାସିନୀ' ଏବଂ 'ଛମାଣ ଆଠଗୁଣ୍ଠ' ଉପନ୍ୟାସର ପ୍ରକାଶନ ପର୍ଯ୍ୟନ୍ତ ପ୍ରତ୍ୟେକ ଗଦ୍ୟକୃତିର ପ୍ରକାଶନରେ ସେହି ମୌଳିକ, କ୍ରମବର୍ଦ୍ଧିଷ୍ଣୁ, ରସୋତ୍ତୀର୍ଣ୍ଣ ପ୍ରଭାବ-ଶାଳୀ ଗଦ୍ୟର ରୂପ-ବୈଚିତ୍ର୍ୟ ଏବଂ ପରିଧି ସ୍ପଷ୍ଟ ହୋଇସାରିଥିଲା । ଏହି କାଳରେ ଗଦ୍ୟ ପ୍ରଗତିଶୀଳ ଏବଂ ସାମାଜିକ ବିକାଶର ଅଭ୍ରାନ୍ତ ଓ ଶକ୍ତିଶାଳୀ ମାଧ୍ୟମ ବୋଲି ଅନୁଭୂତ ହୋଇଥିଲା । ପଣ୍ଡିତ ମୃତ୍ୟୁଞ୍ଜୟ ରଥ (୧୮୮୨-୧୯୨୪)ଙ୍କ ଲିଖିତ 'ନାରୀଦର୍ପଣ', 'ପ୍ରବନ୍ଧପାଠ' ଆଦର୍ଶ ପ୍ରବନ୍ଧ ରଚନାରୂପେ କଲିକତା ବିଶ୍ୱ-

*

ବିଦ୍ୟାଳୟଦ୍ୱାରା ପାଠ୍ୟପୁସ୍ତକରୂପେ ସ୍ୱୀକୃତ ହୋଇ ଓଡ଼ିଆ ଗଦ୍ୟ ପ୍ରକୃତିର ଗୁରୁତ୍ୱ ଏବଂ ବୈଶିଷ୍ଟ୍ୟ ପ୍ରତିଷ୍ଠିତ କରିଥିଲା । ମଧୁସୂଦନ ରାଓଙ୍କ ଗଦ୍ୟଶୈଳୀ ଏକାନ୍ତଭାବରେ ସମାସବହୁଳ । ତତ୍ସମ ଶବ୍ଦାଡ଼ମ୍ବରପରିପୂର୍ଣ୍ଣ ଦୀର୍ଘ ଜଟିଳ କାବ୍ୟ-ସମନ୍ୱିତ ତାଙ୍କର ପ୍ରବନ୍ଧଗୁଡ଼ିକ ଏକପ୍ରକାର କ୍ଲାସିକଧର୍ମୀ ଓ ତଥ୍ୟନିଷ୍ଠ । ତାଙ୍କ ଭାଷା ନିର୍ଦ୍ଦିଷ୍ଟ ଶୃଙ୍ଖଳା, ସଂଯମ ଏବଂ ବୈୟାକରଣିକ ନିର୍ଦ୍ଦେଶସମ୍ବଳିତ ।

ଚଳନ୍ତ ଶତାବ୍ଦୀର ପ୍ରାରମ୍ଭରେ ଉତ୍କଳ ସାହିତ୍ୟ (୧୮୯୭), ମୁକୁର (୧୯୦୫) ମାସିକ ପତ୍ରିକାଦ୍ୱୟ ଓଡ଼ିଆ ଗଦ୍ୟ ସାହିତ୍ୟର ବ୍ୟାପକତା, ବିସ୍ତୃତି, କଳା-କୌଶଳ, କାନ୍ତମୟତ୍ୱ, ବସ୍ତୁନିଷ୍ଠତା ଏବଂ ବ୍ୟକ୍ତିନିଷ୍ଠତା ପ୍ରବର୍ତ୍ତନ କରିବାରେ ସହାୟକ ହୋଇଥିଲା । ପୁନଶ୍ଚ ୧୯୧୯ ବେଳକୁ ପ୍ରକାଶିତ ସତ୍ୟବାଦୀ ସାହିତ୍ୟିକ ଗୋଷ୍ଠୀଙ୍କ ମୁଖପତ୍ର 'ସତ୍ୟବାଦୀ' ପତ୍ରିକା ମଧ୍ୟ ଓଡ଼ିଆ ପ୍ରବନ୍ଧ ରଚନାର ବିବିଧତା, ବୈଚିତ୍ର୍ୟ ତ-। ଶିଳ୍ପରୂପ ପ୍ରକଟିତ କରିଥିଲା ଏବଂ ପରବର୍ତ୍ତୀ କାଳରେ ଅର୍ଥାତ୍ ୧୯୩୦ ମସିହାରୁ ୧୯୫୦ ମସିହା ମଧ୍ୟରେ ପ୍ରକାଶିତ ସଂଖ୍ୟାଧିକ ଉଚ୍ଚାଙ୍ଗ ମାସିକ ପତ୍ର; ଯଥା—ସହକାର, ନବଭାରତ, ଆଧୁନିକ, ଆରତି, ଡଗର, ଶଙ୍ଖ, ଚତୁରଙ୍ଗ, ଭଞ୍ଜପ୍ରଭା, ଆସନ୍ତାକାଲି, କୁଙ୍କୁମ, ଝଙ୍କାର ପ୍ରଭୃତି ମାସିକ ପତ୍ରିକା ଓଡ଼ିଆରେ ମନ୍ମୟ, ତନ୍ମୟ, ବର୍ଣ୍ଣନାତ୍ମକ, ବିବରଣାତ୍ମକ, ଭାବାତ୍ମକ, ତଥ୍ୟମୂଳକ ତାତ୍ତ୍ୱିକ ପ୍ରବନ୍ଧ ରଚିତ ହେବାରେ ଶକ୍ତିଶାଳୀ ମାଧ୍ୟମରୂପେ କାର୍ଯ୍ୟ କରିଥିଲା ।

ଓଡ଼ିଆ ଗଦ୍ୟ-ସାହିତ୍ୟରେ ସର୍ବପ୍ରଥମ ଥର ପାଇଁ ପ୍ରକୃତ କାବ୍ୟିକ, ବୈଜ୍ଞାନିକ ତଥା ଶୈଳ୍ପିକ ସ୍ୱାଦ ପ୍ରକଟିତ କରିବାରେ ପ୍ରତିଭାଶାଳୀ ପ୍ରାବନ୍ଧିକ ଗୋପାଳଚନ୍ଦ୍ର ପ୍ରହରାଜଙ୍କର (୧୮୭୦-୧୯୪୫) ଲିଖିତ 'ବାଇମହାନ୍ତି ପାଞ୍ଜି' (୧୯୧୩), 'ଭାଗବତଟୁଙ୍ଗିରେ ସନ୍ଧ୍ୟା' (୧୯୦୩) ସର୍ବାପେକ୍ଷା ଅଧିକ ତତ୍ତ୍ୱପୂର୍ଣ୍ଣ ଏବଂ ଅପୂର୍ବ ଗଦ୍ୟଶିଳ୍ପସ୍ୱାଦସମ୍ପନ୍ନ ରଚନା । ପଞ୍ଚଦଶ କ୍ରୀଡ଼ା-ସମ୍ବଳିତ 'ବାଇ-ମହାନ୍ତି ପାଞ୍ଜି' ଧାରାବାହିକଭାବରେ ମାସିକ ପତ୍ର 'ଉତ୍କଳ ସାହିତ୍ୟ'ରେ "ଦୁର୍ମୁଖ-ଶର୍ମା"ଙ୍କ ନାମରେ ପ୍ରକାଶିତ ହେଉଥିଲା । ବ୍ୟକ୍ତି, ସମାଜ, ଶିକ୍ଷା, ସଂସ୍କୃତି, ସଭ୍ୟତାର ନିର୍ମମ ବିଦ୍ରୂପାତ୍ମକ ଏବଂ ତାହାର ବୈଜ୍ଞାନିକ ବିଶ୍ଳେଷଣ ପାଇଁ ଏକ ଅନନୁକରଣୀୟ ଗଦ୍ୟଶୈଳୀ ପ୍ରବର୍ତ୍ତନ ପ୍ରାବନ୍ଧିକ ପ୍ରହରାଜଙ୍କ ମୌଳିକ କୃତିତ୍ୱ । ସ୍ତ୍ରୀଶିକ୍ଷା, ବିଧବା-ବିବାହରର ଅପକାରିତା, କଲିକତିଆ ନବ୍ୟସଭ୍ୟଙ୍କର ଗତିମତି, ସ୍ତ୍ରୀମାନଙ୍କର ଶ୍ରେଣୀବିଭାଗ ଏପରି ବିବିଧ ପର୍ଯ୍ୟାୟରେ ପ୍ରାବନ୍ଧିକ ବିଭିନ୍ନ ସାମାଜିକ ପ୍ରବୃତ୍ତି ଓ ଲକ୍ଷଣର ବ୍ୟଙ୍ଗାତ୍ମକ ରୂପ ପ୍ରକଟିତ କରିଛନ୍ତି । ସାମାନ୍ୟ ଆମ୍ବର ଶ୍ରେଣୀ-ବିଭାଗ ସାହାଯ୍ୟରେ ପ୍ରାବନ୍ଧିକ ମଣିଷସମାଜର ଯେଉଁ ଅଙ୍କନ କରିଛନ୍ତି, ତାହା ଯେ କୌଣସି ଗଳ୍ପ, ଉପନ୍ୟାସ ପରିଧିରେ ନ୍ୟସ୍ତ ଗୃହଚିତ୍ରିକ ଅଧ୍ୟୟନ ଅପେକ୍ଷା ଅଧିକ ତୀକ୍ଷ୍ଣ, ପ୍ରାଞ୍ଜଳ ଏବଂ ବ୍ୟାପକ ।

"ଆମ୍ବର ନାମକରଣ ଲୋକବିଶେଷର ରୁଚି ଓ ଇଚ୍ଛା ଉପରେ ନିର୍ଭର କରେ ବୋଲି କହିଅଛୁଁ । ଅତଏବ, ବାଇ ମହାନ୍ତି ନିଜର ରୁଚି ଅନୁସାରେ କେତେକ ପ୍ରକାର ନାମକରଣ କରୁଅଛନ୍ତି ।" (ଏ ହେଡ଼ିଙ୍ଗରେ ବାଇମାହାନ୍ତିଙ୍କ ପ୍ରଦତ୍ତ ନାମ ପ୍ରାୟ ଏକ ଶତରୁ ନ୍ୟୂନ ନୁହେଁ । ସମ୍ପାଦକ ବାଛି ବାଛି କେବଳ କେତେଗୋଟି ନାମ ଏଠାରେ ଦେଲେ । )

ଭଡ଼ିକା (ବଡ଼ଲୋକ)—ଦେଖିବାକୁ ବଡ଼, କିନ୍ତୁ ଭିତରେ ଅନେକ ଜୀବ-ଜନ୍ତୁଙ୍କ ଆଶ୍ରୟସ୍ଥଳ ଓ ପାଣିଚିଆ ।

ନିଗୁଣ (ଗରିବ)—ଏହାକୁ କାଟି ଖାଅ, ଚିପୁଡ଼ି ଖାଅ କିମ୍ବା ପାଟି ଲଗାଇ ଖାଅ ।

ଲସମା (କୋମଳ)—ଏହାକୁ ଥରେ ଚିପୁଡ଼ିଦେଲେ ଟାକୁଆରୁ ରସ ନିଗିଡ଼ିଯାଏ ।

ନିଆଁବାଣ (ରାଗୀ)—ଯେଉଁ ଆମ୍ବକୁ ଖାଇଲେ ଖଟାରେ ଦାନ୍ତପାଟି ଦରଜ ହୋଇଯାଏ ।

ଯୋବରା (ଅଲଜୁକ)—ଚେରୁଆ ଆମ୍ବ, ଘଣ୍ଟାଏ ପରିଶ୍ରମ କରି ଦାନ୍ତରେ ନ ରକଟିଲେ ସମ୍ପୂର୍ଣ୍ଣ ରସ ବାହାରେ ନାହିଁ । ତେବେ ସୁଦ୍ଧା ଦାନ୍ତମୂଳଯାକ ଚେର ଲାଗିଯାଏ ।

ଗରଜୀ (ପରୋପକାରୀ)—ସୁଖସେବ୍ୟ, ରୋଗୀର ପଥ୍ୟ ଓ ରୁଚିକର ଆଗ୍ରହ ।

ଆମଦାନୀ (ଶିକ୍ଷିତ)—କଲମି ଆମ୍ବ । (ଏହା ଭିତରେ ଯେ ତାରତମ୍ୟ ନାହିଁ ତାହା ନୁହେଁ । )

ସାଉଁଲା (ଖୋସାମଦିଆ)—ସୁନ୍ଦର ଆମ୍ବ ।

ମଖନା (ଦୟାଳୁ)—ଏ ଆମ୍ବ ସାଧାରଣ ଆମ୍ବ ଅପେକ୍ଷା ବଡ଼ ଓ ସୁସ୍ୱାଦୁ । ଗୋଟିଏ ଖାଇଲେ ପରିଶ୍ରମ ସଫଳ ହୁଏ ଓ ଉଦର ପୂର୍ଣ୍ଣ ହୁଏ ।" ଇତ୍ୟାଦି ।

ସେହିପରି 'ଭାଗବତ ଟୁଙ୍ଗୀରେ ସନ୍ଧ୍ୟା' ପ୍ରାବନ୍ଧିକଙ୍କର ଓଡ଼ିଆ ସାହିତ୍ୟରେ ଆଉ ଏକ ସାର୍ଥକ ଗଦ୍ୟଶୈଳୀର ନିଦର୍ଶନ । ଇଂରେଜକବି ଓଲିଭର ଗୋଲ୍ଡସ୍ମିଥ୍‌ଙ୍କ ରଚନା ଅନୁସରଣରେ ଏହା ଲିଖିତ ବୋଲି ପ୍ରାବନ୍ଧିକ ସୂଚନା ଦେଇଛନ୍ତି । ସର୍ବମୋଟ ଦଶଗୋଟି ଅଧ୍ୟାୟରେ ପ୍ରାବନ୍ଧିକ ସମାଜର ବିଭିନ୍ନ ସ୍ତରର ଚରିତ୍ର; ଯଥା—ପଣ୍ଡିତ, ମୁକ୍ତାର, ମହାଜନ, ଜମିଦାର, କବିରାଜ, ଡାକ୍ତର, ବାବାଜିଙ୍କର ବ୍ୟଙ୍ଗାତ୍ମକ ସମୀକ୍ଷା କରିଛନ୍ତି । ଉଭୟ ପୁସ୍ତକର ବ୍ୟକ୍ତିନିଷ୍ଠ ଗଦ୍ୟ-ଶୈଳୀ ପାଠକର ଆବେଗ, ବୌଦ୍ଧିକପ୍ରବଣତା ଏବଂ ତୀକ୍ଷ୍ଣ ଦୃଷ୍ଟିକୋଣ ବୃଦ୍ଧି

କରିଥାଏ । ଲେଖକଙ୍କର 'ନନାଙ୍କ ବସ୍ତାନି' ମଧ୍ୟ ତାଙ୍କୁ ସାମାଜିକ ପର୍ଯ୍ୟବେକ୍ଷକ ଭାବରେ ପ୍ରତିଷ୍ଠିତ କରିପାରିଛି ।

ସ୍ୱାଧୀନତା ପରବର୍ତ୍ତୀ କାଳରେ 'ଝଙ୍କାର' ପତ୍ରିକାରେ ପ୍ରକାଶିତ କୃଷ୍ଣପ୍ରସାଦ ବସୁଙ୍କ 'ଆଖଡ଼ାଘରେ ବୈଠକ' ଶୀର୍ଷକ ଧାରାବାହିକ ରଚନା ଏବଂ ଡ: ହରେକୃଷ୍ଣ ମହତାବଙ୍କ 'ଗାଁ ମଜଲିସ୍' ପୂର୍ବ ପରଂପରା ଅନୁସରଣରେ ଓଡ଼ିଆ ଗଦ୍ୟର ନୂତନ ଆସ୍ୱାଦନ ଶକ୍ତି ପ୍ରକଟିତ କରିପାରିଛି ।

ସମ୍ପାଦକ ବିଶ୍ୱନାଥ କରଙ୍କର ସ୍ୱଲିଖିତ ପ୍ରବନ୍ଧ ସଂକଳନ 'ବିବିଧ ପ୍ରବନ୍ଧ' ଓଡ଼ିଆ ସାହିତ୍ୟରେ ଚିନ୍ତାତ୍ମକ ଏବଂ ସମାଲୋଚନାତ୍ମକ ଗଦ୍ୟଶୈଳୀ ପ୍ରବର୍ତ୍ତନ କରିବା ସଙ୍ଗେ ସଙ୍ଗେ ବହୁ ତରୁଣ ସାହିତ୍ୟିକଙ୍କୁ ଗଦ୍ୟରଚନା ପ୍ରତି ଆକୃଷ୍ଟ କରି ପାରିଥିଲି । ନୂତନ ନୂତନ ଜ୍ଞାନବିଜ୍ଞାନ, ସାହିତ୍ୟ ତତ୍ତ୍ୱ, ସାଂସ୍କୃତିକ ଚେତନା, ସାମାଜିକ ସମସ୍ୟା ପ୍ରାବନ୍ଧିକମାନଙ୍କୁ ଲେଖନୀଚାଳନା କରିବାକୁ ପ୍ରେରଣା ଦେଇ-ଥିଲା । ଚନ୍ଦ୍ରମୋହନ ମହାରଣା ଓଡ଼ିଆ ସାହିତ୍ୟର ଇତିହାସ ପ୍ରଣୟନର ଆଦ୍ୟ ଉଦ୍ୟୋକ୍ତା । କୃଷ୍ଣପ୍ରସାଦ ଚୌଧୁରୀ ପ୍ରମୁଖ ଆଲୋଚକମାନଙ୍କର ଉଦ୍ୟମ ମଧ୍ୟ ଉଲ୍ଲେଖଯୋଗ୍ୟ; ଏକ ନିର୍ଦ୍ଦିଷ୍ଟ ପ୍ରବନ୍ଧଶୈଳୀ ପାଇଁ ଯେପରି ସମ୍ପାଦକ ଏବଂ ଲେଖକମାନେ ଆଗ୍ରହ ପ୍ରକାଶ କଲେ ।

ପ୍ରାଚୀନ କାବ୍ୟକବିତା ଏବଂ ଆଧୁନିକ ରୁଚିସଂପନ୍ନ ମୌଳିକ କାନ୍ତକାରୀ କାବ୍ୟକବିତା, ଗଳ୍ପ, ଉପନ୍ୟାସ ପୁସ୍ତକର ଆଲୋଚନା ପ୍ରକାଶିତ ହୋଇ କ୍ରମଶଃ ଗଦ୍ୟର ବିସ୍ତୃତ ସମ୍ଭାବନା ଏବଂ ଶକ୍ତି-ସାମର୍ଥ୍ୟ ପ୍ରମାଣିତ କରିଥିଲା । ପଣ୍ଡିତ ଗୋପୀନାଥ ନନ୍ଦଙ୍କ 'ଓଡ଼ିଆ ଭାଷାତତ୍ତ୍ୱ', ଶ୍ୟାମସୁନ୍ଦର ରାଜଗୁରୁଙ୍କ 'ପ୍ରବନ୍ଧାବଳୀ' ତାରିଣୀଚରଣ ରଥଙ୍କ 'ଉତ୍କଳ ସାହିତ୍ୟର ଇତିହାସ' ଏବଂ ପଣ୍ଡିତ ବିନାୟକ ମିଶ୍ରଙ୍କ 'ଓଡ଼ିଆ ଭାଷାର ଇତିହାସ', 'ଓଡ଼ିଆ ସାହିତ୍ୟର ଇତିହାସ', ସର୍ବୋପରି 'ପ୍ରାଚୀ ସମିତି' ଆନୁକୂଲ୍ୟରେ (୧୯୨୪-୨୯) ଆର୍ତ୍ତବଲ୍ଲଭ ମହାନ୍ତି ଏବଂ ବାଞ୍ଛାନିଧି ପଟ୍ଟନାୟକଙ୍କ ସମ୍ପାଦିତ ପ୍ରାଚୀନ ଓଡ଼ିଆ କାବ୍ୟକୃତିର ପାଣ୍ଡିତ୍ୟପୂର୍ଣ୍ଣ ବିଚାର ଆଲୋଚନା ଓଡ଼ିଆରେ ସମାଲୋଚନା ସାହିତ୍ୟର ଅଭିନବ ପରଂପରା ସୃଷ୍ଟି କରିଥିଲା ।

ପ୍ରହରାଜଙ୍କ ସମସାମୟିକ ଶଶିଭୂଷଣ ରାୟଙ୍କର (୧୮୭୬-୧୯୫୩) ଅଜସ୍ର ଗଦ୍ୟରଚନା ଏକ ସ୍ୱୟଂସଂପୂର୍ଣ୍ଣ ଗଦ୍ୟଶୈଳୀର ପ୍ରବର୍ତ୍ତକ ବୋଲି କୁହା-ଯାଇପାରେ । ଶ୍ରୀଯୁକ୍ତ ରାୟ କବି ରାଧାନାଥ ରାୟଙ୍କର ପୁତ୍ର ଏବଂ ପିତାଙ୍କର ଛନ୍ଦୋବଦ୍ଧ କାବ୍ୟକୀର୍ତ୍ତି, କାବ୍ୟପରମ୍ପରା, ନିଛକ ସୌନ୍ଦର୍ଯ୍ୟପ୍ରେମ ପୁତ୍ରଙ୍କର 'ବିବିଧ ପ୍ରବନ୍ଧ' 'ଭ୍ରମଣଲିପି'ରେ ସଫଳତା ସହିତ ଉତ୍ତୀର୍ଣ୍ଣ ହୋଇପାରିଥିଲା । ଶଶିଭୂଷଣ ତାଙ୍କର ଉତ୍ସର୍ଗୀକୃତ ସାହିତ୍ୟିକ ଜୀବନରେ ବହୁ ପତ୍ରପତ୍ରିକା ଏବଂ ସାହିତ୍ୟିକ

ଅନୁଷ୍ଠାନ ସହିତ ନିବିଡ଼ ଭାବରେ ସମ୍ପୃକ୍ତ ଥିଲେ । ଇଂରେଜ ଗଦ୍ୟଶୈଳୀର ପ୍ରବର୍ତ୍ତକ ଜନ୍‌ସନ୍‌ଙ୍କ ନିର୍ଦ୍ଦିଷ୍ଟ ସଂଜ୍ଞାନୁଯାୟୀ ପ୍ରବନ୍ଧର ଆଭିମୁଖ୍ୟ, ପରିଧି ଓ ରୂପ ସଂପର୍କରେ ପ୍ରାବନ୍ଧିକ ସଚେତନ ଥିଲେ—"An essay is a loose sally of the mind, an irregular, undigested piece, not a regular and orderly composition." ଭାଷା ଓ ତଥ୍ୟର ସମୀକ୍ଷଣ, ସମତା, ସଠିକତା, ସାବଲୀଳତା ଏବଂ ସଂକ୍ଷିପ୍ତତା ନୂତନ ପ୍ରବନ୍ଧରେ ପ୍ରକଟିତ ହେବାକୁ ଲାଗିଲା । ଇତିହାସ, ବିଜ୍ଞାନ ଏବଂ ପ୍ରାଚୀନତତ୍ତ୍ୱ ଓ ପ୍ରାଚୀନ ସାହିତ୍ୟ ସଂପର୍କୀୟ ଗବେଷଣା କ୍ରମଶଃ ପ୍ରବନ୍ଧ ବିଭାଗର ଅନ୍ତର୍ଗତ ହୋଇଥିଲା । ଶଶିଭୂଷଣ ରାୟଙ୍କ 'ପ୍ରବନ୍ଧ ପ୍ରବାହ'ରେ ଯେପରି ସାହିତ୍ୟ, ସମାଜ ଓ ଶିକ୍ଷାର ବିଭିନ୍ନ ଦିଗନ୍ତର ଆଭାସ ପରିଦୃଷ୍ଟ, ତାଙ୍କର 'ଉତ୍କଳ ଭ୍ରମଣ' ପ୍ରବନ୍ଧ ସଂକଳନ ସେହିପରି ଉତ୍କଳୀୟ ମନୋଜ୍ଞ ପ୍ରାକୃତିକ ଦୃଶ୍ୟରାଜିର କାବ୍ୟିକ ଅଭିବ୍ୟକ୍ତି । ତାଙ୍କର 'ଉତ୍କଳର ଋତୁଚକ୍ର' ଯଥାର୍ଥତଃ ଏକ ଗଦ୍ୟକାବ୍ୟ । ଶଶିଭୂଷଣ ରାୟଙ୍କ ଗଦ୍ୟଶୈଳୀ ସ୍ୱାତନ୍ତ୍ର୍ୟ-ପୂର୍ଣ୍ଣ ଏବଂ କାବ୍ୟଧର୍ମୀ । ପ୍ରାବନ୍ଧିକଙ୍କର କଳ୍ପନା, ପର୍ଯ୍ୟବେକ୍ଷଣ ଏବଂ ଅଭିଜ୍ଞତା ଏଥିପାଇଁ ଦାୟୀ । ଏହି ପ୍ରାବନ୍ଧିକଙ୍କର 'ଦାକ୍ଷିଣାତ୍ୟ ଭ୍ରମଣ' (୧୮୯୭) ମଧ୍ୟ ଓଡ଼ିଆ ପର୍ଯ୍ୟଟନ ସାହିତ୍ୟକ୍ଷେତ୍ରରେ ଆଦ୍ୟ ସାର୍ଥକ ସୃଷ୍ଟି ବୋଲି ବିବେଚିତ ।

ଓଡ଼ିଆ ପ୍ରବନ୍ଧସାହିତ୍ୟରେ ଦାର୍ଶନିକ ଆଭିମୁଖ୍ୟ ଏବଂ ଚିନ୍ତାଗାମ୍ଭୀର୍ଯ୍ୟ ପ୍ରବେଶ କରାଇବାରେ ରେଭେନ୍‌ସା କଲେଜରେ ବହୁବର୍ଷଧରି ଅଧ୍ୟାପନା କରିଥିବା ସୁପରିଚିତ ଦର୍ଶନ ଅଧ୍ୟାପକ ବିପିନବିହାରୀ ରାୟ ପ୍ରଥମ ପଥପ୍ରଦର୍ଶକ । ଓଡ଼ିଆ ଗଦ୍ୟ-ଧାରାରେ ତାଙ୍କର ଶୈଳୀ ଏକ ପ୍ରଚଣ୍ଡ ବୌଦ୍ଧିକ ବ୍ୟକ୍ତିତ୍ୱଦ୍ୱାରା ପ୍ରଣୋଦିତ । ସେଥିପାଇଁ ତାଙ୍କର ପ୍ରତ୍ୟେକ ପ୍ରବନ୍ଧ ଆମୂଳଚୂଳ ଯୁକ୍ତିପ୍ରବଣତା ଓ ବୈଜ୍ଞାନିକ ଦୃଷ୍ଟିକୋଣଦ୍ୱାରା ଚିହ୍ନିତ । ଦର୍ଶନଶାସ୍ତ୍ରର ସୂକ୍ଷ୍ମତତ୍ତ୍ୱସମୂହକୁ ପ୍ରାବନ୍ଧିକ ଯେପରି ବଳିଷ୍ଠ ଏବଂ ଯୁକ୍ତିଯୁକ୍ତ ଭାଷା ସାହାଯ୍ୟରେ ପ୍ରକାଶ କରିପାରିଛନ୍ତି, ସେଥିରେ ଓଡ଼ିଆ ଗଦ୍ୟଶୈଳୀର ଅଶେଷ ସାମର୍ଥ୍ୟ ଓ ସମ୍ଭାବନା ହିଁ ପ୍ରମାଣିତ । ପତ୍ରପତ୍ରିକା-ମାନଙ୍କରେ ପ୍ରକାଶିତ ତାଙ୍କ ପ୍ରବନ୍ଧସମୂହର ସଂକଳନ ହେଉଛି 'ପ୍ରବନ୍ଧ ସୋପାନ', 'ସାମାଜିକ ପ୍ରବନ୍ଧ' । ଏତଦ୍‌ବ୍ୟତୀତ ସେ ପ୍ରଥମ ଥର ପାଇଁ ଓଡ଼ିଆରେ ତର୍କଶାସ୍ତ୍ର ପ୍ରଣୟନ କରିଛନ୍ତି । ସେହିପରି ଦାର୍ଶନିକ ଅଧ୍ୟାପକ ରତ୍ନାକର ପତିଙ୍କର ସଂଖ୍ୟାଧିକ ପ୍ରବନ୍ଧ 'ପ୍ରବନ୍ଧ ପ୍ରକାଶ' (ପ୍ରଥମ ଭାଗ ଓ ଦ୍ୱିତୀୟ ଭାଗ) ମଧ୍ୟ ଓଡ଼ିଶାର ସାମାଜିକ, ସାଂସ୍କୃତିକ ଜୀବନ ବିଶ୍ଳେଷଣ କରିବାରେ ସମର୍ଥ ହୋଇଥିଲା । ମୋହିନୀମୋହନ ସେନାପତିଙ୍କର 'ବିବିଧ ପ୍ରସଙ୍ଗ' ଏବଂ ବଜ୍ରବିହାରୀ ମହାନ୍ତିଙ୍କ ରଚିତ 'ଚିନ୍ତା', ବାସୁଦେବ ମହାପାତ୍ରଙ୍କ 'ଶାନ୍ତିଧାରା', 'ପ୍ରବନ୍ଧ ପ୍ରବେଶ' ଅନ୍ତର୍ଭୁକ୍ତ ପ୍ରବନ୍ଧସମୂହ ଓଡ଼ିଆ ଗଦ୍ୟ-ସାହିତ୍ୟର ପରିମାଣାତ୍ମକ ଏବଂ ଗୁଣାତ୍ମକ ଉତ୍କର୍ଷ ସାଧନ କରିଥିଲା ।

ନୀଳକଣ୍ଠ ଦାସଙ୍କ 'ଆର୍ଯ୍ୟଜୀବନ'ରେ ପ୍ରାଚୀନ ଭାରତୀୟ ଆର୍ଯ୍ୟଜୀବନର ଧାରା ଓ ଆଧ୍ୟାତ୍ମିକ ବୈଶିଷ୍ଟ୍ୟ ଦାର୍ଶନିକ ଭାଷାରେ ଯୁକ୍ତିପୂର୍ଣ୍ଣ ରୀତିରେ ପ୍ରତିପାଦିତ । 'ଓଡ଼ିଆ ଭାଷା ଓ ସାହିତ୍ୟ', 'ଓଡ଼ିଆ ସାହିତ୍ୟର କ୍ରମପରିଣାମ' ଆଦି କେତୋଟି ତାଙ୍କର ସ୍ମରଣୀୟ ସାହିତ୍ୟ କୃତି ।

ଜଗବନ୍ଧୁ ସିଂହଙ୍କର 'ପ୍ରବନ୍ଧସାର' 'ପ୍ରାଚୀନ ଉତ୍କଳ', କପିଳେଶ୍ୱର ଦାସ (୧୯୦୬)ଙ୍କର 'ଜୀବନଚିନ୍ତା', ଜଳନ୍ଧର ଦେବ, ବୃନ୍ଦାବନ ନାଥ ଶର୍ମା 'ସତ୍‌ଚିନ୍ତା', କାଳିଆ ପାଣିଗ୍ରାହୀ ପ୍ରମୁଖ ପ୍ରାବନ୍ଧିକମାନଙ୍କ ପର୍ଯ୍ୟନ୍ତ ଚିନ୍ତାଶୀଳ ପ୍ରବନ୍ଧ ଓଡ଼ିଆ ପ୍ରବନ୍ଧ-ସାହିତ୍ୟର ବିକାଶ ପର୍ଯ୍ୟାୟରେ ଉଲ୍ଲେଖଯୋଗ୍ୟ ।

ସ୍ୱାଧୀନତା ପରବର୍ତ୍ତୀ କାଳରେ ଓଡ଼ିଶାରେ ଉଚ୍ଚଶିକ୍ଷା, ବିଜ୍ଞାନବାର୍ତ୍ତା, ଶିଳ୍ପ ସମ୍ପ୍ରସାରଣ ଯୋଗୁଁ ଓଡ଼ିଆ ଭାଷା ଏବଂ ସାହିତ୍ୟ ମଧ୍ୟ ଅପ୍ରତ୍ୟାଶିତ ଭାବରେ ଗୁଣାତ୍ମକ ଏବଂ ପରିମାଣାତ୍ମକ ଦୃଷ୍ଟିରୁ ପ୍ରଭାବିତ ହୋଇପାରିଛି । ବିକାଶର ଆଦିପର୍ବ ଅପେକ୍ଷା ଦ୍ୱିତୀୟ ପର୍ଯ୍ୟାୟରେ ପ୍ରବନ୍ଧ-ସାହିତ୍ୟର ଆଭିମୁଖ୍ୟ ପାଶ୍ଚାତ୍ୟ ସାହିତ୍ୟଧାରାରେ ସଂପ୍ରସାରିତ ହେଲା; ଯଥା—Monograph, Treatise, Tract, Dissertation, Belles letters ଇତ୍ୟାଦି । ବଳିଷ୍ଠ ବ୍ୟକ୍ତିତ୍ୱର ଆତ୍ମପ୍ରକାଶ self-portrait ଭାବରେ ଓଡ଼ିଆ ଭାଷାରେ ପ୍ରବନ୍ଧ ଅପେକ୍ଷାକୃତ ଗାମ୍ଭୀର୍ଯ୍ୟ, ସଂବେଦନଶୀଳତା, ବୈଚିତ୍ର୍ୟ ଏବଂ ଉଦ୍ଦେଶ୍ୟବହୁଳତା ଅନୁସରଣ କରିଥିଲା । ଗବେଷଣା, ସମାଲୋଚନା କ୍ଷେତ୍ରରେ ସମ୍ଭବତଃ ସର୍ବାପେକ୍ଷା ଅଧିକ ସାଧନା, ନିଷ୍ଠା ପ୍ରତିଫଳିତ ହେଲା । ବିଶେଷତଃ ଏକାଧିକ ବିଶ୍ୱବିଦ୍ୟାଳୟ ଓ କଲେଜ ପ୍ରତିଷ୍ଠିତ ହେବା ଫଳରେ ବହୁ ଓଡ଼ିଆ ଅଧ୍ୟାପକ ସାହିତ୍ୟ ଓ ଭାଷା ଆଲୋଚନା ପ୍ରତି ଆକୃଷ୍ଟ ହେଲେ ଏବଂ ୧୯୫୦ ମସିହାଠାରୁ ୧୯୭୪ ମସିହା ପର୍ଯ୍ୟନ୍ତ ପ୍ରକାଶିତ ଆଲୋଚନାସମୂହର ଗୌରବ ଓଡ଼ିଆ ଅଧ୍ୟାପକମାନଙ୍କର ବୋଲି କହିବାକୁ ହେବ । ଅବଶ୍ୟ, ଅନେକ ଅଧ୍ୟାପକ ଯେ କଲେଜ ପାଠ୍ୟପୁସ୍ତକ ଟୀକା ଲେଖିବାର ମୋହ ସମ୍ବରଣ କରିପାରିଛନ୍ତି, ତାହା ନୁହେଁ ।

ପ୍ରାଚୀନ ଓଡ଼ିଆ ଭାଷାର ନିଦର୍ଶନରୂପେ ଦାବୀ କରାଯାଉଥିବା ବୌଦ୍ଧ-ଗାନ ଓ ଦୋହା ସମ୍ପର୍କରେ ଗବେଷଣାମୂଳକ ନିବନ୍ଧ ଲେଖି ଡ: କରୁଣାକର କର ଓଡ଼ିଆ ସାହିତ୍ୟରେ ଏକ ବଳିଷ୍ଠ ସାଂସ୍କୃତିକ ପରଂପରା ସୃଷ୍ଟି କଲେ । ଡ: ଆର୍ତ୍ତବଲ୍ଲଭ ମହାନ୍ତି ଏବଂ ଡ: କରୁଣାକରଙ୍କ ଆଦର୍ଶରେ ବହୁ ଅଧ୍ୟାପକ ଗବେଷଣା କରି ଓଡ଼ିଆ ସାହିତ୍ୟର ବିଭିନ୍ନ ଯୁଗ ଏବଂ ଧାରା ଉପରେ ଆଲୋକପାତ କରିଛନ୍ତି । ଅଭିଲେଖ, ଓଡ଼ିଆ ଭାଷାଲିପି ଅଧ୍ୟୟନ କ୍ଷେତ୍ରରେ ଡ: କୁଞ୍ଜବିହାରୀ ତ୍ରିପାଠୀଙ୍କର ଗବେଷଣା ଓ ଦାନ ସର୍ବାପେକ୍ଷା ଅଧିକ । ଓଡ଼ିଆ ଅଭିଲେଖରେ ଓଡ଼ିଆ ଭାଷାର ପ୍ରାଚୀନତା ଉପରେ ପ୍ରତିଫଳିତ ଏବଂ ପ୍ରାକୃତ ଓ ଦ୍ରାବିଡ଼ ଭାଷା ସହିତ ଓଡ଼ିଆ

ଭାଷାର ସମ୍ପର୍କ ନିର୍ଦ୍ଧାରଣ କରିବାରେ ଡ: ତ୍ରିପାଠୀଙ୍କ ଗବେଷଣା ପଥ-ପ୍ରଦର୍ଶକ ।

ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ଏକ ଅବହେଳିତ ଦିଗ ପ୍ରତି ସମସ୍ତଙ୍କ ଦୃଷ୍ଟିଆକର୍ଷଣକାରୀ ଡ: କୁଞ୍ଜବିହାରୀ ଦାଶଙ୍କର 'ଓଡ଼ିଆ ଲୋକଗୀତ ଓ କାହାଣୀ' ଶୀର୍ଷକ ବହୁ ବର୍ଷ ସାଧନାପ୍ରସୂତ ଉଚ୍ଚକୋଟୀର ଗବେଷଣା ଏକ ସାଂସ୍କୃତିକ ଘଟଣା ବୋଲି ଜାଣିବାକୁ ହେବ । ଉଭୟ ସଂସ୍କୃତ ଓ ଓଡ଼ିଆ ଭାଷାର ଗବେଷକ ପ୍ରହ୍ଲାଦ ପ୍ରଧାନଙ୍କର 'ପାଲି ଧମ୍ମପଦଂ ସମସ୍ୟା' ଏକ ବିଶିଷ୍ଟ ଗବେଷଣାଲବ୍ଧ କୃତି । ଡ: ଜାନକୀବଲ୍ଲଭ ମହାନ୍ତି (ଓଡ଼ିଆ ଗୀତିକାବ୍ୟ), ଡ: ନରେନ୍ଦ୍ର ନାଥ ମିଶ୍ର (ବଳରାମ ଦାସ ଓ ଦାଣ୍ଡୀ ରାମାୟଣ, ଓଡ଼ିଆ କାବ୍ୟଧାରା), ଡ: କୃଷ୍ଣଚରଣ ବେହେରା (ଓଡ଼ିଆ ଉପନ୍ୟାସ), ଡ: ସଚ୍ଚିଦାନନ୍ଦ ମହାନ୍ତି (ନୃସିଂହ ଉପାସନା), ଡ: ନଟବର ସାମନ୍ତରାୟ (ଓଡ଼ିଆ ସାହିତ୍ୟର ଇତିହାସ—୧୮୦୩-୧୯୨୦), ଡ: ବାସୁଦେବ ସାହୁ (ଓଡ଼ିଆ ଭାଷାରେ ବାହ୍ୟ ପ୍ରଭାବ), ଡ: ଧନେଶ୍ୱର ମହାପାତ୍ର (ସାରଳା ମହାଭାରତର ଭାଷାତାତ୍ତ୍ୱିକ ଅଧ୍ୟୟନ) ଗବେଷଣା କରି କୃତିତ୍ୱ ଅର୍ଜନ କରିଅଛନ୍ତି । ଏମାନଙ୍କ ବ୍ୟତୀତ ଡ: ଦେବୀପ୍ରସନ୍ନ ପଟ୍ଟନାୟକ ( ସାହିତ୍ୟ ସମୀକ୍ଷା ), ଚିତ୍ତରଞ୍ଜନ ଦାସ ( ସମାଜ, ଜୀବନ ବିଦ୍ୟାଳୟ, ଶିଳା ଓ ଶାଳଗ୍ରାମ ), ବୃନ୍ଦାବନଚନ୍ଦ୍ର ଆଚାର୍ଯ୍ୟ ( ସତ୍ୟବାଦୀ ଯୁଗ ), ଗୋଦାବରୀଶ ମହାପାତ୍ର (ପରିକ୍ରମା, ଓଡ଼ିଆ ସାହିତ୍ୟର ଇତିହାସ), ଦାଶରଥି ଦାସ (କାବ୍ୟ ସମ୍ବାଦ, ଆଧୁନିକ କାବ୍ୟ ଜିଜ୍ଞାସା : ଚିତ୍ରକଳ୍ପ), ସୁବୋଧ ଗୃହାର୍ଯ୍ୟ, ପରମାନନ୍ଦ ଆଚାର୍ଯ୍ୟ (ରାଧାନାଥଙ୍କ ଅନନ୍ୟପ୍ରତିଭା), ସର୍ବେଶ୍ୱର ଦାସ (ନାଟକ ବିଚାର, ଯୁଗସ୍ରଷ୍ଟା ଫକୀରମୋହନ), ଦେବେନ୍ଦ୍ର ମହାନ୍ତି (ଆଧୁନିକ ସାହିତ୍ୟ ସନ୍ଦର୍ଶନ), ବେଣୀମାଧବ ପାଢ଼ୀ (ଦାରୁ ଦେବତା, ଧୀ ଓ ଧୀଷଣା, ଭଞ୍ଜୀୟ କାବ୍ୟଭାବନା), ଚିନ୍ତାମଣି ଆଚାର୍ଯ୍ୟ ପ୍ରଭୃତିଙ୍କର ଦାନ ଓଡ଼ିଆ ପ୍ରବନ୍ଧ ଓ ସମାଲୋଚନା କ୍ଷେତ୍ରରେ ସ୍ମରଣୀୟ । ଏହି ପ୍ରସଙ୍ଗରେ ବିଶିଷ୍ଟ ନାଟ୍ୟକାର କାଳୀଚରଣ ପଟ୍ଟନାୟକଙ୍କର 'ମଞ୍ଚଧାରା', ନୀଳମାଧବ ପାଣିଗ୍ରାହୀଙ୍କ ସଙ୍ଗୀତ ସମ୍ବନ୍ଧୀୟ ପ୍ରବନ୍ଧାବଳୀ, ହରିକିଶୋର ଦାସଙ୍କ 'ଯୁଗେ ଯୁଗେ ନାଟ୍ୟ ସାହିତ୍ୟ', ନାରାୟଣ ଶତପଥୀଙ୍କ 'ନାଟକ ଓ ନାଟ୍ୟକାର' ଓଡ଼ିଆ ନାଟକ ଓ ମଞ୍ଚ ସମ୍ପର୍କିତ ଉପାଦେୟ କୃତି ।

ଶ୍ୟାମସୁନ୍ଦର ରାଜଗୁରୁ (ପ୍ରବନ୍ଧାବଳୀ), ଜଗବନ୍ଧୁ ସିଂହ (ପ୍ରାଚୀନ ଉତ୍କଳ), ପଣ୍ଡିତ ବିନାୟକ ମିଶ୍ର (ଓଡ଼ିଆ ସାହିତ୍ୟର ଇତିହାସ)ଙ୍କ ପରେ ଓଡ଼ିଆ ଭାଷା ଓ ସାହିତ୍ୟର ଆଧୁନିକ ଦୃଷ୍ଟିରେ ବିଚାର-ଆଲୋଚନାଦ୍ୱାରା ସର୍ବଶ୍ରୀ ସୂର୍ଯ୍ୟନାରାୟଣ ଦାଶ, ସୁରେନ୍ଦ୍ର ମହାନ୍ତି, ଡ଼: ମାୟାଧର ମାନସିଂହ, ଡ: ନଟବର ସାମନ୍ତରାୟ ଓଡ଼ିଆ ସାହିତ୍ୟକ୍ଷେତ୍ରରେ ନୂତନ ଦିଗନ୍ତ ଉଦ୍‌ଘାଟନ କରିଛନ୍ତି । ସୂର୍ଯ୍ୟନାରାୟଣ ଦାଶଙ୍କ

ଦୀର୍ଘଜୀବନର ଗବେଷଣାପ୍ରସୂତ କୃତି ବିଭିନ୍ନ ଭାଗରେ ବିଭକ୍ତ 'ଓଡ଼ିଆ ସାହିତ୍ୟର ଇତିହାସ' ଏକ ଧାରାବାହିକ ଇତିହାସ ଏବଂ ସୁରେନ୍ଦ୍ର ମହାନ୍ତିଙ୍କ 'ଓଡ଼ିଆ ସାହିତ୍ୟର ଆଦି ପର୍ବ ଓ ମଧ୍ୟ ପର୍ବ' ଓଡ଼ିଆ ସାହିତ୍ୟ ଏବଂ ସଂସ୍କୃତିର ଏକ ମନୋଜ୍ଞ ଗବେଷଣାସିଦ୍ଧ ଅଧ୍ୟୟନ । ପଣ୍ଡିତ ନୀଳକଣ୍ଠ ଦାସଙ୍କ 'ଓଡ଼ିଆ ସାହିତ୍ୟର କ୍ରମପରିଣାମ' ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ସଂପୂର୍ଣ୍ଣ ସ୍ୱତନ୍ତ୍ର ଧାରାରେ ବିଚାର ସମ୍ବନ୍ଧୀୟ ମୌଳିକ କୃତି । ଚିତ୍ତରଞ୍ଜନ ଦାସଙ୍କ 'ଅଚ୍ୟୁତାନନ୍ଦ ଓ ପଞ୍ଚସଖା' ଓଡ଼ିଶାର ମହିମା ଧର୍ମ ସମ୍ବନ୍ଧୀୟ ଆଲୋଚନା ଓଡ଼ିଆ ସାହିତ୍ୟକୁ ପରିପୁଷ୍ଟ କରିଛି ।

ଓଡ଼ିଆ କଥାସାହିତ୍ୟ କ୍ଷେତ୍ରରେ 'ଓଡ଼ିଆ ଉପନ୍ୟାସ ପରିଚୟ' (ଅଭ୍ୟୁଦୟ ସାହିତ୍ୟ ସମାଜ, ସଂକଳନ—ଶ୍ରୀ ଭୋଳାନାଥ ରାଉତ) 'ଓଡ଼ିଆ ଗଳ୍ପ, ଗତି ଓ ପ୍ରକୃତି' (ଶ୍ରୀବୈଷ୍ଣବ ଚରଣ ସାମଲ), 'କଥା-ସାହିତ୍ୟ' (ଡଃ କୃଷ୍ଣଚରଣ ବେହେରା) 'କ୍ଷୁଦ୍ର ଗଳ୍ପର ସୃଷ୍ଟି ଓ ସମୀକ୍ଷା' (ଶ୍ରୀ ବ୍ରଜମୋହନ ମହାନ୍ତି) ପ୍ରଭୃତି କେତୋଟି ଉଲ୍ଲେଖନୀୟ କୃତି ।

ଆଧୁନିକ ଓଡ଼ିଆ ସାହିତ୍ୟର ନିର୍ମାତା, ଔପନ୍ୟାସିକ ଓ କବି ଫକୀର-ମୋହନ ଏବଂ ରାଧାନାଥ, ମଧୁସୂଦନ, ଗଙ୍ଗାଧର, ନନ୍ଦକିଶୋରଙ୍କ ସୃଷ୍ଟି-ସମ୍ପଦର ସମୀକ୍ଷା ଅଧ୍ୟାପକମାନଙ୍କର ଦୃଷ୍ଟି ବିଶେଷଭାବରେ ଆକୃଷ୍ଟ କରିଛି । ସେଥିପାଇଁ ୧୯୫୦ ମସିହା ପରବର୍ତ୍ତୀ ଓଡ଼ିଆ ସମାଲୋଚନା ସାହିତ୍ୟରେ ପୂର୍ବୋକ୍ତ ସ୍ରଷ୍ଟାଗଣ ଅଗ୍ର ସ୍ଥାନ ଅଧିକାର କରିପାରିଛନ୍ତି । ସତ୍ୟବାଦୀଗୋଷ୍ଠୀ ସାରସ୍ୱତ ସମ୍ପଦ ଉପରେ ଚିନ୍ତାମଣି ଦାଶ ଏବଂ ଅଧ୍ୟାପକ ବୃନ୍ଦାବନଚନ୍ଦ୍ର ଆଚାର୍ଯ୍ୟ ଆଲୋକ-ପାତ କରିପାରିଛନ୍ତି ।

ବିଶିଷ୍ଟ ଇଂରେଜି ଅଧ୍ୟାପକ ଗିରିଜାଶଙ୍କର ରାୟ ନିଜର ଇଂରେଜୀ ଭାଷା ଓ ସାହିତ୍ୟ ଜ୍ଞାନ ସାହାଯ୍ୟରେ ଓଡ଼ିଆ ଭାଷା ଓ ସାହିତ୍ୟର ନବ ମୂଲ୍ୟାୟନ କରିଥିଲେ । ଓଡ଼ିଆ ନାଟ୍ୟକଳାର ପ୍ରଣେତା ଭାବରେ ତାଙ୍କର ବିଚାରଧାରା ଆଦର୍ଶ ସ୍ଥାନୀୟ । ଓଡ଼ିଆ ଭାଷାର ପ୍ରାଚୀନ ଓ ଆଧୁନିକ ରୂପ ବିଶ୍ଳେଷଣ କରିବାରେ ମଧ୍ୟ ତାଙ୍କର କୃତିତ୍ୱ ସ୍ୱୀକୃତ । 'ଓଡ଼ିଆ ନାଟ୍ୟକଳା', 'ସରଳ ଭାଷାତତ୍ତ୍ୱ', 'ସାହିତ୍ୟ ସନ୍ଦର୍ଭ', 'ରଚନା ବିଚାର' ତାଙ୍କର ନିର୍ଭରଯୋଗ୍ୟ ପ୍ରାମାଣିକ ତତ୍ତ୍ୱାଶ୍ରୟୀ ଗ୍ରନ୍ଥ । ଅଧ୍ୟାପକ ନାରାୟଣମୋହନ ଦେ ଓ ଚନ୍ଦ୍ରମଣି ଦାସଙ୍କର (ସାହିତ୍ୟ ଆଲୋଚନା) ବିଭିନ୍ନ ପ୍ରବନ୍ଧ ମଧ୍ୟ ଓଡ଼ିଆ ସାହିତ୍ୟର ମୌଳିକ ବିଚାର ଦିଗରେ ଉଲ୍ଲେଖଯୋଗ୍ୟ । ପରବର୍ତ୍ତୀକାଳରେ ଗୋକୁଳଚନ୍ଦ୍ର ଶତପଥୀ ('ଭଞ୍ଜପ୍ରଭା'ରେ ଓଡ଼ିଆ ଉପନ୍ୟାସ ସଂପର୍କୀୟ ଆଲୋଚନା), ବସନ୍ତକୁମାର ଶତପଥୀଙ୍କ ପ୍ରବନ୍ଧ ସମାଲୋଚନା ପରଂପରାରେ ଗୃହୀତ ହୋଇଥାଏ ।

ସବୁଜ-କବି କାଳନ୍ଦୀଚରଣ ପାଣିଗ୍ରାହୀଙ୍କର 'ସାମୟିକ ସାହିତ୍ୟ ସମୀକ୍ଷା' ଉଭୟ ଶୈଳୀ ଓ ସମାଲୋଚନା ଦୃଷ୍ଟିକୋଣରୁ ଏକ ନୂତନ ପ୍ରଚେଷ୍ଟା । ଶଙ୍କର ପ୍ରସାଦ ପାଢ଼ୀ ଓ ଶ୍ରଦ୍ଧାକର ସୂପକାରଙ୍କ ଦ୍ୱୈତ ରଚନା 'ସମ୍ବଲପୁରରେ ଭାଷା ଆନ୍ଦୋଳନ' ଏକ ଉଲ୍ଲେଖନୀୟ କୃତି । ଗୁରୁଚରଣ ପଟ୍ଟନାୟକଙ୍କର 'ଓଡ଼ିଆ ସାହିତ୍ୟର ମତି ଓ ଗତି'ରେ ସମାଲୋଚନାର ଗୁଣାତ୍ମକ ସ୍ୱାତନ୍ତ୍ର୍ୟ ପ୍ରତିଫଳିତ । ଚନ୍ଦ୍ରଶେଖର ରଥଙ୍କର 'ଦୃଷ୍ଟି ଓ ଦର୍ଶନ' ଏବଂ 'ମନ ଅରଣ୍ୟ' କୃତି ଦୁଇଟି ସ୍ୱତନ୍ତ୍ର ସମ୍ମାନର ଅଧିକାରୀ । ପ୍ରବନ୍ଧ ସଂକଳନ ମଧ୍ୟରେ 'ସାହିତ୍ୟ' ('କୋଶଳ ସାହିତ୍ୟ ସମାଜ' ଦ୍ୱାରା ସଂପାଦିତ), 'ମୋ ଦୃଷ୍ଟିରେ ସାଂପ୍ରତିକ ସାହିତ୍ୟ', 'ଆଧୁନିକ ଓଡ଼ିଆ ସାହିତ୍ୟର ଭୂମି ଓ ଭୂମିକା' (ଡ଼: କୃଷ୍ଣବିହାରୀ ଦାଶ ସଂପାଦିତ), 'ଆଧୁନିକ ଓଡ଼ିଆ କବିତାର ଦିଗ୍‌ଦର୍ଶନ' (ଶ୍ରୀ ଅପୂର୍ବରଞ୍ଜନ ରାୟ ସଂପାଦିତ), 'ସାହିତ୍ୟିକ ଅଭିଭାଷଣ' ('ଉତ୍କଳ ସାହିତ୍ୟ ସମାଜ' ସଂପାଦିତ) ପ୍ରଭୃତି ଉଲ୍ଲେଖଯୋଗ୍ୟ । ଚିନ୍ତାମଣି ବେହେରାଙ୍କର 'କାବ୍ୟ ଓ କଳାକାର', 'ଆଧୁନିକତାର କ ଖ ଓ ଅନ୍ୟାନ୍ୟ ପ୍ରବନ୍ଧ', ଡ଼: ଖଗେଶ୍ୱର ମହାପାତ୍ରଙ୍କର 'ସମାଲୋଚନାର ଦିଗ ଦିଗନ୍ତ' ଓଡ଼ିଆ ସମାଲୋଚନାର ନବ ନବ ପ୍ରବୃତ୍ତି ଉଦ୍‌ଘାଟନ କରିପାରିଛି ।

ସାହିତ୍ୟ ଇତିହାସ ନୁହେଁ, କିମ୍ବା ଇତିହାସ ମଧ୍ୟ ସାହିତ୍ୟ ନୁହେଁ; ଅଥଚ ଐତିହାସିକ ଘଟଣାବଳୀର ଆବେଦନ ସୃଜନାତ୍ମକ ସାହିତ୍ୟସୃଷ୍ଟି ପାଇଁ ଯଥେଷ୍ଟ ପ୍ରେରଣା ଯୋଗାଇଥାଏ । ସାହିତ୍ୟ ଏବଂ ସାହିତ୍ୟିକମାନଙ୍କର ଯଥାର୍ଥ ସମୀକ୍ଷା ପାଇଁ ଅନେକ ସମୟରେ ଇତିହାସରୁ ଶୁଷ୍କ ନିଷ୍ପ୍ରାଣ ଉପାଦାନ ଆବଶ୍ୟକ ହୁଏ । ଓଡ଼ିଶାରେ ଚିନ୍ତାମଣି ଆଚାର୍ଯ୍ୟ ( ଶ୍ରୀକୃଷ୍ଣ, ଇତିହାସ ପ୍ରସଙ୍ଗ, ଜଗନ୍ନାଥ ଦାସ, ଭୁବନେଶ୍ୱର), ସତ୍ୟନାରାୟଣ ରାଜଗୁରୁ, କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ( ପ୍ରବନ୍ଧ ମାନସ, ଇତିହାସ ଓ କିମ୍ବଦନ୍ତୀ ), ପରମାନନ୍ଦ ଆଚାର୍ଯ୍ୟ, ଚକ୍ରଧର ମହାପାତ୍ର ( ଉତ୍କଳ ଇତିହାସର ଏକ ଅଜ୍ଞାତ ଅଧ୍ୟାୟ), କେଦାରନାଥ ମହାପାତ୍ର ( ଖାରବେଳ, ଖୋର୍ଦ୍ଧା ଇତିହାସ ) ଐତିହାସିକ ଗବେଷଣା ମାଧ୍ୟମରେ ସାହିତ୍ୟିକ ପରଂପରାକୁ ନୂତନ ରୂପ ଦେବାପାଇଁ ସାଧନା କରିଛନ୍ତି । ତଦ୍ୱାରା ଓଡ଼ିଆ ଗଦ୍ୟସାହିତ୍ୟର ତଥ୍ୟ ବିଶ୍ଳେଷଣାତ୍ମକ ରୂପ କ୍ରମଶଃ ଅଧିକ ବିକଶିତ ହୋଇପାରିଛି । ପ୍ରାଚୀନ ସମ୍ବାଦପତ୍ର ଅଧ୍ୟୟନ କରି ତହିଁରେ ନିହିତ ଥିବା ସାହିତ୍ୟିକ, ସାଂସ୍କୃତିକ ଓ ସାମାଜିକ ଜୀବନର ପରିଚୟ ପୁନର୍ଗଠିତ କରିବାରେ ଲେଖକମାନଙ୍କର ଉଦ୍ୟମ ପ୍ରଶଂସନୀୟ । ଡ଼: କୃଷ୍ଣବିହାରୀ ଦାଶ ସଂସ୍କୃତ ସାହିତ୍ୟର ଇତିହାସ ସଙ୍କଳନ କରିଛନ୍ତି ଏବଂ ଡ଼: ସାବିତ୍ରୀ ରାଉତ ଓଡ଼ିଆ ସାହିତ୍ୟରେ ନାରୀମାନଙ୍କ ଅବଦାନ ପ୍ରସଙ୍ଗରେ ସ୍ୱୀୟ ପୁସ୍ତକରେ ବିସ୍ତୃତ ଆଲୋଚନା କରିଛନ୍ତି । ବୈଜ୍ଞାନିକ ତଥ୍ୟସମ୍ବଳିତ ସାହିତ୍ୟ-ରଚନା ମଧ୍ୟ ଅଧ୍ୟାପକମାନଙ୍କର ଦୃଷ୍ଟି ଆକର୍ଷଣ କରିଛି । ଡ଼: ଗଦାଧର ମିଶ୍ର,

*

ଡ: ହରିହର ପଟ୍ଟନାୟକ, ଶ୍ରୀଯୁକ୍ତ ଧନେଶ୍ୱର ସାମଲ, ଡ: ବିଶ୍ୱନାଥ ସାହୁ, ଡକ୍‌ଟର ବସନ୍ତ କୁମାର ବେହେରା, ଡକ୍‌ଟର କୁଳମଣି ସାମଲ, ଡ: ଗୋକୁଳାନନ୍ଦ ମହାପାତ୍ର ପ୍ରମୁଖଙ୍କର ବିଭିନ୍ନ ପୁସ୍ତକ ଉଲ୍ଲେଖଯୋଗ୍ୟ । ସେହିପରି ଭେଷଜ ବିଦ୍ୟା ସମ୍ବନ୍ଧୀୟ ବିଭିନ୍ନ ପ୍ରବନ୍ଧ ଲେଖିବାରେ ଡକ୍‌ଟର ଶ୍ରୀଯୁକ୍ତ ଶରତ୍‌ଚନ୍ଦ୍ର ମିଶ୍ର ଏବଂ ଡକ୍‌ଟର ଜୀବନରାମ ଲାଠ ଚିକିତ୍ସକଙ୍କର ଉଦ୍ୟମ ପ୍ରଶଂସନୀୟ । ଶ୍ରୀଯୁକ୍ତ ଲକ୍ଷ୍ମଣ ମିଶ୍ରଙ୍କର 'ସହଜ ଚିକିତ୍ସା ବା ଅନୁଭୂତ ଯୋଗମାଳା', 'ଘର ବଇଦ' ଏହି ଶ୍ରେଣୀର ପୁସ୍ତକ । ଅର୍ଥନୀତି, ମନସ୍ତତ୍ତ୍ୱ, ରାଜନୀତି-ବିଜ୍ଞାନ ବିଭାଗରେ ବହୁ ପୁସ୍ତକ ଲିଖିତ ହୋଇଅଛି । ଡ: ରାଧାନାଥ ରଥଙ୍କ ମନସ୍ତାତ୍ତ୍ୱିକ, ଡକ୍‌ଟର ଶ୍ରୀରାମଚନ୍ଦ୍ର ଦାସଙ୍କ ରାଜନୀତିକ ଏବଂ ସୂର୍ଯ୍ୟକାନ୍ତ ଦାସ, ବୈଦ୍ୟନାଥ ମିଶ୍ରଙ୍କ ଅର୍ଥନୀତି ସମ୍ବନ୍ଧୀୟ ପ୍ରବନ୍ଧାବଳୀ ଓଡ଼ିଆ ଭାଷାର ପ୍ରକାଶ ଦକ୍ଷତା ପ୍ରମାଣିତ କରିଅଛି ।

**ରମ୍ୟରଚନା :**

ରମ୍ୟରଚନା ଅର୍ଥାତ୍ ଲଘୁରଚନା ଆଧୁନିକ ଗଦ୍ୟର ସ୍ୱାଭାବିକ ତଥା ସ୍ୱାଚ୍ଛନ୍ଦ୍ୟ ପରିଣତି ବୋଲି କୁହାଯାଇପାରେ । ଓଡ଼ିଆରେ ଏତାଦୃଶ ଗଦ୍ୟରଚନାର ପ୍ରସାର ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ବୌଦ୍ଧିକ ସ୍ରଷ୍ଟାମାନଙ୍କର ଶିଳ୍ପକୌଶଳ, ପର୍ଯ୍ୟବେକ୍ଷଣ ଶକ୍ତି ଏବଂ ଜୀବନ ଓ ସମାଜ ସମ୍ପର୍କୀୟ ଗଭୀର ଅଭିଜ୍ଞତା ଲିପିବଦ୍ଧ ହୋଇପାରିଛି । ଏହି କ୍ରମରେ 'ପ୍ରେମର ନିୟତି' (ରାଜକିଶୋର ରାୟ, ଗୋପୀନାଥ ମହାନ୍ତି, ନିତ୍ୟାନନ୍ଦ ମହାପାତ୍ର ) ପରେ 'ଭଲ ପାଇବାର ଶେଷକଥା' 'ପତ୍ର ଓ ପ୍ରତିମା' ( ନିତ୍ୟାନନ୍ଦ ମହାପାତ୍ର ), ଏଣ୍ଟି ରୋମାଣ୍ଟିକ୍ ( ବସନ୍ତକୁମାର ଶତପଥୀ), ଅଧ୍ୟାପକର ବେଦନା ( ଡ: କୃଷ୍ଣଚରଣ ବେହେରା ), 'ଏଣ୍ଟୃଷ୍ଟ ତେଣୃଷ୍ଟ' (ବାମାଚରଣ ମିତ୍ର ) ପ୍ରଭୃତି ଉଲ୍ଲେଖଯୋଗ୍ୟ କୃତି ।

**ଜ୍ଞାନକୋଷ :**

ଜ୍ଞାନବିଜ୍ଞାନ ବିଷୟକ ପ୍ରାମାଣିକ ପୁସ୍ତକ, ଭାଷା, ସାହିତ୍ୟର ସମୀକ୍ଷା ପୁସ୍ତକ ସଂକଳନ ଏହି ଯୁଗରେ ଅଗ୍ରଗତି କରିପାରିଛି । ଗୋପାଳଚନ୍ଦ୍ର ପ୍ରହରାଜଙ୍କ ଭାଷାକୋଷଠାରୁ ଆରମ୍ଭ କରି ଏପର୍ଯ୍ୟନ୍ତ ବହୁ ବିଦ୍ୱାନ୍, ଚିନ୍ତାଶୀଳ ଲେଖକ ଅଭିଧାନ, ଭାଷାକୋଷ ପ୍ରଣୟନରେ ବ୍ରତୀ ହୋଇଅଛନ୍ତି । 'ବିଶ୍ୱ ପରିଚୟ', 'ଶିଶୁ-ସଙ୍ଖାଳି', 'ଜ୍ଞାନକୋଷ', 'ଜ୍ଞାନମଣ୍ଡଳ' ଏହି ପ୍ରସଙ୍ଗରେ ଉଲ୍ଲେଖଯୋଗ୍ୟ ଗ୍ରନ୍ଥ ।

**ପର୍ଯ୍ୟଟନ ସାହିତ୍ୟ :**

୧୯୪୦ ପରବର୍ତ୍ତୀ ଓଡ଼ିଆ ଗଦ୍ୟସାହିତ୍ୟ ପର୍ଯ୍ୟାୟରେ ଭ୍ରମଣ ଓ ପର୍ଯ୍ୟଟନ-ଲବ୍ଧ ଅନୁଭୂତି, ଅଭିଜ୍ଞତାସମ୍ବଳିତ ରଚନାର ପରିମାଣ ବୃଦ୍ଧି ପାଇଥିଲା ।

ପ୍ରଥମ ପର୍ଯ୍ୟାୟରେ ଶଶିଭୂଷଣ ରାୟଙ୍କ 'ଦାକ୍ଷିଣାତ୍ୟ ଭ୍ରମଣ', ନୃସିଂହ ଚରଣ ମହାନ୍ତିଙ୍କ 'ବିଲାତକଥା', ପଣ୍ଡିତ କୁଳମଣି ଦାସଙ୍କ 'ହିମାଳୟ ପଥେ', ଚନ୍ଦ୍ରମଣି ମହାନ୍ତିଙ୍କ 'ଚିଲିକାଭ୍ରମଣ', ଜଳନ୍ଧର ଦେବଙ୍କ 'ଡାଏରୀର କୟିଦଂଶ', ଶ୍ରୀପତି ମିଶ୍ରଙ୍କ 'ସିମଳାଯାତ୍ରା' ପ୍ରଭୃତି ରଚନା ଉଲ୍ଲେଖଯୋଗ୍ୟ ।

ପରବର୍ତ୍ତୀ ଦ୍ୱିତୀୟ ପର୍ଯ୍ୟାୟରେ ବହୁ ତରୁଣ, ପ୍ରବୀଣ ଲେଖକ ସାହିତ୍ୟର ଏହି ଦିଗ ପ୍ରତି ଆକୃଷ୍ଟ ହୋଇଥିଲେ । ଶିକ୍ଷା ଓ ବିଜ୍ଞାନର ଅଗ୍ରଗତି, ଦେଶ-ବିଦେଶ ପର୍ଯ୍ୟଟନ କରିବାର ଆବଶ୍ୟକତା ଜାତୀୟ ଜୀବନକୁ ଯେମିତି ପ୍ରଭାବିତ କଲା, ସେହି ପରିମାଣରେ ଓଡ଼ିଆ ଭାଷାରେ ଉଚାଙ୍ଗ ରସୋତ୍ତୀର୍ଣ୍ଣ ସାର୍ଥକ ଭ୍ରମଣ ପୁସ୍ତକ ଲିଖିତ ହେଲା । ଏହି ପର୍ଯ୍ୟାୟରେ ଉମେଶଚନ୍ଦ୍ର ପାଣିଗ୍ରାହିଙ୍କର ସଂକଳ୍ପବଦ୍ଧ ସାହିତ୍ୟସୃଷ୍ଟି ବହୁ ପାଠକଙ୍କୁ ପ୍ରେରଣା ଦେଇଥିଲା । ଅନୁବାଦ ଏବଂ ବ୍ୟକ୍ତିଗତ ଅଭିଜ୍ଞତା ତାଙ୍କର ସଂଖ୍ୟାଧିକ ଭ୍ରମଣ ରଚନାର ପ୍ରକୃତ ଆବେଦନ । 'ପଥପ୍ରାନ୍ତେ', 'ଦୃଷ୍ଟିପାତ୍', 'ବେଦୁଇନ୍‌ର ଦେଶେ' ପ୍ରଭୃତି ତାଙ୍କର କୃତି । କବି ମାୟାଧର ମାନସିଂହଙ୍କର 'ପଶ୍ଚିମ ପଥିକ' ତାଙ୍କର ବିଦେଶଯାତ୍ରାର ବ୍ୟକ୍ତିଗତ ଅଭିଜ୍ଞତା ଯେପରି ଗଦ୍ୟକବିତାରେ ପ୍ରକାଶିତ ହୋଇଥିଲା । ପରେ ପରେ ଅନନ୍ତପ୍ରସାଦ ପଣ୍ଡାଙ୍କର 'ଆମେରିକା ଭ୍ରମଣ' ଶୀର୍ଷକ ପୁସ୍ତକ, ଗୋଲୋକବିହାରୀ ଧଳଙ୍କ 'ଆମେରିକା ଅନୁଭୂତି', 'ଲଣ୍ଡନ ଚିଠି', ଡ: ରାଧାନାଥ ରଥଙ୍କ 'ବିଲାତ ଡାଏରୀ', ଡ: ଶ୍ରୀରାମଚନ୍ଦ୍ର ଦାଶଙ୍କ 'ଇଉରୋପରେ ମୋ ଅନୁଭୂତି', ସୂର୍ଯ୍ୟକାନ୍ତ ଦାସଙ୍କ 'ଅଲକାପୁରୀ ଆମେରିକା' ପ୍ରଭୃତି ତଥ୍ୟପୂର୍ଣ୍ଣ ରଚନା ସଂପୃକ୍ତ ଲେଖକମାନଙ୍କର ଉଚ୍ଚଶିକ୍ଷାପାଇଁ ବିଦେଶଯାତ୍ରାର ବୌଦ୍ଧିକ ପରିଣତି ବୋଲି କୁହାଯାଇପାରେ । ଶ୍ରୀହର୍ଷ ମିଶ୍ରଙ୍କ 'ପଶ୍ଚିମ ଦିଗନ୍ତ', ଡ: କୁଞ୍ଜବିହାରୀ ଦାଶଙ୍କର 'ମୋ ସ୍ୱପ୍ନର କାଶ୍ମୀର', 'ଲଙ୍କା ଯାତ୍ରୀ', 'ଦୁଇ ଦିଗନ୍ତର ଆକାଶ', ଚିତ୍ତରଞ୍ଜନ ଦାସଙ୍କର 'ଡେନ୍‌ମାର୍କ ଚିଠି', 'ସାଗରଯାତ୍ରୀ' 'ନେପାଳ ପଥେ', 'ଗଣ୍ଡ୍ରାମ ମାଲରେ ସାତଦିନ', ଡ: କୃଷ୍ଣ ପ୍ରସାଦ ମିଶ୍ରଙ୍କ 'କାନାଡ଼ା ଡାଏରୀ', ଶ୍ରଦ୍ଧାକର ସୂପକାରଙ୍କ 'ରୁଷିଆ ଭ୍ରମଣ' ପର୍ଯ୍ୟଟନ-ସାହିତ୍ୟର ରୂପଲାବଣ୍ୟ ଏବଂ ଆକର୍ଷଣୀୟ ବିଭବ ପ୍ରତିଷ୍ଠା କରିପାରିଛି । ସୁରେନ୍ଦ୍ର ମହାନ୍ତିଙ୍କ 'ପେକିଂ ଡାଏରୀ', ଗୋବିନ୍ଦ ଦାସଙ୍କର 'ଦେଶେ ଦେଶେ' ଲେଖକଙ୍କର ବ୍ୟକ୍ତିଗତ ଅଭିଜ୍ଞତା ଓ ପର୍ଯ୍ୟବେକ୍ଷଣର କାବ୍ୟିକ ପରିକ୍ରମା । ଏତଦ୍‌ବ୍ୟତୀତ ଇଂଲଣ୍ଡ, ଜର୍ମାନୀ, ଆମେରିକା, ସୋଭିଏଟ୍ ରୁଷ ଭ୍ରମଣକୁ କେନ୍ଦ୍ର କରି ମଧ୍ୟ ବିଭିନ୍ନ ପୁସ୍ତକ ଲେଖାଯାଇଛି । ଜ୍ଞାନ-ପ୍ରସାରିତ ପ୍ରଚାର ଅପେକ୍ଷା ଲେଖକ ଯେତେବେଳେ ସ୍ୱକୀୟ ପର୍ଯ୍ୟବେକ୍ଷଣ ପ୍ରତିକ୍ରିୟାକୁ ବିଦଗ୍ଧ ଭାଷାରେ ଏବଂ ଆତ୍ମିକ ଶୈଳୀରେ ପ୍ରକାଶ କରିଥାଏ, ସେତେବେଳେ ତାହା ସାହିତ୍ୟ-ସୃଷ୍ଟିର ଉଚ୍ଚକୋଟୀକୁ ସ୍ପର୍ଶ କରିଥାଏ ।

## ଜୀବନୀ :

ଜୀବନୀଚର୍ଚ୍ଚା ଜାତୀୟ ଇତିହାସରେ ଯେତିକି ତାତ୍ପର୍ଯ୍ୟପୂର୍ଣ୍ଣ, ସାହିତ୍ୟରେ ତାହାର ରକ୍ଷଣାବେକ୍ଷଣ, କଳାତ୍ମକ ପରିବେଷଣ ଏବଂ ଯୁଗୋପଯୋଗୀ ଉପସ୍ଥାପନା ହେଉଛି ଏକ କଳା ସମ୍ବନ୍ଧୀୟ ବିଚାର । ଥମାସ୍ କାର୍‌ଲାଇଲ୍ (Thomas Carlyle)ଙ୍କର ମତ ହେଉଛି—"The history of the world is but the biography of great men." ଏଥିରୁ ସାହିତ୍ୟରେ ଜୀବନୀଚର୍ଚ୍ଚାର ପ୍ରୟୋଜନ ଅନୁମେୟ ଏବଂ ତଦ୍ଦ୍ୱାରା ଗଦ୍ୟ-ସାହିତ୍ୟର ସମ୍ଭାବନା ଓ ଶୈଳୀ ବୈଚିତ୍ର୍ୟ ଉପରେ ବ୍ୟାପକ ହୁଏ ତାହାହିଁ ପ୍ରଣିଧାନଯୋଗ୍ୟ । ମାଦଳାପାଞ୍ଜି, ଚୈତନ୍ୟଚରିତାମୃତ, ଜଗନ୍ନାଥଚରିତାମୃତ, ଦାର୍ଢ୍ୟତା ଭକ୍ତି ପ୍ରଭୃତି ପ୍ରାଚୀନ ଓଡ଼ିଆ ପୁରାଣ ସାହିତ୍ୟରେ ଜୀବନୀରଚନା ଆଦୌ ଅଜ୍ଞାତ ନଥିଲା । ମାତ୍ର ଆଧୁନିକ ଶିଳ୍ପ-ବିଜ୍ଞାନ-ଜଟିଳ ସମାଜରେ ଗଦ୍ୟମାଧ୍ୟମରେ ଜୀବନୀଚର୍ଚ୍ଚା ଯୁଗପ୍ରଦ ଏକ କଳାତ୍ମକ ବ୍ୟାପାର । ଆଧୁନିକ ସାହିତ୍ୟରେ କଥାଶିଳ୍ପୀ ଫକୀରମୋହନ ସେନାପତି ହିଁ ଉତ୍କୃଷ୍ଟ ଜୀବନୀ ରଚନା କ୍ଷେତ୍ରରେ ପ୍ରବର୍ତ୍ତକ । ଫକୀରମୋହନଙ୍କ ଆତ୍ମଚରିତ ଯଥାର୍ଥରେ ଲେଖକର ବ୍ୟକ୍ତିଗତ ଜୀବନୀ ଅପେକ୍ଷା ଓଡ଼ିଆ ସମାଜ, ରାଜନୀତି ଓ ସଂସ୍କୃତିର ଯୁଗୋପଯୋଗୀ ବ୍ୟାଖ୍ୟା ବୋଲି କୁହାଯାଇପାରେ । ସେହି ଯୁଗରୁ ଏଯାବତ୍ ବହୁ ବରେଣ୍ୟ ମହାପୁରୁଷଙ୍କ ଜୀବନୀ ଓଡ଼ିଆ ଭାଷାରେ ବିଭିନ୍ନ ସମୟରେ ରଚିତ ହୋଇଛି । ସାମାଜିକ ସମସ୍ୟା, ଶିକ୍ଷା, ସଂସ୍କୃତି କ୍ଷେତ୍ରରେ ପରୀକ୍ଷା-ନିରୀକ୍ଷା, ଭାରତର ସ୍ୱାଧୀନତାପ୍ରାପ୍ତି ପରିପ୍ରେକ୍ଷୀରେ ଯେଉଁ ଯୁଗନିର୍ମାଣକାରୀ, ଭୃଙ୍ଗ ସଂସ୍କାରକ, ସମାଜସେବକ ଏବଂ ସାଂସ୍କୃତିକ ଶିଖାଧାରୀ ବ୍ୟକ୍ତିସମୂହର ଆବିର୍ଭାବ ଘଟିଛି, ସେହିସବୁ ପ୍ରତିଥର ବିଚ୍ଛୁରିତ ଆଲୋକରେ ଓଡ଼ିଆ ସାହିତ୍ୟ ପୃଷ୍ଠା ଆଲୋକିତ ହୋଇଥିବାର ଜଣାଯାଏ । ଶିଶୁ ଉପଯୋଗୀ ବୈଦିକ ଋଷି-ଜୀବନୀଠାରୁ ଆରମ୍ଭ କରି ଏ ଯୁଗର ମହାନ୍ ଜଟିଳ ସାଂସ୍କୃତିକ ଏବଂ ରାଜନୈତିକ ପ୍ରତିଭାର ଆବାହନ ଓଡ଼ିଆ ସାହିତ୍ୟକୁ ଏକରକମ ଋଦ୍ଧିମନ୍ତ କରିଛି; ଫଳରେ ତଦ୍ଦ୍ୱାରା ଗଦ୍ୟର ପ୍ରକର୍ଷଣ ତଥା ବିକାଶର ପଥ ସୁଗମ ହୋଇପାରିଛି । ଜୀବନଚରିତ ଅର୍ଥାତ୍ ଜୀବନୀ କେବଳ ଶୁଷ୍କ ଘଟଣା, ତଥ୍ୟ, ସାଲ, ତାରିଖ ଦ୍ୱାରା ସୀମାବଦ୍ଧ ହେବା ଉଚିତ ନୁହେଁ; କାରଣ ତଦ୍ଦ୍ୱାରା ରଚନାର ଶୈଳୀ-ସୌନ୍ଦର୍ଯ୍ୟ ଓ କଳାତ୍ମକତା ବ୍ୟାହତ ହୁଏ । ଜୀବନୀ-ସାହିତ୍ୟ ନିଷ୍ପ୍ରାଣ ଘଟଣାବଳୀ ଓ ତଥ୍ୟର ଯାନ୍ତ୍ରିକ ସମାହାର ନୁହେଁ । ଯେଉଁ ଦେଶ ଯେତେ ପରିମାଣରେ ପ୍ରତିଭାଶାଳୀ ବ୍ୟକ୍ତିଙ୍କର ଆମୋଦରେ ସୁରଭିତ, ସେହି ଦେଶର ଭାଷାରେ ଉଚ୍ଚାଙ୍ଗ କଳାତ୍ମକ ଜୀବନୀ ରଚନା କ୍ଷେତ୍ର ସେତିକି ପରିବ୍ୟାପ୍ତ । ଦୁର୍ଗାଚରଣ ରାୟଙ୍କ ବହୁ ଆୟାସସାଧ୍ୟ ପୃଥୁଳ 'ରାଧାନାଥ ଜୀବନୀ' ଏକ ତଥ୍ୟବହୁଳ ତଥା ପ୍ରାମାଣିକ ଜୀବନୀ ଏବଂ

ରାଧାନାଥ କାବ୍ୟ-ପ୍ରତିଭାର ସାର୍ଥକ ଅଧ୍ୟୟନ । 'କର୍ମଯୋଗୀ ଗୌରୀଶଙ୍କର' ମଧ୍ୟ ଏକ ଉଲ୍ଲେଖଯୋଗ୍ୟ ଜୀବନୀ ପୁସ୍ତକ । ସେହିପରି କାଳନ୍ଦୀଚରଣ ପାଣିଗ୍ରାହୀଙ୍କ 'ଭକ୍ତକବି ମଧୁସୂଦନ' ଉଭୟ ସାହିତ୍ୟକୃତି ଏବଂ କବିଜୀବନର ସମୀକ୍ଷା । ଏହା ପରେ ଓଡ଼ିଶାର ବିଭିନ୍ନ କବି, ସାହିତ୍ୟସ୍ରଷ୍ଟା ଏବଂ ଜାତୀୟତାବାଦୀ ନେତାମାନଙ୍କୁ କେନ୍ଦ୍ର କରି ସ୍ୱାଧୀନତା ପରବର୍ତ୍ତୀ କାଳରେ ବହୁ ଜୀବନୀ ପୁସ୍ତକ ରଚିତ ହୋଇଛି; ଯଥା—ଚିନ୍ତାମଣି ଦାଶଙ୍କ 'ଭକ୍ତକବି-ଜୀବନ ସମୀକ୍ଷା', ଅସିତ କବିଙ୍କର 'ଗଙ୍ଗାଧର ଜୀବନୀ', ଅନନ୍ତ ପଦ୍ମନାଭ ପଟ୍ଟନାୟକଙ୍କ 'କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜ', ଶ୍ରୀ ନିତ୍ୟାନନ୍ଦ ଶତପଥୀଙ୍କ 'ହେ ସାଥୀ, ହେ ସାରଥି' (ଗୋପବନ୍ଧୁଙ୍କ ଜୀବନୀ), ଶଙ୍କରପ୍ରସାଦ ପାଢ଼ୀଙ୍କର 'ଅକ୍ଷୟ ତାରକା' ପ୍ରଭୃତି କେତୋଟି ଗ୍ରନ୍ଥ ଏବର ଓଡ଼ିଆ ଜୀବନୀ-ସାହିତ୍ୟ ମଧ୍ୟରେ ଉଲ୍ଲେଖଯୋଗ୍ୟ କୃତି ।

ଓଡ଼ିଆ ସାହିତ୍ୟ ପ୍ରଚାର ସଂଘ, କଟକ ଆନୁକୂଲ୍ୟରେ ବହୁ ଜୀବନୀ ପ୍ରକାଶ ପାଇଥିଲା । ସେଥିମଧ୍ୟରେ ଜଗବନ୍ଧୁ ସିଂହ (ବୁକାର ଓ୍ୱାସିଂଟନ), ବାସୁଦେବ ମହାପାତ୍ର (ଅବ୍ରାହମ ଲିଙ୍କନ), ଭଗବାନ ପତି (ଚନ୍ଦ୍ରଗୁପ୍ତ, ବିକ୍ରମାଦିତ୍ୟ), ଗୋଦାବରୀଶ ମହାପାତ୍ର (ରାଣା ପ୍ରତାପ, ମାଟସିନି), ରାମଚନ୍ଦ୍ର ଆଚାର୍ଯ୍ୟ (ଝାରଙ୍ଗନା), ବ୍ରଜବନ୍ଧୁ ଦାସ (ଈଶ୍ୱରଚନ୍ଦ୍ର ବିଦ୍ୟାସାଗର), ଶିବପ୍ରସାଦ ଦାସ (ଗୁରୁ ଗୋବିନ୍ଦ ସିଂହ, ଶିବାଜୀ), ପଦ୍ମଚରଣ ପଟ୍ଟନାୟକ (ନେପୋଲିଅନ୍), ଶରତ୍ ମୁଖାର୍ଜୀ (ରାମ) ପ୍ରଭୃତିଙ୍କ ରଚନା ବିଶେଷ ।

କେତେକ ପ୍ରଖ୍ୟାତ ଲେଖକଙ୍କ ସ୍ମୃତି ଉଦ୍ଦେଶ୍ୟରେ ପ୍ରକାଶିତ 'ସ୍ମରଣିକା'-ଗୁଡ଼ିକୁ ମଧ୍ୟ ଏହି ପ୍ରସଙ୍ଗରେ ସ୍ମରଣ କରାଯାଇପାରେ । ଏଥିରେ ବିଭିନ୍ନ ଲେଖକ ସେମାନଙ୍କର ଜୀବନ-ଚିତ୍ର ପ୍ରଦାନ କରିଥିବାର ଲକ୍ଷ୍ୟ କରାଯାଏ । ଏପରି ଆଲୋଚ୍ୟ ସାହିତ୍ୟିକମାନଙ୍କ ମଧ୍ୟରେ ଫକୀରମୋହନ, ଗୋପବନ୍ଧୁ, ନୀଳକଣ୍ଠ, ବିଚ୍ଛନ୍ଦ-ପଟ୍ଟନାୟକ, ବୈଷ୍ଣବପାଣି, କୁନ୍ତଳାକୁମାରୀ ସାବତ, ଲକ୍ଷ୍ମୀନାରାୟଣ ସାହୁ, ଗୋପାଳଚନ୍ଦ୍ର ପ୍ରହରାଜ, ବ୍ରଜସୁନ୍ଦର ଦାସ ପ୍ରଭୃତି ଅନ୍ତର୍ଗତ ।

ଆଧୁନିକ ଉତ୍କଳର ପ୍ରତିଷ୍ଠାତା ଏବଂ ନମିତା ଐତିହାସିକ ପୁରୁଷ ମଧୁସୂଦନ ଦାସଙ୍କର ଘଟଣାବହୁଳ ଜୀବନୀ ଏବଂ ଗୋପବନ୍ଧୁ ଦାସଙ୍କ ଜୀବନୀ ସାଂପ୍ରତିକ ଯୁଗରେ ବହୁଲେଖକଙ୍କ ଲେଖନୀ-ଦର୍ପଣରେ ଉଦ୍ଭାସିତ ହୋଇଅଛି । ସୁରେନ୍ଦ୍ର ମହାନ୍ତିଙ୍କର 'ଶତାବ୍ଦୀର ସୂର୍ଯ୍ୟ' ପୂର୍ଣ୍ଣପୁରିଭାବରେ ଏକ କଳାତ୍ମକ କୃତି; ବରଂ ରସୋତ୍ତୀର୍ଣ୍ଣ ଗଦ୍ୟ ମଧ୍ୟରେ ଶୁଷ୍କ ଘଟଣାବଳୀକୁ କାବ୍ୟର ଗୌରବ ପ୍ରଦାନ କରାଯାଇଛି । ଏହି ପ୍ରସଙ୍ଗରେ ନବକିଶୋର ଦାସଙ୍କ 'ଉତ୍କଳଗୌରବ ମଧୁସୂଦନ' ଏବଂ ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶଙ୍କ 'ଦେଶପ୍ରାଣ ମଧୁସୂଦନ' ଏକ ଏକ ନିର୍ଭରଯୋଗ୍ୟ ଅନବଦ୍ୟ ଜୀବନୀପୁସ୍ତକ । ଏତଦ୍‌ବ୍ୟତୀତ ଜାନକୀବଲ୍ଲଭ ପଟ୍ଟନାୟକଙ୍କ 'ଗୌତମ ବୁଦ୍ଧ',

ଚୈତନ୍ୟ ଚରଣ ଦାସଙ୍କ 'ନିଗମାନନ୍ଦ' ଉତ୍କୃଷ୍ଟ ଜୀବନୀପୁସ୍ତକ । ଡଃ ଗୋପାଳ ଚନ୍ଦ୍ର ମିଶ୍ରଙ୍କ 'ଟଲଷ୍ଟୟ ଓ ଗାନ୍ଧୀ' ପୁସ୍ତକରେ ଦୁଇ ମହାଦେଶର ଦୁଇ ମହାନ୍ ସାଂସ୍କୃତିକ ତଥା ଦାର୍ଶନିକ ପ୍ରତିଭାର ଏକ ଉଜ୍ଜ୍ୱଳ ଚିତ୍ର ପ୍ରତିଫଳିତ ।

## ଆତ୍ମଜୀବନୀ :

'ଆତ୍ମଜୀବନୀ' ରଚନା ସାଂପ୍ରତିକ ଯୁଗରେ ଏକ ସାହିତ୍ୟିକ ତଥା ସାମାଜିକ କର୍ତ୍ତବ୍ୟରୂପେ ବିବେଚିତ ହୋଇଛି । ନୀଳକଣ୍ଠ ଦାସଙ୍କ 'ଆତ୍ମଜୀବନୀ', ଗୋଦାବରୀଶ ମିଶ୍ରଙ୍କର 'ଅର୍ଦ୍ଧଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋର ସ୍ଥାନ', ଲକ୍ଷ୍ମୀନାରାୟଣ ସାହୁଙ୍କର 'ମୋର ବାଉଁରୁଲା ଜୀବନ', ବୈଷ୍ଣବ ପାଣିଙ୍କ ଆତ୍ମଜୀବନୀ, ରାମକୃଷ୍ଣ ନନ୍ଦଙ୍କର 'ଜୀବନତରଙ୍ଗ', ହୃଦୟନାଥ ରଥଙ୍କର 'ଜୀବନପଥେ' ପୁସ୍ତକରେ ବ୍ୟକ୍ତିଗତ ଜୀବନୀ ପ୍ରଖ୍ୟାପନ ଅପେକ୍ଷା ବିଭିନ୍ନ ସମସ୍ୟାର ଉପସ୍ଥାପନ ଏବଂ ସମାଧାନର ସଙ୍କେତ ଅଧିକ ପ୍ରତିଫଳିତ । ସ୍ୱାଧୀନତା ସଂଗ୍ରାମର ରଥୀ ଓ ଗଡ଼ଜାତ ଆନ୍ଦୋଳନର ବିଶିଷ୍ଟ କର୍ମୀ ଶ୍ରୀ ପବିତ୍ରମୋହନ ପ୍ରଧାନଙ୍କର 'ମୁକ୍ତିପଥେ ସୈନିକ' ଏକ ଉଲ୍ଲେଖଯୋଗ୍ୟ କୃତି । ଡଃ ମାୟାଧର ମାନସିଂହଙ୍କର 'ଶିକ୍ଷାବିଦ୍‌ର ଗାଥା', ଡଃ କାଳୀଚରଣ ପଟ୍ଟନାୟକଙ୍କର 'କୁମ୍ଭାର ଚକ' ଓ ଡଃ କୁଞ୍ଜବିହାରୀ ଦାଶଙ୍କ ପତ୍ରିକାରେ ପ୍ରକାଶିତ 'ମୋ କାହାଣୀ' ସମସାମୟିକ ଯୁଗର ଶିକ୍ଷା, ସଂସ୍କୃତି ଏବଂ ପାରିବାରିକ ଜୀବନ ସମ୍ବନ୍ଧୀୟ ତଥ୍ୟମୂଳକ ରଚନା । ସବୁଜଯୁଗର ବିଶିଷ୍ଟ କବି କାଳିନ୍ଦୀଚରଣ ପାଣିଗ୍ରାହୀଙ୍କର "ଅଙ୍ଗେ ଯାହା ନିଭାଇଛି" ଓଡ଼ିଶାର ସାମାଜିକ, ରାଜନୈତିକ ଓ ସାଂସ୍କୃତିକ ଜୀବନଧାରାର ଉଜ୍ଜ୍ୱଳ ପ୍ରତିବିମ୍ବ ବହନ କରିଛି ।

ଗୋବିନ୍ଦ ଚନ୍ଦ୍ର ମିଶ୍ରଙ୍କ 'ଜାତୀୟ ଜୀବନର ଆତ୍ମବିକାଶ', ବଳରାମ ମହାନ୍ତିଙ୍କ 'ଯୁଗଜ୍ୟୋତି ଜବାହରଲାଲ ନେହେରୁ', ଯୁଗଳକିଶୋର ପାଣିଗ୍ରାହୀଙ୍କ 'ସୁଭାଷ-ଚନ୍ଦ୍ର', ଅନ୍ୟାନ୍ୟ ଗ୍ରନ୍ଥକାରମାନଙ୍କର ମହାତ୍ମା ଗାନ୍ଧୀ, ଶ୍ରୀ ଅରବିନ୍ଦ, ବିବେକାନନ୍ଦ ପ୍ରଭୃତି ମୌଳିକ ତଥା ଅନୂଦିତ ଜୀବନୀ, ଅନିରୁଦ୍ଧ ଦାସଙ୍କ ଲିଖିତ 'ବୀର ସୁରେନ୍ଦ୍ର ସାଏ' ଜୀବନୀ କେବଳ ଆଲୋଚ୍ୟ ବୀରଙ୍କର କର୍ମମୟ ଜୀବନୀ ଲିପିବଦ୍ଧ କରିନାହିଁ; ଇଂରେଜ ଶାସନ ବିରୋଧରେ ଓଡ଼ିଶାର ଯେଉଁ ଜାତୀୟ ସଂଗ୍ରାମ, ତାହାହିଁ ବିସ୍ତୃତଭାବରେ ଆଲୋଚିତ ।

## ଶିଶୁ-ସାହିତ୍ୟ :

ଶିଶୁ-ମନୋରଞ୍ଜନ-ସମର୍ଥିତ ରଚନା ସୃଷ୍ଟି କରିବାର ପ୍ରୟାସ ଅତ୍ୟାଧୁନିକ ସାହିତ୍ୟର ଆଉ ଏକ ବିଶିଷ୍ଟ ଲକ୍ଷଣ । ବୁଦ୍ଧି, ପ୍ରଜ୍ଞା, ଦାୟିତ୍ୱ ଏବଂ ସମ୍ବେଦନ-ଶୀଳତା ବିଗୃରରେ ବ୍ୟକ୍ତିଜୀବନର ବିକାଶ ପର୍ଯ୍ୟାୟଭୁକ୍ତ । ତେଣୁ ତରୁଣ ଏବଂ

ପ୍ରୌଢ଼ ମନରେ ବହିର୍ଜଗତ ଯେଉଁ ପ୍ରଭାବ ସୃଷ୍ଟି କରେ, ଶିଶୁର ସରଳ, ତରଳ ମନରେ ସେହି ପ୍ରଭାବ ସୃଷ୍ଟି ନ ହୋଇପାରେ । ପ୍ରଜ୍ଞା ଏବଂ ଚେତନାର ଅଧିକାରୀ ଅମୃତସନ୍ତାନ ଶିଶୁର ଦକ୍ଷତା, ଶକ୍ତି ସ୍ୱୀକୃତ; ମାତ୍ର ତାହାର ଜୀବନ କେବଳ ପ୍ରତିଶ୍ରୁତିର ସମ୍ଭାବନାରେ ପରିପୂର୍ଣ୍ଣ । ସର୍ବବ୍ୟାପୀ ପ୍ରକୃତି ସହିତ ଜୀବନର ବିଭିନ୍ନ ସ୍ତରରେ ଯେପରି ସମ୍ପର୍କ ଗଢ଼ିଉଠେ, ସେହି ମୌଳିକ ସମ୍ପର୍କର ବ୍ୟବଧାନରେ ହିଁ ସ୍ୱତନ୍ତ୍ର ଶିଶୁ-ସାହିତ୍ୟ ରଚନା କରିବାର ପ୍ରୟୋଜନ ନିହିତ ଥାଏ । ପ୍ରକୃତିର ବିଭିନ୍ନ ଜୀବଜନ୍ତୁ ପକ୍ଷୀ ସହିତ ସରଳ କୋମଳପ୍ରାଣ ଶିଶୁର ଯେଉଁ ସହାନୁଭୂତିସୂଚକ ସମ୍ପର୍କ, ସେହି ସମ୍ପର୍କ ଗୋଟାଏ ଅବ୍ୟକ୍ତ ବୁଝାମଣା ତଥା ବିଶ୍ୱାସର ପ୍ରତୀକ । ସେହିପରି ନିଜର ସନ୍ତାନ ପାଇଁ ଜନନୀର ଯେଉଁ ନିର୍ମଳ ଆବେଗ, ତାହା ଅନାବିଳ ଓ ଐକାନ୍ତିକ । ନିର୍ଦ୍ଦିଷ୍ଟ ପ୍ରତିକ୍ରିୟା, ନିର୍ଦ୍ଦିଷ୍ଟ ଚେତନା ହିଁ 'ଶିଶୁ-ସାହିତ୍ୟ'ର ମୂଳଭିତ୍ତି ।

ବିଂଶ ଶତାବ୍ଦୀର ପ୍ରାକ୍‌କାଳରେ ଓଡ଼ିଆରେ 'ଶିଶୁସାହିତ୍ୟ' ବୋଲି କୌଣସି ସାହିତ୍ୟ ନଥିଲା । ପ୍ରାଚୀନ ଯୁଗର ଚାଟଶାଳୀର ଚାଟମାନେ ପଣିକିଆ, ଅଙ୍କକଷା ସହିତ କୋଇଲି, ଚଉତିଶା, ଗୁଣସାଗର, ଗୋପୀଭାଷା, ଅଙ୍ଗଦପଡ଼ି, ମଥୁରାମଙ୍ଗଳ ଆଦି କତିପୟ ରଚନା ପାଠକରୁଥିଲେ । ମନବୋଧ ଚଉତିଶା, ଆର୍ତ୍ତତ୍ରାଣ ଚଉତିଶା, କେଶବ କୋଇଲି, ବୋଲି, ଗୁନ୍ଦି, ଗଣିତସୂତ୍ର ଗୀତ ଇତ୍ୟାଦି ଦୀର୍ଘକାଳ ଧରି ଏ ଦେଶରେ 'ଶିଶୁ-ସାହିତ୍ୟ' ନାମରେ ବ୍ୟବହୃତ ହେଉଥିଲା । ଅବଶ୍ୟ ଏ ଦେଶର ଗ୍ରାମ୍ୟ ଲୋକଗୀତ ଏବଂ ଲୋକଗଳ୍ପ; ଯଥା— ନାନାବାୟାଗୀତ (Nursery Rhyme), ଖେଳଗୀତ, ଅଜା-ଆଈଙ୍କ ଗପ ମଧ୍ୟରେ ଶିଶୁ-ସାହିତ୍ୟର ଅଙ୍କୁର ସଞ୍ଚାରିତ ହୋଇଥିଲା ଏବଂ ସେହି ସବୁ ରଚନାର ସାମଗ୍ରିକତା ମଧ୍ୟରେ ଶିଶୁସମାଜ ପାଇଁ ଏକ ସ୍ୱତନ୍ତ୍ର ବୌଦ୍ଧିକ ଉପାଦାନ ଥିଲା ।

ଶିଶୁ-ମନୋବିଜ୍ଞାନ ଏବଂ ଆଧୁନିକ ଶିକ୍ଷାର ଅଗ୍ରଗତି ସଙ୍ଗେ ସଙ୍ଗେ ସାହିତ୍ୟର ନିର୍ଦ୍ଦିଷ୍ଟ ଆଙ୍ଗିକ ସଂସ୍କାର ସାଧିତ ହେଲା । ବିଶେଷତଃ, ଶିଶୁ-ମନୋବିଜ୍ଞାନ ଉପଯୋଗୀ ରଚନାର ପ୍ରୟୋଜନ ଅନୁଭୂତ ହେଲା । କହିବାକୁ-ଗଲେ, ଶିଶୁ-ସାହିତ୍ୟ ଏବର ସୃଷ୍ଟି ଏବଂ ଓଡ଼ିଆ ସାହିତ୍ୟରେ ଭକ୍ତକବି ମଧୁସୂଦନ, ପଲ୍ଲୀକବି ନନ୍ଦକିଶୋର ଓ ଗୋପାଳଚନ୍ଦ୍ର ପ୍ରହରାଜଙ୍କର ବିବିଧ ରଚନା ହିଁ ଓଡ଼ିଆ ଶିଶୁ-ସାହିତ୍ୟର ଭିତ୍ତି ପ୍ରତିଷ୍ଠା କଲା ।

ମଧୁସୂଦନଙ୍କ ଯୁଗ ପୂର୍ବରୁ ସ୍ୱତନ୍ତ୍ର ଓଡ଼ିଆ ଶିଶୁ-ସାହିତ୍ୟ ରଚନା ପର୍ଯ୍ୟାୟ ଆରମ୍ଭ ହେବା ମୂଳରେ ଶିକ୍ଷାପ୍ରସାର, ବିଭିନ୍ନ ପାଠ୍ୟପୁସ୍ତକର ପ୍ରୟୋଜନୀୟତା ହିଁ କାରଣ ସ୍ୱରୂପ ବିଦ୍ୟମାନ । ସେହି ସମୟରେ ପାଦ୍ରୀମାନେ ମଧ୍ୟ ଓଡ଼ିଆରେ ଶିଶୁ-

ପାଠ୍ୟପୁସ୍ତକର ଅଭାବ ଦୂର କରିବାଲାଗି ଅନ୍ୟ ଭାଷାରୁ ଗଳ୍ପ, ବିଜ୍ଞାନ ବିଷୟକ ପୁସ୍ତକ ଅନୁବାଦ କରିଥିବାର ଜଣାଯାଏ ।

ଏହିସବୁ ରଚନାବଳୀର ଆବେଦନ, ପ୍ରଭାବ ପରବର୍ତ୍ତୀ କାଳରେ ବହୁ କବି ଓ ଗାଳ୍ପିକଙ୍କୁ ଶିଶୁ ଉପଯୋଗୀ ସାହିତ୍ୟ ରଚନା କରିବାରେ ସାହାଯ୍ୟ କରିଥିଲା । କେବଳ ନୈତିକତା ପ୍ରଚାର ଉତ୍କୃଷ୍ଟ ଶିଶୁ-ସାହିତ୍ୟର ଆଦୌ ଲକ୍ଷଣ ନୁହେଁ, ବରଂ ନୀତିଶିକ୍ଷା, ଆନନ୍ଦସୃଷ୍ଟି, ବିସ୍ମୟସୃଷ୍ଟି ଏବଂ ପ୍ରକୃତି ଓ ମାନବଜଗତ ସହିତ ଶିଶୁର ସଖ୍ୟ ସ୍ଥାପନ, ଦୟା, କ୍ଷମା, ଉଲ୍ଲାସ ସୃଷ୍ଟି ଶିଶୁ-ସାହିତ୍ୟର ବାସ୍ତବ-ଧର୍ମ । ସଂସ୍କୃତର ପଞ୍ଚତନ୍ତ୍ର, କଥାସରିତ ସାଗର, ହିତୋପଦେଶ, ବୃହତ୍‌କଥା ପ୍ରଭୃତି ଅଜସ୍ର ଗଳ୍ପ ପୁସ୍ତକ ଆନନ୍ଦ ଆହ୍ଲାଦର ବିଷୟ ଏବଂ ଶିଶୁ-ଜୀବନକୁ ପ୍ରଭାବିତ କରିବାଭଳି ଉପାଦାନରେ ପରିପୂର୍ଣ୍ଣ ।

ପ୍ରାକ୍-ଆଧୁନିକ ଯୁଗର ଓଡ଼ିଆ ଶିଶୁସାହିତ୍ୟର ଆଦର୍ଶରୂପେ ବିଭିନ୍ନ ସଂସ୍କୃତ ଗଳ୍ପ ଗୃହୀତ ହୋଇଥିଲା । ପରେ ମଧୁସୂଦନ, ନନ୍ଦକିଶୋରଙ୍କ ରଚନାରେ ତାହାର ରୂପାନ୍ତର ଘଟିଥିଲା । ପୁନଶ୍ଚ ସ୍ୱାଧୀନତା ପରବର୍ତ୍ତୀ ଯୁଗରେ ଏହି ଆଦର୍ଶ ସମ୍ପୂର୍ଣ୍ଣ ପରିବର୍ତ୍ତିତ ହୋଇଯାଇଛି । ଶିକ୍ଷା ଓ ସଭ୍ୟତାର ଜଟିଳ ପରିସ୍ଥିତିରେ ବ୍ୟକ୍ତି ଓ ସମାଜ ଯେପରି ନାନାବିଧ ସମସ୍ୟାର ସମ୍ମୁଖୀନ, ପାରିବାରିକ ସ୍ଥିତି ମଧ୍ଯ ସମ୍ପୂର୍ଣ୍ଣରୂପେ ପରିବର୍ତ୍ତିତ ହୋଇଯାଇଛି । ଗତ ପଚିଶବର୍ଷ ମଧ୍ୟରେ ଓଡ଼ିଆ ଶିଶୁ-ସାହିତ୍ୟର ଦିଗନ୍ତ ବହୁଭାବରେ ବିସ୍ତାରିତ ଏବଂ ବହୁ ପ୍ରଭାବଶାଳୀ ଲେଖକଙ୍କ ଲେଖନୀରୁ ଶତାଧିକ କବିତା, ଗଳ୍ପ, ଏକାଙ୍କିକା, କାହାଣୀ, କ୍ଷୁଦ୍ର ଉପନ୍ୟାସ ସମ୍ଭବ ହୋଇଅଛି । ଶିଶୁ-ସାହିତ୍ୟର ଏତାଦୃଶ ବିସ୍ଫୋରଣ ମୂଳରେ ବହୁ ଶିଶୁପତ୍ରିକାର ଦାନ ସର୍ବାଦୌ ସ୍ୱୀକାର୍ଯ୍ୟ । ପୂର୍ବେ ପଞ୍ଚାମୃତ, ଜହ୍ନମାମୁଁ ଆଦି ପତ୍ରିକା ଏ ଦେଶରେ ବହୁ ଶିଶୁ ଉପଯୋଗୀ ପୁସ୍ତକ-ଲେଖକମାନଙ୍କୁ ସୃଷ୍ଟି କରିଥିଲା ଏବଂ ଆଧୁନିକ ଯୁଗରେ ଶିଶୁସମ୍ପଦ, ମନପବନ, ଟୁଆଁଟୁଇଁ, ଅପରାଜିତା, ଶରଦଶଶୀ, ମୋ ଦେଶ, ସଂସାର, ଆଜହ୍ନମାମୁଁ ସରଗଶଶୀ, ବାଇଚଢେଇ, ଗୌରବ, ବାରମଜା, ବାଘମାମୁଁ ପ୍ରଭୃତି ଉଚ୍ଚସ୍ତରୀୟ ଶିଶୁପତ୍ରିକା ସହିତ କେତେକ ସମ୍ବାଦପତ୍ରର ସାପ୍ତାହିକ ସଂସ୍କରଣର ଶିଶୁବିଭାଗ ଆକର୍ଷଣୀୟ ହୋଇ ପ୍ରକାଶ ପାଇଥାଏ ।

ସର୍ବଶ୍ରୀ କାଳନ୍ଦୀଚରଣ ପାଣିଗ୍ରାହୀ, ଗୋଦାବରୀଶ ମହାପାତ୍ର, ହରିକିଶୋର ଦାସ, ରାମପ୍ରସାଦ ସିଂହ, ରାମକୃଷ୍ଣ ନନ୍ଦ, ଅନନ୍ତଚରଣ ଶତପଥୀ, ଧନେଶ୍ୱର ଶତପଥୀ, କୁଞ୍ଜବିହାରୀ ଦାଶ, ଉପେନ୍ଦ୍ର ତ୍ରିପାଠୀ (୧୯୦୩), ଶ୍ରୀଧର ଦାସ, କୃଷ୍ଣଚନ୍ଦ୍ର କର, ଉଦୟନାଥ ଷଡ଼ଙ୍ଗୀ, ଚକ୍ରଧର ମହାପାତ୍ର, ବିନୋଦ କାନୁନ୍‌ଗୋ, ହରିକିଶୋର ଦାସ, ଗୋକୁଳଚନ୍ଦ୍ର କର, ଶ୍ରୀଧର ମହାପାତ୍ର ପ୍ରଭୃତି

ସମ୍ବେଦନଶୀଳ କବି ଓ ଗଳ୍ପକାର ଓଡ଼ିଆ ଶିଶୁସାହିତ୍ୟର ମାନ, ଗୌରବ ଏବଂ ପରିମାଣ ବୃଦ୍ଧି ଦିଗରେ ନିରନ୍ତର ବ୍ୟାପୃତ ରହିଛନ୍ତି ।

୧୯୬୦ ମସିହାଠାରୁ କେତେ ପୁରାଣ, ଗଳ୍ପ, ପଶୁଗଳ୍ପ ଓ 'ଆର୍ଯ୍ୟ ଋଷି-ଜୀବନୀମାଳା' ବିଭିନ୍ନ ଲେଖକଙ୍କ ଦ୍ୱାରା ଆରମ୍ଭ ହୋଇଥିଲା । ଶ୍ରୀଯୁକ୍ତ ଜଗନ୍ନାଥ ମହାପାତ୍ରଙ୍କ କଳ୍ପିତ 'ଅଭିନବ ସଂସ୍କରଣ ଗ୍ରନ୍ଥମାଳା' ଏଠାରେ ଉଲ୍ଲେଖଯୋଗ୍ୟ । ଶିକାରଗଳ୍ପ, ଆବିଷ୍କାର କାହାଣୀ, ମୂଳ ରାମାୟଣ, ମହାଭାରତ କାହାଣୀ, ଜ୍ଞାନ-ବିଜ୍ଞାନ ବିଷୟକ କାହାଣୀ, ନେତାମାନଙ୍କ ଜୀବନୀ ଓଡ଼ିଆ ଶିଶୁ-ସାହିତ୍ୟକୁ ପରିପୁଷ୍ଟ କରିପାରିଛି । ନିଛକ ଉଭୟ, କାଳ୍ପନିକ ଶିଶୁସାହିତ୍ୟ ସହିତ ଶିଶୁ ପାଠ୍ୟ ପୁସ୍ତକର ସମ୍ପର୍କ ନିବିଡ଼; ଫଳରେ ସ୍ୱାଧୀନତା ପରବର୍ତ୍ତୀ କାଳରେ ବହୁ ପ୍ରତିଭାଶାଳୀ ଗାଳ୍ପିକ, କବି, ନାଟ୍ୟକାର ମଧ୍ୟ ଶିଶୁମାନଙ୍କ ପଠନୋପଯୋଗୀ ଉପାଦେୟ ପାଠ୍ୟପୁସ୍ତକ ରଚନା କରିଛନ୍ତି । ବିଶ୍ୱସାହିତ୍ୟରୁ ବହୁ ଶିଶୁ-ରଚନା ଓଡ଼ିଆରେ ଅନୂଦିତ ହେବାଫଳରେ ଓଡ଼ିଆ ଶିଶୁ-ସାହିତ୍ୟରେ ନୂତନ ମୂଲ୍ୟବୋଧ ଦେଖାଦେଇଛି ।

ଦ୍ୱିତୀୟ ପର୍ଯ୍ୟାୟରେ ମଧ୍ୟ ବହୁ ସୃଜନୀ ପ୍ରତିଭା ଶିଶୁସାହିତ୍ୟ କ୍ଷେତ୍ରରେ ସ୍ୱାତନ୍ତ୍ର୍ୟ ପ୍ରଦର୍ଶନ କରିପାରିଛନ୍ତି । ରାମପ୍ରସାଦ ମହାନ୍ତି, ଗୋପାଳଚନ୍ଦ୍ର ମିଶ୍ର, ବୈକୁଣ୍ଠ ଓଝା, ଦୁର୍ଗାପ୍ରସାଦ ପଟ୍ଟନାୟକ, ମହେଶ୍ୱର ମହାନ୍ତି, ପଠାଣି ପଟ୍ଟନାୟକ, ଶାନ୍ତନୁକୁମାର ଆଚାର୍ଯ୍ୟ, ଗୋକୁଳାନନ୍ଦ ମହାପାତ୍ର ପ୍ରଭୃତି ବହୁ ତରୁଣ ଶିଶୁ-ସାହିତ୍ୟ ରଚନାରେ ବ୍ରତୀ ହୋଇଛନ୍ତି । ପୂର୍ବ ଯୁଗର ବୁଢ଼ୀ ଅସୁରୁଣୀ, ରଜାପୁଅ ମନ୍ତ୍ରୀପୁଅ, ଆକାଶର ଇନ୍ଦ୍ରଧନୁ, ବଗିଚାର ପ୍ରଜାପତି, ପାହାଡ଼ର ଝରଣା, ସହରର ଚଡ଼ିଆଖାନା ପ୍ରଭୃତି ସ୍ଥାନରେ ବିଜ୍ଞାନ ସମ୍ବନ୍ଧୀୟ ଉଦ୍ଭାବନା କାହାଣୀ ଓ ଦେଶବିଦେଶର ଲୋକମାନଙ୍କର ଜୀବନଯାପନର ଚିତ୍ର ଆଜିର ଶିଶୁସାହିତ୍ୟରେ ସ୍ଥାନ ପାଇଛି ।

### ପତ୍ର-ପତ୍ରିକା ବିସ୍ଫୋରଣ :

ସ୍ୱାଧୀନତା ପରବର୍ତ୍ତୀ କାଳରେ ଓଡ଼ିଆ ସାହିତ୍ୟର ଉଭୟ ପରିମାଣାତ୍ମକ ଏବଂ ଗୁଣାତ୍ମକ ମାନ ବୃଦ୍ଧି ପାଇଛି ଏବଂ ଏତାଦୃଶ ବିକାଶ ଓ ବୃଦ୍ଧିର ବିଭିନ୍ନ କାରଣ ମଧ୍ୟରେ ବହୁସଂଖ୍ୟକ ପତ୍ରପତ୍ରିକାର ପୃଷ୍ଠପୋଷକତା ହିଁ ପ୍ରଧାନ ହେତୁ । ବିଂଶ ଶତାବ୍ଦୀର ପ୍ରଥମ ତୃତୀୟଦଶକ ମଧ୍ୟରେ ଓଡ଼ିଆ ଭାଷାରେ ଯେତେ ପରିମାଣରେ ପତ୍ରପତ୍ରିକା ଆତ୍ମପ୍ରକାଶ କରିଥିଲା, ସ୍ୱାଧୀନତା ପରଠାରୁ ମାତ୍ର ଦୁଇ ଦଶକ ମଧ୍ୟରେ ତାହାର ବହୁଗୁଣ ପତ୍ରପତ୍ରିକା ପ୍ରକାଶିତ ହୋଇଛି । ବିଶେଷତଃ ଆଭିମୁଖ୍ୟ, ରୀତି, ଜ୍ଞାନ-ବିଜ୍ଞାନ ପ୍ରବୃତ୍ତି ବିଗ୍ରହରେ ଏହି ପତ୍ରିକାସମୂହ ଓଡ଼ିଶାରେ ସାଂସ୍କୃତିକ,

ବୌଦ୍ଧିକ ଜାଗରଣର ଏକନିଷ୍ଠ ପ୍ରହରୀ ବୋଲି କୁହାଯାଇପାରେ । ଉଚ୍ଚକୋଟୀର ସାହିତ୍ୟପତ୍ର ଉତ୍କଳସାହିତ୍ୟ (୧୮୯୭), ମୁକୁର (୧୯୦୫), ସତ୍ୟବାଦୀ (୧୯୧୪), ସହକାର (୧୯୨୯), ଯୁଗବାଣୀ, ଆଧୁନିକ (୧୯୩୬), ନବଭାରତ(୧୯୩୮), ଆରତି, ଡଗର (୧୯୩୭)ର ସମର୍ଥ ଉତ୍ତରାଧିକାରୀ ଭାବରେ ଶଙ୍ଖ (ଦେବଗଡ—୧୯୪୫), ବୀଣା, ଚତୁରଙ୍ଗ, ଭଞ୍ଜପ୍ରଭା, ଝଙ୍କାର (୧୯୪୮), ଆସନ୍ତାକାଲି (୧୯୪୨), ନବରବି (୧୯୭୦), ନବଜୀବନ (୧୯୫୬), ମାନସ (୧୯୭୨), ସାମ୍ମୁଖ୍ୟ (୧୯୬୩), ଦିଗନ୍ତ, ପୌରୁଷ, ସମାବେଶ, ଜୀବନରଙ୍ଗ ପ୍ରଭୃତି ସାହିତ୍ୟିକ ମାସିକୀର ସାଧନା ଏବଂ ଅବଦାନ ସର୍ବାଦୌ ଉଲ୍ଲେଖଯୋଗ୍ୟ ।

ସମ୍ବଲପୁର ବିଶ୍ୱବିଦ୍ୟାଳୟର ଆନୁକୂଲ୍ୟରେ କୁଳପତି ଶ୍ରୀ ଭୁବନେଶ୍ୱର ବେହେରାଙ୍କ ସମ୍ପାଦନାରେ ପ୍ରକାଶିତ ମାସିକୀ 'ସପ୍ତର୍ଷି' (ଜାନୁଆରୀ—୧୯୭୨) ନିୟମିତ ଭାବରେ ପ୍ରବନ୍ଧ, ଗଳ୍ପ, କବିତା ପରିବେଷଣ କରି ପ୍ରବୀଣ ଓ ଯୁବ ଲେଖକ-ମାନଙ୍କର ସମୟୋପଯୋଗୀ ପୃଷ୍ଠପୋଷକତା କରିଆସୁଛି । ସାହିତ୍ୟ ପତ୍ରିକା-ମାନଙ୍କର ସମ୍ପାଦକୀୟ, ଆଲୋଚନା ଓଡ଼ିଆ ସାହିତ୍ୟ ଓ ଭାଷାର କ୍ରମବିକାଶ ପଥରେ ଯେପରି ବରାବର ଇଂଗିତ ଏବଂ ସୂଚନା ପ୍ରଦାନ କରିଥାଏ । ସପ୍ତଦଶକରେ ପତ୍ରପତ୍ରିକା ରାଜ୍ୟରେ ଏକ ଅଭୂତପୂର୍ବ ବିସ୍ଫୋରଣ ଘଟିଛି; ଯାହା ଫଳରେ ସମ୍ଭ୍ରାନ୍ତ ମାସିକୀର ଦୀର୍ଘ ତାଲିକାରେ ମିନି ପତ୍ରିକାଗୁଡ଼ିକର ଆବିର୍ଭାବ ମଧ୍ୟ ପ୍ରଣିଧାନଯୋଗ୍ୟ । ସମଗ୍ର ସମାଜରେ ପ୍ରଭାବ ବିସ୍ତାର କରିବାରେ ମାସିକ କିମ୍ବା ସାପ୍ତାହିକ ସାହିତ୍ୟପତ୍ରର ଭୂମିକା କମ୍ ନୁହେଁ । ଏହି ଯୁଗରେ ଦେଖାଯାଇଛି ଯେ ସାହିତ୍ୟିକ ସୃଷ୍ଟିର ମୂଳ ପ୍ରେରଣା ହେଉଛି ଏହି ପତ୍ର-ପତ୍ରିକା । କାବ୍ୟକବିତା, ଉପନ୍ୟାସ, ଗଳ୍ପ ସଦୃଶ ବିଭିନ୍ନ ଆଙ୍ଗିକର ଉତ୍ତରୋତ୍ତର ପରିବର୍ତ୍ତନ, ସଂସ୍କାର ସାଧନର ମାଧ୍ୟମ ଏ ପତ୍ରିକାସମୂହ । ଆଧୁନିକ ଓଡ଼ିଆ ସାହିତ୍ୟରେ ସୃଜନାତ୍ମକ ତତ୍ତ୍ୱର ପରୀକ୍ଷାମୂଳକ/ପ୍ରୟୋଗାତ୍ମକ ଅଭିବ୍ୟକ୍ତି ପାଇଁ ପତ୍ରପତ୍ରିକା ହିଁ ଦାୟୀ; ତେଣୁ ବିଗତ ପଚିଶ ବର୍ଷର ଓଡ଼ିଆ ସାହିତ୍ୟର ଗୁଣାତ୍ମକ ବିକାଶ ପତ୍ରପତ୍ରିକା ପ୍ରକାଶନଦ୍ୱାରା ବିଶେଷ ଅନୁପ୍ରାଣିତ ବୋଲି କୁହାଯାଇପାରେ ।

---

# ଶୁଦ୍ଧିପତ୍ର

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୪୬୭ | ୧୭ | ଶୀର୍ଷ | ଶୀର୍ଷକ |
| ୪୭୩ | ୧୨ | ଖ୍ରୀଷ୍ଟାବ୍ଦ ପ୍ରଥମ | ଖ୍ରୀଷ୍ଟାବ୍ଦ ସପ୍ତମ |
| ୪୭୬ | ୨ | ଉଲ୍ଲିକ | ଭଲ୍ଲିକ |
| ୪୭୭ | ୪ | ରାଜଦ୍ୱର | ରାଜଦ୍ୱରେ |
| ୪୭୭ | ୧୩ | ଅଭିନବ ଚୈତନ | ଅଭିନବ ଚୈତନ୍ୟ |
| ୪୭୮ | ୨୮ | ଶୈଲ୍ପୀକ | ଶୈଲ୍ପିକ |
| ୪୭୯ | ୨୯ | ବଉଦ୍ଦ ରୂପେ | ବଉଦ୍ଧ ରୂପେ |
| ୪୮୦ | ୧୬ | ଜଗନ୍‌ମୋହନ | ଜଗମୋହନ |
| ୪୮୦ | ୨୭ | ଛଳରେ କବ | ଛଳରେ କବଙ୍କ |
| ୪୮୩ | ୨୩ | ଯାଶୋବନ୍ତ | ଯଶୋବନ୍ତ |
| ୪୮୩ | ୨୬ | ତାଙ୍କର ଜନ୍ମ ୧୮୪୭ | ତାଙ୍କର ଜନ୍ମ ୧୪୮୭ |
| ୪୮୪ | ୮ | ଚନ୍ଦ୍ରୋତ୍ପଳା ନଦୀକୂଳରେ ଯେ ଗ୍ରାମ ନେମ୍ବା ଯେ | ଚନ୍ଦ୍ରୋତ୍ପଳା ନଦୀକୂଳରେ ଯେ ଗ୍ରାମ ନେମ୍ବାଲୋ ଅଟଇ ସେ (ଗରୁଡ଼ ଗୀତା) |
| ୪୯୧ | ୨୦ | ସମ୍ପନ୍ନ | ସଂପୂର୍ଣ୍ଣ |
| ୪୯୭ | ୧୫ | ଶିଖିଗଙ୍ଗ | ଶିଖିରଙ୍ଗ |
| ୪୯୭ | ୨୦ | କବ୍ୟୁକ୍ତରେ | କାବ୍ୟୋକ୍ତରେ |
| ୪୯୮ | ୯ | ଅସାଧାରତ୍ୱ | ଅସାଧାରଣତ୍ୱ |
| ୪୯୯ | ୯ | ବାତ୍ସାୟନଙ୍କ କାବ୍ୟ ଶାସ୍ତ୍ର | ବାତ୍ସ୍ୟାୟନଙ୍କ କାମ ସୂତ୍ର |
| ୪୯୯ | ୧୦ | ସାହିତ୍ୟ ଦର୍ପଣ, ସାହିତ୍ୟ ରତ୍ନାକର | ବିଶ୍ୱନାଥ କବିରାଜଙ୍କ ସାହିତ୍ୟ ଦର୍ପଣ ଏବଂ ସାହିତ୍ୟ ରତ୍ନାକର |
| ୫୦୨ | ୧ | ଦେଖରେ ହାଟକମାଳୀ | ଦେଖରେ ହାଟକଗାଳୀ |
| ୫୦୨ | ୪ | ଲପିନ | ଲପନ |
| ୫୦୨ | ୨୭ | କରଥିବେ | କରଥିଲେ |
| ୫୦୪ | ୧୩ | ବିପ୍ରଲମ୍ଭୁ | ବିପ୍ରଲମ୍ଭ |
| ୫୦୭ | ୧୩ | ସାହିତ୍ୟର | ସାହିତ୍ୟ |
| ୫୦୯ | ୨୧ | ମହୟାନ ଧର୍ମ | ମହାଯାନ ଧର୍ମ |
| ୫୧୨ | ୨୧ | ଶ୍ରୀକୃଷ୍ଣ ଜଗନ୍ନାଥ | ଶ୍ରୀକୃଷ୍ଣ ଜଗନ୍ନାଥଙ୍କ |
| ୫୧୫ | ୨୦ | ଔଷଧିଶାନନ | ଓଷଧୀଶାନନ |
| ୫୨୦ | ୧୧ | ଅପେକ୍ଷା ଅଧିକ | ଅଧିକ |

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୫୨୦ | ୨୮ | ବୃତ୍ତାସୁର | ବୃତ୍ରାସୁର |
| ୫୨୪ | ୨୧ | ମହାଭାରତ ରୂପା | ମହାଭାବ ରୂପା |
| ୫୩୦ | ୧୭ | ହ୍ୱମ୍-ସାହେବ | ହ୍ୱମହ୍ ସାହେବ |
| ୫୪୨ | ୩ | ମଧୁସୂଦନ ରାଓ (୧୮୫୯-୧୯୧୩) | ମଧୁସୂଦନ ରାଓ (୧୮୫୩-୧୯୧୨) |
| ୫୪୪ | ୧୨ | ଉତ୍କଳର | ଉତ୍କଳୀୟ |
| ୫୫୦ | ୧୪ | ମଦ୍ୟପୀ ସ୍ୱାମୀ | ମଦ୍ୟପ ସ୍ୱାମୀ |
| ୫୫୧ | ୨୨ | ଉପନ୍ୟାସ ଐତିହାସିକ | ଉପନ୍ୟାସର ଐତିହାସିକ |
| ୫୫୫ | ୨୯ | ବଜ୍ର ରେଣ୍ଡୁ | ବ୍ରଜ ରେଣ୍ଡୁ |
| ୫୬୧ | ୧ | ଗୋଦାବରୀଶ ମିଶ୍ର (୧୮୮୦) | ଗୋଦାବରୀଶ ମିଶ୍ର (୧୮୮୬-୧୯୫୬) |
| ୫୬୧ | ୨୪ | ଲକ୍ଷ୍ୟ ଲକ୍ଷ୍ୟ ଗଦା | ଲକ୍ଷ ଲକ୍ଷ ଗଦା |
| ୫୬୨ | ୧୭ | Enocharden | Enoch Arden |
| ୫୬୨ | ୧୮ | ଐର ମଘବାହନ | ଐର ମେଘବାହନ |
| ୫୬୨ | ୨ | ପ୍ରଥମ ପତ୍ନୀ | ପ୍ରଥମ ପ୍ରେମିକା |
| ୫୭୨ | ୨୪ | ଆଲଙ୍ଘ୍ୟକୁ | ଅଲଙ୍ଘ୍ୟକୁ |
| ୫୭୬ | ୬ | ଦୁର୍ବୋଧ ଦର୍ଶନରେ ସେ ବିହ୍ୱଳ | ଦୁର୍ବୋଧ ଦର୍ଶନରେ ସେ ଅନ୍ନଦାଙ୍କ ପରି ବିହ୍ୱଳ |
| ୫୭୬ | ୨୬ | ବୈକୁ ନାଥଙ୍କର | ବୈକୁଣ୍ଠ ନାଥଙ୍କର |
| ୫୭୭ | ୧୫ | କୃଷ୍ଣ ଚନ୍ଦ୍ର ପାଢ଼ୀ | କୃଷ୍ଣ ଚନ୍ଦ୍ର ତ୍ରିପାଠୀ |
| ୫୯୨ | ୯ | ସୈରନ୍ଧ୍ର | ସୌରୀନ୍ଦ୍ର |
| ୫୯୨ | ୨୪ | ବ୍ରହ୍ମୋତ୍ତ୍ରି | ବ୍ରହ୍ମୋତ୍ତରୀ |
| ୫୯୩ | ୨୨ | ଭୂମିକାକୁ ମଧ୍ୟ ସ୍ୱୀକାର | ଭୂମିକାକୁ ସ୍ୱୀକାର |
| ୫୯୫ | ୩୧ | ପ୍ରତ୍ୟୟଧର୍ମୀ | ପ୍ରଣୟଧର୍ମୀ |
| ୬୦୦ | ୩ | ମତାମତ ଏଠାରେ ଉଦ୍ଧାରଯୋଗ୍ୟ | ମତାମତ ବରାବର ଉଦ୍ଧାର କରାଯାଇଥାଏ । |
| ୬୦୨ | ୨୦ | ପଞ୍ଚାପହ୍ନଣ | ପଞ୍ଚାପହରଣ |
| ୬୩୪ | ୧୭ | ହ୍ରଡ଼ମ ପ୍ୟାଗ୍ନର | ହ୍ରଡମ ପ୍ୟାଗ୍ନର |
| ୬୪୦ | ୩୧ | ବୋଭର୍ୟାର | ବାରେସ୍ୟାଖି |
| ୬୭୪ | ୪ | କାବ୍ୟ-ସମନ୍ୱିତ | ବାକ୍ୟ-ସମନ୍ୱିତ |
| ୬୮୧ | ୨୮ | ଡ: କୁଞ୍ଜବିହାରୀ ଦାଶ | ଡ: କୁଞ୍ଜବିହାରୀ ତ୍ରିପାଠୀ |

# ପ୍ରଚ୍ଛଦପଟରେ ଉଦ୍ଧୃତ ବିଭିନ୍ନ ଭାରତୀୟ ଭାଷାର ସୁଭାଷିତାବଳୀର ମର୍ମ

ଅସମୀୟା—ଶ୍ୱାନ ଶୃଗାଳ ଏବଂ ଗର୍ଦ୍ଦଭର ଆତ୍ମା ହେଉଛନ୍ତି ରାମ—ଏହା ଜାଣି ସମସ୍ତଙ୍କୁ ପ୍ରଣାମ କର । (ଶଙ୍କର ଦେବ : ୧୫ଶ ଶତାବ୍ଦୀ)

ମାଲୟାଲମ୍—ହେ ରାଜନ୍, ସତ୍ୟଠାରୁ ଆଉ କିଛି ଅଧିକ ସତ୍ୟ ନାହିଁ । (ଏଜୁତ୍ତଚ୍ଚନ : ୧୬ଶ ଶତାବ୍ଦୀ)

କନ୍ନଡ଼—ଗୋଟିଏ ମାତ୍ର ଜାତି ଅଛି, ତାହା ହେଉଛି ମାନବ ଜାତି । (ପମ୍ପା : ୯ମ ଶତାବ୍ଦୀ)

ତେଲଗୁ—ଜନ୍ମଭୂମିକୁ ଭଲପାଅ ଏବଂ ଯାହାକିଛି କଲ୍ୟାଣକର ତାହା ଆଚରଣ କର । (ଗୁରୁଜାଡ଼ା ଅପ୍‌ପା ରାଓ : ୨୦ଶ ଶତାବ୍ଦୀ)

ତାମିଲ—ହେ ଅନ୍ତିମ ସର୍ବଶକ୍ତିମୟ ପୁରୁଷ, ମୋର ଆଉ କୌଣସି ବାସନା ନାହିଁ; ଜନସାଧାରଣଙ୍କ କଲ୍ୟାଣ ହିଁ ମୋର ଏକାନ୍ତ ଅଭିଳାଷ । (ତାୟୁମାନର୍ଓ୍ୱର)

ମରାଠି—ସେ ହେଉଛି ପ୍ରକୃତ ସାଧୁ ସନ୍ଥ, ଯେ ପତିତ, ଦଳିତ, ଅତ୍ୟାଚାରିତମାନଙ୍କୁ ନିଜର ବୋଲି ଭାବେ । (ତୁକାରାମ . ୧୭ଶ ଶତାବ୍ଦୀ)

ଗୁଜୁରାଟୀ—ଅଗୋଚର ବର୍ତ୍ତମାନ ଗୋଚର ହେଲା । (ଆଖୋ --ମଧ୍ୟଯୁଗ)

ଉର୍ଦ୍ଦୁ—କୌଣସି ଜିନିଷକୁ ସରଳ କରିବା କି ପ୍ରକାର କଠିନ କାର୍ଯ୍ୟ ! ଏପରିକି ମଣିଷ ନିଜେ ମଣିଷ ପରି ଆଚରଣ କରିବା କଷ୍ଟକର । (ଗାଲିବ୍ : ୧୯ଶ ଶତାବ୍ଦୀ)

ପଞ୍ଜାବୀ—ଯଦି ଯେତେ ଅନ୍ଧକାର ହେଉ ଶବ୍ଦ ହିଁ ଶୁଭ୍ର । (ଗୁରୁନାନକ : ୧୫ଶ ଶତାବ୍ଦୀ)

ବଙ୍ଗଳା—ଈଶ୍ୱର ପତିତମାନଙ୍କ ପ୍ରତି ବିଶେଷ ଦୟାଳୁ । କୁଳୀନ, ପଣ୍ଡିତ ଏବଂ ଧନୀକମାନେ ବଡ଼ ଅଭିମାନୀ । (ଚୈତନ୍ୟ ଚରିତାମୃତ)

ମଣିଷ ଅପେକ୍ଷା ଆଉ ସତ୍ୟ କିଛି ନାହିଁ । (ଚଣ୍ଡୀଦାସ : ୧୫ଶ ଶତାବ୍ଦୀ)

ହିନ୍ଦୀ—କୀର୍ତ୍ତି ହେଉ, କାବ୍ୟକୃତି ହେଉ, ଐଶ୍ୱର୍ଯ୍ୟ ହେଉ—ଯାହା ଗଙ୍ଗା ସଦୃଶ ସମସ୍ତଙ୍କ ପକ୍ଷେ ହିତକର, ତାହାହିଁ କେବଳ ମହାର୍ଘ୍ୟବାନ୍ । (ରାମଚରିତମାନସ : ତୁଳସୀ ଦାସ, ୧୬ଶ ଶତାବ୍ଦୀ)

କାଶ୍ମୀରୀ—ଶୀତ ଅତିକ୍ରାନ୍ତ ହେବ, ତୁଷାର ବିଗଳିତ ହେବ, ବସନ୍ତ ପୁଣି ସମାଗତ ହେବ । (ମେହଜୁର : ୨୦ଶ ଶତାବ୍ଦୀ)

ମୈଥିଳୀ—ବିଦ୍ୱାନ୍ ଏବଂ ରୁଚିମାର୍ଜ୍ଜିତ ପୁରୁଷର ଭାଷା ହେଉଛି ବ୍ରହ୍ମାଙ୍କର ବେଦ । (ବିଦ୍ୟାପତି ପଦାବଳୀ)

ଓଡ଼ିଆ—"ମୋ ଜୀବନ ପଛେ ନର୍କେ ପଡ଼ିଥାଉ
ଜଗତ ଉଦ୍ଧାର ପାଉ—" (ଭୀମଭୋଇ : ୧୯ଶ ଶତାବ୍ଦୀ)

× × × ×

"ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲି ଯାଆନ୍ତୁ ପିଠିରେ ।" (ଗୋପବନ୍ଧୁ ଦାସ : ୨୦ଶ ଶତାବ୍ଦୀ)

---